# UTKAL ABHIDHAN.

A COMPREHENSIVE DICTIONARY OF THE

ORIYA LANGUAGE.

BY

**JAGANNATH RÁO.**

**Revised Second Edition.**

# ଉତ୍କଳ ଅଭିଧାନ ।

ଶ୍ରୀ ଜଗନ୍ନାଥ ରାଓ କର୍ତ୍ତୃକ ସଙ୍କଳିତ ।

ସଂଶୋଧିତ ଦ୍ୱିତୀୟ ସଂସ୍କରଣ ।

Printed by V. Kar.

The Utkal Sahitya Press,

**CUTTACK.**

1915.

*Price Rs. 5/- only.*

ମୂଲ୍ୟ ଟ ୫ ମାତ୍ର ।

# ଭୂମିକା ।

ଓଡ଼ିଶାରେ ଇଂଲଣ୍ଡୀୟ ବାପ୍ତିଷ୍ଟ ସମ୍ପ୍ରଦାୟଭୁକ୍ତ ଖ୍ରୀଷ୍ଟିୟାନ ପ୍ରଚାରକାର୍ଯ୍ୟର ଆରମ୍ଭ ସଙ୍ଗେ ସଙ୍ଗେ ମୁଦ୍ରାଯନ୍ତ୍ରର ପ୍ରଚଳନ ହେଲା ଏବଂ ସେମାନଙ୍କର ବିଖ୍ୟାତ ପ୍ରଚାରକ ମହାତ୍ମା ସଟନ ସାହେବ ପ୍ରଥମ ଉତ୍କଳ ଅଭିଧାନ ପ୍ରଚାର କରିଥିଲେ । ତହିଁ ଉତ୍ତାରେ ଅନେକ ଦୁଇ ଖଣ୍ଡ ଅଭିଧାନ ପ୍ରକାଶିତ ହୋଇଅଛି । ସଟନ ମହାଶୟଙ୍କ ଅଭିଧାନ ବର୍ତ୍ତମାନ ଅପ୍ରଚଳିତ । ଅବଶିଷ୍ଟ ଗ୍ରନ୍ଥଦ୍ୱୟ ଉପେକ୍ଷାକୃତ କ୍ଷୁଦ୍ରତର । ଆଜଯାଏ କୌଣସି ଅଭିଧାନ ମଧ୍ୟରେ ଧାତୁ ପ୍ରତ୍ୟୟ ସନ୍ନିବେଶିତ ହୋଇ ନ ଥିଲା ଏବଂ ଶବ୍ଦମାନଙ୍କର ଶିଷ୍ଟପ୍ରୟୋଗ ପ୍ରଦର୍ଶିତ ହୋଇ ନ ଥିଲା । ଶବ୍ଦବ୍ୟୁତ୍ପତ୍ତି ଏବଂ ପଦପ୍ରୟୋଗପ୍ରଦର୍ଶକ ଖଣ୍ଡିଏ ସୁବୃହତ୍ ଉତ୍କଳୀୟ ଶବ୍ଦକୋଷର ଅଭାବ ବହୁକାଳରୁ ଅନୁଭୂତ ହୋଇ ଆସୁଥିଲା । ଶିକ୍ଷାବିଭାଗର ଡିରେକ୍ଟର ଏବଂ ଓଡ଼ିଶାର କମିଶନର ମହୋଦୟଗଣ ସମୟ ସମୟରେ ଏହି ଅଭାବ ଦୂରୀକରଣର ଅବଶ୍ୟକତା ବିଷୟ ସରକାରୀ ରିପୋର୍ଟରେ ପୁନଃ ପୁନଃ ଉଲ୍ଲେଖ କରିବାରୁ ମୁଁ ତନ୍ମୋଚନାର୍ଥେ ପ୍ରାୟ ତିନି ବର୍ଷ କାଳ ପରିଶ୍ରମ କରି କତିପୟ ବନ୍ଧୁଙ୍କ ସାହାଯ୍ୟରେ ଏହି ଅଭିଧାନ ସଙ୍କଳନ କରିଥିଲି । ଅଭିଧାନ ସଙ୍କଳନ କାର୍ଯ୍ୟ ଏବଂ ତନ୍ମୁଦ୍ରାଙ୍କନ ଯେ ଅତିଶୟ କଠିନ ଏବଂ ଧୈର୍ଯ୍ୟସାପେକ୍ଷ, ତାହା ବୋଲିବା ବାହୁଲ୍ୟ ମାତ୍ର । ସୁତରାଂ ଯଥାସାଧ୍ୟ ପରିଶ୍ରମ ଓ ଯତ୍ନ ସତ୍ତ୍ୱେ ପ୍ରଥମ ସଂସ୍କରଣରେ ଅନେକଗୁଡ଼ିଏ ଭ୍ରମ ରହି ଯାଇଥିଲା । ଉପସ୍ଥିତ ଦ୍ୱିତୀୟ ସଂସ୍କରଣରେ ଉକ୍ତ ଭ୍ରମମାନ ଦୂର କରିବାପାଇଁ ସମୁଚିତ ଯତ୍ନ କରିବାରେ ତ୍ରୁଟି କରି ନାହିଁ । ତଥାପି ଏହା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ହୋଇଅଛି ବୋଲି ସାହସ କରି କହି ପାରୁ ନାହିଁ । ଅତଏବ ସର୍ବସାଧାରଣଙ୍କ ନିକଟରେ ବିନୀତଭାବରେ ନିବେଦନ କରୁଅଛି ଯେ, ସହୃଦୟ ବିଜ୍ଞ ମହାଶୟମାନେ ପୁସ୍ତକର ଦୋଷାଂଶ ସହୃଦୟଚିତ୍ତରେ ତ୍ୟାଗପୂର୍ବକ ପୁସ୍ତକଖଣ୍ଡିକୁ କିଞ୍ଚିତ୍ ପରିମାଣରେ ଆଦର କଲେ, ମୋହର ଶ୍ରମ ସଫଳ ଜ୍ଞାନ କରିବି ।

ଏହି ଅଭିଧାନର ପ୍ରଥମ ସଂସ୍କରଣରେ ନାନା ଭାଷାମୂଳକ ପ୍ରାୟ ଦ୍ୱାବିଂଶତି ସହସ୍ର ଶବ୍ଦ ପ୍ରଦତ୍ତ ହୋଇଥିଲା । ଏହି ଦ୍ୱିତୀୟ ସଂସ୍କରଣରେ ପ୍ରାୟ ତିନି ସହସ୍ର ନୂତନ ଶବ୍ଦ ଯୋଗ କରି ଯାଇଅଛି ଏବଂ ଅଳ୍ପସଂଖ୍ୟକ ଅନାବଶ୍ୟକ ଶବ୍ଦ ଉଠାଇ ଦିଆ ଯାଇଅଛି । ସଂସ୍କୃତମୂଳକ ଶବ୍ଦମାନଙ୍କର ପ୍ରକୃତି ପ୍ରତ୍ୟୟ ଏବଂ ଅର୍ଥାଦି ନିର୍ବାଚନ କରିବାରେ ଉଇଲସନ୍ ସାହେବଙ୍କ ସଂସ୍କୃତ ଇଂରାଜୀ ଅଭିଧାନ, ବଙ୍ଗଳା ପ୍ରକୃତିବାଦ, ଅମରାର୍ଥବୋଧିତ, ଶବ୍ଦାର୍ଥପ୍ରକାଶିକା, ଶବ୍ଦାର୍ଥମୁକ୍ତାବଳୀ ଏବଂ ଓଡ଼ିଆ ଗୀତାଭିଧାନ ଗ୍ରନ୍ଥମାନ ଅବଲମ୍ବିତ ହୋଇଅଛି । ପ୍ରଚଳିତ ଅନ୍ୟ ଭାଷାମୂଳକ ଏବଂ ଉତ୍କଳଦେଶଜ ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ସନ୍ନିବେଶିତ ହୋଇ ନାହିଁ, ଯେହେତୁ ବହୁ ସ୍ଥଳରେ ସେଥିର ନିଶ୍ଚୟାତ୍ମକ ଅବଧାରଣ ହେବା ସମ୍ଭବପର ନୁହେ । ଶିଷ୍ଟପ୍ରୟୋଗ ପ୍ରଦର୍ଶନ ନିମିତ୍ତ ପ୍ରାଚୀନ କବି ଶ୍ରୀ ଉପେନ୍ଦ୍ର ଭଞ୍ଜ, ଶ୍ରୀ ଦୀନକୃଷ୍ଣ ଦାସ, ଶ୍ରୀ ଅଭିମନ୍ୟୁ ସାମନ୍ତସିଂହାର ପ୍ରଭୃତି ଏବଂ ଆଧୁନିକ କବି ଶ୍ରୀ ରାଧାନାଥ ରାୟ ପ୍ରଭୃତିଙ୍କ ଗ୍ରନ୍ଥ ଅବଲମ୍ବିତ ହୋଇଅଛି ।

ଏହି ଅଭିଧାନ ସଙ୍କଳନ ସମାପ୍ତ ହେଲା ଉତ୍ତାରେ ଏତାଦୃଶ ବୃହତ୍ ପୁସ୍ତକର ମୁଦ୍ରାଙ୍କନ କାର୍ଯ୍ୟ ନିର୍ବାହ କରିବା ମୋ ପରି ଲୋକ ପକ୍ଷରେ ଅସମ୍ଭବ ଜାଣି, ମୁଁ ସରକାରୀ ସାହାଯ୍ୟ ପ୍ରାର୍ଥନା କରିଥିଲି । ଶିକ୍ଷାବିଭାଗର ଡିରେକ୍ଟର ମହୋଦୟ ଏହି ପୁସ୍ତକର ଉପଯୋଗିତା ବିଷୟ ଅବଗତ ହୋଇ ପ୍ରୟୋଜନୀୟ ବ୍ୟୟର ଅର୍ଦ୍ଧାଂଶ ମଞ୍ଜୁର କରିଥିଲେ । ଅନ୍ତୁର ମଧ୍ୟ କେତେକ ଖଣ୍ଡ ପୁସ୍ତକ କ୍ରୟ କରି ନେଇଥିଲେ ।

ନିମ୍ନରେ ସାଙ୍କେତିକ ଚିହ୍ନମାନ ବୁଝାଇ ଦିଆଗଲା ।

| | |
|---|---|
| ବି=ବିଶେଷ୍ୟ | ସଂ=ସର୍ବନାମ |
| ବିଂ=ବିଶେଷଣ | ପୁଂ=ପୁଂଲିଙ୍ଗ |
| ଅଂ=ଅବ୍ୟୟ | ସ୍ତ୍ରୀ=ସ୍ତ୍ରୀଲିଙ୍ଗ |
| କ୍ରିଂ. ବିଂ = କ୍ରିୟାବିଶେଷଣ | ନ=ନପୁଂସକଲିଙ୍ଗ |

କଟକ
୧୫।୪।୧୯୧୫ ।

ଶ୍ରୀ ଜଗନ୍ନାଥ ରାଓ ।

# ଉତ୍କଳ ଅଭିଧାନ ।

## ଅ

**ଅ**, ବି. ପୁଂ. ଏହାର ଉଚ୍ଚାରଣ ସ୍ଥାନ କଣ୍ଠ । ଆଦ୍ୟସ୍ୱର; ବିଷ୍ଣୁ । ଅ. ଅଭାବ; ଭିନ୍ନ । ବି. ଅପ୍ରଶସ୍ତ; ସଦୃଶ; ଈଷତ୍; କୁତ୍ସିତ; ବିରୁଦ୍ଧ ।

ଅଁଳା, ବି. ପୁଂ. (ଅମଳକୀଶବ୍ଦଜ) ବୃକ୍ଷବିଶେଷ । ସ୍ୱନାମପ୍ରସିଦ୍ଧ ଫଳ ।

ଅଋଣୀ, ବିଂ. (ଅ-ଋଣିନ୍) ଯେ ଋଣଗ୍ରସ୍ତ ନୁହେ, ଋଣରହିତ ।

ଅଂଶ, ବି. ପୁଂ. (ଅନ୍ଶ-ଅ) ଭାଗ, ଖଣ୍ଡ; ସ୍କନ୍ଧ; ଅକ୍ଷାଂଶ; କୋଣ ପରିମାଣ ।

ଅଂଶକ, ବି. ପୁଂ. (ଅଂଶ-ଅକ) ଜ୍ଞାତି । ନ. ଦିନ; ଭାଗ । ବିଂ. ଯେ ଭାଗ କରେ ।

ଅଂଶକରଣ, ବି. ନ. (ଅଂଶ-କରଣ) ବିଭାଗ-କରଣ, ଭାଗ ନିର୍ଦ୍ଦେଶ କରଣ ।

ଅଂଶକୂଟ, ବି. ନ. (ଅଂଶ-କୂଟ) ଷଣ୍ଢର ଚୂଳ, କକୁଦ୍ ।

ଅଂଶନୀୟ, ବିଂ. (ଅଂଶ-ଅନୀୟ) ଭାଗଯୋଗ୍ୟ, ବିଭାଜ୍ୟ ।

ଅଂଶଳ, ବିଂ. (ଅଂଶ-ଲ) ବଳବାନ୍, ବଳିଷ୍ଠ; ମାଂସଳ ।

ଅଂଶହର, ବିଂ. (ଅଂଶ-ହର) ଭାଗୀ, ଅଂଶର ଅଧିକାରୀ; ଅଂଶ ହରଣକାରୀ ।

ଅଂଶାଂଶ, ବି. ପୁଂ. (ଅଂଶ-ଅଂଶ) ଭିନ୍ନ ଭିନ୍ନ ଅଂଶ ।

ଅଂଶାପହାରକ, ବିଂ. (ଅଂଶ-ଅପ-ହୃ-ଅକ) ଅଂଶ ଅପହରଣକାରୀ, ଅଂଶ ଅପହାରୀ ।

ଅଂଶାପହାରୀ, ବିଂ. (ଅଂଶ-ଅପହାରୀ) ଅଂଶ ଅପହର୍ତ୍ତା, ଅଂଶାପହାରକ ।

ଅଂଶିତ, ବିଂ. (ଅଂଶ-ଇତ) ବିଭକ୍ତ, ବିଭିନ୍ନ, ବିଭାଜିତ ।

ଅଂଶୀ, ବିଂ. (ଅଂଶ-ଇନ୍) ଭାଗୀ, ଯେ ଅଂଶ ପାଏ ।

ଅଂଶୁ, ବି. ପୁଂ. (ଅନ୍ଶ୍-ଉ) କିରଣ, ପ୍ରଭା; ସୂତ୍ରର ଅଗ୍ରଭାଗ; ସୂର୍ଯ୍ୟ ।

ଅଂଶୁକ, ବି. ନ. (ଅଂଶୁ-କ) ବସ୍ତ୍ର, ସୂକ୍ଷ୍ମବସ୍ତ୍ର, ଉତ୍ତରୀୟ ବସ୍ତ୍ର; ତେଜପତ୍ର । ଯଥା—

> ଦଶନ-ଅଂଶୁକ ଦିଶଇ ନାସାମଣି ଅଂଶୁକେ,
> ମୃଗମଦବିନ୍ଦୁ ସୁନ୍ଦର ଶୋଭେ ଚିବୁକେ ।
>
> ଚନ୍ଦ୍ରଭାଗା ।

ଅଂଶୁକାୟ, ବି. ପୁଂ. (ଅଂଶୁ-କାୟ) ଯେଉଁ ଜନ୍ତୁମାନଙ୍କ ଦେହରେ ଆଲୋକ ଥାଏ, ଯଥା— ପ୍ରବାଳକୀଟ, ତାରାମତ୍ସ୍ୟ, ଜୁଳୁଜୁଳିଆ ପୋକ ପ୍ରଭୃତି ।

ଅଂଶୁଧର, ବି. ପୁଂ. (ଅଂଶୁ-ଧୃ-ଅ) ସୂର୍ଯ୍ୟ; ସୂର୍ଯ୍ୟବଂଶୀୟ ଅସମଞ୍ଜ ରାଜା ।

ଅଂଶୁପା, ବି. ସ୍ତ୍ରୀ. ବାଙ୍କୀର ଅନ୍ତର୍ଗତ ସ୍ୱନାମପ୍ରସିଦ୍ଧ ହ୍ରଦବିଶେଷ । ଗ୍ରାମ୍ୟ ପ୍ରଚଳିତ ଅଇଁପଯା । ଯଥା—

> ସୁରୂପା ଅଂଶୁପା ଲୋକେ ଅଗୋଚର,
> ପୂଜାସ୍ଥିତ ହେଲ ଗୋଷ୍ପଦ ପୁଷ୍କର ।
>
> ଚିଲିକା ।

ଅଂଶୁମତୀ, ବି. ସ୍ତ୍ରୀ. (ଅଂଶୁ-ମତ୍-ଈ) ଶାଳପର୍ଣ୍ଣୀ ବୃକ୍ଷ ।

ଅଂଶୁମତ୍ଫଳା, ବି. ସ୍ତ୍ରୀ. (ଅଂଶୁମତ୍-ଫଳ-ଆ) କଦଳୀବୃକ୍ଷ ।

ଅଂଶୁମାନ୍, ବି. ପୁଂ. (ଅଂଶୁ-ମତ୍) ସୂର୍ଯ୍ୟ; ସୂର୍ଯ୍ୟବଂଶୀୟ ଅସମଞ୍ଜ ରାଜା । ବିଂ. କିରଣବିଶିଷ୍ଟ, ଆଲୋକଯୁକ୍ତ ।

ଅଂଶୁମାଳୀ, ବି. ପୁଂ. (ଅଂଶୁମାଳା-ଇନ୍) ସୂର୍ଯ୍ୟ । ଯଥା—

> ଦେବାଦ୍ୟ ଗୌରବୀନ ସର୍ବେ କାର୍ଯ୍ୟଶାଳୀ,
> ତେଜସ୍ୱୀ ମଧ୍ୟରେ ଯେସନେ ଦେବ ଅଂଶୁମାଳୀ ॥
>
> କ. ବି.

ଅଂଶୁଳ, ବି. ପୁଂ. (ଅଂଶୁ-ଳ) ଚାଣକ୍ୟ ମୁନି । ବିଂ. କିରଣବିଶିଷ୍ଟ; ସୁନ୍ଦର ।

ଅଂସ, ବି. ପୁଂ. (ଅମ୍-ସ) ବିଭାଗ; ସ୍କନ୍ଧ, କାନ୍ଧ । ଯଥା—

> କେଶବ ଅଂସରେ ବସି ମାନସରେ ବସନ୍ତେ ବିରଜ-ରମଣୀ । ଉ. କ.

ଅଂସଳ, ବିଂ. (ଅଂସ-ଳ) ବଳବାନ୍ ।

ଅଂସକୂଟ, ବି. ପୁଂ. (ଅଂସ-କୂଟ) କକୁଦ୍, ଷଣ୍ଢର ଚୂଳ ।

ଅଂହଃ, ବି. ନ. (ଅନ୍ହ-ଅସ୍) ପାପ, କଳୁଷ, ଦୁଷ୍କୃତ ।

ଅଂହତି, ବି. ସ୍ତ୍ରୀ. (ଅନ୍ହ-ତି) ରୋଗ ।

ଅଂହ୍ରି, ବି. ପୁଂ. (ଅନ୍ହ-ର-ଇ) ଚତୁର୍ଥାଂଶ; ବୃକ୍ଷମୂଳ; ଚରଣ, ପାଦ । ଯଥା—

> ଶମନଭଗିନୀର ନୀରଜାଂହ୍ରି ନୂପୁର ପର ପୂରିତ ମନୋରଥ ରଥାଙ୍ଗଗିର, ଶଶିକର ଶୀକରନିକର ଅସ୍ଥିରତ ଦିନ ଚୂଳରୁ ମାତ୍ର ରହିଁଲା । ଶ୍ରୀହରି ଶବଦ ପାଇଲା । ରତ୍ନାକର ଚମ୍ପୂ ।

ଅଂହ୍ରିପ, ବି. ପୁଂ. (ଅଂହ୍ରି-ପା-ଅ) ବୃକ୍ଷ ।

ଅଂହ୍ରିସ୍କନ୍ଧ, ବି. ପୁଂ. (ଅଂହ୍ରି-ସ୍କନ୍ଧ) ଗୁଲ୍ଫ, ଗୋଇଠି ।

ଅଇଁଠା, (ଉଚ୍ଛିଷ୍ଟଶବ୍ଦଜ) ଭୋଜନାବଶିଷ୍ଟ ପଦାର୍ଥ ।

ଅକ, ବି. ନ. (ଅ-କ) ପାପ; ଦୁଃଖ; ବନ୍ଧନ ।

ଅକଚ, ବି. ପୁଂ. (ଅ-କଚ) କେତୁଗ୍ରହ । ବିଂ. କେଶରହିତ, ଲଣ୍ଡା, ଚନ୍ଦାମୁଣ୍ଡିଆ

ଅକଟା, ବିଂ. (କଟଧାତୁଜ) ଯାହା କଟା ହୋଇ ନାହିଁ ।

ଅକଣ୍ଟକ, ବିଂ. (ଅ-କଣ୍ଟକ) ନିର୍ବିଘ୍ନ, ନିରୁପଦ୍ରବ, ନିଷ୍କଣ୍ଟକ, ବାଧାଶୂନ୍ୟ ।

ଅକତିଆର, ବି. (ଯାବନିକ) ଅଧିକାର; କ୍ଷମତା ।

ଅକଥା, ବି. ସ୍ତ୍ରୀ. (ଅ-କଥା) କୁକଥା, ମନ୍ଦକଥା, ଅପଭାଷା ।

ଅକଥ୍ୟ, ବିଂ. (ଅ-କଥ-ଯ) ଅବକ୍ତବ୍ୟ, ଯାହା କହିବା ଉଚିତ ନୁହେ ।

ଅକଥନୀୟ, ବିଂ. (ଅ-କଥ-ଅନୀୟ) ଅକଥ୍ୟ, ଯାହା କହା ଯାଇ ନ ପାରେ ।

ଅକଥିତ, ବିଂ. (ଅ-କଥିତ) ଅପ୍ରଚରିତ, ଅପ୍ରକାଶିତ ।

ଅକପଟ, ବିଂ. (ଅ-କପଟ) ଚାତୁର୍ଯ୍ୟହୀନ, ସରଳ, ଉଦାର ।

ଅକମ୍ପ, ବିଂ. (ଅ-କମ୍ପ) କମ୍ପଶୂନ୍ୟ, ସ୍ଥିର ।

ଅକରକରା, ବି. (ଦେଶଜ) ଗୁଲ୍ମଜାତୀୟ ବୃକ୍ଷ-ବିଶେଷ, ଫଳବିଶେଷ ।

ଅକରଣି, ବି. ପୁଂ. (ଅ-କୃ-ଅନ) ଅଭିସମ୍ପାତ, ଶାପ; ଆକ୍ରୋଶ ।

ଅକରଣୀ, ବିଂ. (ଅ-କରଣୀ) ଯେଉଁ ରାଶିର ମୂଳ ଆକର୍ଷଣ କଲେ ଅବଶିଷ୍ଟ କିଛି ରହେ ନାହିଁ । ବି. ଶାପ; ଆକ୍ରୋଶ ।

ଅକରଣୀୟ, ବିଂ. (ଅ-କରଣୀୟ) ଅକର୍ତ୍ତବ୍ୟ, ଯାହା କରିବା ଉଚିତ ନୁହେ ।

ଅକରାନ୍ତ, ବି. (ଦେଶଜ) ଗୁଲ୍ମବିଶେଷ । ଏହା ଅନେକ ଔଷଧରେ ବ୍ୟବହାର ହୁଏ ।

ଅକରୁଣ, ବିଂ. (ଅ-କରୁଣା-ଅ) ନିଷ୍ଠୁର, ନିର୍ଦ୍ଦୟ ।

ଅକର୍ଣ୍ଣ, ବିଂ. (ଅ-କର୍ଣ୍ଣ) ବଧିର, ଶ୍ରବଣେନ୍ଦ୍ରିୟ-ହୀନ ।

ଅକର୍ତ୍ତନ, ବିଂ. ପୁଂ. (ଅ-କୃତ୍-ଅନ) ବାମନ, ଖର୍ବ । ବିଂ. କର୍ତ୍ତନଶୂନ୍ୟ ।

ଅପବ୍ୟୟ, ବି. ପୁଂ (ଅପ-ବି-ଇ-ଅ) ଅପରିମିତ ବ୍ୟୟ, ବୃଥା ଖରଚ ।

ଅପବ୍ୟୟୀ, ବିଂ. (ଅପବ୍ୟୟିନ୍) ଯେ ବୃଥା ବ୍ୟୟ କରେ, ଅପବ୍ୟୟୀ ।

ଅପଶଦ, ଅପସଦ, ବି. ପୁଂ. (ଅପ-ଶଦ, ସଦ୍-ଅ) ଅଧମ ମନୁଷ୍ୟ, ନୀଚ ଲୋକ ।

ଅପଶ୍ରୟ, ବି. ପୁଂ. (ଅପ-ଶ୍ରି-ଅ) ବଡ଼ତକିଆ, ଯାହା ଉପରେ ପିଠିର ଭାର ଦେଇ ବସିବାକୁ ହୁଏ । ଯଥା—

> ଅପଶ୍ରୟ ଯୋଗାଏ ଦେବ ଲଳନା,
> କେ କନକ ଦଣ୍ଡରେ ଚନ୍ଦ୍ରନା । ର. ବ.

ପ୍ରାନ୍ତର ଗମନ ।

ଅପସର, ବିଂ. (ଅପ-ସୃ-ଇ) ଅପସାରିତ, ବହିର୍ଗତ, ଦୂରୀକୃତ । ଯଥା—

> ଭଜନରେ ନହିଁ ଯିବ ଅପସର । ନ. ବେ.

ଅପସର୍ପ, ବି. ପୁଂ. (ଅପ-ସୃପ୍-ଅ) ଗୁପ୍ତଚର, ଦୂତ ।

ଅପସାରଣ, ବି. ନ. (ଅପ-ସୃ-ଅନ) ଦୂରୀକରିବା ।

ଅପସାରିତ, ବିଂ. (ଅପ-ସୃ-ଇ-ତ) ବହିର୍ଗତ; ପଳାୟିତ; ଚାଳିତ ।

ଅପସୃତ, ବିଂ. (ଅପ-ସୃ-ତ) ଅପଗତ, ଚଳିତ ।

ଅପସ୍ନାନ, ବି. ନ. (ଅପ-ସ୍ନା-ଅନ) କୌଣସି ବ୍ୟକ୍ତି ମରିଗଲେ ତାହା ନିମନ୍ତେ ଯେ ସ୍ନାନ କରାଯାଏ, ମୃତସ୍ନାନ ।

ଅପସ୍ମାର, ବି. ପୁଂ. (ଅପ-ସ୍ମୃ-ଅ) ବାତରୋଗ-ବିଶେଷ, ମୂର୍ଚ୍ଛାରୋଗ, ସ୍ମରଣଶକ୍ତି ନଷ୍ଟକାରକ ରୋଗ ।

ଅପହତ, ବିଂ. (ଅପ-ହତ) ବିନଷ୍ଟ, ମୃତ ।

ଅପହରଣ, ବି. ନ. (ଅପ-ହୃ-ଅନ) ଚୋରି ।

ଅପହର୍ତ୍ତା, ବି. ପୁଂ. (ଅପ-ହୃ-ତୃ) ଚୋର, ତସ୍କର ।

ଅପହାର, ବି. ପୁଂ. (ଅପ-ହୃ-ଅ) କ୍ଷତି, ଅପଚୟ, ଚୋରି କରିବାର ।

ଅପହାରକ, ବି. ପୁଂ. (ଅପ-ହୃ-ଅକ) କ୍ଷତି-କାରକ; ଚୋର ।

ଅପଲାପ, ବି.ପୁଂ. (ଅପ-ଲାପ) ଅସ୍ୱୀକାର, ବୃଥା ଲାପ ।

ଅପହୃତ, ବିଂ. (ଅପ-ହୃ-ତ) ଚୌର୍ଯ୍ୟକୃତ, ପ୍ରତିଗୃହୀତ ।

ଅପହ୍ନବ, ପୁଂ. / ଅପହ୍ନୁତି, ସ୍ତ୍ରୀ. — ବି. (ଅପ-ହ୍ନୁ = ଗୋପନ କରିବାର, ଅ, ତି) ଅପଲାପ, ଅସ୍ୱୀକାର, ଜାଣିକରି ଗୋପନ କରିବାର ।

ଅପା, ବି. ସ୍ତ୍ରୀ. (ଦେଶଜ) ବଡ଼ଭଉଣୀ ବା ପିଉସୀ ।

ଅପାକ, ବି. ପୁଂ. (ଅ-ପଚ୍-ଅ) ଯାହା ପାକ ହୋଇ ଯାଇ ନାହିଁ, ଅପକ୍ୱାବସ୍ଥା ।

ଅପାଙ୍ଗ, ବି. ପୁଂ. (ଅପ-ଅଙ୍ଗ) ଚକ୍ଷୁର ପ୍ରାନ୍ତଭାଗ, ନେତ୍ରପ୍ରାନ୍ତ, ଚକ୍ଷୁର କୋଣ, କଟାକ୍ଷ; ତିଳକ । ବିଂ. ବିକଳାଙ୍ଗ । (ନେତ୍ରପ୍ରାନ୍ତ ଅର୍ଥରେ) । ଯଥା—

> କମଳେ ଭୃଙ୍ଗ ଦେଖିବ ପ୍ରାୟେ,
> କଳାତୋଳା ତଳେ ଅପାଙ୍ଗଯାଏ । ଉ. ଚ.

ଅପାଠୁଆ, ବିଂ. (ପଠନଶବ୍ଦଜ) ମୂର୍ଖ । ଯଥା—

> ତୁମ୍ଭର ଶିକ୍ଷିତ କରିବାକୁ ବାଢ଼
> ଦେଲୁ ଏତେ ଅପାଠୁଆ । ବ. ଉ.

ଅପାତ୍ର, ବି. ନ. (ଅ-ପାତ୍ର) ଅସତ୍ପାତ୍ର, ଅଧମ-ପାତ୍ର ।

ଅପାଦାନ, ବି. ନ. (ଅପ-ଆ-ଦା-ଅନ) କାରକ-ବିଶେଷ, ଯାହାଠାରୁ କୌଣସି ବ୍ୟକ୍ତି ବା ବସ୍ତୁ ଚଳିତ ବା ଗୃହୀତ ଇତ୍ୟାଦି ହୁଏ ।

ଅପାନ, ବି. ପୁଂ. (ଅପ-ଅନ-ଅ) ଶରୀରସ୍ଥ ବାୟୁବିଶେଷ, ଅଧୋବାୟୁ; ମଳଦ୍ୱାର ।

ଅପାମାର୍ଗ, ବି. ପୁଂ. (ଅପ-ଆ-ମୃଜ୍-ଅ) ଔଷଧ-ପ୍ରସିଦ୍ଧ ଗୁଳ୍ମବିଶେଷ ।

ଅପାଂପତି, ବି. ପୁଂ. ବରୁଣ ।

ଅପାୟ, ବି. ପୁଂ. (ଅପ-ଇ-ଅ) ବିନାଶ, କ୍ଷତି ।

ଅପାର, ବିଂ. (ଅ-ପାର) ଅସୀମ ।

ଅପାରଗ, ବିଂ. (ଅ-ପାରଗ) ଅକ୍ଷମ, ଅଯୋଗ୍ୟ, ଅସମର୍ଥ ।

ଅପାର୍ଥ, ବିଂ. ( ଅପ-ଅର୍ଥ ) ନିଷ୍ଫଳ, ବିଫଳ, ବ୍ୟର୍ଥ ।

ଅପି, ଅଂ. ( ଉପସର୍ଗ ) ସମ୍ଭାବନା; ନିଶ୍ଚୟ; ସନ୍ଦେହ; ନିନ୍ଦା; ପ୍ରଶ୍ନ; ଅନୁଜ୍ଞା ।

ଅପିଚ, ଅପିତୁ, ଅଂ. (ଅପି ଚ, ତୁ) ଅଧିକ; ପୁଣି; କିନ୍ତୁ; ଯଦି ।

ଅପିଧାନ, ବି. ନ. (ଅପି-ଧା-ଅନ) ଆଚ୍ଛାଦନ, ଆବରଣ ।

ଅପୁତ୍ର, } ବିଂ. (ଅ-ପୁତ୍ର, ପୁତ୍ରକ) ପୁତ୍ରହୀନ,
ଅପୁତ୍ରକ, } ନିଃସନ୍ତାନ ।

ଅପୂଜ୍ୟ, ବିଂ. (ଅ-ପୂଜ୍ୟ) ପୂଜାହୀନ, ପୂଜା ନ ପାଉଥିବା, ଅପୂଜା । ଯଥା—

ବଡ଼ ବଡ଼ଇଣ ସେତୁବନ୍ଦ ସେ କାମରେ,
ତ୍ରିଦଶ ବର୍ଜିତ ପୂଜଇ ଅପୂଜ୍ୟ ଅମରେ ଯେ । ବୈ. ବି.

ଅପୂପ, ବି. ପୁଂ. (ଅ-ପୂପ) ପିଷ୍ଟକ, ପିଠା ।

ଅପୂର୍ବ, ବିଂ. (ଅ-ପୂର୍ବ) ଆଶ୍ଚର୍ଯ୍ୟଜନକ, ଯାହା ପୂର୍ବରେ ନ ଥିଲା । ବି. ନ. ଅଦୃଷ୍ଟ ପାପ ବା ପୁଣ୍ୟ ।

ଅପେକ୍ଷା, ବି. ସ୍ତ୍ରୀ. ( ଅପ-ଈକ୍ଷ-ଅ ) ପ୍ରତୀକ୍ଷା, ଅନାଇ ରହିବା ।

ଅପେକ୍ଷାକୃତ, ବିଂ. ( ଅପେକ୍ଷା-କୃ-ତ ) ତୁଳନାରେ ।

ଅପେକ୍ଷିତ, ବିଂ. (ଅପ-ଈକ୍ଷିତ) ଆକାଙ୍କ୍ଷିତ, ବିବେଚିତ ।

ଅପେତ, ବିଂ. (ଅପ-ଇ-ତ) ତ୍ୟକ୍ତ; ଗତ; ସ୍ଥାନାନ୍ତରିତ ।

ଅପେତରାକ୍ଷସୀ, ବି. ସ୍ତ୍ରୀ. (ଅପେତ=ଦୂରୀକୃତ-ରାକ୍ଷସୀ ) ଯାହାଦ୍ୱାରା ଭୂତ ଓ ରାକ୍ଷସାଦି ଦୂରୀଭୂତ ହୁଅନ୍ତି, ତୁଳସୀଗଛ ।

ଅପେୟ, ବିଂ. ( ଅ-ପେୟ ) ଯାହା ପାନ କରିବା ଉଚିତ ନୁହେଁ ।

ଅପୋଗଣ୍ଡ, ବି. ପୁଂ. (ଅ-ପୋଗଣ୍ଡ) ୫ ଠାରୁ ୧୦ ବର୍ଷ ପର୍ଯ୍ୟନ୍ତ ବାଳକମାନଙ୍କୁ ପୋଗଣ୍ଡ ବୋଲାଯାଏ । ଅପୋଗଣ୍ଡ ଯେ ତହିଁରୁ ସାନ ଅର୍ଥାତ୍ ଶିଶୁ । ଯଥା—

ବାଲ୍ୟଂ ତୁ ପଞ୍ଚମବ୍ଦାନ୍ତଂ, ପୌଗଣ୍ଡଂ ଦଶମାବଧି,
କୈଶୋରମାପଞ୍ଚଦଶଂ, ଯୌବନନ୍ତୁ ତତଃପରଂ ।

ଅପୌରୁଷେୟ, ବିଂ. ( ଅ-ପୁରୁଷ-ଏୟ ) ଯାହା ମନୁଷ୍ୟରଚିତ ନୁହେଁ ।

ଅପ୍ପତି, ବି. ପୁଂ. (ଅପ୍-ପତି) ବରୁଣ; ସମୁଦ୍ର ।

ଅପ୍ରକଟ, ବିଂ. (ଅ-ପ୍ରକଟ) ଅପ୍ରକାଶିତ । ଯଥା—

ଯେ ଘଟେ କରଇ କନକ ମନ-କର୍ପୂର-ହାର,
ଅପ୍ରକଟ ହୋଇ ରହିବା-ପାଇଁ କାହିଁ ତା ଗୁଣ । ବ. ଗ.

ଅପ୍ରକାଶ, ବି. ପୁଂ. (ଅ-ପ୍ର-କାଶ୍-ଅ) ଅନୁଦୟ, ଗୋପନ ।

ଅପ୍ରକାଶ୍ୟ, ବିଂ. ( ଅ-ପ୍ରକାଶ୍ୟ ) ପ୍ରକାଶ-ଯୋଗ୍ୟ ନୁହେଁ, ଯାହା ପ୍ରକାଶ କରିବା ଉଚିତ ନୁହେଁ ।

ଅପ୍ରକୃତ, ବିଂ. ( ଅ-ପ୍ରକୃତ ) ପ୍ରକୃତ ନୁହେଁ, କଳ୍ପିତ, ଅଯଥାର୍ଥ ।

ଅପ୍ରତିକାର୍ଯ୍ୟ, ବିଂ. (ଅ-ପ୍ରତି-କୃ-ଯ) ପ୍ରତିକାର-ଶୂନ୍ୟ, ଅନିବାର୍ଯ୍ୟ ।

ଅପ୍ରତିଭ, ବିଂ. ( ଅ-ପ୍ରତି-ଭା-ଅ ) ଅପ୍ରସ୍ତୁତ, ଲଜ୍ଜିତ, ବୁଦ୍ଧିହୀନ ।

ଅପ୍ରତିମ, ବିଂ. (ଅ-ପ୍ରତିମା-ଅ) ଅତୁଳ୍ୟ, ଅନୁପମ ।

ଅପ୍ରତିଷ୍ଠ, ବିଂ. ( ଅ-ପ୍ରତିଷ୍ଠା ) ପ୍ରତିଷ୍ଠାରହିତ, ଯଶୋହୀନ ।

ଅପ୍ରତିହତ, ବିଂ. (ଅ-ପ୍ରତି-ହନ୍-ତ) ଅବାଧିତ, ପ୍ରତିବନ୍ଧକରହିତ ।

ଅପ୍ରତୁଳ, ବି. ପୁଂ. (ଅ-ପ୍ର-ତୁଲ-ଅ) ଅଭାବ, ଅସମ୍ପୂର୍ଣ୍ଣତା । ବିଂ. ଅଳ୍ପ ।

ଅପ୍ରମତ୍ତ, ବିଂ. ( ଅ-ପ୍ର-ମଦ୍-ତ ) ସାବଧାନ, ଅବହିତ ।

ଅପ୍ରତ୍ୟକ୍ଷ, ବିଂ. ( ଅ-ପ୍ରତି-ଅକ୍ଷ ) ଅଜଣା, ଅସାକ୍ଷାତ, ପରୋକ୍ଷ । ଯଥା—

କେଉଁ କଥା ତାକୁ ଥିବା ଅପ୍ରତ୍ୟକ୍ଷ,
କଲେ ଜାଣି ଜାଣି ବିଷବୃକ୍ଷ ଲକ୍ଷ । ର. ଲ.

ଅପ୍ରତ୍ୟୟ, ବି. ପୁଂ. (ଅ-ପ୍ରତ୍ୟୟ) ପ୍ରତ୍ୟୟାଭାବ, ଅବିଶ୍ୱାସ ।

ଅପ୍ରଧାନ, ବିଂ. ( ଅ-ପ୍ରଧାନ ) ଅନୁତ୍କୃଷ୍ଟ, ମୁଖ୍ୟଭିନ୍ନ, ଗୌଣ ।

ଅପ୍ରଧୃଷ୍ୟ, ବିଂ. (ଅ ପ୍ର-ଧୃଷ୍-ଯ) ଅଧୃଷ୍ୟ, ଯାହାକୁ ପରାଜୟ କରି ହୁଏ ନାହିଁ । ଯଥା—

ଭକ୍ତଙ୍କ ମୋର ଅଛନ୍ତି କୃମଣି ସୁରଥକୁଳଜନ
ଅପ୍ରଧୃଷ୍ୟ ରଣେ ଅସ୍ତ୍ରକୁଶଳେ ଅଗାଧବୀର୍ଯ୍ୟରେ ଯମ ।
ସ. ଲେ.

ଅପ୍ରମିତ, ବିଂ. ( ଅ-ପ୍ରମିତ ) ଅପର୍ଯ୍ୟାପ୍ତ, ଅଗଣିତ, ଅସଂଖ୍ୟ ।

ଅପ୍ରମେୟ, ବିଂ. ( ଅ-ପ୍ରମେୟ ) ଅପରିମେୟ, ଯାହାର ପରିମାଣ ନାହିଁ ।

ଅପ୍ରବୀଣ, ବିଂ. (ଅ-ପ୍ରବୀଣ) ଯାହାର ପ୍ରବୀଣତା ଜନ୍ମି ନାହିଁ, ଅନାଗତ ।

ଅପ୍ରଶସ୍ତ, ବିଂ. (ଅ-ପ୍ରଶସ୍ତ) ଅପକୃଷ୍ଟ, ମନ୍ଦ, ନିନ୍ଦିତ; ଅଶୁଭ ।

ଅପ୍ରସନ୍ନ, ବିଂ. ( ଅ-ପ୍ରସନ୍ନ ) ବିରକ୍ତ, ଅସନ୍ତୁଷ୍ଟ, ମ୍ଳାନ, ଦୁଃଖିତ ।

ଅପ୍ରସ୍ତୁତ, ବିଂ. ( ଅ ପ୍ରସ୍ତୁତ ) ଲଜ୍ଜିତ, ଅପ୍ରତିଭ ।

ଅପ୍ରାକୃତ, ବିଂ. (ଅ-ପ୍ର-ଆ-କୃ-ତ) ଅନୈସର୍ଗିକ, ଅଲୌକିକ, ଅସାମାନ୍ୟ, ଅକୃତ୍ରିମ । ଯଥା—

ଅପ୍ରାକୃତ ପ୍ରେମମୟ ଜଗ୍ ଜୀଆ ତବ,
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କଲ ଅବତରି । ବ. ଚ.

ଅପ୍ରାପ୍ତ, ବିଂ. ( ଅ-ପ୍ରାପ୍ତ ) ଯାହା ମିଳେ ନାହିଁ, ଅଲବ୍ଧ, ଅନଧିଗତ ।

ଅପ୍ରାପ୍ତବୟସ୍କ, ବି. ପୁଂ. ( ଅ-ପ୍ରାପ୍ତ-ବୟଃ-କ ) ବାଳକ । ସ୍ତ୍ରୀ. ସ୍ତ୍ରୀ. ବାଳିକା, ଅଦ୍ୟୁଷ୍ଟରଜା ।

ଅପ୍ରାପ୍ତି, ବି. ସ୍ତ୍ରୀ. (ଅ-ପ୍ରାପ୍ତି) ପ୍ରାପ୍ତିର ଅଭାବ; ଅସଦ୍ଭାବ; ଅସମ୍ଭବ ।

ଅପ୍ରାପ୍ୟ, ବିଂ. (ଅ-ପ୍ର-ଆପ୍-ଯ) ଦୁର୍ଲଭ, ଦୁଷ୍ପ୍ରାପ୍ୟ ।

ଅପ୍ରାମାଣିକ, ବିଂ. (ଅ-ପ୍ରମାଣ-ଇକ) ମିଥ୍ୟା, ଅଳୀକ ।

ଅପ୍ରିୟ, ବିଂ. (ଅ-ପ୍ରିୟ) ଅନଭିମତ । ବି. ନ. ନିନ୍ଦା, ଅନିଷ୍ଟ । ପୁଂ. ଶତ୍ରୁ ।

ଅପ୍ରିୟବାଦୀ, ବିଂ. ( ଅ-ପ୍ରିୟ-ବଦ୍-ଇନ୍ ) କଟୁଭାଷୀ ।

ଅପ୍ରୀତି, ବି. ସ୍ତ୍ରୀ. (ଅ-ପ୍ରୀତି) ଅପ୍ରଣୟ, ବିରୋଧ, ବିବାଦ ।

ଅପ୍ସରା, ବି. ସ୍ତ୍ରୀ. (ଅପ୍=ଜଳ-ସୃ=ଗମନ କରିବା ବା ନିର୍ଗତ ହେବା-ଅସ୍ ) ଯେଉଁମାନେ ସମୁଦ୍ର ମନ୍ଥନ ସମୟରେ ଜଳରୁ ବାହାରି ଥିଲେ ଅଥବା ଯେଉଁମାନେ ବିହାରାଦି କରିବା ନିମିତ୍ତ (ସ୍ୱର୍ଗଗଙ୍ଗାର) ଜଳ ନିକଟକୁ ଗମନ କରନ୍ତି, ସ୍ୱର୍ଗବେଶ୍ୟା, ଉର୍ବଶୀ, ମେନକା ପ୍ରଭୃତି । ଯଥା—

କେ ବୋଲଇ ହୋଇବ ଏ ଅପସରା,
କେଉଁ ସୁଦଶା ନୋହିଲେ ଏତେ ଶୋଭା । ର. ଦ.

ଅଫଳ, ବିଂ. (ଅ-ଫଳ ) ଯେଉଁ ବୃକ୍ଷର ଫଳ ନାହିଁ, ବନ୍ଧ୍ୟ, ନିଷ୍ଫଳ । ବି. ପୁଂ. ଭୁଇଁ-ଅଁଳା ଗଛ, ଘୃତକୁମାରୀ ଗଛ ।

ଅଫେନ, ବି. ନ. (ଅ=ଅଳ୍ପ-ଫେନ=ଫେଣ) ନିର୍ଯାସବିଶେଷ, ଅଫିମ ।

ଅବଧ, ବିଂ. ( ଅବଧ୍ୟର ଅପଭ୍ରଂଶ ) ବଧର ଅଯୋଗ୍ୟ, ଯଥା, ସ୍ତ୍ରୀ ପ୍ରଭୃତି । ଯଥା—

ଏହାର କି ଲବଧ ଅବଧ କରି ବଧ
ବ୍ୟାଧକ୍ କହିବା କି ତୁଚ୍ଛେ ରେ ସହୋଦର । ସ. ବ.

ଅବଧ୍ୟ, ବିଂ. (ଅ-ବିଧ-ଯ) ବଧର ଅଯୋଗ୍ୟ ।

ଅବନ୍ଧ୍ୟ, ବିଂ. (ଅ-ବନ୍ଧ୍ୟ) ସଫଳ, ଫଳବାନ୍ ।

ଅବରଢସ୍ତ୍ରୀ, ବିଂ. (ବ୍ରତଶବ୍ଦଜ) ବ୍ରତ ହୋଇ ନ ଥିବା ବ୍ରାହ୍ମଣସନ୍ତାନ ବା ଧର୍ମ ହୋଇ ନ ଥିବା ଅଣ୍ଡିରା ବାଛୁରି ।

ଅବଳ, ବିଂ. (ଅ-ବଳ) ବଳହୀନ, ଦୁର୍ବଳ ।

ଅବଳା, ବି. ସ୍ତ୍ରୀ. (ଅ-ବଳ-ଆ) ସ୍ତ୍ରୀ, ନାରୀ । ଯଥା—

ଚପଳା ଅବଳା ଜାତି ଅସ୍ଥିର,
କୋମଳାଙ୍ଗୀ ମନ ସୁନ୍ଦର । କ. ବ.

ଅବା, ଅଂ. ଅଥବା, ପୁଣି । ଯଥା—

> କେ ଅବା ଲେଖିବ ଗଗନ ଚାର,
> କେ ଅବା ଗଣିବ ବରଷାଧାର । ର. ଭ.

ଅବାଟ, ଦେ. ଅମଙ୍ଗ ପଥ ।

ଅବାଧ, ବିଂ. (ଅ-ବାଧା) ବାଧାହୀନ ।

ଅବାଧ୍ୟ, ବିଂ. (ଅ-ବାଧ-ଯ) ଅଦମ୍ୟ, ଅବଶୀଭୂତ ।

ଅବଗୁଣ, ଦେ. (ଦେଶଜ) ଅନିଷ୍ଟ, ମନ୍ଦ । ଯଥା—

> କେତେ ମଧୁର ନୂଆ ଗୁଡ଼,
> କଲେ ଅବଗୁଣ ବଡ଼ ।

ଅବୋଧ, ବିଂ. (ଅ-ବୋଧ) ନିର୍ବୋଧ, ଅଜ୍ଞାନ ।

ଅବ୍ଜ, ବି. ପୁଂ. ( ଅପ୍ = ଜଳ-ଜନ୍ = ଜାତ ହେବାର-ଅ) ପଦ୍ମ; ଚନ୍ଦ୍ର; ଶଙ୍ଖ ।

ଅବ୍ଜଜାତ } ବି. ପୁଂ. (ଅବ୍ଜ-ଜନ୍-ତ, ଯୋନି
ଅବ୍ଜଯୋନି } = ଉତ୍ପତ୍ତି ସ୍ଥାନ) ବ୍ରହ୍ମା ।

ଅବ୍ଜବାନ୍ଧବ, ବି. ପୁଂ. ( ଅବ୍ଜ = ପଦ୍ମ-ବାନ୍ଧବ ) ସୂର୍ଯ୍ୟ । ଯଥା—

> ଚବଟେ ଗୃହଂଲେ ପଶ୍ଚିମେ ପ୍ରବ୍ ଅବ୍ଜ-ବାନ୍ଧବ । ବ. ବ.

ଅବ୍ଦ, ବି. ପୁଂ. ( ଅପ୍-ଦା-ଅ ) ଜଳଦ, ମେଘ; ବର୍ଷ, ବତ୍ସର; ପର୍ବତବିଶେଷ; ମୁଥା ।

ଅବ୍ଧି, ବି. ପୁଂ. (ଅପ୍-ଧା-ଇ) ଜଳଧି, ସମୁଦ୍ର ।

ଅବ୍ରାହ୍ମଣ, ବି. ପୁଂ. (ଅ-ବ୍ରାହ୍ମଣ) ଯେ ବ୍ରାହ୍ମଣର କର୍ତ୍ତବ୍ୟକର୍ମ କରେ ନାହିଁ, ନିନ୍ଦିତ ବ୍ରାହ୍ମଣ ।

ଅବ୍ରୁବାଣ, ବିଂ. ( ଅ-ବ୍ରୁବାଣ ) ବାକ୍‌ଶକ୍ତିହୀନ, ଅଳ୍ପବକ୍ତୃତ୍ବ ।

ଅଭକ୍ତି, ବି. ସ୍ତ୍ରୀ. ( ଅ-ଭକ୍ତି ) ଘୃଣା; ଅଶ୍ରଦ୍ଧା; ଅବଜ୍ଞା; ଦ୍ବେଷଜ୍ଞାନ ।

ଅଭକ୍ଷ୍ୟ, ବିଂ. ( ଅ-ଭକ୍ଷ୍-ଯ ) ଯାହା ଖାଇବା ଉଚିତ ନୁହେଁ, ଅଖାଦ୍ୟ, ଅଭୋଜ୍ୟ ।

ଅଭଡ଼ା, ଦେ. ( ଦେଶଜ ) ଅନ୍ନ ମହାପ୍ରସାଦ; ଅବିବାହିତ ପୁରୁଷ ।

ଅଭଦ୍ର, ବିଂ. (ଅ-ଭଦ୍ର) ଯାହାର ଭଦ୍ରତା ନାହିଁ, ନିନ୍ଦିତ, ଗର୍ହିତ ।

ଅଭୟ, ବିଂ. ( ଅ-ଭୀ-ଅ ) ଭୟଶୂନ୍ୟ । ବି. ନ. ବେଣାମୂଳ । ଭୟଶୂନ୍ୟ ଅର୍ଥରେ, ଯଥା—

> କରୁଣାସାଗର ସାଗରଜା-ନାୟକ
> କର ଅଭୟ ଅଭୟବରଦାୟକ । ର. ଭ.

ଅଭୟା, ବି. ସ୍ତ୍ରୀ. (ଅ-ଭୟ-ଆ) ଦୁର୍ଗା; ହରୀତକୀ । ବିଂ. ଭୟଶୂନ୍ୟା ।

ଅଭବ୍ୟ, ବିଂ. (ଅ-ଭବ୍ୟ) ଶଠ; ଅସଭ୍ୟ ।

ଅଭାଗା, ବିଂ. ହତଭାଗ୍ୟ, ଦୁର୍ଭାଗ୍ୟ ।

ଅଭାଗିନୀ, ବିଂ. ହତଭାଗିନୀ । ଯଥା—

> ଅଭାଗିନୀକୁ ଯେ ଭାଗ୍ୟରେ ଦେବତ,
> ଅଛିଲେ ବହୁ ଏହୁ ବନ ଭିତର । ବ. ବ.

ଅଭାଜନ, ବିଂ. ( ଅ-ଭାଜନ ) ଅଯୋଗ୍ୟ, ଅପାତ୍ର; ନିର୍ଗୁଣ । ଯଥା—

> ଅମୂଲ୍ୟ ଜୀବନ ଏ ନର ଜୀବନ ହେଉ କଲେ ବିସର୍ଜନ,
> ସର୍ବଦା ହୃଦୟ ପ୍ରାଣରଙ୍କ ହେବ ! ମୁଁ ତ ଏତେ ଅଭାଜନ ।
> କେଦାରଗୌରୀ ।

ଅଭାବ, ବି. ପୁଂ. ( ଅ-ଭୂ-ଅ ) ନ ଥିବାର, ଅବିଦ୍ୟମାନତା ।

ଅଭାବନୀୟ, ବିଂ. (ଅ-ଭୂ-ଅନୀୟ) ଅଚିନ୍ତନୀୟ ।

ଅଭି, ଅଂ. ( ଉପସର୍ଗ ) ନିକଟ, ସର୍ବତୋଭାବ; ସାଦୃଶ୍ୟ; ବିଦ୍ୟମାନତା; ଆଭିମୁଖ୍ୟ; ବିଶେଷୀକରଣ; ଅଭିଳାଷ ।

ଅଭିକ, ବିଂ. ( ଅଭି-କମ୍-ଅ ) ଯେ ଅଭିଳାଷ କରେ, କାମୁକ, ଲମ୍ପଟ ।

ଅଭିଖ୍ୟା, ବି. ସ୍ତ୍ରୀ. ( ଅଭି-ଖ୍ୟା-ଅ ) ଶୋଭା; ଉପାଧି । ଯଥା—

> ଲଭନ୍ତ ଅଭିଖ୍ୟା ପେନ୍ଥ କାମାନେ ପ୍ରସାଦେ । ଦ. ଯା.

ଅଭିଗମନ, ବି. ନ. ( ଅଭି-ଗମ୍-ଅନ ) ପ୍ରତ୍ୟୁଦ୍ଗମନ; ଆଶ୍ରୟ; ପ୍ରାପ୍ତି ।

ଅଭିଘାତ, ବି. ପୁଂ. ( ଅଭି-ହନ୍-ତ ) ଆଘାତ, ଦଣ୍ଡାଦିଦ୍ୱାରା ପ୍ରହାର, ହତ୍ୟା ।

ଅଭିଚାର, ବି. ପୁଂ. ( ଅଭି-ଚର-ଅ ) ପରହିଂସା କର୍ମ; ମାରଣ, ଉଚ୍ଚାଟନ ପ୍ରଭୃତି ।

ଅଭିଜନ, ବି. ପୁଂ. ( ଅଭି-ଜନ୍-ଅ ) ସଦ୍‌ବଂଶ, ପ୍ରସିଦ୍ଧ ବଂଶ ।

ଅଭିଜାତ, ବି°. (ଅଭି-ଜନ୍-ତ) ସଦ୍ବଂଶଜାତ, କୁଳୀନ ।

ଅଭିଜାତତନ୍ତ୍ର, ବି. ନ. ପ୍ରଧାନ ବ୍ୟକ୍ତିମାନଙ୍କ ହସ୍ତଗତ ରାଜ୍ୟଶାସନ ।

ଅଭିଜିତ୍, ବି. ନ. ( ଅଭି-ଜିତ୍ ) ନକ୍ଷତ୍ର-ବିଶେଷ, ଉତ୍ତରାଷାଢ଼ା ଓ ଶ୍ରବଣାର ମଧ୍ୟବର୍ତ୍ତୀ ନକ୍ଷତ୍ର, ଲଗ୍ନବିଶେଷ ।

ଅଭିଜ୍ଞ, ବି°. (ଅଭି-ଜ୍ଞା-ଅ) ବହୁଦର୍ଶୀ, ଜ୍ଞାନୀ ।

ଅଭିଜ୍ଞତା, ବି. ସ୍ତ୍ରୀ. ( ଅଭିଜ୍ଞ-ତା ) ନିପୁଣତା, ବହୁଦର୍ଶିତା ।

ଅଭିଜ୍ଞା, ବି. ସ୍ତ୍ରୀ. ( ଅଭିଜ୍ଞ-ଅ ) ପ୍ରଥମଜ୍ଞାନ, ଆଦ୍ୟଜ୍ଞାନ ।

ଅଭିଜ୍ଞାନ, ବି. ନ. ( ଅଭି-ଜ୍ଞା-ଅନ ) ଚିହ୍ନ, ସ୍ମାରକ ବସ୍ତୁ, ଯାହା ଦେଖିଲେ ପୂର୍ବର କୌଣସି କଥା ସ୍ମରଣ ହୁଏ ।

ଅଭିଜ୍ଞାନପତ୍ର, ବି. ନ. (ଅଭିଜ୍ଞାନ-ପତ୍ର) ଯେଉଁ ପତ୍ରରୁ କୌଣସି ବ୍ୟକ୍ତିକୁ ବିଶେଷଭାବରେ ଚିହ୍ନାଯାଏ ।

ଅଭିଜ୍ଞାନ ଶକୁନ୍ତଳ, ବି. ନ. ବିଖ୍ୟାତ କବି କାଳି-ଦାସଙ୍କ ବିରଚିତ ନାଟକ ଗ୍ରନ୍ଥବିଶେଷ ।

ଅଭିଦ୍ରୁତ, ବି°. ( ଅଭି-ଦ୍ରୁ-ତ ) ବେଗେ ପଳାୟିତ ।

ଅଭିଧା, ବି. ସ୍ତ୍ରୀ. ( ଅଭି-ଧା-ଅ ) ନାମ, ସଂଜ୍ଞା ।

ଅଭିଧାନ, ବି. ନ. ( ଅଭି-ଧା-ଅନ ) ନାମ; କଥନ; ଶବ୍ଦକୋଷ । ଯଥା—

ବୁଦ୍ଧି ପ୍ରକାଶ ଯାହାର ବାଦ ଅଭିଧାନେ,
ବିଜ୍ଞଜନ ରେଖିତ ଶୁଣ ସାବଧାନେ ହେ । ବୈ. ବି.

ଅଭିଧେୟ, ବି°. (ଅଭି-ଧା-ଯ) ବାଚ୍ୟ, କଥନୀୟ ।

ଅଭିଧ୍ୟାନ, ବି. ନ. ( ଅଭି-ଧ୍ୟୈ-ଅନ ) ପ୍ରଗାଢ଼ ଚିନ୍ତା, ଅଭିନିବେଶପୂର୍ବକ ଚିନ୍ତା ।

ଅଭିନନ୍ଦନ, ବି. ନ. (ଅଭି-ନନ୍ଦ୍-ଅନ) ପ୍ରଶଂସା, ସ୍ତୁତି ।

ଅଭିନୟ, ବି. ପୁଂ. ( ଅଭି-ନୀ-ଅ ) ନାଟକର ପ୍ରଦର୍ଶନ, ଅଙ୍ଗଚାଳନ ଦ୍ୱାରା ମନେ ଭାବ ବ୍ୟକ୍ତ କରିବାର ।

ଅଭିନବ, ବି°. (ଅଭି ନୁ-ଅ) ନୂତନ ।

ଅଭିନିବିଷ୍ଟ, ବି°. ( ଅଭି-ନି-ବିଶ୍-ତ ) ମନୋ-ଯୋଗୀ ।

ଅଭିନିବେଶ, ବି. ପୁଂ. ( ଅଭି-ନି-ବିଶ୍-ଅ ) ମନୋଯୋଗ ।

ଅଭିନୀତ, ବି°. (ଅଭି-ନୀ-ତ) ସଜ୍ଜିତ, ଭୂଷିତ; ଅଭିନୟବିଶିଷ୍ଟ; ବିନୀତ, ସହିଷ୍ଣୁ; ଉପଯୁକ୍ତ ।

ଅଭିନେତା, ବି°. (ଅଭି-ନୀ-ତୃ) ଅଭିନୟକାରୀ, ନାଟ୍ୟକାର, ଅନୁରୂପକାରୀ ।

ଅଭିନ୍ନ, ବି°. ( ଅ-ଭିନ୍ନ ) ଅବିଭକ୍ତ, ସମସ୍ତ, ଅଭଗ୍ନ । ବି. ପୁଂ. ପୂର୍ଣ୍ଣସଂଖ୍ୟା, ଅବିଭକ୍ତରାଶି ।

ଅଭିପ୍ରାୟ, ବି. ପୁଂ. (ଅଭି-ପ୍ର-ଇ-ଅ) ଆଶୟ, ଭାବ, ତାତ୍ପର୍ଯ୍ୟ, ମତ ।

ଅଭିପ୍ରେତ, ବି°. ( ଅଭି-ପ୍ର-ଇ-ତ ) ବାଞ୍ଛିତ, ସମ୍ମତ ।

ଅଭିଭବ, ବି. ପୁଂ. ( ଅଭି-ଭୂ-ଅ ) ପରାଭବ; ହାରିବା; ତିରସ୍କାର, ଅପମାନ, ଅନାଦର ।

ଅଭିଭାବକ, ବି. ପୁଂ. (ଅଭି-ଭୂ-ଅକ) ତିରସ୍କାର-କର୍ତ୍ତା; ରକ୍ଷକ, ଅନୁଗ୍ରହଦାତା ।

ଅଭିଭୂତ, ବି°. ( ଅଭି-ଭୂ-ତ ) ପରାସ୍ତ; ଅବଶ, ଅସ୍ଥିର; ତିରସ୍କୃତ; ଅଜ୍ଞାନ ।

ଅଭିମତ, ବି. ପୁଂ. (ଅଭି-ମନ୍-ତ) ଅଭିପ୍ରାୟ । ବି°. ସମ୍ମତ, ଅନୁମତ, ଇଷ୍ଟ, ପ୍ରିୟ ।

ଅଭିମନ୍ତ୍ରଣ, ବି. ନ. (ଅଭି-ମନ୍ତ୍ର-ଅନ) ଆମନ୍ତ୍ରଣ, ସମ୍ବୋଧନ ।

ଅଭିମନ୍ତ୍ରିତ, ବି°. ( ଅଭି-ମନ୍ତ୍ର-ତ ) ଆହୂତ, ଯାହାକୁ ଆହ୍ୱାନ ଅର୍ଥାତ୍ ଡକା ହୋଇଅଛି, ମନ୍ତ୍ରପୂତ ।

ଅଭିମନ୍ୟୁ, ବି.ପୁଂ.(ଅ-ଭି=ଭୟ-ମନ୍ୟୁ=କ୍ରୋଧ) ଅର୍ଜୁନଙ୍କ ଔରସରେ ସୁଭଦ୍ରାଙ୍କ ଗର୍ଭଜାତ

ସନ୍ତାନ, କୃଷ୍ଣଙ୍କ ଭଣଜା, ପରୀକ୍ଷିତଙ୍କ ପିତା, ଓଡ଼ିଶାର ( ବାଦଦ୍ଭୁଚନ୍ତାମଣି ଗ୍ରନ୍ଥର ପ୍ରଣେତା ) ପ୍ରସିଦ୍ଧ କବି ।

ଅଭିମାନ, ବି. ପୁଂ. ( ଅଭି-ମା-ଅନ ) ପ୍ରତୀତି; ଅହଂକାର, ମନର ଭାବବିଶେଷ, ହିଂସା, ମନରେ ଦୁଃଖ କରିବା ।

ଅଭିମାନୀ, ବିଂ. ( ଅଭି-ମାନ-ଇନ୍ ) ଅହଂକୃତ, ଅଭିମାନଯୁକ୍ତ ।

ଅଭିମୁଖ, ବି. ନ. (ଅଭି-ମୁଖ) ସମ୍ମୁଖ, ସମକ୍ଷ ।

ଅଭିମୃଷ୍ଟ, ବିଂ. ( ଅଭି-ମୃଷ୍ଟ=ମାର୍ଜିତ ) ମିଳିତ; ସମ୍ବଦ୍ଧ; ଘର୍ଷିତ ।

ଅଭିଯାଚିତ, ବିଂ. ( ଅଭି-ଯାଚିତ=ପ୍ରାର୍ଥିତ ) ସମ୍ମୁଖରେ ପ୍ରାର୍ଥିତ ।

ଅଭିଯାତ, ବିଂ. (ଅଭି-ଯା-ତ) ଆକ୍ରାନ୍ତ, ଗତ ।

ଅଭିଯାତି, ବି. ପୁଂ. (ଅଭି-ଯା-ତି) ଶତ୍ରୁ, ବିପକ୍ଷ ।

ଅଭିଯାନ, ବି. ନ. (ଅଭି-ଯା-ଅନ) ଅଭିଗମନ, ଆକ୍ରମଣ, ଯୁଦ୍ଧଯାତ୍ରା ।

ଅଭିଯୁକ୍ତ, ବିଂ. ( ଅଭି-ଯୁଜ୍-ତ ) ଶତ୍ରୁଦ୍ୱାରା ଅବରୁଦ୍ଧ ; ଆକ୍ରାନ୍ତ, ଯାହା ପ୍ରତି ଅଭିଯୋଗ କରାଯାଏ, ଅପରାଧୀ, ପ୍ରତିବାଦୀ ।

ଅଭିଯୋକ୍ତା, ବିଂ. (ଅଭି-ଯୁଜ-ତୃ) ଅଭିଯୋଗକାରୀ, ବାଦୀ ।

ଅଭିଯୋଗ, ବି. ପୁଂ. (ଅଭି-ଯୁଜ୍-ଅ) ନାଲିଶ, ଗୁହାରି; ଉଦ୍‌ଯୋଗ; ଆକ୍ରମଣ, ଯୁଦ୍ଧାର୍ଥ ଆହ୍ୱାନ ।

ଅଭିରତ, ବିଂ. ( ଅଭି-ରତ ) ଅତ୍ୟନ୍ତ ଆସକ୍ତ, ଅନୁରକ୍ତ ।

ଅଭିରାମ, ବିଂ. (ଅଭି-ରମ୍-ଅ) ସୁନ୍ଦର, ମନୋହର, ପ୍ରିୟ, ରମଣୀୟ । ଯଥା—

ବୃନ୍ଦାବନ ପ୍ରାନ୍ତରରେ ଅଭିରାମ,
ମାଧବ-ସନାଥ ମାଧବୀଙ୍କ ଗ୍ରାମ । କ. କେ.

ଅଭିରୁଚି, ବି. ସ୍ତ୍ରୀ. ( ଅଭି-ରୁଚ୍-ଇ ) ସ୍ପୃହା, ଇଚ୍ଛା, ଆକାଂକ୍ଷା, ପ୍ରବୃତ୍ତି ।

ଅଭିରୂପ, ବି. ପୁଂ. (ଅଭି-ରୂପ-ଅ) ଶିବ; ବିଷ୍ଣୁ । ବିଂ. ବିଦ୍ୱାନ୍ ; ମନୋହର ।

ଅଭିଲଷଣୀୟ, ବିଂ. ( ଅଭି-ଲଷ୍-ଅନୀୟ ) ବାଞ୍ଛନୀୟ, ସ୍ପୃହଣୀୟ ।

ଅଭିଲଷିତ, ବିଂ. ( ଅଭି-ଲଷ୍-ତ ) ବାଞ୍ଛିତ, ଇଷ୍ଟ, ଈପ୍ସିତ ।

ଅଭିଳାପ, ବି. ପୁଂ. ( ଅଭି-ଲପ୍-ଅ ) ସଙ୍କଳ୍ପର ଅଙ୍ଗଭୂତ ବାକ୍ୟ, ଶବ୍ଦ ।

ଅଭିଳାଷ, ବି. ପୁଂ. ( ଅଭି-ଲଷ୍-ଅ ) ସ୍ପୃହା, ଅନୁରାଗ ।

ଅଭିବନ୍ଦନ, ବି. ନ. (ଅଭି-ବନ୍ଦ୍-ଅନ) ପ୍ରଣାମ, ନମସ୍କାର ।

ଅଭିବାଦ, ବି. ପୁଂ. ( ଅଭି-ବାଦ ) ଅପବାଦ, ଅଖ୍ୟାତି, ନିନ୍ଦା; ବନ୍ଦନା ।

ଅଭିବାଦନ, ବି. ନ. (ଅଭି-ବଦ-ଇ-ଅନ) ପାଦସ୍ପର୍ଶପୂର୍ବକ ବନ୍ଦନା ବା ନମସ୍କାର ।

ଅଭିବୀକ୍ଷଣ, ବି. ନ. ( ଅଭି-ବୀକ୍ଷଣ ) ସମ୍ୟକ୍ ପ୍ରକାରେ ଅବଲୋକନ ।

ଅଭିଲୁ, ବିଂ. (ଦେଶଜ) ନଷ୍ଟକର୍ମା, ନିର୍ଲଜ୍ଜ ।

ଅଭିବ୍ୟକ୍ତ, ବିଂ. (ଅଭି-ବ୍ୟକ୍ତ=ସ୍ପଷ୍ଟ) ପ୍ରକାଶିତ, ପରିସ୍ଫୁଟ ।

ଅଭିବ୍ୟକ୍ତି, ବି. ସ୍ତ୍ରୀ. ( ଅଭି-ବ୍ୟକ୍ତି=ପ୍ରକାଶ ) ପ୍ରକାଶ, ପ୍ରତ୍ୟକ୍ଷ ।

ଅଭିଶପ୍ତ, ବିଂ. ( ଅଭି-ଶପ୍-ତ ) ଅଭିଶାପଗ୍ରସ୍ତ, ଯାହାକୁ ଅଭିଶାପ ଦିଆ ହୋଇଥାଏ ।

ଅଭିଶାପ, ବି. ପୁଂ. ( ଅଭି-ଶପ୍-ଅ ) ମିଥ୍ୟାଦୋଷାରୋପ, ଶାପଦେବା, ଅଭିସମ୍ପାତ ।

ଅଭିଷକ୍ତ, ବିଂ. ( ଅଭି-ସନ୍‌ଜ୍-ତ ) ପରାଜିତ, ଅଭିଭୂତ, ପିଶାଚଗ୍ରସ୍ତ ।

ଅଭିଷଙ୍ଗ, ବି. ପୁଂ. (ଅଭି-ସନ୍‌ଜ୍-ଅ) ଅଭିଶାପ; ପରାଜୟ; ଅପବାଦ; ଆଲିଙ୍ଗନ; ସମ୍ପର୍କ; ଶୋକ; ଦୁଃଖ; ଶପଥ, ଆକ୍ରୋଶ ।

ଅଭିଷବ, ବି. ପୁଂ. (ଅଭି-ସୁ-ଅ) ଯଜ୍ଞାଦି କର୍ମ ପୂର୍ବରେ ସ୍ନାନ ।

ଅଭିଷିକ୍ତ, ବିଂ. (ଅଭି ସିଚ୍-ତ) ସିକ୍ତ, ବିଧିପୂର୍ବକ ଯଜ୍ଞ ବା ମନ୍ତ୍ରପୂତ ଜଳାଦିଦ୍ୱାରା ସ୍ନାପିତ; କୌଣସି କାର୍ଯ୍ୟରେ ନିଯୁକ୍ତ ।

ଅଭିଷେକ, ବି. ପୁଂ. (ଅଭି-ସିଚ୍-ଅକ) ମନ୍ତ୍ରାଦି ପାଠଦ୍ୱାରା ପୂତଜଳରେ ସ୍ନାନ; ଅଭିଷେଚନ; କର୍ମରେ ନିଯୋଗ । ଯଥା—

ଶୋଚଯୁଗ ସଙ୍ଗେ ଦେହ ପ୍ରଜା ଗଣ,
ପୂତ ଅଭିଷେକେ ଶ୍ରୀ ଭଗବାନ । କ. ବେ.

ଅଭିଷେକକୁମ୍ଭ, ବି. ପୁଂ. (ଅଭିଷେକ-କୁମ୍ଭ) ମନ୍ତ୍ରପୂତ ଜଳପାତ୍ର ।

ଅଭିଷ୍ୟନ୍ଦ, ବି. ପୁଂ. ( ଅଭି ସ୍ୟନ୍ଦ୍=କ୍ଷରିତ ହେବା-ଅ ) କ୍ଷରଣ, କ୍ଷରଣ; ଚକ୍ଷୁରୋଗ-ବିଶେଷ । ବିଂ. ଉଦ୍‌ବୃତ୍ତ, ଅଧିକ ।

ଅଭିସନ୍ଧି, ବି. ପୁଂ. (ଅଭି-ସମ୍-ଧା-ଇ) ଅଭିପ୍ରାୟ, ଉଦ୍ଦେଶ; ପ୍ରବଞ୍ଚନା, ପ୍ରତାରଣା ।

ଅଭିସମ୍ପାତ, ବି. ପୁଂ. ( ଅଭି-ସମ୍ ପତ୍-ଅ ) ଅଭିଶାପ, ଅନିଷ୍ଟ ପ୍ରାର୍ଥନା ।

ଅଭିସାର, ବି. ପୁଂ. (ଅଭି-ସୃ-ଅ) ସଙ୍କେତ ସ୍ଥାନକୁ ଗମନ । ଯଥା—

ଗ୍ରାମ୍ୟ ସୀମନ୍ତିନୀ ନିଶା-ଅଭିସାର
ଉତ୍ପନ୍ନ ବାଇ ବୃଥା ବଳୀ ସାର । କ. ବେ.

ଯୁଦ୍ଧ; ବଳ; ଅନୁଚର ।

ଅଭିସାରିକା, ବି. ସ୍ତ୍ରୀ. ( ଅଭି-ସୃ ଇକ-ଆ ) ନାୟିକାବିଶେଷ; ସଙ୍କେତସ୍ଥାନ-ଗାମିନୀ ।

ଅଭିସାରଣୀ, ବି. ସ୍ତ୍ରୀ, ( ଅଭି-ସୃ-ଇନ୍-ଈ ) ଅଭିସାରିକା ।

ଅଭିହତ, ବିଂ. (ଅଭି-ହନ୍-ତ) ଆହତ; ତାଡିତ; ପରାଜିତ; ନଷ୍ଟ, ଭଗ୍ନ ।

ଅଭିହାର, ବି. ପୁଂ. (ଅଭି-ହୃ-ଅ) ଲୁଣ୍ଠି, ଆକ୍ରମଣ; ବର୍ମ୍ମାଦି ଧାରଣ ।

ଅଭିହିତ, ବିଂ. (ଅଭି-ଧା-ତ) କଥିତ, ଉକ୍ତ ।

ଅଭୀ, ବିଂ. (ଅ-ଭୀ=ଭୟ) ଭୟଶୂନ୍ୟ, ନିର୍ଭୟ ।

ଅଭୀକ, ବିଂ. (ଅ-ଭୀ-କ) କାମୁକ, ଇଚ୍ଛୁକ ।

ଅଭୀପ୍‌ସିତ, ବିଂ. ( ଅଭି-ଆପ୍ [ସନନ୍ତ]-ତ ) ବାଞ୍ଛିତ, ଅଭିଳଷିତ, ଅଭୀଷ୍ଟ ।

ଅଭୀଷ୍ଟ, ବିଂ. ( ଅଭି ଇଷ୍-ତ ) ବାଞ୍ଛିତ, ଅଭିଳଷିତ, ପ୍ରିୟ ।

ଅଭୁକ୍ତ, ବିଂ. ( ଅ-ଭୁଜ୍-ତ ) ଅନାହାରୀ, ଯେ ଖାଇ ନାହିଁ ।

ଅଭୂତପୂର୍ବ, ବିଂ. (ଅ-ଭୂ-ତ-ପୂର୍ବ) ଯାହା ପୂର୍ବରେ ହୋଇ ନାହିଁ, ଆଶ୍ଚର୍ଯ୍ୟଜନକ ।

ଅଭେକା, ବିଂ. (ଦେଶଜ) ଦରିଦ୍ର, ବସ୍ତ୍ରହୀନ, ନିଷ୍କର୍ମା ।

ଅଭେଦ, ବି. ପୁଂ. (ଅ ଭିଦ୍-ଅ) ଭେଦାଭାବ, ଅବିଶେଷ । ବିଂ. ଅଭିନ୍ନ, ଭେଦଶୂନ୍ୟ ।

ଅଭେଦ୍ୟ, ବିଂ. ( ଅ-ଭିଦ୍ ଯ ) ଅଭେଦନୀୟ, ଯାହା ଭେଦ କରାଯାଇ ନ ପାରେ ।

ଅଭ୍ୟଗ୍ର, ବି. ନ. (ଅଭି-ଅଗ୍ର) ସମୀପ, ନିକଟ ।

ଅଭ୍ୟଙ୍ଗ, ବି. ପୁଂ. (ଅଭି-ଅଙ୍ଗ) ତୈଳାଦିଦ୍ୱାରା ଶରୀର ମର୍ଦ୍ଦନ ।

ଅଭ୍ୟନ୍ତର, ବି. ପୁଂ. ( ଅଭି-ଅନ୍ତର ) ମଧ୍ୟ, ଅନ୍ତରାଳ । ବିଂ. ମଧ୍ୟବର୍ତ୍ତୀ ।

ଅଭ୍ୟନ୍ତରୀଣ, ବିଂ. (ଅଭ୍ୟନ୍ତର-ଈନ) ଅନ୍ତର୍ବର୍ତ୍ତୀ, ମଧ୍ୟବର୍ତ୍ତୀ ।

ଅଭ୍ୟର୍ଥନା, ବି. ସ୍ତ୍ରୀ. (ଅଭି-ଅର୍ଥ୍-ଅନ-ଆ) ସମ୍ମାନ, ସମାଦର, ପ୍ରାର୍ଥନା, ସମ୍ବର୍ଦ୍ଧନା ।

ଅଭ୍ୟର୍ଥିତ, ବିଂ. ( ଅଭି-ଅର୍ଥ ତ ) ପ୍ରାର୍ଥିତ, ସମାଦୃତ ।

ଅଭ୍ୟବହାର, ବି. ପୁଂ. (ଅଭି-ଅବ-ହୃ-ଅ) ଭକ୍ଷଣ, ଭୋଜନ, ଆହାର ।

ଅଭ୍ୟବହାର୍ଯ୍ୟ, ବିଂ. ( ଅଭି-ଅବ-ହୃ-ଯ ) ଭକ୍ଷ୍ୟ, ଖାଦ୍ୟ ।

ଅଭ୍ୟସନ, ବି. ନ. (ଅଭି-ଅସ୍-ଅନ) ଆଲୋଚନା, ଅଭ୍ୟାସ ।

ଅଭ୍ୟସ୍ତ, ବିଂ. ( ଅଭି-ଅସ୍-ତ ) ଅଭ୍ୟାସଦ୍ୱାରା ଶିକ୍ଷିତ ।

ଅଭ୍ୟାଖ୍ୟାନ, ବି. ନ. ( ଅଭି-ଆ-ଖ୍ୟା-ଅନ ) ମିଥ୍ୟା ଅଭିଯୋଗ ।

ଅଭ୍ୟାଗତ, ବି. ପୁଂ. (ଅଭି-ଆ-ଗମ୍-ତ) ଅତିଥି, ଆଗନ୍ତୁକ । ବିଂ. ସମ୍ମୁଖାଗତ ।

ଅଭ୍ୟାଗମ, ବି. ପୁଂ. (ଅଭି-ଆ-ଗମ୍-ଅ) ଯୁଦ୍ଧ; ଆଗମନ; ସ୍ୱୀକାର ।

ଅଭ୍ୟାସ, ବି. ପୁଂ. (ଅଭି-ଅସ୍-ଅ) ପୁନଃପୁନ, ଅନୁଶୀଳନ । ବିଂ. ନିକଟ, ସମୀପ ।

ଅଭ୍ୟାହାର, ବି. ପୁଂ. (ଅଭି-ଆ-ହୃ-ଅ) ଲୁଟି, ଡକାୟତି, ଆକ୍ରମଣ ।

ଅଭ୍ୟୁକ୍ଷଣ, ବି. ନ. (ଅଭି-ଉକ୍ଷ୍=ଆର୍ଦ୍ର କରିବା-ଅନ) ଜଳସେଚନ ।

ଅଭ୍ୟୁଚ୍ଚୟ, ବି. ପୁଂ. (ଅଭି-ଉତ୍-ଚି-ଅ) ସମୂହ, ରାଶି ।

ଅଭ୍ୟୁଚ୍ଛ୍ରିତ, ବିଂ. ( ଅଭି-ଉତ୍-ଶ୍ରି-ତ ) ଅତ୍ୟୁନ୍ନତ; ସମର୍ଥ ।

ଅଭ୍ୟୁତ୍ପତନ, ବି. ନ. ( ଅଭି-ଉତ୍-ପତ୍-ଅନ ) ଆକ୍ରମଣ, ଅଭିମୁଖେ ଗମନ ।

ଅଭ୍ୟୁତ୍ଥାନ, ବି. ନ. ( ଅଭି-ଉତ୍-ସ୍ଥା-ଅନ ) ଅଭ୍ୟୁଦୟ, ଉନ୍ନତି; ଉଦ୍ୟମ; ସୁଖ୍ୟାତି ।

ଅଭ୍ୟୁତ୍ଥିତ, ବିଂ. ( ଅଭି-ଉତ୍-ସ୍ଥା-ତ ) ଉଦିତ; ପ୍ରଜ୍ୱଳିତ ।

ଅଭ୍ୟୁଦୟ, ବି. ପୁଂ. ( ଅଭି-ଉତ୍-ଇ-ଅ ) ମଙ୍ଗଳ, ଉନ୍ନତି, ବୃଦ୍ଧି ।

ଅଭ୍ୟୁଦିତ, ବିଂ. (ଅଭି-ଉତ୍-ଇ-ତ) ଉଦିତ, ପ୍ରକାଶିତ ।

ଅଭ୍ୟୁପେତ, ବିଂ. (ଅଭି-ଉପ-ଇ-ତ) ସ୍ୱୀକୃତ, ପ୍ରାପ୍ତ ।

ଅଭ୍ର, ବି. ନ. (ଅପ୍-ଭୃ-ଅ) ମେଘ, ବାଦଲ; ଆକାଶ; ଉପଧାତୁ; ମେଘନାଳ । (ମେଘ ଅର୍ଥରେ) ଯଥା—

> କଅବା ଯେମନ୍ତ ତ୍ରିଦେବ ସୁଜାତ ଗେନ
> ଶୁଭ୍ର ଶରଦଭ୍ରବନ୍ଧେ ଦଶନ ଶୋଭନ । ଉ. ବ.

ଅଭ୍ରଂଲିହ, ବିଂ. (ଅଭ୍ର=ମେଘ ବା ଆକାଶ-ଲିହ =ଆସ୍ୱାଦନ କରିବା) ଅତ୍ୟୁଚ୍ଚ । ବି. ପୁଂ. ବାୟୁ ।

ଅଭ୍ରକ, ବି. ( ଅଭ୍ର-କ ) ଉପଧାତୁବିଶେଷ, ଯଥା—ମେଘନାଳ ।

ଅଭ୍ରଙ୍କଷ, ବି. ପୁଂ. (ଅଭ୍ର-କଷ୍=ଘର୍ଷଣ କରିବା-ଅ) ମେଘ, ବାୟୁ । ବିଂ. ଗଗନସ୍ପର୍ଶୀ ଯଥା—

> ଯଦୁ ଭଟବାଦ-ଧର, କଟେ ସେବତ,
> କଟିବାସ ଅଲଗର୍ବ, ଅଭ୍ରଂକଷ ଶିର । ମହାଗତ୍ରା ।

ଅଭ୍ରପୁଷ୍ପ, ବି. ପୁଂ. (ଅଭ୍ର=ମେଘକାଳରେ-ପୁଷ୍ପ) କଦମ୍ବବୃକ୍ଷ, ବେତସବୃକ୍ଷ । ନ. ଜଳ ।

ଅଭ୍ରମାତଙ୍ଗ, ବି. ପୁଂ. (ଅଭ୍ର=ମେଘ ବା ଇନ୍ଦ୍ର-ମାତଙ୍ଗ) ଇନ୍ଦ୍ରର ହସ୍ତୀ, ଐରାବତ ।

ଅଭ୍ରମୁ, ବି. ସ୍ତ୍ରୀ. (ଅଭ୍ର=ଆକାଶ-ମା=ପରିମାଣ କରିବା-ଉ) ଐରାବତହସ୍ତିର ସ୍ତ୍ରୀ, ପୂର୍ବ-ଦିଗର ହସ୍ତିନୀ । ଯଥା—

> ବାହନ ହେଲେ ଅଭ୍ରମୁ କରଣୀ,
> ବଜନ୍ତୁ କମ୍ବ ରତ୍ନଟିଣ୍ଡ ଅଣି । ବୈ. ବ.

ଅଭ୍ରାନ୍ତ, ବିଂ. (ଅ-ଭ୍ରମ୍-ତ) ଭ୍ରମଶୂନ୍ୟ, ଭ୍ରାନ୍ତି-ରହିତ ।

ଅଭ୍ରୀୟ, ବିଂ. (ଅଭ୍ର-ଇୟ) ମେଘସମ୍ବନ୍ଧୀୟ ।

ଅଭ୍ରୋତ୍ଥ, ବି. ନ. (ଅଭ୍ର-ଉତ୍-ସ୍ଥା-ଅ) ବଜ୍ର ।

ଅମଙ୍ଗଳ, ବିଂ. (ଅ-ମଙ୍ଗଳ) ଅଶୁଭ । ଯଥା—

> କଣ୍ଟିକ ବୋଇଲେ ଗ୍ରହ ମଙ୍ଗଳ ବୋଲଇ,
> ବନାଦାକେ ଶାନ୍ତ ବୋହେ ଅମଙ୍ଗଳଦାୟୀ ସେ । ବୈ. ବ.

ଅମତ୍ସର, ବିଂ. (ଅ-ମତ୍ସର ) ଯାହାର ଈର୍ଷ୍ୟା ନ ଥାଏ, ଯେ ପର ଶ୍ରୀ ଦେଖି କାତର ହୁଏ ନାହିଁ ।

ଅମତି, ବି. ପୁଂ. (ଅ-ମନ୍-ତି) ମୃତ୍ୟୁ; କାଳ; ରୋଗ । ନ. ଅପକ୍ୱଦ୍ରବ୍ୟ । ବିଂ. ଅପକ୍ୱତ ।

ଅମତ୍ର, ବି. ନ. (ଅମ୍-ଅତ୍ର) ଭୋଜନପାତ୍ର; ଜଳପାତ୍ର ।

ଅମନୁଷ୍ୟତ୍ୱ, ବି. ନ. (ଅ-ମନୁଷ୍ୟତ୍ୱ) ମନୁଷ୍ୟତ୍ୱର ଅଭାବ ।

ଅମନୋଯୋଗୀ, ବିଂ. ( ଅ-ମନୋଯୋଗୀ ) ମନୋଯୋଗୀ ନୁହେ, ଯାହାର ମନୋଯୋଗ ନାହିଁ ।

ଅମନ୍ତ୍ର, ବିଂ. (ଅ-ମନ୍ତ୍ର) ମନ୍ତ୍ରଶୂନ୍ୟ । ଦ୍ରା. ସ୍ତ୍ରୀ. ଗୃହ ଗ୍ରାସପ୍ରମାଣ ଭିକ୍ଷାନ୍ନ ।

ଅମର, ବ. ପୁଂ. (ଅ-ମୃ-ଅ) ଦେବତା । ଯଥା—

ବର ବରଣ ସେହୁ ଦନ୍ତୁ ଶେ ଛାମରେ,
ଭୁବନବନ୍ଦିତ ପୂଜନ ଅପୂର୍ବ ଅମରେ ସେ । ବୈ. ବ.

ଅମରଗୁରୁ, ବ. ପୁଂ. ବୃହସ୍ପତି ।

ଅମରତ୍ୱ, ଅମରତା, ବ. ପୁଂ. ସ୍ତ୍ରୀ. (ଅମର-ତ୍ୱ, ତା) ଦେବଧର୍ମ, ମୃତ୍ୟୁଜୟ; ଚିରସ୍ମରଣୀୟତା ଯଥା—

ମର ଅମରତା ଲଭ ମସ୍ତକ । ଛ. ବ.

ଅମରଦାରୁ, ବ. ପୁଂ. (ଅମର-ଦାରୁ) ଦେବଦାରୁ ବୃକ୍ଷ ।

ଅମରଦୃଷ୍ଟି, ବ. ସ୍ତ୍ରୀ. (ଅମର-ଦୃଷ୍ଟି) ପଲକଶୂନ୍ୟ ଦୃଷ୍ଟି, ଅନିମେଷ ଦୃଷ୍ଟି ।

ଅମରଧୁନୀ, ବ. ସ୍ତ୍ରୀ. (ଅମର-ଧୁନୀ=ନଦୀ) ଦେବନଦୀ, ଗଙ୍ଗା । ଯଥା—

ମେରୁ ଗିରିତଟେ ଅମରଧୁନୀ ଯଥା ଶୋଭିତ,
ଶୁଭ୍ର ଉପବୀତ ଯେସନ ସ୍କନ୍ଧଦେଶେ ଲମ୍ବିତ । ଚ. ଚୂ.

ଅମରପୁଷ୍ପକ, ବ. ପୁଂ. (ଅମର-ପୁଷ୍ପକ) କଳ୍ପବୃକ୍ଷ, କାଶତୃଣ ।

ଅମରା, ବ. ସ୍ତ୍ରୀ. (ଅମର-ଆ) ଇନ୍ଦ୍ରଙ୍କ ପୁରୀ; ଦୂର୍ବା; ଗୁଳୁଚି; ଘୃତକୁମାରୀ; ଜରାୟୁ ।

ଅମରାଳୟ, ବ. ପୁଂ. (ଅମର-ଆଳୟ) ସ୍ୱର୍ଗ ।

ଅମରାଦ୍ରି, ବ. ପୁଂ. (ଅମର-ଅଦ୍ରି) ସୁମେରୁ-ପର୍ବତ ।

ଅମରାବତୀ, ବ. ସ୍ତ୍ରୀ. (ଅମର-ବତ୍-ଈ) ଇନ୍ଦ୍ର-ନଗରୀ ।

ଅମରୀ, ବ. ସ୍ତ୍ରୀ. (ଅମର-ଈ) ଦେବସ୍ତ୍ରୀ । ଯଥା—

ନବ ହେମଦ୍ୟୁତି ଅମରୀ ନତ ନଅଲ୍ପ ଫୁଲ୍ଲ ଏ ବନ୍ଦୁ,
ନେତ୍ରପଥେ ପଡ଼ିଗଲେ ନକ ଛଡ଼ ଘଡ଼ି ନାହିଁ ମନ୍ଦୁ ।
ଲ. ଟ.

ଅମରେଶ, ବ. ପୁଂ. (ଅମର-ଈଶ) ଦେବରାଜ, ଇନ୍ଦ୍ର ।

ଅମର୍ତ୍ତ୍ୟ, ବ. ପୁଂ. (ଅ-ମର୍ତ୍ତ୍ୟ=ମରଣଯୋଗ୍ୟ) ଦେବତା, ଅମର । ଯଥା—

ମାନ ବ୍ୟୋମେ ଉଠି ତନ୍ଦ୍ରସ ପାଦାର ଅମର୍ତ୍ତ୍ୟ ମର୍ତ୍ତ୍ୟସଙ୍ଗୀତ ।
ପ. ଛ.

ଅମର୍ଯ୍ୟାଦା, ବ. ସ୍ତ୍ରୀ. (ଅ-ମର୍ଯ୍ୟାଦା) ଅନାଦର, ଅପମାନ, ଅସମ୍ମାନ, ଅବମାନନା ।

ଅମର୍ଷ, ଅମର୍ଷ, ବ. ପୁଂ. (ଅ-ମୃଷ୍=କ୍ଷମା କରିବା-ଅ) କ୍ରୋଧ, ଅକ୍ଷମା ।

ଅମର୍ଷଣ, ବ. ନ. (ଅ-ମୃଷ୍-ଅନ) କ୍ରୋଧ । ବିଂ. କ୍ରୁଦ୍ଧ, କ୍ରୋଧୀ ।

ଅମଳ, ବିଂ. (ଅ-ମଳ=ଆବିଳ) ନିର୍ମଳ, ପରିଷ୍କୃତ, ଶୁଭ୍ର । ଯଥା—

ଅମଳ ରଜତ ଲୁଣ୍ଠିତ ଶୋଭେ ଶ୍ୟାମଳ କେଶେ । ଚ, ଚୂ.

ବ. ନ. ଅଭ୍ରକଧାତୁ ।

ବ. (ଦେଶଜ) ମାଦକ ଦ୍ରବ୍ୟ । ଯଥା—

ଖାଇ ଦେଇ କି ଅମଳ ଟେରେପା ହୋଇଲୁ ରେ । ଦ. ତ.

(ଯାବନିକ) ଅଧିକାର ସମୟ, ଯଥା—
ଇଂରାଜଙ୍କ ଅମଳରେ ଶିକ୍ଷାର ଉନ୍ନତି ହେଲା ।

ଅମଳା, ବ. ସ୍ତ୍ରୀ. (ଅ-ମଳ-ଆ) ଭୂଇଁଅଁଳା; ଲକ୍ଷ୍ମୀ ।

ଅମା, ବିଂ. (ଅ-ମା=ପରିମାଣ କରିବା-୦) ସହିତ; ନିକଟ । ବ. ସ୍ତ୍ରୀ. ଅମାବାସ୍ୟା, ଚନ୍ଦ୍ରର କଳା-ବିଶେଷ ।

ଅମାତ୍ୟ, ବ. ପୁଂ. (ଅମା=ସହିତ-ଅତ୍=ସତତ ଗମନ କରିବା-ଯ) ଯେ ରାଜାଙ୍କ ସହିତ ସର୍ବଦା ଗମନ କରନ୍ତି ଅର୍ଥାତ୍ ରାଜକାର୍ଯ୍ୟରେ ସାହାଯ୍ୟ କରନ୍ତି, ମନ୍ତ୍ରୀ; ସହଚର ।

ଅମାନୁଷ, ବିଂ. (ଅ-ମାନୁଷ) ମନୁଷ୍ୟାଗତ, ଅଲୌକିକ । ଯଥା—

ଦେଖିବାର ଥାଇ ଚେଟିକି, ଏହା କି
ଶୁଣିଥିଲୁଁ କର୍ଣ୍ଣେ କେବେ ।
ଦେ କହିବ ଏହି ଅମାନୁଷୀ କଥା
କେମନ୍ତେ ସହିଲେ ଦେବେ । ପାର୍ବତୀ.

ଅମାପ, ବିଂ. (ପ୍ରା; ଅ-ମାପ=ପରିମାଣ) ଅଧିକ, ଅପରିମିତ । ଯଥା—

ମହୀ-ମହୀଶଙ୍କ ତାପ ଅମାପ ହେଲା । ବ, ଚ.

ଅମାବସୀ, ଅମାବାସ୍ୟା, ଅମାବସ୍ୟା । ବ. ସ୍ତ୍ରୀ.

(ଅମା=ସହିତ-ବସ୍=ବାସ କରିବା-ଯ) ଯେଉଁ ତିଥିରେ ଚନ୍ଦ୍ର, ସୂର୍ଯ୍ୟର ସହିତ ଏକ ରାଶିରେ ବାସ କରନ୍ତି, କୃଷ୍ଣପକ୍ଷର ଶେଷ ତିଥି, ଉଆଁସ।

ଅମାନାମ ରବେରଂଶୁ ସ୍ୱଦ୍‌ଲେକେ ପ୍ରତିଷ୍ଠିତଃ।

(ଅମା=ସୂର୍ଯ୍ୟ କିରଣ) ଏହି ଅର୍ଥରେ ଉକ୍ତ ଉଦାହରଣ ଦିଆ ଯାଇଅଛି।

ଅମାମସୀ, ବି. ସ୍ତ୍ରୀ. (ଅମା-ମସୀ=କାଳି) ସୂର୍ଯ୍ୟ କିରଣ ଯେ ତିଥିରେ ଚନ୍ଦ୍ରଙ୍କର ମସୀସ୍ୱରୂପ ଅର୍ଥାତ୍ ଅପ୍ରକାଶକ ହୁଏ; କୃଷ୍ଣପକ୍ଷର ଶେଷ ତିଥି, ଉଆଁସ।

ଅମାୟିକ, ବିଂ. (ଅ-ମାୟା-ଇକ) ଅକପଟ, ସରଳ।

ଅମାର, ବି. (ପ୍ରା; ଅ-ମାର୍=ନଷ୍ଟ ହେବାର) ଯହିଁରେ ଶସ୍ୟାଦି ନଷ୍ଟ ହୁଏ ନାହିଁ, ଶସ୍ୟାଗାର, କୋଠି।

ଅମାରି, ଅମସି, ଅମାରୀ, ବି. (ହିନ୍ଦି ଅଂବାରି-ଶବ୍ଦଜ) ହାତୀ ଉପରେ ବସିବାର ଆସନ, ହାଉଦା। ଯଥା—

ପାଲଧକ ବଳେ ହେଲେ କରବର ଅସେହି ଦନ୍ତୀ,
କୁମାରଙ୍କ ସଙ୍ଗେ ଅମାରିରେ କେତେ ବଳେ ବୁଲନ୍ତି। ଋଷା.

ଅମାଲୁ, ବି. (ଦେଶଜ) ସୁମିଷ୍ଟ ଖାଦ୍ୟଦ୍ରବ୍ୟବିଶେଷ।

ଅମିତ, ବିଂ. (ଅ-ମା-ତ) ଅପରିମିତ, ଯାହାର ପରିମାଣ କରି ଯାଇ ନ ପାରେ; ବହୁ; ଗତ।

ଅମିତବିକ୍ରମ, ବିଂ. (ଅମିତ-ବିକ୍ରମ=ବଳ) ଅପରିମିତ ବଳଶାଳୀ। ବି, ପୁଂ. ବିଷ୍ଣୁ।

ଅମିନ, ବି. (ଦେଶଜ) ଭୂମି ପରିମାଣ କରିବା ନିମିତ୍ତ ନିଯୁକ୍ତ କର୍ମଚାରୀ।

ଅମିର, ବି. (ଯାବନିକ) ଧନୀ।

ଅମିଶ୍ର, ବିଂ. (ଅ-ମିଶ୍ର) କେବଳ, ଯାହା ମିଶା ନୁହେ।

ଅମୁକ, ସ. ବ୍ୟକ୍ତି ବା ବସ୍ତୁର ପରିବର୍ତ୍ତରେ ବ୍ୟବହାର ହୁଏ।

ଅମୁଦ୍ର, ବିଂ. (ଅ-ମୁଦ୍ର) ଆମୋଦଶୂନ୍ୟ, (ମୁଦ୍ରିତ-ଶବ୍ଦଜ) ଖୋଲା।

ଅମୂର୍ତ୍ତ, ବିଂ. (ଅ-ମୂର୍ତ୍ତି) ମୂର୍ତ୍ତିଶୂନ୍ୟ। ବି. ପୁଂ. ବାୟୁ, ଆକାଶ।

ଅମୂଳ, ଅମୂଳକ, ବିଂ. (ଅ-ମୂଳ, ଅ-ମୂଳ-କ) ମୂଳହୀନ; ଅପ୍ରାମାଣିକ, ମିଥ୍ୟା।

ଅମୂଲ୍ୟ, ବିଂ. (ଅ-ମୂଲ୍ୟ) ଯାହାର ମୂଲ୍ୟ ନିରୂପଣ କରାଯାଇ ନ ପାରେ ଅଥବା ମୂଲ୍ୟ ଦେଲେ ସୁଦ୍ଧା ଯାହା ମିଳି ନ ପାରେ, ବହୁମୂଲ୍ୟ।

ଅମୃତ, ବି. ପୁଂ. ନ. (ଅ-ମୃ-ତ) ସୁଧା; ଜଳ। ଯଥା—

ବହ ଅନନ୍ଦମନ୍ଦର ବର୍ମ ମନୋରମ
ବାରଧ-ଅମୃତ ମନ୍ଥ୍ ଅମୃତ ଜନମ ଯେ। ବୈ. ବ.

ଘୃତ; ଦୁଗ୍ଧ; ସୁସ୍ୱାଦବସ୍ତୁ; ଧନ ମୁକ୍ତି; ବିଷ; ଯୋଗବିଶେଷ; ଦେବତା; ଧନ୍ୱନ୍ତରି। ବିଂ. ପ୍ରିୟ, ସୁନ୍ଦର, ଅମୃତତୁଲ୍ୟ।

ତା. ସ୍ତ୍ରୀ. ଦୁବ୍ବା; ତୁଳସୀ; ହରିତକୀ; ଅଁଳା; ସୁରା; ସୂର୍ଯ୍ୟଙ୍କର ଜଳବାହୀ ରଶ୍ମି।

ଅମୃତକର, ବି. ପୁଂ. (ଅମୃତ-କର) ଚନ୍ଦ୍ର।

ଅମୃତକୁଣ୍ଡ, ବି. ନ. (ଅମୃତ-କୁଣ୍ଡ) ସୁଧାକଳସ; କଦଳୀ, ଦୁଧ, ଛେନା ପ୍ରଭୃତି ମିଶ୍ରିତ ଖାଦ୍ୟ-ବିଶେଷ।

ଅମୃତଘଷା, ବି. (ଅମୃତ ଓ ଘର୍ଷଣଶବ୍ଦଜ) ସ୍ୱର-ବାଦ୍ୟବିଶେଷ। ଯଥା—

ଧରିଛି ଅମୃତଘଷା ଧନ୍ ବେନ କରେ ଯେ। ଲ. ବ.

ଅମୃତତରଙ୍ଗିଣୀ, ବି. ସ୍ତ୍ରୀ. (ଅମୃତ-ତରଙ୍ଗିଣୀ=ନଦୀ) ଜ୍ୟୋତ୍ସ୍ନା, ଚନ୍ଦ୍ରକିରଣ।

ଅମୃତଦୀଧିତି, ବି. ପୁଂ. (ଅମୃତ-ଦୀଧିତି=କିରଣ) ଚନ୍ଦ୍ର।

ଅମୃତପ୍ରାଶ, ବି. ନ. (ଅମୃତ=ଘୃତ-ପ୍ରାଶ=ଭୋଜନ) କାଶାଦି ରୋଗନାଶକ ଘୃତଘଟିତ ଔଷଧବିଶେଷ।

ଅମୃତଭଲ୍ଲାତକ, ବି. ନ. (ଅମୃତ=ଘୃତ-ଭଲ୍ଲାତକ=ଭଲିଆ) କୁଷ୍ଠାଦି ରୋଗନାଶକ ଔଷଧ, ଭଲ୍ଲାତକସଂଯୁକ୍ତ ଘୃତଘଟିତ ଔଷଧ-ବିଶେଷ।

ଅମୃତଯୋଗ, ବ. ପୁଂ. ବାର ଓ ନକ୍ଷତ୍ରସହିତ ଏବଂ ବାର ଓ ତିଥିସହିତ ଶୁଭଯୋଗ । ଶିବା ଗୌଣ ଯାତ୍ରାନୁସାରେ ମାହେନ୍ଦ୍ର, ବଜ୍ର, ଅମୃତ, ଶୂନ୍ୟ ଗ୍ରହ ଯୋଗ, ଏଥି ମଧ୍ୟରୁ ଅମୃତ ଓ ମାହେନ୍ଦ୍ର ଶୁଭଯୋଗ ଅଟେ ।

ଅମୃତସମ୍ଭବା, ବ. ସ୍ତ୍ରୀ. ( ଅମୃତ-ସମ୍-ଭୂ-ଅ-ଆ ) ଗୁଳୁଚୀ ଲତା ।

ଅମୃତସର, ବ. ପଞ୍ଜାବର ଅନ୍ତର୍ଗତ ଶିଖମାନଙ୍କର ପବିତ୍ର ପ୍ରଧାନ ସ୍ଥାନ ।

ଅମୃତାଂଶୁ, ବ. ପୁଂ. (ଅମୃତ-ଅଂଶୁ = କିରଣ) ଚନ୍ଦ୍ର ।

ଅମୃତାନ୍ଧସ, ବ. ପୁଂ. ( ଅମୃତ-ଅନ୍ଧସ୍ = ଅନ୍ନ, ଅମୃତ ଯାହାଙ୍କର ଖାଦ୍ୟ) ଦେବତା ।

ଅମେଧାଃ, ବିଂ. (ଅ-ମେଧସ୍) ମେଧାହୀନ, ଅବୋଧ, ମୂଢ଼, ମୂର୍ଖ ।

ଅମେଧ୍ୟ, ବିଂ. (ଅ-ମେଧ୍ୟ = ପବିତ୍ର) ଅପବିତ୍ର ।

ଅମେୟ, ବିଂ. ( ଅ-ମା-ଯ ) ଅପରିମେୟ, ଯାହା ପରିମାଣ କରାଯାଇ ନ ପାରେ ।

ଅମେୟାତ୍ମା, ବିଂ. ( ଅମେୟ-ଆତ୍ମା ) ଅମିତାତ୍ମା, ମହାମତିବୁଦ୍ଧି । ବ. ପୁଂ. ବିଷ୍ଣୁ ।

ଅମୋଘ, ବିଂ. ( ଅ-ମୋଘ = ବ୍ୟର୍ଥ ) ନିଶ୍ଚିତ, ଅବ୍ୟର୍ଥ । ଯଥା—

ଚଳଲକ୍ଷରେ ଅମୋଘ ତାଙ୍କର ଥିବ ସନ୍ଧାନ । ଉଷା.

ଅମ୍ବକ, ବ. ନ. ( ଅମ୍ବ = ଗମନ କରିବା-ଅକ ) ଚକ୍ଷୁ, ନେତ୍ର । ଯଥା—

ଧନ୍ୟ ପରସନ୍ନ ଅନନ୍ୟ ଅମ୍ବକ ହରଷ ବଦନ । ପ୍ରେ. ସୁ.

ଅମ୍ବର, ବ. ନ. (ଅମ୍ବ-ଅର) ଆକାଶ, ଗଗନ, ଅନ୍ତରୀକ୍ଷ । ଯଥା—

ଅପସ୍ମୃତି-କାଳେ ଭଗ-ଅପଦେଶେ,
ଅବତୀର୍ଣ୍ଣ ହୋଇ ଅମ୍ବର ଦେଶେ, ଛ. ବ.

ବସ୍ତ୍ର । ଯଥା—

କଳା କଳେବର ଧୂଳିଧୂସର,
କଟିରେ କଟିଣୀ ନାହିଁ ଅମ୍ବର । ର. କ.

ଅମ୍ବରୀଷ, ବ. ପୁଂ. (ଅମ୍ବ-ଅର-ଈଷ) ଭର୍ଜନପାତ୍ର; ଯୁଦ୍ଧ; ଶିବ; ବିଷ୍ଣୁ; ସୂର୍ଯ୍ୟ; ବାଳକ; ସ୍ୱନାମପ୍ରସିଦ୍ଧ ନୃପବିଶେଷ; ନରକବିଶେଷ; ଅନୁତାପ; ଆମ୍ବଡ଼ା ।

ଅମ୍ବଷ୍ଠ, ବ. ପୁଂ. ( ଅମ୍ବା = ମାତା-ସ୍ଥା-ଅ ) ବ୍ରାହ୍ମଣ ଔରସରେ ବୈଶ୍ୟକନ୍ୟା ଗର୍ଭରେ ଜାତ ସଙ୍କୀର୍ଣ୍ଣ ଜାତିବିଶେଷ; ବୈଦ୍ୟ ବା ଚିକିତ୍ସକ ଜାତିବିଶେଷ ।

ଅମ୍ବା, ବ. ସ୍ତ୍ରୀ. (ଅମ୍ବ = ଶବ୍ଦ କରିବା-ଅ) ଯେ ସନ୍ତାନମାନଙ୍କଦ୍ୱାରା ଶବ୍ଦିତ ଅର୍ଥାତ୍ କଥିତ ହୁଅନ୍ତି) ମାତା, ଜନନୀ; ଦୁର୍ଗା; କାଶୀରାଜଦୁହିତା, ଏହି କନ୍ୟା ଶିଖଣ୍ଡିରୂପରେ ଜନ୍ମି ଭୀଷ୍ମଙ୍କ ବଧର କାରଣ ହୋଇଥିଲା ।

ଅମ୍ବାଲା, ବ. ପଞ୍ଜାବର ଅନ୍ତର୍ଗତ ନଗରବିଶେଷ ।

ଅମ୍ବାଲିକା, ବ. ସ୍ତ୍ରୀ. କାଶୀରାଜାର କନିଷ୍ଠ କନ୍ୟା, ଏହାଙ୍କ ଗର୍ଭରେ ବ୍ୟାସଙ୍କ ଔରସରେ ପାଣ୍ଡୁଙ୍କର ଜନ୍ମ ।

ଅମ୍ବିକା, ବ. ସ୍ତ୍ରୀ. ( ଅମ୍ବା-ଇକ-ଆ ) ଦୁର୍ଗା; ଧୃତରାଷ୍ଟ୍ରଙ୍କ ମାତା ।

ଅମ୍ବିକାନାଥ, } ବ. ପୁଂ. (ଅମ୍ବିକା-ନାଥ, ପତି)
ଅମ୍ବିକାପତି, } ଶିବ, ମହାଦେବ ।

ଅମ୍ବିକେୟ, ବ.ପୁଂ. (ଅମ୍ବିକା-ଏୟ, ଅପତ୍ୟାର୍ଥେ) କାର୍ତ୍ତିକେୟ; ଗଣେଶ; ଧୃତରାଷ୍ଟ୍ର ।

ଅମ୍ବୁ, ବ. ନ. (ଅମ୍ବ = ଶବ୍ଦକରିବା-ଉ) ଜଳ ।

ଅମ୍ବୁକଣା, ବ. ସ୍ତ୍ରୀ. ( ଅମ୍ବୁ-କଣା ) ଜଳକଣା, ଶୀକର ।

ଅମ୍ବୁଜ, ବ. ପୁଂ. ( ଅମ୍ବୁ-ଜନ୍-ଅ ) ପଦ୍ମ; ଚନ୍ଦ୍ର; ଶଙ୍ଖ; ବଜ୍ର । ପଦ୍ମ ଅର୍ଥରେ ଯଥା—

ଚକ୍ରବାକପରି ଦେହରବ ବାଳା ଚହିଁ
ଅରୁଣ ଅମ୍ବୁଜ ପରି ନ ପାରେ ବଳାଇ । ଙ୍ଗ. ବ.

ଅମ୍ବୁଜାକ୍ଷ, ବିଂ. ( ଅମ୍ବୁଜ-ଅକ୍ଷ ) ପଦ୍ମପରି ଚକ୍ଷୁ ଯାହାର । ବ. ପୁଂ. କୃଷ୍ଣ ।

ଅମ୍ବୁଦ, ବ.ପୁଂ. (ଅମ୍ବୁ-ଦା-ଅ) ମେଘ, ଜଳଧର । ଯଥା—

ବର୍ଷନ୍ତି ମହାମ୍ଭେ ନହିଁ ଅମ୍ବୁଦେ । ଭୂ. ସ୍ତୁ.

ଅମ୍ବୁଧର, ବ. ପୁଂ. (ଅମ୍ବୁ-ଧୃ-ଅ) ଜଳଧର, ମେଘ ।

ଅମ୍ବୁଧି, ବ. ପୁଂ. (ଅମ୍ବୁ-ଧା-ଇ) ସମୁଦ୍ର ।

ଅମ୍ବୁଧିଦ୍ରବା, ବ. ସ୍ତ୍ରୀ. ଗୃହକନ୍ୟା, ଘୃତକୁମାରୀ ।

ଅମ୍ବୁପତି, ବ. ପୁଂ. (ଅମ୍ବୁ-ପତି) ସମୁଦ୍ର । ଯଥା—

ସାଗର କେଶର ସଙ୍ଗାତ କେଶର
ଗରଜେ ସେବାଳେ ଉଗାର ଅନଳ,
କହେ ବସୁମତୀ କହେ ଅମ୍ବୁପତି
ବୁଡ଼ାଇ ଦଅଇ ସାଗର ତହଳ । ବ. ବ.

ଅମ୍ବୁଭୃତ୍, ବ. ପୁଂ. (ଅମ୍ବୁ-ଭୃ-୦) ସମୁଦ୍ର, ମେଘ ।

ଅମ୍ବୁରାଶି, ବ. ପୁଂ. (ଅମ୍ବୁ-ରାଶି=ସମୂହ) ସମୁଦ୍ର ।

ଅମ୍ବୁରୁହ, ବ. ପୁଂ. (ଅମ୍ବୁ-ରୁହ) ପଦ୍ମ, ଜଳଜ ।

ଅମ୍ବୁବାଚୀ, ବ. ସ୍ତ୍ରୀ. (ଅମ୍ବୁ-ବାଚୀ=ବାଚକ) ବର୍ଷାକାଳବୋଧକ; ମିଥୁନସଂକ୍ରାନ୍ତିର ଅର୍ଦ୍ରାନକ୍ଷତ୍ରର ଭୋଗକାଳ, ରଜସଂକ୍ରାନ୍ତି ।

ଅମ୍ବୁବାହ, ବ. ପୁଂ. (ଅମ୍ବୁ-ବହ୍-ଅ) ମେଘ ।

ଅମ୍ବୁବାହନୀ, ବ. ସ୍ତ୍ରୀ. (ଅମ୍ବୁ-ବହ୍-ଇନ୍-ଈ) କାଷ୍ଠାଦିନିର୍ମିତ ଜଳସେଚନପାତ୍ର, ସେଉଁଅ, ସେଣା ।

ଅମ୍ଭଃ, ବ. ନ. (ଅମ୍ଭସ୍ ଶବ୍ଦ) ଜଳ ।

ଅମ୍ଭୋଜ, ବ. ପୁଂ. ନ. (ଅମ୍ଭଃ-ଜନ୍-ଅ) ପଦ୍ମ; ଚନ୍ଦ୍ର; ସାରସପକ୍ଷୀ ।

ଅମ୍ଭୋଧି, ବ. ପୁଂ. (ଅମ୍ଭଃ-ଧା-ଇ) ସମୁଦ୍ର, ସାଗର ।

ଅମ୍ଭୋରୁହ, ବ. ନ. (ଅମ୍ଭଃ-ରୁହ) ପଦ୍ମ । ଯଥା—

ଅମ୍ଭୋରୁହାସର ନେତ୍ରଚକ୍ଷୁର, ଅମ୍ଭୋଜଧ୍ଵ ବଡ଼ ଦାଉ ।

ଅମ୍ର, ଅମ୍ବ, ବ. ନ. (ଅମ୍=ଜ୍ଞାତ ହେବାର-ର ସୌରଭଦ୍ୱାରା ଯେ ଦୂରରୁ ଜଣା ହୁଏ) ଅମ୍ବ, ସହକାର, ଚୂତ, ରସାଳ ।

ଅମ୍ରାତ, ଅମ୍ଳାତ, ବ. ପୁଂ. ନ. (ଅମ୍ର, ଅମ୍ଳ-ଅତ୍=ପ୍ରାପ୍ତ ବା ବ୍ୟାପ୍ତ-ଅ) ଅମ୍ବ ପରି ଯାହା ସର୍ବଦା ପ୍ରାପ୍ତ ହୁଏ ଅଥବା ଅମ୍ଳରସ ଯାହାର ସର୍ବତ୍ର (ପତ୍ର ପୁଷ୍ପାଦିରେ ବ୍ୟାପ୍ତ) ଅମ୍ବଡ଼ା; ଅମ୍ବଡ଼ା ଗଛ ।

ଅମ୍ଳ, ବ. ପୁଂ. (ଅମ୍=ରୁଗ୍ଣ ହେବାର-ଲ) ଯେ ରୋଗ ଜନ୍ମାଏ, ରସବିଶେଷ; ତେନ୍ତୁଳିଗଛ । ବିଂ. ଅମ୍ଳରସଯୁକ୍ତ, ଅମିଳା ।

ଅମ୍ଳଜାନ, ବର୍ଣ୍ଣହୀନ ଅଦୃଶ୍ୟ ବାଷ୍ପବିଶେଷ ।

ଅମ୍ଳପିତ୍ତ, ବ. ନ. (ଅମ୍ଳ=ଅଜୀର୍ଣ୍ଣ-ପିତ୍ତ) ରୋଗବିଶେଷ, ଅଜୀର୍ଣ୍ଣ ହେତୁରୁ ପିତ୍ତ-ବୃଦ୍ଧି ହୋଇ ଯେଉଁ ରୋଗ ଜାତ ହୁଏ ।

ଅମ୍ଳପୂର, ଅମ୍ଳଫଳ, ଅମ୍ଳବୃକ୍ଷ, ବ. ପୁଂ. ତେନ୍ତୁଳି ଗଛ ।

ଅମ୍ଲାନ, ବିଂ. (ଅ-ମ୍ଳାନ) ସତେଜ, ହୃଷ୍ଟ, ମାଳିନ୍ୟରହିତ ।

ଅୟ, ବ. ପୁଂ. (ଇ-ଅ) ଶୁଭାଦୃଷ୍ଟ, ଶୁଭଦାୟକ ବିଧି ।

ଅୟଜ୍ଞ, ବ. ପୁଂ. (ଅ-ଯଜ୍ଞ) ଯେ ଯଜ୍ଞ କରି ନାହିଁ, ଅନାର୍ଯ୍ୟ, ଅବ୍ରାହ୍ମଣ ।

ଅୟତ, ବିଂ. (ଅ-ଯମ୍-ତ) ଇନ୍ଦ୍ରିୟଦମନରେ ଅଶକ୍ତ, ନିୟମହୀନ ।

ଅୟତ୍ନ, ବ. ପୁଂ. (ଅ-ଯତ୍ନ=ଅଦର) ଅନାଦର, ଅନାସ୍ଥା । ବିଂ. ଯତ୍ନହୀନ ।

ଅୟଥା, ବିଂ. (ଅ-ଯଥା) ଅନୁପଯୁକ୍ତ, ଅଯଥୋଚିତ; ଅମୂଳକ । ଅ. ଅନ୍ୟାୟ୍ୟରୂପେ ।

ଅୟଥାର୍ଥ, ବିଂ. (ଅ-ଯଥାର୍ଥ) ଅସତ୍ୟ, ମିଥ୍ୟା, ଅନୁଚିତ ।

ଅୟନ, ବ. ନ. (ଇ-ଅନ) ପଥ; ଗତି; କର୍କଟ ଓ ମୀନରାଶିର ବ୍ୟବଧାନ; ସ୍ଥାନ; ଜନ୍ମ । (ପଥ ଅର୍ଥରେ) ଯଥା—

ବଚନ ଏବେ ରଚନ, ବନ୍ଧୁଇ ଦୂର ଜୀବନ,
ବନା ଠିଭୁଲା ନୟନ, ବ୍ୟକ୍ତ ଅୟନ ଏ । ବୈ. ବ.

ଅୟନମଣ୍ଡଳ, (Ecliptic) ବ. ନ. ରାଶିଚକ୍ର ଓ ରାଶିଚକ୍ରସ୍ଥ ସୂର୍ଯ୍ୟର ଦୃଶ୍ୟମାନ ଗମନୀୟ ପଥ ।

ଅୟନାନ୍ତବୃତ୍ତ, (Tropics) ବ. ନ. ସୂର୍ଯ୍ୟଙ୍କର ଉତ୍ତର ଦକ୍ଷିଣ ଗତିର ସୀମାନିରୂପକ ରେଖା ।

ଅୟନାଂଶ, ବି. ନ. ସୂର୍ଯ୍ୟଗତିବିଶେଷର ଭାଗ ।

ଅଯବ, ବି. ନ. (ଅ=ସଦୃଶ-ଯବ) ଯବସଦୃଶ କୃଷ୍ଣାଷାଦି ଜାତ କୃମି ; ବିଂ. (ଅ=ନାହିଁ-ଯବ) ଯବହୀନ ; ବି. ପୁଂ. ( ଅ-ଯୁ=ମିଶ୍ରଣ ଅ ) ଅସମୀକ, ଶତ୍ରୁ ।

ଅଯଶଃ, ବି. ନ. (ଅ-ଯଶଃ) ନିନ୍ଦା, ଅଖ୍ୟାତି । ବିଂ. ଲୋକନିନ୍ଦିତ ।

ଅୟସ୍, ବି. ନ. (ଇ-ଅସ୍ ଯାହା ଖଣିରୁ ମିଳେ) ଲୌହ ; ବହ୍ନି, ଅଗ୍ନି ।

ଅୟସ୍କାନ୍ତ, ବି. ପୁଂ. (ଅୟଃ-କାନ୍ତ) ଚୁମ୍ବକପଥର । ଯଥା—

ଲୌହ ଯଥା ଅହୋ ଅୟସ୍କାନ୍ତମଣିଶଳାକାର ଅକର୍ଷଣେ ।
ଯ. ଭେ.

ଅଯାଚିତ ବିଂ. ( ଅ-ଯାଚ୍-ତ ) ଅପ୍ରାର୍ଥିତ, ଅନଭ୍ୟର୍ଥିତ ।

ଅୟି, ଅ. (ଇ-ଇ) କୋମଳ ସମ୍ବୋଧନ । ପ୍ରଶ୍ନ ; ଅନୁନୟ; ଅନୁରାଗ ।

ଅଯୁକ୍, ବିଂ. (ଅ-ଯୁଜ୍-୦) ଅଯୁଗ୍ମ, ବିଯୋଡ଼ ।

ଅଯୁକ୍‌ଛଦ, ଅଯୁଗ୍ମଚ୍ଛଦ, ବି. ପୁଂ. (ଅ-ଯୁକ୍=ଅଯୁକ୍ତ, ଅଯୁଗ୍ମ=ବିଯୋଡ଼-ଛଦ=ପତ୍ର) ଯେଉଁ ଗଛର ପତ୍ର ବିଯୋଡ଼, ଛତିଅନା ଗଛ ।

ଅଯୁକ୍ତ, ବିଂ. (ଅ-ଯୁଜ୍-ତ) ଅନ୍ୟମନସ୍କ; ଅନୁଚିତ, ଅସଂଯୁକ୍ତ, ଯୁକ୍ତିଶୂନ୍ୟ ।

ଅଯୁକ୍ତି, ବି. ସ୍ତ୍ରୀ. (ଅ-ଯୁଜ୍-ତି) ଅମିଳନ; ବିତଣ୍ଡା, ବୃଥାତର୍କ । ବିଂ. ଯୁକ୍ତିଶୂନ୍ୟ ।

ଅଯୁଗ୍ମ, ବିଂ. (ଅ-ଯୁଜ୍-ମ) ବିଯୋଡ଼, ଯଥା—୩, ୫, ୭ ଇତ୍ୟାଦି । ପୃଥକ୍; ସ୍ୱତନ୍ତ୍ର ।

ଅଯୁତ, ବି. ନ. (ଅ-ଯୁତ=ଯୁକ୍ତ, ଗଣିତ) ଦଶସହସ୍ର । ଯଥା—

ଅଯୁତ ପାଦବଯୋଧେ ପଛେ ଧାଇଁ,
ନ ପାରିଲେ ବାଳା ନନ୍ଦକୁ ଫେରାଇ । ବ. ଭେ.

ବିଂ. ଅସଂଯୁକ୍ତ ।

ଅୟେ, ଅ. (ଇ-ଏ) କୋମଳ ସମ୍ବୋଧନ; ସ୍ମରଣ; ଶ୍ରମ; ଭୟ; କ୍ରୋଧ; ସମ୍ଭ୍ରମ ।

ଅଯୋଗ, ବି. ପୁଂ. (ଅ-ଯୁଜ୍-ଅ) ବିଶ୍ଳେଷ, ଅସମ୍ବନ୍ଧ; ଦୁର୍ଯୋଗ ।

ଅୟୋଗବ, ବି. ପୁଂ. (ଅୟଃ-ଗୋ-ଅ) ଶୂଦ୍ରର ଔରସରେ ବୈଶ୍ୟାଜାତ ।

ଅଯୋଗବାହ, ବି. ପୁଂ. (ଅ-ଯୋଗ-ବହ-ଅ) ଅକ୍ଷରସ୍ଥାନ ବ୍ୟତିରେକେ ଯେଉଁ ସବୁ ବର୍ଣ୍ଣ ଉଚ୍ଚାରିତ ହୋଇ ନ ପାରନ୍ତି; ଯେପରି ଅନୁସ୍ୱାର, ଚନ୍ଦ୍ରବିନ୍ଦୁ ଓ ବିସର୍ଗ ।

ଅୟୋଗୁଳ, ଅୟୋଗୋଳକ, ବି. ନ. (ଅୟସ୍=ଲୌହ-ଗୁଳ=ଗୋଲାକାର-ଅ,ଅକ) ଲୌହର ବାଟୁଳି, ଲୌହନିର୍ମିତ ଗୋଲାକାର ପଦାର୍ଥ; ଲୌହଚୂର୍ଣ୍ଣାଦି ନିର୍ମିତ ଔଷଧ ବଟିକା ।

ଅଯୋଗ୍ୟ, ବିଂ. (ଅ-ଯୁଜ୍-ଯ) ଅନୁଚିତ, ଅନୁପଯୁକ୍ତ ।

ଅୟୋଘନ, ବି. ପୁଂ. (ଅୟସ୍=ଲୌହ-ହନ୍=ବଧ ବା ପିଟାଯାଏ-ଅ) ଯାହାଦ୍ୱାରା ଲୌହ ପିଟାଯାଏ, ହାତୁଡ଼ି । ଯଥା—

ସନ୍ତୋଷକୁ ସିନା ହରନ୍ତ ଦାରୁଣ ଅୟୋଘନଘାତ ଦୁଃଖ,
ଅବତଂସ ହେଲେ ଲଭନ୍ତ ସୁଦଶା କପୋଳଚୁମ୍ବନ ସୁଖ ।
ଯ. ଭେ.

ଅଯୋଧ୍ୟା, ବି. ସ୍ତ୍ରୀ. (ଅ-ଯୁଧ୍-ଯ-ଆ) ସୂର୍ଯ୍ୟବଂଶୀୟ ରାଜାଙ୍କର ରାଜଧାନୀ, ଏ ସ୍ଥାନର ଲୋକମାନଙ୍କୁ କେହି ଯୁଦ୍ଧରେ ଜିଣି ପାରି ନ ଥିବାରୁ ଏହାର ନାମ "ଅଯୋଧ୍ୟା" ହୋଇଅଛି; ପଦ୍ମପୁରାଣରେ ଅଯୋଧ୍ୟାକୁ ମୋକ୍ଷଦା ପୁରୀ ବୋଲି ବର୍ଣ୍ଣନା ହୋଇଅଛି । ଯଥା—

ଅଯୋଧ୍ୟା ମଥୁରା ମାୟା କାଶୀ କାଞ୍ଚୀ ଅବନ୍ତିକା ।
ପୁରୀ ଦ୍ୱାରବତୀ ଚୈବ ସପ୍ତୈତା ମୋକ୍ଷଦାୟିକାଃ ।

ଅଯୋନି, ବିଂ. ( ଅ=ନାହିଁ-ଯୋନି=ଜନ୍ମସ୍ଥାନ ଯାହାର ) ଜନ୍ମରହିତ ।

ଅଯୋନିଜ, ବିଂ. ( ଅ-ଯୋନି-ଜନ୍-ଅ ) ଅଗର୍ଭଜାତ । ବି. ପୁଂ. ପରମେଶ୍ୱର; ଜା, ସ୍ତ୍ରୀ. ସୀତା ।

ଅଯୋନିସମ୍ଭବା, ବି. ସ୍ତ୍ରୀ. ( ଅ-ଯୋନି-ସମ୍-ଭୂ-ଅ-ଆ ) ସୀତା ।

ଅୟୋମୟ, ବିଂ. (ଅୟସ୍-ମୟ) ଲୌହନିର୍ମିତ ।

ଅୟୋମଳ, ବ. ନ. (ଅୟସ୍-ମଳ) ଲୁହାର କଳଙ୍କ, ଲୁହାଗୁହ ।

ଅୟୋମୁଖ, ବ. ପୁଂ. (ଅୟମ୍ ମୁଖରେ ଯାହାର) ଲଙ୍ଗଳାଦି; କଠିନ ଥଣ୍ଟଯୁକ୍ତ ପକ୍ଷୀ; ଅସୁରବିଶେଷ; ପର୍ବତବିଶେଷ ।

ଅଯୌକ୍ତିକ, ବି. (ଅ-ଯୌକ୍ତିକ) ଯୁକ୍ତିସିଦ୍ଧ ନୁହେ, ଯୁକ୍ତିବିରୁଦ୍ଧ ।

ଅର, ବ. ନ. (ଋ=ଗମନ କରିବା-ଅ) ଚକ୍ରର ପକ୍ଷ । କ୍ରି. ବି. ଶୀଘ୍ର, ଚଞ୍ଚଳ ।

ଅରକ୍ଷିତ, ବି. (ଅ-ରକ୍ଷିତ) ରକ୍ଷିତ ନୁହେ, ଅପାଳିତ, ଅପ୍ରତିପାଳିତ ।

ଅରଘଟ୍ଟ, ବ. ପୁଂ. (ଅର-ଘଟ୍ଟ=ଚଳିତ ହେବାର) ଘଟାଦି; ଅତି ଗଭୀର କୂପ; ଅଥବା (ଅର=ଶୀଘ୍ର-ଘଟ୍ଟ=ଚଳିତ ହେବାର) ଘଟାଦି ଯାହାଦ୍ୱାରା ଶୀଘ୍ର ଚଳିତ ହୁଏ, ଗଭୀର କୂପରୁ ଜଳ ଉତ୍ତୋଳନ କରିବାକୁ କୂପ ନିକଟରେ ଯେଉଁ କାଷ୍ଠନିର୍ମିତ ଯନ୍ତ୍ର ଥାଏ ।

ଅରଜାଃ, ବ. ସ୍ତ୍ରୀ. (ଅ-ରଜସ୍=ଋତୁ) ଯେ ଋତୁମତୀ ହୋଇ ନାହିଁ । ବି. ରଜୋଗୁଣ କାର୍ଯ୍ୟ ଅର୍ଥାତ୍ କାମକ୍ରୋଧାଦିରହିତ; ରଜୋରହିତ, ଧୂଳିଶୂନ୍ୟ ।

ଅରଟ, ବ. ପୁଂ. (ରଟଧାତୁଜ) ସୂତା କାଟିବାର ଦେଶୀୟ ଯନ୍ତ୍ର । (ଅ-ରଟ୍=ଶବ୍ଦ କରିବା-ଅ) ଗୁପ୍ତମନ୍ତ୍ରଣାଦାତା, ପୃଥୁରାଜାଙ୍କର ମନ୍ତ୍ରୀ ।

ଅରଟୀ, ବ. ବାଦ୍ୟଯନ୍ତ୍ରବିଶେଷ । ଯଥା—

ବହୁଛନ୍ତି ସେ ବଣ ଶଳାକା ଅଟ ଢୋଲ
ଘଣ୍ଟ କାଂସ ଅରଟୀ ରଣପା ସେ ମଣ୍ଡଳ । ଲ. ବ.

ଅରଠି, ବ. (ଦେଶଜ) ବଡ଼ି ନଈରେ ଭସିଯାଉଥିବା କାଷ୍ଠାଦି ଧରିବାର ଦେଶୀୟ ଯନ୍ତ୍ରବିଶେଷ ।

ଅରଣ, ଅରଣା, ବି. (ଅରଣ୍ୟଶବ୍ଦଜ) (ଅ-ରଣ) ରଣଦ୍ୱାରା ଅବଧ୍ୟ; ଜଙ୍ଗଲି । ଏହି ଶବ୍ଦ କେବଳ ମହିଷୀ ସହିତ ବ୍ୟବହାର ହୁଏ । ଯଥା— ଅରଣା ମହିଷୀ ।

ଅରଣି, ଅରଣୀ, ବ. ସ୍ତ୍ରୀ. (ଋ-ଅନି) ଅଗ୍ନ୍ୟୁତ୍ପାଦକ ମନ୍ଥନଦଣ୍ଡ; ପୁଂ. ସୂର୍ଯ୍ୟ; ଅଗ୍ନି; ଚକମକି ପଥର ।

ଅରଣୀସୁତ, ବ. ପୁଂ. (ଅରଣୀ-ସୁତ) ଶୁକଦେବ, ବ୍ୟାସଦେବ ଅଗ୍ନି ଉତ୍ପାଦନ ନିମିତ୍ତ ଅରଣି ଘର୍ଷଣ କରୁଥିବା ସମୟରେ ସ୍ୱର୍ଗବେଶ୍ୟା ଘୃତାଚୀ ରୂପରେ ମୁଗ୍ଧ ହୋଇ ଶୁକ୍ରତ୍ୟାଗ କଲେ, ସେ ଶୁକ୍ର ଅରଣି ଉପରେ ପଡ଼ି ସନ୍ତାନ ହେବାରୁ ସେ ସନ୍ତାନକୁ ଅରଣୀସୁତ କୁହାଯାଏ ।

ଅରଣ୍ୟ, ବ. ନ. (ଋ-ଅନ-ଯ) ବନ, କାନନ ।

ଅରଣ୍ୟଚର, ଅରଣ୍ୟେଚର, ବ. ପୁଂ. (ଅରଣ୍ୟ ବା ଅରଣ୍ୟେ-ଚର୍-ଅ) ବନଚର; ଯଥା— ବ୍ୟାଘ୍ରାଦି ।

ଅରଣ୍ୟଧାନ୍ୟ, ବ. ନ. (ଅରଣ୍ୟ-ଧାନ୍ୟ) ନୀବାର, ବାଳୁଙ୍ଗାଧାନ ।

ଅରଣ୍ୟପର୍ବ, ବ. ନ. (ଅରଣ୍ୟ-ପର୍ବନ୍) ମହାଭାରତରେ ପାଣ୍ଡବଙ୍କର ବନବ୍ୟାପାର ବର୍ଣ୍ଣିତ ଗ୍ରନ୍ଥ ।

ଅରଣ୍ୟମକ୍ଷିକା, ବ. ସ୍ତ୍ରୀ. (ଅରଣ୍ୟ-ମକ୍ଷିକା) ଡାଁଶ ।

ଅରଣ୍ୟବାୟସ, ବ. ପୁଂ. (ଅରଣ୍ୟ-ବାୟସ) ଦ୍ରୋଣକାକ, ଡାମର କୁଆ ।

ଅରଣ୍ୟଶାଳି, ବ. ସ୍ତ୍ରୀ. (ଅରଣ୍ୟ-ଶାଳି) ବନଜାତ ଧାନ୍ୟାଦି ।

ଅରଣ୍ୟାନୀ, ବ. ସ୍ତ୍ରୀ. (ଅରଣ୍ୟ-ଅନ-ଈ) ମହାବନ, ବୃହତ୍ ବନ, ନିବିଡ଼ ବନ ।

ଅରତତ୍ରପ, ବ.ପୁଂ. (ଅ-ରତ=ରମଣ ବିଷୟରେ-ତ୍ରପା=ଲଜ୍ଜା, ରମଣରେ ଯାହାର ଲଜ୍ଜା ନାହିଁ) କୁକ୍କୁର ।

ଅରନ୍ଧନ, ବ. ନ. (ଅ-ରନ୍ଧନ=ପାକ) ରନ୍ଧନାଭାବ; ଭାଦ୍ରବ ଓ ଆଶ୍ୱିନ ମାସର ସଂକ୍ରାନ୍ତି ଦିନ ପାକ କରିବାର ନିଷେଧ ଥିବାରୁ ଏ ଦୁଇ ଦିନକୁ ଅରନ୍ଧନ କୁହାଯାଏ ।

ଅରରୁ, ବ. ପୁଂ. (ଋ+ଅରୁ) ଶତ୍ରୁ ।

ଅରବନ୍ଦ, ବ. ନ. (ଅର=ଶୀଘ୍ର-ବନ୍ଦ=ଲବ୍ଧ ହେବାର; ଭ୍ରମରକର୍ତ୍ତୃକ ଯାହା ଶୀଘ୍ର ଲବ୍ଧ ହୁଏ) ପଦ୍ମ; ନୀଳପଦ୍ମ; ରକ୍ତୋତ୍ପଳ; ପାରଧ-ପକ୍ଷୀ; ତାମ୍ର।

ଅରସିକ, ବଂ. (ଅ-ରସ-ଇକ) ଯେ ରସକୁ ବୁଝେ, ଯାହାର ରସବୋଧ ନାହିଁ।

ଅରାଜକ, ବଂ. (ଅ-ରାଜନ୍-ଅକ) ରାଜଶୂନ୍ୟ, ଯେଉଁ ଦେଶରେ ରାଜା ନାହିଁ।

ଅରାତି, ବ. ପୁଂ. (ଅ-ରା=ଦାନ କରିବା-ତି ଯେ ବିପକ୍ଷକୁ କୁଶଳାଦି ଦିଏ ନାହିଁ) ଅରି, ଶତ୍ରୁ। ଯଥା—

> ଅରାତିର ତେଜ ହର ହେ ନବୀନ
> ଅରାତି ଶୋଣିତେ ହର ଜନକ। ଚ. ଚ.

ଅରାଳ, ବ. ପୁଂ. (ଅର=ଶୀଘ୍ର-ଆ-ଲା=ଗ୍ରହଣ କରିବା-ଅ) ମତ୍ତହସ୍ତୀ; ଝୁଣା। ଲା. ସ୍ତ୍ରୀ. ନମ୍ର-ସ୍ବଭାବାସ୍ତ୍ରୀ; ବେଶ୍ୟା।

ଅରାବଳି, ବ. ସ୍ତ୍ରୀ. (ଋ-ଅ-ଆବଳୀ) ଚକ୍ରର ଅରକାଠ ସବୁ। ଯଥା—

> ନୀଳକାନ୍ତ ବ୍ୟୋମ ଅନ୍ତରାଳେ ଝଳ,
> ବର୍ଣ୍ଣନର ବିଷ ସେହେ ଅରାବଳୀ। ନ. କେ.

ଅରି. ବ. ପୁଂ. (ଋ=ଗମନ କରିବାର-ଇ, ଅନିଷ୍ଟ କରିବା ପାଇଁ ଯେ ଅନ୍ୟ ରାଜ୍ୟକୁ ଗମନ କରେ) ଶତ୍ରୁ। ଯଥା—

> ବହିବ ନାହିଁ ମୁଁ ଅରି ଅପମାନରେ,
> ସେନମାନ ବଂଶକ ନ ତଡ଼ି ରଣରେ ଯେ। ବୈ. ବ.

ଚକ୍ର; ଚକ୍ରବାକପକ୍ଷୀ; ଖଟଖଦିର; କାମ-କ୍ରୋଧାଦି ଛଅ; ଈଶ୍ବର।

ଅରିଧର, ବ. ପୁଂ. (ଅରି=ଚକ୍ର-ଧର= ଯେ ଧରେ) ଚକ୍ରଧର, ବିଷ୍ଣୁ। ଯଥା—

> ଅରି-ଅରିଧର ତୋର ନାଠ ଭୂ-ସେବେ। ବ. ଠ.

ଅରିନ୍ଦମ, ବଂ. (ଅରି-ଦମ-ଅ) ଶତ୍ରୁଦମନକାରୀ। ଯଥା—

> ସ୍ବପଣ ବଳରେ ଜାଣି ଅରିନ୍ଦମବର
> ଲଭେ ଅରିନ୍ଦମ ନାମ ଏ ଭବଭବନେ। କ. ବ.

ଅରିଷ୍ଟ, ବ. ନ. (ଅ-ରିଷ୍ଟ=ମଙ୍ଗଳ ବା ଅମଙ୍ଗଳ) ସୂତିକାଗୃହ; ଘୋଳଦହି; କାକ; ଅସୁର-ବିଶେଷ; ଅଦୃଷ୍ଟ; ମଦ୍ୟ; ଉପଦ୍ରବ; ଔଷଧ-ବିଶେଷ। ପୁଂ. ରସୁଣବୃକ୍ଷ, ନିମ୍ବବୃକ୍ଷ।

ଅରୁଆ, ବଂ. (ଦେଶଜ) ଧାନକୁ ସିଦ୍ଧ ନ କରି ତହିଁରୁ ଯେଉଁ ଚାଉଳ ବାହାର କରାଯାଏ ତାହାକୁ ଅରୁଆ ଚାଉଳ କହି, ଅତପ ତଣ୍ଡୁଳ।

ଅରୁଜ୍, ଅରୁଗ୍ଣ, ବଂ. (ଅ-ରୁଜ୍-ଂ, ତ) ନିରୋଗୀ, ସୁସ୍ଥ।

ଅରୁଚି, ବ. ସ୍ତ୍ରୀ. (ଅ-ରୁଚି) ଆସକ୍ତି ବା ସ୍ପୃହାର ଅଭାବ, ଅଶ୍ରଦ୍ଧା। ବଂ. ଶ୍ରଦ୍ଧାହୀନ, ଅନାସକ୍ତ।

ଅରୁଣ, ବ. ପୁଂ. (ଋ-ଉନ) ସୂର୍ଯ୍ୟ, ସୂର୍ଯ୍ୟସାରଥି, ରକ୍ତିମା, ଈଷତ୍ ରକ୍ତିମା। (ସୂର୍ଯ୍ୟ ଅର୍ଥରେ) ଯଥା—

> କୋମଳ ଚରଣ ନଦର ଅରୁଣ
> କେତେ ଲକ୍ଷଣ ଅଛ ଦେଖ। ଭ. ଦ.

ଅରୁଣାତ୍ମଜ, ବ. ପୁଂ. (ଅରୁଣ-ଆତ୍ମଜ) ଅରୁଣ ପୁଅ, ଜଟାୟୁ ପକ୍ଷୀ।

ଅରୁଣାନୁଜ, ବ. ପୁଂ. (ଅରୁଣ-ଅନୁ=ପଶ୍ଚାତ୍-ଜନ୍-ଅ) ଅରୁଣର ସାନଭାଇ, ଗରୁଡ଼।

ଅରୁଣିମା, ବ. ପୁଂ. (ଅରୁଣ-ଇମନ୍) ରକ୍ତିମା।

ଅରୁଣୋଦୟ, ବ. ପୁଂ. (ଅରୁଣ-ଉଦୟ) ସୂର୍ଯ୍ୟୋ-ଦୟର ପ୍ରାକ୍କାଳ, ପ୍ରତ୍ୟୁଷ।

ଅରୁଣୋପଳ, ବ. ପୁଂ. (ଅରୁଣ-ଉପଳ=ପ୍ରସ୍ତର) ରକ୍ତବର୍ଣ୍ଣମଣି, ପଦ୍ମରାଗମଣି।

ଅରୁନ୍ତୁଦ, ବଂ. (ଅରୁମ୍=ମର୍ମସ୍ଥାନ-ତୁଦ=ବ୍ୟଥା ଦେବାର-ଅ) ମର୍ମପୀଡ଼କ, କ୍ଳେଶକାରକ। ଯଥା—

> ଅରୁନ୍ତୁଦମିବାଲାନମନିର୍ବାଣସ୍ୟ ଦନ୍ତିନଃ। ରଘୁ.

ଅରୁନ୍ଧତୀ, ବ. ସ୍ତ୍ରୀ. (ଅ-ରୁଧ୍-ତ-ଈ) ବଶିଷ୍ଠ ଋଷିଙ୍କ ପତ୍ନୀ; ନକ୍ଷତ୍ରବିଶେଷ।

ଅରୋଗୀ, ବଂ. (ଅରୋଗ-ଇନ୍) ରୋଗହୀନ, ବ୍ୟାଧିହୀନ, ସୁସ୍ଥକାୟ।

ଅରୋଚକ, ବ. ପୁଂ. (ଅ-ରୋଚକ=ରୁଚ-ଅକ)

ରୋଗବିଶେଷ, ଭକ୍ଷ ଦ୍ରବ୍ୟରେ ରୁଚି ନ ହେବା ରୋଗ ।

ଅର୍କ, ବି. ପୁଂ. ( ଅର୍କ=ପୂଜାକରିବା-ଅ, କିମ୍ବା ଅର୍କ=ତାପଦେବା-ଅ ) ସୂର୍ଯ୍ୟ; ଇନ୍ଦ୍ର; ତାମ୍ର; ସ୍ଫଟିକ; ବନ୍ଧୁ; ପଣ୍ଡିତ; ଅର୍କବୃକ୍ଷ; କ୍ୱାଥ; ଜ୍ୟେଷ୍ଠ; ରବିବାର; ଉତ୍ତରଫାଲ୍‌ଗୁନୀ ନକ୍ଷତ୍ର; ଦ୍ୱାଦଶ ସଂଖ୍ୟା ।

ଅର୍କକ୍ଷେତ୍ର, ବି. ନ. (ଅର୍କ=ସୂର୍ଯ୍ୟ-କ୍ଷେତ୍ର = ସ୍ଥାନ) ସିଂହରାଶି; କୋଣାର୍କ ।

ଅର୍କଚନ୍ଦନ, ବି.ନ. (ଅର୍କ-ଚନ୍ଦନ) ରକ୍ତଚନ୍ଦନ ।

ଅର୍କଜ, ଅର୍କତନୟ, ବି. ପୁଂ. (ଅର୍କ-ଜ, ତନୟ) ଯମ; ଶନି; ସୁଗ୍ରୀବ; କର୍ଣ୍ଣ; ଅଶ୍ୱିନୀକୁମାର; ବୈବସ୍ୱତ ଓ ସାବର୍ଣ୍ଣିମନୁ ।

ଅର୍କଜା, ଅର୍କତନୟା, ବି. ସ୍ତ୍ରୀ. ... ଯମୁନା ।

ଅର୍କଦୁଗ୍ଧ, ବି. ନ. ଅର୍କଗଛର ଅଠା ବା ନିର୍ଯ୍ୟାସ ।

ଅର୍କପାଦପ, ବି. ପୁଂ. (ଅର୍କ-ପାଦପ) ସ୍ୱନାମପ୍ରସିଦ୍ଧ ଗୁଳ୍ମବିଶେଷ, ଅରଖଗଛ । ଯଥା—

> ଅର୍କ ପାଦପ ହେଲା ପତ୍ରବହୀନ,
> ସୌରଭ୍ୟ ଗନ୍ଧେ ଯଥା ହୃଅନ୍ତ ମାନ । ଭୂ. ସୁ.

ଅର୍କପ୍ରିୟା, ବି. ସ୍ତ୍ରୀ. ( ଅର୍କ-ପ୍ରିୟା ) ଜବାପୁଷ୍ପ; ଛାୟା । ବିଂ. ପଦ୍ମିନୀ ।

ଅର୍କବନ୍ଧୁ, ବି. ପୁଂ. ( ଅର୍କ-ବନ୍ଧୁ ) ଗୌତମ; ବୁଦ୍ଧ; ପଦ୍ମ ।

ଅର୍କବ୍ରତ, ବି. ପୁଂ. ସୂର୍ଯ୍ୟୋପାସନାର୍ଥ ବ୍ରତବିଶେଷ, ମାଘ ଶୁକ୍ଳ ସପ୍ତମୀରେ କର୍ତ୍ତବ୍ୟ ବ୍ରତବିଶେଷ ।

ଅର୍କୋପଲ, ବି. ପୁଂ. (ଅର୍କ-ଉପଲ) ସୂର୍ଯ୍ୟକାନ୍ତ-ମଣି ।

ଅର୍ଗଳ, ବି. ନ. (ଋଜ୍= ସରଳ-ଅଳ) କବାଟର କିଳଣୀ; ପ୍ରତିବନ୍ଧକ; ସ୍ତୋତ୍ରବିଶେଷ ।

ଅର୍ଘ, ବି. ପୁଂ. (ଅର୍ଘ୍ = ମୂଲ୍ୟ-ଅ) ମୂଲ୍ୟ । ଯଥା—

> ମହାର୍ଘରତ୍ନହାରଧାରିଣୀ ରମଣୀମାନେ ଶେଷ ନିଶ୍ୱାସ ନିକ୍ଷେପ କରୁଥିଲେ । ପ୍ରବନ୍ଧମାଳା.

ଅର୍ଘ, ବି. ପୁଂ. ( ଅର୍ଘ=ପୂଜା-ଅ ) ପୂଜାର ଉପକରଣ, ଦୂବ ଅରୁଆ ଚାଉଳ ପ୍ରଭୃତି ।

ଅର୍ଘ୍ୟ, ବିଂ. (ଅର୍ଘ-ଯ) ପୂଜ୍ୟ, ମାନ୍ୟ । ବି. ନ. ଦୂର୍ବାଘାସ; ବନ୍ୟମଧୁ; ପୂଜାଯୋଗ୍ୟ ଜଳ ।

ଅର୍ଚ୍ଚକ, ବିଂ. (ଅର୍ଚ୍ଚ-ଅକ) ପୂଜକ, ପୂଜାକାରକ ।

ଅର୍ଚ୍ଚନା, ବି. ସ୍ତ୍ରୀ. (ଅର୍ଚ୍ଚ= ପୂଜା-ଅନ-ଆ) ପୂଜା, ବନ୍ଦନା । ଯଥା—

> ଦେବ ଅର୍ଚ୍ଚନା ବାଦ୍ୟ ଏ ଗିରିଗଣ
> କର କାହାର କେବେ ଥରେ ଶ୍ରବଣ । ଚ. ବ.

ଅର୍ଚ୍ଚନୀୟ, ବିଂ. ( ଅର୍ଚ୍ଚ-ଅନୀୟ ) ଅର୍ଚ୍ଚନାଯୋଗ୍ୟ, ପୂଜ୍ୟ, ପୂଜନୀୟ ।

ଅର୍ଚ୍ଚି, ଅର୍ଚ୍ଚିସ୍; ବି. ନ. (ଅର୍ଚ୍ଚ-ଇ, ଇସ୍) ଅଗ୍ନି-ଶିଖା, ଜ୍ୱାଳା, ତେଜଃ, ପ୍ରଭା ।

ଅର୍ଚ୍ଚିତ, ବିଂ. (ଅର୍ଚ୍ଚ-ତ) ପୂଜିତ, ମାନ୍ୟ, ଦୀପ୍ତ ।

ଅର୍ଜନ, ବି. ନ. (ଅର୍ଜ= ଉପାର୍ଜନ କରିବା-ଅନ) ଉପାର୍ଜନ, ରୋଜଗାର । ଯଥା—

> କପଦ କ ଶିରଚ୍ଛେଦ, ବଡ଼ କପଦ କଚ୍ଛେଦ,
> କଣ ପଢିବା ଅର୍ଜନ, ବ୍ୟର୍ଥ ସର୍ଜନ ଏ । ବୈ. ବି.

ଅର୍ଜୁନ, ବି. ପୁଂ. (ଅର୍ଜ-ଉନ) ପାଣ୍ଡୁଙ୍କର ତୃତୀୟ ପୁତ୍ର; କାର୍ତ୍ତବୀର୍ଯ୍ୟ ରାଜା । ନ. ଶ୍ୱେତବର୍ଣ୍ଣ; ମୟୂର; ନେତ୍ରରୋଗବିଶେଷ; ଅର୍ଜୁନବୃକ୍ଷ; କର୍ପୂର; ଚନ୍ଦ୍ରକିରଣ ।

ଅର୍ଜୁନୀ, ବି. ସ୍ତ୍ରୀ. ... କରତୋୟା ନଦୀ; କୁଟ୍ଟନୀ; ଗାଈଗୋରୁ ।

ଅର୍ଣ୍ଣ, ଅର୍ଣ୍ଣସ୍, ବି. ପୁଂ. ( ଋ-ଅ, ଅସ୍ ) ଜଳ । ଯଥା—

> ଅର୍ଣ୍ଣପର୍ଣ୍ଣରେ ସବୁ ଶୀର୍ଣ୍ଣ କଟିକି ବସ୍ତ୍ର । ଗ୍ର. ବ.

ଅର୍ଣ୍ଣବ, ବି.ପୁଂ. (ଅର୍ଣ୍ଣ= ଜଳ-ବ) ସମୁଦ୍ର, ସାଗର ।

ଅର୍ଣ୍ଣବଜ, ବି. ନ. (ଅର୍ଣ୍ଣବ-ଜନ୍-ଅ) ସମୁଦ୍ରଫେଣ, ବିଂ. ଅର୍ଣ୍ଣବଜାତ ।

ଅର୍ଣ୍ଣବତରି, ଅର୍ଣ୍ଣବପୋତ, ବି. ପୁଂ. (ଅର୍ଣ୍ଣବ-ତରି, ପୋତ = ଜାହାଜ)ଜାହାଜ ।

ଅର୍ଣ୍ଣବଯାନ, ବି. ପୁଂ. ନ. ( ଅର୍ଣ୍ଣବ-ଯା-ଅନ ) ଜାହାଜ ।

ଅର୍ଣ୍ଣା, ବି. ସ୍ତ୍ରୀ. (ଅର୍ଣ୍ଣ — ଜଳ-ଆ) ନଦୀ ।

ଅର୍ଣ୍ଣୋଦ୍ଭବ, ବି. ପୁଂ. (ଅର୍ଣ୍ଣସ୍-ଭବ) ଶଙ୍ଖ ।

ଅର୍ତ୍ତନ, ବି. ନ. (ଋତ-ଅନ) ନିନ୍ଦା, ଅପବାଦ ।

ଅର୍ଥ, ବି. ପୁଂ. ( ଋ=ଗମନ କରିବା ବା ପ୍ରାପ୍ତ ହେବା-ଥ ) ଧନ, ପଦାର୍ଥ; ପ୍ରାର୍ଥନା; ଶବ୍ଦର ପ୍ରତିପାଦ୍ୟ, ମାନେ; ପ୍ରୟୋଜନ, ଉଦ୍ଦେଶ୍ୟ; ସମର୍ଥନ । (ଧନ ଅର୍ଥରେ ) ଯଥା—

> ଅର୍ଥମନର୍ଥଂ ଭାବୟ ନିତ୍ୟଂ, ନାସ୍ତି ତତଃ ସୁଖଲେଶଃ ସତ୍ୟଂ ।
> ମୋହମୁଦ୍ଗର ।

ଅର୍ଥକର, ବିଂ. ( ଅର୍ଥ କୃ-ଅ ) ଯହିଁରେ ଧନ ଉପାର୍ଜନ ହୁଏ ।

ଅର୍ଥକରୀ, ବିଂ. ( ଅର୍ଥ କୃ-ଅ-ଈ ) ଯହିଁରେ ଧନ ଉପାର୍ଜନ ହୁଏ ।

ଅର୍ଥକୃଚ୍ଛ୍ର, ବି. ନ. (ଅର୍ଥ-କୃଚ୍ଛ୍ର) ଧନକଷ୍ଟ ।

ଅର୍ଥଗୃଧ୍ନୁ, ବିଂ. ( ଅର୍ଥ-ଗୃଧ୍ନୁ ) ଧନଲୋଭୀ ।

ଅର୍ଥତଃ, ଅଂ. (ଅର୍ଥ-ତସ୍ ) ବସ୍ତୁତଃ, ଫଳତଃ ।

ଅର୍ଥଦ, ବି. ପୁଂ. ( ଅର୍ଥ-ଦା-ଅ ) ଶିଷ୍ୟ, ଛାତ୍ର; କୁବେର ।

ଅର୍ଥପତି, ବି. ପୁଂ. ( ଅର୍ଥ-ପତି ) ଧନାଧିପ, କୁବେର; ଧନୀ, ରାଜା ।

ଅର୍ଥପର, ବିଂ. (ଅର୍ଥ-ପର) ଧନଲୋଭୀ, କୃପଣ, ବ୍ୟୟକୁଣ୍ଠିତ ।

ଅର୍ଥପିଶାଚ, ବିଂ. ( ଅର୍ଥ-ପିଶାଚ ) ଯେ ନ୍ୟାଯ୍ୟାନ୍ୟାଯ୍ୟ ଧର୍ମାଧର୍ମ ବିଚାରବିମୁଖ ହୋଇ ଧନ ଅର୍ଜନ କରେ, ଅତ୍ୟନ୍ତ ଲୋଭୀ ।

ଅର୍ଥବିତ୍ , ବିଂ. ( ଅର୍ଥ-ବିଦ୍ ) ଅର୍ଥଜ୍ଞ, ମେଧାବୀ, ତୀକ୍ଷ୍ଣବୁଦ୍ଧି ।

ଅର୍ଥପ୍ରୟୋଗ, ବି. ପୁଂ. (ଅର୍ଥ-ପ୍ର-ଯୁଜ୍-ଅ) ଋଣଦାନ, ବାଣିଜ୍ୟାଦିରେ ଅର୍ଥ ବ୍ୟବହାର ।

ଅର୍ଥଲୁବ୍ଧ, ବିଂ. (ଅର୍ଥ-ଲୁବ୍ଧ) ଧନଲୋଭୀ ।

ଅର୍ଥବାନ୍ , ବିଂ. (ଅର୍ଥ-ବତ୍ ) ଅର୍ଥଯୁକ୍ତ, ଧନୀ ।

ଅର୍ଥଶାସ୍ତ୍ର, ବି. ନ. ଅର୍ଥଜାତବିଷୟକ ଶାସ୍ତ୍ର ।

ଅର୍ଥସିଦ୍ଧି, ବି. ସ୍ତ୍ରୀ. ( ଅର୍ଥ-ସିଦ୍ଧି ) ଇଷ୍ଟସିଦ୍ଧି, ପ୍ରୟୋଜନସିଦ୍ଧି ।

ଅର୍ଥାଗମ, ବି. ପୁଂ. ( ଅର୍ଥ-ଆ-ଗମ୍-ଅ ) ଅର୍ଥପ୍ରାପ୍ତି, ଉପାର୍ଜନ ।

ଅର୍ଥାତ୍ , ଅଂ. ( ଅର୍ଥ-ଅତ୍ ) ଅର୍ଥବଶତଃ, ଫଳତଃ, ବସ୍ତୁତଃ ।

ଅର୍ଥାନ୍ତର, ବି. ନ. ( ଅର୍ଥ-ଅନ୍ତର) ଅନ୍ୟ ଅର୍ଥ ।

ଅର୍ଥାନ୍ତରନ୍ୟାସ, ବି. ପୁଂ. କାବ୍ୟର ଅଳଙ୍କାରବିଶେଷ, କାର୍ଯ୍ୟଦ୍ୱାରା କାରଣର ଏବଂ କାରଣ ଦ୍ୱାରା କାର୍ଯ୍ୟର ସମର୍ଥନ ।

ଅର୍ଥିତ, ବିଂ. ( ଅର୍ଥ-ତ ) ବାଞ୍ଛିତ, ଅଭିଳଷିତ ।

ଅର୍ଥୀ, ବିଂ. (ଅର୍ଥ-ଇନ୍ ) ପ୍ରାର୍ଥୀ; ଧନୀ । ବି. ପୁଂ. ଯେ ଅର୍ଥ ବା ବ୍ୟାଖ୍ୟା କରେ, ଅଧ୍ୟାପକ । ଯଥା—

> ପଢ ସରଳ ଧ୍ୱନିରେ ନଚେ ମୋ ହୃଦ,
> ଅର୍ଥିଜନପ୍ରଜ୍ଞରଙ୍କୁ ଆନନ୍ଦ କରିବ । ସ. ବ.

ଅର୍ଦ୍ଦନ, ବି. ନ. ( ଅର୍ଦ୍ଦ-ଅନ ) ପୀଡ଼ନ; ଯାଚନ; ହନନ; ଗମନ ।

ଅର୍ଦ୍ଦିତ, ବିଂ. (ଅର୍ଦ୍ଦ-ତ) ପୀଡିତ; ଯାଚିତ; ଗତ । ବି. ନ. ବାତରୋଗବିଶେଷ, ମୁଖମଣ୍ଡଳର ପକ୍ଷାଘାତ ।

ଅର୍ଦ୍ଧ, ବି. ପୁଂ. (ଋଧ୍-ଅ) ଅଂଶ, ସମାନ ଅର୍ଦ୍ଧାଂଶ ।

ଅର୍ଦ୍ଧଗଙ୍ଗା, ବି. ସ୍ତ୍ରୀ. ( ଅର୍ଦ୍ଧ ଗଙ୍ଗା ) କାବେରୀ ନଦୀ, ଏ ନଦୀରେ ସ୍ନାନ କଲେ ଗଙ୍ଗାସ୍ନାନର ଅର୍ଦ୍ଧଫଳ ମିଳେ ବୋଲି ଏହାର ଏପରି ନାମ ହୋଇଅଛି ।

ଅର୍ଦ୍ଧଚନ୍ଦ୍ର, ବି. ପୁଂ. ଚନ୍ଦ୍ରର ଅର୍ଦ୍ଧେକ; ନଖକ୍ଷତ ଚିହ୍ନ; ଗଳା ଟିପି ଧରିବାର ।

ଅର୍ଦ୍ଧଯାମ, ବି. ପୁଂ. ଯାମ = ପ୍ରହର ତାହାର ଅର୍ଦ୍ଧ=୨ ଘଡିକା । ଯଥା—

> ଅର୍ଦ୍ଧଯାମ କାଳ ଗଲା ଏହିମତେ । ଜ. ଦେ.

ଅର୍ଦ୍ଧରାତ୍ର, ବି. ପୁଂ. ନିଶୀଥ, ରାତ୍ରର ମଧ୍ୟଭାଗ ।

ଅର୍ଦ୍ଧସ୍ଫୁଟ, ବିଂ. (ଅର୍ଦ୍ଧ-ସ୍ଫୁଟ) ଅଧଫୁଟା, ଯଥା— ଅର୍ଦ୍ଧସ୍ଫୁଟ ବାକ୍ୟ, ଅର୍ଦ୍ଧପ୍ରକାଶିତ କଥା ।

ଅର୍ଦ୍ଧାଙ୍ଗ, ବି.ନ. (ଅର୍ଦ୍ଧ-ଅଙ୍ଗ) ଶରୀରର ଅର୍ଦ୍ଧେକ; ପତ୍ନୀ ।

ଅର୍ଦ୍ଧାଶନ, ବ. ନ. (ଅର୍ଦ୍ଧ-ଅଶନ) ଅର୍ଦ୍ଧଭୋଜନ ।

ଅର୍ଦ୍ଧାସନ, ବ. ନ. ( ଅର୍ଦ୍ଧ-ଆସନ ) ଆସନର ଅର୍ଦ୍ଧାଂଶର ସ୍ନେହଦାନ ।

ଅର୍ଦ୍ଧୋକ୍ତି, ବ. ସ୍ତ୍ରୀ. ( ଅର୍ଦ୍ଧ-ଉକ୍ତି ) ଅସମ୍ପୂର୍ଣ୍ଣ-ଭାବରେ କହିବା, ଅର୍ଦ୍ଧକଥନ ।

ଅର୍ପଣ, ବ. ନ. (ଋ-ଇ-ଅନ) ସ୍ଥାପନ, ସମର୍ପଣ । ସ୍ତ୍ରୀ. ପ୍ରଦାନ, ସମ୍ପ୍ରଦାନ ।

ଅର୍ପିତ, ବିଂ. (ଋ-ଇ-ତ) ଦତ୍ତ, ରକ୍ଷିତ, ନ୍ୟସ୍ତ ।

ଅର୍ଭ, ଅର୍ଭକ, ବ. ପୁଂ. ( ଋ=ବୃଦ୍ଧି ପାଇବାର-ଭ, କ) ବାଳକ, ଶିଶୁ, ଶାବକ; ମୂର୍ଖ; କୃଶ ।

ଅର୍ଯ୍ଯି, ବ, (ଯାବନିକ) ନିବେଦନପତ୍ର ।

ଅର୍ଯ୍ୟ, ବ. ପୁଂ. ( ଋ-ଯ ) ସ୍ୱାମୀ; ବୈଶ୍ୟ । ବିଂ. ଶ୍ରେଷ୍ଠ ।

ଅର୍ଯ୍ୟମା, ବ. ପୁଂ. (ଅର୍ଯ୍ୟ=ଶ୍ରେଷ୍ଠ-ମନ୍) ସୂର୍ଯ୍ୟ; ଉତ୍ତରଫାଲ୍‌ଗୁନୀ ନକ୍ଷତ୍ର; ଅର୍କବୃକ୍ଷ; ପିତୃ-ଗଣର ରାଜା । ଯଥା—

ପିତୃଗଣଙ୍କ ମଧ୍ୟେ ମୁହିଁ,
ଅର୍ଯ୍ୟମା ନାମଟି ବୋଲଇ । ଭଗବତ ।

ଯମ; ଦ୍ୱାଦଶ ଆଦିତ୍ୟ ମଧ୍ୟରୁ ଅନ୍ୟତମ ଆଦିତ୍ୟ ।

ଅର୍ବନ୍, ବ. ପୁଂ. ( ଋ=ଗମନ କରିବା-ବନ୍ ) ଘୋଟକ, ଅଶ୍ୱ । ବିଂ. ନୀଚ । ର୍ବତା, ସ୍ତ୍ରୀ. ଘୋଟକୀ; କୁଟ୍ଟିନୀ ।

ଅର୍ବାକ୍, ଅଂ. ( ଅବର-ଅଞ୍ଚ୍-୦ ) ଆଦ୍ୟ, ପୂର୍ବ; ପଶ୍ଚାତ୍ । ବିଂ. ନିକଟ; ନିକୃଷ୍ଟ ।

ଅର୍ବାଚୀନ, ବିଂ. ( ଅର୍ବାକ୍=ନିକୃଷ୍ଟ-ଈନ ) ବିରୁଦ୍ଧ; ପଶ୍ଚାଦ୍‌ବର୍ତ୍ତୀ; ନୂତନ; ଅଧମ, ନୀଚ ।

ଅର୍ବୁଦ, ବ. ପୁଂ. ନ. (ଅର୍ବ=ହିଂସା କରିବାର-ଉଦ) ଦଶ କୋଟି ସଂଖ୍ୟା; ଅର୍ବୁଦରୋଗ; ପର୍ବତବିଶେଷ ।

ଅର୍ଶ, ଅର୍ଶସ, ବ. ନ. (ଅର-ଶ୍ରୁ-ଅ, ଅସ୍) ଅର ପରି ହିଂସାକାରୀ ରୋଗବିଶେଷ, ମଳ ସହିତ ରକ୍ତସ୍ରାବ ଏ ରୋଗର ସାମାନ୍ୟ ଲକ୍ଷଣ ।

ଅର୍ହ, ବିଂ. (ଅର୍ହ=ଯୋଗ୍ୟ ହେବା-ଅ) ଯୋଗ୍ୟ, ଉପଯୁକ୍ତ । (ଅର୍ହ=ପୂଜା କରିବା-ଅ) ପୂଜ୍ୟ । ବ. ପୁଂ. ଇନ୍ଦ୍ର; ପରମେଶ୍ୱର ।

ଅର୍ହଣୀୟ, ବିଂ. (ଅର୍ହ-ଅନୀୟ) ପୂଜନୀୟ, ପୂଜ୍ୟ ।

ଅଳଂ, ଅଂ. ( ଅଳ୍-ଅମ୍ ) ଭୂଷଣ; ନିଷେଧ, ବାରଣ; ନିରର୍ଥକ, ବ୍ୟର୍ଥ ।

ଅଳକ, ବ. ପୁଂ. ନ. (ଅଳ୍=ଭୂଷିତ କରିବା-ଅକ) ଚୂର୍ଣ୍ଣକୁନ୍ତଳ; ଅଗ୍ନିଲିପ୍ତ କୁଙ୍କୁମ; ମେଘ-ବିଶେଷ, ଯେଉଁ ମେଘ ଚୂର୍ଣ୍ଣକୁନ୍ତଳ ପରି ଓ ବିକ୍ଷିପ୍ତ କାର୍ପାସ ପରି ଦେଖାଯାଏ; ମସ୍ତକର ଅଳଙ୍କାରବିଶେଷ । (ଚୂର୍ଣ୍ଣକୁନ୍ତଳ) ଯଥା—

ସଦ୍ୟ ସିନ୍ଦୂରମାନେ ଚନ୍ଦ୍ର କି ଗୁଣ ଧଇଲେ,
ଶିରୋମଣିରୂପେ ସ୍ଥାନ ଅଳକ ଅଳକେ । ବ. ବି.

କା, ବ. ସ୍ତ୍ରୀ. ଚୂର୍ଣ୍ଣକୁନ୍ତଳ, ସ୍ୱନାମପ୍ରସିଦ୍ଧ ପୁରୀ-ବିଶେଷ, କୁବେରପୁରୀ ।

ଅଳକନନ୍ଦା, ବ. ସ୍ତ୍ରୀ. (ଅଳକ-ନନ୍ଦା) ବାଳିକା । (ଅଳକା=କୁବେରପୁରୀ-ନନ୍ଦା) ଗଙ୍ଗା ।

ଅଳକପୁରୀ, ବ. ସ୍ତ୍ରୀ. କୁବେର ରାଜଧାନୀ ।

ଅଳକସ୍ତର, ବ. ପୁଂ. (Cirro-stratus) ମେଘ-ବିଶେଷ, ଯେଉଁ ମେଘ ପ୍ରଥମେ ଅଳକ ବା ଚୂର୍ଣ୍ଣକୁନ୍ତଳ ପରି ଉତ୍ପନ୍ନ ହୁଏ, ତତ୍ପରେ ସ୍ତରମେଘ ସହିତ ମିଶ୍ରିତ ହୁଏ ।

ଅଳକସ୍ତୂପ, ବ. ପୁଂ. ଯେଉଁ ମେଘ ପ୍ରଥମେ ଅଳକଆକାରରେ ଉତ୍ପନ୍ନ ହୋଇ ଶେଷରେ ସ୍ତୂପମେଘ ସହିତ ମିଶ୍ରିତ ହୁଏ ।

ଅଳକା, ବ. ସ୍ତ୍ରୀ. (ଅଳ୍=ଭୂଷିତ କରିବା ଅକ-ଆ) ଆଠ ଦଶ ବର୍ଷର ବାଳିକା; କୁବେରପୁରୀ; ଅଳଙ୍କାରବିଶେଷ । ଯଥା—

କଣ୍ଠିରେ ମାଳ ଅଳକା ଲୁଳେ,
କମଳେ ଶୋଭି ଯେସନେ ଅଳିବାଳେ । ର. କ.

ଅଳକାଧିପ, ବ. ପୁଂ. ( ଅଳକା-ଅଧି-ପା-ଅ ) କୁବେର ।

ଅଲକ୍ତ, ଅଲକ୍ତକ, ବ. ପୁଂ. (ଅ-ଲକ୍ତ-କ) ଯାହାଠାରୁ ବଳି ଅଉ ରକ୍ତବର୍ଣ୍ଣ ପଦାର୍ଥ ନାହିଁ, ଅଳତା, ଲାକ୍ଷାରସ ।

ଅଲକ୍ଷ, ବଂ. ( ଅ-ଲକ୍ଷ=ତୁଳନା ) ଅସମାନ, ତୁଳନାର ଅଯୋଗ୍ୟ ।

ଅଲକ୍ଷଣ, ବ. ନ. (ଅ-ଲକ୍ଷଣ=ଚିହ୍ନ) କୁଲକ୍ଷଣ, ମନ୍ଦ ଚିହ୍ନ, ଅମଙ୍ଗଳ । ବଂ. କୁଲକ୍ଷଣାକ୍ରାନ୍ତ ।

ଅଲକ୍ଷିତ, ବଂ. (ଅ-ଲକ୍ଷ-ତ) ଅଦୃଷ୍ଟ; ଅଜ୍ଞାତ; ଅତର୍କିତ । ଯଥା—

ସେହି କଷ୍ଟ ଯେଁହୁ ଗଢନ ସହୁଛେ
ମୃଡ଼ଙ୍ଗକୁ ବାଳା ଗଲ ଅଲକ୍ଷିତେ । ନ. ବେ.

ଅଲକ୍ଷ୍ମୀ, ବ. ସ୍ତ୍ରୀ. (ଅ-ଲକ୍ଷ୍ମୀ) ଲକ୍ଷ୍ମୀର ବଡ଼ ଭଉଣୀ, ଲକ୍ଷ୍ମୀର ବିରୋଧିନୀ ଦେବତା; ଦୁର୍ଦ୍ଦଶା ।

ଅଲକ୍ଷ୍ୟ, ବଂ. ( ଅ-ଲକ୍ଷ୍ୟ ) ସମକକ୍ଷ ନୁହେ; ଅଦୃଶ୍ୟ; ଅନିର୍ଦ୍ଦେଶ୍ୟ ।

ଅଲଗର୍ଦ୍ଦ, ବ. ପୁଂ. (ଅ-ଲଗ୍=ଲଗ୍ନ ହେବାର-ଅର୍ଦ୍=ଗମନ କରିବା-ଅ) ଗମନକାଳରେ ଯାହାର ସର୍ବାଙ୍ଗ ଭୂମିରେ ସଂଲଗ୍ନ ହୁଏ ନାହିଁ, ସର୍ପ ।

ଅଲଗା, ବଂ. (ଅଲଗ୍ନ ଶବ୍ଦଜ) ପୃଥକ୍ ।

ଅଲଗୁଣି, ବଂ (ଦେଶଜ) ବସ୍ତ୍ରାଦି ରଖିବା ନିମିତ୍ତ ଝୋଲା ହୋଇଥିବା କାଷ୍ଠ ବା ବାଉଁଶ ଦଣ୍ଡ ।

ଅଲଘୁ, ବଂ. ( ଅ-ଲଘୁ ) ଭାରି, ଗୁରୁ; ପ୍ରବଳ; ଅଚଞ୍ଚଳ ।

ଅଲଙ୍କରଣ, ବ. ନ. ( ଅଲମ=ଭୂଷିତ କରିବା-କୃ-ଅନ) ଭୂଷଣ, ଅଲଙ୍କାର; ଭୂଷିତ କରିବା ।

ଅଲଙ୍କରିଷ୍ଣୁ, ବଂ. (ଅଲମ୍-କୃ-ଇଷ୍ଣୁ) ଭୂଷଣକାରୀ, ଭୂଷକ; ବେଶ କରିବା ବ୍ୟକ୍ତି ।

ଅଲଙ୍କର୍ତ୍ତା, ବଂ. ( ଅଲମ୍-କୃ-ତୃ ) ଭୂଷଣକାରୀ, ଭୂଷକ ।

ଅଲଙ୍କାର, ବ. ପୁଂ. ( ଅଲମ୍-କୃ-ଅ ) ଭୂଷଣ, ଆଭରଣ, ଗହଣା । କାବ୍ୟର ସୌନ୍ଦର୍ଯ୍ୟବୃଦ୍ଧିକାରକ ଧର୍ମବିଶେଷ, କାବ୍ୟାଦିର ଦୋଷଗୁଣପ୍ରତିପାଦକ ଶାସ୍ତ୍ର । ( ଭୂଷଣ ଅର୍ଥରେ ) ଯଥା—

ବନ୍ଧୁହାର ଶୋଭା ସୂର ଚନ୍ଦ୍ରହାର,
ଉଦରକୋଶଳା-ମୌଳି-ଅଳଙ୍କାର । ନ. ବେ.

ଅଲଙ୍କୃତ, ବଂ. ( ଅଲମ୍-କୃତ ) ଭୂଷିତ; ଶୋଭିତ, ମଣ୍ଡିତ ।

ଅଲଂଘ୍ୟ, ବଂ. (ଅ-ଲଂଘ୍=ଅତିକ୍ରମ କରିବା-ଯ) ଦୁରତିକ୍ରମଣୀୟ, ଯାହା ଅତିକ୍ରମ କରି ଯାଏ ନାହିଁ ।

ଅଲଣା, ବଂ. ( ଲବଣ ଶବ୍ଦଜ ) ସ୍ୱାଦହୀନ, ଅସାର, ନିକୃଷ୍ଟ । ଯଥା—

ଉଦ୍‌ଭୂଧେ ଧାର ଅଧବସ୍ତେ ନଭେ ସେହିଁ ଭୂଜଣା,
ଦନ୍ତେଁ ବନ ଉଦ୍‌ ସଙ୍ଗେ ସ୍ୱାଦସରି ଭୂଳା ଅଲଣା । ଉଷା ।

ଅଲତା, ବ. ସ୍ତ୍ରୀ. (ଅଲକ୍ତ ଶବ୍ଦଜ) ଲାକ୍ଷାରସ ।

ଅଲନ୍ଧୁ, ବ. ( ଦେଶଜ ) ରନ୍ଧନଗୃହମଧ୍ୟସ୍ଥ ଧୂମର କଳା । ଯଥା—

ମଧ୍ୟାହ୍ନେ ଅନ୍ଧାରି ଛଣିର ଅଲନ୍ଧୁ । ମହାଯାତ୍ରା ।

ଅଲନ୍ଧମ, ବ. ପୁଂ. (ଅଲମ୍-ଧୂମ) ଧୂମସମୂହ ।

ଅଲବ୍ଧ, ବଂ. (ଅ-ଲବ୍ଧ) ଅପ୍ରାପ୍ତ, ଅନଧିଗତ ।

ଅଲଭ୍ୟ, ବଂ. (ଅ-ଲଭ୍ୟ) ଯାହା ଲାଭ କରି ଯାଇ ନ ପାରେ, ଅପ୍ରାପ୍ୟ ।

ଅଲମ୍ବୁଷ, ବ. ପୁଂ. ( ଅଲ-ବୁଷ୍-ଅ ) ରାକ୍ଷସବିଶେଷ, ଏ ରାକ୍ଷସ ଅଭିମନ୍ୟୁ ସହିତ କୁରୁକ୍ଷେତ୍ର ଯୁଦ୍ଧରେ ମାୟାଯୁଦ୍ଧ କରି ପରାସ୍ତ ହୋଇଥିଲା ।

ଅଲବାଲ, ବ. ନ. ( ଅ-ଲୂ-ଅଳ ) ଜଳଦାନନିମନ୍ତେ ବୃକ୍ଷମୂଳସ୍ଥ ମନ୍ଦା ।

ଅଲସ, ବଂ. ( ଅ-ରସ୍-ଅ ବା ଅ-ଲସ୍-ଅ ) ଆଳସ୍ୟଯୁକ୍ତ, ଅଲସୁଆ । ବ. ମଠ, ନିଷ୍କାମ ।

ଅଲସକ, ବ. ପୁଂ. ( ଅଲସ-କ-ଅ କିମ୍ବା ଅ-ଲସ୍-ଅକ) ଉଦରାମୟ ରୋଗବିଶେଷ ।

ଅଲସୁଆ, ବଂ. ଅଳସ, ଆଳସ୍ୟଯୁକ୍ତ ।

ଅଲାଜୁକ, ବଂ. (ଅଲଜ୍ଜ ଶବ୍ଦଜ) ନିର୍ଲ୍ଲଜ୍ଜ ।

ଅଲାବୁ } ବ. ସ୍ତ୍ରୀ. ନ. (ଅ-ଲବ=ମଗ୍ନ ହେବାରେ-
ଅଲାବୂ } ଉ, ଊ) ଯାହା ବୁଡ଼େ ନାହିଁ, ଲାଉ ।

ଅଳ, ଅଲ, ବି. ପୁଂ. (ଅଲ୍=ଭୂଷିତ କରିବା-ଅ) ଭ୍ରମର । ଯଥା—

ବଢ଼ିକ ଅଠ ଝଢ଼କା ଦକ୍ତ ନବମାଳତା,
ବଳସେ ଅଳି-ପାଳକା ବାଣ-ନେଳକା କ । ବୈ. ବ.

ବିଛା; ମଦ୍ୟ; କୋକିଳ; କାକ; (ଦେଶଜ) ଗୋଳ ।

ଅଲଅ, ବି. (ଦେଶଜ) ହାଣ୍ଡୁଅ ।

ଅଳକ, ଅଲକ, ବି. ପୁଂ. (ଅଲ=ଭୂଷିତ କରିବା-ଇକ) ଯାହାଦ୍ୱାରା ଶୁଣ୍ଡ ସୁନ୍ଦର ଦିଶେ, ପିଣ୍ଡା । ଯଥା—

ବଂଶ କର ମାଠ ଉଚ୍ଚ ବାନ୍ଧିଲେ ଅଗନା
ଅଳନ୍ଦେ ଗବାକ୍ଷେ ଦ୍ୱାରେ ପ୍ରାସାଦଶିଖରେ । ମ. ଯା.

ଅଳି, ଅଲି, ବି. ପୁଂ. ( ଅଲ୍ , ଅଲ୍-ଇନ୍ ) ଭ୍ରମର, ବିଛା ।

ଅଲୀକ, ବି. ନ. ( ଅଲ୍=ନିବାରଣ କରିବା-ଈକ ) ଲଲାଟ; ଆକାଶ । ବିଂ. ମିଥ୍ୟା, ଅସତ୍ୟ; ଅପୂର୍ଣ୍ଣକର; ଅପ୍ରିୟ । ଯଥା—

ଯଦିଓ ଗଳକ ଅଲୀକରେ ଝଳକ ଅନାଇ ଅଲୀକରେ,
ଅମ୍ଳାନ ସଦ୍ଭେକ ଶ୍ରୀମୁଖରେ ଘୋର,
ଅଧ କର ବୋଲୁ ଅଧ କରେ । କା. ହୁ. ବ.

ଅଲେଖ, ବି. (ପ୍ରା; ଅ-ଲେଖା) ଭଳକ ରଚନା; ଅଲେଖ ଧର୍ମସମ୍ପ୍ରଦାୟ, ମହିମାଧର୍ମାବଲମ୍ବୀ । ବିଂ. ଅଗଣା, ଯାହା ଲେଖା ହେବାର ଯୋଗ୍ୟ ନୁହେଁ; ନଚ, ନିକୃଷ୍ଟ ।

ଅଲୋକସାମାନ୍ୟ, ବିଂ. ( ଅ-ଲୋକ-ସାମାନ୍ୟ ) ଯାହା ସଚରାଚର ମିଳଇ ନାହିଁ, ଅସାଧାରଣ ।

ଅଲୋକତ, ବିଂ. (ପ୍ରା) ଆଶ୍ଚର୍ଯ୍ୟାନ୍ୱିତ । ଯଥା—

ଅବେକତ ହେଲ ଲୋକତ କର । ଲ. ବ.

ଅଲୌକିକ, ବିଂ. ( ଅ-ଲୋକ=ଭୁବନ-ଇକ ) ଅସାମାନ୍ୟ, ଲୋକାତୀତ; ଯେ ଲୋକ ବ୍ୟବହାର ଜାଣେ ନାହିଁ ।

ଅଳ୍ପ, ବିଂ. (ଅଲ୍=ନିବାରଣ କରିବା-ପ) କ୍ଷୁଦ୍ର; ଈଷତ୍; କିଛି; କମ୍; ତୁଚ୍ଛ ।

ଅଳ୍ପତନୁ, ବି. ପୁଂ. ( ଅଳ୍ପ-ତନୁ ) ଖର୍ବଦେହ, ବାମନ, ଦୁର୍ବଳ ।

ଅଳ୍ପଦର୍ଶୀ, ବିଂ. (ଅଳ୍ପ-ଦୃଶ୍-ଇନ୍ ) ଯେ ବିଚକ୍ଷଣ ନୁହେ, ଯାହାର ଦୂରଦୃଷ୍ଟି ନାହିଁ ।

ଅଳ୍ପଭାଷୀ, ବିଂ. ( ଅଳ୍ପ ଭାଷୀ ) ଯେ ଅଧିକ କଥା କହେ ନାହିଁ, ମିତଭାଷୀ ।

ଅଳ୍ପଶଃ, ଅଂ. (ଅଳ୍ପ-ଶସ୍ ) ଅଳ୍ପେ ଅଳ୍ପେ, ଅଳ୍ପ ଅଳ୍ପ କରି ।

ଅଳ୍ପାୟୁଃ, ବିଂ. ( ଅଳ୍ପ-ଆୟୁସ୍ , ଅଳ୍ପ ଆୟୁସ୍ ) ଯାହାର ଆୟୁ ଅଳ୍ପ, ଯେ ଦୀର୍ଘଜୀବୀ ନୁହେ ।

ଅଳ୍ପିଷ୍ଟ, ଅଳ୍ପୀୟାନ୍ — ବିଂ. (ଅଳ୍ପ-ଇଷ୍ଠ , ଈୟସ୍) ଅତ୍ୟଳ୍ପ, ଅତିକ୍ଷୁଦ୍ର ।

ଅଲ୍ଲାଳ, ବିଂ. ( ଦେଶଜ ) ଗେହ୍ଲା, ପେଲନ୍ତା । ଯଥା—

ସେ ତ ଅଲ୍ଲାଳା ଛଉଣା
କେଉଁ କଥାରୁ କ ଭଙ୍ଗେ କାହୁଁକି ଅଣିବ । ବ. ଚ.

ଅବ, ଅଂ. (ଅବ୍=ରକ୍ଷା କରିବା-ଅ) (ଉପସର୍ଗ) ବିସ୍ତାର; ନ୍ୟୂନତା; ବିଶ୍ରାମ; ଆଦେଶ; ଅସମ୍ମାନ; ନିଶ୍ଚୟ; ପୁଷ୍ଟି; ଶୋଧନ; ଜ୍ଞାନ; ବ୍ୟାପ୍ତି; ଆଲମ୍ବନ; ପାଳନ; ପରିଭବ ଇତ୍ୟାଦି ।

ଅବକାଶ, ବି. ପୁଂ. ( ଅବ=ମଧ୍ୟ-କାଶ=ଦୀପ୍ତି ହେବାର-ଅ ) ଅବସର, ଛୁଟି; ମଧ୍ୟସ୍ଥାନ; ସ୍ଥାନ; ସମୟ; ଫାଙ୍କ ।

ଅବକ୍ତବ୍ୟ, ବିଂ. ( ଅ-ବକ୍ତବ୍ୟ ) ଯାହା କହିବା ଉଚିତ ନୁହେ, ଅକଥ୍ୟ, ଅବାଚ୍ୟ ।

ଅବକ୍ଷେପ, ଅବକ୍ଷେପଣ, ବି. ପୁଂ. (ଅବ-କ୍ଷିପ୍-ଅ, ଅନ) ନିକ୍ଷେପ; ଅଧୋନିକ୍ଷେପ; ତିରସ୍କାର ।

ଅବକ୍ଷେପଣୀ, ବି.ସ୍ତ୍ରୀ.(ଅବ-କ୍ଷିପ୍-ଅନ ଈ)ଲଗାମ ।

ଅବଗତ, ବିଂ. (ଅବ-ଗମ୍ ତ) ଜ୍ଞାତ, ବିଦିତ ।

ଅବଗଣିତ, ବିଂ. ( ଅବ-ଗଣ୍-ତ ) ଘୃଣିତ, ଅବମାନିତ, ତିରସ୍କୃତ ।

ଅବଗତି, ବି. ସ୍ତ୍ରୀ. ( ଅବ-ଗମ୍-ତି ) ଜ୍ଞାନ, ଜାଣିବାର, ବୋଧ ।

ଅବଗାହ, ବି. ପୁଂ. (ଅବ-ଗାହ-ଅ) ଅବଗାହନ, ମଜ୍ଜନ, ସ୍ନାନ । ଯଥା—

> ଅବନ୍ତ ହୃଦୟ ବଥି ଦଳେ ଦଳେ,
> ବଷମ ପଣ୍ଡ୍ୟୁ ଦରି ସ୍ରୋତଜଳେ । ନ. କେ.

ଅବଗାହୀ, ବିଂ. (ଅବ-ଗାହ-ଇନ୍) ଅବଗାହନକାରୀ; ଅନୁଭବୀ । ଯଥା—

> ମୁଁ ଦହିଁରେ ନାହିଁ ଅବଗାହୀ ହେ ପ୍ରିୟବି,
> କନ୍ଦର୍ପଙ୍କ ଚଉପଦୀ ।

ଅବଗୁଣ୍ଠନ, ବି. ନ. (ଅବ-ଗୁଣ୍ଠ୍-ଅନ) ଓଢ଼ଣା; ଆଚ୍ଛାଦନ । ଯଥା—

> ଏହାଙ୍କ ବମଳକଳ ବଳି ପଲ୍ଲବରେ,
> ହୋଇଲ ଅବଗୁଣ୍ଠନ ଷଣେ ଲୂଳିତରେ । କ. କ.

ଅବଗୁଣ୍ଠିତ, ବିଂ. ( ଅବ-ଗୁଣ୍ଠ-ତ ) ଆବୃତ, ଆଚ୍ଛାଦିତ । ଯଥା—

> ଶଙ୍କରର ଅନ୍ଧକାର ଧରଣୀମଣ୍ଡଳକୁ ଅବଗୁଣ୍ଠିତ କଲାମାତ୍ରକେ
> ଏକ ପ୍ରକାଣ୍ଡ ଅଗ୍ନିକାଣ୍ଡ ନୟନଗୋଚର ହେଲା । ପ୍ର. ମା.

ଅବଗ୍ରହ, ବି. ପୁଂ. (ଅବ-ଗ୍ରହ୍-ଅ) ଅନାବୃଷ୍ଟି । ଯଥା—

> ପାପମଳ୍ଲକ୍ଷମେ ଏବେ ଲକ୍ଷ୍ମୀଙ୍କବାସରୀ
> ଶୁଖି ଯିବ ଅହା ଏହି କ୍ରୂର ଅବଗ୍ରହେ । ମ. ଯା.

ଅବଘାତ, ବି. ପୁଂ. (ଅବ-ହନ୍-ତ) ଅପହତ୍ୟା; ଚାଉଳ ଇତ୍ୟାଦି ଛାଣ୍ଡିବା, ପରହାର କରିବା ।

ଅବଚୟ, ବି. ପୁଂ. (ଅବ-ଚୟ) ଚୟନ ।

ଅବଚ୍ଛିନ୍ନ, ବିଂ. ( ଅବ-ଛିଦ୍-ତ ) ବିଶିଷ୍ଟ; ସୀମାବଦ୍ଧ; ସଙ୍କୁଚିତ; ଛିନ୍ନ, ବିଭକ୍ତ ।

ଅବଚ୍ଛେଦ, ବି. ପୁଂ. (ଅବ-ଛିଦ୍-ଅ) ପରିଚ୍ଛେଦ; ଖଣ୍ଡ; ବିରାମ; ବିଚ୍ଛେଦ; ଏକଦେଶ; ସୀମା ।

ଅବଜ୍ଞା, ବି. ସ୍ତ୍ରୀ. ( ଅବ-ଜ୍ଞା-ଆ ) ତିରସ୍କାର, ଅବମାନ, ଅନାଦର, ତାଚ୍ଛଲ୍ୟ । ଯଥା—

> ଚନ୍ଦ୍ରର କର କର୍ଣ୍ଣ ନାସା ଚରଣ ନାହିଁ କି ଅବଜ୍ଞା,
> ଦଗଦଶୋଚନା ହୃଅ ସୁଲୋଚନା ଦେଖ ମୋ ପ୍ରଜ୍ଞେ ।
> ବୈ. ବ.

ଅବଜ୍ଞାତ, ବିଂ. (ଅବ-ଜ୍ଞା-ତ) ତିରସ୍କୃତ, ଘୃଣିତ, ଅନାଦୃତ ।

ଅବଜ୍ଞେୟ, ବିଂ. (ଅବ-ଜ୍ଞା-ଯ) ଅବମାନ୍ୟ, ତୁଚ୍ଛ ।

ଅବଟ, ବି. ପୁଂ. ( ଅବ=ରକ୍ଷା କରିବାର-ଅଟ ) ଗର୍ତ୍ତ, ଗହ୍ୱର, କୂପ; ଐନ୍ଦ୍ରଜାଲିକ ।

ଅବତଂସ, ବି. ପୁଂ. ନ. ( ଅବ-ତନ୍=ଭୂଷିତ କରିବା-ଅ ) କର୍ଣ୍ଣଭୂଷଣ; ଶିରୋଭୂଷଣ; ଭୂଷଣ । ଯଥା—

> ଦମ୍ଭ ଅନନ୍ତ ବନାଶନ ଅଶେ,
> ମଣ୍ଡନ କଲେ ଅବତଂସ ଶୋଭେ ମେ । ଘ. ବ.

ଅବତରଣ, ବି. ନ. (ଅବ-ତୃ-ଅନ) ଅବରୋହଣ, ଓହ୍ଲାଇବା; ଉତ୍ପତ୍ତି ।

ଅବତରଣିକା, ବି. ସ୍ତ୍ରୀ. ( ଅବ-ତରଣ-ଇକ-ଆ ) ଭୂମିକା, ମୁଖବନ୍ଧ ।

ଅବତାର, ବି. ପୁଂ. ( ଅବ-ତୃ-ଅ ) ଉତ୍ପତ୍ତି, ଦେବାଦିଙ୍କର ମର୍ତ୍ତ୍ୟରେ ଦେହପରିଗ୍ରହ । ଯଥା—ମତ୍ସ୍ୟ, କୂର୍ମ ଇତ୍ୟାଦିରୂପରେ ବିଷ୍ଣୁ ଜନ୍ମିଥିଲେ । ଯଥା—

> କେ ବୋଲଇ କଳ୍ପତରୁ ଅଙ୍କୁର,
> କେ ବୋଲଇ କନ୍ଦର୍ପ ଅବତାର । ର. କ.

ଓହ୍ଲାଇବା; ପୁଷ୍କରିଣୀ; ଅବତରଣୀ; ତୀର୍ଥ ।

ଅବତୀର୍ଣ୍ଣ, ବିଂ. (ଅବ-ତୃ-ତ) ଆବିର୍ଭୂତ, ଉତ୍ପନ୍ନ; ନିମ୍ନାଗତ । ଯଥା—

> ଅବ ପୃଥିବୀରେ ଏଣ ଅବେଶ
> ଅବତୀର୍ଣ୍ଣ ହୋଇ ଅମର ଦେଶେ । କ. ବ.

ଅବଦାତ, ବିଂ. (ଅବ-ଦୈ-ତ) ଶୁକ୍ଳ; ଗୌର; ସୁନ୍ଦର ।

ଅବଦାନ, ବି. ନ. ( ଅବ-ଦା-ଅନ ) ସମ୍ପାଦିତ କର୍ମ; ଛେଦନ; ବେଣାମୂଳ ।

ଅବଦାରଣ, ବି. ନ. (ଅବ-ଦୃ-ଇ-ଅନ) ଖଣତି, କୋଡ଼ି, ଶାବଳପ୍ରଭୃତି ଖନନାସ୍ତ୍ର; ଖନନ, ବିଦାରଣ ।

ଅବଦ୍ୟ, ବିଂ. ( ଅ-ବଦ୍-ଯ ) ଅଧମ; ଗର୍ହିତ; ନିକୃଷ୍ଟ; ଅକଥ୍ୟ ।

ଅବଧାନ, ବି. ନ. ( ଅବ-ଧା-ଅନ ) ମନୋଯୋଗ ।-ପୁଂ. ଚାଟଶାଳୀର ଶିକ୍ଷକ; ଅନୁଗ୍ରହ । ଯଥା—

ଯେଉଁ କାରଣ ମୁଁ ହୋ ସେବାକୁ କୋ,
ମୋଠାରେ ଅବଧାନ ହେବାକୁ କୋ ।

ଅବଧାରଣ, ବି. କ୍ଳୀ. (ଅବ-ଧୃ-ଇ-ଅନ) ନିରୂପଣ, ନିଶ୍ଚୟ କରିବା ।

ଅବଧାରିତ, ବିଂ. (ଅବ-ଧୃ-ଇ-ତ) ନିର୍ଣ୍ଣୀତ ।

ଅବଧାର୍ଯ୍ୟ, ବିଂ. (ଅବ-ଧୃ-ଯ) ନିର୍ଣ୍ଣେୟ ।

ଅବଧି, ବି. ପୁଂ. (ଅବ-ଧା-ଇ) ସୀମା; ପର୍ଯ୍ୟନ୍ତ; ଅନ୍ତ; କାଳ । (ସୀମା ଅର୍ଥରେ) ଯଥା—

ଦେଇ ଅଛି ଅବଧି, ଘଡ଼କେ ନବଣୀନିଧି ରେ,
ଦେଉ ଘେନି ଯାଉଛୁ ।

ଅବଧୀରିତ, ବିଂ. (ଅବ-ଧୀର୍=ଅବଜ୍ଞା କରିବା-ତ) ଅବଜ୍ଞାତ, ଅନାଦୃତ ।

ଅବଧୂତ, ବିଂ. (ଅ-ବଧ୍=କମ୍ପିତ ବା ତ୍ୟକ୍ତ-ତ) କମ୍ପିତ; ତିରସ୍କୃତ; ଅଭିଭୂତ । ବି. ପୁଂ. ଶୈବ ସମ୍ପ୍ରଦାୟବିଶେଷ; ସନ୍ନ୍ୟାସୀ; ଉଦାସୀନ ।

ଅବଧ୍ୟ, ବି. (ଅବ-ଧୃ-ଯ) ବଧର ଅଯୋଗ୍ୟ ।
ସ୍ତ୍ରୀ, ପଳାୟିତ, ନିରସ୍ତ୍ର ଏମାନେ ଅବଧ୍ୟ ।

ଅବନତ, ବିଂ. (ଅବ-ନମ୍-ତ) ଅନୁନ୍ନତ, ନମ୍ର, ଅଧଃପତିତ, ନମ୍ର । ଭି, ଉନ୍ନତିର ଅଭାବ, ଅଧଃପତନ; ସୂର୍ଯ୍ୟାଦିର ଅସ୍ତଗମନ ।

ଅବନତି, ବି. ସ୍ତ୍ରୀ. (ଅବ-ନମ୍-ତି) ଅନୁନ୍ନତି, ଅଧୋଗତି ।

ଅବନମିତ, ବିଂ. (ଅବ-ନମ୍-ଇ-ତ) ବକ୍ରୀଭୂତ ।

ଅବନି, ଅବନୀ, ବି. ସ୍ତ୍ରୀ. ( ଅବ୍=ରକ୍ଷା କରିବା-ଅନି) ପୃଥିବୀ, ଭୂମି । ଯଥା—

ଭୂଣକେତୁ (ବ୍ରହ୍ମା) ଶୁଣି ଏ କଥା,
କହିଲେ ଜଗନ୍ନାଥଙ୍କୁ ଅବନୀ ବେଥା । ର. କ.

ଅବନିପତି }
ଅବନୀପତି } ବି. ପୁଂ. (ଅବନି-ପତି) ଭୂପତି, ରାଜା ।

ଅବନ୍ତି, ଅବନ୍ତୀ, ଅବନ୍ତିକା, ବି. ସ୍ତ୍ରୀ. ( ଅବ-ଅନ୍ତି, ଈ, ଇକ-ଆ) ଦେଶବିଶେଷ; ନଦୀବିଶେଷ; ଉଜ୍ଜୟିନୀ ନଗର ।

ଅବପ୍ଲୁତ, ବିଂ. (ଅବ-ପ୍ଲୁ-ତ) ସହସା ଅବତୀର୍ଣ୍ଣ, ହଠାତ୍ ଓହ୍ଲାଇବା ।

ଅବବୁଦ୍ଧ, ବିଂ. ( ଅବ-ବୁଧ୍-ତ ) ଜ୍ଞାତ; ଅନୁଭୂତ; ଜାଗରିତ ।

ଅବଭାସ, ବି. ପୁଂ. ( ଅବ-ଭାସ୍-ଅ ) ପ୍ରକାଶ, ସ୍ଫୁରଣ ।

ଅବମାନ, ବି. କ୍ଳୀ. ( ଅବ-ମାନ୍-ଅ ) ଅପମାନ, ଅନାଦର, ଅନାସ୍ଥା ।

ଅବମାନନା, ବି. ସ୍ତ୍ରୀ. (ଅବ-ମାନ୍-ଅନ-ଆ) ଅପମାନ, ଅନାଦର ।

ଅବମାନିତ, ବିଂ. (ଅବ-ମାନ-ତ) ଅନାଦୃତ, ଅପମାନିତ ।

ଅବମୋଚନ, ବି. କ୍ଳୀ. ( ଅବ-ମୁଚ୍-ଅନ ) ପରିତ୍ୟାଗ, ଛାଡିଦେବା ।

ଅବୟବ, ବି. ପୁଂ. (ଅବ-ଯୁ-ଅ) ଅଙ୍ଗ, ଶରୀର, ହସ୍ତପଦାଦି; ଅଂଶ; ଉପକରଣ ।

ଅବରଜ, ବି. ପୁଂ. (ଅବର-ଜନ୍-ଅ) ସାନ ଭାଇ; ଶୂଦ୍ର ।

ଅବରା, ବି. ସ୍ତ୍ରୀ. (ଅ-ବର-ଆ) ଦୁର୍ଗା ।

ଅବରୁଦ୍ଧ, ବିଂ. (ଅବ-ରୁଧ୍-ତ) ବଦ୍ଧ, କଏଦୀ, ବନ୍ଦୀ; ଆଚ୍ଛାଦିତ ।

ଅବରୂଢ଼, ବିଂ (ଅବ-ରୁହ୍-ତ) ଅବତୀର୍ଣ୍ଣ ।

ଅବରୋଧ, ବି. ପୁଂ. (ଅବ-ରୁଧ୍-ଅ) ଅନ୍ତଃପୁର; ଅନ୍ତଃପୁର ସ୍ତ୍ରୀ; ପ୍ରତିବନ୍ଧ; ଅଟକ । ଯଥା—

ବନ୍ଦୀ ଲକ୍ଷେ ଶୋଭା କୀର୍ତ୍ତି ବୁହାଇ,
ବନ୍ଦୀଲକ୍ଷେ ଅବରୋଧ ବୁହାଇ । କୋ. ବ୍ର.

ଅବରୋହ, ବି. ପୁଂ. (ଅବ-ରୁହ୍-ଅ) ଅବନମନ; ଓହ୍ଲାଇବାର; ଓହ୍ଲାଳ; ନମ୍ରକୁ ଆସିବାର ।

ଅବରୋହଣ, ବି. କ୍ଳୀ. ( ଅବ-ରୁହ୍-ଅନ ) ଓହ୍ଲାଇବା ।

ଅବଲମ୍ବନ, ବି. କ୍ଳୀ. (ଅବ-ଲମ୍ବ-ଅନ) ଆଶ୍ରୟ; ଗ୍ରହଣ ।

ଅବଳା, ବି. ସ୍ତ୍ରୀ. (ଅ-ବଳ-ଆ) ସ୍ତ୍ରୀଲୋକ । ଯଥା—

ବୋଧନ୍ତି ରାମ ସିଂହାବଲୋକନେ ଅବଳା,
ବଳାକାପନ୍ତ୍ତି କରନ୍ତି ଧ୍ରୁବକୁ ଅବଳା ସେ । ବୈ. ବି. ୮

ଅବଲୀଢ଼, ବିଂ. ( ଅବ-ଲୀହ-ତ ) ଭକ୍ଷିତ; ବିନାଶିତ ।

ଅବଲୀଳା, ବି. ସ୍ତ୍ରୀ. (ଅବ-ଲୀଳା=କ୍ରୀଡ଼ା) ଅନାୟାସ, ଅକ୍ଲେଶ ।

ଅବଲୁଣ୍ଠନ, ବି. ନ. (ଅବ-ଲୁଣ୍ଠ୍-ଅନ) ଭୂମିରେ ଗଡ଼ିବା ବା ଲୋଟିବା ।

ଅବଲେପ, ବି. ପୁଂ. (ଅବ-ଲିପ-ଅ) ଗର୍ବ ; ପ୍ରଲେପ ; ଦୂଷଣ ; ବିଦ୍ୱେଷ ; ଅଧିକ୍ଷେପ ; ଲେପନ ; ଆକ୍ଷେପ ।

ଅବଲେହ, ବି. ପୁଂ. (ଅବ-ଲିହ୍-ଅ) ଜିହ୍ୱାଦ୍ୱାରା ଚାଟିବାର ଔଷଧ ପ୍ରଭୃତି ।

ଅବଲେହ୍ୟ, ବିଂ. (ଅବ-ଲିହ-ଯ) ଚାଟିବାର ଯୋଗ୍ୟ, ଯାହା ଚଟାଯାଏ ।

ଅବଲୋକନ, ବି. ନ. (ଅବ-ଲୋକ୍-ଅନ) ଦର୍ଶନ, ଦୃଷ୍ଟିପାତ ।

ଅବବାଦ, ବି. ପୁଂ. ( ଅବ-ବଦ୍-ଅ ) ନିନ୍ଦା; ଆଦେଶ; ବିଶ୍ୱାସ ।

ଅବବାହିକା, ବି. ସ୍ତ୍ରୀ. (ଅବ-ବାହିକା) ନଦୀର ଉଭୟ ପାର୍ଶ୍ୱରୁ ଯେତେଦୂରର ଜଳ ଆସି ନଦୀରେ ପଡ଼େ, ସେତେଦୂରର ଭୂମିକୁ ସେହି ନଦୀର ଅବବାହିକା କହନ୍ତି ।

ଅବଶ, ବିଂ. (ଅ-ବଶ୍-ଅ) ଅନାୟତ୍ତ, ପରାଧୀନ ।

ଅବଶିଷ୍ଟ, ବିଂ. (ଅବ-ଶିଷ୍-ତ) ପରିଶିଷ୍ଟ, ବାକି ।

ଅବଶେଷ, ବି. ପୁଂ. (ଅବ-ଶିଷ୍-ଅ) ପରିଶେଷ, ଶେଷ ।

ଅବଶ୍ୟ, ଅଂ. ନିଶ୍ଚୟ, ସର୍ବଥା । ଯଥା—

> କହନ୍ତି ଦେବଗଣ ଅବଶ୍ୟ ତୁମ୍ଭର ପ୍ରାଣ
> ନେବ ଏହାର ଅଷ୍ଟମ ଗର୍ଭ ବଳରେ ।     ର. କ.

ଅବଶ୍ୟମ୍ଭାବୀ, ବିଂ. ( ଅବଶ୍ୟଂ-ଭୂ-ଇନ୍ ) ଯାହା ନିଶ୍ଚୟ ହେବ, ଅନିବାର୍ଯ୍ୟ ।

ଅବଶ୍ୟାୟ, ବି. ପୁଂ. (ଅବ-ଶୈ୍ୟ-ଅ) ଯହିଁରୁ ଲୋକେ ଶୀତଳତା ପ୍ରାପ୍ତ ହୁଅନ୍ତି, ହିମ, ଶିଶିର, ନୀହାର; ଅଭିମାନ ।

ଅବଷ୍ଟମ୍ଭ, ବି. ପୁଂ. (ଅବ-ସ୍ତମ୍ଭ୍-ଅ) ଆରମ୍ଭ; ଉତ୍କର୍ଷ; ସ୍ପର୍ଦ୍ଧା; ସ୍ତମ୍ଭୀଭାବ; କୋଷ୍ଠବଦ୍ଧତା ।

ଅବସଥ, } ବି. ପୁଂ. (ଅ-ବସ୍-ଅଥ, ସ୍ୱାର୍ଥେଯ)
ଅବସଥ୍ୟ, } ଗ୍ରାମ, ଆବାସ ।

ଅବସନ୍ନ, ବିଂ. (ଅବ-ସଦ୍-ତ) ଶ୍ରାନ୍ତ, କ୍ଲାନ୍ତ, ଦୁର୍ବଳ; ବିନଷ୍ଟ ।

ଅବସବ୍ୟ, ବି. ନ. (ଅବ-ସବ୍ୟ) ଦକ୍ଷିଣ, ଡାହାଣ; ପ୍ରତିକୂଳ ।

ଅବସର, ବି. ପୁଂ (ଅବ-ସୃ-ଅ) ଅବକାଶ, ଛୁଟି ।

ଅବସାଦ, ବି. ପୁଂ. (ଅବ-ସଦ୍-ଅ) କ୍ଳାନ୍ତ, ଶ୍ରାନ୍ତ, ଦୁର୍ବଳତା; ବିନାଶ; ବିଷାଦ । ଯଥା —

> ଅତି ତୃଷ୍ଣାବେଗେ ଦଇନ୍ତ ଅବସାଦେ କହନ୍ତି । ଚ. ଭା.

ଅବସାନ, ବି. ନ. (ଅବ-ସୋ-ଅନ) ଶେଷ, ସମାପ୍ତି; ମରଣ ।

ଅବସ୍କର, ବି. ପୁଂ. ( ଅବ-କୃ-ଅ ) ଆବର୍ଜନା, ମଇଳା, ବିଷ୍ଠା ।

ଅବସ୍ତୁ, ବିଂ. (ଅ-ବସ୍ତୁ) ଅସାର ।

ଅବସ୍ଥା, ବି. ସ୍ତ୍ରୀ. (ଅବ-ସ୍ଥା-ଆ) ଦଶା; ସ୍ଥିତି; ପରିମାଣ ।

ଅବସ୍ଥାନ, ବି. ନ. (ଅବ-ସ୍ଥା-ଅନ) ସ୍ଥିତି ।

ଅବସ୍ଥାପିତ, ବିଂ. (ଅବ-ସ୍ଥା-ପିତ) ସ୍ଥିରୀକୃତ, ନିର୍ଦ୍ଧାରିତ ।

ଅବସ୍ଥିତି, ବି. ସ୍ତ୍ରୀ. (ଅବ-ସ୍ଥା-ତି) ଅବସ୍ଥାନ, ବାସ ।

ଅବହସ୍ତ, ବି. (ଅବ-ହସ୍ତ) ହସ୍ତପୃଷ୍ଠ ।

ଅବହାର, ବି. ପୁଂ. (ଅବ-ହୃ-ଅ) ହାଙ୍ଗର ନାମକ ବୃହତ୍ ଜଳଜନ୍ତୁ ; ଚୋର ; ଉପହାର; ଦେୟ ବସ୍ତୁ ।

ଅବହିତ, ବିଂ. ( ଅବ-ଧା-ତ ) ମନୋଯୋଗୀ ।

> ବରିଙ୍କ ଗମ୍ଭୀରଦେଶ ଶ୍ରବଣ କାରଣ
> ପ୍ରେମାବେଶେ ଅହା ଯେତେ ସର୍ବେ ଅବହିତ ! ଭ. ବ.

ଅବହିତ୍ଥା, ବି. ସ୍ତ୍ରୀ. (ଅ-ବହିଃ-ସ୍ଥା-ଅ-ଆ) ଆକାର ଗୋପନ, ଛଦ୍ମବେଶ; ମନୋଭାବ ଗୋପନ ।

ଅବହେଳା, ବି. ସ୍ତ୍ରୀ. (ଅବ-ହେଡ୍=ଅନାଦର କରିବା-ଅ-ଆ) ଅବଜ୍ଞା, ଅନାଦର; ଅନାସ୍ଥା ।

ଅବାକ୍, ବିଂ. (ଅ-ବାଚ୍-ଂ) ବାକ୍ୟହୀନ । ବି. (ଅବ-ଅଞ୍ଚ୍=ଗମନ କରିବା-ଂ) ଅଧଃ, ନିମ୍ନ; ନିକୃଷ୍ଟ କାଳ; ଦକ୍ଷିଣ ଦିଗ; ବିସ୍ମିତ ।

ଅବାଚୀ, ବି. ସ୍ତ୍ରୀ. (ଅବାକ୍=ଦକ୍ଷିଣ-ଈ) ଦକ୍ଷିଣ ଦିଗ ।

ଅବାଚୀନ, ବିଂ. (ଅବାଚ୍-ଈନ) ଦକ୍ଷିଣଦିଗସ୍ଥ, ଦକ୍ଷିଣଦେଶୀୟ ।

ଅବାଚ୍ୟ, ବି. ନ. (ଅ-ବାଚ୍ୟ=କଥନୀୟ) ନିନ୍ଦିତ ବାକ୍ୟ । ବିଂ. ଅବକ୍ତବ୍ୟ ।

ଅବାତବିକ୍ଷୋଭିତ, ବିଂ. (ଅ-ବାତ-ବିକ୍ଷୋଭିତ) ଯାହା ବାୟୁଦ୍ୱାରା ଚଳିତ ନୁହେ ।

ଅବାଧ, ବିଂ. (ଅ-ବାଧା) ନିର୍ବିଘ୍ନ, ଅନାୟାସ; ଉଚ୍ଛୃଙ୍ଖଳ ବା ନିରଙ୍କୁଶ ।

ଅବାଧ୍ୟ, ବିଂ. (ଅ-ବାଧ୍-ଯ) ଅବଶୀଭୂତ ।

ଅବାନ୍ତର, ବିଂ. (ଅବ-ଅନ୍ତର) ମଧ୍ୟଗତ, ଅନ୍ତଃପାତୀ; ବିଶେଷ ।

ଅବାପିତ, ବିଂ. (ଅବ-ଆପ୍-ଇ-ତ) ପ୍ରାପିତ, ଅଧିଗମିତ । (ଅ-ବାପିତ) ଯାହା ରୋପିତ ନୁହେ ।

ଅବାପ୍ତ, ବିଂ. (ଅବ-ଆପ୍-ତ) ପ୍ରାପ୍ତ, ଅଧିଗତ ।

ଅବାରଣୀୟ, ବିଂ. (ଅ-ବାର୍=ନିବାରଣ କରିବା-ଅନୀୟ) ଅନିବାର୍ଯ୍ୟ, ଦୁର୍ବାର ।

ଅବାରିତ, ବିଂ. (ଅ-ବାର୍-ତ) ଯେଉଁ ସ୍ଥାନକୁ ଯିବାକୁ ମନା ନାହିଁ ।

ଅବାର୍ଯ୍ୟ, ବିଂ. (ଅ-ବାର୍-ଯ) ଦୁର୍ବାର, ଅନିବାରଣୀୟ ।

ଅବାସ୍ତବ, ବିଂ. (ଅ-ବାସ୍ତବ) ଅମୂଳକ, ଅପ୍ରକୃତ ।

ଅବି, ବି. ପୁଂ. (ଅବ୍-ଇ) ପ୍ରଭୁ, ସ୍ୱାମୀ; ସୂର୍ଯ୍ୟ; ପର୍ବତ; ମେଷ ।

ଅବିକ, ବି. ନ. (ଅବି-କ) ହୀରକ ।

ଅବିକଚ, ବିଂ. (ଅ-ବିକଚ) ଅପ୍ରସ୍ଫୁଟ, ଅପ୍ରକାଶିତ ।

ଅବିକଳ, ବିଂ. (ଅ-ବିକଳ=ଅସମ୍ପୂର୍ଣ୍ଣ) ଠିକ୍, ଯଥାଯଥ ।

ଅବିକୃତ, ବିଂ. (ଅ-ବି-କୃ-ତ) ପ୍ରକୃତ, ଯଥାଭୂତ, ଯାହା ବିକୃତ ହୋଇ ନାହିଁ ।

ଅବିକ୍ରୀତ, ବିଂ. (ଅ-ବିକ୍ରୀତ) ବିକ୍ରୀତ ନୁହେ, ଯାହା ବିକ୍ରୟ କରା ଯାଏ ନାହିଁ ।

ଅବିକ୍ରେୟ, ବିଂ. (ଅ-ବିକ୍ରେୟ) ବିକ୍ରୟ କରିବାର ଉପଯୁକ୍ତ ନୁହେ ।

ଅବିକ୍ଷିପ୍ତ, ବିଂ. (ଅ-ବିକ୍ଷିପ୍ତ) ଚଞ୍ଚଳ ନୁହେ, ଅଚଞ୍ଚଳ ।

ଅବିଗୁଣ, ବି. (ପ୍ରା) ଅନିଷ୍ଟ, ଅଶୁଭଫଳ ।

ଅବିଘ୍ନ, ବିଂ. (ଅ-ବିଘ୍ନ=ବାଧା) ନିରାପଦ, ନିର୍ବିଘ୍ନ ।

ଅବିଚଳିତ, ବିଂ. (ଅ-ବିଚଳିତ) ସ୍ଥିର, ଦୃଢ଼ ।

ଅବିଚାର, ବି. ପୁଂ. (ଅ-ବିଚାର) ଅନ୍ୟାୟ ବିଚାର, ଅତ୍ୟାଚାର ।

ଅବିଚ୍ଛିନ୍ନ, ବିଂ. (ଅ-ବି-ଛିଦ୍-ତ) ଯାହା ଛିନ୍ନ ନୁହେ ।

ଅବିଚ୍ଛେଦ, କ୍ରିଂ. ବିଂ. (ଅ-ବିଚ୍ଛେଦ) ବିଚ୍ଛେଦ ବ୍ୟତୀତ; ଅବାଧରେ; କ୍ରମାନ୍ୱୟରେ ।

ଅବିଜ୍ଞ, ବିଂ. (ଅ-ବିଜ୍ଞ) ମୂର୍ଖ, ଅପ୍ରବୀଣ ।

ଅବିଜ୍ଞେୟ, ବିଂ. (ଅ-ବିଜ୍ଞେୟ) ଅଜ୍ଞେୟ, ଅପରିଜ୍ଞେୟ, ଜ୍ଞାନାତୀତ ।

ଅବିତଥ, ବିଂ. (ଅ-ବିତଥ) ସତ୍ୟ, ଯଥାର୍ଥ ।

ଅବିଦିତ, ବିଂ. (ଅ-ବିଦିତ=ଜଣା) ଅଗୋଚର, ଅଜଣା ।

ଅବିଦ୍ଧକର୍ଣ୍ଣୀ, ବି. ସ୍ତ୍ରୀ. (ଅ-ବିଦ୍ଧ-କର୍ଣ୍ଣ) ଯାହାର ପତ୍ର କର୍ଣ୍ଣରୁ ଭିନ୍ନ ନୁହେ, ଅକାନବିନ୍ଧା ଗଛ ।

ଅବିଦ୍ୟ, ବିଂ. (ଅ-ବିଦ୍ୟା=ଜ୍ଞାନ) ଅଳ୍ପବିଦ୍ୟ, ମୂର୍ଖ ।

ଅବିଦ୍ୟମାନ, ବିଂ. (ଅ-ବିଦ୍ୟମାନ) ଅଭାବ, ଅଦର୍ଶନ, ଅଦୃଷ୍ଟ ।

ଅବିଦ୍ୟା, ବି. ସ୍ତ୍ରୀ. (ଅ-ବିଦ୍ୟା=ଜ୍ଞାନ) ଅଜ୍ଞାନ, ମାୟା; ପ୍ରକୃତି । ଯଥା—

ଅବଧ୍ୟ ବଧନ-ଅଶୀବିଷଯୋଗ ଜନେ,
ଭିନ ଭିନେ ପଡ଼ିଥିଲେ ସେ ସ୍ଥାନ ଗମନେ ହେ । କୋ. ନ୍ତ୍ର.

ଅବିଧି, ବିଂ. (ଅ-ବିଧି=ନିୟମ) ନିୟମରହିତ, ଶାସ୍ତ୍ରବିଧିବିରୁଦ୍ଧ ।

ଅବିଧେୟ, ବିଂ.(ଅ-ବିଧେୟ)ଅଯୋଗ୍ୟ,ଅନୁଚିତ ।

ଅବିନୟ, ବି. ପୁଂ. (ଅ-ବିନୟ = ନମ୍ରତା, ଶିଷ୍ଟାଚାର) ଧୃଷ୍ଟତା, ଔଦ୍ଧତ୍ୟ, ଗର୍ବ । ଯଥା—

ଧରେ କର୍ଣ୍ଣ ଅବିନୟ-ଚିତ୍ତ-କର୍ଣ୍ଣଧାର । ଭ. ବ.

ଅବିନଶ୍ୱର, ବିଂ. ( ଅ-ବିନଶ୍ୱର ) ଅକ୍ଷୟ, ଅବିନାଶୀ ।

ଅବିନାଶୀ, ବିଂ. (ଅ-ବିନାଶୀ) ଯାହାର ବିନାଶ ନାହିଁ, ଅକ୍ଷୟ ।

ଅବିନୀତ, ବିଂ. (ଅ-ବିନୀତ=ନମ୍ର) ଉଦ୍ଧତ, ଗର୍ବୀ ।

ଅବିଭକ୍ତ, ବିଂ.(ଅ-ବିଭକ୍ତ) ବିଭକ୍ତ ନୁହେ, ଅଖଣ୍ଡ ।

ଅବିଭାଜ୍ୟ, ବିଂ. (ଅ-ବି-ଭଜ୍-ଯ) ଯାହା ବିଭାଗଯୋଗ୍ୟ ନୁହେ, ସୂକ୍ଷ୍ମ ।

ଅବିମୃଷ୍ୟ, ବିଂ. (ଅ-ବି-ମୃଶ୍-ଯ) ଅବିବେଚକ ।

ଅବିମୃଷ୍ୟକାରୀ, ବିଂ. (ଅ-ବି-ମୃଶ୍=ବିବେଚନା କରିବା-ଯ କୃ-ଇନ୍) ଯେ ବିବେଚନା ନ କରି କାର୍ଯ୍ୟ କରେ ।

ଅବିମୃଷ୍ୟକାରିତା, ବି. ସ୍ତ୍ରୀ. (ଅବିମୃଷ୍ୟକାରିନ୍-ତା) ଅବିବେଚନା ।

ଅବିର, ଅବୀର, ବି. (ଦେଶଜ) ଫଗୁ, ରକ୍ତବର୍ଣ୍ଣ ଚୂର୍ଣ୍ଣବିଶେଷ ।

ଅବିରତ, ବିଂ. ( ଅ-ବି-ରମ୍-ତ ) ଅନବରତ, ସତତ, ଅବିଶ୍ରାନ୍ତ । ଯଥା—

ବହିଲ ନିର୍ଝର-ଝର ଝର ଅବିରତ,
ବିଶେଷ ତରଙ୍ଗ ରଙ୍ଗ ରଙ୍ଗିଣୀ ଶୋଭିତ ସେ । ବୈ. ବ.

ଅବିରଳ, ବିଂ. ( ଅ-ବିରଳ ) ନିବିଡ଼, ଘନ; ଅବିଶ୍ରାନ୍ତ ।

ଅବିରାମ, ବିଂ. (ଅ-ବିରାମ=ବିଶ୍ରାମ) ଅନବରତ, ସତତ, ଅବିଶ୍ରାନ୍ତ ।

ଅବିରୋଧ, ବିଂ. ( ଅ-ବିରୋଧ=ବାରଣ ) ନିର୍ବିଘ୍ନ, ଅନାୟାସ । ଯଥା—

ଅବିରୋଧେ ଅବରୋଧେ ପ୍ରବେଶ କଲେ,
ଗନ୍ଧର୍ବ ଗୀତ ସ୍ୱର ଗାଉଥିଲେ ଯେତେ । କୋ. ନ୍ତ୍ର.

ଅବିଲମ୍ବ, ବିଂ. (ଅ-ବିଲମ୍ବ) ଶୀଘ୍ର, ତ୍ୱରିତ ।

ଅବିବାହିତ, ବିଂ. (ଅ-ବିବାହିତ) ଯାହାର ବିବାହ ହୋଇ ନାହିଁ, ଅପରିଣୀତ ।

ଅବିବେକ, ବିଂ. ( ଅ-ବିବେକ ) ବିବେକଶୂନ୍ୟ, ଅଜ୍ଞାନ ।

ଅବିବେଚକ, ବିଂ. ( ଅ-ବିବେଚକ ) ଯାହାର ବିବେଚନା ନାହିଁ, ବିବେଚନାଶୂନ୍ୟ ।

ଅବିଶୁଦ୍ଧ, ବିଂ. ( ଅ-ବିଶୁଦ୍ଧ ) ନିର୍ଦ୍ଦୋଷ ନୁହେ, ମଳିନ, ଅପବିତ୍ର ।

ଅବିଶ୍ରାନ୍ତ, ବିଂ. ( ଅ-ବି-ଶ୍ରମ୍-ତ ) ସତତ, ଅନବରତ ।

ଅବିଶ୍ରୁତ, ବିଂ. ( ଅ-ବିଶ୍ରୁତ ) ବିଖ୍ୟାତ ନୁହେ, ଅପ୍ରସିଦ୍ଧ ।

ଅବିଶ୍ୱାସ, ବି. ପୁଂ. (ଅ-ବିଶ୍ୱାସ) ବିଶ୍ୱାସର ଅଭାବ, ଅପ୍ରତ୍ୟୟ ।

ଅବିଷ, ବି. ପୁଂ. ( ଅବ୍-ଇଷ ) ସମୁଦ୍ର; ରାଜା; ଆକାଶ । ବିଂ. ବିଷହୀନ ।

ଅବିହିତ, ବିଂ. ( ଅ-ବି-ଧା-ତ ) ଅନିୟମିତ, ଅସଙ୍ଗତ ।

ଅବୁଝ, ବିଂ. ( ଅ-ବୁଝ ) ଯେ ବିବେଚନା କରେ ନାହିଁ, ଯେ ବୁଝେ ନାହିଁ ।

ଅବେକ୍ଷଣ, ବି. ନ. ( ଅବ-ଈକ୍ଷଣ ) ଦର୍ଶନ; ଆଲୋଚନା ।

ଅବେଦ୍ୟ, ବିଂ. (ଅ-ବିଦ୍-ଯ) ଅଜ୍ଞେୟ, ଅନବଗମ୍ୟ ।

ଅବେଳା, ବି. ସ୍ତ୍ରୀ. ( ଦେଶଜ ) ଯେଉଁ ସମୟରେ କୌଣସି ବିଶେଷ କର୍ମ ହୋଇ ପାରେ ନାହିଁ, ଅସମୟ, ଅପ୍ରକୃତ ବେଳା ।

ଅବୈତନିକ, ବିଂ. ( ଅ-ବେତନ-ଇକ ) ଯେ ବେତନଭୋଗୀ ନୁହେ ।

ଅବୈଧ, ବିଂ. ( ଅ-ବିଧି-ଅ ) ଅସଙ୍ଗତ, ଅଯୌକ୍ତିକ ।

ଅବୋଧ, ବିଂ. ( ଅ-ବୋଧ ) ମୂର୍ଖ, ବୁଦ୍ଧିହୀନ, ନିର୍ବୋଧ ।

ଅବ୍ଦ, ବି. ନ. (ଅବ୍-ଦ) ବତ୍ସର; ପର୍ବତବିଶେଷ; ମେଘ ।

ଅବ୍ୟକ୍ତ, ବିଂ.(ଅ-ବ୍ୟକ୍ତ=ପ୍ରକାଶିତ) ଅପ୍ରକାଶିତ । ବି. ନ. ପରବ୍ରହ୍ମ; ପ୍ରକୃତି; ଆତ୍ମା । ବି. ପୁଂ. ବିଷ୍ଣୁ; ଶିବ; କନ୍ଦର୍ପ; ମୂର୍ଖ ।

ଅବ୍ୟକ୍ତରାଗ, ବି. ପୁଂ. (ଅ-ବ୍ୟକ୍ତ-ରାଗ) ଲୋହିତ ବର୍ଣ୍ଣ; ଅପ୍ରକାଶ୍ୟ ଅନ୍ତଃସ୍ଥ ଅଭିଳାଷ ।

ଅବ୍ୟଥ, ବିଂ. ( ଅ-ବ୍ୟଥା ) ବ୍ୟଥାଶୂନ୍ୟ, ପୀଡ଼ା-ଶୂନ୍ୟ ।

ଅବ୍ୟୟ, ବି. ପୁଂ. ନ. (ଅ-ବି-ଇ-ଅ) ଯେଉଁ ପଦ ଶବ୍ଦର ଉତ୍ତରରେ ବିଭକ୍ତି ନ ଥାଏ । ଯଥା— ଆଃ, ଓ, ଛି ଇତ୍ୟାଦି ।

ଅବ୍ୟୟ, ବି. ପୁଂ. ( ଅ-ବ୍ୟୟ=ନାଶ ) ଯାହାର ବିନାଶ ନାହିଁ, ବିଷ୍ଣୁ; ଶିବ; ବ୍ରହ୍ମା । ବିଂ. ଅକ୍ଷୟ, ବ୍ୟୟରହିତ ।

ଅବ୍ୟୟୀଭାବ, ବି. ପୁଂ. (ଅବ୍ୟୟ-ଭାବ) ସମାସ-ବିଶେଷ; ବ୍ୟୟଶୂନ୍ୟତା ।

ଅବ୍ୟର୍ଥ, ବିଂ. ( ଅ-ବ୍ୟର୍ଥ ) ଯାହା ବ୍ୟର୍ଥ ହୁଏ ନାହିଁ, ସଫଳ ।

ଅବ୍ୟବଧାନ, ବିଂ. ( ଅ-ବ୍ୟବଧାନ ) ବ୍ୟବଧାନ-ଶୂନ୍ୟ ।

ଅବ୍ୟବସ୍ଥା, ବି. ସ୍ତ୍ରୀ. (ଅ-ବି-ଅବ-ସ୍ଥା ଆ) ଅବିଧି, ଅନିୟମ ।

ଅବ୍ୟବସ୍ଥିତ, ବିଂ. ( ଅ-ବ୍ୟବସ୍ଥା-ତ ) ଅସ୍ଥିର, ଚଞ୍ଚଳ । ଯଥା—

> ଅବ୍ୟବସ୍ଥିତଚିତ୍ତସ୍ୟ, ପ୍ରସାଦୋଽପି ଭୟଙ୍କରଃ ।

ଅବ୍ୟବହାର୍ଯ୍ୟ, ବିଂ. (ଅ-ବ୍ୟବହାର୍ଯ୍ୟ) ବ୍ୟବହାର ଯୋଗ୍ୟ ନୁହେ, ଅକର୍ମଣ୍ୟ ।

ଅବ୍ୟବହିତ, ବିଂ. (ଅ-ବ୍ୟବ ଧା-ତ) ବ୍ୟବଧାନ-ଶୂନ୍ୟ, ଅନ୍ତରାଳଶୂନ୍ୟ, ନିକଟସ୍ଥ, ସଂଲଗ୍ନ ।

ଅବ୍ୟାଜ, ବି. ପୁଂ. (ଅ-ବ୍ୟାଜ) ଅକପଟ,ସାରଲ୍ୟ । ବିଂ. ସରଳ, ଅକୃତ୍ରିମ ।

ଅବ୍ୟାପାର, ବି. ପୁଂ. (ଅ-ବ୍ୟାପାର) ଅବ୍ୟବସାୟ, ଯଥା—

> ଅବ୍ୟାପାରେଷୁ ବ୍ୟାପାରଂ ଯୋ ନରଃ କର୍ତ୍ତୁମିଚ୍ଛତି,
> ସ ଏବ ନିଧନଂ ଯାତି, କୀଳୋତ୍ପାଟୀବ ବାନରଃ ।
>
> ହିତୋପଦେଶ ।

ଅବ୍ୟାହତ, ବିଂ. (ଅ-ବି-ଆ-ହନ୍-ତ) ବ୍ୟାଘାତ-ରହିତ ।

ଅବ୍ୟାହୃତି, ବି.ସ୍ତ୍ରୀ. (ଅ-ବି-ଆ-ହନ୍-ତି) ନିଷ୍କୃତି, ରକ୍ଷା, ପରିତ୍ରାଣ ।

ଅଶକୁନ, ବି. ନ. ( ଦେଶଜ ) ଅନିଷ୍ଟସୂଚକ କାକାଦି ଦର୍ଶନ, ଅମଙ୍ଗଳ ।

ଅଶକ୍ତ, ବିଂ. (ଅ-ଶକ୍-ତ ) ଅସମର୍ଥ, ଅପାରଗ ।

ଅଶକ୍ୟ, ବିଂ. ( ଅ-ଶକ୍-ଯ ) ଅସାଧ୍ୟ, ଶକ୍ତିର ବହିର୍ଭୂତ ।

ଅଶନ, ବି. ନ. ( ଅଶ୍=ଭୋଜନ କରିବା-ଅନ ) ଭୋଜନ, ଭକ୍ଷ୍ୟବସ୍ତୁ ।

ଅଶନି, ବି. ପୁଂ. ସ୍ତ୍ରୀ. (ଅଶ୍-ଅନି) ବଜ୍ର; ବିଦ୍ୟୁତ୍ ।

ଅଶରୀର, ବିଂ. (ଅ-ଶରୀର=ଦେହ) ଦେହହୀନ, ନିରାକାର । ବି. ପୁଂ. କନ୍ଦର୍ପ ।

ଅଶରୀରୀ, ବି. ପୁଂ. ( ଅ-ଶରୀର-ଇନ୍ ) କନ୍ଦର୍ପ, ଅନଙ୍ଗ । ବିଂ. ଶୂନ୍ୟ । ଯଥା—

> ପ୍ରମଦନ ଧନୁ ଧରେ ଅଶରୀର ବାଣୀ ।

ଅଶର୍ମ, ବି. ନ. (ଅ-ଶର୍ମନ୍=ସୁଖ) ଦୁଃଖ,କ୍ଳେଶ ।

ଅଶାନ୍ତ, ବିଂ. ( ଅ-ଶମ୍-ତ ) ଅଶିଷ୍ଟ, ଦୁଷ୍ଟ, ଦୁରନ୍ତ, ଉଦ୍ଧତସ୍ୱଭାବ ।

ଅଶାନ୍ତି, ବି. ସ୍ତ୍ରୀ. (ଅ-ଶମ୍-ତି) ଉପଦ୍ରବ, ଗୋଳ-ମାଳ; ଦୁଃଖ ।

ଅଶାସନ, ବି. ନ. (ଅ-ଶାସନ) ଶାସନର ଅଭାବ, ଅରାଜକତା ।

ଅଶାସ୍ତ୍ର, ବ. ନ. (ଅ-ଶାସ୍ତ୍ର) ଅପର ଶାସ୍ତ୍ର, ବେଦବିରୁଦ୍ଧ ଶାସ୍ତ୍ର; ଅବିଧି ।

ଅଶିକ୍ଷିତ, ବଂ. ( ଅ-ଶିକ୍ଷିତ ) ଯେ ଲେଖାପଢ଼ା ଶିଖିନାହିଁ, ଅନଭିଜ୍ଞ, ମୂର୍ଖ ।

ଅଶିବ, ବ. ନ. ( ଅ-ଶିବ ) ଅମଙ୍ଗଳ, ଅଶୁଭ, ଅକଷ୍ଟ ।

ଅଶିଷ୍ଟ, ବଂ. (ଅ-ଶିଷ୍ଟ=ଭଦ୍ର) ଦୁରନ୍ତ, ଅଶାନ୍ତ ।

ଅଶୀତି, ବଂ. ୮୦ ସଂଖ୍ୟା, ଅଶୀ ।

ଅଶୁଚି, ବଂ. (ଅ-ଶୁଚି=ପବିତ୍ର) ଅପବିତ୍ର ।

ଅଶୁଦ୍ଧ, ବଂ. (ଅ-ଶୁଦ୍ଧ) ଅପବିତ୍ର; ଅଶୁଚି ।

ଅଶୁଦ୍ଧି, ବ. ସ୍ତ୍ରୀ. ( ଅ-ଶୁଦ୍ଧି=ପବିତ୍ରତା ) ଅପବିତ୍ରତା ।

ଅଶୁଭ, ବ. ନ. ( ଅ-ଶୁଭ=ମଙ୍ଗଳ ) ଅମଙ୍ଗଳ, ପାପ । ବଂ. ଅମଙ୍ଗଳଯୁକ୍ତ ।

ଅଶୃତ, ବଂ. (ଅ-ଶୃତ) ଅପକ୍ୱ, କଞ୍ଚା ।

ଅଶେଷ, ବଂ. (ଅ-ଶେଷ) ସମ୍ପୂର୍ଣ୍ଣ, ସମୁଦାୟ ।

ଅଶୋକ, ବ. ପୁଂ. ( ଅ-ଶୋକ ) ବୃକ୍ଷବିଶେଷ, କଥିତ ଅଛି, ଏହି ବୃକ୍ଷ ତଳେ ଗୌରୀ ତପସ୍ୟା କରି ସିଦ୍ଧମନୋରଥା ଓ ଶୋକହୀନା ହୋଇଥିଲେ; ରାଜାବିଶେଷ । ନ. ପାରଦ । ବଂ. ଶୋକହୀନ ।

ଅଶୋକାଷ୍ଟମୀ, ବ.ସ୍ତ୍ରୀ. (ଅଶୋକ-ଅଷ୍ଟମୀ) ଚୈତ୍ର ଶୁକ୍ଳ ଅଷ୍ଟମୀରେ କୃତ ବ୍ରତବିଶେଷ ।

ଅଶୌଚ, ବ. ନ. ( ଅ-ଶୌଚ=ଶୁଦ୍ଧି ) ଅଶୁଦ୍ଧି; ନିକଟ ଜ୍ଞାତି ମଧ୍ୟରୁ କାହାରି ମୃତ୍ୟୁରେ ବା ଜନ୍ମରେ ଯେଉଁ ଅଶୁଦ୍ଧି ହୁଏ ।

ଅଶ୍ମ, ବ. ପୁଂ. ( ଅଶ୍=ବ୍ୟାପ୍ତ ହେବାର+ମ ) ପ୍ରସ୍ତର, ପର୍ବତ; ମେଘ ।

ଅଶ୍ମଗର୍ଭ, ବ. ପୁଂ. ( ଅଶ୍ମ-ଗର୍ଭ ) ମର୍କତମଣି, ସବୁଜବର୍ଣ୍ଣ ମଣିବିଶେଷ ।

ଅଶ୍ମଜ, ବ. ନ. ( ଅଶ୍ମ=ପର୍ବତ-ଜ=ଜାତ ହେବାର ) ଯାହା ପର୍ବତରେ ଜାତ ହୁଏ, ଶିଳାଜତୁ, ଗିରିମାଟି, ଲୌହ ଇତ୍ୟାଦି ।

ଅଶ୍ମଦାରଣ, ବ. ପୁଂ. ( ଅଶ୍ମ-ଦାରଣ=ଯେ ବିଦାରଣ କରେ ) ଚକମକି; କିମ୍ବା ଲୁହାର ଯୋଡ଼ା; ପାଷାଣଭେଦକ ଅସ୍ତ୍ର; ମୁଦ୍ଗର, ଗାଇନ୍ତି ଇତ୍ୟାଦି ।

ଅଶ୍ମରୀ, ବ. ସ୍ତ୍ରୀ.(ଅଶ୍ମ-ର-ଈ) ପଥୁରିଆ ରୋଗ; ଏ ରୋଗରେ ପ୍ରସ୍ରାବଦ୍ୱାରରେ ଚୂର୍ଣ୍ଣମିଶ୍ରିତ ପ୍ରସ୍ତର ପରି ପଦାର୍ଥ ଜନ୍ମି ପଥରୋଧ କରେ, ମୂତ୍ରକୃଚ୍ଛ୍ର ରୋଗ ।

ଅଶ୍ରୁ, ବ. ନ. (ଅଶ୍=ବ୍ୟାପ୍ତ ହେବାର-ରୁ) ଚକ୍ଷୁର ଜଳ, ଲୋତକ; ରକ୍ତ, ଶୋଣିତ ।

ଅଶ୍ରଦ୍ଧା, ବ. ସ୍ତ୍ରୀ. ( ଅ-ଶ୍ରଦ୍ଧା ) ଘୃଣା; ଅଭକ୍ତି; ଅନାଦର; ଅବିଶ୍ୱାସ ।

ଅଶ୍ରପ, ବ. ପୁଂ. ( ଅଶ୍ର-ପ=ଯେ ପାନ କରେ ) ରାକ୍ଷସ, ନିଶାଚର ।

ଅଶ୍ରାନ୍ତ, ବଂ. (ଅ-ଶ୍ରାନ୍ତ) ଅନବରତ, ସତତ; ଅକ୍ଳାନ୍ତ ।

ଅଶ୍ରାବ୍ୟ, ବଂ. (ଅ-ଶ୍ରାବ୍ୟ) ଯାହା ଶ୍ରବଣଯୋଗ୍ୟ ନୁହେ, ଶ୍ରୁତିକଟୁ ।

ଅଶ୍ରୁ, ବ. ନ. ( ଅଶ୍-ରୁ ) ଲୋତକ, ଚକ୍ଷୁର ଜଳ । ଯଥା—

ବହେ ନେତ୍ରୁ ଅଶ୍ରୁ ପଡ଼ୁ ବକ୍ଷେ ପଡ଼ଇ ଧାର ।

ବୈ. ବ.

ଅଶ୍ରୁତ, ବଂ. ( ଅ-ଶ୍ରୁତ ) ଯାହା ଶୁଣା ହୋଇନାହିଁ ।

ଅଶ୍ରୁତପୂର୍ବ, ବଂ. (ଅ-ଶ୍ରୁତ-ପୂର୍ବ) ଯାହା ପୂର୍ବରେ ଶୁଣା ହୋଇ ନାହିଁ ।

ଅଶ୍ରେୟଃ, ବ. ନ. ( ଅ-ଶ୍ରେୟସ୍ ) ଅମଙ୍ଗଳ; ଅନର୍ଥ । ବଂ. ଅପ୍ରଶସ୍ତ ।

ଅଶ୍ରୋତ୍ରିୟ, ବ. ପୁଂ. (ଅ-ଶ୍ରୋତ୍ରିୟ) ବେଦାଧ୍ୟୟନବିହୀନ ବ୍ରାହ୍ମଣ ।

ଅଶ୍ଳୀଳ, ବଂ. (ଅ-ଶ୍ରୀ-ଲ) ଯାହା ଶ୍ରୀଯୁକ୍ତ (ସୁନ୍ଦର) ନୁହେ; ଲଜ୍ଜାଜନକ, ଜଘନ୍ୟ ।

ଅଶ୍ଳେଷା, ବ. ସ୍ତ୍ରୀ. ( ଅ-ଶ୍ଳେଷ=ଆଲିଙ୍ଗନ-ଆ ) ନବମ ନକ୍ଷତ୍ର । ଯଥା—

କାମବେଦ ରବିକା ଅଶ୍ଳେଷା ପଦ ।
ବଦନ ଶ୍ୟାମସ୍ୱଚ୍ଛ ଦୟା ସୁବଞ୍ଚ ଶୋ । କ. ପା.

ଅଶ୍ୱ, ବି. ପୁଂ. ( ଅଶ୍=ବ୍ୟାପ୍ତ ହେବା-ବ ) ଘୋଟକ, ଘୋଡ଼ା । ଘା,ସ୍ତ୍ରୀ. ଘୋଟକୀ,ଘୋଡ଼ୀ ।

ଅଶ୍ୱକର୍ଣ୍ଣ, ବି. ପୁଂ. ( ଅଶ୍ୱ-କର୍ଣ୍ଣ ) ଯାହାର ପତ୍ର ଘୋଡ଼ା କାନ ପରି, ଶାଳଗଛ ।

ଅଶ୍ୱଗନ୍ଧା, ବି. ସ୍ତ୍ରୀ. ( ଅଶ୍ୱ-ଗନ୍ଧା ) ଯେ ଗଛର ଚେର ଘୋଡ଼ା ଦେହର ଗନ୍ଧବିଶିଷ୍ଟ, ଶୁକ୍ର ବୃଦ୍ଧିକାରକ ବୃକ୍ଷବିଶେଷ ।

ଅଶ୍ୱତର, ବି. ପୁଂ. (ଅଶ୍ୱ-ତୃ-ଅ) ବେଗ ଗମନରେ ଅଶ୍ୱକୁ ସୁଦ୍ଧା ଯେ ପରାସ୍ତ କରି ପାରେ, ଗର୍ଦ୍ଦଭୀର ଗର୍ଭରେ ଅଶ୍ୱ ଔରସରେ ଜାତ ଘୋଟକ, ଖଚର; ସର୍ପବିଶେଷ ।

ଅଶ୍ୱତ୍ଥ, ବି. ପୁଂ. (ଅଶ୍ୱ=ବ୍ୟାପ୍ତ-ସ୍ଥା-ଅ) ସ୍ୱନାମ-ବିଖ୍ୟାତ ବୃକ୍ଷବିଶେଷ ।

ଅଶ୍ୱତ୍ଥାମା, ବି. ପୁଂ. (ଅଶ୍ୱ=ଘୋଟକ-ସ୍ଥାମ୍=ଶବ୍ଦ, ଯାହାର ଶବ୍ଦ ଘୋଟକ ଶବ୍ଦ ପରି ) ଦ୍ରୋଣଙ୍କ ଔରସରେ କୃପୀଙ୍କ ଗର୍ଭରେ ଜାତ ସନ୍ତାନ ।

ଅଶ୍ୱମୁଖ, ଅଶ୍ୱମୁଖୀ, ବି. (ଅଶ୍ୱ-ମୁଖ) ଯାହାଙ୍କର ମୁଖ ଅଶ୍ୱମୁଖ ପରି, କିନ୍ନର, କିନ୍ନରୀ ।

ଅଶ୍ୱମେଧ, ବି. ପୁଂ. ( ଅଶ୍ୱ-ମେଧ=ବଳି ) ଯଜ୍ଞ-ବିଶେଷ, ଯେଉଁ ଯଜ୍ଞରେ ଘୋଟକ ବଳି ଦିଆଯାଏ ।

ଅଶ୍ୱବିଦ୍, ବି. ପୁଂ. ( ଅଶ୍ୱ-ବିଦ୍ ) ଅଶ୍ୱବିଦ୍ୟା-ବିଶାରଦ, ନଳରାଜା ।

ଅଶ୍ୱଶାଳା, ବି. ସ୍ତ୍ରୀ. (ଅଶ୍ୱ-ଶାଳା) ମନ୍ଦୁରା, ଅସ୍ତାବଲ, ଘୋଡ଼ାର ଗୃହ ।

ଅଶ୍ୱସେନ, ବି. ପୁଂ. ସନତ୍କୁମାର ପିତା, ଦ୍ରୋଣା-ଚାର୍ଯ୍ୟଙ୍କ ସାରଥି ।

ଅଶ୍ୱାରି, ବି. ପୁଂ. (ଅଶ୍ୱ-ଅରି=ଶତ୍ରୁ) ମହିଷ, ମଇଁଷି ।

ଅଶ୍ୱାରୂଢ଼, ବିଂ. (ଅଶ୍ୱ-ଆରୂଢ଼) ଯେ ଅଶ୍ୱରେ ଆରୋହଣ କରିଅଛି ।

ଅଶ୍ୱାରୋହୀ, ବି.ପୁଂ. (ଅଶ୍ୱ-ଆରୋହୀ) ଯେ ସର୍ବଦା ଅଶ୍ୱରେ ଆରୋହଣ କରେ ।

ଅଶ୍ୱିନୀ, ବି. ସ୍ତ୍ରୀ. (ଅଶ୍ୱ-ଇନ୍-ଈ) ପ୍ରଥମନକ୍ଷତ୍ର; ଏ ନକ୍ଷତ୍ର ଆକାର ଅଶ୍ୱ ମସ୍ତକ ପରି ଦିଶୁ-ଥିବାରୁ ଏହାର ଏପରି ନାମକରଣ ହୋଇଅଛି । ଯଥା—

> ଚନ୍ଦ୍ର କେତୁବଦନ ଦେଖ ହରିମ,
> ଘୋଟକ ମୁଖ ଚାହେଁ ତାରକା ବେ ଗୋ । ଭ. ଗୀ.

ଅଶ୍ୱିନୀକୁମାର, ଅଶ୍ୱିନୀସୁତ, ବି.ପୁଂ. (ଅଶ୍ୱିନୀ-କୁମାର,ସୁତ=ପୁତ୍ର) ସୂର୍ଯ୍ୟପତ୍ନୀ ସଂଜ୍ଞା ଏକ ସମୟରେ ସୂର୍ଯ୍ୟଙ୍କ ତାପ ସହି ନ ପାରି ଘୋଟକୀ ରୂପ ଧାରଣ କରିଥିଲେ, ସୂର୍ଯ୍ୟ ତାହା ଜାଣି ସାରି ଘୋଟକ ରୂପରେ ସହବାସ କରିବାରୁ ଯେଉଁ ସନ୍ତାନଦ୍ୱୟ ଜନ୍ମିଥିଲେ, ସେମାନଙ୍କର ମୁଖ ଅଶ୍ୱମୁଖ ପରି ହେଲା, ଏହେତୁ ତାହାଙ୍କୁ ଅଶ୍ୱିନୀକୁମାର ବୋଲାଯାଏ, ସ୍ୱର୍ଗବୈଦ୍ୟ ।

ଅଷାଢ଼, ବି. (ଗ୍ରା; ଆଷାଢ଼ର ଅପଭ୍ରଂଶ) ଯେଉଁ ମାସର ପୂର୍ଣ୍ଣିମାରେ ଉତ୍ତରାଷାଢ଼ା ନକ୍ଷତ୍ର ହୁଏ ।

ଅଷ୍ଟ, ବିଂ. (ଅଷ୍ଟନ୍) ଆଠ ସଂଖ୍ୟା ।

ଅଷ୍ଟକ, ବି.ପୁଂ. (ଅଷ୍ଟନ୍-କ) ଆଠ ଅଧ୍ୟାୟବିଶିଷ୍ଟ ଗ୍ରନ୍ଥ ; ଆଠ ସଂଖ୍ୟାର ସମଷ୍ଟି; ଆଠ ଶ୍ଳୋକ-ଦ୍ୱାରା ଗ୍ରଥିତ ସ୍ତୋତ୍ରାଦି ।

ଅଷ୍ଟକର୍ଣ୍ଣ, ବି. ପୁଂ. (ଅଷ୍ଟ-କର୍ଣ୍ଣ ) ବ୍ରହ୍ମା ।

ଅଷ୍ଟକା, ବି. ସ୍ତ୍ରୀ. ( ଅଶ୍=ଭୋଜନ କରିବା-ତକ-ଆ ) ଶ୍ରାଦ୍ଧବିଶେଷ । ପୌଷ, ମାଘ ଓ ଫାଲ୍ଗୁନ ମାସର କୃଷ୍ଣାଷ୍ଟମୀ ।

ଅଷ୍ଟଦିକ୍, ଅଷ୍ଟଦିଗ୍, ବି. ସ୍ତ୍ରୀ. (ଅଷ୍ଟ-ଦିକ୍) ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ ଏହି ଚାରି ଦିଗ ଓ ଅଗ୍ନେୟ, ନୈଋତ, ବାୟବ୍ୟ, ଐଶାନ୍ୟ ଏହି ଚାରି ବିଦିଗ, ମୋଟ ୮ ଦିଗ ।

ଅଷ୍ଟଦିଗ୍ଗଜ, ବି. ପୁଂ. ଐରାବତ, ପୁଣ୍ଡରୀକ, ବାମନ, କୁମୁଦ, ଅଞ୍ଜନ, ପୁଷ୍ପଦନ୍ତ, ସାର୍ବଭୌମ, ସୁପ୍ରତୀକ ଏହି ଆଠ ଯଥାକ୍ରମରେ ପୂର୍ବାଦି ଦିଗ ଓ ବିଦିଗର ହସ୍ତୀ ।

ଅଷ୍ଟଦିକ୍ପାଳ, ବି. ପୁଂ. (ଅଷ୍ଟଦିକ୍-ପା-ଅ) ଆଠ ଦିଗର ଅଧିଷ୍ଠାତ୍ରୀ ଦେବତା । ପୂର୍ବାଦି ଦିଗ ଓ ବିଦିଗର ଅଧିପତି, ଯଥାକ୍ରମେ—

ଇନ୍ଦ୍ର, ଅଗ୍ନି, ଯମ, ନୈଋତ, ବରୁଣ, ବାୟୁ, କୁବେର ଓ ଈଶାନ ।

ଅଷ୍ଟଧା, ଅ°. (ଅଷ୍ଟ-ଧା) ଆଠ ପ୍ରକାର; ଆଠ ଥର ।

ଅଷ୍ଟଧାତୁ, ବି. ପୁଂ. ସୁନା, ରୁପା, ତମ୍ବା, ସୀସା, କାନ୍ତଲୌହ, ରଙ୍ଗ, ଲୁହା ଓ ଇସ୍ପାତ । ଯଥା—

ସ୍ୱର୍ଣଂ ରଜତଂ ତାମ୍ରଂ ସୀସକଂ କାନ୍ତକଂ ତଥା,
ବଙ୍ଗ ଲୌହଂ ତୀକ୍ଷ୍ଣ ଲୌହ ମିତ୍ୟଷ୍ଟୌ ଧାତବଃ ସ୍ମୃତାଃ ।

ଅଷ୍ଟନାଗ, ବି. ପୁଂ. ଅନନ୍ତ, ବାସୁକି, ତକ୍ଷକ, କର୍କୋଟକ, ପଦ୍ମ, ମହାପଦ୍ମ, ଶଙ୍ଖ, କୁଳୀର ଏହି ଅଷ୍ଟ ନାଗ ।

ଅଷ୍ଟନାୟିକା, ବି. ସ୍ତ୍ରୀ. (ଅଷ୍ଟ-ନାୟିକା) ଆଠ ପ୍ରକାର ନାୟିକା । ଯଥା—ଅଭିସାରିକା, କଳହାନ୍ତରିତା, ଖଣ୍ଡିତା, ବିପ୍ରଲବ୍ଧା, ପ୍ରୋଷିତ-ଭର୍ତ୍ତୃକା, ସ୍ୱାଧୀନଭର୍ତ୍ତୃକା, ଉତ୍କଣ୍ଠିତା, ବାସକ-ସଜ୍ଜା ।

ଅଷ୍ଟପାଦ, ବି. ପୁଂ. ( ଅଷ୍ଟ-ପାଦ ) ଉର୍ଣ୍ଣନାଭ, ଶରଭ, ବୁଢ଼ିଆଣୀ ପୋକ ।

ଅଷ୍ଟବସୁ, ବି. ପୁଂ. ( ଅଷ୍ଟ-ବସୁ ) ଦେବଗଣ-ବିଶେଷ, ଆପ, ଧ୍ରୁବ, ସୋମ,ଧର, ଅନିଳ, ଅନଳ, ପ୍ରତ୍ୟୁଷ, ପ୍ରଭାସ ।

ଅଷ୍ଟବିଧ, ବି°. ( ଅଷ୍ଟନ୍-ବିଧା ) ଅଷ୍ଟ ପ୍ରକାର, ଆଠ ପ୍ରକାର ।

ଅଷ୍ଟମ, ବି°. (ଅଷ୍ଟନ୍ ମ; ପୂରଣାର୍ଥରେ) ଆଠର ପୂରଣ । ମୀ, ସ୍ତ୍ରୀ. ତିଥିବିଶେଷ, ଅମାବାସ୍ୟା କିମ୍ବା ପୂର୍ଣ୍ଣିମାର ପରେ ଅଷ୍ଟମ ଦିବସ, ଯେଉଁ ତିଥିରେ ଅର୍ଦ୍ଧ ଚନ୍ଦ୍ର ହୁଏ ।

ଅଷ୍ଟମଙ୍ଗଳ, ବି. ପୁଂ. ( ଅଷ୍ଟ-ମଙ୍ଗଳ ) ଆଠ ପ୍ରକାର ମଙ୍ଗଳ ଦ୍ରବ୍ୟ । ଯଥା—
ବ୍ରାହ୍ମଣ, ଗୋ, ଅଗ୍ନି, ସୁବର୍ଣ୍ଣ, ଘୃତ, ସୂର୍ଯ୍ୟ, ଜଳ ଓ ରାଜା । ଏକ ପ୍ରକାର ଘୋଟକ, ଯାହାର ଆଠ ସ୍ଥାନରେ ଅର୍ଥାତ୍ ପଦ ଚତୁଷ୍ଟୟ, ପୁଚ୍ଛ, ମୁଖ, ପୃଷ୍ଠ ଏବଂ ବକ୍ଷସ୍ଥଳର କେଶ ସବୁ ଶୁକ୍ଳବର୍ଣ୍ଣ ।

ଅଷ୍ଟମଙ୍ଗଳା, ବି. ସ୍ତ୍ରୀ. ବିବାହର ଅଷ୍ଟମ ଦିବସ ।

ଅଷ୍ଟମୂର୍ତ୍ତି, ବି.ପୁଂ. (ଅଷ୍ଟ-ମୂର୍ତ୍ତି=ଆକାର ଯାହାର) ଶିବ, ଶିବଙ୍କର ଅଷ୍ଟମୂର୍ତ୍ତି । ଯଥା—
ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ, ଚନ୍ଦ୍ର, ସୂର୍ଯ୍ୟ ଓ ଯଜମାନ ।

ଅଷ୍ଟଲୌହକ, ବି. ନ. (ଅଷ୍ଟ-ଲୌହକ) ଅଷ୍ଟ-ଧାତୁ ।

ଅଷ୍ଟଶ୍ରବା, ବି. ପୁଂ. (ଅଷ୍ଟ-ଶ୍ରବସ୍ ) ବ୍ରହ୍ମା ।

ଅଷ୍ଟସିଦ୍ଧି, ବି. ସ୍ତ୍ରୀ. ଅଣିମାଦି ଆଠ ପ୍ରକାର ସିଦ୍ଧି (ଅଣିମାଦି ଦେଖ) ।

ଅଷ୍ଟାଙ୍ଗ, ବି. ପୁଂ. ଯମ, ନିୟମ, ଆସନ, ପ୍ରାଣା-ୟାମ, ପ୍ରତ୍ୟାହାର, ଧ୍ୟାନ, ଧାରଣା ଓ ସମାଧି ଏହି ଆଠ ପ୍ରକାର ଯୋଗ; ପ୍ରଣାମାର୍ଥ ଅଷ୍ଟାଙ୍ଗ, ଯଥା—ଜାନୁ, ପାଦ, ହସ୍ତ, ଉରଃ, ବୁଦ୍ଧି, ଶିରଃ, ବାକ୍ୟ ଓ ଚକ୍ଷୁଃ ।

ଅଷ୍ଟାଙ୍ଗଅର୍ଘ୍ୟ, ବି. ପୁଂ. ଜଳ, ଦୁଗ୍ଧ, କୁଶାଗ୍ର, ଦଧି, ଘୃତ, ତଣ୍ଡୁଳ, ଯବ ଓ ଶ୍ୱେତସର୍ଷପ ଏମାନଙ୍କୁ ଅଷ୍ଟାଙ୍ଗ ଅର୍ଘ୍ୟ କହନ୍ତି, ତଣ୍ଡୁଳ, ଯବ ଓ ଶ୍ୱେତସର୍ଷପ ପରିବର୍ତ୍ତରେ ମଧୁ, ରକ୍ତ-ଚନ୍ଦନ ଓ ରକ୍ତକରବୀର ଦେଲେ ସୂର୍ଯ୍ୟ-ଅଷ୍ଟାଙ୍ଗ ଅର୍ଘ୍ୟ ହୁଏ ।

ଅଷ୍ଟାଙ୍ଗଚିକିତ୍ସା, ବି. ସ୍ତ୍ରୀ. ଚିକିତ୍ସାଶାସ୍ତ୍ରର ଅଷ୍ଟାଙ୍ଗ । ଯଥା—
ଶଲ୍ୟ, ଶାଲକ୍ୟ, କାୟଚିକିତ୍ସା, ଭୂତବିଦ୍ୟା, କୌମାର ଭୃତ୍ୟ, ଅଗଦତନ୍ତ୍ର, ରସାୟନତନ୍ତ୍ର ଓ ବାଜୀକରଣ ।

ଅଷ୍ଟାଙ୍ଗଧୂପ, ବି. ପୁଂ. ଗୁଗ୍ଗୁଳ, ନିମ୍ବପତ୍ର, ବଚ, କୁଡ଼, ହରିତକୀ, ଯବ, ସର୍ଷପ ଓ ଘୃତ ।

ଅଷ୍ଟାଦଶ, ବି°. ୧୮, ଅଠର ସଂଖ୍ୟାର ପୂରଣ ।

ଅଷ୍ଟାଦଶବିଦ୍ୟା, ବି. ସ୍ତ୍ରୀ. ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦଃ, ଜ୍ୟୋତିଷ ଏହି ଛଅଟି ବେଦର ଅଙ୍ଗ ଓ ଚତୁର୍ବେଦ, ମୀମାଂସା, ନ୍ୟାୟ, ଧର୍ମ-ଶାସ୍ତ୍ର, ପୁରାଣ, ଆୟୁର୍ବେଦ, ଧନୁର୍ବେଦ, ଗାନ୍ଧର୍ବ ଓ ଅର୍ଥଶାସ୍ତ୍ର ଏହି ୧୮ ପ୍ରକାର ବିଦ୍ୟା ।

ଅଷ୍ଟାଦଶପୁରାଣ, ଷ. ନ. ବ୍ରହ୍ମ, ପଦ୍ମ, ବିଷ୍ଣୁ, ଶିବ, ଭାଗବତ, ନାରଦ, ମାର୍କଣ୍ଡ, ଅଗ୍ନି, ଭବିଷ୍ୟ, ବ୍ରହ୍ମବୈବର୍ତ୍ତ, ଲିଙ୍ଗ, ବରାହ, ସ୍କନ୍ଦ, ବାମନ, କୂର୍ମ, ମତ୍ସ୍ୟ, ଗରୁଡ଼ ଓ ବ୍ରହ୍ମାଣ୍ଡ ।

ଅଷ୍ଟାପଦ, ବ. ପୁଂ. (ଅଷ୍ଟନ୍ ପଦ) ବୁଢ଼ିଆଣି ; ଶରଭ ବା ମୃଗବିଶେଷ; ସୁବର୍ଣ୍ଣ । ଯଥା—

କହୁଛ ଯାହା ପ୍ରଥମ ଶୁଣ ତାହ ମୋ ବାଣୀ ହୃଦେଣ,
ଅଷ୍ଟ ପଦଗୋଟି ଅଷ୍ଟାପଦେ ତୁଲ ଅଟଇ ଲକ୍ଷଣେ । କୋ. ବ୍ର.

ଅଷ୍ଟାବକ୍ର ବା ଅଷ୍ଟବକ୍ର, ବ. ପୁଂ. ଋଷିବିଶେଷ ।

ଅଷ୍ଟାବିଂଶତି, ବିଂ. ୨୮ ସଂଖ୍ୟା ; ୨୮ ସଂଖ୍ୟାର ପୂରଣ ହେଲେ ଅଷ୍ଟାବିଂଶ, ଅଷ୍ଟାବିଂଶତିତମ ।

ଅସଂଖ୍ୟ, ବିଂ. (ଅ ସମ୍ ଖ୍ୟା-ଅ) ଅଗଣ୍ୟ । ଯଥା--

ଭଗ୍ନାଙ୍କୁଶ ଭଲ୍ଲବର୍ମ ହେମତଲ
ସଙ୍ଗେ ପଡ଼ିଅଛି ଅସଂଖ୍ୟ କରାଳ । ନ. କେ.

ଅସଂଯତ, ବିଂ. ( ଅ-ସଂଯତ ) ବନ୍ଧନଶୂନ୍ୟ, ଅନିୟମିତ ।

ଅସଂଯମ, ବ. ପୁଂ. (ଅ-ସଂଯମ) ଇନ୍ଦ୍ରିୟନିଗ୍ରହାଭାବ, କାମ କ୍ରୋଧାଦି ଅବଶୀକରଣ ।

ଅସଂଯୋଗ, ବ. ପୁଂ. (ଅ-ସଂଯୋଗ) ସଂଯୋଗାଭାବ, ବିଶ୍ଳେଷ ।

ଅସଂଲଗ୍ନ, ବିଂ. (ଅ-ସଂଲଗ୍ନ) ଅସଙ୍ଗତ, ପୂର୍ବାପର ବିରୁଦ୍ଧ ।

ଅସଂବୃତ, ବିଂ. (ଅ-ସଂବୃତ) ଅନାବୃତ, ଆଚ୍ଛାଦନଶୂନ୍ୟ ।

ଅସଂଶୟ, କ୍ରି. ବିଂ. ( ଅ-ସଂଶୟ ) ନିଃସନ୍ଦେହ, ନିଶ୍ଚିତ, ନିଃସଂଶୟ ।

ଅସଂସ୍କୃତ, ବିଂ. ( ଅ-ସଂସ୍କୃତ ) ଯାହାର ସଂସ୍କାର ହୋଇ ନାହିଁ, ଅପରିଷ୍କୃତ, ଅପରିଚ୍ଛନ୍ନ ।

ଅସକ୍ତ, ବ. ( ଅ-ସକ୍ତ ) ଅସଂଲଗ୍ନ, ଅନାସକ୍ତ, ଅପ୍ରତିବନ୍ଧ ।

ଅସଙ୍କୁଚିତ, ବିଂ. ( ଅ-ସଙ୍କୁଚିତ ) ସଙ୍କୋଚଶୂନ୍ୟ, ଅକୁଣ୍ଠିତ, ପ୍ରଶସ୍ତ ।

ଅସଚ୍ଚରିତ, ବିଂ. (ଅସତ୍-ଚରିତ) ଅସଦାଚାରୀ ।

ଅସଙ୍ଗତ, ବିଂ. ( ଅ-ସମ୍-ଗମ୍-ତ ) ଅସମ୍ବଦ୍ଧ, ଅଯୌକ୍ତିକ, ଅଯୁକ୍ତ ।

ଅସତ୍ ; ବିଂ.(ଅ-ସତ୍=ସାଧୁ ) ଅସାଧୁ , ନିନ୍ଦିତ, ଦୁରାଚାର, ଅବିଦ୍ୟମାନ, ଅନିତ୍ୟ ।

ଅସତୀ, ବ. ସ୍ତ୍ରୀ. ( ଅ-ସତୀ=ସାଧ୍ୱୀ ) ଦୁଷ୍ଟା ବା ବ୍ୟଭିଚାରିଣୀ ସ୍ତ୍ରୀ ।

ଅସତ୍ୟ, ବିଂ. ( ଅ-ସତ୍ୟ ) ମିଥ୍ୟା, ଯାହା ସତ୍ୟ ନୁହେ ।

ଅସତ୍ୟସନ୍ଧ, ବିଂ. ( ଅସତ୍ୟ-ସନ୍ଧା ) କୃତଘ୍ନ, ଦୁରାତ୍ମା । ଯଥା—

ତଂ ଜନମସତ୍ୟସନ୍ଧଂ ଭଗବତ ବସୁଧେ ! କଥଂ ବହସି ।
ହିତୋପଦେଶ ।

ଅସନ, ବ. ପୁଂ. (ଅସ୍-ଅନ) ଅସନବୃକ୍ଷ, ସର୍ଜ୍ଜବୃକ୍ଷ, ପିଆଶାଳ । ନ. କ୍ଷେପଣ ।

ଅସନା, ବିଂ. (ଦେଶଜ) କୁତ୍ସିତ, ଘୃଣିତ, କଦାକାର; ମଇଳା ।

ଅସନ୍ତୁଷ୍ଟ, ବିଂ. (ଅ-ସନ୍ତୁଷ୍ଟ) ଯାହାର ସନ୍ତୋଷ ଜନ୍ମି ନାହିଁ, ବିରକ୍ତ ।

ଅସନ୍ତୋଷ, ବ. ପୁଂ. (ଅ-ସନ୍ତୋଷ) ସନ୍ତୋଷର ଅଭାବ, ବିରାଗ, ବିରକ୍ତି ।

ଅସନ୍ଦିଗ୍ଧ, ବିଂ.(ଅ-ସନ୍ଦିଗ୍ଧ) ସନ୍ଦେହଶୂନ୍ୟ, ବିଶ୍ୱସ୍ତ ।

ଅସନ୍ନଦ୍ଧ, ବିଂ. ( ଅ-ସମ୍-ନହ-ତ ) ସମ୍ମୂଢ଼, ଜାତ; ଗର୍ବିତ ।

ଅସପତ୍ନ, ବିଂ. (ଅ-ସପତ୍ନ) ଶତ୍ରୁଶୂନ୍ୟ, ନିଷ୍କଣ୍ଟକ; ଭୟଶୂନ୍ୟ ।

ଅସଭ୍ୟ, ବିଂ. (ଅ-ସଭା-ଯ) ଅଶିଷ୍ଟ, ଅଭଦ୍ର; ଜଙ୍ଗଲି ।

ଅସମ, ବିଂ. (ଅ-ସମ) ଅତୁଲ୍ୟ, ଅନୁପମ, ପରସ୍ପର ସାଦୃଶ୍ୟଶୂନ୍ୟ ।

ଅସମୟ, ବ. ପୁଂ. (ଅ-ସମୟ) ଅପ୍ରକୃତ ସମୟ, ଅକାଳ, ଦୁଃସମୟ ।

ଅସମର୍ଥ, ବିଂ. ଅଶକ୍ତ, ଦୁର୍ବଳ ।

ଅସମାନ, ବିଂ. (ଅ-ସମାନ) ଅତୁଲ୍ୟ, ଅସଦୃଶ ।

ଅସମାପ୍ତ, ବିଂ. (ଅ-ସମାପ୍ତ) ସମାପ୍ତ ନୁହେଁ, ଅସମ୍ପୂର୍ଣ୍ଣ ।

ଅସମ୍ପୂର୍ଣ୍ଣ, ବିଂ. (ଅ-ସମ୍ପୂର୍ଣ୍ଣ) ଅସମାପ୍ତ, ଯାହା ସମ୍ପୂର୍ଣ୍ଣ ହୋଇ ନାହିଁ ।

ଅସମ୍ବନ୍ଧ, ବିଂ. (ଅ-ସମ୍ବନ୍ଧ) ସମ୍ବନ୍ଧଶୂନ୍ୟ, ଅସଂଲଗ୍ନ ।

ଅସମ୍ବଦ୍ଧ, ବିଂ. (ଅ-ସମ୍-ବନ୍ଧ୍-ତ) ସମ୍ବନ୍ଧଶୂନ୍ୟ, ଧର୍ମାରହିତ ।

ଅସମ୍ଭବ, ବିଂ. (ଅ-ସମ୍-ଭୂ-ଅ) ଅଘଟ୍ୟ; ଅନୁପଯୁକ୍ତ, ଅଘଟଣ; ବିଶ୍ୱାସର ଅଯୋଗ୍ୟ । ଯଥା—

କଲେ କୋଟିଏ ଚେଷ୍ଟା ଯେତେ ଭବ,
କହିବାକୁ ସେ କଥା ଅସମ୍ଭବ । ର. ଭ.

ଅସମ୍ଭାବ୍ୟ, ବିଂ. (ଅ-ସମ୍ଭାବ୍ୟ) ସମ୍ଭାବନାଯୋଗ୍ୟ ନୁହେଁ, ଅଲୌକିକ ।

ଅସମ୍ଭ୍ରମ, ବି. ପୁଂ. (ଅ-ସମ୍ଭ୍ରମ) ଅମର୍ଯ୍ୟାଦା, ଅପମାନ ।

ଅସମ୍ଭ୍ରାନ୍ତ, ବିଂ. (ଅ-ସମ୍ଭ୍ରାନ୍ତ) ସମ୍ଭ୍ରମହୀନ, ଅଚଞ୍ଚଳ, ଧୀର ।

ଅସମ୍ମତ, ବିଂ. ଅନଭିମତ; ଅପ୍ରିୟ; ବିରୋଧୀ ।

ଅସମ୍ମତି, ବି. ସ୍ତ୍ରୀ. ଅସ୍ୱୀକାର; ଅନୈକ୍ୟ ।

ଅସମ୍ମାନ, ବି. ନ. (ଅ-ସମ୍ମାନ) ଅନାଦର, ଅମର୍ଯ୍ୟାଦା, ଅପମାନ ।

ଅସରପା, ବି. (ଅସ୍ରପ ଶବ୍ଦଜ) ତୈଳପାୟିକା, ପତଙ୍ଗବିଶେଷ ।

ଅସରଫି, ବି. (ଦେଶଜ) ସ୍ୱର୍ଣ୍ଣମୁଦ୍ରା ।

ଅସଲ, ବିଂ. (ଦେଶଜ) ଅମିଶ୍ର; ଯେ ଜାରଜ ନୁହେ । ବି. ମୂଳଧନ ।

ଅସଜା, ଅସରା, ଅସ୍ରା, ବିଂ. (ଅଜସ୍ର ଶବ୍ଦଜ) ବୃଷ୍ଟିର ପରିମାଣ, ଏକାଥରକେ ଯେତେ ବର୍ଷା ହୁଏ ।

ଅସବର୍ଣ୍ଣ, ବିଂ. (ଅ-ସବର୍ଣ୍ଣ) ଭିନ୍ନଜାତୀୟ ।

ଅସହାୟ, ବିଂ. (ଅ-ସହାୟ) ନିଃସହାୟ, ସହାୟହୀନ ।

ଅସହିଷ୍ଣୁ, ବିଂ. (ଅ-ସହ-ଇଷ୍ଣୁ) ଯେ ସହି ପାରେ ନାହିଁ ।

ଅସହ୍ୟ, ବିଂ. (ଅ-ସହ-ଯ) ଅସହନୀୟ ।

ଅସାଧାରଣ, ବିଂ. (ଅ-ସାଧାରଣ) ଅସାମାନ୍ୟ, ଅତୁଲ୍ୟ ।

ଅସାଧୁ, ବିଂ. ଯେ ସାଧୁ ଅର୍ଥାତ୍ ସତ୍ ନୁହେଁ, ମନ୍ଦ, ନିନ୍ଦିତ ।

ଅସାଧ୍ୟ, ବିଂ. (ଅ-ସାଧ୍-ଯ) ସାଧନର ଅଯୋଗ୍ୟ, ଯାହା ସାଧନ କରି ଯାଇ ନ ପାରେ ।

ଅସାମୟିକ, ବିଂ. (ଅସମୟ-ଇକ) ସମୟର ଉପଯୁକ୍ତ ନୁହେଁ, ଅକାଳିକ ।

ଅସାମାନ୍ୟ, ବିଂ. (ଅ-ସାମାନ୍ୟ) ଅସାଧାରଣ, ବିଶେଷ, ଯାହା ସଚରାଚର ଘଟେ ନାହିଁ ।

ଅସାର, ବିଂ. (ଅ-ସାର) ସାରହୀନ । ବି. ପୁଂ. ଗବଗଛ ।

ଅସାବଧାନ, ବିଂ. (ଅ-ସାବଧାନ) ସାବଧାନତା-ଶୂନ୍ୟ, ସତର୍କତାଶୂନ୍ୟ ।

ଅସି, ବି. ପୁଂ. (ଅସ୍-ଇ) କରବାଳ, ଖଡ୍ଗ । ଯଥା—

ବାହ ହେ ସାହସ ଭଠ ଅସି ନେଇ,
ଜୀବନ ସ୍ନେହ ଏଡ଼ିକ ଦିନା । ଭ. ବ.

ଅସିତ, ବି. ପୁଂ. (ଅ-ସିତ=ଶୁକ୍ଳ) କୃଷ୍ଣବର୍ଣ୍ଣ; ଶନିଗ୍ରହ । ବିଂ. ଅସିତା, କଳା । ଯଥା—

ଅସିତା ଅପଘନରା ଧାରଲ ନଗର ।

ଅସିଦ୍ଧ, ବିଂ. (ଅ-ସିଦ୍ଧ) ଅନିଷ୍ପନ୍ନ; ଅପକ୍ୱ; ଅସମ୍ପୂର୍ଣ୍ଣ ।

ଅସିଦ୍ଧି, ବି. ସ୍ତ୍ରୀ. (ଅ-ସିଦ୍ଧି) ଅନିଷ୍ପତ୍ତି ।

ଅସିପତ୍ର, ବି. ପୁଂ. (ଅସି-ପତ୍ର) ଖଡ୍ଗବତ୍ ପତ୍ର ଯାହାର, ଅଖୁ । ନ. ଖଡ୍ଗର କୋଷ ବା ଖାପ ।

ଅସିପୁଚ୍ଛକ, ବି. ପୁଂ. (ଅସି-ପୁଚ୍ଛକ, ଯାହାର ପୁଚ୍ଛ ବା ଲାଙ୍ଗୁଳ ଅସି ଅର୍ଥାତ୍ ଖଡ୍ଗ ସମ) ଶିଶୁମାର ନାମକ ଜନ୍ତୁ ।

ଅସିତାମ୍ବୁଜ, ବି. ନ. (ଅସିତ-ଅମ୍ବୁଜ) ନୀଳୋତ୍ପଳ ।

ଅସୀମ, ବିଂ. (ଅ-ସୀମନ୍-ଅ) ସୀମାରହିତ, ଅନନ୍ତ ।

ଅସୁ, ବି. ପୁଂ. (ଅସ୍-ଉ) ପ୍ରାଣ, ପଞ୍ଚବାୟୁ ।

ଅସୁଖ, ବି. ନ. (ଅ-ସୁଖ) ଦୁଃଖ, କ୍ଳେଶ, କଷ୍ଟ ।
ଅସୁଖୀ, ବିଂ. (ଅସୁଖ-ଇନ୍) ଯେ ଅସୁଖ ଭୋଗ କରେ, ପୀଡ଼ିତ ।
ଅସୁନ୍ଦର, ବିଂ. (ଅ-ସୁନ୍ଦର) କଦାକାର, କୁତ୍ସିତ ।
ଅସୁର, ବି. ପୁଂ.(ଅ-ସୁର) ସୁରବିରୋଧୀ, ଦୈତ୍ୟ ।
ଅସୁରାଚାର୍ଯ୍ୟ, ବି. ପୁଂ. (ଅସୁର-ଆଚାର୍ଯ୍ୟ=ଗୁରୁ) ଶୁକ୍ର ।
ଅସୁରୀ, ବି. ସ୍ତ୍ରୀ. (ଅସୁର-ଈ) ଅସୁରପତ୍ନୀ, ରାକ୍ଷସୀ; ରାଇପୋଷେ ।
ଅସୁଲ, ବି. (ଯାବନିକ) ଆଦାୟ ।
ଅସୁଲଭ, ବିଂ. ( ଅ-ସୁଲଭ ) ଦୁର୍ଲଭ, ଦୁଷ୍ପ୍ରାପ୍ୟ, ଯାହା କଷ୍ଟରେ ମିଳେ ।
ଅସୁବାର, ବିଂ. (ପ୍ରା) ଅପ୍ରତୁଳ; ଅସୁବିଧା ।
ଅସୁସ୍ଥ, ବିଂ. (ଅ-ସୁସ୍ଥ) ସୁଖରହିତ, ରୁଗ୍ଣ ।
ଅସୂୟା, ବି. ସ୍ତ୍ରୀ. (ଅସୂ=ଅନାଦର କରିବା-ଅ) ଦ୍ୱେଷ; ନିନ୍ଦା; କ୍ରୋଧ; ପରଶ୍ରୀକାତରତା ।
ଅସୂର୍ଯ୍ୟଂପଶ୍ୟା, ବିଂ. ( ଅ-ସୂର୍ଯ୍ୟଂ-ପଶ୍ୟା ) ଯେ ସୂର୍ଯ୍ୟଙ୍କୁ ଦେଖି ନାହିଁ, ଅନ୍ତଃପୁରଚାରିଣୀ ।
ଅସୃକ୍, ବି. ନ. ( ଅ-ସୃଜ୍-୦ ) ରକ୍ତ, ରୁଧିର । ଯଥା—

ତ୍ୱଗସୃଙ୍ମାଂସ ମେଦୋଽସ୍ଥି ମଜ୍ଜାଶୁକ୍ରାଣି ଧାତବଃ ।

ମଙ୍ଗଳଗ୍ରହ; କୁଙ୍କୁମ; ଷୋଡ଼ଶ ଯୋଗ ।
ଅସୌଷ୍ଠବ, ବିଂ. ( ଅ-ସୌଷ୍ଠବ ) ଶୋଭାହୀନ, ସୌନ୍ଦର୍ଯ୍ୟହୀନ ।
ଅସ୍ତ, ବିଂ. (ଅସ୍-ତ) ନିକ୍ଷିପ୍ତ; ପ୍ରେରିତ । ବି. ପୁଂ. ପଶ୍ଚିମାଚଳ; ଚନ୍ଦ୍ର ସୂର୍ଯ୍ୟାଦିର ଅଦର୍ଶନ; ମୃତ୍ୟୁ, ଶେଷ ।
ଅସ୍ତଗତ ବିଂ. (ଅସ୍ତ-ଗତ) ଅନ୍ତର୍ହିତ, ଅସ୍ତ-ପ୍ରାପ୍ତ, ଲୋପପ୍ରାପ୍ତ ।
ଅସ୍ତଗିରି ବି. ପୁଂ. (ଅସ୍ତ-ଗିରି) ପଶ୍ଚିମଦିଗସ୍ଥ ଅସ୍ତ-ପର୍ବତ, ଅସ୍ତାଚଳ ।
ଅସ୍ତମିତ ବିଂ. (ଅସ୍ତଂ-ଇ-ତ) ଅସ୍ତଗତ; ନଷ୍ଟ ।
ଅସ୍ତବ୍ୟସ୍ତ ବିଂ. (ଅସ୍ତ-ବ୍ୟସ୍ତ) ଅତ୍ୟନ୍ତ ବ୍ୟସ୍ତ, ଅସ୍ଥିର, ଚଞ୍ଚଳ ।

ଅସ୍ତାଚଳ ବି. ପୁଂ. (ଅସ୍ତ-ଅଚଳ) ପଶ୍ଚିମ ଦିଗସ୍ଥ ପର୍ବତ, ଅସ୍ତଗିରି ।
ଅସ୍ତାବଲ (ଯାବନିକ) ଅଶ୍ୱଶାଳା, ମନ୍ଦୁରା ।
ଅସ୍ତି ଅଂ. ( ଅସ୍-ତି ) ବିଦ୍ୟମାନତା, ବର୍ତ୍ତମାନ ସ୍ଥିତି ।
ଅସ୍ତିତ୍ୱ ବି. ନ. (ଅସ୍ତି-ତ୍ୱ) ବିଦ୍ୟମାନତା ।
ଅସ୍ତୁ, ଅଂ. (ଅସ୍-ତୁ) ହେଉ, ଅନୁଜ୍ଞା ।
ଅସ୍ତ୍ର, ବି. ନ. (ଅସ୍-ତ୍ର) ଶସ୍ତ୍ର, ଯାହା ନିକ୍ଷେପ କରାଯାଏ । ଯଥା—

ବାଚାସ୍ତ୍ର ଯେମନ କରଶେସ୍ତ୍ର ନିକ୍ଷେପ,
ତୃଷ୍ଣାସ୍ତ୍ର ସମାନ କର ସମର୍ପିଲେ ଅସ୍ତ୍ର ସେ । ବୈ. ବ.

ଅସ୍ତ୍ରଚିକିତ୍ସା, ବି. ସ୍ତ୍ରୀ. (ଅସ୍ତ୍ର-ଚିକିତ୍ସା) ଅସ୍ତ୍ର ପ୍ରୟୋଗ ଦ୍ୱାରା କ୍ଷତାଦି ରୋଗର ପ୍ରତୀକାର କରିବା ।
ଅସ୍ତ୍ରବିଦ୍, ବିଂ. ( ଅସ୍ତ୍ର-ବିଦ୍-୦ ) ଯେ ଅସ୍ତ୍ରବିଦ୍ୟା ଜାଣେ, ଅସ୍ତ୍ରବିଦ୍ୟାନିପୁଣ ।
ଅସ୍ତ୍ରାଗାର, ବି. ନ. (ଅସ୍ତ୍ର-ଅଗାର) ଯେଉଁ ଗୃହରେ ଅସ୍ତ୍ର ଥାଏ, ଅସ୍ତ୍ରାଳୟ ।
ଅସ୍ତ୍ରୀ, ବିଂ. (ଅସ୍ତ୍ର-ଇନ) ଅସ୍ତ୍ରଧାରୀ ।
ଅସ୍ତ୍ରୀକ, ବିଂ. (ଅ-ସ୍ତ୍ରୀ-କ) ସ୍ତ୍ରୀହୀନ, ଅପତ୍ନୀକ ।
ଅସ୍ଥାନ, ବିଂ. (ଅ-ସ୍ଥା-ଅନ) ସ୍ଥାନରହିତ, ସ୍ଥଳ-ହୀନ, ମନ୍ଦସ୍ଥାନ, ଅଯୋଗ୍ୟ ସ୍ଥାନ ।
ଅସ୍ଥାବର, ବିଂ. ( ଅ-ସ୍ଥା-ବର ) ଯାହା ସ୍ଥାୟୀ ନୁହେ, ଚଳନ୍ତ ।
ଅସ୍ଥାୟୀ, ବିଂ. (ଅ-ସ୍ଥାୟୀ) ଅନିତ୍ୟ, ନଶ୍ୱର ।
ଅସ୍ଥି, ବି. ନ. (ଅସ୍-ଥି) ହାଡ଼ । ଯଥା—

ଅସ୍ଥିମାଳା କରମୁଣ୍ଡେ ଧବଳିତ ଦେଶ । କ. ବ.
ବେନି ପ୍ରତ୍ୟେକ ଅସ୍ଥି ରସହ କରି,
ବଧ୍ୟ ରହିବ ଅଦ୍ଭୁତ ସ୍ମରି । ବୈ. ବ.

ଅସ୍ଥିପଞ୍ଜର, ବି. ପୁଂ. ( ଅସ୍ଥି-ପଞ୍ଜର ) କଙ୍କାଳ, ଶରୀରର ଅସ୍ଥିସମୂହ ।
ଅସ୍ଥିଭକ୍ଷ, ବି. ପୁଂ. (ଅସ୍ଥି-ଭକ୍ଷ) ହାଡ଼ଗିଳାପକ୍ଷୀ; କୁକ୍କୁର ।
ଅସ୍ଥିମାଳୀ, ବି. ପୁଂ. ( ଅସ୍ଥି-ମାଳା-ଇନ୍ ) ଶିବ, ମହାଦେବ ।

ଅସ୍ଥିର, ବିଂ. ( ଅ-ସ୍ଥିର ) ଚଞ୍ଚଳ, ଅସ୍ଥାୟୀ, ଅନିଶ୍ଚିତ ।

ଅସ୍ଥିରତା, ବି. ସ୍ତ୍ରୀ. } ( ଅସ୍ଥିର—ତା, ତ୍ୱ )
ଅସ୍ଥିରତ୍ୱ, ବି. ନ. } ଚଞ୍ଚଳତା, ଚପଳତା ।

ଅସ୍ଥିସାର, ବି. ପୁଂ. (ଅସ୍ଥି-ସାର) ମଜ୍ଜା । ବିଂ. ରକ୍ତ-ମାଂସଶୂନ୍ୟ ।

ଅସ୍ପଷ୍ଟ, ବିଂ. (ଅ-ସ୍ପଷ୍ଟ) ଯାହା ଭଲରୂପେ ଶୁଣା ଯାଏ ନାହିଁ, ପଢ଼ା ଯାଏ ନାହିଁ ବା ବୁଝା ଯାଏ ନାହିଁ ।

ଅସ୍ପୃଶ୍ୟ, ବିଂ. ( ଅ-ସ୍ପୃଶ୍-ଯ ) ସ୍ପର୍ଶ କରିବାର ଅଯୋଗ୍ୟ, ଅଶୁଚି ।

ଅସ୍ଫୁଟ, ବିଂ. ( ଅ-ସ୍ଫୁଟ ) ଅପ୍ରକାଶିତ, ମୃଦୁ, କ୍ଷୀଣ ।

ଅସ୍ମଦ୍, ସଂ. (ଅସ୍-ମଦ) ମୁଁ, ଉତ୍ତମପୁରୁଷ ।

ଅସ୍ମଦୀୟ, ବିଂ. (ଅସ୍ମଦ୍-ଈୟ) ଅମ୍ଭ ସମ୍ବନ୍ଧୀୟ ।

ଅସ୍ମିତା, ବି. ସ୍ତ୍ରୀ. (ଅସ୍ମି-ତା) ଅହଙ୍କାର, ଅହଂ-ଜ୍ଞାନ, ମୁଁ ଅଛି । ଯଥା—

ଶର ସୌରକରେ ତାରକା ଯେସନ,
ଅସ୍ମିତା ବସ୍ତୁରେ ହେଲା ନମଗନ । ଚିଲ୍କା ।

ଅସ୍ରପ, (ପା) ବି. ପୁଂ. ( ଅସ୍ର-ପା-ଅ ) ଯେ ରକ୍ତ ପାନ କରେ, ରାକ୍ଷସ; ସ୍ତ୍ରୀ. ରାକ୍ଷସୀ; ଜୋକ ।

ଅସ୍ୱପ୍ନ, ବି. ପୁଂ. ( ଅ-ସ୍ୱପ୍ନ ) ଯେଉଁମାନଙ୍କର ସ୍ୱପ୍ନ ବା ନିଦ୍ରା ନାହିଁ, ଦେବତା ।

ଅସ୍ୱାର୍ଥ, ବିଂ.(ଅ-ସ୍ୱାର୍ଥ) ସ୍ୱାର୍ଥଶୂନ୍ୟ, ସ୍ୱପ୍ରୟୋଜନ-ରହିତ ।

ଅସ୍ୱାସ୍ଥ୍ୟ, ବି. ନ. (ଅ-ସ୍ୱାସ୍ଥ୍ୟ) ଅସୁସ୍ଥତା, ପୀଡ଼ା, ଉପଦ୍ରବ ।

ଅସ୍ୱୀକାର, ବି. ପୁଂ. ( ଅ-ସ୍ୱୀକାର ) ସ୍ୱୀକାରାଭାବ, ନାମଞ୍ଜୁର ।

ଅହଂ, ଅଂ. ଅମ୍ଭେ ।

ଅହିଂସା, ବି. ସ୍ତ୍ରୀ. ( ଅ-ହିଂସା ) କାହାର ଅନିଷ୍ଟ ନ କରିବା । ଯଥା—

ଅହିଂସା-ପରମୋ ଧର୍ମଃ ।

ଅହଙ୍କାର, ବି. ପୁଂ. (ଅହଂ-କୃ-ଅ) ଗର୍ବ; ଦମ୍ଭ; ଅଭିମାନ ।

ଅହନ୍, ବି. ନ. (ଅହ-ଅନ୍) ଦିନ, ଦିବସ ।

ଅହମ୍ମା, (ପ୍ରା) ଅକସ୍ମାତ୍, ଅଦାଉଛି ।

ଅହରହ, କ୍ରି. ବିଂ. (ଅହନ୍-ଅହନ୍) ପ୍ରତିଦିନ ।

ଅହର୍ନିଶ, କ୍ରି. ବିଂ. ( ଅହନ୍-ନିଶା-ଅ ) ସର୍ବଦା, ନିରନ୍ତର, ସ୍ୱବଦିନ ।

ଅହଲ୍ୟା, ବି. ସ୍ତ୍ରୀ. ଗୌତମଙ୍କର ପତ୍ନୀ, ଅପ୍ସରା-ବିଶେଷ ।

ଅହି, ବି.ପୁଂ. (ଅ-ହା-ଇ) ଯେ ହିଂସା କରିବାରେ କାହାକୁ ତ୍ୟାଗ କରେ ନାହିଁ; ସର୍ପ; ସୂର୍ଯ୍ୟ; ବୃତ୍ରାସୁର; ପଥିକ; ରାହୁ ।

ଅହିତ, ବିଂ. ( ଅ-ହିତ=ଧା-ତ ) ଅମଙ୍ଗଳ, ଅଶୁଭ । ବି. ପୁଂ. ଶତ୍ରୁ ।

ଅହିଫେନ, ବି. ପୁଂ. ନ. (ଅହି-ଫେନ) ଅଫିମ ।

ଅହିଭୁକ୍, ବି. ପୁଂ. ( ଅହି-ଭୁକ୍=ଭୁଜ୍-୦ ) ଗରୁଡ଼; ମୟୂର; ନକୁଳ ।

ଅହିମକର, ବି. ପୁଂ. ( ଅ-ହିମକର ) ସୂର୍ଯ୍ୟ । ଯଥା—

ଅହିମକର ତାପ ନାଶେ ଶୋଭା ସାରସ ଚକେ । ଲ. ବ.

ଅହିରା—ମଳା ବା କୌଣସି ମୃତ ପାଦ ରଖିବାର ତୃଣନିର୍ମିତ ଗୋଲାକାର ପଦାର୍ଥ । (ଗଡ଼ଜାତ)

ଅହୀଶ୍ୱର, ବି. ପୁଂ. ( ଅହି-ଈଶ୍ୱର ) ବାସୁକି, ଅନନ୍ତଦେବ, ସର୍ପରାଜ ।

ଅହୈତୁକୀ, ବିଂ. ( ଅ-ହେତୁ-ଅକ-ଇନ୍ ) ନିର୍ହେତୁକ, ହେତୁଶୂନ୍ୟ ।

ଅହୋ, ଅଂ. ଆଶ୍ଚର୍ଯ୍ୟ ସମ୍ବୋଧନ । ଯଥା—

ଅହୋ ମାନବ ଜୀବନ କି ଅଦ୍ଭୁତ ଉଦ୍ଭାବନ । ଙ୍ଗ. ବ.

ଅହୋରାତ୍ର, କ୍ରି. ବିଂ. ଦିବାରାତ୍ର, ସର୍ବଦା ।

ଅହ୍ନିଶିଅ, ବି. ( ଦେଶଜ ) ଯାହା ନୈବେଦ୍ୟ ହୋଇ ନ ଥାଏ, ମହାପ୍ରସାଦବିଶେଷ ।

——:o:——

# ଆ

**ଆ**, ଅ°. (ଉପସର୍ଗ) ଏହାର ଉଚ୍ଚାରଣ ସ୍ଥାନ କଣ୍ଠ; ଈଷତ୍; ବ୍ୟାପ୍ତି, ପର୍ଯ୍ୟନ୍ତ; ୨ୟ ସ୍ୱରବର୍ଣ୍ଣ ।

ଆଂଶିକ, ବି°. ( ଅଂଶ-ଇକ ) ଅଂଶସମ୍ବନ୍ଧୀୟ, କେତେକାଂଶ ।

ଆଃ, ଅ°. ସୁଖ ଓ ଦୁଃଖସୂଚକ ସ୍ୱର ।

ଆଁ, ବି. ନ. ମୁଖବ୍ୟାଦାନ, ପାଟି ମେଲା କରିବା । ଯଥା—

ମୁଅଁ ଖାଇବାକୁ ମୁଁ ଅଁ କରୁଅଛି ।

ଆଁଶୁ, ବି. (ଦେଶଜ) ଖରସ୍ପର୍ଶତା, ଅମସୃଣତା; ଘଣ୍ଟାଗ୍ର, ସୂକ୍ଷ୍ମକଣ୍ଟକବତ୍ ପଦାର୍ଥ ।

ଆଁକୁଶୀ, ଆଁକୁଡ଼, ବି. (ଅଙ୍କୁଶ ଶବ୍ଦଜ) ନଡ଼ି ।

ଆଇନ, ବି. (ଯାବନକ) ରାଜନିୟମ, ବ୍ୟବସ୍ଥା-ଶାସ୍ତ୍ର ।

ଆଇନା, (ଯାବନକ) ଦର୍ପଣ, ଅର୍ଶୀ ।

ଆଇଁଷ, ବି. (ଆମିଷର ଅପଭ୍ରଂଶ) ମାଛ ମାଂସାଦି, ମାଛର କାଛ ।

ଆଈ, ବି. (ଦେଶଜ) ମାତାମହୀ, ପିତାମହୀ ।

ଆଉଁସିବା, କ୍ରି. (ଆଶ୍ୱାସନା ଶବ୍ଦଜ) ସସ୍ନେହରେ ଦେହରେ ହାତ ବୁଲାଇବା ।

ଆଉ, ଅ°. (ସଂଯୋଜକ) ପୁଣି, ଅଧିକ, ଅନ୍ୟ ।

ଆଉଜିବା, କ୍ରି. ବି. ( ଦେଶଜ ) ଏକଅଙ୍ଗକୁ ଢଳିବାର, ଶରୀରର ଊର୍ଦ୍ଧ୍ୱଭାଗର ଭାର ଅନ୍ୟ ଉପରେ ରଖିବାର; ପକ୍ଷପାତ ଅବଲମ୍ବନ କରିବାର । ଭାର ଉପରେ ରଖିବା ଅର୍ଥରେ । ଯଥା—

ଆଉଜାଇ ଅଙ୍କରେ ବସିବ ପଲଙ୍କରେ,
ମନେ ତ ନ ଥିବ ଆଉ ରେ । ଲ. ଚ.

ଆଉଟିବା, କ୍ରି. (ଦେଶଜ) ତରଳ କରିବାର, ଗରମ କରିବାର ।

ଆକଟ, ବି. ( ଦେଶଜ ) ଶାସନ, ତାଡ଼ନା । ଯଥା—

ରାଆ ଯଉ ସତୀ କର,
କୋଳରୁ ଆକଟ ଥିଉ ନ କର ଗୋ । ବ. ଚ.

ଆକଣ୍ଠ, ଅ°. (ଆ-କଣ୍ଠ) କଣ୍ଠ ପର୍ଯ୍ୟନ୍ତ । ବି°. କଣ୍ଠାଗତ ।

ଆକନ୍ଦ, ବି. ପୁଂ. ଅର୍କବୃକ୍ଷ ।

ଆକମ୍ପ, ବି.ପୁଂ. } (ଆ-କମ୍ପ୍-ଅ,ଅନ) ଈଷତ୍
ଆକମ୍ପନ, ବି.ନ. } କମ୍ପ, ଅଳ୍ପ କମ୍ପିବା ।

ଆକମ୍ପିତ, ବି°. (ଆ-କମ୍ପି ତ) ଈଷତ୍ କମ୍ପିତ ।

ଆକର, ବି. ପୁଂ. ( ଆ-କୃ-ଅ ) ଖଣି; ସମୂହ; ଉତ୍ପତ୍ତି ସ୍ଥାନ ।

ଆକରିକ, ବି°. ( ଆକର-ଇକ ) ଖଣିଜ, ଖଣି-ଜାତ ।

ଆକର୍ଣ୍ଣ, ଅ°. (ଆ-କର୍ଣ୍ଣ) କର୍ଣ୍ଣ ପର୍ଯ୍ୟନ୍ତ ।

ଆକର୍ଷ, ବି. ପୁଂ. ( ଆ-କୃଷ୍-ଅ ) ପଶାପାଲି; ଇନ୍ଦ୍ରିୟ; ଧନୁର୍ବିଦ୍ୟା ଅଭ୍ୟାସ ।

ଆକର୍ଷକ, ବି°. (ଆ-କୃଷ୍-ଅ) ଆକର୍ଷଣକାରୀ । ବି. ପୁଂ. ଚୁମ୍ବକପଥର, କଷ୍ଟିପଥର ।

ଆକର୍ଷଣ, ବି. ନ. (ଆ-କୃଷ୍-ଅନ) ଓଟାରିବା; ତନ୍ତ୍ରୋକ୍ତ କ୍ରିୟାବିଶେଷ ।

ଆକର୍ଷଣୀ, ବି. ସ୍ତ୍ରୀ. (ଆ-କୃଷ୍-ଅନ-ଈ) ଯାହାଦ୍ୱାରା ଫଳାଦି ଆକର୍ଷଣ କରାଯାଏ, ଅଙ୍କୁଶୀ, ଅଙ୍କୁଡ଼ୀ ।

ଆକଳନା, ବି. ସ୍ତ୍ରୀ. (ଆ-କଳ-ଅନ-ଆ) ଅଣଙ୍କା; ଗ୍ରହଣ; ଗଣନ; ଅନୁସନ୍ଧାନ; ବନ୍ଧନ; ଆକାଙ୍କ୍ଷା ।

ଆକଳ୍ପ, ବି. ପୁଂ. (ଆ-କୃପ୍-ଅ) ବେଶରଚନା, ଭୂଷଣ, ଅଳଂକରଣ । ଅ°. କଳ୍ପ ପର୍ଯ୍ୟନ୍ତ ।

ଆକବର, ବି. (ଯାବନକ) ଭାରତବର୍ଷର ପ୍ରସିଦ୍ଧ ମୋଗଲ ସମ୍ରାଟ୍ ।

ଆକଷ, ବି. ପୁଂ. (ଆ-କଷ୍-ଅ) କଷ୍ଟି ପଥର ।

ଆକସ୍ମିକ, ବି°.(ଅକସ୍ମାତ୍-ଇକ) ହଠାତ୍ ଉତ୍ପନ୍ନ, ଅକସ୍ମାତ୍ ଜାତ ।

ଆକାଙ୍କ୍ଷା, ବି. ସ୍ତ୍ରୀ. (ଆ-କାଙ୍କ୍ଷ-ଆ) ଇଚ୍ଛା, ସ୍ପୃହା । ପ୍ରତୀତର ଶେଷ ନ ହେବା ।

ଆକାର, ବି. ପୁଂ. (ଆ-କୃ-ଅ) ଅବୟବ, ମୂର୍ତ୍ତି ।

ଆକାଶ, ବି. ପୁଂ. (ଆ-କାଶ୍-ଅ) ଗଗନ, ଶୂନ୍ୟ-ସ୍ଥାନ, ଯେଉଁ ସ୍ଥଳରେ ଗ୍ରହ ନକ୍ଷତ୍ରାଦି ପ୍ରକାଶିତ ହୁଅନ୍ତି । ଯଥା—

ବସୁଧା କମ୍ପିତା ଚକିତ ଦେବତା
କି ହେଲା କି ହେଲା,
ବଚନେ ଶୋଚନେ ଅଶ୍ରୁ ବିମୋଚନେ
ଆକାଶ ପୂରିଲା । ବୈ. ବି.

ଆକାଶକୁସୁମ, ବି. (ଆକାଶ-କୁସୁମ) ଆକାଶରେ କୁସୁମ ଫୁଟେ ନାହିଁ, ଅତଏବ ଆକାଶ-କୁସୁମ=ମିଥ୍ୟା, ଅସତ୍ୟ ।

ଆକାଶଗଙ୍ଗା, ବି. ସ୍ତ୍ରୀ. ( ଆକାଶ-ଗଙ୍ଗା ) ସ୍ୱର୍ଗଗଙ୍ଗା, ମନ୍ଦାକିନୀ ।

ଆକାଶପ୍ରଦୀପ, ବି. ପୁଂ. କାର୍ତ୍ତିକ ମାସରେ ବାଉଁଶ ଇତ୍ୟାଦି ପୋତି ତାହା ଉପରେ ଯେଉଁ ପ୍ରଦୀପ ଦିଆଯାଇଥାଏ ।

ଆକାଶମୁଖୀ, ବି. ପୁଂ. ସନ୍ନ୍ୟାସୀବିଶେଷ, ଯେ ସନ୍ନ୍ୟାସୀ ସର୍ବଦା ଊର୍ଦ୍ଧ୍ୱକୁ ମୁଖ ଟେକିଥାନ୍ତି ।

ଆକାଶଯାନ, ବି. ନ. ଯେଉଁ ଯାନଦ୍ୱାରା ଆକାଶରେ ଭ୍ରମଣ କରାଯାଏ, ବ୍ୟୋମଯାନ, ବେଲୁନ ।

ଆକାଶବାଣୀ, ବି. ସ୍ତ୍ରୀ. ଶୂନ୍ୟରୁ ଦେବତାଦିଙ୍କର କଥା, ଦୈବବାଣୀ ।

ଆକାଶବାୟୁ, ବି. ପୁଂ. ପୃଥିବୀର ଚତୁର୍ଦ୍ଦିଗରେ ଯେଉଁ ବିସ୍ତୀର୍ଣ୍ଣ ବାୟୁମଣ୍ଡଳ ଅଛି ।

ଆକିଞ୍ଚନ, ବି.ନ. (ଆ-କିମ୍-ଚନ)ଚେଷ୍ଟା, ଯତ୍ନ ।

ଆକୀର୍ଣ୍ଣ, ବିଂ. ( ଆ-କୃ-ତ) ବିକ୍ଷିପ୍ତ, ବ୍ୟାପ୍ତ ।

ଆକୁଞ୍ଚନ, ବି.ନ. (ଆ-କୁନ୍‌ଚ-ଅନ) ସଙ୍କୋଚନ ।

ଆକୁଳ, ବିଂ. (ଆ-କୁଳ୍-ଅ) ବ୍ୟଗ୍ର, ଉଦ୍‌ବିଗ୍ନ ।

ଆକୂତ, ବି. ନ. (ଆ-କୂ-ତ) ଅଭିପ୍ରାୟ, ଇଚ୍ଛା, ମନର ଭାବ ।

ଆକୃତି, ବି. ସ୍ତ୍ରୀ. (ଆ-କୃ-ତି) ଆକାର, ଶରୀରର ଗଠନ ।

ଆକୃଷ୍ଟ, ବିଂ. (ଆ-କୃଷ୍-ତ) ଯାହାକୁ ଆକର୍ଷଣ କରି ନିଆହୋଇଅଛି; ବଶୀକୃତ, ଗୃହୀତ ।

ଆକ୍ରନ୍ଦ, ବି. ପୁଂ. (ଆ-କ୍ରନ୍ଦ୍-ଅ) ମିତ୍ର; ଭ୍ରାତା; ଦାରୁଣଯୁଦ୍ଧ; ଦୁଃଖିର ରୋଦନ ସ୍ଥାନ ।

ଆକ୍ରମ, ବି.ପୁଂ.(ଆ-କ୍ରମ୍-ଅ)ବଳଦ୍ୱାରା ଉଲ୍ଲଙ୍ଘନ; ପରଲୋକ ପ୍ରାପ୍ତିସାଧନ-ବିଦ୍ୟା ଓ କର୍ମାଦି ।

ଆକ୍ରମଣ, ବି. ନ. ( ଆ-କ୍ରମ୍-ଅନ ) ଚଢାଉ; ଅବରୋଧଣ; ଉଦ୍ୟମ; ଅଭିଭବ; ଅତିକ୍ରମ ।

ଆକ୍ରାନ୍ତ, ବିଂ.( ଆ-କ୍ରମ୍-ତ) ଅତିରକ୍ତ; ଅଭିଭୂତ, ବ୍ୟାପ୍ତ । ଯାହାକୁ କେହି ଆକ୍ରମଣ କରିଥାଏ ।

ଆକ୍ରୀଡ଼, ବି. ପୁଂ. (ଆ-କ୍ରୀଡ଼୍-ଅ) ରାଜକୀୟ ଉଦ୍ୟାନ, ଲୀଳାସ୍ଥାନ ।

ଆକ୍ରୋଶ, ବି. ପୁଂ (ଆ-କ୍ରୁଶ୍-ଅ) କଟୂକ୍ତି,ଭର୍ତ୍ସନା, ଅଭିଶାପ, କ୍ରୋଧ, ଅଭିଯୋଗ, ନିନ୍ଦା,ଦ୍ୱେଷ ।

ଆକ୍ଷେପ,ବି. ପୁଂ. (ଆ-କ୍ଷିପ୍-ଅ) ଦୁଃଖ, ଅପବାଦ, ନିନ୍ଦା, ଭର୍ତ୍ସନା; ଆକର୍ଷଣ; ଅପହରଣ; କାବ୍ୟର ଅଳଙ୍କାରବିଶେଷ;ଖେଦ; ବିକ୍ଷେପ ।

ଆକ୍ଷେପକ,ବିଂ. (ଆ-କ୍ଷିପ୍-ଅକ) ନିନ୍ଦାକାରୀ । ବି. ବ୍ୟାଧ ; ବାତରୋଗବିଶେଷ ।

ଆଖଡା, ବି. ( ଦେଶଜ ) ନୃତ୍ୟ ଗୀତାଦି ଶିକ୍ଷା କରିବାର ସ୍ଥାନ, ବ୍ୟାୟାମ ଶିକ୍ଷା କରିବାର ସ୍ଥାନ, ପାଠଶାଳାଦି ।

ଆଖଣ୍ଡଳ, ବି. ପୁଂ. (ଆ -ଖଣ୍ଡ୍-ଅଳ) ଇନ୍ଦ୍ର । ଯଥା—

ଅଖିଳ ବିଭବ-ଆଖଣ୍ଡଳ ପଦ, ଅବରୋହଣ ପରମପଦରେ ।

ଆଖର,କ୍ରି.ବିଂ.(ଯାବନିକ)ନିକଟ,ଅବଶେଷରେ । ବି. (ଆ-ଖନ୍-ଅର) ଖଣନ୍ତି,ଯାହାଦ୍ୱାରା ମୃତ୍ତିକା ଖନନ କରାଯାଏ ।

ଆଖାତ, ବି. ନ. ( ଆଖାତ-ଅ ) ଦେବଖାତ, ସ୍ୱାଭାବିକ ଜଳାଶୟ ।

ଆଖୁ,ବି. ପୁଂ. (ଆ-ଖନ୍-ଉ)ମୂଷିକ; କୃପଣ; ଚୋର । (ପ୍ରା) ଇକ୍ଷୁର ଅପଭ୍ରଂଶ, ମଧୁର ରସବିଶିଷ୍ଟ ତୃଣଜାତୀୟ ଗୁଳ୍ମ ବିଶେଷ ।

ଆଖୁଗ, ବି. ପୁଂ. ( ଆଖୁ-ଗମ୍-ଅ ) ମୂଷିକଦ୍ୱାରା ଯେ ଗମନ କରନ୍ତି, ମୂଷିକବାହନ ଗଣେଶ ।

ଅଖୁଭୁକ୍, ବ. ପୁଂ. (ଅଖୁ-ଭୁଜ୍-୦) ଯେ ମୂଷା ଭୋଜନ କରେ, ମାର୍ଜାର, ବିରାଡ଼ି ।

ଆଖେଟ, ବ. ପୁଂ. (ଆ-ଖିଟ୍=ଖ୍ରାସ-ଅ) ମୃଗୟା, ପଶୁପକ୍ଷୀ ଶିକାର, ପାରଧି । ଯଥା—

ଚଳିଗଲୁ ମୋ ମନ୍ତ୍ରେ ଅଖେଟବାଳେ ।

ଆଖେଟକ, ବିଂ. (ଆ-ଖିଟ୍-ଅକ) ମୃଗୟୁ, ଶିକାରୀ, ବ୍ୟାଧ ।

ଆଖେଟିକ, ବ. ପୁଂ. (ଆଖେଟ-ଇକ) ଶିକାରୀ କୁକ୍କୁର । ବିଂ. ମୃଗୟା ସମ୍ବନ୍ଧୀୟ ।

ଆଖ୍ୟା, ବ. ସ୍ତ୍ରୀ. (ଆ-ଖ୍ୟା-ଅ) ନାମ, ସଂଜ୍ଞା, କଥନ ।

ଆଖ୍ୟାତ, ବିଂ. (ଆ-ଖ୍ୟା-ତ) କଥିତ । ବ. ନ. ସଂସ୍କୃତ ବ୍ୟାକରଣର କ୍ରିୟାପଦ, ତିଙନ୍ତ-ପଦ ।

ଆଖ୍ୟାନ, ବ. ନ. (ଆ-ଖ୍ୟା-ଅନ) କଥନ, ନାମୋଲ୍ଲେଖ; ଇତିହାସ, ଉପନ୍ୟାସ, କଳ୍ପିତ ବୃତ୍ତାନ୍ତ ।

ଆଖ୍ୟାୟିକା, ବ. ସ୍ତ୍ରୀ. (ଆ-ଖ୍ୟା-ଅକ-ଆ) ଇତିହାସ, ଉପନ୍ୟାସ, ଗଳ୍ପବିଶେଷ ।

ଆଗ, ବ. ନ. (ଅଗ୍ରର ଅପଭ୍ରଂଶ) ସମ୍ମୁଖ; ପୂର୍ବବର୍ତ୍ତୀ ସମୟ । ଯଥା—

କହନ୍ତି ମିତ ଆଗରେ । ବ. ଚ.

ଆଗଃ, ବ.ନ. (ଇ-ଅସ୍ ; ଇ=ଆଗ୍) ଅପରାଧ, ପାପ; ଯଛ ।

ଆଗଚଲା, ଆଗବୋଲା, ଆଗକୁହା, ବିଂ. ଫାଜିଲ, ଶୁଲଖ୍ ।

ଆଗତ, ବିଂ. (ଆ-ଗମ୍-ତ) ଉପସ୍ଥିତ; ପ୍ରାପ୍ତ ।

ଆଗଭୁର, ବିଂ. (ଅଗ୍ର ଓ ଭୁରଶବ୍ଦଜ) ଅଗ୍ରିମ ।

ଆଗନ୍ତୁ, ଆଗନ୍ତୁକ, ବ. ପୁଂ. (ଆ-ଗମ୍-ତୁ-କ) ଅଭ୍ୟାଗତ, ଅତିଥି, ଅଗତ, ହଠାତ୍ ଉପସ୍ଥିତ । ବିଂ. ଆକସ୍ମିକ, ହଠାତ୍ ।

ଆଗମ, ବ. ପୁଂ. (ଆ-ଗମ୍-ଅ) ବେଦାଦି ଶାସ୍ତ୍ର; ତନ୍ତ୍ରଶାସ୍ତ୍ର; ଶାସ୍ତ୍ରାଭ୍ୟାସ; ଉପଦେଶ;ଆଗମନ ।

ଆଗମନ, ବ. ନ. (ଆ-ଗମ୍-ଅନ) ଉପସ୍ଥିତି; ଅସିବାର ।

ଆଗାମୀ, ବିଂ. (ଆ-ଗମ୍-ଇନ୍) ଭବିଷ୍ୟତ୍, ଭାବୀ, ଯାହା ଅସିବ ।

ଆଗାର, ବ. (ଅଗାର-ଅ) ଗୃହ, ଅବାସ ।

ଆଗୁସାର, ବ. ନ. (ଅଗ୍ରସର ଶବ୍ଦର ଅପଭ୍ରଂଶ) କୌଣସି ବିଷୟ ନିମିତ୍ତ ସ୍ୱେଚ୍ଛାକ୍ରମେ ଆଗେ ଆଗେ ବାହାରିବା ।

ଆଗ୍ନେୟ, ବ. ପୁଂ. (ଅଗ୍ନି-ଏୟ) ଅଗସ୍ତ୍ୟ ମୁନି; ପୂର୍ବ ଦକ୍ଷିଣ କୋଣ । ନ. ନଗରବିଶେଷ; ଅଗ୍ନିପୁରାଣ; ରକ୍ତ; ସ୍ୱର୍ଣ୍ଣ । ବିଂ. ଅଗ୍ନିସମ୍ବନ୍ଧୀୟ । ସ୍ତ୍ରୀ. ଅଗ୍ନିପତ୍ନୀ, ସ୍ୱାହା ।

ଆଗ୍ନେୟଗିରି, ବ. ପୁଂ. ଯେଉଁ ପର୍ବତରୁ ଉତ୍ତପ୍ତ ଜଳ, ଭସ୍ମ ଓ ଗଳିତ ଧାତୁଦ୍ରବ୍ୟ ବାହାର ହୁଏ ।

ଆଗ୍ନେୟ-ପ୍ରସ୍ତର, ବ. ନ. (Volcanic Formation) ଯେ ସମସ୍ତ ପଥର ଅଗ୍ନି ସାହାଯ୍ୟରେ ତାହାର ବର୍ତ୍ତମାନ ଅବସ୍ଥା ପ୍ରାପ୍ତ ହୋଇଅଛି ଅର୍ଥାତ୍ ଅଗ୍ନିଦ୍ୱାରା ଦ୍ରବ ହେଲା ପରେ ଶୀତଳ ହୋଇ ବର୍ତ୍ତମାନ ରୂପ ଧାରଣ କରିଅଛି ।

ଆଗ୍ନେୟାସ୍ତ୍ର, ବ. ନ. ଅଗ୍ନିସମ୍ବନ୍ଧୀୟ ଅସ୍ତ୍ର; ଯଥା-ବନ୍ଧୁକ, ତୋପ ପ୍ରଭୃତି ।

ଆଗ୍ରହ, ବ. ପୁଂ. (ଆ-ଗ୍ରହ୍-ଅ) ଅତିଯତ୍ନ; ଅତି ବ୍ୟଗ୍ରତା; ଆକ୍ରମଣ; ସାହାଯ୍ୟ; ଅନୁଗ୍ରହ; ସାମର୍ଥ୍ୟ; ଗ୍ରହଣ ।

ଆଗ୍ରହାୟଣ, ବ. ପୁଂ. (ଅଗ୍ରହାୟଣ-ଅ) ମାର୍ଗଶୀର୍ଷ ମାସ ।

ଆଘାତ, ବ. ପୁଂ. (ଆ-ହନ୍-ଅ) ପ୍ରହାର; ବଧ; ବଧସ୍ଥାନ ।

ଆଘାତକ, ବିଂ. (ଆ-ହନ୍-ଅକ) ବଧକାରୀ, ଯେ ଆଘାତ କରେ ।

ଆଘାର, ବ. ପୁଂ. (ଆ-ଘୃ=ସେଚନ କରିବା-ଅ) ଘୃତ, ଆଜ୍ୟ; ହୋମ ।

ଅଘୂର୍ଣ୍ଣନ, ବ. ନ. (ଆ-ଘୂର୍ଣ୍ଣ-ଅନ) ଚକ୍ରପ୍ରାୟ ଭ୍ରମଣ, ପରିଭ୍ରମଣ, ଘୂରିବା ।

ଆଘ୍ରାଣ, ବ. ନ. ( ଆ-ଘ୍ରା-ଅନ ) ଗନ୍ଧଗ୍ରହଣ; ସନ୍ତୋଷ ।

ଆଘ୍ରାତ, ବିଂ. (ଆ-ଘ୍ରା-ତ) ଯାହା ଆଘ୍ରାଣ କରି ଯାଇଅଛି; ଆକ୍ରାନ୍ତ; ସନ୍ତୁଷ୍ଟ ।

ଆଘ୍ରେୟ, ବିଂ.(ଆ-ଘ୍ରା-ଯ) ଆଘ୍ରାଣଯୋଗ୍ୟ ।

ଆଙ୍ଗ, ବ. ନ. (ଅଙ୍ଗ-ଅ) କୋମଳାଙ୍ଗ । ବିଂ. ଅଙ୍ଗସମ୍ବନ୍ଧୀୟ ।

ଆଙ୍ଗିରସ, ବ. ପୁଂ. (ଅଙ୍ଗିରସ=ଋଷିବିଶେଷ-ଅ, ଅପତ୍ୟାର୍ଥେ) ବୃହସ୍ପତି, ଦେବଗୁରୁ ।

ଆଙ୍ଗୁଠି, ବ. ସ୍ତ୍ରୀ. ( ଅଙ୍ଗୁଷ୍ଠ ଶବ୍ଦର ଅପଭ୍ରଂଶ) ଅଙ୍ଗୁଳି ।

ଆଚମନ, ବ. ପୁଂ. (ଆ-ଚମ୍=ଭୋଜନ କରିବା-ଅନ) ଜଳବିନ୍ଦୁପାନଦ୍ୱାରା ଦେହ ଶୋଧନ; ଭୋଜନାଦି ପରେ ମୁଖ ପ୍ରକ୍ଷାଳନ । ଯଥା—

> କଲଇ ଆଚମନ ସଖୀରେ,
> କଲେ ଶ୍ରୀମୁଖ ପୋଛ ବସନରେ । ର. କ.

ଆଚମନକ, ବ. ପୁଂ. ( ଆଚମନ-କ) ଜଳପାତ୍ର, ମୁଖପ୍ରକ୍ଷାଳନର ଜଳ ଯହିଁରେ ଥାଏ ।

ଆଚମ୍ବିତ, ବିଂ. ( ଦେଶଜ ) ଚକିତ, ବ୍ୟସ୍ତ, ବିସ୍ମିତ । ଅଂ, ହଠାତ୍, ଅକସ୍ମାତ୍ । ଯଥା—

> ଚନ୍ଦ୍ରଶାଳା ବୃନ୍ଦେ ବସି ଭବଲେ ସେଚନ,
> ଆଚମ୍ବିତେ ନନ୍ଦେଦେଶେ ଶୁଭିଲା ଚଡ଼କ । କ. ବ.

ଆଚରଣ, ଆଚାର, ବ. ନ. (ଆ-ଚର୍-ଅନ, ଅ) ଅନୁଷ୍ଠାନ, ବ୍ୟବହାର, ରୀତି ।

ଆଚରିତ. ବିଂ. (ଆ-ଚର-ତ) ଅନୁଷ୍ଠିତ, କୃତ, ବ୍ୟବହୃତ ।

ଆଚାମ, ବ. ପୁଂ. (ଆ-ଚମ୍-ଅ) ଆଚମନ; ଭାତର ମଣ୍ଡ, ପେଜ ।

ଆଚାର, ବ. ପୁଂ. (ଆ-ଚର୍-ଅ) ସ୍ନାନ,ଆଚମନାଦି ବ୍ୟବହାର; ଶିଷ୍ଟାଚାର; ରୀତି; ପଦ୍ଧତି; ବ୍ୟବହାର । (ଦେଶଜ) ଅମ୍ଳଦ୍ରବ୍ୟବିଶେଷ ।

ଆଚାରବାନ୍, ଆଚାରୀ, ବିଂ. (ଆଚାର-ବତ୍, ଇନ୍) ଧର୍ମପରାୟଣ, ଆଚାରବିଶିଷ୍ଟ ।

ଆଚାର୍ଯ୍ୟ, ବ. ପୁଂ. (ଆ-ଚର-ଯ )ବେଦାଧ୍ୟାପକ; ଶିକ୍ଷାଗୁରୁ; ପୁରୋହିତ ।

ଆଚାର୍ଯ୍ୟା, ଆଚାର୍ଯ୍ୟାଣୀ, ବ. ସ୍ତ୍ରୀ.(ଆଚାର୍ଯ୍ୟ-ଆ,ଅନ୍) ଆଚାର୍ଯ୍ୟପତ୍ନୀ, ବେଦମନ୍ତ୍ରାଦି ଶିକ୍ଷୟିତ୍ରୀ ।

ଆଛୁ, ବ. ନ. ବୃକ୍ଷବିଶେଷ ।

ଆଚ୍ଛନ୍ନ, ବିଂ. (ଆ-ଛଦ୍-ତ) ଆବୃତ; ଅଭିଭୂତ ।

ଆଚ୍ଛା, ଆଛା, ଅଂ. (ଦେଶଜ) ହଁ, ସ୍ୱୀକାର । ବିଂ. ଉତ୍ତମ, ସୁନ୍ଦର, ଭଲ ।

ଆଚ୍ଛାଦ,ଆଚ୍ଛାଦନ, ବ. ନ. (ଆ-ଛଦ୍-ଇ-ଅ,ଅନ) ଆବରଣ, ଢାଙ୍କୁଣି; ବସ୍ତ୍ର; ଛପର ।

ଆଚ୍ଛାଦକ, ବିଂ. (ଆ-ଛଦ୍-ଇ-ଅକ) ଆବରକ, ଯେ ଆଚ୍ଛାଦନ କରେ ।

ଆଚ୍ଛାଦିତ, ବିଂ.(ଆ-ଛଦ୍-ଇ-ତ) ଆବୃତ,ଆଚ୍ଛନ୍ନ ।

ଆଚ୍ଛୋଦନ, ବ. ନ.( ଆ-ଛୁଦ୍-ଅନ ) ମୃଗୟା, ପଶୁ ପକ୍ଷ୍ୟାଦି ଶିକାର ।

ଆଜ, ବିଂ. (ଅଜ-ଅ) ଅଜସମ୍ବନ୍ଧୀୟ, ଅଜପୁତ୍ର ଦଶରଥ । (ଦେଶଜ) କ୍ରି. ବିଂ. ଆଜଦିନ, ଅଦ୍ୟ । ବ. ନ. (ଆ-ଅନଜ୍-ଅ ) ଘୃତ । ( ଆଜିଦିନ ଅର୍ଥରେ ) ଯଥା—

> ପଇ ଭ୍ରମର ଭ୍ରମର ବୋଲ
> ଆଜଯାଏ ତ ଶ୍ରବଣ ନ ଥିଲ । ପ୍ରେ. ସୁ.

ଆଜଗବ, ବ. ନ. (ଅଜଗବ-ଅ) ଶିବଧନୁଃ ।

ଆଜନ୍ମ, କ୍ରି. ବିଂ. (ଆ-ଜନ୍ମ) ଜନ୍ମାବଧି, ଯାବଜ୍ଜୀବନ ।

ଆଜମୀଢ଼, ବ. ପୁଂ. (ଅଜମୀଢ଼-ଅ) ପାଣ୍ଡବ ପକ୍ଷର ଯଦୁବଂଶୀୟ ନୃପତି ବିଶେଷ ।

ଆଜାନୁ, କ୍ରି. ବିଂ. ( ଆ-ଜାନୁ ) ଜଙ୍ଘପର୍ଯ୍ୟନ୍ତ, ଜାନୁଯାଏ ।

ଆଜି, କ୍ରିଂ. ବିଂ. (ଦେଶଜ) ଆଜଦିନ, ଅଦ୍ୟ । ବ. ସ୍ତ୍ରୀ.(ଆ-ଅଜ୍=ଗମନ କରିବା-ଇ) ଯୁଦ୍ଧ; ଯୁଦ୍ଧଭୂମି; ସମାନଭୂମି; ନିନ୍ଦା; ଆକ୍ଷେପ ।

ଆଜୀବ, ଆଜୀବନ, କ୍ରି. ବଂ. (ଆ-ଜୀବ, ଜୀବନ) ଜୀବ ଥିବା ପର୍ଯ୍ୟନ୍ତ, ଯାବଜ୍ଜୀବନ ।

ଆଜ୍ଞପ୍ତ, ବଂ. (ଆ ଜ୍ଞା-ଇ-ତ) ଆଦିଷ୍ଟ, ଅନୁମତି-ପ୍ରାପ୍ତ ।

ଆଜ୍ଞା, ବ. ସ୍ତ୍ରୀ. (ଆ-ଜ୍ଞା-ଅ) ଆଦେଶ, ଆପଣା-ଠାରୁ ନିକୃଷ୍ଟ ଲୋକକୁ କୌଣସି କର୍ମ କରିବାକୁ ବୋଲିବାର, ଅନୁମତି ।

ଆଜ୍ଞାକାରୀ, ବଂ. (ଆଜ୍ଞା-କାରୀ) ଯେ ଆଜ୍ଞା ପାଳନ କରେ, ଆଜ୍ଞାବହ ।

ଆଜ୍ଞାପତ୍ର, ବ. ନ. ( ଆଜ୍ଞା-ପତ୍ର ) ଆଦେଶପତ୍ର, ହୁକୁମନାମା ।

ଆଜ୍ଞାବହ, ବଂ. (ଆଜ୍ଞା-ବହ) ଯେ ଅନ୍ୟର ଆଜ୍ଞା ବହନ କରେ, ଆଜ୍ଞାକାରୀ ।

ଆଜ୍ୟ, ବ. ନ. (ଆ-ଅ-ଞ୍ଜ୍-ଯ) ଘୃତ । ଯଥା—

> ଅମ୍ବା ଯଜମାନ, ଶ୍ରଦ୍ଧା ପତ୍ନୀସ୍ୱରୂପିଣୀ,
> ତପ ବହ୍ନି, କାମ ଆଜ୍ୟ, କ୍ରୋଧ ଯଜ୍ଞପଶୁ । ମ. ଯା.

ଆଞ୍ଚିବା, କ୍ରି. ( ଦେଶଜ ) ମନେ ମନେ ଠିକ କରିବା, ଅନୁମାନ କରିବା, ଆକର୍ଷଣ କରିବା । ଯଥା—

> ଈଶାନ-ପର ଆକର୍ଷିତ କରଣ ଧନୁକୁ ଆଞ୍ଚଇ । ବ. ଚ.

ଆଞ୍ଜନେୟ, ବ. ପୁଂ. (ଅଞ୍ଜନା=ଗୌତମଙ୍କ ଝିଅ-ଏୟ) ହନୂମାନ୍, ଅଞ୍ଜନାପୁତ୍ର ।

ଆଟିକା, ବ. (ଦେଶଜ) ଛୋଟ ହାଣ୍ଡି, କ୍ଷୁଦ୍ର ମୃତ୍-ପାତ୍ର ।

ଆଟୁଘର, ବ. (ଦେଶଜ) ଗୃହଦ୍ରବ୍ୟାଦି ଅଗ୍ନି-ଭୟରୁ ରକ୍ଷା କରିବା ନିମିତ୍ତ କାନ୍ଥ ଉପରେ ନିର୍ମିତ ଛାତବିଶେଷ । ଯଥା—

> ସମ୍ପତ୍ତିକି ଠୁଳ କରି ରଖି ଆଟୁଘରେ
> ନିଶ୍ଚିନ୍ତ ରହଇ ଅଗ୍ନି ଭୟେ ମନେ ମନେ । ମ. ଯା.

ଆଡ଼, ବ. ( ଦେଶଜ ) ପାର୍ଶ୍ୱ, ଦିଗ, ପ୍ରସ୍ଥ, ପରସ୍ପର । ବଂ. ବଙ୍କ ।

ଆଡ଼ଣି, ଆଡ଼ଣୀ, ବ. (ଦେଶଜ) ବସ୍ତ୍ରନିର୍ମିତ ପଙ୍ଖା, ବ୍ୟଜନ, ଢାଲ, ବଦାଉ ପ୍ରଭୃତି । ଯଥା—

> କାମପଟ୍ଟ ପାଟ ବେହୁଣୀ ସ୍ୱଭିବ
> ତୁଷି କନ୍ୟାରତ୍ନ କାହ୍ନୁଁ ସେ,
> ସେ ବାଣୀ ବାଣକୁ ପରିତ୍ରାଣ କରି
> ଆଡ଼ଣୀ ଖୋଜିଲେ ନାହିଁ । କୋ. ଚ. ଦୂ.

ଆଡ଼ମ୍ବର, ବ. ପୁଂ. (ଆ-ଡମ୍ବ-ଅର) ତୂର୍ଯ୍ୟାଦି ବାଦ୍ୟଧ୍ୱନି; ହସ୍ତିଧ୍ୱନି; ସମାରୋହ, ଜାକ୍-ଜମକ ।

ଆଡ଼ରୁଷା, ବ. (ଦେଶଜ) (ଆଡ଼=ଈଷତ୍-ରୁଷା =ରାଗ କରିବା) ଅଳ୍ପ ଅଭିମାନ, ଈଷତ୍ କ୍ରୋଧ । ଯଥା—

> ବାଳମୃଗଦୃଶା, ଦେଖିକି ବେଳୁଁ ଦେଲା ଅଡ଼ରୁଷା ।

ଆଡ଼ା, ବ. ପୁଂ. (ଦେଶଜ) ମତ୍ସ୍ୟ ଧରିବାର ଯନ୍ତ୍ର-ବିଶେଷ; ଦୀର୍ଘ, ପ୍ରସ୍ଥ ।

ଆଡ଼ି, ଆଡ଼ୀ, ବ. (ଦେଶଜ) ଶତ୍ରୁତା; ବନ୍ୟ-ପଶୁର ଶିକାରପାଇଁ ଲୁଚି ବସିବାର ସ୍ଥାନ; ମୃଗୟା, ପାରିଧି ।

ଆଡ଼ିବା, କ୍ରି. ଅଟକାଇବା । ଯଥା—

> ଦୁର୍ଜ୍ଜନ ଜନଙ୍କ ବଚନ ରଚନ ଶରକୁ ଶିର ଆଡ଼ିଲାଣି ।
> ବ. ଚ.

ଆଢ଼କ, ବ. ପୁଂ. ନ. (ଆ-ଢୌକ=ଗମନ କରିବା-ଅ) ଧାନ୍ୟାଦି ଶସ୍ୟ ମାପିବାର ପାତ୍ର-ବିଶେଷ; ଆଠସେର ପରିମାଣ ।

ଆଢୁଆଳ, ବ. ଅନ୍ତରାଳ, ବ୍ୟବଧାନ ।

ଆଢ୍ୟ, ବଂ. (ଆ-ଧ୍ୟୈ=ଧ୍ୟାନ କରିବା-ଅ) ଯେ ଧନଚିନ୍ତା କରେ, ଧନୀ, ସମ୍ପନ୍ନ ।

ଆଣବିକ, ବଂ. (ଅଣୁ-ଇକ) ଅଣୁସମ୍ବନ୍ଧୀୟ ।

ଆଣି, ବ. (ଦେଶଜ) ଗର୍ବ, ଜେଦ, ମର୍ଯ୍ୟାଦା । ଯଥା—

> ରଣିତ କଳାରେ କହିଲ ଉରରେ
> ଭାଙ୍ଗିଲାନ ରମ୍ଭା ଆଣିକ । ର. ପ.

ବ. ପୁଂ. ସ୍ତ୍ରୀ. ( ଅନ୍-ଇନ୍ ) ଖଡ୍ଗକୋଟି, ତରବାରି ।

ଆଣିବା, କ୍ରି. (ଆନୟନର ଅପଭ୍ରଂଶ) ଆନୟନ କରିବା । ଯଥା—

> କ୍ରୋଧଭରେ ବୋଲେ ବାଣୀ, ବୃଥା ସେ ବାଳକ ଆଣି ।

ଅଣ୍ଟ, ବିଂ. (ଦେଶଜ) ଶକ୍ତ, ଦୃଢ଼। ବି. ଗରିମା। ଯଥା—

ଚଢ଼ୁ ନାହିଁ ଅଣ୍ଟ ଥାଣରେ।

ଅଣ୍ଟୁ, ମାଣ୍ଟୁ, ମାଟୁ, ଅଟୁ, ବି. (ଦେଶଜ) ମୃତ୍ତିକାନିର୍ମିତ କୋଠା, ଅଗ୍ନିଭୟ ନିବାରଣାର୍ଥ ଗୃହମଧ୍ୟରେ ନିର୍ମିତ ଗୃହ।

ଅଣ୍ଟୁଆ, ବିଂ. (ଦେଶଜ) ଠାଣୁଆ, ଅହଙ୍କାରୀ।

ଅଣ୍ଟିଏ, ଅଣ୍ଟୁଆଣି, ବି. (ଦେଶଜ) ଅଣ୍ଟୁପର୍ଯ୍ୟନ୍ତ।

ଅଣ୍ଟୁ, ବି. (ଦେଶଜ) ଜାନୁସନ୍ଧି, ଜାନୁର ନିମ୍ନଭାଗ।

ଅଣ୍ଟୁଆ, ବିଂ. (ଦେଶଜ) ଅଣ୍ଟୁର ମାଡ଼।

ଅଣ୍ଟୁକୁଡ଼ା, ବିଂ. (ଦେଶଜ) ନିଃସନ୍ତାନ, ଅପୁତ୍ରିକ, ଯାହାର ସମସ୍ତ ଅପତ୍ୟ ମରି ଯାଇଥାନ୍ତି।

ଅଣ୍ଟେଇବା, କ୍ରି. (ଦେଶଜ) ଅଣ୍ଟୁ ମାଡି ବସିବା, ଅଣ୍ଟୁ ଉପରେ ଭର ଦେଇ ବସିବା।

ଅତି, ବି. (ଦେଶଜ) ଫଳବିଶେଷ, ସ୍ୱନାମଖ୍ୟାତ ବୃକ୍ଷବିଶେଷ।

ଆତଙ୍କ, ବିଂ. ପୁଂ. (ଆ-ତନ୍କ୍-ଅ) ଭୟ, ଶଙ୍କା, ପୀଡ଼ା, ଯାତନା, ମନସ୍ତାପ। ଯଥା—

ଅତଙ୍କେ ପାଣ୍ଡବଯୋଧେ ଗଣିଲେ ପ୍ରମାଦ। କ. ବ.

ଆତଙ୍ଗ, ବି. ପୁଂ. (ଆ-ତଙ୍ଗ୍-ଅ) ଭୟ, ପୀଡ଼ା।

ଆତତାୟୀ, ବିଂ. (ଆତତ=ସମନ୍ତାତ୍-ଇ=ଗମନ କରିବା-ଇନ୍) ବଧୋଦ୍ୟତ, ଅନିଷ୍ଟକାରୀ। ବି. ପୁଂ. ମହାପାପୀ; (ଆତ-ତାୟ୍-ଇନ୍) ଶଙ୍ଖଚିଲ୍ଲ।

ଆତପ, ବି. ପୁଂ. (ଆ-ତପ୍-ଅ) ରୌଦ୍ର, ଖରା। ବିଂ. ଅରୁଆ, ଧାନକୁ ଖରାରେ ଶୁଷ୍କ କରି ଯେଉଁ ଚାଉଳ ପ୍ରସ୍ତୁତ କରନ୍ତି, ତାହାକୁ ଆତପ ତଣ୍ଡୁଳ ବା ଅରୁଆ ଚାଉଳ କହାଯାଏ।

ଆତପତ୍ର, ବି. ନ. (ଆତପ-ତ୍ରୈ-ଅ) ଛତ୍ର, ଛତା।

ଆତର, ଆତାର, ବି. ନ. (ଆ-ତୃ-ଅ) ଯାହାଦ୍ୱାରା ନଦୀ ପାର ହୁଅନ୍ତି, ଘାଟର ମାସୁଲ, ତରପଣ୍ୟ।

ଆତସବାଜି, ବି. (ଦେଶଜ) ଅଗ୍ନିକ୍ରୀଡ଼ା, ବାରୁଦ ନିର୍ମିତ ନାନାପ୍ରକାର ଦୃଶ୍ୟ, ତତ୍ସମ୍ବନ୍ଧୀୟ ଗ୍ରନ୍ଥ।

ଆତାପୀ, ବି. ପୁଂ. (ଆ-ତପ-ଇନ୍) ଅସୁରବିଶେଷ; ଚିଲ୍ଲପକ୍ଷୀ; (ଦେଶଜ) ଲେମ୍ବୁ, ଖଟାଫଳ ବିଶେଷ।

ଆତିଥେୟ, ବିଂ. (ଅତିଥି-ଏୟ) ଅତିଥିସେବକ।

ଆତିଥ୍ୟ, ବି. ନ. (ଅତିଥି-ଯ) ଅତିଥି ସେବା; ଅତିଥିସେବାର ଉପଯୁକ୍ତ ଭକ୍ଷ୍ୟ ବସ୍ତୁ।

ଆତିଶଯ୍ୟ, ବି. ନ. (ଅତିଶୟ-ଯ) ଆଧିକ୍ୟ, ପ୍ରାବଲ୍ୟ।

ଆତୁର, ବିଂ. (ଆ-ତୁର-ଅ) କାତର, ଅଧୀର; ରୋଗୀ।

ଆତୁର ହୋଇ କାହିଁକି ହୁଅ ଚିନ୍ତାମଣି।

ଆତୋଦ୍ୟ, ବି. ନ. (ଆ-ତୁଦ୍-ଯ) ବୀଣା, ବୀଣା ବଂଶୀ ପ୍ରଭୃତି ବାଦ୍ୟ ସବୁ।

ଆତ୍ମଗତ, କ୍ରି. ବିଂ. (ଆତ୍ମନ୍-ଗମ୍-ତ) ସ୍ୱଗତ, ମନେ ମନେ, ଅନ୍ୟର ଅଗୋଚର। ବିଂ. ଆତ୍ମନିଷ୍ଠ।

ଆତ୍ମଗରିମା, ବି. ପୁଂ. (ଆତ୍ମନ୍-ଗୁରୁ-ଇମନ୍) ଆତ୍ମଶ୍ଳାଘା, ଅହଂକାର, ଦର୍ପ।

ଆତ୍ମଗୁଣ, ବି. ବୁଦ୍ଧ୍ୟାଦି ଚତୁର୍ଦ୍ଦଶ ଗୁଣ, ଭାଷାପରିଚ୍ଛେଦରେ ଲେଖା ଅଛି—

ବୁଦ୍ଧ୍ୟାଦିଷଟ୍କଂ ସଂଖ୍ୟାଦି ପଞ୍ଚକଂ ଭାବନା ତଥା,
ଧର୍ମାଧର୍ମୌ ଗୁଣା ଏତେ ଆତ୍ମନଃ ସ୍ୟୁଶ୍ଚତୁର୍ଦ୍ଦଶ।

ଆତ୍ମଗୁପ୍ତି, ବି. ସ୍ତ୍ରୀ. (ଆତ୍ମନ୍-ଗୁପ୍ତି) ବାଇଡ଼ଙ୍କ ଲତା, କଣ୍ଡୁଜନକାଦି ମନ୍ଦଗୁଣ ଦ୍ୱାରା ବୃଷ୍ୟାଦି ଆତ୍ମଗୁଣକୁ ଏ ଗୁପ୍ତ କରିଥାଏ ବୋଲି ଏହାର ଏପରି ନାମ ହୋଇଅଛି।

ଆତ୍ମଗ୍ଲାନି, ବି. ସ୍ତ୍ରୀ, (ଆତ୍ମନ୍-ଗ୍ଲୈ-ତି) ମନ୍ଦକାର୍ଯ୍ୟ କଲେ ମନରେ ଯେଉଁ ଅସୁଖ ହୁଏ।

ଆତ୍ମଘାତୀ, ବିଂ. (ଆତ୍ମନ୍-ଘାତିନ୍) ଆତ୍ମହତ୍ୟାକାରୀ, ଯେ ଆପେ ଆପେ ମରେ।

ଆତ୍ମଜ, ବି. ପୁଂ. (ଆତ୍ମନ୍-ଜନ୍-ଅ) ପୁତ୍ର, ସନ୍ତାନ।

ଆତ୍ମଜା, ବି. ସ୍ତ୍ରୀ. (ଆତ୍ମନ୍-ଜନ୍-ଅ-ଆ) କନ୍ୟା, ଦୁହିତା ।

ଆତ୍ମଜ୍ଞାନ, ବି. ନ. (ଆତ୍ମନ୍-ଜ୍ଞା-ଅନ) ନିଜର ଜ୍ଞାନ, ଅପଣାକୁ ଚିହ୍ନିବାର ।

ଆତ୍ମଦ୍ରୋହ, ବି. ପୁଂ (ଆତ୍ମନ୍-ଦ୍ରୋହ) ନିଜର ଅନିଷ୍ଟ କରିବା, ନିଜକୁ କଷ୍ଟ ଦେବା ।

ଆତ୍ମପ୍ରସାଦ, ବି. ପୁଂ. (ଆତ୍ମନ୍-ପ୍ରସାଦ) ଆତ୍ମାର ପ୍ରସନ୍ନତା, ମନର ହର୍ଷ ।

ଆତ୍ମଭୂ, ବି. ପୁଂ. (ଆତ୍ମନ୍-ଭୂ-୦) ବ୍ରହ୍ମା; କନ୍ଦର୍ପ; ବିଷ୍ଣୁ; ଶିବ ।

ଆତ୍ମଭୂତି, ବି. ସ୍ତ୍ରୀ. (ଆତ୍ମନ୍-ଭୂତି=ସମ୍ପତ୍ତି) ନିଜ ସମ୍ପତ୍ତି, ନିଜସ୍ୱ । ଯଥା—

ଆତ୍ମଭୂତି ଅବଳନ ନସ୍ୱନ ବେନେଭ ।

ଆତ୍ମଯୋନି, ବି. ପୁଂ. (ଆତ୍ମନ୍-ଯୋନି) ବ୍ରହ୍ମା; ବିଷ୍ଣୁ; ଶିବ; କନ୍ଦର୍ପ ।

ଆତ୍ମମ୍ଭରି, ବିଂ. (ଆତ୍ମନ୍-ଭୃ-ଇନ୍) ପେଟୁ, ସ୍ୱାର୍ଥପର ।

ଆତ୍ମବତ୍, ଅଂ. (ଆତ୍ମନ୍-ବତ୍) ଆପଣାର ନ୍ୟାୟ, ନିଜ ସଦୃଶ । ଯଥା—

ଆତ୍ମବତ୍ ସର୍ବଭୂତେଷୁ ଯଃ ପଶ୍ୟତି ସ ପଣ୍ଡିତଃ । ଗୃଣକଂ,

ଆତ୍ମବିଦ୍, ବିଂ. (ଆତ୍ମନ୍-ବିଦ୍-୦) ଆତ୍ମଜ୍ଞାନ-ସମ୍ପନ୍ନ, ପରମାତ୍ମତତ୍ତ୍ୱଜ୍ଞ, ବ୍ରହ୍ମବିଦ୍, ଆତ୍ମଜ୍ଞ, ସୁଧୀ ।

ଆତ୍ମବୁଦ୍ଧି, ବି. ସ୍ତ୍ରୀ (ଆତ୍ମନ୍-ବୁଦ୍ଧି) ଆପଣାର ବୁଦ୍ଧି, ଆତ୍ମଜ୍ଞାନ ।

ଆତ୍ମଶ୍ଳାଘା, ବି. ସ୍ତ୍ରୀ. (ଆତ୍ମନ୍-ଶ୍ଳାଘା) ନିଜ ଗୁଣର ପ୍ରଶଂସା, ଆତ୍ମଗର୍ବ । ଯଥା—

ଅଘ୍ରାଣ ଯାର ଶିରଶୂଳ ହୁଅଇ,
ଗୁଣଗର୍ବିର ଆତ୍ମଶ୍ଳାଘା ସହିବ । ବ୍ର. ସୁ.

ଆତ୍ମସଂଯମ, ବି. ପୁଂ. (ଆତ୍ମନ୍-ସଂଯମ) ଚିତ୍ତସଂଯମ, ଜିତେନ୍ଦ୍ରିୟତା ।

ଆତ୍ମସାତ୍, ବିଂ. (ଆତ୍ମନ୍-ସାତ୍, ପରିଣତ ଅର୍ଥରେ) ଅଧୀନ, ଆତ୍ମାଧୀନ, ହସ୍ତଗତ ।

ଆତ୍ମହତ୍ୟା, ବି. ସ୍ତ୍ରୀ. (ଆତ୍ମନ୍-ହତ୍ୟା) ସ୍ୱହସ୍ତରେ ପ୍ରାଣବଧ କରିବା, ଆତ୍ମଘାତ ।

ଆତ୍ମହା, ବି. ପୁଂ. (ଆତ୍ମନ୍-ହନ୍-୦) ଯେ ନିଜକୁ ହତ୍ୟା କରେ, ଆତ୍ମଘାତୀ ।

ଆତ୍ମା, ବି. ପୁଂ. (ଆ-ଅତ୍=ସତତ ଗମନ କରିବା-ମନ୍) ଆପେ; ସ୍ୱରୂପ; ବ୍ରହ୍ମା; ଜୀବ; ବୁଦ୍ଧି; ଧୈର୍ଯ୍ୟ; ଅନ୍ତଃକରଣ; ସୂର୍ଯ୍ୟ; ବାୟୁ; ଅଧିଷ୍ଠାତ୍ରୀ ଦେବତା । ଯଥା—

ଆତ୍ମା ପରମାତ୍ମା ପ୍ରତି ନିରତେ ଧାବଇ । ମ. ସା.

ଆତ୍ମାରାମ, ବି. (ଆତ୍ମା-ଆ-ରମ୍-ଅ) ବ୍ରହ୍ମଜ୍ଞାନ ବଶତଃ ଯେ ଆତ୍ମାରେ ସୁଖ ଅନୁଭବ କରନ୍ତି, ବ୍ରହ୍ମଜ୍ଞାନୀ ।

ଆତ୍ମୀୟ, ବିଂ. (ଆତ୍ମନ୍-ଈୟ) ଆତ୍ମାସମ୍ବନ୍ଧୀୟ । ବି. ସ୍ୱଜନ, କୁଟୁମ୍ବ ।

ଆତ୍ମୀୟତା, ବି. ସ୍ତ୍ରୀ. (ଆତ୍ମୀୟ-ତା) ବନ୍ଧୁତା, ଅନ୍ତରଙ୍ଗତା, ସଦ୍ଭାବ, ପ୍ରଣୟ ।

ଆତ୍ୟୁହ, ବି. ପୁଂ. (ଅତି-ଉହ) ଡାହୁକ, କାଳ-କଣ୍ଠ ।

ଆତ୍ରେୟ, ବି.ପୁଂ.(ଅତ୍ରି=ମୁନିବିଶେଷ-ଏୟ) ଅତ୍ରି-ପୁତ୍ର, ଦୁର୍ବାସା; ଚନ୍ଦ୍ର ।

ଆତ୍ରେୟୀ, ବି. ସ୍ତ୍ରୀ, (ଆତ୍ରେୟ-ଈ) ପୁଷ୍ପବତୀ ସ୍ତ୍ରୀ; ଅତ୍ରିପତ୍ନୀ; ନଦୀବିଶେଷ ।

ଆଦତ୍ ( ଯାବନିକ ) ଅଭ୍ୟାସ, ରୀତି, ଧାରା, ଆଚାର ।

ଆଦର, ବି. ପୁଂ. (ଆ-ଦୃ-ଅ) ସମ୍ମାନ, ମର୍ଯ୍ୟାଦା, ଅନୁରାଗ, ସ୍ନେହ, ଯତ୍ନ ।

ଆଦରଣୀୟ, ବିଂ. (ଆ-ଦୃ-ଅନୀୟ) ଆଦରର ଯୋଗ୍ୟ, ମାନନୀୟ ।

ଆଦର୍ଶ, ବି. ପୁଂ. (ଆ-ଦୃଶ-ଅ) ଦର୍ପଣ; ନମୁନା ।

ଆଦାନ, ବି. ନ.(ଆ-ଦା-ଅନ) ଗ୍ରହଣ; ଆଦାୟ କରିବା; ଅଶ୍ୱାଭରଣ ।

ଆଦାନକାଳ, ବି. ଯେଉଁ ସମୟରେ ସୂର୍ଯ୍ୟ ପୃଥିବୀରୁ ଜଳ ଗ୍ରହଣ କରନ୍ତି, ଗର୍ଭଣାସଂକ୍ରାନ୍ତି-ଠାରୁ ପଣାସଂକ୍ରାନ୍ତି ପର୍ଯ୍ୟନ୍ତ, ମତାନ୍ତରରେ ମକରଠାରୁ କର୍କଟସଂକ୍ରାନ୍ତି ପର୍ଯ୍ୟନ୍ତ ।

ଅଦାଯ୍ୟ, ବ. (ଆ-ଦା-ଯ) ଗ୍ରହଣ, ନେବାର ।
ଅଦି, ବ.ପୁଂ. (ଆ-ଦା-ଇ) ପ୍ରଥମ, ମୂଳ, ଆରମ୍ଭ ।
ଅଦିକବି, ବ. ପୁଂ. ବାଲ୍ମୀକି; ବ୍ରହ୍ମା ।
ଅଦିକାରଣ, ବ. ନ. ପ୍ରଥମ କାରଣ, ନ୍ୟାୟଶାସ୍ତ୍ର ମତରେ ସମବାୟି କାରଣ, ବୈଦ୍ୟଶାସ୍ତ୍ର ମତରେ କାରଣର କାରଣ । ଯଥା—କମ୍ପର କାରଣ ଜ୍ୱର, ଜ୍ୱରର କାରଣ ପିତ୍ତବୃଦ୍ଧି, ଅତଏବ ପିତ୍ତବୃଦ୍ଧି ଜ୍ୱରର ଅଦିକାରଣ ।
ଅଦିତେଯ୍ୟ, ବ. ପୁଂ. (ଅଦିତି=ଦେବମାତା-ଏୟ) ଦେବତା ।
ଅଦିତ୍ୟ, ବ. ପୁଂ. ( ଅଦିତି-ଯ ) ରବି, ସୂର୍ଯ୍ୟ; ଦେବତା; ଅର୍କଗଛ; ପୁନର୍ବସୁ ନକ୍ଷତ୍ର ।
ଅଦିଦେବ, ବ. ପୁଂ. (ଅଦି-ଦେବ) ଶିବ; ବିଷ୍ଣୁ; ନାରାୟଣ ।
ଅଦିପୁରାଣ, ବ. ନ. (ଅଦି-ପୁରାଣ) ବ୍ରହ୍ମପୁରାଣ ।
ଅଦିପୁରୁଷ, ବ. ପୁଂ. ( ଅଦି-ପୁରୁଷ ) ବଂଶର ପ୍ରଥମ ପୁରୁଷ; ନାରାୟଣ, ବିଷ୍ଣୁ ।
ଅଦିମ, ବଂ. (ଅଦି-ମ, ଭବାର୍ଥେ) ପ୍ରଥମ, ଅଦ୍ୟ ।
ଅଦିରାଜ, ବ. ପୁଂ. (ଅଦି-ରାଜନ୍) ପୃଥୁରାଜା, ବୈବସ୍ୱତମନୁ ।
ଅଦିଷ୍ଟ, ବଂ. (ଆ-ଦିଶ୍-ତ) ଆଜ୍ଞପ୍ତ, ଅଦେଶପ୍ରାପ୍ତ; କଥିତ ।
ଅଦୃତ, ବଂ.(ଆ-ଦୃ-ତ) ଆଦରପ୍ରାପ୍ତ, ସମ୍ମାନିତ ।
ଅଦେଶ, ବ. ପୁଂ. (ଆ-ଦିଶ୍-ଅ) ଆଜ୍ଞା, ଅନୁମତି । ଯଥା—

> କପି ସେନାଙ୍କୁ ବ ମନ୍ତ୍ର ବେଶ,
> ଧରିଲେ ଲକ୍ଷଣ ରାମ ଅଦେଶ । ଚ. ବ.

ଏକ ବର୍ଣ୍ଣ ସ୍ଥାନରେ ବର୍ଣ୍ଣାନ୍ତରର ଉତ୍ପତ୍ତି ।
ଅଦେଶୀ, ବଂ. ( ଆ-ଦିଶ୍-ଇନ୍ ) ଉପଦେଷ୍ଟା, ଅଦେଶକର୍ତ୍ତା ।
ଅଦେଷ୍ଟା, ବଂ. ( ଆ-ଦିଶ୍-ତୃ ) ଉପଦେଶକ, ଅଦେଶକ ।
ଅଦୌ, କ୍ରି. ବ. (ଅଦି-ଔ) ଅଗ୍ରେ, ପ୍ରଥମରେ; ଶମାରୁ ।

ଅଦ୍ୟ, ବଂ. (ଅଦି-ଯ) ପ୍ରଥମ, ଅଦିମ, ପ୍ରଧାନ ।
ଅଦ୍ୟନ୍ତ, ବଂ. (ଅଦି-ଅନ୍ତ) ପ୍ରଥମଠାରୁ ଶେଷ ପର୍ଯ୍ୟନ୍ତ । ବ. ଆରମ୍ଭ ଓ ଶେଷ ।
ଅଦ୍ୟପ୍ରାନ୍ତ, କ୍ରି. ବଂ. (ଅଦ୍ୟ-ପ୍ରାନ୍ତ) ପ୍ରଥମାବଧି ଶେଷ ପର୍ଯ୍ୟନ୍ତ, ପୂର୍ବାପର ।
ଅଦ୍ୟଶ୍ରାଦ୍ଧ,ବ.ନ.(ଅଦ୍ୟ-ଶ୍ରାଦ୍ଧ) ଅଶୌଚାନନ୍ତର କର୍ତ୍ତବ୍ୟ ଶ୍ରାଦ୍ଧ ।
ଅଦ୍ୟା, ସ୍ତ୍ରୀ. (ଅଦି-ଯ-ଆ) କାଳୀ, ଦୁର୍ଗା । ବଂ. ପ୍ରଥମା ।
ଅଦ୍ୟୋପାନ୍ତ, ବଂ. (ଅଦ୍ୟ-ଉପ-ଅନ୍ତ) ପ୍ରଥମରୁ ଶେଷ ଯାଏ, ସମ୍ପୂର୍ଣ୍ଣ ।
ଅଧାନ, ବ. ନ. (ଆ-ଧା-ଅନ) ଧାରଣ, ସମ୍ପାଦନ, ଉତ୍ପାଦନ ।
ଅଧାର, ବ. ପୁଂ. (ଆ-ଧୃ-ଅ) ପାତ୍ର; ଆଶ୍ରୟ; ଗଛ ମୂଳର ମନ୍ଦା; ବନ୍ଧ ।
ଅଧି, ବ. ପୁଂ. (ଆ-ଧା-ଇ) ଗଚ୍ଛିତବସ୍ତୁ; ସ୍ଥାପନ; ଦୁଃଖ, ମନଃପୀଡ଼ା, ବିପଦ ।
ଅଧିକ୍ୟ, ବ. ନ. ( ଅଧିକ-ଯ ) ଆତିଶଯ୍ୟ, ଅଧିକତା, ପ୍ରାଧାନ୍ୟ ।
ଅଧିଦୈବିକ, ବଂ. ( ଅଧି-ଦେବ-ଇକ ) ଦୈବ-ଜାତ, ଗ୍ରହାଦି କାରଣ ସମ୍ଭୂତ ।
ଅଧିପତ୍ୟ, ବ. ନ. (ଅଧିପତି-ଯ) ପ୍ରଭୁତ୍ୱ,ସ୍ୱାମିତ୍ୱ ।
ଅଧିଭୌତିକ, ବଂ. (ଅଧି-ଭୂତ-ଇକ) ଭୂତଜାତ, କ୍ଷିତ୍ୟାଦି ପଞ୍ଚଭୂତଜାତ ।
ଅଧୁନିକ, ବଂ. (ଅଧୁନା-ଇକ) ଇଦାନୀନ୍ତନ, ଅଜିକାଲିର ।
ଅଧେୟ, ବଂ. (ଆ-ଧା-ଯ) ସ୍ଥାପନୀୟ ବସ୍ତୁ, ଆଶ୍ରିତ ।
ଅଧୋରଣ, ବ. ପୁଂ. (ଆ-ଧୋରୃ=ଗତିଚାତୁର୍ଯ୍ୟ କରିବା-ଅନ) ହାତୀମାହୁନ୍ତ, ହସ୍ତିପକ ।
ଅଧ୍ମାତ, ବଂ. (ଆ-ଧ୍ମା-ତ) ଶବ୍ଦିତ, ଧ୍ୱନିତ; ଦଗ୍ଧ; ବିବର୍ଦ୍ଧିତ, ଫୀତ ।
ଅଧ୍ମାନ, ବ. ନ. (ଆ-ଧ୍ମା-ଅନ) ଉଚ୍ଚାରଣ; ଶବ୍ଦ; ବୈଦ୍ୟଶାସ୍ତ୍ର ମତରେ ବାତରୋଗ ହେତୁ ପେଟର ଗୁଡ଼ୁଗୁଡ଼ୁ ଶବ୍ଦ ଓ ଫୀତତା ।

ଆଧ୍ୟା, ବି. ସ୍ତ୍ରୀ. (ଆ-ଧ୍ୟୈ-ଅ) ଚିନ୍ତା ।

ଆଧ୍ୟାତ୍ମିକ, ବିଂ.(ଅଧି-ଆତ୍ମନ୍-ଇକ) ଆତ୍ମସମ୍ବନ୍ଧୀୟ; ମାନସିକ ।

ଆଧ୍ୟାନ, ବି. ନ. ( ଆ-ଧ୍ୟୈ-ଅନ ) ସ୍ମରଣ; ଦୁର୍ଭାବନା, ଦୁଶ୍ଚିନ୍ତା ।

ଆନ, ବିଂ. (ପ୍ରା; ଅନ୍ୟର ଅପଭ୍ରଂଶ) ଅନ୍ୟ, ଇତର । ବି. ଶପଥ ବା ସ୍ୱଣ । ଯଥା—

ବଂଶାର୍ଦ୍ଧ ଅନନ ଶୋଭା ଆନ ଆନ,
ଆନ ନ ଲଭେ ଯା ଦେବ ତୋତ୍ର ସେ ବଂଶାଷ୍ଟ ।
ବୈ. ଚ.

ଆନକ, ବି. ପୁଂ. (ଆ-ଅଣ=ଶବ୍ଦ କରିବା-ଅକ) ପଟହ, ଢକ୍କା, ଭେରୀ, ମୃଦଙ୍ଗାଦି; ସଶବ୍ଦ ମେଘ । ବିଂ. ଉତ୍ସାହକାରୀ ।

ଆନକଦୁନ୍ଦୁଭି, ବି. ପୁଂ. ସ୍ତ୍ରୀ. ବସୁଦେବ, ଶ୍ରୀକୃଷ୍ଣଙ୍କ ପିତା, ଏହାଙ୍କ ଜନ୍ମକାଳରେ ଆନକ ଏବଂ ଦୁନ୍ଦୁଭିର ଶବ୍ଦ ହୋଇଥିବାରୁ ଏହାଙ୍କର ଏପରି ନାମ ହୋଇଅଛି ; ବୃହତ୍ ଢକ୍କା ।

ଆନତ, ବିଂ. (ଆ-ନମ୍-ତ) ନମ୍ରୀଭୂତ, ଅବନତ, ନତ, ପ୍ରଣତ ; ପତିତ ; ବିନୀତ, ନମ୍ର ।

ଆନତି, ବି. ସ୍ତ୍ରୀ. (ଆ-ନମ୍-ତି) ନମ୍ରତା, ପ୍ରଣାମ, ଅବନମନ ।

ଆନଦ୍ଧ, ବି. ନ. (ଆ-ନହ-ତ) ଯାହାର ମୁଖ ଚର୍ମାଦିଦ୍ୱାରା ବଦ୍ଧ, ମୁରଜ, ମୃଦଙ୍ଗାଦି; ବେଶଭୂଷାଦି । ବିଂ. ବଦ୍ଧ; ଅସ୍ତ୍ରାଦିଦ୍ୱାରା ସଜ୍ଜିତ; ବ୍ୟାପ୍ତ ।

ଆନନ, ବି. ନ. (ଆ-ଅନ୍-ଅନ) ବଦନ, ମୁଖ ।

ଆନନ୍ଦ ବି. ପୁଂ. (ଆ-ନନ୍ଦ-ଅ) ଆହ୍ଲାଦ, ହର୍ଷ, ସୁଖ; ପରମାତ୍ମା, ବ୍ରହ୍ମ । ବିଂ. ଆନନ୍ଦଜନକ, ହର୍ଷବିଶିଷ୍ଟ ।

ଆନନ୍ଦଜନକ, ବିଂ. (ଆନନ୍ଦ-ଜନକ) ହର୍ଷ-ଜନକ ।

ଆନନ୍ଦନ, ବି. ନ. (ଆ-ନନ୍ଦ୍-ଅନ) ସମ୍ବର୍ଦ୍ଧନା, ଦେଖା ହେଲେ ପରସ୍ପର ପ୍ରତି ସୌଜନ୍ୟ ପ୍ରକାଶ, ହର୍ଷ । ବିଂ. ହର୍ଷଜନକ ।

ଆନନ୍ଦିତ, ବିଂ. (ଆ-ନନ୍ଦ୍-ତ) ଆହ୍ଲାଦିତ, ହୃଷ୍ଟ, ପ୍ରଫୁଲ୍ଲିତ ।

ଆନୟନ, ବି. ନ. (ଆ-ନୀ-ଅନ) ଆଣିବାର ।

ଆନର୍ତ୍ତ, ବି. ପୁଂ. (ଆ-ନୃତ୍-ଅ) ନୃତ୍ୟଶାଳା, ରଙ୍ଗଭୂମି; ଯୁଦ୍ଧ ; ଜଳ ; ଦ୍ୱାରକାଦେଶ ।

ଆନାୟ, ବି. ପୁଂ ( ଆ-ନୀ-ଅ ) ଜାଲ, ମାଛ ଧରିବାର ଯନ୍ତ୍ରବିଶେଷ ।

ଆନାହ, ବି. ପୁଂ. (ଆ-ନହ-ଅ) କୋଷ୍ଠବଦ୍ଧ-ରୋଗ; ଦୈର୍ଘ୍ୟ ।

ଆନୀତ, ବିଂ. (ଆ-ନୀ-ତ) ଯାହା ଆନୟନ କରା ହୋଇଅଛି ।

ଆନୁକୂଲ୍ୟ, ବି. ନ. (ଅନୁକୂଲ-ଯ) ସାହାଯ୍ୟ ।

ଆନୁଗତ୍ୟ, ବି. ନ. (ଅନୁଗତ-ଯ) ଅନୁବୃତ୍ତି, ଅନୁସରଣ, ଅନୁଗତ ହୋଇ ରହିବାର ।

ଆନୁପୂର୍ବିକ,ବିଂ. (ଅନୁ-ପୂର୍ବ-ଇକ) ଅନୁକ୍ରମଯୁକ୍ତ, କ୍ରମାନୁସାରୀ ।

ଆନୁମାନିକ, ବିଂ. (ଅନୁମାନ-ଇକ) ସମ୍ଭାବ୍ୟ ବା ସମ୍ଭାବିତ, ଅନ୍ଦାଜ ।

ଆନୁଷଙ୍ଗିକ, ବିଂ. ( ଅନୁଷଙ୍ଗ-ଇକ ) ସଲଗ୍ନ, ସଂଯୁକ୍ତ ।

ଆନୂପ, ବି. ପୁଂ. (ଅନୂପ-ଅ) ଅନୂପଦେଶଜାତ ମହିଷ, ଗଣ୍ଡାର, ଶୂକର ପ୍ରଭୃତି ଜନ୍ତୁବିଶେଷ । ବିଂ. ଜଳବହୁଳ, ଜଳପ୍ରାୟ ।

ଆନ୍ତରିକ, ବିଂ. (ଅନ୍ତର-ଇକ) ମନୋଗତ ।

ଆନ୍ତରୀକ୍ଷ, ବିଂ. (ଅନ୍ତରୀକ୍ଷ-ଅ) ଆକାଶସମ୍ବନ୍ଧୀୟ ।

ଆନ୍ଦୋଳନ, ବି. ପୁଂ. ନ. (ଆ ଦୋଳ-ଅନ) ଅନୁଶୀଳନ, ତର୍କବିତର୍କ, ଆଲୋଚନା ; କମ୍ପନ ।

ଆନ୍ଦୋଳିତ, ବିଂ. (ଆନ୍ଦୋଳ-ଇତ) ଚଳିତ, କମ୍ପିତ, ଦୋଳିତ ।

ଆନ୍ୱୀକ୍ଷିକୀ, ବି. ସ୍ତ୍ରୀ. ( ଅନୁ-ଈକ୍ଷ-ଇକ-ଈ ) ନ୍ୟାୟଶାସ୍ତ୍ର, ତର୍କବିଦ୍ୟା, ଆତ୍ମବିଦ୍ୟା; ଦୁର୍ଗା ।

ଅପଃ, ବି. ନ. (ଅପ୍=ପ୍ରାପ୍ତି ହେବାର-ଅସ୍) ଜଳ, ଜଳବୃଷ୍ଟି ।

ଆପ, ବି. ନ. (ଅପ୍=ଜଳ-ଅ, ସମୃଦ୍ଧ ଅର୍ଥରେ) ଜଳସମୃଦ୍ଧ ।

ଆପକ୍ୱ, ବିଂ. (ଆ=ଈଷତ୍-ପକ୍ୱ) ଅର୍ଦ୍ଧପକ୍ୱ, ଈଷତ୍-ପକ୍ୱ ।

ଆପଗା, ବି. ସ୍ତ୍ରୀ. (ଆପ-ଗମ୍-ଅ) ଯଦ୍ଦ୍ୱାରେ ଜଳ ଗମନ କରେ, ନଦୀ ।

ଆପଟ, ବି. (ଦେଶଜ) ଆବରଣ । ଯଥା—

> ଝଟମ ଆପଟେ ଏହୂପର ଉହ୍ନ ନପଟ ଦେବସ୍ମରେ ।
> ମନେ ମନେ ଗଲ ତୃପ୍ତି ସେ ବାଳାଙ୍କୁ ଚହ୍ଲିଁ ବରଣଯାଏ ।
> ଯ. ଦେ.

ଆପଣ, ବି. (ଆ-ପଣ୍=ବାଣିଜ୍ୟ କରିବା-ଅ) ବିକ୍ରୟସ୍ଥାନ, ହାଟ, ବଜାର ; ମଧ୍ୟ ପୁରୁଷର ମାନ୍ୟ ହେଲେ ଯୁଷ୍ମତ୍ ପରିବର୍ତ୍ତରେ "ଆପଣ" ଏହି ଶବ୍ଦର ପ୍ରୟୋଗ ହୁଏ ।

ଆପଣା, ସଂ. (ପ୍ରା; ଆତ୍ମନ୍ ଶବ୍ଦର ଅପଭ୍ରଂଶ) ନିଜେ, ଆପେ, ସ୍ୱୟଂ ।

ଆପଣିକ, ବିଂ. (ଆପଣ-ଇକ) ବାଣିଜ୍ୟକାରୀ, ବିକ୍ରେତା, ଦୋକାନୀ ।

ଆପତ୍ତି. ବି. ସ୍ତ୍ରୀ. (ଆ-ପଦ୍-ତି) ବିପତ୍ତି; ଦୋଷ; ଉଦ୍ଧାର; ଅସମ୍ମତି; ବାଧାଦାନ; ବିପରୀତ ଯୁକ୍ତିପ୍ରଦର୍ଶନ ।

ଆପଦ, ବି. ସ୍ତ୍ରୀ, (ଆ-ପଦ୍-ଅ) ବିପଦ; ଦୁଃଖ, ଦୁର୍ଭାଗ୍ୟ, ଦୁର୍ଘଟନା; (ଆପ=ଜଳସମୃଦ୍ଧ-ଦ=ଯେ ଦାନ କରେ) ମେଘ; ମୂଥା ।

ଆପନ୍ନ, ବିଂ. (ଆ-ପଦ୍-ତ) ବିପଦ୍‌ଗ୍ରସ୍ତ; ଲବ୍ଧ, ପ୍ରାପ୍ତ ।

ଆପନ୍ନସତ୍ତ୍ୱା, ବିଂ. (ଆପନ୍ନ=ପ୍ରାପ୍ତ-ସତ୍ତ୍ୱ=ପ୍ରାଣୀ) ଗର୍ଭିଣୀ, ଗର୍ଭବତୀ ।

ଆପାତ, ବି. ପୁଂ. (ଆ-ପତ୍-ଅ) ପତନ; ଆଗମନ; ତତ୍କାଳ; ପ୍ରଥମ ସମୟ; ଘଟନାସମୟ; ପଥ ।

ଆପାତତଃ ଅଂ. (ଆପାତ-ତସ୍) ସମ୍ପ୍ରତି, ବର୍ତ୍ତମାନ, ଇଦାନୀଂ; ପ୍ରଥମତଃ ।

ଆପାଦମସ୍ତକ, ବିଂ. (ଆ-ପାଦ-ମସ୍ତକ) ପାଦଠାରୁ ମସ୍ତକ ପର୍ଯ୍ୟନ୍ତ ।

ଆପାଦିତ, ବିଂ. (ଆ-ପାଦି-ତ) ସମ୍ପାଦିତ, ଅନୁଷ୍ଠିତ ।

ଆପାନ, ବି.ନ.(ଆ-ପା-ଅନ) ମଦ୍ୟପାନର ପାତ୍ର, ମଦ୍ୟବିକ୍ରୟସ୍ଥାନ ।

ଆପାମର, ବି. (ଆ=ଅବଧି-ପାମର) ପାମର ପର୍ଯ୍ୟନ୍ତ; ସମସ୍ତ, ସକଳ ।

ଆପିଞ୍ଜର, ବି. ନ. (ଆ=ସର୍ବତୋଭାବରେ-ପିଞ୍ଜର=ପୀତବର୍ଣ୍ଣ) ସୁବର୍ଣ୍ଣ । ବିଂ. ଈଷତ୍ ପୀତବର୍ଣ୍ଣ ।

ଆପିଲ, ଅପିଲ, ବି. (ଇଂରାଜୀ) ପୁନର୍ବିଚାରର ପ୍ରାର୍ଥନା, ବିଚାରକର ନିଷ୍ପତ୍ତିରେ ଅସନ୍ତୁଷ୍ଟ ହୋଇ ଉପରସ୍ଥ କର୍ମଚାରୀ ବା ବିଚାରକ ନିକଟରେ ବିଚାର ପ୍ରାର୍ଥନା ।

ଆପୀନ, ବି. ପୁଂ. (ଆ-ପୀନ) ଗାଭୀର ସ୍ତନ, ପଶ୍ୱାତ୍ କୂପ । ବିଂ. ଈଷତ୍ ସ୍ଥୂଳ ।

ଆପୂପ, ବି. ପୁଂ. (ଅପୂପ=ପିଷ୍ଟକ-ଅ, ସ୍ୱାର୍ଥେ) ପିଷ୍ଟକ, ପିଠା ।

ଆପୂପିକ, ବିଂ. (ଅପୂପ-ଇକ) ପିଷ୍ଟକବ୍ୟବସାୟୀ, ପିଠାବିକ୍ରେତା ।

ଆପୂପ୍ୟ, ବି. ପୁଂ. (ଅପୂପ-ଯ) ମଇଦା, ଅଟା ପ୍ରଭୃତି ପିଷ୍ଟକର ଉପକରଣ ।

ଆପେକ୍ଷିକ, ବିଂ. (ଅପେକ୍ଷା-ଇକ) ଅପେକ୍ଷାକୃତ, ତୁଳନାକୃତ ।

ଆପେକ୍ଷିକ ଗୁରୁତ୍ୱ, ବି. ନ. (Specific gravity) ସମ ଆୟତନବିଶିଷ୍ଟ ଭିନ୍ନ ଭିନ୍ନ ପଦାର୍ଥର ଗୁରୁତ୍ୱର ଯେଉଁ ସମ୍ବନ୍ଧ, ତାହାକୁ ଆପେକ୍ଷିକ ଗୁରୁତ୍ୱ ବୋଲାଯାଏ ।

ଆପ୍ତ, ବିଂ. (ଆପ୍-ତ) ଅଭ୍ରାନ୍ତ ; ବିଶ୍ୱସ୍ତ ; ଆତ୍ମୀୟ, ବନ୍ଧୁ ; ଲବ୍ଧ ; ଯୁକ୍ତ ; ହିତ ; କୁଶଳ ବା ପାରଗ । ବି. ପୁଂ. ଭ୍ରମପ୍ରମାଦଶୂନ୍ୟ ମୁନି ପ୍ରଭୃତି ।

ଆପ୍ତକାମ, ବିଂ. (ଆପ୍ତ-କାମ) ଯାହାର କାମନା ପୂର୍ଣ୍ଣ ହୋଇଅଛି, ପୂର୍ଣ୍ଣମନୋରଥ ।

ଅପ୍ରବାକ୍ୟ, ବ. ନ. (ଅପ୍ର=ଅଭ୍ରାନ୍ତ-ବାକ୍ୟ) ଭ୍ରମ ପ୍ରମାଦ ରହିତ ବିଶ୍ୱସ୍ତ କଥା; ପ୍ରମାଣ, ସିଦ୍ଧାନ୍ତ-ବାକ୍ୟ ।

ଅପ୍ତା, ବ. ସ୍ତ୍ରୀ. (ଅପ୍-ତ-ଆ) କଷ୍ଟ ।

ଅପ୍ତି, ବ. ସ୍ତ୍ରୀ. (ଅପ୍-ତି) ପ୍ରାପ୍ତି, ଲାଭ; ସଂଯୋଗ; ସମ୍ବନ୍ଧ; ବ୍ୟାପ୍ତି ।

ଅପ୍ୟାନ, ବିଂ. (ଆ-ପ୍ୟାୟ୍-ତ) ବଳିଷ୍ଠ, ସ୍ଫୀତ, ସ୍ଥୂଳ ।

ଅପ୍ୟାୟନ, ବ. ନ. (ଆ-ପ୍ୟାୟ୍-ଅନ) ତୃପ୍ତି, ସନ୍ତୋଷ; ପୋଷଣ; ପ୍ରୀତି; ବୃଦ୍ଧି; ଉନ୍ନତି ।

ଅପ୍ୟାୟିତ, ବିଂ. (ଆ-ପ୍ୟାୟ୍-ତ) ତୃପ୍ତ, ସନ୍ତୁଷ୍ଟ ।

ଅପ୍ଲବନ, ବ. ନ. (ଆ-ପ୍ଲୁ-ଅନ) ପାଣିରେ ପହଁରିବାର, ସ୍ନାନ, ଅବଗାହନ ।

ଅପ୍ଲୁତ, ବିଂ. (ଆ-ପ୍ଲୁ-ତ) ସ୍ନାତ, ମଗ୍ନ ।

ଅବଦ୍ଧ, ବିଂ. (ଆ-ବନ୍ଧ୍-ତ) ବ୍ୟାପୃତ, ବଦ୍ଧ; ସଂଲଗ୍ନ; ନିରଚିତ; କଳ୍ପିତ ।

ଅବାଦ, (ଯାବନିକ) କର୍ଷଣ, ଚାଷ କରିବା ।

ଅବୁଡ଼ାଖାବୁଡ଼ା, (ଦେଶଜ) ବନ୍ଧୁର, ଅସମାନ, ଉଚ୍ଚନୀଚ ।

ଅଭରଣ, ବ. ନ. (ଆ-ଭୃ-ଅନ) ଅଳଙ୍କାର, ଭୂଷଣ ।

ଅଭା, ବ. ସ୍ତ୍ରୀ. (ଆ-ଭା-ଆ) ଦୀପ୍ତି, ଶୋଭା, କାନ୍ତି; ସାଦୃଶ୍ୟ; ବାତରୋଗବିଶେଷ ।

ଅଭାଷ, ବ. ପୁଂ. (ଆ-ଭାଷ୍-ଅ) ଭୂମିକା; ଅନୁଷ୍ଠାନ; ଆଳାପ ।

ଅଭାଷଣ, ବ. ନ. (ଆ-ଭାଷ୍-ଅନ) ଆଳାପ, ପରସ୍ପର କଥାବାର୍ତ୍ତା ।

ଅଭାସ, ବ. ପୁଂ. (ଆ-ଭାସ୍-ଅ) ଅଭିପ୍ରାୟ; ସାଦୃଶ୍ୟ; ଦୀପ୍ତି; ସୂଚନା; ପ୍ରତିବିମ୍ବ ।

ଅଭିଜାତ୍ୟ, ବ. ନ. (ଅଭିଜାତ-ଯ) କୁଳାଭିମାନ, କୌଳିନ୍ୟ, ବଂଶମର୍ଯ୍ୟାଦା । ଯଥା—

ଭଜନର ମଦେ କେହି, ପଦେ କେହି ଅଟା,
କେହି ରୂପମଦେ, କେହି ଅଭିଜାତ୍ୟମଦେ । ମ. ଯା.

ଅଭିମୁଖ୍ୟ, ବ. ନ. (ଅଭିମୁଖ-ଯ) ସମ୍ମୁଖୀନତ୍ୱ; ଅନୁକୂଳ୍ୟ ।

ଅଭୀର, ବ. ପୁଂ. (ଆ-ଭୀ-ର-ଅ) ଗଉଡ଼, ଗୋପାଳ; ଦେଶବିଶେଷ । ରୀ, ସ୍ତ୍ରୀ. ଗୋପୀ; ଗୌଡ୍ରୁଣୀ ।

ଅଭୋଗ, ବ. ପୁଂ. (ଆ-ଭୁଜ୍-ଅ) ପୂର୍ଣ୍ଣତା । ଯଥା—

ପଦ୍ମନନ୍ଦାଭୋଗସ୍ତୁ ସବୃତ୍ତ ହୃଦ ମେ କୋଽପି ପୂରୁଷଃ ।
ହଂସଦୂତ ।

(ପୂର୍ଣ୍ଣତା ଅର୍ଥରେ)

ଅଭୋଗ ହୋଇଲା ଏ ଚୋଷିବ ରସିକରେ । ବ. ଚ.

ବିସ୍ତାର; ଯତ୍ନ; ଉପଭୋଗ; ବରୁଣଛତ୍ର ।

ଅଭ୍ୟନ୍ତର, ବିଂ. (ଅଭ୍ୟନ୍ତର-ଅ) ଅଭ୍ୟନ୍ତର ଭବ, ଅନ୍ତର, ମାନସିକ ।

ଅମ, ବ. ପୁଂ. (ଅମ୍-ଅ) ରୋଗ, ପୀଡ଼ା, ରୋଗ-ବିଶେଷ; ନିସ୍ତୁଷ ଧାନ୍ୟାଦି । ବିଂ. ଅପକ୍ୱ, କଞ୍ଚା ।

ଅମଗନ୍ଧି, ବ.ନ. (ଅମ=କଞ୍ଚା-ଗନ୍ଧ-ଇ) ଦୁର୍ଗନ୍ଧ, ଚିତାଧୂମାଦିର ଗନ୍ଧ ।

ଅମଦାନି, (ଯାବନିକ) ଦେଶାନ୍ତରରୁ ଦ୍ରବ୍ୟାଦି ଅନୟନ ।

ଅମନ୍ତ୍ରଣ, ବ. ନ. (ଆ-ମନ୍ତ୍ର-ଅନ) ସମ୍ବୋଧନ, ଆହ୍ୱାନ, ନିମନ୍ତ୍ରଣ ।

ଅମନ୍ତ୍ରିତ, ବିଂ. (ଆ-ମନ୍ତ୍ର-ତ) ଆହୂତ, ନିମନ୍ତ୍ରିତ ।

ଅମୟ, ବ. ପୁଂ. (ଅମ୍-ଯା-ଅ) ରୋଗ, ବ୍ୟାଧି । ନ. ଔଷଧବିଶେଷ, କୁଡ଼ ।

ଅମରକ୍ତ, ବ. ନ. (ଅମ=ଅପକ୍ୱ-ରକ୍ତ) ଉଦରାମୟ ରୋଗବିଶେଷ, ରକ୍ତ ଓ ମଳପତନ-ଜନିତ ପୀଡ଼ା ।

ଅମରଣ, କ୍ରି. ବିଂ. (ଆ-ମରଣ) ମରଣକାଳ ପର୍ଯ୍ୟନ୍ତ ।

ଅମଲକ, ବ. ପୁଂ. } (ଆ-ମଲ୍=ଧାରଣ କରିବା
ଅମଲକୀ, ବ. ସ୍ତ୍ରୀ. } -ଅକ) ଅଁଳାଫଳ, ଅଁଳା-ଗଛ; ଧାତ୍ରୀଗଛ; ଧାତ୍ରୀ ।

ଆମଲ୍ଲା, ବ. ( ଯାବନକ ) ବେତନଭୋଗୀ କର୍ମଚାରୀ ।

ଆମବାତ, ବ. ପୁଂ. (ଆମ=ଅପକ୍ୱରସ-ବାତ=ବାୟୁ) ସ୍ୱନାମଖ୍ୟାତ ବାତରୋଗବିଶେଷ ।

ଆମଶୂଳ, ବ. ପୁଂ. (ଆମ-ଶୂଳ) ରୋଗବିଶେଷ, ଆମଜନିତ ଉଦର ରୋଗ ।

ଆମାତିସାର, ବ. ପୁଂ. (ଆମ-ଅତିସାର) ଯେଉଁ ରୋଗରେ ଆମମିଶ୍ରିତ ଝାଡ଼ା ହୁଏ, ରୋଗବିଶେଷ ।

ଆମାନ୍ନ, ବ. ନ. (ଆମ-ଅନ୍ନ) ତଣ୍ଡୁଳ, ଚାଉଳ, ଅପକ୍ୱ ଅନ୍ନ ।

ଆମାଶୟ, ବ. ପୁଂ. (ଆମ-ଆଶୟ=ପାତ୍ର) ଗର୍ଭସ୍ଥ ଯନ୍ତ୍ରବିଶେଷ, ରୋଗବିଶେଷ ।

ଆମିକ୍ଷା, ଆମୀକ୍ଷା, ବ. ସ୍ତ୍ରୀ. (ଆ-ମିକ୍ଷ୍=ସେଚନ କରିବା-ସ-ଆ) ଦୁଗ୍ଧବିକାରବିଶେଷ, ଛେନା ।

ଆମିଷ, ବ. ପୁଂ. ନ. (ଆ-ମିଷ୍=ବ୍ୟକ୍ତ ହେବା-ଅ) ମାଂସ ଓ ମତ୍ସ୍ୟାଦି; ସୁନ୍ଦର ଦ୍ରବ୍ୟ; ଉତ୍କୋଚ, ଲାଞ୍ଚ; ଅଭିଳାଷ; ଲାଭ; ଭୋଜନ; ଶିକାର ।

ବଣ୍ଟିତ୍ୱ ଅର୍ଥୀଙ୍କର ଏହୁ ସୁରଭନା
ଭୂମି ହେବ ଛତ୍ରାନ୍ନେଷି ଶତ୍ରୁର ଅମିଷ । ମ. ଯା.

ଆମିଷପ୍ରିୟ,ବ.ପୁଂ. କଙ୍କପକ୍ଷୀ । ବିଂ. ମାଂସାଭିଳାଷୀ ।

ଆମିଷାଶୀ, ବିଂ.(ଆମିଷ-ଅଶ୍-ଇନ୍ ) ଆମିଷଭୋଜୀ ।

ଆମୁକ୍ତ, ବିଂ. (ଆ-ମୁଚ୍-ତ) ବଦ୍ଧ ; ପରିହିତ ; କ୍ଷିପ୍ତ; ପରିତ୍ୟକ୍ତ ।

ଆମୁଖ, ବ. ନ. ( ଆ-ମୁଖ=ଆରମ୍ଭ କରିବା ) ନାଟକର ପ୍ରସ୍ତାବନାରୂପ ଅଙ୍ଗବିଶେଷ ।

ଆମୁଷ୍ୟାୟଣ, ବିଂ. ( ଅମୁଷ୍ୟ-ଅୟନ, ପୁତ୍ରାର୍ଥେ ) ସଦ୍‌ବଂଶୀୟ, କୁଳୀନ ।

ଆମୁଷ୍ମିକ, ବିଂ.(ଅମୁଷ୍ମିନ୍-ଇକ)ପାରଲୌକିକ ।

ଆମୂଳ, ବିଂ. (ଆ-ମୂଳ) ମୂଳପର୍ଯ୍ୟନ୍ତ; ପ୍ରଥମାବଧି ।

ଆମୃଷ୍ଟ, ବିଂ. (ଆ-ମୃଜ୍-ତ) ମର୍ଦ୍ଦିତ ।

ଆମୋଦ, ବ. ନ. (ଆ-ମୁଦ୍-ଅ) ଆନନ୍ଦ, ହର୍ଷ ପୁଂ. ଅତି ଦୂରବ୍ୟାପୀ ସୁଗନ୍ଧି ।

ଆମୋଦିତ, ବିଂ. (ଆମୋଦ-ଇତ) ପୁଲକିତ; ଆନନ୍ଦିତ; ସୁଗନ୍ଧଯୁକ୍ତ ।

ଆମ୍ନାୟ, ବ. ପୁଂ. (ଆ-ମ୍ନା=ଅଭ୍ୟାସ କରିବା-ଅ) ମନ୍ତ୍ରଗଣ ଯାହା ଅଭ୍ୟାସ କରନ୍ତି, ବେଦ; କୁଳାଚାର; ଅଭ୍ୟାସ; ସମ୍ପ୍ରଦାୟ; ତନ୍ତ୍ରଶାସ୍ତ୍ର; କୁଳ ।

ଆମ୍ର, ବ. ପୁଂ. ( ଅମ୍-ର-ଅ=ଅମ୍ର; ଅମ୍ର-ଅ, ସ୍ୱାର୍ଥେ ) ଆମ୍ବ, ଫଳବିଶେଷ; ଆମ୍ବଗଛ ।

ଆମ୍ରାତ, ଆମ୍ରାତକ, ବ. ପୁଂ. (ଅମ୍ର-ଅତ, ଅକ) ଆମ୍ବଡ଼ା, ଆମ୍ବଡ଼ାଗଛ ।

ଆମ୍ଳା, ଅମ୍ଳିକା, ଅମ୍ଳୀକା, ବ. ସ୍ତ୍ରୀ. (ଅମ୍ଳ=ରସବିଶେଷ-ଆ, ଇକ, ଈକ-ଆ) ତେନ୍ତୁଳିଗଛ ।

ଆମ୍ବ, ବ. (ପ୍ରା ; ଆମ୍ର ଶବ୍ଦର ଅପଭ୍ରଂଶ) ଚୂତ, ଫଳବିଶେଷ, ବୃକ୍ଷବିଶେଷ ।

ଆମ୍ବଡ଼ା, ବ. (ପ୍ରା ; ଆମ୍ରାତକର ଅପଭ୍ରଂଶ) ଫଳବିଶେଷ, ବୃକ୍ଷବିଶେଷ ।

ଆମ୍ବିକେୟ, ବ. ପୁଂ. (ଅମ୍ବିକା-ଏୟ) ଅମ୍ବିକାପୁତ୍ର, ଧୃତରାଷ୍ଟ୍ର, କାର୍ତ୍ତିକେୟ ।

ଆମ୍ବିଳ, ବ. (ପ୍ରା; ଅମ୍ଳର ଅପଭ୍ରଂଶ) ରସବିଶେଷ, ଖଟେଇ ।

ଆମ୍ବିଳା, ବିଂ. (ପ୍ରା) ଆମ୍ବିଳରସଯୁକ୍ତ, ଖଟା ।

ଆୟ, ବ. ପୁଂ. (ଆ-ଇ-ଅ) ଧନାଗମ, ଲାଭ; ଲଗ୍ନର ଏକାଦଶ ସ୍ଥାନ ।

ଆୟତ, ବ. ନ. (ଆ-ଯମ୍-ତ) ସମକୋଣୀ ସମାନ୍ତରାଳ କ୍ଷେତ୍ର । ବିଂ. ବିସ୍ତୃତ, ବିଶାଳ ।

ଆୟତନ, ବ. ନ. (ଆ-ଯତ୍=ଯତ୍ନ କରିବା-ଅନ) ଯଜ୍ଞବେଦୀ; ଆଶ୍ରୟ; ଭଦ୍ରାସନ; ଘରବାଡ଼ି; ପରିମାଣ; ପରିସର; ରୋଗର କାରଣ ।

ଆୟତ୍ତ, ବିଂ. (ଆ-ଯତ୍=ବଶ ହେବା-ତ) ବଶୀଭୂତ, ଅଧୀନ ।

ଆୟସ, ବିଂ. (ଅୟସ୍-ଅ) ଲୌହନିର୍ମିତ ।

ଆୟସୀ, ବିଂ. (ଅୟସ୍-ଅ-ଈ) ଲୌହନିର୍ମିତ, ଲୌହମୟୀ । ଯଥା—

ପ୍ରଚଣ୍ଡ ଆୟସୀ ଗଦା ଭୂଷଇ ଦକ୍ଷିଣ । କ. ବ.

ଅୟ୍ୟା, ବ. (ଯାବନକ) ଧାଈ, ଦାସୀ ।

ଅୟ୍ୟାତ, ବ. ନ. (ଆ-ଯା-ତ) ଆଗମନ । ବଂ. ଆଗତ ।

ଅୟ୍ୟାମ, ବ. ପୁଂ. (ଆ-ଯମ୍-ଅ) ଦୈର୍ଘ୍ୟ; ବିସ୍ତାର ।

ଅୟ୍ୟାସ, ବ. ପୁଂ. (ଆ-ଯସ୍=କ୍ଲିଷ୍ଟ ହେବା-ଅ) କ୍ଲାନ୍ତି; ଯତ୍ନ; କ୍ଲେଶ; ପରିଶ୍ରମ; ଦୁର୍ବଳତା ।

ଆୟୁ, ଆୟୁଃ, ବ. ପୁଂ. ନ. (ଇ=ଗମନ କରିବା-ଉ, ଉସ୍) ଜୀବନ, ଜୀବିତକାଳ, ପରମାୟୁ; ନକ୍ଷତ୍ର, ରାଜପୁତ୍ର ।

ଆୟୁଧ, ବ. ପୁଂ. (ଆଯୁଧ୍-ଅ) ଅସ୍ତ୍ର, ଶସ୍ତ୍ର, ହତିଆର ।

ଆୟୁଧାଗାର, ବ. ନ. (ଆୟୁଧ-ଆଗାର) ଅସ୍ତ୍ରଗୃହ, ଯେ ଗୃହରେ ଅସ୍ତ୍ରାଦି ଥାଏ ।

ଆୟୁଧିକ, ବଂ. (ଆୟୁଧ-ଇକ) ଅସ୍ତ୍ରଶସ୍ତ୍ରବ୍ୟବସାୟୀ, ଶସ୍ତ୍ରଧାରୀ, ଯୋଦ୍ଧା ।

ଆୟୁଧୀୟ, ବଂ. (ଆୟୁଧ ଈୟ) ଅସ୍ତ୍ରଶସ୍ତ୍ରବ୍ୟବସାୟୀ, ଯୋଦ୍ଧା ।

ଆୟୁର୍ବେଦ, ବ. ପୁଂ. (ଆୟୁଃ=ଜୀବନକାଳ-ବିଦ୍=ଜାଣିବା-ଅ) ଚିକିତ୍ସାଶାସ୍ତ୍ର, ବୈଦ୍ୟକଶାସ୍ତ୍ର ।

ଆୟୁର୍ବେଦୀ, ବଂ. (ଆୟୁର୍ବେଦ-ଇନ୍) ଆୟୁର୍ବେଦବ୍ୟବସାୟୀ, ଚିକିତ୍ସକ, ଗଣକ ।

ଆୟୁଷ୍କାମ, ବଂ. (ଆୟୁଃ=ଜୀବନ-କାମ=ଅଭିଳାଷ) ଦୀର୍ଘଜୀବନାଭିଳାଷୀ ।

ଆୟୁଷ୍ମାନ୍, ବଂ. (ଆୟୁଷ୍-ମତ୍) ଦୀର୍ଘାୟୁ, ଦୀର୍ଘଜୀବୀ । ବ. ପୁଂ. ଯୋଗବିଶେଷ ।

ଆୟୁଷ୍ୟ, ବଂ. (ଆୟୁଷ୍-ଯ) ଯାହାଦ୍ୱାରା ଆୟୁର୍ବୃଦ୍ଧି ହୁଏ, ଆୟୁଷ୍କର ।

ଅୟୋଗବ, ବ. ପୁଂ. (ଅୟୋଗବ-ଅ) ଶୂଦ୍ର ଔରସରେ ବୈଶ୍ୟା ଗର୍ଭଜାତ ସନ୍ତାନ, ସଙ୍କରଜାତିବିଶେଷ ।

ଅୟୋଜକ, ବଂ. (ଆ-ଯୁଜ୍-ଅକ) ସଂଗ୍ରହକାରକ, ଉଦ୍ୟୋଗୀ ।

ଆୟୋଜନ, ବ. ନ. (ଆ-ଯୁଜ୍-ଅନ) ସଂଗ୍ରହ, ଆହରଣ, ଉଦ୍ୟୋଗ ।

ଆୟୋଧନ, ବ. ନ. (ଆ-ଯୁଧ୍-ଅନ) ଯୁଦ୍ଧ, ଯୁଦ୍ଧକ୍ଷେତ୍ର ।

ଅର, ବ. ପୁଂ. (ଋ=ଗମନ କରିବା-ଅ) ମଙ୍ଗଳଗ୍ରହ; ଶନି; ପିତ୍ତଳ; ଚମାରଙ୍କର ଅସ୍ତ୍ରବିଶେଷ; ଚକ୍ରାଙ୍ଗକାଷ୍ଠବିଶେଷ; ଅର ।

ଆରକୂଟ, ବ. ପୁଂ. ନ. (ଆର=ଗମନକାରୀ-କୂଟ=ସ୍ତୂପ) ପିତ୍ତଳ, ପିତ୍ତଳ ଆଭରଣ ।

ଆରକ୍ତ, ବଂ. (ଆ=ଈଷତ୍-ରଞ୍ଜ୍-ତ) ଈଷତ୍ ଲାଲ, ରକ୍ତବର୍ଣ୍ଣ ।

ଆରକ୍ତିମା, ବ. ସ୍ତ୍ରୀ. (ଆରକ୍ତ-ଇମନ୍) ଈଷତ୍ ଲାଲ, ରକ୍ତବର୍ଣ୍ଣ ।

ଆରଗ୍ୱଧ, ବ. ପୁଂ. (ଆ-ରଗ୍=ରୋଗ-ବଧ୍=ନଷ୍ଟ କରିବା-ଅ) ସୁନାରିଗଛ ।

ଅରଣି, ବ. ପୁଂ. (ଅ-ଋ-ଅନି) ଜଳାବର୍ତ୍ତ, ଜଳଭଉଁରୀ ।

ଆରଣ୍ୟ, ବଂ. (ଅରଣ୍ୟ-ଅ) ବନଜାତ, ବନୋଦ୍ଭବ, ବନ୍ୟ ।

ଆରଣ୍ୟକ, ବ. ପୁଂ. (ଅରଣ୍ୟ-କ) ହସ୍ତୀ; ପଥ; ଅଧ୍ୟାୟ; ମହାଭାରତର ପର୍ବବିଶେଷ; ବେଦାଂଶବିଶେଷ; ଗୋମୟ; ନ୍ୟାୟଶାସ୍ତ୍ର; ବନବାସୀ । ବଂ. ବନ୍ୟ, ବନଜାତ ।

ଆରତି, ବ. ସ୍ତ୍ରୀ. (ଆ-ରମ୍-ତି) ଆଳତି; ନିବୃତ୍ତି, ଶାନ୍ତି ।

ଆରନାଳ, } ବ. ନ. (ଅର=ଶୀଘ୍ର-ନଲ୍=
ଆରନାଳକ, } ବନ୍ଧନ କରିବା-ଅ, ଅକ) ଅଥବା (ଅର=ଗମନଶୀଳ-ନାଳ=ଗନ୍ଧ ଯାହାର) କାଞ୍ଜି, କାଞ୍ଜିପାଣି, ତୋରାଣି, ତୋରାଣି ।

ଆରବ୍ଧ, ବଂ. (ଆ-ରଭ୍-ତ) ଯାହା ଆରମ୍ଭ କରା ହୋଇଅଛି, ଉପକ୍ରାନ୍ତ । ବ. ନ. ଆରମ୍ଭ ।

ଆରମ୍ଭ, ବି. ପୁଂ. ନ. (ଆ-ରଭ-ଅ) ଉଦ୍ୟୋଗ, ଉପକ୍ରମ; ବ୍ୟାପାର; କାର୍ଯ୍ୟ; ଯତ୍ନ; ଉପାୟ; ପ୍ରୟୋଗ; ତ୍ୱରା; ଉତ୍ପତ୍ତି; ଯୋଗ; ଅନୁଷ୍ଠାନ; ହିଂସା; ଗର୍ବ ।

ଆରବ, ଆରାବ, ବି. ପୁଂ. (ଆ-ରୁ-ଅ) ଶବ୍ଦ, ଧ୍ୱନି; ଦେଶବିଶେଷ ।

ଆରାତି, ବି.ପୁଂ. (ଆ-ରା=ଦାନ କରିବା-ଅତି) ଶତ୍ରୁ, ବିପକ୍ଷ ।

ଆରାଧନା, ବି. ସ୍ତ୍ରୀ. (ଆ-ରାଧ-ଅନ-ଆ) ଉପାସନା, ତୁଷ୍ଟିକରଣ; ପରିଚର୍ଯ୍ୟା, ସେବା; ଅଭ୍ୟାସ; ପାକ; ପ୍ରାପ୍ତି ।

ଆରାଧ୍ୟ, ବିଂ. (ଆ-ରାଧ-ଯ) ଉପାସ୍ୟ, ସେବ୍ୟ, ଯାହାକୁ ଆରାଧନା କରାଯାଏ ।

ଆରାମ, ବି. ପୁଂ. (ଆ-ରମ୍-ଅ) ଉପବନ; ସୁସ୍ଥତା, ସୁଖ; ବିରତି, ନିବୃତ୍ତି ।

ଆରଶୀ, ବି. (ଦେଶଜ) (ସମ୍ଭବତଃ ଆଦର୍ଶ ଶବ୍ଦଜ) ଆଇନା, କାଚ, ଦର୍ପଣ ।

ଆରିଷା, ବି. (ଦେଶଜ) ପିଷ୍ଟକବିଶେଷ ।

ଆରୁ, ବି. ପୁଂ. (ଋ+ଉ, ଅ=ଆ) କର୍କଟ; ଶୂକର; ବୃକ୍ଷବିଶେଷ; ପିଙ୍ଗଳବର୍ଣ୍ଣ ।

ଆରୂଢ଼, ବିଂ. (ଆ-ରୁହ-ତ) ଯେ ଆରୋହଣ କରିଅଛି ।

ଆରେ, (ଅ) ଅବଜ୍ଞାସୂଚକ ସମ୍ବୋଧନ ଶବ୍ଦ । ଯଥା—

ଅରେ ଅରେ ଦୁଃଶାସନ ଦୁରନ୍ତ କୌରବ । ବ. ବ.

ଆରେକ, ବିଂ. (ଦେଶଜ) ଅନ୍ୟ ଜଣେ, ଅପରବ୍ୟକ୍ତି । ଯଥା—

ଏକ ଆରେକ ମୁଖ ଶୁଙ୍ଘି ।

ଆରୋଗ୍ୟ, ବି. ନ. (ଅ-ରୋଗ-ଯ) ସ୍ୱାସ୍ଥ୍ୟ, ରୋଗାଭାବ, ଅରୋଗିତା ।

ଆରୋପ, ବି. ପୁଂ. (ଆ-ରୋହ-ଅ; ହ=ପ) ଏକ ବସ୍ତୁରେ ଅନ୍ୟ ଧର୍ମର ସ୍ଥାପନ । ଯଥା—

ରଜ୍ଜୁରେ ସର୍ପବୁଦ୍ଧି ଆରୋପ ଉଦ୍ଭାବନା ।

ଆରୋପଣ, ବି. ନ. (ଆ-ରୁହ-ଇ-ଅନ) ଆରୋପ କରିବା; ଆରୋହଣ; ଧନ୍ୟନ୍ତରେ ଗୁଣ ସଂଯୋଗ କରାଇବା; ଶସ୍ୟାଦି ବପନ, ରୋଇବାର ।

ଆରୋହ, ବି. ପୁଂ. ( ଆ-ରୁହ-ଅ ) ଦୈର୍ଘ୍ୟ; ଉଚ୍ଚତା; ଅଶ୍ୱ ବା ହସ୍ତ୍ୟାଦିରେ ଆରୂଢ଼ ସୈନିକ; ଭାର; ଉତ୍ତମ ସ୍ତ୍ରୀର ନିତମ୍ବ ।

ଆରୋହଣ, ବି. ନ. (ଆ-ରୁହ-ଅନ) ଉପରେ ଚଢ଼ିବାର ।

ଆରୋହଣୀ; ବି. ସ୍ତ୍ରୀ (ଆ-ରୁହ-ଅନ-ଈ) ଶିଢ଼ି, ସୋପାନ, ପାହାଚ ।

ଆରୋହୀ, ବିଂ. (ଆ-ରୁହ-ଇନ୍) ଆରୋହଣକାରୀ ।

ଆର୍ଜବ, ବି. ନ. (ଋଜୁ-ଅ) ସରଳତା, ଋଜୁତା । ଯଥା—

ସାଧୁଜନ ସେବ୍ୟ ଏକ୍କ ପଦକ ଆର୍ଜବ । ମ. ଯା.

ଆର୍ଜୁନି, ବି. ପୁଂ. ( ଅର୍ଜୁନ-ଇ, ଅପତ୍ୟାର୍ଥେ ) ସୁଭଦ୍ରା ଗର୍ଭଜାତ ଅର୍ଜୁନପୁତ୍ର ଅଭିମନ୍ୟୁ । ଯଥା—

ଶତ ପ୍ରହରଣେ ଏବେ ବେଢ଼ିଲେ ଉଦ୍ଭଟ,
ଆର୍ଜୁନିକି, ଅକ୍ରନାକ ଯଥା କ୍ରୁରଚମୂ । ମ. ଯା.

ଆର୍ତ୍ତ, ବିଂ. ( ଆ-ଋ-ତ ) ପୀଡ଼ିତ, ବ୍ୟାକୁଳ; ବିପନ୍ନ; ବିହ୍ୱଳ ।

ଆର୍ତ୍ତନାଦ, ବି. ପୁଂ. (ଆର୍ତ୍ତ-ନଦ-ଅ) କରୁଣଧ୍ୱନି, ଶୋକସୂଚକ ଶବ୍ଦ । ଯଥା—

ଆର୍ତ୍ତନାଦ ସିଂହନାଦ କ୍ଷାତ୍ରଜ ଅମ୍ବରେ,
ପାତକ ଅହନ୍ତ ପରେ ନାଦେ ଦମ୍ଭରେ । ବ. ବ.

ଆର୍ତ୍ତବ, ବିଂ. (ଋତୁ-ଅ) ଋତୁଜାତ, ଋତୁସମ୍ବନ୍ଧୀୟ । ବି. ନ. ରଜୋରକ୍ତ ।

ଆର୍ତ୍ତି, ବି. ସ୍ତ୍ରୀ. (ଆ-ଋ-ତି) ପୀଡ଼ା, ଧନୁର ଅଗ୍ର ।

ଆର୍ତ୍ୱିଜ, ବି. ନ. (ଋତ୍ୱିଜ-ଅ) ପୌରୋହିତ୍ୟ ।

ଆର୍ଥିକ, ବିଂ. (ଅର୍ଥ-ଇକ) ଅର୍ଥଜ୍ଞ, ବିଜ୍ଞ; ଧନୀ, ଅର୍ଥସମ୍ବନ୍ଧୀୟ ।

ଆର୍ଦ୍ର, ବିଂ. (ଅର୍ଦ୍ଦ=ଗମନ କରିବା-ର) ଓଦା, ତନ୍ତା, ସନ୍ତସନ୍ତିଆ; ନୂତନ; ମୃଦୁ, ଶିଥିଳ ।

ଆର୍ଦ୍ରକ, ବି. ନ. ( ଆର୍ଦ୍ର-କ ) ମୂଳବିଶେଷ, ଅଦା ।

ଆର୍ଦ୍ରା, ବି. ସ୍ତ୍ରୀ. (ଆର୍ଦ୍ର-ଆ) ନକ୍ଷତ୍ରବିଶେଷ, ଷଷ୍ଠନକ୍ଷତ୍ର, ଏହାର ଆକାର ପଦ୍ମାକୃତି । ଯଥା—

ତୃଷ୍ଣିତତ୍ତ୍ୱ ମାନୁଷ୍ୟ ଅରହ୍ରାନ୍ତୋଷି,
ମାଣିକ୍ୟ ତଙ୍କ ଚଣେ ଯତ ଶାଟେ ଶୋ । ଭ. ପା.

ଆର୍ଯ୍ୟ, ବିଂ. ( ଆ-ଋ=ଗମନ କରିବା-ଯ ) ସତ୍କୁଳୋଦ୍ଭବ, ପୂଜ୍ୟ, ଶ୍ରେଷ୍ଠ । ବି. ପୁଂ. ସ୍ୱାମୀ, ଗୁରୁ ।

ଆର୍ଯ୍ୟପୁତ୍ର, ବି.ପୁଂ. (ଆର୍ଯ୍ୟ-ପୁତ୍ର) ସ୍ୱାମୀ; ଗୁରୁପୁତ୍ର । ( ନାଟକାଭିନୟରେ ସ୍ୱାମିକୁ ଆର୍ଯ୍ୟପୁତ୍ର କୁହା ଯାଇଥାଏ । ଏ ସ୍ଥଳରେ ଆର୍ଯ୍ୟ ଶବ୍ଦର ଅର୍ଥ ଶ୍ୱଶୁର )

ଆର୍ଯ୍ୟଭଟ୍ଟ, ବି. ପୁଂ. ଜଣେ ଭାରତୀୟ ହିନ୍ଦୁ ଜ୍ୟୋତିର୍ବିଦ୍, ଏ ଆର୍ଯ୍ୟ ସିଦ୍ଧାନ୍ତ ଓ ବୀଜଗଣିତ ପ୍ରଣୟନ କରିଥିଲେ ।

ଆର୍ଯ୍ୟା, ବି. ସ୍ତ୍ରୀ. (ଅ-ଋ-ଯ-ଆ) ପାର୍ବତୀ; ଶ୍ରେଷ୍ଠା ଏବଂ ମାନ୍ୟା ସ୍ତ୍ରୀ, ଶାଶୁପ୍ରଭୃତି; ଛନ୍ଦୋବିଶେଷ; ଏହି ଛନ୍ଦର ପ୍ରଥମ ଓ ତୃତୀୟ ଚରଣରେ ଦ୍ୱାଦଶ, ଦ୍ୱିତୀୟ ଚରଣରେ ଅଷ୍ଟାଦଶ ଏବଂ ଚତୁର୍ଥ ଚରଣରେ ପଞ୍ଚଦଶ ମାତ୍ରା ଥାଏ, ହ୍ରସ୍ୱବର୍ଣ୍ଣ ହେଲେ ଏକ ମାତ୍ରା ଓ ଦୀର୍ଘବର୍ଣ୍ଣ ହେଲେ ଦୁଇ ମାତ୍ରା ଗଣନା କରିବାକୁ ହୁଏ ।

ଆର୍ଯ୍ୟାବର୍ତ୍ତ, ବି. ପୁଂ. (ଆର୍ଯ୍ୟ-ଆବର୍ତ୍ତ) ପୁଣ୍ୟଭୂମି, ହିମାଳୟ ଓ ବିନ୍ଧ୍ୟ ପର୍ବତର ମଧ୍ୟବର୍ତ୍ତୀ ସ୍ଥାନ ।

ଆର୍ଷ, ବି. ପୁଂ. (ଋଷି-ଅ) ବିବାହବିଶେଷ । ବିଂ. ଋଷିପ୍ରଣୀତ ( ପୁରାଣ; କାବ୍ୟାଦି ); ଋଷି ସମ୍ବନ୍ଧୀୟ; (ବ୍ୟାକରଣର ନିୟମାଦି ଉଲ୍ଲଙ୍ଘନ କରି) ଋଷିପ୍ରଯୁକ୍ତ (ଶବ୍ଦାଦି) ଯେପରି ଆର୍ଷ ପ୍ରୟୋଗ ।

ଅଲକତରା, (ଯାବନିକ) ଘୁଣନାଶକ ତରଳ-ଦ୍ରବ୍ୟବିଶେଷ, ରାଳ ।

ଅଳଙ୍କାରିକ, ବିଂ. (ଅଳଙ୍କାର-ଇକ) ଅଳଙ୍କାର ଶାସ୍ତ୍ରରେ ନିପୁଣ, ଅଳଙ୍କାର ଶାସ୍ତ୍ରଜ୍ଞ ।

ଅଲଚି, ବି. (ଦେଶଜ) ଏଲାଚି, ଗ୍ରାକୋପକରଣ-ବିଶେଷ, ବ୍ୟଞ୍ଜନବିଶେଷ ।

ଅଲପିନ, (ଯାବନିକ) ପିନ, ଲୌହନିର୍ମିତ କ୍ଷୁଦ୍ର କଣ୍ଟା ।

ଅଲମ୍ବ, ବି. ପୁଂ. ( ଅ-ଲମ୍ବ୍-ଅ ) ଆଶ୍ରୟ, ଅବଲମ୍ବନ; ଆଧାର ।

ଅଲମ୍ବନ, ବି. ନ. (ଅ-ଲମ୍ବ୍-ଅନ) ଅବଲମ୍ବନ, ଆଶ୍ରୟ; ନୃତ୍ୟାଦିର ରସର ବିଭାବବିଶେଷ, ଯାହାକୁ ଆଶ୍ରା କରି ରସର ଉଦୟ ହୁଏ, ନାୟିକାଦି ।

ଅଲମ୍ଭ, ବି. ପୁଂ. (ଅ-ଲଭ୍-ଅ) ମାରଣ, ହିଂସା, ବଧ; ସ୍ପର୍ଶ ।

ଅଲୟ, ବି. ପୁଂ. (ଅ-ଲୀ=ଲୀନ ହେବା-ଅ) ଗୃହ, ବାସସ୍ଥାନ ।

ଅଲବାଳ, } ବି. ନ. (ଅ-ଲୂ=ଛେଦନ କରିବା
ଅଳବାଳ, } ବା ଖନନ କରିବା-ଆଳ) ମନ୍ଦା, ଗଛମୂଳରେ ଜଳ ରହିବା ସ୍ଥାନ । ଯଥା—

ଚାମ୍ପୂଳ ବୋଲ ଗଣ୍ଡ ଚମ୍ପକେ ଫଳ,
ହେମ ଅଲବାଳେ କ ରାଗ ବଢ଼ଳୀ ।

ଅଲସ, ବିଂ. ( ଅଲସ-ଅ ) ଆଳସ୍ୟଯୁକ୍ତ, ଅଳସୁଆ ।

ଅଲସ୍ୟ, ବି. ନ. (ଅଲସ-ଯ) ଅଲସତା, ମାନ୍ଦ୍ୟ, ଅଳସୁଆପଣ ।

ଅଲାନ, ବି. ନ. (ଅ-ଲା=ଗ୍ରହଣ କରିବା ବା ବନ୍ଧନ କରିବା-ଅନ ) ଗଜବନ୍ଧନ ସ୍ତମ୍ଭ; ବନ୍ଧନରଜ୍ଜୁ ।

ଅଲାପ, ବି. ପୁଂ. ( ଅ-ଲପ=କହିବା-ଅ ) କଥୋପକଥନ, କଥାବାର୍ତ୍ତା; ଉଚ୍ଚାରଣ; ପରିଚୟ; ସଙ୍ଗୀତରେ "ଅନୁଲୋମ, ବିଲୋମ, ଗମକ, ମୂର୍ଚ୍ଛନା, ତାନ, ଲୟ, ସ୍ୱର ଅର୍ଥାତ୍ ଯେଉଁ ରାଗିଣୀରେ ଯେଉଁ ଯେଉଁ ସ୍ୱର ଯଥାର୍ଥ-ରୂପେ ଅବଶ୍ୟକ, ଏହିମାନଙ୍କ ସଂଯୋଗରେ ରାଗାଦିକୁ ପ୍ରକୃଷ୍ଟରୂପେ ପ୍ରଦର୍ଶନ କରିବାର ନାମ ଅଲାପ ।"

ଆଳାପନ, ବି. ନ. ( ଆ ଲପି-ଅନ ) ପରସ୍ପର କଥୋପକଥନ, ଆଭାଷଣ ।

ଆଳାପିନୀ, ବି. ସ୍ତ୍ରୀ. (ଆଳାପ-ଇନ୍-ଈ) ବୀଣା ।

ଆଳାପୀ, ବିଂ. (ଆ-ଲାପି-ଇନ୍ ) ଯାହା ସଙ୍ଗରେ ଆଳାପ ଅଛି, ଯେ ଅନ୍ୟ ସଙ୍ଗରେ ଉତ୍ତମ-ରୂପେ ଆଳାପ କରେ ।

ଆଳାପ୍ୟ, ବିଂ. (ଆ-ଲପ-ଯ) ଆଳାପଯୋଗ୍ୟ, ଯାହା ସହିତ ଆଳାପ କରିବା ଉଚିତ; କଥନୀୟ ।

ଆଳାବୁ, } ବି. ସ୍ତ୍ରୀ. ( ଅଲାବୁ ଦେଖ ) ତୁମ୍ବୀ,
ଆଳାବୂ, } ଲାଉ ।

ଆଳି, ଆଳୀ, ବି. ସ୍ତ୍ରୀ. (ଅଲ୍=ଭୂଷିତ କରିବା-ଇ, ଈ) ସଖୀ; ଯୁବତୀ; ଶ୍ରେଣୀ; ଓଡ଼ିଶାର କକ୍ଷାବିଶେଷ; ହିଡ଼, କ୍ଷେତର ସୀମାନିରୂପକ ବନ୍ଧ । ପୁଂ. ଭ୍ରମର; ବୃଶ୍ଚିକ ।

ଆଲିଙ୍ଗନ, ବି. ନ. (ଆ-ଲିନ୍ଗ୍-ଅନ) ଆଶ୍ଳେଷ, କୁଣ୍ଢାକୁଣ୍ଢି, ଅଙ୍ଗମିଳନ ।

ଆଲିମ୍ପନ, ବି. ନ. (ଆ-ଲିନ୍ପ୍-ଅ) ଚିତା ।

ଆଲୀଢ଼, ବିଂ. (ଆ-ଲିହ୍-ତ) ଭକ୍ଷିତ, ଆସ୍ୱାଦିତ, ଚାଟିବା; ଅନ୍ୱେଷିତ । ବି. ନ. ଶରାଦି କ୍ଷେପଣ ସମୟରେ ଉପବେଶନବିଶେଷ, ବାମ ଜାନୁ ପଶ୍ଚାଦ୍ଭାଗରେ ଓ ଦକ୍ଷିଣ ଜାନୁ ସମ୍ମୁଖରେ ବିସ୍ତାରରୂପେ ସ୍ଥାପନପୂର୍ବକ ଉପବେଶନ ।

ଆଲୀନ, ବିଂ. (ଆ-ଲୀ-ତ) ବିଲୀନ, ଲୟପ୍ରାପ୍ତ; ବ୍ୟାପ୍ତ ।

ଆଲୁ, ବି. ସ୍ତ୍ରୀ, ( ଅଲ୍-ଉ ) କ୍ଷୁଦ୍ର ଜଳାଧାର, କଳସ, ମାଠିଆ । ପୁଂ. ନ. ମୂଳବିଶେଷ; ଭେଳା; ପେଚକ; ଚନ୍ଦ୍ର ।

ଆଲୁଅ, ବି. ଚକ୍ଷୁରୋଗବିଶେଷ, (ପ୍ରା; ଆଲୋକ-ଶବ୍ଦଜ) ଦୀପ୍ତି, ପ୍ରକାଶ ।

ଆଲୁଲାୟିତ, ବିଂ.(ଆ-ଲୁଲ୍+ତ) ବନ୍ଧନରହିତ, ଆକୁଳା ।

ଆଲେଖ୍ୟ, ବି. ନ. (ଆ-ଲିଖ-ଯ) ଚିତ୍ର, ଚିତ୍ରପଟ, ଛବି; ଚିତ୍ରକରଣ । ବିଂ. ଲେଖନୀୟ । ଯଥା—

ଦଶିଲା ଆଲେଖ୍ୟ ପ୍ରାୟେ ରକ୍ଷାଙ୍କୁ ସେ ଛଳୀ । ମ. ପା.

ଆଲେପ, } ବି.ନ. (ଆ-ଲିପ୍-ଅ, ଅନ) ଲେପନ
ଆଲେପନ, } ଦ୍ରବ୍ୟ; ଲେପିବାର ।

ଆଲୋ, ଅଂ. ସ୍ତ୍ରୀ ବ୍ୟକ୍ତିର ସମ୍ବୋଧନ ।

ଆଲୋକ, ବି. ପୁଂ. ( ଆ-ଲୋକ୍-ଅ ) ଦର୍ଶନ, ଦୃଷ୍ଟିପଥ; ପ୍ରକାଶ, ଦୀପ୍ତି; ଆଲୁଅ; ଜୟଶବ୍ଦ ।

ଆଲୋକନ, ବି. ନ. ( ଆ-ଲୋକ୍-ଅନ ) ଦୃଷ୍ଟି, ଦର୍ଶନ, ଦେଖିବା ।

ଆଲୋକବିଜ୍ଞାନ, (Optics) ବି.ନ. (ଆଲୋକ-ବିଜ୍ଞାନ) ଆଲୋକ ଓ ଦର୍ଶନବିଷୟକ ବିଦ୍ୟା, ବିଜ୍ଞାନବିଶେଷ ।

ଆଲୋଚନା, ବି. ସ୍ତ୍ରୀ. ( ଆ-ଲୋଚ୍-ଅନ-ଆ ) ଆନ୍ଦୋଳନ, ଅନୁଶୀଳନ, ଚର୍ଚ୍ଚା ।

ଆଲୋଚନୀୟ, ବିଂ. ( ଆ-ଲୋଚ-ଅନୀୟ ) ଆଲୋଚନାର ଯୋଗ୍ୟ, ଅନୁଶୀଳନୀୟ ।

ଆଲୋଚିତ, ବିଂ. (ଆ-ଲୋଚ୍-ତ) ଯେ ବିଷୟର ଆଲୋଚନା କରା ହୋଇଅଛି, ଅନୁଶୀଳିତ ।

ଆଲୋଚ୍ୟ, ବିଂ. (ଆ-ଲୋଚ୍-ଯ )ଆଲୋଚନାର ଯୋଗ୍ୟ ।

ଆଲୋଡ଼ନ, ବି. ନ. (ଆ ଲୁଡ୍-ଅନ) ମନ୍ଥନ, ଆବର୍ତ୍ତନ ।

ଆଲୋଡ଼ିତ, ବିଂ. ( ଆ-ଲୁଡ୍-ତ ) ମନ୍ଥିତ; ସମ୍ମିଳିତ; ଆଲୋଚିତ ।

ଆଲୋଲ, ବିଂ. (ଆ=ଈଷତ୍-ଲୋଲ=ଚଞ୍ଚଳ) ଈଷତ୍ ଚଞ୍ଚଳ ।

ଆଲୋଲିକା, ବି. ସ୍ତ୍ରୀ. ହୁଳହୁଳି ଶବ୍ଦ ।

ଆବର, ବି. ( ଆଉର ଶବ୍ଦଜ ) ଆଉ, ଅନ୍ୟ, ପୁଣି (ଏ ଶବ୍ଦ ପଦ୍ୟରେ ବ୍ୟବହୃତ ) ।

ଆବରକ (Protectives), ବିଂ.(ଆ-ବୃ-ଅକ) ଆଚ୍ଛାଦକ ।

ଆବରଣ, ବି.ନ. (ଆ-ବୃ-ଅନ) ଢାଲ; ଢାଙ୍କୁଣୀ; ଅବରୋଧ; ଆଚ୍ଛାଦନ ସାଧନ ପ୍ରାଚୀରାଦି ।

ଆବର୍ଜନ, ବି. ନ. ( ଆ-ବୃଜ୍-ଅନ ) ଖଡ଼କୁଡ଼, ଅଳିଆ, ଝାଟିଆ ।

ଆବର୍ତ୍ତ, ବି. ପୁଂ. (ଆ-ବୃତ-ଅ) ଜଳଭଉଁରୀ; ମେଘବିଶେଷ; ଘୋଡ଼ା ଦେହର ଭଉଁରୀ; ଘୂର୍ଣ୍ଣନ ।

ଆବର୍ତ୍ତକ, ବି. ପୁଂ. (ଆ-ବୃତ-ଅକ) ମେରୁଦଣ୍ଡ-ସଂଲଗ୍ନ ଅସ୍ଥିଖଣ୍ଡ; ମେଘବିଶେଷ; ଘୂର୍ଣ୍ଣିଜଳ । ବିଂ. ଆବରକ ।

ଆବର୍ତ୍ତକୀ, ବି. ସ୍ତ୍ରୀ. (ଆ-ବୃତ-ଅକ-ଈ) ଲତାବିଶେଷ; ଚକ୍ରାକାର ଭ୍ରମଣ; ଜଳଭଉଁରୀ; ଘୋଡ଼ାମାନଙ୍କର ଚିହ୍ନବିଶେଷ ।

ଆବର୍ତ୍ତନ, ବି. ନ. (ଆ-ବୃତ-ଅନ) ତରଳାଇବା; ଘୂର୍ଣ୍ଣନ; ମନ୍ଥନ । ବି. ପୁଂ. ବିଷ୍ଣୁ ।

ଆବର୍ତ୍ତିତ, ବିଂ. ( ଆ-ବର୍ତ୍ତି-ତ ) ବିଲୋଡ଼ିତ, ଅଭ୍ୟସ୍ତ ।

ଆବଳି, ଆବଳୀ, ବି. ସ୍ତ୍ରୀ. (ଆ-ବଲ୍-ଇ,ଈ) ଶ୍ରେଣୀ, ପଂକ୍ତି, ସମୂହ; ବଂଶ ।

ଆବଶ୍ୟକ, ବିଂ. (ଅବଶ୍ୟ-କ) ପ୍ରୟୋଜନୀୟ । ବି. ନ. ଅବଶ୍ୟମ୍ଭାବ; ନିର୍ବକାଶ ।

ଆବଶ୍ୟକୀୟ, ବିଂ. ( ଆବଶ୍ୟକ-ଈୟ ) ପ୍ରୟୋଜନୀୟ ।

ଆବସଥ, ବି. ପୁଂ. ନ. (ଆ-ବସ୍-ଅଥ) ସ୍ଥାନ, ଆଶ୍ରମ, ଭୁବନ, ଗୃହ । ଯଥା—

ପଦ୍ମ୍‌ଧାରୀ ପଦ୍ମପକ୍ଷଶାସ୍ତ୍ରୀ ଯତ୍ରୀବତି ଚନ୍ଦ୍ରରଣଂ ।
ହିତୋପଦେଶ ।

ଆବହ, ବିଂ. (ଆ-ବହ୍-ଅ) ବହନକାରୀ; ଜନକ, ଉତ୍ପାଦକ; ଦାତା । ବି. ପୁଂ. ବାୟୁବିଶେଷ, ଭୂବାୟୁ, ଏହାର ଊର୍ଦ୍ଧ୍ୱସ୍ଥ ବାୟୁକୁ ପ୍ରବାହ କହି ।

ଆବହନ, ବି. ନ. (ଆ-ବହ-ଅନ) ଉତ୍ପାଦନ; ବହନ ।

ଆବହମାନ, ବିଂ. (ଆବହ-ମାନ) ଚିରପ୍ରଚଳିତ, କ୍ରମାଗତ । ଯଥା—ଆବହମାନ କାଳ ।

ଆବାପ, ବି. ପୁଂ. (ଆ-ବପ୍-ଅ) ମଞ୍ଜା, ଗଛ ମୂଳରେ ପାଣି ରହିବା ସ୍ଥାନ; ବଳୟାଦି ଭୂଷଣ; ଶତ୍ରୁ ରାଜ୍ୟ ଚିନ୍ତା; ରାଜ୍ୟରକ୍ଷା; ଶସ୍ୟାଦି ବପନ; ଉଚ୍ଚତାବିହୀନ ଭୂମି; ମିଶ୍ରଣ; ଅନ୍ୱୟ; ପାତ୍ରବିଶେଷ, ଥଳୀ ।

ଆବାଳ, ବି. ନ. (ଆ-ବଲ୍-ଅ) ମଞ୍ଜା, ଅଳବାଳ; (ଆ=ଅବଧି-ବାଳ) ବାଳକକାଳ ପର୍ଯ୍ୟନ୍ତ ।

ଆବାଳବୃଦ୍ଧବନିତା, ଅଂ. ବାଳକ, ବୃଦ୍ଧ ଏବଂ ସ୍ତ୍ରୀଲୋକ ପର୍ଯ୍ୟନ୍ତ ।

ଆବାସ, ବି. ପୁଂ. (ଆ-ବସ୍-ଅ) ଗୃହ, ଭବନ, ବାସସ୍ଥାନ ।

ଆବାହନ, ବି. ନ. (ଆ-ବହ-ଇ-ଅନ) ନିମନ୍ତ୍ରଣ, ଆହ୍ୱାନ; ମନ୍ତ୍ରାଦି ଉଚ୍ଚାରଣପୂର୍ବକ ହସ୍ତର ପ୍ରକ୍ରିୟାବିଶେଷଦ୍ୱାରା ଦେବତାଦିର ଆମନ୍ତ୍ରଣ ।

ଆବିକ, ବି. ପୁଂ. (ଆବି-କ) କମ୍ବଳ, ମେଷଲୋମଜ ବସ୍ତ୍ର ।

ଆବିଗ୍ନ, ବିଂ. (ଆ-ବିଜ୍-ତ) ଉଦ୍ବିଗ୍ନ । ବି. ପୁଂ. କରମର୍ଦ୍ଦକ ।

ଆବିଦ୍ଧ, ବିଂ. (ଆ-ବ୍ୟଧ୍-ତ) ବକ୍ର; କୁଟିଳ; ନିକ୍ଷିପ୍ତ; ପ୍ରେରିତ; ଭଗ୍ନ; ମୂର୍ଖ; ନିରସ୍ତ ।

ଆବିର୍ଭାବ, ବି. (ଆବିସ୍-ଭୂ-ଅ) ପ୍ରକାଶ, ଉଦୟ । ଯଥା—

ହେ ଦେବ, ଏ କେଉଁ ସ୍ଥଳୀ ? କି ଲାଗି ଏଠାରେ
ସିନ୍ଧୁଗର୍ଭେ ହୋଇଥିଲା ତୁମ୍ଭ ଆବିର୍ଭାବ । ମ. ଯା.

ଆବିର୍ଭୂତ, ବିଂ. ( ଆବିସ୍-ଭୂ-ତ ) ଅବତୀର୍ଣ୍ଣ; ପ୍ରକାଶିତ, ଉଦିତ ; ଉଦ୍ଭୂତ ।

ଆବିଳ, ବିଂ. (ଆ-ବିଲ୍-ଅ) କଳୁଷିତ, ଗୋଳିଆ; ସନ୍ଦିଗ୍ଧ; ଆକୁଳ । ଯଥା—

ଆବିଳ ନବଜଳ ପରଶି ମହୀ,
ମାୟାରେ ଜୀବ ଯଥା ଜଡ଼ ହୁଅଇ । ଭୂ. ସ୍ତ.

ଆବିଷ୍କାର, ବି. ପୁଂ. (ଆବିସ୍-କୃ-ଅ) ଅନୁସନ୍ଧାନଦ୍ୱାରା ପ୍ରକାଶକରଣ, ନବପ୍ରକାଶ ।

ଆବିଷ୍କ୍ରିୟା, ବି. ସ୍ତ୍ରୀ. (ଆବିସ୍-କ୍ରିୟା) ଅନୁସନ୍ଧାନଦ୍ୱାରା ପ୍ରକାଶ ।

ଅବଷ୍କୃତ, ବଂ. (ଅବସ୍-କୃ-ତ) ପ୍ରକଟିତ, ନବ-ପ୍ରକାଶିତ ।

ଅବଷ୍ଟ, ବଂ. (ଅ-ବଶ୍-ତ) ଜାବଷ୍ଟ; ଭୂତାଦିଗ୍ରସ୍ତ; ଅଭିଶୟ ମନୋଯୋଗୀ ।

ଅବୃ, ବ. (ଦେଶଜ) ଅଧିମାଂସ, ରୋଗବିଶେଷ ।

ଅବୃତ, ବଂ. (ଅ-ବୃ-ତ) ଆଚ୍ଛାଦିତ, ବେଷ୍ଟିତ, ବ୍ୟାପ୍ତ ।

ଅବୃତ୍ତ, ବଂ. (ଅ-ବୃତ-ତ) ପୁନଃପୁନଃ ଅଭ୍ୟସ୍ତ; ଆଗତ; ଗୁଣିତ; ନିବୃତ୍ତ; ପୁନରାଗତ ।

ଅବୃତ୍ତି, ବ. ସ୍ତ୍ରୀ. (ଅ-ବୃତ-ତି) ପଠନ, ବ୍ୟାଖ୍ୟା ନ କରି ପଢ଼ିବା; ଅଭ୍ୟାସ; ଗୁଣନ; ଆଗମନ; ପୁନଃପୁନଃ ଜନ୍ମଗ୍ରହଣ ।

ଅବେଗ, ବ. ପୁଂ. (ଆ-ବିଜ୍-ଅ) ଚଞ୍ଚଳତା; ଚିତ୍ତସମ୍ଭ୍ରମ ।

ଅବେଦକ, ବଂ. (ଅ-ବେଦ-ଅକ) ନିବେଦକ, ପ୍ରାର୍ଥନାକାରୀ ।

ଆବେଦନ, ବ. ନ. (ଆ-ବେଦ-ଅନ) ପ୍ରାର୍ଥନା, ନିବେଦନ, ବିଜ୍ଞାପନ ।

ଆବେଶ, ବ. ପୁଂ. ( ଆ-ବିଶ୍-ଅ ) ଅଧିଷ୍ଠାନ, ପ୍ରବେଶ; ଗର୍ବ; ମନୋଯୋଗ; ଆତ୍ମୀକରଣ; ଅଭିନିବେଶ; ସଞ୍ଚାର; ଅପସ୍ମାରରୋଗ । (ଅଭିନିବେଶ ଅର୍ଥରେ) ଯଥା—

ଅବେଶେ ଲେହନ୍ତି ଓଷ୍ଠ ଯେ ନାମ ସ୍ମରେ । ବ. ଚ. ମ.

ଆବେଶନ; ବ. ନ. (ଆ-ବିଶ୍-ଅନ) ଶିଳ୍ପଶାଳା; ପ୍ରବେଶ; ସୂର୍ଯ୍ୟାଦିର ପରିଧି; ଭୂତାବେଶ; ଦୈନ୍ୟ, ଘଉଣି ।

ଆବେଷ୍ଟକ, ବ. ପୁଂ. (ଆ-ବେଷ୍ଟ୍-ଅକ) ପ୍ରାଚୀର, ବାଡ଼ ପ୍ରଭୃତି ।

ଅଶ, ବ. ପୁଂ. ( ଅଶ୍-ଅ ) ଭୋଜନ, ଯେପରି ପ୍ରାତରଶ; ଯେ ଭୋଜନ କରେ । (ଏହି ଶବ୍ଦଟି ପ୍ରାୟ ଅନ୍ୟ ଶବ୍ଦ ସହିତ ପ୍ରଯୁକ୍ତ ହୁଏ) ଯଥା—ହୁତାଶ । (ଆଶା-ଶବ୍ଦଜ)ଇଚ୍ଛା,ବାଞ୍ଛା, (ପଦ୍ୟରେ କେବଳ ଏହି ଅର୍ଥରେ ବ୍ୟବହୃତ ହୁଏ) ଯଥା—

ଖିନ୍ନ ବଣେ ବଳେ ବଂଶାରଳ ବୃଥା ସ୍ୱର । ବ. ଚ. ମ.

ଆଶଂସା, ବ. ସ୍ତ୍ରୀ. ( ଆ-ଶନ୍ସ-ଆ ) ପ୍ରତ୍ୟାଶା, ଇଚ୍ଛା, ଅଭିଳାଷ, ସମ୍ଭାବନା ।

ଅଶକ୍ତ, ବଂ. (ଆ-ଶକ୍-ତ) ଶକ୍ତିବିଶିଷ୍ଟ, ସମର୍ଥ ।

ଆଶକ୍ତି, ବଂ. ପୁଂ. ( ଅ-ଶକ୍-ତି ) ସାମର୍ଥ୍ୟ, ଯୋଗ୍ୟତା ।

ଆଶଙ୍କା, ବ. ସ୍ତ୍ରୀ. (ଆ-ଶଙ୍କ୍-ଆ) ସନ୍ଦେହଯୁକ୍ତ ଭୟ; ସଂଶୟ । ଯଥା—

ଅଙ୍କେ ଭବ ବଚନ,
ନରନ୍ତ ବଳନନ କରଇ ଅଶଙ୍କ । ଭ. ବ.

ଆଶଙ୍କିତ, ବଂ. ( ଆ-ଶଂକ୍-ତ ) ଭୀତ, ତ୍ରସ୍ତ, ସନ୍ଦିଗ୍ଧ ।

ଆଶୟ, ବ. ପୁଂ. (ଆ-ଶୀ-ଅ) ଅଭିପ୍ରାୟ; ଆଶ୍ରୟ, ଆଧାର; ମନଃ; ଅଦୃଷ୍ଟ; ଐଶ୍ୱର୍ଯ୍ୟ; ଇଚ୍ଛା; ପଣସଗଛ; ପଣସ; ଅଜୀର୍ଣ୍ଣ ସ୍ଥାନ ।

ଆଶରୁ, ବ. ପୁଂ. (ଆ-ଶୃ-ଅ) ଅଗ୍ନି । ପୁଂ. ସ୍ତ୍ରୀ. ରାକ୍ଷସ, ରାକ୍ଷସୀ ।

ଆଶା, ବ. ସ୍ତ୍ରୀ. ( ଆ-ଅଶ୍-ଅ-ଆ ) ଭରସା, ଅକାଂକ୍ଷା, ଅନଧିଗତ ବିଷୟରେ ତୃଷ୍ଣା; ଦକ୍ଷ-ପ୍ରଜାପତିଙ୍କର କନ୍ୟା; ଦିକ୍, ଦିଗ । ଯଥା—

ପଶ୍ଚିମ ଶା ହେସ କହୁନେ ହ ଡ଼ିଚ । ଚ. ଚୋ.

ଆଶାବନ୍ଧ, ବ. ପୁଂ. ( ଆଶା-ବନ୍ଧ=ବନ୍ଧନ ) ଆଶ୍ୱାସ, ପ୍ରତ୍ୟାଶା; ମାକଡ଼ସାର ଜାଲ ।

ଆଶାଭଙ୍ଗ, ବଂ. ପୁଂ. (ଆଶା-ଭଙ୍ଗ) ନୈରାଶ୍ୟ, ଆକାଂକ୍ଷାବୈଫଲ୍ୟ ।

ଆଶାୟୀ, ବଂ. ( ଆଶା-ଇନ୍ ) ଆଶାବାନ୍, ଯେ ଆଶା କରେ । ଯଥା—

ହଚ ତରୁ ଫଳେ ଜଳ ଅଶାୟୀ ପଦ,
ଲବଣ୍ୟବେଗ ନାମରୁ ନନ୍ଦର ଜର । ଲ. ବ.

ଆଶାବନ୍ଧ, ବ. ପୁଂ. (ଆଶା-ଆବନ୍ଧ) ସୂର୍ଯ୍ୟ ।

ଆଶିତ, ବଂ. (ଆ-ଅଶ୍-ତ) ଅଶିତ, ଭୁକ୍ତ ।

ଆଶିଷ୍, ବ. ସ୍ତ୍ରୀ. (ଆ-ଶାସ୍-୦) ମଙ୍ଗଳବାଞ୍ଛା; ଅର୍ଥାଲଙ୍କାରବିଶେଷ ।

ଆଶୀ, ବ. ସ୍ତ୍ରୀ. ( ଆ-ଅଶ୍-ଅ-ଈ ) ସର୍ପାଦିର ବିଷଦନ୍ତ ।

ଆଶୀର୍ବାଦ, ବ. ପୁଂ. ( ଆଶିଷ୍-ବଦ-ଅ ) ଶୁଭ ଇଚ୍ଛାସୂଚକ ବାକ୍ୟ, କଲ୍ୟାଣ ।

ଆଶୀବିଷ, ବ. ପୁଂ. (ଆଶୀ-ବିଷ) ସର୍ପ ।

ଆଶୁ, କ୍ରି. ବିଂ. (ଅଶ୍-ଉ) ଶୀଘ୍ର, ଚଞ୍ଚଳ, ସତ୍ୱର, ବେଗ । ବ. ପୁଂ. ବର୍ଷାଳ ଧାନ ।

ଆଶୁଗ, ବ. ପୁଂ ( ଆଶୁ-ଗମ୍-ଅ ) ଶର, ବାଣ । ଯଥା—

ଦେବବ୍ରତଙ୍କୁ ଯେ ଦେବା ଗୃହ୍ୟଦ୍ୱାର,
ରଣେ ଶୁଭଇଲେ ସ୍ୱଦେଶ୍ର ଆଶୁଗେ । ନ. ଲେ.

ବିଂ. ଶୀଘ୍ରଗାମୀ ।

ଆଶୁଗତି, ବ. ପୁଂ. (ଆଶୁ-ଗତି) ବାୟୁ । ବିଂ. ଶୀଘ୍ରଗାମୀ । ଯଥା—

ଅନୁଚର ତବ ଆଶୁଚେ-ପୁତ୍ର ହନୂ, ଆଶୁଚେିତି ।

ଆଶୁତୋଷ, ବ. ପୁଂ. (ଆଶୁ-ତୋଷ) ମହାଦେବ ।

ଆଶୁଶୁକ୍ଷଣି, ବ. ପୁଂ. (ଆଶୁ-ଶୁଷ୍=ଶୁଷ୍କ କରିବା-ଅନ) ଅଗ୍ନି; ବାୟୁ ।

ଆଶୌଚ, ବ. ନ. (ଅଶୌଚ-ଅ) ଅଶୌଚ ।

ଆଶ୍ଚର୍ଯ୍ୟ, ବ. ନ. (ଆ-ଚର-ଯ) ବିସ୍ମୟ, ଚମତ୍କାର । ବିଂ. ଅଦ୍ଭୁତ, ଅପୂର୍ବ, ବିସ୍ମୟଜନକ ।

ଆଶ୍ମନ, ବିଂ. ( ଅଶ୍ମନ୍-ଅ ) ପ୍ରସ୍ତରସମ୍ବନ୍ଧୀୟ, ପ୍ରସ୍ତରବିକାର । ବ. ନ. ପ୍ରସ୍ତରସମୂହ । ବ. ପୁଂ. ସୂର୍ଯ୍ୟସାରଥି ।

ଆଶ୍ୟାନ, ବିଂ. ( ଆ=ଈଷତ୍-ଶ୍ୟାନ=ଶୁଷ୍କ ) ଶୁଷ୍କ । ଯଥା—

ପଙ୍କଶ୍ଚାଶ୍ୟାନଃ ବର୍ଦ୍ଧମାନ୍ । ରଘୁ ।

ଆଶ୍ଚର୍ଯ୍ୟାନ୍ୱିତ, ବିଂ. ( ଆଶ୍ଚର୍ଯ୍ୟ-ଅନୁ ଇ-ତ ) ଆଶ୍ଚର୍ଯ୍ୟଯୁକ୍ତ, ବିସ୍ମିତ ।

ଆଶ୍ରମ, ବ. ପୁଂ. (ଆ-ଶ୍ରମ-ଅ) ମୁନିମାନଙ୍କର ବାସସ୍ଥାନ ; ଚତୁର୍ବିଧ ଅବସ୍ଥା । ଯଥା—ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ଭୈକ୍ଷ୍ୟ ଏହି ଚତୁର୍ବିଧ ଅବସ୍ଥା; ବେଦାଦି ଅଧ୍ୟୟନ ସ୍ଥାନ; ବନ; ମଠ ।

ଆଶ୍ରମିକ, } ବିଂ. (ଆଶ୍ରମ-ଇକ, ଇନ୍) ତପୋ-
ଆଶ୍ରମୀ, } ବନବାସୀ, ଆଶ୍ରମସ୍ଥ, ଆଶ୍ରମ-ବିଶିଷ୍ଟ ; ଧାର୍ମିକ ।

ଆଶ୍ରୟ, ବ. ପୁଂ. (ଆ-ଶ୍ରି-ଅ) ଗୃହ; ଅବଲମ୍ବନ; ଘର, ବିଗ୍ରହାଦି ଷଡ଼୍‌ଗୁଣର ଅନ୍ୟତମ ଗୁଣ ; ସାମୀପ୍ୟ ; ରକ୍ଷାସ୍ଥାନ ; କାରଣ ; ବିଷୟ ; ପ୍ରତାରଣା ; ସ୍ଥିତି ; ଆଧାର ; ସାହାଯ୍ୟ ; ଅନୁସରଣ ।

ଆଶ୍ରୟଭୁକ୍, ବ. ପୁଂ. (ଆଶ୍ରୟ-ଭୁଜ୍-୦) ଯେଉଁ ପକ୍ଷିମାନେ କଣ୍ଠଦେଶ ପର୍ଯ୍ୟନ୍ତ ପିତାମାତାର ଆଶ୍ରୟରେ ପାଳିତ ହୁଅନ୍ତି । ଯଥା—ଚଢ଼େଇ, କାକ ଇତ୍ୟାଦି ।

ଆଶ୍ରୟାଶ, ବିଂ. ପୁଂ. (ଆଶ୍ରୟ-ଅଶ୍-ଅ) ଅଗ୍ନି; ଚିତାମୂଳଗଛ ।

ଆଶ୍ରବ, ବ. ପୁଂ. (ଆ-ଶ୍ରୁ-ଅ) ପ୍ରତିଜ୍ଞା, ଅଙ୍ଗୀକାର; କ୍ଳେଶ । ବିଂ. କଥାର ବାଧ୍ୟ, ବଶ୍ୟ ।

ଆଶ୍ରିତ, ବିଂ. (ଆ-ଶ୍ରି-ତ) ଶରଣାଗତ, ସେବକ, ଅଧୀନ; ସ୍ଥିତ ।

ଆଶ୍ଳିଷ୍ଟ, ବିଂ. (ଆ-ଶ୍ଳିଷ୍-ତ) ଆଲିଙ୍ଗିତ; ବ୍ୟାପ୍ତ; ସଂଯୁକ୍ତ; ଶ୍ଳେଷୋକ୍ତିବିଶିଷ୍ଟ ।

ଆଶ୍ଳେଷ, ବ. ପୁଂ. (ଆ-ଶ୍ଳିଷ୍-ଅ) ଆଲିଙ୍ଗନ ; ଏକଦେଶ ସମ୍ବନ୍ଧ; ମିଳନ । ଯଥା—

ଆଶ୍ଳେଷ ଧ୍ୱନି ଶ୍ଳେଷ ଛଳ ଚିତ୍ରେଣ ରୂପକ ଉତ୍ସାହ,
ସୁରସଂଜନିତ ହୃତଗିର ଗୁଣି ଅଧିକ ସୁଂସ୍ଥିତ ।
ବୈ. ଚି.

ଆଶ୍ୱସ୍ତ, ବିଂ. (ଆ-ଶ୍ୱସ୍ ତ) ଆଶ୍ୱାସପ୍ରାପ୍ତ ।

ଆଶ୍ୱାସ, ବ. ପୁଂ. (ଆ ଶ୍ୱସ୍-ଅ) ଆଶାଦାନ ; ଅନୁନୟ ; ପ୍ରବୋଧନ ; ଉତ୍ସାହଦାନ ; ସ୍ନେହ ପ୍ରଦର୍ଶନ; ଆଖ୍ୟାୟିକାର ପରିଚ୍ଛେଦ ; ନିଶ୍ୱାସ ; ବିଶ୍ରାମ ।

ଆଶ୍ୱାସିତ, ବିଂ. ( ଆ-ଶ୍ୱାସି-ତ ) ଆଶ୍ୱାସପ୍ରାପ୍ତ, ପ୍ରବୋଧିତ, ଆଶ୍ୱସ୍ତ ।

ଆଶ୍ୱିନ, ବ. ପୁଂ. (ଅଶ୍ୱିନୀ-ଅ) ମାସବିଶେଷ, ଯେଉଁ ମାସର ପୂର୍ଣ୍ଣିମାରେ ଅଶ୍ୱିନୀ ନକ୍ଷତ୍ର ହୁଏ । ଣୀ, ସ୍ତ୍ରୀ. ଏହି ମାସର ପୂର୍ଣ୍ଣିମା ।

ଅଶ୍ୱିନେୟ, ବ. ପୁଂ. (ଅଶ୍ୱିନୀ-ଏୟ) ଅଶ୍ୱିନୀ-କୁମାର, ସ୍ୱର୍ଗବୈଦ୍ୟ ।

ଅଷାଢ଼, ବ. ପୁଂ. (ଅଷାଢ଼ା-ଅ) ଅଷାଢ଼ା ନକ୍ଷତ୍ର-ଯୁକ୍ତ ପୂର୍ଣ୍ଣିମା ଯେଉଁ ମାସରେ ହୁଏ ; ବ୍ରହ୍ମଚାରୀର-ଧାର୍ଯ୍ୟ ପଲାଶଦଣ୍ଡ ; ମଳୟପର୍ବତ ।

ଅସ, ବ. ପୁଂ. (ଅସ୍-ଅ) ଧନୁକ; ଅସନ; ସ୍ଥିତ ।

ଅସକ୍ତ, ବଂ. (ଅ-ସନ୍ଜ୍-ତ) ପ୍ରୀତ, ଅନୁରକ୍ତ ; ଯତ୍ନବାନ୍ ; ଲଗ୍ନ । ଅଂ. ନିତ୍ୟ, ସତତ ।

ଅସକ୍ତି, ବ. ସ୍ତ୍ରୀ. (ଅ-ସନ୍ଜ୍-ତି) ଅନୁରାଗ, ଅତ୍ୟନ୍ତ ମନୋଯୋଗ; ସଙ୍ଗ, ସହବାସ ; ଭୋଗାଭିଳାଷ ।

ଅସଙ୍ଗ, ବ. ପୁଂ. (ଅ-ସନ୍ଜ୍-ଅ) ଭୋଗ ବାସନା; ଅନୁରାଗ; ଅଭିନିବେଶ; ସଂସର୍ଗ ।

ଅସଙ୍ଗଲିପ୍ସା (Adhesiveness), ବ. ସ୍ତ୍ରୀ. (ଅସଙ୍ଗ-ଲଭ୍-ସନ୍-ଆ) ସଙ୍ଗଲାଲସା, ଏକତ୍ର ରହିବାର ଇଚ୍ଛା ।

ଅସତ୍ତି, ବ. ସ୍ତ୍ରୀ. (ଅ-ସଦ୍-ତି) ମିଳନ, ସନ୍ନିଧି, ଲାଭ ।

ଅସନ, ବ. ନ. (ଅସ୍-ଅନ) ବସିବା ସ୍ଥାନ, ପୀଠାଦି, କମ୍ବଳାଦି; ଉପବେଶନ; ସନ୍ଧ୍ୟାଦି ଷଡ଼୍‌ଗୁଣ ମଧ୍ୟରୁ ଶତ୍ରୁ ଦୁର୍ଗ ଅବରୋଧ କରି ବସିବାରୂପ ଚତୁର୍ଥ ଗୁଣ; ହସ୍ତିର ସ୍କନ୍ଧଦେଶ ; ଜୀବଗଛ ।

ଅସନ୍ତା, ବଂ. (ଅଗମନ ଶବ୍ଦଜ) ଅଗମନଶୀଳ, ଅଗାମୀ, ଭାବୀ, ଅସୁଥିବା ।

ଅସନ୍ନ, ବଂ. (ଅ-ସଦ୍-ତ) ଉପସ୍ଥିତ, ନିକଟବର୍ତ୍ତୀ, ସମୀପସ୍ଥ ।

ଅସନ୍ନକାଳ, ବ. ପୁଂ. (ଅସନ୍ନ-କାଳ) ମରଣ ସମୟ; ବିପତ୍କାଳ ।

ଅସମାନ, (ଯାବନିକ) ଶୂନ୍ୟ, ଆକାଶ ।

ଅସମୁଦ୍ର, କ୍ରିଂ. ବଂ. (ଅ-ସମୁଦ୍ର) ସମୁଦ୍ର ପର୍ଯ୍ୟନ୍ତ ।

ଅସର, ବ. ପୁଂ. (ଅ-ସୃ-ଅ) ରାକ୍ଷସ । (ଯାବନିକ) ସତ୍ତା, ମଜଲିସ ।

ଅସବ, ବ. ନ. (ଅ-ସୂ-ଅ) ମଦ୍ୟ, ମଧୁ ।

ଅସବଦ୍ରୁ, ବ. ପୁଂ. (ଅସବ-ଦ୍ରୁ=ବୃକ୍ଷ) ଏହି ବୃକ୍ଷ ରସରେ ମଦ୍ୟ ପ୍ରସ୍ତୁତ ହୁଏ; ତାଳଗଛ ।

ଅସାଦନ, ବ. ନ. (ଅ-ସଦ୍-ଅନ) ଲାଭ, ପ୍ରାପ୍ତି; ସ୍ଥାପନ, ସନ୍ନିଧାପନ; ମର୍ଦ୍ଦନ ।

ଅସାଦିତ, ବଂ. (ଅ-ସାଦି ତ) ପ୍ରାପ୍ତ, ଲବ୍ଧ ; ସନ୍ନିଧାପିତ; ଅପ୍ରୋଜିତ; ସମ୍ପାଦିତ ।

ଅସାମୀ, ବ. (ଯାବନିକ) ପ୍ରତିବାଦୀ ।

ଅସାର, ବ. ପୁଂ. ( ଅ-ସୃ-ଅ ) ବୃଷ୍ଟିପାତ, ଜଳଧାରାପାତ; ଶତ୍ରୁକୁ ବେଷ୍ଟନ ; ସୁହୃଦ୍ ସୈନ୍ୟ; ପ୍ରବେଶ; ଜଳକଣା ।

ଅସିବା, କ୍ରି. ବଂ. (ଅଗମନ ଶବ୍ଦଜ) ଅଗମନ-ଶୀଳ, ଅସନ୍ତା । ବ. ଅଗମନ କରିବା, ଉପସ୍ଥିତ ହେବା, ଅନୁମିତ ହେବା । ଯଥା—

କବି ମନକୁ ଏମନ୍ତ ଅସଇ ।

ଅସୀନ, ବଂ. ( ଅସ୍-ଈନ ) ଉପବିଷ୍ଟ, ସ୍ଥିତ ; ଅନୁଦ୍ୟୋଗୀ ।

ଅସୁର, ଅସୁରିକ, } ବଂ. (ଅସୁର-ଅ,ଇକ) ଅସୁର-ସମ୍ବନ୍ଧୀୟ; ଅପବିତ୍ର; ନିନ୍ଦିତ; ଭୟଙ୍କର; ଅଶୁଭକର । ବ. ବିବାହବିଶେଷ ।

ଅସୁରୀ, ବ. ସ୍ତ୍ରୀ. (ଅସୁର-ଅ-ଈ) ରାଇସୋରିଷ; ଚିକିତ୍ସାବିଶେଷ ( Surgery ) । ବ. ନ. ବିଟଲବଣ ।

ଅସେଧ, ବ. ପୁଂ. (ଅ-ସିଧ୍-ଅ) ବାଧା ଓ ବିଚାର-କର୍ତ୍ତାର ଆଦେଶାନୁସାରେ ଅପରାଧିର ଅବରୋଧ ।

ଅସ୍କନ୍ଦିତ, ବ. ନ. ( ଅ-ସ୍କନ୍ଦ୍-ତ ) ଅଶ୍ୱଗତି ବିଶେଷ, ପ୍ଲୁତଗତି । ଯଥା—

ମହାକବି ପୁଷ୍ପ-ପୃଷ୍ଠେ ଅଟ୍ଟେ ଅସ୍କନ୍ଦିତେ । ମ. ଯା.

ଅସ୍ତର, ପୁଂ. } ଅସ୍ତରଣ, ନ. } ବ. (ଅ-ସ୍ତୃ-ଅ, ଅନ) ଶଯ୍ୟା ଶଯ୍ୟାର ଚଦର, ହାତୀ ବା ଘୋଡ଼ାର ପିଠି ଉପରସ୍ଥ କମ୍ବଳାଦି । ଯଥା—

ନାନା ଅସ୍ତରଣ ଭୂଗୁ-ପୃଷ୍ଠେ ସାର,
ସ୍ଥାନେ ବୃଷ ବଦ ଦେହୁ ଧନ୍ୱୀର । କ. କେ.

ଅସ୍ତିକ, ବିଂ. (ଅସ୍ତି-ଇକ) ଈଶ୍ୱରବାଦୀ, ଈଶ୍ୱର ଓ ପରଲୋକରେ ଯାହାର ବିଶ୍ୱାସ ଅଛି । ଯଥା—

ଅସ୍ତି ରକ୍ଷବେ ଯଥା ଅସ୍ତିକ-ମ୍ନନ । ଦ୍ୱି. ପ୍ର.

ଅସ୍ତିକ୍ୟ, } ବି. ନ. (ଅସ୍ତିକ-ଯ, ତା)
ଅସ୍ତିକତା, } ଈଶ୍ୱର ଓ ପରଲୋକରେ ବିଶ୍ୱାସ, ଈଶ୍ୱରବାଦ ।

ଅସ୍ତୀକ, ବି. ପୁଂ. ( ଅସ୍ତି-ଈକ ) ମୁନିବିଶେଷ, ଜରତ୍କାରୁ ପୁତ୍ର ; (ଜରତ୍କାରୁ ସ୍ୱାମୀ ନିକଟରେ ପୁତ୍ର ପ୍ରାର୍ଥନା କରନ୍ତେ ତାହାଙ୍କ ସ୍ୱାମୀ "ଅସ୍ତି" ଅର୍ଥାତ୍ ଅମ୍ଭ ଔରସରେ ତୁମ୍ଭର ଗର୍ଭସଞ୍ଚାର ହୋଇଅଛି) କହି ପ୍ରସ୍ଥାନ କଲେ । ଏହି ହେତୁ ଜରତ୍କାରୁରର ପୁତ୍ରର ନାମ ଅସ୍ତୀକ ହେଲା ।

ଅସ୍ତୀର୍ଣ୍ଣ, ବିଂ. (ଆ-ସ୍ତୃ-ତ) ବିସ୍ତୀର୍ଣ୍ଣ ; ପତିତ ; ପୀଡ଼ିତ ; ଅକୀର୍ଣ୍ଣ ; ବ୍ୟାପ୍ତ ; ଆଚ୍ଛାଦିତ ।

ଅସ୍ତୃତ, ବିଂ. (ଆ-ସ୍ତୃ-ତ) ବିସ୍ତୃତ, ରକ୍ଷିତ ।

ଅସ୍ଥା, ବି. ସ୍ତ୍ରୀ. (ଆ-ସ୍ଥା-ଅ) ଅବଲମ୍ବନ, ଆଶ୍ରୟ; ଶ୍ରଦ୍ଧା ; ଯତ୍ନ ; ଆଦର ; ଉଚ୍ଛିଷ୍ଟା ; ସଭା ; ସ୍ଥାନ ; ସ୍ଥିତି ।

ଅସ୍ଥାନ, ବି. ନ. ( ଆ-ସ୍ଥା-ଅନ ) ସଭା ; ଯତ୍ନ ; ପ୍ରୟାସ; ଅବଲମ୍ବନ; ବିଶ୍ରାମ ସ୍ଥାନ; ଆରୋହଣ; ପ୍ରତିମା ପ୍ରଭୃତି ବସିବାର ସ୍ଥାନ ।

ଅସ୍ପଦ, ବି. ନ. (ଆ-ପଦ୍-ଅ) ସ୍ଥାନ; ପ୍ରତିଷ୍ଠା; କାର୍ଯ୍ୟ ; ପଦ ; ପ୍ରତିଷ୍ଠା; ମର୍ଯ୍ୟାଦା ; ଅଧାର । ଯଥା—ଶ୍ରଦ୍ଧାସ୍ପଦ, ସ୍ନେହାସ୍ପଦ ।

ଅସ୍ଫର୍ଦ୍ଧା, ବି. ସ୍ତ୍ରୀ. ( ଆ-ସ୍ଫର୍ଦ୍ଧ୍-ଅ ) ଅସ୍ଫାଳନ, ମାତ୍ସର୍ଯ୍ୟ ପ୍ରକାଶ,ପ୍ରତିପକ୍ଷ ନିକଟରେ ସାହଂକାର ବଚନ ପ୍ରୟୋଗ ।

ଅସ୍ଫାଳନ, ବି. ନ. (ଆ-ସ୍ଫାଳ-ଅନ) ତାଡ଼ନ ; ଗର୍ବ ପ୍ରକାଶ; ସଂଘର୍ଷଣ; ସଞ୍ଚାଳନ ।

ଅସ୍ଫାଳିତ, ବିଂ. ( ଆ-ସ୍ଫାଳ-ତ ) ଗୃଳିତ, ସଞ୍ଚାଳିତ, ତାଡ଼ିତ ।

ଅସ୍ଫୋଟ, ବି. ପୁଂ. (ଆ-ସ୍ଫୁଟ୍-ଅ) ଅଘାତ; ଶୂର-ଦର ବାହୁ ଶବ୍ଦ । ଆ, ସ୍ତ୍ରୀ. ବନମଲ୍ଲୀ ।

ଅସ୍ଫୋତ, ବି. ପୁଂ. ଅର୍କବୃକ୍ଷ, କୋବିଦାର ବୃକ୍ଷ, ଭୂପଲାଶବୃକ୍ଷ ।

ଅସ୍ଫୋତା, ବି. ସ୍ତ୍ରୀ. ଅପରାଜିତା, ବନମଲ୍ଲିକା, ବନକାର୍ପାସ ।

ଅସ୍ୟ, ବି. ନ. ( ଅସ୍-ଯ ) ମୁଖ, ଅନନ । ଯଥା—

ଶ୍ରୁଷାସ୍ୟେ ଉପୁକେ ହାସ୍ୟ ଦେ କଦାଚନେ । ନି. ଶା.

ଅସ୍ରପ, ବି. ପୁଂ. ରାକ୍ଷସ; ମୂଳାନକ୍ଷତ୍ର ।

ଅସ୍ରବ, ବି. ପୁଂ. (ଆ-ସ୍ରୁ-ଅ) କ୍ଷରଣ; କ୍ଳେଶ, କଷ୍ଟ ।

ଅସ୍ୱାଦ, ବି. ପୁଂ. ( ଆ-ସ୍ୱଦ୍-ଅ ) ମଧୁରାଦି ରସ ; ରସାନୁଭବ, ସ୍ୱାଦଗ୍ରହଣ; ଚାଖିବା ।

ଅସ୍ୱାଦନ, ବି. ନ. (ଆ-ସ୍ୱଦ୍-ଇ-ଅନ) ରସଗ୍ରହଣ, ରସାନୁଭୂତି; ଚାଖିବା ।

ଅହତ, ବି. ପୁଂ. (ଆ-ହନ୍-ତ) ଧୃଷ୍ଟତନବସ୍ତ୍ର ; ନୂତନବସ୍ତ୍ର ; ଢୋଲ । ବିଂ. ଅଘାତପ୍ରାପ୍ତ, ଜନିତ, ତାଡ଼ିତ; ଘୃଣିତ; ଦଗ୍ଧ ।

ଅହରଣ, ବି. ନ. ( ଆ-ହୃ-ଅନ ) ସଂଗ୍ରହ, ଅୟୋଜନ, ଦ୍ରବ୍ୟାଦି ଅନୟନ ; ଉଦ୍ଧାର ; ଅନୁଷ୍ଠାନ ।

ଅହବ, ବି. ପୁଂ. (ଆ-ହ୍ୱେ-ଅ) ଯଜ୍ଞ ; ଯୁଦ୍ଧକ୍ଷେତ୍ର ; ଯୁଦ୍ଧ ।

ଅହା, ଅଂ. ଖେଦସୂଚକ ଅବ୍ୟୟ ।

ଅହାର, ବି. ପୁଂ. (ଆ-ହୃ-ଅ) ଭୋଜନ; ଭକ୍ଷ୍ୟ ବସ୍ତୁ । ଯଥା—

କରମକୁ ଏହାର ହରହାର ଅହାର
ଗରୁଡ଼ କଲା କବା ଲୋଡ଼ ରେ ସହରେ । ଲା. ବ.

ଅହାର୍ଯ୍ୟ ବିଂ. ( ଆ-ହୃ-ଯ ) ନୈମିତ୍ତିକ ; ଅସ୍ୱାଭାବିକ, କୃତ୍ରିମ; ଆରୋପିତ; ଅହାରୀୟ, ଭକ୍ଷ୍ୟ, ଭୋଜ୍ୟ ।

ଅହାବ, ବି. ପୁଂ. ( ଆ-ହ୍ୱେ-ଅ ) ଯୁଦ୍ଧ; କୂପ ନିକଟସ୍ଥ କୁଣ୍ଡ ; ଅଗ୍ନି ।

ଅହିତ, ବିଂ. (ଆ-ଧା-ତ) ନ୍ୟସ୍ତ, ସ୍ଥାପିତ ।

ଅହ୍ୱାଗ୍ନି, ବି. ପୁଂ. (ଅହ୍ୱତ-ଅଗ୍ନି) ଅଗ୍ନିହୋତ୍ରୀ, ସାଗ୍ନିକ ।

ଅହୁତି, ବି. ସ୍ତ୍ରୀ. (ଆ-ହୁ-ତି) ହୋମ, ମନ୍ତ୍ରାଦି-ପାଠଦ୍ୱାରା ଅଗ୍ନିରେ ଘୃତାଦି ନିକ୍ଷେପ ।

ଅହୁରି, ଅଂ. (ଦେଶଜ) ଆଉ, ପୁଣି ।

ଅହୂତ, ବିଂ. (ଆ ହ୍ୱେ-ତ) ଆମନ୍ତ୍ରିତ; ସମ୍ବୋଧିତ ।

ଅହୂଲି, ବି. ନ. (ଦେଶଜ) ନୌକାଚାଳନର ଯନ୍ତ୍ରବିଶେଷ, କ୍ଷେପଣୀ ।

ଅହେ, ଅଂ. (ପ୍ରା; ଅହୋର ଅପଭ୍ରଂଶ) ସମ୍ବୋଧନ-ସୂଚକ ଅବ୍ୟୟ ।

ଅହୃତ, ବିଂ. (ଅ-ହୃ-ତ) ଅପ୍ରୋକ୍ଷିତ; ସଙ୍କଳିତ, ରକ୍ଷିତ ।

ଅହ୍ନିକ, ବିଂ. (ଅହନ୍-ଇକ) ଦୈନିକ । ବି. ସନ୍ଧ୍ୟାବନ୍ଦନାଦି ।

ଅହ୍ନିକଗତି (Diurnal motion), (ଅହ୍ନିକ-ଗତି) ପୃଥିବୀର ଦୈନିକ ଗତି ।

ଅହ୍ଲାଦ, ବି. ପୁଂ. (ଆ-ହ୍ଲାଦ୍-ଅ) ହର୍ଷ, ଆନନ୍ଦ, ଆମୋଦ ।

ଅହ୍ଲାଦିତ, ବିଂ. ( ଆହ୍ଲାଦ-ତ ) ଆନନ୍ଦିତ, ହୃଷ୍ଟ ।

ଅହ୍ଲାଦିନୀ, ବି. ସ୍ତ୍ରୀ. ( ଆହ୍ଲାଦ-ଇନ୍-ଈ ) ବିଦ୍ୟୁତ୍ । ବିଂ. ଆମୋଦଯୁକ୍ତା, ହର୍ଷଯୁକ୍ତା ।

ଅହ୍ୱାନ, ବି. ନ. (ଆ-ହ୍ୱେ-ଅନ) ସମ୍ବୋଧନ, ଡାକିବାର; ନିମନ୍ତ୍ରଣ; ଆବାହନ ।

# ଇ

ଇ, ଦ୍ୱିତୀୟ ସ୍ୱରବର୍ଣ୍ଣ; ଏହାର ଉଚ୍ଚାରଣସ୍ଥାନ ତାଳୁ । ବି. ( ଇ=ଗମନ କରିବା-ଂ ) କାମଦେବ । ଅଂ. ଖେଦ; କୋପ; ଅହ୍ୱାନ; ଅନୁକମ୍ପା; ନିନ୍ଦା; ନିରାକରଣ; ବିସ୍ମୟ ।

ଈଃ, ଅଂ. ଖେଦ, ଘୃଣା ବା ବିରକ୍ତିସୂଚକ ଅବ୍ୟୟ । ବି. ପୁଂ. କାମଦେବ ।

ଇଂରାଜ, ବି. ଇଂଲଣ୍ଡ ଦେଶର ଲୋକ ।

ଇକାର, ବି. ପୁଂ. (ଇ-କାର=ସ୍ୱାର୍ଥ) ଇ, ଇବର୍ଣ୍ଣ ।

ଇକ୍ଷୁ, ବି. ପୁଂ. (ଇଷ୍-କ୍ଷୁ) ଅଖୁଗଛ, ଗୁଳ୍ମଜାତୀୟ ବୃକ୍ଷବିଶେଷ, ମଧୁର ରସବିଶିଷ୍ଟ ବୃକ୍ଷବିଶେଷ । ଯଥା—

> ମଣ୍ଡ ଦୁଃଖ କାଠ ଇକ୍ଷୁ ଚର୍ବିତ
> ହେଲେ ହୁଏ ସେହିଁ ପର ଗୋ । ବି. ଚ.

ଇକ୍ଷୁକାଣ୍ଡ, ବି. ପୁଂ. (ଇକ୍ଷୁ-କାଣ୍ଡ) ଅଖୁର କାଣ୍ଡ ପରି କାଣ୍ଡ ଯାହାର, ଅଣଖୁଅ, କାଇଁଥତୃଣ ।

ଇକ୍ଷୁଗନ୍ଧା, ବି. ସ୍ତ୍ରୀ. (ଇକ୍ଷୁ-ଗନ୍ଧ) କାଶତୃଣ ।

ଇକ୍ଷୁଯନ୍ତ୍ର, ବି. ନ. (ଇକ୍ଷୁ-ଯନ୍ତ୍ର) ଯେ ଯନ୍ତ୍ରଦ୍ୱାରା ଅଖୁରୁ ରସ ବାହାର କରାଯାଏ ଅର୍ଥାତ୍ ଅଖୁ ପେଡିବା ଘଣା ।

ଇକ୍ଷୁରସ, ବି. ନ. ( ଇକ୍ଷୁ-ରସ ) ଅଖୁ ରସ । ଯଥା—

> ଇକ୍ଷୁରସକାଠ ଦ୍ରବ୍ୟ ପ୍ରାପ୍ୟ ବେଳୁଁବେଳ ମେ ମଧୁର ।
> ଲ. ବ.

ଇକ୍ଷୁସାର, ବି. ପୁଂ. (ଇକ୍ଷୁ-ସାର) ଗୁଡ଼, କନ୍ଦ ।

ଇକ୍ଷ୍ୱାକୁ, ବି. ପୁଂ. (ଇକ୍ଷୁ-ଅକ-ଉ) କଟୁତୁମ୍ବୀ, ପିତାଲାଉ; ସୂର୍ଯ୍ୟବଂଶର ଆଦିରାଜା, ବୈବସ୍ୱତ-ମନୁର ପୁତ୍ର ।

ଇଙ୍କଡ଼, ବି.(ଦେଶଜ) ଇକ୍ଷୁଜାତୀୟ ଗୁଳ୍ମବିଶେଷ ।

ଇଙ୍ଗିତ, ବି. ନ. ( ଇନ୍‌ଗ=ଗମନକରା-ତ ) ସଙ୍କେତ, ଠାର, ଇସାରା । ଯଥା—

> ଇଙ୍ଗିତେ ଚତୁର ରୈବ ସେନାପତି,
> ହେଲେ କଳି ନେଲେ ତାଙ୍କ ଗତି ମତି । ନ. କେ.

(ଦେଶପ୍ରଚଳିତ) ଥଟ୍ଟା, ପରିହାସ ।

ଇଙ୍ଗୁଦୀ, ବି. ପୁଂ. (ଇଙ୍ଗ-ଦ-ଈ) ବୃକ୍ଷବିଶେଷ; ଇଙ୍ଗୁଦୀବୃକ୍ଷର ଫଳ । ଯଥା—

> ବେଣରୁ ଇଙ୍ଗୁଦୀ ରୁଦ୍ରାକ୍ଷ,
> ବଲ୍କଳି ଥୋଇ ଦେଲ ଅଣି ଚଳେ । ବୈ. ବ.

ଙ୍ଗୁଳ, ବି. ନ. ବୃକ୍ଷବିଶେଷ, ଏହାର ଫଳରୁ ତୈଳ ଜନ୍ମେ, ପୂର୍ବକାଳରେ ଋଷିମାନେ ଏହି ଫଳର ତୈଳ ବ୍ୟବହାର କରୁଥିଲେ ।

ଇଚ୍ଛା, ବି. ସ୍ତ୍ରୀ. (ଇଷ୍‌-ଅ) ବାଞ୍ଛା, ସ୍ପୃହା, ଉତ୍ସାହ ।

ଇଚ୍ଛାବତୀ, ବି. ସ୍ତ୍ରୀ. (ଇଚ୍ଛା-ବତ୍‌ ଈ) କାମୁକୀ, ଧନାଦିରେ ସ୍ପୃହାବତୀ; ଉତ୍କଳ ଭାଷାରେ ଗଣିତ ବିଷୟକ ପଦ୍ୟଗ୍ରନ୍ଥବିଶେଷ ।

ଇଚ୍ଛାବସୁ, ବି. ପୁଂ. (ଇଚ୍ଛା-ବସୁ=ଧନ) କୁବେର ।

ଇଚ୍ଛାମୃତ୍ୟୁ, ବି. ପୁଂ. (ଇଚ୍ଛା-ମୃତ୍ୟୁ) ପରମେଶ୍ୱର ।

ଇଚ୍ଛୁ, ଇଚ୍ଛୁକ, ବିଂ. (ଇଷ୍‌-ଉ, କ) ଇଚ୍ଛାଯୁକ୍ତ, ଉତ୍ସାହୀ ।

ଇଜତ୍‌, ଇଜ୍ଜତ୍‌, ବି. (ଯାବନିକ) ମର୍ଯ୍ୟାଦା; ସମ୍ମାନ; ଅପ୍ରକାଶ୍ୟ ସ୍ଥାନ ।

ଇଜାରା, ବି. (ଯାବନିକ) କର୍‌ ଆଦାୟ କରିବାର କ୍ଷମତା, ନିର୍ଦ୍ଦିଷ୍ଟ ସମୟ ପାଇଁ ନିର୍ଦ୍ଦିଷ୍ଟ ଭୂମିଖଣ୍ଡର ଶାସନ ଓ କରଗ୍ରହଣାଦି କ୍ଷମତା, ତଦ୍‌ବିଷୟକ ଚୁକ୍ତି ଇତ୍ୟାଦି ।

ଇଜାରାଦାର, ବିଂ. (ଯାବନିକ) ନିର୍ଦ୍ଦିଷ୍ଟ ସମୟ ପାଇଁ ନିର୍ଦ୍ଦିଷ୍ଟ ଭୂମିଖଣ୍ଡର ଶାସନ ଓ କରଗ୍ରହଣ ସମ୍ବନ୍ଧରେ କ୍ଷମତାପ୍ରାପ୍ତ ବ୍ୟକ୍ତି ।

ଇଜା, (ଯାବନିକ) ମିଳାଇବା ନିମନ୍ତେ ଏକ ଫର୍ଦ୍ଦର ଠିକ ଅନ୍ୟ ଫର୍ଦ୍ଦରେ ଲେଖିବାକୁ ହୁଏ, ତାହା ଏହି ଫର୍ଦ୍ଦ ଉପରେ ଟାଣିଲେ ଜେର ଏବଂ ନିମ୍ନରେ ଟାଣିଲେ ଇଜା କୁହାଯାଏ ।

ଇଜ୍ଜଳ, ବି. ପୁଂ. (ଇତ୍‌-ଜଳ) ହିଜ୍ଜଳଗଛ, ପାଣି ନିକଟରେ ଏ ଗଛ ଅଧିକ ହୁଏ । ଯଥା—

> ସହାଙ୍ଗ ରଚନ୍ତି ଯହିଁ କେତକୀ
> ଇଜ୍ଜଳ ନିକୁଞ୍ଜେ କୁହୁଳକୁଳା । ନ. ବେ.

ଇଜ୍ୟ, ବି. ପୁଂ. (ଯଜ୍‌-ଯ) ସୁରାଚାର୍ଯ୍ୟ, ବୃହସ୍ପତି, ବିଷ୍ଣୁ । ବିଂ. ଗୁରୁ, ପୂଜ୍ୟ ।

ଇଜ୍ୟା, ବି. ସ୍ତ୍ରୀ. (ଯଜ୍‌-ଯ-ଆ) ଯଜ୍ଞ. ପୂଜା, ଦାନ । ବିଂ. ପୂଜ୍ୟା । ଯଥା—

> ଇଜ୍ୟାମାନ ପାଇ ବସି ହସି ଭଗବତୀ ବାଣୀ ଭଣି ।

ଇଜ୍ୟାଶୀଳ, ବି. ପୁଂ. ( ଇଜ୍ୟା=ଯାଗ-ଶୀଳ ) ଯେ ପୁନଃପୁନଃ ଯାଗ କରେ, ଯାଜକ ।

ଇଟା, ବି. (ଇଷ୍ଟକର ଅପଭ୍ରଂଶ) ଦଗ୍ଧମୃତ୍ତିକା, ନିର୍ଦ୍ଦିଷ୍ଟ ଆକାରରେ ପ୍ରସ୍ତୁତ ଦଗ୍ଧ ମୃତ୍ତିକାଖଣ୍ଡ ।

ଇଟାଭଟି, ବି. (ପ୍ରାକୃତିକ) ସଜ୍ଜିତ ଇଟାସ୍ତୂପ ।

ଇଡ଼ା, ବି. ସ୍ତ୍ରୀ. (ଇଲ୍‌=ଗମନକରିବା-ଅ-ଆ) ଇକ୍ଷ୍ୱାକୁକନ୍ୟା, ବୁଧପତ୍ନୀ, ପୃଥିବୀ; ଧେନୁ; ହବି; ଶରୀରସ୍ଥ ରକ୍ତବାହିକା ନାଡ଼ୀ; ବାଣୀ; ସରସ୍ୱତୀ; ସ୍ୱର୍ଗ ।

ଇତିବା, କ୍ରି. ବିଂ. (ଦେଶଜ) ଢାଳିବା, ତରଳ-ପଦାର୍ଥ ପ୍ରତି ପ୍ରଯୋଜ୍ୟ ।

ଇଡ୍ୟ, ବିଂ. (ଇଡ୍‌-ଯ) ସ୍ତୁତ୍ୟ, ସ୍ତବର ଯୋଗ୍ୟ-ପାତ୍ର ।

ଇତ, ବିଂ. (ଇ-ତ) ଗତ; ପ୍ରାପ୍ତ; ଜ୍ଞାତ; ଲବ୍ଧ ।

ଇତର, ବିଂ. (ଇ-ତୃ-ଅ) ନୀଚ, ଅଧମ, ପାମର; ଭିନ୍ନ, ଅନ୍ୟ । ଯଥା—

> କେବେ ଧନଶର ଶୋଭ୍ୟଥାଇ କରେ, ସୃଷ୍ଟେ ନଦଙ୍ଗ ।
> କେବେ ସବଂକରେ ଫଳା, ସବେଂତରେ ଅପି ହଲଙ୍ଗ ।
> ଉଷା.

ଇତରବିଶେଷ, ବିଂ ପୁଂ. ( ଇତର-ବିଶେଷ ) ଭେଦାଭେଦ, ଭିନ୍ନତା ।

ଇତରେତର, ବିଂ. (ଇତର-ଇତର) ପରସ୍ପର, ଅନ୍ୟୋନ୍ୟ ।

ଇତଃ, ଅଂ. (ଇଦମ୍‌-ତସ୍‌) ଏହିଠାରୁ, ଏଥିରେ

ଇତସ୍ତତଃ, ଅଂ. (ଇତଃ-ତତଃ) ଅନବରତ, ଏଠାରେ ସେଠାରେ, ଏଣେତେଣେ । ଯଥା—

> ଇତସ୍ତତଃ ହେଉଥିବ ମୋହ ଲାଗି ବସି ।

ଚତୁର୍ଦ୍ଦିଗରେ, ପ୍ରଚଳିତ କଥାରେ ଦ୍ୱିଧା । ଯଥା—(ସେ ଅମୁକ କଥାରେ ଇତସ୍ତତଃ କଲେ) ଅର୍ଥାତ୍‌ ଦ୍ୱିଧା କଲେ ।

ଇତଃପର, ଅଂ. (ଇତସ୍‌=ଏହାର-ପର) ଅତଃ-ପର, ଏହା ଉତ୍ତାରୁ ।

ଇତି, ଅଂ. (ଇ-ତି) ଅତଏବ, ଏହି ହେତୁରୁ, ଏହି ପ୍ରକାର, ଏହି, ଏହା; ପ୍ରକରଣ; ସମାପ୍ତି-ସୂଚକ ଅବ୍ୟୟ । ଯଥା—

ଇତି ପ୍ରବୋଧି ଲଳିତା କହନ୍ତି ଗୁରୁଜନ ଡରେ ।

ଇତିକର୍ତ୍ତବ୍ୟ, ସଂ. (ଇତି-କର୍ତ୍ତବ୍ୟ) ଏହା ଉଚିତ ବା କରଣୀୟ, କୌଣସି ବିଷୟ ସମ୍ପନ୍ନ କରିବା ପାଇଁ ଆନୁଷଙ୍ଗିକ ଯାହା କରିବାକୁ ହୁଏ ।

ଇତିକର୍ତ୍ତବ୍ୟତା, ବି. ସ୍ତ୍ରୀ. ( ଇତିକର୍ତ୍ତବ୍ୟ-ତା ) "ଏହାହିଁ କର୍ତ୍ତବ୍ୟ" ଏହି ପ୍ରକାର ଜ୍ଞାନ; କୌଣସି ବିଷୟ ସମ୍ପନ୍ନ କରିବାର ଅଙ୍ଗୀଭୂତ ଅନୁଷ୍ଠାନସମୂହ ।

ଇତିବୃତ୍ତ, ବି. ନ. (ଇତି-ବୃତ୍-ତ) ଯାହା ଘଟି-ଅଛି, ଅତୀତ ବୃତ୍ତାନ୍ତ, ଇତିହାସ ।

ଇତିହ, ଅଂ. (ଇତି-ହ) ପାରମ୍ପର୍ଯ୍ୟୋପଦେଶ, ପୁରାତନ କଥା ।

ଇତିହା, ବି. ସ୍ତ୍ରୀ. ଜନଶ୍ରୁତି, କିମ୍ବଦନ୍ତୀ ।

ଇତିହାସ, ବି. ପୁଂ. ( ଇତିହ-ଅସ୍-ଅ ) ପୂର୍ବ-ବୃତ୍ତାନ୍ତ, ପ୍ରାଚୀନ କଥା, ଇତିବୃତ୍ତ ।

ଇତ୍ଥଂ, ଅଂ. (ଇଦମ୍-ଥଂ) ଏହିପରି, ଏହିପ୍ରକାର ।

ଇତ୍ୟବସରେ, ଅଂ. ( ଇତି-ଅବସରେ ) ଏହି ଅବସରରେ ।

ଇତ୍ୟାଦି, ଅଂ. ( ଇତି-ଆଦି ) ଏବଂ, ଏହିରୂପ । ସଂ. ଏହି ପ୍ରଭୃତି ।

ଇତ୍ୱର, ସଂ. ( ଇ-ବର ) ଗମନଶୀଳ ; ନୀଚ; ଦୀନ, ଦରିଦ୍ର; ନିଷ୍ଠୁର । ବି. ପୁଂ. ଷଣ୍ଢ ।

ଇତ୍ୱରୀ, ସଂ. (ଇ-ବର-ଈ) ଅସତୀ, ଭ୍ରଷ୍ଟା ସ୍ତ୍ରୀ ।

ଇଦଂ, ସ. (ଇଦମ୍-ଅମ୍) ଏହା, ଏହି ।

ଇଦାନୀଂ, ଅଂ. ( ଇଦମ୍-ଆନୀଂ ) ଅଧୁନା, ସମ୍ପ୍ରତି, ଏହିକ୍ଷଣି, ଏବେ । ଯଥା—

ଇଦାନୀ ଉହି ନ ପାରିବ ବଳକତ ଅଛି ହୋଇ ।

ଇଦାନୀନ୍ତନ, ସଂ. (ଇଦାନୀଂ-ତନ=ହେବା ଅର୍ଥରେ) ଆଧୁନିକ, ନବ୍ୟ, ବର୍ତ୍ତମାନକାଳର ।

ଇଦ୍ଧ, ସଂ. (ଇନ୍ଧ୍-ତ) ଦୀପ୍ତ, ଜ୍ୱଳିତ; ଅତିଉଜ୍ଜ୍ୱଳ, ପରିଷ୍କୃତ; ଆଶ୍ଚର୍ଯ୍ୟ । ବି. ନ. ସମୂହ; ଧାତୁ, ତେଜଃ ।

ଇଧ୍ମ, ବି. ନ. (ଇନ୍ଧ୍-ମ) କାଷ୍ଠ, ଜାଳିବା କାଷ୍ଠ ।

ଇଧ୍ମବାହ, ବି. ପୁଂ. (ଇଧ୍ମ-ବାହ) ମହାଭାରତରେ ତେଜସ୍ୱୀ ଅଗସ୍ତ୍ୟ ନନ୍ଦନ. ବାଲ୍ୟକାଳରୁ ପିତାଳୟରେ ଇଧ୍ମ ଅର୍ଥାତ୍ ଅଗ୍ନିସନ୍ଦୀପନ କାଷ୍ଠର ଭାର ବହନ କରୁଥିବାରୁ ତାହାଙ୍କ ନାମ ଇଧ୍ମବାହ ହେଲା ।

ଇନ, ବି. ପୁଂ. ( ଇ-ନ ) ସୂର୍ଯ୍ୟ; ପତି; ପ୍ରଭୁ; ନୃପ, ରାଜା । ସଂ. ଶ୍ରେଷ୍ଠ । ଯଥା—

ବଢଇ ନୀଳବାନର ହରି ଦମନକ ସେ ଖଣ୍ଡନହାସ
ସଦା କମଳାନନ୍ଦ ବିସ୍ତାରି ସ୍ୱଭାବେ ଇନ ସେ । ବୈ. ବି.

ଇନାମ, (ଯାବନିକ) ପୁରସ୍କାର ।

ଇନ୍ଦମ୍ବର, ବି. ନ. (ଇନ୍ଦମ୍-ବର) ନୀଳପଦ୍ମ ।

ଇନ୍ଦି, ଇନ୍ଦୀ, ବି. ସ୍ତ୍ରୀ. (ଇନ୍ଦ୍-ଇ, ଈ) ଲକ୍ଷ୍ମୀ ।

ଇନ୍ଦିନ୍ଦିର, ବି. ପୁଂ. ( ଇନ୍ଦି-ଇର, ନିପାତନ ) ଭ୍ରମର, ମଧୁକର । ଯଥା—

କଳା ଚୋଳା ଖେଳା ଇନ୍ଦିନ୍ଦିର ପାଳା ନନ୍ଦ । ସ. ବ

ଇନ୍ଦିରା, ବି. ସ୍ତ୍ରୀ. (ଇନ୍ଦି ରା) ଲକ୍ଷ୍ମୀ, ବିଷ୍ଣୁପତ୍ନୀ । ଯଥା—

ସଙ୍ଗୀ ଅନୁରୋଧେ ଇନ୍ଦିରା ଦେଲେ କୋଠଭଣ୍ଡାରୁ,
ଦେହଭୋଗପାଇଁ ଦିବ୍ୟ ବସ୍ତ୍ର ଭୂଷଣ ଗୁରୁ । ଚ. ଭା.

ଇନ୍ଦିରାଳୟ, ବି. ନ. ( ଇନ୍ଦିରା=ଲକ୍ଷ୍ମୀ-ଆଳୟ ) ପଙ୍କଜ, ଅବ୍ଜ, ପଦ୍ମ ।

ଇନ୍ଦିବର, ଇନ୍ଦୀବର, ବି. ନ. ( ଇନ୍ଦି-ବର ) ନୀଳପଦ୍ମ, ନୀଳୋତ୍ପଳ, ନୀଳକଇଁ । ଯଥା—

କବା ଇନ୍ଦିବରେ ମିଶି ଧୈତ ଶତଦଳ
ଗୁନ୍ଥା ହୋଇ ମାଳା ପ୍ରାୟେ ଦିଶଇ ସରଳ । ବ. ବ.

ଇନ୍ଦିବରୀ, ଇନ୍ଦୀବରୀ, ବି. ନ. (ଇନ୍ଦି-ବର-ଈ) ଶତମୂଳୀ, ଛତୌରୀ ।

ଇନ୍ଦୁ, ବି. ପୁଂ. (ଇନ୍ଦ୍-ଉ) ଶଶୀ, ନିଶାକର, ଚନ୍ଦ୍ର; କର୍ପୂର । (ଚନ୍ଦ୍ର ଅର୍ଥରେ) ଯଥା—

ଅନ୍ଧକାରରେ ଇନ୍ଦୁ କିରଣ ପଡ଼ିବ,
ଅତଏବ ସୋମ ତମାଳେ ନଡ଼ିବ । ନ. ବୈ.

ଇନ୍ଦୁକ, ବ. ପୁଂ. ଅଶ୍ମନ୍ତକବୃକ୍ଷ ।

ଇନ୍ଦୁକମଳ, ବ. ନ. (ଇନ୍ଦୁ-କମଳ) ଶ୍ବେତପଦ୍ମ ।

ଇନ୍ଦୁକଳିକା, ବ. ସ୍ତ୍ରୀ. (ଇନ୍ଦୁ-କଳିକା) କେତକୀ; ଚନ୍ଦ୍ରକଳା ।

ଇନ୍ଦୁକାନ୍ତ, ବ. ପୁଂ. (ଇନ୍ଦୁ-କାନ୍ତ) ଚନ୍ଦ୍ରକାନ୍ତ-ମଣି, ଏହି ମଣିରେ ଚନ୍ଦ୍ରକିରଣ ପଡିଲେ ଏହା ତରଳ ଯିବାର ପ୍ରବାଦ ଅଛି ।

ଇନ୍ଦୁକାନ୍ତା, ବ. ସ୍ତ୍ରୀ. (ଇନ୍ଦୁ=ଚନ୍ଦ୍ର-କାନ୍ତା) ତାରା, ନକ୍ଷତ୍ର; ରାତ୍ରି ।

ଇନ୍ଦୁଜ, ବ. ପୁଂ. (ଇନ୍ଦୁ-ଜ) ବୁଧ ।

ଇନ୍ଦୁଜନକ, ବ. ପୁଂ. (ଇନ୍ଦୁ-ଜନକ) ସମୁଦ୍ର । (ସମୁଦ୍ରମନ୍ଥନ କାଳରେ ଚନ୍ଦ୍ରଙ୍କର ଉତ୍ପତ୍ତି ହୋଇଥିଲା)

ଇନ୍ଦୁଜା, ବ. ସ୍ତ୍ରୀ. (ଇନ୍ଦୁ-ଜନ୍-ଅ-ଆ) ରେବାନଦୀ, ନର୍ମଦା ।

ଇନ୍ଦୁନିଭାନନ, ବିଂ. (ଇନ୍ଦୁ-ନିଭ-ଆନନ) ଚନ୍ଦ୍ରବଦନ ।

ଇନ୍ଦୁଭୃତ୍, ବ. ପୁଂ. (ଇନ୍ଦୁ-ଭୃ=ଧାରଣକରି-୦) ଚନ୍ଦ୍ରଚୂଡ଼, ଶିବ, ମହାଦେବ ।

ଇନ୍ଦୁମତୀ, ବ. ସ୍ତ୍ରୀ. (ଇନ୍ଦୁ-ମତ୍-ଈ) ପୂର୍ଣ୍ଣିମା; ଅଜ ରାଜାର ସ୍ତ୍ରୀ । ଯଥା—

> ହସା ଇନ୍ଦୁମତୀ ହେଲେଣି ଯୁବତୀ,
> ଜାଣି ସ୍ୱୟମ୍ବର କଲେ ବଧାନ । କ. କ.

ଇନ୍ଦୁମୌଳି, ବ. ପୁଂ. (ଇନ୍ଦୁ-ମୌଳି=ମସ୍ତକରେ ଯାହାଙ୍କର) ମହାଦେବ ।

ଇନ୍ଦୁର, ଇନ୍ଦୂର, ବ. ପୁଂ. (ଉନ୍ଦ୍-ଉର, ଉ=ଇ) ମୂଷିକ ।

ଇନ୍ଦୁରେଖା, ଇନ୍ଦୁଲେଖା, ବ. ସ୍ତ୍ରୀ. (ଇନ୍ଦୁ-ରେଖା, ଲେଖା) ଚନ୍ଦ୍ରକଳା, ଚନ୍ଦ୍ରଖଣ୍ଡ; ସୋମଲତା; ଗୁଳୁଚୀ ।

ଇନ୍ଦୁବଲ୍ଲୀ, ବ. ସ୍ତ୍ରୀ. (ଇନ୍ଦୁ-ବଲ୍ଲୀ) ସୋମଲତା ।

ଇନ୍ଦୁବ୍ରତ, ବ. ନ. (ଇନ୍ଦୁ-ବ୍ରତ) ଚାନ୍ଦ୍ରାୟଣବ୍ରତ ।

ଇନ୍ଦ୍ର, ବ. ପୁଂ. (ଇନ୍ଦ୍-ର) ଦେବରାଜ; ରାଜା; କୌଣସି ଶବ୍ଦର ପରେ ପ୍ରୟୋଗ ହେଲେ ଶ୍ରେଷ୍ଠ ଅର୍ଥ ବୁଝାଏ । ବିଂ. ପ୍ରଭୁ; ଅଧିପତି; ଐଶ୍ୱର୍ଯ୍ୟଶାଳୀ ।

ଇନ୍ଦ୍ରକ, ବ. ନ. (ଇନ୍ଦ୍ର-କ) ସଭାଗୃହ, ଆସ୍ଥାନ, ଗୃହ ।

ଇନ୍ଦ୍ରକୀଳ, ବ. ପୁଂ. (ଇନ୍ଦ୍ର-କୀଳ) ମନ୍ଦରପର୍ବତ, ଏହି ସ୍ଥାନରେ କିରାତବେଶୀ ମହାଦେବଙ୍କ ସହିତ ଅର୍ଜୁନଙ୍କର ଯୁଦ୍ଧ ହୋଇଥିଲା ।

ଇନ୍ଦ୍ରକୁଞ୍ଜର, ବ. ପୁଂ. (ଇନ୍ଦ୍ର-କୁଞ୍ଜର) ଐରାବତ ହସ୍ତୀ ।

ଇନ୍ଦ୍ରକୋଷ, ବ. ପୁଂ. (ଇନ୍ଦ୍ର-କୋଷ) ମଞ୍ଚା; ଖଟ; ଝୁଲା ।

ଇନ୍ଦ୍ରଗୋପ, ବ. ପୁଂ. (ଇନ୍ଦ୍ର-ଗୋ-ପ) ରକ୍ତବର୍ଣ୍ଣ କ୍ଷୁଦ୍ର କୀଟବିଶେଷ, ସାଧବସର ବୋହୂ ନାମକ ପୋକ । ଯଥା—

> ଇନ୍ଦ୍ରଗୋପଜିତ ରଙ୍ଗ ଚରଣ ଯେ ଏକ୍ଷୁରୂପେ ଭ୍ରମର,
> ଇନ୍ଦ୍ରନୀଳପ୍ରଭ ଏ ଛନ୍ଦ ଭଣଇ ରାଧା ଧ୍ୟାନ କର ।
> ବ. ଠ. ମ.

ଇନ୍ଦ୍ରଚାପ, ବ. ପୁଂ. (ଇନ୍ଦ୍ର-ଚାପ=ଧନୁ) ଇନ୍ଦ୍ରଧନୁ, ମେଘରେ ସୂର୍ଯ୍ୟ କିରଣ ପଡ଼ି ନାନା ବର୍ଣ୍ଣବିଶିଷ୍ଟ ଧନୁଆକାରରେ ଯେଉଁ ଚିହ୍ନ ଦେଖାଯାଏ । ଯଥା—

> ଇନ୍ଦ୍ରଚାପ ଶୂନ୍ୟେ ପ୍ରକାଶ ଯା ମନେ
> କରଇ ମୋର ବର୍ତ୍ତ,
> ବଯୋଗୀ ପୁରୁଷ ଅବଳାଙ୍କ ନାଶ
> ନିମନ୍ତେ ହୋଇ ଧନ୍ଵନ୍ତର ରେ ସଜନ ।

ଇନ୍ଦ୍ରଜାଲ, ବ. ନ. (ଇନ୍ଦ୍ର-ଜାଲ) କୁହୁକ, ଭୋଜବାଜି ।

ଇନ୍ଦ୍ରଜାଲିକ, ବିଂ. (ଇନ୍ଦ୍ରଜାଲ-ଇକ) କୁହୁକୀ, ବାଜୀକର । ଯଥା—

> ଇନ୍ଦ୍ରଜାଲିକ ମନ୍ତ୍ର ଶୁଣି
> ବଶ ହେବାର ସୃଷ୍ଟି ଶ୍ରେଣୀ । ସ. ବ.

ଇନ୍ଦ୍ରଜିତ୍, ବ. ପୁଂ. (ଇନ୍ଦ୍ର-ଜି-୦) ରାବଣପୁତ୍ର, ମେଘନାଦ; ଅର୍ଜୁନ, (ଖାଣ୍ଡବ ବନ ଦହନ ସମୟରେ ଅର୍ଜୁନ ଇନ୍ଦ୍ରଙ୍କୁ ଜିତି ଥିଲେ ବୋଲି ଏହାଙ୍କୁ ଇନ୍ଦ୍ରଜିତ୍ କୁହାଯାଏ) ।

ଇନ୍ଦ୍ରଦାରୁ, ବି.ପୁଂ. (ଇନ୍ଦ୍ର-ଦାରୁ) ଦେବଦାରୁଗଛ ।

ଇନ୍ଦ୍ରଦ୍ୟୁମ୍ନ, ବି. ପୁଂ. (ଇନ୍ଦ୍ର-ଦ୍ୟୁମ୍ନ) ଓଡ଼ିଶାର ଜଣେ ଦୁର୍ଦ୍ଧର୍ଷ ରାଜା; ଶ୍ରୀକ୍ଷେତ୍ରସ୍ଥ ସରୋବରବିଶେଷ ।

ଇନ୍ଦ୍ରଦ୍ରୁ, ଇନ୍ଦ୍ରଦ୍ରୁମ, (ଇନ୍ଦ୍ର-ଦ୍ରୁ, ଦ୍ରୁମ) ଅର୍ଜ୍ଜୁନବୃକ୍ଷ; କୁଟଜ ।

ଇନ୍ଦ୍ରଧନୁଃ, ବି. ନ. (ଇନ୍ଦ୍ର-ଧନୁଃ=ଚାପ) ଇନ୍ଦ୍ରଚାପ ।

ଇନ୍ଦ୍ରଧ୍ୱଜ, ବି. ପୁଂ. (ଇନ୍ଦ୍ର-ଧ୍ୱଜ=ପତାକା) ଯୁଦ୍ଧାର୍ଥ ରାଜ କୃତ ଅନୁଷ୍ଠାନବିଶେଷ; ଇନ୍ଦ୍ରଙ୍କ ପତାକା ।

ଇନ୍ଦ୍ରନୀଳମଣି, ବି. ପୁଂ. ମରକତମଣି; ନୀଳବର୍ଣ୍ଣ ମଣିବିଶେଷ । ଯଥା—

ଇନ୍ଦ୍ରନୀଳ ପରେ ମୋତି ପୁଣି ଇନ୍ଦ୍ରନୀଳ
ଗୁନ୍ଥା ହେଲ ମାଳା ପ୍ରାୟେ ଦଶଭ ସଜଳ । କ. କ.

ଇନ୍ଦ୍ରପୁଷ୍ପ, ବି. ନ. ଲବଙ୍ଗ; ଇନ୍ଦ୍ରଯବ ।

ଇନ୍ଦ୍ରପ୍ରସ୍ଥ, ବି. ପୁଂ. ( ଇନ୍ଦ୍ର-ପ୍ରସ୍ଥ ) ପାର୍ଥନଗର, ଯୁଧିଷ୍ଠିରଙ୍କ ସ୍ଥାପିତ ନଗର, ପ୍ରାଚୀନ ଦିଲ୍ଲୀ । ଯଥା—

ନବ ଇନ୍ଦ୍ରପ୍ରସ୍ଥେ ନବରାଜସୂୟେ,
ବସେଣ୍ଡ ଅନ ରାଜନ୍ୟମଣ୍ଡଳୀ । କ. କ.

ଇନ୍ଦ୍ରଭେଷଜ, ବି. ନ. (ଇନ୍ଦ୍ର-ଭେଷଜ) ଶୁଣ୍ଠୀ ।

ଇନ୍ଦ୍ରମାରିଷ, ବି. ପୁଂ. ଔଷଧି ଗୁଳ୍ମବିଶେଷ ।

ଇନ୍ଦ୍ରଯବ, ବି. ନ. (ଇନ୍ଦ୍ର-ଯବ) ଯବାକୃତି ତିକ୍ତ ବୀଜବିଶେଷ ।

ଇନ୍ଦ୍ରଲୁପ୍ତ, ବି. ନ. (ଇନ୍ଦ୍ର-ଲୁପ୍ତ) କେଶନାଶକ ରୋଗ, ଚନ୍ଦା ।

ଇନ୍ଦ୍ରଲୋକ, ବି. ପୁଂ. (ଇନ୍ଦ୍ର-ଲୋକ) ଅମରାବତୀ ।

ଇନ୍ଦ୍ରବଜ୍ରା, ବି. ସ୍ତ୍ରୀ. ଏକାଦଶାକ୍ଷର ଛନ୍ଦୋବିଶେଷ, ଯାହାର ୩ୟ, ୬ଷ୍ଠ, ୭ମ ଏବଂ ୯ମ ବର୍ଣ୍ଣ ଲଘୁ, ଅବଶିଷ୍ଟ ବର୍ଣ୍ଣ ଗୁରୁ ।

ଇନ୍ଦ୍ରଶତ୍ରୁ, ବି. ପୁଂ. ( ଇନ୍ଦ୍ର-ଶତ୍ରୁ ) ପ୍ରହ୍ଲାଦ; ବୃତ୍ରାସୁର ।

ଇନ୍ଦ୍ରସୁତ, ବି. ପୁଂ. ବାଳିରାଜା; ଜୟନ୍ତ; ଅର୍ଜ୍ଜୁନ; ଅର୍ଜ୍ଜୁନବୃକ୍ଷ ।

ଇନ୍ଦ୍ରସେନ, ବି. ପୁଂ. ଦମୟନ୍ତୀଗର୍ଭସମ୍ଭୂତ ନଳ ରାଜାଙ୍କ ପୁତ୍ର, ଯୁଧିଷ୍ଠିରଙ୍କ ସାରଥି ।

ଇନ୍ଦ୍ରା, ବି. ସ୍ତ୍ରୀ. ବୃକ୍ଷବିଶେଷ ; ଇନ୍ଦ୍ରପତ୍ନୀ, ଶଚୀ ।

ଇନ୍ଦ୍ରାଣୀ, ବି. ସ୍ତ୍ରୀ. (ଇନ୍ଦ୍ର-ଆନୀ) ଶଚୀ; ମାତୃକାବିଶେଷ; ଯୋଗିନୀବିଶେଷ; ରତିବନ୍ଧବିଶେଷ; ଦୁର୍ଗା ।

ଇନ୍ଦ୍ରାନୁଜ, ବି. ପୁଂ. (ଇନ୍ଦ୍ର-ଅନୁଜ)ବାମନଦେବ, ବିଷ୍ଣୁ ।

ଇନ୍ଦ୍ରାବରଜ, ବି. ପୁଂ. (ଇନ୍ଦ୍ର-ଅବରଜ) ବାମନଦେବ, ବିଷ୍ଣୁ ।

ଇନ୍ଦ୍ରାୟୁଧ, ବି. ନ. ( ଇନ୍ଦ୍ର-ଆୟୁଧ=ଧନୁ ) ଇନ୍ଦ୍ରଧନୁ, ଇନ୍ଦ୍ରଚାପ । ଯଥା—

ଇନ୍ଦ୍ରାୟୁଧେ ତାର ଅଧିକେ କରେ ଯେଉଁ ତୁଳନା ।
ଉଷା ।

ଇନ୍ଦ୍ରାରି, ବି. ପୁଂ. (ଇନ୍ଦ୍ର-ଅରି=ଶତ୍ରୁ) ଅସୁର, ଦୈତ୍ୟ ।

ଇନ୍ଦ୍ରିୟ, ବି. ନ. ( ଇନ୍ଦ୍ର-ଇୟ ) ଯାହାଦ୍ୱାରା ପଦାର୍ଥର ଜ୍ଞାନ ଜନ୍ମେ; ଚକ୍ଷୁ, ଶ୍ରୋତ୍ର, ଘ୍ରାଣ, ଜିହ୍ୱା, ତ୍ୱକ୍ ଓ ମନଃଜ୍ଞାନସାଧନ ଏ ଛଅଟି ଏବଂ ବାକ୍ୟ, ପାଦ, ପାଣି, ପାୟୁ ଓ ଉପସ୍ଥ କର୍ମସାଧନ ଏହି ପାଞ୍ଚଟି ।

ଇନ୍ଦ୍ରିୟଗୋଚର, ବିଂ. ( ଇନ୍ଦ୍ରିୟ-ଗୋଚର ) ଇନ୍ଦ୍ରିୟଦ୍ୱାରା ଯାହା ଜଣାଯାଏ, ଜ୍ଞାନଗମ୍ୟ ।

ଇନ୍ଦ୍ରିୟଗ୍ରାହ୍ୟ, ବିଂ. (ଇନ୍ଦ୍ରିୟ-ଗ୍ରାହ୍ୟ) ଇନ୍ଦ୍ରିୟଦ୍ୱାରା ଯାହା ଜଣାଯାଏ ।

ଇନ୍ଦ୍ରିୟଦୋଷ, ବି. ପୁଂ. ( ଇନ୍ଦ୍ରିୟ-ଦୋଷ ) ଇନ୍ଦ୍ରିୟର ଉଚ୍ଛୃଙ୍ଖଳତା, ସ୍ତ୍ରୀସମ୍ଭୋଗ ବିଷୟରେ ଯଥେଚ୍ଛାଚାର ।

ଇନ୍ଦ୍ରିୟପରାୟଣ, ବିଂ.(ଇନ୍ଦ୍ରିୟ-ପରାୟଣ) ଇନ୍ଦ୍ରିୟ ସେବାରେ ତତ୍ପର, ଯେ କେବଳ ଭୋଗ ସୁଖକୁ ସଂସାରର ସାର ବୋଲି ଜ୍ଞାନ କରେ ।

ଇନ୍ଦ୍ରିୟବିଷୟ, ବିଂ. ( ଇନ୍ଦ୍ରିୟ-ବିଷୟ ) ଇନ୍ଦ୍ରିୟଗୋଚର ।

ଇନ୍ଦ୍ରସ୍ୱାର୍ଥ, ବ. ପୁଂ. ( ଇନ୍ଦ୍ରସ୍ୱ-ଅର୍ଥ ) ଇନ୍ଦ୍ରସ୍ୱ-ଭୋଗ୍ୟ ବସ୍ତୁ, ରୂପରସାଦ ।

ଇନ୍ଦ୍ରେଜ୍ୟ, ବ. ପୁଂ. ( ଇନ୍ଦ୍ର-ଇଜ୍ୟ=ପୂଜ୍ୟ ) ବୃହସ୍ପତି ।

ଇନ୍ଧନ, ବ. ନ. (ଇନ୍ଧ୍-ଅନ) ସନ୍ଦୀପନ; କାଲବାକାଷ୍ଠ ; ତୃଣକାଷ୍ଠାଦ । ଯଥା—

ଦେଖ ଦେଖ ଇନ୍ଧନ ହୋଇଲ ଚନ୍ଦନ ।

ଇଭ, ବ. ପୁଂ. (ଇ-ଭ) କରୀ, ହସ୍ତୀ । ଯଥା—

ଇଭଗଣ ସ୍ୱଧା ପାଶେ ବନେ ପୂର୍ଣ୍ଣମାସୀ ପରବେଶ ।

ନାଗକେଶର ବୃକ୍ଷ । ସ୍ତ୍ରୀ, ସ୍ତ୍ରୀ. ହସ୍ତିନୀ ।

ଇଭରାଜ, ଇଭରାଟ୍, ବ. ପୁଂ. (ଇଭ=ହସ୍ତୀ-ରାଜ୍-ଅ, ୦) ଐରାବତ ହସ୍ତୀ ।

ଇମନ, ବ. (ଦେଶଜ) ରାଗିଣୀବିଶେଷ ।

ଇୟତ୍, ବଂ. (ଇଦମ୍-ଯତ୍) ଏତାବତ୍, ଏତେ, ଏତକ, ଏହି ପରିମାଣ ।

ଇୟତ୍ତା, ବ. ସ୍ତ୍ରୀ. (ଇୟତ୍-ତା) ଏତାବତ୍ତ୍ୱ; ଏତିକ ପରିମାଣ; ସୀମା; ସଂଖ୍ୟା ।

ଇୟାର, ବଂ. ( ଯାବନିକ ) ବନ୍ଧୁ, ସଙ୍ଗୀ; ଉପପତି ।

ଇରଣ, ଇରିଣ, ବ. ବି. (ଋ=ଗମନକରି-ଅନ, ସଂଜ୍ଞାର୍ଥେ ଇନ ) ମରୁ, ଊଷର ଭୂମି, କ୍ଷାରଭୂମି, ଜଳବୃକ୍ଷାଦଶୂନ୍ୟ ଭୂଭାଗ; ଶୂନ୍ୟ ।

ଇରମ୍ମଦ, ବ. ପୁଂ. (ଇରା=ଜଳ-ମଦ) ମେଘଜ୍ୟୋତି, ବଜ୍ରାଗ୍ନି ; ବାଡ଼ବାଗ୍ନି ; ହସ୍ତୀ । ଯଥା—

ପ୍ରଳୟ ଜୀମୂତ ଯେସନେ ପୂର୍ଣ୍ଣ ଇରମ୍ମଦେ । ମ. ଯା.

ଇରା, ବ. ସ୍ତ୍ରୀ. (ଇ=ଗମନକରି-ର, ସଂଜ୍ଞାର୍ଥେ-ଆ) ବାଣୀ; ପୃଥିବୀ; ସୁରା; ଜଳ; ଅନ୍ନ ।

ଇରାଚର, ବ. ନ. (ଇରା-ଚର) କରକା, କୁଅପଥର । ବଂ. ଜଳଚର ।

ଇରାଜ, ବ. ପୁଂ. (ଇରା-ଜ) କନ୍ଦର୍ପ ।

ଇରାବାନ୍, ବ. ପୁଂ. ( ଇରା-ବତ୍ ) ସମୁଦ୍ର ।

ଇରାବତୀ, ବ. ସ୍ତ୍ରୀ. (ଇରା-ବତ୍-ଈ) ନଦୀବିଶେଷ; ପଞ୍ଜାବର ଅନ୍ତର୍ଗତ ନଦୀବିଶେଷ, ରାବୀ । ବ୍ରହ୍ମଦେଶୀୟ ନଦୀବିଶେଷ ।

ଇରେଶ, ବ. ପୁଂ. (ଇରା-ଈଶ) ବିଷ୍ଣୁ ; ବରୁଣ ; ରାଜା ।

ଇର୍ମ, ବ. ନ. (ଋ-ମନ୍) ବ୍ରଣ, କ୍ଷତ, ଘା ।

ଇଲା, ବ. ସ୍ତ୍ରୀ. ( ଇଲ୍-ଅ-ଆ ) ବୈବସ୍ୱତମନୁ କନ୍ୟା; ଇକ୍ଷ୍ୱାକୁରାଜକନ୍ୟା ; ବୌଦ୍ଧପତ୍ନୀ; ପୃଥିବୀ; ଧେନୁ ; ବାଣୀ ; ଜଳ ।

ଇଲକା, ବ. (ଯାବନିକ) ଅଧିକାର ।

ଇଲାବୃତ, ବ. ନ. (ଇଲା=ପୃଥିବୀ-ଆବୃତ) ଜମ୍ବୁଦ୍ୱୀପର ନବ ବର୍ଷାନ୍ତର୍ଗତ ଚତୁର୍ଥ ବର୍ଷ ।

ଇଲ୍ଲିଶ, ଇଲୀଶ, ଇଲ୍ଲୀଶ, ବ. ପୁଂ. (ଇଲ୍-ଈଶ) ମତ୍ସ୍ୟବିଶେଷ, ଇଲିଶୀମାଛ ।

ଇଲ୍ୱଳ, ବ. ପୁଂ. ଦୈତ୍ୟବିଶେଷ, ବାତାପିନାମକ ଦାନବର ଭ୍ରାତା ।

ଇବ, ଅଂ. ସାଦୃଶ୍ୟ, ତୁଲ୍ୟତା, ସାମ୍ୟ; ଉତ୍ପ୍ରେକ୍ଷା; ଈଷତ୍ ; ବାକ୍ୟାଳଂକାରବିଶେଷ ।

ଇଶଦ୍, ଇଶାଦୀ, } ବଂ. (ଯାବନିକ) ସାକ୍ଷୀ ।

ଇଶାରା, ବ. (ଯାବନିକ) ସଙ୍କେତ, ଠାର, ଇଙ୍ଗିତ ।

ଇଷୁ, ବ. ପୁଂ. (ଇଷ୍-ଉ) ଶର, ବାଣ, ତୀର । ଯଥା—

ଇଷୁ ଯୋଚଲଣି ମାଧବ ଏଥର ସଂଶୟ ତ ନାହିଁ ।

ଇଷୁଧି, ବ. ପୁଂ. (ଇଷୁ-ଧା-ଇ) ତୂଣୀର, ବାଣାଧାର, ତୂଣ ।

ଇଷ୍ଟ, ବଂ. (ଇଷ୍-ତ) ବାଞ୍ଛିତ; ପ୍ରିୟ; ପ୍ରଶଂସିତ; (ଯଜ୍-ତ) ପୂଜିତ । ବ. ଇଚ୍ଛା ।

ଇଷ୍ଟକ, ବ. ପୁଂ. (ଇଷ୍-ତକ) ଇଟା ।

ଇଷ୍ଟକାଲୟ, ବ. ନ. (ଇଷ୍ଟକ-ଆଲୟ) ଇଟାନିର୍ମିତ ଗୃହ, ପକ୍କାଘର ।

ଇଷ୍ଟଗନ୍ଧ, ବଂ. ( ଇଷ୍ଟ-ଗନ୍ଧ ) ସୁଗନ୍ଧବିଶିଷ୍ଟ । ବ. ନ. ବାଲୁକା ।

ଇଷ୍ଟଦେବ, ବ. ପୁଂ. (ଇଷ୍ଟ-ଦେବ) ମନ୍ତ୍ରଦାତା, ଗୁରୁ । ଯଥା—

ଇଷ୍ଟଦେବ ସ୍ତବ ଏହିରୂପେ ଗୁଣି ଚନ୍ଦ୍ରା-ବଳୀ କଲେ ତ
ତୋଷା ।

ଇଷ୍ଟଦେବତା, ବି. ସ୍ତ୍ରୀ. ( ଇଷ୍ଟ-ଦେବତା ) ଉପାସ୍ୟ ଦେବତା, ମନ୍ତ୍ରଗୁରୁ ।

ଇଷ୍ଟାପତ୍ତି, ବି. ସ୍ତ୍ରୀ. (ଇଷ୍ଟ-ଆପତ୍ତି) ଅଭିଲଷିତ ପ୍ରାପ୍ତି, ଇଷ୍ଟସିଦ୍ଧି; ଲାଭ; ଉପକାର ।

ଇଷ୍ଟାପୂର୍ତ୍ତ, ବି. ନ. ( ଇଷ୍ଟ-ଅପୂର୍ତ୍ତ ) ସାଧାରଣ ହିତ ନିମନ୍ତେ କୂପାଦି ଖନନ ଏବଂ ଦେବାଳୟ ପ୍ରଭୃତି ନିର୍ମାଣ ।

ଇଷ୍ଟାଳାପ, ବି. ପୁଂ. (ଇଷ୍ଟ-ଆଳାପ) ସଦାଳାପ, ପରସ୍ପର ଭଦ୍ରାଳାପ ।

ଇଷ୍ଟି, ବି. ସ୍ତ୍ରୀ. (ଇଷ୍-ତି ଅବା ଯଜ୍-ତି) ଇଚ୍ଛା ; ଯାଗ ।

ଇଷ୍ମ, ବି. ପୁଂ. (ଇଷ୍-ମ) କନ୍ଦର୍ପ; ବସନ୍ତଋତୁ ।

ଇଷ୍ୟ, ବି. ନ. (ଇଷ୍-ଯ) ବସନ୍ତକାଳ ।

ଇଷ୍ୱସନ, ବି. ପୁଂ. (ଇଷୁ-ଅସନ) ଧନୁ, ଶର ।

ଇଷ୍ୱାସ, ବି. ପୁଂ. (ଇଷୁ-ଅସ୍-ଅ) ଧନୁଃ, ଶର । ବିଂ. ଧନୁର୍ଦ୍ଧର ।

ଇସ୍, ଅଂ. (ଦେଶଜ) ଆଶ୍ଚର୍ଯ୍ୟବୋଧକ ଓ ଘୃଣା-ବୋଧକ ଅବ୍ୟୟ ।

ଇସ୍ତମରାର, (ଯାବନିକ) ଚିରସ୍ଥାୟୀ । ଯଥା—

ଇସ୍ତମରାର ପଟ୍ଟା ବା ଜମି ।

ଇସ୍ତାହାର, (ଯାବନିକ) ବିଜ୍ଞାପନ ।

ଇସ୍ତ୍ରି, ଇସ୍ତ୍ରୀ, ବି. (ଯାବନିକ) ଧୌତବସ୍ତ୍ର ମର୍ଦ୍ଦନ-କରଣାର୍ଥ ରଜକମାନଙ୍କର ଯନ୍ତ୍ରବିଶେଷ ।

ଇହ, ଅଂ. ( ଇଦମ୍-ହ ) ଏଠାରେ; ଏହି ସମୟରେ; ଏହି ଜଗତରେ; ନରଲୋକରେ ।

ଇହକାଳ, ବି. ପୁଂ. (ଇହ-କାଳ) ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ ସମୟ ।

ଇହଲୋକ, ବି. ପୁଂ. (ଇହ-ଲୋକ) ଏହି ଜଗତ, ଭୂଲୋକ ।

ଇହା, ବି. ( ଇ-ହନ୍-ଅ ) ( ଇହନ୍ ) ଶିବ, ମହାଦେବ, କାମଧ୍ୱଂସୀ । (ଇହ-ଆ) ଚେଷ୍ଟା, ଯତ୍ନ; (ପ୍ରାକୃତିକ ଇଦମ୍-ଶବ୍ଦଜ) ଏହା ।

——:0:——

# ଈ

ଈ, ଚତୁର୍ଥ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ । ବି. ପୁଂ. କନ୍ଦର୍ପ; ସ୍ତ୍ରୀ; ଲକ୍ଷ୍ମୀ ।

ଈଃ, ଅଂ. ଯନ୍ତ୍ରଣା ବା କ୍ରୋଧାଦିବୋଧକ ଅବ୍ୟୟ ।

ଈକାର, ବି. ପୁଂ. (ଈ-କାର) ଈବର୍ଣ୍ଣ ।

ଈକ୍ଷଣ, ବି. ନ. ( ଈକ୍ଷ୍-ଅନ ) ଦୃଷ୍ଟି, ଦର୍ଶନ; ଚକ୍ଷୁ । ଯଥା—

ଈକ୍ଷଣ ସାର୍ଥ ସଧାର କର ଯାଦଶିବଂଶ ବାନରା ।

ଈକ୍ଷଣିକ, ବିଂ. ( ଈକ୍ଷଣ-ଇକ ) ଦୈବଜ୍ଞ, ଶୁଭ-ଶୁଭଦର୍ଶୀ ।

ଈକ୍ଷିତ, ବିଂ. (ଈକ୍ଷ-ତ) ଦୃଷ୍ଟ । ବି. ନ. ଦର୍ଶନ ।

ଈକ୍ଷିତା, ବିଂ. ( ଈକ୍ଷ-ତୃ ) ଦ୍ରଷ୍ଟା, ଦର୍ଶକ । (ଈକ୍ଷ-ତ-ଆ) ଦୃଷ୍ଟା ।

ଈଡ଼ା, ଈଳା, ବି. ସ୍ତ୍ରୀ. (ଈଡ-ଆ) ସ୍ତୁତି, ସ୍ତବ, ପ୍ରଶଂସା ।

ଈଡ଼ିତ, ବିଂ. (ଈଡ଼ା-ତ) ସ୍ତୁତ, ପ୍ରଶଂସିତ ।

ଈଡ୍ୟ, ବିଂ. (ଈଡ଼ା-ଯ) ସ୍ତୁତ୍ୟ, ସ୍ତବନୀୟ ।

ଈତି, ବି. ସ୍ତ୍ରୀ. ( ଈ=ଗମନକରି-ତି ) ଅତିବୃଷ୍ଟି, ଅନାବୃଷ୍ଟି, ଶଲଭ, ମୂଷିକ, ପକ୍ଷୀ ଏବଂ ନିକଟସ୍ଥ ଶତ୍ରୁ ରାଜା ଏହି ଷଟ୍ପ୍ରକାର ବିଘ୍ନ । ଯଥା—

ଅତିବୃଷ୍ଟିରନାବୃଷ୍ଟିଃ ଶଲଭା ମୂଷିକାଃ ଖଗାଃ ।
ପ୍ରତ୍ୟାସନ୍ନାଶ୍ଚ ରାଜାନଃ, ଷଡେତେ ଈତୟଃ ସ୍ମୃତାଃ ।

ଈଦୃକ, ଈଦୃଶ, ବିଂ. (ଈଦମ୍-ଦୃଶ୍-ଅ) ଏପ୍ରକାର, ଏବମ୍ଭୂତ । ଯଥା—

ଈଦୃଶ ଭାଗ୍ୟ କାହିଁ ଅଛେ ତୁମ୍ଭଙ୍କୁ ଦେଖିବୁଁ ସର୍ବଦା ।

ଈପ୍ସା, ବି. ସ୍ତ୍ରୀ. ( ଈପ୍ସ=ଇଚ୍ଛାକରି-ଆ ) ବାଞ୍ଛା, ଇଚ୍ଛା ।

ଈପ୍ସିତ, ବିଂ. ( ଈପ୍ସ-ତ ) ବାଞ୍ଛିତ, ଯାହା ପାଇବାକୁ ଇଚ୍ଛା ହୁଏ । ଯଥା—

ଈପ୍ସିତ ନଥ ହେବସତ ହୋଇବ ଶୁଣି ହେଲ ତୋଷ ।

ବି. ନ. ମନୋରଥ, ବାଞ୍ଛା ।

ଈପ୍ସୁ, ବି°. ( ଈପ୍ସ-ଉ ) ପାଇବାକୁ ଇଚ୍ଛୁକ, ଇଚ୍ଛୁକ ।

ଈରଣ, ଈରିଣ, ବି°. ( ଈ=ମେନକର୍ଷ-ଅନ, ଦକ୍ଷାର୍ଥେ ଇନ )ଊଷରଭୂମି; ଷାରଭୂମି; ଶୂନ୍ୟ ।

ଈରିତ, ବି°. ( ଈର୍-ତ ) ପ୍ରେରିତ; କ୍ଷିପ୍ତ; ବର୍ଜିତ; ବମ୍ପୃଷ୍ଟ; କଥିତ; ଚାଲିତ; କମ୍ପିତ ।

ଈର୍ମ, ବି. ନ. (ଈର୍-ମ) ବ୍ରଣ, କ୍ଷତ, ଘା ।

ଈର୍ଷା, ଈର୍ଷ୍ୟା, ବି. ସ୍ତ୍ରୀ. ( ଈର୍ଷ୍ୟ-ଆ ) ପରଶ୍ରୀ-କାତରତା, ହିଂସା, ଦ୍ୱେଷ ।

ଈର୍ଷାଳୁ, ଈର୍ଷ୍ୟାଳୁ, ବି°. ( ଈର୍ଷା, ଈର୍ଷ୍ୟା-ଆଳୁ ) ପରଶ୍ରୀକାତର ।

ଈଳା, ବି. ସ୍ତ୍ରୀ. (ଈଡ-ଅ) ପୃଥିବୀ; ବାଣୀ; ଧେନୁ; ସରସ୍ୱତୀ ।

ଈଶ, ବି. ପୁଂ. (ଈଶ୍-ଅ) ଶିବ; ଈଶ୍ୱର; ସ୍ୱାମୀ । ଯଥା—

> ବଚନେ ଅଣେ ଥବା ଈଶ ସେ ଋଷି,
> ବାର ଚହଳ ଦେଣ୍ ବରଜ ଶଣୀ ସେ । ବୈ. ବ.

ବି°. ନିୟନ୍ତା, ପ୍ରଧାନ । ( ଈଶ ଶବ୍ଦଜ ) ଲାଙ୍ଗଳ ଦଣ୍ଡ । ଯଥା—

> ବୋଇଲ ମୋ ଦନ୍ତ ଲାଙ୍ଗଳ ଈଶ,
> ବପ୍ର ତୁମ୍ଭେ ହେବ କରିବ ଚଷ । ବୈ. ବ.

ଈଶା, ବି. ସ୍ତ୍ରୀ. ( ଈଶ-ଅ-ଆ ) ଲାଙ୍ଗଳ ଦଣ୍ଡ; ଲଙ୍ଗଳଦ୍ୱାରା ଖନିତ ଲମ୍ବାକୃତି ଭୂଭାଗ,ଲଙ୍ଗଳ ସିଆର; ସୀତା; ଦୁର୍ଗା ।

ଈଶାନ,ବି. ପୁଂ. (ଈଶ-ଆନ) ମହେଶ୍ୱର; ଏକାଦଶ ରୁଦ୍ରର ଅଷ୍ଟମ ରୁଦ୍ର; ଉତ୍ତରପୂର୍ବ କୋଣ ।

ଈଶାନକୋଣ, ବି. ପୁଂ (ଈଶାନ-କୋଣ) ଉତ୍ତର ଓ ପୂର୍ବଦିଗର ମଧ୍ୟବର୍ତ୍ତୀକୋଣ ।

ଈଶାନୀ, ବି. ସ୍ତ୍ରୀ. (ଈଶ-ଆନୀ) ଦୁର୍ଗା, ମହେଶ୍ୱରୀ ।

ଈଶିତା,ସ୍ତ୍ରୀ. } ବି. ( ଈଶ-ତା,ତ୍ୱ ) ଈଶ୍ୱରତ୍ୱ;
ଈଶିତ୍ୱ,ନ. } ପ୍ରାଧାନ୍ୟ,ଆଧିପତ୍ୟ;ଐଶ୍ୱର୍ଯ୍ୟବିଶେଷ ।

ଈଶ୍ୱର, ବି. ପୁଂ. (ଈଶ୍ ବର) କନ୍ଦର୍ପ; ଶିବ; ବ୍ରହ୍ମା । ବି°. ଶ୍ରେଷ୍ଠ ; ଅଧିପତି ।

ଈଶ୍ୱରୀ, ବି. ସ୍ତ୍ରୀ. (ଈଶ୍ୱର-ଈ) ଲକ୍ଷ୍ମୀ ; ସରସ୍ୱତୀ ; ଦୁର୍ଗା । ବି°. ଶ୍ରେଷ୍ଠା ।

ଈଶ୍ୱରନିଷ୍ଠ, ବି°. (ଈଶ୍ୱର-ନିଷ୍ଠା) ଈଶ୍ୱରପରାୟଣ ।

ଈଶ୍ୱରନିଷ୍ଠା, ବି. ସ୍ତ୍ରୀ. ( ଈଶ୍ୱର-ନିଷ୍ଠା ) ଈଶ୍ୱର-ପରାୟଣତା ।

ଈଶ୍ୱରବାଦ, ବି. ପୁଂ. (ଈଶ୍ୱର-ବାଦ) ଯେଉଁ ମତ ଈଶ୍ୱରଙ୍କ ଅସ୍ତିତ୍ୱ ସଂସ୍ଥାପନ କରେ ।

ଈଶ୍ୱରବାଦୀ, ବି°. (ଈଶ୍ୱର-ବାଦିନ୍) ଯେ ଈଶ୍ୱରଙ୍କ ଅସ୍ତିତ୍ୱ ଇତ୍ୟାଦି ସ୍ୱୀକାର କରେ ।

ଈଷତ୍, ଅଂ. (ଈଷ୍-ଅତ୍) ଅଳ୍ପ, କିଞ୍ଚିତ୍, କଣ୍ଠ ।

ଈଷଦୁଷ୍ଣ, ବି°. (ଈଷତ୍-ଉଷ୍ଣ) କିଞ୍ଚିତ୍ ଗରମ ।

ଈଷଦୂନ, ବି°. (ଈଷତ୍-ଊନ) କିଞ୍ଚିତ୍ ଊଣା ।

ଈଷା, ବି. ସ୍ତ୍ରୀ. (ଈଷ୍-ଆ) ଲାଙ୍ଗଳ ଦଣ୍ଡ; ଲାଙ୍ଗଳ ସିଆର; ସୀତା; ଦୁର୍ଗା ।

ଈଷିକା, ବି. ସ୍ତ୍ରୀ. (ଈଷ୍-ଇକନ୍) ହସ୍ତିର ନେତ୍ର-ଗୋଲକ; ତୂଳି; ଅସ୍ତ୍ରବିଶେଷ ।

ଈଷିତ, ଈସିତ, ଅଂ. ( ପ୍ରାକୃତିକ ) ( ଈଷତ୍‌ର ଅପଭ୍ରଂଶ) ଅଳ୍ପ, କିଞ୍ଚିତ୍, କଣ୍ଠ । ଯଥା—

> ଈଷିଭେ କ ଉମାପତ ଦୟା କରବେ ।

ଈସ୍ପାତ, ବି. (ଦେଶଜ) ଲୌହବିଶେଷ,ଟାଣଲୁହା ।

ଈହ, ଈହିତ, ବି. ନ. (ଈହ-ଅ, ତ) ଚେଷ୍ଟା, ଯତ୍ନ, ଉଦ୍ୟମ; ସ୍ପୃହା, ଇଚ୍ଛା ।

ଈହା, ବି. ସ୍ତ୍ରୀ. ( ଈହ୍-ଅ-ଆ ) ଚେଷ୍ଟା, ଯତ୍ନ, ଉଦ୍ୟମ ।

## ଉ

ଉ, ପଞ୍ଚମ ସ୍ୱରବର୍ଣ୍ଣ; ଏହାର ଉଚ୍ଚାରଣସ୍ଥାନ ମୂର୍ଦ୍ଧା । ବି. ଶିବ । ଅ° ସମ୍ବୋଧନ; ପାଦପୂରଣ; କ୍ରୋଧାଦିସୂଚକ; ଦୟା; ବିସ୍ମୟ; ନିୟୋଗ ।

ଉପକ୍ରମଣିକା, ବ. ସ୍ତ୍ରୀ. (ଉପ-କ୍ରମ୍-ଅନ-ଇକ-ଆ) ପ୍ରଥମ ପୂର୍ବପାଠ, ବକ୍ଷ୍ୟମାଣ ବିଷୟର ଆଭାସ ।

ଉପକ୍ରାନ୍ତ, ବିଂ. (ଉପ-କ୍ରମ୍-ତ) ପ୍ରକ୍ରାନ୍ତ, ଆରବ୍ଧ, ଯାହା ଆରମ୍ଭ ହୋଇଅଛି ।

ଉପକ୍ରିୟା, ବ. ସ୍ତ୍ରୀ. ( ଉପ-କ୍ରିୟା ) ସାହାଯ୍ୟ, ଉପକାର ।

ଉପକ୍ରୋଶ, ବ. ପୁଂ. (ଉପ-କ୍ରୁଶ-କ୍ରନ୍ଦନକରି-ଅ) ନିନ୍ଦା, ଭର୍ତ୍ସନା, ଅପବାଦ ।

ଉପକ୍ୱଣ, ବ. ପୁଂ. (ଉପ-କ୍ୱଣ୍-ଅ) ବୀଣାର ଶବ୍ଦ ।

ଉପକ୍ଷୟ, ବ. ନ. (ଉପ-କ୍ଷି-ଅ) ଅପଚୟ, ହାନି; ବାସଗୃହର ନିକଟସ୍ଥ ପ୍ରଦେଶ ।

ଉପକ୍ଷେପ, ବ. ପୁଂ. ( ଉପ-କ୍ଷିପ୍-ଅ ) ଉଲ୍ଲେଖ, ପ୍ରସ୍ତାବ; ଆକ୍ଷେପ; ନାଟ୍ୟାଦିରେ ଇତିହାସର ଉଲ୍ଲେଖ ।

ଉପଗତ, ବିଂ. ପୁଂ (ଉପ-ଗମ୍-ତ) ସ୍ୱୀକୃତ; ପ୍ରାପ୍ତ; ଆସକ୍ତ; ଉପସ୍ଥିତ; ସନ୍ନିହିତ; ଜ୍ଞାତ ।

ଉପଗମ, ବ. ପୁଂ. ( ଉପ-ଗମ୍-ଅ ) ସ୍ୱୀକାର; ଉପସ୍ଥିତି; ପ୍ରାପ୍ତି; ଜ୍ଞାନ; ଘଟନା; ଲୋଭ ।

ଉପଗୀତି, ବ. ସ୍ତ୍ରୀ. (ଉପ-ଗୀତି) ଛନ୍ଦୋବିଶେଷ, ଆର୍ଯ୍ୟାଛନ୍ଦର ପ୍ରକାରଭେଦ ।

ଉପଗୂଢ଼, ବ. ନ. (ଉପ-ଗୁହ୍=ଗୋପନକରି-ତ) ଆଲିଙ୍ଗନ; ଗ୍ରହଣ । ବିଂ. ଆଲିଙ୍ଗିତ, ଗୃହୀତ ।

ଉପଗୂହନ, ବ. ନ. (ଉପ-ଗୁହ୍-ଅନ) ଆଲିଙ୍ଗନ; ଗ୍ରହଣ ।

ଉପଗ୍ରହ, ବ. ପୁଂ. ( ଉପ=ସ୍ଥାନ-ଗ୍ରହ ) ଗ୍ରହ ସହିତ ଭ୍ରମଣକାରୀ କ୍ଷୁଦ୍ର ଗ୍ରହ, ଯେପରି ଚନ୍ଦ୍ର ପୃଥିବୀର ଉପଗ୍ରହ; ସାହାଯ୍ୟ; କଏଦୀ, ବନ୍ଦୀ । ବିଂ. କାରାରୁଦ୍ଧ ।

ଉପଗ୍ରହଣ, ବ. ନ. (ଉପ-ଗ୍ରହ୍-ଅନ) ସସ୍ୱର-ପୂର୍ବକ ବେଦାଧ୍ୟୟନ ।

ଉପଗ୍ରାହ୍ୟ, ବ. ପୁଂ. ( ଉପ-ଗ୍ରହ୍-ଯ ) ଉପ-ଢୌକନ, ଭେଟି ।

ଉପଘାତ, ବ. ପୁଂ. (ଉପ-ହନ୍-ଅ) କ୍ଷତ; ଆଘାତ; ବିନାଶ; କ୍ଷୟ ।

ଉପଘ୍ନ, ବ. ପୁଂ. ( ଉପ-ହନ୍-ଅ ) ନିକଟସ୍ଥ ଆଶ୍ରୟ, ସମୀପ ।

ଉପଚକ୍ଷୁଃ, ବ. ନ. (ଉପ-ଚକ୍ଷୁସ୍) ଚକ୍ଷୁ ନିକଟ, ଦିବ୍ୟଚକ୍ଷୁ, ଚଷମା ।

ଉପଚୟ, ବ. ପୁଂ. (ଉପ-ଚି-ଅ) ବୃଦ୍ଧି; ପୁଷ୍ଟି; ସଂଗ୍ରହ; ଉନ୍ନତି; ସମୂହ; ଜ୍ୟୋତିଷରେ ଲଗ୍ନର ତୃତୀୟ, ଷଷ୍ଠ, ଦଶମ ଏବଂ ଏକାଦଶ ସ୍ଥାନ ।

ଉପଚର, ବ. ପୁଂ. ( ଉପ-ଚର୍-ଅ ) ଉପଚାର ଦେଖ ।

ଉପଚରିତ, ବିଂ. ( ଉପ-ଚର୍-ତ ) ସେବିତ, ଉପାସିତ; ଲକ୍ଷଣାଦ୍ୱାରା ବୋଧିତ ।

ଉପଚର୍ଯ୍ୟା, ବ. ସ୍ତ୍ରୀ. (ଉପ-ଚର୍-ଯ-ଆ) ସେବା, ଶୁଶ୍ରୂଷା; ଚିକିତ୍ସା ।

ଉପଚାର, ବ. ପୁଂ. ( ଉପ-ଚର୍-ଅ ) ଶୁଶ୍ରୂଷା, ସେବା; ସମ୍ମାନ; ଉପକରଣ; ଚିକିତ୍ସା; ବ୍ୟବସାୟ; ଆରୋପ; ଉତ୍କୋଚ; ବ୍ୟବହାର; ଛଳନା; ଖୋସାମତି । ଯଥା—

> ଧନକୁ ଉପଚାର ଧନକୁ କ ଦଶର,
> ପେଷ ଘ ନ ପଦ୍ଧର ଗୃହ ରେ । ଦା. ବ.

ଉପଚିକୀର୍ଷା, ବ. ସ୍ତ୍ରୀ. (ଉପ-କୃ-ସନ-ଆ) ଉପକାର କରିବାର ଇଚ୍ଛା, ପରୋପକାର ପ୍ରବୃତ୍ତି ।

ଉପଚିକୀର୍ଷୁ, ବିଂ. (ଉପ-କୃ-ସନ-ଉ) ଉପକାର କରିବାକୁ ଇଚ୍ଛୁକ ।

ଉପଚିତ, ବିଂ. ( ଉପ-ଚି-ତ ) ବର୍ଦ୍ଧିତ; ପୁଷ୍ଟ; ସଞ୍ଚିତ; ରଚିତ ।

ଉପଚ୍ଛନ୍ଦ, ବ. ପୁଂ. ( ଉପ-ଛନ୍ଦ୍-ଅ ) ପ୍ରାର୍ଥନା, ଅନୁରୋଧ ।

ଉପଜଳା, ବ. ସ୍ତ୍ରୀ. ( ଉପ-ଜଳ-ଆ ) ନଦୀକୂଳ-ଜାତ ଭୂମି; ନଦୀବିଶେଷ ।

ଉପଜାପ, ବ. ପୁଂ. ( ଉପ-ଜପ-ଅ ) ଭେଦ, ବିଚ୍ଛେଦ; ଅନୈକ୍ୟ; କୁଚକ୍ର ।

ଉପଜିହ୍ୱା, ବ. ସ୍ତ୍ରୀ. (ଉପ=ସ୍ଥାନ-ଜିହ୍ୱା) ଜିଭ ଉପରେ ଥିବା ସ୍ୱାଦନଳୀର ଅଗ୍ରଭାଗ ମାଂସ-ଖଣ୍ଡ, ଘଣ୍ଟିକା ।

ଉପଜୀବିକା, ବି. ସ୍ତ୍ରୀ. ( ଉପ-ଜୀବିକା ) ଜୀବନୋପାୟ, ବୃତ୍ତି, ଯାହାଦ୍ୱାରା ଜୀବନ ଧାରଣ କରାଯାଏ, ପେଶା ।

ଉପଜୀବୀ, ବିଂ. ( ଉପ-ଜୀବ୍-ଇନ୍ ) ଜୀବିକା-ଅବଲମ୍ବୀ, ଆଶ୍ରିତ ।

ଉପଜୀବ୍ୟ, ବିଂ. ( ଉପ-ଜୀବ୍-ଯ ) ଆଶ୍ରୟଣୀୟ, ଜୀବନ ଧାରଣ ନିମିତ୍ତ ଅବଲମ୍ବନୀୟ ।

ଉପଜ୍ଞା, ବି. ସ୍ତ୍ରୀ. (ଉପ-ଜ୍ଞା) ଆଦ୍ୟଜ୍ଞାନ, ପ୍ରଥମ ଜ୍ଞାନ, ଉପଦେଶ ବ୍ୟତୀତ ଜ୍ଞାନ ।

ଉପଢୌକନ, ବି. ନ. ( ଉପ-ଢୌକ୍-ଅନ ) ଉପହାର, ଭେଟି; ଉତ୍କୋଚ ।

ଉପତପ୍ତ; ବିଂ. (ଉପ-ତପ୍-ତ) ଦୁଃଖିତ; କାତର; ପୀଡିତ; ଉଷ୍ଣ ।

ଉପତାପ, ବି. ପୁଂ. (ଉପ-ତାପ) ସନ୍ତାପ; ପୀଡ଼ା; ଦୁଃଖ, କ୍ଳେଶ; ଅଶୁଭ; ତ୍ୱରା; ( ସନ୍ତାପ ଅର୍ଥରେ ) ଯଥା—

ଉପତାପରେ ବଢେ ଝଡର ଡର । ବ. ଚ.

ଉପତ୍ୟକା, ବି. ସ୍ତ୍ରୀ. ( ଉପ-ତ୍ୟକନ୍ ) ପର୍ବତର ନିକଟସ୍ଥ ଭୂମି ।

ଉପଦଂଶ, ବି. ପୁଂ. (ଉପ-ଦଂଶ୍-ଅ) ମଦ୍ୟପାନ-କାଳୀନ ଭକ୍ଷ୍ୟବସ୍ତୁ, ମଦର ଚାଟ; ଗରମି ରୋଗ ।

ଉପଦର୍ଶକ, ବି. ପୁଂ. ( ଉପ-ଦର୍ଶକ ) ଦ୍ୱାରପାଳ, ଦ୍ୱାରୀ । ବିଂ. ଯେ ଦେଖାଇ ଦିଏ ।

ଉପଦା, ବି. ସ୍ତ୍ରୀ. ( ଉପ-ଦା-ଅ, ସ୍ତ୍ରୀ ) ଉପ-ଢୌକନ, ଭେଟି ।

ଉପଦାନକ, ବି. ନ. (ଉପ-ଦାନ-କ) ଉତ୍କୋଚ, ଲାଞ୍ଚ, ଘୁଷ୍ ।

ଉପଦିଷ୍ଟ, ବିଂ. (ଉପ-ଦିଶ୍-ତ) ଆଦିଷ୍ଟ, କଥିତ ।

ଉପଦେବୀ, ବି. ସ୍ତ୍ରୀ. କ୍ଷୁଦ୍ର ଦେବତା, ଯେ ଦେବଙ୍କର ପ୍ରାଧାନ୍ୟ ନାହିଁ ।

ଉପଦେବତା, ବି. ସ୍ତ୍ରୀ. ( ଉପ-ଦେବତା ) ଯକ୍ଷ, ଭୂତ, ପ୍ରେତ ପ୍ରଭୃତି ।

ଉପଦେଶ, ବି. ପୁଂ. (ଉପ-ଦିଶ୍-ଅ) ଶିକ୍ଷାଦାନ, ପରାମର୍ଶଦାନ, ଉଦ୍ଦେଶ, ଶିକ୍ଷାବାକ୍ୟ, ପ୍ରବର୍ତ୍ତକ ବାକ୍ୟ, ମନ୍ତ୍ରଦାନ, ନାମ, ଅନୁଶାସନ ।

ଉପଦେଶକ, ବିଂ. (ଉପ-ଦିଶ୍-ଅକ) ହିତଶିକ୍ଷକ, ଅଧ୍ୟାପକ, ସତ୍ପରାମର୍ଶଦାତା ।

ଉପଦେଷ୍ଟା, ବି. ପୁଂ. ( ଉପ-ଦିଶ୍ ତୃ ) ଶିକ୍ଷା-ଦାତା, ଗୁରୁ, ଅଧ୍ୟାପକ ।

ଉପଦେହ, ବି. ପୁଂ, (ଉପ-ଦିହ୍-ଅ) ଅଙ୍ଗରାଗ ।

ଉପଦ୍ରବ, ବି. ପୁଂ. (ଉପ-ଦ୍ରୁ-ଅ) ଦୌରାତ୍ମ୍ୟ, ଅତ୍ୟାଚାର, ଉତ୍ପାତ ।

ଉପଦ୍ରୁତ, ବିଂ. (ଉପ-ଦ୍ରୁ-ତ) ବ୍ୟାକୁଳ, ଉତ୍ପାତ-ଗ୍ରସ୍ତ, ଅତ୍ୟାଚାରିତ, ଯାହା ପ୍ରତି ଅତ୍ୟାଚାର କରା ହୋଇଅଛି ।

ଉପଦ୍ୱୀପ, ବି. ନ. ପୁଂ. (ଉପ-ଦ୍ୱୀପ) ଯେ ଭୂମିର ଚତୁର୍ଦ୍ଦିଗରେ ଜଳ ।

ଉପଧର୍ମ, (Superstition) ବି. ପୁଂ. (ଉପ-ଧୃ-ମ) କାଳ୍ପନିକ ଧର୍ମ, ଭୌତିକ ପଦାର୍ଥରେ ଈଶ୍ୱର-ଜ୍ଞାନ ।

ଉପଧା, ବି. ସ୍ତ୍ରୀ. ( ଉପ-ଧା-ଅ ) ଅନ୍ତ୍ୟବର୍ଣ୍ଣର ପୂର୍ବବର୍ଣ୍ଣ । ଯଥା—ଉପଧା ଏହି ଶବ୍ଦର ଧା ଅନ୍ତ୍ୟବର୍ଣ୍ଣ ଓ ପ "ଉପଧା" ବର୍ଣ୍ଣ । ଧର୍ମାଦି-ଦ୍ୱାରା ମନ୍ତ୍ରୀ ପ୍ରଭୃତି ଭୃତ୍ୟ ପରୀକ୍ଷା ।

ଉପଧାତୁ, ବି. ପୁଂ. (ଉପ-ଧାତୁ) ଧାତୁ ଜାତୀୟ ପଦାର୍ଥ । ଯଥା—ସ୍ୱର୍ଣ୍ଣମାକ୍ଷିକ, ତାରମାକ୍ଷିକ, ତୁତିଆ, କାଂସ, ପିତ୍ତଳ, ସିନ୍ଦୂର ଓ ଶୈଳେୟ; ଶରୀରସ୍ଥ ଧାତୁବତ୍ ଦ୍ରବ୍ୟ, ସ୍ୱେଦାଦି ।

ଉପଧାନ, ଉପଧାନୀୟ, ବି. ନ. (ଉପ-ଧା-ଅନ, ଅନୀୟ) ତକିଆ; ପ୍ରଣୟ; ବିଷ ।

ଉପଧାୟକ, ବିଂ. ( ଉପ-ଧା-ଅକ ) ଉତ୍ପାଦକ, ଜନକ; ଉପଯୋଗୀ ।

ଉପଧାସ୍ୱର, ବି. ପୁଂ. ଉପଧାବର୍ଣ୍ଣସ୍ଥ ସ୍ୱର । ଯଥା— "ହରଣୀ" ଏ ସ୍ଥଳରେ "ର" ଉପଧାବର୍ଣ୍ଣ ଓ 'ର' ରେ ଥିବା "ଅ" ଉପଧାସ୍ୱର ।

ଉପଧି, ବି. ପୁଂ. ( ଉପ-ଧା-ଇ ) ଛଳ, ଚାତୁରୀ, କପଟ; ରଥଚକ୍ର; ଭୟ ।

ଉପଧୂପିତ, ବିଂ. ( ଉପ-ଧୂପ-ତ ) ସନ୍ତାପିତ; ମୁମୂର୍ଷୁ ।

ଉପଧୃତି, ବି. ସ୍ତ୍ରୀ. (ଉପ-ଧୃ-ତି) କିରଣ ।

ଉପନତ, ବିଂ. ( ଉପ ନମ୍-ତ ) ଶରଣାଗତ; ସମୀପାଗତ; ପ୍ରାପ୍ତ ।

ଉପନନ୍ଦ, ବିଂ. ( ଉପ-ନନ୍ଦ୍-ଅ ) ଆନନ୍ଦପ୍ରାପ୍ତ । ବି. ପୁଂ. ଗୋପରାଜ ନନ୍ଦର ଭ୍ରାତା ।

ଉପନୟ, ଉପନାୟ, ପୁଂ. ଉପନୟନ, ନ. } ବି.(ଉପ-ନୀ-ଅ,ଅନ) ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କର ଯଜ୍ଞସୂତ୍ର ଧାରଣ ସଂସ୍କାର-ବିଶେଷ; ଅନୟନ ।

ଉପନାମ, ବି. (ଉପ-ନାମ) କଳ୍ପିତ ନାମ, କୃତ୍ରିମ ନାମ ।

ଉପନାହ, ବି. ପୁଂ. ( ଉପ-ନହ-ଅ ) ବୀଣାଯନ୍ତ୍ର ବନ୍ଧନ ସ୍ଥାନ; ପ୍ରଲେପ; ପୁଲ୍‌ଟିସ ।

ଉପନିଧାନ, ନ. } ଉପନିଧି, ପୁଂ. } ବି. (ଉପ-ନି-ଧା-ଅନ, ଇ) ନ୍ୟାସ, ଗଚ୍ଛିତ ରଖିଥିବା ।

ଉପନିବନ୍ଧ, ବି. ପୁଂ. (ଉପ-ନିବନ୍ଧ) ପ୍ରତିଜ୍ଞା ସମସ୍ତ ।

ଉପନିବେଶ, ବି. ପୁଂ. ( ଉପ-ନି-ବିଶ୍-ଅ ) ଦେଶାନ୍ତରରେ ନିବାସ କରିବା, ଦେଶାନ୍ତରରେ ଗୃହ ।

ଉପନିଷଦ୍, ବି. ସ୍ତ୍ରୀ. (ଉପ-ନି-ସଦ୍-୦) ବେଦର ଶିରୋଭାଗ, ଜ୍ଞାନକାଣ୍ଡ, ବେଦାନ୍ତ, ଯେଉଁ ଅଂଶରେ ଈଶ୍ୱର ନିରୂପଣ ଅଛି; ବ୍ରହ୍ମବିଦ୍ୟା; ବିଦ୍ୟା; ଧର୍ମ; ବିଜନ ସ୍ଥାନ ।

ଉପନିଷ୍କର, ବି. ନ. (ଉପ ନି-କୃ-ଅ, ସ ଆଗମ) ନଗରର ମଧ୍ୟସ୍ଥ ପଥ, ରାଜପଥ ।

ଉପନିଷ୍କ୍ରମଣ, ବି. ନ. ( ଉପ-ନିର୍-କ୍ରମ୍-ଅନ ) ନଗରର ପଥ, ରାଜପଥ ।

ଉପନିହିତ, ବିଂ. (ଉପ-ନି-ଧା-ତ) ଯାହା ଅନ୍ୟ ନିକଟରେ ରଖା ହୋଇଅଛି, ଯାହା ଗଚ୍ଛିତ ରଖା ଯାଇଅଛି ।

ଉପନୀତ, ବିଂ. (ଉପ-ନୀ-ତ) ଉପନୟନ ସଂସ୍କୃତ; ଆନୀତ; ପ୍ରାପିତ; ଆଗତ, ଉପସ୍ଥିତ । (ଉପସ୍ଥିତ ଅର୍ଥରେ) ଯଥା—

> ଭ୍ରମୁ ଭ୍ରମୁ ଏକସ୍ଥାନେ ହୋଇଲ ଉପନୀତ,
> ଭୀଷଣ ଶ୍ମଶାନ ସେହି ଅଟଇ ବିସ୍ତୃତ । ଜ. ବ.

ଉପନେତା, ବିଂ. ( ଉପ-ନୀ-ତୃ ) ଉପନୟନ କର୍ତ୍ତା; ଅନୟନକାରୀ; ପ୍ରାପକ ।

ଉପନେତ୍ର, ବି. ନ. ( ଉପ=ସଦୃଶ-ନେତ୍ର ) ଚଷମା, ନେତ୍ରପ୍ରତିନିଧି ।

ଉପନ୍ୟସ୍ତ, ବିଂ. ( ଉପ-ନି-ଅସ୍-ତ ) ଯାହାର ଉପନ୍ୟାସ ହୋଇଅଛି; ବିନ୍ୟସ୍ତ; ଆରବ୍ଧ; ଉଲ୍ଲିଖିତ; ଦତ୍ତ ।

ଉପନ୍ୟାସ, ବି. ପୁଂ. (ଉପ-ନି-ଅସ୍-ଅ) ବାକ୍ୟାରମ୍ଭ; ଉଲ୍ଲେଖ; ପ୍ରସ୍ତାବ; ଶ୍ରୋତା ବା ପାଠକମାନଙ୍କର ଚିତ୍ତରଞ୍ଜନ ନିମିତ୍ତ କଳ୍ପିତ ବୃତ୍ତାନ୍ତ, ଉପକଥା ।

ଉପପତି, ବି. ପୁଂ. ( ଉପ-ପତି ) ଅଧର୍ମପତି, ଜାର ।

ଉପପତ୍ତି, ବି. ସ୍ତ୍ରୀ. (ଉପ-ପଦ୍-ତି) ଯୁକ୍ତି; ସଙ୍ଗତି; ଉତ୍ପତ୍ତି; ହେତୁ; କାରଣ; ସିଦ୍ଧାନ୍ତ ।

ଉପପତ୍ନୀ, ବି. ସ୍ତ୍ରୀ. (ଉପ-ପତ୍ନୀ) ରକ୍ଷିତା ସ୍ତ୍ରୀ ।

ଉପପଦ, ବି. ନ. (ଉପ-ପଦ) ପଦର ସମୀପସ୍ଥ ପଦ; ପୂର୍ବପଦ; ଉପାଧି ।

ଉପପନ୍ନ, ବିଂ. ( ଉପ-ପଦ୍-ତ ) ଯୁକ୍ତିଯୁକ୍ତ; ସମ୍ଭାବିତ; ସିଦ୍ଧ; ଉତ୍ପନ୍ନ; ମିଳିତ; ଆଗତ; ସମ୍ପନ୍ନ ।

ଉପପାତକ, ବି. ନ. (ଉପ-ପାତକ) ଅଣଚାଶ ପ୍ରକାର ପାପବିଶେଷ, ଗୋବଧାଦି ପାପ ।

ଉପପାଦନ, ବି. ନ. (ଉପ-ପାଦ-ଅନ) ଯୁକ୍ତିଦ୍ୱାରା ସମର୍ଥନ ।

ଉପପାଦ୍ୟ, (Theorem) ବିଂ. (ଉପ-ପଦ୍-ଯ) ଯୁକ୍ତିଦ୍ୱାରା ସମର୍ଥନୀୟ; ଯାଥାର୍ଥ୍ୟ ନିରୂପଣ ଯେଉଁ ପ୍ରଶ୍ନଙ୍କର ଉଦ୍ଦେଶ୍ୟ, ଏଦ୍ୱାର ବିପରୀତ ସାଧ୍ୟାଦ୍ୟ ।

ଉପପୁର, ବି. ନ. (ଉପ-ପୁର) ଶାଖାନଗର, ବୃହତ୍ ନଗରର ନିକଟବର୍ତ୍ତୀ ଗ୍ରାମ ।

ଉପପୁରାଣ ବି. ନ. (ଉପ-ପୁରାଣ) ଅଷ୍ଟାଦଶ କ୍ଷୁଦ୍ର ପୁରାଣ, ଯଥା—

ଆଦ, ନୃସିଂହ, ବାୟୁ, ଶିବଧର୍ମ, ଦୁର୍ବାସଃ, ନାରଦ, ନନ୍ଦିକେଶ୍ୱର, ଉଶନଃ, କପିଳ, ବରୁଣ, ଶାମ୍ବ, କାଳିକା, ମହେଶ୍ୱର, ପଦ୍ମ, ଦେବ, ପରାଶର, ମରୀଚ ଏବଂ ଭାସ୍କର ।

ଉପପୁଷ୍ପିକା, ବି. ସ୍ତ୍ରୀ. (ଉପ-ପୁଷ୍ପିକା) ଜୃମ୍ଭା, ହାଇ ।

ଉପପ୍ଲବ, ବି. ପୁଂ. (ଉପ-ପ୍ଲୁ-ଅ) ପ୍ରଭଞ୍ଜନ, ବିପଦ; ଉପଦ୍ରବ; ଭୟ; ରାହୁ; ଚନ୍ଦ୍ରାଦିଗ୍ରହଣ ।

ଉପପ୍ଲୁତ, ବିଂ. (ଉପ-ପ୍ଲୁ-ତ) ଉପଦ୍ରୁତ; ରାହୁ-ଗ୍ରସ୍ତ; ପୀଡ଼ିତ; ବିପଦ୍‌ଗ୍ରସ୍ତ; ଭୀତ ।

ଉପଭଙ୍ଗ ବି. ନ. (ଉପ-ଭଙ୍ଗ୍-ଅ) ଯୁଦ୍ଧାଦିରୁ ପଳାୟନ, ପ୍ରସ୍ଥାନ ।

ଉପଭୁକ୍ତ, ବିଂ. (ଉପ-ଭୁଜ୍-ତ) ଯାହା ଭୋଗ କରାଯାଏ; ଭକ୍ଷିତ; ବ୍ୟବହୃତ ।

ଉପଭୂଷଣ, ବି. ନ. ସାଧାରଣ ଗୃହସ୍ଥ ଉପକରଣ ବିଶେଷ ।

ଉପଭୋଗ, ବି. ପୁଂ. (ଉପ-ଭୁଜ୍-ଅ) ସୁଖାଦିଭୋଗ; ଭକ୍ଷଣ; ବ୍ୟବହାର ।

ଉପଭୋଗ୍ୟ, ବିଂ. (ଉପ-ଭୁଜ୍-ଯ) ଉପଭୋଗ ଯୋଗ୍ୟ, ଯେଉଁ ବିଷୟ ଭୋଗ କରିବା ଉଚିତ ।

ଉପମର୍ଦ୍ଦ, ବି. ପୁଂ. (ଉପ-ମୃଦ୍-ଅ) ଆଲୋଡ଼ନ; ହିଂସା; ପୀଡ଼ନ; ମର୍ଦ୍ଦନ ।

ଉପମା, ବି. ସ୍ତ୍ରୀ. (ଉପ-ମା) ଅର୍ଥାଲଙ୍କାରବିଶେଷ; ସାଦୃଶ୍ୟ, ତୁଲ୍ୟତା । ବିଂ. ତୁଲ୍ୟ ।

ଉପମାତା, ବିଂ. (ଉପ-ମାତା) ଯେ ଉପମା ଦିଏ । ବି. ସ୍ତ୍ରୀ. ଧାତ୍ରୀ, ଧାଇ ।

ଉପମାନ, ବି. ନ. (ଉପମା-ଅନ) ଉପମା, ତୁଳନା, ଯାହାର ସହିତ ଉପମା ଦିଆଯାଏ, ଚନ୍ଦ୍ରପଦ୍ମାଦି ।

ଉପମାଲଙ୍କାର, ବି. ପୁଂ. ସମ୍ୟାଲଙ୍କାର ।

ଉପମିତ, ବିଂ.(ଉପ-ମା-ତ) ଉପମାଯୁକ୍ତ; ତୁଳିତ ।

ଉପମିତି, ବି. ସ୍ତ୍ରୀ. (ଉପ-ମା-ତି) ଉପମା,ସାଦୃଶ୍ୟ-ଜ୍ଞାନ ।

ଉପମେୟ, ବିଂ. (ଉପ-ମା-ଯ) ତୁଳନୀୟ; ଅନ୍ୟ ସହିତ ଯାହାର ଉପମା ଦିଆଯାଏ, ଯଥା— ପଙ୍କଜାନନ, ଏ ସ୍ଥଳରେ ପଙ୍କଜ ଉପମାନ, ଆଉ ଆନନ ଉପମେୟ ।

ଉପମେୟୋପମା, ବି. ସ୍ତ୍ରୀ. (ଉପମେୟ-ଉପମା) ଯେଉଁ ସ୍ଥଳରେ ଉପମେୟର ଉପମାନ ଓ ଉପମାନର ଉପମେୟ ଭାବ ପର୍ଯ୍ୟାୟ କ୍ରମରେ ବିବକ୍ଷିତ ହୁଏ; ଅଲଙ୍କାରବିଶେଷ ।

ଉପଯନ୍ତା, ବି. ପୁଂ. (ଉପ-ଯମ୍-ତୃ) ବର, ବିବାହ-କାରକ ।

ଉପଯମ, ଉପଯାମ, } ବି. ପୁଂ. (ଉପ-ଯମ୍-ଅ) ବିବାହ ।

ଉପଯମନ, ବି. ନ. ( ଉପ-ଯମ୍-ଅନ ) ବିବାହ, ବୈବାହିକ ମନ୍ତ୍ର ।

ଉପଯାଚକ, ବିଂ. (ଉପ-ଯାଚ୍-ଅକ) ସ୍ୱୟଂ ଯାଚକ, ଯେ ବ୍ୟକ୍ତି ଆପେ ଯାଚ୍ଞା କରଇ ।

ଉପଯାଜ, ବି. ପୁଂ. (ଉପ-ଯଜ୍-ଅ) ଯଜ୍ଞବିଶେଷ; କାଶ୍ୟପଗୋତ୍ରଜ ଋଷିବିଶେଷ । ବି. ନ. ସଂହିତାଧ୍ୟୟନ ।

ଉପଯାଚିକା, ବିଂ. (ଉପ-ଯାଚ୍-ଅକ-ଆ) ଯେଉଁ ସ୍ତ୍ରୀ ପର ପୁରୁଷ ନିକଟକୁ ଯାଇ ଅନୁରାଗ ପ୍ରକାଶ ବା ସମ୍ଭୋଗ ପ୍ରାର୍ଥନା କରଇ ।

ଉପଯାଚିତ, ବିଂ. ( ଉପ-ଯାଚ୍-ତ ) ପ୍ରାର୍ଥିତ ; ସମର୍ପିତ ।

ଉପଯାତ, ବିଂ (ଉପ-ଯା-ତ) ଉପଗତ ; ପ୍ରାପ୍ତ ।

ଉପଯାନ, ବି. ନ. ( ଉପ-ଯା-ଅନ ) ପ୍ରାପ୍ତି; ନିକଟକୁ ଗମନ ।

ଉପଯୁକ୍ତ, ବିଂ. (ଉପ-ଯୁଜ୍-ତ) ଯୋଗ୍ୟ; ସମର୍ଥ; ଉଚିତ; କାର୍ଯ୍ୟଦକ୍ଷ; ଭୁକ୍ତ ।

ଉପଯୁକ୍ତତା, ବି. ସ୍ତ୍ରୀ. ( ଉପଯୁକ୍ତ-ତା ) କର୍ମଣ୍ୟତା, କାର୍ଯ୍ୟଦକ୍ଷତା, ଔଚିତ୍ୟ, ଅନୁରୂପତା, ଉପଯୋଗିତା ।

ଉପଯୋଗ, ବି. ପୁଂ. (ଉପ-ଯୁଜ୍-ଅ) ଆନୁକୂଲ୍ୟ; ବ୍ୟୟ; ଭୋଜନ; ଭୋଗ; ଉପଯୋଗିତା; ନୈକଟ୍ୟ; କାରଣ ।

ଉପଯୋଗିତା, ବି. ସ୍ତ୍ରୀ. (ଉପଯୋଗ-ଇନ୍-ତା) ଆନୁକୂଲ୍ୟ; ପ୍ରୟୋଜନ; ଉପଯୁକ୍ତତା; କାର୍ଯ୍ୟକାରିତା ।

ଉପଯୋଗୀ, ବିଂ. (ଉପଯୋଗ-ଇନ୍) କାର୍ଯ୍ୟ-ସାଧନର ଅନୁକୂଳ; ଉପକାରୀ; ଉପଯୁକ୍ତ; ଯୋଗ୍ୟ; କାର୍ଯ୍ୟକାରକ ।

ଉପର, ଅଂ. (ଉପରି ଶବ୍ଦଜ) ଉପରଭାଗ; ଉର୍ଦ୍ଧ୍ୱ; ଉଚ୍ଚ; ଅନ୍ୟ ।

ଉପରକ୍ତ, ବିଂ. ( ଉପ-ରନ୍ଜ୍-ତ ) ପୀଡ଼ାଗ୍ରସ୍ତ; ଅନୁରକ୍ତ; ରକ୍ତବର୍ଣ୍ଣ । ବି. ପୁଂ. ରାହୁ; ରାହୁଗ୍ରସ୍ତ ଚନ୍ଦ୍ର ସୂର୍ଯ୍ୟ ।

ଉପରକ୍ଷ, (Body-guard) ବି. ପୁଂ. ( ଉପ-ରକ୍ଷ-ଅ) ସୈନ୍ୟର ସମୀପବର୍ତ୍ତୀ ରକ୍ଷକ ।

ଉପରଓଳ, ବି. ( ପ୍ରାକୃତଜ ) ( ଅପରବେଳା ଶବ୍ଦଜ) ଅପରାହ୍ନ, ଦିବା ଦୁଇପ୍ରହର ଉତ୍ତାରୁ ଯେଉଁ ସମୟ ।

ଉପରତ, ବିଂ. (ଉପ-ରମ୍-ତ) ନିବୃତ୍ତ; ମୃତ; ବିଗତ ।

ଉପରତି, ବି. ସ୍ତ୍ରୀ.(ଉପ-ରମ୍-ତି) ନିବୃତ୍ତି; ମୃତ୍ୟୁ; ବୈରାଗ୍ୟ ।

ଉପରତ୍ନ, ବି. ନ. ( ଉପ-ରତ୍ନ ) ରତ୍ନ ସଦୃଶ ଚାକଚକ୍ୟମୟ ବସ୍ତୁ । ଯଥା—କାଚ, କର୍ପୂର, ପ୍ରସ୍ତର, ମୁକ୍ତା, ଶୁକ୍ତି, ଶଙ୍ଖ ଇତ୍ୟାଦି ।

ଉପରମ, ଉପକ୍ରମ, } ବି. ପୁଂ. (ଉପ-ରମ୍-ଅ) ନିବୃତ୍ତି; ମୃତ୍ୟୁ; ବୈରାଗ୍ୟ ।

ଉପରାଗ, ବି. ପୁଂ. (ଉପ-ରନ୍ଜ୍-ଅ) ଚନ୍ଦ୍ରଗ୍ରହଣ; ସୂର୍ଯ୍ୟଗ୍ରହଣ; ବିପଦ; ଅପବାଦ; ବିରାଗ; ପ୍ରବୃତ୍ତି; ସମ୍ବନ୍ଧ; ନିନ୍ଦା ।

ଉପରାଣ, ବି. ଓଢ଼ଣୀବସ୍ତ୍ର । ଯଥା—

> ଉର୍ଣ୍ଣନାଭ ସୂତ୍ର ମାନସରୁ ସରୁ,
> ଉପରାଣକୁ ମଣେ ଜଗତୁ ଗରୁ । ବ. ଚ.

ଉପରି, ଉପରିଷ୍ଟାତ୍, } ଅଂ. ( ଉର୍ଦ୍ଧ୍ୱ-ରି, ରିଷ୍ଟାତ୍ ) ଉର୍ଦ୍ଧ୍ୱରେ; ଅନନ୍ତର, ପରେ ।

ଉପରିଚର, ବି. ପୁଂ. (ଉପରି-ଚର) ରାଜାବିଶେଷ । ବିଂ, ଉର୍ଦ୍ଧ୍ୱଚର ।

ଉପରିତନ, ବିଂ. (ଉପରି-ତନ) ଯାହା ଉପରେ ଅଛି, ଉର୍ଦ୍ଧ୍ୱତନ ।

ଉପରୋଧ, ବି. ପୁଂ. ( ଉପ-ରୁଧ-ଅ ) ପ୍ରତିବନ୍ଧ; ଅନୁରୋଧ, ସୁପାରସ୍, ଖାତିର; ଆବରଣ; ପୀଡ଼ା । (ଅନୁରୋଧ ଅର୍ଥରେ) ଯଥା—

> ଉପରୋଧରୁ ଏ ସଙ୍ଗେ ସଖୀ ସନ୍ତୁ । ବ. ଚ.

ଉପର୍ଯ୍ୟୁପରି, ଅଂ. (ଉପରି-ଉପରି) ମୁହୁର୍ମୁହୁଃ; ଉପରେ ଉପରେ; ଥରକୁଥର ।

ଉପଲ, ବି. ପୁଂ. (ଉପ-ଲା-ଅ) ପ୍ରସ୍ତର, ପାଷାଣ; ରତ୍ନ । ଯଥା—

> ଉପଲେ ସେକଲେ ସ୍ୱଚ୍ଛ ସ୍ରୋତ ଯାର କରନ୍ତେ ବନ୍ଧ,
> ପତ୍ର, ପୁଷ୍ପ, ଫଳ, ଶସ୍ୟରେ ମଣ୍ଡନ କରନ୍ତ ନସ୍ତ । ଉଷା ।

ଉପଲକ୍ଷ, ଉପଲକ୍ଷ୍ୟ, ବି. ପୁଂ. (ଉପ-ଲକ୍ଷ୍-ଅ, ଯ) ଅବଲମ୍ବନ; ପ୍ରସଙ୍ଗ; ନିମିତ୍ତ; ଉଦ୍ଦେଶ୍ୟ ।

ଉପଲକ୍ଷଣ, ବି. ନ. ( ଉପ-ଲକ୍ଷ୍-ଅନ ) ଲକ୍ଷଣା-ଦ୍ୱାରା ଅଧିକ ଅର୍ଥବୋଧକ ଶବ୍ଦ ।

ଉପଲକ୍ଷିତ, ବିଂ. ( ଉପ-ଲକ୍ଷ୍-ତ ) ସୂଚିତ; ଅନୁମିତ; ଯୁକ୍ତ, ବିଶିଷ୍ଟ; ଯୁକ୍ତିପ୍ରାପ୍ତ ।

ଉପଲବ୍ଧ, ବିଂ. (ଉପ-ଲଭ୍-ତ) ଜ୍ଞାତ, ଅନୁଭୂତ; ପ୍ରାପ୍ତ ।

ଉପଲବ୍ଧି, ବି. ସ୍ତ୍ରୀ. (ଉପ-ଲଭ୍-ତି) ଜ୍ଞାନ; ପ୍ରାପ୍ତି; ଅନୁଭବ ।

ଉପଲଭ୍ୟ, ବିଂ. (ଉପ-ଲଭ୍-ଯ) ଜ୍ଞେୟ; ପ୍ରାପ୍ୟ; ସାଧ୍ୟ ।

ଉପଲମ୍ଭ, ବ. ପୁଂ. ( ଉପ-ଲଭ-ଅ ) ଉପଲବ୍ଧି; ଉପସ୍ଥିତି ।

ଉପଲଙ୍ଘ, ବ. ନ. ( ଉପ-ଲଙ୍ଘ-ଅ ) ଭୂମିକମ୍ପ ପ୍ରଭୃତି ଉପଦ୍ରବ ।

ଉପଲେପ, ପୁଂ. } ବ. ( ଉପ-ଲିପ୍-ଅ, ଅନ )
ଉପଲେପନ, ନ. } ଗୋମୟାଦି ଲେପନ ।

ଉପବନ, ବ. ନ. ( ଉପ-ବନ ) କୃତ୍ରିମ ବନ, ଉଦ୍ୟାନ ।

ଉପବର୍ଣ୍ଣନ, ବ. ନ. ( ଉପ-ବର୍ଣ୍ଣ-ଅନ ) ସମ୍ୟକ୍ କୀର୍ତ୍ତନ; ସ୍ୱରୂପ ଲକ୍ଷଣ ଗୁଣାଦି କଥନ ।

ଉପବର୍ତ୍ତନ, ବ. ନ. (ଉପ-ବୃତ-ଅନ) ଜନପଦ, ଦେଶ ।

ଉପବର୍ଷ, ବ. ପୁଂ. କାତ୍ୟାୟନ ପାଣିନି ପ୍ରଭୃତି ମୁନି-ମାନଙ୍କର ଅଧ୍ୟାପକ ଋଷିବିଶେଷ ।

ଉପବର୍ହ, ବ. ପୁଂ. ( ଉପ-ବର୍ହ-ଅ ) ତକିଆ, ଉପଧାନ ।

ଉପବସଥ, ବ. ପୁଂ. (ଉପ ବସ-ଅଥ) ଗ୍ରାମ ।

ଉପବାଦ, ବ. ପୁଂ. (ଉପ-ବାଦ) ଅପବାଦ,ନିନ୍ଦା ।

ଉପବାସ, ବ. ପୁଂ. (ଉପ-ବସ୍=ଆହାର କରିବା-ଅ) ଅନଶନ, ଅନାହାର, ଉପାସ; ବାସ ।

ଉପବାହ୍ୟ, ବ. ପୁଂ. (ଉପ-ବହ-ଯ) ରାଜଯାନ ।

ଉପବିଷ, ବ. ପୁଂ. ( ଉପ=ତୁଲ୍ୟ-ବିଷ ) ଅରଖ ଗଛର ଅଠା ପ୍ରଭୃତି ପଞ୍ଚଦ୍ରବ୍ୟ । ଯଥା— ଅର୍କକ୍ଷୀର, ସିଜୁକ୍ଷୀର, ଧୂତୁରା, କନିଅର ଓ କାଳିହାରକା ।

ଉପବିଷ୍ଟ, ବିଂ. ( ଉପ-ବିଶ୍-ତ ) ଅଧୀନ, ଯେ ବସିଅଛି ।

ଉପବୀତ, ବ. ନ. ( ଉପ-ବି=ଉଜ୍ଜ୍ୱଳ ହେବା-ତ) ଯଜ୍ଞସୂତ୍ର, ପୈତା ।

ଉପବୃଂହିତ, ବିଂ. ( ଉପ-ବୃଂହିତ ) ବର୍ଦ୍ଧିତ; ଉତ୍କର୍ଷିତ ।

ଉପବେଦ, ବ. ପୁଂ. ( ଉପ-ବେଦ ) ଆୟୁର୍ବେଦ, ଧନୁର୍ବେଦ, ଗାନ୍ଧର୍ବବେଦ, ସ୍ଥାପତ୍ୟବେଦ ।

ଉପବେଶନ, ବ. ନ. ( ଉପ-ବିଶ୍-ଅନ ) ସ୍ଥିତି; ବସିବା; ରଖିବା ।

ଉପବ୍ୟାଘ୍ର, ବ. ପୁଂ. (ଉପ-ବ୍ୟାଘ୍ର) ହେଣ୍ଟାବାଘ । ଅଂ. ବ୍ୟାଘ୍ର ସମୀପରେ ।

ଉପଶମ, ବ. ପୁଂ. (ଉପ-ଶମ୍-ଅ) ଶାନ୍ତି, ନିବୃତ୍ତି; ଇନ୍ଦ୍ରିୟନିଗ୍ରହ; ରୋଗର ଉପଦ୍ରବ ନିବୃତ୍ତି ।

ଉପଶାୟ, ବ. ପୁଂ. ( ଉପ-ଶୀ-ଅ ) ମୃଗ ମାରିବା-ପାଇଁ ବ୍ୟାଧର ଆତ୍ମଗୁପ୍ତି ସ୍ଥାନ; କ୍ରୋଡ଼ । ନ. ନିକଟରେ ଶୟନ ।

ଉପଶଲ୍ୟ, ବ. ନ. (ଉପ-ଶଲ୍-ଯ) ଗ୍ରାମର ପ୍ରାନ୍ତ-ଭାଗ, ଗ୍ରାମାନ୍ତ ।

ଉପଶାନ୍ତ, ବିଂ. (ଉପ-ଶମ୍-ତ) ଯାହାର ଉପଶମ ହୋଇଅଛି, ନିବୃତ୍ତ ।

ଉପଶ୍ରୁତ, ବିଂ. ( ଉପ-ଶ୍ରୁ-ତ ) ଅଙ୍ଗୀକୃତ, ପ୍ରତିଶ୍ରୁତ ।

ଉପଶ୍ଳେଷ, ବ. ପୁଂ. (ଉପ-ଶ୍ଳିଷ-ଅ) ଆଲିଙ୍ଗନ; ବନ୍ଧନ ।

ଉପଷ୍ଟମ୍ଭ, ବ. ପୁଂ. ( ଉପ ସ୍ତନ୍ଭ୍-ଅ ) ଉପକ୍ରମ, ଆରମ୍ଭ; ଉଦ୍ରେକ; ସ୍ତମ୍ଭନ; ପ୍ରୟୋଜନ; ଉପଲକ୍ଷ ।

ଉପସଂଗ୍ରହ, ବ. ପୁଂ. (ଉପ-ସମ୍-ଗ୍ରହ୍-ଅ) ପାଦ-ସ୍ପର୍ଶପୂର୍ବକ ପ୍ରଣାମ, ଅଭିବାଦନ; ସଂଗ୍ରହ; ଉପକରଣ ।

ଉପସଂବ୍ୟାନ, ବ. ନ. ( ଉପ-ସମ୍-ବ୍ୟେ-ଅନ ) ଯାହାଦ୍ୱାରା ଶରୀର ଆଚ୍ଛାଦନ କରାଯାଏ, ପରିଧାନ ବସ୍ତ୍ର, ଉତ୍ତରୀୟ ବସ୍ତ୍ର ।

ଉପସଂହାର, ପୁଂ. } ବ. ( ଉପ-ସମ୍-ହୃ-ଅ, ଅନ )
ଉପସଂହରଣ, ନ. } ନାଶ; ପରିଶେଷ; ସମାପ୍ତି; ସଂଗ୍ରହ; ଆକ୍ରମଣ; ନିବର୍ତ୍ତନ; ସଂକୋଚ ।

ଉପସତ୍ତି, ବ. ସ୍ତ୍ରୀ. ( ଉପ-ସଦ୍-ତି ) ଉପାସନା; ଉପସ୍ଥିତି; ଦାନ; ପ୍ରତିପାଦନ ।

ଉପସନ୍ନ, ବିଂ. (ଉପ-ସଦ୍-ତ) ଆସନ୍ନ, ଉପସ୍ଥିତ, ନିକଟସ୍ଥ ।

ଉପସମ୍ପନ୍ନ, ବିଂ. ( ଉପ-ସମ୍-ପଦ୍-ତ ) ପକ୍ୱ; ମୃତ; ପର୍ଯ୍ୟାପ୍ତ; ପ୍ରସ୍ତୁତ ।

ଉପସର, ବି. ପୁଂ. ( ଉପ-ସୃ-ଅ ) ନିର୍ଗମନ; ଗର୍ଭ ପ୍ରଭୃତିର ଗର୍ଭଧାରଣ ନିମିତ୍ତ ବୃଷଭାଦି ନିକଟକୁ ଗମନ ।

ଉପସର୍ଗ, ବି. ପୁଂ. ( ଉପ=ଉପସ୍ଥିତ-ସର୍ଗ=ସୃଷ୍ଟି ) ଉପଦ୍ରବ; ପୀଡ଼ା; ବ୍ୟାଧି; ରୋଗବିକାର । (ଉପ =ସମୀପ ବା ସହିତ-ସର୍ଗ=ଯେ ସୃଷ୍ଟି କରଇ) ଯେଉଁମାନେ ଧାତୁ ନିକଟକୁ ଯାଇ ନାନାବିଧ ଅର୍ଥ ସୃଷ୍ଟି କରନ୍ତି । ଯଥା—ପ୍ର, ପରା ଇତ୍ୟାଦି ।

ଉପସର୍ଜନ, ବି. ନ. ( ଉପ-ସୃଜ୍-ଅନ ) ଗୌଣ, ଅପ୍ରଧାନ; ବିଶେଷଣ; ଦେବାଦି ଉଦ୍ଦେଶ୍ୟ ତ୍ୟାଗ ।

ଉପସର୍ଯ୍ୟା, ବି. ସ୍ତ୍ରୀ. (ଉପ-ସୃ-ଯ-ଆ) ଋତୁମତୀ ଗାଈ ।

ଉପସାଗର, ବି. ପୁଂ. ( ଉପ-ସାଗର ) ଯେଉଁ ସାଗରାଂଶର ପ୍ରାୟ ଚତୁର୍ଦ୍ଦିଗରେ ସ୍ଥଳ ।

ଉପସୁନ୍ଦ, ଏକ ଦୈତ୍ୟ, ଏହାର ଅନ୍ୟ ଏକ ଭ୍ରାତାର ନାମ ସୁନ୍ଦ । ତିଲୋତ୍ତମା ନିମନ୍ତେ ପରସ୍ପର ବିବାଦ କରି ନିହତ ହୋଇଥିଲେ; ନରକାସୁରର ସେନାପତି ।

ଉପସୂର୍ଯ୍ୟକ, ବି. ନ. ( ଉପ-ସୂର୍ଯ୍ୟ-କ ) ସୂର୍ଯ୍ୟ-ମଣ୍ଡଳ, ଚନ୍ଦ୍ରମଣ୍ଡଳ ।

ଉପସୃଷ୍ଟ, ବିଂ. (ଉପ-ସୃଜ୍-ତ ) ଆକ୍ରାନ୍ତ; ବ୍ୟାପ୍ତ; ଯୁକ୍ତ; ଉପସର୍ଗଯୁକ୍ତ; କାମୁକ । ବି. ନ. ମୈଥୁନ ।

ଉପସ୍କର, ଉପସ୍କାର, ବି. ପୁଂ. (ଉପ-କର, କାର) ଅସମ୍ପୂର୍ଣ୍ଣ ବାକ୍ୟ ବୋଧାର୍ଥେ ଶବ୍ଦର ଅଧ୍ୟାହାର; ବ୍ୟଞ୍ଜନର ମସଲା; ଉପକରଣ; ଗୃହସ୍ଥର ପ୍ରୟୋଜନୀୟ ଦ୍ରବ୍ୟ ସାମଗ୍ରୀ ।

ଉପସ୍ତ୍ରୀ, ବି. ସ୍ତ୍ରୀ. (ଉପ-ସ୍ତ୍ରୀ) ଉପପତ୍ନୀ ।

ଉପସ୍ଥ, ବିଂ. (ଉପ-ସ୍ଥା-ଅ) ନିକଟସ୍ଥ । ବି. ପୁଂ. ପୁଂଲିଙ୍ଗ, ସ୍ତ୍ରୀଚିହ୍ନ, କ୍ରୋଡ଼ ।

ଉପସ୍ଥାନ, ବି. ନ. ( ଉପ-ସ୍ଥା-ଅନ ) ଉପସ୍ଥିତି; ଉପାସନା; ଆଗମନ; ଉତ୍ସବ ।

ଉପସ୍ଥାପକ, ଉପସ୍ଥାପୟିତା, } ବିଂ. ( ଉପ-ସ୍ଥାପି-ଅକ, ତୃ ) ଯେ ଉପସ୍ଥିତ କରେ, ପ୍ରସ୍ତାବକର୍ତ୍ତା ।

ଉପସ୍ଥାପନ, ବି. ନ. (ଉପ-ସ୍ଥା-ଇ-ଅନ) ପ୍ରସ୍ତାବ କରିବା; ଆନୟନ; ଜ୍ଞାପନ ।

ଉପସ୍ଥାପିତ, ବିଂ. ( ଉପ-ସ୍ଥାପି-ତ ) ପ୍ରସ୍ତାବିତ, ଆନୀତ, ଯାହା ଉପସ୍ଥିତ କରା ହୋଇଅଛି ।

ଉପସ୍ଥିତ, ବିଂ. (ଉପ-ସ୍ଥା-ତ) ଆଗତ; ନିକଟସ୍ଥିତ; ଉପାସିତ; ଜ୍ଞାତ; ପ୍ରାପ୍ତ ।

ଉପସ୍ପର୍ଶ, ପୁଂ. ଉପସ୍ପର୍ଶନ, ନ. } ବି. ( ଉପ-ସ୍ପୃଶ୍-ଅ, ଅନ ) ସ୍ନାନ; ଆଚମନ; ପାନ; ସ୍ପର୍ଶ ।

ଉପସ୍ପୃଷ୍ଟ, ବିଂ. ( ଉପ-ସ୍ପୃଶ୍-ତ ) କୃତାଚମନ; ସ୍ନାତ; ସଂସ୍ପୃଷ୍ଟ ।

ଉପସ୍ୱତ୍ୱ, ବି. ନ. (ଉପ-ସ୍ୱତ୍ୱ) ଅଧିକାର, ଭୂମ୍ୟାଦି ବିଷୟରୁ ଯାହା ଉତ୍ପନ୍ନ ହୁଏ । ଯଥା—ଜମିର ଖଜଣା, ଘରଭଡ଼ା ଇତ୍ୟାଦି ।

ଉପସ୍ୱେଦ, ବି.ପୁଂ. (ଉପ-ସ୍ୱିଦ୍-ଅ) ସେକ ଦେବା, ତାପ ଦେବା ।

ଉପହତ, ବିଂ. (ଉପ-ହନ୍-ତ) ଅହତ; ଦୂଷିତ; ଆକ୍ରାନ୍ତ; ଅଭିଭୂତ; ତିରସ୍କୃତ; ପ୍ରତିବିଦ୍ଧ ।

ଉପହବ, ବି. ପୁଂ. (ଉପ-ହ୍ୱେ-ଅ) ଅହ୍ୱାନ । (ଉପ-ହୁ=ହୋମ କରିବା-ଅ) ଯଜ୍ଞୀୟ ସମିଧ ।

ଉପହସିତ, ବି. ନ. ( ଉପ-ହସ୍-ତ ) ହାସ୍ୟ, ପରିହାସ । ବିଂ. ଯାହାକୁ ଉପହାସ କରା ହୋଇଅଛି ।

ଉପହସ୍ତିକା, ବି. ସ୍ତ୍ରୀ. (ଉପ-ହସ୍ତ-ଇକ-ଆ) ପାନ-ଡବିଆ ।

ଉପହାର, ବି. ପୁଂ. (ଉପ-ହୃ-ଅ) ସମର୍ପଣ, ଭେଟି, ଉପଢୌକନ । ଯଥା—

> ଯୋଗ୍ୟ ଉପହାର ଅର୍ପନ୍ତି ସକଳ,
> ବନ୍ଦନ୍ତି ଉତ୍ସବ ଚରଣଯୁଗଳ । କ. ବ.

ଉପହାସ, ବି. ପୁଂ. (ଉପ-ହସ୍-ଅ) ଥଟ୍ଟା, ବିଦ୍ରୂପ, ଘୃଣାଯୁକ୍ତ ହାସ ।

ଉପହାସ୍ୟ, ବିଂ. (ଉପ-ହସ୍-ଯ) ବିଦ୍ରୂପର ଯୋଗ୍ୟ, ଯାହାକୁ ଦେଖି ଉପହାସ କରାଯାଏ ।

ଉପହିତ, ବିଂ. (ଉପ-ଧା-ତ) ଅର୍ପିତ; ବିନ୍ୟସ୍ତ; ଦତ୍ତ; ଗୃହୀତ ।

ଉପହୃତ, ବିଂ. ( ଉପ-ହୃ-ତ ) ଉପହାର ସ୍ୱରୂପେ ଦତ୍ତ; ଆନୀତ; ଆହୃତ; ଉପସୃଷ୍ଟ ।

ଉପାଂଶୁ, ବି. ପୁଂ. (ଉପ-ଅଂଶୁ ) ଜପବିଶେଷ । ଅଂ. ନିର୍ଜନେ ।

ଉପାଂଶୁବଧ, ବି. ପୁଂ. ( ଉପାଂଶୁ-ବଧ ) ନିର୍ଜନ ସ୍ଥାନରେ ବଧ, ଯେ ବଧ କେହି ଦେଖି ପାରେ ନାହିଁ ।

ଉପାକରଣ, ବି. ନ. (ଉପ-ଆ-କୃ-ଅନ) ସଂସ୍କାର-ପୂର୍ବକ ବେଦଗ୍ରହଣ; ସଂସ୍କାରପୂର୍ବକ ପଶୁ-ହନନ; ଆରମ୍ଭ ।

ଉପାକୃତ, ବିଂ. (ଉପ-କୃ-ତ) ଦେବତାର ଉଦ୍ଦେଶ୍ୟରେ ହତ ବା ହନ୍ତବ୍ୟ ଜନ୍ତୁ; ଉପଦ୍ରୁତ । ବି. ଅମଙ୍ଗଳ ।

ଉପାକ୍ଷ (Spectacles), ବି. ନ. ( ଉପ-ଅକ୍ଷ ) ଚସ୍‌ମା, ଉପନେତ୍ର ।

ଉପାଖ୍ୟାନ, ବି. ନ. ( ଉପ-ଆ-ଖ୍ୟା-ଅନ ) ଇତିବୃତ୍ତ, ଆଖ୍ୟାୟିକା, ଉପନ୍ୟାସ ।

ଉପାଗତ, ବିଂ. (ଉପ-ଆ-ଗମ୍-ତ) ସ୍ୱୀକୃତ; ପ୍ରାପ୍ତ; ଅନୁଭୂତ; ଉପସ୍ଥିତ ।

ଉପାଗମ, ବି. ପୁଂ. (ଉପ-ଆ-ଗମ୍-ଅ) ଉପସ୍ଥିତି; ପ୍ରାପ୍ତି; ସ୍ୱୀକାର; ଅନୁଭବ ।

ଉପାଙ୍ଗ, ବି. ନ. ( ଉପ-ଅଙ୍ଗ ) ଲଲାଟରେ ଚନ୍ଦନାଦି ଚିହ୍ନ, ତିଳକ; ପ୍ରଧାନର ଉପଯୋଗୀ, ଅଙ୍ଗର ଅଙ୍ଗ ପ୍ରତ୍ୟଙ୍ଗ । ଯଥା— ଶରୀରର ଅଙ୍ଗ ହାତ, ତାହାର ଅଙ୍ଗ ଅଙ୍ଗୁଳି ।

ଉପାଚାର୍ଯ୍ୟ, ବି. ପୁଂ. (ଉପ-ଆଚାର୍ଯ୍ୟ) ଆଚାର୍ଯ୍ୟର ସହକାରୀ ।

ଉପାଜେ, ଅଂ. ( ଉପ-ଅଜ-ଏ ) ଦୁର୍ବଳର ବଳାଧାନ ।

ଉପାତ୍ତ, ବିଂ. ( ଉପ-ଆତ୍ତ ) ଗୃହୀତ; ପ୍ରାପ୍ତ; ସ୍ୱୀକୃତ । ବି. ପୁଂ. ମଦଶୂନ୍ୟ ହସ୍ତୀ ।

ଉପାତ୍ୟୟ, ବି.ପୁଂ. (ଉପ-ଅତି-ଇ-ଅ) ଆନୁଗତ୍ୟ-କ୍ରମ; ନାଶ; ଉଲ୍ଲଙ୍ଘନ ।

ଉପାଦାନ, ବି. ନ. ( ଉପ-ଆଦାନ ) ଗ୍ରହଣ; ସମବାୟୀକରଣ, କୌଣସି ପଦାର୍ଥ ଯେଉଁ ବସ୍ତୁରେ ନିର୍ମିତ ବା ପ୍ରସ୍ତୁତ ହୁଏ । ଯଥା— ବସ୍ତ୍ରର ଉପାଦାନ ସୂତ; ଇଷ୍ଟକର ଉପାଦାନ ମୃତ୍ତିକା ଇତ୍ୟାଦି ।

ଉପାଦେୟ, ବିଂ. ( ଉପ-ଆ-ଦା-ଯ ) ଗ୍ରାହ୍ୟ; ଉତ୍କୃଷ୍ଟ, ଉତ୍ତମ ।

ଉପାଧାନ, ବି. ନ. (ଉପ-ଆ-ଧା-ଅନ) ତକିଆ ।

ଉପାଧି, ବି. ପୁଂ. ( ଉପ-ଆ-ଧା-ଇ ) ଧର୍ମଚିନ୍ତା; ସମ୍ପତ୍ତି; ଆଧାର; ଭେଦକଧର୍ମ; ଛଳ; ଉପନାମ; କାରଣ; ନ୍ୟାୟରେ ସାଧ୍ୟବ୍ୟାପକ; ସାଧନା-ବ୍ୟାପକ ଧର୍ମ; ଜାତି, ବଂଶ, ବିଦ୍ୟା ପ୍ରଭୃତିର ପରିଚାୟକ ଶବ୍ଦ । ଯଥା— ଆଚାର୍ଯ୍ୟ, ବସୁ, ନାୟକ, M. A., B. A., ତର୍କାଲଙ୍କାର, କାବ୍ୟତୀର୍ଥ ଇତ୍ୟାଦି ।

ଉପାଧିପତ୍ର, ବି. ନ. (ଉପାଧି-ପତ୍ର) ବିଦ୍ୟାଳୟର ପ୍ରଶଂସାପତ୍ର ।

ଉପାଧ୍ୟାୟ, ବି. ପୁଂ. (ଉପ-ଅଧି-ଇ-ଅ) ଅଧ୍ୟାପକ; ଉପଦେଷ୍ଟା । ଯା, ଯୀ-ସ୍ତ୍ରୀ. ବିଦ୍ୟୋପଦେଶିନୀ; ୟୀ, ୟାନୀ-ସ୍ତ୍ରୀ. ଉପାଧ୍ୟାୟପତ୍ନୀ, ଅଧ୍ୟାପକ-ଭାର୍ଯ୍ୟା ।

ଉପାନତ୍, } ଉପାନହ, } ବି. ସ୍ତ୍ରୀ. ( ଉପ-ଅ-ନହ-୦ ) ଚର୍ମପାଦୁକା, ଜୋତା ।

ଉପାନ୍ତ, ବି. ପୁଂ. ( ଉପ-ଅନ୍ତ ) ସମୀପ, ପ୍ରାନ୍ତ, ପରିସର, ଶେଷ ।

ଉପାନ୍ତବର୍ଣ୍ଣ, ବି. ପୁଂ. (ଉପାନ୍ତ-ବର୍ଣ୍ଣ) ଅନ୍ତ୍ୟବର୍ଣ୍ଣର ପୂର୍ବବର୍ଣ୍ଣ । ଯଥା— "ନାୟକ" ଏହାର "ୟ" ଉପାନ୍ତବର୍ଣ୍ଣ ।

ଉପାୟ, ବ. ପୁଂ. (ଉପ-ଇ=ସମ୍ପାଦନକରି-ଅ) ସାମ, ଦାନ, ଭେଦ, ଦଣ୍ଡ ଅର୍ଥାତ୍ ଶତ୍ରୁମାନଙ୍କ ସହିତ ସନ୍ଧି, ସେମାନଙ୍କୁ ଅର୍ଥଦାନ, ସେମାନଙ୍କର ଗୃହବିଚ୍ଛେଦ, ସେମାନଙ୍କ ସହିତ ଯୁଦ୍ଧ, ରାଜାମାନଙ୍କର ଏହି ଚାରି ପ୍ରକାର ସାଧନ; ଗତି; ସାଧନ; ଉପାଗମନ; ଉପାର୍ଜ୍ଜନ; କୌଶଳ; ଲାଭ।

ଉପାସନ, ବ. ନ. ( ଉପ-ଅସ୍-ଅନ ) ଚେଷ୍ଟା; ସମୀପଗମନ।

ଉପାରତ, ବି. ( ଉପ-ଆ-ରମ୍-ତ ) ନିବୃତ୍ତ; ବିରତ।

ଉପାରମ୍ଭ, ବ. ପୁଂ. (ଉପ-ଆରମ୍ଭ) ପ୍ରାରମ୍ଭ।

ଉପାର୍ଜ୍ଜନ, ବ. ନ. (ଉପ-ଅର୍ଜ୍ଜନ) ଅର୍ଜ୍ଜନ, କୃଷି, ବାଣିଜ୍ୟ ପ୍ରଭୃତିଦ୍ୱାରା ଅର୍ଥଲାଭ କରିବା; ଲାଭ; ସଞ୍ଚୟ।

ଉପାରୂଢ଼, ବି. (ଉପ-ଆରୂଢ଼) ପ୍ରାପ୍ତ; ଆରୂଢ଼।

ଉପାଲମ୍ଭ, ବ. ପୁଂ. (ଉପ-ଆ-ଲଭ୍-ଅ) ତିରସ୍କାର, ଭର୍ତ୍ସନା, ସକ୍ରୋଧବାକ୍ୟ; ପ୍ରାପ୍ତି।

ଉପାଲବ୍ଧ, ବି. (ଉପ-ଆ-ଲଭ୍-ତ) ତିରସ୍କୃତ।

ଉପାବର୍ତ୍ତନ, ବ. ନ. ( ଉପ-ଆ-ବୃତ୍-ଅନ ) ପ୍ରତ୍ୟାଗମନ; ଘୂର୍ଣ୍ଣନ; ପାର୍ଶ୍ୱ ପରିବର୍ତ୍ତନ।

ଉପାବୃତ୍ତ, ବି. ( ଉପ-ଆ-ବୃତ୍-ତ ) ଘୂର୍ଣ୍ଣିତ, ପ୍ରତିନିବୃତ୍ତ; ପ୍ରତ୍ୟାଗତ; ସମ୍ପାଦିତ।

ଉପାଶ୍ରୟ, ବି. ( ଉପ-ଆଶ୍ରୟ=ଆ-ଶ୍ରି-ଅ ) ଯାହାକୁ ଆଶ୍ରୟ କରାଯାଏ, ଆଶ୍ରୟସ୍ଥାନୀୟ। ବ. ପୁଂ. ଆଶ୍ରୟକର୍ତ୍ତା।

ଉପାସକ, ବି. (ଉପ-ଆସ୍-ଅକ) ଉପାସନାକାରୀ, ସେବକ।

ଉପାସଙ୍ଗ, ବ. ପୁଂ. ( ଉପ-ଆ-ସନ୍‌ଜ୍-ଅ ) ବାଣାଧାର, ତୂଣ, ତୂଣୀର।

ଉପାସନ, ନ. } ବ. (ଉପ-ଆସ୍-ଅନ, ଅନ-
ଉପାସନା, ସ୍ତ୍ରୀ. } ଆ, ତି) ସେବା,ଆରାଧନା,
ଉପାସ୍ତି, ସ୍ତ୍ରୀ. } ପୂଜା।

ଉପାସିତ, ବି. ( ଉପ-ଆସ୍-ଇ-ତ ) ସେବିତ, ଆରାଧିତ।

ଉପାସ୍ଥି ( Cartilage ), ବ. ନ. ଦେହର ଅଭ୍ୟନ୍ତରସ୍ଥ ଅସ୍ଥି ତୁଲ୍ୟ ପଦାର୍ଥ।

ଉପାସ୍ୟ, ବି. (ଉପ-ଆସ୍-ଯ) ସେବ୍ୟ, ଆରାଧ୍ୟ, ପୂଜ୍ୟ।

ଉପାହିତ, ବି. ( ଉପ-ଧା-ତ ) ଆରୋପିତ; ଯୋଜିତ। ବ. ପୁଂ. ଉତ୍ପାତାଦି ଉପଦ୍ରବ।

ଉପାହୃତ, ବି. ( ଉପ-ଆ-ହୃ-ତ ) ସଙ୍ଗୃହୀତ, ବଳିତ।

ଉପିବା, କ୍ରି. (ଦେଶଜ) ମାଡିବା। ଯଥା—
ଉପି ଲେଉଟି କୃଷ୍ଣ ପଦଅଗ୍ର ନେଇ ବଢେ,
ଦେବ କ କୋହ୍ଲିବ ସମ ଏମନ୍ତ ଶଙ୍କାରେ ସେ। ଘ. ବ.

ଉପୁଜିବା, କ୍ରି. ବ. ( ପ୍ରାକୃତଜ ) ( ଉପଜାତ ଶବ୍ଦଜ) ଜନ୍ମିବା; ଉତ୍ପନ୍ନ ହେବା। ବି. ଜାତ ହେବା, ଜନ୍ମିଥିବା, ଜନ୍ମିବା।

ଉପେକ୍ଷକ, ବି. (ଉପ-ଈକ୍ଷ-ଅକ ) ଉଦାସୀନ, ଉପେକ୍ଷାକାରୀ।

ଉପେକ୍ଷଣୀୟ, ବି. (ଉପେକ୍ଷା-ଅନୀୟ ) ତ୍ୟାଜ୍ୟ; ପ୍ରତିକାରାର୍ଥେ ଯାହାର ସମାଲୋଚନା ହେବ।

ଉପେକ୍ଷା, ବ. ସ୍ତ୍ରୀ. (ଉପ-ଈକ୍ଷ-ଅ) ଔଦାସୀନ୍ୟ, ଅନାଦର; ତ୍ୟାଗ; ଅସ୍ୱୀକାର।

ଉପେକ୍ଷିତ, ବି. ( ଉପ-ଈକ୍ଷ-ତ ) ଅନାଦୃତ; ଅସ୍ୱୀକୃତ; ତ୍ୟକ୍ତ।

ଉପେକ୍ଷିବା, କ୍ରି. ବ. (ଉପେକ୍ଷା ଶବ୍ଦଜ) ତ୍ୟାଗ କରିବା। ଯଥା— ୭
ମେଲୁଁ ଦୁଃଖହ ଦୁଃଖମାନ ଉପେକ୍ଷିଲେ ସେ।

ଉପେତ, ବି.(ଉପ-ଇ-ତ) ମିଳିତ; ପ୍ରାପ୍ତ; ଗତ।

ଉପେନ୍ଦ୍ର, ବ. ପୁଂ. ( ଉପ-ଇନ୍ଦ୍ର ) ବିଷ୍ଣୁ, ଇନ୍ଦ୍ରଲୋକର ଉପରେ ଅଛନ୍ତି ବୋଲି ବିଷ୍ଣୁଙ୍କୁ ଉପେନ୍ଦ୍ର ବୋଲାଯାଏ; ଇନ୍ଦ୍ରଙ୍କର କନିଷ୍ଠ ଭ୍ରାତା; ଓଡ଼ିଶାର ବିଖ୍ୟାତ କବି। ଯଥା—
ଏ ଘୋର ସଙ୍କଟ ଉପେନ୍ଦ୍ର ଭଞ୍ଜ,
କହଇ ଗାରବର ଉପେନ୍ଦ୍ର ଭଞ୍ଜ। ପ୍ରେ. ସୁ. ନି.

ଉପେନ୍ଦ୍ରବଜ୍ରା, ବ. ସ୍ତ୍ରୀ. ଏକାଦଶ ଅକ୍ଷର ଛନ୍ଦୋବିଶେଷ।

ଉପେୟ, ବି°. (ଉପ-ଇ-ଯ) ପ୍ରାପ୍ୟ; ଉପାୟସାଧ୍ୟ ।
ଉପେୟିବାନ୍, ବି°. (ଉପ-ଇ-ବସ୍) ଉପଗତ, ପ୍ରାପ୍ତ ।
ଉପୋଢ଼, ବି°. ( ଉପ-ବହ-ତ ) ବିବାହିତ; ଶ୍ରେଣୀବଦ୍ଧ; ନିକଟ ।
ଉପୋଦ, ବି. ସ୍ତ୍ରୀ. ପୂତିକା, ପୋଇ ଶାଗ ।
ଉପୋଦକା, ବି. ସ୍ତ୍ରୀ ( ଉପ-ଉଦକ-ଈ ) ପୋଇ ଶାଗ; ପୋଇ ଗଛ ।
ଉପୋଷ, ପୁଂ. } ବି. ( ଉପ-ବସ୍-ଅ, ଅନ )
ଉପୋଷଣ, ନ. } ଉପବାସ, ଅନଶନ ।
ଉପୋଷିତ, ବି°. ( ଉପ-ବସ୍-ତ ) ଅଭୁକ୍ତ, ଅନାହାରୀ ।
ଉପ୍ତ, ବି°. (ବପ୍-ତ) ଯାହା ବପନ କରି ହୋଇଅଛି; ନିକ୍ଷିପ୍ତ; ଯେଉଁ ସ୍ଥଳରେ ବୁଣା ହୋଇଥାଏ ।
ଉପ୍ତି, ବି. ସ୍ତ୍ରୀ. ( ବପ୍-ତି ) କ୍ଷୌରକର୍ମ; ଧାନ୍ୟାଦି କ୍ଷେପଣ; ବପନ, ବୁଣିବା ।
ଉବାର, ବି. (ଦେଶଜ) ନିଷେଧ; ଅଜଣା ।
ଉଭ, } ସର୍ବନାମ. (ଉଭ୍-ଅ, ଅୟ) ଦୁଇ;
ଉଭୟ, } ପରସ୍ପର ।
ଉଭଚର, (Amphibious) ବି°. (ଉଭ-ଚର) ଯେଉଁମାନେ ଜଳରେ ଓ ସ୍ଥଳରେ ବାସ କରନ୍ତି ।
ଉଭୟତ, ଅ°. (ଉଭୟ-ତ) ଦୁଇ ସ୍ଥାନରେ; ଦୁଇ ଦିଗରେ ।
ଉଭୟଥା, ଅ°. (ଉଭୟ-ଥା) ଦୁଇ ପ୍ରକାର ।
ଉଭା, ବି°. (ଦେଶଜ) ଠିଆ, ଛିଡ଼ା । ଯଥା—

> ଉଭାରେ ଉଭାରେ ପୁଂସ ବଳ ଅଭିମାନ,
> ବୋଇଲ ପାଶୁଁ ଯିବାକୁ ନ ବଳଇ ମନ । ଲ. ବ.

ଉଭାଇଯିବା, ଉଭେଇବା, ଉଭେଇଯିବା । କ୍ରି. ବି. ( ଦେଶଜ ) ଅନ୍ତର୍ହିତ ହେବା; ଅଦୃଶ୍ୟ ହେବାର । ଯଥା—

> ଉଭେଇଗଲେ ନନ୍ଦ କୋଳରେ,
> କୋଉ ଦେଖାଇ ହେଲେ କୋଉଣେ । ଦ୍ବ. ବ୍ର.

ଉମ୍, ଅ°. କୋପ; କ୍ରୋଧ; ପ୍ରତିଜ୍ଞା; ସ୍ୱୀକାର; ପ୍ରଶ୍ନ ।
ଉମର (ଯାବନିକ) ସମୟ, ବୟସ ପରିମାଣ ।
ଉମା, ବି. ସ୍ତ୍ରୀ. (ଉ-ମା) ପାର୍ବତୀ, ଦୁର୍ଗା । (ବେମକ୍) ହଳଦୀ; କୀର୍ତ୍ତି; ଶାନ୍ତି ।
ଉମାଚତୁର୍ଥୀ, ବି. ସ୍ତ୍ରୀ. ଜ୍ୟେଷ୍ଠ ଶୁକ୍ଳ ଚତୁର୍ଥୀ; ଉମାର ଜନ୍ମତିଥି ।
ଉମାଧବ, } ବି. ପୁଂ. (ଉମା-ଧବ, ପତି) ଶିବ,
ଉମାପତି, } ମହାଦେବ ।
ଉମ୍ବର, ବି. ପୁଂ. ( ଉତ୍-ବୃ-ଅ ) ଦେହଳି; ଦୁଆରବନ୍ଧର ଉପରକାଠ ।
ଉମ୍ବେଇ, ବି. (ଦେଶଜ) କଅଁଳ ରଖିବାର ମୃଣ୍ମୟ ପାତ୍ର, ହସନ୍ତୀ ।
ଉମେଦ୍‌ବାର, ବି°. (ଯାବନିକ) ପ୍ରତ୍ୟାଶାକାରୀ, ଆକାଙ୍କ୍ଷୀ, ଉପକାର ଇଚ୍ଛାରେ ଯେ ଅନ୍ୟର ଉପାସନା କରେ ।
ଉମେଶ, ବି. ପୁଂ. (ଉମା-ଈଶ) ଶିବ ।
ଉରଃ, ବି. ନ. ( ଋ-ଅସ୍ ) ବକ୍ଷଃସ୍ଥଳ, ହୃଦୟ । ବି°. ପ୍ରଧାନ; ଉତ୍ତମ ।
ଉରଃସୂତ୍ରିକା, ବି. ସ୍ତ୍ରୀ. ( ଉରସ୍-ସୂତ୍ର-କ ) ବକ୍ଷସ୍ଥଳଲମ୍ବୀ ମୁକ୍ତାରଚିତ ହାର ।
ଉରଗ, ଉରଙ୍ଗ, ଉରଙ୍ଗମ, ବି. ପୁଂ. ( ଉରସ୍-ଗମ-ଅ) ଭୁଜଗ, ସର୍ପ, ସାପ । ଯଥା—

> ଉରଗ କଣ୍ଠରେ ବେଷ୍ଟିତ ହେବାରେ,
> ସଣ୍ଢୀ ଦର୍ପେ ଉଗ୍ରକର । ସ. ବ.

ଉରଗଭୂଷଣ, ବି. ପୁଂ. ( ଉରଗ-ଭୂଷଣ ) ଫଣିଭୂଷଣ, ମହାଦେବ ।
ଉରଗରାଜ, ବି. ପୁଂ. (ଉରଗ-ରାଜା) ସର୍ପରାଜ, ବାସୁକି ।
ଉରଗସ୍ଥାନ, ବି. ନ. ( ଉରଗ-ସ୍ଥାନ ) ନାଗଲୋକ; ପାତାଳ ।
ଉରଗାଦ, ଉରଗାଶନ, ବି. ପୁଂ. (ଉରଗ-ଅଦ, ଅଶନ) ଗରୁଡ଼; ମୟୂର; ନେଉଳ ।
ଉରଗେନ୍ଦ୍ର, ବି. ପୁଂ. (ଉରଗ-ଇନ୍ଦ୍ର) ସର୍ପରାଜ ।

ଉରଜ, ବି. ( ଉରସ୍-ଜନ୍-ଅ ) ସ୍ତନ, କୁଚ । ଯଥା—

ଉରଜ ଭର୍‌କୁ ଚକ୍ରବାକ ସମ୍ଭ୍ରବ
କ ସ୍ୱପ୍ନ୍‌ ଶମ୍ଭ୍‌ ଉମ୍ଭ ଅମ୍ଭକୋଭକ ଯେ । ସ. ବ.

ଉରଣ, ଉରଭ୍ର, ବ. ପୁଂ. ସ୍ତ୍ରୀ. ( ଋ-ଅନ, ଉର-ଭ୍ରମ୍-ଅ, ଉ-ଲୋପ) ମେଷ, ମେଣ୍ଢା ।

ଉରଣାକ୍ଷ, ବ. ପୁଂ. (ଉରଣ-ଅକ୍ଷ) ବୃକ୍ଷବିଶେଷ, ଚକୁଣ୍ଡା ।

ଉରରୀ, ଉରୀ, ଉରୂରୀ, } ଅ.(ଋ=ବୃଣିବା,ରୀ,
ଉରରୀ, ଉରୀ, ଉରୂରୀ, } ରୂରୀ) ଅଙ୍ଗୀକାର; ପରିତ୍ୟାଗ;ବିସ୍ତାର ।

ଉରରୀକୃତ, ଉରୀକୃତ, ବି. ( ଉରରୀ, ଉରୀ-କୃତ) ପ୍ରସାରିତ; ବିସ୍ତାରିତ; ପରିତ୍ୟକ୍ତ ।

ଉରଶ୍ଛଦ, ପୁଂ. } ବ. (ଉରସ-ଛଦ, ତ୍ର, ତ୍ରାଣ)
ଉରସ୍ତ୍ର, ନ. } କବଚ, ବର୍ମ, ସାଞ୍ଜୁ ।
ଉରସ୍ତ୍ରାଣ, ନ. }

ଉରସି, ଅ. ସ୍ୱୀକାର ।

ଉରସିଜ, ବ. ପୁଂ. (ଉରସି-ଜ) ବକ୍ଷୋଜ, ସ୍ତନ । ଯଥା—

କମଳ କଳିକା ପଲ୍ଲବେ ଲଳିତ,
ଉରସିଜେ ଶୃଙ୍ଗ ହର କନ୍ଦ୍ରିତ । ନ. କେ.

ଉରସିଲ, ବି. (ଉରସ୍-ଇଲ) ଯାହାର ବକ୍ଷସ୍ଥଳ ପ୍ରଶସ୍ତ ।

ଉରସ୍ୟ, ବ. ପୁଂ. ( ଉରସ୍-ଯ ) ଔରସଜାତ ସନ୍ତାନ ।

ଉରସ୍ୱାନ, ବି. (ଉରସ୍-ବତ୍ ) ବିଶାଳବକ୍ଷଃ ।

ଉରୁ, ବି. ( ଊର୍ଣ୍ଣୁ-ଆଚ୍ଛାଦନ କରିବା=ଉ ) ବିଶାଳ, ମହତ୍ , ବଡ଼ । ଯଥା—

ଉରୁପଣ ଶିବ ଅପ୍ରମିତ ମିତ,
ଉଚ୍ଚବାଚ ହେବ ତ ବଗତ ସତ । ବ. ଚ.

ଉରୁକ୍ରମ, ବ. ପୁଂ. ( ଉରୁ-କ୍ରମ ) ଯେ ବଳି-ଯଜ୍ଞରେ ପଦଦ୍ୱାରା ଭୂମ୍ୟାଦି ଆକାଶ ପର୍ଯ୍ୟନ୍ତ ସର୍ବସ୍ଥାନ ବ୍ୟାପିଥିଲେ, ବାମନଦେବ । ଯଥା-

ଯେ ଉରୁକ୍ରମ ବୃତାକପି,
ଏମନ୍ତ ନାମ ନିତ୍ୟ ଜପି । ଭଗବତ ।

ଉରୁବୂକ, ଉରୁବୂକ, ବ. ପୁଂ. (ଉରୁ=ମହତ୍=ବୈ=ଶୁଷ୍କ କରିବା, ଉକ-ଉକ) ଏରଣ୍ଡ ବୃକ୍ଷ, ଯବଗଛ ।

ଉରୁଣସ୍ , ବି. ( ଉରୁ-ନସ୍ ) ଯାହାର ନାସିକା ଦୀର୍ଘ, ଦୀର୍ଘ ନାସିକାବିଶିଷ୍ଟ ।

ଉରୋଜ, ବ. ପୁଂ. ( ଉରସ୍-ଜନ୍-ଅ ) ସ୍ତନ; ଉରୋଭୂଷଣ; ହାର ।

ଉରୋଭୂଷଣ, ବ. ନ. ( ଉରସ୍-ଭୂଷଣ ) ବକ୍ଷଃ-ସ୍ଥଳର ଭୂଷଣ, ହାର ।

ଉରୋହସ୍ତ, ବ. ପୁଂ. (ଉରସ୍-ହସ୍ତ) ବାହୁଯୁଦ୍ଧ ।

ଊର୍ଣ୍ଣନାଭ, ବ. ପୁଂ. ( ଊର୍ଣ୍ଣା-ନାଭି ) ମାକଡ଼ସା, ବୁଢ଼ିଅଣୀ ।

ଊର୍ଣ୍ଣା, ବ. ସ୍ତ୍ରୀ. ( ଊର୍ଣ୍ଣ-ଅ ) ମେଷାଦିର ଲୋମ; ପଶୁଲୋମ; ସୂତ୍ର ।

ଉଦ୍ର, ବ. ପୁଂ. (ଉର୍ଦ-ର) ଓଧ, ଜୀବବିଶେଷ ।

ଉର୍ବ, ବ. ପୁଂ. (ଉରୁ-ଅ) ମୃଗବିଶେଷ ।

ଉର୍ବର, ଉର୍ବରା, ବି. (ଉରୁ-ଅ, ଆ) ଯହିଁରେ ସର୍ବପ୍ରକାର ଶସ୍ୟ ଜନ୍ମେ, ଯେ ଭୂମିର ଶସ୍ୟୋତ୍ପାଦିକା ଶକ୍ତି ଅଧିକ ।

ଉର୍ବଶୀ, ବ. ସ୍ତ୍ରୀ. ( ଉରୁ=ମହାଶୟ, ଯେ ନାରାୟଣଙ୍କର ଉରୁ ଭେଦ କରି ଜନ୍ମ ହୋଇ-ଥିଲା, ଅଥବା ଉରୁ=ମହତ୍-ବଶ=ବଶୀଭୂତ କରିବା-ଇ) ସ୍ୱର୍ଗବେଶ୍ୟାବିଶେଷ ।

ଉର୍ବାରୁ, ବ. ପୁଂ. (ଉରୁ-ଆରୁ) କାଙ୍କୁଡ଼ି ।

ଉର୍ବୀ, ବ. ସ୍ତ୍ରୀ. (ଉରୁ=ମହତ୍-ଈ) ପୃଥିବୀ ।

ଉର୍ବୀତଳ, ବ. ସ୍ତ୍ରୀ. ( ଉର୍ବୀ-ତଳ ) ପୃଥିବୀର ଉପରଭାଗ, ମହୀତଳ ।

ଉର୍ବୀଧର, ବ. ପୁଂ. (ଉର୍ବୀ-ଧର) ପର୍ବତ ।

ଉର୍ବୀଧବ, ବ. ପୁଂ. ( ଉର୍ବୀ-ଧବ ) ପୃଥିବୀପତି, ରାଜା ।

ଉର୍ବୀଭୃତ୍ , ବ. ପୁଂ. (ଉର୍ବୀ ଭୃ-୦) ପର୍ବତ ।

ଉର୍ବୀରୁହ, ବ. ପୁଂ. ( ଉର୍ବୀ-ରୁହ ) ମହୀରୁହ, ବୃକ୍ଷ ।

**ଉଲଙ୍ଗ**, ବିଂ. (ଉତ୍-ଲଗ୍-ଅ) ଲଙ୍ଗଳା, ବିବସ୍ତ୍ର; ଖୋଲା । ଯଥା—

କେବେ ଯମୁନାର ଶୋଭିଥାଉ କରେ, ସୁଦୃଶ୍ୟ ନଉକା,
କେବେ ସର୍ବ ହରେ ଫଳା, ସର୍ବୋପରେ ବସି ଉଲଙ୍ଗ ।
ଉଷା ।

**ଉଲଟ**, ବିଂ. (ଦେଶଜ) ବିପରୀତ । ଯଥା—

ଦଶା ଉଲଟିବ କମଳ ଫୁଟିବ ଯଦ୍ୟପି ପର୍ବତ ଶିଖରେ ।

**ଉଲଘୁଣା**, ବି. (ଦେଶଜ) ଉପୋଇବା ।

**ଉଲୁଥିବା**, କ୍ରି. ବି. ( ଦେଶଜ ) ବାୟୁରେ ଇତଃସ୍ତତ ବିକ୍ଷିପ୍ତ ହୋଇ ଦୋହଲିବାର (କେଶ ପ୍ରତି ସଦା ପ୍ରଯୋଜ୍ୟ) । ଯଥା—

ଫୁଲର ଫୁଲ ତ ବଣ, ଉଲୁର ଅଛ କେଶ
ବଳବୋର ଯିଉଣ, ଭଳ ତ ହେବଣି ବେଶ,
ହେତୁ ପଣ, ଜଣା ଅନୁରାଗୀ ।

**ଉଲୂକ**, ଉଲୂକ, ବିଂ. ପୁଂ.(ବଳ-ଉକ) ପେଚକ, ପେଚା; ଦେବରାଜ, ଇନ୍ଦ୍ର; ଶକୁନିପୁତ୍ର ।

**ଉଲୂଖଳ**, ବି. ନ. ( ଉଦୂଖଳ ଦେଖ, ଦ=ଲ ) ଉଦୂଖଳ,ଧାନ୍ୟାଦି କୁଟିବାର କାଷ୍ଠମୟ ପାତ୍ର, ଟିଙ୍କିଉଖ୍ରି ।

**ଉଲୂତ**, ବି. ପୁଂ. (ଉବ-ଲୂ-ତ) ଅଜଗର ସର୍ପ ।

**ଉଲୂପୀ**, ବି. ପୁଂ. ( ଉ=ଶିବ-ରୂପ-ଇନ୍ ଅଥବା ଉଦ୍-ଲୂପ୍-ଇନ୍)ଶିଶୁକ; ଶିଶୁମାର ସ୍ତ୍ରୀ; ନାଗକନ୍ୟା, ଅର୍ଜୁନପତ୍ନୀ । ଯଥା—

ଉଲୂପୀ ନାଗେନ୍ଦ୍ରନେମା ଜନ୍ମବୃତା ସ୍ରୋତେ
ଝାସିଣ, ପଶିଲେ ତହିଁ ଅର୍ଜୁନ ପାତାଳେ । ମହାଭାରତ ।

**ଉଲ୍ଲୁ**, ବି. ପୁଂ. (ଉରୁ-ଧ୍ୱନ୍ଥ, ର=ଲ) ମଙ୍ଗଳ-ସୂଚକ ଧ୍ୱନିବିଶେଷ, ହୁଳହୁଳି ।

**ଉଲ୍କା**, ବି. ସ୍ତ୍ରୀ. ( ଉଷ୍=ଦାହ କରିବା-କ, ଷ=ଲ) ଆକାଶରୁ ପତିତ ଅଗ୍ନିମୟ ପିଣ୍ଡ; ଅଗ୍ନିକଣା । ଯଥା—

ଉଲ୍କାବାରେ ଯେବେ ଭଜେ ଚୌଦିଗେ ଉଠ । ଉଷା ।

**ଉଲ୍କାମୁଖୀ**, ବି. ସ୍ତ୍ରୀ. ଶୃଗାଳୀବିଶେଷ; ଅଲେୟା ହେରଣ୍ଡା; କୋକଶିଆଳୀ । ବିଂ. କ୍ରୋଧ-ବଶତଃ ଯେଉଁ ସ୍ତ୍ରୀଲୋକର ମୁଖ ସର୍ବଦା ରକ୍ତବର୍ଣ୍ଣ ହୋଇଥାଏ ।

**ଉଲ୍ଲଙ୍ଘନ**, ବି. ନ. (ଉଦ୍-ଲଙ୍ଘ୍-ଅନ) ଅତିକ୍ରମ, ଲଙ୍ଘନ; ଡେଇଁବା; ବିରୁଦ୍ଧାଚରଣ ।

**ଉଲ୍ଲଙ୍ଘିତ**, ବିଂ. ( ଉଦ୍-ଲଙ୍ଘ୍-ତ ) ଲଙ୍ଘିତ, ଅତିକ୍ରାନ୍ତ ।

**ଉଲ୍ଲମ୍ଫନ**, ବି. ନ. ( ଉତ୍-ଲମ୍ଫ୍-ଅନ ) ଡେଇଁବା, କୁଦିବା ।

**ଉଲ୍ଲମ୍ଫନୀୟ**, ବିଂ. (ଉତ୍-ଲମ୍ଫ-ଅନୀୟ) ଉଲ୍ଲଙ୍ଘ-ନୀୟ, ଯାହା ଲମ୍ଫଦ୍ୱାରା ପାର ହେବାକୁ ହୁଏ ।

**ଉଲ୍ଲଳ**, ବିଂ. (ଉତ୍-ଲଲ୍-ଅ) ବହୁ ରୋମଯୁକ୍ତ, ରୋମଶ ।

**ଉଲ୍ଲଳିତ**, ବିଂ. ( ଉତ୍-ଲଲ୍-ତ ) ଚଳିତ; କମ୍ପମାନ; ଆନ୍ଦୋଳିତ; ତରଳିତ;ବ୍ୟାକୁଳିତ ।

**ଉଲ୍ଲସତ୍**, ବିଂ. (ଉତ୍-ଲସ୍-ଅତ୍) ଶୋଭମାନ, ପ୍ରଫୁଲ୍ଲ ।

**ଉଲ୍ଲସିତ**, ବିଂ. ( ଉତ୍-ଲସ୍-ତ ) ଆନନ୍ଦିତ; ଶୋଭିତ; ଉଜ୍ଜ୍ୱଳ; ସ୍ଫୁରିତ ।

**ଉଲ୍ଲାଘ**, ବିଂ. (ଉତ୍-ଲଘ୍-ଅ) କାର୍ଯ୍ୟଦକ୍ଷ; ରୋଗ-ମୁକ୍ତ; ଶୁଚି ।

**ଉଲ୍ଲାସ**, ବି. ପୁଂ. ( ଉତ୍-ଲସ୍-ଅ ) ଆନନ୍ଦ, ଆହ୍ଲାଦ; ପ୍ରକାଶ; ଉଜ୍ଜ୍ୱଳତା; ଗ୍ରନ୍ଥର ପରିଚ୍ଛେଦବିଶେଷ ।

**ଉଲ୍ଲାସୀ**, ବିଂ. (ଉତ୍-ଲସ୍-ଇନ) ଉଲ୍ଲାସଯୁକ୍ତ; ପ୍ରଭାସମ୍ପନ୍ନ; ସିନୀ-ସ୍ତ୍ରୀ ।

**ଉଲ୍ଲିଖିତ**, ବିଂ. (ଉତ୍-ଲିଖିତ) କଥିତ, ଯାହା ପୂର୍ବେ କୁହା ଯାଇଅଛି; ଚର୍ଚ୍ଚିତ; ନିର୍ଦ୍ଦିଷ୍ଟ; ଉପରଲିଖିତ ।

**ଉଲ୍ଲୁକ**, ବି. ପୁଂ. ବାନରବିଶେଷ, ନୀଳବର୍ଣ୍ଣ ମର୍କଟ ।

**ଉଲ୍ଲୁଣ୍ଠ**, ପୁଂ. } ବି.(ଉତ୍-ଲୁଣ୍ଠ୍-ଅ,ଅନ)ଓଲଟ-
**ଉଲ୍ଲୁଣ୍ଠନ**, ନ. } ପାଲଟ କରିବା; ଉପହାସ,ଥଟ୍ଟା ।

**ଉଲ୍ଲେଖ**, } ବି. (ଉତ୍-ଲିଖ-ଅ, ଅନ) ଖନନ;
**ଉଲ୍ଲେଖନ**, } ବମନ; କଥନ; ଗାର କାଟିବା; ଉଲ୍ଲେଖ ଅର୍ଥାଳଙ୍କାରବିଶେଷ ।

**ଉଲ୍ଲୋଚ**, ବି. ପୁଂ. (ଉତ୍-ଲୋଚ୍-ଅ) ଚନ୍ଦ୍ରାତପ, ଚାନ୍ଦୁଆ ।

ଉଲ୍ଲୋଳ, ବି. ( ଉତ୍-ଲେଳ୍-ଅ ) କଲ୍ଲୋଳ, ବୃହତ୍ ତରଙ୍ଗ । ଯଥା—

ଉଲ୍ଲୋଳ କଲ୍ଲୋଳ ଯହିଁ ହେଉ ବୃନ୍ଦ ହୁଳ
ବାରବୃନ୍ଦ, ସବେ ହେଲେ ସ୍ତବଧ ଦଶ୍ୱେ । ନ. ସା.

ଉଲ୍ବ, ବି. ନ. (ଉର୍-ବ, ର=ଲ) ଜରାୟୁ, ଗର୍ଭାଶୟ ।

ଉଲ୍ବଣ, ବିଂ. (ଉତ୍-ଲ୍ବୀ-ଅନ) ସ୍ପଷ୍ଟ ପ୍ରତୀୟମାନ, ପ୍ରବଳ, ଉତ୍କଟ, ବିଶଦ, ବ୍ୟାପ୍ତ, ବ୍ୟକ୍ତ, ପୁଷ୍ଟ ।

ଉଶତୀ, } ବି. ସ୍ତ୍ରୀ. ( ବଶ=ଅଭିଳାଷ କରିବା,
ଉଷତୀ, } ଉଷ୍=ଦଗ୍ଧ କରିବା-ଅତ-ଈ ) ଅମଙ୍ଗଳ ବାକ୍ୟ ।

ଉଶନାଃ, ବି. ପୁଂ. (ବଶ୍-ଅନସ୍) ଶୁକ୍ରାଚାର୍ଯ୍ୟ, ଅସୁରଗୁରୁ ।

ଉଶୀର, } ବିଂ ପୁଂ. ନ. (ବଶ୍-ଈର) ବେଣାର
ଉଷୀର, } ମୂଳ, ଗନ୍ଧତୃଣବିଶେଷର ମୂଳ । ଯଥା—

କେଥି କୁସୁମ ଉଶୀର ଚନ୍ଦନ ସୌରଭେ ପୂରି,
ପଠାଇ ପୋଡାଇ ଅଙ୍ଗେ ତ୍ରିତାପସ ସିନ୍ଧୁ ମାରୁତ । ଉଷା ।

ଜନ୍ମାନ୍ତୋକ୍ତ ଯାଚକ ବିଶେଷ ।

ଉଷ, ବି. ପୁଂ. (ଉଷ୍-ଅ) କାମୁକ; ପ୍ରଭାତ; କ୍ଷାରମୃତ୍ତିକା ।

ଉଷଣ, ବି. ନ. (ଉଷ୍-ଅନ) ମରିଚ, ପିପ୍ପଳୀମୂଳ ।

ଉଷଣା, ବି. ସ୍ତ୍ରୀ. (ଉଷ୍-ଅନ-ଆ) ପିପ୍ପଳୀ; ଶୁଣ୍ଠୀ ।

ଉଷପ, ବି. ପୁଂ. (ଉଷ-ପ) ସୂର୍ଯ୍ୟ; ଅଗ୍ନି ।

ଉଷର, ବି. ନ. କ୍ଷାରମୃତ୍ତିକା, ଲୁଣିମାଟି । ଯଥା—

ନ ଉଠେ ଗାର ସବେ ତୃଣ ଉଷରେ,
ବିକାର କାମ ତାପେ ସହ ଅନ୍ତରେ । ଚୂ. ସ୍ତ୍ର.

ଉଷର୍ବୁଧ, ବି. ପୁଂ. (ଉଷସ୍-ବୁଧ୍-ଅ) ଅଗ୍ନି ।

ଉଷସ୍, ବି. ନ. (ଉଷ-ଅସ୍) ପ୍ରତ୍ୟୂଷ, ପ୍ରଭାତ ।

ଉଷସୀ, ବି. ସ୍ତ୍ରୀ. (ଉଷ-ସୋ-ଅ-ଈ) ସନ୍ଧ୍ୟାକାଳ ।

ଉଷା, ବି. ସ୍ତ୍ରୀ. (ଉଷ-ଅ-ଆ) ଅନିରୁଦ୍ଧପତ୍ନୀ, ବାଣରାଜାର କନ୍ୟା; ପ୍ରଭାତ ।

ଉଷାକଳ, ବି. ପୁଂ. (ଉଷା-କଳ) କୁକ୍କୁଟ ।

ଉଷାପତି, ବି. ପୁଂ. ( ଉଷା-ପତି ) ଅନିରୁଦ୍ଧ; କାମଦେବଙ୍କର ପୁତ୍ର ।

ଉଷିତ, ବିଂ. (ଉଷ୍-ତ) ପର୍ଯ୍ୟୁଷିତ; ବାସୀ; ଦଗ୍ଧ; ତ୍ୱରିତ; ସ୍ଥିତ; ନିବସ୍ତ ।

ଉଷେଶ, ବି. ପୁଂ. (ଉଷା-ଈଶ) ଅନିରୁଦ୍ଧ ।

ଉଷ୍ଟ୍ର, ବି. ପୁଂ. ( ଉଷ୍-ଟ୍ର ) ଉଟ ବା ଓଟ, ଚତୁଷ୍ପଦ ଜନ୍ତୁବିଶେଷ ।

ଉଷ୍ଟ୍ରଗ୍ରୀବ, ବି. ପୁଂ. (ଉଷ୍ଟ୍ର-ଗ୍ରୀବା) ଭଗନ୍ଦର ରୋଗ ।

ଉଷ୍ଣ, ବି. ପୁଂ. (ଉଷ୍-ଣ) ଗ୍ରୀଷ୍ମକାଳ; ରୌଦ୍ର; ପଲାଣ୍ଡୁ । ବିଂ. ଗରମ, ଉତ୍ତପ୍ତ; ଦକ୍ଷ; ଅନଳସ; ତପ୍ତ । ଷ୍ଣା, ସ୍ତ୍ରୀ. ଯକ୍ଷ୍ମାରୋଗ; ସନ୍ତାପ; ପିତ୍ତ ।

ଉଷ୍ଣକ, ବିଂ. (ଉଷ୍ଣ-କ) ଅନଳସ; କ୍ଷିପ୍ରକାରୀ । ବି. ପୁଂ. ଜ୍ୱର ।

ଉଷ୍ଣକଟିବନ୍ଧ, (Torrid-Zone) କର୍କଟକ୍ରାନ୍ତି ଓ ମକରକ୍ରାନ୍ତିର ଅନ୍ତର୍ବର୍ତ୍ତୀ ଭୂଭାଗ ।

ଉଷ୍ଣନଦୀ, ବି. ସ୍ତ୍ରୀ. (ଉଷ୍ଣ-ନଦୀ) ବୈତରଣୀ ନଦୀ ।

ଉଷ୍ଣରଶ୍ମି, } ବି.ପୁଂ.(ଉଷ୍ଣ-ରଶ୍ମି, ଅଂଶୁ) ସୂର୍ଯ୍ୟ;
ଉଷ୍ଣାଂଶୁ, } ଯାହାର କିରଣ ଉଷ୍ଣ; ଅର୍କବୃକ୍ଷ ।

ଉଷ୍ଣବାରଣ, ବି. ପୁଂ. ନ. ( ଉଷ୍ଣ-ବାରଣ ) ଆତପତ୍ର, ଛତ୍ର, ଛତା ।

ଉଷ୍ଣବୀର୍ଯ୍ୟ, ବି. ପୁଂ. (ଉଷ୍ଣ-ବୀର୍ଯ୍ୟ) ଶିଶୁମାର; ତେଜସ୍ୱୀ ଦ୍ରବ୍ୟ ।

ଉଷ୍ଣୀଷ, ବି. ନ. ପୁଂ. (ଉଷ୍ଣ-ଈଷ) ପଗଡ଼ି, ଶିରୋବନ୍ଧନ, ଠେକା, ପାଗ, କିରୀଟ, ମୁକୁଟ, ଯଥା—

ଖସିଯାଉଛି କି ଯୋଦ୍ଧା ମସ୍ତକରୁ ଉଷ୍ଣୀଷ ଏମନ୍ତ କହେ ରେ ।
ସ. ବ.

ଉଷ୍ଣୋପଗମ, ବି. ପୁଂ. (ଉଷ୍ଣ-ଉପଗମ) ଗ୍ରୀଷ୍ମକାଳ ।

ଉଷ୍ମ, ଉଷ୍ମା, ବି. ପୁଂ. (ଉଷ୍-ମ, ମନ୍) ଉତ୍ତାପ; ଗ୍ରୀଷ୍ମକାଳ । ଯଥା—

ଉଷ୍ମ କୃଷ୍ଣମହାସୀ ଅଙ୍ଗ ଜାତ ଶୀତରୁ ବାରଇ ।

ଉଷ୍ମବର୍ଣ୍ଣ, ବ. ଶ, ଷ, ସ ଓ ହ ଏହି ବର୍ଣ୍ଣ ଚତୁଷ୍ଟୟ ।

ଉସତ, ବଂ. ( ଉତ୍କ୍ଷିପ୍ତ ଶବ୍ଦଜ ) ଅନାବୃତ, ଯଥା—

ତାହା ଦେଖି ହେଉଥାଇଁ ଉଷତ,
ମଣ୍ଡ ଗତବେ ହୋଇଥାଇଁ ମତ୍ତ । ଗୋ. ଘ.

ଉସୁନା, ବଂ. (ଉତ୍ସ୍ଵିନ୍ନଶବ୍ଦଜ) ସିଦ୍ଧ ( ତଣ୍ଡୁଳ ପ୍ରଭୃତି ପକ୍ଷରେ ।)

ଉସ୍ର, ବ. ପୁଂ. (ବସ୍-ର) ବୃଷ, ଷଣ୍ଢ; କିରଣ; ଆଲୋକ ।

ଉସ୍ରା, ବ. ସ୍ତ୍ରୀ. (ବସ୍-ର-ଆ) ଧେନୁ, ଗାଈ; ଲତାବିଶେଷ ।

ଉସ୍ୱାସ, ବଂ. (ଦେଶଜ) ଲଘୁ, ହାଲୁକା । ଯଥା—

ବଳେ ଇଛା ମନେ ହେବା :ଦଂସଅନ୍ତକ,
କରିବା ଉସ୍ୱାସ ମହାବଳ ଅନେକ । ଭ. କ.

ଉସ୍ୱେଇବା, କ୍ରି. ବ. ( ଦେଶଜ ) ତେଜିବା, ଉତ୍ତେଜିତ କରିବା, ଉତ୍ସାହିତ କରିବା ।

ଉହା, ବ. ( ଦେଶଜ ) ନାସାରୋଗବିଶେଷ; ଲୌହଘର୍ଷଣାର୍ଥ ଇସ୍ପାତ ନିର୍ମିତ ଯନ୍ତ୍ରବିଶେଷ ; କୁମ୍ଭାର ଚୁଲ୍ଲି ।

ଉହାଡ଼, ବ. (ଦେଶଜ) ଆବରଣ; ଅନ୍ତରାଳ । ଯଥା—

ଓଢଣା ଉହାଡ ମାରଇ ଚର୍ହି କେଶାନ୍ତ ବୃନ୍ତ ।

ଉହୁଁ, ଅ° ( ଦେଶଜ ) ନିଷେଧସୂଚକବାକ୍ୟ, ଯଥା—

ଉହୁଁ, ଉହୁଁ କର ଛଳେ ତାଃଙ୍କ କର୍ଣ୍ଣ ଯୁଗଳେ
ଅଦୋଚଟେ ହେଜି ପାରୁ ନାହିଁ । ଡ. ତ.

ଉହ୍ୟମାନ, ବଂ. (ବହ-ଆନ, ଯ, ମ ଆଗମ) ଅଲକ୍ଷ୍ୟମାଣ, ଯାହା ବହନ କରାଯାଇ ପାରେ ।

# ଊ

ଊ, ଷଷ୍ଠ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ । ବ. ପୁଂ. ଶିବ ; ଚନ୍ଦ୍ର । ବଂ. ରକ୍ଷକ । ଅ°. ଶୋକ ଦୁଃଖାଦ ସୂଚକ ସମ୍ବୋଧନ; ବାକ୍ୟାରମ୍ଭ; ରକ୍ଷା; ଦୟା ।

ଊଢ଼, ବଂ. (ବହ୍-ତ) ବିବାହିତ; ବହନୀୟ; ଧୃତ; ଅଙ୍ଗୀକୃତ ।

ଊଣା, ବଂ. (ଊନଶବ୍ଦଜ) ଅଳ୍ପ; କମ୍ । ଯଥା—

କରୁଣା ଊଣା କଣା ଗସ ରେ କବ ଛଇଲା । ସଙ୍ଗୀତ ।

ଊଣେଇଶ, ଊଣାଇଶ, ବଂ. (ଊନବିଂଶଶବ୍ଦଜ) ସଂଖ୍ୟାବିଶେଷ, ୧୯ ସଂଖ୍ୟା ।

ଊତ, ବଂ. (ବେ-ତ) ସ୍ୟୂତ, ବୁଣା ।

ଊଧଃ, ବ. ନ. (ବହ୍-ଅସ୍, ବହ୍=ଊଧ) ପଶୁସ୍ତନ, ପହ୍ନା ।

ଊଧସ୍ୟ, ବ. ନ. (ଊଧସ୍-ଯ) ଦୁଗ୍ଧ ।

ଊନ, ବଂ. (ଊନ୍-ଅ) ନ୍ୟୂନ; ହୀନ; କମ୍, ଅଳ୍ପ ।

ଊନବିଂଶତି, ବଂ. ସ୍ତ୍ରୀ. (ଊନ-ବିଂଶତି) ଊଣେଇଶ ।

ଊମ୍, ଅ°. ( ଅବ୍-ମନ୍ ) ଗର୍ବ; ନିନ୍ଦା; ପ୍ରଶ୍ନ; କ୍ରୋଧ ।

ଊରୁ, ବ. ପୁଂ. (ଊର୍ଣ୍ଣୁ-ଉ) ଜାନୁର ଉପରଭାଗ ।

ଊରୁଜ, ବ. ପୁଂ. (ଊରୁ-ଜ) ବୈଶ୍ୟ ।

ଊରୁପର୍ବା, ବ. ପୁଂ. ନ. (ଊରୁ-ପର୍ବନ୍) ଜାନୁ; ଆଣ୍ଠୁ ।

ଊରୁସ୍ତମ୍ଭା, ବ. ସ୍ତ୍ରୀ. (ଊରୁ-ସ୍ତମ୍ଭା) କଦଳୀବୃକ୍ଷ ।

ଊର୍ଜ୍ଜ, ବ. ପୁଂ. (ଊର୍ଜ୍ଜ-ଅ) କାର୍ତ୍ତିକ ମାସ; ସାମର୍ଥ୍ୟ; ଯତ୍ନ; ଉତ୍ସାହ ।

ଊର୍ଜ୍ଜଃ, ବ. ନ. (ଊର୍ଜ୍ଜ-ଅସ୍) ବଳ; ଉତ୍ସାହ; ତେଜଃ ।

ଊର୍ଜ୍ଜସ୍ୱଲ, } ବି. (ଊର୍ଜ୍ଜମ୍-ବଲ,ବିନ୍)ବଳବାନ୍;
ଊର୍ଜ୍ଜସ୍ୱିନ୍, } ତେଜସ୍ୱୀ । ବି. ନ. କାବ୍ୟାଲଙ୍କାର-ବିଶେଷ । ଯଥା—

ଭରତ କ ଚରଣତ ହେବ ଅବଶେଷେ
ଊର୍ଜ୍ଜସ୍ୱଲ-ଅର୍ଯ୍ୟଙ୍କର ଗୌରବସ୍ୱଗ୍ରଣେ । ମ. ଗା.

ଊର୍ଜ୍ଜିତ, ବି. (ଊର୍ଜ୍ଜ୍-ତ) ବଳଯୁକ୍ତ; ତେଜସ୍ୱୀ; ଉଦାର ।

ଊର୍ଣ୍ଣନାଭ, ବି. ପୁଂ. (ଊର୍ଣ୍ଣନାଭ ଦେଖ) ମାକଡ଼ସା, ବୁଢ଼ିଆଣୀ ।

ଊର୍ଣ୍ଣବନ, ବି. (ଊର୍ଣ୍ଣ-ବନର୍) ଊର୍ଣ୍ଣଯୁକ୍ତ, ମେଷଲୋମବିନିର୍ମିତ ।

ଊର୍ଣ୍ଣା, ବି. ସ୍ତ୍ରୀ. (ଊର୍ଣ୍ଣା ଦେଖ) ପଶମ ।

ଊର୍ଣ୍ଣାୟୁ, ବି. ପୁଂ. (ଊର୍ଣ୍ଣା-ଯୁ) ମେଷ ଲୋମର ଆସନ, କମ୍ବଳ; ମେଷ; ମାକଡ଼ସା; ଗନ୍ଧର୍ବ-ବିଶେଷ ।

ଊର୍ଦ୍ଧ୍ୱ, ବି. (ଉଦ୍-ହ୍ୱା-ବ) ଉଚ୍ଚ; ଉତ୍କୃଷ୍ଟ; ଉପରସ୍ଥ; ତ୍ୟକ୍ତ । ବି. ନ. ଉଚ୍ଚତା, ଊର୍ଦ୍ଧ୍ୱ-ଦେଶ ।

ଊର୍ଦ୍ଧ୍ୱକ, ବି. ପୁଂ. (ଊର୍ଦ୍ଧ୍ୱ-କ) ମୃଦଙ୍ଗ-ବିଶେଷ ।

ଊର୍ଦ୍ଧ୍ୱକର୍ଣ୍ଣୀ, ବି. ସ୍ତ୍ରୀ. (ଊର୍ଦ୍ଧ୍ୱ-କର୍ଣ୍ଣୀ) ମହା-ସତାବରୀ ଲତା ।

ଊର୍ଦ୍ଧ୍ୱକେଶ, ବି. ପୁଂ. (ଊର୍ଦ୍ଧ୍ୱ-କେଶ) ବ୍ରହ୍ମା ।

ଊର୍ଦ୍ଧ୍ୱଗ, ବି. (ଊର୍ଦ୍ଧ୍ୱ-ଗ) ଊର୍ଦ୍ଧ୍ୱଗାମୀ ।

ଊର୍ଦ୍ଧ୍ୱଗପୁର, ବି. ପୁଂ. (ଊର୍ଦ୍ଧ୍ୱଗ-ପୁର) ପୁରନାମକ ଅସୁରର ପୁର; ରାଜା ହରିଶ୍ଚନ୍ଦ୍ରର ପୁର ।

ଊର୍ଦ୍ଧ୍ୱଗାମୀ, ବି. (ଊର୍ଦ୍ଧ୍ୱ-ଗମିନ୍) ଯେ ଊର୍ଦ୍ଧ୍ୱକୁ ଗମନ କରେ ।

ଊର୍ଦ୍ଧ୍ୱତନ, ବି. (ଊର୍ଦ୍ଧ୍ୱ-ତନ) ଉପରସ୍ଥ ।

ଊର୍ଦ୍ଧ୍ୱପୁଣ୍ଡ୍ର, ବି. ପୁଂ. (ଊର୍ଦ୍ଧ୍ୱ-ପୁଣ୍ଡ୍ର) ଚନ୍ଦନାଦି-ଦ୍ୱାରା କପାଳେ କୃତ ଊର୍ଦ୍ଧ୍ୱମୁଖ ସରଳରେଖା ।

ଊର୍ଦ୍ଧ୍ୱରେତାଃ, ବି. ପୁଂ. (ଊର୍ଦ୍ଧ୍ୱ-ରେତସ୍) ଶିବ; ମୁନିବିଶେଷ; ଭୀଷ୍ମ; ଶୁକ୍ରସଂଯମକାରୀ; ଯୋଗୀ । ଯଥା—

ଲଭାନ୍ତୁ ଏବେ ଚଳଉ ନାଉ ଦେଖ,
ଗହଁ ଭଙ୍ଗିବେ ଊର୍ଦ୍ଧ୍ୱରେତା । ପ୍ରେ. ସୁ.

ଊର୍ଦ୍ଧ୍ୱଲିଙ୍ଗ, ବି. ପୁଂ. (ଊର୍ଦ୍ଧ୍ୱ-ଲିଙ୍ଗ) ଶିବ, ମହାଦେବ ।

ଊର୍ଦ୍ଧ୍ୱଲୋକ, ବି. ପୁଂ. (ଊର୍ଦ୍ଧ୍ୱ-ଲୋକ) ସ୍ୱର୍ଗ । ଯଥା—

ଊର୍ଦ୍ଧ୍ୱରେତାମୋହନ ମନ ମୋହନ୍ତ,
ଊର୍ଦ୍ଧ୍ୱଲୋକରେ ତାହା ସମ ନାହିଁନ୍ତି । ଚ. ଚ.

ଊର୍ଦ୍ଧ୍ୱବାହୁ, ବି. ପୁଂ. (ଊର୍ଦ୍ଧ୍ୱ-ବାହୁ) ଶୈବ-ବିଶେଷ, ଏମାନେ ଉପରକୁ ଏକ ବା ଦୁଇ ବାହୁ ଟେକିଥାନ୍ତି ।

ଊର୍ଦ୍ଧ୍ୱଶାୟୀ, ବି. (ଊର୍ଦ୍ଧ୍ୱ-ଶୀ-ଇନ୍) ଯେ ଊର୍ଦ୍ଧ୍ୱେ ଶୟନ କରେ, ବାଳକ । ବି. ପୁଂ. ମହାଦେବ ।

ଊର୍ଦ୍ଧ୍ୱଶ୍ୱାସ, ବି. ପୁଂ. (ଊର୍ଦ୍ଧ୍ୱ-ଶ୍ୱାସ) ଦୀର୍ଘଶ୍ୱାସ ।

ଊର୍ମି, ବି. ପୁଂ. ସ୍ତ୍ରୀ. (ଋ=ଗମନ କରିବା-ମି) ତରଙ୍ଗ, ଲହରୀ; ଅଙ୍ଗୁରୀୟ; ଦୁଃଖ, ବେଗ; ଉତ୍କଣ୍ଠା; ପୀଡ଼ା; ସଙ୍ଗ; ପ୍ରକାଶ; ଭ୍ରାନ୍ତି; ଅଶ୍ୱ-ଗତିବିଶେଷ; ବସ୍ତ୍ର ଉପରେ ଚୁନଟ୍ କାର୍ଯ୍ୟ, (ତରଙ୍ଗ ଅର୍ଥରେ) ଯଥା—

ନ ଛୁଇଁବ ଭବ-ଊର୍ମି ତରରେ ଯେସନ ।

ଊର୍ମିକା, ବି. ସ୍ତ୍ରୀ.(ଊର୍ମି-କ-ଆ)ତରଙ୍ଗ; ଅଙ୍ଗୁରୀୟ; ଭ୍ରମର ଧ୍ୱନି; ବସ୍ତ୍ରର କୁଞ୍ଚ ।

ଊର୍ମିମାଳୀ, ବି. ପୁଂ. (ଊର୍ମିମାଳା-ଇନ୍) ସମୁଦ୍ର; ସାଗର ।

ଊର୍ମିଳା, ବି. ସ୍ତ୍ରୀ. (ଋ-ମିଲ୍-ଅ) ଲକ୍ଷ୍ମଣଙ୍କର ସ୍ତ୍ରୀ ।

ଊର୍ବରା, ବି. (ଉର୍ବରା ଦେଖ) ଯେଉଁ ଭୂମିରେ ନାନାବିଧ ଶସ୍ୟ ଜନ୍ମଇ ।

ଊର୍ବଷ୍ଠୀବ, ବି. ନ. (ଊରୁ-ଅଷ୍ଠୀବତ୍) ଊରୁ ଓ ଜାନୁ ।

ଊଷର, ବି. (ଊଷ-ର) କ୍ଷାର ଭୂମି ।

ଊହ, ବି. ପୁଂ. (ଊହ୍-ଅ) ତର୍କ; ଅନୁମାନ; ଅଧ୍ୟାହାର ।

ଊହନୀ, ବି. ସ୍ତ୍ରୀ.(ବହ୍-ଅନ-ଈ)ସମ୍ମାର୍ଜନୀ, ଝାଡୁ ।

ଊହିତ, ବି°. ( ଊହ-ତ ) ତର୍କିତ; ଅନୁମିତ; ସମ୍ଭାବିତ; ଅଧ୍ୟାହୃତ ।

ଊହ୍ୟ, ବି°. (ଊହ୍-ଯ) ଅଧ୍ୟାହାର୍ଯ୍ୟ, ତର୍କଣୀୟ, ଅନୁମେୟ ।

—:o:—

# ଋ

ଋ, ସପ୍ତମ ସ୍ୱରବର୍ଣ୍ଣ; ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା । ବି. ପୁଂ. ଅଦିତି; ଦେବମାତା । ଅ°. ହାସ୍ୟ, ପରିହାସ; ନିନ୍ଦା; ବାକ୍ୟ; ପ୍ରାପ୍ତି ।

ଋକ୍, ବି. ସ୍ତ୍ରୀ. (ଋଚ୍-°) ଋଗ୍ୱେଦ; ବେଦମନ୍ତ୍ର; ଗାୟତ୍ରୀ ।

ଋକ୍ଥ, ବି. ନ. (ଋଚ୍-ଥ) ଦାୟ, ଧନ, ସ୍ଥାବର ଓ ଅସ୍ଥାବର ସମ୍ପତ୍ତି; ସ୍ୱର୍ଣ୍ଣ ।

ଋକ୍ଷ, ବି. ପୁଂ. (ଋଷ୍-ଅ) ଭଲ୍ଲୁକ; ଋକ୍ଷବାନ୍ ପର୍ବତ । ପୁଂ. ନ. ନକ୍ଷତ୍ର; ମେଷାଦିରାଶି । ଯଥା—

ଋକ୍ଷପନ୍ତ ସଙ୍ଗ, ଅଗ ନଗ ସେ ଚିଳ ଦେଶ ଧନ ।
ସ. ବ.

ବି°. ବଦ୍ଧ ।

ଋକ୍ଷଗନ୍ଧା, ବି. ସ୍ତ୍ରୀ. (ଋକ୍ଷ-ଗନ୍ଧ-ଆ) ଘାରଡାଙ୍କ ବୃକ୍ଷ ।

ଋକ୍ଷବନ୍ତ, ବି. ପୁଂ. (ଋକ୍ଷ-ବନ୍ତ) ଶମ୍ବରପୁରର ନଗରବିଶେଷ ।

ଋକ୍ଷବାନ୍, ବି. ପୁଂ. (ଋକ୍ଷ-ବତ୍) ଗଣ୍ଡୋୟାନା ଦେଶସ୍ଥିତ ପର୍ବତର ପ୍ରାଚୀନ ନାମ, ଏହି ପର୍ବତରୁ ତାପ୍ତୀ ଓ ନର୍ମଦା ନଦୀ ଉତ୍ପନ୍ନ ହୋଇଅଛି ।

ଋକ୍ଷର, ବି. ନ. ( ଋଷ୍-ସର ) ବାରିଧାରା । ପୁଂ. ଋତ୍ୱିକ୍ ।

ଋକ୍ଷରାଜ, ବି. ପୁଂ. ( ଋକ୍ଷ-ରାଜନ୍ ) ଚନ୍ଦ୍ର; ଜାମ୍ବୁବାନ୍ ।

ଋକ୍ଷେଶ, ବି. ପୁଂ. (ଋକ୍ଷ-ଈଶ) ଚନ୍ଦ୍ର; ଜାମ୍ବୁବାନ୍ ।

ଋକ୍‌ସଂହିତା, ବି. ସ୍ତ୍ରୀ. ଋଗ୍ୱେଦସଂହିତା ।

ଋଚୀକ, ବି. ପୁଂ. ସୂର୍ଯ୍ୟ; ଭୃଗୁବଂଶୀୟ ଋଷିବିଶେଷ; ଔର୍ବଙ୍କ ପୁତ୍ର, ଏ ଗାଧିତନୟା ସତ୍ୟବତୀଙ୍କୁ ବିବାହ କରିଥିଲେ ।

ଋଚ୍ଛରା, ବି. ସ୍ତ୍ରୀ. (ଋଚ୍ଛ-ଅର-ଆ) ବେଶ୍ୟା ।

ଋଜୀକ, ବି. ପୁଂ. (ଋଜ୍-ଈକ) ଇନ୍ଦ୍ର; ଧୂମ ।

ଋଜୁ, ବି°. (ଋଜ୍-ଉ) ସରଳ, ଅକୁଟିଳ, ସହଜ, କଠିଣ ନୁହେଁ; ଅକପଟ, ଶୁଦ୍ଧହୃଦୟ ।

ଋଜୁକାୟ, ବି. ପୁଂ. ( ଋଜୁ-କାୟ ) କଶ୍ୟପମୁନି । ବି°. ଅବକ୍ର ଶରୀର ।

ଋଜୁତା, ବି. ସ୍ତ୍ରୀ. ( ଋଜୁ-ତା ) ସରଳତା ; ଅକାଠିନ୍ୟ ।

ଋଜୁରେଖା, ବି. ସ୍ତ୍ରୀ. ସରଳରେଖା ।

ଋଜୁରୋହିତ, ବି. ନ. (ଋଜୁ-ରୋହିତ) ସରଳ ଇନ୍ଦ୍ରଧନୁ ।

ଋଜ୍ୱୀ, ବି. ସ୍ତ୍ରୀ. (ଋଜୁ-ଈ) ଗ୍ରହମାନଙ୍କର ଗତିବିଶେଷ ।

ଋଣ, ବି. ପୁଂ. ନ. (ଋ-ତ) କର୍ଜ; ଜଳ; ଦୁର୍ଗ; ଫେଡିବା ଠିକ "—" ।

ଋଣଗ୍ରସ୍ତ, ବି°. (ଋଣ-ଗ୍ରସ୍ତ) ଋଣମଗ୍ନ, ଅଧମର୍ଣ୍ଣ, ଯେ ଅନେକ ଋଣ କରିଅଛି ।

ଋଣଦାୟକ, ବି°. ( ଋଣ-ଦାୟକ ) ଉତ୍ତମର୍ଣ୍ଣ, ଋଣଦାତା, ମହାଜନ ।

ଋଣଲେଖ୍ୟ, ବି. ନ. (ଋଣ-ଲେଖ୍ୟ) ଋଣଗ୍ରହଣ ସୂଚକ ବ୍ୟବହାରୋପଯୋଗୀ ପତ୍ର, ତମସୁକ ।

ଋଣୀ, ବି°. ( ଋଣ-ଇନ୍ ) ଅଧମର୍ଣ୍ଣ, ଋଣଗ୍ରସ୍ତ, ଖାତକ ।

ଋତ, ବି. ନ. (ଋ-ତ) ସତ୍ୟ; ଜଳ; ପରବ୍ରହ୍ମ । ବି°. ଦୀପ୍ତ; ପୂଜିତ; ଯଥାର୍ଥ; ପୀଡ଼ିତ ; ଗତ । ବି. ପୁଂ. ଧର୍ମପୁତ୍ର, ଦକ୍ଷକନ୍ୟା ଗର୍ଭଜାତ; ଦେବବିଶେଷ ।

ଋତଧାମା, ବ. ପୁଂ. (ଋତ-ଧାମନ୍) ଯାହାର ବାସସ୍ଥାନ ଦୀପ୍ତିମୟ, ବିଷ୍ଣୁ; ପରମେଶ୍ୱର; ତ୍ରୟୋଦଶ ମନ୍ୱନ୍ତରର ମନୁ ।

ଋତଧ୍ୱଜ, ବ. ପୁଂ. ଶତ୍ରୁଜିତଙ୍କ ପୁତ୍ର ; ଏକାଦଶ-ରୁଦ୍ରଙ୍କ ମଧ୍ୟରେ ଏକ ଜଣ ।

ଋତପର୍ଣ୍ଣ, ବ. ପୁଂ. ସୂର୍ଯ୍ୟବଂଶୀୟ ରାଜାବିଶେଷ, ଅଯୁତାଶ୍ୱଙ୍କ ପୁତ୍ର ।

ଋତସଦ୍, ବ. ପୁଂ. (ଋତ-ସଦ୍-୦) ଅଗ୍ନି । ବିଂ. ଯଜ୍ଞାଧିଷ୍ଠାତା ।

ଋତସଦନ, ବ. ନ. (ଋତ-ସଦ୍-ଅନ) ଯଜ୍ଞାର୍ଥ ଉପବେଶନ ସ୍ଥାନ ।

ଋତପତି, ବ. ପୁଂ. (ଋତ-ପତି) ଯଜ୍ଞପତି, ଯଜ୍ଞ-କର୍ତ୍ତା ।

ଋତି, ବ. ସ୍ତ୍ରୀ. (ଋ-ତି) ସୌଭାଗ୍ୟ; ପଥ; ଗତି; ଗମନ; ନିନ୍ଦା; ସ୍ପର୍ଦ୍ଧା; ବର୍ଦ୍ଧନ; ଘୃଣା ।

ଋତିସ୍କର, ବିଂ. (ଋତି-କୃ-ଅ) ଶୁଭଜନକ ।

ଋତୁ, ବ. ପୁଂ. (ଋ-ତୁ) ହିମ, ଶିଶିର, ବସନ୍ତ, ଗ୍ରୀଷ୍ମ, ବର୍ଷା, ଶରତ୍ ଏହି ଛ କାଳ; ସ୍ତ୍ରୀରଜଃ; ଦୀପ୍ତି ।

ଋତୁକାଳ, ବ. ପୁଂ. (ଋତୁ-କାଳ) ନାରୀଜାତିର ପୁଷ୍ପଦର୍ଶନର ଯୋଗ୍ୟ ସମୟ ।

ଋତୁପତି, ବ. ପୁଂ. (ଋତୁ-ପତି) ବସନ୍ତ ସମୟ ।

ଋତୁମତୀ, ବିଂ. ( ଋତୁ-ମତ୍-ଈ ) ରଜସ୍ୱଲା, ପୁଷ୍ପବତୀ ।

ଋତୁରାଜ, ବ. ପୁଂ. (ଋତୁ-ରାଜା) ବସନ୍ତକାଳ ।

ଋତୁସଂହାର, ବ. ପୁଂ. (ଋତୁ-ସଂ-ହୃ-ଅ) କାଳି-ଦାସ ପ୍ରଣୀତ କାବ୍ୟବିଶେଷ ।

ଋତୁସ୍ତୋମ, ବ. ପୁଂ. ଏକାହସାଧ୍ୟ ଯଜ୍ଞବିଶେଷ ।

ଋତୁସ୍ନାତା, ବ. ସ୍ତ୍ରୀ. ( ଋତୁ-ସ୍ନାତା ) ଯେ ନାରୀ ଋତୁକାଳର ଚତୁର୍ଥ ଦିନରେ ସ୍ନାନ କରିଥାଏ ।

ଋତୁସ୍ନାନ, ବ. ନ. ରଜସ୍ୱଲା ସ୍ତ୍ରୀର ଚତୁର୍ଥ ଦିବସରେ ସ୍ନାନ କରି ଶୁଚି ହେବା ।

ଋତେ, ଅ. (ଋତ୍-ଏ) ବ୍ୟତିରେକେ, ବିନା ।

ଋତ୍ୱିକ୍, ବ. ପୁଂ. ( ଋତୁ-ଯଜ୍-୦ ) ଋତୁଯାଜୀ, ଋତୁଯାଜକ; ଯଜ୍ଞରେ ମୁଖ୍ୟ ପୁରୋହିତ ଚାରି ଜଣ, ହୋତା, ଅଧ୍ୱର୍ଯ୍ୟୁ, ବ୍ରହ୍ମା ଓ ଉଦ୍ଗାତା ।

ଋଦ୍ଧ, ବିଂ. ( ଋଧ୍-ତ ) ସମୃଦ୍ଧ; ପ୍ରଚୁର; ସମ୍ପନ୍ନ, ସମୃଦ୍ଧିଯୁକ୍ତ । ବ. ନ. ପକ୍ୱମର୍ଦ୍ଦିତ ଧାନ୍ୟ; ସିଦ୍ଧାନ୍ତ । ପୁଂ. ବିଷ୍ଣୁ ।

ଋଦ୍ଧି, ବ. ସ୍ତ୍ରୀ. (ଋଧ୍-ତି) ସମୃଦ୍ଧି; ସମ୍ପତ୍ତି; ମାତୃକା-ବିଶେଷ; ଲକ୍ଷ୍ମୀ; ପାର୍ବତୀ; ସିଦ୍ଧି, ଭାଙ୍ଗ ।

ଋଭବ, ବ. ପୁଂ. (ଋଭୁ-ଅ) ଦେବପୁତ୍ର । ଯଥା—

> ଋଭବ ସେ କି ମନୁଷ୍ୟ କେଉଁ ଦେଶୀ,
> ଜନମ କେଉଁ ଘରକୁଳେ ।

ଋଭୁ, ବ. ପୁଂ. ( ଋ-ଭୂ-ଉ ) ଦେବତା, ମୁନି-ବିଶେଷ । ବିଂ. ମେଧାବୀ ।

ଋଭୁକ୍ଷ, ବ. ପୁଂ. (ଋଭୁ-କ୍ଷି-ଅ) ଇନ୍ଦ୍ର; ସ୍ୱର୍ଗ; ବଜ୍ର ।

ଋଭୁକ୍ଷୀ, ବ. ପୁଂ. (ଋଭୁକ୍ଷ=ସ୍ୱର୍ଗ ବା ବଜ୍ର-ଇନ୍) ଦେବରାଜ, ଇନ୍ଦ୍ର ।

ଋଷଭ, ବ. ପୁଂ. (ଋଷ୍-ଅଭ) ବୃଷ; ମୁନିବିଶେଷ; ରାଶିବିଶେଷ; କୌଣସି ଶବ୍ଦର ପରେ ଥିଲେ "ଶ୍ରେଷ୍ଠ" ଏହି ଅର୍ଥ ବୁଝାଏ, ଯଥା— ଦେବର୍ଷଭ; ଋଷଭ ନାମକ ପର୍ବତବିଶେଷ; ବୃଷ ଶବ୍ଦ ପର ଶବ୍ଦ; ଔଷଧବିଶେଷ; କର୍ଣ୍ଣକୁହର; କୁମ୍ଭୀର ପୁଚ୍ଛ । ଭୀ, ସ୍ତ୍ରୀ. ଶୃଙ୍ଖଳା ସ୍ତ୍ରୀ; ବିଧବା ।

ଋଷଭକୂଟ, ବ. ପୁଂ. ହେମକୂଟ ପର୍ବତ ।

ଋଷଭଦ୍ୱୀପ, ବ. ପୁଂ. ଶ୍ୱେତଦ୍ୱୀପ, ଏହି ଦ୍ୱୀପରେ କ୍ରୌଞ୍ଚ ନାମକ ପର୍ବତ ଅଛି, କାର୍ତ୍ତିକେୟ ଏହି ପର୍ବତକୁ ବିଦାରଣ କରିଥିଲେ ।

ଋଷଭଧ୍ୱଜ, ବ. ପୁଂ. (ଋଷଭ-ଧ୍ୱଜା) ଶିବ, ବୃଷଭ-ବାହନ ।

ଋଷି, ବ. ପୁଂ. (ଋଷ୍-ଇ) ଶାସ୍ତ୍ରପ୍ରଣେତା ; ସାଧୁ ; ମନ୍ତ୍ରଦ୍ରଷ୍ଟା; ବେଦାଂଶବିଶେଷ ; ମୁନି ; ସଂସାର-ତ୍ୟାଗୀ । ଯଥା—

> ପଲ୍ୟଙ୍କ ଥଙ୍କରୁ ଉଠୁଛ ଝଲକ ଏମନ୍ତ ଚନ୍ଦ୍ରବଦନ,
> ଋଷି ଋଷିବେ ସଂସାର କରିବାକୁ ଯୋଗେ ହେଲେ ନେତ୍ରପଥ
> ଭୁଲିବେ, ସେ ଚନ୍ଦ୍ର କାମକନ୍ଦର । ଲ. ବ.

**ଋଷିକୁଲ୍ୟା**, ବ. ସ୍ତ୍ରୀ. ( ଋଷି-କୁଲ୍ୟା ) ଋଷିମାନଙ୍କ କୃତ୍ରିମ ନଦୀ; କୃତ୍ରିମ ସରୋବର; ନଦୀବିଶେଷ, ଏ ନଦୀ ମହେନ୍ଦ୍ର ପର୍ବତରୁ ଉତ୍ପନ୍ନ ହୋଇ ଗଞ୍ଜାମ ନିକଟରେ ସମୁଦ୍ରରେ ପତିତ ହୋଇ-ଅଛି ।

**ଋଷିପ୍ରୋକ୍ତା**, ବ. ସ୍ତ୍ରୀ. ( ଋଷି-ପ୍ରୋକ୍ତା ) ମାଷପର୍ଣ୍ଣୀ ବୃକ୍ଷ ।

**ଋଷିଲୋକ**, ବ. ପୁଂ. (ଋଷି-ଲୋକ) ଋଷିମାନଙ୍କର ଭୋଗ୍ୟ ଲୋକ, ଏହି ଲୋକ ଶନିଲୋକର ଉପରେ ଏବଂ ଧ୍ରୁବଲୋକର ନିମ୍ନରେ ଅବସ୍ଥିତ ।

**ଋଷ୍ଟ**, ବ. ପୁଂ. (ଋଷ୍-ତ) ଅଶୁଭ; ଶ୍ୱେତବିନ୍ଦୁ-ଚିହ୍ନିତ ହରିଣ । ବିଂ. ଅଶୁଭଦାୟକ ।

**ଋଷ୍ଟି**, ବ. ସ୍ତ୍ରୀ. (ଋଷ୍-ତି) ଗ୍ରହଦୋଷ; ଅଶୁଭ; ଦ୍ୱିଧାର ଖଡ୍ଗ ।

**ଋଷ୍ୟ**, ବ. ପୁଂ. (ଋଷ୍-ଯ) ଶ୍ୱେତବିନ୍ଦୁ-ଚିହ୍ନିତ ହରିଣ ।

**ଋଷ୍ୟମୂକ**, ବ. ପୁଂ. (ଋଷ୍ୟ-ମୂକ) ଦକ୍ଷିଣଦେଶୀୟ ପର୍ବତ, ଯେଉଁଠାରେ ରାମଚନ୍ଦ୍ର ସୁଗ୍ରୀବଙ୍କ ସହିତ କିଛିକାଳ ବାସ କରିଥିଲେ ।

**ଋଷ୍ୟଶୃଙ୍ଗ**, ବ. ପୁଂ. (ଋଷ୍ୟ-ଶୃଙ୍ଗ) ମୁନିବିଶେଷ; ବିଭାଣ୍ଡକ ମୁନିଙ୍କ ପୁତ୍ର, ଏ ଇଚ୍ଛା କଲେ ମେଘ ବର୍ଷେ । ଯଥା—

> ବରଷା କରିବ ଋଷ୍ୟଶୃଙ୍ଗ ଆଗମନେ,
> ବ୍ରହ୍ମଜ୍ଞାନ ଦେବ ଯେନ ଯୋଗୀନ୍ଦ୍ର ସମାନେ । ବୈ. ବ.

—o—

### ୠ

**ୠ**, ଅଷ୍ଟମ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା । ବ. ପୁଂ. ଶିବ; ଦୈତ୍ୟ; ସ୍ୱର୍ଗ; ବାକ୍ୟାରମ୍ଭ । ସ୍ତ୍ରୀ. ଦନ୍ତ; ଅଦନ୍ତ; ଦନୁ; ଗତି; ରକ୍ଷା; ମାତା; ସ୍ମୃତି । ଅଂ. ଭୟ; ନିନ୍ଦା ।

—o—

### ଌ

**ଌ**, ନବମ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଦନ୍ତ । ବ. ସ୍ତ୍ରୀ. ପୃଥିବୀ; ଅଦନ୍ତ; ନବମୀ; ଦେବମାତା । ପୁଂ. ପର୍ବତ; ଶ୍ରୀଧର; ରୁଦ୍ର; ବିଘ୍ନେଶ୍ୱର ।

—o—

### ୡ

**ୡ**, ଦଶମ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଦନ୍ତ । ବ. ସ୍ତ୍ରୀ. ଦେବନାରୀ ; ଦୈତ୍ୟମାତା । ପୁଂ. ଶିବ ।

—o—

### ଏ

**ଏ**, ଏକାଦଶ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣସ୍ଥାନ କଣ୍ଠ ଓ ତାଳୁ । ବ. ପୁଂ. ବିଷ୍ଣୁ । ସ୍ତ୍ରୀ. ପୃଥିବୀ । ଅଂ. ସ୍ମୃତି, ସ୍ମରଣ; ସମ୍ବୋଧନ, ଆହ୍ୱାନ; ଦୟା; ଆମନ୍ତ୍ରଣ; ଅସୂୟା ।

**ଏକ**, ବିଂ. ( ଇ=ଗମନକରି-କ ) ଏକାକୀ, କେବଳ, ଅଦ୍ୱିତୀୟ; ପ୍ରଧାନ; ସମାନ; ଅନ୍ୟ; ଅନ୍ୟତମ; ଶ୍ରେଷ୍ଠ; ପ୍ରଥମ; ଏକ ସଂଖ୍ୟାବିଶିଷ୍ଟ । ବ. ନ. ଏକ ସଂଖ୍ୟା (୧) । ଯଥା—

> ଏକ ଏବ ସୁହୃଦ୍ଧର୍ମୋ ନିଧନେଽପ୍ୟନୁଯାତି ଯଃ । ହି. ଉ.

**ଏକକ**, ବିଂ. (ଏକ-କ) ଏକାକୀ; କେବଳ; ଅଦ୍ୱିତୀୟ; ଏକଠାରୁ ନଅ ପର୍ଯ୍ୟନ୍ତ ପ୍ରତ୍ୟେକ ଅଙ୍କକୁ ଏକକ ବୋଲାଯାଏ ।

**ଏକକାଳୀନ**, ବିଂ. (ଏକ-କାଳୀନ) ସମକାଳୀନ; ସମସାମୟିକ ।

ଏକକୁଣ୍ଡଳ, ବି. ପୁଂ. (ଏକ-କୁଣ୍ଡଳ) ବଳରାମ; କୁବେର ।

ଏକଗୁଁୟା, ବିଂ. (ପ୍ରାକୃତଜ) (ଏକଗୁମାନ ଶବ୍ଦଜ) ଜିଦ୍‌ଦାର, ଝଙ୍କୀ, ଯେ ବ୍ୟକ୍ତି ଆପଣା କଥା ରକ୍ଷା କରିବାକୁ ଯୁକ୍ତି ତର୍କ ମାନେ ନାହିଁ, ଅବାଧ ।

ଏକଘରିଆ, ବିଂ. (ପ୍ରାକୃତଜ) ଜାତିଭ୍ରଷ୍ଟ, ସମାଜଚ୍ୟୁତ, ଯାହାର ଘର ସମାଜ ମଧ୍ୟରେ ଗଣନୀୟ ନୁହେ ।

ଏକଚକ୍ର, ବି. ପୁଂ. (ଏକ-ଚକ୍ର) ସୂର୍ଯ୍ୟରଥାଦି, ଯାହାର ଏକ ଚକ୍ର ।

ଏକଚକ୍ରା, ବି. ସ୍ତ୍ରୀ. ନଗରୀବିଶେଷ; ବକାସୁରକୁ ବଧ କରିବା ନିମିତ୍ତ ପାଣ୍ଡବମାନେ ଯେଉଁ ନଗରରେ ବାସ କରିଥିଲେ, ସେହି ନଗର ନାମ ଏକଚକ୍ରା ।

ଏକଚର, ବିଂ. (ଏକ-ଚର-ଅ) ଏକାକୀ । ବି. ପୁଂ. ଗଣ୍ଡାରନାମକ ଜନ୍ତୁ ।

ଏକଚୁଟିଆ, ବିଂ. (ଦେଶଜ) ଏକାୟତ୍ତ, ଏକାଧୀନ ।

ଏକଚୂର୍ଣ୍ଣୀ, ବି. ପୁଂ. ମୁନିବିଶେଷ, ଏ ତୈତ୍ତିରୀୟ ଯଜୁର୍ବେଦର ଖଣ୍ଡିଏ ଟୀକା ରଚନା କରିଥିଲେ ।

ଏକଜଟା, ବି. ସ୍ତ୍ରୀ. (ଏକ-ଜଟା) ଦେବୀବିଶେଷ, ଉଗ୍ରତାରା ମୂର୍ତ୍ତି ।

ଏକଜାତୀୟ, ବିଂ. (ଏକ-ଜାତୀୟ) ତୁଲ୍ୟପ୍ରକାର, ତୁଲ୍ୟରୂପ ।

ଏକତଃ, ଅଂ. (ଏକ-ତସ୍) ଏକ ପକ୍ଷରେ, ଏକଆଡ଼େ, ଏକ ଦିଗରେ, ଏକ ପାର୍ଶ୍ୱରେ ।

ଏକତମ, ବିଂ. (ଏକ-ତମ) ଅନେକ ମଧ୍ୟରେ ଏକ ।

ଏକତର, ବିଂ. (ଏକ-ତର) ଦୁଇଟା ମଧ୍ୟରେ ଏକ ।

ଏକତରଫ, (ଯାବନିକ) ଏକ ପାର୍ଶ୍ୱ, ଏକ ପକ୍ଷ ।

ଏକତା, ବି. ସ୍ତ୍ରୀ. (ଏକ-ତା) ଏକତ୍ୱ, ଐକ୍ୟ; ଅଭେଦ; ସାମ୍ୟ; ମୁକ୍ତିବିଶେଷ ।

ଏକତାନ, ବିଂ. (ଏକ-ତାନ) ଏକାଗ୍ର; ଏକ ବିଷୟାସକ୍ତ । ବି. ପୁଂ. ଏକଯୋଗ ସ୍ୱର; ଲୟ ।

ଏକତାରା, ବି. ପୁଂ. (ଏକତନ୍ତ୍ରୀ ଶବ୍ଦଜ) ବୀଣାଜାତୀୟ ବାଦ୍ୟଯନ୍ତ୍ରବିଶେଷ ।

ଏକତାଳ, ବି. ପୁଂ. (ଏକ-ତାଳ) ସମାନ ତାଳ, ସମନ୍ୱିତ ଲୟ; ଅବିଚ୍ଛିନ୍ନ ସ୍ୱର; ଅବିଚ୍ଛିନ୍ନ ନୃତ୍ୟଗୀତାଦି । ଲୀ, ସ୍ତ୍ରୀ. ଗାନବିଶେଷ, ଯେଉଁ ଗାନରେ ପ୍ରତି ପଦରେ ଗୋଟିଏ ମାତ୍ର ତାଳ ଦିଆଯାଏ; ଏକସ୍ୱରଯୁକ୍ତ ଯନ୍ତ୍ରବିଶେଷ ।

ଏକତ୍ର, ଅଂ. (ଏକ-ତ୍ର) ଏକ ସ୍ଥାନରେ; ଏକ ବିଷୟରେ; ଏକାଠି ।

ଏକତ୍ରିଂଶ, ଏକତ୍ରିଂଶତ୍, ବିଂ. (ଏକ-ତ୍ରିଂଶତ୍) ୩୧ ସଂଖ୍ୟା, ଏକାଧିକ ତିରିଶ ।

ଏକତ୍ୱ, ବି. ନ. (ଏକ-ତ୍ୱ) ଐକ୍ୟ, ଅଭେଦ; ସାମ୍ୟ; ମୁକ୍ତିବିଶେଷ ।

ଏକଦଂଷ୍ଟ୍ର, ଏକଦନ୍ତ, ବି. ପୁଂ. (ଏକ-ଦଂଷ୍ଟ୍ର, ଦନ୍ତ) ଲମ୍ବୋଦର, ଗଣେଶ; ଅଭେଦ; ସାଦୃଶ୍ୟ ।

ଏକଦା, ଅଂ. (ଏକ-ଦା) ଏକ ସମୟରେ, ଏକ କାଳରେ, ଯୁଗପତ୍ ।

ଏକଦୃକ୍, ବି. ପୁଂ. (ଏକ-ଦୃଶ୍-୦) କାକ; ଶିବ । ବିଂ. କଣା; ସମଦର୍ଶୀ ।

ଏକଦେବ, ବି. ପୁଂ. (ଏକ-ଦେବ) ପ୍ରଧାନଦେବ, ପରମେଶ୍ୱର ।

ଏକଦେଶ, ବି. ପୁଂ. (ଏକ-ଦେଶ) ଏକାଂଶ; ଅବୟବ ।

ଏକଦେହ, ବି. ପୁଂ. (ଏକ-ଦେହ) ବୁଧଗ୍ରହ । ବିଂ, ଅଭିନ୍ନ ଶରୀର, ଏକାତ୍ମା ।

ଏକଧା, ଅଂ. (ଏକ-ଧା) ଏକ ପ୍ରକାର ।

ଏକପକ୍ଷ, ବିଂ. (ଏକ-ପକ୍ଷ) ସହାୟ, ସପକ୍ଷ ।

ଏକପତ୍ନୀ, ବି. ସ୍ତ୍ରୀ. (ଏକ-ପତି, ନ ଆଗମ) ପତିବ୍ରତା, ସତୀ, ସାଧ୍ୱୀ; ପ୍ରଧାନଭାର୍ଯ୍ୟା; ସପତ୍ନୀ ।

ଏକପତ୍ରୋପୃତ୍ତିକ, ବିଂ. ବୀଜ ଅଙ୍କୁରିତ ହେଲାବେଳେ ଯେଉଁ ବୃକ୍ଷର ଗୋଟିଏ ମାତ୍ର ପତ୍ର ବାହାର ହୁଏ । ଯଥା—ନଡିଆ, କଦଳୀ, ଖର୍ଜୁର, ତୃଣ, ତାଳ ଇତ୍ୟାଦି ବୃକ୍ଷ ।

ଏକପଦ, ବି. ନ. ( ଏକ-ପଦ ) ତତ୍କ୍ଷଣାତ୍ ; ଅକସ୍ମାତ୍ । ବିଂ. ଏକଗୋଡିଆ, ଯାହାର ଗୋଟିଏ ଗୋଡ଼ ।

ଏକପଦିଆ, ବି. (ଏକପଦ ଶବ୍ଦଜ) ନାନାପ୍ରକାର ମିଶ୍ରିତ କାର୍ଯ୍ୟକୁ ଶ୍ରେଣୀବଦ୍ଧ କରି ଯେଉଁ କାଗଜରେ ଲେଖାଯାଏ । ବିଂ. ଶ୍ରେଣୀବଦ୍ଧ ।

ଏକପଦୀ, ବି. ସ୍ତ୍ରୀ. ( ଏକ-ପଦ-ଈ ) ପଥ, ରାସ୍ତା, ବାଟ ।

ଏକପିଙ୍ଗ, ଏକପିଙ୍ଗଳ, ବି. ପୁଂ. ( ଏକ-ପିଙ୍ଗ, ପିଙ୍ଗଳ) କୁବେର, ଯକ୍ଷ ।

ଏକପିଣ୍ଡ, ବି. ପୁଂ.(ଏକ-ପିଣ୍ଡ) ସପିଣ୍ଡ;ଏକଦେହ ।

ଏକମତାବଲମ୍ବୀ, ବିଂ. (ଏକ-ମତ-ଅବ-ଲମ୍ବ-ଇନ୍) ଏକ ପରାମର୍ଶ,ଏକମତ, ଏକବାକ୍ୟ ।

ଏକମନାଃ, ବିଂ. (ଏକ-ମନସ୍ ) ଏକଚିତ୍ତ ।

ଏକଲ, ବିଂ. ( ଏକ-ଲ ) ଏକାକୀ, ଅସହାୟ, ଭାଷାରେ ଏକଲା କହନ୍ତି ।

ଏକଲବ୍ୟ, ବି. ପୁଂ. ନିଷାଦରାଜ ହିରଣ୍ୟଧନୁର ପୁତ୍ର । ଏହି ଏକଲବ୍ୟ ଅସ୍ତ୍ରବିଦ୍ୟା ଶିକ୍ଷାର୍ଥ ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ଯାଇଥିଲା । ସେ ତାହାକୁ ଶିଷ୍ୟ ନ କରିବାରୁ ଦୁଃଖିତ ହୋଇ ବନକୁ ଫେରି ଯାଇ କାଷ୍ଠମୟ ଦ୍ରୋଣ ନିର୍ମାଣ କରି ଦୃଢ଼ତର ଅଧ୍ୟବସାୟ ସହକାରେ ତାଙ୍କର ଉପାସନାଦ୍ୱାରା ଧନୁର୍ବିଦ୍ୟାରେ ପାରଦର୍ଶୀ ହେଲା । ପରେ ଦ୍ରୋଣାଚାର୍ଯ୍ୟ କୁରୁ ପାଣ୍ଡବଙ୍କ ସହିତ ସେ ସ୍ଥାନକୁ ଯାଇ ତାହାର ଅଦ୍ଭୁତ ପ୍ରକାର ଧନୁର୍ବିଦ୍ୟା ଶିକ୍ଷା ଦେଖି ଛଳକ୍ରମେ ଗୁରୁଦକ୍ଷିଣାସ୍ୱରୂପ ତାହାର ଦକ୍ଷିଣ ହସ୍ତର ଅଙ୍ଗୁଷ୍ଠକୁ ଛେଦନ କରାଇ ନେଇଥିଲେ ।

ଏକବଚନ,ବି.ନ. (ଏକ-ବଚନ) ବ୍ୟାକରଣୋକ୍ତ ଏକତ୍ୱ ସଂଖ୍ୟାବାଚକ ।

ଏକବାକ୍ୟ, ବି. ନ. ଏକ କଥା, ଏକ ମତ ।

ଏକବିଂଶ, ବିଂ. ୨୧ ସଂଖ୍ୟା ।

ଏକଶଫ, ବି. ପୁଂ. (ଏକ-ଶଫ) ଏକ ଖୁରାବିଶିଷ୍ଟ ଜନ୍ତୁ, ଯେପରି ଘୋଡ଼ା, ଗଧ, ଅଶ୍ୱତର, ଇତ୍ୟାଦି ।

ଏକଶୃଙ୍ଗ, ବି. ପୁଂ.(ଏକ-ଶୃଙ୍ଗ) ବିଷ୍ଣୁ ; ଏକ ଶୃଙ୍ଗ-ଯୁକ୍ତ ଜନ୍ତୁ, ଯଥା—ଗଣ୍ଡାର; ପିତୃଗଣବିଶେଷ ।

ଏକଶେଷ, ବି. ପୁଂ. ( ଏକ-ଶେଷ ) ଶେଷସୀମା; ଉତ୍କର୍ଷ; ଦ୍ୱନ୍ଦସମାସର ପ୍ରକାରଭେଦ ।

ଏକଷଠୀ, ବି. ସ୍ତ୍ରୀ.(ଏକଷଷ୍ଟି ଶବ୍ଦଜ) ୬୧ସଂଖ୍ୟା ।

ଏକସର୍ଗ, ବିଂ. ( ଏକ=ଏକ ବିଷୟରେ-ସର୍ଗ=ନିଷ୍ଠସ୍ୟ ) ଏକାଗ୍ରଚିତ୍ତ ।

ଏକସୂତ୍ର, ବି. ପୁଂ. (ଏକ-ସୂତ୍ର) ଡମରୁ ବାଦ୍ୟ ।

ଏକସ୍ତରି, ବିଂ. (ଏକ-ସତୁରି, ଏକସପ୍ତତି ଶବ୍ଦଜ) ୭୧ ସଂଖ୍ୟା ।

ଏକହାୟନୀ, ବି. ସ୍ତ୍ରୀ. ( ଏକ-ହାୟନ୍-ଈ ) ଏକ ବର୍ଷ ବୟସ୍କା ଗାଈ, ଏକ ବର୍ଷର ବାଛୁରୀ ।

ଏକା, ବିଂ. (ଏକାକୀ ଶବ୍ଦଜ) ଏକାକୀ; ଅସହାୟ; ଅଦ୍ୱିତୀୟ; କେବଳ । ବି. ସ୍ତ୍ରୀ. ଦୁର୍ଗା ।(ଏକାକୀ ଅର୍ଥରେ) ଯଥା—

> ଯୁଝିବାକୁ ହେବ ଏକା ଏ ସମରେ,
> ପଡ଼ିବୁ ସହାୟ ଥିଲେ ହରବରେ । ନ. କେ.

ଏକାକାର, ବିଂ. ( ଏକ-ଆକାର ) ଏକ ସମାନ, ତୁଲ୍ୟାବୟବ । ଯଥା—

> ସବେ ହୋଇବେ ଏକାକାର,
> ନ ଥିବ ବେଦର ବିଚାର । ଭାଗବତ ।

ଏକାକୀ, ବିଂ. ( ଏକ-ଆକିନ୍ ) ଏକକ, ଏକଲା, ଅସହାୟ, ସହାୟରହିତ ।

ଏକାକ୍ଷ, ବି.ପୁଂ.(ଏକ-ଅକ୍ଷ)କାକ,ଶ୍ରୀରାମ ପିତୃସତ୍ୟ ପ୍ରତିପାଳନାର୍ଥ ବନକୁ ଗମନ କରି ଚିତ୍ରକୂଟ ପର୍ବତରେ ଅବସ୍ଥିତ କରିବା ସମୟରେ ଜୟନ୍ତ ନାମକ କାକ ସୀତାଙ୍କ ଓଷ୍ଠରେ ଚଞ୍ଚୁର ଆଘାତ କରିଥିଲା । ଏହିହେତୁ ରାମଚନ୍ଦ୍ର ତାହାର ବଧ ନିମିତ୍ତ ଶରାସନରେ ଇଷିକାସ୍ତ୍ର ସଂଯୋଗ କରିବାରୁ ସେହି କାକ ପ୍ରାଣଭୟରେ ତାହାଙ୍କର ଶରଣାପନ୍ନ ହେଲା । ଦୟାମୟ ରାମ ସେହି ଅମୋଘ ଅସ୍ତ୍ରଦ୍ୱାରା ଉପାୟ ଇଚ୍ଛାନୁସାରେ ତାହାର ଏକ ଚକ୍ଷୁ ନଷ୍ଟ କଲେ; ସେହିଦିନରୁ କାକ ଜାତି ଏକାକ୍ଷ ହୋଇଅଛନ୍ତି । ବିଂ. କାଣ ।

ଏକାଗ୍ର, ଏକାଗ୍ର୍ୟ, ବିଂ. (ଏକ-ଅଗ୍ର, ଯ) ଏକମନା ଏକ ବିଷୟରେ ଆସକ୍ତ ।

ଏକାଗ୍ରଚିତ୍ତ, ବିଂ. (ଏକାଗ୍ର-ଚିତ୍ତ) କେବଳ ଏକ ବିଷୟରେ ଯାହାର ଚିତ୍ତ ଅଛି, ଅନନ୍ୟମନା, ଅନନ୍ୟହୃଦୟ ।

ଏକାଗ୍ରତା, ବି. ସ୍ତ୍ରୀ. (ଏକ-ଅଗ୍ର-ତା) ଏକ ବିଷୟରେ ଆସକ୍ତି ।

ଏକାଗ୍ନି ବି. ପୁଂ. ଅସ୍ତ୍ରବିଶେଷ; ପାର୍ଥଙ୍କୁ ବିନାଶ କରିବା ନିମିତ୍ତ ମହାବୀର କର୍ଣ୍ଣ ଏହି ଅସ୍ତ୍ର ଅତି ଯତ୍ନରେ ରଖିଥିଲେ, କିନ୍ତୁ ଦୁର୍ଯ୍ୟୋଧନଙ୍କ ଅନୁରୋଧରେ ଘଟୋତ୍କଚଙ୍କ ଉପରକୁ ନିକ୍ଷେପ କରିଥିଲେ ।

ଏକାଙ୍ଗ, ବି. ପୁଂ. (ଏକ-ଅଙ୍ଗ) ବୁଧଗ୍ରହ; ଗନ୍ଧଦ୍ରବ୍ୟବିଶେଷ, ଚନ୍ଦନ; ଉତ୍ତମାଙ୍ଗ, ମସ୍ତକ ।

ଏକାଣ୍ଡ, ବି. ପୁଂ. (ଏକ-ଅଣ୍ଡ) ଅଶ୍ୱ ।

ଏକାତ୍ମା, ବିଂ.(ଏକ-ଆତ୍ମା) ଅଭିନ୍ନ ଦେହ, ଏକପ୍ରାଣ ।

ଏକାଦଶ, ବିଂ. (ଏକ-ଦଶନ୍) ଏଗାର । ୧୧ ସଂଖ୍ୟା ।

ଏକାଦଶୀ, ବି. ସ୍ତ୍ରୀ. (ଏକ-ଦଶନ୍-ଈ) ତିଥିବିଶେଷ; ହରିବାସର । ଯେଉଁ ସମୟରେ ଚନ୍ଦ୍ରମଣ୍ଡଳର ଏକାଦଶ କଳା ସୂର୍ଯ୍ୟମଣ୍ଡଳରୁ ବହିର୍ଗମନ କରିବାରୁ ଜ୍ୟୋତିର୍ମୟୀ ହୁଅନ୍ତି, ସେହି ସମୟରେ ଶୁକ୍ଳା ଏକାଦଶୀ ଏବଂ ଯେଉଁ ସମୟରେ ଚନ୍ଦ୍ରମଣ୍ଡଳର ଏକାଦଶ କଳା ସୂର୍ଯ୍ୟମଣ୍ଡଳରେ ପ୍ରବେଶ ହେତୁ ଜ୍ୟୋତିଃ ପ୍ରକାଶ କରିବାକୁ ନ ପାରନ୍ତି, ସେହି ସମୟରେ କୃଷ୍ଣ ଏକାଦଶୀ ହୁଏ ।

ଏକାଦିକ୍ରମ, ବିଂ. (ଏକ-ଆଦି-କ୍ରମ) ଆନୁପୂର୍ବିକ, ଅନୁକ୍ରମ ।

ଏକାନ୍ତ, ବିଂ. (ଏକ-ଅନ୍ତ) ଅତ୍ୟନ୍ତ; ଅବଧାରିତ; ନିର୍ଜନ । ଯଥା—

> ଏକେ ତ ଏକାନ୍ତ ହୃଦେ ଚନ୍ଦ୍ର ତରୁଣୀ,
> ତେଣୁ ଯାହା ସେତୁଥାର ଫୁଲଧନୁପାଣି । ସ. ବ.

ଏକାନ୍ତର, ବିଂ. (ଏକ-ଅନ୍ତର) ଗୋଟିକର ପରେ ଯେ ଥାଏ, ମଧ୍ୟରେ ଏକ ବ୍ୟବଧାନ ଦ୍ୱାରା ପରିସ୍ଥିତ ।

ଏକାନ୍ନ, ବି. ନ. (ଏକ-ଅନ୍ନ) ଏକପାକ, ଏକାଗ୍ରେ ଖେଇ, ଏକଭାତ । ବିଂ. ଏକାନ୍ନଭୋକ୍ତା, ସହଭୋଜୀ, ସଂସୃଷ୍ଟ ।

ଏକାନ୍ନବର୍ତ୍ତୀ, ବିଂ. (ଏକାନ୍ନ-ବୃତ-ଇନ୍) ଯେଉଁମାନେ ଏକ ଭାତରେ ଥାନ୍ତି ଅର୍ଥାତ୍ ଏକ ପାକରେ ଖାନ୍ତି ।

ଏକାମ୍ରକାନନ, ବି. ନ. (ଏକ-ଆମ୍ର-କାନନ) ଭୁବନେଶ୍ୱର ତୀର୍ଥ । ଯଥା—

> ଧନ୍ୟ ସେ ଭୁବନଈଶ୍ୱର ହେମଚିନ୍ତିବାସିନୀ,
> ଏକାମ୍ରକାନନ ଦେବତା ବନସ୍ପୃଷ୍ଠଶୋଭିନୀ । ଚ. ଘ.

ଏକାସ୍ପନ, ବିଂ. (ଏକ-ଅସ୍ପନ) ଏକାଗ୍ର, ଏକବିଷୟାସକ୍ତ ।

ଏକାର, ବି. ପୁଂ. (ଏ-କାର) 'ଏ' ଅକ୍ଷର ।

ଏକାର୍ଥ, ବିଂ. (ଏକ-ଅର୍ଥ) ଯାହାର ଅର୍ଥ ଏକ ।

ଏକାବନ, ବିଂ. ୫୧ ସଂଖ୍ୟା ।

ଏକାବଳୀ, ବି. ସ୍ତ୍ରୀ. (ଏକ-ଆବଳୀ) ଏକସରି ହାର; ଅର୍ଥାଲଙ୍କାରବିଶେଷ; ଏକାଦଶାକ୍ଷର ଛନ୍ଦୋବିଶେଷ ।

ଏକାବ୍ଦା, ବି. (ଏକ-ଅବ୍ଦ) ଏକବର୍ଷବୟସ୍କା ଗାଈ ।

ଏକାହ, ବି. ପୁଂ.(ଏକ-ଅହନ୍) ଏକଦିନ, ଏକଦିନକାଳ ।

ଏକାହାର, ବି. ପୁଂ. (ଏକ-ଆହାର) ଏକଦିନରେ ଥରେ ମାତ୍ର ଭୋଜନ । ବିଂ. ଯେ ଏକଦିନରେ ଥରେ ମାତ୍ର ଭୋଜନ କରଇ ।

ଏକୀକରଣ, ବି. ନ. (ଏକ-ଈ (ଚ୍ୱି)-କୃ-ଅନ) ଏକତ୍ର ସଂସ୍ଥାପନ, ବହୁ ଦ୍ରବ୍ୟ ଏକତ୍ର କରି ରଖିବା ।

ଏକୋଦକ, ବିଂ. (ଏକ-ଉଦକ) ସମାନୋଦକ, ଊର୍ଦ୍ଧ୍ୱତନ ସପ୍ତମ ପୁରୁଷ ପର୍ଯ୍ୟନ୍ତ ଗୋତ୍ରଜ ପୁରୁଷ ।

ଏକୋଦର, ବି. ପୁଂ. (ଏକ-ଉଦର) ସହୋଦର, ଭ୍ରାତା । ନ. ସମାନ ଉଦର ।

ଏକ୍ଷଣି, ଅଂ. (ଦେଶଜ; ଏ-କ୍ଷଣ=ସମୟ) ଏହି-କ୍ଷଣି, ବର୍ତ୍ତମାନ ।

ଏଜନ, ଚଂ. ( ଯାବନିକ ) ସର୍ବନାମ "ଇଦମ୍" ଶବ୍ଦର ଅର୍ଥ ଯାହା, ଏଜନ ଶବ୍ଦର ଅର୍ଥ ତାହା, ଏହି, ଏହା ।

ଏଜନ, ବି. ନ. ( ଏଜ=କମ୍ପିତ କରିବା-ଅନ ) କମ୍ପନ; ଉତ୍ତେଜନ ।

ଏଠା, ବି. (ସ୍ଥା ଧାତୁଜ) ଏ ସ୍ଥାନ, ଏହି ସ୍ଥାନ ।

ଏଡ଼, ବିଂ. (ଆ-ଈଡ଼=ସ୍ତୁତି କରିବା-ଅ) ବଧିର, କାଲ । ବି. ପୁଂ. ମେଷ ।

ଏଡ଼କ, ବି. ପୁଂ. ସ୍ତ୍ରୀ. (ଇଲ୍-ଅକ, ଲ=ଡ) ମେଣ୍ଢା; ବନ୍ୟ ଛାଗ ।

ଏଡିବା, କ୍ରି. ବି. (ଦେଶଜ) ଲଙ୍ଘନ କରିବା, ଅତିକ୍ରମ କରିବା ।

ଏତେ, ଅଂ. ଆକାର ପରିମାପକ, ଉଚିତ ବୋଧକ ।

ଏଣ, ଏଣକ, } ବି. ପୁଂ. (ଇ-ଣ, ଅକ) ହରିଣ, ମୃଗ ।

ଏଣିକି, ଅଂ. ( ଏତଦ୍ ଶବ୍ଦଜ ) ଏ ଆଡକୁ, ଏବକୁ । ଯଥା—

ଅନା ଅନା ଏଣିକି ଥରେ, ତେଣିକି କେଣିକି ଯାଉ ରୁ ହରେ ।

ଏଣୀ, ବି. ସ୍ତ୍ରୀ. (ଇ-ଣ-ଈ) ହରିଣୀ । ଯଥା—

ପଞ୍ଚ ଶରସରେ ଭ୍ରମରମଣ୍ଡଳ
ବାଣାଧ୍ୱନି ଶୁଣି ଏଣୀନୟନା । ବ୍ର. ବ.

ଏଣେ, ଅଂ. (ପ୍ରାକୃତିକ) ଏଆଡେ ।

ଏଣେତେଣେ, ଅଂ. (ପ୍ରାକୃତିକ) (ଏତଦ୍ ଓ ତଦ୍ ଶବ୍ଦଜ ) ଇତସ୍ତତଃ, ଏଆଡେ ସେଆଡେ ।

ଏତଦ୍, ସର୍ବ. (ଇ-ତଦ୍) ଏହା, ଏହି ।

ଏତନ, ବି. ପୁଂ. (ଆ-ଇ-ତନ) ନିଃଶ୍ୱାସ ।

ଏତଲା, (ଯାବନିକ) ସମ୍ବାଦ ଦେବାର, ଜଣାଇବାର ।

ଏତାଦୃଶ, ବିଂ. ( ଏତଦ୍-ଦୃଶ୍-ଅ ) ଏପ୍ରକାର, ଏପରି । ଯଥା—

ଇଦୃଶ ସ୍ଥଳରେ ମାଦୃଶ ବ୍ୟକ୍ତିର ଏତାଦୃଶ ଘଟନା ହେବାର ସମ୍ଭାବନା କାହିଁ । ଶକୁନ୍ତଳା ।

ଏତାବତ୍, ବିଂ. (ଏତଦ୍-ବତ୍) ଏତତ୍ ପରିମାଣ, ଏତେ, ଏହିମାତ୍ର, ଏହାହିଁ କେବଳ, ଏତିକି ।

ଏତେ, ଅଂ. ପରିମାଣ ବୋଧକ ।

ଏଥର, ଅଂ (ଦେଶଜ) ଏଣିକି; ଏବେ ।

ଏଧଃ, ନ. } ବି. ( ଏଧ୍-ଅସ୍, ଅ) ଇନ୍ଧନ,
ଏଧ, ପୁଂ. } କାଷ୍ଠ; ତୃଣ ।

ଏଧିତ, ବିଂ. (ଏଧ୍-ତ) ବର୍ଦ୍ଧିତ; ବିସ୍ତାରିତ; ପ୍ରଜ୍ୱଳିତ ।

ଏନଃ, ବି. ନ. (ଇ-ଅସ୍, ନ ଆଗମ) ପାପ; ଅପରାଧ; ନିନ୍ଦା ।

ଏମନ୍ତ, ବିଂ. (ଏ-ମତ) ଏହିପରି, ଏହିପ୍ରକାର ।

ଏମାରତ୍, (ଯାବନିକ) ଅଟ୍ଟାଳିକା, ପକ୍କା ।

ଏରକା, ବି. ସ୍ତ୍ରୀ. ( ଇ-ରକ୍-ଆ ) ଗ୍ରନ୍ଥିହୀନ ତୃଣବିଶେଷ; ଏଥିରେ ଯାଦବମାନେ ମଦମତ୍ତ ହୋଇ ହଣାହଣି ହୋଇଥିଲେ ।

ଏରଣ୍ଡ, ବି. ପୁଂ. (ଆ-ଈର୍-ଅଣ୍ଡ) ଗବଗଛ । ଯଥା—

୧ । ବଗୁଡ଼ ବଣେ ଓଷ୍ଠାରେ ପ୍ରଚଣ୍ଡ ମତ୍ତ ହସ୍ତୀରେ
ଏରଣ୍ଡ ଦଣ୍ଡ ପଡ଼ିଲା ପଦ ଘାତରେ । ବୈ. ବ.

ଏରୁଣ୍ଡି, ବି. (ଦେଶଜ) ଦ୍ୱାରବନ୍ଧ । ଯଥା—

ଗୁରୁଣ୍ଡି ଗୁରୁଣ୍ଡି ଏରୁଣ୍ଡି ଉପରେ ଶ୍ରୀକୃଷ୍ଣ ବସନ୍ତି ଯାଇଁ,
ମାତାଙ୍କ ଅଡ଼କୁ ଅନାଇ ଅନାଇ ମାଟି ଦେଉଥାନ୍ତି ଖାଇ ।

ଏର୍ବାରୁ, ବି. ପୁଂ. କର୍କଟୀବିଶେଷ, ଫୁଟି ।

ଏଲା, ବି. ସ୍ତ୍ରୀ. (ଇଲ୍-ଆ) ଅଳାଇଚ ଫଳ ବା ଲତା ।

ଏଲାପତ୍ର, ବି. ପୁଂ. ପ୍ରଧାନ ସର୍ପବିଶେଷ; ଏକଦ୍ରୁଗର୍ଭସମ୍ଭୂତ କଶ୍ୟପନନ୍ଦନ ।

ଏଲୀକା, ବି. ସ୍ତ୍ରୀ. ଛୋଟ ଅଳାଇଚ, ଗୁଜରାଟି ଅଳାଇଚ ।

ଏଲୁକ, ବି. ନ. ଗନ୍ଧଦ୍ରବ୍ୟ ବିଶେଷ ।

ଏବ, ଅଂ. (ଇ-ବ) ଅବଧାରଣ; ନିୟମ; ସାଦୃଶ୍ୟ; ପରିସଂଖ୍ୟା; ନିଶ୍ଚୟ ବାକ୍ୟପୂରଣ । ଯଥା— ତଥୈବ ।

ଏବଂ, ଅଂ. ( ଇ-ବମ୍ ) ଏହି ପ୍ରକାର; ସାମ୍ୟ; ସ୍ୱୀକାର; ନିଶ୍ଚୟ; ପ୍ରଶ୍ନ; ସମ୍ମତି; ସାଦୃଶ୍ୟ ।

ଏବମ୍ବିଧ, ବିଂ. (ଏବମ୍-ବିଧ) ଏହି ପ୍ରକାର ।

ଏବମ୍ଭୂତ, ବିଂ. (ଏବମ୍-ଭୂତ) ଏହି ପ୍ରକାର, ଈଦୃଶ ।

ଏବେ, ଅଂ. ବର୍ତ୍ତମାନ । ଯଥା—

ଏବେ ଏଣିକି ଘର ପଥର କଲେଣି ।

ଏଷଣ, ବି. ପୁଂ. (ଆ-ଇଷ୍-ଅନ) ଲୌହମୟ ବାଣ ।

ଏଷଣା, ବି. ନ. ସ୍ତ୍ରୀ. (ଆ-ଇଷ୍-ଅନ-ଆ) ଅନ୍ୱେଷଣ; ଇଚ୍ଛା; ସ୍ୱର୍ଣ୍ଣକାରାଦିର କତ୍ତି ।

ଏଷଣୀ, ବି. ସ୍ତ୍ରୀ. (ଏଷଣ-ଈ) କତ୍ତି; ଅସ୍ତ୍ରବିଶେଷ ।

ଏସନ, ବିଂ. (ପ୍ରାକୃତିକ) (ଏତତ୍ ଶବ୍ଦଜ) ଏପ୍ରକାର, ଏପରି ।

ଏହା, ଏହି, ଏ, ସର୍ବ. (ଏତତ୍, ଇଦମ୍, ଓ ଅଦସ୍ ଶବ୍ଦର ରୂପାନ୍ତର) । ଯଥା—

ଏ ରଣ ଜିଣିଲେ ହେବୁ ତୁହି ଧନ୍ୟ,
ଏହି ଦେବୀ ହେବେ ସଦା ସୁପ୍ରସନ୍ନ,
ଭବେ ଏହାଙ୍କର ନାମ ମହାନନ୍ଦା,
ଉତ୍କଳ ଭୁବନେ ଏହି ବସ୍ତୁପଦା । ନ. ଦେ.

——o——

## ଐ

ଐ, ଦ୍ୱାଦଶ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ ଓ ତାଳୁ । ବି. ପୁଂ. ଶିବ । ଅଂ. ସ୍ମରଣ; ସମ୍ବୋଧନ ।

ଐକ, ବିଂ. (ଏକ-ଅ) ଏକାର୍ଥ ବୋଧକ, ଏକ ସମ୍ବନ୍ଧୀୟ ।

ଐକତାନ, ବି. ନ. (ଏକତାନ-ଅ) ବାଦ୍ୟବିଶେଷ; ଭିନ୍ନ ଜାତୀୟ ଅନେକ ଗୁଡ଼ିଏ ଯନ୍ତ୍ର ଏକତ୍ରରେ ବାଦିତ ହେବାକୁ ଐକତାନ କହନ୍ତି ।

ଐକପତ୍ୟ, ବି. ନ. (ଏକପତି-ଯ) ଏକାଧିପତ୍ୟ ।

ଐକମତ୍ୟ, ବି. ନ. ( ଏକମତ-ଯ ) ମତୈକ୍ୟ, ଏକମତ ।

ଐକରାଜ୍ୟ, ବି.ନ. (ଏକରାଜ-ଯ) ଏକାଧିପତ୍ୟ ।

ଐକଲବ୍ୟ, ବି. ପୁଂ (ଏକଲବ୍ୟ-ଅ) ଏକଲବ୍ୟର ପୁତ୍ର ।

ଐକବାକ୍ୟ, ବି. ନ. ( ଏକବାକ୍ୟ-ଅ ) ଏକମତ ଅବଲମ୍ବନ, ବଚନର ଏକତା, କଥାର ମେଳ ।

ଐକଶତିକ, ବିଂ. (ଏକଶତ-ଇକ) ଯେ ଏକଶତ ଦ୍ରବ୍ୟର ଅଧିକାରୀ ।

ଐକାଗାରିକ, ବି.ପୁଂ. (ଏକ-ଅଗାର-ଇକ) ଚୋର, ଦସ୍ୟୁ ।

ଐକାଗ୍ର୍ୟ, ବି. ନ. (ଏକାଗ୍ର-ଯ) ଏକାଗ୍ରତା ।

ଐକାତ୍ମ୍ୟ, ବି. ନ. ( ଏକ-ଆତ୍ମା-ଯ ) ଐକ୍ୟ, ଏକାତ୍ମତ୍ୱ । ବି. ପୁଂ. ଅଭେଦ ।

ଐକାନ୍ତିକ, ବିଂ. ( ଏକାନ୍ତ-ଇକ ) ନିଶ୍ଚିତ; ଗାଢ଼; ଦୃଢ଼; ଆତ୍ୟନ୍ତିକ ।

ଐକାନ୍ୟିକ, ବିଂ. ( ଏକ-ଅନ୍ୟ-ଇକ ) ଯେ ଛାତ୍ର ଏକ ପ୍ରକାର ଅଧ୍ୟୟନ କରଇ ଏବଂ ପରୀକ୍ଷା ସମୟରେ ଅନ୍ୟ ପ୍ରକାର ଉତ୍ତର ଦିଅଇ, କୁପାଠକ ଛାତ୍ର ।

ଐକାହିକ, ବିଂ. ( ଏକ-ଅହନ୍-ଇକ ) ଏକଦିନ ସମ୍ବନ୍ଧୀୟ ।

ଐକ୍ୟ, ବି. ନ. (ଏକ-ଯ) ଏକତା, ଏକୀଭାବ; ମେଳ, ଅବିରୋଧ ।

ଐକ୍ଷବ, ବିଂ. (ଇକ୍ଷୁ-ଅ) ଇକ୍ଷୁସମ୍ବନ୍ଧୀୟ, ଗୁଡ଼, ଚିନି ପ୍ରଭୃତି ।

ଐକ୍ଷ୍ୱାକ, ବିଂ. (ଇକ୍ଷ୍ୱାକୁ-ଅ) ଇକ୍ଷ୍ୱାକୁ ବଂଶଜାତ; ଇକ୍ଷ୍ୱାକୁଙ୍କ ଜନପଦ ।

ଐଙ୍ଗୁଦ, ବ. ନ. ( ଇଙ୍ଗୁଦ-ଅ ) ଇଙ୍ଗୁଦୀ ବୃକ୍ଷର ଫଳ; ଏହି ଫଳରୁ ଜନ୍ମିବା ତୈଳ ଋଷିମାନେ ବ୍ୟବହାର କରନ୍ତି ।

ଐଚ୍ଛିକ, ବଂ. ( ଇଚ୍ଛା-ଇକ ) ଇଚ୍ଛାଧୀନ, ଇଚ୍ଛାନୁଯାୟୀ । ଙୀ. ସ୍ତ୍ରୀ. ଇଚ୍ଛାନୁଯାୟିନୀ ।

ଐଣ, ଐଣେୟ, ବଂ. (ଏଣ-ଅ, ଏୟ) କୃଷ୍ଣମୃଗ-ସମ୍ବନ୍ଧୀୟ । ବ. ମୃଗଚର୍ମ ।

ଐତିହାସିକ, ବଂ. (ଇତିହାସ-ଇକ) ଇତିହାସ-ସମ୍ବନ୍ଧୀୟ; ଇତିହାସବେତ୍ତା ।

ଐତିହ୍ୟ, ବ. ନ. ( ଇତିହ-ଯ ) ପରମ୍ପରାଗତ ଉପଦେଶବାକ୍ୟ; ପ୍ରମାଣବିଶେଷ ।

ଐନ୍ଦବ, ବଂ. (ଇନ୍ଦୁ-ଅ) ଚନ୍ଦ୍ରସମ୍ବନ୍ଧୀୟ । ବ. ନ. ମୃଗଶିରା ନକ୍ଷତ୍ର; ଚାନ୍ଦ୍ରାୟଣ ବ୍ରତବିଶେଷ ।

ଐନ୍ଦ୍ର, ବ. ପୁଂ. ( ଇନ୍ଦ୍ର-ଅ ) ବାଲୀ, ଜୟନ୍ତ; ସୁଗ୍ରୀବ; ଅର୍ଜୁନ । ବଂ, ଇନ୍ଦ୍ରସମ୍ବନ୍ଧୀୟ ।

ଐନ୍ଦ୍ରଜାଲିକ, ବ.ପୁଂ. (ଇନ୍ଦ୍ରଜାଲ-ଇକ) କୁହକୀ, ବାଜୀକର, ଇନ୍ଦ୍ରଜାଲକାରକ । ଯଥା—

ଐନ୍ଦ୍ରଜାଲିକ ମୂର୍ଚ୍ଛି ଶୁଣି ।

ଐନ୍ଦ୍ରି, ବ. ପୁଂ. ( ଇନ୍ଦ୍ର-ଇ ) ଜୟନ୍ତ; ବାଲୀ; ସୁଗ୍ରୀବ; ଅର୍ଜୁନ; କାକ ।

ଐରାବଣ, ବ. ପୁଂ ( ଇରାବତ୍-ଅ ) ଇନ୍ଦ୍ରହସ୍ତୀ । ଣୀ, ସ୍ତ୍ରୀ. ବିଦ୍ୟୁତ୍ ।

ଐରାବତ, ବ. ପୁଂ. (ଇରାବତ୍-ଅ) ପୂର୍ବଦିଗର ହସ୍ତୀ, ଇନ୍ଦ୍ରହସ୍ତୀ, ନାରଙ୍ଗୀ ଲେମ୍ବୁ ।

ଐରାବତୀ, ବ. ସ୍ତ୍ରୀ. (ଇରା-ବତ୍-ଅ-ଈ) ଐରାବତର ପତ୍ନୀ, ଅଭ୍ରମୁ; ଐରାବତୀନଦୀ; ଏହାର ଆଧୁନିକ ନାମ ରାବି; ବିଦ୍ୟୁତ୍ ।

ଐରିଣ, ବ. ନ. ( ଇରିଣ-ଅ ) ଲବଣବିଶେଷ, ପଙ୍ଗା ଲବଣ ।

ଐରେୟ, ବ. ନ. (ଇରା-ଏୟ) ଅନ୍ନରୁ ପ୍ରସ୍ତୁତ ମଦ ।

ଐଳ, ବ. ପୁଂ. ( ଇଳା-ଅ ) ଚନ୍ଦ୍ରବଂଶୀୟ ପୁରୁରବାଃ ରାଜା ।

ଐଲବିଲ, ବ. ପୁଂ. (ଇଲବିଲା-ଅ) ଇଲବିଲାର ପୁତ୍ର, କୁବେର ।

ଐଶ, ଐଶିକ, ଐଶ୍ୱର, ବଂ. ( ଈଶ-ଅ, ଇକ, ଈଶ୍ୱର-ଅ) ଈଶସମ୍ବନ୍ଧୀୟ ।

ଐଶାନୀ, ବ. ସ୍ତ୍ରୀ. (ଈଶାନ-ଅ-ଈ) ଈଶାନକୋଣ, ଉତ୍ତରପୂର୍ବ କୋଣ; ଶକ୍ତିବିଶେଷ; ପାର୍ବତୀ ।

ଐଶାନ୍ୟ, ବ. ( ଈଶାନ-ଯ ) ଈଶାନକୋଣ, ଉତ୍ତରପୂର୍ବ କୋଣ ।

ଐଶୀ, ବଂ. (ଈଶ-ଈ) ଈଶ୍ୱରସମ୍ବନ୍ଧୀୟ, ଦୈବୀ ।

ଐଶ୍ୱର୍ଯ୍ୟ, ବ. ନ. (ଈଶ୍ୱର-ଯ) ପ୍ରଭୁତ୍ୱ; ଈଶ୍ୱରତ୍ୱ; ସମ୍ପତ୍ତି; ଅଣିମା, ଲଘିମା, ପ୍ରାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ, ବଶିତ୍ୱ, କାମାବସାୟିତା ଏହି ଅଷ୍ଟପ୍ରକାର ଶକ୍ତି ।

ଐଷୀକ, ବ. ନ. (ଇଷୀକା-ଅ) ମହାଭାରତର ଅନ୍ତର୍ଗତ ପର୍ବବିଶେଷ ।

ଐହିକ, ବଂ. (ଇହ-ଇକ) ଇହକାଳସମ୍ବନ୍ଧୀୟ ।

——o——

## ଓ

ଓ, ତ୍ରୟୋଦଶ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ ଓ ଓଷ୍ଠ । ବ. ପୁଂ. ବ୍ରହ୍ମା । ଅଂ. ସମ୍ବୋଧନ; ସ୍ମରଣ; ଦୟା ।

ଓଁ, ଅଂ. ପ୍ରଣବ, ଓଁକାର, ଆଦ୍ୟ ବୀଜ ।

ଓଉ, ବ. (ଦେଶଜ) ଅମ୍ଳ ଫଳବିଶେଷ ।

ଓକଃ, ବ. ନ. ( ଉଚ୍=ଏକତ୍ର କରିବା-ଅସ୍ ) ସ୍ଥାନ; ଆଶ୍ରୟ; ଗୃହ ।

ଓକର, ବ. ( ଦେଶଜ ) ଗୋଇ; ଗୃହଚ୍ଛିଦ୍ର; ଇଜର୍ ।

ଓକାର, } ବ.(ଉଦ୍ଗାର ଶବ୍ଦଜ) ବାନ୍ତି, ବମନ ।
ଓକାଳ, }

ଓଖର, ବ. ( ଗୋକ୍ଷୀରର ଅପଭ୍ରଂଶ ) ଦୁଗ୍ଧ ।

ଓଗାଳିବା, କ୍ରି. ବ. (ଅର୍ଗଳଶବ୍ଦଜ) ଅଟକାଇବା । ଯଥା—

ବାଃ ଓଗାଳ ହଃ ନ କର ତ ବନମାଳୀ ।

ଓଘ, ବି. ପୁଂ. (ଉର୍-ଅ, ଚ=ଘ) ସମୂହ; ସ୍ରୋତ; ଜଳବେଗ, ପ୍ରବାହ; ତରଙ୍ଗ; ପରମ୍ପରା ।

ଓଙ୍କାର, ବି. ପୁଂ. ( ଓମ୍-କାର ) ପ୍ରଣବ, ଓଁ, ଅଦ୍ୟ ବୀଜ । ଯଥା—

ପଠୁଁ ବଳେ ଶୁଭର ଅତି-ଝଙ୍କାର,
ଚନ୍ଦ୍ରବାଦର କି ଯେ ନାଦ ଓଙ୍କାର । ଭୁ. ସୁ.

ଓଜନ, ( ଦେଶଜ ) ତୁଳା ଦଣ୍ଡରେ ପରିମାଣ କରିବା, ତୌଲ କରିବା, ମାପିବା ।

ଓଜଃ, ବି. ନ. ( ଉର୍ଜ=ଜୀବିତ ହେବା-ଅସ୍ ) ତେଜଃ; ବଳ; ଦୀପ୍ତି; ଶୋଭା; ସ୍ୱର୍ଣ୍ଣ; ସମାସ-ପୂର୍ଣ୍ଣ ଦୀର୍ଘ ପଦଯୁକ୍ତ ବାକ୍ୟ । ଯଥା—

ତେବେ ଓଜ ଭଜିବ ଅବଶ୍ୟ ଶ୍ରମ କରି ହେ । ବ. ଚ.

ଓଜସ୍ୱଳ, ବି. (ଓଜସ୍-ବଳ) ବଳବାନ୍, କ୍ଷମତାଶାଳୀ ।

ଓଜସ୍ୱିତା, ବି. ସ୍ତ୍ରୀ. (ଓଜସ୍ୱିନ୍-ତା) ବଳଶାଳିତା; ତେଜସ୍ୱିତା ।

ଓଜସ୍ୱୀ, ବିଂ.(ଓଜସ୍-ୱିନ୍) ତେଜସ୍ୱୀ,ବଳବାନ୍; ଦୀପ୍ତ ।

ଓଜିଷ୍ଠ, ବିଂ. ( ଓଜସ୍-ଇଷ୍ଠ ) ବଳବାନ୍, ତେଜୀୟାନ୍, ଓଜୋଗୁଣବିଶିଷ୍ଟ; ଦୀପ୍ତ ।

ଓଝ, ଓଜ, ବି. ( ଦେଶଜ ) ବର୍ଗମୂଳ ବାହାର କରିବା । ଯଥା—୨୫ ର ଓଝ=୫ ।

ଓଝା, ବି. ( ଦେଶଜ ) ଶିକ୍ଷକ; ଗଣିତାଧ୍ୟାପକ; ବଢ଼େଇ ବା କମାରଙ୍କ ସଂଜ୍ଞା; ମାଟିବଂଶ ନାୟକ । ଯଥା—

ବାହାଣ ସନ୍ଧ୍ୟେ ଯାହାକୁ ମାରିବୁ
ମୂଳ ଅଟେ ତାର ସେହୁ ।
ଓଝା କରଣଙ୍କ ପ୍ରୟୋଜନ ଅର୍ଥେ
ପଚାରେ ମୂର୍ଖେ କହୁ । କାଶୀଖଣ୍ଡର ସୂତ୍ର ।

ଓଟାରିବା, କ୍ରି. ବ. (ଦେଶଜ) ଆକର୍ଷଣ କରିବା, ଟାଣିବା । ଯଥା—

ଲାଜ ଜନକ ମନ ଆଣି ଓଟାର । ର. ଚ.

ଓଡ଼, ବି. ( ଉଡ୍ର ଶବ୍ଦର ଅପଭ୍ରଂଶ ) ଉତ୍କଳର ଅଧିବାସୀ; ଥରେ, ବାରେ । ଯଥା—

କୋଡ଼ଇ ପାଇଲେ ଦଉଡ଼ ଡଗନ୍ତି ।

ଓଡ଼ାଙ୍କ, ବି. ( ଦେଶଜ ) ନିର୍ଦ୍ଦିଷ୍ଟପ୍ରଣାଳୀରେ ମିଶାଣ ।

ଓଡ଼ିଆ, ବି. ( ଉଡ୍ର ଶବ୍ଦଜ ) ଓଡ଼ିଶାବାସୀ; ଉତ୍କଳ ଭାଷା ।

ଓଡ଼ିଶା, ବି. (ପ୍ରାକୃତଜ) ଉତ୍କଳ ଦେଶ ।

ଓଡ୍ର, ବି. ( ଉଡ୍-ର ) ଉତ୍କଳଦେଶ; ପୁଷ୍ପବୃକ୍ଷ-ବିଶେଷ; ଜବାଫୁଲ ।

ଓଡ୍ରା, ବି. ସ୍ତ୍ରୀ. ଜବା ପୁଷ୍ପର ବୃକ୍ଷ ।

ଓଢ଼ଣଷଷ୍ଠୀ, ବି. (ଦେଶଜ) ମାର୍ଗଶିର ଶୁକ୍ଲଷଷ୍ଠୀ, ଜଗନ୍ନାଥ ଦେବଙ୍କ ଶୀତବସ୍ତ୍ର ଗ୍ରହଣ ତିଥି ।

ଓଢ଼ଣା, ବି. (ଦେଶଜ) ଅବଗୁଣ୍ଠନ, ସ୍ତ୍ରୀଲୋକଙ୍କ ମୁଖାଚ୍ଛାଦନ ବସ୍ତ୍ର । ଯଥା—

ଯଡ଼ ଓଢ଼ଣାରେ ପହାଡ଼ ନ ଯାଇ ହାସ କରଣ ଯେତେ ।

ଓତ, ବିଂ. ( ଆ-ବେ-ତ ) ପ୍ରୋତ; ଅନ୍ତର୍ବ୍ୟାପ୍ତ; ଲୁଗାର ଲମ୍ବ ଅଡ଼ର ସୂତା; ଲୁଣ୍ଠି ।

ଓତପ୍ରୋତ, ବିଂ. ( ଓତ-ପ୍ରୋତ ) ସ୍ଥାନବ୍ୟାପ୍ତ, ସବୁ ସ୍ଥାନ ବ୍ୟାପି ରହିଥିବା ।

ଓଡ଼ା, ବି. (ଉଦ୍ର୍ସ୍ରବ ଶବ୍ଦର ଅପଭ୍ରଂଶ) ଓଦର, ଉଦ୍‌ସ୍ରାବୀ ବସ୍ତ୍ର ।

ଓତୁ, ବି. ପୁଂ. ( ଅବ୍-ତୁ ) ମାର୍ଜାର, ବିଲେଇ, ବିରାଡ଼ି ।

ଓଥର, ବି. (ଦେଶଜ) ଅଳ୍ପତଦାର, ଅବିବାହିତ, ଯାହାର ବିବାହର ବୟସ ଅଗତ ହେଲେ ସୁଦ୍ଧା ବିବାହ କରି ନ ଥାଏ ।

ଓଦନ, ବି. ନ. (ଉନ୍ଦ-ଅନ) ଅନ୍ନ, ଭାତ ।

ଓମ୍, ଅଂ. (ଅବ୍=ରକ୍ଷାକରି-ମ୍ ଅବା ଅ=ବିଷ୍ଣୁ-ଉ=ଶିବ-ମ୍=ବ୍ରହ୍ମା ) ପ୍ରଣବ, ସବୁ ମନ୍ତ୍ରର ଆଦ୍ୟୋଚ୍ଚାର୍ଯ୍ୟ ବର୍ଣ୍ଣ; ସ୍ୱୀକାର; ପ୍ରଶ୍ନ; ରୋଷ; ଅନୁମତି; ଆରମ୍ଭ; ଅପାକରଣ । ବି. ନ.ମଙ୍ଗଳ; ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏହି ତ୍ରିବର୍ତ୍ତାତ୍ମକ ବୀଜମନ୍ତ୍ର ।

ଓର, ବି. (ଦେଶଜ) ସୁବିଧା; ଉପାୟ; ଅନୁସନ୍ଧାନ ।

ଓରଫ, ବି. (ଯାବନିକ) ପ୍ରତିନିଧି, ମାରଫତ୍ ।

ଓଳଗ, ଓଳିଗ, } ବି. (ହିନ୍ଦି) ନମସ୍କାର । ଯଥା—

ଦେଖଣି ନିଜ ସୁଲକ୍ଷଣୀ ନିଛଣୀ,
ସଙ୍ଗେ ନାଗଲ୍ୟାଙ୍କୁ ଓଳଗି । କୋ. ବ୍ର. ସୁ.

ଓଲଟା, ବି. (ଦେଶଜ) ବିପରୀତ । ଯଥା—

ଓଲଟା ଯୋଖିଲେ ସେ ବାଣ ପୁଣି ବଇଗ ଥଣେ ।
ଚ. ଭ.

ଓଲମ, ବି. (ଦେଶଜ) ପ୍ରାଚୀରାଦି ଲମ୍ବଭାବରେ ଉଠୁଅଛି କି ନାହିଁ ଇତ୍ୟାଦି ପରୀକ୍ଷା କରିବା ପାଇଁ ରାଜମିସ୍ତ୍ରୀମାନଙ୍କ ବ୍ୟବହୃତ ଯନ୍ତ୍ରବିଶେଷ; ଲମ୍ବମାନରଜ୍ଜୁ ।

ଓଲଉଠା, ବି. (ଦେଶଜ) ରୋଗବିଶେଷ, ବିସୂଚୀ ରୋଗ; ଏହି ରୋଗରେ ଗୋଡ଼ ହାତରୁ ଓଲ ଅର୍ଥାତ୍ ସ୍ନାୟୁରୁ ଏକ ପ୍ରକାର ଯନ୍ତ୍ରଣାଦାୟକ ଆକୁଞ୍ଚନ ଉଠେ, ଏଣୁକରି ଏହାକୁ ଓଲଉଠା ରୋଗ କହନ୍ତି ।

ଓଳି, ବି. (ଦେଶଜ) ଛପରର ଶେଷଭାଗ; ଦିନାର୍ଦ୍ଧ; ମୃତ୍ତିକାପାତ୍ରବିଶେଷ ।

ଓଳିଅ, ବି. (ଦେଶଜ) ଶସ୍ୟାଦି ବାନ୍ଧି ରଖିବାର ପାଳନିର୍ମିତ ବୂଜୁଲା; ପାଳଦ୍ୱାରା ନିର୍ଦ୍ଦିଷ୍ଟ ନିୟମରେ ଶସ୍ୟାଦି ବନ୍ଧାଗଲେ ତାକୁ ଓଳିଅ ବା ଓଳିମ୍ବା କହନ୍ତି ।

ଓଲ୍ଲୁ, ବିଂ. (ଉଲ୍ଲୁକ ଶବ୍ଦଜ) ନିର୍ବୋଧ, ଅଚତୁର ।

ଓଲୁଅ, ବି. (ଦେଶଜ) ଗୁଳ୍ମଜାତୀୟ ବୃକ୍ଷବିଶେଷ, ଏହାର ମୂଳରେ ପିଣ୍ଡାକାର ପଦାର୍ଥ ଥାଏ; ତାହା ଅନେକ ଔଷଧାଦିରେ ବ୍ୟବହୃତ ହୁଏ ।

ଓଷ, ବି. ପୁଂ. (ଉଷ୍-ଅ) ଦାହ, ଦହନ ।

ଓଷଧି, ଓଷଧୀ, ବି. ସ୍ତ୍ରୀ. (ଓଷ=ଉତ୍ତାପ-ଧି, ଧୀ) ଜ୍ୟୋତିର୍ଲତା, ଯେଉଁ ସବୁ ଲତା ରାତ୍ରିକାଳରେ ଜ୍ୱଳଇ; ଯେଉଁ ସବୁ ବୃକ୍ଷ (ଯଥା-ଧାନ୍ୟ ପ୍ରଭୃତି) ଫଳ ପକ୍ୱ ହେଲା ଉତ୍ତାରେ ଶୁଷ୍କ ହୁଏ ସେମାନଙ୍କୁ ମଧ୍ୟ ଓଷଧି ବୋଲାଯାଏ ।

ଓଷଧୀଶ, ବି.ପୁଂ. (ଓଷଧି-ଈଶ) ଚନ୍ଦ୍ର, ନିଶାକର; କର୍ପୂର । ବି. ସ୍ତ୍ରୀ. ସୋମଲତା ।

ଓଷ୍ଠ, ବି. ପୁଂ. (ଉଷ୍=ଦଗ୍ଧ ହେବା-ଠ) ଦନ୍ତଚ୍ଛଦ, ଓଠ । ଯଥା—

ବଦନ ଓଷ୍ଠ ସୁଷମା କର ସୁଷ୍ଠ ପୌର୍ଣ୍ଣମୀ ପ୍ରାଚୀ କି ।
ବୈ. ବ ।

ଓଷ୍ଠପୁଷ୍ପ, ବି. ପୁଂ. (ଓଷ୍ଠ-ପୁଷ୍ପ) ବନ୍ଧୁକ ପୁଷ୍ପର ଗଛ ।

ଓଷ୍ଠ୍ୟ, ବିଂ. (ଓଷ୍ଠ-ଯ) ଓଷ୍ଠରୁ ଉଚ୍ଚାରିତ ବର୍ଣ୍ଣ । ଯଥା—ପ, ଫ, ବ, ଭ, ମ, ଉ, ଊ ଇତ୍ୟାଦି ।

ଓସା, ବି. (ଉପବାସର ଅପଭ୍ରଂଶ) ଉପବାସ, ଅନଶନ; ନିୟମ; ବ୍ରତ ।

ଓସାର, ବିଂ. (ଦେଶଜ) ବିସ୍ତାର, ପ୍ରସ୍ଥ ।

ଓହଳ, ବି. (ଦେଶଜ) ବରପ୍ରଭୃତି ଗଛରୁ ତଳକୁ ଚେର ପରି ଯେଉଁ ଅଂଶ ବାହାରେ ।

ଓହଳିବା, କ୍ରି. ବି. (ଦେଶଜ) ଦୋଳିବା ।

ଓହଳାଇବା, କ୍ରି. ବି. (ଦେଶଜ) ଲଟକାଇବା, ଝିଙ୍କି ନତ କରିବା ।

ଓହ୍ଲାଇବା, କ୍ରି. ବି. (ଦେଶଜ) ଅବତୀର୍ଣ୍ଣ ହେବା, ତଳକୁ ଅବତରଣ କରିବା ।

——o——

# ଔ

ଔ, ଚତୁର୍ଦ୍ଦଶ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ ଓ ଓଷ୍ଠ । ବି. ପୁଂ. ଅନନ୍ତ । ସ୍ତ୍ରୀ. ପୃଥିବୀ । ଅଂ, ଆହ୍ୱାନ; ନିଷେଧ ।

ଔକ୍ଷ, ଔକ୍ଷକ, ବି. ନ. (ଉକ୍ଷନ୍-ଅ, କ ଯୋଗ) ବୃଷସମୂହ । ବିଂ. ବୃଷସମ୍ବନ୍ଧୀୟ ।

ଔଖ୍ୟ, ବି. କ. (ଉଖା-ଯ) ସ୍ଥାଳୀପକ୍ୱ ।

ଔଘ, ବି. ପୁଂ. (ଓଘ-ଅ) ଜଳସଂଘାତ, ଜଳରାଶି ।

ଔଚିତ୍ୟ, ବି. କ. (ଉଚିତ-ଯ) ଉପଯୁକ୍ତତା, କର୍ତ୍ତବ୍ୟତା, ନ୍ୟାଯ୍ୟତା ।

ଔଜସିକ, ବିଂ. (ଓଜସ୍-ଇକ) ତେଜସ୍ୱୀ, ଶୂର, ବଳଶାଳୀ ।

ଔଜ୍ଜ୍ୱଲ୍ୟ, ବି. କ. (ଉଜ୍ଜ୍ୱଳ-ଯ) ଉଜ୍ଜ୍ୱଳତା, ଦୀପ୍ତି ।

ଔଡୁପିକ, ବିଂ. (ଉଡୁପ-ଇକ) ଉଡୁପସମ୍ବନ୍ଧୀୟ, ଭେଳାଦ୍ୱାରା ଯେ ନଦୀ ପ୍ରଭୃତି ପାର ହୁଏ ।

ଔଦୁମ୍ବର, ବିଂ. (ଉଦୁମ୍ବର-ଅ) ଉଦୁମ୍ବର କାଷ୍ଠ-ନିର୍ମିତ; ତାମ୍ରନିର୍ମିତ ।

ଔଡ୍ର, ବି. ପୁଂ. (ଓଡ୍ର-ଅ) ଓଡ୍ରଦେଶର ରାଜା ।

ଔତ୍ତରେୟ, ବି.ପୁଂ. (ଉତ୍ତରା-ଏୟ) ଉତ୍ତରା ଗର୍ଭ-ଜାତ ଅଭିମନ୍ୟୁଙ୍କ ପୁତ୍ର, ପରୀକ୍ଷିତ ।

ଔତ୍ତାନପାଦି, ବି. ପୁଂ. ( ଉତ୍ତାନପାଦ-ଇ ) ଉତ୍ତାନପାଦ ପୁତ୍ର, ଧ୍ରୁବ ।

ଔତ୍ପାତିକ, ବିଂ. (ଉତ୍ପାତ-ଇକ) ଦୈବ ଉତ୍ପାତ-ସମ୍ବନ୍ଧୀୟ, ଉତ୍ପାତବଶୋତ୍ଥ; ଅଶୁଭସୂଚକ ।

ଔତ୍ସର୍ଗିକ, ବିଂ. ( ଉତ୍ସର୍ଗ-ଇକ ) ସ୍ୱାଭାବିକ, ପ୍ରାକୃତିକ, ଅକୃତ୍ରିମ ।

ଔତ୍ସୁକ୍ୟ, ବି. କ. ( ଉତ୍ସୁକ-ଯ ) ଉତ୍କଣ୍ଠା, ବ୍ୟଗ୍ରତା, ଆଗ୍ରହ ।

ଔଦନିକ, ବିଂ. ( ଓଦନ-ଇକ ) ପାଚକ, ସୂପକାର ।

ଔଦରିକ, ବିଂ. ( ଉଦର-ଇକ ) ପେଟୁ, ଉଦରମ୍ଭରି ।

ଔଦାର୍ଯ୍ୟ, ବି. କ. ( ଉଦାର-ଯ ) ଉଦାରତା, ମହତ୍ତ୍ୱ; ବଦାନ୍ୟତା ।

ଔଦାସୀନ୍ୟ, ବି. ପୁଂ. (ଉଦାସୀନ-ଯ) ଉଦା-ସୀନତା; ଉପେକ୍ଷା; ନିଃସମ୍ପର୍କତା ।

ଔଦାସ୍ୟ, ବି. କ. (ଉଦାସ-ଯ) ଅମନୋଯୋଗ; ବୈରାଗ୍ୟ; ଉପେକ୍ଷା ।

ଔଦ୍ଧତ୍ୟ, ବି. କ. ( ଉଦ୍ଧତ-ଯ ) ଧୃଷ୍ଟତା, ଅନମ୍ରତା, ଅଶିଷ୍ଟତା ।

ଔଦ୍ୱାହିକ, ବିଂ. ( ଉଦ୍ୱାହ-ଇକ ) ବିବାହକାଳ-ଲବ୍ଧ, ଯୌତୁକ ।

ଔଦ୍ଭିଦ, } ବିଂ. ( ଉଦ୍ଭିଦ, ଉଦ୍ଭିଜ୍ଜ-ଅ )
ଔଦ୍ଭିଜ୍ଜ; } ଉଦ୍ଭିଦସମ୍ବନ୍ଧୀୟ, ସୈନ୍ଧବଲବଣ ।

ଔଧସ୍ୟ, ବି. କ. (ଉଧସ୍-ଯ) ପଶୁର ସ୍ତନ୍ୟ-ଦୁଗ୍ଧ ।

ଔନ୍ନତ୍ୟ, ବି. କ. ( ଉନ୍ନତ-ଯ ) ଉଚ୍ଚତା, ଉନ୍ନତି ।

ଔପଗବ, ବି. ପୁଂ. (ଉପ-ଗୋ-ଅ) ଗୋପାଳକ-ପୁତ୍ର ।

ଔପଚାରିକ, ବିଂ. (ଉପଚାର-ଇକ) ଉପଚାର-ସମ୍ବନ୍ଧୀୟ ।

ଔପନିଧିକ, ବି. କ. (ଉପନିଧି-କ) ଭୋଗାର୍ଥ ପ୍ରୀତିପୂର୍ବକ ଅର୍ପିତ ଦ୍ରବ୍ୟ ।

ଔପନିବେଶିକ, ବିଂ. ( ଉପନିବେଶ-ଇକ ) ଉପନିବେଶସମ୍ବନ୍ଧୀୟ ।

ଔପନୀବିକ, ବିଂ.(ଉପ-ନୀବି-ଇକ) ନୀବି ସମୀପରେ ସ୍ଥିତ ।

ଔପପତ୍ତିକ, ବିଂ. (Theoretical) (ଉପପତ୍ତି-ଇକ) ନିୟମସିଦ୍ଧାନ୍ତ ଗ୍ରନ୍ଥଦ୍ୱାରା ଯାହା ପ୍ରତିପନ୍ନ ହୁଏ ।

ଔପମ୍ୟ, ବି. କ. (ଉପମା-ଯ) ସାଦୃଶ୍ୟ, ତୁଲ୍ୟତା । ଯଥା—

ଅନ୍ୟୈପମ୍ୟେନ ଭୂତାନାଂ ଦୟାଂ କୁର୍ବନ୍ତି ସାଧବଃ । ହି. ଉ.

ଔପଳ, ବିଂ. ( ଉପଳ-ଅ ) ପ୍ରସ୍ତରସମ୍ବନ୍ଧୀୟ; ଉପଳନିର୍ମିତ, ଉପଳମୟ ।

ଔପସର୍ଗିକ, ବି. ପୁଂ. (ଉପସର୍ଗ-ଇକ) ସନ୍ନିପାତ ରୋଗବିଶେଷ । ବିଂ. ଉପସର୍ଗସମ୍ବନ୍ଧୀୟ ।

ଔପାଧିକ, ବିଂ. (ଉପାଧି-ଇକ) ଉପାଧିସମ୍ବନ୍ଧୀୟ; ବୈଶେଷିକ; ଅସ୍ଥାୟୀ ।

ଔରଭ୍ର, ବି. କ. (ଉରଭ୍ର-ଅ) କମ୍ବଳ, ଊର୍ଣ୍ଣାନିର୍ମିତ ଅସନ, ଗାଲିଚା; ମେଷସମୂହ । ବିଂ. ମେଷ-ସମ୍ବନ୍ଧୀୟ ।

ଔରସ, ଔରସ୍ୟ, ବି. (ଉରସ୍-ଅ, ଯ) ଧର୍ମପତ୍ନୀ-ଜାତ ପୁତ୍ର, ସ୍ୱୟଂ ଉତ୍ପାଦିତସନ୍ତାନ, ଦ୍ୱାଦଶ ପ୍ରକାର ପୁତ୍ର ମଧ୍ୟରେ ଶ୍ରେଷ୍ଠ । ଯଥା—

ସ୍ୱେ କ୍ଷେତ୍ରେ ସଂସ୍କୃତାୟାଂତୁ ସ୍ୱୟମୁତ୍ପାଦୟେଦ୍ଧି ଯଂ ।
ତମୌରସଂ ବିଜାନୀୟାତ୍ ପୁତ୍ରଂ ପ୍ରଥମକଳ୍ପିତଂ ।

ଔର୍ଦ୍ଧ୍ୱଦେହିକ, ବି. ନ. (ଉର୍ଦ୍ଧ୍ୱ-ଦେହ-ଇକ) ଅନ୍ତ୍ୟେଷ୍ଟି, ପ୍ରେତକୃତ୍ୟ, ଅଗ୍ନିସଂସ୍କାରାଦି ।

ଔର୍ବ, ବି. ପୁଂ. (ଉର୍ବ-ଅ) ବାଡ଼ବାନଳ । (ଉରୁ-ଅ) ଭୃଗୁନନ୍ଦନ; ଶୁକ୍ର । (ଉର୍ବୀ-ଅ) ପାଂଶୁ-ଲବଣ । ବି°. ପାର୍ଥିବ । ଯଥା—

—ତିର୍ଯ୍ୟକ୍ ଯଥା
ଚନ୍ଦ୍ର ତମଃପୁଞ୍ଜେ ଚେତା ଔର୍ବ ସିନ୍ଧୁଜଳେ । ମ. ଯ.

ଔର୍ବଶେୟ, ବି. ପୁଂ. (ଉର୍ବଶୀ-ଏୟ) ଉର୍ବଶୀପୁତ୍ର; ଅଗସ୍ତ୍ୟ ।

ଔଲୂକ, ବି. ପୁଂ. (ଉଲୂକ-ଅ) ପେଚକସମୂହ ।

ଔଶନସ, ବି. ନ. (ଉଶନସ୍-ଅ) ଶୁକ୍ରାଚାର୍ଯ୍ୟ-ପ୍ରଣୀତ ଶାସ୍ତ୍ର ।

ଔଶୀର, } ବି.ନ.(ଉଶୀର, ଉଷୀର-ଅ)ଚାମର-
ଔଷୀର, } ଦଣ୍ଡ ଶୟନାସନ; ଶୟନ । ବି°. ଉଶୀରସମ୍ବନ୍ଧୀୟ ।

ଔଷଧ, ବି. ନ.(ଓଷଧି-ଅ) ରୋଗନାଶକବସ୍ତୁ, ଭେଷଜ ।

ଔଷଧୋଜୀବ, ବି°. (ଔଷଧ-ଅଜୀବ) ଔଷଧ ବିକ୍ରୟଦ୍ୱାରା ଯାହାର ଜୀବିକା ନିର୍ବାହିତ ହୁଏ, ଔଷଧବ୍ୟବସାୟୀ ।

ଔଷଧାଳୟ, ବି. ପୁଂ. (ଔଷଧ-ଆଳୟ) ଚିକିତ୍ସା-ଗୃହ, ଯେଉଁଠାରେ ଔଷଧାଦି ସଞ୍ଚିତ ଏବଂ ବ୍ୟବସ୍ଥିତ ହୁଏ ।

ଔଷ୍ଟ୍ର, ବି°. (ଉଷ୍ଟ୍ର-ଅ) ଉଷ୍ଟ୍ରସମ୍ବନ୍ଧୀୟ ।

ଔଷ୍ଠ୍ୟ, ବି°. (ଓଷ୍ଠ-ଯ) ଓଷ୍ଠରୁ ଉଚ୍ଚାର୍ଯ୍ୟ ବର୍ଣ୍ଣ ।

ଔଷ୍ମ, ଔଷ୍ମ୍ୟ, ବି. ନ. (ଉଷ୍ମ-ଅ, ଯ) ଉଷ୍ମତା ।

ଔଷ୍ଣୀକ, ବି°. (ଉଷ୍ଣୀଷ-କ) ଉଷ୍ଣୀଷଧାରୀ । ବି.ପୁଂ. ରାଜା ।

ଔଷ୍ଣ୍ୟ, ବି. ନ. (ଉଷ୍ଣ-ଅ) ଉଷ୍ଣତା ।

——o——

# କ

କ, ବି. ପୁଂ. ପ୍ରଥମ ହଲବର୍ଣ୍ଣ; ଏହାର ଉଚ୍ଚାରଣ ସ୍ଥାନ କଣ୍ଠ । (କୈ=ଶବ୍ଦ କରିବା ଅଥବା କନ୍=ଦୀପ୍ତି ପାଇବା-ଅ) ବ୍ରହ୍ମା; ବିଷ୍ଣୁ; ରୁଦ୍ର; ବାୟୁ; ଯମ; ସୂର୍ଯ୍ୟ; ଆତ୍ମା; ରାଜା; ଅଗ୍ନି; ଦକ୍ଷ; ପକ୍ଷୀ; କନ୍ଦର୍ପ; କାଳ; ଦୀପ୍ତି; ବେଗ; ମୟୂର; ଶରୀର; ଶବ୍ଦ; କେଶ । ନ. ମସ୍ତକ; ଜଳ; ସୁଖ; ମନ; ଧନ ।

କଅଁଳ, ବି°. (କୋମଳ ଶବ୍ଦଜ) କୋମଳ; ମୃଦୁ; ନରମ ।

କଅଁଳା, ବି°. (କୋମଳ ଶବ୍ଦଜ) ସଦ୍ୟଜାତ, ଅତ୍ୟଳ୍ପ ବୟସ୍କ । ଯଥା—

ବାଳକ ଯାକ ହେସ ଗୋପରେ ଛଳା,
ଧଇଁଲା ପୁଅର ବେଶ ଗଣବା । ର. ବ.

କଇଁ, ବି. ନ. (କୁମୁଦ ଶବ୍ଦଜ) ଜଳଜାତ ପୁଷ୍ପ-ବିଶେଷ, କୁମୁଦ, କୈରବ ।

କଇଁଆ, ବି. ଢିଲୁଲି, ଅମ୍ଳରସବିଶିଷ୍ଟ ଫଳ-ବିଶେଷ ।

କଇଁଛ, ବି. ପୁଂ. (କଚ୍ଛପ ଶବ୍ଦଜ) କୂର୍ମ ।

କଇ, ବି. (ଦେଶଜ) ବମନ, ବାନ୍ତି ।

କଇଥ, ବି. (କପିତ୍ଥ ଶବ୍ଦଜ) ବୃକ୍ଷବିଶେଷ; ଫଳ-ବିଶେଷ ।

କଇଁଥା, ବି°. (ଦେଶଜ) ଦରପିଚ୍ଛା, ଅପକ୍ୱ ।

କଇଦଖାନା, ବି. (ଯାବନିକ) ଜେଲଖାନା, ବନ୍ଦୀଗୃହ, କାରାଗାର ।

କଇଦୀ, ବି°.(ଯାବନିକ) ବନ୍ଦୀ, ଯେଉଁ ଅପରାଧୀକୁ ଅଟକ ରଖାଯାଏ ।

କଇର, ବି. (ଦେଶଜ) ଧାନ୍ୟାଦି ରଖିବାର ବେତ ବା ବାଉଁଶନିର୍ମିତ ବୃହତ୍ ପାତ୍ର ।

କଉ, ବି. (କବୟୀ ଶବ୍ଦଜ) ମତ୍ସ୍ୟବିଶେଷ ।

କଉଡ଼, ବ. (କାଙ୍କନ ବା କପର୍ଦ୍ଦକ ଶବ୍ଦଜ) କପର୍ଦ୍ଦକ, ବରାଟକ, ଅସ୍ଥିଗ୍ରନ୍ଥିଷ୍ଟିତ ମୁଦ୍ରାବିଶେଷ; ଅର୍ଥ; ଧନ; ମୁଦ୍ରା ।

କଉପିନୀ, ବ. (କୌପୀନ ଶବ୍ଦଜ) ଚୀରବସନ ।

କଂଶ, କଂସ, ବ. ପୁଂ. (କମ୍-ଶ, ସ=ସଜ୍ଞାର୍ଥେ) ଅସୁରବିଶେଷ, ଉଗ୍ରସେନର ପୁତ୍ର, ବସୁଦେବର ଶ୍ୟାଳକ, କୃଷ୍ଣଙ୍କର ମାମୁଁ; ତୈଜସ ଦ୍ରବ୍ୟ; ସ୍ୱର୍ଣ୍ଣରଜତାଦିନିର୍ମିତ ପାନପାତ୍ର; ପରିମାଣବିଶେଷ, ଆଢ଼କ ।

କଂସକ, ବ. ନ. (କଂସ-କ) ସ୍ୱାର୍ଥେ ବିଷ, ଉପାଧିବିଶେଷ ।

କଂସକାର, ବ. ପୁଂ. (କଂସ-କୃ-ଅ) କଂସାରି, ଯେଉଁମାନେ କାଂସ୍ୟପାତ୍ରାଦି ନିର୍ମାଣ କରନ୍ତି ।

କଂସଜିତ୍, ବ.ପୁଂ. (କଂସ-ଜି-୦) ବିଷ୍ଣୁ, ଶ୍ରୀକୃଷ୍ଣ ।

କଂସା, ବ. (କାଂସ୍ୟ ଶବ୍ଦଜ) ରଙ୍ଗ ଓ ତମ୍ବାନିର୍ମିତ ଧାତୁପାତ୍ରବିଶେଷ; ରଙ୍ଗ ଓ ତମ୍ବାମିଶ୍ରିତ ଧାତୁ ।

କଂସାବତୀ, ବ. ସ୍ତ୍ରୀ. ଉଗ୍ରସେନକନ୍ୟା, ଦେବଶ୍ରବାର ପତ୍ନୀ ।

କଂସାରି, ବ. ପୁଂ. ( ଦେଶଜ ) ଜାତିବିଶେଷ, କଂସାନିର୍ମାତା; କଇଁଆର ଲତା ।

କଂସାରି, ବ. ପୁଂ. ( କଂସ-ଅରି ) କୃଷ୍ଣ, ବିଷ୍ଣୁ, ନାରାୟଣ ।

କଂସାଳ, ବ. ନ. ଝାଞ୍ଜ । ଯଥା—

କଂସାଳ ତାଳ କଂସାଳ ପଃଦର୍ପସ ।

କକୁଞ୍ଜଲ, ବ. ପୁଂ. ସ୍ତ୍ରୀ. ଚାତକପକ୍ଷୀ ।

କକୁତ୍‌ସ୍ଥ, ବ. ପୁଂ. ( କକୁଦ୍=ରାଜଚିହ୍ନ-ସ୍ଥା-ଅ, ଅଥବା କକୁଦ୍=ବୃଷଭର ଚୂଳ-ସ୍ଥ) ସୂର୍ଯ୍ୟବଂଶୀୟ ନୃପବିଶେଷ ।

କକୁଦ୍, ସ୍ତ୍ରୀ. } ବ. ( କ=ସୁଖ-କୁ=ଶବ୍ଦ
କକୁଦ, ପୁଂ. ନ. } କରିବା-ଦ, ଦ ସଜ୍ଞାର୍ଥେ) ବୃଷଭର ଚୂଳ; ବାହୁ ମୂଳ; ଛତ୍ର ଚାମରାଦି ରାଜଚିହ୍ନ, ପର୍ବତଶୃଙ୍ଗ । ବିଂ. ଶ୍ରେଷ୍ଠ ।

କକୁଦ୍ମତୀ, ବ. ସ୍ତ୍ରୀ. (କକୁଦ୍-ମତ୍-ଈ) କଟିଦେଶ ।

କକୁଦ୍ମାନ୍, ବ. ପୁଂ. (କକୁଦ୍-ମତ୍) ବୃଷ, ଷଣ୍ଢ; ଗିରି, ପର୍ବତ ।

କକୁଦ୍ମୀ, ବ. ପୁଂ. (କକୁଦ୍-ମିନ୍) ବୃଷ; ପର୍ବତ; ନୃପବିଶେଷ ।

କକୁଭ୍, ବ. ସ୍ତ୍ରୀ. (କ=ବାୟୁ-ସ୍କୁନ୍ଦ୍=ବିସ୍ତାର କରିବା-୦) ଦିଗ୍; ଶୋଭା; ବେଣ; ଚମ୍ପକମାଳା; ଚମ୍ପକଶାଖା; ରାଗିଣୀବିଶେଷ । ଦିଗ୍ ଅର୍ଥରେ । ଯଥା—

କକୁଭ ନଭ ଢଶିଲେ ଶୋଭ । ର. ଚ.

କକୁଭ, ବ. ପୁଂ. (କ-ସ୍କୁନ୍ଭ୍-ଅ) ରାଗବିଶେଷ; ବୀଣାର ପ୍ରାନ୍ତସ୍ଥ ବକ୍ରକାଷ୍ଠ; ବୀଣାର ଲାଉ; ଅର୍ଜୁନଗଛ; ପକ୍ଷୀବିଶେଷ ।

କକ୍କୋଳ, ବ. ପୁଂ. ନ. (କକ୍-କୁଲ-ଅ) ଗନ୍ଧଦ୍ରବ୍ୟବିଶେଷ; କାଙ୍କଲ ।

କକ୍‌ଖଟୀ, ବ.ସ୍ତ୍ରୀ. (କକ୍-ଅଟ୍-ଈ) ଖଡ଼ୀ, କଠିନୀ ।

କକ୍ଷ, ବ. ପୁଂ (କଷ୍-ସ) ବାହୁମୂଳ; ପାର୍ଶ୍ୱ; ଶୁଷ୍କତୃଣ; ତୃଣ; ଜଙ୍ଗଲ; ଶୁଷ୍କବନ; ମହିଷ; ପାପ; ସର୍ବୌଷଧ; ପ୍ରତିଯୋଗିତା; କଚ୍ଛ; ବସ୍ତ୍ରାଞ୍ଚଳ; ନକ୍ଷତ୍ର; ଗ୍ରହମାନଙ୍କର ପରିଭ୍ରମଣ ଗୋଲାକାର ପଥ; ରାଜାନ୍ତଃପୁର; ପ୍ରକୋଷ୍ଠ ।

କକ୍ଷା, କକ୍ଷ୍ୟା, ବ. ସ୍ତ୍ରୀ. ( କଷ୍-ସ-ଆ, ଯ-ଆ ) ହସ୍ତୀର ଗଳା ବା କକ୍ଷବନ୍ଧନ ରଜ୍ଜୁ; ସ୍ତ୍ରୀମାନଙ୍କର କଟିବନ୍ଧ, ଚନ୍ଦ୍ରହାର; କୋଠରୀ, ମହଲ; ରାଜାନ୍ତଃପୁର; ରଥର ମଧ୍ୟଭାଗ; ପ୍ରତିଯୋଗିତା; ବସ୍ତ୍ରାଞ୍ଚଳ; ଗୃହଭିତ୍ତି; ରୋଗବିଶେଷ; କାଞ୍ଚୀ ।

କକ୍ଷାପଟ, ବ. ପୁଂ. (କକ୍ଷା=କଟିବନ୍ଧ-ପଟ=ବସ୍ତ୍ର) କୌପୀନ, କୌପୁନ୍ଧି ।

କକ୍ଷାବେକ୍ଷକ, ବ. ପୁଂ. ( କକ୍ଷା=ଅନ୍ତଃପୁର-ଅବେକ୍ଷକ=ଦ୍ରଷ୍ଟା) ଦ୍ୱାରପାଳ; ଅନ୍ତଃପୁର ରକ୍ଷୀ; ଉଦ୍ୟାନପାଳ; ଚିତ୍ରକର; ଲମ୍ପଟ ।

କଙ୍କ, ବ. ପୁଂ. (କନ୍‌କ-ଅ) ଯମ; କ୍ଷତ୍ରିୟ; ଛଳବ୍ରାହ୍ମଣ (ଯୁଧିଷ୍ଠିର ବିରାଟ ନଗରରେ ଅଜ୍ଞାତବନବାସ କଲାବେଳେ ଏହି ନାମରେ ଅଭିହିତ ହେଉଥିଲେ); ପକ୍ଷିବିଶେଷ । ଯଥା—

କାଳେ ମୃଣାଳ ଭୁକ୍ତ କରନ୍ତି, କେ କବ୍ଭ ସେ ନ ଧରନ୍ତି,
ପକ୍ଷୀ ଛନ୍ଦ୍ରାବ ତାଳେ ଧାଁ'ନ୍ତି, ବଣାଳେ ଲମେ ସେ । ର. ବ.

କଂସର ଭାଇ ।

କଙ୍କଟ, ବ. ପୁଂ. (କଙ୍କ-କଟ୍=ଆବରଣ କରିବା-ଅ) ସାଞ୍ଜୁ, କବଚ, ଉରସ୍ତ୍ରାଣ । ଯଥା—

ସଙ୍କଟ କାହା ହରଇ, ସମେଶର ଭଟ । ନ. ପା. ।

କଙ୍କଣ, ବ. ନ. (କଣ୍-(ଯଙ୍ଲୁଗନ୍ତ) ଅ)କର-ଭୂଷଣବିଶେଷ; ହସ୍ତସୂତ୍ର; ଲୌହକ; ଶେଖର; ଦେଶବିଶେଷ । ଯଥା—

ଭଷତ ହେବନ୍ତି ଗୋପୀନାଥଙ୍କ,
ହଠ କନ୍ୟା ଅନ୍ତର ମୁଦ୍ରିକା,
କଙ୍କଣ ହେଲଣି ହସ୍ତରୁ । ର. ତୁ.

(ଲୌହକ ଅର୍ଥରେ) ଯଥା—

କଣ୍ଠ ଗଦ୍‌ଗଦରୁ ବାଣୀ ନ ପାରେ କହି,
କଙ୍କଣ ବେନି ନପୁର ଯାଉଛି ବହି । ର. କ.

କଙ୍କଣୀ, ବ. ସ୍ତ୍ରୀ. (କଙ୍କଣ-ଈ) କ୍ଷୁଦ୍ର ଘଣ୍ଟିକା, ଘୁଙ୍ଗୁର ।

କଙ୍କତ, ପୁଂ.
କଙ୍କତୀ. ସ୍ତ୍ରୀ.
କଙ୍କତିକା, ସ୍ତ୍ରୀ. } ବ. (କନ୍‌କ୍-ଅତ, ଅତ-ଈ, ଅତ-ଇକ-ଆ)କେଶ ମଧ୍ୟରେ ଯାହା ଗମନ କରେ,ପାନିଆ; ଚିରୁଣୀ । ଯଥା—

ମର୍ଦ୍ଦନାବାର କଙ୍କତିକା ଧର, କାଗୁରୁ କମ ସୁଷମା ଚିକୁଣୀ ।
ଲ. ବ.

କଙ୍କପତ୍ର, ବ. ପୁଂ. (କଙ୍କ-ପତ୍ର) ବାଣ; କଙ୍କ ପକ୍ଷିର ପର । ଯଥା—

ପଲେ ଅନୁକୂଳ, ବିଶିଖ କଙ୍କପତ୍ର ତାହାର ।

କଙ୍କପୁରୀ, ବ. ସ୍ତ୍ରୀ. ସୁଖଦାୟିନୀ ପୁରୀ; କାଶୀ, ବାରାଣସୀ ।

କଙ୍କମାଳା, ବ. ସ୍ତ୍ରୀ. (କଙ୍କ-ମାଳା) କରତାଳ ବାଦନ ।

କଙ୍କମୁଖ, ବ. ପୁଂ. (କଙ୍କ-ମୁଖ, କଙ୍କପକ୍ଷିର ମୁଖ-ପରି ଯାହାର ମୁଖ) ଚିମୁଟା, ସଣ୍ଡୁଆସୀ ।

କଙ୍କର, ବ. ନ. (କଂ-କୃ-ଅ) ଘୋଳଦହି, ତକ୍ର; କରକର୍, ଗୋଡ଼ । ବଂ. କର୍କଶ, କଠିନ ।

କଙ୍କଶାୟୁ, ବ. ପୁଂ. (କଙ୍କ-ଶାୟୁ) କୁକ୍କୁର ।

କଙ୍କାଳ (Skeleton), ବ. ପୁଂ. (କଙ୍କ-ଅଳ) ଅସ୍ଥି ପଞ୍ଜର, ଶରୀରର ରକ୍ତ ମାଂସ ଚର୍ମାଦି ବିଯୁକ୍ତ କଲେ କେବଳ ଯଥାସ୍ଥାନସନ୍ନିବିଷ୍ଟ ଅସ୍ଥିମାତ୍ରକୁ କଙ୍କାଳ କୁହାଯାଏ । ଯଥା—

ରକ୍ତାପୂଷ, ରକ୍ତ ଚର୍ମ, ରକ୍ତ ଛାଲ,
ସଙ୍ଗେ ଚଳୁଅଛି ଅସଂଖ୍ୟ କଙ୍କାଳ । ନ. ବେ.

କଙ୍କାଳମାଳୀ, ବ. ପୁଂ. (କଙ୍କାଳମାଳା-ଇନ୍) ଅସ୍ଥିମାଳାଧାରୀ, ଶିବ, ରୁଦ୍ର ।

କଙ୍କାଳମାଳିନୀ, ବ. ସ୍ତ୍ରୀ. (କଙ୍କାଳମାଳା-ଇନ୍-ଈ) ରୁଦ୍ରାଣୀ, ଦୁର୍ଗା ।

କଙ୍କୀ, ବ. ପୁଂ. (ଦେଶଜ) ଉଡ୍ଡୀୟମାନ ପତଙ୍ଗ ବିଶେଷ । ସାଧାରଣତଃ ଏହି ଜୀବ ଘୋର ବର୍ଷା-କାଳରେ ଦୃଷ୍ଟିଗୋଚର ହୁଅନ୍ତି । ଯଥା—

ଦେଖ ଦେଖ ଅମ୍ବରେ ସରସୀଜଳେ
ପଡ଼ି ମଣ୍ଡୂକ କୂଳ ଉଛି କଲେ
ବଳଲେ ସହି ସହି, ଊର୍ଦ୍ଧ୍ୱେ ଉଡ୍ଡୀନ
ଉଡ଼ନ୍ତି କଙ୍କୀ ଦେଖ ଗିରଣ । ଭ. ସ୍ତୁ.

କଙ୍କାରୁ, ବ. (କର୍କାରୁ ଶବ୍ଦଜ) ଲତାଫଳବିଶେଷ ।

କଙ୍ଗାଳ, ବଂ. (ଦେଶଜ) ଅନ୍ନକ୍ଲିଷ୍ଟ ।

କଚ, ବ. ପୁଂ. (କଚ୍=ବନ୍ଧନ କରିବା ଇତ୍ୟାଦି-ଅ)କେଶ; ବୃହସ୍ପତିଙ୍କ ପୁତ୍ର; ଶୁଷ୍କବ୍ରଣ; ମେଘ; ହସ୍ତିନୀ ।

କଚଟି, ବ. (ଦେଶଜ) ହସ୍ତାଳଙ୍କାରବିଶେଷ; ମଣିବନ୍ଧ । ଯଥା—

କରେ କଙ୍କଣ କଚଟି ବାନ୍ଧନ୍ତି ।

କଚଡ଼ା, ବ. (ଦେଶଜ) ଧାନଗଛର ମୂଳରୁ କାଟି ବିଡ଼ା ବାନ୍ଧିଲେ ସେ ବିଡ଼ାକୁ କଚଡ଼ା କହନ୍ତି । କୌଣସି ପଦାର୍ଥକୁ ଊର୍ଦ୍ଧ୍ୱକୁ ଉତ୍ତୋଳନ କରି ସବଳେ ତଳେ ନିକ୍ଷେପ କରିବାର ।

କଚରକଚର, ବ. (ଦେଶଜ) ଅବ୍ୟକ୍ତ ଶବ୍ଦ; ପକ୍ଷିର ଧ୍ୱନି ।

କଚରମଚର, ବ. (ଦେଶଜ) ଅବ୍ୟକ୍ତ ଶବ୍ଦ (ଅନୁକରଣ ଅବ୍ୟୟ) ।

କଚରୀ, ବ. (ଦେଶଜ) ଅଳଆ । ବଂ. ଧନ୍ତଧନ୍ତଆ, କର୍ଦ୍ଦମାକ୍ତ ।

କଗୁଡ଼ବା, କ୍ରି. ବ. (ଦେଶଜ) ଊର୍ଦ୍ଧ୍ୱକୁ ଉତ୍ତୋଳନ କରି ସବଳେ ତଳେ ନିକ୍ଷେପ ।

କଚୁ, ବ. ସ୍ତ୍ରୀ. (କଚ-ଉ) ସାରୁଗଛ; ସାରୁ ।

କଚୁରି, କଚ୍ଚୌରି, ବ. (କର୍ଚ୍ଚରିକା ଶବ୍ଦଜ) ପିଷ୍ଟକ-ବିଶେଷ ।

କଚେରି, କଚ୍ଚିରି ବ. (ଯାବନିକ) ବିଚାରାଳୟ; ଜମିଦାରୀସଂକ୍ରାନ୍ତ କାଗଜପତ୍ର ରହିବାର ସ୍ଥାନ ।

କଚ୍‌କଚ୍, ଅଂ. (ଦେଶଜ) ଅବ୍ୟକ୍ତ ଶବ୍ଦ ।

କଚ୍ଚର, ବିଂ. (କୁ-ଚର) ମଳିନ, କୁତ୍ସିତ,ମଳ-ଦୂଷିତ; ଦୁର୍ବୃତ୍ତି, ଦୁରାତ୍ମା । ବ. ନ. ତକ୍ର, ଘୋଳଦହି ।

କଚ୍ଛ, ବ. ପୁଂ. (କ-ଛେ-ଅ, ବା କଚ୍-ଛ) ବୃକ୍ଷ-ବିଶେଷ; ନୌକାର ପଶ୍ଚାଦ୍‌ଭାଗ ; ନଦୀ-ପ୍ରଭୃତିର ଘାଟ; ଜଳମୟ ଦେଶ ବା ସ୍ଥାନ ; ପର୍ବତର ନିକଟବର୍ତ୍ତୀ ସମତଳଦେଶ; ସଂପୁଟ; ଗୋଳ; ଭାରତବର୍ଷର ପଶ୍ଚିମଭାଗସ୍ଥ ପ୍ରଦେଶ-ବିଶେଷ; ( ଦେଶଜ ) କୂର୍ମ; ବିଷ୍ଣୁଙ୍କର ଅବତାରବିଶେଷ; (ପ୍ରା) (କକ୍ଷର ଅପଭ୍ରଂଶ) ପାର୍ଶ୍ୱଭାଗ; ଅଂଶ; କଣ; ମାପ ।

କଚ୍ଛା, ବ. (ଦେଶଜ) କଚ୍ଛା, ପରିଧେୟ ବସ୍ତ୍ରର ପଶ୍ଚାତ୍ ଅଂଶ; ଝିଙ୍କାରି ପକ୍ଷୀ ।

କଚ୍ଛପ, ବ. ପୁଂ. (କଚ୍ଛ-ପା-ଅ) କୂର୍ମ, କଇଁଛ; କୁବେରଙ୍କର ନିଧିବିଶେଷ ।

କଚ୍ଛପୀ, ବ. ସ୍ତ୍ରୀ. (କଚ୍ଛପ-ଈ) ସରସ୍ୱତୀର ବୀଣା; କ୍ଷୁଦ୍ର କଚ୍ଛପ ବା ସ୍ତ୍ରୀ କଚ୍ଛପ; ରୋଗବିଶେଷ ।

କଚ୍ଛରୁହା, ବ. ସ୍ତ୍ରୀ. (କଚ୍ଛ-ରୁହ-ଆ) ଦୂର୍ବା ।

କଚ୍ଛୁ, କଚ୍ଛୂ, ବ. ସ୍ତ୍ରୀ. (କଷ୍=ହିଂସାକରିବା-ଉ,ଊ) କାଛୁ, କୁଣ୍ଡିଆ ରୋଗ ।

କଚ୍ଛୁର, ବିଂ. (କଚ୍ଛୁ-ର) କାଛୁରୋଗୀ; ପରସ୍ତ୍ରୀଗାମୀ ।

କଚ୍ଛୁରା, ବ. ସ୍ତ୍ରୀ. (କଚ୍ଛୁର-ଆ) ବେଶ୍ୟା ।

କଜ୍ଜଳ, ବ. ନ. (କୁ-ଜଳ) ମେଘ; ଅଞ୍ଜନ । ବିଂ. କୃଷ୍ଣବର୍ଣ୍ଣ । ଯଥା—

"କଜ୍ଜଳ ନକ୍ଷତ୍ରେ କଜ୍ଜଳକଜ୍ଜଳା । କ. ବୋ.

କଜ୍ଜଳପତ୍ରୀ, ବ. ସ୍ତ୍ରୀ.(କଜ୍ଜଳ-ପତ୍ର-ଇନ୍, ଯାହାର ପକ୍ଷ କଳା) କଜଳପାତିଆ ପକ୍ଷୀ । ଯଥା—

କଜ୍ଜଳପତ୍ରୀର ପତନ ନାଶିବ
କଣାଇବ ମର୍ତ୍ତ୍ୟେ ଉଷା ଅଗମନ । ନ. ବୋ.

କଜ୍ଜଳୀ, ବ. ସ୍ତ୍ରୀ. (କଜ୍ଜଳ-ଈ) ପାରଦ ଓ ଗନ୍ଧକର ରାସାୟନିକ ମିଶ୍ରଣରୁ ଉତ୍ପନ୍ନ ଔଷଧବିଶେଷ ।

କଜ୍ଜ୍ୱଳ, ବ. ନ. (କୁ-ଜ୍ୱଳ) ଅଞ୍ଜନ ।

କଞ୍ଚା, ବିଂ. (ଦେଶଜ) ଅପକ୍ୱ, ଅସିଦ୍ଧ ।

କଞ୍ଚିକା, କଞ୍ଚୀ, ବ. ସ୍ତ୍ରୀ. ବେଣୁଶାଖା, ବାଉଁଶକଣି; (ଦେଶଜ) ଚାବି, କୋଲପକାଠି ।

କଞ୍ଚୁକ, ବ. ପୁଂ. ( କଚ୍-ଉକ ) ସାପ-କାତି; କବଚ; ସାଞ୍ଜୁ; କାଞ୍ଚୁଲି; ଜାମା; ଅନ୍ତଃପୁରାଧ୍ୟକ୍ଷ । ଯଥା—

ଉରଗ କଞ୍ଚୁକେ ବେଷ୍ଟିତ ହେବାରେ
ଲକ୍ଷି ପବନେ ଭଯ୍ୱର । ଲ. ବ.

କଞ୍ଚୁକୀ, କଞ୍ଚୁକିନ୍, ବ. ପୁଂ. ( କଞ୍ଚୁକ-ଇନ୍ ) ଅନ୍ତଃପୁରର କ୍ଳୀବ ରକ୍ଷକ; ଲମ୍ପଟ; ସର୍ପ; କବଚଧାରୀ; ଯବ । ଯଥା—

ବଡ଼ର ସ୍ୱଭାବ ସଦନେ ବଡ଼ର ସଭ୍ୟ ସଦନେ ଧନ,
ବେଢ଼ି ଡାକୁଥାନ୍ତି କଞ୍ଚୁକୀ ବେଢ଼ି ଡାକୁଥାନ୍ତି କଞ୍ଚୁକୀ । ବୈ. ବ.

ସ୍ତ୍ରୀ. ଔଷଧବିଶେଷ ।

କଞ୍ଚୁଳିକା, କଞ୍ଚୁଲୀକା, ବ. ସ୍ତ୍ରୀ. ( କଚ୍-ଉଲ-ଇକ) କାଞ୍ଚୁଲି, ଅଙ୍ଗାବରଣବିଶେଷ ।

କଞ୍ଜ, ବ.ପୁଂ. (କ=ସୁଖ, ଜଳ, ମସ୍ତକ ଇତ୍ୟାଦି -ଜ=ଯେ ଜନ୍ମ ହୁଏ ) ବ୍ରହ୍ମା; କେଶ । ନ. ପଦ୍ମ; ଅମୃତ । ଯଥା—

କଞ୍ଜ-ଅଞ୍ଜନ ଗଞ୍ଜନରେଚନା, ମତ୍ତ-ପରଭୃତନନ୍ଦବଚନା । ଲ. ବ.

କଞ୍ଜକ, କଞ୍ଜଳ, ବ. ପୁଂ. (କଞ୍ଜ-କ, ଲ) ଶାରୀ ପକ୍ଷୀ, ମୟୂନା ପକ୍ଷୀ ।

କଞ୍ଜଜ, ବ. ପୁଂ. (କଞ୍ଜ-ଜ) ବ୍ରହ୍ମା ।

କଞ୍ଜନ, ବ. ପୁଂ. (କଂ-ଜନ୍-ଅ) କାମ; ପକ୍ଷି-ବିଶେଷ ।

କଞ୍ଜନାଭ, ବ. ପୁଂ. (କଞ୍ଜ-ନାଭି) ବିଷ୍ଣୁ ।

କଞ୍ଜବନ୍ଧୁ, ବ. ପୁଂ. (କଞ୍ଜ-ବନ୍ଧୁ) ସୂର୍ଯ୍ୟ ।

କଞ୍ଜର, ବ. ପୁଂ. (କଞ୍ଜ-ଋ-ଅ) ବ୍ରହ୍ମା; ସୂର୍ଯ୍ୟ; ଉଦର; ମୟୂର; ହସ୍ତୀ ।

କଞ୍ଜସୁତ, ବ. ପୁଂ. ବ୍ରହ୍ମା, ବିଧାତା ।

କଞ୍ଜାର, ବ. ପୁଂ. (କଞ୍ଜ-ଆର) ମୁନି; ବ୍ରହ୍ମା; ଅର୍କବୃକ୍ଷ; ସୂର୍ଯ୍ୟ; ହସ୍ତୀ; ଉଦର ।

କଟ, ବ. ପୁଂ. (କଟ୍-ଅ) ହସ୍ତିର ଗଣ୍ଡଦେଶ; ମଦୁରା; ପରୁଣ୍ଡମଦିଣା; ତୃଣନିର୍ମିତ ପରଦା; ତୃଣ; ତୃଣାଦନ; ଶବରଥ; କଟି; ଅତିଶଯ୍ୟ; ତୃଣରଚିତ ବସ୍ତୁବିଶେଷ; ଶବ; ଶ୍ମଶାନ; (ଦେଶଜ କଟ=କଡ଼ା, ଟଙ୍କାର ଚତୁର୍ଥାଂଶ) ।

କଟକ, ବ. ପୁଂ. ନ. (କଟ-ଅକ) ପର୍ବତର ନିତମ୍ବଦେଶ; ବଳୟ; ରାଜଧାନୀ; ସୈନ୍ୟ; ସୈନ୍ଧବ; ଶିବିର; ଗଜଦନ୍ତମଣ୍ଡଳ; ଓଡ଼ିଶାର ରାଜଧାନୀ; ପାଦଭୂଷଣ । ଯଥା—

> ମେଢ଼େ ବହାଇଲେ ବଳାସର ପ୍ରିୟ,
> ଯା କଟକ ଶେଷ ଶବିଳ ଛଡଥ । ନ. ବେ.

କଟକଣା, ବ. (ଦେଶଜ) ଆକଟ, କାଯ୍ଦା, ବନ୍ଦୋବସ୍ତ ।

କଟକୋଳ, ବ. ପୁଂ. (କଟ-କୋଳ) ନିଷ୍ଠୀବନପାତ୍ର, ପିକଦାନି ।

କଟଖାଦକ, ବ. ପୁଂ. (କଟ-ଖାଦ୍-ଅକ) କାକ; ଶୃଗାଳ । ବି. ପେଟୁ ।

କଟଭୀ, ବ. ସ୍ତ୍ରୀ. ଜ୍ୟୋତିଷ୍ମତୀ ଲତା ।

କଟମ୍ଭରା, ବ. ସ୍ତ୍ରୀ. ରାଜବଳା; ହସ୍ତିନୀ; କଳମ୍ବିକା; ବର୍ଷାଭୂ; ମୂର୍ବା ।

କଟା, ବ. (କର୍ତ୍ତନ ଶବ୍ଦଜ) କାଟିବା, ଛେଦନ; ଅଲଗା; ବିଯୋଗକରଣ । ବି. କାଟି ହୋଇଥିବା ।

> କଟା ଘାରେ ଲୁଣ ଦେଲେ । ପ୍ର. ବ.

କଟାକଟି, ବ. (ପ୍ରାକୃତଜ) ହଣାହଣି; ଅନ୍ତର ବା ବିଯୋଗକରଣ ।

କଟାକ୍ଷ, ବ. ପୁଂ. (କଟ-ଅକ୍ଷି) ଅପାଙ୍ଗଦର୍ଶନ, ଆଡ଼ଚାହାଣି । ଯଥା—

> କଟାକ୍ଷେ ପୁଣ୍ଡରୀକାକ୍ଷ ନେଲେ ଚିତ୍ତଧନ,
> ସୁଖଇ ଦୁର୍ବର୍ଷ ତନ୍ତ୍ର ବସନ ଅଗ୍ନି । ଭ. ବ.

କଟାଯୂନ, ବ. ନ. (କଟ-ଅଯୂନ) ବେଣାମୂଳ ।

କଟାର, କଟାରି, ବ. (ଦେଶଜ) ଶସ୍ତ୍ରବିଶେଷ ।

କଟାଳ, ବ. (ଦେଶଜ) ଓଜନ, ପରିମାଣ; ବଟକରା; ଜିଦ୍; ଘନଘନ ଅନୁରୋଧ ।

କଟାସ, ବ. (ଦେଶଜ) ବନ୍ୟ ବିଡ଼ାଲ ।

କଟାହ, ବ. ପୁଂ. (କଟ୍-ଆ-ହନ୍-ଅ) କରେଇ; ପଲମ; ତେଲଉଣି; କଚ୍ଛପଖୋଳ; ଶିଶୁ ମହିଷ; ଦ୍ୱୀପବିଶେଷ; ନରକବିଶେଷ ।

କଟି, କଟୀ, ବ. ସ୍ତ୍ରୀ. ପୁଂ. (କଟ-ଇ, ଈ) ଅଣ୍ଟା; ହସ୍ତି ଗଣ୍ଡସ୍ଥଳ ।

କଟିତ୍ର, ବ. ନ. (କଟି-ତ୍ରୈ-ଅ) କଟିବସ୍ତ୍ର, କମରବନ୍ଧ, କାଞ୍ଚୀ, ରସନା ।

କଟିପ୍ରୋଥ, ବ. ପୁଂ. (କଟି-ପ୍ରୋଥ୍-ଅ) କଟିଦେଶସ୍ଥ ମାଂସପିଣ୍ଡ ।

କଟିବନ୍ଧ, ବ. ପୁଂ. (କଟି-ବନ୍ଧ୍-ଅ) ଯେଉଁ ସୂତ୍ରାଦିଦ୍ୱାରା କଟି ବନ୍ଧନ କରାଯାଏ, କଟିସୂତ୍ର; ଭୂଗୋଳରେ ପୃଥିବୀର ମଧ୍ୟସ୍ଥାନବେଷ୍ଟିତ କଳ୍ପିତରେଖା ।

କଟିସୂତ୍ର, ବ. ନ. (କଟି-ସୂତ୍ର) କଟିବନ୍ଧ; ଚନ୍ଦ୍ରହାର, ଗୋଠ ।

କଟୀତଳ, ବ. ପୁଂ. ନ୍ୟୁବଖଡ୍ଗ, ବଙ୍କା ଖଣ୍ଡା ।

କଟୁ, ବିଂ. (କଟ୍-ଉ) ରାଗୁଆ; ତିକ୍ତ; କର୍କଶ; ଉଗ୍ର; ପରଶ୍ରୀକାତର; ସୁରଭି; ଦୁର୍ନୀ; ଉଷ୍ଣ; କୁତ୍ସିତ । ବ. ପୁଂ. କଟୁତା ।

କଟୁଅଳ, ବ. (କତୁଆଲ ଶବ୍ଦର ଅପଭ୍ରଂଶ) ନଗରରକ୍ଷକ, ଶାନ୍ତିରକ୍ଷକ ।

କଟୁକ, ବି.ନ. (କଟୁ-କ) ତ୍ରିକଟୁ ; ଶୁଣ୍ଠି; ପିପ୍ପଳୀ; ମରିଚ । ପୁଂ. ସୁଗନ୍ଧତୃଣ; ନାଡ଼; କଟୁରସ; ପଟୋଳ; ଅର୍କଗଛ; କୁଟଜବୃକ୍ଷ ।

କଟୁକନ୍ଦ, ବି. ପୁଂ. ( କଟୁ-କନ୍ଦ ) ସଜନାବୃକ୍ଷ; ଅଦା; ରସୁଣ ।

କଟୁକା, ବି. ସ୍ତ୍ରୀ. ( କଟୁ-କଣ୍ ) ପାନ; ରାଇ-ସୋରିଷ; ତିକ୍ତଲାଉ ।

କଟୁକୀଟ, କଟୁକୀଟକ, ବି. ପୁଂ. ( କଟୁ-କୀଟ,କ ) ମଶକ, ମଶା ।

କଟୁକ୍ୱାଣ, ବି. ପୁଂ. (କଟୁ-କ୍ୱାଣ) ଟିଟ୍ଟିଭ ପକ୍ଷୀ ।

କଟୁଗ୍ରନ୍ଥି, ବି. ପୁଂ. ( କଟୁ-ଗ୍ରନ୍ଥି ) ପିପ୍ପଳୀ ମୂଳ, ଶୁଣ୍ଠି ମୂଳ ।

କଟୁଚ୍ଛଦ, ବି. ପୁଂ. (କଟୁ-ଛଦ) ତଗରବୃକ୍ଷ ।

କଟୁତା, ବି. ସ୍ତ୍ରୀ. ( କଟୁ-ତା ) ଉଗ୍ରତା, ତୀକ୍ଷ୍ଣତା; ଅପ୍ରିୟତା; କାର୍କଶ୍ୟ, ପରୁଷତା ।

କଟୁତିକ୍ତକ, ବି. ପୁଂ. ଶଣବୃକ୍ଷ ; ଚିରେଇତା ; ଭୂନିମ୍ବ ।

କଟୁଫଳ, ବି. ପୁଂ. (କଟୁ-ଫଳ) ପଟୋଳ ।

କଟୁଭଙ୍ଗ, ବି. ପୁଂ. ଆର୍ଦ୍ରକ; ଶୁଣ୍ଠି ।

କଟୁଭାଷୀ, ବିଂ. ( କଟୁ-ଭାଷୀ ) ଯେ କଟୁ ବାକ୍ୟ କହେ ।

କଟୁମଞ୍ଜରିକା, ବି. ସ୍ତ୍ରୀ. (କଟୁ-ମଞ୍ଜରୀ) ଅପାମାର୍ଗ ।

କଟୁର, ବି. ନ. ତକ୍ର, ଘୋଳଦହି ।

କଟୁରବ, ବି. ପୁଂ. (କଟୁ-ରବ) ବେଙ୍ଗ, ଭେକ ।

କଟୁରି, ବି. (କଟ୍ଟାର ଶବ୍ଦଜ) ଶସ୍ତ୍ରବିଶେଷ ।

କଟୁବାର୍ତ୍ତାକୀ, ବି. ସ୍ତ୍ରୀ. ଶ୍ୱେତକଣ୍ଟକାରୀ ।

କଟୁବୀଜା, ବି. ସ୍ତ୍ରୀ. ପିପ୍ପଳୀ ।

କଟୁସ୍ନେହ, ବି. ନ. ( କଟୁ-ସ୍ନେହ ) ସୋରିଷ; ଶ୍ୱେତସର୍ଷପ ।

କଟୋରା, ବି. ନ. (କଟ୍-ଓରନ୍-ଆ) ମୃଣ୍ମୟପାତ୍ର; ତାଟିଆ, ଗିନା ।

କଟ୍‌କଟ୍, ବି. (ଦେଶଜ) ଅବ୍ୟକ୍ତ ଶବ୍ଦ ।

କଟ୍‌ମଟିଆ, ବିଂ. ( ଦେଶଜ ) ଗୋଳମାଳିଆ; କଠିନ; ଶକ୍ତ; ଦୁରୂହ ।

କଟ୍ଟାର, ବି. ପୁଂ. (କଟ୍-ଋ-ଅ) କଟୁରି ।

କଠ, ବି. ପୁଂ. (କଠ୍-ଅ) ଉପନିଷଦ୍‌ବିଶେଷ; ମୁନିବିଶେଷ; ଋକ୍‌ବେଦ ।

କଠାଉ, ବି. (ଦେଶଜ) କାଷ୍ଠପାଦୁକା । ଯଥା—

ଶିରେ ଯେନ ବୃକ୍ଷ ଅବ ଘା କଠାଉ ।

କଠିଞ୍ଜର, ବି. ପୁଂ. (କଠିନ-ଜୃ-ଅ) ତୁଳସୀ-ଗଛ; ପଲାଶଗଛ ।

କଠିନ, ବିଂ. (କଠ୍-ଇନ) ଦୃଢ଼, ଶକ୍ତ; ନିଷ୍ଠୁର; ନିର୍ଦ୍ଦୟ; ଦୁରୂହ; ଦୁଃସହ; ତୀକ୍ଷ୍ଣ; ବିଷମ; ଭୟାନକ ।

କଠିନତା, ବି. ସ୍ତ୍ରୀ. (କଠିନ-ତା) କାଠିନ୍ୟ; କଠିନତ୍ୱ; ଦୃଢ଼ତା; ଦୁରୂହତା;, ଦୁର୍ବୋ-ଧତା; ନିର୍ବୋଧତା; ନିର୍ଦ୍ଦୟତା, ନିଷ୍ଠୁରତା; ତୀକ୍ଷ୍ଣତା; ଦୁଃସହତା; ଭୟାନକତା ।

କଠିନୀ, କଠିନିକା, ବି. ସ୍ତ୍ରୀ. (କଠିନ୍-ଈ,ଅକ,ଆ) ଖଡ଼ି; ଖଡ଼ିମାଟି । ଯଥା—

ଗୁଣିଗଣଗଣନାରମ୍ଭେ, ନ ପତତି କଠିନୀ
ସସମ୍ଭ୍ରମାଦ୍ଯସ୍ୟ । ହିତୋପଦେଶ ।

କଠିନପୃଷ୍ଠ, ବି. ପୁଂ. (କଠିନ-ପୃଷ୍ଠ) କୂର୍ମ, କଚ୍ଛପ, କଇଁଛ ।

କଠେର, ବି. (କଠ୍-ଏର) କୃଚ୍ଛ୍ରଜୀବୀ, ଦରିଦ୍ର ।

କଠୋର, ବିଂ. (କଠ୍-ଓର) କଠିନ, ଦୃଢ଼, ଶକ୍ତ; ପୂର୍ଣ୍ଣ । ଯଥା—

ମଧୁରମୂର୍ତ୍ତିରସ୍ୱଂ ରଘୁନନ୍ଦନଃ
କମଠପୃଷ୍ଠକଠୋରମିଦଂ ଧନୁଃ । ମ. ନା.

କଡ଼କ, ବି. ନ. (କଡ଼୍-ଅକ) କରକଚ ଲବଣ ।

କଡ଼୍‌କଡ଼୍, ବି. ( ଦେଶଜ ) କଠିନ ଦ୍ରବ୍ୟର ଶବ୍ଦ ।

କଡ଼ଙ୍କର, କଡ଼ଙ୍ଗର, ବି. ପୁଂ. ( କଡ଼୍-ଅଙ୍କ-ର, ଅଙ୍ଗ-ର ) ତଣ୍ଡୁ, କୁଣ୍ଡା, ଭୁଷି, ନେଡ଼ା । ଯଥା—

ନୀବାରପାକାଦିକଡ଼ଙ୍ଗରୀୟୈଃ । ର. ବ.

କଡ଼ମଡ଼, ବି. (ଦେଶଜ) କଠିନ ପଦାର୍ଥର ଚର୍ବଣ ଶବ୍ଦ ।

କଡ଼ମ୍ବ, ବି. ପୁଂ. ( କଡ୍-ଅମ୍ବ ) ଶାକାଦିର ଡଙ୍କ; ଅଗ୍ରଭାଗ; କଳକା; କଦମ୍ବ ।

କଡ଼ମ୍ବା, ବି. ( ଦେଶଜ ) ବନ୍ୟମୂଳବିଶେଷ; ବୃକ୍ଷାଦିର ଗଜା, ଅଙ୍କୁର ।

କଡ଼ମ୍ବୀ, ବି. ସ୍ତ୍ରୀ. (କଡମ୍ବ-ଈ) କଳମ୍ବ ଶାଗ ।

କଡ଼ା, ବିଂ. (ପ୍ରାକୃତଜ) (କଠୃଶବ୍ଦଜ) କଠୁ, ଉଗ୍ର, ତୀକ୍ଷ୍ଣ; କଠୋର । ବି. ପରିମାଣବିଶେଷ; ଏକ ଗଣ୍ଡାର ଚତୁର୍ଥାଂଶ; ଧାତୁନିର୍ମିତ ବଳୟ ।

କଡ଼ି, ବି. (ଦେଶଜ) କଡ଼କାଠ ।

କଢ଼, ବି. (ଦେଶଜ) ମୁକୁଳ ।

କଢ଼ାଇବା, କ୍ରି. ବି. ( ଦେଶଜ ) ଦେଖାଇବା । ଯଥା—

ପଥ କଢ଼ାଇ ନେବ ।

କଣ, କଣା, କଣିକା, ବି. ପୁଂ. ସ୍ତ୍ରୀ. ( କଣ୍= ସଙ୍କୋଚ କରିବା-ଅ, ଆ, ଅକ-ଆ) ସୂକ୍ଷ୍ମଅଂଶ, ରେଣୁ, ଗୁଣ୍ଡା ; ଶସ୍ୟର କ୍ଷୁଦ୍ରାଂଶ ; ଜୀର ; ପିପ୍ପଳୀ ।

କଣ ? ଅଂ. (କିମ୍ ଶବ୍ଦଜ) କି ? (ପ୍ରଶ୍ନାର୍ଥକ) ବି. (କୋଣ ଶବ୍ଦଜ) ।

କଣଜୀର, ବି. ପୁଂ. ଶ୍ୱେତଜୀରକ, ଧଳା ଜୀର ।

କଣପ, ବି. ପୁଂ. ( କଣ-ପା-ଅ ) ଯନ୍ତ୍ରବିଶେଷ, ବନ୍ଧୁକ ।

କଣଭ, ବି. ପୁଂ. (କଣ-ଭା-ଅ)ଜ୍ୟୋତିର୍ମୟ କୀଟ-ବିଶେଷ ।

କଣା, ବିଂ. (ପ୍ରା) ( କାଣଶବ୍ଦଜ ) ଏକ ଚକ୍ଷୁ-ହୀନ, ଯାହାର ଗୋଟିଏ ଚକ୍ଷୁ ନଷ୍ଟ ହୋଇ-ଥାଏ । ଯଥା—

କଣା ଦରେ ଯଦି ଦୂତା ଥାଏ,
ବଧିର ବାଜଣା ବଜାଉଥାଏ ।

ବି. ଗର୍ତ୍ତ, ଛିଦ୍ର, ରନ୍ଧ୍ର ।

କଣାଟୀନ, } ବି. ପୁଂ. ( କଣ-ଅଟ୍-ଈନ ଓ
କଣାଟୀର, } ଈରନ୍ ) ଖଞ୍ଜନ ପକ୍ଷୀ ।

କଣାଦ, ବି. ପୁଂ. (କଣ=ଅଲ୍ପ-ଅଦ) ବୈଶେଷିକ ଦର୍ଶନପ୍ରଣେତା ମୁନି, ପରମାଣୁ ବିଷୟ ଏ ସ୍ଥିର କରିଥିଲେ; କାଶ୍ୟପ ମୁନି; ସୁନାରିବଣିଆ, ସ୍ୱର୍ଣ୍ଣକାର ।

କଣି, କଣୀ, ବି. ( ଦେଶଜ ) ବାଉଁଶର ଶାଖା; ( କଣ ଶବ୍ଦଜ ) ବିରି ମୁଗ ପ୍ରଭୃତିର କ୍ଷୁଦ୍ରାଂଶ ।

କଣିକା, ବି. ସ୍ତ୍ରୀ. (କଣ-ଅକ-ଆ) କ୍ଷୁଦ୍ର ଅଂଶ ; ଏକ କଣା ।

କଣୀଚ, ବି. ସ୍ତ୍ରୀ. (କଣ୍=ନୟନ ମୁଦ୍ରିତ କରିବା-ଈଚ) ଗୁଞ୍ଜା, କାଇଞ୍ଚ; ଶବ୍ଦ ।

କଣୀୟାନ୍, ବିଂ.(କଣ-ଈୟସ୍) ଅତିକ୍ଷୁଦ୍ର; କନିଷ୍ଠ ।

କଣେରା, କଣେରୁ, ବି. ସ୍ତ୍ରୀ. ( କଣ=ଗମନ କରିବା-ଏର, ଏରୁ ) ବେଶ୍ୟା; କରିଣୀ । ପୁଂ. କନିଅର ଗଛ ।

କଣ୍ଠ, ବି. ( ଦେଶଜ ) ପରିମାଣ ନିର୍ଦ୍ଦେଶ; ମାପ । ଯଥା—

କଣ୍ଠ କରି ବେନ୍ପାଣି ନ ଥିଲେ ଗୋ ସଜନ ।

କଣ୍ଟକ, ବି. ପୁଂ. ନ. ( କଣ୍ଟ-ଅକ ) କଣ୍ଟା; କ୍ଷୁଦ୍ର ଶତ୍ରୁ ; ମାଛର ହାଡ଼; ରୋମାଞ୍ଚ; ସୂଚ୍ୟଗ୍ର; ଯାହା କ୍ଷତିକର ବା ବିରକ୍ତିଜନକ । ବିଂ. କ୍ଲେଶଦାୟକ ।

କଣ୍ଟକଦେହୀ, (Echinodermata) ଯେଉଁ-ମାନଙ୍କର ଦେହୋପରି କଣ୍ଟକ ଥାଏ । ଯଥା—ଷ୍ଟାର ଫିସ୍ (Star fish) ।

କଣ୍ଟକପକ୍ଷକ, (Acanthoptera) ବି.(କଣ୍ଟକ-ପକ୍ଷକ) ଯେଉଁ ଜନ୍ତୁଙ୍କ ଡେଣାରେ ଏକ ବା ତଦଧିକ କଣ୍ଟକାକୃତ ଅସ୍ଥିଶଳାକା ଥାଏ । ଯଥା—କଉମାଛ ।

କଣ୍ଟକଫଳ, } ବି. ପୁଂ. ପଣସଗଛ; ଧୁତୁରାଗଛ ।
କଣ୍ଟକିଫଳ, }
କଣ୍ଟକୀଫଳ, } ନ. ପଣସଫଳ ।

କଣ୍ଟକାରିକା, } ବି. ସ୍ତ୍ରୀ. (କଣ୍ଟକ-ଋ-ଅକ-ଆ,
କଣ୍ଟକାରୀ, } ଈ) ଅଙ୍କରାନ୍ତି ନାମକ ଗୁଳ୍ମ-ଜାତୀୟ ବୃକ୍ଷ; ଅଙ୍କରାନ୍ତିଫଳ ।

କଣ୍ଟକାଶନ, ବି. ପୁଂ. (କଣ୍ଟକ-ଅଶନ, ଯେ କଣ୍ଟା ଭକ୍ଷଣ କରେ) ଉଷ୍ଟ୍ର, ଓଟ ।

କଣ୍ଟକାତ, ବି°. ( କଣ୍ଟକ-ଇତ ) ରୋମାଞ୍ଚିତ; କଣ୍ଟକଯୁକ୍ତ ।

କଣ୍ଟକଲ, ବି. ପୁଂ. (କଣ୍ଟକ-ଇଲ) କଣ୍ଟାବାଉଁଶ ।

କଣ୍ଟକୀ, ବି. ପୁଂ. ( କଣ୍ଟକ-ଇନ୍ ) ମତ୍ସ୍ୟବିଶେଷ; ଖର୍ଜୁରାଦି ବୃକ୍ଷ; କଣ୍ଟାବାଉଁଶ । ବି°. କଣ୍ଟକ-ଯୁକ୍ତ ।

କଣ୍ଠି, ବି. (ଦେଶଜ) ଲଙ୍ଗଳସ୍ଥ କାଷ୍ଠଖଣ୍ଡବିଶେଷ ।

କଣ୍ଠିକିଲା, ବି. (ଦେଶଜ) ଲଙ୍ଗଳସଂଯୁକ୍ତ କଣ୍ଠିର କୀଲକ ।

କଣ୍ଠ, ବି. ପୁଂ. (କଣ୍-ଠ) ମଦନବୃକ୍ଷ । ଣ୍ଠା-ଣ୍ଠୀ, ନ. ସ୍ତ୍ରୀ. ଗଳଦେଶ; ଗଳା; କଣ୍ଠଧ୍ୱନି; ନିକଟ ।

କଣ୍ଠଗତ, କଣ୍ଠାଗତ, ବି°. ( କଣ୍ଠ-ଗତ, ଆଗତ ) କଣ୍ଠ ପର୍ଯ୍ୟନ୍ତ ଆଗତ; କଣ୍ଠ ପର୍ଯ୍ୟନ୍ତ ଉପସ୍ଥିତ ।

କଣ୍ଠ, (ଣ୍ଠା) ଗତପ୍ରାଣ, ବି°. (କଣ୍ଠ (ଆ) ଗତ, ପ୍ରାଣ ଯାହାର) ଯାହାର ପ୍ରାଣ ବାହାରିବାକୁ ଉପକ୍ରମ କରୁଅଛି, ଯାହାର ପ୍ରାଣ କଣ୍ଠ ପର୍ଯ୍ୟନ୍ତ ଆସିଅଛି । ଯଥା—

> କଣ୍ଠାଗତ ପ୍ରାଣ ହେଲେ ବଡ଼ ଲୋକ,
> ବେଳେବେଳେ ନ ଛାଡ଼ନ୍ତି ନିଜ ଟେକ । ଋ. ବ.

କଣ୍ଠନାଳୀ, ବି. ସ୍ତ୍ରୀ. ( କଣ୍ଠ-ନାଳୀ ) ଗଳାର ନଳୀ, ଗଳାମଧ୍ୟସ୍ଥ ଛିଦ୍ର ।

କଣ୍ଠନୀଡ଼କ, ବି. ପୁଂ. ଚିଲ୍ଲ ।

କଣ୍ଠଭୂଷା, ବି. ସ୍ତ୍ରୀ. ( କଣ୍ଠ-ଭୂଷା=ଆଭରଣ ) ମାଳା; ହାର; କଣ୍ଠି ।

କଣ୍ଠସୂତ୍ର, ବି. ନ. ମାଳା; ଆଲିଙ୍ଗନବିଶେଷ ।

କଣ୍ଠସ୍ଥ, ବି°. (କଣ୍ଠ-ସ୍ଥା-ଅ) ମୁଖସ୍ଥ, ଯାହା ଉତ୍ତମ ଅଭ୍ୟସ୍ତ; କଣ୍ଠରେ ଯାହା ପ୍ରବେଶ କରିଅଛି ।

କଣ୍ଠା, କଣ୍ଠୀ, ବି. ସ୍ତ୍ରୀ. ( କଣ-ଠ-ଆ-ଈ ) ଗଳ-ଦେଶ; ଗଳା; ( ପ୍ରାକୃତିକ ) କଣ୍ଠାଭରଣ-ବିଶେଷ ।

କଣ୍ଠାଳ, ବି. ପୁଂ. ( କଣ୍ଠ-ଅଲ୍-ଅ ) ଓଳ୍ଚ, ଶୂରଣ; ଯୁଦ୍ଧ; ଉଷ୍ଟ୍ର; ଅରିତ୍ର ।

କଣ୍ଠିକା, କଣ୍ଠୀ, ବି. ସ୍ତ୍ରୀ. (କଣ୍ଠୀ-କ-ଆ) ଏକାବଳୀ ମାଳା, କଣ୍ଠାଭରଣ; ଅଶ୍ୱର କଣ୍ଠବେଷ୍ଟନ ରଜ୍ଜୁ ।

କଣ୍ଠୀରବ, ବି. ପୁଂ. ( କଣ୍ଠୀ-ରବ ) କପୋତ; ସିଂହ; ମତ୍ତହସ୍ତୀ । ଯଥା—

> କଣ୍ଠୀରବ ପ୍ରାୟେ ଗର୍ଜ କରି,
> କରେ ଗୃପୋଡ଼େ ମାରିଲେ ହରି । ଋ. ବ.

କଣ୍ଠେକାଳ, ବି. ପୁଂ. (କଣ୍ଠେ-କାଳ=କୃଷ୍ଣବର୍ଣ୍ଣ) ଶିବ, ନୀଳକଣ୍ଠ; ଏହାଙ୍କ କଣ୍ଠରେ କୃଷ୍ଣବର୍ଣ୍ଣ ଚିହ୍ନ ଅଛି; ସମୁଦ୍ର ମନ୍ଥନ ଉତ୍ତାରୁ ବିଷ ପାନ କରି ଏହାଙ୍କ କଣ୍ଠ ନୀଳବର୍ଣ୍ଣ ହୋଇଅଛି ।

କଣ୍ଠ୍ୟ, ବି°. ( କଣ୍ଠ-ଯ ) କଣ୍ଠରୁ ଉଚ୍ଚାରିତ ବର୍ଣ୍ଣ, ଅ, ଆ, ହ ଇତ୍ୟାଦି; କଣ୍ଠସମ୍ବନ୍ଧୀୟ ।

କଣ୍ଡବ, ବି. ( ଦେଶଜ ) ଅନ୍ତ୍ୟଂ କାଛବିଶେଷ, ବାଉଁରିଠାରୁ ନୀଚ ପାଣଠାରୁ ଉଚ୍ଚ ଜାତି ।

କଣ୍ଡନ, ବି. ନ. ( କନ୍ଡ୍-ଅନ ) ଛାଣିବାର, ନିସ୍ତୁଷ କରିବାର ।

କଣ୍ଡନୀ, ବି. ସ୍ତ୍ରୀ. (କଣ୍ଡନ-ଈ) ଉଦୂଖଳ; ଢିଙ୍କି-ଭଉଣୀ; ମୂଷଳ ।

କଣ୍ଡୁ, ବି. ପୁଂ. ( କଣ୍ଡୁ-ଉ ) ମୁନିବିଶେଷ । ନ. କୁଣ୍ଡିଆ; କୁଣ୍ଡେଇବାର ।

କଣ୍ଡୂ, କଣ୍ଡୂତି, ବି. ସ୍ତ୍ରୀ. (କଣ୍ଡୂ-ତି) କୁଣ୍ଡିଆ; କୁଣ୍ଡେଇବାର ।

କଣ୍ଡୂୟନ, ବି. ନ. ( କଣ୍ଡୂ-ଯ-ଅନ ) କୁଣ୍ଡିଆ, କୁଣ୍ଡେଇବାର ।

କଣ୍ଡୂୟମାନ, ବି°. (କଣ୍ଡୂ-ଆନ-ଅ) ଘର୍ଷଣକାରୀ ।

କଣ୍ଡୂରା, ବି. ସ୍ତ୍ରୀ. (କଣ୍ଡୂ-ରା-ଅ) ବାଇଡଙ୍କ ଗଛ ।

କଣ୍ଡୂଳ, ବି°. ( କଣ୍ଡୂ-ଲ ) କଣ୍ଡୂଯୁକ୍ତ; କୁଣ୍ଡିଆ ରୋଗୀ ।

କଣ୍ଢାଇ, କଣ୍ଢେଇ, ବି. ( ଦେଶଜ ) (କନ୍ଧାଇ ଶବ୍ଦଜ କି ?) ପୁତ୍ତଳୀ; ଖେଳିବାପାଇଁ କାଷ୍ଠାଦି-ନିର୍ମିତ ମୂର୍ତ୍ତି । ଯଥା—

> କନକ ବର କହିବାର କଣ୍ଢାଇ,
> କନ୍ୟାବର ଦଉଁ ଦେଲ ଛଡ଼ାଇ । କୋ. ବ୍ର. ଗୀ.

କଣ୍ୱ, ବି. ପୁଂ. ( କଣ୍-ବ ) ସ୍ୱନାମପ୍ରସିଦ୍ଧ ମୁନି, ଶକୁନ୍ତଳାଙ୍କ ପାଳକପିତା । ନ. ପାପ ।

କଣ୍ୱସୁତା, ବି ସ୍ତ୍ରୀ. (କଣ୍ୱ-ସୁତା) ଶକୁନ୍ତଳା ।

କତମ, ବି°. (କିମ୍-ତମ) ଅନେକ ମଧ୍ୟରୁ କୌଣସି ଏକ ବସ୍ତୁ ବା ବ୍ୟକ୍ତି ।

କତର, ବି°. (କିମ୍-ତର) ଦୁଇ ମଧ୍ୟରୁ କୌଣସି ଏକ ବସ୍ତୁ ବା ବ୍ୟକ୍ତି ।

କତରା, ବି. (କର୍ତ୍ତନ-ଶବ୍ଦଜ) ଛୁଣ୍ଡ୍ରା ମଶିଣା ।

କତି, ବି°. ( କିମ୍-ଅତି ) କେତେ ଜଣ; କଯୃତ୍ ପରିମାଣ; (ଦେଶଜ) ନିକଟ, ପାଖ । ଯଥା—

ନହିଲ ସନ୍ଦେଶ ହେଲାଟି ଜାବେଶ,
ବାର୍ତ୍ତ ପ୍ରବେଶ ଜାନକୀ କତି ସେ ବଂଶୀଷ । ବୈ. ଚ.

କତିପୟ, ବି°. ( କତି-ଅୟ, ପ ଅଗମ ) କଯୃତ୍ ସଂଖ୍ୟକ, କେତେକ ।

କତିବିଧ, ବି°. (କତି-ବିଧ) କେତେ ପ୍ରକାରର ।

କତୁରି, ବି°. (କର୍ତ୍ତିତ ଶବ୍ଦଜ) ଛିନ୍ନ, ଯାହା କଟା ଯାଇଅଛି । ଯଥା—

କରୁସ କୁରୁଳ ଝଡ ବାଡେ ତଳେ ଅଛି ଅଛି । ଲ. ବ.

କତୁରି, କତୁରୀ, ବି. (କର୍ତ୍ତରୀ ଶବ୍ଦଜ) କାଟିବାର ଯନ୍ତ୍ରବିଶେଷ, ଛେଦନୀ । ଯଥା—

ପୁଣି ପକ୍ଷ ରୂହୁସ, ଗୃଡ ଦେବା ପର ଯୌବିଂଙ୍କକୁରୀ । ଲ. ଚ,

କତୁରିବା, କ୍ରି. ବି. (ପ୍ରାକୃତଜ) କର୍ତ୍ତନ କରିବା, କତୁରିଦ୍ୱାରା କାଟିବାର ।

କତୃଣ, ବି. ପୁଂ. ଦ୍ରିମକର୍ପୂର, ପାନ, ସୁଗନ୍ଧବୃକ୍ଷ ।

କତ୍ତୋୟ, ବି. ନ. (କୁ-ତୋୟ) ମଦ୍ୟ ।

କଥଂ, ଅଂ. ( କିମ୍-ଥଂ ) କିପ୍ରକାର; କାହିଁକି; ପ୍ରଶ୍ନ; ସମ୍ଭ୍ରମ; ନିନ୍ଦା; ହର୍ଷ; ଯତ୍ନ; ଘୃଣା; ଆହ୍ଲାଦ; ସମ୍ଭାବନା ।

କଥକ, ବିଂ. ( କଥ-ଅକ ) ବର୍ଣ୍ଣନାକାରକ ; କଥୋପଜୀବୀ; ଯେଉଁ ଲୋକ ସମସ୍ତଙ୍କ ସମକ୍ଷରେ ପୁରାଣ ବ୍ୟାଖ୍ୟା କରେ, ବକ୍ତା ।

କଥଞ୍ଚନ, କଥଞ୍ଚିତ୍, ଅଂ. ( କଥଂ-ଚନ, ଚିତ୍ ) କୌଣସି ପ୍ରକାରେ; କୌଣସି ଉପାୟରେ ।

କଥନ, ବି. ନ. ( କଥ୍-ଅନ ) କଥା, ଉକ୍ତି, କହିବାର ।

କଥନୀୟ, ବିଂ. (କଥ-ଅନୀୟ) ବକ୍ତବ୍ୟ, କହିବାର ଯୋଗ୍ୟ ।

କଥମ୍ଭୂତ, ବିଂ. (କଥଂ-ଭୂତ) କିପରି, କିପ୍ରକାର ।

କଥା, ବି. ସ୍ତ୍ରୀ. ( କଥ୍-ଅ-ଆ ) ବଚନ, ଉକ୍ତି; ଉଚ୍ଚାରଣ; କାହାଣି ।

କଥାପ୍ରସଙ୍ଗ, ବି. ପୁଂ. (କଥା-ପ୍ରସଙ୍ଗ) କଥାରମ୍ଭ, କଥୋପକଥନ; ବକ୍ତା; ବିଷବୈଦ୍ୟ; ବାତୁଳ ।

କଥାବାର୍ତ୍ତା, ବି. ସ୍ତ୍ରୀ. (କଥା-ବାର୍ତ୍ତା ) କଥୋପକଥନ, ସମ୍ଭାଷଣ ।

କଥିତ, ବିଂ.(କଥ୍-ତ) ଉକ୍ତ; ବର୍ଣ୍ଣିତ; ଉଚ୍ଚାରିତ ।

କଥୋପକଥନ, ବି. ନ. ( କଥା-ଉପକଥନ ) କଥାବାର୍ତ୍ତା, ଉକ୍ତି ପ୍ରତ୍ୟୁକ୍ତି ।

କଥ୍ୟ, ବିଂ. ( କଥ-ଯ ) ବକ୍ତବ୍ୟ, କହିବାର ଉପଯୁକ୍ତ ।

କଦ, ବି. ପୁଂ. (କ-ଦ) ଜଳଦ, ମେଘ ।

କଦକ, ବି. ପୁଂ. (କଦ-କ) ଚନ୍ଦ୍ରୁଆ, ବିତାନ ।

କଦକ୍ଷର, ବି. ନ. (କୁ-ଅକ୍ଷର) କୁତ୍ସିତ ଅକ୍ଷର । ବିଂ. ଯାହାର ହସ୍ତାକ୍ଷର କୁତ୍ସିତ ।

କଦନ, ବି. ନ. (କଦ୍-ଅନ) ପୀଡ଼ନ; ବିନାଶ; ମର୍ଦ୍ଦନ; ଯୁଦ୍ଧ; ପାପ; ମାରଣ ।

କଦନ୍ନ, ବି. ନ. (କୁ-ଅନ୍ନ) କୁତ୍ସିତ ଅନ୍ନ, ଅତି ଅପକୃଷ୍ଟ ଆହାରୀୟ ପଦାର୍ଥ ।

କଦମ୍, ବି. (ଯାବନିକ) ପଦଶ୍ରେ; ପାଦ; ଅଶ୍ୱଗତି-ବିଶେଷ । ଯଥା—

କାହିଁ ଅଶ୍ୱାରୋହୀ ଘେନ ଅଶ୍ୱବର,
କଦମେ ବୁଲାଇ ଦଉଇ ଚତୁର । ନ. କେ.

କଦମ୍ବ, ବି. ପୁଂ. (କଦ୍-ଅମ୍ବ) ସ୍ୱନାମପ୍ରସିଦ୍ଧ ବୃକ୍ଷ, ନୀପବୃକ୍ଷ । ନ. କଦମ୍ବଫୁଲ ।

କଦମ୍ବକ, ବି. ନ. (କଦମ୍ବ-କ) ସମୂହ । ଯଥା—

ପୃଥୁ କଦମ୍ବ କଦମ୍ବକ ରାଜତମ୍ । ରଘୁ ।

କଦର, ବି. ପୁଂ. (କ-ଦୃ-ଅ) ବବୁରଗଛ;କରତ; କରେଇ; ଉପାୟ; ଯତ୍ନ; ସୁବିଧା ।

କଦର୍ଥ, ବିଂ. (କୁ-ଅର୍ଥ) ବ୍ୟର୍ଥ, ନିରର୍ଥକ ; କୁତ୍ସିତ ଅର୍ଥକାରୀ । ପୁଂ. ଦୂଷିତ ଅର୍ଥ ।

କଦର୍ଥନ, ବ. ନ. ( କୁ-ଅର୍ଥନ ) ବିଡ଼ମ୍ବନା; ଅବମାନନା; ପୀଡ଼ାଦେବା ।

କଦର୍ଥିତ, ବିଂ. (କୁ-ଅର୍ଥିତ) ଦୂଷିତ ; ବିଡ଼ମ୍ବିତ ; କ୍ଳେଶିତ; ଘୃଣିତ ।

କଦର୍ଯ୍ୟ, ବିଂ. (କୁ-ଅର୍ଯ୍ୟ) କୁତ୍ସିତ; କୃପଣ; ନୀଚ, କ୍ଷୁଦ୍ର; ଲୋଭୀ ।

କଦଳ, ବ. ପୁଂ. ( କ-ଦଳ୍-ଅ ) ରମ୍ଭାବୃକ୍ଷ, କଦଳୀଗଛ । ନ. କଦଳୀଫଳ ।

କଦଳି, } ବ. ସ୍ତ୍ରୀ. (କଦଳ-ଇ, ଈ) ରମ୍ଭାବୃକ୍ଷ;
କଦଳୀ, } ରମ୍ଭାଫଳ; ମୃଗୀବିଶେଷ; ପତାକା; ହସ୍ତୀ ଉପର ନିଶାଣ ।

କଦା, ଅ.(କିମ୍-ଦା) କେବେ, କେଉଁସମୟରେ ।

କଦାକାର, କଦାକୃତ, ବିଂ. ( କୁ-ଆକାର, ଆକୃତ) ବିଶ୍ରୀ, ଯାହାର ଆକାର କୁତ୍ସିତ ।

କଦାଚ, ଅ. ( କଦାଚନଶବ୍ଦଜ ) କଦାଚତ୍, କେବେ ।

କଦାଚନ, କଦାଚତ୍, ଅ. (କଦା-ଚନ, ଚତ୍) କେବେ, କୌଣସି ସମୟରେ ।

କଦାଗ୍ରହ, ବ. ପୁଂ. ( କୁ-ଆଗ୍ରହ ) କୁତ୍ସିତ ଆଚରଣ,ଅନ୍ୟାୟ ଆଚରଣ,ଅଭଦ୍ର ଆଚରଣ । ବିଂ. କୁତ୍ସିତାଗ୍ରହୀ ।

କଦାଗ୍ରହୀ, ବିଂ. ( କୁ-ଆଗ୍ରହ-ଇନ୍ ) ଯାହାର ଆଚରଣ ମନ୍ଦ, ଅସଦାଗ୍ରହୀ ।

କଦାପି, ଅ. (କଦା-ଅପି) କେବେହେଁ, କେବେଁ; କୌଣସି ଏକ ସମୟରେ ।

କଦୁକ୍ତି, ବ. ସ୍ତ୍ରୀ. (କୁ-ଉକ୍ତି) କଟୂକ୍ତି; ଅଶ୍ଳୀଳ-ଉକ୍ତି ।

କଦୁଷ୍ଣ, ବିଂ. (କୁ-ଉଷ୍ଣ) ଈଷଦୁଷ୍ଣ, ଈଷଦୁଷ୍ଣ ।

କଦ୍ରଥ, ବ. ପୁଂ. (କୁ-ରଥ) କୁତ୍ସିତ ରଥ ।

କଦ୍ରୁ, ବ. ସ୍ତ୍ରୀ. ( କଦ୍-ରୁ ) ନାଗମାତା, ସର୍ପଜନନୀ; କାଶ୍ୟପ ଋଷିଙ୍କର ଅନ୍ୟତମ ଭାର୍ଯ୍ୟା । ବିଂ. ନାଗବିଶିଷ୍ଟ ; ପିଙ୍ଗଳବର୍ଣ୍ଣ ।

କନକ, ବ. ନ. (କନ୍-ଅକ) ସୁବର୍ଣ୍ଣ । ପୁଂ. ରକ୍ତବର୍ଣ୍ଣ ଫୁଲଗଛ; କିଂଶୁକବୃକ୍ଷ; ଚମ୍ପକ; ନାଗକେଶରବୃକ୍ଷ ।

କନକକ୍ଷାର, ବ. ପୁଂ. (କନକ-କ୍ଷାର) ସୋହାଗା, ଟାଙ୍କଣ ।

କନକଧ୍ୱଜ, ବ. ପୁଂ. ଧୃତରାଷ୍ଟ୍ରପୁତ୍ରବିଶେଷ । ବିଂ. ଯାହାର ଧ୍ୱଜା ସ୍ୱର୍ଣ୍ଣମୟ ।

କନକପ୍ରଭା, ବ. ସ୍ତ୍ରୀ. (କନକ ପ୍ରଭା) ସୁବର୍ଣ୍ଣ-ପ୍ରଭମା; ମହାଜ୍ୟୋତିଷ୍ମତୀ ଲତା ।

କନକପ୍ରସବା, ବ. ସ୍ତ୍ରୀ. (କନକ-ପ୍ରସବା) ସ୍ୱର୍ଣ୍ଣ-କେତକୀ ।

କନକମୟ, ବିଂ. (କନକ-ମୟ) ସ୍ୱର୍ଣ୍ଣମୟ, କନକ-ନିର୍ମିତ ।

କନକମହୀଧର, ବ. ପୁଂ. ( କନକ-ମହୀଧର ) ସୁବର୍ଣ୍ଣ ପର୍ବତ, ସୁମେରୁପର୍ବତ, ଅଦ୍ରିପର୍ବତ ।

କନକରସ, ବ. ପୁଂ. (କନକ-ରସ) ହରିତାଳ ।

କନକାଚଳ, ବ.ପୁଂ. (କନକ-ଅଚଳ) ସୁମେରୁ-ପର୍ବତ, ଅସ୍ତାଚଳ ।

କନକାଲୁକା, ବ. ସ୍ତ୍ରୀ. ( କନକ-ଆଲୁ-କା ) ସ୍ୱର୍ଣ୍ଣକଳସ, ସୁବର୍ଣ୍ଣଘଟ ।

କନକାହ୍ୱ, କନକାହ୍ୱୟ, ବ. ପୁଂ.(କନକ-ଆହ୍ୱା, ଆହ୍ୱୟ) ଧୁସ୍ତୂରଗଛ ; ନାଗକେଶରବୃକ୍ଷ ।

କନଖଳ, ବ. ପୁଂ. କୁରୁକ୍ଷେତ୍ରର ଉତ୍ତରସ୍ଥିତ ଗଙ୍ଗାଦ୍ୱାର ସମୀପସ୍ଥ ତୀର୍ଥବିଶେଷ ।

କନା, ବ. (କନ୍ଥାଶବ୍ଦଜ) ବସ୍ତ୍ରଖଣ୍ଡ, ଛିଣ୍ଡାଲୁଗା ।

କନିଆ, (କନ୍ୟା ଶବ୍ଦଜ) କୁମାରୀ; ମଙ୍ଗଳପାକ-ଠାରୁ ବିବାହ ଶେଷ ପର୍ଯ୍ୟନ୍ତ ଝିଅକୁ କନ୍ୟା କହନ୍ତି; କନ୍ୟାପାତ୍ର; ଦ୍ୱିତୀୟପକ୍ଷର (ସ୍ତ୍ରୀ) ।

କନିଷ୍ଠ, ବିଂ. (କନ୍-ଇଷ୍ଠ) ସାନ, ଛୋଟ, କ୍ଷୁଦ୍ର; ବୟସରେ ସାନ; ଅନୁଜ ।

କନିଷ୍ଠା, ବ. ସ୍ତ୍ରୀ. (କନିଷ୍ଠ-ଆ) କାଣୀଅଙ୍ଗୁଳି । ବିଂ. ଅନୁଜା; ବୟସରେ ସାନ; କ୍ଷୁଦ୍ର ।

କନୀ, ବ. ସ୍ତ୍ରୀ. (କନ୍-ଅ-ଈ) କନ୍ୟା, ଦୁହିତା ।

କନୀନିକା, ବ. ସ୍ତ୍ରୀ. ( କନ୍-ଈନ୍-କ-ଆ ) ଚକ୍ଷୁର ତାରା; କନିଷ୍ଠାଙ୍ଗୁଳି; କନିଷ୍ଠା ଭଗିନୀ ।

କନୀୟସୀ, ବି. ସ୍ତ୍ରୀ. (କନ୍-ଈୟସ୍-ଈ) କନିଷ୍ଠା-ଭଗିନୀ, ସର୍ବକନିଷ୍ଠା ।

କନୀୟାନ୍, ବିଂ. (କନ୍-ଈୟସ୍) ସର୍ବକନିଷ୍ଠ; ଅତିକ୍ଷୁଦ୍ର; କନିଷ୍ଠଭ୍ରାତା ।

କନ୍ତୁ, ବି. ପୁଂ. (କମ୍-ତୁ) କନ୍ଦର୍ପ; ଚିତ୍ତ ।

କନ୍ଥା, ବି. ସ୍ତ୍ରୀ. (କନ୍ଥ୍-ଅ) ଜୀର୍ଣ୍ଣବସ୍ତ୍ରରଚିତ ଆଚ୍ଛାଦନ; ମୃଣ୍ମୟଭିତ୍ତି, କାନ୍ଥ ।

କନ୍ଦ, ବି. ନ. (କନ୍ଦ୍-ଅ) ମୂଳ; ଅଙ୍କୁରବୃନ୍ତ । ପୁଂ. (କଂ-ଦ) ମେଘ; କର୍ପୂର; (ଦେଶଜ) ନବାତ, ଗୁଡ଼ବିକୁଣ୍ଡ; ଅସଭ୍ୟଜାତିବିଶେଷ ।

କନ୍ଦଠ, ବି. ନ. (କନ୍ଦ୍-ଅଠ) ଶ୍ୱେତପଦ୍ମ; ଧୂନା-ନାମକ ସୁଗନ୍ଧଦ୍ରବ୍ୟ ।

କନ୍ଦମାଳ, ବି. ଓଡ଼ିଶାର ଗଡଜାତବିଶେଷ ।

କନ୍ଦମୂଳ, ବି. ନ. ( କନ୍ଦ-ମୂଳ ) ମିଷ୍ଟମୂଳକ-ବିଶେଷ ।

କନ୍ଦର, ବି. ପୁଂ. ନ.(କଂ-ଦୃ-ଅ) ଦରୀ, ପର୍ବତ-ଗହ୍ୱର; ଅଙ୍କୁଶ; ଅଦା; ଓଲୁଅ । ଗହ୍ୱର-ଅର୍ଥରେ । ଯଥା—

> କନ୍ଦ୍ର ଫେଡ଼ ମୁଁ ଦେଖିଲି କନ୍ଦରେ,
> ଭେଦ ଦୂକା ବେଦୀ ରୂପାଙ୍କର ଘରେ । ନ. କେ.

କନ୍ଦରା, କନ୍ଦରୀ, ବି. ସ୍ତ୍ରୀ. (କନ୍ଦର-ଆ, ଈ) ପର୍ବତ ଗହ୍ୱର, ଦରୀ । ଯଥା—

> ଭ୍ରମିଲେ ଅଷ୍ଟଶ ଗିରି କାନ୍ତାର କନ୍ଦରା । ମ.ପା.

କନ୍ଦର୍ପ, ବି. ପୁଂ. (କଂ-ଦୃପ୍-ଅ) କାମ, ଚିତ୍ତଜ, ମଦନ ।

କନ୍ଦର୍ପକୂପ, ବି. ନ.(କନ୍ଦର୍ପ-କୂପ)ଯୋନି,ସ୍ତ୍ରୀଚିହ୍ନ ।

କନ୍ଦର୍ପମଥନ, ବି. ପୁଂ. ( କନ୍ଦର୍ପ-ମଥ୍-ଅନ ) ମହାଦେବ; କାମନିବାରକ ବସ୍ତୁ ।

କନ୍ଦଳ, ବି. ବି. ( କଂ-ଦଳ୍-ଅ ) କଳଧ୍ୱନି; ଚନ୍ଦ୍ରଦେଶ;(କଂ=କମନୀୟ-ଦଳ=ପତ୍ର) ପୁଂ. ନୂତନ ଅଙ୍କୁର; କଳହ; ବିବାଦ; ଯୁଦ୍ଧ; ସ୍ୱର୍ଣ୍ଣ; ସମୂହ; ପତାକା; ପଦ୍ମବୀଜ । ବି. ନ. କନ୍ଦଳୀ-ପୁଷ୍ପ ।

କନ୍ଦଳୀ, ବି. ସ୍ତ୍ରୀ. (କନ୍ଦ=ମୂଳ-ଲା=ଗ୍ରହଣାର୍ଥ ଲା-ଧାତୁଜ-ଈ) ମୃଗବିଶେଷ; (କ=ବାୟୁ-ଦଳ=ଦଳିତ-ଈ) ଭୂମିକନ୍ଦଳୀବୃକ୍ଷ; ପାଣି-କେନ୍ଦୁଳୀଗଛ; ପତାକା; ପଦ୍ମବୀଜ; ପାଣି-କେନ୍ଦୁଳୀଫୁଲ । ଯଥା—

> ଏଥି ବହଣିତ ନବକନ୍ଦଳୀ ବୃନ୍ଦ,
> ଯୁକ୍ତ ତହିଁ କଲମିକ୍ତ ମୂର୍ତ୍ତିମାର ଧୂମ ।

କନ୍ଦଳପ୍ପା, ବିଂ. (କନ୍ଦଳଶବ୍ଦଜ) କଳହ ।

କନ୍ଦା, ବିଂ.(ସ୍କନ୍ଧଶବ୍ଦଜ) ଅଙ୍ଗୁଳିପ୍ରଭୃତି ସନ୍ଧିସ୍ଥାନ-ଜାତ ସ୍ଫୋଟରୋଗବିଶେଷ; ବୃକ୍ଷର ଅଗ୍ରସ୍ଥ କୋମଳ ଅଂଶବିଶେଷ, ଯଥା—ଖଜୁରିକନ୍ଦା, ବେତକନ୍ଦା ।

କନ୍ଦି, କନ୍ଦୀ, ବି. (କେନ୍ଦ୍ରଶବ୍ଦଜ) ଗଳି; ଦୁଇ ଘରର ମଧ୍ୟବର୍ତ୍ତୀ ସଙ୍କୀର୍ଣ୍ଣ ସ୍ଥାନ ।

କନ୍ଦୁ, ବି. ପୁଂ. (ସ୍କନ୍ଦ୍-ଉ) ଲୌହମୟ ପାକପାତ୍ର; କରେଇ; ତାଉଆ ।

କନ୍ଦୁକ, କନ୍ଦୂକ, ବି. ପୁଂ. ( କନ୍ଦ୍-ଉ-କ ) ଖେଳିବାର ଗୁଟିକା; ବର୍ତ୍ତୁଳାକାର ଖେଳନା; ପେଣ୍ଡୁକ । ଯଥା—

> କନ୍ଦୁକକ୍ରୀଡ଼ାରେ ସୁନ୍ଦରୀ ଅଳ ରତ ଏ ସ୍ଥଳେ,
> ଉଠନ୍ତି ପଡ଼ନ୍ତି କନ୍ଦୁକ ଗୃହ୍ଣ କରକମଳେ । ଚ. ଷ୍ଟ.

କନ୍ଦେଇବା, କ୍ରି. ବି. (କ୍ରନ୍ଦନଶବ୍ଦଜ) ରୋଦନ କରାଇବା, କ୍ରନ୍ଦନ କରାଇବା ।

କନ୍ଦୋତ, ବି. ପୁଂ. ଶ୍ୱେତପଦ୍ମ ।

କନ୍ଧର, ପୁଂ. } ବି.(କଂ=ମସ୍ତକଜଳ-ଧର,ଆ)
କନ୍ଧରା, ସ୍ତ୍ରୀ. } ଗ୍ରୀବା, ଗଳା, ବେକ; ମେଘ ।

କନ୍ଧି, ବି. ପୁଂ. (କଂ-ଧା-ଇ) ସମୁଦ୍ର । ସ୍ତ୍ରୀ. ଗ୍ରୀବା ।

କନ୍ୟକା, କନ୍ୟା, ବି. ସ୍ତ୍ରୀ. (କନ୍ୟା-ଅକ-ଆ, କନ୍-ଯ-ଆ) ପୁତ୍ରୀ, ଦଶବର୍ଷବୟସ୍କା କୁମାରୀ; ଅବିବାହିତା ସ୍ତ୍ରୀ; ନାରୀ; କନ୍ୟା ବା ଷଷ୍ଠ ରାଶି; ଗୌରୀ; କନ୍ୟକା=ଚକ୍ଷୁମଧ୍ୟସ୍ଥ ପିତୁଳା ।

କନ୍ୟାକୁବ୍ଜ, ବି. ସ୍ତ୍ରୀ. (କନ୍ୟା-କୁବ୍ଜ) କାନ୍ୟକୁବ୍ଜ ଦେଶ; ଏହି ନଗରର ରାଜା କୁଶ ଲବଙ୍କର ୧୦୦ କନ୍ୟା ଥିଲେ; ପବନ ସେମାନଙ୍କର ରୂପ ଲାବଣ୍ୟରେ ମୋହିତ ହୋଇ ସେମାନଙ୍କ ନିକଟରେ ସ୍ୱ ଅଭିପ୍ରାୟ ବ୍ୟକ୍ତ କରିଥିଲେ, କିନ୍ତୁ ସେମାନେ ପବନର ମନୋରଥ ପୂର୍ଣ୍ଣ ନ କରିବାରୁ ତାହାଙ୍କର ଅଭିଶାପରେ ସେମାନେ କୁବ୍ଜ ହୋଇ ଯାଇଥିବାରୁ ପ୍ରସିଦ୍ଧି ଅଛି ।

କନ୍ୟାଟ, ବ. ପୁଂ. ( କନ୍ୟା-ଅଟ୍-ଅ ) ନାରୀ-
ମାନଙ୍କର ବାସଗୃହ ।
କନ୍ୟାତୀର୍ଥ, ବ. ନ. କୁରୁକ୍ଷେତ୍ରସ୍ଥିତ ତୀର୍ଥବିଶେଷ ।
କନ୍ୟାଦାନ, ବ. ସ୍ତ୍ରୀ. (କନ୍ୟା-ଦାନ) ବିଧିପୂର୍ବକ
ବରହସ୍ତରେ କନ୍ୟା ସମ୍ପ୍ରଦାନ ।
କନ୍ୟାଧନ, ବ.ନ. (କନ୍ୟା-ଧନ) କନ୍ୟାକାଳଦ୍ବାରେ
ଲବ୍ଧଧନ, ସ୍ତ୍ରୀଧନବିଶେଷ ।
କନ୍ୟାନ୍ତଃପୁର, ବ. ନ. ( କନ୍ୟା-ଅନ୍ତଃପୁର )
ଅନ୍ତଃପୁରର ଯେଉଁ ଅଂଶରେ ରାଜକୁମାରୀ-
ମାନେ ବାସ କରନ୍ତି ।
କପଟ, ବ. ପୁଂ. (କ=ବ୍ରହ୍ମା-ପଟ=ଗମନ କରିବା-
ଅ, ଅଥବା, କ=ମସ୍ତକ-ପଟ=ବସ୍ତ୍ର) ଛଳ;
ଶଠତା, ବଞ୍ଚନା ।
କପଟକମଳ, ବ. ପୁଂ. (କ-ପଟ୍-ଅ-କମଳ) ମାୟା-
ମୃଗ ।
କପଟଚାରୀ, ବି. (କପଟ-ଚର୍-ଇନ୍) ଛଦ୍ମବେଶୀ,
କାପଟିକ ।
କପଟୀ, ବି. ( କପଟ-ଇନ୍ ) ବଞ୍ଚକ, ଶଠ,
ପ୍ରତାରକ ।
କପର୍ଦ୍ଦ, କପର୍ଦ୍ଦକ, ବ. ପୁଂ. ( କ-ପୃ-ଦ, କ )
ଶିବଜଟା; କଉଡ଼ି ।
କପର୍ଦ୍ଦୀ, ବ. ପୁଂ. (କପର୍ଦ୍ଦ=ଜଟା-ଇନ୍) ଶିବ,
ମହାଦେବ । ଯଥା—

କଳଙ୍କ ଥିଲେ ଶୀତକରର ସବୁହ ହୃଦ,
କପର୍ଦ୍ଦି ମସ୍ତକ ଭୂଷଣ ଗୋ । ର. ଭ.

କପା, ବ. (କାର୍ପାସ ଶବ୍ଦଜ) ତୁଳାବୃକ୍ଷ; ତୁଳା ।
କପାଟ, କବାଟ, ବ. ପୁଂ. (କ-ପଟ୍-ଅ, ପ=ବ)
ଦ୍ୱାରର ଆବରଣ ।
କପାଳ, ବ. ପୁଂ. ନ. (କ-ପାଳ) ମୁଣ୍ଡର ଖପୁରୀ,
ଲଲାଟ; କଳସର ଅର୍ଦ୍ଧାଂଶ; ଭିକ୍ଷାପାତ୍ର;ଶରାବ-
ସମୂହ; (ପ୍ରଚଳିତ କଥାରେ) ଅଦୃଷ୍ଟ, ଭାଗ୍ୟ ।
କପାଳଭୃତ୍, ବ. ପୁଂ. ( କପାଳ-ଭୃତ୍ ) ଶିବ,
ମହାଦେବ; ଭିକ୍ଷୁକ ।
କପାଳମାଳିନୀ, ବ. ସ୍ତ୍ରୀ. (କପାଳ-ମାଳା-ଇନ୍-ଈ)
ଦୁର୍ଗା, କାଳୀ ।
କପାଳମାଳୀ, ବ. ପୁଂ. ( କପାଳ-ମାଳା-ଇନ୍ )
ଶିବ ।
କପାଳମୋଚନ, ବ. ନ. ତୀର୍ଥବିଶେଷ; ଏହିଠାରେ
ବ୍ରହ୍ମାଙ୍କର ପଞ୍ଚମ ମସ୍ତକର କପାଳ ମୋଚିତ
ଅଥବା ପରିତ୍ୟକ୍ତ ହୁଏ, ସେହି ହେତୁ ତାହା
କପାଳମୋଚନ ନାମରେ ପ୍ରସିଦ୍ଧ ।
କପାଳୟା, କପାଳଆ, ବି. ( କପାଳ ଶବ୍ଦଜ )
ଅଦୃଷ୍ଟବନ୍ତ, ଭାଗ୍ୟବନ୍ତ ।
କପାଳୀ, ବ. ପୁଂ. ( କପାଳ-ଇନ୍ ) ଶିବ । ସ୍ତ୍ରୀ.
ଦୁର୍ଗା । ବି. କପାଳବନ୍ତ ।
କପି, ବ. ପୁଂ. ( କପ୍-ଇ ) ବାନର; ବିଷ୍ଣୁ;
କପିଳବର୍ଣ୍ଣ ।
କପିକେତନ, କପିଧ୍ୱଜ, ବ. ପୁଂ. (କପି-କେତନ,
ଧ୍ୱଜା) ଅର୍ଜୁନ; ଅର୍ଜୁନର ରଥ । ଯଥା—

କପିଧ୍ୱଜେ ବଢେ ବଳେ ସଙ୍ଗେ ଚକ୍ରପାଣି । ଭ. ବ.

କପିଞ୍ଜଳ, ବ. ପୁଂ. ( କ-ପିଜ୍-ଅଳ ) ଚାତକ
ପକ୍ଷୀ; ଗୌରବର୍ଣ୍ଣ ତିତ୍ତିରପକ୍ଷୀ; ମୁନିବିଶେଷ,
ପୁଣ୍ଡରୀକଙ୍କ ସୁହୃଦ୍ ।
କପିତ୍ଥ, କବିଥ, ବ. ପୁଂ. ( କପି-ସ୍ଥା-ଅ ) କଇଁଥ
ଗଛ । ନ. କଇଁଥ ଫଳ ।
କପିପ୍ରିୟ, ବ. ପୁଂ. ( କପି-ପ୍ରିୟ ) କଇଁଥ ଗଛ;
ଅମ୍ବଡ଼ା ଗଛ ।
କପିଳ, କବଳ, ବ. ପୁଂ. (କମ୍-ଇଳ, ମ=ପ,ବ)
ପିଙ୍ଗଳବର୍ଣ୍ଣ; ସାଂଖ୍ୟଦର୍ଶନପ୍ରଣେତା ମୁନି;
ବିଷ୍ଣୁ; ଦୈତ୍ୟବିଶେଷ; ଅଗ୍ନି; କୁକ୍କୁର । ବି.
ପିଙ୍ଗଳବର୍ଣ୍ଣବିଶିଷ୍ଟ; ପୀତଆଭାଯୁକ୍ତ କୃଷ୍ଣବର୍ଣ୍ଣ ।
କପିଳବାସ୍ତୁ, ବ. ପୁଂ. ନେପାଳର ଅନ୍ତର୍ଗତ
ପାର୍ବତ୍ୟପ୍ରଦେଶର ନଗରବିଶେଷ; ବୌଦ୍ଧ-
ଧର୍ମର ପ୍ରତିପାଦକ ବୁଦ୍ଧଦେବ ଏହି ନଗରରେ
ଜନ୍ମଗ୍ରହଣ କରିଥିଲେ ।

କପିଳା, ବ. ସ୍ତ୍ରୀ. (କପିଳ-ଆ) କାମଧେନୁ; ଦର୍ଗ୍ ହସ୍ତିନୀ; ଶିଂଶପାଗଛ; ସୁଗନ୍ଧଦ୍ରବ୍ୟ; (ପ୍ରଚଳିତ କଥାରେ) ବିଂ. କପିଳବର୍ଣ୍ଣବିଶେଷ୍ଟ ।

କପିଳାସ, ବ. (ପ୍ରାକୃତଜ) (କୈଳାସ ଶବ୍ଦଜ) ଓଡ଼ିଶାର ଢେଙ୍କାନାଳସ୍ଥ ପର୍ବତବିଶେଷ; ଏଠାରେ ଶିବମନ୍ଦିର ଥିବାରୁ ଏବଂ ଏଠାକାର ଜଳବାୟୁ ଅତ୍ୟନ୍ତ ସ୍ୱାସ୍ଥ୍ୟପ୍ରଦ ଥିବାରୁ ଅନେକ ସ୍ଥାନରୁ ନାନା ଶ୍ରେଣୀର ଲୋକମାନେ ଏଠାକୁ ଆସିଥାନ୍ତି, ଶିବରାତ୍ରି ଦିନ ଏଠାରେ ଗୋଟିଏ ମେଳା ହୁଏ । ଯଥା—

> କପିଳାସ-ଖୋଳ-ନିବାସୀ ଶବର,
> ରଣ-ରଙ୍କ ଦେଖା ଯା ବଂଶଶେଖର । ହ. ବେ.

କପିଳାଶ୍ୱ, ବ. ପୁଂ. (କପିଳ-ଅଶ୍ୱ) ଇନ୍ଦ୍ର;ଇନ୍ଦ୍ରଙ୍କର ଉଚ୍ଚୈଃଶ୍ରବା ଘୋଟକ କପିଳବର୍ଣ୍ଣ ଥିବାରୁ ତାହାଙ୍କର ଏହିପରି ନାମ ହୋଇଅଛି; ସୂର୍ଯ୍ୟବଂଶୀୟ ରାଜା ।

କପିଲୋହ, ବ. ନ. (କପିଳ-ଲୋହ, କପିଳ= କପି) ପିତ୍ତଳ, ଉପଧାତୁବିଶେଷ ।

କପିବଲ୍ଲୀ, ବ. ସ୍ତ୍ରୀ. (କପି-ବଲ୍ଲୀ) ଗଜପିପ୍ପଳୀ ।

କପିଶ, ବ.ପୁଂ. (କପି-ଶ) ନୀଳପୀତ ମିଶ୍ରିତ ବର୍ଣ୍ଣ ।

କପିଶା, ବ. ସ୍ତ୍ରୀ. (କପିଶ-ଆ) ନଦୀବିଶେଷ; ମାଧବୀଲତା; ପିଶାଚମାତା ।

କପିଶାଞ୍ଜନ, ବ. ପୁଂ. ମହାଦେବ ।

କପିଶୀର୍ଷ, ବ. ନ. (କପି-ଶୀର୍ଷ) ପ୍ରାକାରାଗ୍ର, ପ୍ରାଚୀର ମସ୍ତକ ।

କପୀତନ, ବ. ପୁଂ. (କପି-ତନ) ଅମ୍ବଡ଼ାଗଛ; ଗନ୍ଧପିପ୍ପଳୀ; ଶିରୀଷବୃକ୍ଷ ।

କପୀନ୍ଦ୍ର, ବ. ପୁଂ. (କପି-ଇନ୍ଦ୍ର) ସୁଗ୍ରୀବ; ହନୁମାନ୍ ।

କପୁଷ୍ଠିକା, ବ. ସ୍ତ୍ରୀ. (କ-ପୁଷ୍ଠି-କଣ୍-ଆ) ମସ୍ତକର ଉଭୟ ପାର୍ଶ୍ୱସ୍ଥ କେଶଗୁଚ୍ଛ ।

କପୁଚ୍ଛଳ, ବ. ପୁଂ. (କ-ପୁଚ୍ଛ-ଳ) ଚୂଡ଼ାକରଣ ସଂସ୍କାର ।

କପୂୟ, ବିଂ. (କୁ-ପୂୟ୍-ଅ) କୁତ୍ସିତ, ଦୁର୍ଗନ୍ଧ ।

କପୋତ, ବ. ପୁଂ. (କ-ପୋତ) ପାରାବତ, ପାରା ପକ୍ଷୀ; କାପ୍ତାପକ୍ଷୀ ।

କପୋତପାଳିକା, କପୋତପାଳୀ, ବ. ସ୍ତ୍ରୀ. (କପୋତ-ପାଳ-ଅକ-ଆ, ଈ) ବିଟଙ୍କ, ପାରା ରହିବାର କୋଠରୀ ବା ସ୍ଥାନ, ପାରାଭାଡ଼; ଚଢ଼େଇଖାନା ।

କପୋତାରି, ବ. ପୁଂ. (କପୋତ-ଅରି) ଶ୍ୟେନ ପକ୍ଷୀ ।

କପୋଳ, ବ. ପୁଂ. (କ-ପୋଲ୍-ଅ, ବା, କପ୍-ଓଳ) ଗଣ୍ଡଦେଶ, ଗାଲ ।

କପୋଳକଳ୍ପନା, ବ. ସ୍ତ୍ରୀ. (କପୋଳ-କଳ୍ପନା) ଅସତ୍ୟ ଅଥଚ ରଚିତ ଗଳ୍ପ ।

କପୋଳକଳ୍ପିତ, ବିଂ. (କପୋଳ-କଳ୍ପିତ) ମନଗଢ଼ା; ଅସତ୍ୟ ଅଥଚ ରଚିତ ।

କପ୍‌କପ୍, ଅଂ. (ଦେଶଜ) ଶବ୍ଦାନୁକରଣ; ବନ୍ଧନାଦିଜନିତ ପୀଡ଼ାସୂଚକ ।

କଫ, ବ. ପୁଂ. (କ=ଜଳ-ଫଳ=ନିଷ୍ପନ୍ନ ହେବା-ଅ, ଲ ଲୋପ) ଶ୍ଳେଷ୍ମା, ଶରୀରସ୍ଥ ଧାତୁବିଶେଷ ।

କଫକୂର୍ଚ୍ଚିକା, ବ. ସ୍ତ୍ରୀ. (କଫ-କୂର୍ଚ୍ଚିକା) ଲାଳ; ଛିଙ୍ଗାଣୀ, ନାସାନିର୍ଗତ ଶ୍ଳେଷ୍ମା ।

କଫଣି, କଫୋଣି, ବ. ପୁଂ. ସ୍ତ୍ରୀ. (କ-ଫଣ-ଇ) କହୁଣି, ବାହୁର ନମ୍ରଗଣ୍ଠି । ଯଥା—

> କଫୋଣି ପ୍ରହାରେ ପାରୁ ମାର ଯେ ।

କଫାରି, ବ. ପୁଂ. (କଫ-ଅରି) ଶୁଣ୍ଠୀ ।

କଫୀ, ବିଂ. (କଫ-ଇନ୍) କଫଯୁକ୍ତ । ବ. ପୁଂ. ଗଜ, ହସ୍ତୀ ।

କବନ୍ଧ, ବ. ପୁଂ. ନ. (କ-ବଧ-ଅ, ବା, କ-ବନ୍ଧ୍-ଅ) କ୍ରିୟାଯୁକ୍ତ ମସ୍ତକଶୂନ୍ୟ ଦେହ; ଧୂମକେତୁ; ରାକ୍ଷସବିଶେଷ; ଜଳ; ଉଦର ।

କବ୍‌ଜା, ବ. (ଯାବନିକ) କବାଟଯୋଜକ ଲୌହନିର୍ମିତ କଳ; ହସ୍ତର ମଣିବନ୍ଧ ନିକଟସ୍ଥ ଗଣ୍ଠି ।

କମ୍, ଅଂ. (କମ୍-୦) ପାଦପୂରଣ; ଜଳ; ମସ୍ତକ; ସୁଖ; ମଙ୍ଗଳ; ନିନ୍ଦା । ବିଂ. ଅଳ୍ପ ।

କମ, ( କର୍ମ ଶବ୍ଦଜ ) ନକ୍ସା; ସୂକ୍ଷ୍ମଶିଳ୍ପ; ହସ୍ତାଭରଣବିଶେଷ । ବିଂ. ଅଳ୍ପ । ଅଂ. ( କମ୍-ଅ ) କମନୀୟ ।

କମଠ, ବି. ପୁଂ. (କମ୍-ଅଠ) କୂର୍ମ, କଚ୍ଛପ । ନ. ବାଉଁଶ; ସନ୍ନ୍ୟାସିମାନଙ୍କର ଜଳପାତ୍ରବିଶେଷ । ସ୍ତ୍ରୀ. କଚ୍ଛପୀ, ମାଈକୂର୍ମ ।

କମଣ୍ଡଳୁ, ବି. ନ. ପୁଂ. (କ-ମଣ୍ଡ-ଲ-ଉ) ସନ୍ନ୍ୟାସୀ ବା ବ୍ରହ୍ମଚାରୀଙ୍କ କାଷ୍ଠାଦିନିର୍ମିତ ଜଳପାତ୍ର । ପୁଂ. ଅଶ୍ୱତ୍ଥ ବୃକ୍ଷ; ବ୍ୟକ୍ତିବିଶେଷ ।

କମନ, ବିଂ. ( କମ୍-ଅନ ) କାମୁକ, ଲମ୍ପଟ; ସୁନ୍ଦର, ଅଭିରୂପ । ବି. ପୁଂ. ଅଶୋକ ବୃକ୍ଷ; କାମଦେବ; ବ୍ରହ୍ମା ।

କମନଚ୍ଛଦ, ବି. ପୁଂ. (କମନ=ରମ୍ୟ-ଛଦ=ପକ୍ଷ) କଙ୍କପକ୍ଷୀ ।

କମନୀୟ, ବିଂ. (କମ୍-ଅନୀୟ) ସୁନ୍ଦର, ମନୋହର, ରମ୍ୟ; ସ୍ପୃହଣୀୟ; ବାଞ୍ଛନୀୟ । ଯଥା—

ଶ୍ୟାମ ସମ କମନୀୟ ନାହିଁ ଅଇ ।

କମର, ବି. (ଯାବନିକ) ଅଣ୍ଟା; କଟିପ୍ରଦେଶ । ବିଂ. (କମ୍-ଅର୍-ଅ) କାମୁକ ।

କମଲ, ବି. ନ. (କମ୍-ଅଲ) ପଦ୍ମ; ଜଳ; ତାମ୍ର; ଔଷଧ; ସାରସ ପକ୍ଷୀ । ପୁଂ. ମୃଗବିଶେଷ ।

କମଳଜ, ବି. ପୁଂ. (କମ୍-ଅଳ-ଜ) ଚନ୍ଦ୍ର; ବ୍ରହ୍ମା । ନ. ରୋହିଣୀ ନକ୍ଷତ୍ର ।

କମଳଯୋନି, ବି. ପୁଂ. ( କମଳ=ପଦ୍ମ-ଯୋନି=ଉତ୍ପତ୍ତି ସ୍ଥାନ) ବ୍ରହ୍ମା, ପଦ୍ମଯୋନି ।

କମଳା, ବି. ସ୍ତ୍ରୀ. (କମଳ=ପଦ୍ମ-ଅ, ଅ, ବା କ=ବ୍ରହ୍ମତ୍ୱ-ମ=ଶିବତ୍ୱ-ଲ=ଦାନ କରିବା-ଅ) ଯାହାଙ୍କର ହସ୍ତରେ ସର୍ବଦା କମଳ ଥାଏ ଅଥବା ଯେ ବ୍ରହ୍ମତ୍ୱ ଏବଂ ଶିବତ୍ୱ ଦାନ କରି ପାରନ୍ତି, ଲକ୍ଷ୍ମୀ; ଶ୍ରେଷ୍ଠା ସ୍ତ୍ରୀ; ( ଦେଶଜ ) ଲେମ୍ବୁବିଶେଷ, ନାରଙ୍ଗୀବିଶେଷ ।

କମଳାକର, ବି. ପୁଂ. (କମଳ-ଆକର=ଉତ୍ପତ୍ତି ସ୍ଥାନ) ପଦ୍ମାକର; ଯେଉଁ ପୁଷ୍କରିଣୀରେ ଅନେକ ପଦ୍ମ ଥାଏ; ପଦ୍ମସମୂହ ।

କମଳାପତି, ବି. ପୁଂ. (କମଳା-ପତି) ଲକ୍ଷ୍ମୀପତି, ନାରାୟଣ ।

କମଳାଳୟା, ବି. ସ୍ତ୍ରୀ. (କମଳ-ଆଳୟ)ପଦ୍ମାଳୟା, ଲକ୍ଷ୍ମୀ ।

କମଳାସନ, ବି. ନ. (କମଳ-ଆସନ) ପଦ୍ମାସନ । ପୁଂ. ବ୍ରହ୍ମା ।

କମଳିନୀ, ବି. ସ୍ତ୍ରୀ. (କମଳ-ଇନ୍-ଈ) ପଦ୍ମିନୀ; ପଦ୍ମଲତା; ପୁଷ୍କରିଣୀ ।

କମାଣ, ବି. (କାର୍ମୁକ ଶବ୍ଦଜ) ଧନୁଃ ।

କମିତା, ବିଂ. (କମ୍-ତୃ) କାମୁକ ।

କମ୍ପ,କମ୍ପନ, ବି. ପୁଂ. (କମ୍ପ୍-ଅ, ଅନ) କମ୍ପିବା, ଥରିବା, ହଲିବା । ଯଥା—

ବାଳା ବାଳ ହରଣୀକ ବଚନ
କମ୍ପ ଉପୁଜୁ କରଇ କମ୍ପନ ।

କମ୍ପମାନ, ବିଂ.(କମ୍ପ-ଆନ,ମଆଗମ)କମ୍ପାନ୍ୱିତ, ଯେ କମ୍ପୁଅଛି ।

କମ୍ପାକ, ବି. ପୁଂ. (କମ୍ପ-ଆକ) ବାୟୁ, ପବନ ।

କମ୍ପିତ, ବିଂ. (କମ୍ପ-ତ) ଚଳିତ; ଭୀତ; କମ୍ପଯୁକ୍ତ । ବି. ନ. କମ୍ପନ; ଚଳନ ।

କମ୍ବଳ, ବି. ପୁଂ. (କମ୍-ବଳ) ମେଷାଦି ଲୋମରଚିତ ଆସନ; ନାଗବିଶେଷ; ଉତ୍ତରୀୟ ବସ୍ତ୍ର; ଉତ୍ତରାସଙ୍ଗ; କୃମି; ଗୋରୁଙ୍କର ଗଳକମ୍ବଳ; ମୃଗବିଶେଷ । ନ. ଜଳ ।

କମ୍ବି, ବି. ସ୍ତ୍ରୀ. (କମ୍-ବି) ଦର୍ବି, କରଚୁଲି, କାଠଚଟୁ ପ୍ରଭୃତି; ବାଉଁଶର ପବ ।

କମ୍ବୁ, ବି. ପୁଂ. ନ. ( କମ୍ବ୍-ଉ ) ଶଙ୍ଖ । ପୁଂ. ଶମ୍ବୁକ, ଶାମୁକା; ବଳୟ; ଅଙ୍ଗୁରୀୟ; ହସ୍ତୀ; ଗଳଦେଶ; ଫମ୍ପା ହାଡ । ମ୍ବୂ, ମ୍ବୂ, ସ୍ତ୍ରୀ. ଗ୍ରୀବା । ବିଂ. ଚର୍ବିତ, ଚିତ୍ରବିଚିତ୍ର; ନାନାବର୍ଣ୍ଣ; କର୍ବୁର ।

କମ୍ବୁକଣ୍ଠୀ, ବି. ସ୍ତ୍ରୀ. (କମ୍ବୁ-କଣ୍ଠ-ଈ) ଯେ ନାରୀର ଗ୍ରୀବାଦେଶ ଶଙ୍ଖ ସଦୃଶ ରେଖାତ୍ରୟଯୁକ୍ତ । ଯଥା—

କମ୍ବୁକଣ୍ଠୀ କମ୍ବୁକଟୋରଃ

କମ୍ବୁଗ୍ରୀବା, ବି. ସ୍ତ୍ରୀ. (କମ୍ବୁ-ଗ୍ରୀବା) ଶଙ୍ଖପରି ରେଖାତ୍ରୟଯୁକ୍ତ ଗଳଦେଶ ।

କମ୍ବୁଧର, ବି. ପୁଂ. (କମ୍ବୁ-ଧର) କୃଷ୍ଣ; ଶଙ୍ଖ-ହସ୍ତ ।

କମ୍ବୋଜ, ବି. ପୁଂ. (କମ୍ବ୍-ଓଜ) ଶଙ୍ଖବିଶେଷ; ଦେଶବିଶେଷ; ହସ୍ତିବିଶେଷ ।

କୟାଧୂ, ବି. ସ୍ତ୍ରୀ. ହିରଣ୍ୟକଶିପୁର ପତ୍ନୀ, ପ୍ରହ୍ଲାଦର ଜନନୀ ।

କର, ବି. ପୁଂ. ( କୃ-ଅ ) କିରଣ; ରାଜସ୍ୱ; ଶୁଳ୍କ; ହସ୍ତ; ହସ୍ତିଶୁଣ୍ଡ; କରକା ବା କୁଆପଥର; ତ୍ରିତୀୟ; ବିଷୟ; କର୍ତ୍ତା; ( ଉପପଦ ପୂର୍ବେ ଥିଲେ) କାରକ; ଜନକ । ଯଥା—ସୁଖକର ।

କରକ, ବି. ପୁଂ. (କୃ=ବଧ କରିବା-ଅକ) ଦାଡିମ୍ବ ବୃକ୍ଷ; ପକ୍ଷିବିଶେଷ; ନାରିକେଳମାଳା; ରାଜ-କର । ନ. କମଣ୍ଡଳୁ; ଦାଡ଼ିମ୍ବ । ଯଥା—

କର ନବେଶଭ କରକରେ. ସଜଳ ଗୋ । ବ. ଓ.

କରକବନ୍ଧ, ବି. ପୁଂ. (କୃ-ଅକ-ବନ୍ଧ) ଯୋଗୀ ।

କରକଚ, ବି. ( କଡ଼କ ଶବ୍ଦଜ ) ଲକ୍ଷଣବିଶେଷ; ସାମୁଦ୍ରିକ ଲବଣ । କରକଚ୍, (ଦେଶଜ) ଚୂନ ମିଶ୍ରିତ କ୍ଷୁଦ୍ର କ୍ଷୁଦ୍ର ପ୍ରସ୍ତର ।

କରକଣ୍ଟକ, ବି. ପୁଂ. (କର-କଣ୍ଟକ) ନଖ ।

କରକା, ବି. ସ୍ତ୍ରୀ. ( କୃ-ଅକ-ଆ ) ବର୍ଷୋପଳ, କୁଆପଥର ।

କରକୋଷ୍ଠୀ, ବି. ସ୍ତ୍ରୀ. (କର-କୋଷ୍ଠୀ) ହସ୍ତସ୍ଥିତ ରେଖାଦି ଚିହ୍ନ, ଏହି ସବୁ ରେଖାଦି ଦେଖି ଜୀବନର ଶୁଭାଶୁଭ ଫଳ ନିର୍ଣ୍ଣୟ କରାଯାଏ ।

କରଗ୍ରହ, ବି. ପୁଂ. ( କର-ଗ୍ରହ ) ପାଣିଗ୍ରହଣ, ବିବାହ; ହସ୍ତଧାରଣ; ପ୍ରଜାଙ୍କ ନିକଟରୁ କର-ଗ୍ରହଣ ।

କରଗ୍ରାହ, ବିଂ. (କର୍-ଗ୍ରହ୍-ଅ) ଯେ କର ଗ୍ରହଣ କରେ, ପତି,ଭର୍ତ୍ତା,ଯେ ରାଜସ୍ୱ ଆଦାୟ କରେ ।

କରଘର୍ଷଣ, ବି. ପୁଂ. (କର-ଘର୍ଷଣ ) ଦଧି ମନ୍ଥନ-ଦଣ୍ଡ, ଦଧିଖୁଆ । ନ. ହସ୍ତ ଘର୍ଷଣ ।

କରଙ୍କ, ବି. ନ. (କୃ-ଅଙ୍କ) କମଣ୍ଡଳୁ; ଶରୀରାସ୍ଥି; ନଡିଆ ସଢ଼େଇ; ମସ୍ତକ; ମୁଣ୍ଡର ଖୋଲପା; ଭିକ୍ଷାପାତ୍ର; ଟୁଙ୍ଗି; ଡବା; ଡବିଆ; ଖପରି ।

କରଙ୍ଗ, ବି. ଜଳଧାରବିଶେଷ ।

କରଚୁଲି, ( ଦେଶଜ ) ଧାତୁନିର୍ମିତ ପାକ ଉପ-କରଣ ।

କରଜ, ବି. ପୁଂ. (କର-ଜ) ନଖ; କରଞ୍ଜବୃକ୍ଷ । ବିଂ. ହସ୍ତଜାତ । (ନଖ ଅର୍ଥରେ) ଯଥା—

କରଜେ ମସ୍ତ ଲହୁଡା ଶୃଙ୍ଗ,
ମହ ମଲ୍ଲଙ୍କ କଣ ଚଙ୍କଳ । ବ. ଓ.

କରଞ୍ଜ, କରଞ୍ଜକ, ବି. ପୁଂ. (କ-ରନ୍ଜ୍-ଅ, କ) ସୁନାମଖ୍ୟାତ ବୃକ୍ଷବିଶେଷ । ଅମ୍ଳ, କ୍ଷୁଦ୍ର ଫଳ-ବିଶେଷ ।

କରଟ, ବି. ପୁଂ. (କ-ରଟ୍-ଅ) କାକ; ହସ୍ତିଶୁଣ୍ଡ; କୁସୁମ୍ଭ; କୁସୁମ ଫୁଲଗଛ; ବାଦ୍ୟଯନ୍ତ୍ରବିଶେଷ । ବିଂ. ନାସ୍ତିକ; ନିନ୍ଦ୍ୟଜୀବୀ । ଯଥା—

ମାଖୀ ପକ୍ଷୀ କରଟ ପ୍ରଚମାଙ୍କୁ ପ ଥାଇ ସେ । ବୋ. ସୁ.

କରଟକ, ବି. ପୁଂ. (କରଟ-କ) କାକ ।

କରଟା, ବି. ସ୍ତ୍ରୀ. ( କରଟ-ଆ ) ଯେଉଁ ଗାଈ କଷ୍ଟରେ ଦୁଗ୍ଧ ପ୍ରଦାନ କରେ । ନ. ମୃତ ବ୍ୟକ୍ତି ଉଦ୍ଦେଶ୍ୟରେ ଦାନ, ଆଦ୍ୟଶ୍ରାଦ୍ଧ ।

କରଟୀ, ବି. ପୁଂ. (କରଟ-ଇନ୍) ହସ୍ତୀ ।

କରଡ଼ା, ବିଂ. ( କର୍କଶ ଶବ୍ଦଜ ) ଶକ୍ତ, ଦୃଢ଼ । ବି. ପୁଂ. ବୃକ୍ଷବିଶେଷ ।

କରଡ, ବି. (କଲକା ଶବ୍ଦଜ) ବାଉଁଶ ଗଜା ।

କରଣ, ବି. ନ. ( କୃ-ଅନ ) କାରକବିଶେଷ, ଯାହାଦ୍ୱାରା କାର୍ଯ୍ୟ ନିଷ୍ପନ୍ନ ହୁଏ; କାରଣ; ଇନ୍ଦ୍ରିୟ; ଶରୀର; ସ୍ଥାନ; କ୍ଷେତ୍ର; କାର୍ଯ୍ୟ; ଅନୁଷ୍ଠାନ; ଜ୍ୟୋତିଷୋକ୍ତ ବାଲବାଦି ଏକାଦଶ କରଣ । ପୁଂ. ଶୂଦ୍ରାସ୍ତ୍ରୀ ଏବଂ ବୈଶ୍ୟ ଔରସଜାତ ଜାତିବିଶେଷ; ଉତ୍କଳ କାୟସ୍ଥ; ନୃତ୍ୟଗୀତାଦି ସମୟରେ କରାଦିଦ୍ୱାରା ଅଭିନୟ ।

କରଣୀ, ବ. ସ୍ତ୍ରୀ. (କରଣ-ଈ) ଯେଉଁ ରାଶିର ମୂଳ ସୂକ୍ଷ୍ମରୂପେ ନିଷ୍କାଶିତ ହୁଏ ନାହିଁ ; (Surds) (ପ୍ରାକୃତିକ) ରାଜମିସ୍ତ୍ରୀମାନଙ୍କର ଲୌହନିର୍ମିତ ଶସ୍ତ୍ରବିଶେଷ; ମାହାତ୍ମ୍ୟ, ମହିମା । ଯଥା—

ବଂଶକରକରଣୀକ ନାହିଁ ସବୁ ଭଣ୍ଡ । ବୈ. ବ.

କରଣୀୟ, ବିଂ. ( କୃ-ଅନୀୟ ) କର୍ତ୍ତବ୍ୟ; ଯାହା କରିବା ଉଚିତ ।

କରଣ୍ଡ, ବ. ପୁଂ. ( କୃ-ଅଣ୍ଡ ) ପେଟରା; ପେଡି; ମଧୁଚକ୍ର; ଝଡ୍ଗ; ପକ୍ଷିବିଶେଷ; ଶୈବାଳ ।

କରଣ୍ଡା, ବ. ସ୍ତ୍ରୀ. (କରଣ୍ଡ-ଆ) ଯକୃତ୍‌ରୋଗ ।

କରଣ୍ଡିକ, ବ. ପୁଂ. (କରଣ୍ଡ-ଇକ) ଯେଉଁ ସବୁ ଜନ୍ତୁଙ୍କ ଗର୍ଭରେ ଚର୍ମମୟ କରଣ୍ଡବତ୍ ଥଳି ଅଛି, ଦ୍ୱିଗର୍ଭ ଜନ୍ତୁ ।

କରଣ୍ଡୀ, ବ.ପୁଂ. (କରଣ୍ଡ-ଇନ୍) ମତ୍ସ୍ୟ ।

କରତ, ବ. ( କର୍ତ୍ତନ କିମ୍ବା କରପତ୍ର ଶବ୍ଦଜ ) କାଷ୍ଠ ଚିରିବା ଅସ୍ତ୍ରବିଶେଷ ।

କରତଳ, ବ. ପୁଂ. ନ. ( କର-ତଳ ) ହସ୍ତ; ହସ୍ତତଳ; ପାପୁଲି ।

କରତାଳ, ବ. ନ. } ( କର-ତାଳ, ତାଳୀ )
କରତାଳୀ, ବ. ସ୍ତ୍ରୀ. } କାଂସ୍ୟନିର୍ମିତ ବାଦ୍ୟ-ଯନ୍ତ୍ରବିଶେଷ, ଝାଞ୍ଜ ।

କରତାଳୀ, ବ. ସ୍ତ୍ରୀ. (କର-ତାଳ-ଈ) ହାତତାଳି, ଦୁଇ କରତଳର ପରସ୍ପର ଅଭିଘାତରେ ଯେଉଁ ଶବ୍ଦ ହୁଏ ।

କରତୋୟା, ବ. ସ୍ତ୍ରୀ. (କର-ତୋୟ-ଆ) ବାହୁଦା ନଦୀ; ପ୍ରବାଦ ଅଛି ଗୌରୀଙ୍କ ବିବାହ ସମୟରେ ଶିବଙ୍କ ହସ୍ତରୁ ଜଳ ପଡି ଏ ନଦୀ ଜାତ ହୋଇଅଛି । ଯଥା—

କରତୋୟା ସଦାନୀରା ବାହୁଦା ସୈତବାହିନୀ ।

କରଦ, ବିଂ. (କର-ଦା-ଅ) ଯେ ଅନ୍ୟକୁ କର ପ୍ରଦାନ କରେ, କରପ୍ରଦ ।

କରନ୍ୟାସ, ବ. ପୁଂ. ( କର-ନ୍ୟାସ ) ତନ୍ତ୍ରୋକ୍ତ ନ୍ୟାସବିଶେଷ । ମନ୍ତ୍ର ପଢ଼ିକାରେ କରପୃଷ୍ଠରେ ଅଙ୍ଗୁଷ୍ଠାଦିର ଅର୍ପଣ ।

କରପକ୍ଷ, ବ. ପୁଂ. ( କର-ପକ୍ଷ ) ଯେଉଁମାନଙ୍କର ହାତ ପକ୍ଷସ୍ୱରୂପ, ଯଥା—ବାଦୁଡି, ଚେମଣିଆ ଇତ୍ୟାଦି ।

କରପତ୍ର, ବ. ନ. ( କର-ପତ୍ର ) ହସ୍ତଚାଳ; କରତ; ଜଳକ୍ରୀଡ଼ା । ଯଥା—

କୃତାନ୍ତର କରପତ୍ର ପ୍ରାୟେ ହାସ-ପ୍ରଭ । ଦ. ସା.

କରପତ୍ରବାନ୍, ବ. ପୁଂ. ( କରପତ୍ର-ବତ୍ ) (ବାଉଁଶରେ କରତ ପରି କଣ୍ଟା ଥାଏ ବୋଲି ) ତାଳଗଛ ।

କରପଲ୍ଲବ, ବ. ପୁଂ. ନ. (କର-ପଲ୍ଲବ) ଅଙ୍ଗୁଳି, କରଶାଖା; ପାପୁଲି । ଯଥା—

କରପଲ୍ଲବର କନକ ମୁଦ୍ରିକା କଙ୍କଣ ହେଉଣି ବାହାର ।

ଉ. ଚ.

କରପାଳ, କରବାଳ, ବ. ପୁଂ. (କର-ପାଳ= ପାଳନ କରେ, ବଲ୍-ଅ ) ଖଡ୍ଗ, ଖଣ୍ଡା; ତରବାର ।

କରପାଳିକା, କରପାଳୀ, ବ. ସ୍ତ୍ରୀ. ( କରପାଳ-ଅକ-ଆ,ଈ ) ଗଦାବତ୍ କ୍ଷୁଦ୍ର ହସ୍ତଦଣ୍ଡ, ଖେଳବାଡ; ଛେଦନାତ୍ମକ ଶସ୍ତ୍ର; ମୁଦ୍ଗର ।

କରପୀଡ଼ନ, ବ. ନ. (କର-ପୀଡ଼ନ) ପାଣିଗ୍ରହଣ, ବିବାହ । (Shake-hand) କରମର୍ଦ୍ଦନ ।

କରପୃଷ୍ଠ, ବ. ପୁଂ. ( କର-ପୃଷ୍ଠ ) ବଦ୍ଧାଞ୍ଜଳି, ଯୋଡ଼ହାତ ।

କରଭ, ବ. ପୁଂ. (କର-ଭା-ଅ, ବା, କୃ-ଅଭ) ମଣିବନ୍ଧଠାରୁ କନିଷ୍ଠାଙ୍ଗୁଳି ପର୍ଯ୍ୟନ୍ତ କର-ବହିର୍ଭାଗ; ହସ୍ତିଶାବକ; ଉଷ୍ଟ୍ର; ଉଷ୍ଟ୍ରଶାବକ; ଅଶ୍ୱତର ।

କରଭୂ, ବ. ପୁଂ. (କର-ଭୂ-ଂ) ନଖ ।

କରଭୂଷଣ, ବ. ନ. (କର-ଭୂଷଣ ) ହସ୍ତାଭରଣ, ବଳୟାଦି, କଙ୍କଣ ।

କରଭୋରୁ, ବ. ସ୍ତ୍ରୀ. (କରଭ-ଉରୁ) ନାୟିକା ସ୍ତ୍ରୀ । ଯଥା—

ତୋପର କରଭ-ଉରୁ ନ ଦେଖଇ ନାହିଁ ରେ ମୁଁ ଜୀବର ।

ପ୍ରେ. ସୁ.

କରମର୍ଦ୍ଦ, ବ. ପୁଂ. ( କର-ମୃଦ୍-ଅ ) କରଞ୍ଜଗଛ; ହସ୍ତଦ୍ୱାରା ମର୍ଦ୍ଦନ ।

କରମାଳା, ବ. ସ୍ତ୍ରୀ. ( କର-ମାଳା ) ଜପସଂଖ୍ୟା ନିରୂପକ କରାଙ୍ଗୁଳିପର୍ବ ।

କରମ୍ବ, ବ. ପୁଂ. (କ-ରମ୍ବ୍-ଅ, ବା, କୃ-ଅମ୍ବ) ମିଶ୍ରଣ । ବିଂ. ମିଶ୍ରିତ ।

କରମ୍ବିତ, ବିଂ. (କରମ୍ବ-ଇତ) ମିଶ୍ରିତ; ଖଚିତ । ଯଥା—

> କ୍ରୀଡ଼ା ଶେଷେ ଗୋପନାରୀ,
> କରମ୍ବିତ ହୋଇକରି । ର. କ.

କରରୁହ, ବ. ପୁଂ. (କର-ରୁହ) ନଖ; ଅଙ୍ଗୁଳି । ଯଥା—

> କରରୁହ ମୁନି, କୃତପାଠ ଦାନ ମାଗିବା ବଢ଼ାଇ ମୁଦବା ।
> ର. କ.

କରବାଳ, ବ. ପୁଂ. (କର-ବାଳ) ନଖ ; ଖଡ୍ଗ, ତରବାରି, ଖଣ୍ଡା । ଯଥା—

> ଧଠ ଧଠ ଥିଲେ ସମଯୋଦ୍ଧଗଣ,
> କରେ କରବାଳ ପଶ ସମରେ । କ. କ.

ସ୍ତ୍ରୀ. କରବାଳକା ଗୋ ।

କରବୀର, ବ. ପୁଂ. (କର-ବୀର୍-ଅ) ପୁଷ୍ପବୃକ୍ଷବିଶେଷ, କନିଅରଗଛ; ଖଡ୍ଗ; ଶ୍ମଶାନ; ଦେଶବିଶେଷ । ନ. କନିଅରଫୁଲ । ସ୍ତ୍ରୀ. ଅଦିତି; ଉତ୍ତମ ଗାଈ; ଏକପୁତ୍ରା ସ୍ତ୍ରୀ, ପୁତ୍ରବତୀ ସ୍ତ୍ରୀ । ଯଥା—

> ବଣ କରବୀରେ ହୋଇଲ ଘରଚେ,
> ମଲ ମଲ ହେଉ କପାଳେଁ । ଲ. ବ.

କରଶାଖା, ବ. ସ୍ତ୍ରୀ. ( କର-ଶାଖା ) ଅଙ୍ଗୁଳି । ଯଥା—

> କେ ଅଙ୍ଗରଙ୍ଗୀ କର ହାଇ ମାରେ,
> କର୍ଣ୍ଣବର୍ତ୍ତୁ କରଶାଖାରେ ବାରେ । ର. କ.

କରଶୀକର, ବ. ପୁଂ. (କର=ହସ୍ତି ଶୁଣ୍ଡ-ଶୀକର) ହସ୍ତିଶୁଣ୍ଡରୁ ନିଃସୃତ ଜଳକଣା ।

କରଶୂକ, ବ. ପୁଂ. (କର-ଶୂକ) ନଖ ।

କରସୂତ୍ର, ବ. ନ. ( କର-ସୂତ୍ର ) ବିବାହାଦି ମାଙ୍ଗଳିକ କାର୍ଯ୍ୟୋପଲକ୍ଷେ ବାନ୍ଧିବା ହସ୍ତସୂତ୍ର ।

କରହାଟ, ବ. ପୁଂ. (କ-ରହ୍-ଅଟ୍-ଅ) ପଦ୍ମାଦିର ମୂଳ; ମଦନବୃକ୍ଷ; ଦେଶବିଶେଷ ।

କରାଟ, ବ. ( ଦେଶଜ ) ପିତ୍ତଳାଦିନିର୍ମିତ ଛୋଟ ଡ଼ବିଆ, ସ୍ତ୍ରୀଲୋକମାନେ ଏହାକୁ ଅଣ୍ଟାରେ ଖୋଷନ୍ତି; ସମ୍ପୁଟକ, ଫରୁଆ ।

କରାଳ, ବ. ପୁଂ. (କର-ଅଲ୍-ଅ) ଜନକବଂଶୀୟ ରାଜାବିଶେଷ; ଝୁଣା; ତୈଳବିଶେଷ, ଗର୍ଜନତୈଳ । ନ. କଳାତୁଳସୀ । ବିଂ. ମହତ୍, ବୃହତ୍; ଉଚ୍ଚ; ଭୟାନକ; ଦନ୍ତୁର । ଲା, ସ୍ତ୍ରୀ; ଅନନ୍ତମୂଳ । ଲୀ, ସ୍ତ୍ରୀ. ଚଣ୍ଡିକା; ଅଗ୍ନିଜିହ୍ୱା । (ଭୟାନକ ଅର୍ଥରେ) ଯଥା—

> ଭେଟିବାକୁ ମୃତ୍ୟୁ-ସିନ୍ଧୁ-କରାଳ-ଲହରୀ । କ. କ.

କରାଅର, ବ. ପୁଂ. (କର-ଅର) ସିଂହ ।

କରିକା, ବ. ସ୍ତ୍ରୀ. (କର-ଇକ-ଆ) ନଖକ୍ଷତ ।

କରିକୁମ୍ଭ, ବ. ପୁଂ. ( କରିନ୍-କୁମ୍ଭ ) ହସ୍ତିକୁମ୍ଭ; ଗନ୍ଧଚୂର୍ଣ୍ଣ ।

କରିଜ, ବ. ପୁଂ. (କରିନ୍-ଜ) ହସ୍ତିଶାବକ ।

କରିପ, ବ. ପୁଂ. ( କରିନ୍-ପା-ଅ ) ହସ୍ତିପାଳକ, ମାହୁନ୍ତ ।

କରିଣୀ, ବ. ସ୍ତ୍ରୀ. ( କର-ଇନ୍-ଈ ) ହସ୍ତିନୀ; ସ୍ତ୍ରୀଜାତିର ପ୍ରକାରଭେଦ ।

କରିମୁଖ, ବିଂ. ପୁଂ. (କରିନ୍-ମୁଖ, ହସ୍ତୀ ମୁଖପରି ଯାହାଙ୍କର ମୁଖ) ଗଣେଶ; ହାତିର ମଖ ।

କରୀର, କରୀର, ବ. ନ. (କୃ-ଈର, ଈର) ବଂଶାଙ୍କୁର, ବାଉଁଶଗଜା । ପୁଂ. ଘଟ; ବୃକ୍ଷବିଶେଷ । ରୀ, ରୀ, ସ୍ତ୍ରୀ. ହସ୍ତିଦନ୍ତର ମୂଳ ।

କରିବନ୍ଧ, ବ. ପୁଂ. (କରିନ୍-ବନ୍ଧ) ହସ୍ତିବନ୍ଧନ ସ୍ତମ୍ଭ, ଆଲାନ ।

କରିଷ, ବ. (କର୍ଷ ଶବ୍ଦଜ) ପଳର ଚତୁର୍ଥାଂଶ ।

କରୀ, ବ. ପୁଂ. (କର-ଇନ୍) ହସ୍ତୀ ।

କରୀନ୍ଦ୍ର, ବ. ପୁଂ. ( କରିନ୍-ଇନ୍ଦ୍ର ) ହସ୍ତିଶ୍ରେଷ୍ଠ, ଉତ୍ତମ ହସ୍ତୀ ।

କରୀଷ, ବ. ପୁଂ,ନ. (କୃ-ଈଷ୍) ଶୁଖିଲା ଗୋବର, ଘଷି ।

କରୀଷାଗ୍ନି, ବ. ପୁଂ. (କରୀଷ-ଅଗ୍ନି) ଘଷିନିଆଁ ।

କରୁଣ, ବ. ପୁଂ. (କୃ-ଉନ) କାବ୍ୟ ରସବିଶେଷ; କରୁଣରସ ; ବୃକ୍ଷବିଶେଷ । ବିଂ. କାତର ; ଦୀନ ; ଶୋକାର୍ତ୍ତ; ଦୟାଳୁ ; ପର ଦୁଃଖରେ ଦୁଃଖିତ । ଣା, ସ୍ତ୍ରୀ. ଦୟା, କୃପା; ଅନୁଗ୍ରହ । ଯଥା —

କରୁଣା ହେଲେ ଭଣା, ନଷ୍ଟେ ଦାସ ଶିବ ନାଶ ।

ବୃକ୍ଷବିଶେଷ । ଯଥା—

କଷ୍ଟେ କଷ୍ଟେ ଗୋଡ଼ ଫୋଥକର ହୋଇ
ବୋଇଲେ ଶୁଣ ହେ କରୁଣା । ର. କ.

କରୁଣାମୟ, ବିଂ. ( କରୁଣା-ମୟ ) ଦୟାମୟ, ଅତ୍ୟନ୍ତ ଦୟାଳୁ । ୟୀ, ସ୍ତ୍ରୀ. ଦୟାମୟୀ ।

କରେଣୁ, ବ.ପୁଂ. (କୃ-ଏନୁ) ହସ୍ତୀ । ବିଂ. ଦୀନ, ଶୋକାର୍ତ୍ତ ।

କରେଣୁକା, କରେଣୂ, ବ. ସ୍ତ୍ରୀ. (କରେଣୁ-କ-ଆ, ଊ) ହସ୍ତିନୀ ।

କରୋଟ, ପୁଂ. }
କରୋଟି, କରୋଟୀ, ସ୍ତ୍ରୀ. } ବ. (କ=ମସ୍ତକ-ରୁଟ୍ = ରକ୍ଷା କରିବା-ଅ,ଇ,ଈ) ମୁଣ୍ଡର ଖପୁରି,ଶିରୋସ୍ଥି ।

କର୍କ, ବ. ପୁଂ. (କୃ-କ) ଶୁଭ୍ରବର୍ଣ୍ଣ ଅଶ୍ୱ; ଦର୍ପଣ; ଜଳ; କଙ୍କଡ଼ା; ଅଗ୍ନି; ସୌନ୍ଦର୍ଯ୍ୟ; କର୍କଟ ବା ୪ର୍ଥ ରାଶି; କଣ୍ଟକ; ଘଟ; କ୍ଷୁଦ୍ର କଳସ; ବୃକ୍ଷବିଶେଷ । ବିଂ. ଶୁଭ୍ରବର୍ଣ୍ଣ; ଉତ୍ତମ, ଶ୍ରେଷ୍ଠ ।

କର୍କଟ, ବ. ପୁଂ. (କର୍କ-ଅଟ) କଙ୍କଡ଼ା; କର୍କଟ ରାଶି; ପକ୍ଷିବିଶେଷ; ଶ୍ରାବଣମାସ ।

କର୍କଟକ୍ରାନ୍ତି, ବ. ସ୍ତ୍ରୀ. (Tropic of Cancer) ନିରକ୍ଷରେଖାଠାରୁ ୨୩½ ଅଂଶ ଉତ୍ତରରେ ଯେଉଁ ଅକ୍ଷ ରେଖା ଅଛି ।

କର୍କଟଶୃଙ୍ଗୀ, ବ. ସ୍ତ୍ରୀ. ବୃକ୍ଷବିଶେଷ; କଙ୍କଡ଼ାଶୃଙ୍ଗୀ ।

କର୍କଟୀ, କର୍କଟିକା, ବ. ସ୍ତ୍ରୀ. (କର୍କଟ-ଈ, କ-ଆ) କାକୁଡ଼ି; କଙ୍କଡ଼ା ସ୍ତ୍ରୀ; ସର୍ପବିଶେଷ; କଳସୀ ।

କର୍କନ୍ଧୁ, ବ. ପୁଂ., }
କର୍କନ୍ଧୂ, ସ୍ତ୍ରୀ. } (କର୍କ-ଧା-ଉ, ଊ) ବଡ଼କୋଳିଗଛ ।

କର୍କର, ବ.ପୁଂ. (କର୍କ-ରା-ଅ) ଦର୍ପଣ; ଗୋଟୁଡ଼ି, ଗୋଡ଼ି; ମୁଦ୍ଗର । ଅ. ଅନୁକରଣ ଶବ୍ଦବିଶେଷ (ହସିବାରେ ପ୍ରଯୋଜ୍ୟ) । ରୀ, ସ୍ତ୍ରୀ. ଜଳପାତ୍ର, ଝାଳି, ଲୋଟା; ନଳଲ ଜଳପାତ୍ର ବା ଗଡୁ । ବିଂ. କର୍କଶ, କଠିନ, ଦୃଢ଼ ।

କର୍କରାଙ୍ଗ, ବ. ପୁଂ. (କର୍କର-ଅଙ୍ଗ) ଖଞ୍ଜନପକ୍ଷୀ ।

କର୍କରାଳ, ବ. ନ. ପୁଂ. ଅଳକ, ଚୂର୍ଣ୍ଣକୁନ୍ତଳ ।

କର୍କରେଟ, ବ. ପୁଂ. (କର୍କର-ଇଟ୍-ଅ) ଗଳହସ୍ତ, ଗଳା ଚିପିବା, ତଡ଼ିଆ ଦେବା ।

କର୍କଶ, ବ. ପୁଂ. (କର୍କ-ଶ) ବୃକ୍ଷବିଶେଷ, କରଞ୍ଜବୃକ୍ଷ; ଇକ୍ଷୁ; ଖଡ୍ଗ; ଖରପର୍ଣ୍ଣ । ବିଂ. ନିର୍ଦ୍ଦୟ ; କଠିନ; ଅତିଶୟ; ପରୁଷ; ଶ୍ମଶ୍ରୁକଣ୍ଟକ; କ୍ରୂର ; ସାହସୀ; ଖରସ୍ପର୍ଶବିଶିଷ୍ଟ । ଶା, ସ୍ତ୍ରୀ. ଶଙ୍କିତ-ବ୍ୟଭିଚାରୀ ସ୍ତ୍ରୀ ।

କର୍କସାର, ବ. ନ. ( କର୍କ-ସାର ) ଦଧିମିଶ୍ରିତ ଶକ୍ତୁ, ଦହିମିଶା ଛତୁ ।

କର୍କାରୁ, ବ. ପୁଂ. ( କର୍କ-ଋ-ଉ ) କୁଷ୍ମାଣ୍ଡ, କଖାରୁ ।

କର୍କୋଟ, କର୍କୋଟକ, ବ. ପୁଂ. (କର୍କ-ଓଟ-କ) କଦ୍ରୁଗର୍ଭଜାତ ନାଗବିଶେଷ; ବିଲ୍ୱବୃକ୍ଷ; ଇକ୍ଷୁ; କାକୁଡ଼ଗଛ ।

କର୍ଚ୍ଚରିକା, }
କର୍ଚ୍ଚରୀ, } ବ. ସ୍ତ୍ରୀ. ପୂରିକାବିଶେଷ, କଚୁରୀ ।

କର୍ଚ୍ଚୂର, ବ. ନ. (କର୍ଚ୍ଚ-ଊର) ସ୍ୱର୍ଣ୍ଣ; ଗନ୍ଧସାର ; କର୍ବୁରବର୍ଣ୍ଣ । ବିଂ. କର୍ବୁରବର୍ଣ୍ଣବିଶିଷ୍ଟ ।

କର୍ଜ୍ଜ, ବ. (ଦେଶଜ) ଋଣ, ଦେଣା ।

କର୍ଣ୍ଣ, ବ. ପୁଂ. ( କର୍ଣ୍ଣ=ଛେଦନକରିବା-ଅ ) ଶ୍ରବଣେନ୍ଦ୍ରିୟ, କାନ; ସୂର୍ଯ୍ୟର ଔରସଜ କୁନ୍ତୀର କାନୀନ ପୁତ୍ର; ଅଙ୍ଗଦେଶର ରାଜା; ନୌକାର 'ମଙ୍ଗଧରା' ନାମକ ଦଣ୍ଡ; ଚତୁର୍ଭୁଜର ବିପରୀତ କୋଣଦ୍ୱୟସଂଯୋଜକ ସରଳ-ରେଖା; ସମକୋଣି ତ୍ରିଭୁଜର ସମକୋଣର ସମ୍ମୁଖୀନ ବାହୁ । ମଙ୍ଗଧରାର୍ଥେ । ଯଥା—

ଏ ଅତିଥି ପୂର୍ଣ୍ଣଚନ୍ଦ୍ର, କର୍ଣ୍ଣରୂପେ ଯାହା,
କର୍ଣ୍ଣଧାରରୂପେ ତୁମ୍ଭେ ଯତ୍ନ କରିବ ନେ । ମ. ସା.

କର୍ଣ୍ଣକ, ବି°. (କର୍ଣ୍ଣ-କୈ-ଅ) କର୍ଣ୍ଣଧାର; କମ୍ପନ୍ନ ।

କର୍ଣ୍ଣଗ୍ରନ୍ଥୀ, ବି. ସ୍ତ୍ରୀ. (କର୍ଣ୍ଣ-ଗ୍ରନ୍ଥି ଈ) କାନକୁଟେଲ-ନାମକ କୀଟବିଶେଷ ।

କର୍ଣ୍ଣକୁହର, ବି. କ୍ଲ. ( କର୍ଣ୍ଣ-କୁହର ) କର୍ଣ୍ଣର ଛିଦ୍ର ।

କର୍ଣ୍ଣଗୂଥ, ବି. କ୍ଲ. (କର୍ଣ୍ଣ-ଗୂଥ=ମଳ,) କାନଗୁହ ।

କର୍ଣ୍ଣଗୋଚର, ବି°. ( କର୍ଣ୍ଣ-ଗୋଚର ) ଶ୍ରୁତି-ଗୋଚର, ଶ୍ରବଣଯୋଗ୍ୟ ।

କର୍ଣ୍ଣଗ୍ରାହ, ବି. ପୁଂ. ( କର୍ଣ୍ଣ-ଗ୍ରାହ ) ନାବିକ, କର୍ଣ୍ଣଧାର ।

କର୍ଣ୍ଣଜଳୌକା, ବି. ସ୍ତ୍ରୀ. ( କର୍ଣ୍ଣ-ଜଳୌକସ୍ ) କାନକୁଟେଲ ।

କର୍ଣ୍ଣଜାହ, ବି. କ୍ଲ. (କର୍ଣ୍ଣ-ଜାହ) କର୍ଣ୍ଣମୂଳ ।

କର୍ଣ୍ଣଜିତ୍ ବି. ପୁଂ. (କର୍ଣ୍ଣ-ଜି-ତ୍) ଅର୍ଜୁନ ।

କର୍ଣ୍ଣଧାର, ବି. ପୁଂ. (କର୍ଣ୍ଣ ଧାର) ନାବିକ, ମାଝି । ଯଥା—

କର୍ଣ୍ଣଧାର ବନ୍ଧୁନେ ବସେ ବଳେଲେ । ଭ. ଚ.

କର୍ଣ୍ଣନାଦ, ବି. ପୁଂ. (କର୍ଣ୍ଣ-ନାଦ) ଅଙ୍ଗୁଳଦ୍ୱାରା ଆଚ୍ଛାଦିତ କର୍ଣ୍ଣରେ ସଞ୍ଜାତ ଶବ୍ଦବିଶେଷ ।

କର୍ଣ୍ଣପଥ, ବି. ପୁଂ. (କର୍ଣ୍ଣ-ପଥ) କର୍ଣ୍ଣ ମଧ୍ୟରେ ଶବ୍ଦ ପ୍ରବେଶଯୋଗ୍ୟ ପଥ ।

କର୍ଣ୍ଣପୂର, ବି. ପୁଂ. ( କର୍ଣ୍ଣ ପୂର୍-ଅ ) କର୍ଣ୍ଣଭୂଷଣ, କର୍ଣ୍ଣାଲଙ୍କାର; ନୀଳପଦ୍ମ; ଅଶୋକବୃକ୍ଷ; ଶିରୀଷ ବୃକ୍ଷ ।

କର୍ଣ୍ଣମଳ, ବି. କ୍ଲ. ( କର୍ଣ୍ଣ-ମଳ ) କାନର ମଇଳା, କାନଗଇ ।

କର୍ଣ୍ଣବେଧ, ବି. ପୁଂ. ( କର୍ଣ୍ଣ-ବେଧ ) ସଂସ୍କାର-ବିଶେଷ, କାନଫୋଡ଼ା ।

କର୍ଣ୍ଣବେଷ୍ଟକ, ବି. ପୁଂ. ( କର୍ଣ୍ଣ-ବେଷ୍ଟକ ) କର୍ଣ୍ଣ-ଭୂଷଣ, କୁଣ୍ଡଳ ।

କର୍ଣ୍ଣଶୂଳ, ବି. ପୁଂ. (କର୍ଣ୍ଣ-ଶୂଳ) କର୍ଣ୍ଣର ବେଦନା, କର୍ଣ୍ଣଯାତନା ।

କର୍ଣ୍ଣାଟ, ବି. ପୁଂ. ( କର୍ଣ୍ଣ-ଅଟ-ଅ ) ଦେଶବିଶେଷ, ଦ୍ରାବିଡ଼ର ଉତ୍ତରପଶ୍ଚିମସ୍ଥ ଦେଶ ।

କର୍ଣ୍ଣାଟୀ, ବି. ସ୍ତ୍ରୀ. ( କର୍ଣ୍ଣାଟ-ଈ ) ଶବ୍ଦାର ଗୀତ-ବିଶେଷ; ରାଗିଣୀବିଶେଷ; କର୍ଣ୍ଣାଟ ଦେଶୀୟ ସ୍ତ୍ରୀଲୋକ ।

କର୍ଣ୍ଣାଟିକା, ବି. ସ୍ତ୍ରୀ. ( କର୍ଣ୍ଣାଟ-କ-ଅ ) କର୍ଣ୍ଣାଟ ଦେଶୀୟ ସ୍ତ୍ରୀଲୋକ । ଯଥା—

କର୍ଣ୍ଣାଟିକାଙ୍କ କାହିଁ ସେ ପଦିଯେ ନାହିଁ । ପ୍ରେ. ମୁ.

କର୍ଣ୍ଣାଲ, ବି. (ଦେଶଜ) ତେଣ୍ଟ, କାହାଳ ।

କର୍ଣ୍ଣିକା, ବି. ସ୍ତ୍ରୀ. ( କର୍ଣ୍ଣ-ଇକ-ଅ ) କର୍ଣ୍ଣାଭରଣ; ପୁଷ୍ପର ମଧ୍ୟସ୍ଥଳ; ହାତର ମଝି ଅଙ୍ଗୁଳି; ଲେଖନୀ; କୁଟ୍ଟିନୀ ।

କର୍ଣ୍ଣିକାଚଳ, ବି. ପୁଂ. (କର୍ଣ୍ଣିକା-ଅଚଳ) ସୁମେରୁ ପର୍ବତ ।

କର୍ଣ୍ଣିକାର, ବି. ପୁଂ. (କର୍ଣ୍ଣିକା-ଋ-ଅ) ବୃକ୍ଷବିଶେଷ । କ୍ଲ. ସୁନ୍ଦରବର୍ଣ୍ଣବିଶିଷ୍ଟ ଗନ୍ଧହୀନ ପୁଷ୍ପବିଶେଷ; କନିଅରଗଛ; କନିଅର ଫୁଲ । ଯଥା—

ବର୍ଣ୍ଣପ୍ରକର୍ଷେ ସତି କର୍ଣ୍ଣିକାରଂ
ଧୁନୋତି ନିର୍ଗନ୍ଧତୟାସ୍ମ ଚେତଃ । କୁ. ସ.

କର୍ଣ୍ଣୀରଥ, ବି. ପୁଂ. ( କର୍ଣ୍ଣୀ-ରଥ ) ସ୍ତ୍ରୀଲୋକ-ମାନଙ୍କର ଗମନାଗମନାର୍ଥେ ବସ୍ତ୍ରାବୃତ ଯାନ-ବିଶେଷ, ଡୋଲି, ଖଟିଆ ।

କର୍ଣ୍ଣେଜପ, ବି°. (କର୍ଣ୍ଣେ-ଜପ୍-ଅ) ଖଳ, ଖଇରୁଆ, ଚୁଗୁଲିଆ, କୁପରାମର୍ଶଦାତା । ଯଥା—

ନ ଛିଦ୍ରଂ ମନ୍ତ୍ର ପଣାୟାରକ୍ଷ,
ସମ୍ମୁଖ କର୍ଣ୍ଣେଜପ ବାରକ୍ଷ । ଘ. ବ.

କର୍ଣ୍ଣେନ୍ଦୁ, ବି. ପୁଂ. ( କର୍ଣ୍ଣ-ଇନ୍ଦୁ ) ଅର୍ଦ୍ଧଚନ୍ଦ୍ରାକୃତି କର୍ଣ୍ଣାଲଙ୍କାରବିଶେଷ ।

କର୍ତ୍ତନ, ବି. କ୍ଲ. (କୃତ୍-ଅନ) ଛେଦନ, କାଟିବା ।

କର୍ତ୍ତନୀ, ବି. ସ୍ତ୍ରୀ. (କର୍ତ୍ତନ-ଈ) କତୁରୀ ନାମକ ଯନ୍ତ୍ର, ଛେଦନୀ ।

କର୍ତ୍ତରୀ, କର୍ତ୍ତରିକା, ବି. ସ୍ତ୍ରୀ. ( କୃତ୍-ଅର-ଈ, କ-ଅ) କତୁରୀ; କଟାରୀ; ଗୁଅକାତି ।

କର୍ତ୍ତବ୍ୟ, ବି°. ( କୃ-ତବ୍ୟ ) କରିବାର ଯୋଗ୍ୟ, କରଣୀୟ; ଉଚିତ; ବିଧେୟ । ( ପ୍ରଚଳିତ କଥାରେ ) ବି. ବଳ, ପରାକ୍ରମ । ଯଥା— ଅମୁକ କାର୍ଯ୍ୟ କରିବାକୁ ମୋହର କର୍ତ୍ତବ୍ୟ ନାହିଁ ।

କର୍ତ୍ତୃ, ବ. ପୁଂ. ( କୃ-ତୃ ) ବିଧାତା; ପରମେଶ୍ୱର; କାରକବିଶେଷ । ବିଂ. ପ୍ରଣେତା; ରଚୟିତା; କର୍ମାଚାର୍ଯ୍ୟ ଅଧ୍ୟକ୍ଷ; ସ୍ୱାମୀ । କର୍ତ୍ତ୍ରୀ, ସ୍ତ୍ରୀ. ଈଶ୍ୱରୀ; ମାଲିକର ସ୍ତ୍ରୀ । ବିଂ. ଅଧିକାରିଣୀ; ପ୍ରଧାନ ସ୍ତ୍ରୀ ।

କର୍ତ୍ତିତ, ବିଂ. ( କୃତ୍-ତ ) ଛିନ୍ନ; ଯାହା କର୍ତ୍ତନ କରା ହୋଇଅଛି; ଛେଦିତ ।

କର୍ତ୍ତୁକାମ, ବିଂ. (କର୍ତ୍ତୁ=କରିବା ନିମିତ୍ତ-କାମ=ଇଚ୍ଛା) ଚିକୀର୍ଷୁ, କରିବାକୁ ଅଭିଳାଷୀ ।

କର୍ତ୍ତୃତ୍ୱ, ବ. ନ. ( କର୍ତ୍ତୃ-ତ୍ୱ ) ସ୍ୱାମିତ୍ୱ, ପ୍ରଭୁତ୍ୱ, ଆଧିପତ୍ୟ; ଅଧିକାର ।

କର୍ଦ୍ଦନ, ବ. ନ. ( କର୍ଦ୍ଦ-ଅନ ) ଉଦରର ଶବ୍ଦ; କ୍ରୁଦ୍ଧିତ ରବ; ଶିଶୁର ଶବ୍ଦ । ବ. ପୁଂ. କାକ ।

କର୍ଦ୍ଦମ, ବ. ପୁଂ. (କର୍ଦ୍ଦ-ଅମ) କାଦୁଅ, ପଙ୍କ, ପାପ । ନ. ମାଂସ ।

କର୍ଦ୍ଦମାଟକ, ବ. ପୁଂ. (କର୍ଦ୍ଦମ-ଅଟ-ଅକ) ଖତ-କୁଡ଼, ବିଷ୍ଠା ଇତ୍ୟାଦି ପକାଇବା ସ୍ଥାନ ।

କର୍ଦ୍ଦମିତ, ବିଂ. ( କର୍ଦ୍ଦମ-ଇତ ) କର୍ଦ୍ଦମଯୁକ୍ତ, ପଙ୍କିଳ; କର୍ଦ୍ଦମାକ୍ତ ।

କର୍ପଟ, ପୁଂ. ନ. } ବ. (କୃପ-ଅଟ, ଅଟ-
କର୍ପଟିକା, କର୍ପଟି, ସ୍ତ୍ରୀ. } କ-ଆ, ଅଟ-ଇ )
ପୁରାତନ ବସ୍ତ୍ରଖଣ୍ଡ; ଛିଣ୍ଡାକନା; ରୁମାଲ; ଝାଳ ଇତ୍ୟାଦି ପୋଛିବାପାଇଁ ହସ୍ତସ୍ଥିତ କ୍ଷୁଦ୍ର ବସ୍ତ୍ର-ଖଣ୍ଡ; ପର୍ବତବିଶେଷ ।

କର୍ପଟିକ, କର୍ପଟୀ, ବିଂ. ( କର୍ପଟ-ଇକ, ଇନ୍ ) କର୍ପଟଧାରୀ; ଛିନ୍ନବସ୍ତ୍ରପରିଧାନକାରୀ; କୌପୀନ-ବାନ୍ ।

କର୍ପର, ବ. ପୁଂ. ( କୃପ-ଅର ) ମୁଣ୍ଡର ଖପୁରି; ଖପରି; କୂର୍ମର ପୃଷ୍ଠାସ୍ଥି; କଟାହ; ଅସ୍ତ୍ର-ବିଶେଷ ।

କର୍ପାସ, ବ. ପୁଂ. ନ. ( କୃ-ପାସ ) କପାତୁଳା । ସୀ, ସ୍ତ୍ରୀ. କପାଗଛ ।

କର୍ପୂର, ବ. ପୁଂ ନ. (କର୍ପ-ଊର) ସୁନାମପ୍ରସିଦ୍ଧ ଶ୍ୱେତବର୍ଣ୍ଣ ଗନ୍ଧଦ୍ରବ୍ୟବିଶେଷ ।

କର୍ପୂରତିଳକା, ବ. ସ୍ତ୍ରୀ. ଜୟାର ସଖୀବିଶେଷ, ଜୟା ।

କର୍ପୂରମଣି, ବ. ପୁଂ. (କର୍ପୂର-ମଣି) ମୂଲ୍ୟବାନ୍ ପ୍ରସ୍ତରବିଶେଷ ।

କର୍ପୂରରସ, ବ. ପୁଂ. (କର୍ପୂର-ରସ) ପାରଦ ।

କର୍ବୁର, କର୍ବୂର, ବ. ନ. ( କର୍ବ-ଉର, ଊର, ) ସୁବର୍ଣ୍ଣ; ଜଳ । ପୁଂ. ପାପ; ରାକ୍ଷସବିଶେଷ;ରାକ୍ଷସ । ବିଂ. ବିଚିତ୍ର ବର୍ଣ୍ଣବିଶିଷ୍ଟ । ସ୍ତ୍ରୀ. ଦୁର୍ଗା । (ସୁବର୍ଣ୍ଣ ଅର୍ଥରେ) । ଯଥା—

ମନ୍ଦରା ଶୁଦ୍ଧରଞ୍ଜିତ,
କର୍ବୂରକାନ୍ତିରଞ୍ଜିତ କାନ୍ତସୀତେ ଏ । ଘ. ବ.

କର୍ବୁରିତ, ବିଂ. (କର୍ବୁର-ଇତ) ନାନାବର୍ଣ୍ଣରେ ରଞ୍ଜିତ ।

କର୍ମ ବ. ନ. (କୃ-ମନ୍) କାର୍ଯ୍ୟ, କ୍ରିୟା; ଅଦୃଷ୍ଟ; ପାପ; ପୁଣ୍ୟ; କାରକବିଶେଷ । ଅଦୃଷ୍ଟ ଅର୍ଥରେ; ଯଥା—

କର୍ମ ଥିବଲକୁ ବନ୍ଧୁ ବେଳକୁ
ଅମୃତ ହୁଏ ଗରଳ, ହେ ଦମାଳ । ର. ଜ.

କର୍ମକର, କର୍ମକାର ବ. ପୁଂ. (କର୍ମନ୍-କୃ-ଅ) କମାର, ଲୌହକାର; କାର୍ଯ୍ୟ ସମ୍ପାଦକ । ବିଂ. ଭୃତ୍ୟ, ଯେ ବେତନ ଗ୍ରହଣ କରି କାର୍ଯ୍ୟ କରେ ।

କର୍ମକାଣ୍ଡ, ବ. ପୁଂ. ନ. (କର୍ମନ୍-କାଣ୍ଡ ) କର୍ମ-ସମୂହ; ବେଦର ତ୍ରିକାଣ୍ଡର ଅନ୍ତର୍ଗତ କାଣ୍ଡ-ବିଶେଷ, ବେଦାଂଶ ।

କର୍ମକୀଳକ, ବ. ପୁଂ. ଧୋବା, ରଜକ ।

କର୍ମକ୍ଷେତ୍ର, ବ. ନ. ଭାରତବର୍ଷ; ଲୋକଙ୍କର ସ୍ଥାନ ।

କର୍ମଗ୍ରହୀ, ବିଂ. (କର୍ମନ୍-ଗ୍ରହ-ଇନ୍) ଯେ ବ୍ୟକ୍ତି ବେତନ ଗ୍ରହଣ କରି ଅନ୍ୟର କାର୍ଯ୍ୟ ସମ୍ପାଦନ କରେ ।

କର୍ମଜ, ବ. ପୁଂ. (କର୍ମନ୍-ଜ) କଳିଯୁଗ; ବଟବୃକ୍ଷ । ବିଂ. କ୍ରିୟାରୁ ଉତ୍ପନ୍ନ, କର୍ମଜାତ ।

କର୍ମଠ, ବିଂ.(କର୍ମନ୍-ଠ) କର୍ମଦକ୍ଷ, କାର୍ଯ୍ୟକୁଶଳ, ପାରଗ ।

କର୍ମଣ୍ୟ, ବି°. (କର୍ମନ୍-ଯ) କର୍ମଯୋଗ୍ୟ; କାର୍ଯ୍ୟ-ଦକ୍ଷ; କର୍ମଠ ।

କର୍ମଣ୍ୟା, ବି. ସ୍ତ୍ରୀ. (କର୍ମଣ୍ୟ-ଆ) ବେତନ ।

କର୍ମତ୍ୟାଗ, ବି. ପୁଂ. ( କର୍ମନ୍-ତ୍ୟାଗ ) ବିଷୟ କର୍ମରୁ ବିରତି, ବିହିତ କର୍ମକୁ ପରିତ୍ୟାଗ ।

କର୍ମଦକ୍ଷ, ବି°. ( କର୍ମନ୍-ଦକ୍ଷ ) କର୍ମନିପୁଣ, କାର୍ଯ୍ୟପଟୁ ।

କର୍ମଦୁଷ୍ଟ, ବି°.(କର୍ମନ୍-ଦୁଷ୍ଟ ) ଦୁଷ୍ଟଚରିତ; ଦୁଷ୍କର୍ମା, ଯେ ସର୍ବଦା ଅସତ୍ ପଥରେ ଚଳେ, ଯେ ସର୍ବଦା ଅସତ୍ କର୍ମ କରେ ।

କର୍ମଦୋଷ, ବି. ପୁଂ. ( କର୍ମନ୍-ଦୋଷ ) କର୍ମର ଦୋଷ; ପାପ; ଅପରାଧ ।

କର୍ମଧାରୟ, ବି.ପୁଂ. (କର୍ମନ୍-ଧୃ-ଇ-ଅ ) ସମାସ-ବିଶେଷ, ବିଶେଷ୍ୟ ଓ ବିଶେଷଣ ଘଟିତ ସମାସ, ଏଥିରେ ପୂର୍ବପଦ ଏବଂ ପରପଦରେ ସମାସ ବିଭକ୍ତି ଥାଏ ।

କର୍ମନାଶା, ବି. ସ୍ତ୍ରୀ. ( କର୍ମନ୍-ନାଶ-ଆ ) ନଦୀ-ବିଶେଷ; ତ୍ରିଶଙ୍କୁ ନାମା ଅସୁରର ଲାଳସ୍ରାବରୁ ଏହି ନଦୀ ଉତ୍ପନ୍ନ ହୋଇଥିବାର କଥା ପୁରାଣରେ ଲେଖା ଅଛି; ଏହି ନଦୀର ଜଳ ସ୍ପର୍ଶ କଲେ ସମସ୍ତ ପୁଣ୍ୟକର୍ମର କ୍ଷୟ ହୋଇଯାଏ । ଯଥାଃ—

ଦେବବାଣୀ ସଙ୍ଗେ ଅଛି ଅବୋଧା,
ଦୂତ ଭାଗୀରଥୀ-ସ୍ରୋତେ କର୍ମନାଶା । ନ. କେ.

କର୍ମନ୍ଦିନ, ବି. ପୁଂ. ( କର୍ମନ୍ଦ-ଇନ ) ଭିକ୍ଷୁକ ।

କର୍ମଫଳ, ବି. ନ. (କର୍ମନ୍-ଫଳ) ସୁଖ ବା ଦୁଃଖ ।

କର୍ମଭୂମି, ବି. ସ୍ତ୍ରୀ. (କର୍ମନ୍-ଭୂମି) ହିମାଳୟ ଏବଂ ବିନ୍ଧ୍ୟାଚଳର ମଧ୍ୟବର୍ତ୍ତୀ ସ୍ଥାନ, ଆର୍ଯ୍ୟାବର୍ତ୍ତ; ଭାରତବର୍ଷ; କୃଷ୍ଟଭୂମି; କାର୍ଯ୍ୟକ୍ଷେତ୍ର ।

କର୍ମଭୋଗ, ବି. ପୁଂ.(କର୍ମନ୍-ଭୋଗ)କର୍ମର ଫଳ-ଭୋଗ; କୌଣସି ବିଷୟରେ ବୃଥା କଷ୍ଟ ପାଇବା ।

କର୍ମବିପାକ, ବି. ପୁଂ. (କର୍ମନ୍-ବିପାକ) କର୍ମର ଫଳଭୋଗ, ସମ୍ପାଦିତ ଶୁଭାଶୁଭ କାର୍ଯ୍ୟର ପରିଣାମ; ତନ୍ନିଷୟକ ଗ୍ରନ୍ଥ ।

କର୍ମମୂଳ, ବି. ନ. (କର୍ମନ୍-ମୂଳ) ଦର୍ଭ, କୁଶ ।

କର୍ମଯୁଗ, ବି. ନ. (କର୍ମନ୍-ଯୁଗ) କଳିଯୁଗ ।

କର୍ମଯୋଗ, ବି.ପୁଂ. (କର୍ମନ୍-ଯୋଗ) ବେଦବିହିତ କର୍ମରେ କୌଶଳ; ଚିତ୍ତଶୁଦ୍ଧିଜନକ ବୈଦିକ କର୍ମ, ଏହା ଦ୍ୱିବିଧ, ନିଷ୍କାମ ଓ ସକାମ । କର୍ମ-ରୂପ ଯୋଗ ସାଧନ, ଈଶ୍ୱରପ୍ରାପ୍ତି ନିମିତ୍ତ କର୍ମାବଲମ୍ବନ ।

କର୍ମଯୋଗୀ, ବି°. (କର୍ମଯୋଗ-ଇନ୍) କର୍ମଯୋଗ-ରତ, ବୈଦିକକର୍ମାଚରଣରେ ପ୍ରବୃତ୍ତ,ଈଶ୍ୱର-ପ୍ରାପ୍ତି ନିମିତ୍ତ ଧ୍ୟାନ ଧାରଣାଦି ଉପଯ୍ୟାନିଯୁକ୍ତ ।

କର୍ମସାକ୍ଷୀ, ବି. ପୁଂ. ( କର୍ମନ୍-ସାକ୍ଷୀ ) ସୂର୍ଯ୍ୟାଦି ନବ । ଯଥା—ସୂର୍ଯ୍ୟ, ଚନ୍ଦ୍ର, ଯମ, କାଳ, କ୍ଷିତି, ଅପ୍, ତେଜଃ, ମରୁତ୍ ଓ ବ୍ୟୋମ । ବି°. ଯେ କର୍ମକୁ ସାକ୍ଷାତ୍ ଦେଖିଥାଏ ।

କର୍ମାର, ବି. ପୁଂ. ( କର୍ମ-ଋ-ଅ ) କମାର; କରମଙ୍ଗା ଗଛ; ପିଠାବାଉଁଶ ବାଉଁଶ, କଣ୍ଟା ବାଉଁଶ ।

କର୍ମିଷ୍ଠ, ବି°. ( କର୍ମନ୍-ଇଷ୍ଠ ) ଅତିଶୟ କର୍ମ-କୁଶଳ ।

କର୍ମୀ, ବି°. (କର୍ମନ୍-ଇନ୍) କାର୍ଯ୍ୟଦକ୍ଷ; କର୍ମକାରୀ ।

କର୍ମେନ୍ଦ୍ରିୟ, ବି. ନ. (କର୍ମନ୍-ଇନ୍ଦ୍ରିୟ) ବାକ୍, ପାଦ, ପାଣି, ପାୟୁ ଓ ଉପସ୍ଥ ଏହି ପାଞ୍ଚ ।

କର୍ବର, ବି. ପୁଂ. ( କୃ=ବଧ କରିବା-ବର ) ବ୍ୟାଘ୍ର; ରାକ୍ଷସ । ବୀ, ସ୍ତ୍ରୀ. ଶିବା ।

କର୍ଶିତ, ବି°. ( କୃଶ୍-ଇ-ତ ) ଦୁର୍ବଳୀକୃତ, କୃଶୀକୃତ ।

କର୍ଷ, ବି. ପୁଂ. ନ. ( କୃଷ୍-ଅ ) କର୍ଷଣ, ଗୃଷ; ପରିମାଣବିଶେଷ; ଏକ ତୋଳା, ପଳର ଚତୁର୍ଥାଂଶ ।

କର୍ଷକ, ବି°. (କୃଷ୍-ଅକ) କୃଷକ, ଯେ କର୍ଷଣ କରେ; ଯେ ଆକର୍ଷଣ କରେ । ବି.ପୁଂ. ଯେଉଁ ସବୁ ପକ୍ଷୀ ନଖଦ୍ୱାରା ଭୂମି କର୍ଷଣ କରି ଆହାର ଅନ୍ୱେଷଣ କରନ୍ତି । (Scraping birds)

କର୍ଷଣ, ବି. ନ. ( କୃଷ୍-ଅନ ) ଚାଷ, କୃଷିକର୍ମ; ଆକର୍ଷଣ ।

କର୍ଷଣୀ ଦ. ସ୍ତ୍ରୀ. ( କୃଷ୍-ଅନ-ଈ ) ଲଗାମ, ବାଗଡୋର; କ୍ଷୀରଣୀବୃକ୍ଷ ।

କର୍ଷିତ, ବିଂ. ( କର୍ଷି-ତ ) ଯେ ଭୂମି ଚାଷ କରା ଯାଇଅଛି, କୃଷ୍ଟ ।

କର୍ଷୀ, ବିଂ. ( କୃଷ୍-ଅ-ଇନ୍ ) ଆକର୍ଷଣକାରୀ; ହୃଦୟଗ୍ରାହୀ, ମନୋହର ।

କର୍ଷୂ, ବି. ପୁଂ. (କୃଷ୍-ଊ) କାଷ୍ଠାଗ୍ନି, ଘସିନିଆଁ । ସ୍ତ୍ରୀ. କୃତ୍ରିମ ଷୁଦ୍ର ଜଳାଶୟ, ଝୁଲା; କୃଷି ।

କର୍ହିଚର୍, ଅଂ. ( କମ୍-ର୍ହି-ଚର୍ ) କଦାଚର୍, କେବେହେଁ, କୌଣସି ସମୟରେ ।

କଳ, ବି. ପୁଂ. (କଳ୍-ଅ) ଅବ୍ୟକ୍ତ ମଧୁର ଧ୍ୱନି; ଭ୍ରମରାଦିର ଗୁଣ ଗୁଣ ଶବ୍ଦ; ଶୁକ୍ର । (ଦେଶଜ) ଯନ୍ତ୍ର, ଯଥା—ଛପା କଳ, ସୂତା କାଟିବା କଳ । (ପ୍ରାନ୍ତଜ) (କବଳ ଶବ୍ଦଜ) ମୁଖ-ଗହ୍ୱର; ଗ୍ରାସ । ଯଥା—

କଳେ ଖାଥ ରେ ଭ୍ରମର ଅବିକଳ । ର. କ.

କଳକଣ୍ଠ, ବି. ପୁଂ. ( କଳ-କଣ୍ଠ ) ପାରାବତ; କୋକିଳ; ହଂସ । ବିଂ. ମଧୁର ସ୍ୱରବିଶିଷ୍ଟ । ସ୍ତ୍ରୀ. ସୁସ୍ୱରବତୀ । (କୋକିଳ ଅର୍ଥରେ) ଯଥା—

କଳକଣ୍ଠ କଳ ଶୁଣିଲେ ପ୍ରକାଶେ
ପ୍ରିୟତମାର ମନୋରମ ।

କଳକଳ, ବି. ପୁଂ. ( କଳ ଦେଖ, ଦ୍ୱିରୁକ୍ତି ) ଗୋଳମାଳ, କୋଳାହଳ ।

କଳଘୋଷ, ବି. ପୁଂ. (କଳ-ଘୁଷ୍-ଅ) କୋକିଳ ।

କଳଙ୍କ, ବି. ପୁଂ. (କ-ଲନ୍କ୍-ଅ) ଚିହ୍ନ; ତାମ୍ରାଦି ଧାତୁର ଦାଗ; ଅପଯଶ; ଲୌହାଦି ଧାତୁରେ ମଳିଗ୍ନ ପଡ଼ିବା । ଯଥା—

କଳଙ୍କରହିତ କଳାକରଜିତ-ବଦନ ଶୋଭାସୁଦତୀ । ର. କ.

କଳଙ୍କଷ, ବି. ପୁଂ. ( କଳ-କଷ୍-ଅ ) ସିଂହ । ଷା, ସ୍ତ୍ରୀ. କରତାଳୀ ।

କଳଙ୍କିତ, କଳଙ୍କୀ, ବିଂ. (କଳଙ୍କ-ଇତ, ଇନ୍) କଳଙ୍କଯୁକ୍ତ; ଯହିଁରେ କଳଙ୍କ ହୋଇଅଛି; ଅପବାଦପ୍ରାପ୍ତ, ନିନ୍ଦାଗ୍ରସ୍ତ ।

କଳଙ୍କୁର, ବି. ପୁଂ. (କଳଂ-କୃ-ଅ) ଜଳାବର୍ତ୍ତ, ଜଳଭଉଁରି ।

କଳଞ୍ଜ, ବି. ପୁଂ. ନ. (କ-ଲନ୍ଜ୍-ଅ) ବିଷଲିପ୍ତ ବାଣାଦିଦ୍ୱାରା ବଧ ଜନ୍ତୁ; ତମାଖୁ; ଅମେଧ । ବିଂ. ବିଷାସ୍ତ୍ରବଧ ।

କଳଠ, ବି. ନ. ଗୃହାଚ୍ଛାଦନ, ଚାଳ ।

କଳତ୍ତୂଳିକା, ବି. ସ୍ତ୍ରୀ. ଇଚ୍ଛାବତୀ, କାମୁକୀ ।

କଳତ୍ର, ବି. ନ. (କଳ୍=ନିଃସୃତ ହେବା-ଅତ୍ର; ବା, କଡ=କ୍ଷୀଣ-ତ୍ରୈ-ଅ ) ନିତମ୍ବ, କଟି; ଦୁର୍ଗ; ଭାର୍ଯ୍ୟା । ସ୍ତ୍ରୀ. ଜଘନ ।

କଳଧୂତ, କଳଧୌତ, ବି. ନ. ସୁବର୍ଣ୍ଣ, ସୁନା; ଯଥା—

କଳଧଉତ ଲତା ବାଢେ ଚଳେ । ର. କ.

ରୌପ୍ୟ; ମଧୁରଧ୍ୱନି ।

କଳଧ୍ୱନି, ବି. ପୁଂ. (କଳ-ଧ୍ୱନି) ଅବ୍ୟକ୍ତ ମଧୁରଧ୍ୱନି; ପାରାବତ; କୋକିଳ; ମୟୂର ।

କଳନ, ନ. } ବି. ( କଳ୍-ଅନ, ଅନ-ଆ )
କଳନା, ସ୍ତ୍ରୀ } ଗଣନା; ଦର୍ଶନ; ଗ୍ରହଣ; ଗ୍ରାସିବା; ଗ୍ରାସ; ଧାରଣ; ପରିଧାନ; ଶବ୍ଦ କରିବା; ଲଙ୍ଘନ; ଦୋଷ; ଚିହ୍ନ ।

କଳଭ, ବି. ପୁଂ. (କରଭ ଦେଖ, ର=ଳ) ହସ୍ତି-ଶାବକ; ଉଷ୍ଟ୍ରଶାବକ ।

କଳମ, ବି. ପୁଂ. ( କଲ୍-ଅ-ମ ) ଧାନ୍ୟବିଶେଷ; ଲେଖନୀ; ଚୌର; ଧୂର୍ତ୍ତ; (ଦେଶଜ) ବୃକ୍ଷାଦି ଶାଖାରୁ ଉପାୟବିଶେଷଦ୍ୱାରା ଉତ୍ପନ୍ନ ଛୋଟ ଛୋଟ ଗଛ ।

କଳମତ୍ତ, ବିଂ. (କଳ-ମତ୍ତ) ମଦମତ୍ତ, ଉନ୍ମତ୍ତ ଯଥା—

ଧରି ଦର୍ପକଳମତ୍ତ ବୃଷଭର ଶିର । କ. ବ.

କଳମ୍ବ, ବି. ପୁଂ. (କଡ଼୍-ଅମ୍ବ) କଦମ୍ବବୃକ୍ଷ; ବାଣ; ଯଥା—

ହାଣି ବନ୍ଧେ ଶମ୍ବ ପଦ୍ମଶ କଳମ୍ବ ଭୂମ୍ବକ୍ ଏବା ଅହନ୍ । ବ. ଚି.

(ପ୍ରାନ୍ତଜରେ) ଶାକବିଶେଷ ।

କଳରବ, ବି. ପୁଂ. (କଳ-ରବ) କୋକିଳ; ହଂସ; ପାରାବତ; ମୟୂର; କଳଧ୍ୱନି; କୋକିଳାଦିର କଳକଳ ଧ୍ୱନି ।

କଳଲ, ବି. ପୁଂ. (କଲ୍-ଅଲ) ଜରାୟୁ, ଗର୍ଭାବରଣଚର୍ମ; ଅସ୍ଥିଶୂନ୍ୟ ମାଂସପିଣ୍ଡ ।

କଲବଲ, ( ଦେଶଜ ) ଆକୁଳ, ବ୍ୟାକୁଳ । ଯଥା—

> କଲବଲ ହଃପଃ ହୋଇ ଯାଉଛି ନପଃ
> ସଂବେଶ ଅପନ ବଉଡରେ । ବ. ଚ.

କଳବଙ୍କ, ବି. ପୁଂ. (କଳ-ବନ୍କ୍-ଅ) ଘରଚଟିଆ ଚଢ଼େଇ; ବୃକ୍ଷବିଶେଷ; ଇନ୍ଦ୍ରଯବ ବୃକ୍ଷ; ଶ୍ୱେତଭ୍ରମର; କଳଙ୍କ, ଚିହ୍ନ, ଦାଗ ।

କଳଶ, ବି. ପୁଂ. (କଳ=ଅବ୍ୟକ୍ତ ମଧୁର ଶବ୍ଦ-ଶ =ଖଣ୍ଡନ କରିବା) ମୃଣ୍ମୟ ଜଳପାତ୍ର, ମାଠିଆ ।

କଳଶି, କଳଶୀ, ବି. ସ୍ତ୍ରୀ. (କଳ-ଶ-ଇ, ଈ) ଜଳପାତ୍ର, ମାଠିଆ ।

କଳସ, ବି.ପୁଂ. (କ-ଲସ୍-ଅ) ଜଳପାତ୍ର, ମାଠିଆ ।

କଳସି, କଳସୀ, ବି. ସ୍ତ୍ରୀ. (କ=ଜଳ-ଲସ୍= ଶୋଭା ପାଇବା-ଅ-ଇ, ଅ-ଈ) ଜଳପାତ୍ର, ମାଠିଆ ।

କଳହ, ବି. ପୁଂ. (କଳ-ହନ୍-ଅ) ବିବାଦ, ଯୁଦ୍ଧ, ଝଗଡ଼ା । ନ. ଶବ୍ଦକୋଷ ।

କଳହଂସ, ବି. ପୁଂ. (କଳ-ହଂସ) ରାଜହଂସ । ଯଥା—

> କଳୁଥିବ ହଂସ ପକ୍ଷୀସ୍ୱେ ଗମନ
> କେଉଁ କଳହଂସଗମନା । ଉ. ଭ.

କଳହଂସକେଦାର, ବି. ଉତ୍କଳପଦ୍ୟର ରାଗ ବା ବୃତ୍ତିବିଶେଷ ।

କଳହାନ୍ତରିତା, ବି. ସ୍ତ୍ରୀ. (କଳହ-ଅନ୍ତରିତା) ନାୟିକାବିଶେଷ, ଯେଉଁ ନାୟିକା ନାୟକ ସଙ୍ଗରେ କଳହ କରି ପଶ୍ଚାତ୍ତାପ କରେ ।

କଳା, ବି. ସ୍ତ୍ରୀ. (କଲ୍-ଅ-ଆ) ଚନ୍ଦ୍ରର ଷୋଡ଼ଶଭାଗ; ଅଳ୍ପ ପରିମାଣ; ଅଂଶ; କାଳର ଅଂଶବିଶେଷ; ଅଷ୍ଟାଦଶନିମେଷରେ ଏକ କାଷ୍ଠା, ତ୍ରିଂଶତ୍ କାଷ୍ଠାରେ ଏକ କଳା; ବିଭୂତି; ନୌକା; ସାମର୍ଥ୍ୟ; କାପଟ୍ୟ; ଶୌର୍ଯ୍ୟାଦି ଗୁଣ; ଟଙ୍କାର ସୁଧ; ମଣ୍ଡିତପଦ୍ଧତି; ସଂଖ୍ୟା; ଗୀତ, ବାଦ୍ୟ, ନାଟ୍ୟ, ନୃତ୍ୟ, ଆଲେଖ୍ୟ, ପୁଷ୍ପାସ୍ତରଣ, ଦଶନବସନାଙ୍ଗରାଗ, ଶେଷଣୀପୀଡ଼ଯୋଜନ, ନେପଥ୍ୟୁକ୍ତି, ଚୂର୍ଣ୍ଣଯୋଜନ, ଐନ୍ଦ୍ରଜାଲ, କାବ୍ୟସମସ୍ୟାପୂରଣ, ତର୍କକର୍ମ, କେଶମାର୍ଜନ, କୌଶଳ, ଦେଶଭାଷାଜ୍ଞାନ, ବୃକ୍ଷାୟୁର୍ବେଦ ଯୋଗ, ଅକ୍ଷରଜ୍ଞାନ, ମଣିରାଗଜ୍ଞାନ ଇତ୍ୟାଦି ୬୪ ବିଦ୍ୟା । (ଦେଶଜ) କୃଷ୍ଣବର୍ଣ୍ଣ, କାଳିଆ । ( କୃଷ୍ଣବର୍ଣ୍ଣ ଅର୍ଥରେ ) ଯଥା—

> କଳାକୁ ନ ଘଡ଼ଇ ଅଙ୍ଗାର ଦୁଧେ ଧୋଇଲେ ସେ । ଭ. ବ.

କଳାକର, ବି. ପୁଂ. ଚନ୍ଦ୍ର । ଯଥା—

> ମୁଖ ପ୍ରଶଂସା କଳାକର,
> ତାହା ପ୍ରଶଂସା ମୁଖ ତାର । ସା. ଚ.

କଳାକୁଳ, ବି. ନ. ( କଳା-ଆକୁଳ ) ବିଷ, ହଳାହଳ ।

କଳାକୁଶଳ, ବିଂ. ( କଳା-କୁଶଳ ) ନୃତ୍ୟଗୀତାଦିରେ ନିପୁଣ ।

କଳାକେଳି, ବି. ପୁଂ. ( କଳା-କେଳି ) ମଦନ, କାମଦେବ ।

କଳାଙ୍କୁର, ବି.ପୁଂ. (କଳା-ଅଙ୍କୁର) ସାରସପକ୍ଷୀ ।

କଳାଦ, ବି. ପୁଂ. ( କଳା-ଦା-ଅ ) ସ୍ୱର୍ଣ୍ଣକାର, ସୁନାରି ବଣିଆ ।

କଳାଧର, ବି. ପୁଂ. (କଳା-ଧର) ଚନ୍ଦ୍ର ।

କଳାନିଧି, ବି. ପୁଂ. (କଳା-ନିଧି=ଆଧାର) ଚନ୍ଦ୍ର । ଯଥା—

> କଳାନିଧି ଅମୃତ ଶରୀର ହୋଇ,
> କଳଙ୍କକୁ କୋଳରେ ସ୍ନେହେ ବସାଇ ସେ । ଉ. ଭ.

କଳାପ, ବି. ପୁଂ. ( କଳା-ଅପ୍-ଅ ) ମୟୂରପୁଚ୍ଛ; ସମୂହ; ଚନ୍ଦ୍ର; ମେଖଳା; କଟିଭୂଷଣ; ବିଦଗ୍ଧ ବ୍ୟକ୍ତି; ବ୍ୟାକରଣବିଶେଷ । (ପୁଚ୍ଛ ଓ ସମୂହ ଅର୍ଥରେ) ଯଥା—

> ଦେଖ କେକୀକଳାପ, ନାଚେ ଟେକ
> କଳାପ, ବନ୍ଧୁଳାପ କରୁଛୁ କେତେ । ସ. କୁ.

କଳାପକ, ବ. ପୁଂ. ( କଳାପ-କ ) କଳାପ; ହସ୍ତିର ଗଳଦେଶସ୍ଥ ରଜ୍ଜୁ; ମିଳିତ ଚାରି ଶ୍ଳୋକ; ସମୂହ ।

କଳାପୀ, ବ. ପୁଂ. (କଳାପ-ଇନ୍) ମୟୂର; (କଳ-ଅପ୍-ଇନ୍) କୋକିଳ; (ମୟୂର ଅର୍ଥରେ ) ଯଥା—

କଳାପୀ କଳାପ ଅଗ୍ର ପତାଉ । ର. ଚ.

କଳାଭୃତ୍, ବ. ପୁଂ. (କଳା-ଭୃ-୦) ଚନ୍ଦ୍ର; ଶିଳ୍ପୀ, ଶିବ ।

କଳାମ୍ବିକା, ବ. ସ୍ତ୍ରୀ. ( କଳା-ଅମ୍ବ-ଅକ-ଅ ) ବୃଦ୍ଧିଦାନ, କରଜ ଦେବାର ।

କଳାୟନ, ବ. ପୁଂ. (କଳା-ଅୟନ) ନର୍ତ୍ତକ ।

କଳାବନ୍ତ ବଂ. ( ଦେଶଜ ) ଗୀମନ୍ତ, ବିଶେଷ ଲକ୍ଷଣଯୁକ୍ତ; ରସିକ । ( ରସିକ ଅର୍ଥରେ ) ଯଥା—

କଳାବନ୍ତ ଲୋକ ଯେହୁ ବୁଝନ୍ତି ଅନ୍ତ ସେହୁ ।

କଳାଳାପ, ବ. ପୁଂ. ( କଳ-ଆଳାପ ) ମଧୁର ଅବ୍ୟକ୍ତ ଧ୍ୱନି; ଭ୍ରମର ।

କଳାବାନ୍, ବ. ପୁଂ. (କଳା-ବତ୍) ଚନ୍ଦ୍ର । ବଂ. ନୃତ୍ୟଗୀତାଦିରେ ଦକ୍ଷ; କଳାବିଶିଷ୍ଟ । ଯଥା—

କଳାବାନ୍ ସାନନ୍ଦଂ ବସତି ମଧୁରସ୍ୱାଂ ମଧୁରସ୍ୱ ।
ହ. ଦୂ.

ବତୀ, ସ୍ତ୍ରୀ. ତୁମ୍ବୁରୁ, ଗନ୍ଧର୍ବର ବୀଣା; ନାୟିକାବିଶେଷ । ଯଥା—

କଳାବତୀ କଳାବର-ଲଗନ କଲା ନ କର । ସଂ ସାଂ

କଳାବିକ, ବ. ପୁଂ. (କଳ-ଅ-ବି-କ) କୁକ୍କୁଟ; ଚରଣାୟୁଧ ।

କଳି, ବ. ପୁଂ ( କଲ୍-ଇ ) ଚତୁର୍ଥ ଯୁଗ; ଯୁଦ୍ଧ; ଦ୍ୱେଷ; କଳହ; ଶୂର । ଲି, ଲୀ, ସ୍ତ୍ରୀ. ଛନ୍ଦକ-ବିଶେଷ; ଶାମୁକର ଚୂନ ।

କଳଅର, ବ. ( ଦେଶଜ ) ହାତର ଖଡ଼ୁ । ଯଥା—

କରେ ଚାଡ଼ ଚୂଡ଼ କଳଅର ସାଜେ ।

କଳିଙ୍ଗ, ବ. ପୁଂ. ଧୂମ୍ରପକ୍ଷୀ, ବକ ।

କଳିକା, କଳୀ, ବ. ସ୍ତ୍ରୀ. (କଳ-ଇ-କ-ଅ, ଇ) କୋରକ, କଢ଼, ଅଫୁଟ ପୁଷ୍ପ ।

କଳଗୋଳ, ବ. ( କଳ-ଗୋଳ ) ବାକ୍ୟୁଦ୍ଧ, କଳହ, କଜିଆ ।

କଳିଙ୍ଗ, ବ. ପୁଂ. (କଳ-ଗମ୍-ଅ) ଦେଶବିଶେଷ, ଉତ୍କଳର ଦକ୍ଷିଣ ଦ୍ରାବିଡ଼ ପର୍ଯ୍ୟନ୍ତ ସମୁଦ୍ର-ତୀରସ୍ଥ ଦେଶ; ବୃକ୍ଷବିଶେଷ । ଙ୍ଗା, ସ୍ତ୍ରୀ. ସୁନ୍ଦରୀ ସ୍ତ୍ରୀ ।

କଲିକା, ବ. (ଯାବନିକ) ହୃଦୟସ୍ଥ କୋମଳ ମାଂସ ଗ୍ରନ୍ଥିବିଶେଷ ।

କଳିଞ୍ଜ, ବ. ପୁଂ. ତୃଣନିର୍ମିତ ଆସନ, ଚୈପ, ମଶିଣା, ମୁନ୍ଦୁରା ।

କଳିତ, ବଂ. (କଲ୍-ତ) ଅବଗତ; ଉପାର୍ଜିତ; ଲବ୍ଧ; ଗଣିତ; ଗୃହୀତ; ବନ୍ଧନିତ; ବଦ୍ଧ; ଧୃତ; ଉକ୍ତ; ଦୃଷ୍ଟ ।

କଳିଦ୍ରୁମ, ବ. ପୁଂ. (କଳି-ଦ୍ରୁମ) ବିଭୀତକ ବା ବାହାଡ଼ା ଗଛ; ନଳ ରାଜାଙ୍କ ଦେହରେ ପ୍ରବେଶ କରିବାକୁ ଛିଦ୍ରାନ୍ୱେଷଣରେ କଳି ଏହି ବୃକ୍ଷରେ ଆଶ୍ରୟ ନେଇଥିବାର ପୁରାଣରେ ଲିଖିତ ଅଛି ।

କଳିନ୍ଦ, ବ. ପୁଂ. ( କଳ-ଦା-ଅ, ନ ଆଗମ ) ସୂର୍ଯ୍ୟ; ପର୍ବତବିଶେଷ; ବାହାଡ଼ା ଗଛ ।

କଳିନ୍ଦକନ୍ୟା, କଳିନ୍ଦତନୟା, କଳିନ୍ଦାତ୍ମଜା, ବ. ସ୍ତ୍ରୀ. ( କଳିନ୍ଦ=ପର୍ବତବିଶେଷ-କନ୍ୟା, ତନୟା, ଆତ୍ମଜା) ଯମୁନା ନଦୀ; ହିମାଳୟର ଅଂଶବିଶେଷର ନାମ କଳିନ୍ଦ, ଏହା ଯମୁନା ନଦୀର ଉତ୍ପତ୍ତି ସ୍ଥାନ; ଏହିହେତୁ ଯମୁନାକୁ କଳିନ୍ଦକନ୍ୟା କୁହାଯାଏ ।

କଳିପ୍ରିୟ, ବ. ପୁଂ. ( କଳି=କଳହ ବା ଯୁଗ-ବିଶେଷ ପ୍ରିୟ) ନାରଦ; ବିଭୀତକ ବା ବାହାଡ଼ା ଗଛ; ବାନର । ବଂ. କଳହପ୍ରିୟ ।

କଳିଯୁଗ, ବ. କ୍ଳ. ଚତୁର୍ଥ ଯୁଗ; ଏହି ଯୁଗର ପରିମାଣ ୪୩୨୦୦୦ ବର୍ଷ ଅଟେ ।

କଳୁଷ, ବି. ନ. (କଲ୍-ଉଷ) ପାପ । ବିଂ. ପାପୀ; ମଳିନ; ଆବିଳ; ଗୋଳିଆ; କ୍ଷୁବ୍ଧ; ଦୁଃଖିତ; ଅସମର୍ଥ; ଗର୍ହିତ । (ଆବିଳ ଅର୍ଥରେ) ଯଥା—

କଳୁଷ ନଦୀ ଜଳକୁ ଭୂଷିଲେ । ର. କ.

(ପାପ ଅର୍ଥରେ) ଯଥା—

କମ୍ବୁକଣ୍ଠେ କଉସ୍ତୁଭ ମଣିନାୟକ,
କଳୁଷ ଅନ୍ଧକାରକୁ ଦିନ-ନାୟକ । ର. କ.

କଳୁଷିତ, ବିଂ. ( କଳୁଷ-ଇତ ) ପାପଯୁକ୍ତ; ମଳିନୀକୃତ; ଦୂଷିତ ।

କଳେବର, ବି. ନ. ( କଳେ=ଶୁକ୍ରେ-ବର=ଶ୍ରେଷ୍ଠ ବା ଆବୃତ, ଶୁକ୍ରନିର୍ମିତ ବା ଶୁକ୍ରୋତ୍ପନ୍ନ ବସ୍ତୁ ମଧ୍ୟରେ ଶ୍ରେଷ୍ଠ) ଗାତ୍ର, ଶରୀର, ଦେହ । ଯଥା—

କୃଷ୍ଣବନଜ୍ଵର ନିଧନର ପର
କଳେବର ଗୋଷ୍ଠପାଳ ବାସେ । ର. କ.

କଳ୍କ, ବି. ନ. (କଲ୍-କ) ମାଛପ୍ରଭୃତିର କାତି; ଖଳ; ଶିଠା; ମଳ; ଦମ୍ଭ; ଅହଂକାର; କର୍ଣ୍ଣମଳ; ପ୍ରତାରଣା; ପାପ; ଘୃତ ତୈଳାଦି ପାକରେ ଦେୟ ଔଷଧ ଦ୍ରବ୍ୟ; ଶିଳାପିଷ୍ଟ ଦ୍ରବ୍ୟ । ବିଂ. ପାପିଷ୍ଠ ।

କଳ୍କଫଳ, ବି. ପୁଂ. ଦାଡ଼ିମ ଫଳ, ଡାଳିମ୍ବ ଗଛ ।

କଳ୍କି, କଳ୍କୀ, ବି. ପୁଂ. (କଲ୍-କି, ବା, କଳ୍କ-ଇନ୍) ବିଷ୍ଣୁଙ୍କର ଦଶମ ଅବତାର, କଳିଯୁଗ ଶେଷରେ ବିଷ୍ଣୁଙ୍କ ଭାବ[illegible] ଅବତାର ।

କଳ୍ପ, ବି. ପୁଂ. (କ୍ଳୃପ୍-ଅ) ବେଦାଙ୍ଗ ଗ୍ରନ୍ଥବିଶେଷ; ବ୍ରହ୍ମାଙ୍କର ଦିବାଭାଗ = ୪୩୨,୦୦,୦୦,୦୦୦ ବର୍ଷ; ପ୍ରଳୟ; ବିକଳ୍ପ; ସଙ୍କଳ୍ପ; ବିଧାନ; ବିଧି; ନ୍ୟାୟ; ବେଦ ବିଧିବିଶେଷ; ଅଭିପ୍ରାୟ; ବୃଷ । ବିଂ. (କୌଣସି ଶବ୍ଦର ପରେ ପ୍ରୟୋଗ କଲେ) ତତ୍‌ସଦୃଶ; ତତ୍‌ତୁଲ୍ୟ ।

କଳ୍ପକ, ବି. ପୁଂ. (କ୍ଳୃପ୍-ଅକ) ନାପିତ, ଭଣ୍ଡାରୀ । ବିଂ. ଛେଦନକାରକ; କଳ୍ପନାକାରକ; ରଚକ ।

କଳ୍ପତରୁ, କଳ୍ପଦ୍ରୁ, କଳ୍ପଦ୍ରୁମ, କଳ୍ପବୃକ୍ଷ, କଳ୍ପପାଦପ, } ବି. ପୁଂ. ( କଳ୍ପ=ମାନସ, ଅଭିପ୍ରାୟ-ତରୁ, ଦ୍ରୁ, ଦ୍ରୁମ, ବୃକ୍ଷ, ପାଦପ) କଳ୍ପାନ୍ତସ୍ଥାୟୀ ବୃକ୍ଷ, ଦେବତରୁ; ( ଏହି ବୃକ୍ଷ ନିକଟରେ ଯାହା କାମନା ବା ଯାଚ୍ଞା କରାଯାଏ ତାହା ମିଳେ) ଅଭିଳଷିତ ଫଳଦାତା ବୃକ୍ଷ ।

କଳ୍ପନ, ନ. } କଳ୍ପନା, ସ୍ତ୍ରୀ. } ବି. ( କ୍ଳୃପ୍-ଅନ, ଅନ-ଆ ) ରଚନା; ଆରୋପ; ଅବାସ୍ତବ ବିଷୟର ଯଥାର୍ଥରୂପେ ବର୍ଣ୍ଣନା; ଉଦ୍ଭାବନା; ସମ୍ଭାବନା; ହସ୍ତିସଜ୍ଜା; ମାନସ; ସଙ୍କଳ୍ପ; ସ୍ଥିରୀକରଣ; ସାମର୍ଥ୍ୟ; ପର୍ଯ୍ୟାପ୍ତି; ଛେଦନ ।

କଳ୍ପାନ୍ତ, ବି. ପୁଂ. ( କଳ୍ପ-ଅନ୍ତ ) ଯୁଗାନ୍ତ, ପ୍ରଳୟକାଳ ।

କଳ୍ପାନ୍ତସ୍ଥାୟୀ, ବିଂ. ( କଳ୍ପାନ୍ତ-ସ୍ଥାୟିନ୍ ) ଯାହା ପ୍ରଳୟକାଳ ପର୍ଯ୍ୟନ୍ତ ଥାଏ, ଚିରସ୍ଥାୟୀ ।

କଳ୍ପିତ, ବି. ପୁଂ. (କଳ୍ପ-ତ) ଯୁଦ୍ଧାର୍ଥ ସଜ୍ଜିତ ହସ୍ତୀ । ବିଂ. ନିଶ୍ଚିତ, ଅବଧାରିତ; ଆରୋପିତ; ଦତ୍ତ; ସମ୍ପାଦିତ; ଚିନ୍ତିତ; ଉଦ୍ଭାବିତ ।

କଳ୍ପୀ, ବିଂ. (କଳ୍ପ-ଇନ୍) ରଚକ; ଆରୋପକ; ବେଶକାରକ । ବି. ପୁଂ. ନାପିତ ।

କଳ୍ପ୍ୟ, ବିଂ.(କଳ୍ପ-ଯ) ବିଧେୟ; କଳ୍ପନା କରିବାର ଯୋଗ୍ୟ; ରଚନୀୟ; ଆରୋପ୍ୟ ।

କଲ୍ମଷ, ବି. ନ. ( କର୍ମ-ସୋ=ନାଶ କରିବା-ଅ, ନିପାତନ ) ପାପ । ପୁଂ. ନରକବିଶେଷ । ବିଂ. ମଳିନ; ପାପିଷ୍ଠ । (ପାପ ଅର୍ଥରେ) ଯଥା—

କଷ୍ଟ ମନ୍ମଥର ମନ୍ମଥର-ଅନ୍ତକ,
କଳମଷ ବାରଣ ବାରଣ-ଅନ୍ତକ । ର. କ.

କଲ୍ମାଷ, ବି. ପୁଂ. (କଲ୍-ମଷ=ହାନି କରିବା-ଅ; ଯେ ଅନ୍ୟ ବର୍ଣ୍ଣକୁ ନଷ୍ଟ କରେ ) କୃଷ୍ଣବର୍ଣ୍ଣ; ବିଚିତ୍ର ବର୍ଣ୍ଣ; ଶ୍ୱେତକୃଷ୍ଣମିଶ୍ରିତ ବର୍ଣ୍ଣ ; ରାକ୍ଷସ ; ସ୍ୱନାମପ୍ରସିଦ୍ଧ ଦାନବ । ବିଂ. ବିଚିତ୍ରବର୍ଣ୍ଣରେ ରଞ୍ଜିତ ।

କଲ୍ମାଷକଣ୍ଠ, ବ. ପୁଂ. (କଲ୍ମାଷ-କଣ୍ଠ) ନୀଳକଣ୍ଠ, ମହାଦେବ ।

କଲ୍ୟ, ବ. ନ. (କଲ୍-ଯ) ଗତଦିବସ; ଆଗାମୀ ଦିନ; ପ୍ରାତଃକାଳ; ଲଗ୍ନ; ମଧୁ । ବିଂ. ଦକ୍ଷ; ଅତ୍ୟୁତ୍କୃଷ୍ଟ; ମଙ୍ଗଳକର; ସଜ୍ଜିତ; ସୁସ୍ଥ; ବଧିର, କାଲ; ମୂକ । ଲ୍ୟା, ବ. ସ୍ତ୍ରୀ. ମଦ୍ୟ; କଲ୍ୟାଣବଚନ, ଶୁଭବାକ୍ୟ; ହରିଡ଼ା ।

କଲ୍ୟଜଗ୍ଧି, ବ. ସ୍ତ୍ରୀ. (କଲ୍ୟ-ଜଗ୍ଧି=ଭୋଜନ) ପ୍ରାତର୍ଭୋଜନ ।

କଲ୍ୟତ୍ୱ, ବ. ନ. (କଲ୍ୟ=ସୁସ୍ଥ-ତ୍ୱ) ସ୍ୱାସ୍ଥ୍ୟ, ଆରୋଗ୍ୟ ।

କଲ୍ୟପାଳ, ବ. ପୁଂ. (କଲ୍ୟ=ମଧୁ-ପାଳ) ଶୁଣ୍ଡୀ, ମଦ୍ୟ ପ୍ରସ୍ତୁତକାରୀ ।

କଲ୍ୟାଣ, ବ. ନ. (କଲ୍ୟ=ସୁସ୍ଥ-ଅନ୍-ଅ) ମଙ୍ଗଳ; ସୁଖ; ସ୍ୱର୍ଣ୍ଣ । ବିଂ. ସୁଖୀ; ସାଧୁ; ଶୁଭଦାୟକ ।

କଲ୍ୟାଣକର, ବିଂ. (କଲ୍ୟାଣ-କର) ଶୁଭଜନକ; ମଙ୍ଗଳକର ।

କଲ୍ଲ, ବିଂ. (କଲ୍ଲ୍-ଅ) ବଧିର, କାଲ ।

କଲ୍ଲୋଳ, ବ. ପୁଂ. (କଲ୍ଲ-ଓଲ) ମହାତରଙ୍ଗ; ଆନନ୍ଦ । ବିଂ. ଶତ୍ରୁ ।

କଲ୍ଲୋଳିନୀ, ବ. ସ୍ତ୍ରୀ. (କଲ୍ଲୋଳ-ଇନ୍-ଈ) ତରଙ୍ଗିଣୀ, ନଦୀ ।

କବଚ, ବ. ପୁଂ. (କୁ=ଶବ୍ଦ କରିବା-ଅଚ) ବର୍ମ, ସାଞ୍ଜୁ; ବାଦ୍ୟଯନ୍ତ୍ରବିଶେଷ, ନାଗରାବାଦ୍ୟ; ତନ୍ତ୍ରଶାସ୍ତ୍ରୋକ୍ତ ମନ୍ତ୍ରବିଶେଷ, ଏହା ଧାରଣ କଲେ ଶରୀରରେ କୌଣସି ପ୍ରକାର ଅନିଷ୍ଟ ହୁଏ ନାହିଁ । ଯଥା—

> ଥିଲେ କବଚ ବନା ଷଡେ ହିଦସ୍ୱ ବଣିଷେ
> କରନ୍ତା ରେଦନ । ପ୍ରେ. ସୁ.

କବଚପତ୍ର, ବ. ନ. କବଚ ଲେଖିବାର ପତ୍ର, ଭୂର୍ଜ୍ଜପତ୍ର ।

କବଚୀ, ବିଂ. (କବଚ-ଇନ୍) କବଚଧାରୀ ।

କବରୀ, ବ. ସ୍ତ୍ରୀ. (କୁ-କର୍ଯ୍ୟ-ଇନ୍) କଉମାଛ ।

କବର, ବିଂ. (କୁ=ଶବ୍ଦ କରିବା-ଅର) ପାଠକ; କର୍ବୁରବର୍ଣ୍ଣ; ସମ୍ପୃକ୍ତ; ଖଚିତ; ଅମ୍ଳ; କେଶବିନ୍ୟାସ । ଯଥା—

> ନ ଭଲେ କବର କରବରନାର କେହ୍ନ ମୂ ଦାମୀ ।
> ବୋସଇବ ।

(ଯାବନିକ) ସମାଧି ।

କବରୀ, ବ. ସ୍ତ୍ରୀ. (କବର-ଈ) କେଶବିନ୍ୟାସ, ଖୋଷା, ଜୁଡ଼ା ଇତ୍ୟାଦି । ଯଥା—

> ଦେଖିଲ ମୁଣ୍ଡେ ତାର ନାହିଁ କବରୀ,
> କେଶ କୁସୁମ ତା କେ ନେଇ କରୁର ।

କବର୍ଗ, ବ. ପୁଂ. (କ-ବର୍ଗ=ଶ୍ରେଣୀ) କ, ଖ, ଗ, ଘ, ଙ ଏହି ପାଞ୍ଚ ବର୍ଣ୍ଣ ।

କବଳ, ବ. ପୁଂ. (କ-ବଲ୍-ଅ) ଯାହାଦ୍ୱାରା ଶରୀର ବଳବାନ୍ ହୁଏ, ଗ୍ରାସ; ମୁଖଗହ୍ୱର; ଜଳ; ମତ୍ସ୍ୟବିଶେଷ, ବାଲିଆମାଛ । ଯଥା—

> ଯମ କବଳ ତମକୁ ସୁହାରେ ପୂରଇ । ପ୍ରେ. ସୁ.

କବଳିତ, ବିଂ. (କବଳ-ଇତ) ବ୍ୟାପ୍ତ; ଗ୍ରସ୍ତ; ଭକ୍ଷିତ, କୃତଗ୍ରାସ ।

କବଳିକା, ବ. ସ୍ତ୍ରୀ. (କବଳ-ଅଳ-ଆ) ଔଷଧବିଶେଷ, ପୁଲ୍‌ଟିସ୍ ।

କବାଟ, ବି. } ବ. (କ-ବଟ୍-ଅ, ଈ) କପାଟ,
କବାଟୀ, ସ୍ତ୍ରୀ. } ଦ୍ୱାରର ଆବରଣ ।

କବାଲା, ବ. (ଯାବନିକ) କ୍ରୟବିକ୍ରୟ ପତ୍ର ।

କବି, ବ. ପୁଂ. (କବ୍=ସ୍ତୁତି କରିବା ଇତ୍ୟାଦି-ଇ) କାବ୍ୟକର୍ତ୍ତା, ଯାହାର ଗ୍ରନ୍ଥ ରଚନା କରିବା ଶକ୍ତି ଅଛି; ଶୁକ୍ର; ବାଲ୍ମୀକି; ସୂର୍ଯ୍ୟ; ଶୁକ୍ରାଚାର୍ଯ୍ୟ; ବ୍ରହ୍ମା; ବ୍ୟାସ । ବି, ବୀ, ସ୍ତ୍ରୀ. ଲଗାମ, ଅଶ୍ୱରଜ୍ଜୁ । ଯଥା—

> କବ କବ ହୋଇ କହବ ବୋଇଲେ ମୁଣ୍ଡକୁ ନ ଆସିବ ସଖ ।
> ଉ. ଦ.

କବିକ, ବ. ନ. (କବି-କ) କଉମାଛ; ଲଗାମ । ଯଥା—

> ସାରଙ୍ଗ ଅବୁଣ ତୁରଙ୍ଗ କବକ,
> ନ ମାନଲେ କ ଉପାସ୍ୱରେ । ସୁ. ପ.

କବିକଲ୍ପଦ୍ରୁମ, ବି. ପୁଂ. ବୋପଦେବକୃତ ଧାତୁପାଠ ଗ୍ରନ୍ଥବିଶେଷ ।

କବିକଲ୍ପଲତା, ବି. ସ୍ତ୍ରୀ. କାବ୍ୟର ରଚନା ଶିକ୍ଷୋପଯୋଗୀ ଗ୍ରନ୍ଥବିଶେଷ ।

କବିତା, ବି. ସ୍ତ୍ରୀ. (କବି-ତା) କବିତ୍ୱ, ଛନ୍ଦବଦ୍ଧ ରସଯୁକ୍ତ ରଚନା ।

କବିଲା, ବି (ଯାବନିକ) କଳତ୍ର, ଭାର୍ଯ୍ୟା, ସ୍ତ୍ରୀ ।

କବୀରପନ୍ଥୀ, (କବୀର-ପନ୍ଥୀ, ପଥିନ୍ ଶବ୍ଦ) ବୈଷ୍ଣବ ସମ୍ପ୍ରଦାୟବିଶେଷ । କବୀର ଏହି ସମ୍ପ୍ରଦାୟର ପ୍ରବର୍ତ୍ତକ ।

କବୁଲ, ବି. (ଯାବନିକ) ସ୍ୱୀକାର, ଅଙ୍ଗୀକାର ।

କବୁଲୟତ, ବି. ( ଯାବନିକ ) ସ୍ୱୀକାରପତ୍ର, ଜମିଦାର ନିକଟରେ ରୟତର ଜମି ଚଷିବା ଇତ୍ୟାଦ ଓ ଖଜଣା ଦେବା ସମ୍ବନ୍ଧରେ ସ୍ୱୀକାର ପତ୍ର ।

କବୋଷ୍ଣ, ବିଂ.(କୁ-ଉଷ୍ଣ,କୁ=କବ) ଈଷଦୁଷ୍ଣ, ଅଳ୍ପୋଷ୍ଣ । ଯଥା—

କବୋଷ୍ଣ ଯେନକ ରୁଧିର ।

କବ୍ୟ, ବି. ନ. (କୁ-ଯ) ମୃତବ୍ୟକ୍ତି ଉଦ୍ଦେଶ୍ୟରେ ଦେୟ ପିଣ୍ଡାଦି ।

କବ୍ୟବାହ, କବ୍ୟବାହନ, ବି. ପୁଂ. (କବ୍ୟ-ବାହ, ବାହନ) ଅଗ୍ନି ।

କଶା, କଷା, କସା, ବି. ସ୍ତ୍ରୀ. ( କଶ୍-ଅ-ଆ ) ଚାବୁକ, କୋରଡ଼ା ।

କଶାର୍ହ, ବିଂ. (କଶା-ଅର୍ହ) କଶାଘାତଯୋଗ୍ୟ ।

କଶିପୁ, କସିପୁ, ବି. ପୁଂ. (କଶ୍-ପୁ) ଅନ୍ନବସ୍ତ୍ର, ଆଚ୍ଛାଦନ; ନିପାତନ; ଶଯ୍ୟା ।

କଶେରୁ, ବି. ନ. (କ-ଶୃ-ଉ, ରୁ=ଏରୁ) ଜମ୍ବୁଦ୍ୱୀପର ନବବିଭାଗାନ୍ତର୍ଗତ ଅଂଶବିଶେଷ । ପୁଂ. ପିଠିର ହାଡ଼; ମେରୁଦଣ୍ଡ । ସ୍ତ୍ରୀ. ତୃଣ ମୂଳବିଶେଷ ।

କଶେରୁକ, ବି. ପୁଂ. ନ. (କଶେରୁ-କ) ଯେଉଁ ସବୁ କଳୁର ପୃଷ୍ଠାସ୍ଥି ବା ମେରୁଦଣ୍ଡ ଅଛି, କେଶରୁ ।

କଶେରୁକା, କସେରୁକା, ବି. ସ୍ତ୍ରୀ. (କଶେରୁକ-ଆ) ମେରୁଦଣ୍ଡ ।

କଶ୍ଚିତ୍, ଅଂ.(କଃ-ଚିତ୍)କୌଣସି ବ୍ୟକ୍ତି; କେହି ।

କଶ୍ମଳ, କସ୍ମଳ, ବି. ନ. (କଶ୍-ମଳ) ଦୁରାଗ୍ରହ; ପାପ ; ମୂର୍ଚ୍ଛା । ବିଂ. ଦୁଷ୍ଟ ; ପାପୀ; ମଳିନ ; କୁତ୍ସିତ ; ନିନ୍ଦିତ ।

କଶ୍ମୀର, ବି. ପୁଂ. (କଶ୍-ଈର, ମଆଗମ) ସ୍ୱନାମଖ୍ୟାତ ଦେଶ; କାଶ୍ମୀର ଦେଶ ।

କଶ୍ମୀରଜ, କଶ୍ମୀରଜନ୍ମା, ବି. ପୁଂ. (କଶ୍ମୀର-ଜନ୍-ଅ, ଜନ୍ମନ୍) କୁଙ୍କୁମ ।

କଶ୍ୟ, ବି. ନ. (କଶ୍-ଯ) ଅଶ୍ୱକଟିଦେଶ; ମଦ୍ୟବିଶେଷ । ବିଂ. (କଶା-ଯ) କଶାଘାତରପାତ୍ର; କଶାଘାତର ଉପଯୁକ୍ତ ।

କଶ୍ୟପ, ବି. ପୁଂ. ( କଶ୍ୟ-ପ ) ଦେବତା ଓ ଦାନବର ଗୁରୁ; ସ୍ୱନାମଖ୍ୟାତ ମୁନି; ମତ୍ସ୍ୟବିଶେଷ; ମୃଗବିଶେଷ ।

କଷ, ବି. ପୁଂ. (କଷ୍-ଅ) କଷ୍ଟିପଥର, ଯେଉଁ ପଥରରେ ଘଷି ସ୍ୱର୍ଣ୍ଣାଦିର ପରୀକ୍ଷା କରାଯାଏ । ଯଥା—

କଷପାଷାଣନରେ ନରସ୍ତବେ । ନୈଷଧଚରିତ ।

(ଦେଶଜ) କଷଦନ୍ତ ।

କଷଣ, ବି. ନ. (କଷ୍-ଅନ) ଘର୍ଷଣ, କଣ୍ଡୂୟନ । (ଦେଶଜ) କ୍ଲେଶ, କଷ୍ଟ ।

କଷଣୀ,ବି. (ଦେଶଜ) ଅଙ୍ଗୁଳିତ୍ରବିଶେଷ, ଧନୁର୍ଗୁଣ ଆକର୍ଷଣ କରିବା ନିମିତ୍ତ ଅଙ୍ଗୁଳିରେ ଲଗାଇବା ମୁଦ୍ରିକା । ଯଥା—

ସେ ବାମା ନାସାରେ ବସିଲେ ନଥ,
ଭୂଣୀର ଉପରେ ଧ୍ୱଜର କଷଣୀ ଥୋଇଚ କି ମନ୍ମଥ ।
କୋ. ଚ. ଚୁ.

କଷା, ବି. ସ୍ତ୍ରୀ. (ପ୍ରାକୃତଜ) (କଷାୟଶବ୍ଦଜ) ରସବିଶେଷ; ହରିତକୀ । ବିଂ. କଷାୟରସବିଶିଷ୍ଟ; କୃପଣ ।

କଷାୟ, ବ. ପୁଂ. ନ. (କଷ୍-ଅୟ) ରସବିଶେଷ; କ୍ୱାଥ; ନିର୍ଯ୍ୟାସ; ସୁଗନ୍ଧ ଲେପନ ଦ୍ରବ୍ୟ; ରଙ୍ଗ । ବିଂ. ରକ୍ତ ଓ ପୀତବର୍ଣ୍ଣମିଶ୍ରିତ ବର୍ଣ୍ଣ; ଅନୁଜ୍ଜ୍ୱଳ ରକ୍ତବର୍ଣ୍ଣ; ରଞ୍ଜିତ; ସୁଶ୍ରାବ୍ୟ । ଯଥା—

> ନୃତ୍ୟାଙ୍କୁରସ୍ୱାଦକଷାୟକଣ୍ଠଃ
> ପୁଂସ୍କୋକିଲୋ ଯନ୍ମଧୁରଂ ଚୁକୂଜ । କୁ. ସ.

କଷାୟ ରସବିଶିଷ୍ଟ ।

କଷାୟିତ, ବିଂ. (କଷାୟ-ଇତ) ରଞ୍ଜିତ; ରକ୍ତ ପୀତ ମିଶ୍ରିତ ବର୍ଣ୍ଣବିଶିଷ୍ଟ; ବିଲେପିତ ।

କଷି, ବ. (କଷାୟ ଶବ୍ଦଜ) କୂଆ ଫଳ, ଯଥା— ଆମ୍ବକଷି, ଲେମ୍ବୁକଷି ।

କଷିତ, ବିଂ.(କଷ୍-ତ) ପରୀକ୍ଷିତ (ସ୍ୱର୍ଣ୍ଣାଦି ପକ୍ଷରେ ପ୍ରଯୋଜ୍ୟ) ।

କଷିବା, କ୍ରି. ବ. (ପ୍ରାକୃତଜ) ପରୀକ୍ଷା କରିବା; ଆବୃତ୍ତି କରିବା; ଭିଡିବା, ଟାଣିବା ଇତ୍ୟାଦି ।

କଷ୍ଟ, ବ.ନ. (କଷ୍-ତ) କ୍ଳେଶ, ଯନ୍ତ୍ରଣା, ଦୁଃଖ । ବିଂ କ୍ଳିଷ୍ଟ; ଦୁଃଖଜନକ; ଦୂଷିତ ।

କଷ୍ଟକାରକ, ବ. ପୁଂ. (କଷ୍ଟ-କାରକ) ସଂସାର । ବିଂ. ଦୁଃଖଜନକ ।

କଷ୍ଟସହ, ବିଂ. (କଷ୍ଟ-ସହ) ଯେ କ୍ଳେଶ ସହି ପାରେ, କ୍ଳେଶସହିଷ୍ଣୁ ।

କଷ୍ଟସାଧ୍ୟ, ବିଂ. (କଷ୍ଟ-ସାଧ୍ୟ) ଯାହା ବହୁକଷ୍ଟରେ ସମ୍ପନ୍ନ ହୁଏ ।

କଷ୍ଟି, ବ. ସ୍ତ୍ରୀ. (କଷ୍-ତି) କଷଟିପଥର, ସ୍ୱର୍ଣ୍ଣାଦି ପରୀକ୍ଷା କରିବା ପ୍ରସ୍ତରବିଶେଷ । ଯଥା—

> ସ୍ୱର୍ଣ୍ଣ ସମାନ ନାରୀ ବନସ୍ଥ ଆଗଣା ପର,
> ବିରହ ଅନଳେ ହୋଇଥାଇ ସେ ଦହି ।
> ଭବ ଜଳଧିଜ୍ଞ ବଣେ ବୋଲ କଷଟିରେ କଷେ,
> ମୁରସ ଲଷାଣ ପ୍ରୀତଦାନ ବଢ଼ାଇ । ସ. ବ.

କସ୍ତୁରିକା, କସ୍ତୂରିକା, କସ୍ତୂରୀ, ବ. ସ୍ତ୍ରୀ. (କସ୍-ତୁର-କ-ଅ, ଈ) ମୃଗନାଭିରୁ ପ୍ରାପ୍ତ ସୁଗନ୍ଧ-ଦ୍ରବ୍ୟବିଶେଷ; ମୃଗନାଭି; ଏହା ନେପାଳ, କାଶ୍ମୀର ଓ କାମରୂପ ପ୍ରଭୃତି ଦେଶରେ ମିଳେ; କପିଳ, ପିଙ୍ଗଳ ଏବଂ କୃଷ୍ଣବର୍ଣ୍ଣ ଭେଦରେ ଏହା ତ୍ରିବିଧ । କାମରୂପ ଦେଶଜ ଉତ୍ତମ, ନେପାଳ ଦେଶଜ ମଧ୍ୟମ ଓ କାଶ୍ମୀର ଦେଶଜ ନିକୃଷ୍ଟ ।

କସ୍ମିନ୍‌କାଲେ, ଅଂ, (କସ୍ମିନ୍-କାଲେ) କୌଣସି ସମୟରେ ।

କସ୍ୱର, ବିଂ. (କସ୍-ବର) ଗମନଶୀଳ; ହିଂସକ ।

କହସ୍ୟ, ବ. ପୁଂ. (କ-ହସ୍ୟ) ସୂର୍ଯ୍ୟଙ୍କ ଅଶ୍ୱ ।

କହୁଣି, କହୁଣୀ, ବ. (କଫୋଣି ଶବ୍ଦଜ) ବାହୁ ଆଉ ମଣିବନ୍ଧର ଯୋଗସ୍ଥଳ ।

କହୁଣିଆ, କହୁଣିଆ, ବିଂ. (ପ୍ରାକୃତଜ) କହୁଣୀ ମାଡ ଖାଇବା ଯୋଗ୍ୟ, ମାଡୁଆ ।

କହ୍ଲାର, ବ. ନ. (କ-ହ୍ଲାର, ଲ ଆଗମ) ଜଳଜାତ ପୁଷ୍ପବିଶେଷ, ପାଣିଶିଉଳି ଫୁଲ । ଯଥା—

> ବହୁଛ ମଧ୍ୟେ ସବଣ୍ୟ ସର,
> ବାସକ ବୁମୂଦ କହ୍ଲାରେ ସାର । ଚୈ. ବ.

କହ୍ୱ, ବ. ପୁଂ. (କ=ଜଳ-ହ୍ୱେ=ଡାକିବାର-ଅ) ବକ, କ୍ରୌଞ୍ଚ ।

କାଇଁଚ, ବ. (କାକଚିଞ୍ଚା ଶବ୍ଦଜ) ଫଳବିଶେଷ, ଗୁଞ୍ଜାଫଳ ।

କାଉ, ବ. ପୁଂ. (ଦେଶଜ) କୃଷ୍ଣବର୍ଣ୍ଣ ପିପୀଲିକା-ବିଶେଷ ।

କାଂସ, କାଂସ୍ୟ, ବ. ପୁଂ.-ନ. ପାନପାତ୍ର, ମିଶ୍ରଧାତୁ ବିଶେଷ, ତାମ୍ର ଓ ରଙ୍ଗମିଶ୍ରିତ ଧାତୁ, କଂସା ।

କାଂସ୍ୟକାର, ବ. ପୁଂ. (କାଂସ୍ୟ-କୃ-ଅ) କଂସା-ନିର୍ମାତା, କଂସାରି ।

କାଉଁରିଆ ବ. (ଦେଶଜ) ନଲିତା ଓ ଧଣ୍ଡିଆ ପ୍ରଭୃତି ବୃକ୍ଷର ତ୍ୱକ୍‌ସ୍ଥିତ ଅଂଶ; ଖଣ୍ଡ ।

କାଉଳ, ବ. (ଦେଶଜ) ଅସ୍ଥିର ।

କାଙ୍କ, ବ. (ଦେଶଜ) ମାଟି ଖୋଳିବାର ଅସ୍ତ୍ର-ବିଶେଷ । (ପ୍ରାକୃତଜ) (କଙ୍କଶବ୍ଦଜ) କଙ୍କ-ପକ୍ଷୀ ।

କାକ, ବ. ପୁଂ. (କା-କୈ=ଶବ୍ଦ କରିବା-ଅ, ଯେ 'କା' ଏହିପରି ଶବ୍ଦ କରେ) କୁଆ, କାଉ; ଦ୍ୱୀପବିଶେଷ; ଏକ କଡାର ଷୋଡ଼ଶ ଅଂଶ ।

କାକଅର, ବ. ପୁଂ. ପେଚ୍ଚ, ପେଚକ ।

କାକଚଞ୍ଚା, କାକଚଞ୍ଚ, କାକଚଞ୍ଚୀ, ବ. ସ୍ତ୍ରୀ.(କାକ-ଚଞ୍ଚୁ=ଅଗ୍ରଭାଗ-ଅ,ଇ,ଈ, କାକ ପରି ଯାହାର ଅଗ୍ରଭାଗ କୃଷ୍ଣବର୍ଣ୍ଣ) ଗୁଞ୍ଜା, କାଇଞ୍ଚ ।

କାକଛଦ, ବ. ପୁଂ. (କାକ-ଛଦ) ଖଞ୍ଜନପକ୍ଷୀ ।

କାକତନ୍ଦ୍ରା, କାକନିଦ୍ରା, ବ. ସ୍ତ୍ରୀ. କାକ ପରି ନିଦ୍ରା, ଅତି ସତର୍କ ନିଦ୍ରା ।

କାକତାଲୀୟ, ବିଂ. (କାକ-ତାଲ=ଫଳବିଶେଷ-ଈୟ) ହଠାତ୍‌କୃତ; ଅକସ୍ମାତ୍‌କୃତ; ନ୍ୟାୟ-ବିଶେଷ; (ନ୍ୟାୟ ଦେଖ) କାକର ତାଳ ବୃକ୍ଷରେ ଉପବେଶନ ଓ ତାଳର ପତନ ଏହି ଉଭୟର ସମକାଳୀନତା ହେତୁ ଯେପରି କାର୍ଯ୍ୟକାରଣ ଭାବ କଳ୍ପନା କରାଯାଏ, ସେହିପରି କାର୍ଯ୍ୟ କାରଣ ଭାବ ନ ଥିଲେ ସୁଦ୍ଧା ସମକାଳୀନତ୍ୱ ବା ଅନ୍ୟ କୌଣସି ପ୍ରକାର ଘଟନା ହେତୁ କାର୍ଯ୍ୟ କାରଣଭାବ କଳ୍ପନା କରିବାର ।

କାକତିକ୍ତା, ବ. ସ୍ତ୍ରୀ. (କାକ-ତିକ୍ତ, କାକ ମାଂସପରି ତିକ୍ତ) କାଇଁଚ, ଗୁଞ୍ଜା ।

କାକତୁଆ, ବ. ପକ୍ଷିବିଶେଷ ।

କାକତୁଣ୍ଡି, ବ. ସ୍ତ୍ରୀ. (କାକ-ତୁଣ୍ଡ-ଅ-ଇ) ଟିଲ୍ଲି କରା ହୋଇଥିବା ପିତ୍ତଳ; ବୃକ୍ଷବିଶେଷ ।

କାକଧ୍ୱଜ, ବ. ପୁଂ. (କାକ-ଧ୍ୱଜ) ବାଡବାନଳ, ସମୁଦ୍ରସ୍ଥ ଅଗ୍ନି; କାକଚିହ୍ନିତ ଧ୍ୱଜା ।

କାକପକ୍ଷ, ବ. (କାକ-ପକ୍ଷ) କାକପକ୍ଷ ପରି ଉଭୟ ଗଣ୍ଡରେ ଲମ୍ବମାନ ଅନତିଦୀର୍ଘ ସ୍ୱଳ୍ପ କେଶ ।

କାକପଦ, (Caret) ବ. ନ. (କାକ-ପଦ) ପଙ୍କ୍ତି ଅକ୍ଷର ଉପରିଭାଗରେ ଲେଖିବା ସମୟରେ ଯେଉଁ ସ୍ଥାନରୁ ତାହା ପାଠ କରିବାକୁ ହେବ, ତତ୍‌ସୂଚନାର୍ଥେ ଅଙ୍କିତ କାକପଦର ତୁଲ୍ୟ ଚିହ୍ନ " ʌ "; ରତିବନ୍ଧବିଶେଷ ।

କାକପୁଚ୍ଛ, ବ. ପୁଂ. (କାକ-ପୁଚ୍ଛ) କୋକିଳ ।

କାକପୁଷ୍ଟ, ବ. ପୁଂ. ସ୍ତ୍ରୀ. (କାକ-ପୁଷ୍-ତ) କୋକିଳ ।

କାକପୃଷ୍ଠ, ବ. ନ. (କାକ-ପୃଷ୍ଠ) ଗଜପର୍ଣ୍ଣ ।

କାକଫଳ, ବ. ପୁଂ. (କାକ-ଫଳ) ନିମ୍ବଗଛ ।

କାକବନ୍ଧ୍ୟା, ବ. ସ୍ତ୍ରୀ. (କାକ-ବନ୍ଧ୍ୟା) କାକୀ ଯାବଜ୍ଜୀବନ ମଧ୍ୟରେ ଏକମାତ୍ର ସନ୍ତାନ ପ୍ରସବ କରଇ, ଏ ହେତୁ ଏକପ୍ରସବିନୀ ସ୍ତ୍ରୀକୁ କାକବନ୍ଧ୍ୟା କହନ୍ତି ।

କାକବଳି, ବ. ପୁଂ. (କାକ-ବଳି) କାକ ଭୋଜନୋଦ୍ଦେଶରେ ଉତ୍ସୃଷ୍ଟ ଅନ୍ନାଦି ।

କାକଯବ, ବ. ପୁଂ. (କାକ-ଯବ) ତଣ୍ଡୁଳଶୂନ୍ୟ ଧାନ୍ୟ; ଅଗାଡ଼ି ।

କାକର, ବ. (ଦେଶଜ) ଶିଶିର । ଯଥା—

କାକର ପ୍ରାୟେ ଝାଳ ବହି ବହି,
କହତ କହନ୍ତି ଶାମୁଖ-ଉହି । ର. କ.

କାକରୁହା, ବ. ସ୍ତ୍ରୀ. ଶୂନ୍ୟଜାତ ବୃକ୍ଷ, ଅନ୍ୟ ଗଛ ଉପରେ ଜନ୍ମିଥିବା ଗଛ ।

କାକରୁକ, ବିଂ. ଲଗ୍ନ; ଭୀରୁ; ନର୍ତ୍ତକ । ବ. ପୁଂ. ପେଚକ ।

କାକଳ, ବ. ନ. ( କୁ=ଈଷତ୍-କଳ୍=ଶବ୍ଦ କରିବା-ଅ) କଣ୍ଠଭୂଷଣ, କଣ୍ଠମଣି ।

କାକଳି, କାକଳୀ, ବ. ସ୍ତ୍ରୀ. ( କୁ-କଲ୍-ଅ-ଇ, ଈ) ସୂକ୍ଷ୍ମ ଅଥଚ ମଧୁର ଅସ୍ଫୁଟ ଧ୍ୱନିବିଶେଷ; ରତ୍ନବିଶେଷ; ଯନ୍ତ୍ରବିଶେଷ ।

କାକା, ବ. ପୁଂ. (ଦେଶଜ) ଖୁଡ଼ୁତା ।

କାକାରି, ବ. ପୁଂ. (କାକ-ଅରି) ପେଚକ, ପେଚ୍ଚ ।

କାକିଣୀ, } କାକିନୀ, } ବ. ସ୍ତ୍ରୀ. (କକ୍-ଅନ-ଈ) କୋଡ଼ିଏ କଉଡ଼ି ପାଞ୍ଚ ଗଣ୍ଡା; ଏକ ବୋଡ଼ି; ଏକ ରତି ।

କାକୀ, ବ. ସ୍ତ୍ରୀ. (କୈ-ଅ-ଈ) ବାୟସୀ; ଲତାବିଶେଷ । (ଦେଶଜ) ଖୁଡ଼ୀ ।

କାକୁ, ବ. ସ୍ତ୍ରୀ, (କକ=ଚଞ୍ଚଳ ହେବା-ଉ) ଭୟ ଶୋକାଦିଦ୍ୱାରା ବିକୃତ କଣ୍ଠଧ୍ୱନି; ବକ୍ରୋକ୍ତି; ଜିହ୍ୱା ।

କାକୁଡ, ବ. (କର୍କଟିକା ଶବ୍ଦଜ) ଫଳବିଶେଷ ।

କାକୁସ୍ଥ, ବିଂ. (କାକୁ ଶବ୍ଦଜ) ବର୍ଣ୍ଣିତ । ଯଥା—

କାକୁସ୍ଥର ହୋଇ କରଯୋଡ଼ କଣାଇ,
ଗରୁଡ଼ବ୍ରହ୍ମ ସନ୍ନିଧାନ ହେ ମହାପ୍ରଭୁ । ଅ. ଚ.

କାକୁତ୍ସ୍ଥ, } ବି. ପୁଂ. (କକୁତ୍-ସ୍ଥା-ଅ) ସୂର୍ଯ୍ୟ-
କାକୁସ୍ଥ୍ୟ, } ବଂଶୀୟ ରାଜା ।

କାକୁଦ, ବି. ନ. (କକୁଦ୍=ମସ୍ତକ-ଅ, ଅଥବା କାକୁ-ଦ, 'ଦା' ଧାତୁଜ) ତାଳୁ ।

କାକୂକ୍ତି, ବି. ସ୍ତ୍ରୀ. (କାକୁ-ଉକ୍ତି) କାତର ବାକ୍ୟ; ବକ୍ରୋକ୍ତି; ବିନୟବାକ୍ୟ ।

କାକୂତି, ବି. ସ୍ତ୍ରୀ. ( କାକୂକ୍ତି ଶବ୍ଦଜ ) କାତର-ବାକ୍ୟ, ଖେଦୋକ୍ତି ।

କାକୋଦର, ବି. ପୁଂ. ( କୁ-ଅକ୍-ଅ-ଉଦର ) ସର୍ପ, ସାପ ।

କାକୋଲ, ବି. ପୁଂ. (କାକ-ଉଲ) ଡେମରାକୁଆ; ଗରଳ; କୁଲାଳ; ଶୂକରବିଶେଷ । ନ. ନରକ-ବିଶେଷ ।

କାକ୍ଷ, ବି. ନ. ( କୁ-ଅକ୍ଷି, କୁ=କା ) କଟାକ୍ଷ । ବିଂ. କୁତ୍ସିତଚକ୍ଷୁ ।

କାଙ୍କଡ଼, ବି. (ଦେଶଜ) ଫଳବିଶେଷ ।

କାଖ, ବି. ( କକ୍ଷ ଶବ୍ଦଜ ) କ୍ରୋଡ଼; ବାହୁମୂଳ ଖୋଲ । ଯଥା—

କାଖ କୋଳେ ଧରି କେତେ ସ୍ନେହ କରି ।

କାଗଜ, ବି. (ଯାବନିକ) ତୃଣାଦିନିର୍ମିତ ପଦାର୍ଥ; ଏଥି ଉପରେ ସ୍ୟାହିରେ ଲେଖାଯାଏ ।

କାଗଜୀ, ବି. (ଦେଶଜ) ଅମ୍ଳଫଳବିଶେଷ, ଏକ-ଜାତୀୟ ଲେମ୍ବୁ ।

କାଙ୍କ୍ଷଣୀୟ, ବିଂ. (କାଙ୍କ୍ଷା-ଅନୀୟ) ଅଭିଲଷଣୀୟ, ବାଞ୍ଛନୀୟ ।

କାଙ୍କ୍ଷା, ବି. ସ୍ତ୍ରୀ. ( କାଙ୍କ୍ଷ୍-ଅ ) ଅଭିଳାଷ, ଇଚ୍ଛା, ସ୍ପୃହା ।

କାଙ୍କ୍ଷିତ, ବିଂ. (କାଙ୍କ୍ଷ୍-ତ) ଅଭିଲଷିତ; ବାଞ୍ଛିତ । ବି. ନ. ଅଭିଳାଷ ।

କାଙ୍ଗାଳ, କାଙ୍ଗାଳୀ, ବିଂ. ( ଦେଶଜ ) ଦରିଦ୍ର, ନିଃସ୍ୱ, ଧନହୀନ, ପ୍ରାର୍ଥୀ, ଭିକ୍ଷୁକ ।

କାଚ, ବି. ପୁଂ. ( କଚ୍-ଅ ) ବାଲି ଏବଂ କ୍ଷାରରୁ ଉତ୍ପନ୍ନ ଦ୍ରବ୍ୟବିଶେଷ; ମହମ; ଲବଣବିଶେଷ; ନେତ୍ରରୋଗବିଶେଷ ।

କାଚନ, ବି. ନ. (କଚ୍-ଅନ) ଯୌତ କରିବା; କପଟବେଶ ଧାରଣ କରିବା ।

କାଚନକୀ, ବି. ପୁଂ. ( କାଚନକ-ଇନ୍ ) ଲିପି, ପତ୍ର ।

କାଚର, ବିଂ. (କୁ-ଚର) ପୀତବର୍ଣ୍ଣ ।

କାଚରା, ବି. (ଦେଶଜ) ଜାତିବିଶେଷ, ଏମାନେ କାଚ ବିକ୍ରୟ କରନ୍ତି ।

କାଚିବା, କ୍ରି. ବି. ( କଚ୍ ଧାତୁଜ ) କାଷ୍ଠ ବା ପ୍ରସ୍ତରାଦି ଉପରେ ପିଟି ବସ୍ତ୍ରାଦି ଯୌତ କରିବା ।

କାଛ, କାଛଟୀ, କାଛେଣୀ, ବି. ( କଚ୍ଛ ଶବ୍ଦଜ ) ସୂନ୍ଦର କ୍ଷୁଦ୍ର ବସ୍ତ୍ର ।

କାଛୁ, ବି. (ଖସ ଶବ୍ଦଜ) କୁଣ୍ଡିଆ ।

କାଜି, ବି. ( ପାରସ୍ୟ ଭାଷା ) ଯବନଜାତୀୟ ବିଚାରକ ବା ବ୍ୟବସ୍ଥାପକ ।

କାଞ୍ଚନ, ବି. ନ. ( କନ୍ଚ୍-ଅନ ) ସ୍ୱର୍ଣ୍ଣ; ପୁଷ୍ପ-ବିଶେଷ; ଚମ୍ପକ ପୁଷ୍ପ; ଚମ୍ପକ ବୃକ୍ଷ । ନାଗକେଶର ବୃକ୍ଷ; ହରିଦ୍ରା; ଗୋରଚନା । ବିଂ. ସ୍ୱର୍ଣ୍ଣମୟ । ଯଥା—

କାଞ୍ଚନ କବାଟ ବୁଡ଼ା ଦୋଳାଭ ମଶ୍ତକେ । ବ. ବ.

କାଞ୍ଚନଗିରି, ବି. ପୁଂ. ( କାଞ୍ଚନ-ଗିରି ) ସୁମେରୁ ପର୍ବତ ।

କାଞ୍ଚନୀ, ବି. ସ୍ତ୍ରୀ. ( କାଞ୍ଚନ-ଈ ) ହରିଦ୍ରା; ଗୋରଚନା ।

କାଞ୍ଚଲି, କାଞ୍ଚୁଲି, ବି. (କଞ୍ଚୁଳିକା ଶବ୍ଦଜ) ସ୍ତ୍ରୀ-ମାନଙ୍କର ପରିଧେୟ କୁର୍ତ୍ତିବିଶେଷ ।

କାଞ୍ଚି, କାଞ୍ଚୀ, ବି. ସ୍ତ୍ରୀ. (କନ୍ଚ୍-ଇ, ଈ) ମେଖଳା; କଟିକିଙ୍କିଣୀ; ଦେଶବିଶେଷ; କଟିଭୂଷଣ । ଯଥା—

କାଞ୍ଚିରେ ଘଣ୍ଟିକ କଳ ମଧୁର ନାଦ,
କନକ ନୂପୁରେ କଳ ପାଦରୁ ପ୍ରଚ୍ଛଦ । ଲ. ବ.

କାଞ୍ଚୀପଦ, ବି. ନ. (କାଞ୍ଚୀ-ପଦ) ଜଘନ, ନିତମ୍ବ ।

କାଞ୍ଜି, କାଞ୍ଜୀ, ବି. ( କାଞ୍ଜିକ, କାଞ୍ଜୀକ ଶବ୍ଦଜ) ଖଟା ତୋରାଣି, ପୁରୁଣା ତୋରାଣି ।

କାଞ୍ଜିକା, ବି. ସ୍ତ୍ରୀ. ଜୀବନ୍ତୀ ଲତା ।

କାଞ୍ଜିକ, କାଞ୍ଜୀକ, ବି. ନ. ( କ-ଅଞ୍ଚ୍-ଇକ ) କାଞ୍ଜୀ, ଖଟା ତୋରାଣି ।

କାଟ, ବି. ( ଦେଶଜ ) (Cut) ଯେପରି ଏ ଲୁଗାର କାଟ ଉତ୍ତମ ହୋଇଅଛି; କ୍ରିୟା ହେଲେ ଏହାର ଅର୍ଥ "ଛେଦନ କର ।"

କାଟବ୍ୟ, ବି. ନ. (କଟୁ-ଯ) କଟୁତା, କାର୍କଶ୍ୟ ।

କାଟିବା, କ୍ରି. ବି. ( କର୍ତ୍ତନ ଶବ୍ଦଜ ) ଛେଦନ କରିବା; କଷ୍ଟବୋଧ କରିବା; ଅତିବାହିତ କରିବା; ପ୍ରକାଶ କରିବା । ଯଥା—

ନ ଘେନ ନ ଘେନ କାହ୍ନୁ ଗୁଆଳୀ
ଭୋର ନ କଟ ମୋର ବନମାଳୀ ।

କାଟ୍ୟ, ବିଂ. (ଦେଶଜ) ଉଚ୍ଛିଷ୍ଟ, ଖଣ୍ଡନୀୟ ।

କାଠ, ବି. (କାଷ୍ଠ ଶବ୍ଦଜ) ଦାରୁ, ଇନ୍ଧନ ।

କାଠହଣା, ବି. ( ପ୍ରାକୃତଜ ) ପକ୍ଷିବିଶେଷ; ଏହି ପକ୍ଷିର ଚଞ୍ଚୁ ଏପରି ଶକ୍ତ ଯେ ଏମାନେ ଏହି ଚଞ୍ଚୁଦ୍ୱାରା ଅକ୍ଳେଶରେ କାଷ୍ଠ ଛେଦନ କରନ୍ତି ।

କାଠି, ବି. (କାଷ୍ଠ ଶବ୍ଦଜ) ଅତି କ୍ଷୁଦ୍ର କାଷ୍ଠ ।

କାଠିକଣି, (ଦେଶଜ) ରାଜାମାନଙ୍କର ଦନ୍ତଧାବନ କାର୍ଯ୍ୟର ନାମ ।

କାଠିନ୍ୟ, ବି. ନ. (କଠିନ=ଦୃଢ଼ ବା ଶକ୍ତ-ଯ) କଠିନତା, ଦୃଢ଼ତା ।

କାଠୁଆ, ବି. (ଦେଶଜ) ହଳଦି, ତେଲ ପ୍ରଭୃତି ପଦାର୍ଥ ରଖିବା ନିମିତ୍ତ କାଷ୍ଠନିର୍ମିତ କ୍ଷୁଦ୍ର କ୍ଷୁଦ୍ର ପାତ୍ରବିଶେଷ; କ୍ଷୁଦ୍ର ଡଙ୍ଗା । ବିଂ. ନିର୍ଦ୍ଦୟ ।

କାଢିଆ, ବି. (ଦେଶଜ) ଧାର; ଉଠାଣ ।

କାଢିବା, କ୍ରି. ବି. (ଦେଶଜ) ବାହାର କରିବା ।

କାଣ, ବି. ପୁଂ. (କଣ୍=ନୟନ ମୁଦ୍ରିତ କରିବା-ଅ) କାକ । ବିଂ. କଣା, ଏକଚକ୍ଷୁହୀନ ।

କାଣୀ, ବି. ସ୍ତ୍ରୀ. ( କାଣ-ଈ ) ଏକ ଚକ୍ଷୁହୀନା । (ଦେଶଜ) ବରାର ଏକ ଚତୁର୍ଥାଂଶ ।

କାଣୀନଳ, ବି. (ଦେଶଜ) କ୍ଷେତ୍ରଫଳ ବାହାର କରିବାର ନିୟମବିଶେଷ; ଏହି ନଳର ଦୀର୍ଘ ଓ ପ୍ରସ୍ଥରେ ବିଶ୍ୱା, କାଣୀ ପ୍ରଭୃତି ପରିମାଣ ଥିବାରୁ ଏହାର ଏପରି ନାମ ହୋଇଅଛି ।

କାଣ୍ଟି, ବି. (କଣ୍ଟ ଶବ୍ଦଜ) ଢେଙ୍କାଦିର ମଇଳା ।

କାଣ୍ଟିଆ, ବି. ସ୍ତ୍ରୀ. (ଦେଶଜ) ରେଶମର ଅସାର ଅଂଶରେ ନିର୍ମିତ ବସ୍ତ୍ରବିଶେଷ ।

କାଣ୍ଡ, ବି. ପୁଂ. ନ. ( କନ୍-ଡ ) ବାଣ; ଗଛର ଗଣ୍ଡି; ଗୁଚ୍ଛ; ଡେମ୍ଫ; ନଳ; ଗ୍ରନ୍ଥର ପରିଚ୍ଛେଦ; ପ୍ରକରଣ; ପ୍ରସ୍ତାବ; ଅବସର; ନିର୍ଜନସ୍ଥାନ; ସମୂହ; ଜଳ; କୁତ୍ସିତ; ଶ୍ଲାଘା; ଅଶ୍ୱ; ଘଟଣା । (ବାଣ ଅର୍ଥରେ) ଯଥା—

କାମ କାଣ୍ଡରୁ ହେବାରୁ ଲକ୍ଷ,
ଦଲେ ଅନ୍ତର ବିପକ୍ଷ ପକ୍ଷ । ଚ. କ.

କାଣ୍ଡକାର, ବି. ନ. ଗୁଆ; ଗୁଆଗଛ । ବିଂ. ଶର ନିର୍ମାଣକର୍ତ୍ତା ।

କାଣ୍ଡଗୋଚର, ବି. ପୁଂ. ( କାଣ୍ଡ-ଗୋଚର ) ଲୌହମୟ ବାଣ ।

କାଣ୍ଡଗ୍ରହ, ବି. ପୁଂ. ( କାଣ୍ଡ-ଗ୍ରହ ) ପ୍ରସ୍ତାବିତ ବିଷୟର ସ୍ୱରୂପ ବା ଅବସ୍ଥା ଜାଣିବା ।

କାଣ୍ଡଜ୍ଞାନ, ବି. ନ. ( କାଣ୍ଡ-ଜ୍ଞାନ ) ପ୍ରକରଣ-ବୋଧ; ବିବେଚନା; ସ୍ଥୂଳଜ୍ଞାନ; ମୋଟାମୋଟି ଜ୍ଞାନ ।

କାଣ୍ଡତିକ୍ତ ବି. ପୁଂ. ( କାଣ୍ଡ-ତିକ୍ତ ) ଭୂନିମ୍ବ; ଚିରେଇତା ।

କାଣ୍ଡପଟ, ବି. ପୁଂ. (କାଣ୍ଡ-ପଟ) ଯବନିକା, ପର୍ଦ୍ଦା; ତମ୍ବୁ ।

କାଣ୍ଡପୃଷ୍ଠ, ବିଂ. (କାଣ୍ଡ-ପୃଷ୍ଠ) ଶସ୍ତ୍ରାଜୀବ; ବ୍ୟାଧ; ଧନୁର୍ଦ୍ଧର ।

କାଣ୍ଡବାନ୍, ବିଂ. (କାଣ୍ଡ-ବତ୍) କାଣ୍ଡଧାରୀ ।

କାଣ୍ଡସନ୍ଧି, ବି. ପୁଂ. (କାଣ୍ଡ-ସନ୍ଧି) ଗ୍ରନ୍ଥି, ଗଣ୍ଠି ।

କାଣ୍ଡାରୀ, ବି. ( କର୍ଣ୍ଣଧାରୀ ଶବ୍ଦଜ ) କର୍ଣ୍ଣଧାର, ନାବିକ ।

କାଣ୍ଡିବା, କ୍ରି. ବ. (ଦେଶଜ) ଢେଙ୍କୀ ପ୍ରଭୃତି ଯନ୍ତ୍ରଦ୍ୱାରା ଚାଉଳାଦିରୁ ତଷୁ ଏବଂ ଚୋଲ ବାହାର କରିବା ।

କାଣ୍ଡୀର, ବଂ. ( କାଣ୍ଡ-ଈର ) ଶରନ୍ଧାଜ, କାଣ୍ଡବାନ୍ ।

କାଣ୍ୱ, ବଂ. ( କଣ୍ୱ-ଅ ) କଣ୍ୱସମ୍ବନ୍ଧୀୟ; କଣ୍ୱ-ସନ୍ତାନ । ବ. ପୁଂ. ଯଜୁର୍ବେଦୀୟ ଶାଖାବିଶେଷ ।

କାତ, ବ. ( ଦେଶଜ ) ନୌକା ପ୍ରଭୃତି ବାହି ନେବାପାଇଁ ବଡ଼ ବଡ଼ ବାଉଁଶ ଖଣ୍ଡ ।

କାତର, ବଂ. ( କୁ-ତର, କୁ=କା ) ଦୁଃଖିତ; ଭୀତ; ଚଞ୍ଚଳ; ବିବଶ, ବିହ୍ୱଳ ।

କାତର୍ଯ୍ୟ, ବ. ନ. ( କାତର-ଯ ) କାତରତା; ଦୁଃଖ; ଭୀରୁତା ।

କାତି, ବ. (ଦେଶଜ)ମାଛ, ସର୍ପ ପ୍ରଭୃତିର ଉପରସ୍ଥ ଆବରଣ; କ୍ଷୁଦ୍ର ଛୁରିକାବିଶେଷ, କାଟିବାର ଅସ୍ତ୍ର ।

କାତୃଣ, ବ. ନ. (କୁ-ତୃଣ, କୁ=କା) କୁତ୍ସିତ ତୃଣ ।

କାତ୍ୟ, ବ. ପୁଂ. (କତ-ଯ) କାତ୍ୟାୟନ ମୁନି ।

କାତ୍ୟାୟନ, ବ. ପୁଂ. (କାତ୍ୟ-ଆୟନ) ଧର୍ମଶାସ୍ତ୍ର-ପ୍ରବକ୍ତା, ଧର୍ମସଂହିତାକାରକ ମୁନିବିଶେଷ ।

କାତ୍ୟାୟନୀ, ବ. ସ୍ତ୍ରୀ. (କାତ୍ୟ-ଅୟନ-ଈ) ଦୁର୍ଗା; ଅର୍ଦ୍ଧବୃଦ୍ଧ; କଷାୟ ବସ୍ତ୍ର; ବିଧବା ।

କାଦମ୍ବ, ବ. ପୁଂ. (କଦମ୍ବ-ଅ) କଦମ୍ବବୃକ୍ଷ; ଇକ୍ଷୁ; ପାତିହଂସ, କଳହଂସ; ବାଣ । ନ. କଦମ୍ବପୁଷ୍ପ । ବଂ. କଦମ୍ବସମ୍ବନ୍ଧୀୟ । (କଳହଂସ ଅର୍ଥରେ) ଯଥା—

> କି ଅବା ମାନସଗାମୀ ରାଜହଂସପନ୍ତି,
> କାଦମ୍ବଦଳ ସଂଯୋଗେ ଯେମନ୍ତ ଦିଶନ୍ତି । ବ. ବ.

କାଦମ୍ବର, ବ. ନ. (କଦମ୍ବ-ର) ମଦ୍ୟବିଶେଷ; ଇକ୍ଷୁଗୁଡ଼ ।

କାଦମ୍ବରୀ, ବ. ସ୍ତ୍ରୀ. (କଦମ୍ବ-ରା-ଈ) ସରସ୍ୱତୀ; କୋକିଳ; ଶାରିକା; ଗ୍ରନ୍ଥବିଶେଷ ।

କାଦମ୍ବିନୀ, ବ. ସ୍ତ୍ରୀ. (କାଦମ୍ବ-ଇନ୍-ଈ) ମେଘ-ମାଳା, ମେଘଶ୍ରେଣୀ । ଯଥା—

> କାଦମ୍ବିନୀ ଖେଳେ ଗଗନେ,ଧୀର ଗମ୍ଭୀର ଘୋଷ । ଚ. ଛ.

କାଦୁଅ, ବ. (କର୍ଦ୍ଦମ ଶବ୍ଦଜ) ପଙ୍କ ।

କାଦ୍ରବେୟ, ବ. ପୁଂ. (କଦ୍ରୁ-ଏୟ) କଦ୍ରୁସନ୍ତାନ, ସର୍ପ ।

କାନ, ବ. (କର୍ଣ୍ଣ ଶବ୍ଦଜ) ଶ୍ରବଣେନ୍ଦ୍ରିୟ ।

କାନକୁଣ୍ଟୁଲୀ, ବ. (ଦେଶଜ) କୀଟବିଶେଷ ।

କାନକୁହା, ବ. ପୁଂ. (ଦେଶଜ) ଯେ ବ୍ୟକ୍ତି ଏକର ଦୋଷ ଅନ୍ୟ ନିକଟରେ ପ୍ରକାଶ କରେ, ଖରୁଆ । ଯଥା—

> ପରହାନିପ୍ରିୟ ଖଳ, କାନକୁହା ଅତି,
> ଭକ୍ତଙ୍କର ମୁଖ ଦୁଃଖେ ଯାଉଅଛି ଶୁଖି । ଦ. ପା,

କାନକ, ବଂ. (କନକ-ଅ) କନକ ନିର୍ମିତ; ସୁବର୍ଣ୍ଣ-ସମ୍ବନ୍ଧୀୟ । ନ. ଜୟପାଳ ଫଳର ମଞ୍ଜି ।

କାନନ, ବ. ନ. (କନ-ଅନ) ବନ; ଗୃହ । (କ-ଆନନ) ବ୍ରହ୍ମାଙ୍କ ମୁଖ ।

କାନଫୋଡ଼ା, କ୍ରି. ବ. (ଦେଶଜ) କର୍ଣ୍ଣବେଧ ନାମକ ଶୁଭକର୍ମବିଶେଷ ।

କାନି, କାନ୍ତି, ବ. ( ଦେଶଜ ) ବସ୍ତ୍ରର ଲମ୍ବ ଅଡ଼ର ଶେଷଭାଗ ।

କାନୀନ, ବ. ସ୍ତ୍ରୀ. (କନ୍ୟା-ଈନ) ଅବିବାହିତା କନ୍ୟାର ସନ୍ତାନ । ପୁଂ. ବ୍ୟାସ ।

କାନୁନଗୋଇ, ବ. ( ଯାବନିକ ) ମଫସଲର ରାଜସ୍ୱସମ୍ବନ୍ଧୀୟ ପ୍ରଧାନ କର୍ମଚାରୀ ।

କାନ୍ତ, ବଂ. (କମ୍-ତ) ପ୍ରିୟ, କମନୀୟ । ବ. ସ୍ୱାମୀ; କୃଷ୍ଣ; ଚନ୍ଦ୍ର; ଲୌହ; ବସନ୍ତକାଳ ।

କାନ୍ତା, ବ. ସ୍ତ୍ରୀ. ( କମ୍-ତ-ଆ ) ଭାର୍ଯ୍ୟା; ସ୍ତ୍ରୀ-ବିଶେଷ, ସୁନ୍ଦରୀ ସ୍ତ୍ରୀ; ପ୍ରିୟଙ୍ଗୁଲତା । ପ୍ରସ୍ତର ଅର୍ଥ ହୋଇଲେ ସୂର୍ଯ୍ୟ ଚନ୍ଦ୍ର ଅୟସ ଶବ୍ଦର ସହିତ ଯୁକ୍ତ ହୁଏ । ଯଥା-ସୂର୍ଯ୍ୟକାନ୍ତ, ଚନ୍ଦ୍ର-କାନ୍ତ, ଇତ୍ୟାଦି ।

କାନ୍ତପକ୍ଷୀ, ବ. ପୁଂ. (କାନ୍ତ-ପକ୍ଷିନ୍) ମୟୂର ।

କାନ୍ତାର, ବ. ପୁଂ. ନ. (କାନ୍-ତାର-ଅ) ମହାରଣ୍ୟ; ଦୁର୍ଗମ ପଥ ; ଗର୍ତ୍ତ ; ଦୁର୍ଭିକ୍ଷ; ବାଉଁଶ । ଯଥା—

> ବହୁଳେ କାନ୍ତାରେ କୃଷ୍ଣ ବୌଣିକ,
> ତଷାପ୍ରବ ମିଳ ଉଷା ପୌର୍ଯ୍ୟଭିତ୍ତିକ । ନ. କେ.

କାନ୍ତି, ବ. ସ୍ତ୍ରୀ. (କମ୍-ତି) ଶୋଭା; ଦୀପ୍ତି; ଲାବଣ୍ୟ, ସୌନ୍ଦର୍ଯ୍ୟ; କାମନା; ଇଚ୍ଛା; କମନୀୟା ସ୍ତ୍ରୀ ।

କାନ୍ତକ, ବ. ନ. (କାନ୍ତ-କ) ଲୌହବିଶେଷ, କାନ୍ତଲୌହ ।

କାନ୍ତିଦ, ବ. ନ. (କାନ୍ତି-ଦ) ପିତ୍ତ । ବିଂ. ଶୋଭାଦାୟକ ।

କାନ୍ତିଭୃତ୍, } ବିଂ. (କାନ୍ତି-ଭୃ-ଂ, ମତ୍) ଦୀପ୍ତିଶାଳୀ ।
କାନ୍ତିମତ୍, } ବ. ପୁଂ. ଚନ୍ଦ୍ର ।

କାନ୍ଥ, ବ. (ଦେଶଜ) ମାଟିନିର୍ମିତ ବାଡ଼ ।

କାନ୍ଥକୁବା, ବ. ( କୁଡ୍ୟକନ୍ଦର ଶବ୍ଦଜ ) ତାକ, ଠଣା ।

କାନ୍ଦବ, ବ. ନ. (କନ୍ଦୁ-ଅ) ଭକ୍ଷ୍ୟଦ୍ରବ୍ୟବିଶେଷ; ପକ୍ୱାନ୍ନ, ମିଠାଇ ପ୍ରଭୃତି ।

କାନ୍ଦିବା, କ୍ରି ବ. ( କ୍ରନ୍ଦନ ଶବ୍ଦଜ ) ରୋଦନ କରିବା ।

କାନ୍ଧି, (ଦେଶଜ) କଦଳୀ ପ୍ରଭୃତି ଫଳର ପେଣ୍ଡା ।

କାନ୍ଧ, ବ. (ସ୍କନ୍ଧ ଶବ୍ଦଜ) ଗ୍ରୀବାର ଅଧୋଭାଗ, ବାହୁର ଉପରଭାଗ ।

କାନ୍ୟକୁବ୍ଜ, ବ. ପୁଂ. (କନ୍ୟା-କୁବ୍ଜ-ଅ) କନୋଜ ଦେଶ; ତଦ୍ଦେଶୀୟ ବ୍ରାହ୍ମଣ ।

କାପ, ବ. (ଦେଶଜ) କର୍ଣ୍ଣର ଅଳଙ୍କାରବିଶେଷ ।

କାପଟିକ, ବ. ପୁଂ. ( କପଟ-ଇକ ) ଛାତ୍ର । ବିଂ. କପଟବ୍ୟବହାରୀ; ଶଠ, ଧୂର୍ତ୍ତ ।

କାପଟ୍ୟ, ବ. ନ. (କପଟ-ଯ) କପଟତା, ଶଠତା ।

କାପଥ, ବ. ପୁଂ. ( କୁ-ପଥିନ୍-ଅ, କୁ=କା ) କୁପଥ, କୁତ୍ସିତ ପଥ; ଦାନବବିଶେଷ ।

କାପାଳିକ, ବ. ପୁଂ. ( କପାଳ-ଇକ ) ଜାତିବିଶେଷ, ନରକପାଳଧାରୀ ଶୈବବିଶେଷ ; ଏହି ନର କପାଳ ସେମାନଙ୍କ ଭୋଜନ ପାତ୍ରାଦିର କାର୍ଯ୍ୟ କରଇ । ବିଂ. କପାଳ-ସମ୍ବନ୍ଧୀ ।

କାପାଳୀ, ବ. ପୁଂ. (କପାଳ-ଇନ୍) ଶିବ । ବିଂ. ବ୍ରତାର୍ଥ ବ୍ରହ୍ମକପାଳଧାରୀ । ଲିଙ୍ଗ-ସ୍ତ୍ରୀ. ବେଶ୍ୟା; ଭଣ୍ଡାରୁଣୀ ।

କାପିଡ଼ୀ, ବ. (ଦେଶଜ) ଲୁଗାବିକ୍ରେତା ।

କାପିଳ, ବ. ପୁଂ. ( କପିଳ-ଅ ) କପିଳପ୍ରଣୀତ ସାଂଖ୍ୟଶାସ୍ତ୍ର; ସାଂଖ୍ୟଶାସ୍ତ୍ର ମତାବଲମ୍ବୀ । ବିଂ. ପିଙ୍ଗଳବର୍ଣ୍ଣ ।

କାପିଶ, ବ. ନ. (କପିଶା-ଅ) ମାଧବୀ ଲତାଜାତ ମଦ୍ୟ । ଶୀ-ସ୍ତ୍ରୀ. ଦେଶ ।

କାପିଶାୟନ, ବ. ନ. (କପିଶ-ଅୟନ) ପୁଷ୍ପମଦ୍ୟ; ଦେବତା ।

କାପିଶାୟନୀ, ବ. ସ୍ତ୍ରୀ. (କପିଶ-ଆୟନ-ଈ) ଦ୍ରାକ୍ଷାଲତା ।

କାପିଶେୟ, ବ. ପୁଂ. (କପିଶ-ଏୟ) ପିଶାଚ ।

କାପୁରୁଷ, ବ. ପୁଂ. ( କୁ-ପୁରୁଷ ) ଅସାରବ୍ୟକ୍ତି, କୁତ୍ସିତପୁରୁଷ, ନିନ୍ଦିତବ୍ୟକ୍ତି; ଭୀତସ୍ୱଭାବ ବା ସାହସହୀନ ବ୍ୟକ୍ତି ।

କାପେୟ, ବିଂ. (କପି-ଏୟ) କପିସମ୍ବନ୍ଧୀୟ; କପିବଂଶୀୟ । ନ. କପିକର୍ମ; କପିସମୂହ ।

କାପୋତ, ବ. ପୁଂ. ( କପୋତ-ଅ ) କପୋତସମୂହ । ବିଂ. କର୍ବୁରବର୍ଣ୍ଣ ।

କାପ୍ତା, ବ. (କପୋତ ଶବ୍ଦଜ) କପୋତ ।

କାଫଡ, ବ. (ଦେଶଜ) ବୃକ୍ଷବିଶେଷର ଛେଲି ।

କାଫ୍ରୀ, ବ. ( ଯାବନିକ ) ଅଫ୍ରିକା ଦେଶରେ ଆଦିମ ନିବାସୀ ।

କାଫିବୃକ୍ଷ, ବ. (ବିଦେଶଜ) ସ୍ୱନାମପ୍ରସିଦ୍ଧ ବୃକ୍ଷବିଶେଷ ।

କାମ, ବ. ପୁଂ. (କମ୍-ଅ) କନ୍ଦର୍ପ; ( କାମ୍-ଅ ) ବଳରାମ; ( କମ୍-ଅ ) ଇଚ୍ଛା, ଅଭିଳାଷ ଯଥା—

> କଣ୍ଠେ କାମ ପୂରଇ କାମ ବନ୍ଧନ ବସ ପାଶେ । ଉ. ଦ

ସ୍ତ୍ରୀ ପୁରୁଷର ସମ୍ଭୋଗପ୍ରବୃତ୍ତି, ମନର ଯେଉଁ ଗୁଣ ଥିବାରୁ ସ୍ତ୍ରୀ ଓ ପୁରୁଷର ସମ୍ଭୋଗ ଅଭିଳାଷ ଜନ୍ମଇ । ନ. ରେତଃ । କ୍ରି. ବିଂ. ଇଚ୍ଛାପୂର୍ବକ; ଯଥେଷ୍ଟ; (କର୍ମ ଶବ୍ଦକ) କାର୍ଯ୍ୟ ।

କାମକଳା, ବି. ସ୍ତ୍ରୀ. ( କାମ-କଳା ) କାମଶାସ୍ତ୍ର; କନ୍ଦର୍ପପତ୍ନୀ, ରତି ।

କାମକୂଟ, ବି. ପୁଂ. (କାମ-କୂଟ) ବେଶ୍ୟାପ୍ରିୟ ।

କାମକେଳି, ବିଂ. ( କାମ-କେଳି ) ଲମ୍ପଟ; ଉପପତି । ବି. ପୁଂ. ରତିକ୍ରୀଡ଼ା, ସୁରତ ।

କାମଗ, କାମଗାମୀ, ବିଂ. ( କାମ-ଗ, ଗାମୀ ) ଇଚ୍ଛାନୁସାରେ ଶୀଘ୍ର ଓ ସର୍ବତ୍ର ଗମନକ୍ଷମ ।

କାମଚର, ବିଂ. ( କାମ-ଚର ) ସର୍ବତ୍ରଗାମୀ; ସ୍ୱେଚ୍ଛାଚାରୀ ।

କାମଚାର, କାମଚାର, ବି. ପୁଂ. ( କାମ-ଚାର, ଚର) ଯଥେଚ୍ଛାଚାର, ସ୍ୱେଚ୍ଛାଚାର ।

କାମଚାରୀ, ବିଂ. (କାମ-ଚରିନ୍) ସ୍ୱେଚ୍ଛାଚାରୀ; ଯେ କାମର ବଶୀଭୂତ ହୋଇ ଚଳେ; ଲମ୍ପଟ-ସ୍ୱଭାବ । ବି. ପୁଂ. ଚଟକ । ଣୀ, ସ୍ତ୍ରୀ. ସ୍ୱେଚ୍ଛାଚାରିଣୀ ।

କାମଜିତ୍, ବି.ପୁଂ. (କାମ-ଜି-୦) ରୂପ ବିଷୟରେ କାମଦେବଙ୍କୁ ଜୟ କରିଥିବାରୁ କାର୍ତ୍ତିକେୟ; କାମଦେବଙ୍କୁ ଭସ୍ମ କରିଥିବାରୁ ମହାଦେବ; ସ୍ତ୍ରୀ ସଂସର୍ଗ ବର୍ଜନ କରିଥିବା ହେତୁ ଜୈନ-ଦେବବିଶେଷ ।

କାମଡ଼ା, ବି. (ଦେଶଜ) ଗୃହର ଅଂଶବିଶେଷ; ଦୃଢ଼ କରିବା ନିମନ୍ତେ ବାଡ଼ ବା ଚାଳରେ ଯେଉଁ ଭୂଇଖଣ୍ଡ ବଡା ରଜ୍ଜୁଦ୍ୱାରା ଏକତ୍ର ବନ୍ଧାଯାଏ ।

କାମତାଳ, ବି. ପୁଂ. (କାମ-ତାଳ) କୋକିଳ; କବିମାନେ କୋକିଳର ଗାନକୁ କାମର ଉତ୍ତେଜକସ୍ୱରୂପ ବିବେଚନା କରନ୍ତି ବୋଲି କୋକିଳକୁ ଏ ନାମ ଦିଆ ହୋଇଅଛି ।

କାମଦ, ବିଂ. (କାମ-ଦ) ଅଭୀଷ୍ଟଦାତା, ଯେ ଅନ୍ୟର ଅଭିଳାଷ ପୂର୍ଣ୍ଣ କରଇ, କାମପ୍ରଦ ।

କାମଦୁଘା, କାମଦୁହା, କାମଧେନୁ, ବି. ସ୍ତ୍ରୀ. ( କାମ-ଦୁହ୍-ଅ, ୦, ଧେନୁ ) ଅଭିଳଷିତ-ଦାୟିନୀ ଗାଭୀ, ସୁରଭି । ଯଥା—

> କାମୀ କାମଦୁହା ଗୋଧନ ଯୋଗେହା
> ହୋଇ ଶିଖିଲେ ଗାଇଦୁହାଁ । ର. ବ.

କାମଦେବ, ବି. ପୁଂ. (କାମ-ଦେବ) ବ୍ରହ୍ମାର ମାନସପୁତ୍ର, କନ୍ଦର୍ପ ।

କାମଧ୍ୱଂସୀ, ବି. ସ୍ତ୍ରୀ. କାମନାଶୀ ।

କାମଧେନୁ, ବି. ସ୍ତ୍ରୀ. ( କାମ-ଧେନୁ ) ଏହି ଧେନୁ ନିକଟରେ ଯେଉଁ ବ୍ୟକ୍ତି ଯାହା ପ୍ରାର୍ଥନା କରେ ସେ ତତ୍କ୍ଷଣାତ୍ ତାହା ପ୍ରଦାନ କରେ, ଅଭୀଷ୍ଟଦାୟିକା ଗାଭୀ ।

କାମନା, ବି. ସ୍ତ୍ରୀ. (କମି-ଅନ-ଆ) ଇଚ୍ଛା, ବାସନା ।

କାମପତ୍ନୀ, ବି. ସ୍ତ୍ରୀ. ରତି, କନ୍ଦର୍ପର ସ୍ତ୍ରୀ ।

କାମପାଳ, ବି. ପୁଂ. (କାମ-ପାଳ) ବଳରାମ, ବଳଦେବ, ଶ୍ରୀକୃଷ୍ଣଙ୍କର ଅଗ୍ରଜ ।

କାମପୀଠ, ବି. ପୁଂ. ନ. କୂପାଦିର ଉପରିଭାଗରେ ବନ୍ଧ ସ୍ଥାନ ।

କାମମହ, ବି. ପୁଂ. (କାମ-ମହ) କାମର ଉତ୍ସବ; ଚୈତ୍ର ପୂର୍ଣ୍ଣିମା ତିଥିରେ ଏହି ମହୋତ୍ସବ ହୁଅଇ ।

କାମରୂପ, ବି. ପୁଂ. (କାମ-ରୂପ) ଦେଶବିଶେଷ । ବିଂ. ସୁନ୍ଦର; ସ୍ୱେଚ୍ଛାପୂର୍ବକ ରୂପଧାରୀ ।

କାମରୂପୀ, ବି. ପୁଂ.(କାମ-ରୂପ-ଇନ୍ ) ବିଦ୍ୟାଧର । ବିଂ. ସୁରୂପ; ସ୍ୱେଚ୍ଛାପୂର୍ବକ ରୂପଧାରଣ ସମର୍ଥ ।

କାମରେଖା, ବି. ସ୍ତ୍ରୀ. (କାମ-ରେଖା) ବେଶ୍ୟା ।

କାମଳ, ବି. ପୁଂ. (କାମ-ଲା-ଅ) ରୋଗବିଶେଷ, କାମିଳ; (କାମ-ଳ, "ଲସ୍" ଧାତୁଜ) ବସନ୍ତକାଳ; ମରୁଭୂମି; (କାମ-ଳ) ବିଂ. କାମୁକ, କାମୀ ।

କାମଶର, ବି. ପୁଂ. (କାମ-ଶର) କନ୍ଦର୍ପର ବାଣ; ଆମ୍ରବୃକ୍ଷ ।

କାମସଖ, ବି. ପୁଂ. (କାମ-ସଖା) ବସନ୍ତକାଳ, ଆମ୍ରବୃକ୍ଷ ।

କାମଯୁତ, ବ. ପୁଂ. (କାମ-ଯୁତ) ଅନୁରକ୍ତ ।

କାମାଖ୍ୟା, ବ. ସ୍ତ୍ରୀ. (କାମ-ଅଖ୍ୟା) ସତୀଦେବୀଙ୍କର ଯୋନିପୀଠରୂପ ସ୍ଥାନ ଓ ତଦଧିଷ୍ଠାତ୍ରୀ ଦେବୀବିଶେଷ ।

କାମାଙ୍କୁଶ, ବ. ପୁଂ. ( କାମ-ଅଙ୍କୁଶ ) ନଖ । ନ. ଲିଙ୍ଗ ।

କାମାତ୍ମା, ବିଂ. (କାମ-ଆତ୍ମନ୍) କାମର ନିତାନ୍ତ ବଶୀଭୂତ; ଯେ ଫଳର କାମନା କରଇ, ଫଳକାମୀ

କାମାନ୍ଧ, ବିଂ. (କାମ-ଅନ୍ଧ) କାମମୁଗ୍ଧ, କାମଦ୍ୱାରା ଜ୍ଞାନହୀନ । ପୁଂ. କୋକିଳ ।

କାମାୟୁଃ, ବ. ପୁଂ. (କାମ-ଆୟୁସ୍) ଗରୁଡ଼ ।

କାମାର୍ତ୍ତ, ବିଂ. (କାମ-ଅର୍ତ୍ତ) କାମଦ୍ୱାରା ପୀଡ଼ିତ, କାମର ବଶୀଭୂତ ।

କାମିତ, ବିଂ. (କାମି-ତ) ପ୍ରାର୍ଥିତ; ଈପ୍ସିତ ।

କାମିନୀ, ବ. ସ୍ତ୍ରୀ. (କାମ-ଇନ୍-ଈ) ଭୀରୁ ସ୍ତ୍ରୀ; ଅତିଶୟ କାମଯୁକ୍ତା ନାରୀ; ସ୍ତ୍ରୀମାତ୍ର; ମଦିରା; ଦାରୁହରିଦ୍ରା ।

କାମୀ, ବିଂ. (କାମ-ଇନ୍) କାମବିଶିଷ୍ଟ, କାମୁକ । ବ. ପୁଂ. ଚକ୍ରବାକ; କପୋତ; ଚଟକ; ସାରସ; ଚନ୍ଦ୍ର ।

କାମୀନ, ବିଂ. (କାମ-ଈନ) କାମୁକ ।

କାମୁକ, ବିଂ. ( କାମ-ଉକ ) ରମଣାଭିଳାଷୀ; ଅଭିଳାଷୀ । ବ. ପୁଂ. ଅଶୋକବୃକ୍ଷ; ଅତିମୁକ୍ତଲତା; ମାଧବୀ ଲତା ।

କାମୁକା, ବ. ସ୍ତ୍ରୀ. (କାମ-ଉକ-ଆ) ଭୋଗାଭିଳାଷିଣୀ, ଇଚ୍ଛାବତୀ ।

କାମୁକୀ, ବ. ସ୍ତ୍ରୀ. (କାମ-ଉକ-ଈ) ରମଣାଭିଳାଷିଣୀ ।

କାମୁଡ଼ା, ବିଂ. (ଦେଶଜ) ଯେ କାମୁଡ଼େ ।

କାମୁଡ଼ିବା, କ୍ରି. ବ. (ଦେଶଜ) ଦନ୍ତଦ୍ୱାରା ଛେଦନ ବା କ୍ଷତ କରିବା ।

କାମୋଦକ, ବ. ନ. (କାମ-ଉଦକ) ମୃତ ବ୍ୟକ୍ତି ଉଦ୍ଦେଶ୍ୟରେ ସ୍ୱେଚ୍ଛାକ୍ରମେ ପ୍ରଦତ୍ତ ଜଳ ।

କାମୋଦୀ, ବ. ସ୍ତ୍ରୀ. ରାଗିଣୀବିଶେଷ ।

କାମ୍ପି, ବିଂ. (ଦେଶଜ) କୃପଣ ।

କାମ୍ବଳ, ବ. ପୁଂ. (କମ୍ବଳ-ଅ) କମ୍ବଳାବୃତ ରଥ ।

କାମ୍ବୋଜ, ବ. ପୁଂ. (କମ୍ବୋଜ-ଅ) କମ୍ବୋଜଦେଶୀୟ ଅଶ୍ୱ; ପୁନ୍ନାଗବୃକ୍ଷ; ଦେଶବିଶେଷ; ଯବନ ଜାତିବିଶେଷ; ଶ୍ୱେତଖଦିର ।

କାମ୍ୟ, ବିଂ. (କାମ-ଯ) ଭୋଗ୍ୟ; ଅଭିଲଷଣୀୟ; ସୁନ୍ଦର । ବ. ନ. ଅଭୀଷ୍ଟ କର୍ମ ।

କାମ୍ୟକବନ, ବ. ନ. ସରସ୍ୱତୀ ନଦୀତୀରସ୍ଥ ବନ, ଏଠାରେ ପାଣ୍ଡବମାନେ ଦୀର୍ଘକାଳ ବାସ କରିଥିଲେ ।

କାମ୍ଳ, ବ. ନ. (କୁ-ଅମ୍ଳ) ଅଳ୍ପ ଅମ୍ଳରସ । ବିଂ. ଈଷତ୍ ଅମ୍ଳରସଯୁକ୍ତ ।

କାୟ, ବ. ପୁଂ. ନ. (କ-ୟ, ଇ ଧାତୁକ) ଶରୀର; ଗୃହ; ବ୍ରହ୍ମା; ସ୍ୱାଭାବିକ ଅବସ୍ଥା ।

କାୟସ୍ଥ, ବ. ପୁଂ. (କାୟ-ସ୍ଥା-ଅ) ଜାତିବିଶେଷ ।

କାୟିକ, ବିଂ. (କାୟ-ଇକ) ଶରୀର ସମ୍ବନ୍ଧୀୟ ।

କାର, ବ. ପୁଂ. (କୃ-ଅ) କାର୍ଯ୍ୟ; ଯତ୍ନ; ନିଶ୍ଚୟ । ବିଂ.କର୍ମକର୍ତ୍ତା । ଯଥା—ସ୍ୱର୍ଣ୍ଣକାର, କୁମ୍ଭକାର, ଇତ୍ୟାଦି ।

କାରକ, ବିଂ. (କୃ-ଅକ) କର୍ମକାରକ; କାରକ ଛଅପ୍ରକାର; ଯାହାର କ୍ରିୟା ସହିତ ସମ୍ବନ୍ଧ ଥାଏ ।

କାରଖାନା, ବ. (ଯାବନିକ) ନାନାପ୍ରକାର ଶିଳ୍ପକାର୍ଯ୍ୟ ଗୃହ; ନାନାପ୍ରକାର କର୍ମ ।

କାରଣ, ବ. ନ. (କାରି-ଅନ) ହେତୁ; ନିମିତ୍ତ; ବୀଜ; ଯାହାଠାରୁ କାର୍ଯ୍ୟ ଉତ୍ପତ୍ତି ହୁଏ ।

କାରଣମାଳା, ବ. ସ୍ତ୍ରୀ. ଅର୍ଥାଳଙ୍କାରବିଶେଷ; ଉତ୍ତରୋତ୍ତର ପଦାର୍ଥ ପ୍ରତି ପୂର୍ବ ପୂର୍ବ ପଦାର୍ଥ ହେତୁରୂପେ ଉପନ୍ୟସ୍ତ ହେଲେ ସେହି ସବୁ ପୂର୍ବ ପଦାର୍ଥକୁ କାରଣମାଳା ବୋଲାଯାଏ ।

କାରଣା, ବ. ସ୍ତ୍ରୀ. (କାରି-ଅନ-ଆ) ତୀବ୍ରଯାତନା; ନରକଯନ୍ତ୍ରଣା; ଗାଢ଼ବେଦନା ।

କାରଣିକ, ବିଂ. ( କାରଣ-ଇକ ) ପରୀକ୍ଷକ, ବିଚାରକ; କାରଣସମ୍ବନ୍ଧୀୟ ।

କାରଣୀଭୂତ, ବିଂ. (କାରଣ-ଭୂତ) କାରଣସ୍ୱରୂପ, ଯେ ବା ଯାହା କାରଣରୂପେ ଉପସ୍ଥିତ ହୋଇ-ଅଛି ।

କାରଣ୍ଡବ, ବି. ପୁଂ. ସ୍ତ୍ରୀ. (କାରଣ୍ଡ-ଅ) ହଂସ-ବିଶେଷ । ଯଥା—

କାଁଢ଼ା ବଲେ ହଂସ ବକ କାରଣ୍ଡବ କୋକ
ହଂସାବଳୀ ସଜ୍ଜିତ । ର. କ.

କାରନ୍ଧମୀ, ବି. ପୁଂ. ( କାରମ୍-ଧମିନ୍ ) କଂସାର, ଥଟାରି ।

କାରବ, ବି. ପୁଂ. (କା-ରବ) କାକ , କାଉ ।

କାରବାର, ବି. ( ଯାବନିକ ) କର୍ମ, କାର୍ଯ୍ୟ; ବ୍ୟବସାୟ ।

କାରବୀ, ବି. ସ୍ତ୍ରୀ. (କ-ରୁ-ଈ) ମୟୂରଶିଖା; ରୁଦ୍ର-ଜଟା; କଲାଜିରା; ମହୁରୀ; ଛୋଟ କଲରା ।

କାରବେଲ୍ଲ, ବି. ପୁଂ. ( କାର-ବେଲ୍ଲ ) କଲରା ଗଛ ।

କାରସାଜି, ବି. (ଦେଶଜ) ଛଳ; କପଟ ।

କାରା, ବି. ସ୍ତ୍ରୀ. (କୃ-ଅ) ବନ୍ଦିଗୃହ । ଯଥା—

ସେ ଅଟେ ଜଗଜ୍ଜନର ମନନସ୍ୱନକାରା । ଚ. ଭା

ବୀଣା ଅଧଃସ୍ଥିତ କାଷ୍ଠମୟ ଭାଣ୍ଡ; ବନ୍ଧନ ।

କାରାଗାର, ବି. ନ. (କାରା-ଅଗାର) ଜେଲଖାନା, ଯେଉଁ ସ୍ଥାନରେ ରାଜପୁରୁଷମାନଙ୍କ ଆଦେଶ-କ୍ରମେ ଅପରାଧୀମାନଙ୍କୁ ରୁଦ୍ଧ କରି ରଖାଯାଏ ।

କାରାବାସ, ବି. ପୁଂ. (କାରା-ବାସ) କାରାଗାର, ଜେଲଖାନା, ବନ୍ଦିଗୃହ ।

କାରାବେଶ୍ମ, ବି. ନ. ( କାରା-ବେଶ୍ମନ୍ ) କାରାଗାର ।

କାରୁକର, ବି. ପୁଂ. (କାରୁ-କର) ଯେ କୌଣସି ପ୍ରକାର ଶିଳ୍ପକାର୍ଯ୍ୟ କରେ, ଶିଳ୍ପୀ ।

କାରିକା, ବି. ସ୍ତ୍ରୀ. (କୃ-ଅକ-ଆ) ବିବରଣ ଶ୍ଳୋକ; ନଟୀ; କର୍ତ୍ତ୍ରୀ; ଶିଳ୍ପକର୍ମ । ଦେ. ଯନ୍ତ୍ର; ଯାତନା; କାର୍ଯ୍ୟ; ମର୍ଯ୍ୟାଦା ।

କାରିଗର, ବିଂ. (କାରୁକର ଶବ୍ଦଜ) ଯେ ଶିଳ୍ପ-କାର୍ଯ୍ୟ କରେ, ଚିତ୍ରକ ।

କାରୁ, ବି. ପୁଂ. (କୃ-ଉ) ବିଶ୍ୱକର୍ମା । ବିଂ. ଶିଳ୍ପ-କାରକ ।

କାରୁକ୍ରିୟା, ବି. ସ୍ତ୍ରୀ. ଶିଳ୍ପକାର୍ଯ୍ୟ ।

କାରୁଜ, ବି. ପୁଂ. (କାରୁ-ଜନ୍-ଅ) ଶିଳ୍ପଜାତ-ବସ୍ତୁ, ଗାବସ୍ଥ ତିଳାଦିଚିହ୍ନ; ଗିରିମାଟି; ବଲ୍ମୀକ; ଫେନ; କରିଶାବକ ।

କାରୁଣ, ବିଂ. (କରୁଣା-ଅ) କରୁଣାଶୀଳ, ଦୟା-ଶୀଳ ।

କାରୁଣିକ, ବିଂ. (କରୁଣା-ଇକ) ଯାହାର କରୁଣା ଅଛି, ଦୟାଳୁ ।

କାରୁଣ୍ଡି, ବି. ସ୍ତ୍ରୀ. ଜଳୌକା, ଜୋକ ।

କାରୁଣ୍ୟ, ବି. ନ. (କରୁଣା-ଯ) କରୁଣା, ଦୟା ।

କାର୍କଶ୍ୟ, ବି. ନ. ( କର୍କଶ-ଯ ) କାଠିନ୍ୟ; ନିର୍ଦ୍ଦୟତା ।

କାର୍ତ୍ତବୀର୍ଯ୍ୟ, ବି. ପୁଂ. ( କୃତ-ବୀର୍ଯ୍ୟ-ଅ ) ନୃପ-ବିଶେଷ; ଏହାଙ୍କର ନାମ ଅର୍ଜୁନ; ଏ ସହସ୍ର-ବାହୁ ବୋଲି ବିଖ୍ୟାତ; ଏହି ଭୂପତି ଜମଦଗ୍ନିଙ୍କୁ ବଧ କରିବାରୁ ପରଶୁରାମ ଏହାଙ୍କର ପ୍ରାଣ ସଂହାର କରିଥିଲେ ।

କାର୍ତ୍ତସ୍ୱର, ବି. ନ. ( କୃତସ୍ୱର-ଅ ) ଧୂସ୍ତୂର; ସୁବର୍ଣ୍ଣ । ଯଥା—

କେତେ କାର୍ତ୍ତସ୍ୱର ପର୍ବତରେ କଲେ ଦାନ ସେ ।

କାର୍ତ୍ତାନ୍ତିକ, ବି. ପୁଂ. (କୃତାନ୍ତ-ଇକ) ଦୈବଜ୍ଞ, ଜ୍ୟୋତିର୍ବିଦ୍ ।

କାର୍ତ୍ତିକ, ବି. ପୁଂ. (କାର୍ତ୍ତିକୀ-ଅ) ସ୍ୱନାମ ପ୍ରସିଦ୍ଧ ମାସ; ଷଡ଼ାନନ ।

କାର୍ତ୍ତିକେୟ, ବି. ପୁଂ. (କୃତ୍ତିକା-ଏୟ) କୁମାର, ଷଡ଼ାନନ ।

କାର୍ପଟ, ବି. ପୁଂ. (କର୍ପଟ-ଅ) ଜତୁ, ଜଉ; ବସ୍ତ୍ର-ଖଣ୍ଡ । ବିଂ. କାର୍ଯ୍ୟାର୍ଥୀ ।

କାର୍ପଟିକ, ବିଂ. (କର୍ପଟ-ଇକ) ତୀର୍ଥସେବୀ; ମର୍ମଜ୍ଞ ।

କାର୍ପଣ୍ୟ, ବି. ନ. (କୃପଣ-ଯ) କୃପଣତା, ବ୍ୟୟ-କୁଣ୍ଠତା, ଦାରିଦ୍ର୍ୟ; ଦୈନ୍ୟ; କାତରତା ।

କାର୍ପାସ, ବି. ପୁଂ. (କୃ-ପାସ) କପାଗଛ । ନ. ତୁଳା । ବି. କାର୍ପାସନିର୍ମିତ ।

କାର୍ପାସିକ, ବି. (କାର୍ପାସ-ଇକ) କାର୍ପାସ ସୂତ୍ରରେ ନିର୍ମିତ ।

କାର୍ମ, ବି. (କର୍ମନ୍-ଅ) କର୍ମଶୀଳ, ପରିଶ୍ରମୀ ।

କର୍ମାର, ବି. ପୁଂ. (କର୍ମାର-ଅ) କମାର ।

କାର୍ମୁକ, ବି. ନ. (କର୍ମନ୍-ଇକ) ବାଉଁଶ । ନ. ଧନୁ ; ମହାନିମ୍ବ; ହାଞ୍ଜଳ; ଶ୍ୱେତଖଦିର; ଧନୁର୍ଗୁଣ । ବି. କର୍ମଦକ୍ଷ । ( ଧନୁ ଅର୍ଥରେ ) ଯଥା—

> ବୀରମଦେ କେହି ବୀର କାର୍ମୁକ ଟଙ୍କାରେ,
> କେ ଅବା ଅଟ୍ଟାଟ ହସି ଭୀଷଣ ହୁଙ୍କାରେ । କ. କ.

କାର୍ଯ୍ୟ, ବି. ନ. (କୃ-ଯ) କର୍ମ, କାମ; ହେତୁ; ଫଳ ।

କାର୍ଯ୍ୟକାଳ, ବି. ପୁଂ. (କାର୍ଯ୍ୟ-କାଳ) କାର୍ଯ୍ୟ କରିବା ସମୟ ।

କାର୍ଯ୍ୟକୁଶଳ, ବି. (କାର୍ଯ୍ୟ-କୁଶଳ) କାର୍ଯ୍ୟଦକ୍ଷ, କର୍ମଠ, କାର୍ଯ୍ୟରେ ପଟୁ ।

କାର୍ଯ୍ୟକ୍ଷମ, ବି. (କାର୍ଯ୍ୟ-କ୍ଷମ) କାର୍ଯ୍ୟ ନିର୍ବାହ କରିବାରେ ସମର୍ଥ ।

କାର୍ଯ୍ୟନିର୍ବାହ, ବି. ପୁଂ. (କାର୍ଯ୍ୟ-ନିର୍ବାହ) କାର୍ଯ୍ୟ ନିଷ୍ପତ୍ତି, କର୍ମ ନିର୍ବାହ ।

କାର୍ଯ୍ୟପୃଷ୍ଠ, ବି. ( କାର୍ଯ୍ୟ-ପୃଷ୍ଠ-ଅ ) ନିର୍ଲକ୍ଷ, ଉନ୍ମତ୍ତ, ଅନର୍ଥକର ।

କାର୍ଯ୍ୟବଶ, ବି. ପୁଂ. (କାର୍ଯ୍ୟ-ବଶ) କର୍ମାନୁରୋଧ, କର୍ମବଶ । ବି. କାର୍ଯ୍ୟ ନିର୍ବାହ ଅନୁରୋଧରେ ବଦ୍ଧ ।

କାର୍ଯ୍ୟବଶତଃ, ଅ. ( କାର୍ଯ୍ୟ-ବଶ-ତସ୍ ) କାର୍ଯ୍ୟ ଅନୁରୋଧରେ, କର୍ମବଶତଃ ।

କାର୍ଯ୍ୟସମାଧାନ, ବି. ନ. ( କାର୍ଯ୍ୟ-ସମାଧାନ ) କାର୍ଯ୍ୟ ନିଷ୍ପାଦନ, କାର୍ଯ୍ୟ ସାଧନ ।

କାର୍ଯ୍ୟସମାଧାୟକ, ବି. (କାର୍ଯ୍ୟ-ସମ୍-ଆ-ଧା-ଇ-ଅକ) ଯେ କାର୍ଯ୍ୟ ସମାଧାନ କରେ ।

କାର୍ଯ୍ୟସାଧକ, ବି. ( କାର୍ଯ୍ୟ-ସାଧ୍-ଅକ ) ଯେ କାର୍ଯ୍ୟ ସାଧନ କରେ ।

କାର୍ଯ୍ୟସିଦ୍ଧି, ବି. ସ୍ତ୍ରୀ. (କାର୍ଯ୍ୟ-ସିଦ୍ଧି) ଅଭୀଷ୍ଟ ସିଦ୍ଧି ।

କାର୍ଯ୍ୟାଧିପ, ବି. (କାର୍ଯ୍ୟ-ଅଧିପ) କାର୍ଯ୍ୟର ଅଧ୍ୟକ୍ଷ, କର୍ମାଧ୍ୟକ୍ଷ ।

କାର୍ଯ୍ୟାନ୍ୱିତ, ବି. (କାର୍ଯ୍ୟ-ଅନ୍ୱିତ) କର୍ମଯୁକ୍ତ, କର୍ମବିଶିଷ୍ଟ ।

କାର୍ଯ୍ୟାନୁରୋଧ, ବି. ପୁଂ. (କାର୍ଯ୍ୟ-ଅନୁରୋଧ) କର୍ମର ଅପେକ୍ଷାକନ, କର୍ମର ଉଦ୍ୟୋଗ ।

କାର୍ଯ୍ୟାନ୍ତର, ବି. ନ. ( କାର୍ଯ୍ୟ-ଅନ୍ତର ) ଅନ୍ୟ କାର୍ଯ୍ୟ, କର୍ମାନ୍ତର ।

କାର୍ଯ୍ୟାରମ୍ଭ, ବି. ପୁଂ. (କାର୍ଯ୍ୟ-ଆରମ୍ଭ) କର୍ମାରମ୍ଭ, କାର୍ଯ୍ୟର ପ୍ରଥମ ଅନୁଷ୍ଠାନ ।

କାର୍ଯ୍ୟୋଦ୍ଧାର, ବି.ପୁଂ. (କାର୍ଯ୍ୟ-ଉଦ୍ଧାର) କାର୍ଯ୍ୟ ସାଧନ କରିବା ।

କାର୍ଶ୍ୟ, ବି. ନ. (କୃଶ-ଯ) କୃଶତା, କ୍ଷୀଣତା । ପୁଂ. କାର୍ଶ୍ୟ; ସାଳବୃକ୍ଷ ।

କାର୍ଷାପଣ, ବି. ପୁଂ. ନ. (କର୍ଷ-ଆପଣ) ୧୬ ପଣ, ଏକ କାହାଣ ।

କାର୍ଷିକ, ବି.ପୁଂ. (କର୍ଷ-ଇକ) ବୋଉ ୪,ପାଞ୍ଚଗଣ୍ଡା; ଏକତୋଳା; କୃଷକ ।

କାର୍ଷ୍ଣ, ବି. (କୃଷ୍ଣ-ଅ) କୃଷ୍ଣ ସମ୍ବନ୍ଧୀୟ । ବି. ପୁଂ. କୃଷ୍ଣସାର ମୃଗ ।

କାଲ, ବି. (କହ୍ଲଶବ୍ଦଜ) ବଧିର ।

କାଳ, ବି. ପୁଂ. ( କଲ୍-ଅ ) ସମୟ; ଅବସର; ଯମ; ମୃତ୍ୟୁ; ଶନି; କୋକିଳ । ବି. କୃଷ୍ଣବର୍ଣ୍ଣ ।

କାଳକ, ବି. ପୁଂ. ( କଲ୍-ଅକ ) କଳାଜାଇ-ମଦା; ସର୍ପବିଶେଷ, ଧଣ୍ଡ ସାପ । ନ. ଯକୃତ୍ ରୋଗ ।

କାଳକଞ୍ଜ, ବି. ନ. ନୀଳପଦ୍ମ, ଦାନବବିଶେଷ ।

କାଳକଣ୍ଠକ, } ବି. ପୁଂ. (କାଳ-କଣ୍ଠକ , କଣ୍ଠ)
କାଳକଣ୍ଠ, } ଶିବ; ମୟୂର; ଖଞ୍ଜନ; ଡାହୁକ । (ଡାହୁକ ଅର୍ଥରେ) ଯଥା—

> କାଳକଣ୍ଠକ ଘୋର ବଢ଼ିଲା କାମ ଉପର ସେ । ଭ. କ.

କାଳକୁଣ୍ଡ, ବି. ପୁଂ. (କାଳ-କୁଣ୍ଡ) ଯମ ।

କାଳକୂଟ, ବି. ପୁଂ. ନ. (କାଳ-କୂଟ୍-ଅ) ଗରଳ, ସ୍ଥାବର ବିଷବିଶେଷ । ଯଥା—

କାମକାଳକୂଟ କାଳିମା ରୂପୁ ଯୁଗଳ ଧରେ ।

କାଳକୃତ୍, ବି. ପୁଂ. (କାଳ-କୃତ୍) ସୂର୍ଯ୍ୟ ।

କାଳକୃତ, ବିଂ. (କାଳ-କୃତ) କାଳରେ ଯାହା ଘଟଇ ।

କାଳକେୟ, ବି. ପୁଂ. ( କାଳକା-ଏୟ ) ଅସୁରବିଶେଷ । ଯଥା—

ଠାବେ ଠାବେ ପଡ଼ିଅଛି ସମର-ଭଇରବ,
ସଶସ୍ତ୍ର କାଳକେୟ କରିବାର ହତ ।

କାଳଖଣ୍ଡ, ବି. ନ. (କାଳ-ଖଣ୍ଡ) ଯକୃତ୍ ।

କାଳଗ୍ରନ୍ଥି, ବି. ପୁଂ. (କାଳ-ଗ୍ରନ୍ଥି) ବତ୍ସର ।

କାଳଗ୍ରାସ, ବି. ପୁଂ. (କାଳ-ଗ୍ରାସ) ମୃତ୍ୟୁ ।

କାଳଚକ୍ର, ବି. ନ. ( କାଳ-ଚକ୍ର ) ଚକ୍ରବତ୍ ଭ୍ରମଣଶୀଳ କାଳ ।

କାଳଚିହ୍ନ, ବି. ନ. (କାଳ-ଚିହ୍ନ) ମୃତ୍ୟୁର ଚିହ୍ନ, ମୃତ୍ୟୁଲକ୍ଷଣ ।

କାଳଜ୍ଞ, ବିଂ. (କାଳ-ଜ୍ଞ) ଯେ ସମୟ ବୁଝି କାର୍ଯ୍ୟ କରେ, ଅବସରଜ୍ଞ । ବି. ପୁଂ. କୁକ୍କୁଟ ।

କାଳଜ୍ଞାନ, ବି. ନ. (କାଳ-ଜ୍ଞା-ଅନ) ଜ୍ୟୋତିଃଶାସ୍ତ୍ର, ଯୋଗ୍ୟ ସମୟ ଜ୍ଞାନ ।

କାଳଞ୍ଜର, ବି.ପୁଂ.(କାଳ-ଜର) ଶିବ, ମୃତ୍ୟୁଞ୍ଜୟ; ପର୍ବତବିଶେଷ; ଯୋଗିଚକ୍ର; ଦେଶବିଶେଷ, କାଲିଞ୍ଜର ।

କାଳଞ୍ଜରୀ, ବି. ସ୍ତ୍ରୀ. ( କାଳ-ଜର-ଈ ) ଚଣ୍ଡୀ, ଦୁର୍ଗା ।

କାଳତ୍ରୟ, ବି. ନ. ( କାଳ-ତ୍ରୟ ) ତ୍ରିକାଳ; ବର୍ତ୍ତମାନ, ଅତୀତ, ଭବିଷ୍ୟତ୍ ଏହି ତିନି କାଳ ।

କାଳଦଣ୍ଡ, ବି. ପୁଂ କାଳପ୍ରାପ୍ତ ଦଣ୍ଡ ; ଜ୍ୟୋତିଷୋକ୍ତ ବାରାଦି ଯୋଗବିଶେଷ; ଯମର ଦଣ୍ଡ ।

କାଳଧର୍ମ, ବି. ପୁଂ. (କାଳ-ଧର୍ମ) ମୃତ୍ୟୁ; କାଳର ଧର୍ମ; ସମୟର ସ୍ୱଭାବ । ଯଥା—ବର୍ଷାକାଳରେ ବୃଷ୍ଟି, ଗ୍ରୀଷ୍ମକାଳରେ ଗ୍ରୀଷ୍ମ ଇତ୍ୟାଦି ।

କାଳନିର୍ଯ୍ୟାସ, ବି. ପୁଂ. (କାଳ-ନିର୍ଯ୍ୟାସ) ଗୁଗ୍ଗୁଳ ।

କାଳନେମି, ବି. ପୁଂ. ରାକ୍ଷସବିଶେଷ, ହିରଣ୍ୟକଶିପୁର ପୁତ୍ର, ରାବଣର ମାତୁଳ ।

କାଳପର୍ଣ୍ଣ, ବି. ପୁଂ. ଟଗରଫୁଲର ବୃକ୍ଷ ।

କାଳପୁରୁଷ, ବି. ପୁଂ. (କାଳ-ପୁରୁଷ) ପୁରୁଷାକୃତି ନକ୍ଷତ୍ରସମୂହ; ଯମର ଭୃତ୍ୟ, କଥିତ ଅଛି ଯେ ଏ ଦେବତାମାନଙ୍କ ଅଜ୍ଞାରେ ରାମଚନ୍ଦ୍ରଙ୍କ ସଭାକୁ ଆସି ତାହାଙ୍କ ସହିତ କଥୋପକଥନରେ ପ୍ରବୃତ୍ତ ହେଲେ । ସେହି ସମୟରେ ଲକ୍ଷ୍ମଣ ସେହିଠାରେ ଉପସ୍ଥିତ ହୁଅନ୍ତେ ରାମଙ୍କ ପ୍ରତିଜ୍ଞାନୁସାରେ ସେ ରାମଙ୍କ କର୍ତ୍ତୃକ ବର୍ଜିତ ହୋଇଥିଲେ ।

କାଳପୃଷ୍ଠ, ବି. ପୁଂ. ( କାଳ-ପୃଷ୍ଠ ) କଙ୍କପକ୍ଷୀ; ମୃଗବିଶେଷ । ନ. କର୍ଣ୍ଣଙ୍କର ଧନୁ ।

କାଳଭୈରବ, ବି. ପୁଂ. ( କାଳ-ଭୈରବ ) ଶିବାଂଶଜାତ ଭୈରବବିଶେଷ ।

କାଳମାନ, ବି. ପୁଂ. ( କାଳ-ମାନ ) କାଳର ପରିମାଣ; କୃଷ୍ଣ ତୁଳସୀ ।

କାଳଯାପନ, ବି. ନ. ( କାଳ-ଯାପନ ) କାଳ ଅତିବାହନ, କାଳକ୍ଷେପଣ, ଧନପାତ କରିବା; ଲୋକଯାତ୍ରା ନିର୍ବାହ କରିବା ।

କାଳରାତ୍ରି, ବି. ସ୍ତ୍ରୀ. (କାଳ-ରାତ୍ରି) ମହାରାତ୍ରି, କଲ୍ପାନ୍ତରାତ୍ରି; ଶକ୍ତିବିଶେଷ ।

କାଳରୁଦ୍ର, ବି. ପୁଂ. (କାଳରୂପ-ରୁଦ୍ର) କାଳାଗ୍ନିସ୍ୱରୂପ ରୁଦ୍ରଦେବ ।

କାଳବେଳା, ବି. ସ୍ତ୍ରୀ. ( କାଳ-ବେଳା ) ଅଶୁଭ ସମୟବିଶେଷ, ଏହି ସମୟରେ କୌଣସି ସ୍ଥାନକୁ ଯିବା କିମ୍ବା କୌଣସି କାର୍ଯ୍ୟ କରିବା ନିଷେଧ ।

କାଳଶୁଦ୍ଧି, ବି. ସ୍ତ୍ରୀ. (କାଳ-ଶୁଦ୍ଧି) ସମୟର ଶୁଦ୍ଧି ।

କାଳଶେୟ, କାଳସେୟ, ବି. ନ. ( କଳଶୀ, କଳସୀ-ଏୟ) ଘୋଳଦହି ।

କାଳସର୍ପ, ବି. ପୁଂ. (କାଳ-ସର୍ପ) ବିଷଧର କୃଷ୍ଣବର୍ଣ୍ଣ ସର୍ପବିଶେଷ ।

କାଳସାର, ବି. ପୁଂ. ( କାଳ-ସାର ) କୃଷ୍ଣବର୍ଣ୍ଣ ହରିଣବିଶେଷ, କୃଷ୍ଣସାର । ନ. ପୀତଚନ୍ଦନ ।

କାଳସୂତ୍ର, ବି. ନ. (କାଳ-ସୂତ୍ର) ନରକବିଶେଷ ।

କାଳସ୍କନ୍ଧ, ବି. ପୁଂ. (କାଳ-ସ୍କନ୍ଧ) ତମାଳବୃକ୍ଷ, ତିନ୍ଦୁକ ବୃକ୍ଷ; ଉଦୁମ୍ବର ।

କାଳାଗୁରୁ, ବି. ନ. ( କାଳ-ଅଗୁରୁ ) ସୁଗନ୍ଧ କାଷ୍ଠବିଶେଷ, କୃଷ୍ଣଚନ୍ଦନ ।

କାଳାଗ୍ନି, ବି. ପୁଂ (କାଳ-ଅଗ୍ନି) ପ୍ରଳୟକାଳର ଅଗ୍ନି; ପଞ୍ଚମୁଖ ରୁଦ୍ରାକ୍ଷ ।

କାଳାନୁନାଦୀ, ବି. ପୁଂ. ( କାଳ-ଅନୁନାଦିନ୍ ) ଭ୍ରମରଚଟକ; ଚାତକପକ୍ଷୀ ।

କାଳାନୁଭବକତା, ବି. ସ୍ତ୍ରୀ ( Faculty of time ) ଯେଉଁ ବୃତ୍ତିଦ୍ୱାରା କାଳର ଅନୁଭବ ହୁଏ ।

କାଳାନୁସାରୀ, ବି. ପୁଂ. ( କାଳ-ଅନୁସାରିନ୍ ) ଶୈଳେୟ, ଗନ୍ଧଦ୍ରବ୍ୟବିଶେଷ; କୃଷ୍ଣଚନ୍ଦନ; ଶିଶୁଗଛ; ଟଗର ।

କାଳାନ୍ତକ, ବି. ପୁଂ. (କାଳ-ଅନ୍ତକ) ଯମ, ଯେ କାଳର ଅନ୍ତ କରଇ ।

କାଳାନ୍ତର, ବି. ନ. ( କାଳ-ଅନ୍ତର ) ଅନ୍ୟ କାଳ, ସମୟାନ୍ତର, ଅନ୍ୟ ସମୟ ।

କାଳାପ, ବି. ପୁଂ. ( କଳାପ-ଅ ) ସର୍ପର ଫଣା । ବିଂ. କଳାପ ବ୍ୟାକରଣବେତ୍ତା ।

କାଳାଶୁଦ୍ଧି, ବି. ସ୍ତ୍ରୀ. ( କାଳ-ଅଶୁଦ୍ଧି ) ବ୍ରତ ବିବାହାଦି କର୍ମଯୋଗ୍ୟ କାଳର ଶୁଦ୍ଧି ନ ଥିବା, କାଳଶୁଦ୍ଧି ନ ଥିବା ।

କାଳାଶୌଚ, ବି. ନ. (କାଳ-ଅଶୌଚ) ଶୁଭ-କର୍ମବ୍ୟାଘାତକ ଅଶୌଚ କାଳ ।

କାଳି, କାଳୀ, ବି. ( କାଳ ଶବ୍ଦଜ ) ଲିଖନର ଉପାଦାନବିଶେଷ, ମସୀ । ଯଥା—

> ଅଣି କାଗଜକୁ ନବକାଳୀ, ଅନୁସ୍ୱରୁଁ ନ ଲେଖିଲ କାଳୀ ।
> ସ. ବ.

(ଦେଶଜ) କୌଣସି ପଦାର୍ଥ କ୍ରୟ କରି ନଗଦ ମୂଲ୍ୟ ନ ଦେବା ।

କାଳିଆ, ବିଂ. (କାଳ ଶବ୍ଦଜ) କୃଷ୍ଣବର୍ଣ୍ଣବିଶିଷ୍ଟ ।

କାଳିକ, ବି. ପୁଂ. (କାଳ-ଇକ) ବକ । ନ. କୃଷ୍ଣ-ଚନ୍ଦନ । ବିଂ. ସାମୟିକ, କାଳକୃତ ।

କାଳିକା, ବି. ସ୍ତ୍ରୀ. (କାଳ-ଇକ-ଆ) ମେଘମାଳା; କୁଜ୍ଝଟିକା, ଚଣ୍ଡିକା; କୃଷ୍ଣବର୍ଣ୍ଣ; ରୋମାବଳୀ; ସ୍ତ୍ରୀ କାକ; ଶ୍ୟାମା ପକ୍ଷୀ; ଶୃଗାଳୀ; ମସୀ; ବିଛୁଅତି; ପୋଟଳ ଗଛର ଶାଖା; ସୁରା; କଳଙ୍କ । (ମେଘ ଅର୍ଥରେ) ଯଥା—

> ଦେଖି ନବ କାଳିକା ବିକାଳିକାମାଳିକା
> ଅଳି କାଳିକାକାନ୍ତ ସ୍ମର । ଲ. ବ.

କାଳିଙ୍ଗ, ବି. ପୁଂ. (କଳିଙ୍ଗ-ଅ) କଳିଙ୍ଗ ଦେଶର ରାଜା ବା ତଦ୍ଦେଶୀୟ ଅଧିବାସୀ । (କୁ-ଲିଙ୍ଗ) ହସ୍ତୀ; ସର୍ପ; ଲୌହବିଶେଷ; ତରଭୁଜ ।

କାଳିଞ୍ଜର, ଅଲ୍ଲାହାବାଦ ପ୍ରଦେଶସ୍ଥ ଏକ ପର୍ବତ ଓ ତଦୁପରିସ୍ଥ ନଗରୀ; ଏହି ନଗରରେ କାଳ-ଭୈରବ ନାମରେ ଏକ ଦେବମୂର୍ତ୍ତି ଅଛି ।

କାଳିଦାସ, ବି. ପୁଂ. ( କାଳୀ-ଦାସ ) ବିକ୍ରମାଦିତ୍ୟଙ୍କ ସଭାର ପ୍ରଧାନ ପଣ୍ଡିତ; ରଘୁ-ବଂଶ, ଶକୁନ୍ତଳା ଏବଂ କୁମାରସମ୍ଭବର ପ୍ରଣେତା ।

କାଳିନ୍ଦୀ, ବି. ସ୍ତ୍ରୀ. (କାଳିନ୍ଦ-ଅ-ଈ) ଯମୁନାନଦୀ; କୃଷ୍ଣଙ୍କ ପତ୍ନୀ; ଅସିତ ରାଜାର ପତ୍ନୀ । (ଯମୁନା ନଦୀ ଅର୍ଥରେ) ଯଥା—

> କାଳିନ୍ଦୀ-ଶୀତଳ-ପୁଷ୍ପ-ପରିମଳ ଦେନ ବହେ ମନ୍ଦ ପବନ ।
> ର. ଢ.

କାଳିନ୍ଦୀକର୍ଷଣ, କାଳିନ୍ଦୀଭେଦନ, ବି. ପୁଂ. ( କାଳିନ୍ଦୀ-କର୍ଷଣ, ଭେଦନ ) ବଳରାମ, ଏ ଲଙ୍ଗଳଦ୍ୱାରା ଯମୁନାନଦୀର ଗତିରୋଧ କରି-ଥିଲେ ।

କାଳିମା, ବିଂ. ପୁଂ. ( କାଳ-ଇମନ୍ ) କୃଷ୍ଣତା, ମଳିନତା । ଯଥା—

> କାମକାଳକୂଟ କାଳିମା ରୂପସ୍ୱଗଲ ଧରେ । ବ. ମି.

କାଳିୟ, ବି. ପୁଂ. (କାଳ-ଈୟ) ସର୍ପବିଶେଷ ।

କାଳିଷ୍ଠ, ବିଂ. (କାଳ-ଇଷ୍ଠ) ଅତ୍ୟନ୍ତ କଳା ।

କାଳୀ, ବ. ସ୍ତ୍ରୀ. ( କାଳ-ଈ ) ଦେବୀବିଶେଷ; ଶାନ୍ତନୁ ଭାର୍ଯ୍ୟା; ନବ ମେଘଶ୍ରେଣୀ; କୃଷ୍ଣପକ୍ଷ ରାତ୍ରି; ଅଗ୍ନି; କଦ୍ରୁବିଶେଷ; ଲେଖିବାର ଉପାଦାନବିଶେଷ, ମସୀ; ଅପଯଶଃ; (ଦେଶଜ) ଉଧାର, ନଗଦ ମୂଲ୍ୟ ନ ଦେଇ ପଦାର୍ଥ କିଣିବା; ଘୋଡ଼ବା, ଶିକାର ସମୟରେ ଜନ୍ତୁମାନଙ୍କୁ ତଡ଼ିବା । ଯଥା—

ଯେ ଗାନ୍ଧି ଜୀବ ସଦ୍ଦରେ କାଳୀ,
ଦେଇ କୁହାଃ ଟମକ ଢାଳ ।
ପିନ୍ଧିଲେ ସାଦ କ୍ଷନ୍ତ ସାବଲୀ,
ବନ୍ଧଲେ ଗର ସେ । ସ. ବ.

କାଳୀଗୀ, ବ. ସ୍ତ୍ରୀ. ଯମର ଭଗ୍ନିର ସ୍ଥାନ ।

କାଳୀତନୟ, ବ. ପୁଂ. (କାଳୀ-ତନୟ) ମହିଷ, କାଳୀଦେବୀଙ୍କର ପ୍ରିୟ ବୋଲି ଏହାର ନାମ କାଳୀତନୟ ହୋଇଅଛି ।

କାଳୀନ, ବ. ( କାଳ-ଈନ ) ସମୟରେ ଯାହା ଘଟଇ, ଏହି ଶବ୍ଦର ସ୍ୱତନ୍ତ୍ର ପ୍ରୟୋଗ ହୁଅଇ ନାହିଁ ।

କାଳୀୟ, ବ. ନ. (କାଳ-ଈୟ) କୃଷ୍ଣଚନ୍ଦନ ।

କାଳୀୟକ, ବ. ନ. ( କାଳ-ଈୟକ ) କୁଙ୍କୁମ । ପୁଂ. ପାବତୀୟ ଗନ୍ଧଦ୍ରବ୍ୟବିଶେଷ, ଦାରୁହରିଦ୍ରା; ଶୈଳଜ ।

କାଲୁଣୀ, ବ. ସ୍ତ୍ରୀ. (କାଲ-ଉଣୀ) ଛବଣେନ୍ଦ୍ରିୟସ୍ଥାନା ସ୍ତ୍ରୀ ।

କାଳେ, ଅଂ. ସମ୍ଭାବନା ବା ବିକଳ୍ପାର୍ଥସୂଚକ । ଯଥା—କାଳେ ସେ ନ ଆସିବେ ।
କ୍ରି. ବ. ସମୟରେ । ଯଥା—

କାଳେ ଭର୍ମବୃଷ ଫଳେ ଶାସ୍ତ୍ରରେ ଏ ଲେଖା । କ. ବ.

କାଳେୟ, ବ. ନ. (କାଳ-ଏୟ) ଦୈତ୍ୟବିଶେଷ; ଯକୃତ୍; କୃଷ୍ଣଚନ୍ଦନ । ବଂ. କାଳସମ୍ବନ୍ଧୀୟ ।

କାଳେଶ, ବ. ପୁଂ. (କାଳ-ଈଶ) ସୂର୍ଯ୍ୟ; ଶିବ; କାଳେଶ୍ୱର ।

କାଲ୍ପନିକ, ବଂ. ( କଳ୍ପନା-ଇକ ) କଳ୍ପିତ, ଆରୋପିତ, ଅମୂଳକ, ଅସମ୍ଭବ ।

କାଳ୍ୟା, ବ. ସ୍ତ୍ରୀ. (କାଳ-ଯ-ଆ) ଯେ ଗାଭୀର ଗର୍ଭ ଗ୍ରହଣ କାଳ ଉପସ୍ଥିତ ହୋଇଅଛି ।

କାବଚିକ, ବଂ. (କବଚ-ଇକ) କବଚଧାରୀ । ବ. ନ. କବଚଧାରିସମୂହ ।

କାବା, ବଂ. (ଦେଶଜ) ବୋକା, କିଂକର୍ତ୍ତବ୍ୟବିମୂଢ଼ ।

କାବାର, ବ. ନ. (କ-ଅ-ବୃ-ଅ) ଶୈବାଳ । ରୀ, ସ୍ତ୍ରୀ. ଛତ୍ର ।

କାବୁ, ବଂ. (ଯାବନିକ) ବଶୀଭୂତ, ଆୟତ୍ତ ।

କାବୁତ, ବଂ. (ଦେଶଜ) ଆୟତ୍ତ ।

କାବୃକ, ବ.ପୁଂ. (କ-ଅ-ବୃ-କକ୍) ଚକ୍ରବାକ; କୁକ୍କୁଟ ।

କାବେର, ବ. ନ. ( କବ୍-ଏର, ଅ=ଆ ) କୁଙ୍କୁମ ।

କାବେରୀ, ବ. ସ୍ତ୍ରୀ. (କାବେର-ଈ) ଦ୍ରାବିଡ଼ଦେଶସ୍ଥ ନଦୀବିଶେଷ; ( କୁ-ବେର-ଈ ) ବେଶ୍ୟା; ହରିଦ୍ରା ।

କାବ୍ୟ, ବ. ପୁଂ. (କବି-ଯ) ଶୁକ୍ରାଚାର୍ଯ୍ୟ । ନ. ରସଯୁକ୍ତ ବାକ୍ୟ, କବିତା । ବ୍ୟା,ସ୍ତ୍ରୀ. ବୁଦ୍ଧି; ପୂତନା । ବଂ. କବିସମ୍ବନ୍ଧୀୟ ।

କାବ୍ୟତାର, ବ. ପୁଂ. ଶୁକ୍ରନକ୍ଷତ୍ର, ଶୁକ୍ର ତାରା ।

କାବ୍ୟପ୍ରକାଶ, ବ. ପୁଂ. ( କାବ୍ୟ-ପ୍ରକାଶ ) ମମ୍ମଟଭଟ୍ଟ ପ୍ରଣୀତ ଅଲଙ୍କାରଗ୍ରନ୍ଥବିଶେଷ ।

କାବ୍ୟଲିଙ୍ଗ, ବ. ନ. ଅର୍ଥାଲଙ୍କାରବିଶେଷ, ଯେଉଁ ସ୍ଥଳରେ ବାକ୍ୟାର୍ଥ ଅଥବା ପଦାର୍ଥ ଅପରାର୍ଥର ହେତୁସ୍ୱରୂପରେ ପ୍ରତିପାଦିତ ହୁଏ ।

କାଶ, କାସ, ବ. ପୁଂ. ନ. (କାଶ୍=ଦୀପ୍ତି ପାଇବା-ଅ, କାସ୍=ଗମନ କରିବା-ଅ) କାଶରୋଗ; କାଇଁଶନାମକ ତୃଣବିଶେଷ । ଯଥା—

କାଶତଣୀ ଫୁଲ ଚଳନ୍ତ ବାଦ୍ୟେ । ର. ଚ.

ଗଡ଼; ମୂଷିକ । ବଂ. ପ୍ରକାଶମାନ, ଶୋଭମାନ

କାଶନ୍ଦ, ବ. (କାଶମର୍ଦ୍ଦ ଶବ୍ଦଜ) ଆମ୍ବର ଆଚାରବିଶେଷ ।

କାଶି, କାଶୀ, କାଶିକା, ବ. ସ୍ତ୍ରୀ. (କାଶ=ଦୀପ୍ତି ପାଇବା-ଇ, ଈ, ଇକ-ଆ) ବାରାଣସୀ ।

କାଶିରାଜ, କାଶୀରାଜ, ବ. ପୁଂ. (କାଶି-ରାଜା) ନୃପବିଶେଷ; ଧନ୍ୱନ୍ତରି ।

କାଶୀନାଥ, ବ. ପୁଂ. (କାଶୀ-ନାଥ) ଶିବ ।

କାଶୀଶ, ବ. ପୁଂ. (କାଶୀ-ଈଶ) ଶିବ; କାଶୀର ରାଜାମାନେ । ନ. ହିରାକସ ।

କାଶ୍ମୀର, ବ. ପୁଂ. (କାଶ୍-ମୀର, କମ୍ୱା କାଶ୍ମୀର-ଅ ) ଦେଶବିଶେଷ । ନ. ପଦ୍ମର ମୂଳ; କୁଙ୍କୁମ; ଟାଙ୍ଗଣା । ବି. କାଶ୍ମୀର ଦେଶଜାତ ବସ୍ତୁ; ତଦ୍ଦେଶୀୟ ରାଜା ବା ଅଧିବାସୀ । ରୀ, ସ୍ତ୍ରୀ. ଗମ୍ଭାରିବୃକ୍ଷ । ରା, ସ୍ତ୍ରୀ. ଅତିବିଷା; କପିଳ ଦ୍ରାକ୍ଷା ।

କାଶ୍ମୀରଜ, କାଶ୍ମୀରଜନ୍ମା, ବ. ନ. ( କାଶ୍ମୀର-ଜ, ଜନ୍ମନ୍ ) କୁଙ୍କୁମ; ପଦ୍ମମୂଳ ।

କାଶ୍ୟପ, ବ. ପୁଂ. ( କାଶ୍ୟପ-ଅ ) ମୁନିବିଶେଷ; ଗୋତ୍ରବିଶେଷ; ମୃଗବିଶେଷ; ଅରୁଣ । ନ. ମାଂସ । ବି. କଶ୍ୟପସମ୍ବନ୍ଧୀୟ ।

କାଶ୍ୟପି, ବ. ପୁଂ. (କଶ୍ୟପ-ଇ) ଅରୁଣ; ଗରୁଡ଼ । ପୀ, ସ୍ତ୍ରୀ. ପୃଥିବୀ, ପରଶୁରାମ ପୃଥିବୀକୁ ଏକ ବିଂଶତି ବାର ନିଃକ୍ଷତ୍ରିୟା କରି କଶ୍ୟପଙ୍କୁ ଦାନ କରିଥିଲେ ।

କାଶ୍ୟପେୟ, ବ. ପୁଂ. ( କଶ୍ୟପ-ଏୟ ) ସୂର୍ଯ୍ୟ; ଗରୁଡ଼ ।

କାଷ, ବ. ପୁଂ. ( କଷ୍-ଅ ) ଋଷିବିଶେଷ; କଷ୍ଟି-ପଥର ।

କାଷାୟ, ବି. ( କଷାୟ-ଅ ) ଈଷତ୍ପୀତ ରକ୍ତବର୍ଣ୍ଣ ରଞ୍ଜିତ ।

କାଷ୍ଠ, ବ. ନ. (କାଶ୍-ଥ) କାଠ ।

କାଷ୍ଠକ, ବ. ନ. ( କାଷ୍ଠ-କ ) ଅଗୁରୁ, ସୁଗନ୍ଧ ଦ୍ରବ୍ୟବିଶେଷ । ବି. କାଷ୍ଠଯୁକ୍ତ ।

କାଷ୍ଠକୀଟ, ବ. ପୁଂ. (କାଷ୍ଠ-କୀଟ) ଘୁଣପୋକ ।

କାଷ୍ଠକୁଟ, ବ. ପୁଂ. (କାଷ୍ଠ-କୁଟ୍-ଅ) କାଷ୍ଠକଠା ପକ୍ଷିବିଶେଷ ।

କାଷ୍ଠକୁଦ୍ଦାଳ, ବ. ପୁଂ. ( କାଷ୍ଠ-କୁଦ୍ଦାଳ ) ନୌକାଦିରୁ ଜଳ ବାହାର କରିବାର କାଷ୍ଠ-ନିର୍ମିତ ପାତ୍ର ।

କାଷ୍ଠତକ୍ଷ, କାଷ୍ଠତକ୍ଷକ, ବ. ପୁଂ. (କାଷ୍ଠ-ତକ୍ଷ-ଅକ) ସୂତ୍ରଧର, ବଢ଼େଇ ।

କାଷ୍ଠତନ୍ତୁ, ବ. ପୁଂ. (କାଷ୍ଠ-ତନ୍ତୁ) ଘୁଣ ।

କାଷ୍ଠଦାରୁ, ବ. ପୁଂ. (କାଷ୍ଠ-ଦାରୁ) ଦେବଦାରୁ ।

କାଷ୍ଠଫଳକ, ବ. ନ. କାଷ୍ଠନିର୍ମିତ ଫଳକ, ବୋର୍ଡ ପ୍ରଭୃତି ।

କାଷ୍ଠମଠୀ, ବ. ସ୍ତ୍ରୀ. (କାଷ୍ଠ-ମଠୀ) ଚିତା ।

କାଷ୍ଠମୟ, ବି. ( କାଷ୍ଠ-ମୟ ) କାଷ୍ଠନିର୍ମିତ; କାଷ୍ଠ ତୁଲ୍ୟ କଠିନ ହୃଦୟ, ନିର୍ଦ୍ଦୟ ।

କାଷ୍ଠମଞ୍ଚ, (Coffin) ବ. ପୁଂ. (କାଷ୍ଠ-ମଞ୍ଚ) ଶବ-ଯାନ, ଯେଉଁ ଗାଡ଼ି ବା ଖଟରେ ଶବ ନିଆଯାଏ ।

କାଷ୍ଠଲେଖକ, ବ. ପୁଂ. (କାଷ୍ଠ-ଲେଖକ) ଘୁଣ ।

କାଷ୍ଠା, ବ. ସ୍ତ୍ରୀ. (କାଷ୍ଠ-ଆ) ଦିକ୍; ସୀମା; ଦାରୁ-ହରିଦ୍ରା; ସ୍ଥିତି; ଉତ୍କର୍ଷ; କାଳପରିମାଣବିଶେଷ । (ଦିକ୍ ଅର୍ଥରେ) ଯଥା—

> ବଧାର ବଧାଗ ତଡାବହିନ୍ତ,
> କାଷ୍ଠାବନେ ଯୋଗେ ଉଠିଲ ଜଳ । ସ. ବ.

କାଷ୍ଠାମ୍ବୁବାହିନୀ, ବ. ସ୍ତ୍ରୀ. (କାଷ୍ଠ-ଅମ୍ବୁ-ବାହିନୀ) ଦ୍ରୋଣୀ, ଜଳସେଚନୀ ।

କାଷ୍ଠାସନ, ବ. ନ. (କାଷ୍ଠ-ଆସନ) କାଷ୍ଠନିର୍ମିତ ମଞ୍ଚା, ଚୌକି, ପିଢ଼ା ପ୍ରଭୃତି ।

କାଷ୍ଠିକା, ବ. ସ୍ତ୍ରୀ. (କାଷ୍ଠ-ଇକ-ଆ) କାଠି ।

କାଷ୍ଠୀଲା, ବ. ସ୍ତ୍ରୀ. (କୁ=ଈଷତ୍-ଅଷ୍ଠି=ହାଡ଼-ଲା-ଆ) କଦଳୀ ଗଛ ।

କାସମର୍ଦ୍ଦ, କାଶମର୍ଦ୍ଦ, ବ. ପୁଂ. ( କାସ-ମର୍ଦ୍ଦ ) ବୃକ୍ଷବିଶେଷ; ଅଗ୍ରବ, କାଶିନ୍ଦି ।

କାସାର, ବ. ପୁଂ. ( କ-ଆ-ସୃ-ଅ ) ସରୋବର, ପୁଷ୍କରିଣୀ, ମହାଜଳାଶୟ । ଯଥା—

> ବଲମ୍ବର ବ ମହା ପିପାସୀ ସହି,
> ବାରଫର୍ଷ କାସାର ଦେଖାଥି କାହିଁ ସେ । ବୈଦ.

କାପୀଶ, ବି. ନ. (କାସ୍-ଈଶ) ସ୍ପର୍ଗକାସ ।
କାହଣ, କାହାଣ, ବି. ( ପ୍ରା; କାର୍ଷାପଣ ଶବ୍ଦଜ ) ଷୋଳପଣ ।
କାହଳ, ବି. ପୁଂ.(କ=ମୁଖ=ମସ୍ତକ-ଆ-ହଲ୍-ଅ) ବଡ଼ଢାଲ; କୁକ୍କୁଟ; କୋଲାହଳ; ବୃଷର ଢକ୍କା; ଅବ୍ୟକ୍ତ ବାକ୍ୟ । ବିଂ. ଶୁଭ୍ର; ଶୁଷ୍କ; ଖଳ ।
କାହଳା, ବି. ସ୍ତ୍ରୀ. ବାଦ୍ୟଭାଣ୍ଡବିଶେଷ, ଏହାଦ୍ୱାରା ଯନ୍ତ୍ରକୁ ଶର ବା ତୂଣଧ୍ୱଜ ଦେଇ ବଜାଇବାକୁ ହୁଏ ।
କାହଳୀ, ବି. ସ୍ତ୍ରୀ. (କାହଳ-ଈ) ତରୁଣୀ; ଅପ୍ସରା-ବିଶେଷ ।
କାହାଣୀ, ବି. (ଦେଶଜ) କାଳ୍ପନିକ ଗଳ୍ପ ।
କାହାର, ବି. ସର୍ବନାମ. କେଉଁ ବ୍ୟକ୍ତି ବା ଜନ୍ତୁ ବା ପଦାର୍ଥର ।
କାହାଳ, ବି. (ପ୍ରା; କାହଳ ଶବ୍ଦଜ) ବାଦ୍ୟ ଯନ୍ତ୍ର-ବିଶେଷ । ଯଥା—

> କେ କାହାକୁ ବଢ ପଡର କାହାଳ
> ବଜାନ୍ତ ମହା ମନୋହରେ । ର. କ.

କାହାଳିଆ, ବିଂ. (କାହଳ ଶବ୍ଦଜ) କାହାଳ ବଜାଇବା ବ୍ୟକ୍ତି ।
କାହିଁକି, ଅଂ. କି ହେତୁ, କି ସକାଶ ।
କାହିଁଛି, ଅଂ. କେଉଁଠାରେ ( ପ୍ରଶ୍ନବାଚକ ) । ଯଥା—

> କାହିଁଛି ଲକ୍ଷେ ଲକ୍ଷଣା ଯେ ।

କାହୁଁ, ଅଂ. (ପ୍ରଶ୍ନବାଚକ) କେଉଁଠାରୁ ।
କି, ସର୍ବ. ( କିମ୍ ଶବ୍ଦଜ ) ପ୍ରଶ୍ନବୋଧକ ଶବ୍ଦ; ଆଶ୍ଚର୍ଯ୍ୟ ବା ବିସ୍ମୟାର୍ଥ ।
କିଂବକ୍ତବ୍ୟ, ବିଂ. (କିମ୍-ବକ୍ତବ୍ୟ) କଣ କହିବାକୁ ହେବ ବା କଣ କହିବା ଉଚିତ ।
କିମ୍ବଦନ୍ତ, } ବି. ସ୍ତ୍ରୀ. (କିମ୍ ବଦ୍-ଅନ୍ତ, ଅନ୍ତ-
କିମ୍ବଦନ୍ତୀ, } ଈ ) ଜନଶ୍ରୁତି, ଜନରବ; ଲୋକାପବାଦ ।
କିମ୍ବା, ଅଂ. (କିମ୍-ବା) ବା, ଅଥବା; ବିକଳ୍ପ ।
କିଂବୈଦ୍ୟ, ବି. ପୁଂ. ( କିମ୍-ବୈଦ୍ୟ ) କୁତ୍ସିତ ବୈଦ୍ୟ; ବୈଦ୍ୟଶାସ୍ତ୍ରରେ ଅନଭିଜ୍ଞ ବ୍ୟକ୍ତି ।
କିଂଶୁକ, ବି. ପୁଂ. (କିମ୍-ଶୁକ) ପଳାଶ ଗଛ । ନୀ. ତତ୍ପୁଷ୍ପ; ଶୁକ ତୁଣ୍ଡ ପରି ପୁଷ୍ପ ବୋଲି ଏହାର ପୁଷ୍ପ କଣ "ଶୁକପକ୍ଷୀ ?'' ଏହି ବିତର୍କ ହେତୁ ଏହାର ନାମ କିଂଶୁକ ହୋଇଅଛି ।
କିଅ, ବି. (ଦେଶଜ) କେତକ ।
କିଅପତ୍ରୀ, ବି. (ଦେଶଜ) ମସ୍ତକର ସ୍ୱର୍ଣ୍ଣାଳଙ୍କାର-ବିଶେଷ । ଯଥା—

> ଯୋଗି ଜନ ମନମୃଗ ବନ୍ଧନେ
> ବ କଲେ କିଅପତ୍ରୀ ବାନ୍ଧ ଯେ । ଲ. ବ.

କିଆଁ, ଅଂ. ( ପ୍ରା; କିମ୍ ଶବ୍ଦଜ ) କପାଁଇ, କାହିଁକି ।
କିଆରି, ବି. ( ପ୍ରା; କେଦାର ଶବ୍ଦଜ ) କ୍ଷେତ । ଯଥା—

> ବହୁପାଉଛି ବାରି ଭେଦ କିଆରି,
> ମର୍ଯ୍ୟାଦା ଲଙ୍ଘେ ଯଥା ସ୍ୱତନ୍ତ୍ର ନାରୀ । ଭୂ. ସ୍ତ.

କିଙ୍କର, ବି. ପୁଂ. (କିମ୍-କର) ଭୃତ୍ୟ । ଯଥା—

> ତହାଙ୍କ ଶାର୍ଦ୍ଦୂଳ ସଦା ଯାର ଅଜ୍ଞାବାହ କିଙ୍କର । ଉଷା ।

କିଙ୍କରୀ, କିଙ୍କରୀ, ବି. ସ୍ତ୍ରୀ. (କିମ୍-କର-ଆ, ଈ) ଦାସୀ । ଯଥା—

> ହେବ କିଙ୍କରୀ ଭାବ ବ ହେବ, ସଜନ ଗୋ । ବ. ଚ.

କିଂକର୍ତ୍ତବ୍ୟ, ବିଂ. (କିମ୍-କର୍ତ୍ତବ୍ୟ) କଣ କରିବାକୁ ହେବ ବା କଣ କରିବା ଉଚିତ ।
କିଂକର୍ତ୍ତବ୍ୟବିମୂଢ଼, ବିଂ. (କିମ୍-କର୍ତ୍ତବ୍ୟ-ବିମୂଢ଼) କର୍ତ୍ତବ୍ୟ ନିର୍ଣ୍ଣୟରେ ଅସମର୍ଥ ।
କିଙ୍କିଣି, କିଙ୍କିଣୀ, ବି. ସ୍ତ୍ରୀ. ( କିମ୍-କଣ୍-ଈ ) କ୍ଷୁଦ୍ର ଘଣ୍ଟିକା; ଘୁଙ୍ଗୁର; କଟିଭୂଷଣ । ଯଥା—

> କଟିତଟରେ କିଙ୍କିଣୀ, ବ ନାଦ ମଧୁର ଶୁଭେ ତା ବଣି ଗୋ,
> ବଳହୃରେ ମନ ନଏ ବଣି ସଜନ ଗୋ । ବ. ଚ.

କିଙ୍କିର, ବି. ପୁଂ. ( କିମ୍-କୃ-ଅ ) କୋକିଳ; ଭ୍ରମର; ଅଶ୍ୱ; କନ୍ଦର୍ପ । ନ. ଗଜକୁମ୍ଭ ।
କିଙ୍କିରା, ବି. ସ୍ତ୍ରୀ. (କିମ୍-କୃ-ଅ-ଆ) ରକ୍ତବର୍ଣ୍ଣ ।
କିଙ୍କିରାତ, ବି. ପୁଂ. ( କିଙ୍କିର-ଅତ) ରକ୍ତାଶୋକ ବୃକ୍ଷ; ଶୁକପକ୍ଷୀ; କନ୍ଦର୍ପ; କୋକିଳ ।

କଣ୍ଟୁ, ବଂ. (କଞ୍ଚିତ୍ ଶବ୍ଦଜ) କଥଞ୍ଚିତ୍, ଅଳ୍ପ ।

କଞ୍ଚ, ଅଂ. ( କମ୍-ଚ ) ଅଜ୍ଞାତ, ଅଜ୍ଞାତ କଣ୍ଟୁ; ସମ୍ଭବତଃ; ଅରମ୍ଭ; ସମ୍ଭାବନା; ସାକଲ୍ୟ ।

କଞ୍ଚନ, କଞ୍ଚିତ୍, ଅଂ. (କମ୍-ଚନ, ଚିତ୍) ଅଳ୍ପ, କଣ୍ଟୁ; କୌଣସି ।

କଞ୍ଚିଦୂନ, ବଂ. ( କଞ୍ଚିତ୍-ଊନ ) କଞ୍ଚିତ୍ ନ୍ୟୂନ, କଣ୍ଟୁ କମ ।

କଞ୍ଚୁଲକ, କଞ୍ଚୁଲୂକ, କଞ୍ଚୂଲକ, } ବ. ପୁଂ. ( କଂ-ଚଲ, ଚୂଲ-ଇକ, ଉକ) ମହୀଲତା, କଅଁପୋକ ।

କଞ୍ଜଲ, କଞ୍ଜଲ୍କ, ବ. ପୁଂ. (କଂ-ଜଲ୍-ଅ, କ) କେଶର, ଫୁଲର ପାଖୁଡ଼ା, ପୁଷ୍ପରେଣୁ; ନାଗକେଶରପୁଷ୍ପ ।

କଟି, ବ. ପୁଂ. (କଠ୍-ଇ) ଶୂକର ।

କଟିଭ, ବ. ପୁଂ (କଟି-ଭା-ଅ) ଉକୁଣି ।

କଟ୍ଟ, ବ. ନ. (କଠ୍-ତ) ଧାତୁମଳ; ତୈଳାଦିର କାଣ୍ଠି ।

କଟ୍ଟାଳ, ବ. ପୁଂ. (କଟ୍ଟ-ଅଲ୍-ଅ) ତାମ୍ରକଳସ ।

କଡମଡ଼, ବ. (ଅନୁକରଣ ଶବ୍ଦ) ଦନ୍ତର ଘର୍ଷଣ ଶବ୍ଦ, ଅବ୍ୟକ୍ତ ଧ୍ୱନି ।

କଣ, ବ. ପୁଂ. (କଣ୍-ଅ) ଘର୍ଷଣ ଚିହ୍ନ; ଶୁଷ୍କବ୍ରଣ; ବଣ୍ଡି; କାଷ୍ଠବିଶେଷ ।

କଣିବା, କ୍ରି. ବ. (କଣ୍-ଧାତୁଜ) କ୍ରୟ କରିବା, ଖରିଦ କରିବା ।

କଣିକଣି, ଅଂ. (ଦେଶଜ) ଅବ୍ୟକ୍ତ ଶବ୍ଦବିଶେଷ, କଙ୍କିଣୀ ପ୍ରଭୃତିର ଶବ୍ଦ ।

କଣିଖିଆ, ବଂ. (କଣ୍ ଧାତୁଜ) ଯେ ମୂଲ୍ୟ ଦେଇ ସବୁ ଦିନ କଣି ଖାଏ, ଯାହାର ଗୃହ ଇତ୍ୟାଦି ନାହିଁ ।

କତବ, ବଂ. (କ-ତବ) ଧୂର୍ତ୍ତ; ଜୁଆରି, ଦ୍ୟୂତକର; ମତ୍ତ; ବୈଦ୍ୟ । ବ. ପୁଂ. ଧୁସ୍ତୁର । ଯଥା—

ସୋଃ କତବ ମୂଳ ଚୋବ ଘୋର ନାଗର
କହିର ଭୂଲେ ତାହା ଦିଇଲୁ ଗୋ । ବ. ଚ.

କତା, ବ. ଜମିର ଏକଖଣ୍ଡ ।

କତାପ, ବ. ( ଯାବନିକ, କେତାବ୍ ଶବ୍ଦଜ ) ପୁସ୍ତକ, ବହି ।

କନ୍‌ଖାପ, ବ. (ଯାବନିକ) ଜରିଲୁଗା ।

କନାର୍, ବ. (ଯାବନିକ) କୂଳ, ଧାର, ପାର୍ଶ୍ୱ ।

କନ୍ତନୁ, ବ. ପୁଂ. ( କମ୍-ତନୁ ) ମାଙ୍କଡ଼ସା ।

କନୁ, ଅଂ. ( କମ୍-ତୁ ) ପୁନଃ, ଅଥଚ, ପ୍ରଥମୋକ୍ତ ବୈପରୀତ୍ୟ ବା ସଙ୍କୋଚସୂଚକ ଶବ୍ଦ ।

କନ୍ନର, ପୁଂ. } ବ. (କିଂ-ନର,ଈ) କମ୍ପୁରୁଷ,
କନ୍ନରୀ, ସ୍ତ୍ରୀ. } ଦେବଲୋକର ଗାୟକ, ଏମାନଙ୍କର ଅଶ୍ୱ ପରି ମୁଖ ଏବଂ ମନୁଷ୍ୟ ପରି ଶରୀର ବୋଲି ଏମାନଙ୍କର ନାମ କନ୍ନର ।

କନ୍ନରେଶ, ବ. ପୁଂ. (କନ୍ନର-ଈଶ) କୁବେର, ଯକ୍ଷରାଜ ।

କନ୍ନୁ, ଅଂ. ( କଂ-ନୁ ) ସଂଶୟସୂଚକ ଶବ୍ଦ; ପ୍ରଶ୍ନ; ବିତର୍କ; ସାଦୃଶ୍ୟ; ସ୍ଥାନ ।

କପରି, କ୍ରି. ବଂ. କି ରକମ ।

କପାଁ, ଅଂ, କି ସକାଶ ।

କମ୍, କିଂ, ଅଂ. (କୁ କମ୍ବା କୈ-ଇମ୍ ) କୁତ୍ସିତ; ବିତର୍କ; ପ୍ରଶ୍ନ; ବିକଳ୍ପ; ନିଷେଧ । ସର୍ବଂ. କେ, କି ।

କମର୍ଥଂ, ଅଂ. ( କିଂ-ଅର୍ଥଂ ) କି କାରଣ ।

କମପି, ଅଂ. (କମ୍-ଅପି) ଅନିଶ୍ଚିତ; ଅକାରଣ; ଅନିର୍ବଚନୀୟ ।

କମିଆ, ବ. (ଯାବନିକ) ମନ୍ତ୍ର ।

କମୁ, ଅଂ. ( କମ୍-ଉ ) ସମ୍ଭାବନା; ବିତର୍କ; ବିକଳ୍ପ ।

କମୁତ, ଅଂ. (କମ୍-ଉତ) ପ୍ରଶ୍ନ; ବିତର୍କ; ବିକଳ୍ପ; ଅତିଶୟ; ଉତ୍‌ପ୍ରେକ୍ଷା ।

କମ୍ପଚ, ବଂ. (କମ୍-ପଚ-ଅ) କୃପଣ ।

କମ୍ପୁରୁଷ, କମ୍ପୂରୁଷ, ବ. ପୁଂ. (କମ୍-ପୁରୁଷ, ପୂରୁଷ) କନ୍ନର । ନ. ହିମାଳୟ ଓ ହେମକୂଟର ଅନ୍ତର୍ବର୍ତ୍ତୀ ବର୍ଷବିଶେଷ

କଂପୁରୁଷେଶ୍ୱର, ବ. ପୁଂ. ( କଂପୁରୁଷ-ଈଶ୍ୱର ) କୁବେର ।

କମ୍ଭୂତ, ବଂ. (କମ୍-ଭୂତ) କୀଦୃଶ, କପର ।

କୟତ୍, ବଂ. (କମ୍-ଯତ୍) କପରିମାଣ, କେତେ ।

କିରଣ, ବ. ପୁଂ. ( କୃ-ଅନ ) ଅଂଶୁ, ସୂର୍ଯ୍ୟ ଚନ୍ଦ୍ରାଦିର ତେଜ ।

କିରଣମାଳୀ, ବ. ପୁଂ. ( କିରଣ-ମାଳା-ଇନ୍ ) ସୂର୍ଯ୍ୟ, ରବି, ଅଂଶୁମାଳୀ ।

କିରାଟିକା, ବ. ସ୍ତ୍ରୀ. (କିର-ଅଟିକା) ଶାରିକା-ପକ୍ଷିଣୀ ।

କିରାତ, ବ. ପୁଂ. (କିର=ଅବ୍ୟକ୍ତ ଶବ୍ଦ କରିବା-ଅତ=ଯେ ଗମନ କରଇ, ଅଥବା (କିର=ଅପରିଷ୍କୃତ-ଅତ=ଯେ ବାସ କରଇ ) ବନ-ଚର, ବ୍ୟାଧ; ଅଲ୍ପତନୁ; ଭୂନିମ୍ବ; ଅଶ୍ୱପାଳ, ସହିସ ।

କିରାତୀ, ବ. ସ୍ତ୍ରୀ. (କିର-ଅତ-ଈ) ଗଙ୍ଗା; ବ୍ୟାଧୀ; ଦୁର୍ଗା; ଚାମରଧାରିଣୀ; କୁଟ୍ଟିଣୀ ।

କିରୀଟ, ବ. ପୁଂ. (କୃ-ଈଟ) ମୁକୁଟ, ଶିରୋ-ଭୂଷଣ ।

କିରୀଟୀ, ବ. ପୁଂ. ( କିରୀଟ-ଇନ୍ ) ଅର୍ଜ୍ଜୁନ; ବଣିକ୍ । ଯଥା—

ପଡିଲେ କିରୀଟୀ ଶରେ ଭୂପ ଚତୁରଙ୍ଗ । କ. ବି.

ବଂ. କିରୀଟଧାରୀ ।

କିର୍ମୀର, ବଂ ପୁଂ. ( କୃ-ମୀର ) ରାକ୍ଷସବିଶେଷ; ନାରଙ୍ଗବୃକ୍ଷ । ବଂ. ଚିତ୍ରବର୍ଣ୍ଣ; କର୍ବୂରବର୍ଣ୍ଣ ।

କିଲ, ଅଂ. ( କିଲ୍-ଅ ) ସମ୍ଭାବନା; ବାର୍ତ୍ତା; ପ୍ରସିଦ୍ଧି; ଐତିହ୍ୟ; ଅନୁନୟ; ନିଶ୍ଚୟ; ସତ୍ୟ; ଅଳୀକ; ହେତୁ; ଅରୁଚି; ତିରସ୍କାର ।

କିଲକିଲ, ବ. ସ୍ତ୍ରୀ. ( କିଲ=କ୍ରୀଡ଼ା, ଦ୍ୱିତ୍ୱ ) ହାସ୍ୟଶବ୍ଦ; ହର୍ଷଧ୍ୱନି; ଅବ୍ୟକ୍ତ ଶବ୍ଦ ।

କିଲା, ବ. (ଯାବନିକ) ଦୁର୍ଗ, ଗଡ଼ ।

କିଲ୍ବିଷ, ବ. ନ. (କିଲ୍-ବିଷ) ପାପ; ଦୋଷ, ଅପରାଧ; ରୋଗ । ଯଥା—

ପ୍ରସନ୍ନ ହେବା ଗଙ୍ଗାରେ କଲିଲେ କିଲ୍ବିଷ,
ପ୍ରଯୋଗ କରିବା ନାମ ଗୋ । ବ. ଚ.

କିଲ୍ଲୀ, ବ. ପୁଂ. ଘୋଟକ ।

କିଶଲ, କିସଲ, କିଶଲୟ, କିସଲୟ, } ବ. ପୁଂ. ନ. (କିଂ-ଶଲ୍-ଅ, ଅୟ ) ନବପଲ୍ଲବ, ନୂତନ ପତ୍ର; ନୂତନ ପଲ୍ଲବଯୁକ୍ତ କ୍ଷୁଦ୍ର ଶାଖା । ଯଥା—

କିମ୍ବା ମଧୁମାସେ ନବ କିଶଲୟ,
କିଶଳୟେ ଅବା କୁସୁମନିଚୟ । ନ. କେ.

କିଶୋର, ବଂ. (କିମ୍-ଶୃ-ଓର) ଶିଶୁ, ବାଳକ; ଅପ୍ରାପ୍ତବୟସ୍କ, ଏଗାର ବର୍ଷଠାରୁ ପନ୍ଦର ବର୍ଷ ପର୍ଯ୍ୟନ୍ତ; ନବଯୁବା । ବ. ପୁଂ. ସୂର୍ଯ୍ୟ; ଅଶ୍ୱଶିଶୁ । ରୀ, ସ୍ତ୍ରୀ. ନୂତନଯୌବନା ସ୍ତ୍ରୀ ।

କିଶ୍‌ମିଶ୍, ବ. ନ. (ଯାବନିକ) ମଧୁପକ୍ୱ ଅଙ୍ଗୁର-ଫଳ ।

କିଷ୍କିନ୍ଧ୍ୟା, ବ. ସ୍ତ୍ରୀ. ବାଲିର ରାଜଧାନୀ; ପାର୍ବତୀୟ ଦେଶବିଶେଷ, କିଷ୍କିନ୍ଧ୍ୟ ପର୍ବତର ଗୁହା ।

କିଷ୍କୁପର୍ବା, ବ. ପୁଂ. ( କିଷ୍କୁ-ପର୍ବନ୍ ) ଇକ୍ଷୁ; ବାଂଶ; ନଳ ।

କିସ, ଅଂ. (କିମ୍ ଶବ୍ଦଜ) କଅଣ ।

କିସ୍‌ମତ୍, ବ. (ଯାବନିକ) ଅଦୃଷ୍ଟ; ଭାଗ ।

କିସ୍ତି, ବ. (ଯାବନିକ) ନୌକା; ନିର୍ଦ୍ଧାର୍ଯ୍ୟ ସମୟ ।

କିସ୍ତିବନ୍ଦୀ, ବଂ. (ଯାବନିକ) ନିର୍ଦ୍ଧାରିତ ।

କୀକଟ, ବ. ପୁଂ. (କିମ୍-କଟ୍-ଅ) ଅଶ୍ୱ; ଦେଶ-ବିଶେଷ, ବେହାରଦେଶ । ବଂ. କୃପଣ; ଦରିଦ୍ର ।

କୀକଶ, ବ. ପୁଂ. (କିମ୍-କଶ) ଚଣ୍ଡାଳ ।

କୀକସ, ବ. ନ. (କିମ୍-କସ୍-ଅ) ଅସ୍ଥି । ପୁଂ. କୀଟବିଶେଷ । ବଂ. କର୍କଶ, କଠିନ ।

କୀକି, ବ. ପୁଂ. (କୀ-କି) ଚାଷ ପକ୍ଷୀ, ନୀଳକଣ୍ଠ ପକ୍ଷୀ ।

କୀଚକ, ବ. ପୁଂ. (ଚୀକ୍-ଅକ, ଚୀକ=କୀଚ) ବାୟୁ ସଂଯୋଗରେ ଶବ୍ଦକାରକ ବାଉଁଶ; ଦ୍ରୁପଦ ରାଜାଙ୍କର ଶଳା; ଦୈତ୍ୟବିଶେଷ; ନଳ । ୧ମ ଅର୍ଥରେ ଯଥା—

ବୋଲଇ କୀଚକକୁଞ୍ଜପୁଞ୍ଜେ ଯାଇ ମେଚକକାନ୍ତ । ଭଞ୍ଜ ।

କୀଟ, ବ. ପୁଂ. (କୀଟ୍-ଅ) କ୍ରିମି; ପୋକ । ବିଂ. କଠିନ ।

କୀଟଘ୍ନ, ବ. ପୁଂ. (କୀଟ-ଘ୍ନ) ଗନ୍ଧକ । ବିଂ. କୀଟ-ନାଶକ ।

କୀଟଜ, ବିଂ. (କୀଟ-ଜ) ରେଶମୀ । ବ. ନ. ରେଶମ ।

କୀଟଜା, ବ. ସ୍ତ୍ରୀ. (କୀଟ-ଜନ୍-ଅ) ଲାକ୍ଷା ।

କୀଟମଣି, ବ. ପୁଂ. ( କୀଟ-ମଣି ) ଖଦ୍ୟୋତ, ଜୁଳୁଜୁଳିଆ ପୋକ ।

କୀଟାଣୁ, ବିଂ ପୁଂ. (କୀଟ-ଅଣୁ) ଚକ୍ଷୁର ଅଗୋଚର ଅତି କ୍ଷୁଦ୍ର କୀଟ ।

କୀଟାଦ, ବ. (Insectivora) (କୀଟ-ଅଦ) ଯେଉଁ ସବୁ ଜନ୍ତୁ କୀଟ ଖାଇ ଜୀବନଧାରଣ କରନ୍ତି ।

କୀଦୃକ୍, କୀଦୃଶ, ବିଂ. ( କିମ୍-ଦୃଶ-॰, ଅ ) କିପ୍ରକାର, କିପରି ।

କୀନାଶ, ବ. ପୁଂ. (କିମ୍-ନଶ୍-ଅ) ଯମ; ବାନର-ବିଶେଷ । ବିଂ. ପଶୁଘାତକ ; ଗୁପ୍ତଘାତକ ; କର୍ଷକ; କ୍ଷୁଦ୍ର, ନୀଚ ।

କୀର, ବ. ପୁଂ. ( କୀ-ଈର ) ଶୁକପକ୍ଷୀ; ଦେଶ-ବିଶେଷ; ମାଂସ । ( ଶୁକ ଅର୍ଥରେ ) ଯଥା—

> ବେନି ଚନ୍ଦ୍ରଗଣ୍ଡ କୀର,
> ପୋଡାପାଲ ବର୍ଷି କରେ ଏମନ୍ତ ବିଗ୍ରହ । ଲ, ବ.

କୀର୍ଣ୍ଣ, ବିଂ. ( କୄ-ତ ) ବିକ୍ଷିପ୍ତ ; ହିଂସିତ; ବ୍ୟାପ୍ତ; ଆଚ୍ଛନ୍ନ; ନିହିତ ।

କୀର୍ତ୍ତକ, ବିଂ. (କୃତ୍-ଅକ) ଯେ କୀର୍ତ୍ତନ କରଇ ।

କୀର୍ତ୍ତନ, ବ. ନ. (କୃତ୍-ଅନ) ବର୍ଣ୍ଣନ, କଥନ; ଗୁଣକଥନ, ଯଶଃଖ୍ୟାପନ ।

କୀର୍ତ୍ତନୀୟ, ବିଂ. ( କୃତ୍-ଅନୀୟ ) ବର୍ଣ୍ଣନୀୟ, ଗଣନୀୟ ।

କୀର୍ତ୍ତି, ବ. ସ୍ତ୍ରୀ. (କୃତ୍-ତି) ଯଶଃ, ସୁଖ୍ୟାତି ।

କୀର୍ତ୍ତିତ, ବିଂ. ( କୃତ୍-ତ ) କଥିତ, ଉକ୍ତ, ବର୍ଣ୍ଣିତ ।

କୀର୍ତ୍ତିବାସ, ବିଂ. (କୀର୍ତ୍ତି-ବାସ) ପରମ ଯଶସ୍ୱୀ ।

କୀର୍ତ୍ତିଭାକ୍, ବିଂ. (କୀର୍ତ୍ତି-ଭଜ୍-॰) ଯଶସ୍ୱୀ । ବ. ପୁଂ. ଦ୍ରୋଣାଚାର୍ଯ୍ୟ ।

କୀର୍ତ୍ତିମାନ୍, ବିଂ. ( କୀର୍ତ୍ତି-ମତ୍ ) କୀର୍ତ୍ତିବିଶିଷ୍ଟ । ବ. ପୁଂ. ବସୁଦେବର ଜ୍ୟେଷ୍ଠପୁତ୍ର ।

କୀର୍ତ୍ତିଶେଷ, ବ. ପୁଂ. ( କୀର୍ତ୍ତି-ଶେଷ ) ମରଣ, ମୃତ୍ୟୁ । ବିଂ. ମୃତ ।

କୀର୍ତ୍ତିସ୍ତମ୍ଭ, (Monument) ବ. ପୁଂ. (କୀର୍ତ୍ତି-ସ୍ତମ୍ଭ) ଘଟଣାବିଶେଷର ସ୍ମରଣାର୍ଥ ଅଥବା ବ୍ୟକ୍ତି-ବିଶେଷର ନାମ ଓ କୀର୍ତ୍ତି ରକ୍ଷାର୍ଥେ ନିର୍ମିତ ସ୍ତମ୍ଭାଦି ।

କୀର୍ଯ୍ୟମାଣ, ବିଂ. ( କୄ-ଅନ, ଯ, ମ, ଆଗମ ) ଯାହା ଇତସ୍ତତଃ ବିକ୍ଷିପ୍ତ ହେଉଅଛି ।

କୀଲ, ବ. ପୁଂ. (କୀଲ୍-ଅ) କୀଲା; ଖୁଣ୍ଟା; ମୁଷ୍ଟ୍ୟା-ଘାତ; କହୁଣି ।

କୀଲକ, ବ. ପୁଂ. ( କୀଲ-କ ) ଖୁଣ୍ଟ, କୀଲା; ଗୋଦୋହନ ନିମିତ୍ତ ବନ୍ଧନ ସ୍ତମ୍ଭ ।

କୀଲଣୀ, (କୀଲକ ଶବ୍ଦଜ) କବାଟର କୁଞ୍ଜିକା ।

କୀଲନ, ବ. ନ. (କୀଲ୍-ଅନ) ଦୃଢ଼ୀକରଣ, ସ୍ଥିରୀକରଣ ।

କୀଲା, ବ. (ପ୍ରା; କୀଲ ଶବ୍ଦଜ) ଖୋବା, ଖିଲ ।

କୀଲାଳ, ବ. ନ. (କୀଲ-ଅଲ୍-ଅ) ଜଳ; ରକ୍ତ; ଅମୃତ; ମଧୁ । ଯଥା—

> କୀଲାଳଜବଦନୀ କି ଘଜ ଗୋ,
> ପିଇ ତଦ୍‌ମଣି ତୋ ଅଧର ଗୋ ।

କୀଲାଲପ, ବ. ପୁଂ. (କୀଲାଲ-ପ) ରାକ୍ଷସ; ଜୋକ ।

କୀଲିତ, ବିଂ. (କୀଲ-ତ) ବଦ୍ଧ, ରୁଦ୍ଧ । ବ. ନ. ବନ୍ଧନ । ଯଥା—

> ଚାଲକ-କୀଲିତ ବୃନ୍ଦେ ପଶେ ଅବଶିଷ୍ଟେ । ମ. ଗା.

କୀଶ, ବ. ପୁଂ. (କ-ଈଶ) ବାନର; ସୂର୍ଯ୍ୟ; ପକ୍ଷୀ । ବିଂ. ବିବସ୍ତ୍ର, ଲଙ୍ଗଳା ।

କୀଶପର୍ଣ୍ଣ, ବ. ପୁଂ. ସ୍ତ୍ରୀ. ( କୀଶ-ପର୍ଣ୍ଣ ) ଅପାମାର୍ଗ ଗଛ ।

କୁ, ବ. ସ୍ତ୍ରୀ. ( କୁ-ଂ ) ପୃଥିବୀ । ଅ°. ପାପ; ଦୋଷ; ଅମଙ୍ଗଳ; ମନ୍ଦ; କୁତ୍ସିତ; ଈଷତ୍; ନିବାରଣ; ନିନ୍ଦା । ବି°. ନିନ୍ଦନୀୟ ।

କୁଅ, ବ. (ପ୍ରା; କୂପ ଶବ୍ଦଜ) କୂପ ।

କୁଆ, ବ. (ପ୍ରା; କାକ ଶବ୍ଦଜ) କାକ ।

କଁଆ, କ୍ରି. ବି. ସଦ୍ୟୋଜାତ ଶିଶୁର କ୍ରନ୍ଦନଧ୍ୱନି ।

କୁଅତାରା, ( ଦେଶଜ ) ପ୍ରଭାତ ହେବା ପୂର୍ବରୁ ଯେଉଁ ତାରା ଉଦୟ ହୁଏ, ଶୁକ୍ରନକ୍ଷତ୍ର । ଯଥା —

ଭେଦ କୁଅତାରା ମଣ୍ଡିଲେ ଗଗନେ । ବ. ବେ.

କୁଅପଥର, (ପ୍ରା) ପାଣି ଜମାଟ ହୋଇ କ୍ଷୁଦ୍ର କ୍ଷୁଦ୍ର ପ୍ରସ୍ତର ଆକାର ଧାରଣ କରି ବୃଷ୍ଟିପାତ ସଙ୍ଗେ ପୃଥିବୀରେ ପତିତ ହୁଏଇ, ଏହାକୁ କୁଅପଥର କହି ।

କୁଆଁକୁଆ, ବ. (ଦେଶଜ) ଅସ୍ଥିର, ବ୍ୟସ୍ତବ୍ୟସ୍ତ । ଯଥା—

ଡ଼ାକିବୁଝି ଖାଣ ଯଥା ରେ,
ଯାହା ସଙ୍ଗେ ଯେବେ ପୀରତି କରଇ,
ତେବେ କରଇ କୁଅକୁଥ ରେ ।

କୁକର, ବ. ନ. ମଦ୍ୟ ।

କୁକର, ବି°. ( କୁ-କର ) ବିକୃତ ହସ୍ତ, ହାତ-ଖଣ୍ଡିଆ ।

କୁକର୍ମା, ବି°. (କୁ-କର୍ମନ୍ ) ଯେ କୁକର୍ମ କରଇ ।

କୁକୀଳ, ବ. ପୁଂ. (କୁ-କୀଳ) ପର୍ବତ ।

କୁକୁଡ଼ା, ବ. ( ପ୍ରା; କୁକ୍କୁଟ ଶବ୍ଦଜ ) ତାମ୍ରଚୂଡ଼, ମୁର୍ଗା ।

କୁକୁନ୍ଦର, ବ. ନ. ( କୁ-ସ୍କନ୍ଦ-ଅର ) ନିତମ୍ବର ଉପରିସ୍ଥ ଆବର୍ତ୍ତାକାର କୂପକ ଦ୍ୱୟ ।

କୁକୁର, ବ. ପୁଂ. (କୁକ୍-ଉର) ଯଦୁବଂଶୀୟ ନୃପ-ବିଶେଷ; ଦଶାର୍ହ ଦେଶ; ( କୁକ୍କୁର ଶବ୍ଦଜ ) ଗ୍ରାମ୍ୟମୃଗ, କୁତ୍ତା ।

କୁକୂଳ, ବ. ନ. ( କୁ-କୂଳ ) ଶଙ୍କୁଦ୍ୱାରା ସଙ୍କୀର୍ଣ୍ଣ ଗର୍ତ୍ତ; ବର୍ମ । ପୁଂ. ତୁଷାନଳ ।

କୁକ୍କୁଟ, ବ. ପୁଂ. (କୁ-କୁଟ୍-ଅ) କୁକୁଡ଼ା; ସ୍ଫୁଲିଙ୍ଗ ।

କୁକ୍କୁଟୀ, ବ. ସ୍ତ୍ରୀ. ( କୁ-କୁଟ୍-ଅ-ଈ ) କୁକୁଡ଼ୀ, ସ୍ଫୁଲିଙ୍ଗ; ଅନୃତାଚରଣ ।

କୁକ୍କୁଟକ, ବ. ପୁଂ. ( କୁକ୍କୁଟ-କ ) ଶୂଦ୍ରର ଔରସରେ ନିଷାଦୀ ଗର୍ଭଜାତ ନିକୃଷ୍ଟ ଜାତି-ବିଶେଷ ।

କୁକ୍କୁଟବ୍ରତ, ବ. ( କୁକ୍କୁଟ-ବ୍ରତ ) ସନ୍ତାନାର୍ଥ ସ୍ତ୍ରୀଲୋକମାନଙ୍କର କର୍ତ୍ତବ୍ୟ ବ୍ରତ; ଲଳିତା ସପ୍ତମୀ ବ୍ରତ ।

କୁକ୍କୁଭ, ବ. ପୁଂ. (କୁକ୍-କୁଭ) ବନ୍ୟକୁକ୍କୁଟ ।

କୁକ୍କୁର, ବ. ପୁଂ. (କୁକ୍-କୁର) କୁକୁର, କୁତ୍ତା ।

କୁର୍କୁର, ବ. ପୁଂ. (କୁର୍-କୁର) କୁକୁର, କୁତ୍ତା ।

କୁକ୍ରିୟ, ବି°. ( କୁ-କ୍ରିୟା ) ଦୁଷ୍କର୍ମାନ୍ୱିତ, ମନ୍ଦ-କର୍ମକାରକ ।

କୁକ୍ଷି, ବ. ପୁଂ. (କୁଷ୍-ସି) ଗର୍ଭ, ଉଦରଗହ୍ୱର ଅଭ୍ୟନ୍ତର ସ୍ଥାନ; ଗୁହା । ଯଥା—

କୋମଳତର ମୋହନ କୁଞ୍ଜ କୁକ୍ଷିରୁ,
ତ ସ୍ୱର ଅଛି ନ୍ୟି ଦେଖ ମୋ ଗ୍ରନ୍ଥରେ । ଚ. ଚ.

କୁକ୍ଷିଗତ, ବି°. ( କୁକ୍ଷି-ଗତ ) ଉଦର ପ୍ରବିଷ୍ଟ, ଉଦର ମଧ୍ୟଗତ ।

କୁକ୍ଷିଜ, ବ. ପୁଂ. (କୁକ୍ଷି-ଜ) ଗର୍ଭଜାତ ସନ୍ତାନ ।

କୁକ୍ଷିଜା, ବ. ସ୍ତ୍ରୀ. ( କୁକ୍ଷି-ଜ-ଆ ) ଗର୍ଭଜାତ କନ୍ୟା ।

କୁକ୍ଷିମ୍ଭରି, ବି°. (କୁକ୍ଷିମ୍-ଭର) ପେଟୁକ; କୃପଣ । ଯଥା—

କଦଳିତ୍ୟ କୁକ୍ଷିମ୍ଭରି-ହିନାଟ-ଦୁଷ୍କୃତ
ଯୋଗେ କାରଗାର ହେବ ଏଠାରେ ଏ ମସ୍ତ । ମ. ଯ.

କୁକ୍ଷିଶୂଳ, ବ. ନ. ରୋଗବିଶେଷ, ଉଦରଶୂଳ ।

କୁଙ୍କୁଡିବା, କ୍ରି. ( କୁଞ୍ଚିତ ଶବ୍ଦଜ ) ସଙ୍କୁଚିତ ହେବା ।

କୁଙ୍କୁମ, ବ. ପୁଂ. (କୁନ୍କ-ଉମ) କାଶ୍ମୀର ଦେଶଜ ଗନ୍ଧଦ୍ରବ୍ୟବିଶେଷ । ନ. କାଶ୍ମୀର ଦେଶଜାତ ପୁଷ୍ପବିଶେଷ, କୁସୁମଫୁଲ ।

କୁଚ, କୂଚ, ବି. ପୁଂ. (କୁଚ୍-ଅ) ଯୁବତୀର ସ୍ତନ, ପୟୋଧର ।

କୁଞ୍ଚକୁଞ୍ଚିଆ, ବିଂ. (ପ୍ରା; କୁଞ୍ଚିତ ଶବ୍ଦଜ) କୁଞ୍ଚିତ, ବକ୍ରୀକୃତ ।

କୁଚକ୍ର, ବି. ପୁଂ. (କୁ-ଚକ୍ର) ଚକ୍ରାନ୍ତ, କୁମନ୍ତ୍ରଣା ।

କୁଚକ୍ରୀ, ବିଂ. (କୁ-ଚକ୍ର-ଇନ୍) କୁମନ୍ତ୍ରଣାକାରୀ, ଯେ କୁମନ୍ତ୍ରଣାରେ ଲିପ୍ତ ଥାଏ ।

କୁଚନ୍ଦନ, ବି. ନ. (କୁ-ଚନ୍ଦନ) ରକ୍ତଚନ୍ଦନ; କୁଙ୍କୁମ ।

କୁଚଫଳ, ବି. ନ. (କୁଚ ତୁଲ୍ୟ ବୋଲି) ଡାଳିମ୍ବ ଫଳ ।

କୁଚର, ବିଂ. (କୁ-ଚର) ପର ନିନ୍ଦାକାରୀ ।

କୁଚର୍ଯ୍ୟା, ବି. ସ୍ତ୍ରୀ. (କୁ-ଚର୍ଯ୍ୟା) ଗର୍ହିତ ଆଚରଣ; କୁସଙ୍ଗ ।

କୁଚକ, ବି. ପୁଂ. ସ୍ତ୍ରୀ. ମତ୍ସ୍ୟବିଶେଷ, କୋଚିଆ ।

କୁଚେଲ, ବିଂ. (କୁ-ଚେଲ) ଯାହାର ପରିଧେୟ ବସ୍ତ୍ର ଅତ୍ୟନ୍ତ ଜଘନ୍ୟ । ବି. ପୁଂ. କୁତ୍ସିତ ବସ୍ତ୍ର ।

କୁଛ, ବି. ନ. କୁମୁଦ ।

କୁଜ, ବି. ପୁଂ. (କୁ-ଜ) ମଙ୍ଗଳଗ୍ରହ; ନରକାସୁର; ବୃକ୍ଷ ।

କୁଜା, ବି. ସ୍ତ୍ରୀ. (କୁ-ଜ-ଆ) କାତ୍ୟାୟନୀଦେବୀ; ସୀତା । ଯଥା—

> କୁଜା ନାଶ ଖଟକ ହିଁ ଯେହୁ,
> ପାଣିରେ ଭୂଧର ରଖିଲେ ଯେହୁ ।

ବିଂ. (ପ୍ରା; କୁବ୍ଜ ଶବ୍ଦଜ) ବକ୍ର; ଜଳପାତ୍ରବିଶେଷ ।

କୁଜ୍ଝଟି, କୁଜ୍ଝଟୀ, କୁଜ୍ଝଟିକା, ବି. ସ୍ତ୍ରୀ. (କୁ-ଝଟ୍-ଇ, ଈ, ଇକ-ଆ) କୁହୁଡ଼ି । ଯଥା—

> ପ୍ରଦୋଷେ ଯେସନ, କୁଜ୍ଝଟି ଆବୃତ ଚନ୍ଦ୍ର ଶୋଭନ ।
> — ବ. ବୃ.

କୁଜୀ, ବି. ସ୍ତ୍ରୀ. (ପ୍ରା; କୁବ୍ଜଶବ୍ଦଜ) ବକ୍ରକାୟା ସ୍ତ୍ରୀ ।

କୁଞ୍ଚନ, ବି. ନ. (କୁଞ୍ଚ୍-ଅନ) ବକ୍ର କରିବା; ସଙ୍କୋଚ କରି ଆଣିବା; ନେତ୍ର ରୋଗବିଶେଷ; ଅନାଦର ।

କୁଞ୍ଚା, କୁଞ୍ଚି, ବି. ସ୍ତ୍ରୀ (କୁଞ୍ଚ-ଆ,ଇ) ଆଠ ମୁଠି ପରିମିତ ମାପପାତ୍ର । କୁଞ୍ଚା, (ପ୍ରା) ପରିଧାନ ବସ୍ତ୍ରର କୁଞ୍ଚିତ ଫେର ।

କୁଞ୍ଚିକା, ବି. ସ୍ତ୍ରୀ. (କୁଞ୍ଚ-ଅକ-ଆ) ଗୁଞ୍ଜା, କାଇଞ୍ଚ; କଞ୍ଚ, ଗୁବ ।

କୁଞ୍ଚିତ, ବିଂ. (କୁଞ୍ଚ-ତ) ବକ୍ରୀକୃତ; ନମ୍ରୀକୃତ; କୁଙ୍କୁଡ଼ାଇବା; ସଙ୍କୁଚିତ; ଅନାଦୃତ ।

କୁଞ୍ଜ, ବି. ନ. (କୁ-ଜ) ଲତାଗୃହ, ଉପବନ ବା ଅରଣ୍ୟରେ ଲତାଦ୍ୱାରା ଆଚ୍ଛନ୍ନ ସ୍ଥାନ; ହସ୍ତିଶୁଣ୍ଡ; ହସ୍ତିହନୁ; ହସ୍ତିଦନ୍ତ ।

କୁଞ୍ଜକୁଟିର, ବି. ନ. (କୁଞ୍ଜ-କୁଟିର) ଲତାଗୃହ ।

କୁଞ୍ଜର, ବି. ପୁଂ. (କୁଞ୍ଜ-ର) ହସ୍ତୀ; କୌଣସି ଶବ୍ଦର ପରେ ଥିଲେ ଶ୍ରେଷ୍ଠ; କେଶ; ଦେଶବିଶେଷ; ଗଜ । ଶ୍ରେଷ୍ଠ ଅର୍ଥରେ । ଯଥା—

> ଭଲ୍ଲ ସେ ରଥିକକୁଞ୍ଜରକୁ ମହାଶୋଭ । — ଲ. ବ.

କୁଞ୍ଜରୀ, ବି. ସ୍ତ୍ରୀ. (କୁଞ୍ଜ-ର-ଈ) ହସ୍ତିନୀ; ଧାତୁକୀ ବୃକ୍ଷ ।

କୁଞ୍ଜରାଶନ, ବି. ପୁଂ. (କୁଞ୍ଜର-ଅଶନ) ଅଶ୍ୱତ୍ଥ ବୃକ୍ଷ ।

କୁଞ୍ଜଳ, ବି. ପୁଂ. (କୁ-ଜଳ, ଞ୍ଜ ଆଗମ) କାଞ୍ଜି, ଖଟାତୋରାଣି ।

କୁଞ୍ଜିକା, ବି. ସ୍ତ୍ରୀ. କଳାଜିରା ।

କୁଟ, ବି. ପୁଂ. (କୁଟ୍-ଅ) ଦୁର୍ଗ, ଗଡ଼; ପଥର ଭାଙ୍ଗିବା ହାତୁଡ଼ି; ପର୍ବତ; ବୃକ୍ଷ । ନ. ଘଟ, କଳସୀ ।

କୁଟଙ୍କ, ବି. ପୁଂ. (କୁଟମ୍-କ) ଗୃହାଚ୍ଛାଦନ, ଛପର; ଗିରି ଦମୀପ ।

କୁଟଜ, ବି. ପୁଂ. (କୁଟ-ଜ, ଉ=ଉ) ଗିରିମଲ୍ଲିକା, ପିତାକୋରୁଅଗଛ; ଦ୍ରୋଣାଚାର୍ଯ୍ୟ । ଯଥା—

> କୁଟିଳକେଶୀ କୁଟମ୍ମଳେ ବସି କାନ୍ତରୁ ରହିଲ ରହି ।
> — ଦେ. ଗୌ.

କୁଟକଚ୍ଛେଡ, ବ. ସ୍ତ୍ରୀ. ଛନ୍ଦୋବିଶେଷ ।
କୁଟକରସ, ବ. ପୁଂ. (କୁଟକ-ରସ) ଅର୍ଶ ରୋଗ-ନାଶକ ଔଷଧବିଶେଷ ।
କୁଟଜଲେହ, ବ. ପୁଂ. ଅତିସାରନାଶକ ଲେହ-ବିଶେଷ ।
କୁଟକବୀଜ ବ. ନ. ଇନ୍ଦ୍ରଯବ ।
କୁଟଳା, ବ. ସ୍ତ୍ରୀ. ଛନ୍ଦୋବିଶେଷ ।
କୁଟପ, ବ. ପୁଂ. (କୁଟ-ପ) ଗୃହ ପାର୍ଶ୍ୱସ୍ଥ ଉପବନ; ମୁନି । ନ. ପଦ୍ମ ।
କୁଟର, ବ. ପୁଂ. ମନ୍ଥନଦଣ୍ଡସ୍ଥ ରଜ୍ଜୁ; ମନ୍ଥନସ୍ତମ୍ଭ ।
କୁଟରୁ, ବ. ପୁଂ. ବସ୍ତ୍ରନିର୍ମିତ ଗୃହ ।
କୁଟଲ, ବ. ନ. (କୁଟ-ଲ) ଗୃହର ଛପର ।
କୁଟହାରିକା. ବ. ସ୍ତ୍ରୀ. (କୁଟ-ହାରିକା) ଦାସୀ ।
କୁଟା, ବ. ( ପ୍ରାକୃତିକ ) ଶୁଷ୍କ ତୃଣ, ଧାନଗଛର ଶୁଷ୍କ ନଡ଼ା ।
କୁଟି, କୁଟୀ, ବ. ସ୍ତ୍ରୀ. (କୁଟ୍-ଇ,ଈ) କ୍ଷୁଦ୍ରଘର, କୁଡ଼ିଆଘର ।
କୁଟିଚର, କୁଟୀଚର, } ବ. ପୁଂ. ( କୁଟି, କୁଟୀ-ଚର୍ ) ଜଳଜନ୍ତୁବିଶେଷ, ସନ୍ନ୍ୟାସି-ବିଶେଷ ।
କୁଟିର, କୁଟୀର, ବ. ପୁଂ. (କୁଟ-ଈର ଅଥବା କୁଟି, କୁଟୀ-ର-ଅ) ପର୍ଣ୍ଣଶାଳା, କୁଡ଼ିଆ ଘର, ଛୋଟଘର । ଯଥା—

> ବଳାସ-ଭବନ ଭାବନାର ତମେ ମଧ୍ୟ,
> ସୁନାତ କୁଟିର କମ୍ବା ତୃଣ ସଜାଇଥ,
> ଗାରବହୀବନେ ସବୁ ଏକାଳରେ ସ୍ଥିତ । ବ. ବ.

କୁଟିଲ, ବଂ. (କୁଟି-ଲ) କ୍ରୂର; ଶଠ; ବକ୍ର । ବ. ନ. ଟଗରପୁଷ୍ପ ।
କୁଟିଳଗ, ବଂ. (କୁଟିଳ-ଗ) ବକ୍ରଗାମୀ । ବ. ପୁଂ. ସର୍ପ । ଗା, ସ୍ତ୍ରୀ. ନଦୀ ।
କୁଟିଳା, ବ. ସ୍ତ୍ରୀ. (କୁଟିଳ-ଆ) ସରସ୍ୱତୀ ନଦୀ; ଛନ୍ଦୋବିଶେଷ; ଗନ୍ଧଦ୍ରବ୍ୟବିଶେଷ ; ରାଧିକାର ନଣନ୍ଦ । ଯଥା—

> କୁଟିଳାର ବଚନରେ ଜଟିଳାର ଯୋଗଗର୍ଜନ,
> ସହି ନୁହଇ ଏ ଦେହ ଜୀବନ ।

କୁଟିବା, କି. (କୁଟ୍ଟନ ଶବ୍ଦଜ) ଛେଚିବା; ପ୍ରହାର କରିବା ।
କୁଟୁଣା, ବ. (ପ୍ରା; କୁଟ୍ଟନୀ ଶବ୍ଦଜ) ଯେଉଁ ପୁରୁଷ ମଧ୍ୟବର୍ତ୍ତୀ ହୋଇ ସ୍ତ୍ରୀ ପୁରୁଷର ବ୍ୟଭିଚାର ଦୋଷ ଘଟାଏ ।
କୁଟୁଣୀ, ବ. ( ପ୍ରା; କୁଟ୍ଟନୀ ଶବ୍ଦଜ ) ଯେଉଁ ସ୍ତ୍ରୀ ମଧ୍ୟବର୍ତ୍ତିନୀ ହୋଇ ସ୍ତ୍ରୀ ପୁରୁଷର ବ୍ୟଭିଚାର ଦୋଷ ଘଟାଏ ।
କୁଟୁମ୍ବ, ବ. ପୁଂ. ନ. ( କୁଟୁମ୍ବ୍-ଅ ) ଜ୍ଞାତି; ପରିବାରବର୍ଗ; ବାନ୍ଧବ ।
କୁଟୁମ୍ବିତା, ବ. ସ୍ତ୍ରୀ. (କୁଟୁମ୍ବିନ୍-ତା) ପାରିବାରିକ ସମ୍ବନ୍ଧ, କୁଟୁମ୍ବ ସମ୍ବନ୍ଧ ନିବନ୍ଧନ ବ୍ୟବହାର ।
କୁଟୁମ୍ବିନୀ, ବ. ସ୍ତ୍ରୀ. (କୁଟୁମ୍ବ-ଇନ୍-ଈ) ଗୃହିଣୀ ।
କୁଟୁମ୍ବୀ, ବ. ପୁଂ. (କୁଟୁମ୍ବ-ଇନ୍) ଗୃହସ୍ଥ ।
କୁଟ୍ଟକ, ବଂ. (କୁଟ୍ଟ୍-ଅକ) ଛେଦକ । ବ. ପୁଂ. ଅଙ୍କବିଶେଷ ।
କୁଟ୍ଟନ, ବ. ନ. (କୁଟ୍ଟ୍-ଅନ) କାଟିବା; ଛେଦନ କରିବା; କୁଟିବା; ଦୂଷଣ ।
କୁଟ୍ଟନୀ, ବ. ସ୍ତ୍ରୀ. (କୁଟ୍ଟ୍-ଅନ-ଈ) ଦୂତୀ, କୁଟୁଣୀ, ଯେଉଁ ସ୍ତ୍ରୀ ମଧ୍ୟବର୍ତ୍ତିନୀ ହୋଇ ସ୍ତ୍ରୀ ପୁରୁଷର ବ୍ୟଭିଚାର ସଂଘଟନ କରାଏ ।
କୁଟ୍ଟାର, ବ. ପୁଂ. ପର୍ବତ । ନ. କମ୍ବଳ; ଅନୁରାଗ, ରତି; କେବଳ ।
କୁଟ୍ଟିମ, ବ. ନ. (କୁଟ୍ଟ୍-ଇମ) ରତ୍ନର ଖଣି; ମସୃଣ-ଭୂମି; ପକ୍କାଘରର ତଳ; ଡାଳିମ୍ବବୃକ୍ଷ; କୁଟୀର । ଯଥା—

> ସଭାଅ କୁଟ୍ଟିମେ ପ୍ରକଟ ଦେଖିଣି ବାସଗାଢ କ୍ରମତ ।
> ସ. ସା.

କୁଟ୍ଟୀର, ବ. ପୁଂ. କ୍ଷୁଦ୍ର ପର୍ବତ ।

କୁଟ୍ମଳ, କୁଡ୍ମଳ, ବି. ପୁଂ. ନ. ( କୁଟ୍-ମଳ ) ମୁକୁଳ, ଫୁଲର କଢ଼; ନରକବିଶେଷ । ଯଥା—

ଶୌରଭ-ପୂରବତ୍ତ୍ୱର ମଧୁବ୍ରତେ ବୃକ୍ଟେଗୁଲ୍ମସ୍ତୁନା ।
ମୁ. ଚ.

କୁଟ୍ମଳିତ, ବିଂ. ( କୁଟ୍ମଳ-ଇତ ) ମୁକୁଳିତ, ଯାହାର କଢ଼ ନିର୍ଗତ ହୋଇଅଛି ।

କୁଠ, ବି. ପୁଂ. (କୁ=ଶବ୍ଦ କରିବା-ଠ, ଅଥବା କୁ=ପୃଥିବୀ-ସ୍ଥା-ଅ, ସ୍ଥା=ଠ, ଅଥବା, କୁଟ୍=ଛେଦନ କରିବା-ଅ) ପାଦପ, ବୃକ୍ଷ ।

କୁଠର, ବି. ପୁଂ. ( କୁଠ୍-ଅର ) ମନ୍ଥନଦଣ୍ଡ; ବନ୍ଧନସ୍ତମ୍ଭ ।

କୁଠାର, ବି. ପୁଂ. ( କୁଠ୍-ଅର ) କୁରାଢ଼ି ପ୍ରଭୃତି କାଷ୍ଠ କାଟିବାର ଅସ୍ତ୍ର ।

କୁଠାରୁ, ବି. ପୁଂ. (କୁଠ୍-ଋ-ଉ) ବୃକ୍ଷ; ବାନର; ଅସ୍ତ୍ରନିର୍ମାଣକାରୀ ।

କୁଡ଼ପ, କୁଡ଼ବ, ବି. ପୁଂ. (କୁଡ଼୍-ଅପ, ଅବ) ପରିମାଣବିଶେଷ; ବୈଦ୍ୟମାନଙ୍କ ମତରେ ଚାରି ତୋଳା ।

କୁଡିଆ, ବି. ନ. ( କୁଟୀରଶବ୍ଦର ଅପଭ୍ରଂଶ ) ପର୍ଣ୍ଣଶାଳା, ଛୋଟଘର ।

କୁଡ଼ୁଆ, ବି. (ଦ୍ରାବିଡ଼ିକ) ମୃତ୍ତିକାପାତ୍ରବିଶେଷ; ଓଳ ।

କୁଡ୍ୟ, କୁଡ୍ୟ, ବି. ନ. (କୁଡ଼୍-ଯ) ଭିତ୍ତି, କାନ୍ଥ; ବ୍ୟଗ୍ରତା; ବିଲେପନ, କୌତୂହଳ ।

କୁଡ୍ୟଛେଦୀ, ବି. ପୁଂ. (କୁଡ୍ୟ-ଛେଦୀ) ସନ୍ଧିଭେଦୀ ତସ୍କର, ସିନ୍ଧିଅଳ ଚୋର ।

କୁଢ଼ି, ବି. ଗୁଳ୍ମବିଶେଷ, ଔଷଧବୃକ୍ଷବିଶେଷ ।

କୁଣନ, ବି. ନ. (କୁଣ୍-ଅନ) ଶବ୍ଦ ।

କୁଣପ, ବି. ପୁଂ. ନ. (କ୍ୱଣ୍-ଅପ, ବ=ଉ) ମୃତ-ଶରୀର, ଶବ; ଦୁର୍ଗନ୍ଧ; ଅସ୍ତ୍ରବିଶେଷ ।

କୁଣପୀ, ବି. ସ୍ତ୍ରୀ. (କୁଣପ-ଈ) ବଟସାରିକା; ପକ୍ଷି-ବିଶେଷ ।

କୁଣିଆ, ବି. ପୁଂ. (ଦେଶଜ) ବନ୍ଧୁ । ଯଥା—

କେତେ ତୋଷବ କର୍ପୋଟବ ଦନ୍ତଥିଲେ ପେବନେ ହୋଇ କୁଣିଆ ।
ଦ. ବେ.

କୁଣ୍ଠ, କୁଣ୍ଠିତ, ବିଂ. (କୁଣ୍ଠ୍-ଅ, ଇ-ତ) ଜଡ଼, ଅଳସ; ସଙ୍କୁଚିତ; ବ୍ୟାହତ; ଅଧମ; କାତର; ମୂର୍ଖ; ଅକର୍ମଣ୍ୟ ।

କୁଣ୍ଡ, ବି. ପୁଂ. (କୁନ୍ଦ୍-ଅ) ପତି ଜୀବିତ ଥାଉଁ ଥାଉଁ ସ୍ତ୍ରୀ ଉପପତିଦ୍ୱାରା ଯେଉଁ ସନ୍ତାନ ଜାତ କରଇ ତାହାକୁ "କୁଣ୍ଡ" ବୋଲଯାଏ । ଅଗ୍ନି ରକ୍ଷାର୍ଥ ଭୂମିନିମ୍ନ ଗର୍ତ୍ତ; କୂପ; ଜଳପାତ୍ର; ଚୌବାଚ୍ଛା; ପରିମାଣ ପାତ୍ର ।

କୁଣ୍ଡକୀଟ, ବି. ପୁଂ. (କୁଣ୍ଡ-କୀଟ) ବ୍ରାହ୍ମଣୀ ପୁତ୍ର ।

କୁଣ୍ଡଗୋଲକ, ବି. ନ. (କୁଣ୍ଡ-ଗୁଡ଼୍-ଅକ, ଡ= ଲ) କାଞ୍ଜି, ଶଠ; ତୋରାଣି ।

କୁଣ୍ଡଙ୍ଗ, ବି. ପୁଂ. (କୁଣ୍ଡ-ଅଙ୍ଗ)କୁଞ୍ଜ,ଲତାଗୃହ ।

କୁଣ୍ଡଳ, ବି. ନ. ( କୁଣ୍ଡ-ଅଳ ) କର୍ଣ୍ଣଭୂଷଣ; ବଳୟ, କଙ୍କଣ; ଗୋଡ଼ର ବେଢ଼ୀ; ବଳୟା-କୃତ ବନ୍ଧନୀ; ସମୂହ ।

କୁଣ୍ଡଳନା, ବି. ସ୍ତ୍ରୀ. (କୁଣ୍ଡଳ-ଅନ-ଆ) ବଳୟା-କୃତ ବେଷ୍ଟନ; ପଦ୍ମାକାର; ଜଳେପୀ ।

କୁଣ୍ଡଳନୀ, ବି. ସ୍ତ୍ରୀ. ( କୁଣ୍ଡଳ-ଇନ୍-ଈ ) ଶକ୍ତି-ବିଶେଷ; ସର୍ପୀ; ମିଷ୍ଟାନ୍ନ, ଜଳେପୀ; ଗୁଳୁଚି ।

କୁଣ୍ଡଳୀ, ବି. ପୁଂ. ( କୁଣ୍ଡଳ-ଇନ୍ ) ସର୍ପ; ମୟୂର; ବରୁଣ । ବିଂ. କୁଣ୍ଡଳଧାରୀ; କୁଣ୍ଡଳବେଷ୍ଟି । ସର୍ପ ଅର୍ଥରେ । ଯଥା—

କୁଣ୍ଡଳୀ ଦେହେ ଜେ ଧନ ଲହ୍ଲାଏ ବାଣ ସେ ବଳେ ବାହାର ।
ର. ଛ.

କୁଣ୍ଡା, ବି. (କୁନ୍ଦ୍ ଧାତୁଜ) ଧାନ୍ୟର ଚୂର୍ଣ୍ଣତୁଷର ଅଧୋଂଶ ।

କୁଣ୍ଡାଇବା, କ୍ରି. ସ. ( ପ୍ରା; କଣ୍ଡୂ ଶବ୍ଦଜ ) ଅଙ୍ଗ ଘଷିବା ।

କୁଣ୍ଡାଶୀ, ବିଂ. ( କୁଣ୍ଡ-ଅଶ୍-ଇନ୍ ) କୁଟ୍ଟଣୀ ।

କୁଣ୍ଡିଆ, ବି. (କଣ୍ଡୂ ଶବ୍ଦଜ) କ୍ଷୁଦ୍ର ।

କୁଣ୍ଡିକା, ବ. ସ୍ତ୍ରୀ. ( କୁଣ୍ଡ-କ-ଅ ) କମଣ୍ଡଳୁ; ତାମ୍ରକୁଣ୍ଡ; ସ୍ଥାଳୀ ।

କୁଣ୍ଡିନ, ବ. ନ. (କୁଣ୍ଡ-ଇନ) ବୈଦର୍ଭ ନଗର । ପୁଂ. ଦେଶବିଶେଷ; ମୁନିବିଶେଷ ।

କୁଣ୍ଡୀ, ବଂ.(କୁଣ୍ଡ-ଈ)କୁଣ୍ଡସ୍ଥିତ । ବ.ଉଦୁଖଳ; ସ୍ଥାଳୀ । (ଦେଶଜ) ଦ୍ରବ୍ୟ ଇତ୍ୟାଦି ଘୋଟିବା ନିମିତ୍ତ ପ୍ରସ୍ତରନିର୍ମିତ ସ୍ଥୂଳ ପାତ୍ରବିଶେଷ ।

କୁଣ୍ଡୀର, ବ. ପୁଂ. ( କୁଣ୍ଡ-ଈର ) ମନୁଷ୍ୟ । ବଂ. ବଳବାନ୍ ।

କୁଣ୍ଡୋଦର, ବ. ପୁଂ. ( କୁଣ୍ଡ-ଉଦର ) ନାଗବିଶେଷ । ବଂ. ଅପ୍ରଶସ୍ତ ଉଦରଯୁକ୍ତ ।

କୁତଃ, ଅ. ( କିମ୍-ତସ୍ ) କି ନିମିତ୍ତ, କେଉଁଠାରୁ ।

କୁତନୁ, ବ. ପୁଂ. (କୁ-ତନୁ) କୁବେର ।

କୁତପ, ବ. ପୁଂ. (କୁ-ତପ) ଦିବସର ୧୫ ଭାଗର ଅଷ୍ଟମ ଭାଗ ; ବାଦ୍ୟ ; ଛାଗଲୋମଜ କମ୍ବଳ ; କୁଶ ; ସୂର୍ଯ୍ୟ ; ଅଗ୍ନି ; ଅତିଥି ; ଭାଗିନେୟ ; ଦୌହିତ୍ର; ବ୍ରାହ୍ମଣ ।

କୁତର୍କ, ବ. ନ. (କୁ-ତର୍କ) ବିତଣ୍ଡା; ମନ୍ଦଯୁକ୍ତି ।

କୁତୁକ, କୁତୂହଳ, ବ. ନ. ( କୁତ-ଉକ-ଅ, ହଲ-ଅ ) କୌତୂହଳ, ଔତ୍ସୁକ୍ୟ; ଆନନ୍ଦ । ବଂ. ପ୍ରଶଂସନୀୟ; ଆଶ୍ଚର୍ଯ୍ୟଜନକ । ଯଥା—

> ଦେଖି କୁତୁକର ବରବାହୁ ଅଳେ ଚରବରଣ
> ମୋ ଚନ୍ଦ୍ର ବୃଷ୍ଟି କରଇର । ବ୍ରେ. ବୃ.

କୁତୁପ, ବ. ନ. (କୁତୂ-ଉପ) କୁତପ । ପୁଂ. ଚର୍ମନିର୍ମିତ ଛୋଟ ତୈଳାଦି ପାତ୍ର; ଛୋଟ କୁମ୍ପା ।

କୁତୂ, ବ. ସ୍ତ୍ରୀ. ( କୁ-ତନ୍-ଉ, ନ ଲୋପ, ଉ= ଊ) ଚର୍ମନିର୍ମିତ ତୈଳ ପାତ୍ର ।

କୁତୂହଳୀ, ବଂ. ( କୁତୂହଳ-ଇନ୍ ) ଯାହାର କୁତୂହଳ ଜନ୍ମିଅଛି, କୁତୂହଳବିଶିଷ୍ଟ, ଆନନ୍ଦିତ ।

କୁତୃଣ, ବ. ନ. (କୁ-ତୃଣ) ବୋରଝାଞ୍ଜି ।

କୁତ୍ର, ଅ. କ୍ରି. ବଂ. ( କିମ୍-ତ୍ର ) କେଉଁଠାରେ; କୌଣସି ବିଷୟରେ ।

କୁତ୍ରଚିତ୍, ଅ. କ୍ରି. ବଂ. (କୁତ୍ର-ଚିତ୍) କୌଣସି ସ୍ଥାନରେ ।

କୁତ୍ରାପି, ଅ. କ୍ରି. ବଂ. ( କୁତ୍ର-ଅପି ) କୌଣସି ସ୍ଥାନରେ; କେବେହେଁ ।

କୁତ୍ସନ, ନ. } ବ. ( କୁତ୍ସ-ଅନ, ଅ ) ନିନ୍ଦା,
କୁତ୍ସା, ସ୍ତ୍ରୀ. } ଗ୍ଳାନି, ଭର୍ତ୍ସନା, ଦୋଷକୀର୍ତ୍ତନ । ଯଥା—

> ପର ନିନ୍ଦା, ପର କୁତ୍ସା କରିଅନେ, ସର୍ବଦେ
> ରତ ହେଲୁ, ମତ୍ତ ହୋଇ ଗର୍ବ ମୋହେ
> ଫୁଲ୍ଲାରେ ଉଡ଼ାଏ କେତେ ଧନ, ମହାଧନା । ମ. ଗା.

କୁତ୍ସିତ, ବଂ. (କୁତ୍ସ-ତ) ନିନ୍ଦିତ, ଘୃଣିତ, ମନ୍ଦ; ଜଘନ୍ୟ ।

କୁଥ, ବ. ପୁଂ. ନ. ( କୁଥ୍-ଅ ) ହସ୍ତୀ ପ୍ରଭୃତି ପୃଷ୍ଠରେ ଆସ୍ତରଣାର୍ଥ ଚିତ୍ରିତ ବସ୍ତ୍ର ବା କମ୍ବଳ; କୁଶତୃଣ ।

କୁଦ, ବ. ( କୁଦ୍ୟ ଶବ୍ଦଜ ) ଦ୍ୱୀପ, ଉଚ୍ଚ ଭୂମି । ଯଥା—

> ସେ ଗାଡ-କେଦାରେ ଦୃଢ଼ ବନେ ଯାଉ ସିକତା କୁଦ । ଘଣ୍ଟା ।

କୁଦାଳ, କୁଦ୍ଦାଳ, କୁଦ୍ଦାଳ, ବ. ପୁଂ. (କୁ-ଦଲ୍-ଅ) ଭୂମିଖନନ ଯନ୍ତ୍ରବିଶେଷ, କାଙ୍କ ।

କୁଦିବା, କୁଦିବା, କ୍ରି. ବଂ. (ପ୍ରା; କୁର୍ଦ୍ଦନ, କୂର୍ଦ୍ଦନ ଶବ୍ଦଜ) ଡେଇଁବା, ଲମ୍ଫ ପ୍ରଦାନ କରିବା; ଏକ ସ୍ଥାନରେ ପୁନଃ ପୁନଃ ଡେଇଁବା ।

କୁଦ୍ମଳ, ବ. ନ. ଫୁଲକଢ଼ ।

କୁଦ୍ରଙ୍କ, କୁଦ୍ରଙ୍ଗ, ବ. ପୁଂ. ( କୁ-ଦ୍ରଙ୍କ, ଦ୍ରଙ୍ଗ ) ଗୃହବିଶେଷ, ମଞ୍ଚୋପରିସ୍ଥ ଗୃହ ।

କୁଧ୍ର, ବ. ପୁଂ. (କୁ-ଧୃ-ଅ, ଉ ଲୋପ) ପର୍ବତ ।

କୁନଖ, ବ. ପୁଂ. (କୁ-ନଖ) କୁତ୍ସିତ ନଖ ରୋଗବିଶେଷ; କଣନଖା । ବଂ. ନଖରୋଗୀ; କୁତ୍ସିତ ନଖଯୁକ୍ତ ।

କୁନଳୀ, ବ. ପୁଂ. (କୁ-ନଲ୍-ଇନ୍) ବୃକ୍ଷବିଶେଷ ।

କୁନାଭ, ବ. ପୁଂ. ( କୁ-ନାଭ ) ବାତମଣ୍ଡଳୀ, ଘୂର୍ଣ୍ଣମାନ ବାୟୁ; ନିଧିବିଶେଷ ।

କୁନ୍ତ, ବ. ପୁଂ. ( କୁ-ଅନ୍ତ ) ପକ୍ଷବିଶିଷ୍ଟ ବାଣ; ପ୍ରାସ-ଅସ୍ତ୍ର, ଭଲ୍ଲ । ଯଥା—

ସେ ଦୃଶ୍ୟ ଦୋହଡ଼ଚାଉ ଶର ହୁଁ ତା ନ ପାଉ
ଚତୁଃଅଥ ନାହିଁ ତାହା ହେ, ପ୍ରାଣବନ୍ଧୁ,
ଚଉକୁ କୁନ୍ତପର ଯେ । ଘ. ବ.

କୁନ୍ତଳ, ବ. ପୁଂ. (କୁନ୍ତ-ଲା-ଅ) କେଶ, ବାଳ । ଯଥା—

ଅସମ୍ଭାଳେ ପିଠି କୁନ୍ତଳ ଲୁଚିଯାଏ ଧରଣି ।

ପାନପାଏ; ଯବ; ଲଙ୍ଗଳ; ଦେଶବିଶେଷ ।

କୁନ୍ତି, କୁନ୍ତୀ, ବ. ସ୍ତ୍ରୀ. ( କୁନ୍ତ-ଇ, ଈ ) ପାଣ୍ଡୁ ରଜାର ପତ୍ନୀ । ପୁଂ. ଦେଶବିଶେଷ ।

କୁନ୍ଥନ, ବ. ନ. ( କୁନ୍ଥ-ଅନ ) କୁନ୍ଥେଇବା, କ୍ଳେଶଦ୍ୟୋତନ ।

କୁନ୍ଦ, ବ. ପୁଂ. ନ. (କୁ-ଉନ୍ଦ୍-ଅ) ପୁଷ୍ପବିଶେଷ; କୁବେରର ନିଧିବିଶେଷ; କୁନ୍ଦକାର ଯନ୍ତ୍ର ।

କୁନ୍ଦନ, ବ. ନ. ସୁବର୍ଣ୍ଣବିଶେଷ ।

କୁନ୍ଦମ, ବ. ପୁଂ. (କୁ-ଦମ) ବିଲେଇ ।

କୁନ୍ଦର, ବ. ପୁଂ. (କୁ-ଦୃ-ଅ) ହିରଣ୍ୟାକ୍ଷ ବଧ ସମୟରେ ବରାହ ରୂପ ଧାରଣ କରି ଯେ ପୃଥିବୀ ବିଦାରଣ କରିଥିଲେ, ବିଷ୍ଣୁ ।

କୁନ୍ଦନୀ, ବ. ସ୍ତ୍ରୀ. (କୁନ୍ଦ-ଇନ୍-ଈ) ପଦ୍ମସମୂହ; କୁନ୍ଦ ପୁଷ୍ପ ସହିତ ପଦ୍ମପୁଷ୍ପର ଶୁକ୍ଳତାର ସାଦୃଶ୍ୟ ଥିବାରୁ ପଦ୍ମପୁଷ୍ପକୁ କୁନ୍ଦନୀ ବୋଲାଯାଏ ।

କୁନ୍ଦୁ, ବ. ସ୍ତ୍ରୀ. (କୁ-ଦୃ-ଉ, ଋ ଲୋପ) ମୂଷା ।

କୁପଥ, ବ. ପୁଂ. (କୁ-ପଥ) ଅସତ୍‌ପଥ; କଦନ୍ୟ-ପଥ ।

କୁପଥ୍ୟ, ବ. ନ. (କୁ-ପଥ୍ୟ) ଅହିତକର ପଥ୍ୟ, ଯାହା ଖାଇଲେ ରୋଗ ଜନ୍ମଇ ।

କୁପିତ, ବଂ. (କୁପ୍-ତ) କ୍ରୋଧାନ୍ୱିତ, ଯାହାର କ୍ରୋଧ ଜନ୍ମିଅଛି, କ୍ରୋଧୀ ।

କୁପିନୀ, ବ. ସ୍ତ୍ରୀ. (ଗୁପ୍-ଇନ୍-ଈ, ଗ=କ) ମାଛ ରଖିବାର ଖାଲୋଇ । ପୁଂ. କୈବର୍ତ୍ତ ।

କୁପିନ୍ଦ, ବ.ପୁଂ. (କୁପ୍-ଇନ୍ଦ) ତନ୍ତୁବାୟ, ତନ୍ତୀ ।

କୁପୂୟ, ବଂ. (କୁ-ପୂୟ୍-ଅ) ଜାତ ଓ ଅଗ୍ରବାଦ-ଦ୍ୱାରା ନିନ୍ଦିତ ।

କୁପ୍ୟ, ବ. ନ. ( ଗୁପ-ଯ, ଗ=କ ) ସ୍ୱର୍ଣ୍ଣ ଓ ରୌପ୍ୟ ଭିନ୍ନ ଆଉ ସମସ୍ତପ୍ରକାର ଧାତୁ ।

କୁପ୍ୟଶାଳା, ବ. ସ୍ତ୍ରୀ. (କୁପ୍ୟ-ଶାଳା) ଥଠାର ଦୋକାନ, ସ୍ୱର୍ଣ୍ଣ ରୌପ୍ୟ ଭିନ୍ନ ଧାତୁପାତ୍ର ନିର୍ମାଣ ଗୃହ ।

କୁବେର, ବ. ପୁଂ. (କୁ-ବେର=ଶରୀର) ଯକ୍ଷ-ରାଜ, ଧନାଧିପ ।

କୁବ୍ଜ, ବଂ. (କୁ-ଉବ୍ଜ୍-ଅ) କୁଜା ।

କୁବ୍ରହ୍ମ, ବ. ପୁଂ. ( କୁ-ବ୍ରହ୍ମନ୍ ) ଅପକୃଷ୍ଟ ବ୍ରାହ୍ମଣ ।

କୁଭୃତ୍, ବ. ପୁଂ. (କୁ-ଭୃ-୦) ଭୂଧର, ପର୍ବତ ।

କୁମାର, ବ. ପୁଂ. (କୁମାର୍-ଅ) କାର୍ତ୍ତିକେୟ; ଯୁବରାଜ; ପଞ୍ଚମ ବର୍ଷୀୟ ବାଳକ; ପୁତ୍ର; ସିନ୍ଧୁନଦ । ନ. ଖାଣ୍ଟି ସୁନା; କାମଦେବ ।

କୁମାରଭୃତ୍ୟା, ବ. ସ୍ତ୍ରୀ. (କୁମାର-ଭୃ-ଯ-ଆ, ତ ଆଗମ) ବାଳଚିକିତ୍ସା ।

କୁମାରବାହୀ, ବ. ପୁଂ. (କୁମାର-ବାହୀ) ମୟୂର ।

କୁମାରସମ୍ଭବ, ବ. ନ. କାଳିଦାସ ପ୍ରଣୀତ କାବ୍ୟ-ବିଶେଷ ।

କୁମାରିକା, ବ.ସ୍ତ୍ରୀ.(କୁମାରୀ-କ-ଆ) ଭାରତବର୍ଷର ଦକ୍ଷିଣସ୍ଥ ଅନ୍ତରୀପବିଶେଷ; ୧୨ ବର୍ଷୀୟା କନ୍ୟା, ଅନୂଢ଼ା କନ୍ୟା ।

କୁମାରୀ, ବ. ସ୍ତ୍ରୀ. ( କୁମାର-ଈ ) ୧୨ ବର୍ଷୀୟା ଅବିବାହିତା କନ୍ୟା, ଅନୂଢ଼ା କନ୍ୟା; ଘୃତକୁମାରୀ; ଦୁର୍ଗା; ନବମଲ୍ଲିକା; ନଦୀ-ବିଶେଷ ।

କୁମୁଦ୍, ବ. ନ. (କୁ-ମୁଦ୍-୦) ଶ୍ୱେତୋତ୍ପଳ; ରକ୍ତପଦ୍ମ; କୈରବ । ବଂ. କୃପଣ ।

କୁମୁଦ, ବ. ନ. (କୁ-ମୁଦ୍-ଅ) ଶ୍ୱେତପଦ୍ମ; ରକ୍ତ-ପଦ୍ମ; ରୌପ୍ୟ; ନୈର୍ଋତ କୋଣର ହସ୍ତୀ; ବାନରବିଶେଷ; ସର୍ପବିଶେଷ; ଦୈତ୍ୟ-ବିଶେଷ; କର୍ପୂର; କାର୍ତ୍ତିକ ମାସ । ଦା. ସ୍ତ୍ରୀ. କୋରଣ୍ଟି; ଗମ୍ଭାରୀବୃକ୍ଷ । ୦

କୁମୁଦବାନ୍ଧବ, ବ. ପୁଂ. ( କୁମୁଦ-ବାନ୍ଧବ ) ନିଶାକର, ଚନ୍ଦ୍ର; କର୍ପୂର ।

କୁମୁଦବତୀ, କୁମୁଦ୍ୱତୀ, କୁମୁଦିନୀ, ବ. ସ୍ତ୍ରୀ. (କୁମୁଦ-ବତ୍-ଈ, କୁମୁଦ୍-ବତ୍-ଈ,କୁମୁଦ୍-ଇନ୍-ଈ) କୁମୁଦ ନାଡ଼, କଇଁ ନାଡ଼; କୁମୁଦ-ସମୂହ । ଯଥା—

କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ । ପ୍ରେ. ସୁ.

କୁମୁଦାକର, ବ. ପୁଂ. ହ୍ରଦ ପ୍ରଭୃତି ।

କୁମୁଦ୍ୱାନ୍, ବଂ. (କୁମୁଦ୍-ବତ୍) କୁମୁଦବହୁଳ । ଯଥା—

ହଂସଶ୍ରେଣୀଷୁ ତାରାସୁ କୁମୁଦ୍ୱତ୍ସୁ ଚ ବାରିଷୁ ।

କୁମେରୁ, (Antarctic-pole) ବ. ପୃଥିବୀର ଦକ୍ଷିଣ କେନ୍ଦ୍ର ।

କୁମେରୁବୃତ୍ତ, ବ. ନ. ଦକ୍ଷିଣମେରୁର ୨୩ଂ ଅଂଶ ଉତ୍ତରରେ ଯେଉଁ ଅକ୍ଷରେଖା ଅଛି ।

କୁମ୍ପ, ବଂ. (କୁନ୍-ପ-ଅ) ବକ୍ରହସ୍ତ ।

କୁମ୍ପା, ବ. ନ. (କୁ ରୂପ ଶବ୍ଦଜ) ତରଳପଦାର୍ଥ ରଖିବା ପାତ୍ରବିଶେଷ ।

କୁମ୍ଭ, ବ. ପୁଂ. (କ-ଉନ୍‌ଭ୍-ଅ) ଘଟ, କଳସ; ଗଜକୁମ୍ଭ; କୁମ୍ଭରାଶି; ରାକ୍ଷସବିଶେଷ; କୁମ୍ଭକର୍ଣ୍ଣର ପୁତ୍ର; ପରିମାଣ ବିଶେଷ; ବେଶ୍ୟାପତି; ନିଶ୍ୱାସରୋଧକ ଚେଷ୍ଟା ।

କୁମ୍ଭକ, ବ. ପୁଂ. (କୁମ୍ଭ-କ) ନିଶ୍ୱାସରୋଧକ ଚେଷ୍ଟା ।

କୁମ୍ଭକର୍ଣ୍ଣ, ବ. ପୁଂ. ରାକ୍ଷସବିଶେଷ, ରାବଣର ଭ୍ରାତା ।

କୁମ୍ଭକାର, ବ. ପୁଂ. (କୁମ୍ଭ-କାର) ଜାତିବିଶେଷ, କୁମ୍ଭାର ।

କୁମ୍ଭଜ, ବ. ପୁଂ. (କୁମ୍ଭ-ଜନ୍-ଅ) ଅଗସ୍ତ୍ୟମୁନି ।

କୁମ୍ଭଦାସୀ, ବ. ସ୍ତ୍ରୀ. (କୁମ୍ଭ-ଦାସୀ) ଦୂତୀ, କୁଟ୍ଟିନୀ ।

କୁମ୍ଭଯୋନି, କୁମ୍ଭସମ୍ଭବ, ବ. ପୁଂ. (କୁମ୍ଭ-ଯୋନି-ସମ୍ଭବ, କୁମ୍ଭରୁ ଉତ୍ପନ୍ନ) ଅଗସ୍ତ୍ୟ; ବଶିଷ୍ଠ; ଦ୍ରୋଣାଚାର୍ଯ୍ୟ ।

କୁମ୍ଭଶାଳା, ବ. ସ୍ତ୍ରୀ. (କୁମ୍ଭ-ଶାଳା) କୁମ୍ଭାରଘର ।

କୁମ୍ଭସନ୍ଧି, ବ. ପୁଂ. (କୁମ୍ଭ-ସନ୍ଧି) ଗଜକୁମ୍ଭଦ୍ୱୟର ମଧ୍ୟବର୍ତ୍ତୀ ସ୍ଥାନ ।

କୁମ୍ଭା, ବ. ସ୍ତ୍ରୀ. (କୁମ୍ଭ-ଆ) ବେଶ୍ୟା ।

କୁମ୍ଭାଟୁଆ, ବ. (ଦେଶଜ) ପକ୍ଷିବିଶେଷ । ଯଥା—

କୁମ୍ଭାଟୁଆ ଖଗ ପ୍ରବୀଣ ଉଗଳ<br>ରଙ୍ଗେ ବିହାରନ୍ତି କାନନ ନାଗର । ନ. କେ.

କୁମ୍ଭିକା, ବ. ସ୍ତ୍ରୀ. ( କୁମ୍ଭୀ-କ-ଆ ) ବୋଇଝାଞ୍ଜି; ନେତ୍ରରୋଗବିଶେଷ ।

କୁମ୍ଭିଳ, ବ. ପୁଂ. (କୁମ୍ଭ-ଇଲ) ଚୌର; ଶ୍ୟାଳକ; ଶ୍ଳୋକାର୍ଥଚୌର; ଶୋଉଲମାଛ ।

କୁମ୍ଭୀ, ବ. ପୁଂ. ( କୁମ୍ଭ-ଇନ୍ ) ହସ୍ତୀ; କୁମ୍ଭୀର; ଝେଞ୍ଚ ।

କୁମ୍ଭୀ, ବ. ସ୍ତ୍ରୀ. (କୁମ୍ଭ-ଈ) କ୍ଷୁଦ୍ରକଳସୀ, ଘଟୀ, ବେଶ୍ୟା ।

କୁମ୍ଭୀନସ, ବ. ପୁଂ. (କୁମ୍ଭୀ-ନସ) ବୃହତ୍ ଏବଂ କ୍ରୂର ସର୍ପ ।

କୁମ୍ଭୀନସୀ, ବ. ସ୍ତ୍ରୀ. (କୁମ୍ଭୀ-ନସ-ଈ) ରାବଣର ଭଉଣୀ,ରାକ୍ଷସୀ, ଲବଣନାମକ ରାକ୍ଷସର ମାତା ।

କୁମ୍ଭୀପାକ, ବ. ପୁଂ. (କୁମ୍ଭୀ-ପାକ) ନରକବିଶେଷ, ଏଠାରେ ପାପିମାନଙ୍କୁ ପାକ କରାଯାଏ ।

କୁମ୍ଭୀର, କୁମ୍ଭୀଲ, ବ. ପୁଂ. ( କୁମ୍ଭୀ-ର,ଲ ) କମ୍ଭୀର, ନକ୍ର, ଜଳଜନ୍ତୁ ବିଶେଷ ।

କୁରଙ୍କର, କୁରଙ୍କୁ, ବ. ପୁଂ. (କୁର-କର) ସାରସପକ୍ଷୀ ।

କୁରଙ୍ଗ, କୁରଙ୍ଗକ, କୁରଙ୍ଗମ, ବ. ପୁଂ. (କୁ-ଉନ୍‌ଗ-ଅ, ଅଥବା, କୁର୍-ଅଙ୍ଗ) ହରିଣ, ମୃଗ ।

କୁରଙ୍ଗନାଭି, ବ. ପୁଂ. ( କୁରଙ୍ଗ-ନାଭି ) ମୃଗମଦ, ଗନ୍ଧଦ୍ରବ୍ୟବିଶେଷ ।

କୁରଙ୍କ, ବ. ପୁଂ. କର୍କଟ, କଙ୍କଡ଼ା ।

କୁରଣ୍ଟ, ବ. ପୁଂ. (କୁ-ରଣ୍ଟ୍-ଅ) ଚର୍ମବ୍ୟବସାୟୀ, ଚମାର, ମୋଚି ।

କୁରଣ୍ଟ, ବ. ପୁଂ. ( କୁର୍-ଅଣ୍ଟ ) ଦାସକୁରଣ୍ଟା ଗଛ ।

କୁରଣ୍ଡ, ବ. ପୁଂ. (କୁର୍-ଅଣ୍ଡ) ବୃଦ୍ଧିଶୀଳ ଅଣ୍ଡକୋଷ ।

କୁରର, ବ. ପୁଂ. (କୁର୍-ଅର) ଉତ୍କ୍ରୋଶପକ୍ଷୀ; ଗଗଲପକ୍ଷୀ; ମେଷ ।

କୁରରୀ, ବ. ସ୍ତ୍ରୀ. (କୁର୍-ଅର୍-ଈ) ଉତ୍କ୍ରୋଶପକ୍ଷିଣୀ; ମେଣ୍ଢୀ । ଯଥା—

ଏମନ୍ତ ଭାବି ଶୋକବନ୍ତରେ ଅତ,
କୁରରୀ ପ୍ରାୟେ ସରେ କାନ୍ଦିଲ ଜାତ । କ. ବ.

କୁରଳ, ବ. ପୁଂ. (କୁର୍-ଅଳ) କୁରର ପକ୍ଷୀ; ଅଳକ, ଚୂର୍ଣ୍ଣକୁନ୍ତଳ ।

କୁରବ, ବ. ପୁଂ. (କୁ-ରବ) କୁତ୍ସିତ ଶବ୍ଦ; ଦୁର୍ନାମ, କଳଙ୍କ; କୁରୁବକ ବୃକ୍ଷ ।

କୁରବକ, କୁରୁବକ, ବ. ପୁଂ. ( କୁ-ରୁ-ବକ ) ଝିଣ୍ଟିପୁଷ୍ପ ବୃକ୍ଷ ।

କୁରସ, ବ. ପୁଂ. ( କୁ-ରସ ) ମଦ୍ୟବିଶେଷ; କୁତ୍ସିତ ରସ । ବି°, କୁତ୍ସିତରସବିଶିଷ୍ଟ ।

କୁରୁ, ବ. ପୁଂ. (କୁର୍-ଉ) ଚନ୍ଦ୍ରବଂଶୀୟ ନୃପବିଶେଷ; ବର୍ଷବିଶେଷ; ଦେଶବିଶେଷ; କଣ୍ଟକାରିକା ।

କୁରୁକ୍ଷେତ୍ର, ବ. ନ. ( କୁରୁ-କ୍ଷେତ୍ର ) ଦିଲ୍ଲୀର ନିକଟବର୍ତ୍ତୀ ଦେଶବିଶେଷ, କୁରୁପାଣ୍ଡବମାନଙ୍କର ରଣଭୂମି ।

କୁରୁକ୍ଷେତ୍ରଯୋଗ, ବ. ପୁଂ. (କୁରୁକ୍ଷେତ୍ର-ଯୋଗ) ଏକ ଦିବସରେ ତିଥିତ୍ରୟ, ନକ୍ଷତ୍ରତ୍ରୟ ଏବଂ ଯୋଗତ୍ରୟ ସ୍ପର୍ଶ ।

କୁରୁଜାଙ୍ଗଲ, ବ. ପୁଂ. ଗଙ୍ଗା ଯମୁନାର ଅନ୍ତର୍ବେଦୀର ଉତ୍ତରଭାଗସ୍ଥିତ ଜଙ୍ଗଲମୟ ଦେଶ ।

କୁରୁଣ୍ଟ, ବ. ପୁଂ. (କୁ-ରୁଣ୍ଠ୍-ଅ) ଝିଣ୍ଟିବୃକ୍ଷ ।

କୁରୁଣ୍ଟକ, ବ. ପୁଂ. (କୁ-ରୁଣ୍ଠ୍-ଅକ) ଦାସକୁରୁଣ୍ଟାଗଛ; ଦାସୀ । ଯଥା—

କେଶ୍ବେ କୁରୁଣ୍ଟକ,
ବେଶାଇ ବୋଇଲ ଏଣୁମେ ଭାବ । ସ. ବ.

କୁରୁଣ୍ଟୀ, ବ. ସ୍ତ୍ରୀ. (କୁ-ରୁଣ୍ଠ୍-ଅ-ଈ) କାଠର କଣ୍ଢେଇ ।

କୁରୁପତି, ବ. ପୁଂ. (କୁରୁ-ପତି) ଧୃତରାଷ୍ଟ୍ର ।

କୁରୁମ୍ବ, ଦେ. ନ. କମଳାଲେମ୍ବୁ ।

କୁରୁବିନ୍ଦ, ବ. ନ. ପୁଂ. ( କୁରୁ-ବିନ୍ଦ୍-ଅ ) ପଦ୍ମରାଗମଣି; ମୁସ୍ତା, ମୁଥା; ଦର୍ପଣ; ହିଙ୍ଗୁଳ । ଯଥା—

ଜଗାର ନବେତନ ହୋଇବୁ ରେ ନୂତନ
ମଦାଳବସ୍ତ୍ରବ୍ରଜ ନାଥଇ । ଜ. ଚ.

କୁରୁଳୀ, ବ. ସ୍ତ୍ରୀ. ଚୂର୍ଣ୍ଣକୁନ୍ତଳ । ଯଥା—

କାହା କହୁଛି କୁରୁଳୀ, କପୋଳେ ଯାଉଛି ଝଡ଼ । ଭ. ଭ.

କୁରୁବିଲ୍ବ, ବ. ପୁଂ. (କୁରୁ-ବିଲ୍ବ) ପଦ୍ମରାଗମଣି ।

କୁରୁବସ୍ତ୍ର, ବ. ପୁଂ. (କୁରୁ-ବସ୍ତ୍ର) ଗୃହରଜତ ସୁନା ।

କୁରୁଦ୍ଧବ, ବ. ପୁଂ. (କୁରୁ-ଦ୍ଧବ) ଭୀଷ୍ମ ।

କୁର୍ଦ୍ଦନ, କୂର୍ଦ୍ଦନ, ବ. ନ. (କୁର୍ଦ୍ଦ, କୂର୍ଦ୍ଦ-ଅନ) କ୍ରୀଡ଼ା; ଆସ୍ଫାଳନ; ଡିଆଁବା ।

କୂର୍ପର, ବ. ପୁଂ. (କୁର୍-ପର) ଜାନୁ, ଜଙ୍ଘ; କହୁଣି ।

କୂର୍ପାସ, କୂର୍ପାସକ, ବ. ପୁଂ. ନ. (କୂର୍ପ-ଅସ୍-ଅ; କ ଯୋଗେ କୂର୍ପାସକ) କାଞ୍ଚୁଲି ।

କୁଳ, ବ. ନ. (କୁ-ଳ) ବଂଶ; ଗୋଷ୍ଠୀ; ଜାତିସମୂହ; ଭବନ, ଗୃହ; ଜନପଦ; ଦେହ, କ୍ଷେତ୍ରବିଶେଷ ।

କୁଳକ, ବ. ପୁଂ. ନ. (କୁଳ-କୈ-ଅ) ଏକ କର୍ତ୍ତା ବା ଏକ କ୍ରିୟାପଦ ସହିତ ବହୁ ଶ୍ଳୋକ ।

ଦ୍ୱାଭ୍ୟାଂ ଯୁଗ୍ମମିତି ପ୍ରୋକ୍ତଂ ତ୍ରିଭିଃ ଶ୍ଳୋକୈର୍ବିଶେଷକମ୍ ।
କଲାପକଂ ଚତୁର୍ଭିଃ ସ୍ୟାତ୍ ତଦୂର୍ଦ୍ଧ୍ୱଂ କୁଳକଂ ସ୍ମୃତମ୍ ।

ପୋଟଳ ଗଛ; ବଲ୍ମୀକ; କୁଳଶ୍ରେଷ୍ଠ; ସ୍ୱବଂଶଶ୍ରେଷ୍ଠ ପୁରୁଷ ।

କୁଳକୁଣ୍ଡଳିନୀ, ବ. ସ୍ତ୍ରୀ. (କୁଳ-କୁଣ୍ଡଳିନୀ ) ତନ୍ତ୍ରଶାସ୍ତ୍ର ପ୍ରସିଦ୍ଧ ମୂଳାଧାରସ୍ଥ ସର୍ପାକୃତି ଶକ୍ତିବିଶେଷ ।

କୁଳକ୍କୁ, ବି. ପୁଂ. (କୁ-ଲକ୍କୁ-ଅ) କରଡାଳୀ ।

କୁଲକ୍ଷଣ, ବି. ପୁଂ. (କୁ-ଲକ୍ଷଣ) ମନ୍ଦ ଚିହ୍ନ, ଅଶୁଭ ଚିହ୍ନ ।

କୁଲକ୍ଷଣା, ବିଂ. (କୁ-ଲକ୍ଷଣା) ଦୁର୍ଭାଗା; ମନ୍ଦଭାଗ୍ୟା ।

କୁଳଜ, ବିଂ. ( କୁଳ-ଜ ) ସତ୍‌କୁଳଜାତ; ସଦ୍‌ବଂଶୋତ୍ପନ୍ନ ।

କୁଳଟା, ବିଂ. (କୁଳ-ଅଟ୍-ଅ) ଅସତୀ, ଦୁଷ୍ଟା; କୁଳତ୍ୟକ୍ତା; ପତି-ତ୍ୟକ୍ତା ।

କୁଳତନ୍ତୁ, ବି. ପୁଂ. ( କୁଳ-ତନ୍ତୁ ) ସନ୍ତାନ, ଅପତ୍ୟ ।

କୁଳତିଳକ, ବିଂ. ବଂଶର ଚୂଡ଼ାମଣି, ଯାହାର ଗୁଣ ଏବଂ କ୍ଷମତାରେ ବଂଶର ଗୌରବ ବୃଦ୍ଧି ହୁଏ ।

କୁଳତ୍ଥ, ବି. ପୁଂ. (କୁଳ-ସ୍ଥା-ଅ) କୋଳଥ ।

କୁଳଦେବତା, ବି. ସ୍ତ୍ରୀ. (କୁଳ-ଦେବତା) ବଂଶାନୁକ୍ରମେ କୁଳପୂଜ୍ୟ ଦେବତା ।

କୁଳଧର୍ମ, ବି. ପୁଂ. (କୁଳ-ଧର୍ମ) ସ୍ୱଜାତୀୟ ଧର୍ମ, କୁଳାଚାର ।

କୁଳଧାରକ, ବି. ପୁଂ. (କୁଳ-ଧାର-ଅକ) ବଂଶଧର, ପୁତ୍ର ।

କୁଳନାରୀ, ବି. ସ୍ତ୍ରୀ. ( କୁଳ-ନାରୀ ) କୁଳକନ୍ୟା, କୁଳସ୍ତ୍ରୀ ।

କୁଳନାଶ, ବି. ପୁଂ. (କୁଳ-ନାଶ) ବଂଶ ଧ୍ୱଂସ, ବଂଶ ଲୋପ; ଉଷ୍ଟ୍ର, ଓଟ । ବିଂ. କୁଳନାଶକ; ପତିତ ।

କୁଳନ୍ଧର, ବି. ପୁଂ. (କୁଳ-ଧୃ-ଅ) ବଂଶଧର, ପୁତ୍ର ।

କୁଳପତି, ବି. ପୁଂ. ( କୁଳ-ପତି ) କୁଳଶ୍ରେଷ୍ଠ; ବଂଶର ପ୍ରଧାନ ବ୍ୟକ୍ତି; ଆଶ୍ରମର ସବ ପ୍ରଧାନ ମୁନି ।

କୁଳପର୍ବତ, ବି. ପୁଂ. (କୁଳ-ପର୍ବତ) ମହେନ୍ଦ୍ର, ମଳୟ, ସହ୍ୟ, ଶୁକ୍ତିମାନ୍, ଋକ୍ଷ, ବିନ୍ଧ୍ୟ, ପାରିପାତ୍ର ଏହି ସାତ କୁଳ ପର୍ବତ—

"ମହେନ୍ଦ୍ରୋ ମଳୟଃ ସହ୍ୟଃ ଶୁକ୍ତିମାନୃକ୍ଷପର୍ବତଃ । ..." କୁଳ ପର୍ବତ ।

କୁଳପାଳକ, ବିଂ. (କୁଳ-ପାଳକ). ବଂଶରକ୍ଷକ; ବଂଶର ପାଳକ । ବି. ନ. କମଳାଲେମ୍ବୁ ।

କୁଳପାଳି, କୁଳପାଳିକା, ବି. ସ୍ତ୍ରୀ. (କୁଳ-ପାଳି, ପାଳିକା) ପତିବ୍ରତା ସ୍ତ୍ରୀ, କୁଳବଧୂ, ସାଧ୍ୱୀ ସ୍ତ୍ରୀ ।

କୁଳମ୍ଭର, ବି. ପୁଂ. ଚିଡ଼ିଗ୍ରେର ।

କୁଳଲକ୍ଷଣ, ବି. ପୁଂ. (କୁଳ-ଲକ୍ଷଣ) ୯ ପ୍ରକାର କୁଳର ଚିହ୍ନ । ଯଥା—ଆଚାର, ବିନୟ, ପ୍ରତିଷ୍ଠା, ବିଦ୍ୟା, ତୀର୍ଥଦର୍ଶନ, ନିଷ୍ଠା, ବୃତ୍ତି, ତପସ୍ୟା, ଦାନ । ଯଥା—

ଆଚାରୋ ବିନୟୋ ବିଦ୍ୟା ପ୍ରତିଷ୍ଠା ତୀର୍ଥଦର୍ଶନମ୍
ନିଷ୍ଠାବୃତ୍ତିସ୍ତପୋଦାନଂ ନବଧା କୁଳଲକ୍ଷଣମ୍ ।

କୁଳବତୀ, ବି.ସ୍ତ୍ରୀ. (କୁଳ-ବତ୍-ଈ) ପତିବ୍ରତା ସ୍ତ୍ରୀ ।

କୁଳବଧୂ, କୁଳବାଳା, ବି. ସ୍ତ୍ରୀ. (କୁଳ-ବଧୂ, ବାଳା) କୁଳକନ୍ୟା, କୁଳସ୍ତ୍ରୀ ।

କୁଳବାର, ବି. ପୁଂ. (କୁଳ-ବାର) ମଙ୍ଗଳ ଓ ଓ ଶୁକ୍ରବାର ।

କୁଳବିଦ୍ୟା, ବି.ସ୍ତ୍ରୀ. କୁଳକ୍ରମାଗତ ବିଦ୍ୟା, ବଂଶପରମ୍ପରାରେ ଶିକ୍ଷଣୀୟା ବିଦ୍ୟା ।

କୁଳବ୍ରତ, ବି. ନ. (କୁଳ-ବ୍ରତ) କୁଳ କ୍ରମରେ କର୍ତ୍ତବ୍ୟ ବ୍ରତ ।

କୁଳସମ୍ଭବ, ବିଂ. (କୁଳ-ସମ୍ଭବ) ଯେ କୌଣସି ବଂଶରୁ ଉତ୍ପନ୍ନ ।

କୁଳା, ବି. (କୁଲ୍ୟ ଶବ୍ଦଜ) ସୂର୍ପ, ତଣ୍ଡୁଳାଦି ପାଛୁଡିବା ନିମିତ୍ତ ବାଉଁଶନିର୍ମିତ ପାତ୍ରବିଶେଷ ।

କୁଳାଙ୍ଗାର, ବିଂ. ( କୁଳ-ଅଙ୍ଗାର ) କୁଳାଧମ, ଯାହାର ଚରିତ୍ରଦୋଷରୁ କୁଳର କଳଙ୍କ ହୁଏ ।

କୁଳାଚାର, ବି. ପୁଂ. (କୁଳ-ଆଚାର) କୁଳାଚରିତ ଧର୍ମ, କୁଳଧର୍ମ ।

କୁଳାଚାର୍ଯ୍ୟ, ବି. ପୁଂ. (କୁଳ-ଆଚାର୍ଯ୍ୟ) କୁଳପୁରୋହିତ; ଘଟକ ।

କୁଳାୟ, ବି. ପୁଂ. (କୁଳ-ଅୟ) ପକ୍ଷିର ବସା, ନୀଡ଼; ବାସସ୍ଥାନ । ନ. ଶରୀର ।

କୁଲାୟସ୍ଥ, ବି. ପୁଂ. (କୁଲାୟ-ସ୍ଥ) ପକ୍ଷୀ ।

କୁଲାଳ, ବି. ପୁଂ. (କୁଲ୍-ଅଳ) କୁମ୍ଭକାର, କୁମ୍ଭାର । ଯଥା—

କୁଲାଳ ଚକ୍ର ପ୍ରାଏ ଭ୍ରମିଲ ଚିତ୍ତ ।

ପକ୍ଷିବିଶେଷ ।

କୁଲାହକ, ବି. ପୁଂ. (କୁଲ-ଆ-ହନ୍-କ) ଏଣ୍ଡୁଅ ।

କୁଲି, ବି. ସ୍ତ୍ରୀ. (କୁଲ୍-ଇ) କଣ୍ଟକାରି ବୃକ୍ଷ । ପୁଂ. ହସ୍ତ; (କୁଳୁକ ଶବ୍ଦଜ) ମୁଖ ମଧ୍ୟରେ ପାଣି ପୂରାଇ କୁଳ କୁଳ ଶବ୍ଦ କରି ବାହାରକୁ ପକାଇ ଦେବା ।

କୁଳିର, କୁଳୀର, ବି. ପୁଂ. (କୁଲ୍-ଇର, ଈର) କର୍କଟ, କଙ୍କଡ଼ା; ଚତୁର୍ଥ ରାଶି ।

କୁଲିଶ, କୁଲୀଶ, ବି. ପୁଂ. ନ. (କୁଲି, କୁଲୀ-ଶ) ଇନ୍ଦ୍ରର ବଜ୍ର; ମତ୍ସ୍ୟବିଶେଷ; ଅଗ୍ରଭାଗ । (ଇନ୍ଦ୍ରର ବଜ୍ର ଅର୍ଥରେ) ଯଥା—

ବୃଷ୍ଟି ବର୍ଷିବା ବେଳେ କୁଳିଶ ବୃଷ୍ଟି କଲୁ । ଲ. ବ.

କୁଲୀ, ବି. ପୁଂ. (ଯାବନିକ) ମୂଲିଆ ।

କୁଲୀ, ବି. ସ୍ତ୍ରୀ. (କୁ-ଲୀ) ପତ୍ନୀର ଜ୍ୟେଷ୍ଠା ଭଗିନୀ; କଣ୍ଟକାରି ।

କୁଲୀ, ବି. ପୁଂ. (କୁଲ-ଇନ୍) ପର୍ବତ । ବିଂ. ସତ୍-କୁଳୋଦ୍ଭବ ।

କୁଲୀନ, ବିଂ. (କୁଲ-ଈନ) ସଦ୍‌ବଂଶୀୟ, ସତ୍-କୁଳୋଦ୍ଭବ । ବି. ପୁଂ. ଶ୍ରେଷ୍ଠ ଅଶ୍ୱ ।

କୁଲୀନସ, ବି. ନ. ଜଳ ।

କୁଲୁକ, ବି. ନ. (କୁଲ୍-ଉକ) ଜିହ୍ୱା ମୂଳ, ଜିଭର ମୟଳା ।

କୁଳୁକୁଞ୍ଚା, ବି. (ଦେଶଜ) ମୁଖ ମଧ୍ୟରେ ପାଣି ପୂରାଇ କୁଳ କୁଳ କରି ପକାଇ ଦେବା ।

କୁଲେଶ୍ୱର, ବି. ପୁଂ. (କୁଲ-ଈଶ୍ୱର) ଶିବ; କୁଳପତି ।

କୁଲୋତ୍କଟ, ବି. ପୁଂ. (କୁଲ-ଉତ୍କଟ) ଶ୍ରେଷ୍ଠ ଘୋଟକ । ବିଂ. ମହାକୁଳ ପ୍ରସୂତ ।

କୁଲୋଦ୍‌ବହ, ବିଂ. (କୁଲ-ଉଦ୍‌ବହ) ବଂଶଧର, କୁଳଶ୍ରେଷ୍ଠ, କୁଳପାଳକ ।

କୁଲ୍ମାଷ, କୁଲ୍ମାସ, ବି.ପୁଂ. ନ. (କୁଲ-ମଷ୍, ମସ୍-ଅ) କାଞ୍ଜି, ଖଟାତୋରାଣୀ; ଅପକ୍ୱ ଯବ; ରୋଗବିଶେଷ; ବଣକୋଳଥ ।

କୁଲ୍ୟ, ବି. ନ. (କୁଲ-ଯ) ଅସ୍ଥି; ମାଂସ; ପରିମାଣ-ବିଶେଷ; ସୂର୍ପ । ପୁଂ. ମାନ୍ୟ ବ୍ୟକ୍ତି । ବିଂ. ସତ୍-କୁଳୋଦ୍ଭବ ।

କୁଲ୍ୟା, ବି. ସ୍ତ୍ରୀ. (କୁଲ୍ୟ-ଆ) ପ୍ରସ୍ତୁତ କରା ହୋଇ-ଥିବା କ୍ଷୁଦ୍ର ନଦୀ; ଦୁର୍ଗର ଚତୁର୍ଦ୍ଦିଗ ବେଷ୍ଟନ କରିଥିବା ମନୁଷ୍ୟାଦିଦ୍ୱାରା ଖୋଦିତ ନଦୀ, ଖାଇ; ପ୍ରବାହ; ବୃହତ୍ ଗର୍ତ୍ତ; ନର୍ଦ୍ଦମା; କୁଲସ୍ତ୍ରୀ ।

କୁବଙ୍ଗ, ବି. ନ. (କୁ-ବଙ୍ଗ) ସୀସକ, ସୀସା ।

କୁବଚ, ବିଂ. (କୁ-ବଚ) କଟୁଭାଷୀ, ପରନିନ୍ଦକ ।

କୁବଲ, ବି. ନ. (କୁ-ବଲ) ଉତ୍ପଳ; ଡାଳିମ୍ବ; ମୁକ୍ତାଫଳ; ବଦରୀଫଳ, କୋଳି । ଲୀ=ସ୍ତ୍ରୀ. କୋଳିଗଛ ।

କୁବଲୟ, ବି. ନ. (କୁ-ବଲ-ଅୟ) ପଦ୍ମ; ନୀଳ ପଦ୍ମ; ଶ୍ୱେତପଦ୍ମ; ମୁକ୍ତାଫଳ; ସମୁଦ୍ର; ପୃଥ୍ୱୀ । (ମୁକ୍ତାଫଳ ଅର୍ଥରେ) ଯଥା—

କୁବଳୟ ଫଳ ମଣ୍ଡିଥିବ ଶୁକନାସେ । ପ୍ରେ. ସୁ.

(ସମୁଦ୍ର ଅର୍ଥରେ) ଯଥା—

କୁବଳୟ ସଙ୍ଗ ପାଇବା ପାଇଁ,<br>
ବେଗେ ମାର୍ଗରେ ନଦୀମାନେ ଯାଇ । ର. କ.

କୁବଲୟାପୀଡ, ବି. ପୁଂ. (କୁବଲୟ-ଆପୀଡ) କଂସାସୁରର ହସ୍ତିରୂପୀ ଦୈତ୍ୟବିଶେଷ । ବିଂ. ନୀଳୋତ୍ପଳ ଯାହାର ଭୂଷଣ ହୋଇଅଛି ।

କୁବଲୟିନୀ, ବି. ସ୍ତ୍ରୀ. (କୁବଲୟ-ଇନ୍-ଈ) ପଦ୍ମିନୀ ।

କୁବାଦ, ବିଂ. (କୁ-ବାଦ) କଟୁଭାଷୀ । ବି. ପୁଂ. କଟୂକ୍ତି ।

କୁବାହୁଳ, ବି. ପୁଂ. ଉଷ୍ଟ୍ର ।

କୁବିନ୍ଦ, ବି. ପୁଂ. (କୁ-ବିନ୍ଦ) ତନ୍ତୁବାୟ, ତନ୍ତୀ; କୃପଣ ।

କୁବେଣି, କୁବେଣୀ, ବ. ସ୍ତ୍ରୀ. (କୁ-ବେଣି, ବେଣୀ) ମାଛ ରଖିବାର ଖାଲୋଇ; କୁତ୍ସିତ ବେଶ-ବଶିଷ୍ଟା ସ୍ତ୍ରୀ ।

କୁବେର, ବ. ପୁଂ. ( କୁ-ବେର ) ଯକ୍ଷରାଜ, ଧନାଧିପ । ବିଂ. ଅଳସ; କୁତ୍ସିତ ଶରୀର-ବଶିଷ୍ଟ ।

କୁବେରାଚଳ, କୁବେରାଦ୍ରି, ବ. ପୁଂ. (କୁବେର-ଅଚଳ, ଅଦ୍ରି) କୈଳାସ ପର୍ବତ ।

କୁବେଳ, ବ. ନ. (କୁ-ବେଳ୍-ଅ) କୁବଳୟ ।

କୁବ୍ର, ବ. ନ. (କୁନ୍ବ୍-ର) ଅରଣ୍ୟ; ବନ ।

କୁଶ, ବ. ପୁଂ. ନ. (କୁ-ଶ) ପ୍ରସିଦ୍ଧ ତୃଣ । ପୁଂ. ରାମଚନ୍ଦ୍ରଙ୍କ ଜ୍ୟେଷ୍ଠ ପୁତ୍ର; ସପ୍ତଦ୍ୱୀପା ପୃଥିବୀର ଚୋଟିଏ ଦ୍ୱୀପ, କୁଶଦ୍ୱୀପ । ନ. ଯୋକ୍ତ୍ର, ଯୋତଦଉଡ଼ି; ଜଳ । ବିଂ. ମତ୍ତ; ପାପିଷ୍ଠ ।

କୁଶଣ୍ଡିକା, ବ. ସ୍ତ୍ରୀ. (କୁଶ-ଅଣ୍ଡ-କ-ଆ) ଅଗ୍ନ୍ୟାଧାନ-କାଳର ଧର୍ମକାର୍ଯ୍ୟବିଶେଷ ।

କୁଶଧ୍ୱଜ, ବ. ପୁଂ. ଜନକ ରାଜାଙ୍କର କନିଷ୍ଠ ଭ୍ରାତା ।

କୁଶର, ବ. ପୁଂ. ଶର ସଦୃଶ ତୃଣବିଶେଷ; କୁତ୍ସିତ ବାଣ ।

କୁଶଳ, କୁଷଳ, କୁସଳ, ବ. ନ. (କୁଶଳ୍-ଅ) ମଙ୍ଗଳ; ନିରାପଦ; ମୋକ୍ଷ; ପୁଣ୍ୟ, ଧର୍ମ; ସାମର୍ଥ୍ୟ । ବିଂ. କୁଶଳୀ; ନିପୁଣ, ଦକ୍ଷ, କୃତୀ ।

କୁଶଳୀ, ବିଂ. ( କୁଶଳ-ଇନ୍ ) କୁଶଳଯୁକ୍ତ, କଲ୍ୟାଣଯୁକ୍ତ ।

କୁଶସ୍ଥଳ, ବ. ନ. ( କୁଶ-ସ୍ଥଳ ) କାନ୍ୟକୁବ୍ଜ ଦେଶ ।

କୁଶସ୍ଥଳୀ, ବ. ସ୍ତ୍ରୀ. (କୁଶ-ସ୍ଥଳୀ) ଦ୍ୱାରକାପୁର ।

କୁଶା, ବ. ସ୍ତ୍ରୀ. (କୁ-ଶ-ଆ) ରଜ୍ଜୁ; ଲଗାମ ।

କୁଶାକର, ବ. ପୁଂ. (କୁଶ-ଆକର) ଯଜ୍ଞାଗ୍ନି ।

କୁଶାକ୍ଷ, ବ. ପୁଂ. (କୁଶ-ଅକ୍ଷ) ବାନର ।

କୁଶାଙ୍କୁର, ବ. ପୁଂ. (କୁଶ-ଅଙ୍କୁର) କୁଶର ଅଗ୍ର-ଭାଗ । ଯଥା—

> କୋମଳ ଚରଣେ କୁଶାଙ୍କୁରଘାତ
> ବାହୁ ଶୋଣିତ ବହୁବ ॥ ବ. କୃ.

କୁଶାଗ୍ରୀୟ, ବିଂ. (କୁଶ-ଅଗ୍ର-ଈୟ) କୁଶାଗ୍ର ପରି ସୂକ୍ଷ୍ମ, ଅତି ତୀକ୍ଷ୍ଣ ।

କୁଶାରଣି, ବ.ପୁଂ. (କୁଶ-ଅରଣି) ଦୁର୍ବାସା ମୁନି ।

କୁଶାବତୀ, ବ. ସ୍ତ୍ରୀ. (କୁଶ-ବତୁ-ଈ) କୁଶ ରାଜାର ରାଜଧାନୀ ।

କୁଶାସନ, ବ. ନ. ( କୁଶ-ଆସନ ) କୁଶନିର୍ମିତ ଆସନ । ବିଂ. ( କୁ=କୁତ୍ସିତ-ଆସନ ) ମନ୍ଦ ଶାସନ ।

କୁଶିକ, ବ. ପୁଂ. ( କୁଶ-ଇକ ) ମୁନିବିଶେଷ, ଜମଦଗ୍ନିର ପିତା; ବିଶ୍ୱାମିତ୍ରଙ୍କର ପିତା; ଶାଳ ବୃକ୍ଷ; ଅଶ୍ୱକର୍ଣ୍ଣବୃକ୍ଷ ।

କୁଶିତ, କୁସିତ, ବ. ନ. ( କୁଶ୍, କୁସ୍-ଇତ ) ଦେଶବିଶେଷ । ବିଂ. ଈଷତ୍ ଶୁଭ୍ର; ସ୍ୱଚ୍ଛ; ଜଳମିଶ୍ରିତ ।

କୁଶୀ, ବ. ପୁଂ. (କୁଶ-ଇନ୍) ବାଲ୍ମୀକି ।

କୁଶୀ, ବ. ସ୍ତ୍ରୀ. (କୁଶ୍-ଈ) ରଜ୍ଜୁ, ଲଗାମ; ଲଙ୍ଗଳ ଲୁହା ।

କୁଶୀଦ, କୁଷୀଦ, କୁସୀଦ, ବ. ନ (କୁଶ-ଈ-ଦ) ବୃଦ୍ଧିଜୀବିକା, ସୁଦ; ରକ୍ତଚନ୍ଦନ । ବିଂ. ବୃଦ୍ଧି-ଜୀବୀ ।

କୁଶୀଦଜୀବୀ, ବିଂ. (କୁଶୀଦ-ଜୀବୀ) ଟଙ୍କା ଉଧାର ଦେଇ ସୁଦ ନେବା ଯାହାର ବ୍ୟବସାୟ, ବୃଦ୍ଧିଜୀବୀ ।

କୁଶୀଦବ୍ୟବହାର, ବ. ପୁଂ. ସୁଦ କହିବା; ସୁଦ ନେଇ ଟଙ୍କା କରଜ ଦେବା ।

କୁଶୀଳ, ବିଂ. (କୁ-ଶୀଳ) ଦୁଃଶୀଳ, ଅସତ୍ସ୍ୱଭାବ ।

କୁଶୀଳବ, ବ. ପୁଂ. (କୁ-ଶୀଳ-ବ) ନଟ, ନର୍ତ୍ତକ; ନୃତ୍ୟ-ଗୀତ-ବାଦ୍ୟ ଯାହାର ବ୍ୟବସାୟ; ଭରତ ମୁନି; କବି; ଯାଚକ । ପୁଂ. ଦ୍ୱିଂ. ରାମଚନ୍ଦ୍ରଙ୍କର ଦୁଇ ପୁତ୍ର ।

କୁଶୂଳ, କୁସୂଳ, ବ. ପୁଂ. (କୁଶ୍, କୁସ୍-ଊଳ) ଧାନ୍ୟାଦି ରଖିବାର ଘର; ତୁଷାନଳ ।

କୁଶେଶୟ, ବି. ନ. ( କୁଶେ-ଶୟ ) ପଦ୍ମ । ପୁଂ. ସାରସପକ୍ଷୀ; କର୍ଣ୍ଣିକାର ବୃକ୍ଷ, କନିଅର ଗଛ ।

କୁଷାକୁ, ବି. ପୁଂ. ( କୁଷ୍-ଆକୁ ) ବାନର; ଅଗ୍ନି; ସୂର୍ଯ୍ୟ । ବିଂ. ଉତ୍ତାପକ ।

କୁଷ୍ଠ, ବି. ନ. (କୁଷ୍-ଠ) କୁଷ୍ଠରୋଗ, ମହାବ୍ୟାଧି; ଏକପ୍ରକାର ଔଷଧ; ବୃକ୍ଷବିଶେଷ, କୁଡ଼ ।

କୁଷ୍ଠଘ୍ନ, ବିଂ. ( କୁଷ୍ଠ-ହନ୍-ଅ ) କୁଷ୍ଠନାଶକ ଔଷଧ ।

କୁଷ୍ଠୀ, ବିଂ. (କୁଷ୍ଠ-ଇନ୍) କୁଷ୍ଠରୋଗଯୁକ୍ତ ।

କୁଷାଣ୍ଡ, କୁଷ୍ମାଣ୍ଡ, ବି. ପୁଂ. (କୁ, କୁ-ଉଷ୍ମ-ଅଣ୍ଡ ) କଖାରୁ; ଶିବର ଅନୁଚରବିଶେଷ; ଗର୍ଭିଣୀର ଗର୍ଭସ୍ଥଳୀ, ଜରାୟୁ । ସ୍ତ୍ରୀ. ଦୁର୍ଗା ।

କୁସଂସ୍କାର, ବି. ପୁଂ. ସମୁଚିତ ବିବେଚନା ନ କରି ଯେଉଁ ସିଦ୍ଧାନ୍ତ କରାଯାଏ, ବିପରୀତ ସଂସ୍କାର ।

କୁସିତ, ବି. ପୁଂ. (କୁସ୍-ଇତ) ଦେଶବିଶେଷ । ବିଂ. (କୁ-ସିତ) ଈଷତ୍ ଶୁଭ୍ରବର୍ଣ୍ଣ ।

କୁସିମ୍ବୀ, ବି. ସ୍ତ୍ରୀ. ସୀମ୍ବ ଗଛ ।

କୁସୀଦକ. ବିଂ. (କୁସୀଦ-ଇକ) ବୃଦ୍ଧିଜୀବୀ, ଯେ ସୁଦ ନେଇ ଟଙ୍କା କର୍ଜ ଦିଏ ।

କୁସୁମ, ବି. ନ. ( କୁସ୍-ଉମ ) ପୁଷ୍ପ; ଫଳ; ସ୍ତ୍ରୀଲୋକର ଋତୁ; ଚକ୍ଷୁର ରୋଗବିଶେଷ ।

କୁସୁମପୁର, ବି. ନ. (କୁସୁମ-ପୁର) ପାଟଳିପୁତ୍ରନଗର, ପାଟନା ।

କୁସୁମମଧ୍ୟ, ବି. ନ. (କୁସୁମ-ମଧ୍ୟ) ଓଅଉଗଛ ।

କୁସୁମରାଜ, ବି. ପୁଂ. (କୁସୁମ-ରାଜା) କାମ ।

କୁସୁମସମୟ, ବି. ପୁଂ. (କୁସୁମ-ସମୟ) ବସନ୍ତ; ଋତୁକାଳ ।

କୁସୁମାକର, } ବି. ପୁଂ. (କୁସୁମ-ଆକର,ଆଗମ)
କୁସୁମାଗମ, } ବସନ୍ତ କାଳ, ଯେଉଁ ଋତୁରେ କୁସୁମ ଜନ୍ମଇ ।

କୁସୁମାତ୍ମକ, ବି. ନ. କୁଙ୍କୁମ ।

କୁସୁମାୟୁଧ, କୁସୁମାସ୍ତ୍ର, କୁସୁମେଷୁ, ବି.ପୁଂ. (କୁସୁମ-ଆୟୁଧ, ଅସ୍ତ୍ର, ଇଷୁ ) ମଦନ, କନ୍ଦର୍ପ ।

କୁସୁମାସବ, ବି. ନ. (କୁସୁମ-ଆସବ) ମକରନ୍ଦ, ମଧୁ ।

କୁସୁମିତ, ବିଂ. (କୁସୁମ-ଇତ) ପୁଷ୍ପିତ, ଯାହାର କୁସୁମ ହୋଇଅଛି ।

କୁସୁମ୍ଭ, ବି.ପୁଂ. (କୁସ୍-ଉମ୍ଭ) କୁସୁମ୍ଭଫୁଲ; କମଣ୍ଡଳୁ; ସ୍ୱର୍ଣ୍ଣ ।

କୁସୂ, ବି. ପୁଂ. (କୁ-ସୂ) ଜଳନାଳ ।

କୁସୃତି, ବି. ସ୍ତ୍ରୀ. (କୁ-ସୃ-ତି) ଶଠତା, ଦୁର୍ବୃତ୍ତତା; କୁହକ, ଇନ୍ଦ୍ରଜାଲ ।

କୁସୃଷ୍ଟି, ବି. ସ୍ତ୍ରୀ. (କୁ-ସୃଷ୍ଟି) ଦୁରଭିସନ୍ଧି, ମନ୍ଦ ଅଭିପ୍ରାୟ ।

କୁସ୍ତି, ବି. (ଯାବନିକ) ଶରୀରଚାଳନ; ଯୁଦ୍ଧ ।

କୁସ୍ତୁଭ, ବି. ପୁଂ. (କୁ-ସ୍ତୁମ୍ଭ-ଅ) ବିଷ୍ଣୁ; ସମୁଦ୍ର ।

କୁହ, ବି. ପୁଂ. (କୁ-ହା-ଅ) କୁବେର । ଅଂ. କୁତ୍ର, କେଉଁ ସ୍ଥାନରେ ।

କୁହକ, ବି. ନ. (କୁହ୍-ଅକ) ଇନ୍ଦ୍ରଜାଲ, ଭେଲ୍କି; ଛଳ, ପ୍ରତାରଣା । ପୁଂ. ନାଗବିଶେଷ ।

କୁହକସ୍ୱନ, କୁହକସ୍ୱର, ବି ପୁଂ. ( କୁହକ-ସ୍ୱନ, ସ୍ୱର ) କୁକ୍କୁଟ, କୁକୁଡ଼ା ।

କୁହକୀ, ବିଂ. (କୁହକ-ଇନ୍) ଐନ୍ଦ୍ରଜାଲିକ, ବାଜିକର; ପ୍ରତାରକ ।

କୁହନ, ବି. ପୁଂ. (କୁହ-ଅନ) ମୂଷିକ; ଚୌର; ସର୍ପ; କାଚପାତ୍ର; ମୃଦ୍ଭାଣ୍ଡ ।

କୁହନା, ବି. ସ୍ତ୍ରୀ. ( କୁହନ-ଆ ) ଦମ୍ଭାଚରଣ; ଗର୍ବ ବା ଲୋଭବଶତଃ ଅଳୀକ ଧାର୍ମିକତା ଦେଖାଇବା । ବିଂ. ଈର୍ଷାବିଶିଷ୍ଟ; ଈର୍ଷାଳୁ

କୁହର, ବି. ନ. (କୁ-ହୃ-ଅ) ଗହ୍ୱର; ଛିଦ୍ର; କଣ୍ଠଧ୍ୱନି; କର୍ଣ୍ଣ କଣ୍ଠ; ସମୀପ । ପୁଂ. ନାଗବିଶେଷ । ଯଥା—

ଝରଣ ଏଡ଼ୁ ଗିରି ଚଣି କର୍ଣ୍ଣ କୁହର,
ଅଟୀକି ଅଇଲି ବଧିର । ସୁ. ଦ.

କୁହରିତ, ବି. ନ. (କୁହର-ଇତ) କୋକିଳଧ୍ୱନି; ଧ୍ୱନି । ବିଂ. ଧ୍ୱନିତ ।

କୁହାଟ, ବି. (କୁହୁଶବ୍ଦଜ) ଉଚ୍ଚଡାକ । ଯଥା—
ପୁଣି ତାହାକୁ ଡାକନ୍ତି କହାଟି,
ଶଢ଼ା କରିଣ ହିଅ ଦାଉ ଭଟି ।

କୁହୁ, କୁହୂ, ବି. ସ୍ତ୍ରୀ. (କୁହ-ଉ, ଊ) ଅମାବାସ୍ୟା; କୋକିଳ ଧ୍ୱନି ।

କୁହୁଡ଼, ବି.(ପ୍ରା; କୁହେଳିକା ଶବ୍ଦଜ) କୁଜ୍ଝଟିକା ।

କୁହୂକଣ୍ଠ, ବି. ପୁଂ. (କୁହୂ-କଣ୍ଠ) କୋକିଳ ।

କୁହୂରବ, ବି. ପୁଂ. ( କୁହୂ-ରବ ) କୋକିଳ; କୁହୁଧ୍ୱନି ।

କୁହୂଣ୍ଡା, ବି. ( ଦେଶଜ ) ଶିକୁଳି ଅଟକାଇବା ନିମନ୍ତେ ଦ୍ୱାରରେ ଦିଆ ଯାଇଥିବା ଲୌହ କଣ୍ଟା ।

କୁହେଳିକା, ବି. ସ୍ତ୍ରୀ. (କୁ-ହେଡ଼୍-ଅକ-ଆ, ଡ= ଳ) କୁଜ୍ଝଟିକା, କୁହୁଡ଼ି ।

କୂ, ବି. ସ୍ତ୍ରୀ. (କୂ-୦) ପିଶାଚୀ ।

କୂକୁଦ, କୁକୁଦ, ବି. ପୁଂ. (କୁକ୍-ନିପାତନ ସିଦ୍ଧ) ଯେଉଁ ବ୍ୟକ୍ତି ଅଳଙ୍କୃତା କନ୍ୟାକୁ ବିଧିପୂର୍ବକ ସତ୍ପାତ୍ରରେ ଦାନ କରେ ।

କୂଚିକା, ବି. ସ୍ତ୍ରୀ. (କୁଚ-ଅକ, ଉ=ଊ) ତୂଳିକା, ତୂଳି ।

କୂଜନ, ବି. ନ. ( କୂଜ୍=ଶବ୍ଦ କରିବା-ଅନ ) ଅବ୍ୟକ୍ତଧ୍ୱନି, ପକ୍ଷିର ଧ୍ୱନି । ଯଥା—
ଶାବକର ମା ସ୍ୱା ଶବ୍ଦ ଶୁଣିଗଲେ କାଢ଼ୁଁ
ବହୁରେ, ଶଫାନ ଦୂର କରନ୍ତି କୂଜନେ । ମ: ଯା:

କୂଜିତ, ବି. ନ. (କୂଜ୍-ତ) ପକ୍ଷିର ଧ୍ୱନି, ପକ୍ଷିର ଡାକ, ଅବ୍ୟକ୍ତ ଶବ୍ଦ ।

କୂଟ, ବି. ପୁଂ. ନ. ( କୂଟ୍-ଅ ) ପର୍ବତର ଶୃଙ୍ଗ; ଫାନ୍ଦ; ଜାଲ, କପଟ; ସମୂହ; ଶସ୍ୟରାଶି; ସ୍ତୂପ; ଦମ୍ଭ; ଲଙ୍ଗଳାଗ୍ରବିଶେଷ; କଳସ; ଲୌହ ମୁଦ୍ଗର; ମାୟା । ବିଂ. ମିଥ୍ୟା; କଳ୍ପିତ; ଦୁର୍ବୋଧ ।

କୂଟକ, ବି. ନ. (କୂଟ୍-ଅକ) ଲଙ୍ଗଳ ଲୁହା । ପୁଂ. ଜବସ୍ତ ।

କୂଟକର୍ମ, ବି. ନ. (କୂଟ-କର୍ମ) ଜାଲ; ପ୍ରତାରଣା ।

କୂଟକୃତ୍, ବି. ପୁଂ. ( କୂଟ-କୃତ୍ ) କାୟସ୍ଥ, ଲେଖକ ଜାତି । ବିଂ. ଜାଲକାରୀ ।

କୂଟତୁଲା, ବି. ସ୍ତ୍ରୀ. ଓଜନ କମ୍ପରେ ଶଠତା ।

କୂଟମୁଦ୍ରା, ବି. ସ୍ତ୍ରୀ. କୃତ୍ରିମ ଟଙ୍କା ।

କୂଟବନ୍ଧ, ପୁଂ. } ବି. (କୂଟ-ବନ୍ଧ, ଯନ୍ତ୍ର) ବନ୍ଧନୀ,
କୂଟଯନ୍ତ୍ର, ନ. } ଫାନ୍ଦ ।

କୂଟସଂକ୍ରାନ୍ତି, ବି. ସ୍ତ୍ରୀ. ଯେଉଁ ସଂକ୍ରାନ୍ତିରେ ଅର୍ଦ୍ଧରାତ୍ର ଉତ୍ତାରୁ ସୂର୍ଯ୍ୟ ଅନ୍ୟ ରାଶିକୁ ସଞ୍ଚରଣ କରନ୍ତି ।

କୂଟସାକ୍ଷୀ, ବି. ପୁଂ. (କୂଟ-ସାକ୍ଷୀ) ମିଥ୍ୟାସାକ୍ଷୀ, ଜାଲସାକ୍ଷୀ ।

କୂଟସ୍ଥ, ବିଂ. (କୂଟ-ସ୍ଥ) ସର୍ବକାଳବ୍ୟାପୀ, ଚିର-କାଳ ଏକାକୃତି । ଯଥା—ଆକାଶ, ଆତ୍ମା, ପରମେଶ୍ୱର; ଉଦାସୀନ ।

କୂଟାଗାର, ବି. ନ. (କୂଟ-ଅଗାର) ପ୍ରାସାଦର ସର୍ବୋପରି ଗୃହ, ନାରୀମାନଙ୍କର କ୍ରୀଡ଼ାଗୃହ ।

କୂଟାୟୁଧ, ବି. ନ. (କୂଟ-ଆୟୁଧ) କୂଟ-ଅସ୍ତ୍ର, କାଷ୍ଠାଦି ଆବରଣ ମଧ୍ୟରେ ଲୁକ୍କାୟିତ ଶସ୍ତ୍ର ଅସ୍ତ୍ର ।

କୂଟାର୍ଥ, ବି. ପୁଂ. (କୂଟ-ଅର୍ଥ) କଠିନାର୍ଥ, ସହଜ ଅର୍ଥ ନୁହେ, ଅନ୍ୟପ୍ରକାର ଅଭିପ୍ରାୟ; ବିରୁଦ୍ଧ ଅର୍ଥ; ଗୁପ୍ତ ଅର୍ଥ ।

କୂଣି, ବିଂ. (କୂଣ୍-ଇ) ନଖରୋଗୀ ।

କୂପ, ବି. ପୁଂ. (କୂ-ପ) କୂଅ; ଗର୍ତ୍ତ; ମାସ୍ତୁଲ ।

କୂପକ, ବି. ପୁଂ. (କୂପ-କ) ମାସ୍ତୁଲ ।

କୂପଦର୍ଦ୍ଦୁର, କୂପମଣ୍ଡୂକ, ବି. ପୁଂ. ( କୂପ-ଦର୍ଦ୍ଦୁର, ମଣ୍ଡୂକ ) କୂଅ ବେଙ୍ଗ । ବିଂ. ଅଦୂରଦର୍ଶୀ; କୂପର ଭେକ ଯେପରି କୂପରେ ରୁଦ୍ଧ ଥାଇ ଅପର ଜଳାଶୟ ବିଷୟ କିଛି ନ ଜାଣେ, ସେହିପରି ଯେଉଁ ବ୍ୟକ୍ତି କେବେହେଁ ଗୃହରୁ ବହିର୍ଗତ ନ ହୁଅଇ ଏବଂ ଅନ୍ୟ କୌଣସି ସ୍ଥାନର ବୃତ୍ତାନ୍ତ ନ ଜାଣେ ତାହାକୁ କୂପମଣ୍ଡୂକ ବୋଲିଯାଏ, ଯେଉଁ ବ୍ୟକ୍ତି ଅଳ୍ପଜ୍ଞ ହୁଏ ତାହାକୁ ହେୟଜ୍ଞାନ କରି କୂପମଣ୍ଡୂକ ଶବ୍ଦରେ ନିର୍ଦ୍ଦେଶ କରାଯାଏ ।

କୂପାଙ୍କ, } ବି. ପୁଂ. (କୂପ-ପଙ୍କ, ଅଙ୍ଗ)
କୂପାଙ୍ଗ, } ରୋମାଞ୍ଚ ।

କୂପାର, ବି. ପୁଂ. (କୂ-ପୃ-ଅ) ସମୁଦ୍ର ।

କୂପିକା, ବି. ସ୍ତ୍ରୀ. ଜଳମଧ୍ୟସ୍ଥିତ ପର୍ବତାଦି; କୁମ୍ଭା ।

କୂପୀ, ବି. ସ୍ତ୍ରୀ. ( କୂପ-ଈ ) ନଦୀମଧ୍ୟସ୍ଥ ପର୍ବତ ବା ବୃକ୍ଷ; ତୈଳପାତ୍ର, କୁମ୍ଭା ।

କୂମ, ବି. ନ. ସରୋବର ।

କୂମ୍ଭା, ବି. (ପ୍ରା) (କୂପୀ ଶବ୍ଦଜ) ତୈଳପାତ୍ର ।

କୂର, ବି. ପୁଂ., ନ. (କୁ-ଉର୍-ଅ) ଅନ୍ନ, ଭାତ ।

କୂର୍ଚ୍ଚ, ବି. ପୁଂ. ନ. ( କୂର୍-ଚ ବା କୁ-ଉର୍ଚ୍ଚ ) ଭ୍ରୂଦ୍ୱୟର ମଧ୍ୟସ୍ଥଳ; ଭ୍ରୂମଧ୍ୟସ୍ଥ ରୋମରସ୍ତୁ; ଦାଢ଼ି; ଅଗ୍ନି; ମସ୍ତକ; ଛଳ; ଦମ୍ଭ; ମୟୂରପୁଚ୍ଛ ।

କୂର୍ଚ୍ଚଶେଖର, ବି. ପୁଂ. (କୂର୍ଚ୍ଚ-ଶେଖର) ନାରିକେଳ ଗଛ ।

କୂର୍ଚ୍ଚିକା, ବି.ସ୍ତ୍ରୀ. (କୂର୍ଚ୍ଚ-ଅକ-ଆ) ତୁଳି;ପେନସିଲ୍; କଞ୍ଚି; ଛୁଞ୍ଚ; ଶାଳକା; କୁଞ୍ଚିକା, କଢ; ଗାଢଦୁଗ୍ଧ; କ୍ଷୀର ।

କୂର୍ପ, କୂର୍ବ, ବି. ପୁଂ. ନ. (କୁ-ପ, ବ) ନାସିକାର ଊର୍ଦ୍ଧ୍ୱଭାଗ; ଭ୍ରୂମଧ୍ୟ; ଦାଢ଼ି; ଜଣ ।

କୂର୍ପର, ବି. ପୁଂ. ( କୁର୍-ପର, ଉ=ଊ ) ଅଣ୍ଟୁ; କହୁଣି ।

କୂର୍ପାସ, ବି. ପୁଂ. ନ. ( କୂର୍ପ-ଅସ ) କଞ୍ଚୁକ, କାଞ୍ଚୁଲି ।

କୂର୍ମ, ବି. ପୁଂ. ( କୁ=ପୃଥିବୀ-ଊର୍ମି=ବେଗ-ଅ ) ଦେହସ୍ଥ ବାୟୁବିଶେଷ; କଚ୍ଛପ ।

କୂର୍ମପୃଷ୍ଠକ, ବି. ନ. (କୂର୍ମ-ପୃଷ୍ଠ-କ) ଶରା,ପିହାଣି ।

କୂଳ, ବି. ନ.(କୂଳ୍-ଅ)ତଟ, ଜଳାଶୟର ତୀର; ତଡ଼ାଗ, ପୋଖରୀ; ସ୍ତୂପ, ରାଶି; ସୈନ୍ୟପୃଷ୍ଠ ।

କୂଳକ, ବି. ପୁଂ. ନ. (କୂଳ୍-ଅକ) ସ୍ତୂପ; ତଟ ।

କୂଳଙ୍କଷ, ବି. ପୁଂ. (କୂଳମ୍-କଷ୍-ଅ) ସମୁଦ୍ର ।

କୂଳଙ୍କଷା, ବି. ସ୍ତ୍ରୀ. (କୂଳଙ୍କଷ-ଆ) ନଦୀ ।

କୂଳଭୂ, ବି. ସ୍ତ୍ରୀ. (କୂଳ-ଭୂ) ତଟପ୍ରଦେଶ,ତୀରଭୂମି ।

କୂଳବତୀ, ବି. ସ୍ତ୍ରୀ. (କୂଳ-ବତ୍-ଈ) ନଦୀ ।

କୂଳହୁଣ୍ଡକ, ବି. ପୁଂ. ( କୂଳ-ହୁଣ୍ଡ୍-ଅକ ) ଜଳାବର୍ତ୍ତ, ଜଳର ଭଉଁରି ।

କୂଳେଚର, ବିଂ. ( କୂଳେ-ଚର ) ଯେଉଁମାନେ କୂଳରେ ଭ୍ରମଣ କରନ୍ତି; ଚମରୀ, ବାରହାଦି ।

କୂବର, ବି. ପୁଂ. ସ୍ତ୍ରୀ. (କୂ-ବର) କୁବ୍ଜ; କୁଜା । ପୁଂ. ନ. ଯୁଆଳି; କବନ ।

କୂବରୀ, ବି. ସ୍ତ୍ରୀ. ( କୂବର-ଈ ) କମ୍ବଳାଚ୍ଛାଦିତ ରଥ । ବିଂ. ରମଣୀୟ, ମନୋହର ।

କୂଷ୍ମାଣ୍ଡ, ବି. ପୁଂ. ଶିବ ପାରିଷଦବିଶେଷ ।

କୃକ, ବି. ପୁଂ. (କୃ-କ) ଗଳଦେଶ, ଗଳା ।

କୃକର, ବି. ପୁଂ. ( କୃକ-ର ) ଶରୀରାନ୍ତର୍ଗତ ବାୟୁବିଶେଷ ।

କୃକଳା, ବି. ସ୍ତ୍ରୀ. ପିପ୍ପଳି ।

କୃକଲାଶ, } ବି. ପୁଂ. (କୃକ-ଲାଶ,) ସରୀସୃପବିଶେଷ, ଏହି ଜନ୍ତୁର
କୃକଲାସ } ଶରୀର ବର୍ଣ୍ଣ ସର୍ବଦା ପରିବର୍ତ୍ତିତ ହୁଏ, ବହୁରୂପୀ; ଏଣ୍ଡୁଅ ।

କୃକବାକୁ, ବି. ପୁଂ. ( କୃକ-ବଚ୍-ଉ ) କୁକ୍କୁଟ; ଝିଟିପିଟି; ଏଣ୍ଡୁଅ; ମୟୂର ।

କୃକାଟିକା, ବି. ସ୍ତ୍ରୀ. (କୃକ-ଅଟ୍-ଅକ-ଆ) ଗ୍ରୀବାର ଉନ୍ନତପ୍ରଦେଶ । ଯଥା—

> କୃକାଟିକା ନବଟରୁ କମ୍ପାୟ କୁଡ଼ା,
> କେତେକ ପାଖୁଡ଼ା ବେଢା ନାହିଁ ଘରକୁଡ଼ା । ର. ଚ.

କୃଚ୍ଛ୍ର, ବି. ପୁଂ. ନ. (କୃତ୍-ର, ନପାତନରେ ସିଦ୍ଧ) ଶାରୀରିକ କ୍ଳେଶ; ଆପଦ୍; ପ୍ରାୟଶ୍ଚିତ୍ତ; ପାପ; ବ୍ରତବିଶେଷ; ମୂତ୍ରକୃଚ୍ଛ୍ର ରୋଗ । ବିଂ. କ୍ଳିଷ୍ଟ; କଷ୍ଟଦାୟକ; ଦୁଷ୍ଟ; ପାପିଷ୍ଠ ।

କୃଣ୍ୱ, ବି. ପୁଂ. (କୃ-ନ୍ୱ) ଚିତ୍ରକାର ଜାଣ୍ଡ ।

କୃତ୍, ବି. ପୁଂ. ( କୃ-୦ ) ଧାତୁଉତ୍ତର ବିହିତ ପ୍ରତ୍ୟୟ, ତବ୍ୟାଦି ପ୍ରତ୍ୟୟ ।

କୃତ, ବି. ନ. ( କୃ-ତ ) ସତ୍ୟଯୁଗ; କାର୍ଯ୍ୟ; ଯଥେଷ୍ଟ; ପର୍ଯ୍ୟାପ୍ତ; ପ୍ରୟୋଜନ । ବିଂ. ରଚିତ; ସମ୍ପାଦିତ; ଅଭ୍ୟସ୍ତ, ଶିକ୍ଷିତ; ବିହିତ; ଉପଯୁକ୍ତ; ବ୍ୟାହୃତ ।

କୃତକ, ବି°. ( କୃତ-ଅକ ) କୃତ୍ରିମ; କଳ୍ପିତ ।
ବି. ନ. କୃତ୍ରିମ ଲବଣ ।

କୃତକପୁତ୍ର, ବି. ପୁ°. ( କୃତକ-ପୁତ୍ର ) କଳ୍ପିତ ପୁତ୍ର, ଯେଉଁ ପୁତ୍ର ଗୋପନରେ ପିତାମାତା-ଦ୍ୱାରା ପରିତ୍ୟକ୍ତ ହୋଇ କୌଣସି ଦୟାବାନ୍ ବ୍ୟକ୍ତିଦ୍ୱାରା ଗୃହୀତ ଓ ପରିପାଳିତ ହୁଏ ।

କୃତକର୍ମା, ବି°. ( କୃତ-କର୍ମନ୍ ) କାର୍ଯ୍ୟକ୍ଷମ; କୃତକାର୍ଯ୍ୟ, ଯେ କାର୍ଯ୍ୟ ନିର୍ବାହ କରିଅଛି ।

କୃତକାମ, ବି°. ( କୃତ-କାମ ) ପୂର୍ଣ୍ଣମନୋରଥ, ଯାହାର ଅଭୀଷ୍ଟ ସିଦ୍ଧ ହୋଇଅଛି ।

କୃତକାର୍ଯ୍ୟ, ବି°. (କୃତ-କାର୍ଯ୍ୟ) କୃତାର୍ଥ, ଚରିତାର୍ଥ ।

କୃତକାଳ, ବି°. (କୃତ-କାଳ) ନିରୂପିତ ସମୟ ।

କୃତକୃତ୍ୟ, କୃତକ୍ରିୟ, } ବି°. ( କୃତ-କୃତ୍ୟ, କ୍ରିୟା ) କୃତକାର୍ଯ୍ୟ, କୃତାର୍ଥ, ଚରିତାର୍ଥ; ବିଦ୍ୱାନ୍; କୃତକର୍ମା ।

କୃତଘ୍ନ, ବି°.(କୃତ-ହନ୍-ଅ, ହନ୍=ଘ୍ନ) ଅକୃତଜ୍ଞ, ନେମକହାରାମ ।

କୃତଜ୍ଞ, ବି°. (କୃତ-ଜ୍ଞ) କେହି ଉପକାର କଲେ ଯେ ତାହା ଚିରକାଳ ମନେ ରଖଇ ଏବଂ ପ୍ରତ୍ୟୁପକାରର ଚେଷ୍ଟା କରନ୍ତି; କର୍ତ୍ତବ୍ୟ ବିଷୟରେ ମନୋଯୋଗୀ । ବି. ପୁ°. କୁକ୍କୁର ।

କୃତଜ୍ଞତା, ବି.ସ୍ତ୍ରୀ. (କୃତଜ୍ଞ-ତା) ଉପକାର ସ୍ମରଣ ବା ସ୍ୱୀକାର କରିବା, ସାଧାରଣରେ ଉପକାରକର ହିତ ଚିନ୍ତା ବା ଅନିଷ୍ଟ ନିବାରଣର ଚେଷ୍ଟା ।

କୃତଜ୍ୱର, ବି. ପୁ°. (କୃତ-ଜ୍ୱର) ଶିବ ।

କୃତଦାର, ବି. ପୁ°. ( କୃତ-ଦାର ) ବିବାହିତ, ଯେଉଁ ବ୍ୟକ୍ତି ଦାରପରିଗ୍ରହ କରିଅଛି ।

କୃତଦାସ, ବି. ପୁ°. ଯେ ଚିରକାଳ ପର୍ଯ୍ୟନ୍ତ ଦାସତ୍ୱ ସ୍ୱୀକାର କରେ ।

କୃତଧୀ, ବି°. (କୃତ-ଧୀ) କର୍ତ୍ତବ୍ୟକର୍ମର ଅନୁଷ୍ଠାନରେ ଯାହାର ବୁଦ୍ଧି ବିଚଳିତ ହୁଅଇ ନାହିଁ; ସ୍ଥିରଚିତ୍ତ, ସ୍ଥିରମତି ।

କୃତନିଶ୍ଚୟ, ବି°. (କୃତ-ନିଶ୍ଚୟ) ଯେ ନିଶ୍ଚୟ କରିଅଛି, ଯେ କର୍ତ୍ତବ୍ୟ ନିରୂପଣ କରିଅଛି; ଯାହାର ମନରେ କାର୍ଯ୍ୟ ବିଷୟରେ ଦୃଢ଼ ନିଶ୍ଚୟ ହୋଇଅଛି ।

କୃତପୁଙ୍ଖ, ବି°. ( କୃତ-ପୁଙ୍ଖ ) ଶର କ୍ଷେପଣରେ ସୁପଣ୍ଡିତ ।

କୃତପୂର୍ବ, ବି°. ( କୃତ-ପୂର୍ବ ) ଯାହା ପୂର୍ବେ କରା ହୋଇଅଛି ।

କୃତପୂର୍ବୀ ବି°. ( କୃତପୂର୍ବ-ଇନ୍ )ଯେ ପୂର୍ବରେ କରିଅଛି, ପୂର୍ବେ ଅନୁଷ୍ଠିତକର୍ମା ।

କୃତପୌରୁଷ, ବି°. ( କୃତ-ପୌରୁଷ ) ଯେ ପୁରୁଷତ୍ୱ ଦେଖାଇଅଛି, ଯେ ସାହସିକତା ପ୍ରକାଶ କରିଅଛି ।

କୃତବୁଦ୍ଧି, ବି°. ( କୃତ-ବୁଦ୍ଧି ) କର୍ତ୍ତବ୍ୟକର୍ମର ଅନୁଷ୍ଠାନରେ ଯାହାର ବୁଦ୍ଧି ବିଚଳିତ ନ ହୁଏ । ଯେଉଁ ବ୍ୟକ୍ତି ସଂଶୟ ସ୍ଥଳରେ ଅନାୟାସରେ କର୍ତ୍ତବ୍ୟ ନିର୍ଣ୍ଣୟ କରିପାରେ ।

କୃତମ୍, ଅ°. (କୃ-ତମ୍) ପର୍ଯ୍ୟାପ୍ତ; ପ୍ରୟୋଜନାଭାବ; ନିଷେଧ ।

କୃତମୁଖ, ବି°. (କୃତ-ମୁଖ) କୃତକର୍ମା; ଦକ୍ଷ ।

କୃତଲକ୍ଷଣ, ବି°. ( କୃତ-ଲକ୍ଷଣ ) ଗୁଣଦ୍ୱାରା ବିଖ୍ୟାତ, ଗୁଣବାନ୍; ଲବ୍ଧପ୍ରତିଷ୍ଠ ।

କୃତବର୍ମା, ବି. ପୁ°. (କୃତ-ବର୍ମନ୍) ଯାଦବ-ବିଶେଷ । ବି°. ଯେ ବର୍ମ ପରିଧାନ କରିଅଛି ।

କୃତବିଦ୍ୟ, ବି°. ( କୃତ-ବିଦ୍ୟା ) ଶିକ୍ଷିତବିଦ୍ୟ, ଯେଉଁ ବ୍ୟକ୍ତି ବିଦ୍ୟା ବିଷୟରେ ବିଲକ୍ଷଣ କୃତକାର୍ଯ୍ୟ ହୋଇଅଛି ।

କୃତବୀର୍ଯ୍ୟ, ବି. ପୁ°. (କୃତ-ବୀର୍ଯ୍ୟ) ରାଜାବିଶେଷ, କାର୍ତ୍ତବୀର୍ଯ୍ୟଙ୍କର ପିତା । ବି°. ଯେ ବୀରତ୍ୱ ଦେଖାଇଅଛି ।

କୃତବେତନ, ବି°. (କୃତ-ବେତନ) ବେତନ ଦେଇ ଯେଉଁ ସବୁ ଭୃତ୍ୟ ନିଯୁକ୍ତ କରାଯାଏ ।

କୃତକ୍ଷମ, ବି°. (କୃତ-କ୍ଷମ) କ୍ଷମାଶୀଳ, ଯେ କ୍ଷମା କରିଅଛି ।

କୃତଘାପରୀ, } ବି. ସ୍ତ୍ରୀ. ( କୃତ-ଘାପରୀ,
କୃତଘାପରିକା, } ଘାପରିକା ) ଯେଉଁ ସ୍ତ୍ରୀର ସ୍ୱାମୀ ପୁନର୍ବାର ବିବାହ କରିଅଛି ।

କୃତସ୍ୱର, ବି. ପୁଂ. (କୃତ-ସ୍ୱର) ସ୍ୱର୍ଣ୍ଣଖଣି ।

କୃତହସ୍ତ, ବିଂ. (କୃତ-ହସ୍ତ) ଶରକ୍ଷେପଣରେ ସୁପଣ୍ଡିତ; କାର୍ଯ୍ୟଦକ୍ଷ; କ୍ଷିପ୍ରହସ୍ତ ।

କୃତାକୃତ, ବିଂ. (କୃତ-ଅକୃତ) କାର୍ଯ୍ୟାଂଶରେ କୃତ, ଅବଶିଷ୍ଟ ଅଂଶରେ ଅକୃତ, ଅର୍ଦ୍ଧକୃତ ଅପରିସମାପ୍ତ । ନ. କାର୍ଯ୍ୟାକାରଣ ।

କୃତାଗମ, ବି. ପୁଂ. ( କୃତ-ଆଗମ ) ବେଦ-ପ୍ରଣେତା, ଈଶ୍ୱର ।

କୃତାଞ୍ଜଳି, (କୃତ-ଅଞ୍ଜଳି) ବଦ୍ଧାଞ୍ଜଳି; ଯୁକ୍ତ-ପାଣି । ବି.ପୁଂ. ଲଜ୍ଜାଳୁ ବୃକ୍ଷ । ସ୍ତ୍ରୀ. ହାଡ଼ଜୋଡ଼ା ଲତା ।

କୃତାଞ୍ଜଳିପୁଟେ, ବିଂ. (କୃତ-ଅଞ୍ଜଳି-ପୁଟ) ବଦ୍ଧା-ଞ୍ଜଳି । କ୍ରି. ବିଂ. ହାତ ଯୋଡ଼ିକରି । ଯଥା—

ପୁଚ୍ଛିଲେ ପାଣ୍ଡବେ କୃତାଞ୍ଜଳିପୁଟେ । ମ. ଯା.

କୃତାତ୍ମା, ବିଂ. ( କୃତ-ଆତ୍ମନ୍ ) ଶିକ୍ଷିତବୁଦ୍ଧି; ଶୁଦ୍ଧଚିତ୍ତ ।

କୃତାଧିଷ୍ଠାନ, ବିଂ. ( କୃତ-ଅଧିଷ୍ଠାନ ) ଯେ ଅଧିଷ୍ଠାନ କରିଅଛି; ଯାହାର ଅବସ୍ଥିତି ହୋଇଅଛି ।

କୃତାନ୍ତ, ବି. ପୁଂ. (କୃତ-ଅନ୍ତ) ଯମ; ଦୈବ । ବିଂ. ଜ୍ଞାତ; ସିଦ୍ଧାନ୍ତ । ଯଥା—

ହେ କାନ୍ତ ! କାଳେ ହେବ କାମିନୀ କୃତାନ୍ତ । ର.କ.

କୃତାନ୍ତଜନକ, ପୁଂ. (କୃତାନ୍ତ-ଜନକ) ସୂର୍ଯ୍ୟ ।

କୃତାନ୍ନ, ବି. ନ. ପକ୍ୱ ଅନ୍ନ ।

କୃତାପକାର, ବିଂ. (କୃତ-ଅପକାର) ଅପକାରୀ, ଅପକୃତ ।

କୃତାପରାଧ, ବିଂ. ( କୃତ-ଅପରାଧ ) ଅପରାଧୀ, ଦୋଷୀ ।

କୃତାଭିଷେକ, (କୃତ-ଅଭିଷେକ) ଅଭିଷିକ୍ତ ।

କୃତାର୍ଥ, ବିଂ.(କୃତ-ଅର୍ଥ) ଚରିତାର୍ଥ, କୃତକାର୍ଯ୍ୟ । ଯଥା—

ମନ୍ ମୁହିଁର ଥିବା ସ୍ୱପନ ବୋଲି,
ଜାଣିଲି ଏହି ଦେହେଁ କୃତାର୍ଥ ହେଲି ରେ । ବ. ବି.

କୃତାର୍ଥମନ୍ୟ, ବିଂ. ( କୃତାର୍ଥ-ମନ୍-ଯ ) ଯେ ଆପଣାକୁ କୃତାର୍ଥ ବୋଧ କରଇ ।

କୃତାର୍ଥିତ, ବିଂ. ( କୃତାର୍ଥ-ଇତ ) ଯାହାକୁ କୃତାର୍ଥ କରି ହୋଇଅଛି, କୃତାର୍ଥୀକୃତ ।

କୃତାଳୟ, ବି. ପୁଂ. (କୃତ-ଆଳୟ) ଭେକ, ବେଙ୍ଗ । ବିଂ. କୃତବାସ ।

କୃତାସ୍ତ୍ର, ବିଂ. (କୃତ-ଅସ୍ତ୍ର) ଯେ ଅସ୍ତ୍ରଶିକ୍ଷା କରି-ଅଛି ।

କୃତାହ୍ନିକ, ବିଂ. ( କୃତ-ଆହ୍ନିକ ) ଦୈନିକ କର୍ତ୍ତବ୍ୟକର୍ମୀ ।

କୃତି, ବି. ସ୍ତ୍ରୀ. ( କୃ-ତି ) କାରଣ; କାର୍ଯ୍ୟ; ରଚନା; ଯତ୍ନ; ୨୦ ଅକ୍ଷର ଛନ୍ଦଃ ।

କୃତିତ୍ୱ, ବି. ନ. (କୃତିନ୍-ତ୍ୱ) କ୍ଷମତା, ଦକ୍ଷତା, ଉପଯୁକ୍ତତା ।

କୃତୀ, ବିଂ. (କୃତ-ଇନ୍) ପଣ୍ଡିତ; ସମର୍ଥ; ପୁଣ୍ୟବାନ୍, ଧାର୍ମିକ; କୁଶଳ; କୃତାର୍ଥ, କର୍ମକ୍ଷମ । ଯଥା—

କହୁଁ ପରକାର୍ଯ୍ୟେ କୃତୀ ହୁଅନ୍ତି ରହିକେ । ମ. ଯା.

କୃତୋଦକ, ବିଂ. ( କୃତ-ଉଦକ ) ସ୍ନାନ ଓ ତର୍ପଣାଦି ନିର୍ବାହକ ।

କୃତୋଦ୍‌ବାହ, ବିଂ. ( କୃତ-ଉଦ୍‌ବାହ ) ବିବାହିତ, ପରିଣୀତ ।

କୃତୋପକାର, ବିଂ. ( କୃତ-ଉପକାର ) ଉପକାରୀ, ଉପକୃତ ।

କୃତ୍ତ, ବିଂ. (କୃତ୍-ତ) ଛିନ୍ନ, ଯାହା ଛେଦ କରି ହୋଇଅଛି, ବିଚ୍ଛିନ୍ନ; ବିଭକ୍ତ; ଅଭିଭେଦିତ; ବେଷ୍ଟିତ ।

କୃତ୍ତି, ବି. ସ୍ତ୍ରୀ. ( କୃତ୍-ତି ) ଚର୍ମ, ତ୍ୱକ୍; ଭୂର୍ଜପତ୍ର ।

କୃତ୍ତିକା, ବି. ସ୍ତ୍ରୀ. କାର୍ତ୍ତିକେୟର ଛଅ ଜଣ ଧାତ୍ରୀରୁ ଏକ ଜଣ; ତୃତୀୟ ନକ୍ଷତ୍ର । ଯଥା—

ବୃନ୍ଦଦର୍ଶନ ଦେଖ ଦିଶେ କୃତ୍ତିକା,
ଜଗନେ ଶୋଭା ଦେଲେ ଅଗ୍ନିର ଶିଖା । ଉ.ଗା.

କୃତ୍ତିକାଭବ, ବ. ପୁଂ. (କୃତ୍ତିକା-ଭବ) ଚନ୍ଦ୍ର ।
କୃତ୍ତିକାସୁତ; ବ. ପୁଂ. ( କୃତ୍ତିକା-ସୁତ ) କାର୍ତ୍ତିକେୟ, ଷଡାନନ ।
କୃତ୍ତିବାସ, } ବ. ପୁଂ. (କୃତ୍ତି-ବାସ, ବାସସ୍)
କୃତ୍ତିବାସସ୍, } ଚର୍ମାମ୍ବର, ମହାଦେବ, ଶିବ ।
କୃତ୍ୟ, ବ. ପୁଂ. (କୃ-ଯ) କାର୍ଯ୍ୟ; ପ୍ରୟୋଜନ; କାରଣ; ଇତ୍ୟାଦି କୃତ୍ପ୍ରତ୍ୟୟ ।
କୃତ୍ୟବତ୍, ବିଂ, ( କୃତ୍ୟ-ବତ୍ ) କାର୍ଯ୍ୟଜ୍ଞ; ବିଧାନଜ୍ଞ ।
କୃତ୍ରିମ,ବିଂ.(କୃ-ତ୍ରିମ) କ୍ରିୟାଦ୍ୱାରା ନିଷ୍ପନ୍ନ; କଳ୍ପିତ, କାଳ୍ପନିକ; ଅଯଥାର୍ଥ, ଜାଲ; ଅବିଶୁଦ୍ଧ ।
କୃତ୍ରିମପୁତ୍ର, ବ. ପୁଂ. ଗୃହୀତ ପୁତ୍ର ।
କୃତ୍ରିମମଣି, ବ. ପୁଂ. ଯେଉଁ ମଣି ଅନ୍ୟ ଦୂର ମଣିର ଗୁଣଦ୍ୱାରା ଉତ୍ପନ୍ନ ହୁଏ ।
କୃତ୍ସ୍ନ, ବିଂ. ( କୃତ୍-ସ୍ନ ) ସମୁଦାୟ ; ସମ୍ପୂର୍ଣ୍ଣ । ବ. ନ. ଜଳ; କୁକ୍ଷି ।
କୃଦନ୍ତ, ବ. ପୁଂ. (କୃତ୍-ଅନ୍ତ) ବ୍ୟାକରଣରେ କୃତ୍ପ୍ରତ୍ୟୟାନ୍ତ ଶବ୍ଦ ।
କୃଦର, ବ. ପୁଂ. ( କୃତ୍-ଅର ) ଶସ୍ୟାଦି ରଖିବାର ଗୃହ, ଗୋଲ ।
କୃନ୍ତନ, ବ. ନ. (କୃତ୍-ଅନ) ଛେଦନ ।
କୃନ୍ତନୀ, ବ. ସ୍ତ୍ରୀ. ( କୃତ୍-ଅନ-ଈ ) ଛେଦନାସ୍ତ୍ର, ଯାହାଦ୍ୱାରା ଛେଦନ କରାଯାଏ ।
କୃପ, ବ. ପୁଂ. (କୃପ୍-ଅ) ଶରଦ୍ୱାନ୍ ମୁନିର ପୁତ୍ର, କୃପାଚାର୍ଯ୍ୟ ।
କୃପଣ, ବିଂ. ( କୃପ-ଅନ ) ବ୍ୟୟକୁଣ୍ଠ ; ଦୀନ; କାତର; କ୍ଷୁଦ୍ର; ନୀଚ । ଯଥା—

> କୃପଣ ହୋଇଲେ ଅମୃତ ଦାନେ । ର. କ.

କୃପା, ବ. ସ୍ତ୍ରୀ. (କୃପ-ଆ) ଦୟା, କରୁଣା ।
କୃପାଣ, ବ. ପୁଂ. (କୃପ-ଆନ) ଖଡ୍ଗ । ଯଥା—

> ଅପୂରବର ସହିଁ ଜ୍ୟୋତାନ
> ନଘ୍ନ କରେ ଶ୍ରୀ ଭୂତାର୍ଦ୍ଦ କୃପାଣ । ଦ. କେ.

କୃପାଣିକା, ବ. ସ୍ତ୍ରୀ. ( କୃପାଣ-କ ) ଛୁରିକା, ଛୁରୀ, କଟୁରି ।

କୃପାଣୀ, ବ. ସ୍ତ୍ରୀ. (କୃପାଣ-ଈ) ଛେଣୀ, ଛୁରି ।
କୃପାଳୁ, ବିଂ. (କୃପ୍-ଆଳୁ) ଦୟାଳୁ; କରୁଣାନ୍ୱିତ ।
କୃପୀ, ବ. ସ୍ତ୍ରୀ. ( କୃପ-ଅ-ଈ ) ଦ୍ରୋଣପତ୍ନୀ, ଅଶ୍ୱତ୍ଥାମାର ମାତା ।
କୃପୀଟ, ବ. ନ. ( କୃପ-ଈଟ ) ଉଦର; ଜଳ; ବନ; କାଷ୍ଠ ।
କୃପୀଟପାଳ, ବ. ପୁଂ. (କୃପୀଟ-ପାଳ) ନୌକାର ଆଉଲ; ସମୁଦ୍ର; ପବନ ।
କୃପୀଟଯୋନି, ବ. ପୁଂ. (କୃପୀଟ-ଯୋନି) ଅଗ୍ନି । ଯଥା—

> ସହିବ କେହି ମୁହିଁ ମନୁଷ୍ୟ ଦେହ ବହି
> ଏହି କୃପୀଟଯୋନି ସେନ ରେ । ସୁ. ପ.

କୃମି, କ୍ରିମି, ବ. ପୁଂ. (କ୍ରମ୍-ଇ) କୀଟ, ପୋକ ।
କୃମିକୋଶୋତ୍ଥ, ବିଂ. (କୃମିକୋଶ-ଉତ୍ଥ) କୌଷେୟ, ରେଶମୀବସ୍ତ୍ର ।
କୃମିଘ୍ନ, ବ. ପୁଂ. (କୃମି-ହନ୍-ଅ) ବିଡ଼ଙ୍ଗ; ପଲାଣ୍ଡୁ; ପିଆଜ; ଭଲ୍ଲାତକ ।
କୃମିଜ, କ୍ରିମିଜ, ବିଂ. (କୃମି-କ୍ରିମି-ଜ) କୃମିରୁ ଜାତ । ବ. ନ. ଅଗୁରୁ ଚନ୍ଦନ ।
କୃମିଜା, ବ. ସ୍ତ୍ରୀ. (କୃମି-ଜା) ଲାକ୍ଷା, ଜଉ ।
କୃମିଳ, ବିଂ. (କୃମି-ଲା-ଅ) କୃମିଯୁକ୍ତ ।
କୃମିଲା, ବ. ସ୍ତ୍ରୀ. ବହୁସନ୍ତାନପ୍ରସବିନୀ ସ୍ତ୍ରୀ ।
କୃମିଶୈଳ, } ବ. ପୁଂ. ( କୃମି, କ୍ରିମି-ଶୈଳ )
କ୍ରିମିଶୈଳ, } ବଲ୍ମୀକ, ଉଇହୁଙ୍କା ।
କୃବ. ବ. ପୁଂ. ( କୃ-ବ ) ଲୁଗା ବୁଣିବାର ଯନ୍ତ୍ର, ତନ୍ତ୍ର ।
କୃଶ, ବିଂ. (କୃଶ୍-ଅ) କ୍ଷୀଣ, ଦୁର୍ବଳ; ଅସମ୍ପୂର୍ଣ୍ଣ; ମନ୍ଦବୀର୍ଯ୍ୟ; ଦରିଦ୍ର; କ୍ଷୁଦ୍ର; ଅଳ୍ପ; ଲଘୁ, ପତଳା; ଶିରଳ ।
କୃଶର, } ବ. ପୁଂ. ସ୍ତ୍ରୀ. (କୃ-ଶର, ସର)
କୃସର, } ମିଶ୍ରିତାନ୍ନ, ଦ୍ୱିଦଳାନ୍ନ, ଖେଚଡ଼ୀ ।
କୃଶଳା, ବ. ସ୍ତ୍ରୀ. (କୃଶ-ଲ) କେଶ, ବାଳ ।

କୃଶାଙ୍ଗ, ବଂ. (କୃଶ-ଅଙ୍ଗ) କ୍ଷୀଣଶରୀର, କ୍ଷୀଣ-କାୟ ।

କୃଶାଙ୍ଗୀ, ବ. ସ୍ତ୍ରୀ. (କୃଶ-ଅଙ୍ଗୀ) ପ୍ରିୟଙ୍ଗୁଲତା । ବଂ. କ୍ଷୀଣଶରୀରା । ଯଥା—

କୃଶାଙ୍ଗୀ କୃଶୋଦରୀ କୁନ୍ଦଦଶନା ।

କୃଶାନୁ, କୃଷାନୁ, ବ. ପୁଂ. (କୃଶ-ଅନୁ) ଅଗ୍ନି, କଅଁ ।

କୃଶାନୁରେତାଃ, ବ. ପୁଂ. (କୃଶାନୁ-ରେତଃ) ଶିବ, ମହାଦେବ ।

କୃଶାଶ୍ୱ, ବ. ପୁଂ. ଏକଜଣ ମହର୍ଷି ।

କୃଶାର୍ଥୀ, ବ. ପୁଂ. (କୃଶ-ଅର୍ଥୀ) ନଟ, ନର୍ତ୍ତକ ।

କୃଷକ, ବ. ପୁଂ. (କୃଷ୍-ଅକ) କୃଷାଣ, ଚଷା; ଲଙ୍ଗଳଲୁହା; ବୃଷ । ବଂ. କର୍ଷକ ।

କୃଷି, ବ. ସ୍ତ୍ରୀ. (କୃଷ୍-ଇ) କୃଷିକର୍ମ, ଗୃହବାସ; ଭୂମି ।

କୃଷିଜୀବୀ, କୃଷୀବଳ, ବଂ. (କୃଷି-ଜୀବନ୍, କୃଷି-ବଳ, ଇ=ଈ ) କୃଷକ, ଯେ କୃଷିକର୍ମ ଅବଲମ୍ବନ କରି ଜୀବିକା ନିର୍ବାହ କରଇ । ଯଥା—

କାହିଁ ଶତେ କାହିଁ କାହିଁ କ୍ଷେତ୍ରେ କୃଷୀବଳେ

ଭଲେ କର ଦେଇ ହୁହିଁ ଦେଖନ୍ତି କୌତୁକେ । ମ. ଯା.

କୃଷ୍ଟର, ବ. ପୁଂ. ଶିବ ।

କୃଷ୍ଟ, ବଂ. (କୃଷ୍-ତ) ଚଷିବା ଯେବ; ଅକୃଷ୍ଟ ।

କୃଷ୍ଟପଚ୍ୟ, ବଂ. (କୃଷ୍ଟ-ପଚ୍ୟ) କୃଷିଜ । ବ. ଧାନ୍ୟାଦି ଶସ୍ୟ ।

କୃଷ୍ଟି, ବ. ପୁଂ. (କୃଷ୍-ତି) ପଣ୍ଡିତ, ବିଦ୍ୱାନ୍; କୃଷିକର୍ମ; କର୍ଷଣ ।

କୃଷ୍ଣ, ବ. ପୁଂ. (କୃଷ-ନ) ବିଷ୍ଣୁର ଅବତାର-ବିଶେଷ; ବ୍ୟାସଦେବ; ଅର୍ଜୁନ; କୋକିଳ । ନ. ଲୌହ । ବଂ. ନୀଳବର୍ଣ୍ଣଯୁକ୍ତ । ସ୍ତ୍ରୀ. ଦ୍ରୌପଦୀ; ନୀଳବୃକ୍ଷ ।

କୃଷ୍ଣକ, ବ. ପୁଂ. (କୃଷ୍ଣ-କ) କୃଷ୍ଣସର୍ଷପ, କଳା ସୋରିଷ ।

କୃଷ୍ଣକନ୍ଦ, ବ. ନ. (କୃଷ୍ଣ-କନ୍ଦ) ରକ୍ତକମଳ ।

କୃଷ୍ଣକର୍ମା, ବଂ. (କୃଷ୍ଣ-କର୍ମନ୍) ପାପୀ, ଦୋଷୀ ।

କୃଷ୍ଣକଲି, ବ. ପୁଂ. (କୃଷ୍ଣ-କଲି) ସ୍ୱନାମ ପ୍ରସିଦ୍ଧ ପୁଷ୍ପବୃକ୍ଷବିଶେଷ, କୃଷ୍ଣଚୂଡ଼ା ।

କୃଷ୍ଣକାୟ, ବ. ପୁଂ. (କୃଷ୍ଣ-କାୟ) ମହିଷ । ବଂ. କୃଷ୍ଣବର୍ଣ୍ଣବିଶିଷ୍ଟ ।

କୃଷ୍ଣଗତି, ବ. ପୁଂ. (କୃଷ୍ଣ-ଗତି) ଅଗ୍ନି ।

କୃଷ୍ଣଗିରି, ବ. ପୁଂ. ନୀଳାଚଳ, ନୀଳଗିରି ।

କୃଷ୍ଣଚତୁର୍ଦଶୀ, ବ. ସ୍ତ୍ରୀ. କୃଷ୍ଣପକ୍ଷର ଚତୁର୍ଦଶୀ ।

କୃଷ୍ଣଚୂଡ଼ିକା, ବ. ସ୍ତ୍ରୀ. ଗୁଞ୍ଜା, କାଇଞ୍ଚ ।

କୃଷ୍ଣଚୂର୍ଣ୍ଣ, ବ. ନ. (କୃଷ୍ଣ-ଚୂର୍ଣ୍ଣ) ଲୌହମଳ ।

କୃଷ୍ଣଜୀରକ, ବ. ପୁଂ. (କୃଷ୍ଣ-ଜୀରକ) କଳାଜୀରା ।

କୃଷ୍ଣତାର, ବ. ପୁଂ. (କୃଷ୍ଣ-ତାର) ହରିଣ ।

କୃଷ୍ଣଦେହ, ବ. ପୁଂ. (କୃଷ୍ଣ-ଦେହ) ଭ୍ରମର । ବଂ. କୃଷ୍ଣବର୍ଣ୍ଣ ଶରୀର ।

କୃଷ୍ଣଦ୍ୱୈପାୟନ, ବ. ପୁଂ. (କୃଷ୍ଣ-ଦ୍ୱୈପାୟନ) ବେଦବ୍ୟାସ ।

କୃଷ୍ଣପକ୍ଷ, ବ. ପୁଂ. ଚନ୍ଦ୍ରକଳା କ୍ଷୟକର ପକ୍ଷ ।

କୃଷ୍ଣପିଙ୍ଗଳା, ବ. ସ୍ତ୍ରୀ. (କୃଷ୍ଣ-ପିଙ୍ଗଳା) ଦୁର୍ଗା ।

କୃଷ୍ଣଭୂମି, ବ. ପୁଂ. (କୃଷ୍ଣ-ଭୂମି) କୃଷ୍ଣବର୍ଣ୍ଣ ମୃତ୍ତିକାଯୁକ୍ତ ଦେଶ ।

କୃଷ୍ଣମୁଦ୍ଗ, ବ. ପୁଂ. (କୃଷ୍ଣ-ମୁଦ୍ଗ) କଳାମୁଗ ।

କୃଷ୍ଣଳକ, ପୁଂ. କୃଷ୍ଣଳା, ସ୍ତ୍ରୀ. ବ. (କୃଷ୍ଣ-ଲ-ଲା-ଅ, କ କୃଷ୍ଣଲକ) ଗୁଞ୍ଜା, କାଇଞ୍ଚ ।

କୃଷ୍ଣଲୌହ, ବ. ପୁଂ. (କୃଷ୍ଣ-ଲୌହ) ଅୟସ୍କାନ୍ତ-ମଣି ।

କୃଷ୍ଣବକ୍ତ୍ର, ବ. ପୁଂ. (କୃଷ୍ଣ-ବକ୍ତ୍ର) ବାନର ।

କୃଷ୍ଣବର୍ତ୍ମା, ବ. ପୁଂ. (କୃଷ୍ଣ-ବର୍ତ୍ମନ୍) ଅଗ୍ନି, ବହ୍ନି । ବଂ. ଦୁରାଚାର ।

କୃଷ୍ଣଶୃଙ୍ଗ, ବ. ପୁଂ. (କୃଷ୍ଣ-ଶୃଙ୍ଗ) ମହିଷ ।

କୃଷ୍ଣସଖା, ବ. ପୁଂ. (କୃଷ୍ଣ-ସଖା) କୃଷ୍ଣର ସଖା, ଅର୍ଜୁନ ।

କୃଷ୍ଣସାର, କୃଷ୍ଣଶାର, ବ. ପୁଂ. (କୃଷ୍ଣ-ସାର) ହରିଣବିଶେଷ; ଶିଂଶପାବୃକ୍ଷ; ସ୍ନୁହୀବୃକ୍ଷ । ଯଥା—

ଛଡ଼ବେଳେ ଚହିଁ ପାଇତ ନେମାର

ଚ୍ୟୁତ ମ୍ୟୁତ ମୃଗୀ କୃଷ୍ଣସାର । ନ. କେ.

କୃଷ୍ଣସାରଥି, ବ. ପୁଂ. (କୃଷ୍ଣ-ସାରଥି) ଅର୍ଜୁନ ।
କୃଷ୍ଣସ୍କନ୍ଧ, ବ. ପୁଂ. ତମାଳବୃକ୍ଷ ।
କୃଷ୍ଣା, ବ. ସ୍ତ୍ରୀ. (କୃଷ୍-ନ-ଆ) ଦ୍ରୌପଦୀ । ଯଥା—
  କୃଷ୍ଣାକୁ ବସ୍ତ୍ର ଯେବେ କଲୁ ଅବହେଳେ । କ. ବ.
  ବିଂ. ନୀଳବର୍ଣ୍ଣ ।
କୃଷ୍ଣାଗୁରୁ, ବ. ପୁଂ. (କୃଷ୍ଣ-ଅଗୁରୁ) କୃଷ୍ଣଚନ୍ଦନ ।
କୃଷ୍ଣାଚଳ, ବ. ପୁଂ. ( କୃଷ୍ଣ-ଅଚଳ ) ରୈବତ ପର୍ବତ ।
କୃଷ୍ଣାଜିନ, ବ. ପୁଂ. ( କୃଷ୍ଣ-ଅଜିନ ) କୃଷ୍ଣସାର ମୃଗର ଚର୍ମ ।
କୃଷ୍ଣାମିଷ, } କୃଷ୍ଣାୟସ, } ବ. ନ. (କୃଷ୍ଣ-ଆମିଷ, ଅୟସ୍) କୃଷ୍ଣବର୍ଣ୍ଣ ଲୌହ, ଚୁମ୍ବକ ଲୌହ ।
କୃଷ୍ଣାର୍ଚ୍ଚିଃ, ବ. ପୁଂ. (କୃଷ୍ଣ-ଅର୍ଚ୍ଚିସ୍) ଅଗ୍ନି ।
କୃଷ୍ଣାବାସ, ବ. ପୁଂ. (କୃଷ୍ଣ-ଆବାସ) ଅଶ୍ୱତ୍ଥବୃକ୍ଷ ।
କୃଷ୍ଣାଷ୍ଟମୀ, ବ. ସ୍ତ୍ରୀ. କୃଷ୍ଣପକ୍ଷୀୟ ଅଷ୍ଟମୀ, ଭାଦ୍ରବ-ମାସର କୃଷ୍ଣ ଅଷ୍ଟମୀ, ଶ୍ରୀକୃଷ୍ଣଙ୍କ ଜନ୍ମତିଥି ।
କୃଷ୍ଣିକା, ବ. ସ୍ତ୍ରୀ. (କୃଷ୍ଣ-କ-ଆ) ସୁଧିକା; ରାଇ-ସୋରିଷ ।
କୃଷ୍ଣେକ୍ଷୁ, ବ. ପୁଂ. (କୃଷ୍ଣ-ଇକ୍ଷୁ) କଳା ଅଖୁ ।
କୃଷ୍ୟ, ବିଂ. (କୃଷ୍-ଯ) କର୍ଷଣଯୋଗ୍ୟ, କୃଷିର ଉପଯୁକ୍ତ ।
କୃସର, ବ. ପୁଂ. (କୃ-ସର) ତିଳଦୁଗ୍ଧ ମିଶ୍ରିତ ଅନ୍ନ, ତିଳଯାଉ ।
କୢପ୍ତ, ବିଂ. (କୢପ୍-ତ) କଳ୍ପିତ ।
କେ, ସର୍ବ. ( କିମ୍ ଶବ୍ଦଜ ) କେଉଁ ବ୍ୟକ୍ତି, କୌଣସି ମନୁଷ୍ୟ ।
କେକୟ, ବ. ପୁଂ. ଦେଶବିଶେଷ, ପଞ୍ଜାବର ଅନ୍ତର୍ଗତ ବିପାଶା ନଦୀର ପଶ୍ଚିମସ୍ଥ ପର୍ବତମୟ ଦେଶ; ସୂର୍ଯ୍ୟବଂଶୀୟ ନୃପବିଶେଷ ।
କେକୟୀ, ବ. ସ୍ତ୍ରୀ. ( କେକୟ-ଈ ) ଦଶରଥ ରାଜାର ମଧ୍ୟମା ପତ୍ନୀ, ଭରତଙ୍କ ମାତା ।
କେକର, ବିଂ. (କେ-କର) ବକ୍ରାକ୍ଷ, ଟେରା । ନ. ବକ୍ରଦୃଷ୍ଟି ।

କେକା, ବ. ସ୍ତ୍ରୀ. ( କେ-କୈ-ଅ ) ମୟୂର ଧ୍ୱନି, ମୟୂର ଡାକ । ଯଥା—
  ବନରେ ମୟୂର କେକିରୁତ କେକାରବେ । ମ. ଯା.
କେକାବଳ, ବ. ପୁଂ. (କେକା-ବଳ) ମୟୂର ।
କେକୀ, ବ. ପୁଂ. (କେକା-ଇନ୍) ଶିଖୀ, ମୟୂର ।
କେଚତ, କେଚନ, ଅଂ. ( କେ-ଚିତ୍, ଚନ ) କୌଣସି କୌଣସି ବ୍ୟକ୍ତି ।
କେଚୁକ, ବ. ନ. ସାରୁ ।
କେଞ୍ଚୁଅ, ବ. ପୁଂ. (ଦେଶଜ) ଜିଆ; ମହୀଲତା ।
କେଡେ, ବିଂ. (ଦେଶଜ) ପରିମାଣବିଶେଷ ।
କେଣିକା, ବ. ସ୍ତ୍ରୀ. (କଣ୍-ଅକ) ତାମ୍ବୁ ।
କେଣେ, କେଉଁଣିକି, ଅଂ. (ଦେଶଜ) କେଉଁଆଡକୁ ।
କେତକ, ବ. ପୁଂ. ( କିତ-ଅକ ) କିଆ ଫୁଲର ଗଛ । ନ. ତତ୍ପୁଷ୍ପ । ଯଥା—
  କେତକ-କାନନସଙ୍କୁଳ ରମ୍ୟ ସିକତାସ୍ଥଳ । ଚ. ସ୍ତ.
କେତକୀ, ବ. ସ୍ତ୍ରୀ. ( କିତ-ଅକ-ଈ ) ସ୍ୱନାମ ପ୍ରସିଦ୍ଧ ବୃକ୍ଷବିଶେଷ ଓ ତତ୍ପୁଷ୍ପ ।
କେତନ, ବ. ନ. (କିତ୍-ଅନ) ଧ୍ୱଜ, ପତାକା; ଚିହ୍ନ; କାର୍ଯ୍ୟ; ସ୍ଥାନ; ଗୃହ; ଉପନିମନ୍ତ୍ରଣ ।
କେତୁ, ବ. ପୁଂ. ( କିତ୍-ଉ, କି=କେ ) ଗ୍ରହ-ବିଶେଷ, ନବମ ଗ୍ରହ; ଧ୍ୱଜ, ପତାକା; ଚିହ୍ନ; ଉତ୍ପାତ ଚିହ୍ନ; ଧୂମକେତୁ; ଶତ୍ରୁ; ରୋଗ ।
କେତୁର, ବ. ପୁଂ. (କେତୁ-ର) ମେଘ ।
କେତୁମାଳ, ବ. ନ. ଜମ୍ବୁଦ୍ୱୀପର ୯ ବର୍ଷର ଏକ ବର୍ଷ; ଳା, ସ୍ତ୍ରୀ. ଅବନ୍ତୀଦେଶସ୍ଥ ନଦୀବିଶେଷ ।
କେତୁମୁଣ୍ଡ, ବ. ପୁଂ. ( କେତୁ-ମୁଣ୍ଡ ) ରାହୁ । ଯଥା—
  ବାହାର କରନ୍ତି ପୌର୍ଣ୍ଣମୀ ହୁଅନ୍ତେ କେତୁମୁଣ୍ଡ ଅଚ୍ଛ ଚିତ୍ତେ ।
  ଚ. ଭ.
କେତୁରତ୍ନ, ବ. ନ. (କେତୁ-ରତ୍ନ) ବୈଦୁର୍ଯ୍ୟମଣି ।
କେତେ, ଅଂ. ପରିମାଣବାଚକ ଶବ୍ଦ ।
କେଦାର, ବ. ପୁଂ. (କେ-ଦୃ-ଅ) କ୍ଷେତ୍ର; ପର୍ବତ-ବିଶେଷ; ଆଳବାଳ; ଶିବ; କ୍ଷେତ୍ରର ହୁଡ଼ା । କ୍ଷେତ୍ର ଅର୍ଥରେ । ଯଥା—
  କେଦାରଜ ଜଳ ଉଦକେଦାରେ ବହିଲୁ । ବ. ଚ.

**କେଦାରଗୌରୀ,** ବି. ଭୁବନେଶ୍ୱର ନିକଟବର୍ତ୍ତୀ ପ୍ରସିଦ୍ଧ ସ୍ଥାନ, ପ୍ରସିଦ୍ଧ ଠାକୁରାଣୀ ।

**କେଦାରଜ,** ବିଂ. (କେଦାର-ଜନ୍-ଅ) କ୍ଷେତ୍ର-ଜାତ (ଧାନ୍ୟାଦି) । ବି. ପୁଂ. ପଦ୍ମକାଷ୍ଠ ।

**କେନା,** (ଦେଶଜ) ବୃକ୍ଷ ଶାଖା ।

**କେନାର,** ବି. ପୁଂ. (କେ-ନୃ-ଅ) କୁମ୍ଭି ନରକ; ମସ୍ତକ; କପୋଳ; ସନ୍ଧି ସ୍ଥାନ ।

**କେନିପାତ,** ବି. ପୁଂ. (କେ-ନିପାତ) ଅଭିଲ୍ଲ ।

**କେନ୍ଦରା,** ବି. (ଦେଶଜ) ବାଦ୍ୟଯନ୍ତ୍ରବିଶେଷ ।

**କେନ୍ଦ୍ର,** ବି. ପୁଂ. ( କ-ଇନ୍ଦ୍ର ) ଲଗ୍ନ; ମେରୁ; ପୃଥିବୀର ଉତ୍ତର ଦକ୍ଷିଣ ପ୍ରାନ୍ତ; ଗୋଲାକାର ପଦାର୍ଥର ଠିକ ମଧ୍ୟସ୍ଥାନ ।

**କେନ୍ଦ୍ରବିମୁଖ ବଳ,** ବି. ନ. ଯେଉଁ ଶକ୍ତି ପ୍ରଭାବରେ ପଦାର୍ଥ ସବୁ କେନ୍ଦ୍ରାଭିମୁଖରୁ ଅନ୍ତରିତ ହୁଏ । (Centrefugal)

**କେନ୍ଦ୍ରସ୍ରୋତଃ,** ମେରୁ ନିକଟରୁ ଆଗତ ସ୍ରୋତ । (Polar current)

**କେନ୍ଦ୍ରାପସାରଣୀ ଶକ୍ତି,** ବି. ଯେଉଁ ଶକ୍ତି ପ୍ରଭାବରେ ଦ୍ରବ୍ୟକୁ କେନ୍ଦ୍ର ତ୍ୟାଗ କରି ଯିବାକୁ ହୁଏ । (Centrefugal Force.)

**କେନ୍ଦ୍ରାକର୍ଷଣୀ ଶକ୍ତି,** ବି. ଯେଉଁ ଶକ୍ତି ପ୍ରଭାବରେ ଦ୍ରବ୍ୟକୁ କେନ୍ଦ୍ର ଆଡ଼କୁ ଆସିବାକୁ ହୁଏ । Centrepetal Force.)

**କେନ୍ଦ୍ରାଭିମୁଖ ବଳ,** ଯେଉଁ ଶକ୍ତି ପ୍ରଭାବରେ ପଦାର୍ଥ ସବୁ କେନ୍ଦ୍ରାଭିମୁଖରେ ଆକୃଷ୍ଟ ହୁଏ । (Centrepetal)

**କେନ୍ଦୁଆ,** ବି. ପୁଂ. (ଦେଶଜ) ହିଂସ୍ରକ ଜନ୍ତୁ-ବିଶେଷ ।

**କେମନ୍ତ,** କ୍ରି. ବିଂ. କିପ୍ରକାର । ଅଂ. ପ୍ରଶ୍ନବାଚକ ଶବ୍ଦ ।

**କେମୁକ,** ବି. ପୁଂ. ବୃକ୍ଷବିଶେଷ ।

**କେମ୍ପା,** ବିଂ. ( ଦେଶଜ ) ହସ୍ତବକ୍ରତାବିଶିଷ୍ଟ ପ୍ରାଣୀ ।

**କେୟୂର,** ବି. ନ. (କେ-ଯୁ-ଉର) ଅଙ୍ଗଦ, ତାଡ଼, ବାହୁଭୂଷଣ । ପୁଂ. ରତିବନ୍ଧବିଶେଷ ।

**କେୟୂରବନ୍ଧ,** ବି. ନ. (କେୟୂର-ବନ୍ଧ) ଅଙ୍ଗଦ ପରିଧାନର ସ୍ଥାନ ।

**କେରଳ,** ବି. ପୁଂ. ଦେଶବିଶେଷ, ମାଲବାର ଦେଶ ଏହାର ଉତ୍ତରରେ ସହ୍ୟ ପର୍ବତ ଓ ଦକ୍ଷିଣରେ କନ୍ୟାକୁମାରୀ; କେଳା । ବିଂ. ତଦ୍ଦେଶୀୟ ।

**କେରଣ୍ଡି,** (ଦେଶଜ) ମତ୍ସ୍ୟବିଶେଷ ।

**କେରଳୀ,** ବି. ସ୍ତ୍ରୀ. ଜ୍ୟୋତିଃଶାସ୍ତ୍ରବିଶେଷ; ଏକ ସଙ୍ଖ୍ୟା ।

**କେଳତି,** ବି. ସ୍ତ୍ରୀ. ରତି । ଯଥା—

> କହୁ ନୋହେ ବଚନେ ସେ କାଳ ଶୋଭା,
> କେତେ ଅବା କନ୍ଦର୍ପ କେଳତି ପ୍ରଭା । ର. ବି.

**କେଳା,** ବି. (ଦେଶଜ) ଐନ୍ଦ୍ରଜାଲିକ ।

**କେଳି,** ବି. ପୁଂ. ସ୍ତ୍ରୀ. ( କେଲ୍-ଇ ) କ୍ରୀଡ଼ା; କୌତୁକ; ପରିହାସ ।

**କେଳିକଦମ୍ବ,** ବି. ପୁଂ. ଛୋଟ ଛୋଟ ଫୁଲବିଶିଷ୍ଟ ଏବଂ ବସନ୍ତକାଳରେ ପୁଷ୍ପିତ କଦମ୍ବ ବୃକ୍ଷ-ବିଶେଷ ।

**କେଳିକଳା,** ବି. ସ୍ତ୍ରୀ. ( କେଳି-କଲ୍-ଅ-ଆ ) ସରସ୍ୱତୀର ବୀଣା; ରତିକ୍ରୀଡ଼ା; ଦଇତମିତ, ଚନ୍ଦ୍ର । ଯଥା—

> ବହାଇ ରଚନ୍ତ ସହୁଁ କେଳକଳା ।

**କେଳିକଳା,** ବି. ସ୍ତ୍ରୀ. ( କେଳି-କଳା ) ରତି; କନ୍ଦର୍ପପତ୍ନୀ ।

**କେଳିକୀର୍ଣ୍ଣ,** ବି. ପୁଂ. ଉଷ୍ଟ୍ର, ଓଟ ।

**କେଳିକୁଞ୍ଚିକା,** ବି. ସ୍ତ୍ରୀ. (କେଳି-କୁଞ୍ଚ୍-ଅକ-ଆ) ଶାଳୀ, ସ୍ତ୍ରୀର ସାନ ଭଉଣୀ ।

**କେଳିଭୂମି,** ବି. ସ୍ତ୍ରୀ. କ୍ରୀଡ଼ାର ସ୍ଥାନ; ବିହାରସ୍ଥଳ । ବିଂ. କୌତୁକସ୍ଥାନୀୟ; ପରିହାସର ପାତ୍ର ।

**କେଳିମୁଖ,** ବି. ପୁଂ. (କେଳି-ମୁଖ) କୌତୁକ, ପରିହାସ ।

**କେବଟ,** ବି. ପୁଂ. ଜଳାଧାରାର୍ଥ ଗର୍ତ୍ତରୂପ କୂପ ।

କେବଣ, ସର୍ବ. (ଦେଶଜ) କ, କେଉଁ । ଯଥା—

କହ କେବଣ ପ୍ରୟୋଜନ, ଶୁଣି ଆନନ୍ଦ ହେଉ ମନ ।

କେବର୍ତ୍ତ, ବ. ପୁଂ. ( କେ-ବର୍ତ୍ତ-ଅ ) କେଉଟ; ଜାଲିଆ; ଦାସ ଜାତି ।

କେବଳ, ବିଂ. (କେବ୍-ଅଳ)ଏକମାତ୍ର, ଅସହାୟ, ଅଦ୍ୱିତୀୟ; ଉକ୍ତ; କୃତ୍ସ୍ନ; ସମ୍ପୂର୍ଣ୍ଣ; ଅବଧାରିତ; ଶୁଦ୍ଧ ।

କେବା, ଅଂ. (ପ୍ରା) କିଏ ଅବା ।

କେଶ, ବ. ପୁଂ. (କ-ଈଶ-ଅ) ବାଳ; ଦୈତ୍ୟବିଶେଷ; ବରୁଣ; ବିଷ୍ଣୁ । ସ୍ତ୍ରୀ. ଶିଖା, ଚୂଡ଼ା ।

କେଶକାର, ବିଂ. (କେଶ-କୃ-ଅ) କେଶସଂସ୍କାରକ, କେଶବିନ୍ୟାସକାରୀ ।

କେଶକୀଟ, ବ. ପୁଂ. (କେଶ-କୀଟ) ଉକୁଣି ।

କେଶଗର୍ଭକ, ବ. ପୁଂ. (କେଶ-ଗର୍ଭକ) ଜୁଡ଼ା ।

କେଶଘ୍ନ, ବ. ନ. ( କେଶ-ଘ୍ନ ) କେଶନାଶକ ରୋଗବିଶେଷ।

କେଶଚ୍ଛିଦ୍, ବ. ପୁଂ. (କେଶ-ଛିଦ୍-୦) ଭଣ୍ଡାରୀ ।

କେଶପକ୍ଷ, କେଶପାଶ, କେଶହସ୍ତ, } ବ. ପୁଂ. ( କେଶ-ପକ୍ଷ, ପାଶ, ହସ୍ତ) ଭୂଷିତ କେଶଗୁଚ୍ଛ, ବାଳର ଗୁଚ୍ଛା ।

କେଶପାଶୀ, ବ. ସ୍ତ୍ରୀ. ( କେଶ-ପାଶ-ଈ ) ଶିଖା, ଚୂଡ଼ା ।

କେଶମାର୍ଜକ, କେଶମାର୍ଜନ, } ବ. ନ. ( କେଶ-ମାର୍ଜକ, ମାର୍ଜନ) ପାନିଆ, କଙ୍କତିକା ।

କେଶର, କେସର, ବ. ପୁଂ. (କେ-ଶୃ-ଅ) କିଞ୍ଜଳ୍କ, ପାଖୁଡ଼ା ମଧ୍ୟରେ ଯେଉଁ କେଶ ପରି ସୂକ୍ଷ୍ମପଦାର୍ଥ ଥାଏ; ଗର୍ଭକେଶର; ସିଂହ ଅଶ୍ୱାଦିର ବେକର ବାଳ; ନାଗେଶ୍ୱର । ଯଥା—

ମୁକୁଳ କେଶର-କେଶର କେଶର ଧରି ଚଳି । ମୁ. ଦ.

କେଶରବର, ବ. ପୁଂ. (କେଶର-ବୃ-ଅ) କୁଙ୍କୁମ ।

କେଶରୀ, କେସରୀ, ବ. ପୁଂ. ( କେଶର-ଇନ୍ ) ସିଂହ; ଅଶ୍ୱ; ବାନରବିଶେଷ; ପୁନ୍ନାଗବୃକ୍ଷ; ନାଗକେଶର ବୃକ୍ଷ ।

କେଶବ, ବ. ପୁଂ. (କ-ଈଶ-ବ) କୃଷ୍ଣ; ବିଷ୍ଣୁ । ବିଂ. ( କେଶ+ବ ) ପ୍ରଶସ୍ତ କେଶଯୁକ୍ତ ।

କୃଷ୍ଣ ଅର୍ଥରେ । ଯଥା—

କେଶବ କହନ୍ତି ଚଳ୍ପ ଶୁଣି କର୍ଣ୍ଣ ବାଣୀ
ଧର୍ମରାଜ୍ୟ କଥା ତାଙ୍କୁ ଅଛି ଅଳ୍ପ ଅଣି । ଦର୍ପଣ ।

କେଶବିନ୍ୟାସ, ବ. ପୁ. (କେଶ-ବିନ୍ୟାସ) କବରୀବନ୍ଧନ, କେଶରଚନା ।

କେଶବେଶ, ବ. ପୁଂ. ( କେଶ-ବେଶ ) କେଶବିନ୍ୟାସ, କବରୀବନ୍ଧନ ।

କେଶାକେଶି, ଅଂ. କ୍ରି. ବିଂ. ପରସ୍ପର କେଶଗ୍ରହଣପୂର୍ବକ ଯୁଦ୍ଧ ।

କେଶାନ୍ତ, ବ. ପୁଂ. (କେଶ-ଅନ୍ତ) କେଶପ୍ରାନ୍ତ; କେଶପାଶ ।

କେଶାବମର୍ଷଣ, ବ. ନ. ( କେଶ-ଅବ-ମର୍ଷଣ ) କେଶାକର୍ଷଣ ।

କେଶିସୂଦନ, ବ. ପୁଂ. (କେଶିନ୍-ସୂଦନ) କୃଷ୍ଣ, ବିଷ୍ଣୁ, ନାରାୟଣ ।

କେଶିହା, ବ. ପୁଂ. (କେଶିନ୍-ହନ୍) କୃଷ୍ଣ, ବିଷ୍ଣୁ ।

କେଶୀ, ବିଂ. (କେଶ-ଇନ୍) ପ୍ରଶସ୍ତ କେଶବିଶିଷ୍ଟ । ବ. ପୁଂ. ଦୈତ୍ୟବିଶେଷ; ସିଂହ; ବିଷ୍ଣୁ ।

କେଶୀଉପୁ୍ରତ, ବ. ପୁଂ. କନ୍ଦର୍ପ, କାମ । ଯଥା—

ଦେନ ମରହଟକେଶୀ କେଶୀ-ଉପସୁତ
ଶଙ୍କର ପଢ଼ାଉବ । ପ୍ରେ. ସୁ.

କେହି, କେହୁ, } ଅଂ. ସଂ. ( କିମ୍‌ଶବ୍ଦଜ ) କୌଣସି ବ୍ୟକ୍ତି ।

କୈକୟୀ, କୈକେୟୀ. ବ. ସ୍ତ୍ରୀ. (କେକୟ-ଅ-ଈ) ଦଶରଥ ରାଜାର ପତ୍ନୀ, ଭରତର ମାତା ।

କୈକେୟ, ବ. ପୁଂ. ( କେକୟ-ଅ ) କେକୟ ଦେଶର ରାଜା ।

କୈଟଭ, ବ. ପୁଂ. (କୀଟ-ଭା-ଅ) ଅସୁରବିଶେଷ ।

କୈଟଭଜିତ୍, କୈଟଭାରି, କୈଟଭହା, କୈଟଭଦ୍ୱିଟ୍, } ବ. ପୁଂ. (କୈଟଭ-ଜିତ୍, ଅରି, ହନ୍, ଦ୍ୱିଷ୍) ନାରାୟଣ, ବିଷ୍ଣୁ ।

କୈତବ, ବ. ନ. ( କିତବ-ଅ ) ଛଳ, କପଟ; ଦ୍ୟୁତକ୍ରୀଡ଼ା, ପାଶକ୍ରୀଡ଼ା । ଯଥା—

କଉରବ ବେଶେ ଦଣ୍ଡିର
ଛଳା କଲେକ୍ତ ଧର୍ମ ବର । ଦ. ସ.

କୈଦାର, କୈଦାରକ, } ବି. ନ. ( କେଦାର-
କୈଦାରିକ, କୈଦାର୍ଯ୍ୟ, } ଅ, କ, ଇକ, ଯ)
କ୍ଷେତ୍ରସମୂହ । ବିଂ. କେଦାରସମ୍ବନ୍ଧୀୟ ।

କୈମୁତିକ, ବି. ପୁଂ. (କିମ୍-ଉତ-ଇକ) ନ୍ୟାୟ-
ବିଶେଷ ।

କୈରବ, ବି. ନ. (କେରବ=[କେ, ଜଳରେ-
ରବ, ଯେ ରବ କରେ] ହଂସ-ଅ) କୁମୁଦ;
ଶ୍ୱେତୋତ୍ପଳ । ପୁଂ. କିତବ; ରିପୁ; ଶତ୍ରୁ । ସ୍ତ୍ରୀ.
କୌମୁଦୀ; ଜ୍ୟୋତ୍ସ୍ନା

କୈରବିଣୀ, ବି. ସ୍ତ୍ରୀ. ( କୈରବ-ଇନ୍-ଈ )
କୁମୁଦିନୀ ।

କୈରବୀ, ବି. ସ୍ତ୍ରୀ. ଚନ୍ଦ୍ରିକା, ଜ୍ୟୋତ୍ସ୍ନା, ମେଥି ।

କୈରାତ, ବିଂ. (କିରାତ-ଅ) ବ୍ୟାଧତୁଲ୍ୟ ବଳବାନ୍;
କିରାତ ଦେଶଜାତ । ବି. ପୁଂ. ଭୂନିମ୍ବ ।

କୈଲପ, ବି. ପୁଂ. (କୈଲ [କେଳ+ଅ]-ଅପ)
ପର୍ବତବିଶେଷ ।

କୈଳାସନାଥ, ବି. ପୁଂ. (କୈଳାସ-ନାଥ) ଶିବ;
କୁବେର ।

କୈଳାସଶିଖରୀ, ବି. ପୁଂ. (କୈଳାସଶିଖର-ଇନ୍)
ଶିବ, କୁବେର ।

କୈବର୍ତ୍ତ, ବି. ପୁଂ. ( କେବର୍ତ୍ତ-ଅ ) ଧୀବର,
କେଉଟ ।

କୈବଲ୍ୟ, ବି. ନ. (କେବଳ-ଯ) ସଂସାରମୁକ୍ତି,
ମୋକ୍ଷ; ( ଗ୍ରା ) ନିର୍ମାଲ୍ୟ । ଯଥା—

କୈବଲ୍ୟଦାନ ଯଶୋଦାସୁତ,
କଲେ ତାଙ୍କୁ ସେବା ମାଗିକି ନିତ । ଚ. ଭ.

କୈଶିକାକର୍ଷଣ, ବି.ନ. (Capillary attraction) ଯେଉଁ ଶକ୍ତିଦ୍ୱାରା ସୂକ୍ଷ୍ମଛିଦ୍ରବିଶିଷ୍ଟ ନଳରେ
ଜଳାଦି ଉନ୍ନତ ହୋଇ ଉଠଇ ।

କୈଶିକାନାଡ଼ୀ, ବି. ସ୍ତ୍ରୀ. କେଶପରି ସୂକ୍ଷ୍ମନାଡ଼ୀ,
ଏହି ନାଡ଼ୀ ଦେଇ ପ୍ରଥମତଃ ଶିରାରେ ରକ୍ତ
ସଞ୍ଚାଳିତ ହୁଏ ।

କୈଶିକାବନତ, ବି. (Capilliary) କୈଶିକ
ନଳର ଅଭ୍ୟନ୍ତରରେ କୌଣସି ତରଳ
ପଦାର୍ଥ ଅବନତ ହୋଇ ପଡିଲେ ତାକୁ
କୈଶିକାବନତ କହନ୍ତି ।

କୈଶୋର, ବି. ନ. (କିଶୋର-ଅ) ବାଲ୍ୟାବସ୍ଥା,
ଦଶମ ବର୍ଷରୁ ପଞ୍ଚଦଶ ବର୍ଷ ପର୍ଯ୍ୟନ୍ତ ।

କୈଶ୍ୟ, ବି. ନ. (କେଶ-ଯ) କେଶସମୂହ ।

କୋଇଲା, (ଦେଶଜ) ଅଙ୍ଗାର ।

କୋଇଲି, ବି. (କୋକିଳ ଶବ୍ଦଜ) କୋକିଳ,
ପିକ ।

କୋକ, ବି. ପୁଂ. ( କ-ଉକ-ଅ ) ଚକ୍ରବାକ;
ଭେକ; ବନ୍ତୁ; ବୃକ, ହେଟାବାଘ; ଜ୍ୟେଷ୍ଠୀ,
ଖର୍ଜୁରବୃକ୍ଷ । ଯଥା—

ଚଣ୍ଡୀ ଦୃଷ୍ଟେ କାନ୍ଦା ସଙ୍ଗେ,
ଭଙ୍ଗେ ଯହିଁ କୀଟଜ୍ଞ କୋକେ । ଋଷା ।

କୋକଡ଼, ବି. ପୁଂ. ସ୍ତ୍ରୀ. ମୃଗବିଶେଷ, ଚମରୀମୃଗ ।

କୋକଦେବ, ବି. ପୁଂ. କପୋତ, ପାରା ।

କୋକନଦ, ବି. ନ. (କୋକ-ନଦ-ଅ) ରକ୍ତପଦ୍ମ ।
ଯଥା—

କଣାଳ-ଉତ୍ସ କରେ ଶୁଭ୍ର ଯୌବନ କଲ୍ପ
କୋକନଦ ଶୁଳଘ । ବୈ. ବ.

କୋକନଦଚ୍ଛବ, ବି. ପୁଂ. ( କୋକନଦ-ଛବି )
ରକ୍ତବର୍ଣ୍ଣ । ବିଂ. ରକ୍ତବର୍ଣ୍ଣବିଶିଷ୍ଟ ।

କୋକବନ୍ଧୁ, ବି. ପୁଂ. ( କୋକ-ବନ୍ଧୁ ) ରବି;
ଦିବାକର, ସୂର୍ଯ୍ୟ ।

କୋକମୁଖ, ବି. ପୁଂ. ଭାରତ ପ୍ରସିଦ୍ଧ ତୀର୍ଥବିଶେଷ ।

କୋକାହ, ବି. ପୁଂ. ଶ୍ୱେତଘୋଟକ ।

କୋକିଲ, ବି. ପୁଂ. ( କୁକ୍-ଇଲ ) ସ୍ୱନାମପ୍ରସିଦ୍ଧ
ପକ୍ଷିବିଶେଷ, ପିକ; ଜ୍ୱଳନ୍ତା ଅଙ୍ଗାର ।

କୋକିଳକଣ୍ଠୀ, ବିଂ. ଯେଉଁ ସ୍ତ୍ରୀର କଣ୍ଠ କୋକିଳ
କଣ୍ଠପରି ମଧୁର ।

କୋକିଳସ୍ୱନ, ବି. ମଙ୍ଗଳସ୍ୱନ ଅର୍ଥାତ୍ ବାଉଁଅ
ଗାଧୁଆ ।

କୋଙ୍ଗା, ବି. (ଦେଶଜ) ବଲ୍ଲୀବିଶେଷ ।

କୋଙ୍କଣ, ବି. ନ. (କୋମ୍-କଣ) ଅସ୍ତ୍ରବିଶେଷ ;
ଦେଶବିଶେଷ ।

କୋଙ୍କଣା, ବ. ସ୍ତ୍ରୀ. (କୋଙ୍କଣ-ଘ) ପରଶୁରାମଙ୍କ ମାତା ।

କୋର, ବ. ପୁଂ. (କୁର୍-ଅ) ମାଗରକାଢ଼ିବଶେଷ ।

କୋଜାଗର, ବ. ପୁଂ. ( କଃ-ଜାଗର ) ଆଶ୍ୱିନ-ପୂର୍ଣ୍ଣିମା ; କୁମାରପୂର୍ଣ୍ଣିମା ; ଏପରି ଲଖିତ ଅଛି ଯେ ଏହି ପୂର୍ଣ୍ଣିମାରେ ଲକ୍ଷ୍ମୀ କହନ୍ତି-ଆଜ ନାରକେଳ ଜଳ ପାନ କରି ଯେ ଜାଗିଥିବ ତାହାକୁ ସମ୍ପତ୍ତି ପ୍ରଦାନ କରିବ । ଯଥା—

ନଶୀଥେ ବରଦା ଲକ୍ଷ୍ମୀଃ କୋଜାଗର୍ତୀତଭାଷିଣୀ,
ତସ୍ମୈ ବିତ୍ତଂ ପ୍ରଯଚ୍ଛାମି ଅକ୍ଷୈଃ କ୍ରୀଡ଼ାଂ କରୋତି ଯଃ ।

କୋଟ, ବ. ପୁଂ. (କୁଟ୍-ଅ) ଦୁର୍ଗ, କକ୍ଷ; (କୁଟ୍-ଅ) କୌଟିଲ୍ୟ ।

କୋଟକ, ବ. ପୁଂ. (କୁଟ୍-ଅକ) ଗୃହ ନର୍ମାଣ-କାରକ ଜାତି ।

କୋଟର, ବ. ପୁଂ. ନ. ( କୋଟ-ର ) ବୃକ୍ଷସ୍ଥ ଗହ୍ୱର ।

କୋଟସ୍ତୀ, ବ. ସ୍ତ୍ରୀ. (କୋଟର-ଈ) ବବସ୍ତ୍ରା ନାରୀ ।

କୋଟବୀ, ବ. ସ୍ତ୍ରୀ. ( କୋଟ-ବା-ଅ-ଈ ) ବବସ୍ତ୍ରା ନାରୀ, ଦୁର୍ଗା, କାଳୀ ।

କୋଟି, କୋଟୀ, ବ. ସ୍ତ୍ରୀ. ( କୁଟ୍-ଇ ) ଖଡ୍ଗାଦିର ପ୍ରାନ୍ତ, ଧାର; ଅଗ୍ରଭାଗ; ଶତଲକ୍ଷ ସଂଖ୍ୟା, କ୍ରୋର; ଉତ୍କର୍ଷ; ମଧ୍ୟ; ଧନୁକାଦିର ଅଗ୍ରଭାଗ; ପକ୍ଷ; ସମକୋଣୀ ତ୍ରିଭୁଜର କର୍ଣ୍ଣ ଭିନ୍ନ ବାହୁ-ବଶେଷ ।

କୋଟିର, ବ. ପୁଂ. (କୋଟି-ର) ଇନ୍ଦ୍ର; ନକୁଳ, ନେଉଳ; ଇନ୍ଦ୍ରଗୋପ କୀଟ ।

କୋଟିକତ୍, ବ. ପୁଂ. ( କୋଟି-କତ୍ ) ଯେ କବିତ୍ୱରେ କୋଟିଏ କବିଙ୍କି ଜୟ କରିଥିଲେ, ରଘୁବଂଶାଦି କାବ୍ୟକାରକ କାଳିଦାସ ।

କୋଟିଶ, କୋଟୀଶ, ବ. ପୁଂ. (କୋଟି-ଶୋ-ଅ) ଲୋଷ୍ଟ୍ରଭେଦକ ଅସ୍ତ୍ର; ନାଗବଶେଷ ।

କୋଟିଶଃ, ଅ. ( କୋଟି-ଶସ୍ ) କୋଟିଏ ଥର, କୋଟିକୋଟି ପରିମାଣ ।

କୋଠୀର, ବ. ପୁଂ. (କୁଠ୍-ଈର) କଣ୍ଠା; କପାଟ, ମୁକୁଟ ।

କୋଟ୍ଟ, ବ.ପୁଂ.(କୋଟ୍ଟ-ଅ) ଦୁର୍ଗ, ଗଡ଼; ରାଜଧାନୀ-ବଶେଷ ।

କୋଟ୍ଟବୀ, ବ. ସ୍ତ୍ରୀ. (କୋଟ୍ଟ-ବା-ଅ-ଈ) ବବସ୍ତ୍ରା ସ୍ତ୍ରୀ; ଦୁର୍ଗା, କାଳୀ ।

କୋଟ୍ଟାରୀପୁର, ବ. ନ. ବାଣାସୁରପୁର ।

କୋଟ୍ଟାର, ବ. ପୁଂ. ( କୋଟ୍ଟ-ଋ-ଅ ) କୂପ; ପୁଷ୍କରଣ୍ୟାଦିର ସୋପାନ ।

କୋଠ, ବ. ପୁଂ. (କୁଠ-ଅ) ଚକ୍ରାକାର କୁଷ୍ଠ-ରୋଗ । ବଂ. ( ଦେଶଜ ) ଇକମାଇଲ । ଯଥା—

ସଙ୍ଗୀ ଅନୁରୋଧେ ପଡ଼ବ, ତେବେ କୋଠରଶ୍ରାଦ୍ଧ,
ତଦନୁରାଗାପାଇଁ ବଧେ ବସ୍ତ୍ର ଭୂଷଣ ଶୁଦ୍ଧ ।

କୋଠକରଣ, ବ. ପୁଂ. ଛମ୍ବକରଣ ।

କୋଠା, ବ. (କୋଷ୍ଠ ଶବ୍ଦଜ) ଅଟ୍ଟାଳିକା ।

କୋଠି, ବ. ( ଦେଶଜ ) ଶସ୍ୟାଗାରବଶେଷ; ଅମ୍ବାର ।

କୋଠିଆ, ବ. ପୁଂ. ଚାଷ କରିବା ସକାଶେ ନଯୁକ୍ତ ମୂଲିଆ ।

କୋଡ଼, ବ. (କୁଦ୍ଦାଳ ଶବ୍ଦଜ) ମୃତ୍ତିକା ଖନନାର୍ଥ ଲୌହ ଅସ୍ତ୍ରବଶେଷ ।

କୋଡ଼ିବା, କ୍ରି. କୋଡ଼ଦ୍ୱାରା କାର୍ଯ୍ୟ କରିବା ।

କୋଢ଼ୀ, ବଂ. (କୁଷ୍ଠ ଶବ୍ଦଜ) ପଙ୍ଗୁ ।

କୋଣ, ବ. ପୁଂ. ( କୁଣ୍-ଅ ) ଗୃହାଦିର ବଦକ୍; ଅସ୍ତ୍ରର ଦାଢ଼; ବୀଣାଦିବାଦନଦଣ୍ଡ; ଲଗୁଡ଼; ମଙ୍ଗଳଗ୍ରହ; ଶନି; ବଭିନ୍ନମୁଖୀନ ରେଖାଦ୍ୱୟ ମିଳନ ବନ୍ଦୁରେ ଯେଉଁ ଅବନତି ହୁଏ ।

କୋଣକୁଣ, ବ. ପୁଂ. (କୋଣ-କୁଣ୍-ଅ) କେଶ-କୀଟ, ଉକୁଣୀ ।

କୋଣାଘାତ, ବ. ପୁଂ. (କୋଣ-ଆଘାତ) ଯେଉଁ ସ୍ଥଳରେ ଏକଲକ୍ଷ ଢକ୍କା ଏବଂ ଦଶସହସ୍ର ଭେରୀ ଏକ ସମୟରେ ଆହତ ହୁଏ । ଯଥା—

ଢକ୍କା ଶତସହସ୍ରାଣି, ଭେରୀ ଶତଶତାନି ଚ,
ଏକଦା ଯତ୍ର ହନ୍ୟନ୍ତେ, କୋଣାଘାତଃ ସ ଉଚ୍ୟତେ ।

କୋଣାର୍କ, ବି. ପୁଂ. ( କୋଣ-ଅର୍କ ) ପୁରୀର ୧୧ କୋଶ ଉତ୍ତରପୂର୍ବରେ ଅବସ୍ଥିତ ଅର୍କ-କ୍ଷେତ୍ର ।

କୋଣୀ, ବି. ( କୁଣ୍-ଇ ) ଗ୍ରହଣଶକ୍ତିହୀନ, କେମ୍ପା ।

କୋଠ, ବି. ( ଦେଶଜ ) ବଡ଼ କଳସୀ ବା ମାଠିଆ ।

କୋଠରୀ, ବି. (ଦେଶଜ) ମସିସ୍ଥା, ମଳାନ୍ନ ।

କୋଦଣ୍ଡ, ବି. ପୁଂ. ଚ. (କୁଣ୍-ଅଣ୍ଡ, ଣ=ଦ) ଧନୁକ । ଯଥା—

କୋଦଣ୍ଡଧର କାଳିନ୍ଦୀକୂଳେ ଥିଲାସ୍ତ ।

ଦେଶବିଶେଷ; ଧନୁରାଶି ।

କୋଦା, ବି. (ଦେଶଜ) ମୋଟା ।

କୋଦାଳ, ବି. (କୁଦ୍ଦାଳ ଶବ୍ଦଜ) କୋଡ଼ି ।

କୋଦୁଅ, ବି. (ଦେଶଜ) କ୍ଷୁଦ୍ରଧାନ୍ୟବିଶେଷ ।

କୋପ, ବି. ପୁଂ. ( କୁପ୍-ଅ ) କ୍ରୋଧ, ଅମର୍ଷ, ରାଗ । ଯଥା—

ସିବାବେଳେ ଭବ ତାଙ୍କୁ କୋପଚକ୍ଷୁରେ ଗ୍ରହି । ଚ. ଚ.

କୋପନ, ବିଂ. ( କୁପ୍-ଅନ ) କ୍ରୋଧଯୁକ୍ତ, ସହଜରେ ଯାହାର କୋପ ଜନ୍ମେ ।

କୋପନା, ବିଂ. ( କୋପନ-ଆ ) କ୍ରୁଦ୍ଧସ୍ୱଭାବା, ସହଜରେ ଯେଉଁ ସ୍ତ୍ରୀର ରାଗ ଜନ୍ମେ ।

କୋପିତ, ବିଂ. ( କୋପି-ତ ) ରୋଷିତ, ଯାହାର ରାଗ ଜନ୍ମାଇ ଦିଆ ଯାଇଅଛି ।

କୋପୀ, ବିଂ. ( କୋପ-ଇନ୍ ) କ୍ରୋଧୀ, କ୍ରୋଧ-ବିଶିଷ୍ଟ ।

କୋମଳ, ବିଂ. (କମ୍-ଅଳ, ଅ=ଓ) ମୃଦୁ, ନରମ; ମନୋହର, ସୁନ୍ଦର; ମଧୁର, ଲଳିତ । ବି. ନ. ଜଳ ।

କୋମଳାଙ୍ଗ, ବି. ପୁଂ. (କୋମଳ-ଅଙ୍ଗ) ଯେଉଁ-ମାନଙ୍କର ଶରୀର ଅତି କୋମଳ; ଶାମୁକା । ନ. ମୃଗଚର୍ମନିର୍ମିତ ଆସନ । ଙ୍ଗୀ, ସ୍ତ୍ରୀ. ଯେଉଁ ସ୍ତ୍ରୀର ଅଙ୍ଗ ଅତି କୋମଳ ବା ସୁନ୍ଦର ।

କୋମ୍ବର, ବି. (ଦେଶଜ) ଶୂକର । ଯଥା—

ବନ୍ତ ଚେନନ୍ତ ମୁଁ ଚୋଟେ,
ସବୁଠାରେ ହୁଡ଼ାହୁଡ଼ି ଯୁଦ୍ଧ କୋମ୍ବର । ପ୍ରେ. ବୃ.

କୋମ୍ପି, ବି. ( ଦେଶଜ ) ପୁବର୍ଣ୍ଣାଦି ଅଜ୍ଞାଟିବାର ପାତ୍ର ।

କୋୟଷ୍ଟିକ, ବି. ପୁଂ. ଟେଣ୍ଟାଇ ପକ୍ଷୀ ।

କୋରକ, ବି. ପୁଂ. ନ. ( କୁର୍-ଅକ ) ମୁକୁଳ, କଢ଼; ମୃଣାଳ । ଯଥା—

ଶୁଳ୍କବକ୍ଷ କୋରକତ ଉରଜ-କୋରକେ,
ଲଜପାର ସ୍ୱର୍ଣ୍ଣଗାଡ଼ ହ ଥବା ସେ ବେଳ । ମ. ଯା.

କୋରଙ୍ଗୀ, ବି. ସ୍ତ୍ରୀ. କ୍ଷୁଦ୍ର ଅଳାଇଚ ।

କୋରଠ, ବି. (ଦେଶଜ) ଢାଳବାହୁଙ୍ଗାର ବକଳ ।

କୋରଡ଼, ବି. ( ପ୍ରା; କୋଟର ଶବ୍ଦଜ ) ବୃକ୍ଷରେ ଥିବା ଗର୍ତ୍ତ ।

କୋରଡ଼ା, ବି. (ଯାବନିକ) ଚାବୁକ ।

କୋରଣା, ବି. ( ଦେଶଜ ) ନାଡ଼ିକେଳ ଛୋଲିବା କୋରିବା ଅସ୍ତ୍ରବିଶେଷ ।

କୋରା, ବି. ( ଦେଶଜ ) ନାଡ଼ିକେଳ ଓ ଗୁଡ଼ ମିଶ୍ରିତ ଲଡ଼ୁବିଶେଷ ।

କୋରିବା, କ୍ରି. ବି. (ଦେଶଜ) ବିଦାରଣ କରିବା ।

କୋଳ, ବି. ପୁଂ. ( କୁଳ୍-ଅ ) ଶୂକର; ଭେଳା; କଳିଙ୍ଗଦେଶ; କୋଳିଗଛ; ଜାତିବିଶେଷ; ଶନିଗ୍ରହ । ନ. କୋଳିଫଳ । (ପ୍ରା; କ୍ରୋଡ଼ ଶବ୍ଦଜ) ଅଙ୍କ, ଆଲିଙ୍ଗନ, କ୍ରୋଡ଼ । ଯଥା—

କଣ୍ଠ ତଟରେ ପୀତ ବସନ,
ଜଳାମେଘ କୋଳରେ ବନ୍ଧୁ ଯେସନ ।

କୋଳକ, ବି. ପୁଂ. (କୋଳ-ଅକ) ଅଙ୍କୋଟ ଗଛ । ନ. ମରିଚ ।

କୋଳକର୍କଟିକା, ବି. ସ୍ତ୍ରୀ. ମଧୁ ଖର୍ଜୁର ।

କୋଳଥ, ବି. (କୁଳତ୍ଥ ଶବ୍ଦଜ) ଶସ୍ୟବିଶେଷ ।

କୋଳପୁଚ୍ଛ, ବି. ପୁଂ. (କୋଳ-ପୁଚ୍ଛ) ଶୂକର ପୁଚ୍ଛ ପରି ଯାହାର ପୁଚ୍ଛ, କଙ୍କପକ୍ଷୀ ।

କୋଳମ୍ବକ, ବି. ପୁଂ. (କୁଳ୍-ଅମ୍ବ-କ) ତନ୍ତ୍ରୀ ଭିନ୍ନ ବୀଣାର ସମୁଦାୟ ଅବୟବ ।

କୋଳସ୍ୱରୂପୀ, ବି. ପୁଂ. ବରାହ ।

କୋଳାଷ, ବି. ପୁଂ. କଳିଙ୍ଗଦେଶ ।

କୋଳାହଳ, ବ. ପୁଂ.(କୋଳ-ଆ-ହଲ୍-ଅ) କଳକଳ ଧ୍ୱନ, ଚହଳ, ଗୋଳମାଳ ।

କୋଲ, କୋଲୀ, ବ. ସ୍ତ୍ରୀ. (କୋଲ-ଇ, ଈ) ସ୍ୱନାମପ୍ରସିଦ୍ଧ ବୃକ୍ଷ ଓ (ନ) ତହିଁର ଫଳ ।

କୋବା, ବ. (ଦେଶଜ) କାଷ୍ଠନର୍ମିତ ପିଠଣା ।

କୋବଦ, ବଂ. ( କୋ-ବଦ ) ଜ୍ଞାନୀ, ପଣ୍ଡିତ; ନପୁଣ । ଜ୍ଞାନୀ ଅର୍ଥରେ । ଯଥା—

କଚଃଚପ କ୍ଷପନ ଏ ସନ୍ଦ,
କର ବର୍ଣ୍ଣନ ବୁଦ୍ଧିରେ କୋବଦ । ବ. ଚ.

କୋବଦାର, ବ. ପୁଂ. (କଃ-ବ୍ଦାର) ରକ୍ତକାଞ୍ଚନ; ମନ୍ଦାର, ପାରଜାତ ।

କୋଶ, କୋଷ, ବ. ପୁଂ. ନ. (କୁଶ୍, କୁଷ୍-ଅ) କୁଟ୍ମଳ, କଢ଼; ଖଡ୍ଗାଦର ଖୋଳ; ପାନପାବ; ଧନାଗାର; ଧନରାଶି; ଯୋନ; ଅଣ୍ଡକୋଷ; ଭଣ୍ଡାର; ଡମ୍ଭ; ପୋକର ଖୋଷା; ମଞ୍ଜୁଷା; ପଣସର ପୃଷ୍ଠ; ମାଂସପେଶୀ; ଶବ୍ଦାଦର ସଂଗ୍ରହ, ଅଭିଧାନ ।

କୋଶକାର, } କୋଷକାର, } ବ.ପୁଂ. ଖୋଷା ପୋକ; ଅଭିଧାନକର୍ତ୍ତା; ଇକ୍ଷୁ ।

କୋଶଚଞ୍ଚୁ, ବ. ପୁଂ. ସାରସପକ୍ଷୀ ।

କୋଶପାଳ, ବଂ. (କୋଶ-ପାଳ) ଭଣ୍ଡାରରକ୍ଷକ, କୋଶରକ୍ଷକ ।

କୋଶଳ, } କୋଷଳ, } କୋସଳ, } ବ. ସ୍ତ୍ରୀ. ପୁଂ. (କୁଶ୍-ଅଳ) ଦେଶବଶେଷ, ଯେଉଁଠାରେ ଅଯୋଧ୍ୟା ନଗର ଅଛି ।

କୋଶଳା, ବ. ( ଦେଶଜ ) ସ୍ୱନାମପ୍ରସିଦ୍ଧ ଶାକବଶେଷ ।

କୋଶଳାତ୍ମଜା, ବ. ସ୍ତ୍ରୀ. ( କୋଶଳ-ଆତ୍ମଜା ) କୌଶଲ୍ୟା, ରାମଙ୍କର ମାତା ।

କୋଶଲକ, } କୋଷଲକ, } ବ. ନ. ( କୋଶ, କୋଷ-ଲ-ଇକ) ଉତ୍କୋଚ, ଘୁଷ୍, ଲାଞ୍ଚ ।

କୋଶାତକ, } କୋଷାତକ, } ବ. ସ୍ତ୍ରୀ. ( କୋଶ, କୋଷ-ଅତ୍-ଅକ) କଲ୍ଲି; କଲ୍ଲିଗଛ । ପୁଂ. କେଶ ।

କୋଶାତକୀ, } କୋଷାତକୀ, } ବ. ପୁଂ. (କୋଶ, କୋଷ-ଅତ୍-ଅକ-ଇନ୍ ) ବାଣିଜ୍ୟ; ବଣିକ୍; ବାଡ଼ବାଗ୍ନି ।

କୋଶୀ, କୋଷୀ, ବ. ସ୍ତ୍ରୀ. (କୋଶ, କୋଷ-ଈ) କ୍ଷୁଦ୍ର ଖୋଷା; ପାଦୁକା, କୋତା ।

କୋଷଚଞ୍ଚୁ, ବ. ପୁଂ. ( କୋଷ-ଚଞ୍ଚୁ ) ସାରସପକ୍ଷୀ ।

କୋଷବୃଦ୍ଧି, ବ. ସ୍ତ୍ରୀ. (କୋଷ-ବୃଦ୍ଧି) ଅଣ୍ଡକୋଷର ସ୍ଫୀତତା; ଧନର ବୃଦ୍ଧି ।

କୋଷଶାୟିକା, ବ. ସ୍ତ୍ରୀ. (କୋଷ-ଶୀ-ଅକ-ଆ) ଛୁରିକା ।

କୋଷାଧ୍ୟକ୍ଷ, ବ. ପୁଂ. (କୋଷ-ଅଧ୍ୟକ୍ଷ) ଧନରକ୍ଷକ; କୁବେର ।

କୋଷୀ, ବ. ପୁଂ. ( କୋଷ-ଇନ୍ ) ଆମ୍ରବୃକ୍ଷ ।

କୋଷ୍ଠ, ବ. ପୁଂ. (କୁଷ୍-ଥ) ଶସ୍ୟାଗାର, ଗୋଲା; ଗୃହମଧ୍ୟ; ଉଦରମଧ୍ୟ ।

କୋଷ୍ଠଶୁଦ୍ଧି, ବ. ସ୍ତ୍ରୀ. (କୋଷ୍ଠ-ଶୁଦ୍ଧି) ମଳଭାଣ୍ଡ ପରିଷ୍କାର ଥିବା, ମଳଶୁଦ୍ଧି ।

କୋଷ୍ଠାଗାର, ବ. ନ. (କୋଷ୍ଠ-ଆଗାର) ଧନଧାନ୍ୟାଦ ରଖିବାର ଗୃହ ।

କୋଷ୍ଠୀ, ବ. ସ୍ତ୍ରୀ. (କୋଷ୍ଠ-ଈ) ଜନ୍ମପତ୍ରିକା, ଜାତକ ।

କୋଷ୍ଣ, ବଂ. (କୁ-ଉଷ୍ଣ, କୁ=କୋ) ଈଷଦୁଷ୍ଣ, ଅଳ୍ପ ଗରମ ।

କୋହ, ବ. (ପ୍ରା; କୌଁଧ ଶବ୍ଦଜ) କ୍ରନ୍ଦନ । ଯଥା ।—

ଶିର ବରହ କୋହେ, ବଇବଇନା ଦହୁ ବ କୋହେ ।

କୋହଳ, ବ. ପୁଂ. (କୁ-ହଲ୍-ଅ) ମଦ୍ୟବଶେଷ; ବାଦ୍ୟବଶେଷ; ନାଟକାଦର ପ୍ରଣେତା; (ଦେଶଜ) ନରମ । ଯଥା—

କୋହଳ ପାଇଲେ ଦର୍ପଣ୍ଡ ବଢ଼ନ୍ତ ।

କୌକୃତ୍ୟ, ବ. ନ. (କୁ-କୃତ୍ୟା-ଅ) ମନ୍ଦକାର୍ଯ୍ୟ; ଅନୁତାପ ।

କୌକ୍କୁଟିକ, ବ. ପୁଂ. (କୁକ୍କୁଟୀ-ଇକ) ଦାମ୍ଭିକ; ପରିବ୍ରାଜକବିଶେଷ, ଜୀବହତ୍ୟା ହେବା ଆଶଙ୍କାରେ ଯେଉଁ ବ୍ୟକ୍ତି ଅତି ସାବଧାନରେ ପାଦନିକ୍ଷେପ କରନ୍ତି ।

କୌକ୍କୁଟିକନନ୍ଦନ, ବ. ପୁ. ବୋଡ଼ାଶାପ ।

କୌକ୍ଷେୟ, } ବ. ପୁଂ. (କୁକ୍ଷି-ଏୟ-କ) କୁକ୍ଷି-
କୌକ୍ଷେୟକ, } ବଦ୍ଧ ଖଡ୍ଗ ।

କୌଙ୍କ, କୌଙ୍କଣ, ବ. ପୁଂ. (କୋଙ୍କ, କୋଙ୍କଣ-ଅ) ଦେଶବିଶେଷ, କୋକଣଦେଶ ।

କୌଟ, ବ. ପୁଂ. (କୁଟ=କପଟ ବା କୋଟି=ଗୃହ-ଅ) କୂଟଜବୃକ୍ଷ । ବି°. ସ୍ୱାଧୀନ, ସ୍ୱତନ୍ତ୍ର ।

କୌଟକିକ, ବି°. (କୂଟ ବା କୂଟକ-ଇକ) ମାଂସ-ବିକ୍ରୟୀ, କଷାଇ ।

କୌଟତକ୍ଷ, ବ. ପୁଂ. ( କୌଟ-ଅ-ତକ୍ଷନ୍ ) ସ୍ୱାଧୀନ ସୂତ୍ରଧର ।

କୌଟିକ, ବି°. (କୂଟ-ଇକ) କୂଟକାରୀ (ବ୍ୟାଧ) ମାଂସବିକ୍ରେତା ।

କୌଟିଲିକ, ବ. ପୁଂ. ( କୁଟିଲ-ଇକ ) କର୍ମ-କାର; ବ୍ୟାଧ ।

କୌଟିଲ୍ୟ, ବ. ନ. ( କୁଟିଲ-ଯ ) କୁଟିଳତା, କ୍ରୂରତା । ପୁଂ. ଚାଣକ୍ୟ ବ୍ରାହ୍ମଣ ।

କୌଣପ, ବ. ପୁଂ. (କୁଣପ-ଅ ବା କୁଣପା-ଅ) ରାକ୍ଷସ ।

କୌତୁକ, ବ. ନ. ( କୁତୁକ-ଅ ) କୁତୂହଳ, ନୂତନ ବିଷୟ ଜାଣିବାର ବା ଦେଖିବାର ଇଚ୍ଛା; ହସ୍ତସୂତ୍ର; ଉତ୍ସବ; ପରିହାସ; ଆନନ୍ଦ; ମଙ୍ଗଳ; ନୃତ୍ୟଗୀତାଦି ।

କୌତୁକିନୀ, ବ. ସ୍ତ୍ରୀ. ( କୌତୁକ-ଇନ୍-ଈ ) ନାୟିକାବିଶେଷ ।

କୌତୁକୀ, ବି°. ( କୌତୁକ-ଇନ୍ ) କୌତୁକ-ବିଶିଷ୍ଟ, ଯାହାର କୌତୁକ ଜନ୍ମିଅଛି ।

କୌତୂହଳ, ବ. ନ. (କୁତୂହଳ-ଅ) କୁତୂହଳ; ଔତ୍ସୁକ୍ୟ; ଅଭିଳାଷ ।

କୌନ୍ଥ, ବ. ପୁଂ. ସ୍ତ୍ରୀ. (କୁନ୍ଥ-ଅ) କୁନ୍ଥମୁନିଙ୍କ ପୁତ୍ର ବା କନ୍ୟା ।

କୌଦାଳକ, ବ. ପୁଂ. ବର୍ତ୍ତପଙ୍କର ଜାତିବିଶେଷ ।

କୌନ୍ତିକ, ବ. ପୁଂ. ( କୁନ୍ତ-ଇକ ) ପ୍ରାସ ଅସ୍ତ୍ର-ଧାରୀ, ଯୋଦ୍ଧା ।

କୌନ୍ତେୟ, ବ. ପୁଂ. (କୁନ୍ତୀ-ଏୟ) କୁନ୍ତୀପୁତ୍ର; ଅର୍ଜୁନବୃକ୍ଷ ।

କୌପ, ବ. ନ. (କୂପ-ଅ) କୂପୋଦକ, କୂଅ-ପାଣି । ବି°. କୂପସମ୍ବନ୍ଧୀୟ ।

କୌପୀନ, ବ. ନ. ( କୂପ-ଈନ ) ଗୀରବସନ, କଉପୁନି; ପାପ; ଗୁହ୍ୟଦେଶ ।

କୌମାର, ବ. ନ. (କୁମାର-ଅ) ବାଲ୍ୟକାଳ, ବୃତ୍ତବିଶେଷ ।

କୌମାରୀ, ବ. ସ୍ତ୍ରୀ. (କୌମାର-ଈ) ଅବିବାହିତା କନ୍ୟା; କାର୍ତ୍ତିକେୟ ଶକ୍ତି; ପ୍ରଥମ ପତ୍ନୀ ।

କୌମୁଦ, ବ. ପୁଂ. (କୁମୁଦ-ଅ) କାର୍ତ୍ତିକ ମାସ ।

କୌମୁଦୀ, ବ. ସ୍ତ୍ରୀ. ( କୁମୁଦ୍-ଅ-ଈ ) ଚନ୍ଦ୍ରିକା, ଜ୍ୟୋତ୍ସ୍ନା । ଯ. ।—

କୌମୁଦୀ ବଦନେ ସ୍ୱର୍ଗଧାମୁଁ ଅବତରି । କ. ବ.

କାର୍ତ୍ତିକ ପୂର୍ଣ୍ଣିମାରେ ଉତ୍ସବ; ( କୌମୁଦ-ଅ-ଈ) କାର୍ତ୍ତିକୀପୂର୍ଣ୍ଣିମା ।

କୌମୁଦୀପତି, ବ. ପୁଂ. (କୌମୁଦୀ-ପତି) ଚନ୍ଦ୍ର, ନିଶାକର ।

କୌମୋଦକୀ, ବ. ସ୍ତ୍ରୀ. ( କୁ-ମୋଦକ-ଈ ) ବିଷ୍ଣୁଙ୍କର ଗଦା ।

କୌରବ, କୌରବ୍ୟ, ବ. ପୁଂ. (କୁରୁ-ଅ, ଯ) କୁରୁବଂଶୀୟ ଲୋକମାନେ ।

କୌଳ, ବି°.(କୁଳ-ଅ) ସତ୍‌କୁଳଜାତ; ତନ୍ତ୍ରୋକ୍ତ ଆଚାରରତ । ବ. ନ. ତନ୍ତ୍ରୋକ୍ତ ଆଚାର ।

କୌଳଟିନେୟ, କୌଳଟେୟ, ବ. ପୁଂ. ସ୍ତ୍ରୀ. (କୁଳଟା-ଏୟ, ଇନ ଆଗମ ହୋଇ ଏୟ) କୁଳଟାର ସନ୍ତାନ ।

କୌଲକ, ବି. (କୁଳ-ଇକ) କୁଳପରମ୍ପରାଗତ, କୁଳକ୍ରମାଗତ; କୁଳଧର୍ମପ୍ରବର୍ତ୍ତକ; ତନ୍ତ୍ରୋକ୍ତ ଆଚାର ଅନୁସାରେ ଶକ୍ତିର ଉପାସକ । ବି.ପୁଂ. ତନ୍ତୁବାୟ, ତନ୍ତ୍ରୀ ।

କୌଲୀନ, ବି. ନ. ( କୁଳୀନ-ଅ ) ପ୍ରଧାନ ଓ ପ୍ରସିଦ୍ଧ ବଂଶରେ ଜନ୍ମ; ଜନାପବାଦ, ଲୋକନିନ୍ଦା; ଗୁହ୍ୟଦେଶ ।

କୌଲୀନ୍ୟ, ବି. ନ. (କୁଳୀନ-ଯ) କୁଳୀନତ୍ୱ, ବଂଶମର୍ଯ୍ୟାଦା ।

କୌଳେୟ, ବିଂ. (କୁଳ-ଏୟ) ସତ୍‌କୁଳଜାତ ।

କୌଳେୟକ, ବି.ପୁଂ. (କୁଳ-ଏୟ-କ) କୁକ୍କୁର । ବିଂ. କୁଳୀନ ।

କୌବେର, ବିଂ. ( କୁବେର-ଅ ) କୁବେର-ସମ୍ବନ୍ଧୀୟ ।

କୌବେରୀ, ବି.ସ୍ତ୍ରୀ. (କୁବେର-ଈ) ଉତ୍ତରଦିକ୍; କୁବେର ଶକ୍ତି ; ମାତୃବିଶେଷ ।

କୌଶ, ବି. ନ. (କୁଶ-ଅ) କାନ୍ୟକୁବ୍ଜ ଦେଶ ।

କୌଶଳ, ବି. ନ. ( କୁଶଳ-ଅ ) ନୈପୁଣ୍ୟ, ଦକ୍ଷତା; ଉପାୟ; ମଙ୍ଗଳ । ଯଥା—

ଅବସର ଏବେ ବୁଝିଲେ ମନୋଭବ କୌଶଳେ ।

କୌଶଳିକା, ବି. ସ୍ତ୍ରୀ. (କୁଶଳ-ଇକ-ଆ) କୁଶଳ ପ୍ରଶ୍ନ; ଉପଢୌକନ ।

କୌଶଲେୟ, ବି. ପୁଂ. ( କୌଶଲ୍ୟା-ଏୟ ) ରାମଚନ୍ଦ୍ର ।

କୌଶଲ୍ୟା, କୌସଲ୍ୟା; ବି. ସ୍ତ୍ରୀ. (କୋଶଳ-ଯ-ଆ) ରାମଙ୍କର ମାତା, ଦଶରଥ ରାଜାଙ୍କ ସ୍ତ୍ରୀ ।

କୌଶିକ, କୌଷିକ, ବି. ପୁଂ. ( କୁଶିକ-ଅ ) ବିଶ୍ୱାମିତ୍ର; ( କୋଶ-ଇକ ) ଇନ୍ଦ୍ର; ସାପ ଖେଳାଇବା କେଳା; ପେଚା; ବେଜିଆଇଗଣ; ଗୁଗ୍ଗୁଳ; କୋଷାଧ୍ୟକ୍ଷ । ବିଂ. ରେଶମୀ । (ପେଚା ଅର୍ଥରେ) ଯଥା—

ବହୁଳେ କାନ୍ତାରେ ଭ୍ରମନ୍ତି କୌଶିକ,
ତପସ୍ୟା ନିଜ ପ୍ରକାଶୋର୍ଦ୍ଧ୍ୱମୁଖ । ନ. ବେ.

କୌଶିକାତ୍ମଜ, ବି. ପୁଂ. ( କୌଶିକ-ଆତ୍ମଜ ) ଇନ୍ଦ୍ରପୁତ୍ର ଜୟନ୍ତ, ଅର୍ଜୁନ ।

କୌଶିକାୟୁଧ, ବି. ନ. ( କୌଶିକ-ଆୟୁଧ ) ଇନ୍ଦ୍ରଧନୁ ।

କୌଶେୟ, କୌଷେୟ, ବିଂ. ( କୋଶ-ଏୟ ) ରେଶମୀ । ଯଥା—

କେଶପାଶମଧମା ମହାସୁନ୍ଦରୀମା
କଉଷେୟୁଛିନ୍ନବସନା । ର. ଭ.

କୌଷୀଦ୍ୟ, ବି. ନ. (କୁଷୀଦ-ଯ) ଆଳସ୍ୟ, ତନ୍ଦ୍ରା

କୌସୁମ୍ଭ, ବିଂ. (କୁସୁମ୍ଭ-ଅ) କୁସୁମ୍ଭ ରଙ୍ଗରେ ରଞ୍ଜିତ ।

କୌସୃତିକ, ବିଂ. ( କୁସୃତି-ଇକ ) କୁହକୀ, ବାଜିକର, ଶଠ ।

କୌସ୍ତୁଭ, ବି. ପୁଂ. ( କୁସ୍ତୁଭ-ଅ ) ବିଷ୍ଣୁ-ବକ୍ଷସ୍ଥଳ ମଣିବିଶେଷ; ମୁଦ୍ରାବିଶେଷ । ଯଥା—

କଣ୍ଠେ କୌସ୍ତୁଭମଣି,
ଝଲାଉଥିଲେ ଯଦେ ଜ ଜନମଣି ଗୋ । ବ. ଚ.

କ୍ରକଚ, ବି. ପୁଂ. ନ. (କ୍ରକର୍-ଅ) କରପତ୍ର, କରତ ।

କ୍ରକଚଚ୍ଛଦ, ବି. ପୁଂ. (କ୍ରକଚ-ଛଦ) କିଆ ଫୁଲର ଗଛ ।

କ୍ରକଚପାଦ, ବି. ପୁଂ. (କ୍ରକଚ-ପାଦ) ଝିକଲ୍ପ, ଏଣ୍ଡୁଅ ।

କ୍ରତୁ, ବି. ପୁଂ. (କୃ-ଅତୁ) ଯାଗ, ଯଜ୍ଞ; ପୂଜା; ବୈଶ୍ୱଦେବବିଶେଷ; ମୁନିବିଶେଷ; ଇନ୍ଦ୍ରିୟ; ବିଷ୍ଣୁ । ଯଥା—

କ୍ରତୁ ରକ୍ଷା ହେତୁ ବିଶ୍ୱାମିତ୍ର ଅସି ନେଲେ । ଲ. ବ.

କ୍ରତୁଦ୍ୱିଟ୍, ବି. ପୁଂ. (କ୍ରତୁ-ଦ୍ୱିଷ୍) ଅସୁର ।

କ୍ରତୁଧ୍ୱଂସୀ, ବି. ପୁଂ. (କ୍ରତୁ-ଧ୍ୱଂସ-ଇନ୍) ଶିବ ।

କ୍ରତୁପୁରୁଷ, ବି. ପୁଂ. ବିଷ୍ଣୁ ।

କ୍ରତୁଭୁକ୍, ବି. ପୁଂ. (କ୍ରତୁ-ଭୁଜ୍ ) ଦେବତା ।

କ୍ରତୁରାଜ, ବି. ପୁଂ. (କ୍ରତୁ-ରାଜ-ଅ ) ରାଜସୂୟ ଯଜ୍ଞ ।

କ୍ରତୂତ୍ତମ, ବ. ପୁଂ. ( କ୍ରତୁ-ଉତ୍ତମ ) ରାଜସୂୟ ଯଜ୍ଞ ।

କ୍ରଥକୈଶିକ, ବ. ପୁଂ. ବିଦର୍ଭ ଦେଶ ।

କ୍ରଥନ, ବ. ନ. (କ୍ରଥ୍=ବଧ କରିବା-ଅନ) ମାରଣ, ହିଂସନ, ଛେଦନ ।

କ୍ରଥନକ, ବ. ପୁଂ. (କ୍ରଥନ-କ) ଉଷ୍ଟ୍ର ।

କ୍ରନ୍ଦନ, ବ. ନ. ( କ୍ରନ୍ଦ୍-ଅନ ) ରୋଦନ, କାନ୍ଦିବା ।

କ୍ରନ୍ଦିତ, ବ. ନ. (କ୍ରନ୍ଦ-ତ) କ୍ରନ୍ଦନ; ଆହ୍ୱାନ । ବିଂ. ରୋଦନକାରୀ ।

କ୍ରମ, ବ. ପୁଂ. (କ୍ରମ୍-ଅ) ଅନୁକ୍ରମ, ପର୍ଯ୍ୟାୟ; ପରିପାଟୀ; ନିୟମ; ଅବିଚ୍ଛେଦ; ଆକ୍ରମଣ; ଅତିକ୍ରମ; ବିକ୍ରମ; ସଙ୍କଳ୍ପ; ପାଦକ୍ଷେପ; ବ୍ୟବହାର ।

କ୍ରମଣ, ବ. ପୁଂ. ( କ୍ରମ୍-ଅନ ) ପାଦ, ଚରଣ, ଚାଲିବା ।

କ୍ରମଶଃ, ଅ. କ୍ରି. ବିଂ. (କ୍ରମ-ଶସ୍) କ୍ରମେ କ୍ରମେ, ଅନୁକ୍ରମେ ।

କ୍ରମାଗତ, ବିଂ. (କ୍ରମ-ଆଗତ) କୁଳପରମ୍ପରା-କ୍ରମେ ଆଗତ ।

କ୍ରମାନ୍ୱୟ, କ୍ରି. ବିଂ. କ୍ରମରେ ଘଟିବା, ଯାହାର ପର ଯାହା ସେହି ଅନୁକ୍ରମରେ ଘଟିବା ।

କ୍ରମି, କ୍ରିମି, ବ. ପୁଂ. ( କ୍ରମ୍-ଇ, ଇ=ଆଗମ ) କୀଟ, ପୋକ ।

କ୍ରମିକ, ବିଂ. (କ୍ରମ୍-ଇକ) ଯାହା ନିର୍ବିଘ୍ନରେ ଘଟଇ, ଧାରାବାହିକ, କ୍ରମାଗତ ।

କ୍ରମୁ, କ୍ରମୁକ, ବ. ପୁଂ. (କ୍ରମ-ଉ, ଉକ) ପୂଗ, ଗୁବାକଗଛ, ଗୁଆଗଛ । ବ. ସ୍ତ୍ରୀ. ଗୁଆ ।

କ୍ରମେଲ, କ୍ରମେଲକ, ବ. ପୁଂ. ( କ୍ରମ୍-ଏଲ, କ ଯୋଗ) ଉଷ୍ଟ୍ର, ଓଟ ।

କ୍ରୟ, ବ. ପୁଂ. (କ୍ରୀ-ଅ) ମୂଲ୍ୟ ଦେଇ ବସ୍ତୁ ଗ୍ରହଣ କରିବା, କିଣିବା ।

କ୍ରୟଲେଖ୍ୟ, ବ. ନ. ( କ୍ରୟ-ଲେଖ୍ୟ ) ଭୂମ୍ୟାଦି କ୍ରୟର ଲେଖାପତ୍ର, କବାଲା ।

କ୍ରୟବିକ୍ରୟ, ବ. ପୁଂ. (କ୍ରୟ-ବିକ୍ରୟ) ବାଣିଜ୍ୟ, କିଣାବିକା ।

କ୍ରୟବିକ୍ରୟିକ, କ୍ରୟିକ, } ବ. ପୁଂ. (କ୍ରୟ-ବିକ୍ରୟ, କ୍ରୟ-ଇକ) ବଣିକ, ବାଣିଜ୍ୟ-ବ୍ୟବସାୟୀ ।

କ୍ରୟାରୋହ, ବ. ପୁଂ. (କ୍ରୟ-ଆ-ରୁହ୍-ଅ) ହାଟ, ବଜାର ।

କ୍ରୟ୍ୟ, ବିଂ. ( କ୍ରୀ-ଯ ) କ୍ରେୟ ବସ୍ତୁ, କିଣିବାର ଦ୍ରବ୍ୟ ।

କ୍ରବ୍ୟ, ବ. ପୁଂ. ନ. (କ୍ଳୁପ୍-ଯ, ପ=ବ) ମାଂସ ।

କ୍ରବ୍ୟଘାତନ, ବ. ପୁଂ. (କ୍ରବ୍ୟ-ଘାତନ) ମୃଗ, ହରିଣ ।

କ୍ରବ୍ୟାଦ୍, କ୍ରବ୍ୟାଦ, ବ. ପୁଂ. ( କ୍ରବ୍ୟ-ଅଦ୍-୦, ଅ) ରାକ୍ଷସ । ବିଂ. ମାଂସଖାଦକ, ମାଂସାଶୀ ।

କ୍ରଶିମା, ବ. ପୁଂ. ( କୃଶ-ଇମନ୍ ) କୃଶତା, କାର୍ଶ୍ୟ ।

କ୍ରଶିଷ୍ଠ, କ୍ରଶୀୟାନ୍, } ବିଂ. ( କୃଶ-ଇଷ୍ଠ, ଈୟସ୍ ) ଅତିକୃଶ ।

କ୍ରାନ୍ତ, ବିଂ. (କ୍ରମ୍-ତ) ଆକ୍ରାନ୍ତ; ଅତିକ୍ରାନ୍ତ; ସଙ୍କ୍ରାନ୍ତ; ବ୍ୟାପ୍ତ ।

କ୍ରାନ୍ତି, ବ.ସ୍ତ୍ରୀ. (କ୍ରମ୍-ତି) ଆକ୍ରମଣ; ଗତି; ରାଶିଚକ୍ରର ମଧ୍ୟରେଖା; ବିଷୁବରେଖାରୁ ଉତ୍ତରରେ କର୍କଟକ୍ରାନ୍ତି ପର୍ଯ୍ୟନ୍ତ ଅଥବା ଦକ୍ଷିଣରେ ମକରକ୍ରାନ୍ତି ପର୍ଯ୍ୟନ୍ତ ସୂର୍ଯ୍ୟର ଯେଉଁ ଦୂରତ୍ୱ; ଖଗୋଳକର ମଧ୍ୟବର୍ତ୍ତୀ ଈଷଦ୍ବକ୍ର ରେଖା ।

କ୍ରାନ୍ତିପାତ, ବ. ପୁଂ. ବିଷୁବରେଖା ଓ ଅୟନମଣ୍ଡଳର ସଂଯୋଗ ସ୍ଥାନ, ପୃଥିବୀ ଏହି ସଂଯୋଗ ସ୍ଥାନକୁ ଆସିଲେ ଦିବା ରାତ୍ରି ସମାନ ହୁଏ (Equinox) ।

କ୍ରାନ୍ତିବଳୟ, ବ. ପୁଂ. କ୍ରାନ୍ତିମଣ୍ଡଳ; ବିଷୁବ ରେଖା ପ୍ରାୟ ଅୟନ ମଣ୍ଡଳରେ ଚତୁର୍ବିଂଶତି ଭାଗ ଦକ୍ଷିଣ ଓ ଉତ୍ତରରେ ଯେ ବଳୟାକୃତି ପରିଧି ବିଦ୍ୟମାନ ଅଛି ।

କ୍ରିମି, କୃମି, ବ. (କ୍ରମ-ଇ) କୀଟ, ପୋକ ।

କ୍ରିୟ, ବି. ପୁଂ. (କୃ-ଅ) ମେଷରାଶି ।

କ୍ରିୟମାଣ, ବିଂ. (କୃ-ଆନ) ଯାହା କରାଯାଉଅଛି, ଅନୁଷ୍ଠୀୟମାନ ।

କ୍ରିୟା, ବି. ସ୍ତ୍ରୀ. (କୃ-ଆ) କର୍ମ; ଗର୍ଭାଧାନାଦି ସଂସ୍କାର; ଶ୍ରାଦ୍ଧ; ଅନୁଷ୍ଠାନ; ସାମାନ୍ୟ ପ୍ରୟୋଗ; ଆରମ୍ଭ ; ଚେଷ୍ଟା ; ପୂଜା ; ଶିକ୍ଷା ; ଚିକିତ୍ସା ; ବ୍ୟବହାରାଂଶବିଶେଷ ; ବ୍ୟାକରଣର ଧାତ୍ୱର୍ଥ ବୋଧକ ପଦ—ଯେପରି ହେବା, କରିବା, ଇତ୍ୟାଦି ।

କ୍ରିୟାକାର, ବି. ପୁଂ. (କ୍ରିୟା-କାର) ନୂତନ ଛାତ୍ର । ବିଂ. କର୍ମକର୍ତ୍ତା ।

କ୍ରିୟାବସନ୍ନ, ବିଂ. (କ୍ରିୟା-ଅବସନ୍ନ) ସାକ୍ଷୀ ପ୍ରଭୃତି-ଦ୍ୱାରା ପରାଜୟ ପ୍ରାପ୍ତ ।

କ୍ରିୟାବାଦୀ, ବିଂ. (କ୍ରିୟା-ବାଦୀ) ଫରିୟାଦୀ ।

କ୍ରିୟାବାନ୍, ବିଂ. (କ୍ରିୟା-ବତ୍) କର୍ମରେ ଉଦ୍ୟୋଗୀ ।

କ୍ରିୟାବିଶେଷଣ, ବି. ନ. କ୍ରିୟାର ବିଶେଷଣ, କ୍ରିୟାର ଗୁଣ, ଭାବ ବା ଅବସ୍ଥା ପ୍ରକାଶକ ପଦ ।

କ୍ରିୟାଯୋଗ, ବି. ପୁଂ. ପୂଜାଦି କ୍ରିୟାରୂପ ଯୋଗ ।

କ୍ରିୟାସମଭିବ୍ୟାହାର, ବି. ପୁଂ. କ୍ରିୟାର ପୌନଃପୁନ୍ୟ ।

କ୍ରୀଡ଼, ପୁଂ.<br>କ୍ରୀଡ଼ନ, ନ.<br>କ୍ରୀଡ଼ା, ସ୍ତ୍ରୀ. } ବି. (କ୍ରୀଡ଼-ଅ, ଅନ, ଆ) ଖେଳନ, ଖେଳା; ପରିହାସ । ଯଥା—

ଜଳଜୁ କ୍ରୀଡ଼ାରେ ସୁଦକ୍ଷ ଅଳି ରତ ଏ ଛଳେ । ବୈ. ଭ.

କ୍ରୀଡ଼ନକ, ବି. ନ. (କ୍ରୀଡ଼-ଅନ-କ) ଖେଳିବା ଦ୍ରବ୍ୟ । ଯଥା—

ରେ ବାପୁ କ୍ରୀଡ଼ନକ ମୁହିଁ ତୋହର । ବ. ବ.

କ୍ରୀତ, ବିଂ. (କ୍ରୀ-ତ) ଯାହା କିଣା ହୋଇଅଛି । ବି. ପୁତ୍ରବିଶେଷ ।

କ୍ରୀତକ, ବି. ପୁଂ. (କ୍ରୀତ-କ) କ୍ରୀତ ପୁତ୍ର, ମୂଲ୍ୟ ଦେଇ ପିତାମାତାଙ୍କ ନିକଟରୁ ଗୃହୀତ ସନ୍ତାନ ।

କ୍ରୀତଦାସ, ବି. ପୁଂ. କିଣା ଗୋଲାମ ।

କ୍ରୁଞ୍ଚ, ବି. ପୁଂ. (କ୍ରୁଞ୍ଚ୍-ଅ) କ୍ରୌଞ୍ଚପର୍ବତ ।

କ୍ରୁଦ୍ଧ, ବିଂ. (କ୍ରୁଧ୍-ତ) କ୍ରୋଧବିଶିଷ୍ଟ, କୁପିତ ।

କ୍ରୁଧ୍, କ୍ରୁଧା, ବି. ସ୍ତ୍ରୀ. (କ୍ରୁଧ୍-୦, ଆ) କ୍ରୋଧ, କୋପ ।

କ୍ରୁଷ୍ଟ, ବି. ନ. (କ୍ରୁଶ୍-ତ) କ୍ରନ୍ଦନ; ରବ, ନାଦ । ବିଂ ଆହୂତ; ଶବ୍ଦିତ; ଅଭିଶପ୍ତ ।

କ୍ରୂର, ବିଂ. (କୃତ୍-ର, କୃତ୍=କ୍ରୂ) ନିଷ୍ଠୁର, ନିର୍ଦ୍ଦୟ; ଘାତୁକ, ଖଳ; ଘୋର; କଠିନ; ପରଦ୍ରୋହୀ । ଯଥା—

କ୍ରୂରହର୍ଷେ ଶବରାଶି କରନ୍ତି ଭକ୍ଷଣ । କ. ବ.

କ୍ରୂରଗନ୍ଧ, ବି. ପୁଂ. ଗନ୍ଧକ ।

କ୍ରୂରଦୃକ୍, ବିଂ. (କ୍ରୂର-ଦୃଶ୍-୦) ଦ୍ରୋହକାରକ; ପିଶୁନ, ଖଳ, ହିଂସ୍ର । ବି. ଶନୈଶ୍ଚର ।

କ୍ରେତବ୍ୟ, କ୍ରେୟ, ବିଂ. (କ୍ରୀ-ତବ୍ୟ, ଯ) କ୍ରୟର ବିଷୟ, କିଣିବାର ଦ୍ରବ୍ୟ ।

କ୍ରେତା, ବିଂ. (କ୍ରୀ-ତୃ) କ୍ରୟକର୍ତ୍ତା, ଖରିଦଦାର ।

କ୍ରୋଡ଼, ବି. ପୁଂ. (କ୍ରୁଡ୍-ଅ) ଶୂକର; ଶନି; ଅଙ୍କ, କୋଳ; ବୃକ୍ଷକୋଟର ।

କ୍ରୋଡପତ୍ର, ( Supplemeut ) ବି. ନ. ଅତିରିକ୍ତ ପତ୍ର, ପୁସ୍ତକର କୌଣସି ଅଂଶ ପତିତ ବା ପରିତ୍ୟକ୍ତ ହେଲେ ସେହି ପତ୍ରରେ ଲେଖି ତହିଁରେ ଯୋଜନା କରାଯାଏ ।

କ୍ରୋଡପାଦ, ବି. ପୁଂ. (କ୍ରୋଡ଼-ପାଦ) କଚ୍ଛପ ।

କ୍ରୋଡ଼ାଙ୍ଗ, ବି. ପୁଂ. କଚ୍ଛପ ।

କ୍ରୋଡ଼ୀମୁଖ, ବି. ପୁଂ. ଗଣ୍ଡାର ।

କ୍ରୋଥ, ବି. ପୁଂ. (କ୍ରୁଥ୍-ଅ) ହନନ, ବଧ ।

କ୍ରୋଧ, ବି. ପୁଂ. (କ୍ରୁଧ୍-ଅ) ଦ୍ୱେଷ, କୋପ ।

କ୍ରୋଧଜ, ବି. ପୁଂ. (କ୍ରୋଧ-ଜନ୍-ଅ) ମୋହ; ଅଷ୍ଟବିଧ ବ୍ୟସନ । ଯଥା—

ପୈଶୂନ୍ୟଂ ସାହସଂ ଦ୍ରୋହ ଈର୍ଷ୍ୟାସୂୟାର୍ଥଦୂଷଣଂ ।
ବାଗ୍ଦଣ୍ଡଜଞ୍ଚ ପାରୁଷ୍ୟଂ କ୍ରୋଧଜୋଽପି ଗଣୋଽଷ୍ଟକଃ ।

କ୍ରୋଧନ, ବିଂ. (କ୍ରୁଧ୍-ଅନ) କ୍ରୋଧୀ, କ୍ରୁଦ୍ଧ-ସ୍ୱଭାବ । ବି. ପୁଂ. ଭୈରବ ବିଶେଷ ।

କ୍ରୋଧୀ, ବିଂ. (କ୍ରୋଧ-ଇନ୍) କୋପନସ୍ୱଭାବ, ରାଗୀ, କ୍ରୁଦ୍ଧ ।

କ୍ରୋର, ବି. (କୋଟି ଶବ୍ଦଜ) ଏକଶତ ଲକ୍ଷ ।

କ୍ରୋଶ, ବି. ପୁଂ. (କ୍ରୁଶ୍-ଅ) ୮୦୦୦ ହାତ ଦୂରତ୍ୱ; ରୋଦନ; ଆହ୍ୱାନ ।

କ୍ରୋଶନ, ବି. ନ. (କ୍ରୁଶ୍-ଅନ) କ୍ରନ୍ଦନ, କରୁଣଧ୍ୱନି; କାତରଧ୍ୱନି; ଆହ୍ୱାନ ।

କ୍ରୋଷ୍ଟୁ, ପୁଂ. } ବି. (କ୍ରୋଶ-ତୃ, ତୃ-ଈ) ଶୃଗାଳ; ବିଲୁଆ ।
କ୍ରୋଷ୍ଟ୍ରୀ, ସ୍ତ୍ରୀ.

କ୍ରୌଞ୍ଚ, ବି. ପୁଂ. (କ୍ରୁନ୍‌ଚ୍-ଅ) କୁଞ୍ଜ ବଗ; ସପ୍ତଦ୍ୱୀପର ଏକ ଦ୍ୱୀପ; ହିମାଳୟର ଅଂଶବିଶେଷ; ଦୈତ୍ୟବିଶେଷ; ଛନ୍ଦବିଶେଷ । (କୁଞ୍ଜ ବଗ ଅର୍ଥରେ) ଯଥା—

> କ୍ରୌଞ୍ଚପକ୍ଷ-ବୃନ୍ଦ ବାଦ୍ୟ ତାଳେ ତାଳେ
> ନାଚନ୍ତି ଯାହାଙ୍କ ବରନୃତ୍ୟ କାଳେ । ନ. ବୈ.

କ୍ରୌଞ୍ଚଦାରକ, } ବି. ପୁଂ. (କ୍ରୌଞ୍ଚ-ଦାରକ, ଦାରଣ) କାର୍ତ୍ତିକେୟ, କୁମାର; ପରଶୁରାମ ।
କ୍ରୌଞ୍ଚଦାରଣ,

କ୍ରୌଞ୍ଚବଧୂ, ବି. ସ୍ତ୍ରୀ. (କ୍ରୌଞ୍ଚ-ବଧୂ) ବକ ସ୍ତ୍ରୀ ।

କ୍ରୌଞ୍ଚାଦନ, ବି. ନ. (କ୍ରୌଞ୍ଚ-ଅଦନ) ମୃଣାଳ; ପିପ୍ପଳୀ ।

କ୍ରୌଞ୍ଚାଦନୀ, ବି. ସ୍ତ୍ରୀ. (କ୍ରୌଞ୍ଚାଦନ-ଈ) ପଦ୍ମବୀଜ ।

କ୍ରୌଞ୍ଚାରାତି, ବି. ପୁଂ. (କ୍ରୌଞ୍ଚ-ଅରାତି) କାର୍ତ୍ତିକେୟ ।

କ୍ରୌଞ୍ଚୀ, ବି. ସ୍ତ୍ରୀ. (କ୍ରୌଞ୍ଚ-ଈ) ସ୍ତ୍ରୀ ବଗ ।

କ୍ରୌର୍ଯ୍ୟ, ବି. ନ. (କ୍ରୂର-ଯ) କ୍ରୂରତା; ଖଳତା ।

କ୍ରୋଶଶତିକ, ବିଂ. (କ୍ରୋଶ-ଶତ-ଇକ) ଶତକ୍ରୋଶ ଗମନକାରୀ ।

କ୍ଲମ, ପୁଂ. } ବି. (କ୍ଲମ୍-ଅ, ତି) ଅଭ୍ୟାସ, ଶ୍ରମ; ଖେଦ, ଉତ୍କଟ ପରିଶ୍ରମ କରି ଗ୍ଲାନି ବୋଧ କରିବା ।
କ୍ଲାନ୍ତି, ସ୍ତ୍ରୀ,

କ୍ଲାନ୍ତ, ବିଂ. (କ୍ଲମ୍-ତ) କ୍ଲାନ୍ତିଯୁକ୍ତ, ଅତିଶୟ ଶ୍ରାନ୍ତ; ମ୍ଳାନ ।

କ୍ଲିନ୍ନ, ବିଂ. (କ୍ଲିଦ୍-ତ) ଆର୍ଦ୍ର, ଓଦା; କ୍ଲେଦଯୁକ୍ତ ।

କ୍ଲିଶିତ, } ବିଂ. (କ୍ଲିଶ୍-ତ) କ୍ଲେଶପ୍ରାପ୍ତ, କ୍ଲାନ୍ତ; କ୍ଷୀଣ, କୃଶ ।
କ୍ଲିଷ୍ଟ,

କ୍ଲୀବ, ବି. ପୁଂ. ନ. (କ୍ଲୀବ୍-ଅ) ନପୁଂସକ । ସ୍ତ୍ରୀ. ପୁଂ. ଭିନ୍ନ । ବିଂ. ଅକ୍ଷମ; ବିକ୍ରମହୀନ; ପୌରୁଷହୀନ; କାପୁରୁଷ; ନିଷ୍ଫଳ ।

କ୍ଲୀବଲିଙ୍ଗ, ବି. ପୁଂ. (କ୍ଲୀବ-ଲିଙ୍ଗ) ସ୍ତ୍ରୀପୁରୁଷ ଭିନ୍ନ ବାଚକ ।

କ୍ଲେଦ, ବି. ପୁଂ. (କ୍ଲିଦ୍-ଅ) ସମଳତା; ମଳଯୁକ୍ତ ଜଳ; ପୂଯ୍ୟାଦି ।

କ୍ଲେଦୁ, ବି. ପୁଂ. (କ୍ଲିଦ୍-ଉ) ଚନ୍ଦ୍ର ।

କ୍ଲେଶ, ବି. ପୁଂ. (କ୍ଲିଶ୍-ଅ) କଷ୍ଟ, ଦୁଃଖ; ଯନ୍ତ୍ରଣା; ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ, ଅଭିନିବେଶ ଏହି ପାଞ୍ଚ ।

କ୍ଲେଶିତ, ବିଂ. (କ୍ଲିଶିତ ଦେଖ) କ୍ଲେଶପ୍ରାପ୍ତ; ଯାହାକୁ କ୍ଲେଶ ଦିଆ ହୋଇଅଛି ।

କ୍ଲୈବ୍ୟ, ବି.ନ.(କ୍ଲୀବ-ଯ) କ୍ଲୀବତ୍ୱ, କାପୁରୁଷତା; ନିଷ୍ଫଳତ୍ୱ; କାତରତା ।

କ୍ଲୋମ, ବି. ପୁଂ. (କ୍ଲୁ-ମନ୍) ମୂଳାଧାର, ଫୁସ୍‌ଫୁସ୍; ପିତ୍ତକୋଷ ।

କ୍ୱ, ଅଂ. କ୍ରି. ବିଂ. (ସପ୍ତମ୍ୟନ୍ତ କିମ୍ ଶବ୍ଦ) କେଉଁଠାରେ ।

କ୍ୱଚନ, } ଅଂ. କ୍ରି. ବିଂ. (କ୍ୱ-ଚନ, ଚିତ୍) କୌଣସି ସ୍ଥାନରେ ।
କ୍ୱଚିତ୍,

କ୍ୱଣ, କ୍ୱାଣ, ପୁଂ. } ବି. (କ୍ୱଣ୍-ଅ,ଅନ) ବୀଣାଦିର ଧ୍ୱନି; ନାଦ; ଶବ୍ଦ; ଧ୍ୱନି ।
କ୍ୱଣନ, ନ

କ୍ୱଣିତ, ବିଂ. (କ୍ୱଣ୍-ତ) ଶବ୍ଦାୟମାନ, ଧ୍ୱନିତ । ବି. ଧ୍ୱନି, ଶବ୍ଦ ।

କ୍ୱଥିତ, ବିଂ. (କ୍ୱଥ୍-ତ) ଅଗ୍ନି ସିଦ୍ଧ; ପକ୍ୱ; (କ୍ୱାଥ) କଷିତ ।

କ୍ୱାଥ, ବିଂ ପୁଂ. (କ୍ୱଥ୍-ଅ) ଜଳରେ ସିଦ୍ଧ କରି ଯେଉଁ ରସ ବହିର୍ଗତ କରାଯାଏ, ନିର୍ଯ୍ୟାସ; ସିଦ୍ଧ ବସ୍ତୁର ରସ; ଦୁଃଖ ।

କ୍ଷ, ବି. ପୁଂ. (କ୍ଷି ବା କ୍ଷୈ=କ୍ଷୀଣ ହେବା, ଅଥବା କ୍ଷଣ୍=ଦାନ କରିବା, ଗମନ କରିବା-ଅ) କ୍ଷତ୍ରିୟ; ନୃସିଂହ; ରାକ୍ଷସ; ବିଦ୍ୟୁତ୍ ।

**କ୍ଷଣ**, ବି. ପୁଂ. (କ୍ଷଣ୍-ଅ) ଅତି ସୂକ୍ଷ୍ମକାଳ; ତିଂଶତ୍ କଳାପରିମିତ କାଳ; ଉତ୍ସବ; ଅବକାଶ; ପର୍ବ; ସୁଯୋଗ; ବ୍ୟାପାର ।

**କ୍ଷଣଜନ୍ମା** ବି. ପୁଂ. (କ୍ଷଣ-ଜନ୍ମନ୍) ଯେ ଶୁଭକ୍ଷଣରେ ଜନ୍ମଗ୍ରହଣ କରିଅଛି, ଅସାଧାରଣ କ୍ଷମତାପନ୍ନ; ଅତିଶୟ ସୌଭାଗ୍ୟଶାଳୀ । ଯଥା—

ମୂରତ ନଗରେ ତୁମ୍ଭ ଜନ୍ମ ଭବତଳେ
କହିଲ, ହେ କ୍ଷଣଜନ୍ମା, ଏହା ଭୂମିପାଇଁ । ମ. ଯା.

**କ୍ଷଣଦ**, ବି. ପୁଂ. (କ୍ଷଣ-ଦା-ଅ) ଦୈବଜ୍ଞ; ଗଣକ । ନ. ଜଳ ।

**କ୍ଷଣଦା**, ବି. ସ୍ତ୍ରୀ. (କ୍ଷଣ-ଦା-ଅ-ଆ) ରାତ୍ରି; ହରିଦ୍ରା । (ରାତ୍ରି ଅର୍ଥରେ) ଯଥା—

କମଳିନୀ ମଳିନୀ ଦିବସାତ୍ୟୟେ,
ଶଶିକଳା ବିକଳା କ୍ଷଣଦାକ୍ଷୟେ ।

**କ୍ଷଣଦାଚର**, ବି. ପୁଂ. (କ୍ଷଣଦା-ଚର) ରାକ୍ଷସ; ଶଦ୍ଧ ।

**କ୍ଷଣଦ୍ୟୁତି**, ବି. ସ୍ତ୍ରୀ. (କ୍ଷଣ-ଦ୍ୟୁତି) ବିଦ୍ୟୁତ୍ ।

**କ୍ଷଣନ**, ବି. ନ. (କ୍ଷଣ-ଅନ) ହତ୍ୟା, ବଧ ।

**କ୍ଷଣନିଶ୍ୱାସ**, ବି. ପୁଂ. (କ୍ଷଣ-ନିଶ୍ୱାସ) ଶିଶୁମାର, ଶୁଶୁକ ।

**କ୍ଷଣପ୍ରଭା**, ବି. ସ୍ତ୍ରୀ. (କ୍ଷଣ-ପ୍ରଭା) ବିଦ୍ୟୁତ୍ । ଯଥା—

ହେମାଙ୍ଗ ହରଷୀବସନ୍ତ ଦେଖି ଯେବେ ସନ୍ଧାଣ,
ଅନ୍ତରକ୍ଷେ ଯାଏଁ ସଳଖେ କ୍ଷଣପ୍ରଭା ସମାନ । ଚ.ଭ.

**କ୍ଷଣଭଙ୍ଗୁର**, } ବିଂ. (କ୍ଷଣ-ଭଙ୍ଗୁର,ଇକ) କ୍ଷଣ-
**କ୍ଷଣିକ**, } ମାତ୍ର ସ୍ଥାୟୀ, କ୍ଷଣଧ୍ୱଂସୀ । ଯଥା—

ଝାଟେଣ ମନ ମାୟାଯନ୍ତ୍ରେ ବୁଲାଏ କପଟ ମନ୍ତ୍ରେ,
କୌଶଳେ ଜନ୍ମାଇ ଚଟରେ କ୍ଷଣିକ ଉଲ୍ଲାସ । କ. ବ.

**କ୍ଷଣରାମୀ**, ବି. ପୁଂ. (କ୍ଷଣ-ରମ୍-ଇନ୍) କପୋତ, ପାରାବତ ।

**କ୍ଷଣିକା**, ବି. ସ୍ତ୍ରୀ. (କ୍ଷଣିକ-ଆ) ବିଦ୍ୟୁତ୍ ।

**କ୍ଷଣିନୀ**, ବି. ସ୍ତ୍ରୀ. (କ୍ଷଣ-ଇନ-ଈ) ରାତ୍ରି, ରଜନୀ ।

**କ୍ଷତ**, ବି. ନ. (କ୍ଷଣ୍-ତ) ବ୍ରଣ, ଘା; ଆଘାତ; ଘର୍ଷଣ । ବିଂ. ଭଗ୍ନ; ବିଦାରିତ; ବ୍ୟଥିତ; ଆହତ; କ୍ଲିଷ୍ଟ; ବିଦ୍ଧ; ନଷ୍ଟ; ନିଷିଷ୍ଟ ।

**କ୍ଷତଜ**, ବି. ନ. (କ୍ଷତ-ଜ) ରୁଧିର, ରକ୍ତ; ପୂଜ ।

**କ୍ଷତବ୍ରତ**, ବିଂ. (କ୍ଷତ-ବ୍ରତ) ନଷ୍ଟବ୍ରତ, ନିୟମଭଙ୍ଗକାରୀ ।

**କ୍ଷତି**, ବି. ସ୍ତ୍ରୀ. (କ୍ଷଣ୍-ତି) ଅପଚୟ, ହାନି, ନାଶ; କଷ୍ଟ; ଅନ୍ତ୍ରାଦ ତେ; କ୍ଷତ ।

**କ୍ଷତୋଦର**, ବି. ପୁଂ. (କ୍ଷତ-ଉଦର) ଉଦର ରୋଗବିଶେଷ ।

**କ୍ଷତ୍ତା**, ବି. ପୁଂ. (କ୍ଷଦ୍-ତୃ) ସାରଥି; ଦ୍ୱାରପାଳ; କ୍ଷତ୍ରିୟା ବା ବୈଶ୍ୟାର ଗର୍ଭରେ ଶୂଦ୍ରର ଔରସଜାତ ସନ୍ତାନ; ବିଦୁର, ଦାସୀପୁତ୍ର; ବିଧାତା; କୋଷାଧ୍ୟକ୍ଷ । ବିଂ. ନିଯୁକ୍ତ ।

**କ୍ଷତ୍ତ୍ର, କ୍ଷତ୍ର**, ବି. ପୁଂ. (କ୍ଷଦ୍-ତ୍ର) କ୍ଷତ୍ରିୟ ଜାତି, ଦ୍ୱିତୀୟ ବର୍ଣ୍ଣ । ନ. ଶରୀର ।

**କ୍ଷତ୍ରଧର୍ମ୍ମ**, ବି. ପୁଂ. କ୍ଷତ୍ରିୟର ଧର୍ମ, ସାହସ, ପୁରୁଷକାର ପ୍ରଭୃତି ।

**କ୍ଷତ୍ରବନ୍ଧୁ**, ବିଂ. (କ୍ଷତ୍ର-ବନ୍ଧୁ) କ୍ଷୁଦ୍ର କ୍ଷତ୍ରିୟ, ନିନ୍ଦିତ କ୍ଷତ୍ରିୟ ।

**କ୍ଷତ୍ରାନ୍ତକ**, ବି. ପୁଂ. (କ୍ଷତ୍ର-ଅନ୍ତକ) ପରଶୁରାମ ।

**କ୍ଷତ୍ରିୟ**, ବି. ପୁଂ. (କ୍ଷତ୍ର-ଇୟ) ଦ୍ୱିତୀୟ ବର୍ଣ୍ଣ ।

**କ୍ଷତ୍ରିୟା**, ବି. ସ୍ତ୍ରୀ. (କ୍ଷତ୍ର-ଇୟ-ଆ) } କ୍ଷତ୍ରିୟ
**କ୍ଷତ୍ରିୟାଣୀ**, (କ୍ଷତ୍ର-ଇୟ-ଆନୀ) } ପତ୍ନୀ ।

**କ୍ଷତ୍ରୀ**, ବି. ପୁଂ. (କ୍ଷତ୍ର-ଇନ୍) କ୍ଷତ୍ରିୟଜାତି ।

**କ୍ଷନ୍ତବ୍ୟ**, ବିଂ. (କ୍ଷମ୍-ତବ୍ୟ) କ୍ଷମାର ଯୋଗ୍ୟ, କ୍ଷମା କରିବାର ଉପଯୁକ୍ତ ।

**କ୍ଷନ୍ତା**, ବିଂ. (କ୍ଷମ-ତୃ) ସହିଷ୍ଣୁ, କ୍ଷମାଶୀଳ ।

**କ୍ଷପଣ**, ବିଂ. (କ୍ଷପ୍-ଅନ) ନିର୍ଲଜ୍ଜ, ଲଜ୍ଜାହୀନ । ନ. ତ୍ୟାଗ ।

**କ୍ଷପଣକ**, ବି. ପୁଂ. (କ୍ଷପ୍-ଅନ-କ) ବୌଦ୍ଧବିଶେଷ; ନାସ୍ତିକମତ ପ୍ରଚାରକ; ନିର୍ଲଜ୍ଜ; ନବରତ୍ନର ଅନ୍ତର୍ଗତ ଦ୍ୱିତୀୟ ରତ୍ନ ।

**କ୍ଷପଣୀ**, ବି. ସ୍ତ୍ରୀ. (କ୍ଷପ-ଅନ-ଈ) ଅହୁଲି, କ୍ଷେପଣୀ ।

କ୍ଷପା, ବି. ସ୍ତ୍ରୀ. (କ୍ଷପ୍-ଅ-ଆ) ରାତ୍ରି ।

କ୍ଷପାକର, ବି. ପୁଂ. (କ୍ଷପା-କର) ଚନ୍ଦ୍ର; କର୍ପୂର ।

କ୍ଷପାଚର, ବି. ପୁଂ. (କ୍ଷପା-ଚର) ରାକ୍ଷସ ।

କ୍ଷପାଟ, ବି. ପୁଂ. (କ୍ଷପା-ଅଟ୍-ଅ) ରାକ୍ଷସ, ନିଶାଚର ।

କ୍ଷପାନାଥ, } ବି. ପୁଂ. (କ୍ଷପା-ନାଥ, ପତି) ଚନ୍ଦ୍ର;
କ୍ଷପାପତି, } କର୍ପୂର ।

କ୍ଷପିତ, ବିଂ. (କ୍ଷପ୍-ତ) ନିକ୍ଷେପିତ; ଯାପିତ; ଦଗ୍ଧ ।

କ୍ଷମ, ବି.ନ. (କ୍ଷମ୍-ଅ) ଯୋଗ୍ୟତା, ଉପଯୁକ୍ତତା । ବିଂ. ସମର୍ଥ; ଉପଯୁକ୍ତ; ହିତ; ସହିଷ୍ଣୁ; ଯୋଗ୍ୟ ।

କ୍ଷମତା, ବି. ସ୍ତ୍ରୀ. (କ୍ଷମ-ତା) ଯୋଗ୍ୟତା, ଉପଯୁକ୍ତତା; ସାମର୍ଥ୍ୟ; ଶକ୍ତି ।

କ୍ଷମା, ବି. ସ୍ତ୍ରୀ. ( କ୍ଷମ-ଆ ) ଶାନ୍ତି, ନିବୃତ୍ତି; ଅପକାର ସହିବା; ମାର୍ଜ୍ଜନା;ତିତିକ୍ଷା;ସହିଷ୍ଣୁତା; ପୃଥିବୀ; ଦୁର୍ଗା; ରାତ୍ରି ।

କ୍ଷମାବାନ୍, ବିଂ. (କ୍ଷମା-ବତ୍) କ୍ଷମାଶୀଳ, ସହିଷ୍ଣୁ ।

କ୍ଷମିତା, କ୍ଷମୀ, } ବିଂ. (କ୍ଷମ୍-ଇ-ତୃ, ଇନ୍ ,ତୃ )
କ୍ଷନ୍ତା, } ସହିଷ୍ଣୁ , କ୍ଷମାଶୀଳ; ସମର୍ଥ।

କ୍ଷମ୍ୟ, ବିଂ. (କ୍ଷମ୍-ଯ) କ୍ଷମାର ଯୋଗ୍ୟ ।

କ୍ଷୟ, ବି. ପୁଂ. (କ୍ଷି-ଅ) ଅପଚୟ; ହ୍ରାସ; ଧ୍ୱଂସ; ଅନ୍ତ; କଳ୍ପାନ୍ତ; ଗୃହ, ନିବାସ ସ୍ଥାନ; ରୋଗବିଶେଷ; ବତ୍ସରବିଶେଷ; ମାସବିଶେଷ ।

କ୍ଷୟଥୁ, ବି. ପୁଂ. ( କ୍ଷି-ଅଥୁ ) କାଶରୋଗ ।

କ୍ଷୟପକ୍ଷ, ବି. ପୁଂ. ( କ୍ଷୟ-ପକ୍ଷ ) କୃଷ୍ଣପକ୍ଷ, ଏହି ପକ୍ଷରେ ଚନ୍ଦ୍ରର କଳା ହ୍ରାସ ହୁଏ ।

କ୍ଷୟରୋଗ, ବି. ପୁଂ. ରୋଗବିଶେଷ, ଯକ୍ଷ୍ମାରୋଗ ।

କ୍ଷୟିତ, ବିଂ. (କ୍ଷୟି-ତ) ନାଶିତ; କ୍ଷାପିତ; (କ୍ଷୟ-ଇତ) କ୍ଷୟପ୍ରାପ୍ତ ।

କ୍ଷୟୀ, ବିଂ. (କ୍ଷୟ-ଇନ୍) କ୍ଷୟଶୀଳ, ନଶ୍ୱର ।

କ୍ଷଯ୍ୟ, ବିଂ. (କ୍ଷୟ-ଯ) କ୍ଷୟଯୋଗ୍ୟ, ବିନାଶ୍ୟ ।

କ୍ଷର, ବି. ପୁଂ. ( କ୍ଷର୍-ଅ ) ସ୍ୟନ୍ଦନ; କ୍ଷରଣ; ସ୍ୱେଦନ; ନାଶ; ମେଘ । ନ. ଜଳ । ବିଂ. ନଶ୍ୱର ।

କ୍ଷରଣ, ବି. ନ. ( କ୍ଷର୍-ଅନ ) ସ୍ୱେଦନ; ଦ୍ରବ ଦ୍ରବ୍ୟର ପତନ , ମଦାଦି ସ୍ରାବଣ; ନାଶ; ଚ୍ୟ ।ରଣ ।

କ୍ଷରିତ, ବିଂ. (କ୍ଷର୍-ତ) ନିଃସୃତ, ଗଳିତ ।

କ୍ଷରୀ, ବି. ପୁଂ. (କ୍ଷର୍-ଇନ୍) ବର୍ଷାକାଳ । ବିଂ. କ୍ଷରଣବିଶିଷ୍ଟ ।

କ୍ଷବ, କ୍ଷବଥୁ, ବି. ପୁଂ. ( କ୍ଷୁ-ଅ, ଅଥୁ ) ଛିଙ୍କ; କାଶ ।

କ୍ଷାତ୍ର, ବି. ନ. (କ୍ଷତ୍ର-ଅ) କ୍ଷତ୍ରିୟତ୍ୱ; କ୍ଷତ୍ରିୟକର୍ମ । ବିଂ. କ୍ଷତ୍ରିୟ ସମ୍ବନ୍ଧୀୟ ।

କ୍ଷାନ୍ତ ବିଂ. (କ୍ଷମ୍-ତ) କ୍ଷମାଶୀଳ, ସହିଷ୍ଣୁ; ନିବୃତ୍ତ, ବିରତ ।

କ୍ଷାନ୍ତି, ବି. ସ୍ତ୍ରୀ. ( କ୍ଷମ୍-ତି ) କ୍ଷମା, ସହିଷ୍ଣୁତା; ନିବୃତ୍ତି ।

କ୍ଷାମ, ବିଂ. (କ୍ଷୈ-ତ, ତ=ମ) କୃଶ, କ୍ଷୀଣ; ଦୁର୍ବଳ; ଶୁଷ୍କ; ରୂକ୍ଷ ।

କ୍ଷାର, ବି. ପୁଂ. (କ୍ଷର୍-ଅ) ଲବଣରସ; ଯବକ୍ଷାର; କାଚ; ଗୁଡ଼ବିଶେଷ; ଭସ୍ମ; ଲବଣ; ଧୂର୍ତ୍ତ ।

କ୍ଷାରକ, ବି. ପୁଂ. (କ୍ଷାର୍-ଅକ) ରଜକ; କଢ଼; ପକ୍ଷୀ ଓ ମତ୍ସ୍ୟାଦି ଧରିବାର ଖାଲୋଇ; ଜାଲକ । ସ୍ତ୍ରୀ. ରଜକୀ ।

କ୍ଷାରଭୂମି, ବି. ସ୍ତ୍ରୀ. (କ୍ଷାର-ଭୂମି) ଲୁଣିସ୍ଥାନ ।

କ୍ଷାରସମୁଦ୍ର, ବି. ପୁଂ. ଲବଣସମୁଦ୍ର ।

କ୍ଷାରିକା, ବି. ସ୍ତ୍ରୀ. କ୍ଷୁଧା ।

କ୍ଷାରିତ, ବିଂ. (କ୍ଷାର୍-ତ) ଅପବାଦଗ୍ରସ୍ତ, ଦୂଷିତ; ସ୍ରାବିତ ।

କ୍ଷାଳନ, ବି. ନ. ( କ୍ଷାଲ୍-ଅନ ) ପ୍ରକ୍ଷାଳନ, ଧୌତକରଣ; ଶୋଧନ ।

କ୍ଷାଳିତ, ବିଂ. (କ୍ଷାଲ୍-ତ) ଧୌତ, ପରିଷ୍କୃତ; ଶୋଧିତ ।

କ୍ଷିତ, ବିଂ. (କ୍ଷି-ତ) କ୍ଷୟପ୍ରାପ୍ତ; ଧ୍ୱଂସିତ ।

କ୍ଷିତି, ବି. ସ୍ତ୍ରୀ. ( କ୍ଷି-ତି ) ପୃଥିବୀ; ବାସସ୍ଥାନ; ପ୍ରଳୟକାଳ ।

କ୍ଷିତିଧର, } ବି. ପୁଂ. (କ୍ଷିତି-ଧର, ଭୃତ୍) ପର୍ବତ;
କ୍ଷିତିଭୃତ୍, } ରାଜା; ଅନନ୍ତ ଦେବ।

କ୍ଷିତିନାଥ, କ୍ଷିତିପତି, } ବି. ପୁଂ. ( କ୍ଷିତି-ନାଥ,
କ୍ଷିତିପ, କ୍ଷିତିପାଳ, } ପତି, ପ, ପାଳ )
ରାଜା।

କ୍ଷିତିରୁହ, ବି. ପୁଂ. (କ୍ଷିତି-ରୁହ) ବୃକ୍ଷ, ଗଛ।

କ୍ଷିତିବର୍ଦ୍ଧନ, ବି. ନ. (କ୍ଷିତି-ବର୍ଦ୍ଧନ) ମୃତଦେହ, ଶବ। ବିଂ. ଭୂମିବର୍ଦ୍ଧନକାରୀ।

କ୍ଷିତୀଶ, କ୍ଷିତୀଶ୍ୱର, ବି. ପୁଂ. (କ୍ଷିତି-ଈଶ, ଈଶ୍ୱର) କ୍ଷିତିପତି, ରାଜା।

କ୍ଷିଦ୍ର, ବି. ପୁଂ. (କ୍ଷିଦ୍-ର) ରୋଗ; ସୂର୍ଯ୍ୟ; ଶୃଙ୍ଗ।

କ୍ଷିପଣୁ, ବି. ପୁଂ. (କ୍ଷିପ୍-ଅନୁ) ବାୟୁ; ବ୍ୟାଧ।

କ୍ଷିପ୍ତ, ବିଂ. (କ୍ଷିପ୍-ତ) ନିକ୍ଷିପ୍ତ; ପ୍ରେରିତ; ହତ; ନିନ୍ଦିତ; ଯାହାର ବୁଦ୍ଧି ବିଚଳିତ ହୋଇଅଛି, ପାଗଳ; ପରିତ୍ୟକ୍ତ; ଅବଜ୍ଞାତ; ବିକୀର୍ଣ୍ଣ; ଅତ୍ୟାସକ୍ତ।

କ୍ଷିପ୍ତନିବାସ, ବି. ପୁଂ. କ୍ଷିପ୍ତବ୍ୟକ୍ତିମାନଙ୍କ ରହିବା ସ୍ଥାନ, ପାଗଲା ଗାରଦ। (Lunatic Asylum)

କ୍ଷିପ୍ତା, ବି. ସ୍ତ୍ରୀ. (କ୍ଷିପ୍ତ-ଆ) ରାତ୍ରି।

କ୍ଷିପ୍ନୁ, ବିଂ. (କ୍ଷିପ୍-ନୁ) କ୍ଷେପଣଶୀଳ; ନିରାକରିଷ୍ଣୁ, ନିବାରଣଶୀଳ।

କ୍ଷିପ୍ର, କ୍ରି. ବିଂ. ( କ୍ଷିପ୍-ର ) ଶୀଘ୍ର, ଦ୍ରୁତ। ବି. ନ. ଖେଚରାନ୍ନ, ଖେଚଡ଼ୀ।

କ୍ଷିପ୍ରକାରୀ, ବିଂ. (କ୍ଷିପ୍ର-କାରୀ) ଶୀଘ୍ରକାରୀ, ଲଘୁ-ହସ୍ତ, ଯେ ଶୀଘ୍ର ଶୀଘ୍ର କର୍ମ ଶେଷ କରିପାରେ।

କ୍ଷିପ୍ରହସ୍ତ, ବିଂ. (କ୍ଷିପ୍ର-ହସ୍ତ) ଯାହାର ହାତ ଶୀଘ୍ର ଚଳେ, କାର୍ଯ୍ୟକାଳରେ ଯେଉଁ ବ୍ୟକ୍ତି ତତ୍-ପରତା ଦେଖାଏ।

କ୍ଷୀଣ, ବିଂ. (କ୍ଷି-ତ) ଦୁର୍ବଳ; ଜୀର୍ଣ୍ଣ; ସୂକ୍ଷ୍ମ; ଶୁଷ୍କ; କୃଶ।

କ୍ଷୀଣଜୀବୀ, ବିଂ. (କ୍ଷୀଣ-ଜୀବ-ଇନ୍ ) ଅଳ୍ପପ୍ରାଣ, ଯାହାର ପ୍ରାଣ ଅଳ୍ପରେ ବିନାଶ ହୋଇ ପାରିବ।

କ୍ଷୀଣତା, ବି. ସ୍ତ୍ରୀ. (କ୍ଷୀଣ-ତା) କୃଶତା, ଦୌର୍ବଲ୍ୟ; ସୂକ୍ଷ୍ମତା।

କ୍ଷୀବ, ବିଂ. (କ୍ଷୀବ୍-ତ) ମତ୍ତ, ମଦୁଆଲ।

କ୍ଷୀୟମାଣ, ବିଂ. (କ୍ଷୟ ହେବା-ଅନ) ଯାହା କ୍ଷୟ ହେଉଅଛି।

କ୍ଷୀର, ବି.ନ. (ଘସ୍-ଈର) ଜଳ; ଦୁଗ୍ଧ; ନିର୍ଯ୍ୟାସ, ଅଠା।

କ୍ଷୀରକଣ୍ଠ, ବି. ପୁଂ. ( କ୍ଷୀର-କଣ୍ଠ ) ସ୍ତନ୍ୟପାୟୀ ଶିଶୁ।

କ୍ଷୀରଜ, ବି. ନ. (କ୍ଷୀର-ଜ) ଦଧି। ବିଂ. କ୍ଷୀରରୁ ଉତ୍ପନ୍ନ।

କ୍ଷୀରନୀର, ବି. ନ. ( କ୍ଷୀର-ନୀର ) ଆଲିଙ୍ଗନ। (ଦୁଧ ଜଳ ଯେପରି ସହଜରେ ମିଶି ଯାଏ)

କ୍ଷୀରଶର, } ବି. ପୁଂ. ( କ୍ଷୀର-ଶର, ସର )
କ୍ଷୀରସର, } ଅମିକ୍ଷା, ଦୁଗ୍ଧର ସାର।

କ୍ଷୀରଶୁକ୍ଳ, ବି. ପୁଂ. (କ୍ଷୀର-ଶୁକ୍ଳ) ଶିଙ୍ଗିଡ଼ା; ପାଣି-ଫଳ।

କ୍ଷୀରସାର, ବି. ପୁଂ. ( କ୍ଷୀର-ସାର ) ନବନୀତ, ନବୁଣି; ଛେନା।

କ୍ଷୀରାବ୍ଧି, ବି. ପୁଂ. (କ୍ଷୀର-ଅବ୍ଧି) କ୍ଷୀରସମୁଦ୍ର।

କ୍ଷୀରାବ୍ଧିଜ, ବି. ପୁଂ. (କ୍ଷୀରାବ୍ଧି-ଜ) ଚନ୍ଦ୍ର। ନ. ସମୁଦ୍ର ଲବଣ; ମୁକ୍ତା।

କ୍ଷୀରାବ୍ଧିଜା ବି. ସ୍ତ୍ରୀ. (କ୍ଷୀରାବ୍ଧିଜ-ଆ) ଲକ୍ଷ୍ମୀ।

କ୍ଷୀରାବ୍ଧିତନୟା, ବି. ସ୍ତ୍ରୀ. ( କ୍ଷୀରାବ୍ଧି-ତନୟା ) ଲକ୍ଷ୍ମୀ।

କ୍ଷୀରିକା, ବି.ସ୍ତ୍ରୀ. (କ୍ଷୀର-ଇକ-ଆ) କ୍ଷୀରୀ; କାକୁଡ଼ି।

କ୍ଷୀରୀ, ବି. ପୁଂ (କ୍ଷୀର-ଇନ୍) ବୃକ୍ଷବିଶେଷ, ଯେଉଁ-ମାନଙ୍କ ଭିତରେ ଦୁଧ ଥାଏ। ଯଥା—ବର, ଅଶ୍ୱତ୍ଥ [illegible]। (ଦେଶଜ) ପାୟସ।

କ୍ଷୀରେୟୀ ବି. ସ୍ତ୍ରୀ. ପରମାନ୍ନ, କ୍ଷିରି।

କ୍ଷୀରୋଦ, ବି. ପୁଂ. (କ୍ଷୀର-ଉଦ) କ୍ଷୀରସମୁଦ୍ର।

କ୍ଷୀରୋଦତନୟା, ବି. ସ୍ତ୍ରୀ. ( କ୍ଷୀରୋଦ-ତନୟା ) ଲକ୍ଷ୍ମୀ।

କ୍ଷୀରୋଦନନ୍ଦନ, ବ. ପୁଂ. ( କ୍ଷୀରୋଦ-ନନ୍ଦନ ) ଚନ୍ଦ୍ର ।

କ୍ଷୁଣି, କ୍ଷୁଣୀ, ବ. ସ୍ତ୍ରୀ. (କ୍ଷୁ-ଣି, ଣୀ) ପୃଥିବୀ ।

କ୍ଷୁଣ୍ଣ, ବଂ. ( କ୍ଷୁଦ୍-ତ ) ଚୂର୍ଣ୍ଣୀକୃତ; ପ୍ରହତ; ଅଭ୍ୟସ୍ତ; ଗଣିତ; ଆଚରିତ; ଅଭ୍ୟସ୍ତ; କ୍ଷୁବ୍ଧ; ଦୁଃଖିତ ।

କ୍ଷୁତ୍, ସ୍ତ୍ରୀ. }<br>କ୍ଷୁତ, ନ. } ବ. (କ୍ଷୁ-ଂ, ତ) ଛିଙ୍କ ।

କ୍ଷୁତ୍କ୍ଷାମ, ବଂ. (କ୍ଷୁଧ୍-କ୍ଷାମ) କ୍ଷୁଧାରେ କ୍ଷୀଣ ।

କ୍ଷୁତ୍ପିପାସା, ବ. ସ୍ତ୍ରୀ. (କ୍ଷୁଧ୍-ପିପାସା) କ୍ଷୁଧା ଓ ତୃଷ୍ଣା ।

କ୍ଷୁଦ୍, }<br>କ୍ଷୁଦ୍, } ବ. ନ. (କ୍ଷୁଦ୍ର ଶବ୍ଦଜ) ତଣ୍ଡୁଳକଣା ।

କ୍ଷୁଦ୍ର, ବଂ. (କ୍ଷୁଦ୍-ର) ଅଳ୍ପକାୟ, ଛୋଟ; ନୀଚ, ଅଧମ; ଅଳ୍ପ; ଦରିଦ୍ର; କ୍ରୂର; କୃପଣ ।

କ୍ଷୁଦ୍ରଘଣ୍ଟିକା, ବ. ସ୍ତ୍ରୀ. ( କ୍ଷୁଦ୍ର-ଘଣ୍ଟା-କ-ଆ ) ଘୁଙ୍ଗୁର, କଙ୍କିଣୀ ।

କ୍ଷୁଦ୍ରପ୍ରାଣ, ବଂ. ( କ୍ଷୁଦ୍ର-ପ୍ରାଣ ) ଅଳ୍ପପ୍ରାଣ, କ୍ଷୀଣଜୀବୀ ।

କ୍ଷୁଦ୍ରା, ବ.ସ୍ତ୍ରୀ. (କ୍ଷୁଦ୍-ର-ଆ) ମକ୍ଷିକା; ମଧୁମକ୍ଷିକା; ବେଶ୍ୟା ।

କ୍ଷୁଦ୍ରାକ୍ଷ, ବଂ. (କ୍ଷୁଦ୍ର-ଅକ୍ଷ) ଯାହାର ଚକ୍ଷୁ ଛୋଟ ।

କ୍ଷୁଦ୍ରାଶୟ, ବଂ. ( କ୍ଷୁଦ୍ର-ଅଶୟ ) ନୀଚାଶୟ, ସାମାନ୍ୟ ବିଷୟରେ ଯାହାର ଲୋଭ ଜନ୍ମଇ ।

କ୍ଷୁଧ୍, କ୍ଷୁଧା, ବ. ସ୍ତ୍ରୀ. ( କ୍ଷୁଧ୍-ଂ, ଆ ) ବୁଭୁକ୍ଷା, ଭୋଜନେଚ୍ଛା ।

କ୍ଷୁଧାର୍ତ୍ତ, ବଂ. (କ୍ଷୁଧା-ଋ-ତ) କ୍ଷୁଧାରେ କାତର, ଯାହାର ଅତ୍ୟନ୍ତ କ୍ଷୁଧା ହୋଇଅଛି ।

କ୍ଷୁଧିତ, ବଂ. (କ୍ଷୁଧ୍-ତ) ବୁଭୁକ୍ଷିତ, ଭୋଜନେଚ୍ଛୁ ।

କ୍ଷୁନ୍ନିବୃତ୍ତି, ବ. ସ୍ତ୍ରୀ. ( କ୍ଷୁଧ୍-ନି-ବୃତ୍-ତି ) କ୍ଷୁଧାର ନିବାରଣ, କ୍ଷୁଧାଶାନ୍ତି ।

କ୍ଷୁପ, ବ. ପୁଂ. (କ୍ଷୁ-ପ) କ୍ଷୁଦ୍ରଶାଖାବୃତ କ୍ଷୁଦ୍ରବୃକ୍ଷ; ପର୍ବତବିଶେଷ; ଶ୍ରୀକୃଷ୍ଣଙ୍କ ପୁତ୍ର ।

କ୍ଷୁବ୍ଧ, ବଂ. (କ୍ଷୁଭ୍-ତ) କ୍ଷୋଭପ୍ରାପ୍ତ, ବିଚଳିତ; କାତର, ଦୁଃଖିତ; କ୍ଷିପ୍ତ । ବ. ପୁଂ. ମନ୍ଥନ-ଦଣ୍ଡ ।

କ୍ଷୁଭିତ, ବଂ. (କ୍ଷୁଭ୍-ଇ-ତ) କମ୍ପିତ; ସଞ୍ଚାଳିତ; କ୍ଷୋଭପ୍ରାପ୍ତ, ଦୁଃଖିତ; ବିଚଳିତ; କ୍ରୁଦ୍ଧ; ବ୍ୟାକୁଳ; ଆଲୋଡିତ; ସରକ୍ତ ।

କ୍ଷୁମା. ବ. ସ୍ତ୍ରୀ. (କ୍ଷୁ-ମ) ଉମି; ଅତସୀବୃକ୍ଷ; ରେଶମ; ପାଟ; ଛଣପଟ ।

କ୍ଷୁର, ବ. ପୁଂ. (କ୍ଷୁର୍=ଛେଦନ କରିବା-ର, ର-ଲୋପ) ଭଣ୍ଡାରୀର ଅସ୍ତ୍ରବିଶେଷ; ଅଶ୍ୱ ଗୋ ପ୍ରଭୃତିର ଖୁରା; ଖଟପ୍ରଭୃତିର ଝୁରା । ରୀ, ସ୍ତ୍ରୀ. ଛୁରୀ ।

କ୍ଷୁରକର୍ମ, ବ. ନ. (କ୍ଷୁର-କର୍ମନ୍) କ୍ଷୌର କାର୍ଯ୍ୟ ।

କ୍ଷୁରଧାର, ବ. ପୁଂ. (କ୍ଷୁର-ଧାରା) ନରକବିଶେଷ ।

କ୍ଷୁରପତ୍ର, ବ. ପୁଂ. ( କ୍ଷୁର-ପତ୍ର ) ଶର, ବାଣ । ବଂ. କ୍ଷୁରତୁଲ୍ୟ ପତ୍ରବିଶିଷ୍ଟ ।

କ୍ଷୁରପତ୍ରିକା, ବ. ସ୍ତ୍ରୀ. ପାଳଙ୍ଗଶାକ ।

କ୍ଷୁରପ୍ର, ବ. ପୁଂ. ( କ୍ଷୁର-ପ୍ରଥ୍-ଅ ) ଅର୍ଦ୍ଧଚନ୍ଦ୍ରାକୃତି ବାଣବିଶେଷ; ଘାସ ଛେଲିବାର ଅସ୍ତ୍ରବିଶେଷ, ଖୁର୍ପି ।

କ୍ଷୁରମର୍ଦ୍ଦୀ, }<br>କ୍ଷୁରମୁଣ୍ଡୀ, } ବ.ପୁଂ. (କ୍ଷୁର-ମୃଦ୍, ମୁଣ୍ଡ-ଇନ୍) ଭଣ୍ଡାରୀ ।

କ୍ଷୁରୀ, ବ. ପୁଂ. (କ୍ଷୁର-ଇନ) ଭଣ୍ଡାରୀ, ଖୁରବିଶିଷ୍ଟ ପଶୁ । ଣୀ, ଭଣ୍ଡାରୀର ସ୍ତ୍ରୀ, ଭଣ୍ଡାରୁଣୀ ।

କ୍ଷୁଲ୍ଲ, କ୍ଷୁଲ୍ଲକ, ବଂ. ( କ୍ଷୁଦ୍-ଂ,ଲ-ଅ, କ ) କ୍ଷୁଦ୍ର, ଅଳ୍ପ, ଲଘୁ, କନିଷ୍ଠ ।

କ୍ଷୁଲ୍ଲତାତ, ବ. ପୁଂ. (କ୍ଷୁଲ୍ଲ-ତାତ) ପିତାର କନିଷ୍ଠ ଭ୍ରାତା, ଦାଦା ।

କ୍ଷେତ୍ର, ବ. ନ. (କ୍ଷି-ତ୍ର) ଭୂମି, କ୍ଷେତ; ଇନ୍ଦ୍ରିୟ; ମନଃ; ଶରୀର; କଳତ୍ର; ପତ୍ନୀ; ତୀର୍ଥସ୍ଥାନ; ସିଦ୍ଧଭୂମି; ସୀମାବେଷ୍ଟିତ ସ୍ଥାନ, ଯଥା—ତ୍ରିଭୁଜ ଚତୁର୍ଭୁଜ ଇତ୍ୟାଦି ।

କ୍ଷେତ୍ରଜ, କ୍ଷେତ୍ରଜା, ବ. ପୁଂ. ସ୍ତ୍ରୀ. ( କ୍ଷେତ୍ର-ଜ, କ୍ଷେତ୍ର-ଜ-ଆ ) ସ୍ୱସ୍ତ୍ରୀରେ ଅନ୍ୟ ପୁରୁଷଦ୍ୱାରା ଉତ୍ପାଦିତ ପୁତ୍ର ବା କନ୍ୟା । ବିଶେଷଣ ହେଲେ "କ୍ଷେତ୍ରଜ" ଶବ୍ଦର ଅର୍ଥ "କ୍ଷେତ୍ରଜାତ ।"

କ୍ଷେତ୍ରଜ୍ଞ, ବି. ପୁଂ. (କ୍ଷେତ୍ର-ଜ୍ଞ) ଜୀବାତ୍ମା । ବିଂ. ଦୁଗ୍ଧ; କୃଷକ; କାମୁକ; ନିପୁଣ ।

କ୍ଷେତ୍ରତତ୍ତ୍ୱ, ବି. ନ. କ୍ଷେତ୍ର ସମୁଦାୟର ପ୍ରକୃତି ଓ ପରିମାଣ ନିରୂପକ ଶାସ୍ତ୍ର, ଜ୍ୟାମିତି, (Geometry)

କ୍ଷେତ୍ରପତି, ବି. ପୁଂ. (କ୍ଷେତ୍ର-ପତି) କ୍ଷେତ୍ରପାଳ; ରୁଦ୍ର; କୃଷକ ।

କ୍ଷେତ୍ରପାଳ, ବି. ପୁଂ. (କ୍ଷେତ୍ର-ପାଳ ) ଦେବତାବିଶେଷ; କ୍ଷେତ୍ରରକ୍ଷକ ।

କ୍ଷେତ୍ରଫଳ, ବି. ନ. (କ୍ଷେତ୍ର-ଫଳ) କ୍ଷେତ୍ରାନ୍ତର୍ଗତ ସ୍ଥାନର ପରିମାଣଫଳ, ଭୂମିର ପରିମାଣଫଳ; (Area)

କ୍ଷେତ୍ରବିଦ୍, ବି. ପୁଂ. (କ୍ଷେତ୍ର-ବିଦ୍-୦) ଜୀବାତ୍ମା ।

କ୍ଷେତ୍ରାଜୀବ, ବିଂ. ( କ୍ଷେତ୍ର-ଆ-ଜୀବ ) କୃଷିଜୀବୀ, କୃଷକ ।

କ୍ଷେତ୍ରାଧିପ, ବି. ପୁଂ. ( କ୍ଷେତ୍ର-ଅଧିପ ) ମେଷାଦି ଦ୍ୱାଦଶ ରାଶିର ଅଧିପତି ଗ୍ରହମାନେ ।

କ୍ଷେତ୍ରିକ, ବି. ପୁଂ. (କ୍ଷେତ୍ର-ଇକ) କ୍ଷେତ୍ରସ୍ୱାମୀ ।

କ୍ଷେତ୍ରିୟ, ବି. ପୁଂ. (କ୍ଷେତ୍ର-ଇୟ) ପରଦାରରତ ବ୍ୟକ୍ତି; ଅସାଧ୍ୟରୋଗ; କ୍ଷେତ୍ରଜାତ ତୃଣ; ପରଦାର; ଚକସ୍ତା । ବିଂ. କ୍ଷେତ୍ରସମ୍ବନ୍ଧୀୟ ।

କ୍ଷେତ୍ରୀ, ବିଂ. (କ୍ଷେତ୍ର-ଇନ୍) କ୍ଷେତ୍ରସ୍ୱାମୀ; ଭର୍ତ୍ତା, ସ୍ୱାମୀ ।

କ୍ଷେପ ବି. ପୁଂ. ( କ୍ଷିପ୍-ଅ ) ବିନ୍ୟାସ; ନିକ୍ଷେପ; ଫୋପାଡିବା; ଅପସାରଣ; ବଞ୍ଚନା; ନିନ୍ଦା; ଗର୍ବ; ବିଳମ୍ବ; ଲଙ୍ଘନ; ଯାପନ; ଲେପନ; ପ୍ରେରଣ ।

କ୍ଷେପକ, ବି. ପୁଂ. (କ୍ଷେପ-ଅକ ) ଗ୍ରନ୍ଥ ମଧ୍ୟରେ କ୍ଷିପ୍ତ ପାଠ; ଅଙ୍କବିଶେଷ; ଗୁଚ୍ଛ । ବିଂ. ଯେ କ୍ଷେପଣ କରେ ।

କ୍ଷେପଣ, ବି.ନ. (କ୍ଷିପ୍-ଅନ) ନିକ୍ଷେପ; ଅପସାରଣ; ପରିତ୍ୟାଗ; ପ୍ରେରଣ; ନିନ୍ଦା; ଯାପନ ।

କ୍ଷେପଣି, କ୍ଷେପଣୀ, କ୍ଷେପଣିକା, } ବି. ସ୍ତ୍ରୀ. ( କ୍ଷିପ୍-ଅନ, କ ଯୋଗ କ୍ଷେପଣିକା ) ନୌକାଦଣ୍ଡ, ଅରିତ୍ର; ଫାନ୍ଦବିଶେଷ; ମାଛ ଧରିବାର ଜାଲବିଶେଷ; କ୍ଷେପଣୀୟାସ୍ତ୍ରବିଶେଷ । ଯଥା—

ବ୍ୟୋମଗଙ୍ଗା ଜଳେ ନାବକେଉଁରତ ପୁଣ୍ୟାଙ୍ଗନା କ୍ଷେପଣୀରେ ।
ଛିଣ୍ଡା ଉଠି ଦେଖୁଛ ନ ଥିଲି ତା ହୃଦସ୍ଥଳେ ଧରଣୀରେ ।

ପ. କେ.

କ୍ଷେପଣିକ, ବି. ପୁଂ. (କ୍ଷେପଣି-ଇକ) ଯେ ବ୍ୟକ୍ତି କ୍ଷେପଣି ନିକ୍ଷେପ କରଇ ।

କ୍ଷେପଣୀୟ, ବିଂ. ( କ୍ଷିପ୍-ଅନୀୟ ) କ୍ଷେପଣଯୋଗ୍ୟ । ବି. ନ. କ୍ଷେପଣଯୋଗ୍ୟ ଅସ୍ତ୍ରାଦି ।

କ୍ଷେପିଷ୍ଠ, କ୍ଷେପୀୟାନ୍ } ବିଂ. ( କ୍ଷିପ୍-ଇଷ୍ଠ, ଈୟସ୍ ) ଅତିଶୟ କ୍ଷିପ୍ର; ଅତିଶୟ କ୍ଷିପ୍ରଗାମୀ ।

କ୍ଷେମ, ବି. ପୁଂ. ନ. ( କ୍ଷି-ମ ) କଲ୍ୟାଣ; ଲବ୍ଧ-ବସ୍ତୁର ରକ୍ଷା; କୁଶଳ, ମଙ୍ଗଳ; ମୁକ୍ତି । ବିଂ. ମଙ୍ଗଳଦାୟକ ।

କ୍ଷେମକ, ବି. ପୁଂ. ( କ୍ଷେମ-କ ) ନାଗବିଶେଷ; ରାକ୍ଷସବିଶେଷ ।

କ୍ଷେମଙ୍କର, ବିଂ. ( କ୍ଷେମ-କୃ-ଅ, ମ-ଆଗମ ) ଶୁଭଦାୟକ, ମଙ୍ଗଳଦାୟକ ।

କ୍ଷେମବାନ୍, ବିଂ. ( କ୍ଷେମ-ବତ୍ ) ମଙ୍ଗଳବିଶିଷ୍ଟ; କୁଶଳୀ ।

କ୍ଷେମା, ବି. ସ୍ତ୍ରୀ. (କ୍ଷି-ମ-ଆ) କାତ୍ୟାୟନୀ ।

କ୍ଷୈତ୍ର, ବି. ନ. (କ୍ଷେତ୍ର-ଅ) କ୍ଷେତ୍ରସମୂହ ।

କ୍ଷୈରେୟ, ବିଂ. ( କ୍ଷୀର-ଏୟ ) କ୍ଷୀର ପ୍ରସ୍ତୁତ; କ୍ଷୀରସମ୍ବନ୍ଧୀୟ ।

କ୍ଷୋଦ, ବି. ପୁଂ. (କ୍ଷୁଦ୍-ଅ) ଚୂର୍ଣ୍ଣ; ଚୂର୍ଣ୍ଣ କରିବାର ପାତ୍ରବିଶେଷ ।

କ୍ଷୋଦକ୍ଷମ, ବିଂ. ପେଷଣଯୋଗ୍ୟ ।

କ୍ଷୋଦନ, ବି. ନ. ( କ୍ଷୁଦ୍-ଅନ ) ଚୂର୍ଣ୍ଣ କରିବା; ଅକ୍ଷରାଙ୍କନ ।

କ୍ଷୋଦିତ, ବିଂ. (କ୍ଷୁଦ୍-ତ) ଚୂର୍ଣ୍ଣୀକୃତ, ପିଷ୍ଟ; ଯାହା ଖୋଦା ବା ଅଙ୍କିତ ହୋଇଅଛି ।

କ୍ଷୋଦଷ୍ଠ, କ୍ଷୋଦୀୟାନ୍, ବିଂ. ( କ୍ଷୁଦ୍ର-ଇଷ୍ଠ, ଈୟସ୍; ) ଅତି କ୍ଷୁଦ୍ର ।

କ୍ଷୋଭ, ବି. ପୁଂ. ( କ୍ଷୁଭ୍-ଅ ) ବାଧା; ଧର୍ଷଣ; ଚଞ୍ଚଳତା; ସଞ୍ଚଳନ; ସ୍ଖଳନ; ଉଦ୍ବେଗ ।

କ୍ଷୋଭଣ, ବି. ପୁଂ. (କ୍ଷୁଭ୍-ଅନ) କନ୍ଦର୍ପର ବାଣ-ବିଶେଷ; ସାଂଖ୍ୟମତୋକ୍ତ ପୁରୁଷ । ବିଂ. କ୍ଷୋଭକାରକ ।

କ୍ଷୋଭିତ, ବିଂ. ( କ୍ଷୁଭ୍-ତ ) ଧର୍ଷିତ; ଚଳିତ; ଆନ୍ଦୋଳିତ; ବାଧିତ ।

କ୍ଷୌଣି, କ୍ଷୌଣୀ, ବି. ସ୍ତ୍ରୀ. (କ୍ଷୁର୍-ନ, ର-ଲୋପ) ପୃଥିବୀ ।

କ୍ଷୌଣୀପ୍ରାଚୀର, ବି. ପୁଂ. ସମୁଦ୍ର ।

କ୍ଷୌଣୀବିଦ୍ୟା, ବି.ସ୍ତ୍ରୀ. ଭୂତତ୍ତ୍ୱବିଦ୍ୟା । (Geology)

କ୍ଷୌଣୀଭୁକ୍, ବି. ପୁଂ. (କ୍ଷୌଣୀ-ଭୁଜ୍-୦) ରାଜା ।

କ୍ଷୌଦ୍ର, ବି. ନ. (କ୍ଷୁଦ୍ରା=ମଧୁମକ୍ଷିକା-ଅ) ମଧୁ; ଜଳ; ପୁଂ. ଚମ୍ପକବୃକ୍ଷ । ବିଂ. କ୍ଷୁଦ୍ର ବା କ୍ଷୁଦ୍ରସମ୍ବନ୍ଧୀୟ ।

କ୍ଷୌଦ୍ରଜ, ବି. ନ. (କ୍ଷୌଦ୍ର-ଜ) ମହମ । ବିଂ. ମଧୁରୁ ଜାତ ।

କ୍ଷୌଦ୍ରେୟ, ବି. ନ. (କ୍ଷୁଦ୍ରା-ଏୟ) ମହମ । ବିଂ. କ୍ଷୌଦ୍ରସମ୍ବନ୍ଧୀୟ ।

କ୍ଷୌମ, ବି. ପୁଂ. ନ. ( କ୍ଷୁ-ମ ) ପ୍ରାସାଦର ଉପରିଭାଗସ୍ଥ ଗୃହ; ଅଟ୍ଟାଳିକା; ( କ୍ଷୁମା-ଅ ) ଦୁକୂଳ, ପଟ୍ଟବସ୍ତ୍ର, ରେଶମୀ ଲୁଗା । ବିଂ. କ୍ଷୁମା-ନିର୍ମିତ ।

କ୍ଷୌର, ବି. ପୁଂ. (କ୍ଷୁର୍-ଅ) କ୍ଷୌରକର୍ମ, ମୁଣ୍ଡନ । ବିଂ. କ୍ଷୁରସମ୍ବନ୍ଧୀୟ ।

କ୍ଷୌରିକ, ବି. ପୁଂ. (କ୍ଷୁର୍-ଇକ) କ୍ଷୁରକର୍ମକାରୀ, ଭଣ୍ଡାରୀ ।

କ୍ଷ୍ଣୁତ, ବିଂ. (କ୍ଷ୍ଣୁ-ତ) ଶାଣିତ, ତୀକ୍ଷ୍ଣୀକୃତ ।

କ୍ଷ୍ମା, ବି. (କ୍ଷମ୍-ଅ) ପୃଥିବୀ ।

କ୍ଷ୍ମାଧର, } ବି. ପୁଂ. (କ୍ଷ୍ମା-ଧର, ଭୃତ୍) ରାଜା;
କ୍ଷ୍ମାଭୃତ୍, } ପର୍ବତ; ଅନନ୍ତ ।

କ୍ଷ୍ମାଭୁକ୍, ବି. ପୁଂ. (କ୍ଷ୍ମା-ଭୁଜ୍-୦) ରାଜା ।

କ୍ଷ୍ମାୟିତ, ବିଂ. (କ୍ଷ୍ମାୟ୍-ତ) କମ୍ପିତ ।

କ୍ଷ୍ୱିଣ୍ଣ, ବିଂ. (କ୍ଷ୍ୱିଦ୍-ତ) ମୁକ୍ତ; ସ୍ନିଗ୍ଧ ।

କ୍ଷ୍ୱେଡ ବି. ନ. ( କ୍ଷ୍ୱିଦ୍-ଅ, ଦ=ଡ ଅଥବା କ୍ଷ୍ୱେଲ୍-ଅ, ଲ=ଡ ) ବିଷ, ଗରଳ; ଧ୍ୱନି, ଶବ୍ଦ; ଅଶ୍ଳୀଳଗାନ । ବିଂ. କୁଟିଳ; ଦୁରାଦେ; ନିଷ୍ଠୁର; ମନ୍ଦ ।

କ୍ଷ୍ୱେଡା, ବି. ସ୍ତ୍ରୀ. ( କ୍ଷ୍ୱେଡ୍-ଆ ) ଯୁଦ୍ଧକାଳୀନ ଚିତ୍କାରଧ୍ୱନି, ସିଂହନାଦ; ବଂଶଶଲାକା; ଅଶ୍ଳୀଳ ଗାନ ।

କ୍ଷ୍ୱେଡିତ, ବି. ନ. ( କ୍ଷ୍ୱେଡ୍-ତ ) ଯୁଦ୍ଧକାଳୀନ ଚିତ୍କାରଧ୍ୱନି ।

କ୍ଷ୍ୱେଲନ, ବି. ନ. ( କ୍ଷ୍ୱେଲ୍-ଅନ ) କ୍ରୀଡ଼ନ, ସଞ୍ଚାଳନ ।

କ୍ଷ୍ୱେଲା, ବି. ସ୍ତ୍ରୀ. ( କ୍ଷ୍ୱେଲ୍-ଅ-ଆ ) କ୍ରୀଡ଼ା, ଖେଳା; ସଞ୍ଚାଳନ ।

କ୍ଷ୍ୱେଲିତ, ବିଂ. (କ୍ଷ୍ୱେଲ୍-ତ) କ୍ରୀଡିତ; ଚଳିତ ।

—:o:—

# ଖ

ଖ, ବ୍ୟଞ୍ଜନବର୍ଣ୍ଣର ଦ୍ୱିତୀୟ ଅକ୍ଷର, ଏହାର ଉଚ୍ଚାରଣ ସ୍ଥାନ ଜିହ୍ୱାମୂଳ । (ଖନ୍-ଅ) ଦେବଲୋକ, ସ୍ୱର୍ଗ; ଆକାଶ, ଶୂନ୍ୟ; ଇନ୍ଦ୍ରିୟ; ଶରୀର; ସୁଖ; ନଗର; ସୂର୍ଯ୍ୟ ।

ଖଇ, ବି. (ପ୍ରା; ଖଦିକା ଶବ୍ଦଜ) ଭୃଷ୍ଟଧାନ୍ୟ, ଲାଜା ।

ଖଇଚ୍, ବିଂ. (ଦେଶଜ) ଦରପକ୍ୱ ରଥ ।

ଖଇଞ୍ଚ, ବି. ( ଦେଶଜ ) ଖଡିକାନିର୍ମିତ ମତ୍ସ୍ୟ ଧରିବାର ଯନ୍ତ୍ରବିଶେଷ ।

ଖଇର, ଖଦିର, ବି. (ପ୍ରା; ଖଦିର ଶବ୍ଦଜ) ବୃକ୍ଷ-ବିଶେଷର ନିର୍ଯ୍ୟାସ, ସ୍ୱନାମଖ୍ୟାତ ବୃକ୍ଷର ଅଠା ।

ଖଇର, ବଂ. ( ଦେଶଜ ) ଧଳା ଓ କଳାମିଶ୍ରିତ ବର୍ଣ୍ଣ ।

ଖକୁନ୍ତଳ, ବ. ପୁଂ. ( ଖ-କୁନ୍ତଳ ) ଶିବ, ବ୍ୟୋମକେଶ ।

ଖଗ, ବ. ପୁଂ. ( ଖ-ଗ ) ପକ୍ଷୀ; ବାଣ; ସୂର୍ଯ୍ୟ; ଦେବତା; ବାୟୁ; ଗ୍ରହ । ବଂ. ଆକାଶଗାମୀ । ଯଥା—

ଶାସ୍ତ୍ର ଅବ ଯେତେ ଖଗ ଘୋଷନ୍ତ ବ୍ରହ୍ମବର୍ଗ ।

ଖଗଗତି, ବ. ସ୍ତ୍ରୀ. ( ଖଗ-ଗତି ) ପକ୍ଷିମାନଙ୍କର ଉଡ୍ଡୀନ, ପ୍ରୋଡ୍ଡୀନ, ସଡ୍ଡୀନ ପ୍ରଭୃତି ଗତି-ବିଶେଷ ।

ଖଗପତି, ବ. ପୁଂ. ( ଖଗ-ପତି ) ଗରୁଡ଼, ବିଷ୍ଣୁଙ୍କ ବାହନ ।

ଖଗେନ୍ଦ୍ର, ଖଗେଶ୍ୱର, ବ. ପୁଂ. ( ଖଗ-ଇନ୍ଦ୍ର, ଈଶ୍ୱର) ଗରୁଡ଼, ବିଷ୍ଣୁଙ୍କ ବାହନ । ଯଥା—

ଛୁରିଲ ଖଗେନ୍ଦ୍ର ଛଦ ଭ୍ରମରେ । ଲ. ବ.

ଖଗବତୀ, ବ. ସ୍ତ୍ରୀ. (ଖଗ-ବତ୍-ଈ) ପୃଥିବୀ ।

ଖଗାନ୍ତକ. ବ. ପୁଂ. (ଖଗ-ଅନ୍ତକ) ଶ୍ୟେନପକ୍ଷୀ, ବାଜପକ୍ଷୀ ।

ଖଗାସନ, ବ. ପୁଂ. ( ଖଗ-ଆସନ ) ବିଷ୍ଣୁ; ଉଦୟପର୍ବତ ।

ଖଗୋଳ, ବ. ପୁଂ. (ଖ-ଗୋଳ) ଆକାଶମଣ୍ଡଳ; ତତ୍‌ପ୍ରତିରୂପକ କୃତ୍ରିମ ଗୋଲକ ।

ଖଗୋଳବିଦ୍ୟା । (Astronomy) ବ. ସ୍ତ୍ରୀ. ଯେଉଁ ବିଦ୍ୟାଦ୍ୱାରା ଗ୍ରହ ନକ୍ଷତ୍ରାଦିର ପ୍ରକୃତି, ଅବସ୍ଥାନ ଓ ଗତି ପ୍ରଭୃତି ନିରୂପିତ ହୁଏ ।

ଖଗ୍‌ଗଡ଼, ବ. ପୁଂ. ଶର, ଇଙ୍କଡ଼କାଠି, ଏଥିରେ କାଠିକଲମ ପ୍ରସ୍ତୁତ ହୁଏ ।

ଖଙ୍କର, ବ. ପୁଂ. ଚୂର୍ଣ୍ଣକୁନ୍ତଳ, ଅଳକା ।

ଖଙ୍କାର, ବ. (ପ୍ରା) କଫମିଶ୍ରିତ ଛେପ ।

ଖଚ, ବ. (ଦେଶଜ) ଚୁଗୁଲି, ପରର ଗ୍ଲାନି । ଯଥା—

ଖଚବାଚ ମନ୍ତ୍ରର-ପ୍ରୟୋଗରେ ବେ ମୋର
ମୂଢ ଗୀମୃଷ ସଂହୃଷ୍ଟିଏରେ

ଖଚମସ, ବ. ପୁଂ. (ଖ-ଚମ୍=ଭକ୍ଷଣ କରିବା-ଅସ) ଚନ୍ଦ୍ର ।

ଖଚର, ବଂ. (ଖ-ଚର) ଆକାଶଗାମୀ । ବ. ପୁଂ. ରାକ୍ଷସ; ସୂର୍ଯ୍ୟ; ବାୟୁ; ଗ୍ରହ; ମେଘ; ଅଶ୍ୱତର ।

ଖଚରୀ, ବ. ସ୍ତ୍ରୀ. (ଖଚର-ଈ) ରାକ୍ଷସୀ ।

ଖଚିତ, ବଂ. (ଖଚ୍-ତ) ରଚିତ; ବଦ୍ଧ; ଜଡ଼ିତ; ବ୍ୟାପ୍ତ; ମିଶ୍ରିତ; ଯୋଜିତ; ଅନ୍ତର୍ନିହିତ; ଭୂଷିତ ।

ଖଚୁଆ, ବଂ. (ଦେଶଜ) ଯେ ଖଚ ବା ଚୁଗୁଲି କହେ ।

ଖଜ, ବ. ପୁଂ. ( ଖଜ୍=ମନ୍ଥନ କରିବା-ଅ ) ମନ୍ଥନଦଣ୍ଡ; କରଚୁଲି, ଦର୍ବୀ, ହତା ।

ଖଜଣା, ବ. (ଯାବନିକ) କର ।

ଖଜପ, ବ. ନ. (ଖଜ୍-ଅପ) ଘୃତ ।

ଖଜଳ, ବ.ନ. (ଖ-ଜଳ) ନୀହାର, ଆକାଶବାରି, ଶିଶିର ।

ଖଜା, ଖଜାକା, ବ. ସ୍ତ୍ରୀ. (ଖଜ୍-ଅ, ଅକ-ଆ) କରଚୁଲି; ଡଙ୍କା ।

ଖଜା, ବ. (ପ୍ରା) (ଖାଜକା ଶବ୍ଦଜ) ପକ୍ୱମିଷ୍ଟାନ୍ନ-ବିଶେଷ ।

ଖଜାଞ୍ଚି, (ଯାବନିକ) ରାଜଧନାଧ୍ୟକ୍ଷ ।

ଖଜ୍ୟୋତିଃ, ବ. ପୁଂ. (ଖ-ଜ୍ୟୋତିସ୍) ଖଦ୍ୟୋତ, ଜୁଳୁଜୁଳିଆପୋକ ।

ଖଞ୍ଜ, ବଂ. (ଖନ୍‌ଜ-ଅ) ବିକଳପଦ, ଲେଙ୍ଗଡ଼ା, ଛୋଟା; (ଦେଶଜ) ଉପାୟ ।

ଖଞ୍ଜଖେଟ, ଖଞ୍ଜଖେଳ, } ବ. ପୁଂ. (ଖଞ୍ଜ-ଖେଟ, ଖେଳ) ଖଞ୍ଜନପକ୍ଷୀ ।

ଖଞ୍ଜଣୀ, ବ. (ଦେଶଜ) ବାଦ୍ୟଯନ୍ତ୍ରବିଶେଷ ।

ଖଞ୍ଜନ, ବ. ପୁଂ. (ଖନ୍‌ଜ୍-ଅନ) ପ୍ରସିଦ୍ଧପକ୍ଷୀ, ଭଦ-ଭଦଳିଆ ପକ୍ଷୀ । ଯଥା—

ସନେ ଯେ ଅଛ ଖଞ୍ଜନ ସେ ଦେଖି କେହ୍ନ ଅଞ୍ଜନ
ସ୍ତବେ ଏତ ଅଠାକାଠି ପକ୍ଷୀ ଧରଣେ । ବୃ. ପ.

ଖଞ୍ଜନରତ, ବ. ନ. ( ଖଞ୍ଜନ-ରତ ) ଯତି-ମାନଙ୍କର ଗୋପନୀୟ ମୈଥୁନ ।

**ଖଞ୍ଜର**, ବି. (ଯାବନିକ) ଗୋଳା ।

**ଖଞ୍ଜରୀଟ**, ବି. ପୁଂ. ( ଖଞ୍ଜ-ଋ-ଈଟ ) ଖଞ୍ଜନପକ୍ଷୀ, ଢ଼ଦଢ଼ଦଳିଆ ପକ୍ଷୀ । ଯଥା—

> ଏହା କହୁ ପାହୁଁ କନକାଦ୍ରି ଭୂଷା,
> ଉତ୍ତରର ଖେଳାଖଞ୍ଜରୀଟଦୃଶା । ନ. କେ.

**ଖଞ୍ଜା**, ବି. ( ଦେଶଜ ) ଚତୁର୍ଦ୍ଦିଗରେ ଗୃହ ବା ପ୍ରାଚୀରବେଷ୍ଟିତ ସ୍ଥାନ । ବିଂ. ଯୋଡ଼ା, ମିଳିତ । ଯଥା—

> ରଣକ୍ଷଣ ହୋଏ ଖଞ୍ଜା ପାହୁଡ଼ ଚରଣେ । ଲ. ବ.

କାର୍ଯ୍ୟୋପଲକ୍ଷରେ ଦତ୍ତ ।

**ଖଞ୍ଜିବା**, କ୍ରି. (ଦେଶଜ) ନିୟମାନୁସାରେ ସ୍ଥାପନ କରିବା, ସୁଗ୍ରହରୂପେ ସ୍ଥାପନ କରିବା । ଯଥା—

> କ ସୁନ୍ଦର ଠାଇଁ ଖଞ୍ଜି କଳିଣୀ,
> ଏଣୁ କହୀ ଥିବା ହେଉଛି ଜାଣି । ଲ. ବ.

**ଖଟ**, ବି. ( ଖଟ୍-ଅ ) ଅନ୍ଧକୂପ, ତୃଣ; କଫ; ପ୍ରହାରବିଶେଷ; ଧୃଷ୍ଟି; ପର୍ବତଟଙ୍କ; ଲାଙ୍ଗଳ; (ପ୍ରା; ଖଟ୍ବା ଶବ୍ଦଜ) ଶୟନ ନିମିତ୍ତ କାଷ୍ଠନିର୍ମିତ ପଦାର୍ଥ, ପର୍ଯ୍ୟଙ୍କ, ପଲଙ୍କ । ଯଥା—

> ଗାଇ ଖଣ୍ଡାଧାର ଖଟ ମଣି ମୁଁ ଶୋଇଲୁ ରେ । ବ. ଚ.

**ଖଟଣୀ**, ବି. (ଦେଶଜ) ଦେବତାଙ୍କ ନିକଟରେ ପ୍ରାତ୍ୟହିକ ଖଞ୍ଜା ଭୋଗ । ଯଥା—

> ଅପିଥିଲ ଖଟଣିରେ ଶ୍ରୀଚକ୍ର ଛାମୁରେ
> ଅଳମୁହିଁ, ଦେଣ୍ଟ ଦେଉଥିବ ସଙ୍ଗେ ଭେଟ । ମ. ଯା.

**ଖଟା**, ବି. ( ଦେଶଜ ) ଅମ୍ଲପଦାର୍ଥ, ତେନ୍ତୁଳି ପ୍ରଭୃତି ।

**ଖଟାଇବା**, କ୍ରି. (ଦେଶଜ) ବାନ୍ଧିବା । ଯଥା—

> କନକାଗ୍ରେ ଖଟାଇ ଦୋଳୀ,
> କମଳକୁ ଶୁଆଇ ଦେଲେ ହୃଷ୍ଟହୃଷ୍ଟ ।

**ଖଟିଆ**, ବି. (ପ୍ରା; ଖଟ୍ବା ଶବ୍ଦଜ) ଦୋଳା, ଯାନ-ବିଶେଷ ।

**ଖଟ୍ଟିକ**, ବି. ପୁଂ. (ଖଟ୍-ଅକ, ଇ-ଆଗମ) ବକ୍ରିତହସ୍ତ, କୁବ୍‌ଜପାଣି ।

**ଖଟିକା**, ବି. ସ୍ତ୍ରୀ. (ଖଟ୍-ଅକ-ଆ) ଖଡ଼ୀ ।

**ଖଟିନୀ**, } ବି. ସ୍ତ୍ରୀ. (ଖଟ୍-ଇନ୍, ଈ) ଖଡ଼ୀ;
**ଖଟୀ**, } (ଦେଶଜ) ଖଟୀ=ମାଦକଦ୍ରବ୍ୟ ବିକ୍ରୟସ୍ଥାନ ।

**ଖଟିବା**, କ୍ରି. ବି. ( ଦେଶଜ ) ସେବା କରିବା । ଯଥା—

> ଖଟନ୍ତି ଯା ପାଦେ ମାଇ ଅମୃତ । କ. ବ,

**ଖଟେଇ**, ବି. (ଦେଶଜ) ଅମ୍ଳରସବିଶିଷ୍ଟ ପଦାର୍ଥ-ବିଶେଷ ।

**ଖଟେଇବା**, କ୍ରି. ବି. ( ଦେଶଜ ) ପରିଶ୍ରମ କରାଇବାର; ପଶ୍ଚାଦ ବନ୍ଧନ କରିବା ।

**ଖଟ୍ଟନ**, ବିଂ. (ଖଟ୍ଟ୍-ଅନ) ଖର୍ବ, ବାଙ୍ଗର ।

**ଖଟା**, } ବି. ସ୍ତ୍ରୀ. (ଖଟ୍ଟ୍; ଖଟ୍ବ୍-ଅ-ଆ) ପର୍ଯ୍ୟଙ୍କ;
**ଖଟ୍ବା**, } ଖଟ ।

**ଖଟ୍ଟାଶ**, ବି. ସ୍ତ୍ରୀ. ପୁଂ. ବନ୍ୟ ଜନ୍ତୁବିଶେଷ, କଟାଶ ।

**ଖଟ୍ଟି**, ବି. ପୁଂ. (ଖଟ୍ଟ୍-ଇ) ଶବବାହକ ଖଟ ।

**ଖଟ୍ଟିକ**, ବି. ପୁଂ. (ଖଟ୍ଟ୍-ଇକ) ବ୍ୟାଧ ।

**ଖଟ୍ଟେରକ**, ବିଂ. (ଖଟ୍ଟ୍-ଏରକ) ଖର୍ବ, ବାଙ୍ଗର ।

**ଖଟ୍ବାଙ୍ଗ**, ବି. ନ. ( ଖଟ୍ବା-ଅଙ୍ଗ ) ଖଟ ଖୁରା ପରି ମୁଦ୍ଗର; ଖଟ୍ଟାର ଅଙ୍ଗ; ନରପଞ୍ଜର; ପୃଷ୍ଠବଂଶ; ସୂର୍ଯ୍ୟବଂଶୀୟ ନୃପବିଶେଷ । ଯଥା—

> ଶଙ୍କର ଖଟ୍ବାଙ୍ଗଲୁବ୍ଧ ଉମାରମେ ଛତ୍ରେଶସ୍ବରୂପା ପ୍ରୀତ । ଲ. ବ.

**ଖଟ୍ବାଙ୍ଗଧୃତ୍**, ବି. ପୁଂ. (ଖଟ୍ବାଙ୍ଗ ଧୃତ୍) ଶିବ ।

**ଖଟାରୂଢ଼**, ବିଂ. (ଖଟ୍ବା-ଆରୂଢ଼) ପାମର, ଦୁରାଗ୍ରହ; ଅଳସ; ଖଟରେ ଶାୟିତ; ପ୍ରମତ୍ତ ।

**ଖଟ୍ଟିକା** } ବି. (ଖଟ୍ଟା-ଇ-କ-ଆ) ଛୋଟ ଖଟ ।
**ଖଟ୍ଟିକା**, }

**ଖଡ଼କ୍କିକା**, ବି. ସ୍ତ୍ରୀ. ବାଡ଼ବାଟ, ଗୁପ୍ତଦ୍ୱାର ।

**ଖଡ଼କ୍କୀ**, ବି. (ଖଡ଼କ୍-କୃ-ଅ-ଈ) ଗୁପ୍ତଦ୍ୱାର ।

**ଖଡ଼ଖଡ଼**, ବି. ( ଦେଶଜ ) ଅନୁକରଣ ଶବ୍ଦ-ବିଶେଷ ।

**ଖଡ଼ଖଡ଼**, ବି. ( ଦେଶଜ ) କାଷ୍ଠନିର୍ମିତ ଯାନ-ବିଶେଷ ।

ଖଡ଼ପା, ( ଯାବନିକ ଖଡ଼ାପା ଶବ୍ଦଜ ) ଗଡ଼ଜାତ-ମାନେ ପାଲ୍କି କାନ୍ଧେଇ ଯିବାବେଳେ ଗୋଡ଼ରେ କଣ୍ଟା ଇତ୍ୟାଦି ପଶିଲେ ତାହା ବାହାର କରିବା ନିମିତ୍ତ ଠିଆ ହେବାପାଇଁ ଡାକ ନ କହି "ଖଡ଼ପା" ଏହି କଥା କହନ୍ତି ।

ଖଡ଼ମ, ବି. (ଦେଶଜ) କାଷ୍ଠପାଦୁକା, କଠାଉ ।

ଖଡ଼ରା, ବି. (ଯାବନିକ) ଅଶ୍ୱଗାତ୍ର ମାର୍ଜନ ନିମିତ୍ତ ଲୌହନିର୍ମିତ ଯନ୍ତ୍ରବିଶେଷ ।

ଖଡ଼ା, ବି. (ଦେଶଜ) ଶାଗବିଶେଷ ।

ଖଡିକା, ବି. ସ୍ତ୍ରୀ. (ଖଡୀ-କ ଯୋଗ) ଖଡୀମାଟି; (ଦେଶଜ) ନଡିଆ ବା ତାଳପତ୍ରର ମଧ୍ୟସ୍ଥ ଶିରବିଶେଷ ।

ଖଡୀ, ବି. ସ୍ତ୍ରୀ. (ଖଡ୍-ଈ) ଖଡୀମାଟି ।

ଖଡ଼ୁ, ବି. (ଦେଶଜ) ହସ୍ତ ଓ ପାଦର ଆଭରଣ, ବଳୟ ।

ଖଡ୍ଗ, ବି.ପୁଂ. (ଖଡ୍-ଗ) ଗଣ୍ଡାର; ଗଣ୍ଡାରର ଶୃଙ୍ଗ; ଅସି, ଖଣ୍ଡା । ନ. ଲୌହ । ଯଥା—

ବଜ୍ରଲ ପରସ୍ପେ ଭଜେ ଚମକଇ ଖଡ୍ଗ କରାଳ । ଭଷା ।

ଖଡ୍ଗକୋଷ, ବି. ପୁଂ. ( ଖଡ୍ଗ-କୋଷ ) ଖଡ୍ଗର ଖୋଳ, ଖଡ୍ଗର ଖାପ ।

ଖଡ୍ଗପତ୍ର, ବି.ନ. (ଖଡ୍ଗ-ପତ୍ର) ଢାଲ; ଖଡ୍ଗକୋଷ; ଅସିଫଳକ । ପୁଂ. ଇକ୍ଷୁ ବୃକ୍ଷ ।

ଖଡ୍ଗପିଧାନ, ବି. ନ. (ଖଡ୍ଗ-ପିଧାନ) ଖଡ୍ଗକୋଷ, ଖଡ୍ଗର ଖୋଳ ।

ଖଡ୍ଗପାଣି, } ବି°. (ଖଡ୍ଗ-ପାଣି, ହସ୍ତ) ପ୍ରହାରୋ-
ଖଡ୍ଗହସ୍ତ, } ଦ୍ୟତ, ମାରଣୋନ୍ମୁଖ; ଖଡ୍ଗଧାରୀ ।

ଖଡ୍ଗପୁଚ୍ଛୀ, ବି. ପୁଂ. ଯେଉଁ ଜନ୍ତୁମାନଙ୍କର ଢାଲ ପରି ଦେହାବରଣର ନିମ୍ନଭାଗରେ ଦୀର୍ଘ ଖଡ୍ଗାକାର ଶଲାକା ଥାଏ, ଯଥା— ସମୁଦ୍ର କର୍କଟୀ (Zyphosura) ।

ଖଡ୍ଗୀ, ବି. ପୁଂ. ( ଖଡ୍ଗ-ଇନ୍ ) ଗଣ୍ଡାର । ବି°. ଖଡ୍ଗଧାରୀ ।

ଖଡ୍ଗୀକ, ବି. ନ. ( ଖଡ୍ଗ-ଈକ ) ଧାନ୍ୟାଦି ଶସ୍ୟ କାଟିବାର ଶସ୍ତ୍ରବିଶେଷ, ଦାଆ, ଦାଆ ।

ଖଣତି, } ବି. (ଗ୍ରା) ( ଖନିତ୍ର ଶବ୍ଦଜ ) ମାଟି
ଖଣିତା, } ଖୋଳିବାର ଶସ୍ତ୍ରବିଶେଷ ।

ଖଣି, ବି. ସ୍ତ୍ରୀ. (ଖନ-ଇ) ସ୍ୱର୍ଣ୍ଣାଦିର ଉତ୍ପତ୍ତିସ୍ଥାନ, ଆକର; ଗର୍ତ୍ତ ।

ଖଣ୍ଟ, ବି. ଡକାଏତ, ଠକ, ଜାତିବିଶେଷ । ଯଥା—

ଭଲ ବୁଝିଛ କି ଏହି ଖଣ୍ଟର,
ଜାଣି ନାହିଁ ତ ତାହା କପଟର । ବ. ଠ.

ଖଣ୍ଡ, ବି.ପୁଂ. ( ଖନ୍ଡ୍-ଅ ) ଭେଦ । ନ. ଛେଦ, ପରିଚ୍ଛେଦ; ବସ୍ତ୍ର ନିର୍ଦ୍ଦେଶ, ଯଥା—ଏକ ଖଣ୍ଡ ପୁସ୍ତକ; ଅଂଶ; କନ୍ଦଗୁଣ୍ଡି । ଯଥା—

ଖଣ୍ଡ କ୍ଷୀର ଦେବ ମୁଁ ତାହାକୁ । କୋଇଲ ।

ଖଣ୍ଡଧାରା, ବି. ସ୍ତ୍ରୀ. ( ଖଣ୍ଡ-ଧାର-ଅ-ଆ ) କର୍ତ୍ତରୀ, କଇଞ୍ଚି ।

ଖଣ୍ଡନ, ବି. ନ. (ଖନ୍ଡ୍-ଅନ) ଭଙ୍ଗ । ନା, ସ୍ତ୍ରୀ. ନିରାକରଣ; ଭଞ୍ଜନ; ଛେଦନ; ସ୍ୱାମିଠାରେ ପର ନାରୀ ସଙ୍ଗ ଚିହ୍ନ ଦେଖି ନାୟିକାର ଅପମାନ ବୋଧ । ଯଥା—

ଖଣ୍ଡହିଁ ଖଣ୍ଡନ କରେ ପ୍ରାଣିପ୍ରାଣ
କୋଟଲା ସଙ୍ଗତେ କଡ଼ । ଭୂପତି ଚଉତିଶା ।

ଖଣ୍ଡନୀୟ, ବି. ( ଖଣ୍ଡ-ଅନୀୟ ) ଖଣ୍ଡନଯୋଗ୍ୟ, ଯାହା ଖଣ୍ଡନ କରାଯାଏ ।

ଖଣ୍ଡପରଶୁ, } ବି. ପୁଂ. ( ଖଣ୍ଡ-ପରଶୁ, ପର୍ଶୁ )
ଖଣ୍ଡପର୍ଶୁ, } ପରଶୁରାମ; ରାହୁ; ଭଗ୍ନଦନ୍ତ ହସ୍ତୀ; ଶିବ; ଯାମଦଗ୍ନ୍ୟ । ଯଥା—

ଖଣ୍ଡପରଶୁଭୂଷଣ ଖଣ୍ଡପର୍ଶୁଧର,
ଖୁଧାରେ ଧରଣ ଦେଲ କି ବସୁଧାପୁର ।

ଖଣ୍ଡପାଳ, ବି. ପୁଂ. (ଖଣ୍ଡ-ପାଳ) ଗୁଡିଆ ।

ଖଣ୍ଡପ୍ରଳୟ, ବି. ପୁଂ. ( ଖଣ୍ଡ-ପ୍ରଳୟ ) କ୍ଷୁଦ୍ର ପ୍ରଳୟ, ବ୍ରହ୍ମା ପ୍ରାତଃକାଳରେ ସୃଷ୍ଟି କରି ସାୟଂକାଳରେ ଯେ ଲୟ କରନ୍ତି ତାହାର ନାମ ଖଣ୍ଡପ୍ରଳୟ । ଯଥା—

ତଥାପି ଉଚ୍ଛନ୍ନ ହୋଇ ବାର ଅସମାଳେ
ପାବକ ବ୍ରହ୍ମଣ୍ଡ, ଖଣ୍ଡ ପ୍ରଳୟ ଥିବାରେ । ମ. ସା.

ଖଣ୍ଡା, ବ. ସ୍ତ୍ରୀ. ( ଖନ୍ଡ୍ ଧାତୁଜ ) ତରବାରି, ଖଡ୍ଗ । ଯଥା—

ଖଡ୍ଗ ଖଣ୍ଡାରେ ଚେଡ଼ାଇବେ ମୁଣ୍ଡ । ବ. ବେ.

ଖଣ୍ଡାଏତ, ବ. ( ଦେଶଜ ) ଜାତିବିଶେଷର ଉପାଧିବିଶେଷ ।

ଖଣ୍ଡାଭ୍ର, ବ. ନ. (ଖଣ୍ଡ-ଅଭ୍ର) ଖଣ୍ଡ ଖଣ୍ଡ ମେଘ ।

ଖଣ୍ଡିଆ, ବିଂ.( ଗ୍ରା ) ( ଖଣ୍ଡ ଶବ୍ଦଜ ) କ୍ଷତଯୁକ୍ତ, ଚକଲାଗା ।

ଖଣ୍ଡିକ, ବ. ପୁଂ. ( ଖଣ୍ଡ-ଇକ ) କଷ, କାଖ, ବାହୁମୂଳ; ବ୍ରୀହିବିଶେଷ; ବୁଟ ମୁଗ ପ୍ରଭୃତି ଶସ୍ୟ । ବିଂ. କ୍ରୁଦ୍ଧ ।

ଖଣ୍ଡିତ, ବିଂ. ( ଖଣ୍ଡ-ତ ) କର୍ତ୍ତିତ; ଛିନ୍ନ; ଭିନ୍ନ; ନିରାକୃତ; ଭଗ୍ନ; ବାସିତ ।

ଖଣ୍ଡିତା, ବ. ସ୍ତ୍ରୀ. (ଖଣ୍ଡିତ-ଆ) ସ୍ୱାମିର ପରସ୍ତ୍ରୀ-ସଙ୍ଗ ଚିହ୍ନ ଦେଖି ଈର୍ଷ୍ୟାଯୁକ୍ତା ନାୟିକା । ଯଥା—

ଖଣ୍ଡିତା ଖଣ୍ଡିତା ହେବାରୁ ରମେ,
ବର୍ଣ୍ଣି ତା ଜାଲେ ବର୍ଣ୍ଣିତା ସେ । ବ. ଚ.

ଖଣ୍ଡିବା, କ୍ରି. ବ. ମୁକ୍ତ କରିବା; ହରିବା ।

ଖଣ୍ଡୁଆ, ବ. ( ଦେଶଜ ) ସ୍ୱନାମଖ୍ୟାତ ରଞ୍ଜିତ ବସ୍ତ୍ରବିଶେଷ, ଓଢ଼ଣପଟ୍ଟବସ୍ତ୍ରବିଶେଷ । ଯଥା—

ଦିଶଇ ପଟକାପେଟା ଫନ୍ଦକଣ ଭଳ
ଲଙ୍ଗ ପାଟଖଣ୍ଡୁଆ କାନ୍ଧରେ ମାଠିଆ ସେ । ସ. ବ.

ଖତ, ବ. (ଦେଶଜ) ସାର, ଗୁଡ଼ ଗୋବରାଦି ।

ଖତକୁଡ଼, ବ.(ଦେଶଜ) ପାଉଁଶ, ପତ୍ର ଗୋବରାଦି ଯେଉଁ ସ୍ଥାନରେ ନିକ୍ଷିପ୍ତ ହୁଏ ।

ଖତମାଳ, ବ. ପୁଂ. ( ଖ ତମାଳ ) ଧୂମ୍ର ମେଘ । ଯଥା—

ଉଦିତ ବଦନ ଗଗନ କବୋଳେ ଖେଳେ ଖତ
ଦୃଷ୍ଟି ପାଶେ ହେମାନ ମାଳ । ପ୍ରେ. ସୁ.

ଖତ୍ୟାନ, ବ. (ଯାବନିକ) ଯେଉଁ କାଗଜରେ ପ୍ରଜାମାନଙ୍କର ଜମି ଜମା ବିଶେଷରୂପେ ଲିଖିତ ହୁଏ ।

ଖଟେଇଦେବା, ବ. ( ଦେଶଜ ) ନାନା ପ୍ରକାର କଦର୍ଯ୍ୟ ମୁଖଭଙ୍ଗୀ କରି ଚଟେଇବା ।

ଖଦଡ଼ା, ବଂ. (ଦେଶଜ) ଅତିକ୍ଷୁଣ । ଯଥା—

ପ୍ରିୟକରପ୍ରୀତଶୀଘ୍ରଖ୍ୟପ୍ରବାହ ହୃଦୟ ଯେବେ ଖଦଡ଼ା ।

ଖଦି, ଖଦୀ, ବ. ( ଦେଶଜ ) ଅଲ୍ପ ପରିସରବିଶିଷ୍ଟ ବସ୍ତ୍ରବିଶେଷ, ଧୋତି । ଯଥା—

ଖଦି ଶୁମର ଖଳ ଉପର,
ଭଦ୍ର କେହୁ ବେହୁ କରେ ପ୍ରଖର । ସ. ବ.

ଖଦିକା, ବ. ସ୍ତ୍ରୀ. ଖଇ, ଲାଜା ।

ଖଦିର, ବ. ପୁଂ. (ଖଦ୍ ଇର) ଖଇରଗଛ; ଇନ୍ଦ୍ର; ଚନ୍ଦ୍ର । ନ. ଖଇର । ଯଥା—

ପୂଗ ଖଦିର ଚୂର୍ଣ୍ଣେ ଯେ ଶୋଭଙ୍ଗୀ,
ଯବେ ପଳଦ ନାଗବଲ୍ଲୀ ଭଙ୍ଗି । ସ. ବ.

ଖଦିରସାର, ବ. ପୁଂ. ( ଖଦିର-ସାର ) ଖଇର ।

ଖଦିରିକା, ବ. ସ୍ତ୍ରୀ. ( ଖଦିର-ଇକ-ଆ ) ଲାକ୍ଷା, କଉ ।

ଖଦ୍ୟୋତ, ବ. ପୁଂ. (ଖ-ଦ୍ୟୋତ) ଜୁଳୁଜୁଳିଆ ପୋକ; ସୂର୍ଯ୍ୟ । ଯଥା—

ହୁଙ୍କଳ ଚରଣେ ଗୁଲ ନ ପାରେ,
ଖଦ୍ୟୋତପଟଳୀ ନେଇ ବାହାରେ । ବ. ବୃ.

ଖଦ୍ୟୋତନ, ବ. ପୁଂ. (ଖ-ଦ୍ୟୁତ୍-ଅନ) ସୂର୍ଯ୍ୟ ।

ଖଧୂପ, ବ. ପୁଂ. ( ଖ ଧୂପ ) ହାଉଇବାଣ, ବାଜି; ତୋପ ।

ଖନକ, ବ.ପୁଂ. (ଖନ୍-ଅକ) ମୂଷିକ; ସିନ୍ଧିଚୋର । ବିଂ. ଖନନକର୍ତ୍ତା; ଯେଉଁମାନେ ଆକରରୁ ଧାତୁଦ୍ରବ୍ୟାଦି ଖନନ କରନ୍ତି ।

ଖନନ, ବ. ନ. ( ଖନ୍-ଅନ ) ଖୋଳିବା; ଧାତୁପ୍ରଭୃତି ଖୋଳି ବାହାର କରିବା ।

ଖନା, ବିଂ. (ଦେଶଜ) ଯେ ସ୍ପଷ୍ଟରୂପେ କଥା କହି ପାରଇ ନାହିଁ; ଯେ ନାକରେ କଥା କହେ । ଯଥା—

ଖଣାପ୍ରଖଣା ବାଣୀ ଶୁଣି ଲଜରେ ଖନା ପରିପ୍ରେ ସ୍ୱନ କହ ।
ବି. ଚ.

ଖନିତ୍ର, ବି. ନ. (ଖନ-ଇତ୍ର) ଖନନାସ୍ତ୍ର,ଖଣତି ।
ଖନ୍ଦ, ବି. (ଖନ୍ ଧାତୁଜ) ଗର୍ତ୍ତ, ଖାତ ।
ଖନ୍ଦକ, ବି. ପୁଂ. (ଖନ୍ ଧାତୁଜ) ଖାତ ।
ଖପର, ବି. ନ. (ଖର୍ପର ଶବ୍ଦଜ) ଧାତୁବିଶେଷ; ପାତ୍ରବିଶେଷ ।
ଖପରା, ବି. ନ. (ଖର୍ପର ଶବ୍ଦଜ) ହାଣ୍ଡି ପ୍ରଭୃତିର କ୍ଷୁଦ୍ର କ୍ଷୁଦ୍ର ଭଗ୍ନ ଅଂଶ ।
ଖପା, ବି. (ଦେଶଜ) ରାଗ, କ୍ରୋଧ, ବିରକ୍ତି ।
ଖପୁର, ବି. ପୁଂ. (ଖ ପୃ-ଅ) ଗୁଆଗଛ; ଘଟ, କଳସ । ବିଂ. ଅଳସ ।
ଖପୁରି, ବି. ନ. ( ଖର୍ପର ଶବ୍ଦଜ ) ମୁଣ୍ଡର ଖୋଳପା ।
ଖପୁଷ୍ପ, ବି. ପୁଂ. (ଖ-ପୁଷ୍ପ) ଆକାଶକୁସୁମ; ଶୂନ୍ୟ, କିଛି ନୁହେଁ; ଶଶଶୃଙ୍ଗ ।
ଖମଣି, ବି. ପୁଂ. (ଖ-ମଣି) ସୂର୍ଯ୍ୟ । ଯଥା—

ଖମଣିମଣ୍ଡଳକୁ ତୁ ହସ୍ତ ବଢ଼ାଉଛୁ ରେ । ବ. ଚ.

ଖମା, ଖଣା, } ବି. (ଦେଶଜ) ଖାଲ । ଯଥା—

କଣା ଚଉସ ରେ ବଣା ମୃଗାକ୍ଷି ତୋ ଗୃହ,
ଅଣାଇ କପଟେ ବଣାକରିବାକେ ଖଣାକୁ ଦେବାକୁ ପେଲ ।

ଖମାର, ବି. (ଦେଶଜ) ଧାନ୍ୟାଦି ରଖିବାର ଘର ବା ସ୍ଥାନ ।
ଖମୀଳନ, ବି. ନ. ( ଖ-ମୀଳନ ) ତନ୍ଦ୍ରା, ଅଳ୍ପ ନିଦ୍ରା ।
ଖମୂଳ, ଖମୂଳିକା, ଖମୂଳୀ, } ବି. ସ୍ତ୍ରୀ. ( ଖ-ମୂଳ, ଇକ-ଅ, ଈ ) କୁମ୍ଭିକା, ଜଳର ବୋଉଁଝାଞ୍ଜି ।
ଖମ୍ବ, ଖୁମ୍ବ, ବି. (ଦେଶଜ) ଖୁଣ୍ଟ, ସ୍ତମ୍ଭ ।
ଖମ୍ବଆଳୁ, ବି. ( ଦେଶଜ ) ଲମ୍ବାକୃତି ଆଳୁବିଶେଷ ।
ଖୟରାତ, ବି. ( ଯାବନିକ ) ଦାନ, ବିତରଣ (Charitable grants) ।
ଖର, ବି. ପୁଂ. (ଖ-ର) ଗର୍ଦ୍ଦଭ; ଅଶ୍ୱତର; କାକ; ତୀକ୍ଷ୍ଣବର୍ଣ୍ଣ; କୁରରପକ୍ଷୀ; ରାକ୍ଷସବିଶେଷ; ଉତ୍ତାପ; ଉଷ୍ଣତା । ବିଂ. ଉଷ୍ଣ, କଠିନ; ଦାଢ଼ୁଆ; ତୀକ୍ଷ୍ଣ; ବେଗଯୁକ୍ତ । କ୍ରି.ବିଂ. ବେଗରେ,ଶୀଘ୍ର । ଯଥା—

ଅଶ୍ୱାଦନ୍ତି ସ୍ୱଧା ନାମ ସେ ବଧରେ ଖରେ । ବ. ଚ.

ଖରକିବା, କ୍ରି. ବି. ( ଦେଶଜ ) ଝାଡ଼ୁ କରିବା, ଝାଡିବା, ଓଳେଇବା ।
ଖରଚ, ବି. (ଦେଶଜ) ବ୍ୟୟ ।
ଖରଚ୍ଛେଦ, ବି. ପୁଂ. (ଖର-ଛେଦ) ତୃଣବିଶେଷ, ବେଣା ।
ଖରଡ଼, ବି. (ଦେଶଜ) ଗାଈଗୋଠ । ଯଥା—

ବେଢ଼ି କରୁଛ ମୂକୁର ମାର୍ଜ୍ଜନା,
ଦେ ଖରଡ ପାଉବାରେ ରଚନା । ଲା. ବ.

ଖରଡାପାଣି, ବି. ଜମିଦାରମାନଙ୍କର ବାଜେ ଅସ୍ତୁ ।
ଖରଡବା, କ୍ରି. ଭାଜିବା ।
ଖରଣସ୍, ଖରଣସ, } ବିଂ. ( ଖର-ନାସିକା, ନାସିକା ସ୍ଥାନରେ ନସ୍ ଆଦେଶ) ତୀକ୍ଷ୍ଣନାସିକ, କଠିନ ନାସିକାଯୁକ୍ତ ।
ଖରଦଣ୍ଡ, ବି. ନ. (ଖର-ଦଣ୍ଡ) ପଦ୍ମ ।
ଖରପ୍ରିୟ, ବି. ପୁଂ. (ଖର-ପ୍ରିୟ) ପାରାବତ, ପାରା ।
ଖରା, ବି. (ପ୍ରା) (ଖର ଶବ୍ଦଜ) ସୂର୍ଯ୍ୟର ଉତ୍ତାପ । ଯଥା—

ଝାଳ ବହୁଥିବ ଅଙ୍ଗୁ ଲଗି ଝାଞ୍ଜି ଖରା,
ଘନ ପାଇ ଚନ୍ଦ୍ରଚଳେ ବସୁଧିରୁ ପରା । ବ. ଚ.

ଖରାଂଶୁ, ବି. ପୁଂ. (ଖର-ଅଂଶୁ) ତୀକ୍ଷ୍ଣାଂଶୁ, ସୂର୍ଯ୍ୟ;
ଖରାପ, ବିଂ. ( ଦେଶଜ ) ମନ୍ଦ, ଦୁଷ୍ଟ; ନଷ୍ଟ । ଯଥା—

ଖରାପ ତୁ ହେଲୁଁରେ,
ଖେଳଖେଳଖଞ୍ଜନାକ୍ଷି ବ ସାହସ କଲୁ ରେ । ବ.ଚ.

ଖରିଦା, ବିଂ. (ଯାବନିକ) କ୍ରୀତ, କଣା ।
ଖର୍ଚ୍ଚୁ, ବି. ପୁଂ. (ଖନ୍-ଉ) ଘୋଟକ; ଦର୍ପ; ଦନ୍ତ; କାମଦେବ; ଶିବ । ସ୍ତ୍ରୀ. ପଞ୍ଚମବର୍ଷ କନ୍ୟା । ବିଂ. ଶୁକ୍ଳବର୍ଣ୍ଣ; ତୀକ୍ଷ୍ଣ; କ୍ରୂର; ଜବୋଧ ।
ଖର୍ଜ୍ଜନ, ବି. ନ. (ଖର୍ଜ୍ଜ-ଅନ) କଣ୍ଡୁୟନ; କୁଣ୍ଡେଇ ହେବା ।
ଖର୍ଜ୍ଜୁ, ଖର୍ଜ୍ଜୂ, ବି. ସ୍ତ୍ରୀ. (ଖର୍ଜ୍ଜ-ଉ,ଊ) ଖର୍ଜ୍ଜୂରଗଛ; କଣ୍ଡୁୟନ; କୀଟବିଶେଷ ।

ଖର୍ଜ୍ଜୂର, ବି. ନ. (ଖର୍ଜ୍ଜ=ବ୍ୟଥିତ ହେବା-ଊର) ଖଜୁରିଫଳ । ପୁଂ. କୀଟବିଶେଷ, ସମ୍ଭାଳୁଆ ପୋକ; ବୃଶ୍ଚିକ ।

ଖର୍ଜ୍ଜୂରୀ, ବି. ପୁଂ. ସ୍ତ୍ରୀ. (ଖର୍ଜ୍ଜ-ଊର-ଈ) ଖଜୁରି-ଗଛ ।

ଖର୍ପର, ବି. ପୁଂ. (କୃପ୍-ଅର) ଚୋର; ଧୂର୍ତ୍ତ; ଭିକ୍ଷାଭାଣ୍ଡ; ମାଟି ପାତ୍ରର ଭଗ୍ନାଂଶ; ଖପର; କପାଳ, ମଲା ମନୁଷ୍ୟର ମୁଣ୍ଡ, ଖପୁରୀ । ଯଥା—

ମେଘଥ ଶୋଣିତେ ନଇତେ ପୂରିତ ଯାର ଖର୍ପର । ଭଞ୍ଜ ।

ଖର୍ପରୀ, ବି. ପୁଂ. ନ. (କୃପ୍-ର-ଈ) କଜ୍ଜଳ ।

ଖର୍ବ, ବି. ନ. (ଖର୍ବ୍-ଅ) ସଂଖ୍ୟାବିଶେଷ । ପୁଂ. କୁବେରର ନିଧିବିଶେଷ, ଦଶବୃନ୍ଦ ସଂଖ୍ୟା । ବିଂ. ଛୋଟ; ବାମନ; ନୀଚ ।

ଖର୍ବଟ, ବିଂ. ପୁଂ. ନ. (ଖର୍ବ-ଅଟ) ଚାରିଶତ ଗ୍ରାମର ମଧ୍ୟସ୍ଥ ଗ୍ରାମ, କ୍ଷୁଦ୍ରନଗର, ପର୍ବତପ୍ରାନ୍ତ-ବର୍ତ୍ତୀ ଗ୍ରାମ ।

ଖର୍ବଟକ, ବିଂ. (ଖର୍ବଟ-କ) ବାଙ୍ଗର, ବାମନ । ଯଥା—

କାନ୍ତ କଣ୍ଠ ବାସ ଯହିଁ ଦୃଢ଼ରେ ଧର,
ଖର୍ବଟକ ନାଶିତପ୍ରୁ ଗମନ କର ।

ଖର୍ମ୍ମ, ବି. ନ. (ଖର୍ଜ୍ଜ=ମାର୍ଜ୍ଜନା କରିବା-ମ) ପୁରୁଷତ୍ୱ; ରେସମୀ ବସ୍ତ୍ର ।

ଖଳ, ବି. ପୁଂ. ନ. (ଖଳ=ସଂଗ୍ରହ କରିବା-ଅ) ଧାନ୍ୟାଦିର ମର୍ଦ୍ଦନ ସ୍ଥାନ; ମର୍ଦ୍ଦନପାତ୍ର; ମଳ; କଞ୍ଚାଳ । ବିଂ. ଦୁର୍ଜ୍ଜନ, ଯେ ଅନ୍ୟର ହିଂସା କରେ, ହିଂସ୍ରକ, ଯାହାର ମନଃ ସରଳ ନୁହେ, କୁଟିଳ, ନୀଚ; (ଖ=ଆକାଶ-ଲା=ସଶ୍ଳିଷ୍ଟ ହେବା) । ଯଥା—

ବଳକବହ୍ନି ମୋ ଶୀତ, ଖଳ-ଖଳରେ ଅଦ୍ଭୂତିତ ।

ଦ୍ରୂର୍ଯ୍ୟ ।

ଖଲ, ବି. (ଖଲ୍ଲ ଶବ୍ଦଜ) ଔଷଧାଦି ପେଷଣାର୍ଥ ପ୍ରସ୍ତରନିର୍ମିତ ପାତ୍ରବିଶେଷ । କ୍ରି. ମର୍ଦ୍ଦନ କରିବା ।

ଖଳତା, ବି. ସ୍ତ୍ରୀ. (ଖଳ-ତା) ହିଂସାପ୍ରବୃତ୍ତି; ଅନ୍ୟର ହିଂସା କରିବା; କୁଟିଳତା; ନୀଚତା ।

ଖଳପୂ, ବି. ପୁଂ. (ଖଳ-ପୂ-ଂ) ମାର୍ଜ୍ଜନକାରୀ ।

ଖଳମୂର୍ତ୍ତି, ବି. ପୁଂ. ( ଖଳ-ମୂର୍ତ୍ତି ) ପାରଦ, ପାରି ।

ଖଳା, ବି. (ଖଳ ଶବ୍ଦଜ) ଧାନ୍ୟାଦି ରଖିବାର ସ୍ଥାନ । ଯଥା—

ଖଳା କର ଗ୍ରାମସୀମାରେ ଧାନ ଅମଳ କର,
ଗୃହକୁ ନେଇତ୍ର ଆନନ୍ଦେ ଧରିଦସ୍ତା ସୁନ୍ଦର । ଛ. ମା.

ଖଳାଧାରୀ, ବି. ସ୍ତ୍ରୀ.(ଖଳ-ଆଧାର) ତୈଳପାୟିକା, ଅସରପା ।

ଖଲାସ, ବି. (ଯାବନକ) ମୁକ୍ତି ପାଇବା, ଉଦ୍ଧାର ହେବା, ପାର ହେବା ।

ଖଲାସୀ, ବି.(ଯାବନକ) ଜଳପ୍ରବୃତ୍ତିର କର୍ମଚାରୀ-ବିଶେଷ ।

ଖଲି, ବି. (ଦେଶଜ) ଚାଉଳମଣ୍ଡ, ଯାହା ଧୋବା ଓ ତନ୍ତୀମାନେ ବ୍ୟବହାର କରନ୍ତି ।

ଖଲି, ବି. କାଠପତ୍ର ।

ଖଲିଆ, ବିଂ. ଚାଲିବା ସମୟରେ ଯେ ଛୋଟେଇ ଚାଲେ ।

ଖଳକାର, ବି. ପୁଂ. (ଖଳ-କାର) ଛାବକର; ସାପୁଆ କେଳା । ଯଥା—

ଖଳକାର ମୋହ କଳା ନାଟକୁ ଗଲନ୍ତି । ବ. ଚ.

ଖଳନ, } ବି. ପୁଂ. ନ. ( ଖ-ଲୀନ ) ଲଗାମ,
ଖଳୀନ, } ଅଶ୍ୱର ମୁଖରଜ୍ଜୁ; ଅଶ୍ୱାଦି ମୁଖସ୍ଥିତ କଶାବନ୍ଧନର ଲୌହଖଣ୍ଡବିଶେଷ ।

ଖଳିନୀ, ବି. ସ୍ତ୍ରୀ. (ଖଳ-ଇନ-ଈ) ଖମାରସମୂହ; ଖଳବିଶିଷ୍ଟା, ହିଂସ୍ରକା ।

ଖଲିବା, କ୍ରି. (ଗ୍ରା) ମର୍ଦ୍ଦନ କରି ମିଶାଇବା ।

ଖଲିଶ, } ବି. ପୁଂ. (ଖଲି-ଶୀ-ଅ) ଗୁଆ-
ଖଲେଶୟ, } ରେପିମାଛ, ମତ୍ସ୍ୟବିଶେଷ ।

ଖଳୀକାର, ବି. ପୁଂ. (ଖଳ-କାର) ଅପକାର, ଅନିଷ୍ଟ, କ୍ଷତି; ବିପଦ ।

ଖଲୁ, ଅଂ. (ଖ-ଲୁ) ନିଷେଧ; ଜିଜ୍ଞାସା; ଅନୁନୟ; ନିଶ୍ଚୟ; ବାକ୍ୟାଲଙ୍କାର; ବ୍ୟାପ୍ତି; ହେତୁ; ସାନ୍ତ୍ୱନା; ଉତ୍ପ୍ରେକ୍ଷା ।

ଖଲୂରିକା, ବି. ସ୍ତ୍ରୀ. (ଖନ୍‌ଉ୍‌-ଉର) ଅସ୍ତ୍ରାଭ୍ୟାସ-ଭୂମି; ବ୍ୟାୟାମ ଭୂମି ।

ଖଲେଧାନୀ, ବି. ସ୍ତ୍ରୀ. ଧାନ୍ୟାଦି ବେଙ୍ଗଲା ପଡ଼ିବା ସମୟରେ ଯେଉଁ କାଷ୍ଠରେ ଗୋରୁ ବନ୍ଧା ହୁଅନ୍ତି, ମେଇଖୁଣ୍ଟ ।

ଖଲ୍ଲ, ବି. ପୁଂ. (ଖଲ୍‌-ଲ) ଖାଲ; ଗର୍ତ୍ତ; ମଶକ; ଚାତକ; ବସ୍ତ୍ରବିଶେଷ; ଚର୍ମ ।

ଖଲ୍ଲିକା, ବି. ସ୍ତ୍ରୀ. (ଖଲ୍ଲ-କ) ପିଷ୍ଟକାଦି ଭାଜିବା ପଲମ ।

ଖଲ୍ଲିଟ, } ବିଂ. ଯାହାର ମୁଣ୍ଡ ଟାଙ୍ଗରା ।
ଖଲ୍ଲୀଟ, }

ଖବର, ବି. (ଯାବନିକ) ବାର୍ତ୍ତା, ସମ୍ବାଦ ।

ଖବାଷ୍ପ, ବି. ପୁଂ. (ଖ-ବାଷ୍ପ) ନୀହାର; ହିମ ।

ଖଶ, ବି. ପୁଂ. ଭାରତବର୍ଷର ଉତ୍ତରସ୍ଥ ପାର୍ବତୀୟ ଦେଶବିଶେଷ; ଜାତିବିଶେଷ । ଖା,ସ୍ତ୍ରୀ. ମୁରା-ନାମକ ଗନ୍ଧଦ୍ରବ୍ୟ; ଦକ୍ଷକନ୍ୟା; କଶ୍ୟପପତ୍ନୀ ।

ଖଶ୍ୱାସ, ବି. ପୁଂ. (ଖ-ଶ୍ୱାସ) ବାୟୁ ।

ଖସ, ବି. (ଖ=ଇନ୍ଦ୍ରିୟ-ସୋ=ଅବସନ୍ନ କରିବା- ଅ ) କୁଣ୍ଡିଆ, କାଛୁ ।

ଖସଖସିଆ, ବି. (ଯାବନିକ) ବେଣାମୂଳ, ବେଣା-ଚେର । ବିଂ. ଯାହା ମସୃଣ ନୁହେ, ଅଚିକ୍କଣ ।

ଖସଡ଼ା, ବିଂ. ଚଠା; ପିଚ୍ଛିଳ ।

ଖସମ, ବିଂ.(ଯାବନିକ) ପତି, ସ୍ୱାମୀ ।

ଖସା, ବି. (ଦେଶଜ) ଛଳ ।

ଖସିବା, କ୍ରି. ବି. (ଦେଶଜ) ଓହ୍ଲାଇବା; ଗଡ଼ି ପଡ଼ିବା; ପତିତ ହେବା, ଯଥା—

ଗଲା ମନ ଚାର ନଜ ବର୍ଣ୍ଣ ଖସି । ନ. କେ.

ଖାଇ, ବି.(ଖନ-ଧାତୁଜ) ଖାତ; କିଲ୍ଲା ବା ଗଡ଼ର ଚତୁର୍ଦ୍ଦିଗ ପାଖରେ ଥିବା ଜଳାଶୟବିଶେଷ, ପରିଖା; (ଖାଦ ଧାତୁଜ ହେଲେ) କପା ପିଞ୍ଜିବା ଯନ୍ତ୍ରବିଶେଷ ।

ଖାଇବା, କ୍ରି. ବି. ( ଖାଦ୍‌ ଧାତୁଜ ) ଭୋଜନ କରିବା ।

ଖାଉନ୍ଦ, ବି. (ଯାବନିକ) ପ୍ରଭୁ, ମୁନିବ ।

ଖାଙ୍ଗାଞ୍ଚି, ବି. (ଯାବନିକ) କୋଷାଧ୍ୟକ୍ଷ ।

ଖାଜକ, ବି. ପୁଂ. ( ଖଜ୍‌=ଗମନ କରିବା-ଅକ; ଅଥବା ଖ = ଆକାଶ-ଅଜ = ରଥ-ଇକ ) ଖଇ ।

ଖାଡେ, କ୍ରି. ବିଂ. (ଦେଶଜ) ଥରେ, ବାରେ ।

ଖାଡ୍ଗିକ, ବିଂ. (ଖଡ୍ଗ-ଇକ) ଖଡ୍ଗଧାରୀ ।

ଖାଣ୍ଡବ, ବି. ପୁଂ. ( ଖଣ୍ଡ୍‌-ଅ ) ବନବିଶେଷ; ଇନ୍ଦ୍ରପ୍ରସ୍ଥ ନଗର ସନ୍ନିହିତ ଦେଶବିଶେଷ । ଯଥା—

କାନିହିତ ଖାଣ୍ଡବ ଦହନେ ଏ ପାଣ୍ଡବ,
ବଇଣି ଶିଖା ପ୍ରକାଶି ଅଇମ୍ଭ ତାଣ୍ଡବ । ଲ. ବ.

ଖାଣ୍ଡବ-ପ୍ରସ୍ଥ, ବି. ପୁଂ. ଇନ୍ଦ୍ରପ୍ରସ୍ଥ, ଦିଲ୍ଲୀ ।

ଖାଣ୍ଡି, ବି. ( ଖଣ୍ଡ ଶବ୍ଦଜ ) ମହାପ୍ରସାଦ କୁଚୁଆର ଭଗ୍ନାଂଶ ।

ଖାଣ୍ଡିକ, ବି. ପୁଂ. ( ଖଣ୍ଡ-ଇକ ) ମୋଦକ; ଗୁଡ଼ିଆ; ମିଷ୍ଟଦ୍ରବ୍ୟ ପ୍ରସ୍ତୁତକାରୀ ।

ଖାତ, ବି. ନ. ( ଖନ୍‌-ତ ) ପୁଷ୍କରିଣୀ; ଗର୍ତ୍ତ; ଖାଇ; ଖନନ । ବିଂ. ଖନିତ, ଯାହା ଖନନ କରି ହୋଇଅଛି । ଯଥା—

ଯଜ୍ଞମାନପାଇଁ ଖାତ ଖେ ଦବେ ରଚିଲେ । ମ. ଯା.

ଖାତକ, ବି. ନ. ( ଖାତ-କ ) ପରିଖା, ଖାଇ; (ଖାତ-କ=କୈ ଧାତୁଜ-ଅ) ପୁଂ. ଅଧମର୍ଣ୍ଣ, ଋଣୀ ।

ଖାତା, ବି. (ଯାବନିକ) ବହି; ହିସାବ ପୁସ୍ତକ ।

ଖାତିର, ବି. ( ଯାବନିକ ) ସମାଦର; ସମ୍ମାନ; ଅଭିଳାଷ; ଇଚ୍ଛା ।

ଖାଦ, ବି. (ଦେଶଜ) ମଇଳା; ଅସାର ବା ଅଳ୍ପ ମୂଲ୍ୟର ପଦାର୍ଥ, ଯେପରି ଟଙ୍କାର ଖାଦ କଳା ରୁପା ।

ଖାଦକ, ବି.ପୁଂ. (ଖାଦ୍‌-ଅକ) ଅଧମର୍ଣ୍ଣ, ଋଣଗ୍ରସ୍ତ ବ୍ୟକ୍ତି । ବିଂ. ଭକ୍ଷକ ।

ଖାଦନ, ବି. ନ. ( ଖାଦ୍-ଅନ ) ଭୋଜନ । ପୁଂ. ଦନ୍ତ ।

ଖାଦିତ, ବିଂ. (ଖାଦ୍-ତ) ଭକ୍ଷିତ ।

ଖାଦିର, ବିଂ. (ଖଦିର-ଅ) ଖଦିରନିର୍ମିତ; ଖଦିର-ସମ୍ବନ୍ଧୀୟ । ବି. ନ. ଖଇର ।

ଖାଦ୍ୟ, ବିଂ. ( ଖାଦ୍-ଯ ) ଭକ୍ଷଣୀୟ, ଆହାରଯୋଗ୍ୟ, ଭକ୍ଷଣୀୟ ଦ୍ରବ୍ୟ ।

ଖାନ୍‌ଗୀ, ବି. ( ଯାବନିକ ) ବାରବନିତା, ବେଶ୍ୟା ।

ଖାନି, ବି. ସ୍ତ୍ରୀ. (ଖନ୍-ଇ) ଖଣି; ଆକର ।

ଖାନିକ, ବି. ନ. (ଖନ୍-ଇକ) କାନ୍ଥରେ ହୋଇଥିବା ଗର୍ତ୍ତ, କାନ୍ଥର ସନ୍ଧି । ବିଂ. ଖଣିକର୍ମକାରୀ ।

ଖାନିଲ, ବି. ପୁଂ. (ଖନ୍-ଇଲ) ସିନ୍ଧଚୋର ।

ଖାପ, ବି. (ଦେଶଜ) ଅସ୍ତ୍ରାଧାର, ଅସିକୋଷ ।

ଖାବଖାବୁଆ, ବିଂ. (ଦେଶଜ) ବନ୍ଧୁର, ଅବୁଡ଼ା-ଖାବୁଡ଼ା ।

ଖାର, ବି. ( କ୍ଷାର ଶବ୍ଦଜ ) ଲବଣରସ; ଭସ୍ମ, ପାଉଁଶ ।

ଖାର, ପୁଂ. } ଖାରୀ, ସ୍ତ୍ରୀ. } ବି. ( ଖନ୍-ଅର, ଈ ) ଶସ୍ୟ ପରିମାଣ ପାତ୍ରବିଶେଷ ।

ଖାରଜ, (ଯାବନିକ) ପରିତ୍ୟାଗ, ଛାଡ଼ିଦେବା ।

ଖାରୁ, ବିଂ. (ଯାବନିକ) ଖାଣ୍ଟି, ଠିକ । ଯଥା—

ଖାରୁ ଶ୍ରେଣୀଧାର ଖଟ ମଣି ବୁ ଶୋଭନ୍ତରେ । ବି. ଚ.

ଖାରୁଆ, ବିଂ. (ପ୍ରା) (କ୍ଷାର-ଶବ୍ଦଜ) ଯହିଁରେ କ୍ଷାର ପଦାର୍ଥ ଅଧିକ ଥାଏ, ଲୁଣିଆ ।

ଖାରୁଆ, ବି. (କ୍ଷାର ଶବ୍ଦଜ) ଏକପ୍ରକାର ଲାଲ ରଙ୍ଗର ମୋଟ ଲୁଗା ।

ଖାଲ, ବି. (ଖଲ୍ଲ ଶବ୍ଦଜ) ଗର୍ତ୍ତ; ଖମା; ଖାଲ ଜମି, ଏଥିରେ "ଖାଲର" ଅର୍ଥ ନମ୍ନ ।

ଖାଲସା, (ଯାବନିକ) ରାଜ୍ୟସମ୍ବନ୍ଧୀୟ; ରାଜାଙ୍କର ନିଜ କର୍ତ୍ତୃତ୍ୱାଧୀନରେ ଯେ ସକଳ ଗ୍ରାମ ଥାଏ, ଯେ ସମସ୍ତିର କର କେବଳ ରାଜାଙ୍କୁ ଦିଆଯାଏ, ତାହାକୁ ଖାଲସା ମାହାଲ କହନ୍ତି ।

ଖାଲି, ବିଂ. (ଦେଶଜ) ଶୂନ୍ୟ; କେବଳ । ଯଥା—

ଜାଣିଲେ ଜମ୍ବୁ କର୍ଣ୍ଣ ନାହିଁ ଖାଲି ନଳ ଭଗାସ୍ୱେ । ଭଗା ।

ଖାଲୋଇ, ବି. ( ଦେଶଜ ) ମାଛ ଧରି ରଖିବା ପାତ୍ରବିଶେଷ ।

ଖାସ୍, (ଯାବନିକ) ବିଶେଷ; ଅସାଧାରଣ ।

ଖାସା, ବିଂ. (ଯାବନିକ) ଉତ୍ତମ, ଉପାଦେୟ ।

ଖାସି, ବି. (ଦେଶଜ) ନପୁଂସକ ।

ଖିଆଲ, ବି. ( ଯାବନିକ ) ଝୁଙ୍କ; ପରିହାସ । ଯଥା—

ଖିଆଲ ପର ରେ ଧନ ମନରେ ମଣିଲୁ ରେ ।

ଖିଙ୍କାରିଦେବା, କ୍ରି. ଚଲ ହୋଇ କହିବା ।

ଖିଡ଼କି, ବି. (ଦେଶଜ) ଜଳାକବାଟି, ଝରକା ।

ଖିଦ୍ୟମାନ, ବିଂ. (ଖିଦ୍-ଅନ) ଯେ ଖେଦ କରୁଅଛି, ଯେ ଦୁଃଖପ୍ରକାଶ କରୁଅଛି ।

ଖିଦ୍ର, ବି. ପୁଂ. (ଖିଦ୍-ର) ଦରିଦ୍ର; ରୋଗ ।

ଖିନ୍ନ, ବିଂ. (ଖିଦ୍-ତ) ଶ୍ରାନ୍ତ, କ୍ଲାନ୍ତ; ଦୁଃଖିତ; ଅଳସ ।

ଖିରି, ବି. (ଦେଶଜ) ଦୁଗ୍ଧ ଚାଉଳରେ ପ୍ରସ୍ତୁତ ଖାଦ୍ୟଦ୍ରବ୍ୟବିଶେଷ, ପାୟସ ।

ଖିଲ, ବିଂ. (ଖ-ଲ) ଅପ୍ରହତ, ଦୁର୍ଗମ; ଅକୃଷ୍ଟ (ଭୂମି); ଉତ୍ସନ୍ନ; ପରିଶିଷ୍ଟ । ବି. ପୁଂ. ବସ୍ତୁ; (ଦେଶଜ) ଅର୍ଗଳ; କୀଳ ।

ଖିଲି, } ଖିଲ୍ଲି, } ବି. (ଦେଶଜ) ପାନବିଡ଼ିଆ ।

ଖିଲ୍‌କାଢ଼, ବି. (ଦେଶଜ) ଗୁଅକାଢ଼; ପାନ ସାନ ଛୁରୀ ।

ଖିଲ୍ଲଣ, ବି. ( ଦେଶଜ ) ଇଷ୍ଟକାଦିର ଅର୍ଦ୍ଧ ଗୋଲାକାର ଗନ୍ଥନବିଶେଷ ।

ଖୁଆ, ବି. (ଦେଶଜ) ଦୁଗ୍ଧରୁ ପ୍ରସ୍ତୁତ ଖାଦ୍ୟ-ଦ୍ରବ୍ୟବିଶେଷ; ଦଧିମନ୍ଥନ ଦଣ୍ଡ; ବାହୁମୂଳ ।

ଖୁନ୍ତୁଲ, ବି. (ଯାବନିକ) କାଛୁ, କୁଣ୍ଡିଆ ।

ଖୁଣ୍ଡିଆ, ବି. (ଦେଶଜ) କଳହୁଡ଼ା ।

ଖୁଣୀ, ବିଂ.(ଯାବନିକ) ଯେ ମନୁଷ୍ୟ ମାରି ପଳାଇଅଛି, ହତ୍ୟାକାରୀ ।

ଖୁଣ୍ଟ, ବ. (ଦେଶଜ) କୀଳକ, ମେଖ, ସ୍ତମ୍ଭ ।
ଖୁଣ୍ଟା, ବ. (ଦେଶଜ) ମେଖ; କଳା; ଉଲ୍ଲୁଗୁଣା; ଅପବାଦ । ଯଥା—

ଥାଣ ଖୁଣ୍ଟା ଗୁରୁଜନ ଗଞ୍ଜଣାରୁ ମୋ ପ୍ରାଣସଙ୍ଖ୍ୟା ସରବ ।

ଖୁଣ୍ଟିଆ, ବ. କର୍ଣ୍ଣଭୂଷଣବିଶେଷ; ଉପାଧିବିଶେଷ । ଯଥା—

ପ୍ରପଦେ ଗୁରୁ ଝୁଣ୍ଟିଅ, ସେ ବର୍ଦ୍ଧ ସ୍ତମ୍ଭ ଖୁଣ୍ଟିଆ;
ବୋଲଇ ପାଡୁଡ଼ ଶରକୁ ଘାରଡ଼ ଶାପାଲକିଯ୍ୟା ପଟିଯ୍ୟା ।
ବ. ଚ.

ଖୁଣ୍ଟିବା, କ୍ରି. ବ. ଗୋଟାଇବା, ଠୋକିବା ।
ଖୁତ୍‌ଖୁତ୍, ବଂ. (ଦେଶଜ) ଶବ୍ଦବିଶେଷ ।
ଖୁଡ଼ୀ, ବ. (ପ୍ରା) ( ଖୁଲ୍ଲତାତ ଶବ୍ଦଜ ) ପିତୃବ୍ୟ ପତ୍ନୀ ।
ଖୁଡ଼ୁତା, ବ. (ପ୍ରା) (ଖୁଲ୍ଲତାତ ଶବ୍ଦଜ) ଦାଦାଙ୍କ, ପିତୃବ୍ୟ ।
ଖୁଦ, ବ. ( ଖୋଦ ଶବ୍ଦଜ ) ଚଣ୍ଡୁଳକଣା, ଗୃଣ୍ଡଳର ଖୁଦ୍ର ଅଂଶ ।
ଖୁଦୁକୁଣି, ବ. (ଦେଶଜ) କୁମାରୀମାନଙ୍କର ଭାଦ୍ର ମାସ ରବିବାରର ପ୍ରସିଦ୍ଧ ଓଷା ।
ଖୁଦପିଠା, ବ. (ଦେଶଜ) ଖୁଦ ଓ ଲମ୍ବପତ୍ର-ମିଶ୍ରିତ ଖାଦ୍ୟ ।
ଖୁଦର, ବଂ. (ଖୁଦ୍ର ଶବ୍ଦର ଅପଭ୍ରଂଶ) ଛୋଟ ।
ଖୁନ୍ଦା, ବ. (ଦେଶଜ) ମୂଠ, ମୁଷ୍ଟି ।
ଖୁର, ବ. ପୁଂ. (ଖୁର୍=ଛେଦନ କରିବା-ଅ, ର୍ ଲୋପ) କ୍ଷୌର କରିବା ନିମିତ୍ତ ଅସ୍ତ୍ରବିଶେଷ । ଅଶ୍ୱାଦିର ଗୋଡ଼ର ଖୁରା; ଖଟ ଇତ୍ୟାଦିର ଖୁରା; ନଖୀନାମକ ଗନ୍ଧଦ୍ରବ୍ୟ । ଯଥା—

ମେଘ ମହାରେ ମିଶିବ ଯେବେ,
ଖୁରର ଯାନ ନୋହିବ ତେବେ,
ତା ଚୂର୍ଣ୍ଣ ଘଟ ରହିବା ଠାବେ, ଖୁର ମାରଇ ଯେ । ଲ. ବ.

ଖୁରଣସ୍, ଖୁରଣସ, ବଂ. (ଖୁର=ନାସିକା-ନସ୍, ନସ) ଚେପଟାନାକବିଶିଷ୍ଟ ।
ଖୁରପ୍ର, ବ. ପୁଂ. (ଖୁର-ପ୍ର-ଅ) ଅର୍ଦ୍ଧଚନ୍ଦ୍ରାକୃତି ବାଣବିଶେଷ; ଅସ୍ତ୍ରବିଶେଷ; ଖୁର୍ପି ।
ଖୁରଲୀ, ବ. ସ୍ତ୍ରୀ. (ଖୁର୍-ଅଲ-ଈ) ବ୍ୟାୟାମ; ଅସ୍ତ୍ରଶିକ୍ଷା ।
ଖୁରା, ବ. (ପ୍ରା; ଖୁର ଶବ୍ଦଜ) ଅଶ୍ୱାଦିର ଗୋଡ଼ର ଖୁର, ଖଟ ଇତ୍ୟାଦିର ଖୁରା ।
ଖୁରାଣ୍ଟୀ, ବ. (ଦେଶଜ) ମୃଗବିଶେଷ ।
ଖୁରି, } ଖୁରି, } ବ. (ଦେଶଜ) ମାଟିରେ ନିର୍ମିତ ଛୋଟ ଛୋଟ କଟୋରି; ଘଣ୍ଟା । ଯଥା—

ଖୁରି ଅର୍ଦ୍ଧ ନ ଥାଏ ସ୍ନେହରେ ଦେବ ।

ଖୁରୁଣ୍ଡ, ବ. (ଦେଶଜ) ଶୁଖିଲା ନଡଆ ।
ଖୁରୁମା, ବ.(ଯାବନିକ) ଗଜା, ମିଷ୍ଟାନ୍ନବିଶେଷ ।
ଖୁର୍ପି, ବ. ( କ୍ଷୁରପ୍ର ଶବ୍ଦଜ କିମ୍ବା ଖୁରପ୍ର ଶବ୍ଦଜ; ଖୁରପ୍ର ଦେଖ ) ଘାସ ଛେଲିବା ଅସ୍ତ୍ର ।
ଖୁଲ୍ଲ, ବ. ( ଖୁଦ୍-ଲ, ଦ୍=ଲ ) ନୀଚ, ଅଧମ; କ୍ଷୁଦ୍ର, ଛୋଟ; ଅଳ୍ପ; ଲଘୁ; କନିଷ୍ଠ ।
ଖୁଲ୍ଲତାତ, ବ. ପୁଂ. ( ଖୁଲ୍ଲ-ତାତ ) ପିତୃବ୍ୟ, ଦାଦା ।
ଖୁଲ୍ଲମ, ବ. ପୁଂ. ବର୍ତ୍ମ, ପଥ ।
ଖୁସି, ବ. (ଯାବନିକ) ଇଚ୍ଛା; ଆନନ୍ଦ ।
ଖେଚର, ବଂ. (ଖେ-ଚର-ଅ) ଆକାଶଗାମୀ । ବ. ପୁଂ. ପକ୍ଷୀ; ବିଦ୍ୟାଧର; ସୂର୍ଯ୍ୟାଦି ଗ୍ରହ ।
ଖେଚରୀ, ବ. ସ୍ତ୍ରୀ. ( ଖେଚର-ଈ ) ତନ୍ତ୍ରୋକ୍ତ ମୁଦ୍ରାବିଶେଷ; ଖେଚଡ଼ୀ ।
ଖେଚଡ଼ୀ, ବ. (ଖେଚରୀ ଶବ୍ଦଜ) ଡାଲି ଓ ଚାଉଳ ମିଶ୍ରିତ ପକ୍ୱ ଅନ୍ନବିଶେଷ ।
ଖେଟ, ବ. ପୁଂ. ( ଖିଟ-ଅ ) ଭକ୍ଷକ; ଘୋଟକ; ସୂର୍ଯ୍ୟାଦି ଗ୍ରହ; କଫ; ଫଳକ; ଢାଲ; ପଲ୍ଲିଗ୍ରାମ । ନ. ତୃଣ; ମୃଗୟା । ବଂ. ନୀଚ; ଅଧମ; ଶାସ୍ତ୍ରୀ ।
ଖେଟକ, ବ. ପୁଂ. ( ଖିଟ୍-ଅ-କ ) ପଲ୍ଲିଗ୍ରାମ; ଫଳକ; ଢାଲ ।,
ଖେଟୀ, ବ. ( ଖେଟ୍-ଇନ୍ ) ଲମ୍ପଟ ବ୍ୟକ୍ତି; କାମୁକ ଲୋକ ।
ଖେଣ୍ଟା, ବ. (ଦେଶଜ) ନିର୍ଲଜ୍ଜ ସ୍ୱୈରବା, କୁଟ୍ଟଣୀ ।

ଖେଦ, ବ. ପୁଂ. ( ଖିଦ୍-ଅ ) ଆକ୍ଷେପ; ଦୁଃଖ-ପ୍ରକାଶ; ଦୁଃଖ; ଶ୍ରମ; ଅବସନ୍ନତା; ଶ୍ରାନ୍ତି, କ୍ଲାନ୍ତି । ଯଥା—

ଜଦମ୍ବ ତୋହର ଜଗ ମୋ ଉଦର ଛଡ଼ାଅ
ମନ୍ମଥ ଖେଦ । ର. କ.

ଖେଦତ, ବିଂ. (ଖେଦ-ତ) ଖେଦଯୁକ୍ତ, ଖିନ୍ନ ।

ଖେପ, ବ. (କ୍ଷେପ ଶବ୍ଦଜ) ନିକ୍ଷେପ; (ଦେଶଜ) ଥର, ଥର ।

ଖେପା, ବ. (କ୍ଷିପ୍ ଧାତୁଜ) ଲମ୍ଫ, କୁଦା ।

ଖେପାଜାଲ, ବ. (କ୍ଷିପ୍ ଧାତୁଜ) ମତ୍ସ୍ୟ ଧରିବା ଜାଲବିଶେଷ ।

ଖେୟ, ବ. ନ. (ଖନ୍-ଯ) ଖାତ, ପରିଖା,ଖାଇ । ବିଂ. ଖନନଯୋଗ୍ୟ ।

ଖେଲନ, ବ. ନ. (ଖେଲ୍-ଅନ) କ୍ରୀଡ଼ା ।

ଖେଲନା, ବ. ସ୍ତ୍ରୀ. ( ଖେଲନ-ଆ ) ଖେଳିବା ଦ୍ରବ୍ୟାଦି ।

ଖେଳା, ବ. ସ୍ତ୍ରୀ. (ଖେଳ-ଆ) କ୍ରୀଡ଼ା ।

ଖେଆରତ, (ଯାବନିକ) ଖଇରାତ, ଦାନ, ଅପଚୟ ।

ଖେସାରି, ବ. ଚଣା, ଶସ୍ୟବିଶେଷ ।

ଖୋଇ, ବ. (ଦେଶଜ) ଅଭ୍ୟାସ, ସ୍ୱଭାବ ।

ଖୋଜ, ବ. ପଶ୍ଚାଦର ପଦଚିହ୍ନ । କ୍ରି. ଅନ୍ୱେଷଣ କର ।

ଖୋଜିବା, କ୍ରି. ବ. (ହିନ୍ଦ) ଅନ୍ୱେଷଣ କରିବା, ଅନୁସନ୍ଧାନ କରିବା ।

ଖୋଡ଼, ଖୋର, ବିଂ. ( ଖୋଡ଼-ଅ ) ଖଞ୍ଜ, ଲେଙ୍ଗଡ଼ା ।

ଖୋଦ୍, ବ. (ଯାବନିକ) ଆପେ, ନିଜେ ।

ଖୋଦିତ, ବିଂ. ( କ୍ଷୋଦିତ ଶବ୍ଦଜ ) ଅଙ୍କିତ, ଯହିଁରେ ଅକ୍ଷର ଇତ୍ୟାଦି ଅଙ୍କନ କରା ହୋଇ-ଅଛି ।

ଖୋପ, ବ. ( କ୍ଷୁପ୍ ଶବ୍ଦଜ ) ପାରାଘର; କ୍ଷୁଦ୍ର କୋଠରି ।

ଖୋପା, ବ. ବଦ୍ଧକେଶ, ଜୁଡ଼ା ।

ଖୋରାକ, ବ. (ଯାବନିକ) ଆହାର ।

ଖୋଲ, ବ. ( ଖୋଲକ ଶବ୍ଦଜ ) ଏକ ପ୍ରକାର ବାଦ୍ୟଯନ୍ତ୍ର; ମୃଦଙ୍ଗ; ପଦାର୍ଥର ଉପରର ଆବରଣ ।

ଖୋଲ, ବ. (ଖଲ୍ଲ ଶବ୍ଦଜ) ଗୁହା, ଗର୍ତ୍ତ । ଯଥା—

କପିଳାସ ଖୋଲନିବାସୀ ଶବର,
ଉଦରକ ଚେଙ୍କା ଯା ବିଶେଷର । ନ. ଚେ.

ଖୋଲକ, ବ. ପୁଂ. ( ଖୁ-ଲ-କ ) ଟୋପର, ମୃଦଙ୍ଗ ।

ଖୋଲପା, ବ. (ଖୋଲକ ଶବ୍ଦଜ) ଚୋପା;ପଟଳ; ପାହ; ହାଣ୍ଡି; ଗୁଆ ପ୍ରଭୃତି ଖୋଷା; ବଲ୍କଳ ।

ଖୋଲା, ବିଂ. ( ଦେଶଜ ) ମେଲା, ଅନାବୃତ; ସହଜ ।

ଖୋଳିବା, କ୍ରି. ବ. ( ଖନ ଧାତୁଜ ) ଖନନ କରିବା ।

ଖୋଷା, ବ. ( ଦେଶଜ ) ବଦ୍ଧକେଶ; ଜୁଡ଼ା । ଯଥା—

ଝିଙ୍କ ଫଳ ପ୍ରାପ୍ ଖୋଷା, ଖୋସିଛି ଯୋଷା । ଲ. ବ.

ଖୋସଣୀ, ବ. ( ଦେଶଜ ) କଟିସ୍ଥ ବସ୍ତ୍ରବନ୍ଧନୀ-ବିଶେଷ ।

ଖୋସା, ବ. ( ଦେଶଜ ) ତ୍ୱକ୍, ଛାଲ; ପଣସ ପ୍ରଭୃତି ଫଳର ପୃଷ୍ଠ ।

ଖୋସିବା, କ୍ରି. ବ. (ଦେଶଜ) ଗୁଞ୍ଜିବା । ଯଥା—

କଳାକୁଟିଳ କୁନ୍ତଳେ ଖୋଷା ଖୋସି । ଚ. ଚ.

ଖ୍ୟାତ, ବିଂ. ( ଖ୍ୟା-ତ ) ପ୍ରସିଦ୍ଧ, ଖ୍ୟାତିଯୁକ୍ତ; କଥିତ ।

ଖ୍ୟାତି, ବ. ସ୍ତ୍ରୀ. ( ଖ୍ୟା-ତି ) ଯଶଃ; ନାମ; ଜ୍ଞାନ; କଥନ ।

ଖ୍ୟାପକ, ବିଂ. (ଖ୍ୟାପି-ଅକ) କୀର୍ତ୍ତକ, ଘୋଷକ; ପ୍ରଚାରକ ।

ଖ୍ୟାପନ, ବ. ନ. (ଖ୍ୟାପି-ଅନ) କୀର୍ତ୍ତନ କରିବା; ଘୋଷଣା, ପ୍ରଚାର; କଥନ ।

——:o:——

# ଗ

ଗ, ବ୍ୟଞ୍ଜନ ବର୍ଣ୍ଣର ତୃତୀୟ ବର୍ଣ୍ଣ । ଏହାର ଉଚ୍ଚାରଣ ସ୍ଥାନ ଜିହ୍ୱାମୂଳ । ବି. ପୁଂ. (ଗମ୍ କିମ୍ବା ଗୈ-ଅ) ଗଣେଶ; ଗନ୍ଧର୍ବ; ଗଗନ; ଗୀତ; ସୁମେରୁ; ସ୍ୱର୍ଗ; ଗୁରୁ; ସ୍ୱରବର୍ଣ୍ଣ । ବିଂ. ଗାୟକ; ଗାମୀ, ଯେ ଗମନ କରେ ।

ଗିଁ, ବି. (ଦେଶଜ) କଣ୍ଠସୂଚକ ଶବ୍ଦବିଶେଷ ।

ଗଇଣ୍ଡା, ବି. (ଦେଶଜ) ଗୁଡ଼ଲ ଅଟାରେ ପ୍ରସ୍ତୁତ ପିଷ୍ଟକବିଶେଷ ।

ଗଇଣ୍ଠାଳ, ବି. (ଗ୍ରନ୍ଥି ଶବ୍ଦଜ) ବିବାହ ସମୟରେ ବରକନ୍ୟାଙ୍କ ଯେଉଁ ଲୁଗାରେ ଗଣ୍ଠି ପକା-ଯାଏ ।

ଗଇନ୍ତି, ବି. ( ଦେଶଜ ) ମାଟି ଖୋଳିବାର ଲୌହନିର୍ମିତ ଯନ୍ତ୍ରବିଶେଷ ।

ଗଇଶ, ବି. ( ଗିରୀଶ ଶବ୍ଦଜ ) ଗୁଳ୍ମବିଶେଷ ।

ଗଉଡ଼, ବି. ( ଗୋପାଳ ଶବ୍ଦଜ ) ଗୋପାଳ, ଜାତିବିଶେଷ । ଯଥା—

> କେତେଣ ବେଢ଼ିଗ ପତ୍ରୁଡ଼ ଗୋଧନ ଘେନି ଗଉଡ଼,
> ବଜାଇ ବଜାଇ ବଂଶୀ ସୁଲଳିତ ସ୍ୱନେ,
> ଗୋଷ୍ଠକୁ ଗମଇ ଧୀରେ ଅନନ୍ଦିତ ମନେ । ବ. ବ.

ଗଉଡ଼ୁଣୀ, ବି. ସ୍ତ୍ରୀ. ( ଗୋପାଳୁଣୀ ଶବ୍ଦଜ ) ଗୋପାଳୁଣୀ, ଗୌଡ଼ୁଣୀ, ଗୋପୀ ।

ଗଉଣୀ, ବି. (ଦେଶଜ) ଧାନ୍ୟାଦି ମାପ କରିବାର ପରିମାଣ ପାତ୍ରବିଶେଷ ।

ଗଗନ, ବି. ନ. (ଗମ୍-ଅନ) ଆକାଶ । ଯଥା—

> ଧାଉଁନ୍ତି ଗଗନକୁ ବଢ଼ି ମନ୍ଦ ବଳ,
> ମନୋଜ୍ଞ ପଲ୍ଲବ ଫୁଲେ ଶୋଭେ ବନସ୍ଥଳୀ । ବ. ବ.

ଗଗନଧ୍ୱଜ, ବି. ପୁଂ. ( ଗଗନ-ଧ୍ୱଜା ) ମେଘ; ସୂର୍ଯ୍ୟ ।

ଗଗନଚର, ବିଂ. (ଗଗନ-ଚର) ଆକାଶଗାମୀ ।

ଗଗନେଚର, ବି. ପୁଂ. ( ଗଗନେ-ଚର ) ଗ୍ରହ, ନକ୍ଷତ୍ର, ସୂର୍ଯ୍ୟାଦି ଗ୍ରହ; ପକ୍ଷୀ ପ୍ରଭୃତି ।

ଗଗନୋଲ୍ମୁକ, ବି.ପୁଂ. (ଗଗନ-ଉଲ୍ମୁକ) ମଙ୍ଗଳ-ଗ୍ରହ ।

ଗଙ୍ଗଶିଉଳୀ, ବି. ପୁଂ. (ଦେଶଜ) ହିବାରହାର ଲ, ଶେଫାଳିକା । ଯଥା—

> ଚପଳ କରଣ ଲଭିଲେ ଯେସନ
> ହୋଇଯାଏ ଗଙ୍ଗଶିଉଳୀ । ମଥୁରାମଙ୍ଗଳ ।

ଗଙ୍ଗା, ବି. ସ୍ତ୍ରୀ. (ଗାଂ=ପୃଥିବୀକୁ-ଗ=ଯେ ଗମନ କରେ କିମ୍ବା ଗମ୍-ଗ; ଯେ ପ୍ରଜାମାନଙ୍କୁ ପବିତ୍ର କରିବା ନିମିତ୍ତ ବ୍ରହ୍ମଲୋକରୁ ପୃଥିବୀକୁ ଗମନ କରିଅଛନ୍ତି) ଗଙ୍ଗାନଦୀ, ଗଙ୍ଗାଦେବୀ, ସୁର-ନିମ୍ନଗା; ଦୁର୍ଗା ।

ଗଙ୍ଗାଜ, ବି. ପୁଂ. (ଗଙ୍ଗା-ଜ) ଭୀଷ୍ମ; କାର୍ତ୍ତିକେୟ ।

ଗଙ୍ଗାଟେୟ, ବି.ପୁଂ. (ଗଙ୍ଗାଟ-ଏୟ) ଚିଙ୍ଗୁଡ଼ିମାଛ ।

ଗଙ୍ଗାଧର, ବି. ପୁଂ. (ଗଙ୍ଗା-ଧର) ଶିବ; ସମୁଦ୍ର ।

ଗଙ୍ଗାପୁତ୍ର, ବି. ପୁଂ. ( ଗଙ୍ଗା-ପୁତ୍ର ) ଭୀଷ୍ମ; ଜାତି-ବିଶେଷ ।

ଗଙ୍ଗାପ୍ରାପ୍ତି, ବି. ସ୍ତ୍ରୀ. ଗଙ୍ଗା ଗର୍ଭରେ ଜ୍ଞାନପୂର୍ବକ ପ୍ରାଣତ୍ୟାଗ କରିବା ।

ଗଙ୍ଗାଯାତ୍ରା, ବି. ସ୍ତ୍ରୀ. ଗଙ୍ଗା ଉଦ୍ଦେଶ୍ୟରେ ଯାତ୍ରା; ମୁମୂର୍ଷୁ ବ୍ୟକ୍ତିର ପ୍ରାଣତ୍ୟାଗାର୍ଥ ଗଙ୍ଗାତୀରକୁ ଗମନ ।

ଗଙ୍ଗାସାଗର, ବି. ନ. ( ଗଙ୍ଗା-ସାଗର ) ଯେଉଁ-ଠାରେ ଗଙ୍ଗା ସାଗର ସହିତ ମିଳିତ ହୋଇ-ଅଛି, ସାଗରସଙ୍ଗମ ତୀର୍ଥବିଶେଷ ।

ଗଙ୍ଗାସୁତ, ବି. ପୁଂ. ( ଗଙ୍ଗା-ସୁତ ) ଭୀଷ୍ମ; କାର୍ତ୍ତିକେୟ ।

ଗଛ, ବି. (ଗଚ୍ଛ ଶବ୍ଦଜ) } ବୃକ୍ଷ ।
ଗଚ୍ଛ, ବି. ପୁଂ. (ଗମ୍-ଅ, ଗମ୍=ଗଚ୍ଛ) } ବୃକ୍ଷ ।

ଗଚ୍ଛିତ, ବିଂ. ( ଗୁଚ୍ଛ ଶବ୍ଦଜ ) ନିକ୍ଷିପ୍ତ; ନ୍ୟସ୍ତ, ରକ୍ଷିତ ।

ଗଜ, ବି. ପୁଂ. ( ଗଜ୍-ଅ ) ହସ୍ତୀ; ଦୁଇ ହସ୍ତ ପରିମାଣ; ବାସ୍ତୁବିଶେଷ; ଗଜପୃଷ୍ଠ ।

ଗଜକୁମ୍ଭ, ବି. ପୁଂ. (ଗଜ-କୁମ୍ଭ) ହସ୍ତିର ମସ୍ତକସ୍ଥ କୁମ୍ଭ ।

ଗଜକୂର୍ମାଶୀ, ବ, ପୁଂ, ( ଗଜ-କୂର୍ମ-ଅଶିନ୍ ) ଗରୁଡ଼ ।

ଗଜଗଜ, ବିଂ, (ଦେଶଜ) ତରଳପଦାର୍ଥର ଏକ-ପ୍ରକାର ପତନ ଶବ୍ଦ ।

ଗଜଗତି, ବ, ସ୍ତ୍ରୀ, (ଗଜ-ଗତି) ଛନ୍ଦୋବିଶେଷ; ହସ୍ତିର ଗତି ।

ଗଜଚ୍ଛାୟା, ବ, ସ୍ତ୍ରୀ, ( ଗଜ-ଛାୟା ) ତିଥି ନକ୍ଷତ୍ରାଦିର ଯୋଗବିଶେଷ ।

ଗଜଢକ୍କା, ବ. ସ୍ତ୍ରୀ. ( ଗଜ-ଢକ୍କା ) ହସ୍ତିର ଉପରସ୍ଥ ବଡ଼ ଢୋଲ ।

ଗଜତା, ବ. ସ୍ତ୍ରୀ. (ଗଜ-ତା) ଗଜସମୂହ ।

ଗଜଦଘ୍ନ, } ବିଂ. (ଗଜ-ଦଘ୍ନ, ଦ୍ୱୟସ) ହସ୍ତି-
ଗଜଦ୍ୱୟସ, } ପରିମାଣ ।

ଗଜଦନ୍ତ, ବ. ପୁଂ. (ଗଜ-ଦନ୍ତ) ଗଣେଶ; ନାଗ-ଦନ୍ତ, ଗୃହ ଖମ୍ଭସ୍ଥିତ ସଂଲଗ୍ନ କାଷ୍ଠଖଣ୍ଡ-ବିଶେଷ; ହସ୍ତିଦନ୍ତ, ହାତୀଦାନ୍ତ ।

ଗଜପତି, ବ, ପୁଂ. (ଗଜ-ପତି) ଗଜରାଜ, ଶ୍ରେଷ୍ଠ ଗଜ; ଉତ୍କଳୀୟ ରାଜବଂଶବିଶେଷ ।

ଗଜପୁଟ, ବ, ପୁଂ, ଔଷଧପାକାର୍ଥ ହସ୍ତପରିମିତ ଗର୍ତ୍ତ ।

ଗଜବନ୍ଧ, ବ, ନ. (ଗଜ-ବନ୍ଧ) ଗୃହ ନିର୍ମାଣର ନିୟମବିଶେଷ ।

ଗଜବନ୍ଧନୀ, ବ. ସ୍ତ୍ରୀ. (ଗଜ-ବନ୍ଧନ-ଈ) ହସ୍ତି-ବନ୍ଧନ ସ୍ଥାନ ।

ଗଜସ୍ନାଚଳ, ବ. ପୁଂ. (ଗଜ-ମା-ଚଳ) ସିଂହ ।

ଗଜମୁକ୍ତା, ବ, ସ୍ତ୍ରୀ. (ଗଜ-ମୁକ୍ତା) ହସ୍ତିକୁମ୍ଭଜାତ ମୁକ୍ତା ।

ଗଜମୋଟନ, } ବ. ପୁଂ. ( ଗଜ-ମୋଟି-ଅନ,
ଗଜମୋଚନ, } ଗଜ-ମୁଚ୍-ଅନ) ସିଂହ ।

ଗଜରାଜ, ବ. ପୁଂ. (ଗଜ-ରାଜନ୍) ଶ୍ରେଷ୍ଠହସ୍ତୀ, ଗଜେନ୍ଦ୍ର ।

ଗଜରିପୁ, ବ. ପୁଂ. (ଗଜ-ରିପୁ) ସିଂହ ।

ଗଜା, ବ. (ଦେଶଜ) ମିଷ୍ଟାନ୍ନବିଶେଷ; ଅଙ୍କୁର । ବିଂ. ତରୁଣ, ଯଥା—ଗଜା ବୟସ ।

ଗଜାଗ୍ରଣୀ, ବ, ପୁଂ. ( ଗଜ-ଅଗ୍ରଣୀ ) ଐରାବତ ହସ୍ତୀ ।

ଗଜାଜୀବ, ବ, ପୁଂ, ( ଗଜ-ଆଜୀବ ) ମାହୁନ୍ତ, ହସ୍ତିପକ ।

ଗଜାନନ, ଗଜବଦନ, ଗଜାସ୍ୟ, ବ. ପୁଂ, (ଗଜ-ଆନନ, ବଦନ, ଆସ୍ୟ) ଗଣେଶ ।

ଗଜାରି, ବ, ପୁଂ, (ଗଜ-ଅରି) ସିଂହ; ବୃକ୍ଷବିଶେଷ ।

ଗଜାରୋହ, ବ, ପୁଂ. (ଗଜ-ଆରୋହ) ନିଷାଦୀ, ହସ୍ତିପୃଷ୍ଠରେ ଉପବିଷ୍ଟ ।

ଗଜାଶନ, ବ, ପୁଂ, (ଗଜ-ଅଶନ) ଅଶ୍ୱତ୍ଥବୃକ୍ଷ ।

ଗଜାଶନା, ବ, ସ୍ତ୍ରୀ, (ଗଜ-ଅଶନ-ଆ) ପଦ୍ମମୂଳ ।

ଗଜାହ୍ୱୟ, ଗଜସାହ୍ୱୟ, ଗଜାହ୍ୱ, ବ. ନ. (ଗଜ-ଆହ୍ୱୟ, ସାହ୍ୱୟ, ଆହ୍ୱା ) ହସ୍ତିନା ନଗର, ଦିଲ୍ଲୀ ।

ଗଜୁରିବା, ବ. (ଦେଶଜ) ଅଙ୍କୁରିତ ହେବା ।

ଗଜେନ୍ଦ୍ର, ବ. ପୁଂ. ( ଗଜ-ଇନ୍ଦ୍ର ) ଗଜପତି, ଗଜରାଜ ।

ଗଜେଷ୍ଟା, ବ. ସ୍ତ୍ରୀ. ( ଗଜ-ଇଷ୍ଟା ) ଭୂମିକୁଷ୍ମାଣ୍ଡ, ଭୁଇଁକଖାରୁ ।

ଗଞ୍ଜ, ବ. ପୁଂ. ( ଗନ୍ଜ୍-ଅ ) ଅବଜ୍ଞା; ଗଞ୍ଜନା; ଅବମାନନା । ନ. ଗୋ ଗୃହ; ଭଣ୍ଡାର ଘର; ଧନାଗାର; ରତ୍ନାଦିର ଖଣି; (ଗନ୍ଜ୍ ଧାତୁଜ) ଶସ୍ୟାଦିର ବିକ୍ରୟ ସ୍ଥାନ ।

ଗଞ୍ଜଣା, ବ, (ପ୍ରା) (ଗଞ୍ଜନାଶବ୍ଦଜ) ଲାଞ୍ଛନା, ଯାତନା, ଭର୍ତ୍ସନା । ଯଥା—

ଶାଣଗୁଣ୍ଡା ଗୁରୁଜନ ଗଞ୍ଜଣାରୁ ମୋ ପ୍ରାଣସଖୀ ସରବ ।
ବ. ଚ.

ଗଞ୍ଜନ, ବିଂ, (ଗଞ୍ଜ-ଅନ) ତୁଚ୍ଛକାରକ, ତିର-ସ୍କାରକ ।

ଗଞ୍ଜନା, ବ. ସ୍ତ୍ରୀ. ( ଗଞ୍ଜ-ଅନ-ଆ ) ଲାଞ୍ଛନା, ଯାତନା, ଭର୍ତ୍ସନା ।

ଗଞ୍ଜା, ବ. ସ୍ତ୍ରୀ. (ଗଞ୍ଜ-ଆ) ମଦିରାଗୃହ; ମଦ୍ୟପାତ୍ର; ଖଣି; ବିକ୍ରୟସ୍ଥାନ; ଅଣ୍ଡିରା କୁକ୍କୁଡ଼ା ।

ଗଞ୍ଜାଇ, ବ. ପୁଂ. ଗୁଳ୍ମବିଶେଷ, ମାଦକଦ୍ରବ୍ୟବିଶେଷ । ଯଥା—

ଗଞ୍ଜାଇର ଡାଳ ଧରି ଝାଙ୍କେ ପୂର୍ଣ ଭଙ୍ଗାଇଲା ମନ ଝଣ ।

ଗଞ୍ଜିକା, ବ. ସ୍ତ୍ରୀ. (ଗଞ୍ଜ-କ-ଅ) ମଦବିକ୍ରୟଗୃହ । ବଂ. କଷ୍ଟଦାୟିକା । ଯଥା—

. ବ୍ୟକ୍ତେପ୍ରେବର ଗବଗଞ୍ଜିକା ।

ଗଠନ, ବ. ନ. (ଗଠ୍-ଅନ) ନିର୍ମାଣ ; ରଚନା; ଗଢ଼ା ।

ଗଠିତ, ବଂ. (ଗଠ୍-ତ) ନିର୍ମିତ, ରଚିତ ।

ଗଡ଼, ବ. ପୁଂ. (ଗଡ୍-ଅ) ବାଧା, ଅଟକ; ପରଦା; ଦୁର୍ଗର ଖାଇ, ପରିଖା; ମତ୍ସ୍ୟବିଶେଷ, ଗଡ଼େଇ ମାଛ ।

ଗଡ଼କ, ବ. ପୁଂ. (ଗଡ୍-ଅକ) ଗଡ଼େଇ ମାଛ ।

ଗଡ଼ଜାତ, ବଂ. ବନ୍ୟଜାତ, ଜଙ୍ଗଲଜାତ । ବ. ଜଙ୍ଗଲ, ବନ ।

ଗଡ଼ନ୍ତି, } ବଂ. ( ଗଡ୍ ଧାତୁଜ ) ନିମ୍ନଗାମୀ
ଗଡ଼ନ୍ତିଆ, } ସ୍ଥାନ ।

ଗଡ଼ବଡ଼, (ଯାବନିକ) ଗୋଳମାଳ ।

ଗଡ଼ାଗଡ଼, ( ଦେଶଜ ) ଭୂମିରେ ଓଲଟପାଲଟ ହେବା ।

ଗଡ଼ି, ବ. ପୁଂ. (ଗଡ୍-ଇ) ବଳଦର, ବାଛୁରି; ଅଳସ ପଶୁ, ଗୋରୁପ୍ରଭୃତି; ( ପ୍ରା ) ଶଗଡ଼ ।

ଗଡ଼ିଆ, ବ. ( ଦେଶଜ ) କ୍ଷୁଦ୍ର ପୁଷ୍କରିଣୀ, ଛୋଟ ପୋଖରି ।

ଗଡ଼ିବା, କ୍ରି. ବ. ( ପ୍ରା ) ଲୋଟିବା; ନିମ୍ନଗାମୀ ହେବା ।

ଗଡ଼ିସା, ବ. ( ଗଡ଼କଶବ୍ଦଜ ) ମତ୍ସ୍ୟବିଶେଷ, ଗଡ଼େଇ ମାଛ ।

ଗଡ଼ୁ, ବ. ପୁଂ. (ଗଡ୍-ଉ) ଗ୍ରନ୍ଥି; ଶଲ୍ୟାସ୍ତ୍ର; କଣ୍ଠ; କୁଜ; ଅବୁ; ଗଳଗଣ୍ଡପ୍ରଭୃତି; (ଗଡ଼ୁକଶବ୍ଦଜ) ଜଳପାତ୍ରବିଶେଷ ।

ଗଡ଼ୁର, ଗଡ଼ୁଳ, ବଂ. ( ଗଡ୍-ଉର, ଲ ) କୁବ୍ଜ, କୁଜ ।

ଗଡ଼େର, ବ. ପୁଂ. (ଗଡ୍-ଏର) ମେଘ, ମେଢ଼ା ।

ଗଡ଼ୋଳ, ବ. ପୁଂ. (ଗଡ୍-ଓଳ) ଗ୍ରାସ; ଗୁଡ଼ ।

ଗଡ୍ଡର, ଗଡ୍ଡଳ, ବ. ପୁଂ. (ଗଡ୍-ଡର, ଡଲ) ମେଷ, ଗାଡ଼ର ।

ଗଡ୍ଡରିକା, } ବ. ସ୍ତ୍ରୀ. ( ଗଡ୍ଡର-ଇକ-ଅ )
ଗଡ୍ଡଲିକା, } ମେଷପଲର ଅଗ୍ରଗାମିନୀ ମେଷୀ, ଯେଉଁ ମେଢ଼ୀର ପଶ୍ଚାତ୍ ପଶ୍ଚାତ୍ ମେଢ଼ାର ପଲ ଗମନ କରନ୍ତି; ପ୍ରସ୍ରବଣ ।

ଗଡ୍ଡରିକାପ୍ରବାହ, } ବ. ପୁଂ. ଗଡ୍ଡଲିକା ଯେଉଁ
ଗଡ୍ଡଲିକାପ୍ରବାହ, } ଦିଗକୁ ଯାଏ ସେହି ଦିଗକୁ ଯିବା ଅର୍ଥାତ୍ କୌଣସି ବିବେଚନା ନ କରି ସମସ୍ତଙ୍କ ଦେଖାଦେଖି ପ୍ରଚଳିତ ମତର ଅନୁବର୍ତ୍ତୀ ହେବା ।

ଗଡ୍ଡୁକ, ଗଡ୍ଡୂକ, ବ. ପୁଂ. (ଗଡ୍-ଡୁକ, ଡୂକ) ଗଡ଼ୁ ।

ଗଢ଼ିବା, କ୍ରି. (ଗଠନଶବ୍ଦଜ) ଗଠନକରିବା, ନିର୍ମାଣ କରିବା, ସୃଜନା କରିବା, ରଚନା କରିବା । ଯଥା—

ବୋଇଲ ସେ ନନ୍ଦ ଦେହ ପାଷାଣେ ଗଢ଼ିଛ ।

ଗଣ, ବ. ପୁଂ. (ଗଣ୍-ଅ) ସମୂହ; ଦଳ; ହସ୍ତୀ ୨୭, ଅଶ୍ୱ ୮୧, ପଦାତି ୧୩୫ ଓ ରଥ ୨୭ ଏତେସଂଖ୍ୟକ ସୈନ୍ୟ । ସ୍ୱଜାତୀୟ; ସ୍ୱପକ୍ଷ; ପ୍ରମଥଗଣ, ଶିବଙ୍କର ଅନୁଚରଗଣ, ଶିବଙ୍କର ଭୂତଗଣ; ଗଣନା, ସଂଖ୍ୟା; ଧାତୁସମୂହ, ଭ୍ୱାଦି ପ୍ରଭୃତି । କ୍ରି. ସଂଖ୍ୟାକରି; ତୁଳନା କରି ।

ଗଣକ, ବ. ପୁଂ. ( ଗଣ-ଅକ ) ଜ୍ୟୋତିର୍ବିଦ୍, ଦୈବଜ୍ଞ, ନାୟକ । ବଂ. ଯେ ଗଣନା କରେ । ଯଥା—

ଗୁଣିଗଣ ଗଣନେ ଗଣକ ବାରେ,
ଗଣେଶହିଁ ସହ ନ ପଢ଼ବେ ବାରେ । ବ. ଚ.

ଗଣକାର, ବ. ପୁଂ. ( ଗଣ-କାର ) ଭୀମସେନ; ବାର ତିଥି ଏବଂ ଗ୍ରହ ନକ୍ଷତ୍ରାଦିର ସଞ୍ଚାର ଅନୁସାରେ ଯେ ଶୁଭାଶୁଭ ନିରୂପଣ କରେ, ଗଣକ ।

ଗଣଗଣ, (ଦେଶଜ) ଶବ୍ଦବିଶେଷ ।
ଗଣଚକ୍ରକ, ବି. ନ. (ଗଣ-ଚକ୍ର-କ) ସାଧୁଲୋକମାନଙ୍କର ଏକତ୍ର ବସି ଭୋଜନ ।
ଗଣତା, ବି. ସ୍ତ୍ରୀ. (ଗଣ-ତା) ସମୂହତ୍ୱ ।
ଗଣଦୀକ୍ଷୀ, ବି. ପୁଂ. (ଗଣ-ଦୀକ୍ଷା-ଇନ୍) ଯେ ବ୍ୟକ୍ତି ନାନା ଜାତିର ଯାଜ୍ୟକ୍ରିୟା କରେ; ଗଣେଶ ମନ୍ତ୍ରରେ ଦୀକ୍ଷିତ ।
ଗଣଦେବତା, ବି. ସ୍ତ୍ରୀ. ଅଦିତ୍ୟ ୧୨, ବିଶ୍ୱ ୧୦, ବସୁ ୮, ତୁଷିତ ୩୬, ଅଭାସ୍ୱର ୬୪, ବାତ ୪୯, ମହାରାଜିକ, ୨୨୦, ସାଧ୍ୟ ୧୨, ରୁଦ୍ର ୧୧ ଏହି ସବୁ ଦେବତାଗଣ ।
ଗଣଦ୍ରବ୍ୟ, ବି. ନ. ଯେଉଁ ବସ୍ତୁରେ ସାଧାରଣର ଅଧିକାର ଅଛି; ଦ୍ରବ୍ୟସମୂହ ।
ଗଣନ, ନ. } ଗଣନା, ସ୍ତ୍ରୀ. } ବି. (ଗଣ-ଅନ, ଆ) ସଂଖ୍ୟା କରିବା, ଗଣିବା, ଗ୍ରାହ୍ୟ କରିବା; ଅବଧାରଣ; ବାର ତିଥି ଓ ଗ୍ରହ ନକ୍ଷତ୍ରାଦିର ସ୍ଥିତି ଓ ସଞ୍ଚାର ଅନୁସାରେ ଶୁଭାଶୁଭ ନିରୂପଣ; ଉଲ୍ଲେଖ, ନିର୍ଦ୍ଦେଶ ।
ଗଣନାଥ, ଗଣପତି, ବି. ପୁଂ. (ଗଣ-ନାଥ, ପତି) ଗଣେଶ ।
ଗଣନାୟିକା, ବି. ସ୍ତ୍ରୀ. ଦୁର୍ଗା ।
ଗଣନୀୟ, ଗଣେୟ, ବିଂ. ( ଗଣ-ଅନୀୟ, ଯ ) ସଂଖ୍ୟେୟ, ଗଣନାର ଯୋଗ୍ୟ; ଗ୍ରାହ୍ୟ ।
ଗଣପର୍ବତ, ଗଣାଚଳ, ବି. ପୁଂ. (ଗଣ-ପର୍ବତ, ଅଚଳ) କୈଳାସ ପର୍ବତ ।
ଗଣପୀଠକ, ବି. ନ. (ଗଣ-ପୀଠକ) ବକ୍ଷଃସ୍ଥଳ ।
ଗଣରାତ୍ର, ବି. ନ. ରାତ୍ରିସମୂହ ।
ଗଣରୂପ, ବି. ପୁଂ. (ଗଣ-ରୂପ) ଅର୍କଗଛ ।
ଗଣଶଃ, ଅଂ. (ଗଣ-ଶସ୍) ବହୁଶଃ, ଦଳଦଳ ।
ଗଣାକ୍ରାନ୍ତ, ବିଂ. ( ଗଣ-ଅକ୍ରାନ୍ତ ) କୌଣସି ଦଳରେ ଅବା ପକ୍ଷରେ ସ୍ଥିତ, ଦଳାକ୍ରାନ୍ତ ।
ଗଣାଗ୍ରଣୀ, ବି. ପୁଂ. (ଗଣ-ଅଗ୍ରଣୀ) ଗଣେଶ; ଶିବ ।
ଗଣାଧିପ, ବି. ପୁଂ. (ଗଣ-ଅଧିପ) ଗଣେଶ ।
ଗଣାନ୍ନ, ବି. ନ. ( ଗଣ-ଅନ୍ନ ) ବହୁବିଧ ଲୋକମାନଙ୍କ ନିମିତ୍ତ ଏକତ୍ରରେ ଯେଉଁ ଅନ୍ନ ପ୍ରସ୍ତୁତ ହୁଏ ।
ଗଣିକା, ବି. ସ୍ତ୍ରୀ. (ଗଣ-ଇକ-ଆ) ବେଶ୍ୟା; ଯୂଥୀଫୁଲ । ଯଥା—

> ଦେଖି ସୁମନା ଗଣିକା ନିକର,
> ତରବାଣ ହାସେ ମନୋହର । ସ. ବ.

ଗଣିକାରିକା, ବି. ସ୍ତ୍ରୀ. ଶ୍ରୀପର୍ଣ୍ଣବୃକ୍ଷ ।
ଗଣିତ, ବିଂ. (ଗଣ-ତ) ସଂଖ୍ୟାତ, ଯାହା ଗଣା ହୋଇଅଛି । ବି. ନ. (Mathematics) ପରିମାଣ ଓ ଅଙ୍କବିଷୟକ ଶାସ୍ତ୍ର; ଗଣନ ।
ଗଣିତଜ୍ଞ, ବି. ପୁଂ. (ଗଣିତ-ଜ୍ଞ) ଗଣିତ ଶାସ୍ତ୍ରବେତ୍ତା ।
ଗଣିବା, କ୍ରି. (ଗଣନ ଶବ୍ଦଜ) ସଂଖ୍ୟା କରିବା, ଗଣନା କରିବା; ତୁଳନା କରିବା ।
ଗଣୀଭୂତ, ବିଂ. (ଗଣ-ଭୂତ) କୌଣସି ଦଳରେ ଅବା ପକ୍ଷରେ ସ୍ଥିତ, ଗଣାକ୍ରାନ୍ତ ।
ଗଣେରୁ, ବି. ସ୍ତ୍ରୀ. (ଗଣ-ଇରୁ-ଉ) ବେଶ୍ୟା; ହସ୍ତିନୀ ।
ଗଣେରୁକା, ବି. ସ୍ତ୍ରୀ. (ଗଣେରୁ-କ-ଆ) ଦୂତୀ, କୁଟ୍ଟନୀ ।
ଗଣେଶ, ବି. ପୁଂ. (ଗଣ-ଈଶ) ପ୍ରସିଦ୍ଧ ଦେବତା, ଶିବପୁତ୍ର, ଗଜାନନ ।
ଗଣେଶକୁସୁମ, ବି. ପୁଂ. ରକ୍ତକରବୀର ଗଛ ।
ଗଣେଶଭୂଷଣ, ବି. ନ. (ଗଣେଶ-ଭୂଷଣ) ସିନ୍ଦୂର ।
ଗଣୋତ୍ସାହ, ବି. ପୁଂ. (ଗଣ-ଉତ୍ସାହ) ଗଣ୍ଡାର ।
ଗଣ୍ଠି, ବି. (ଗ୍ରନ୍ଥି ଶବ୍ଦଜ) ବାଉଁଶାଦିର ପର୍ବ; ଶରୀର ସନ୍ଧି; ବନ୍ଧ; ରୋଗବିଶେଷ; ବାତ ରୋଗବିଶେଷ; ବକ୍ରତା ।
ଗଣ୍ଠିଆ, ବିଂ. (ଦେଶଜ) କୃପଣ, କାମ୍ପି; ଗଣ୍ଠିଯୁକ୍ତ; କୁଟିଳ । ଯଥା—

> ଭଙ୍ଗ ବିଷୟରେ କୃପ ଗଣ୍ଠିଆ ।

ବି. କର୍ଣ୍ଣାଳଙ୍କାରବିଶେଷ ।

ଗଣ୍ଠିଅଳ, ବ. (ଦେଶଜ) ଗଇଁଠାଳ, ବର କନ୍ୟାଙ୍କର ପେଣ୍ଡି ଲୁଗାରେ ଗଣ୍ଠି ପକାଯାଏ । ଯଥା—

ତାହାରଲେ ଗଣ୍ଠିଅଳ ଅଳଂକୃତ ହୋଇ,
ବସ୍ତ୍ରେକରୁ ଉଣାଭମେ କ ସେଶାଢ଼ୀ ପାଇ ଯେ । ବୈ. ବ.

ଗଣ୍ଠିଅବାତ, ବ. (ଦେଶଜ) ଆମବାତ, ରୋଗ-ବିଶେଷ ।

ଗଣ୍ଠିଧନ, ବ. (ଦେଶଜ) ଅତ୍ୟନ୍ତ ଆଦରର ଧନ । ଯଥା—

ଗଣ୍ଠିଧନ ମୋର ସ୍ନେହ ।

ଗଣ୍ଡ, ବ. ପୁଂ. (ଗନଡ୍-ଅ) କପୋଳ, ଗାଲ; ଗଜକୁମ୍ଭ, ହସ୍ତି-କପୋଳ; ଗଣ୍ଡାର; ଗର; ଚିହ୍ନ; ଅଣ୍ଡକୁଷଣ; ବୁଦ୍‌ବୁଦ୍; ଗଣ୍ଠି; ଯୋଗ-ବିଶେଷ; ଗଣ୍ଡିର; ବୀଥିନାମକ ନାଟ୍ୟର ଅଙ୍ଗବିଶେଷ ।
ବିଂ. ପ୍ରଧାନ; (ଦେଶଜ) ମୂର୍ଖ, ନିର୍ବୋଧ; ବନ୍ୟଜାତିବିଶେଷ ।

ଗଣ୍ଡକ, ବ. ପୁଂ. (ଗନଡ୍-ଅକ) ଗଣ୍ଡା, ପଶୁବିଶେଷ; ସଂଖ୍ୟାବିଶେଷ, ଗଣ୍ଡା; ଅନ୍ତରାୟ ।

ଗଣ୍ଡକାରି, } ବ. ସ୍ତ୍ରୀ. (ଗଣ୍ଡ-କାରି, କାଳି)
ଗଣ୍ଡକାଳି, } ବୃକ୍ଷବିଶେଷ ।

ଗଣ୍ଡକୀ, ବ. ସ୍ତ୍ରୀ. (ଗନଡ୍-ଅକ-ଈ) ନଦୀବିଶେଷ, ଏହି ନଦୀ ଶାଳଗ୍ରାମ ଦେଶ ଦେଇ ପ୍ରବାହିତ ।

ଗଣ୍ଡକୀଶିଳା, ବ. ସ୍ତ୍ରୀ. ଶାଳଗ୍ରାମଶିଳା ।

ଗଣ୍ଡକୂପ, ବ. ପୁଂ. ପର୍ବତର ଉଚ୍ଚସ୍ଥାନ, ଅଧି-ତ୍ୟକା ଭୂମି ।

ଗଣ୍ଡଗାତ୍ର, ବ. ନ. (ଗଣ୍ଡ-ଗାତ୍ର) ଆତଫଳ ।

ଗଣ୍ଡଗୋଳ, ବ. (ଦେଶଜ) ବିବାଦ; ଅତିଶୟ କୋଳାହଳ ।

ଗଣ୍ଡଗ୍ରାମ, ବ. ପୁଂ. (ଗଣ୍ଡ-ଗ୍ରାମ) ବହୁଜନ ବାସ-ସ୍ଥାନ, ପ୍ରଶସ୍ତ ଗ୍ରାମ ।

ଗଣ୍ଡଦେଶ, ବ. ପୁଂ. ଗଣ୍ଡସ୍ଥଳ, କପୋଳ, ଗାଲ ।

ଗଣ୍ଡଫଳକ, ବ. ନ. ଗାଲ, କପୋଳ । ବିଂ. ବିସ୍ତୀର୍ଣ୍ଣ କପୋଳଯୁକ୍ତ ।

ଗଣ୍ଡମାଳା, ବ. ସ୍ତ୍ରୀ. (ଗଣ୍ଡ-ମାଳା) ଗଳଦେଶରେ ମଣ୍ଡଳାକାର ବ୍ରଣସମୂହ; ଶିଶୁର ମାଳ୍ୟବିଶେଷ ।

ଗଣ୍ଡମୂର୍ଖ, ବିଂ. (ଗଣ୍ଡ-ମୂର୍ଖ) ଅତିଶୟ ମୂଢ଼, ଘୋର ନିର୍ବୋଧ ।

ଗଣ୍ଡଲେଖା, ବ. ସ୍ତ୍ରୀ. (ଗଣ୍ଡ-ଲେଖା) ଗଣ୍ଡସ୍ଥଳ ।

ଗଣ୍ଡଶୈଳ, ବ. ପୁଂ. (ଗଣ୍ଡ-ଶୈଳ) ଭୂକମ୍ପାଦି-ଦ୍ୱାରା ପର୍ବତରୁ ପତିତ ବୃହତ୍ ପ୍ରସ୍ତର; କ୍ଷୁଦ୍ର ପର୍ବତ; ଲଲାଟ ।

ଗଣ୍ଡସ୍ଥଳ, ବିଂ. (ଗଣ୍ଡ-ସ୍ଥଳ) ଗଣ୍ଡଦେଶ, ଗାଲ ।

ଗଣ୍ଡସ୍ଥଳୀ, ବ. ସ୍ତ୍ରୀ. (ଗଣ୍ଡ-ସ୍ଥଳ-ଈ) ଗଣ୍ଡଦେଶ, କପୋଳ, ଗାଲ ।

ଗଣ୍ଡା, ବ. ପୁଂ. ପ୍ରସିଦ୍ଧ ଜନ୍ତୁବିଶେଷ, ଗଣ୍ଡକ, ଖଡ୍ଗୀ; ଚୁଉକଡ଼ା ପରିମାଣ ।

ଗଣ୍ଡାଙ୍ଗ, ବ. ପୁଂ. ଗଣ୍ଡାର ।

ଗଣ୍ଡାର, ବ. ପୁଂ. ଗଣ୍ଡା, ଖଡ୍ଗୀ, ସ୍ୱନାମଖ୍ୟାତ ଜନ୍ତୁବିଶେଷ ।

ଗଣ୍ଡି, ବ. ପୁଂ. (ଗନଡ୍-ଇ) ଗଛର ମୁଣ୍ଡ; ହସ୍ତପାଦାଦିବର୍ଜ୍ଜିତ ମନୁଷ୍ୟ ଶରୀର । ଯଥା—

ଗଣ୍ଡି ମଧ୍ୟେ ଗୁଡ଼ ଗନ୍ଧର୍ବର ଗତ ବିବେକ ଦେଖି ସରୁଣ୍ଡି ।
ବ. ଚ.

(ଦେଶଜ) ଧୋବାମାନଙ୍କର ଲୁଗା କାଚିବା ପଥର; ରାଜକୋଷରୁ ମାଲିକାନାସ୍ୱରୂପ ପ୍ରାପ୍ୟ ଧନ ।

ଗଣ୍ଡିରା, ବ. (ଦେଶଜ) ବୋଇତ । ଯଥା—

ବଂଶାଦ ପାତ୍ର ମଞ୍ଜୁଷ ପେଡ଼ା,
ପେଡ଼ୀ ଗଣ୍ଡିରମାନ କର ଠୁଳ । ସ. ବ.

ଗଣ୍ଡୁ, ଗଣ୍ଡୂ, ବ. ପୁଂ. ସ୍ତ୍ରୀ. (ଗନଡ୍-ଉ, ଊ) ଉପାଧାନ, ତକିଆ; ଗଣ୍ଠି ।

ଗଣ୍ଡୂପଦ, ବ. ପୁଂ. (ଗଣ୍ଡୂ-ପଦ) କେଞ୍ଚୁଆ ।

ଗଣ୍ଡୂପଦୀ, ବ. ସ୍ତ୍ରୀ. (ଗଣ୍ଡୂ-ପଦ-ଈ) ଛୋଟ ଛୋଟ କେଞ୍ଚୁଆ ।

ଗଣ୍ଡୂଷ, ବ. ପୁଂ. (ଗଡ୍-ଊଷ) ହସ୍ତତଳ; କର୍ଗଣ୍ଡୂଳ; ହସ୍ତି ଶୁଣ୍ଡର ଅଗ୍ରଭାଗ; ମୁଖପୂର୍ଣ୍ଣ ଜଳ; ଗୋକର୍ଣ୍ଣାକୃତି ହସ୍ତରେ ଯେତେ ଜଳ ରହିପାରେ, ବ୍ରାହ୍ମଣ ପ୍ରଭୃତି ଦ୍ୱିଜ ବର୍ଣ୍ଣର ଭୋଜନର ଆରମ୍ଭରେ ଓ ଶେଷରେ ମନ୍ତ୍ରୋଚ୍ଚାରଣ ପୂର୍ବକ ମୁଖରେ ଜଳ ପ୍ରୟୋଗ ।

ଗଣ୍ଡୋପଳ, ବ. ପୁଂ. (ଗଣ୍ଡ-ଉପଳ) କରକା, ଶିଳା ।

ଗଣ୍ଡୋଳ, ବ. (ଗଣ୍ଡ-ଓଳ) ଗୁଡ଼; ଗ୍ରାସ ।

ଗଣ୍ଡୋଳପାଦ, ବ. ନ. ( ଗଣ୍ଡୋଳ-ପାଦ ) କରକାପରି ଗୋଲାକାର ଚରଣ ।

ଗଣ୍ୟ, ବିଂ. (ଗଣ-ଯ) ଗଣନୀୟ; ବିବେଚନୀୟ; ଗ୍ରାହ୍ୟ ।

ଗତ, ବିଂ. (ଗମ୍-ତ) ଅତୀତ; ପ୍ରସ୍ଥିତ; ଜ୍ଞାତ; ପ୍ରାପ୍ତ; ମୃତ; ପତିତ; ସମାପ୍ତ । ବ. ନ. ଗମନ ।

ଗତକ୍ଲମ, ବିଂ. (ଗତ-କ୍ଲମ) କ୍ଲମ ବା ଶ୍ରାନ୍ତିରହିତ, ଯାହାର ଶ୍ରାନ୍ତି ଦୂର ହୋଇଅଛି ।

ଗତଘୃଣ, ବିଂ. (ଗତ-ଘୃଣା) ନିର୍ଘୃଣ, ଘୃଣାରହିତ ।

ଗତଚେତନ, ବିଂ. (ଗତ-ଚେତନ) ଅଚେତନ, ଯାହାର ଚେତନା ନାହିଁ, ଯେ ଚେତନା ହରାଇଅଛି, ସଂଜ୍ଞାହୀନ ।

ଗତଜୀବ, } ବିଂ. { ଗତ-ଜୀବ, ଜୀବିତ )
ଗତଜୀବିତ, } ଗତପ୍ରାଣ, ମୃତ ।

ଗତତ୍ରପ, ବିଂ. (ଗତ-ତ୍ରପା) ନିର୍ଲଜ୍ଜ ।

ଗତଶୋଚନ, ନ. } ବ. ଗତାନୁଶୋଚନା,
ଗତଶୋଚନା, ସ୍ତ୍ରୀ. } ଅତୀତ ବିଷୟରେ ଅନୁଶୋଚନ ।

ଗତସନ୍ଧକ, ବ.ପୁଂ. (ଗତ-ସନ୍ଧ-କ)ନିର୍ମଦ ହସ୍ତୀ, ଯେଉଁ ହସ୍ତିର ଗଣ୍ଡସ୍ଥଳରୁ ମଦବାରି କ୍ଷରିତ ହୁଏ ନାହିଁ ।

ଗତାକ୍ଷ, ବିଂ. (ଗତ-ଅକ୍ଷି ) ନେତ୍ରହୀନ, ଅନ୍ଧ ।

ଗତାଗତ, ବ. ନ. (ଗତ-ଆଗତ) ଗମନାଗମନ, ଯିବାଆସିବା । ଯଥା—

> ଗତାଗତ ନେତ୍ରରେ ଠଣଠର,
> ସବ୍ଭେ ଜାଣି ସ୍ୱବଳ ଘଟ କର । ବ. ଚ.

ଗତାନୁଗତିକ, ବିଂ. (ଗତ-ଅନୁଗତିକ) ଅନୁକାରୀ, ଲୋକ ଦୃଷ୍ଟାନ୍ତର ଅନୁବର୍ତ୍ତୀ, ଯେଉଁ ବ୍ୟକ୍ତି ସ୍ୱୟଂ ବିବେଚନା ନ କରି ଏକ ଜଣର ଦୃଷ୍ଟାନ୍ତ ଅନୁସାରେ ଚଳେ ।

ଗତାନୁଶୋଚନା, ବ. ସ୍ତ୍ରୀ. (ଗତ-ଅନୁଶୋଚନା) ଯାହା ଗତ ହୋଇଅଛି, ତାହା ନିମିତ୍ତ ଅନୁତାପ ।

ଗତାୟାତ, ବ. ନ. (ଗତ-ଆୟାତ) ଗମନାଗମନ, ଯିବାଆସିବା ।

ଗତାୟୁଃ, ବିଂ. (ଗତ-ଆୟୁସ୍) ଯାହାର ଆୟୁ ଗତ ହୋଇଅଛି, ଯାହାର ପରମାୟୁ ଶେଷ ହୋଇଅଛି ।

ଗତାର୍ତ୍ତବା, ବ. ସ୍ତ୍ରୀ. (ଗତ-ଆର୍ତ୍ତବ) ବୃଦ୍ଧା ସ୍ତ୍ରୀ, ବନ୍ଧ୍ୟା ସ୍ତ୍ରୀ, ବାଁଝ ।

ଗତାର୍ଥ, ବିଂ. (ଗତ-ଅର୍ଥ) ଯାହାର ପ୍ରୟୋଜନ ନିବୃତ୍ତ ହୋଇଅଛି, ଯେଉଁ ବିଷୟରେ ଆଉ ପ୍ରୟୋଜନ ନାହିଁ ।

ଗତାସୁ, ବିଂ. ( ଗତ-ଅସୁ ) ମୃତ, ଯାହାର ପ୍ରାଣତ୍ୟାଗ ହୋଇଅଛି ।

ଗତି, ବ. ସ୍ତ୍ରୀ. (ଗମ୍-ତି) ଗମନ; ସଞ୍ଚାର; ଯାତ୍ରା; ପଥ; ଗମ୍ୟସ୍ଥାନ; ଅବସ୍ଥା; ଜ୍ଞାନ; ସ୍ୱରୂପ; ଉପାୟ; ଦଶତା; ପ୍ରାପ୍ତି; ପ୍ରମାଣ; ଆଶ୍ରୟ; ଭାଗ୍ୟ । ଯଥା—

> ସେ ବାଇରେ କପଗତ ଦେମନ୍ଦ କପ୍ ଗତ,
> ଯେତେକ ଯେତେକ ଅସର କଟେ ତେତେକ ମିଳଇ ଗତ ।
> ବ. ଚ.

ଗତିକ, ବ. ପୁଂ. (ଗତି-କ) ପ୍ରକାର; ଅବସ୍ଥା; ଉପାୟ ।

ଗତିଶକ୍ତି, ବ. ସ୍ତ୍ରୀ. ( ଗତି-ଶକ୍ତି ) ଯିବାଆସିବା କ୍ଷମତା ।

ଗତିହୀନ, ବିଂ. (ଗତି-ହୀନ) ନିରୁପାୟ; ଚଳତ୍ ଶକ୍ତିରହିତ ।

ଗତ୍ୟନ୍ତର, ବି. ନ. (ଗତି-ଅନ୍ତର) ଅନ୍ୟଗତି, ଉପାୟାନ୍ତର ।

ଗତ୍ୱର, ବିଂ. ( ଗମ୍-ବର ) ଗମନଶୀଳ; ଅସ୍ଥାୟୀ, ଯେ ସ୍ଥିର ନ ଥାଏ ।

ଗଦ, ବି. ପୁଂ. (ଗଦ୍-ଅ) ରୋଗ, ପୀଡ଼ା; କୃଷ୍ଣଙ୍କ କନିଷ୍ଠଭ୍ରାତା । ନ. ବଷ; କଥନ; (ଦେଶଜ) ବୃକ୍ଷର ମୂଳବିଶେଷ ।

ଗଦୟିତ୍ନୁ, ବିଂ. (ଗଦ-ଇତ୍ନୁ) ବାଚାଳ, ବହୁଭାଷୀ; କାମୁକ । ବି. ପୁଂ. କନ୍ଦର୍ପ ।

ଗଦା, ବି. ସ୍ତ୍ରୀ. (ଗଦ୍-ଆ) ଲୌହମୁଦ୍ଗର, ଲୌହ-ନିର୍ମିତ ସ୍ଥୂଳଯଷ୍ଟି; ମୁଦ୍ଗର, ଠେଙ୍ଗା । ଯଥା—
ଏହା ବୋଲି ଗଦା ଫିଙ୍ଗି ଦେଲେ ବୃକୋଦର । ଜ. ବି.
(ଦେଶଜ) ରାଶି, ସ୍ତୂପ ।

ଗଦାଗ୍ରଜ, ଗଦାଧର, ଗଦାଭୃତ୍, } ବି. ପୁଂ. ( ଗଦା-ଅଗ୍ରଜ, ଧର, ଭୃତ୍ ) ବିଷ୍ଣୁ, କୃଷ୍ଣ ।

ଗଦାପାଣି, ବି. ପୁଂ. (ଗଦା-ପାଣି) ବିଷ୍ଣୁ ।

ଗଦାମ୍ବର, ବି. ପୁଂ. (ଗଦ-ଅମ୍ବର) ମେଘ ।

ଗଦାରାତି, ବି. ପୁଂ. (ଗଦ-ଅରାତି) ଔଷଧ ।

ଗଦାବସାନ, ବି. ନ. ( ଗଦା-ଅବସାନ ) କୃଷ୍ଣଙ୍କ ବଧ କରିବାନିମିତ୍ତ ଜରାସନ୍ଧ ଗୋଟିଏ ଗଦା ଏକୋନ ଶତବାର ଘୂର୍ଣ୍ଣିତ କରି ନିକ୍ଷେପ କରିଥିଲେ, ସେହି ଗଦା ମଥୁରାର ନିକଟବର୍ତ୍ତୀ ସ୍ଥାନରେ ପତିତ ହୋଇଥିଲା, ସେହି ସ୍ଥାନର ନାମ "ଗଦାବସାନ ।''

ଗଦି, ବି. (ଯାବନିକ) ତୁଳାଦି ପୂର୍ଣ୍ଣ ସ୍ଥୂଳଆସ୍ତରଣ; ଆସନ ।

ଗଦିତ, ବିଂ. (ଗଦ୍-ତ) କଥିତ, ଉକ୍ତ, ଭାଷିତ । ବି. ନ. ବାକ୍ୟ ।

ଗଦୀ, ବି. ପୁଂ. ( ଗଦା-ଇନ୍ ) ବିଷ୍ଣୁ । ବିଂ. ଗଦାଧାରୀ; (ଗଦ୍-ଇନ୍) ରୋଗୀ, ପୀଡିତ ।

ଗଦ୍ଗଦ, ବିଂ. (ଗଦ୍-ଗଦ) ହର୍ଷ ଶୋକ ପ୍ରଭୃତିର ଅତିଶଯ୍ୟ ବଶତଃ କଣ୍ଠ ରୋଧ ହୋଇ ଯେଉଁ ବାକ୍ୟ ଅସ୍ପଷ୍ଟ ଉଚ୍ଚାରିତ ହୁଏ । ବି. ପୁଂ. ହର୍ଷାଦିଜନିତ ଅବ୍ୟକ୍ତ କଣ୍ଠଧ୍ୱନି ।

ଗଦ୍ୟ, ବି. ପୁଂ. (ଗଦ-ଯ) ଛନ୍ଦରହିତ ବାକ୍ୟ, ପଦ୍ୟ ନୁହେ । ବିଂ. କଥନୀୟ ।

ଗଦ୍ୟାଣକ, ବି. ନ. ୩୮ ରତି ପରିମାଣ; ବୈଦ୍ୟ-ମତରେ ୬୪ ଗୁଞ୍ଜା ପରିମାଣ ।

ଗଧ, ବି. (ଗର୍ଦ୍ଦଭ ଶବ୍ଦଜ) ଖର, ଖରବ, ଗର୍ଦ୍ଦଭ ।

ଗଧିଆ, ବିଂ. (ଦେଶଜ) ଅଳସୁଆ । ବି. ବ୍ୟାଘ୍ର-ଜାତୀୟ ଜନ୍ତୁବିଶେଷ ।

ଗନ୍ତବ୍ୟ, ବିଂ. (ଗମ୍-ତବ୍ୟ) ପ୍ରାପ୍ତବ୍ୟ, ପ୍ରାପ୍ୟ, ଅଗମ୍ୟ, ଗମନୀୟ, ଯେଉଁ ସ୍ଥାନକୁ ଯିବାକୁ ହେବ; ଜ୍ଞେୟ ।

ଗନ୍ତା, ବିଂ. (ଗମ୍-ତୃ) ଗମନକାରୀ; ପ୍ରାପ୍ତିଶୀଳ ।

ଗନ୍ତାଘର, ବି. ( ଦେଶଜ ) ଘରଘରିଆ, ଭଣ୍ଡାର ଅଧିକାରୀ ।

ଗନ୍ତାଘର, ବି. (ଦେଶଜ) ଭଣ୍ଡାରଘର ।

ଗନ୍ତୁ, ବି. ପୁଂ. (ଗମ୍-ତୁ) ପଥିକ, ଭ୍ରମଣକାରୀ ।

ଗନ୍ତ୍ରୀ, ବି. ସ୍ତ୍ରୀ. ( ଗମ୍-ତ୍ର-ଈ ) ଗୋରୁଗାଡି, ଶଗଡ, ଶକଟ ।

ଗନ୍ତ୍ରୀରଥ, ବି. ପୁଂ. (ଗନ୍ତ୍ରୀ-ରଥ) ଶକଟ, ଗାଡି ।

ଗନ୍ଧ, ବି. ପୁଂ. ( ଗନ୍ଧ-ଅ ) ଘ୍ରାଣେନ୍ଦ୍ରିୟ ଗ୍ରାହ୍ୟ-ପଦାର୍ଥ; ସୁଗନ୍ଧଦ୍ରବ୍ୟ, ଘୃଷ୍ଟଚନ୍ଦନାଦି; ଗନ୍ଧକ; ଗର୍ବ; ସମ୍ପର୍କ; ସମ୍ବନ୍ଧ; ଲେଶ, ଅଳ୍ପ; କୃଷ୍ଣ-ଅଗୁରୁ । କା, ସ୍ତ୍ରୀ. ଚମ୍ପକକଳିକା ।

ଗନ୍ଧକ, ବି. ପୁଂ. (ଗନ୍ଧ୍-ଅ-କ) ଉପଧାତୁବିଶେଷ, ସ୍ୱନାମପ୍ରସିଦ୍ଧ ପୀତବର୍ଣ୍ଣ ଧାତୁ ।

ଗନ୍ଧକାରିକା, ବି. ସ୍ତ୍ରୀ. (ଗନ୍ଧ-କାରିକା) ସୈରିନ୍ଧ୍ରୀ, ପରଗୃହସ୍ଥିତା ଶିଳ୍ପନିପୁଣା ସ୍ୱାଧୀନା ରମଣୀ ।

ଗନ୍ଧକାଳିକା, ଗନ୍ଧକାଳୀ, } ବି. ସ୍ତ୍ରୀ. ( ଗନ୍ଧ-କାଳ-ଅ, ଈ; କ ଯୋଗରେ ଗନ୍ଧ-କାଳିକା ) ବ୍ୟାସଦେବଙ୍କର ମାତା ।

ଗନ୍ଧକାଷ୍ଠ, ବି. ନ. ଅଗୁରୁକାଷ୍ଠ, ଚନ୍ଦନକାଷ୍ଠ ।

ଗନ୍ଧକୂଟୀ, ବି. ସ୍ତ୍ରୀ. ମୁରାନାମକ ଗନ୍ଧଦ୍ରବ୍ୟ ।

ଗନ୍ଧକେଳିକା, } ବି. ସ୍ତ୍ରୀ. (ଗନ୍ଧ-ଚେଲ-କ-ଆ)
ଗନ୍ଧଚେଲିକା, } ମୃଗନାଭି, କସ୍ତୂରୀ ।

ଗନ୍ଧଜଟିଳା, ବି. ସ୍ତ୍ରୀ. (ଗନ୍ଧ-ଜଟିଳା) ବଚ ।

ଗନ୍ଧଜାତ, ବି.ନ. (ଗନ୍ଧ-ଜାତ) ତେଜପତ୍ର, ଗନ୍ଧଦ୍ରବ୍ୟସମୂହ । ବିଂ. ଗନ୍ଧୋତ୍ପନ୍ନ ।

ଗନ୍ଧଜ୍ଞା, } ବି. ସ୍ତ୍ରୀ. ( ଗନ୍ଧ-ଜ୍ଞା, ନାଳୀ )
ଗନ୍ଧନାଳୀ, } ନାସିକା ।

ଗନ୍ଧତୂର୍ଯ୍ୟ, ବି. ନ. ( ଗନ୍ଧ-ତୂର୍ଯ୍ୟ ) ରଣବାଦ୍ୟବିଶେଷ ।

ଗନ୍ଧଦାରୁ, ବି. ନ. (ଗନ୍ଧ-ଦାରୁ) ଚନ୍ଦନବୃକ୍ଷ ।

ଗନ୍ଧଦ୍ୱିପ, ବି. ପୁଂ. ( ଗନ୍ଧ-ଦ୍ୱିପ ) ମଦଗନ୍ଧଯୁକ୍ତ ହସ୍ତୀ ।

ଗନ୍ଧଧୂଳି, ବି. ସ୍ତ୍ରୀ. (ଗନ୍ଧ-ଧୂଳି) କସ୍ତୂରୀ ।

ଗନ୍ଧନ, ବି. ନ. ( ଗନ୍ଧ-ଅନ ) ସୂଚନା; ହିଂସା; ଉତ୍ସାହ; ପ୍ରକାଶନ; ଗନ୍ଧତୃଣ ।

ଗନ୍ଧନକୁଳ, } ବି. ପୁଂ. (ଗନ୍ଧ-ନକୁଳ, ମୂଷିକ)
ଗନ୍ଧମୂଷିକ, } ଛୁଚୁନ୍ଦରା ।

ଗନ୍ଧପାଷାଣ, } ବି. ପୁଂ. ( ଗନ୍ଧ-ପାଷାଣ,
ଗନ୍ଧମୋଦନ, } ମୋଦନ) ଗନ୍ଧକ ।

ଗନ୍ଧପିଶାଚିକା, ବି. ସ୍ତ୍ରୀ. ଧୂପ ।

ଗନ୍ଧପୁଷ୍ପ, ବି. ପୁଂ. ( ଗନ୍ଧ-ପୁଷ୍ପ ) ବେତଗଛ; ଗନ୍ଧଯୁକ୍ତ ବୃକ୍ଷ । ନ. ଗନ୍ଧଯୁକ୍ତ ପୁଷ୍ପ; ଗନ୍ଧ ଏବଂ ପୁଷ୍ପ । ଷା, ସ୍ତ୍ରୀ. କେତକୀ; ଗଣିକାରୀ ।

ଗନ୍ଧଫଳୀ, ବି. ସ୍ତ୍ରୀ. ଚମ୍ପାକଳିକା ।

ଗନ୍ଧବନ୍ଧୁ, ବି. ପୁଂ. ଆମ୍ରବୃକ୍ଷ ।

ଗନ୍ଧମାତା, ବି. ସ୍ତ୍ରୀ. (ଗନ୍ଧ-ମାତୃ) ପୃଥିବୀ ।

ଗନ୍ଧମାଦନ, ବିଂ ପୁଂ. (ଗନ୍ଧ-ମାଦ-ଅନ) ସ୍ୱନାମପ୍ରସିଦ୍ଧ ପର୍ବତ; ଗନ୍ଧକ; ଭ୍ରମର; ବାନରବିଶେଷ ।

ଗନ୍ଧମାଦନୀ, } ବି. ସ୍ତ୍ରୀ. (ଗନ୍ଧ-ମାଦନୀ, ମାଦନୀ)
ଗନ୍ଧମାଦିନୀ, } ସୁରା, ମଦ୍ୟ ।

ଗନ୍ଧମାର୍ଜାର, ବି. ପୁଂ. (ଗନ୍ଧ-ମାର୍ଜାର) କଟାଶ, ବଣବିରାଡ଼ି ।

ଗନ୍ଧମୁଖା, ବି. ସ୍ତ୍ରୀ. (ଗନ୍ଧ-ମୁଖ) ଛୁଚୁନ୍ଦରୀ ।

ଗନ୍ଧମୃଗ, ବି. ପୁଂ. ( ଗନ୍ଧ-ମୃଗ ) କସ୍ତୂରିକା ମୃଗ ।

ଗନ୍ଧମୈଥୁନ, ବି. ପୁଂ. (ଗନ୍ଧ-ମୈଥୁନ) ବୃଷଭ, ଷଣ୍ଢ ।

ଗନ୍ଧମୋଦନ, ବି. ପୁଂ. ( ଗନ୍ଧ-ମୋଦ-ଅନ ) ଗନ୍ଧକ ।

ଗନ୍ଧମୋହିନୀ, ବି. ସ୍ତ୍ରୀ. ( ଗନ୍ଧ-ମୁହ-ଇନ୍-ଈ ) ଚମ୍ପକକଳିକା ।

ଗନ୍ଧରସ, ବି. ପୁଂ. (ଗନ୍ଧ-ରସ) ଉପଧାତୁବିଶେଷ ।

ଗନ୍ଧରାଜ, ବି. ନ. (ଗନ୍ଧ-ରାଜ) ଚନ୍ଦନ; ପୁଷ୍ପବିଶେଷ ।

ଗନ୍ଧର୍ବ, ବି. ପୁଂ. ( ଗ-ଧର୍ମ, ନିପାତନରେ ) ସ୍ୱର୍ଗୀୟଗାୟକ, ଦେବଯୋନିବିଶେଷ, ଏମାନେ ବ୍ରହ୍ମାଙ୍କ କାନ୍ତିରୁ ଉତ୍ପନ୍ନ; ଗାୟକ; କୋକିଳ; (ଗନ୍ଧ-ଅର୍ବ) ମୃଗବିଶେଷ; ଘୋଟକ ।

ଗନ୍ଧର୍ବବିବାହ, ବି. ପୁଂ. କର୍ତ୍ତୃପକ୍ଷର ଅଗୋଚରରେ ବା ଅସମ୍ମତିରେ କେବଳ ସ୍ତ୍ରୀ ଓ ପୁରୁଷର ପରସ୍ପର ସମ୍ମତିପୂର୍ବକ ଯେଉଁ ବିବାହ କାର୍ଯ୍ୟ ସମ୍ପନ୍ନ ହୁଏ ।

ଗନ୍ଧର୍ବବିଦ୍ୟା, ବି. ପୁଂ. ଗାନ୍ଧାରବିଦ୍ୟା, ସଙ୍ଗୀତବିଦ୍ୟା ।

ଗନ୍ଧର୍ବବେଦ, ବି. ପୁଂ. ସଙ୍ଗୀତବିଦ୍ୟା ।

ଗନ୍ଧଲୋଲୁପା, ବି. ସ୍ତ୍ରୀ. (ଗନ୍ଧ-ଲୋଲୁପ) ମକ୍ଷିକା, ମାଛି ।

ଗନ୍ଧବଣିକ, ବି. ପୁଂ. ( ଗନ୍ଧ-ବଣିକ୍ ) ବର୍ଣ୍ଣସଙ୍କର ଜାତିବିଶେଷ, ଗନ୍ଧବଣିଆ ।

ଗନ୍ଧବତୀ, ବି. ସ୍ତ୍ରୀ. ( ଗନ୍ଧ-ବତ୍-ଈ ) ପୃଥିବୀ; ନାରୀବିଶେଷ, ମତ୍ସ୍ୟଗନ୍ଧା, ବ୍ୟାସଦେବଙ୍କର ମାତା; ସୁରା; ବାୟୁ ଓ ବରୁଣର ପୁରୀ; ନବମଲ୍ଲିକା; ପଦ୍ମିନୀ ।

ଗନ୍ଧବଲ୍କଲ, ବି. ନ. (ଗନ୍ଧ-ବଲ୍କଲ) ଦାରୁଚିନି ।

ଗନ୍ଧବହ, ବି. ପୁଂ. ( ଗନ୍ଧ-ବହ ) ବାୟୁ । ସ୍ତ୍ରୀ. ନାସିକା । ବିଂ. ଗନ୍ଧଯୁକ୍ତ ।

ଗନ୍ଧବାହ, ବ. ପୁଂ. (ଗନ୍ଧ-ବାହ) ବାୟୁ; କସ୍ତୂରୀ-ମୃଗ । ବିଂ. ଗନ୍ଧଯୁକ୍ତ ।

ଗନ୍ଧବାହା, ବ. ସ୍ତ୍ରୀ. ( ଗନ୍ଧ-ବହ-ଅ ) ନାସିକା । ବିଂ. ଗନ୍ଧଯୁକ୍ତ ।

ଗନ୍ଧବହୁଳ, ବ. ପୁଂ. ଗୋଧୂମ, ଗହମ ।

ଗନ୍ଧବୀଜା, ବ. ସ୍ତ୍ରୀ. (ଗନ୍ଧ-ବୀଜ-ଅ ) ମେଥି ।

ଗନ୍ଧଶାଳି, ବ. ପୁଂ. (ଗନ୍ଧ-ଶାଳି) ସୁଗନ୍ଧ ଧାନ୍ୟ-ବିଶେଷ ।

ଗନ୍ଧଶୁଣ୍ଡିନୀ, ବ. ସ୍ତ୍ରୀ. (ଗନ୍ଧ-ଶୁଣ୍ଡିନୀ) ଗନ୍ଧମୂଷିକ, ଛୁଚୁନ୍ଦ୍ରା ।

ଗନ୍ଧଶେଖର,ବ. ପୁଂ. (ଗନ୍ଧ-ଶେଖର) ମୃଗନାଭି ।

ଗନ୍ଧକ୍ଷଣ, ବ, ପୁଂ. ଅଧିବାସ । ଯଥା—

> ପ୍ରଦୋଷ ନାଶରେ କଲେ ଗନ୍ଧକ୍ଷଣ ବଧି । ଲ. ବ.

ଗନ୍ଧଧିବା, କ୍ରି. ବ. ମଙ୍ଗୁଳିବା ।

ଗନ୍ଧସାର, ବ, ପୁଂ. ( ଗନ୍ଧ-ସାର ) ଚନ୍ଦନବୃକ୍ଷ; ଚନ୍ଦନ । ଯଥା—

> ସାର ଗନ୍ଧସାର ପଙ୍କେ ଲୁଷିତ ହୋଇବେ,
> ଚନ୍ଦ୍ରପଙ୍କ ପଙ୍କଜବନକୁ ଉନାଭବେ ହେ । କୋ.ବ୍ର.

ଗନ୍ଧସୋମ, ବ. ନ. ( ଗନ୍ଧ-ସୋମ ) କୁମୁଦ, ଶ୍ୱେତୋତ୍ପଳ ।

ଗନ୍ଧହାରିକା, ବ. ସ୍ତ୍ରୀ. ଶିଳ୍ପନିପୁଣା, ଯେଉଁ କାମିନୀ ପର ଘରେ ଯାଇ କାର୍ଯ୍ୟ କରେ ।

ଗନ୍ଧାଖୁ, ବ. ସ୍ତ୍ରୀ. (ଗନ୍ଧ-ଆଖୁ) ଗନ୍ଧମୂଷିକ, ଛୁଚୁନ୍ଦ୍ରା ।

ଗନ୍ଧାଜୀବ, ବ. ପୁଂ. (ଗନ୍ଧ-ଆଜୀବ) ଗନ୍ଧବଣିକ ।

ଗନ୍ଧାର, ବ. ପୁଂ. (ଗନ୍ଧ-ଋ-ଅ ) ସ୍ୱରବିଶେଷ; ଦେଶବିଶେଷ, ଗାନ୍ଧାର; ସିନ୍ଦୂର ।

ଗନ୍ଧାଳୀ, ବ. ସ୍ତ୍ରୀ. (ଗନ୍ଧ-ଅଳୀ) ଲତାବିଶେଷ ।

ଗନ୍ଧାଶ୍ମା, ବ. ପୁଂ. (ଗନ୍ଧ-ଅଶ୍ମନ୍) ଗନ୍ଧକ ।

ଗନ୍ଧିକ, ବ. ପୁଂ, (ଗନ୍ଧ-ଇକ) ଗନ୍ଧକ ।

ଗନ୍ଧିପର୍ଣ୍ଣ, ବ. ପୁଂ. ( ଗନ୍ଧି-ପର୍ଣ୍ଣ ) ସପ୍ତଚ୍ଛଦବୃକ୍ଷ, ଛତିଆନାଗଛ ।

ଗନ୍ଧୀ, ବିଂ. (ଗନ୍ଧ-ଇନ୍) ଉତ୍କୃଷ୍ଟ ଗନ୍ଧଯୁକ୍ତ ।

ଗନ୍ଧୋତ୍ତମା, ବ. ସ୍ତ୍ରୀ. ( ଗନ୍ଧ-ଉତ୍ତମା ) ମଦିରା, ମଦ୍ୟ ।

ଗନ୍ଧୋଲୀ, ବ. ସ୍ତ୍ରୀ. (ଗନ୍ଧ-ଓଲ-ଈ) ବରୂଡ଼ୀ ।

ଗଭସ୍ତି, ବ. ପୁଂ. ( ଗ-ଭସ୍-ତି ) ଚନ୍ଦ୍ର ଓ ସୂର୍ଯ୍ୟର କିରଣ ।

ଗଭସ୍ତି, ଗଭସ୍ତୀ, ବ. ସ୍ତ୍ରୀ. ( ଗ-ଭସ୍-ତି ) ସ୍ୱାହା, ଅଗ୍ନିପତ୍ନୀ ।

ଗଭସ୍ତିମାନ୍, ବ. ପୁଂ. (ଗଭସ୍ତି-ମତ୍) ସୂର୍ଯ୍ୟ । ନ. ସପ୍ତ ପାତାଳର ଗୋଟିଏ ପାତାଳ ।

ଗଭସ୍ତିହସ୍ତ, ବ. ପୁଂ. (ଗଭସ୍ତି-ହସ୍ତ) ସୂର୍ଯ୍ୟ ।

ଗଭ୍ଭା, ବ. (ଦେଶଜ) ଜୁଡ଼ା; ପୁଷ୍ପଗୁଚ୍ଛ । ଯଥା—

> କଲେ ଫୁଲଗଭ୍ଭା ପ୍ରାୟେ ମୋତେ ଶୋଭା,
> ସ୍ମରସିକ ସ୍ମରଷୀନା ଏ ମୋହନ । ର. ହ.

ଗମ୍ଭୀର, ବିଂ. (ଗମ୍-ଈର, ମ୍=ଭ) ଗମ୍ଭୀର, ନିମ୍ନ, ଅଗାଧ; ଗାଢ଼; ବୁଦ୍ଧିବିଶେଷ୍ୟ,ଯଥା — ଗମ୍ଭୀର ବୁଦ୍ଧି; ଯାହା ହର୍ଷ ବିଶାଦାଦି କାରଣରେ ବିଚଳିତ ହୁଏଇ ନାହିଁ, ଯଥା—ଗମ୍ଭୀର ସ୍ୱଭାବ; ନିବିଡ଼, ଘୋର , ଯଥା—ଗମ୍ଭୀର ନିଶୀଥ; ଗମ୍ଭୀର ଅରଣ୍ୟ; ଅତି ଉଚ୍ଚ ଓ ବହୁକ୍ଷଣ ସ୍ଥାୟୀ, ଯଥା—ଗମ୍ଭୀର ଶବ୍ଦ; ଦୁର୍ଗମ; ଦୁର୍ବାର; ଦୁର୍ବର୍ଷ ।

ଗମ୍ଭୀରତା, ବ. ସ୍ତ୍ରୀ. (ଗମ୍ଭୀର-ତା) ଗମ୍ଭୀରଭାବ ।

ଗମ୍ଭୀରିକା, ବ. ସ୍ତ୍ରୀ. ( ଗମ୍ଭୀର-ଇକ-ଅ ) ବଡ଼ ଢୋଲ ।

ଗମ, ବ. ପୁଂ. (ଗମ୍-ଅ) ଗମନ; ପଥ ।

ଗମକ, ବିଂ. ( ଗମି-ଅକ ) ଜ୍ଞାପକ; ପ୍ରେରକ; ଗମୟିତା ।

ଗମଥ, ବ. ପୁଂ, (ଗମ୍-ଅଥ) ପଥିକ ।

ଗମନ, ବ. ନ. (ଗମ୍-ଅନ) ଗତି, ପାଦବିକ୍ଷେପ; ଯିବା; ପଥ ।

ଗମନାଗମନ, ବ. ନ. (ଗମନ-ଆଗମନ) ଯିବା-ଆସିବା ।

ଗମଲ୍ଲା, ବିଂ. ( ଦେଶଜ ) ମଲ୍ଲ ଧରିବା, ଫିଙ୍ଗି ମାରିଯିବା ।

ଗମାଗମ, ବ. ପୁଂ. ( ଗମ-ଆଗମ ) ଚଳାଚଳ, ପସାର; ଯିବା ଆସିବା ।

ଗମିତ, ବିଂ. (ଗମି-ତ) ପ୍ରାପିତ; ଜ୍ଞାପିତ; ଅତିବାହିତ ।

ଗମିବା, କ୍ରି. ବି. (ଗମ୍‌ଧାତୁଜ) ଗମନ କରିବା; ପ୍ରବେଶ କରିବା; ବୁଝିପାରିବା; ଧାରଣା କରି ପାରିବା । ଯଥା—

ଗୋପେଂ ଗୁଣାବଳୀ ବେଦ ଶୋଜ ବୃନ୍ଦେ,
ଗମି ନ ପାରି ନଗମ ନାମ ଭଣେ । ବ. ଚି.

ଗମ୍ଭାରି, ବି. ସ୍ୱନାମ ପ୍ରସିଦ୍ଧ ବୃକ୍ଷବିଶେଷ ।

ଗମ୍ଭୀର, ବିଂ. ( ଗମ୍‌-ଈର ) ଗଭୀର; ନିବିଡ଼; ଅଗାଧ ।

ଗମ୍ଭୀରବେଦୀ, ବି. ପୁଂ. ( ଗମ୍ଭୀର-ବେଦୀ ) ମତ୍ତହସ୍ତୀ, ତ୍ୱଗ୍‌ଭେଦ, ଶୋଣିତକ୍ଷରଣ ଓ ମାଂସ କର୍ତ୍ତନରେ ମଧ୍ୟ ଯେଉଁ ହସ୍ତୀର ଚୈତନ୍ୟ ହୁଅଇ ନାହିଁ ।

ଗମ୍ଭୀରି, ବି. କୋଠରି ଘର । ଯଥା—

ଗମ୍ଭୀର ଭିତରେ ଜଏ ବସିଛି,
ଗୋଟି ଗୋଟି କରି ମାଂସ ଭକ୍ଷନ୍ତି ।

ଗମ୍ଭୀରିସାମନ୍ତ, ବି. ପୁଂ. (ଗମ୍ଭୀରି-ସାମନ୍ତ) ଯୁବରାଜ, ରାଜପୁତ୍ର ।

ଗମ୍ୟ, ବିଂ. (ଗମ୍‌-ଯ) ଗମନଯୋଗ୍ୟ ; ପ୍ରାପ୍ୟ ; ଉଦ୍ଧ୍ୟ; ଅନୁମେୟ; ସାଧ୍ୟ; ଜ୍ଞେୟ; ଭୋଗ୍ୟ; ଉତ୍ତରଣ ଯୋଗ୍ୟ; ନସ୍ତୀର୍ଯ୍ୟ; ଭୁଜଙ୍ଗ; ଷଣ୍ଢ଼ ।

ଗମ୍ୟମାନ, ବିଂ. (ଗମ୍‌-ଅନ; ଯ, ମ ଆଗମ) ଜ୍ଞାୟମାନ, ଅନୁମୀୟମାନ ।

ଗୟ, ବି. ପୁଂ. (ଗେ-ଅ) ଅସୁରବିଶେଷ; ବାନରବିଶେଷ; ନୃପବିଶେଷ, ଏ ଗୟାପୁରୀ ସ୍ଥାପନ କରିଥିଲେ ।

ଗୟଳ, ବି. ( ଦେଶଜ ) ବନ୍ୟ ଜନ୍ତୁବିଶେଷ; ବଡ଼ ବଡ଼ କାଠ ।

ଗୟା, ବି. ସ୍ତ୍ରୀ. ( ଗୟ-ଆ ) ଗୟରାଜର୍ଷିର ପୁରୀ, ପ୍ରସିଦ୍ଧ ତୀର୍ଥସ୍ଥାନ ।

ଗୟାଳ, ବି. ( ଦେଶଜ ) ଗୟାକ୍ଷେତ୍ରର ଅଧିକାରୀ ସମ୍ପ୍ରଦାୟବିଶେଷ, ପଣ୍ଡା ।

ଗର, ବି. ପୁଂ. ( ଗୃ=ଭୋଜନ କରିବା-ଅ ) ରୋଗ । ନ. ବିଷ । ଯଥା—

ଗର ଗିଳ ଦେବାକୁ ହେଉଛି ମନ ।

(ଦେଶଜ) ମୃଣ୍ମିକାସ୍ତୂପ, କାଷ୍ଠଖଣ୍ଡ ।

ଗରକଣ୍ଠପର, ବି. ପୁଂ. (ଗର-କଣ୍ଠ-ପର) ଅନଙ୍ଗ, କନ୍ଦର୍ପ, କାମ । ଯଥା—

ଗରକଣ୍ଠପର ପରମ କଷ୍ଟରୁ ମନରୁ କର ଅନ୍ତର । ପ୍ରେ. ସୁ.

ଗରଗଡ, ବି. (ଦେଶଜ) ଧାନ୍ୟକ୍ଷେତ୍ରରେ ଜାତ ଅକର୍ମଣ୍ୟ ଶସ୍ୟବିଶେଷ ।

ଗରଗର, ବିଂ. ( ଦେଶଜ ) ରାଗାନ୍ୱିତ; ଜଡିତ । ଯଥା—

ଗରଗର ପ୍ରେମ ହୃଦସ୍ୱ କରି । ବ. ଚ.

ଗରଜ, (ଯାବନିକ) ପ୍ରୟୋଜନ, ଆବଶ୍ୟକ ।

ଗରଣ, ବି. ନ. ( ଗୃ ବା ଗୃ-ଅନ ) ସେଚନ; ଭକ୍ଷଣ; ବିଷ ।

ଗରଦ, ବିଂ. (ଗର-ଦା-ଅ ) ବିଷପ୍ରୟୋକ୍ତା, ଯେ ବ୍ୟକ୍ତି ବିଷ ଦିଏ । ଯଥା—

ସର୍ବେ ସେ ପରହିତ ଶାଠ୍ୟ ମହୋତ୍ସାହେ,
ଅଗ୍ନିଦ, ଗରଦ, କୂଟଲେଖ୍ୟର ଲେଖକ । ମ. ଯା.

ଗରବ୍ରତ, ବି. ପୁଂ. (ଗର-ବ୍ରତ) ମୟୂର ।

ଗରବ, ବି. ପୁଂ. (ଗୃ=କ୍ଷରିତହେବା-ଅବ) ଗର୍ବ ।

ଗରମ, ବିଂ. (ଯାବନିକ) ତତଲା, ଉତ୍ତପ୍ତ ।

ଗରଳ, ବି. ନ. ( ଗର-ଳ ) ବିଷ; ସର୍ପବିଷ । ଯଥା—

ହେଗୀ ହେଗକୁ ଯୋଗିସ ମଳୟ ଅନଳ,
ଜିବ ଭାଗେ କଲ ସିନ୍ଧୁ ମନ୍ଥନେ ଗରଳ । ଲା. ବ.

ଘାସର ବିଡ଼ା ।

ଗରଳାରି, ବି. ପୁଂ. ମର୍କତମଣି ।

ଗରା, } ବି. (ଗର୍ଗର ଶବ୍ଦଜ) ମାଟିଆ, ଘଟ,
ଗଗରା, } କଳସ ।

ଗରାଧିକା, ବି. ସ୍ତ୍ରୀ. ଲକ୍ଷା, ଜଉ ।

ଗରିମା, ବି. ପୁଂ. ( ଗୁରୁ-ଇମନ୍ ) ଗୌରବ, ମାହାତ୍ମ୍ୟ; ଭାର, ଗୁରୁତ୍ୱ; ମହିମା ।

ଗରିବ, ବିଂ. (ଯାବନିକ) ଦରିଦ୍ର ।

ଗରିଷ୍ଠ, } ବି॰ (ଗୁରୁ-ଇଷ୍ଠ,ଈୟସ୍)ମର୍ଯ୍ୟାଦା-
ଗରୀୟାନ୍, } ପନ୍ନ; ଅତ୍ୟନ୍ତ ଭାର; ସାର୍ଥକ; ଅତି ମହତ୍; ଅତି ଗୌରବାନ୍ୱିତ । ଯଥା—

ତପପତଲୁ ଅଧିକ ତେଜବନ୍ତ,
ଗରୀୟାନ ଗରିଠାରୁ ଶୀତଳ ତ । ବ. ତ.

ଗରୀୟସୀ, ବି॰ (ଗୁରୁ-ଈୟସ୍-ଈ) ମାନନୀୟା, ଗୌରବାନ୍ୱିତା ।

ଗରୁ, (ଗୁରୁ ଶବ୍ଦଜ) ଭାର ।

ଗରୁଡ଼, ବି. ପୁଂ. ( ଗରୁତ୍-ଡୀ-ଅ, ତ୍ ଲୋପ ) ପକ୍ଷିରାଜ, ବିଷ୍ଣୁଙ୍କ ବାହନ, ବୈନତେୟ, ଖଗେଶ୍ୱର; ଏହି ପକ୍ଷୀ ଗୁରୁତର ଭାର ବହନ କରେ ବୋଲି ଏହାର ନାମ ଗରୁଡ଼ ହୋଇଅଛି ।

ଗରୁଡ଼ଧ୍ୱଜ, ବି. ପୁଂ. ( ଗରୁଡ଼-ଧ୍ୱଜ ) ବିଷ୍ଣୁ, କୃଷ୍ଣ ।

ଗରୁଡ଼ପୁରାଣ, ବି. ନ. ଅଷ୍ଟାଦଶ ପୁରାଣାନ୍ତର୍ଗତ ସପ୍ତଦଶ ମହାପୁରାଣ ।

ଗରୁଡ଼ାଗ୍ରଜ, ବି. ପୁଂ. ( ଗରୁଡ଼-ଅଗ୍ରଜ ) ଅରୁଣ, ସୂର୍ଯ୍ୟ ସାରଥି ।

ଗରୁଡ଼ାଙ୍କିତ, ବି. ନ. (ଗରୁଡ଼-ଅଙ୍କିତ) ମରକତମଣି ।

ଗରୁଡ଼ାଶ୍ମା, ବି. ପୁଂ. ( ଗରୁଡ଼-ଅଶ୍ମନ୍ ) ମରକତମଣି ।

ଗରୁତ୍, ବି. ପୁଂ. ( ଗ=ଶବ୍ଦ କରିବା, ଅର୍ଦ୍ଦ କରିବା-ଉତ୍ ) ପକ୍ଷ, ପକ୍ଷିର ଡେଣା ।

ଗରୁତ୍ମାନ୍, ବି. ପୁଂ.(ଗରୁତ୍-ମତ୍) ଗରୁଡ଼; ପକ୍ଷୀ ।

ଗର୍ଗ, ବି. ପୁଂ. (ଗୃ-ଗ) ମୁନିବିଶେଷ ।

ଗର୍ଗର, ପୁଂ. } ବି. (ଗର୍ଗ=ଅନୁକରଣ ଶବ୍ଦ-ର,
ଗର୍ଗରୀ, ସ୍ତ୍ରୀ. } ଈ) ଘଟ, କଳସ; ଦଧିମନ୍ଥନପାତ୍ର ।

ଗର୍ଜ, ବି. ପୁଂ. (ଗର୍ଜ୍ଜ-ଅ) ଗର୍ଜ୍ଜନ; ମେଘ; ହସ୍ତି-ପ୍ରଭୃତିର ଶବ୍ଦ ।

ଗର୍ଜକ, ବିଂ. (ଗର୍ଜ୍ଜ-ଅକ) ଯେ ଗର୍ଜନ କରଇ ।

ଗର୍ଜନ, } ବି. ନ. (ଗର୍ଜ୍ଜ-ଅନ, ତ) ନାଦ,
ଗର୍ଜିତ, } ଶବ୍ଦ; ସ୍ପର୍ଦ୍ଧା; ମେଘ, ସିଂହ, ହସ୍ତି-ପ୍ରଭୃତିର ଶବ୍ଦ ।

ଗର୍ଜ୍ଜର, ବି. ନ. ମୂଳବିଶେଷ, ଗାଜର ।

ଗର୍ଜିତ, ବିଂ. (ଗର୍ଜ୍ଜ-ତ ) ଯେ ଗର୍ଜ୍ଜନ କରିଅଛି । ବି. ମତ୍ତ ହସ୍ତୀ ।

ଗର୍ତ୍ତ, ବି. ପୁଂ. ( ଗୃ-ତ ) ରନ୍ଧ୍ର, ଛିଦ୍ର, ଗହ୍ୱର; ନିଗର୍ତ୍ତଦେଶ । ସ୍ତ୍ରୀ. ନିତମ୍ବର କୁକୁନ୍ଦର; ରୋଗବିଶେଷ ।

ଗର୍ତ୍ତିକା, ବି. ସ୍ତ୍ରୀ. ( ଗର୍ତ୍ତ-ଇକ-ଆ ) ତନ୍ତୁଶାଳା, ତନ୍ତଘର ।

ଗର୍ଦ୍ଦଭ, } ବି. ପୁଂ. ( ଗର୍ଦ୍ଦ-ଅଭ, ଈ ) ଗଧ ।
ଗର୍ଦ୍ଦଭୀ, } ନ. ଶ୍ୱେତକୁମୁଦ; ବିଡ଼ଙ୍ଗ ।

ଗର୍ଦ୍ଧ, ବି. ପୁଂ. (ଗୃଧ୍-ଅ) ଲୋଭ, ଲିପ୍ସା, ସ୍ପୃହା ।

ଗର୍ଦ୍ଧନ, ବିଂ. ( ଗୃଧ୍-ଅନ ) ଲୁବ୍ଧ, ଲୋଲୁପ, ଲୋଭୀ ।

ଗର୍ଭ, ଗର୍ବ୍ଭ, ବି. ପୁଂ. ( ଗୃ-ଭ ) କୁକ୍ଷି, ଏହି ସ୍ଥାନରେ ଶୁକ୍ର ଶୋଣିତ ସମବେତ ହୋଇ ସନ୍ତାନରୂପରେ ପରିଣତ ହୁଏ; ଅଭ୍ୟନ୍ତର; ନଦୀଗର୍ଭ; ଗର୍ଭସ୍ଥ ପ୍ରାଣୀ; ଅଗ୍ନି; ଅନ୍ନ; ପୁତ୍ର; ନାଟ୍ୟରେ ସନ୍ଧିବିଶେଷ ।

ଗର୍ଭକ, ବି. ପୁଂ. (ଗର୍ଭ-କ) କେଶମଧ୍ୟସ୍ଥିତ ମାଲ୍ୟ, ଖୋସାରେ ଜଡ଼ିଥିବା ମାଳା, କେଶଭୂଷଣ ପୁଷ୍ପ । ଯଥା—

ବକୁଳ ଗର୍ଭକ ସୁଧୀ ଉଦ୍ଧାରୁଛି,
ରସିକୁ ନ ଦେଇ ଯତ୍ନ ସେ ।

ନ. ଦୁଇ ରାତ୍ର ଏକ ଦିନ ।

ଗର୍ଭକେଶର, (Pistils)ବି. ପୁଂ. ନ. କେଶରର ମଧ୍ୟସ୍ଥ ସୂତ୍ର ପରି ପଦାର୍ଥ, ଏହାର ଶିରୋଭାଗରେ ଅଠା ପରି ଏକପ୍ରକାର ଦ୍ରବ ପଦାର୍ଥ ଥାଏ ।

ଗର୍ଭକୋଷ, ବି. ପୁଂ. ଗର୍ଭାଶୟ ।

ଗର୍ଭଗୃହ, ବି. ନ. ( ଗର୍ଭ-ଗୃହ ) ଭିତରର ଘର; ଗର୍ଭାଗାର, ସୂତିକାଗାର ।

ଗର୍ଭଣା, ବି. ସ୍ତ୍ରୀ. ସଙ୍କ୍ରାନ୍ତ କାଳରେ ତୁଳା ମାସର ଆଦ୍ୟ ଦିବସ । ଯଥା—(ଦେଶରେ କହନ୍ତି)
*"ଅଗେ ବୁଣ ପଛେ ବୁଣ ଗର୍ଭଣାକୁ ଟୁଣ୍ଡ ଟୁଣ୍ଡ ।"

ଗର୍ଭାଣ୍ଡ, ବି. ପୁଂ. (ଗର୍ଭ-ଅଣ୍ଡ) ନାଭିର ଗର୍ତ୍ତ ।

ଗର୍ଭଦୋହଦ, ବି. ନ. ଗର୍ଭାଭିଳାଷ, ଗର୍ଭ ହେଲେ ଯାହା ଖାଇବାକୁ ଇଚ୍ଛା ହୁଏ, ସାଧ ।

ଗର୍ଭଧାରଣ, ବି. ନ. (ଗର୍ଭ-ଧୃ-ଅନ୍) ଅପତ୍ୟୋତ୍ପାଦନାର୍ଥ ଶୁକ୍ର ଶୋଣିତ ସଂଯୋଗରୂପ ଗର୍ଭଗ୍ରହଣ, ଗର୍ଭରେ ସନ୍ତାନ ଧାରଣ ।

ଗର୍ଭଧାରିଣୀ, ବି. ସ୍ତ୍ରୀ. (ଗର୍ଭ-ଧୃ-ଇନ୍-ଈ) ଯେ ଗର୍ଭରେ ଧରେ, ମାତା ।

ଗର୍ଭପରିସ୍ରବ, ବି. ପୁଂ. (ଗର୍ଭ-ପରିସ୍ରବ) ଅପତ୍ୟ ପ୍ରସବ ହେଲା ପରେ ଯେଉଁ ଚର୍ମପୁଟୁଳି ପଡ଼େ, ସାଧାରଣରେ ତାହାକୁ ଫୁଲ ବୋଲିଯାଏ ।

ଗର୍ଭପାତ, ବି. ପୁଂ. (ଗର୍ଭ-ପାତ) ଗର୍ଭସ୍ରାବ, ଗର୍ଭ ନଷ୍ଟ ହେବା ।

ଗର୍ଭପାତକ, ବି. ନ. (ଗର୍ଭ-ପାତି-ଅକ) ଯେ ଔଷଧାଦି ପ୍ରୟୋଗଦ୍ୱାରା ଗର୍ଭପାତ ସମ୍ପାଦନ ହୁଅଇ ।

ଗର୍ଭପାତନ, ବି. ନ. (ଗର୍ଭ-ପାତନ) ଭ୍ରୂଣହତ୍ୟା ।

ଗର୍ଭବତୀ, ବି. ସ୍ତ୍ରୀ. (ଗର୍ଭ-ବତ୍-ଈ) ଗର୍ଭିଣୀ, ଅନ୍ତଃସତ୍ତ୍ୱା, ଯେଉଁ ସ୍ତ୍ରୀର ଗର୍ଭ ହୋଇଅଛି ।

ଗର୍ଭମାସ, ବି. ପୁଂ. ଗର୍ଭାରମ୍ଭ ମାସ ।

ଗର୍ଭଶଯ୍ୟା, ବି. ସ୍ତ୍ରୀ. (ଗର୍ଭ-ଶଯ୍ୟା) ଗର୍ଭାଶୟ, ଜରାୟୁ ।

ଗର୍ଭସଙ୍କ୍ରମଣ, ବି. ନ. (ଗର୍ଭ-ସଙ୍କ୍ରମଣ) ଦେହାନ୍ତର ପ୍ରାପ୍ତି ନିମିତ୍ତ ଜୀବର ଗର୍ଭ ପ୍ରବେଶ ।

ଗର୍ଭସମୟ, ବି. ପୁଂ. (ଗର୍ଭ-ସମୟ) ଋତୁସ୍ନାନ ଉତ୍ତାରେ ପୁରୁଷ ସଂଯୋଗ କାଳ ।

ଗର୍ଭସ୍ଥ, ବିଂ. (ଗର୍ଭ-ସ୍ଥ) ଯାହା ଗର୍ଭରେ ଅଛି, ମଧ୍ୟସ୍ଥିତ ।

ଗର୍ଭସ୍ରାବ, ବି. ପୁଂ. (ଗର୍ଭ-ସ୍ରାବ) ଗର୍ଭପାତ, ପେଟ ଭାଙ୍ଗିବା ।

ଗର୍ଭାଗାର, ବି. ନ. (ଗର୍ଭ-ଅଗାର) ବାସଗୃହ; ଅନ୍ତର୍ଗୃହ, ସୂତିକାଗୃହ ।

ଗର୍ଭାଙ୍କ, ବି. ପୁଂ. ନାଟକାନ୍ତର୍ଗତ କ୍ଷୁଦ୍ର ଅଙ୍କ ।

ଗର୍ଭାଧାନ, ବି. ନ. (ଗର୍ଭ-ଆଧାନ) ସଂସ୍କାରବିଶେଷ, ନିଷେକ କ୍ରିୟା, ଗର୍ଭରେ ଶୁକ୍ର ଶୋଣିତର ସମବାୟ; ସ୍ତ୍ରୀଲୋକର ଦ୍ୱିତୀୟ ବିବାହ; ଗର୍ଭଧାରଣ ।

ଗର୍ଭାଶୟ, ବି. ପୁଂ. (ଗର୍ଭ-ଆଶୟ) ଗର୍ଭଶଯ୍ୟା, ଜରାୟୁ ।

ଗର୍ଭିଣୀ, ବି. ସ୍ତ୍ରୀ. (ଗର୍ଭ-ଇନ୍-ଈ) ଗର୍ଭବତୀ ।

ଗର୍ଭିତ, ବିଂ. (ଗର୍ଭ-ଇତ) ଅନ୍ତର୍ଗତ; ଗର୍ଭଯୁକ୍ତ ।

ଗର୍ଭୋପଘାତିନୀ, ବି. ସ୍ତ୍ରୀ. (ଗର୍ଭ-ଉପ-ହନ୍-ଇନ୍-ଈ) ଅସମୟରେ ବୃଷୋପଗମନାଦି ପ୍ରଯୁକ୍ତ ଯେଉଁ ଗାଈର ଗର୍ଭପାତ ହୁଏ ।

ଗର୍ମୁତ୍, ବି. ସ୍ତ୍ରୀ. (ଗୃ-ଉତ୍, ମ ଆଗମ) ସୁବର୍ଣ୍ଣ; ଲତା; ତୃଣବିଶେଷ ।

ଗର୍ବ, ବି. ପୁଂ. (ଗର୍ବ୍-ଅ) ଦର୍ପ, ଅହଙ୍କାର, ଅନ୍ୟକୁ ଅବଜ୍ଞା, ଐଶ୍ୱର୍ଯ୍ୟରୂପ କୁଳବିଦ୍ୟା ପ୍ରଭୃତିଦ୍ୱାରା ଇଷ୍ଟ ଲାଭବଶତଃ ଅନ୍ୟର ପ୍ରତି ଯେଉଁ ଅବଜ୍ଞା ।

ଗର୍ବର, ବିଂ. (ଗୃ-ବର ଅଥବା ଗର୍ବ-ର) ଅହଙ୍କାରୀ ।

ଗର୍ବାଟ, ବି. ପୁଂ. (ଗର୍ବ-ଅଟ) ଦ୍ୱାରପାଳ ।

ଗର୍ବିତ, ବିଂ. (ଗର୍ବ-ତ) ଅହଙ୍କୃତ, ଉଦ୍ଧତ ।

ଗର୍ବୀ, ବିଂ. (ଗର୍ବ-ଇନ୍) ଅହଙ୍କାରୀ ।

ଗର୍ହଣ, ନ. } ଗର୍ହଣା, ସ୍ତ୍ରୀ. } ବି. (ଗର୍ହ-ଅନ, ଆ) ନିନ୍ଦା, ଦୋଷାରୋପ, ତିରସ୍କାର ।

ଗର୍ହିତ, } ଗର୍ହ୍ୟ, } ବିଂ. (ଗର୍ହ-ତ, ଯ) ନିନ୍ଦିତ, ଦୂଷ୍ୟ; ନିଷିଦ୍ଧ; ଜଘନ୍ୟ ।

ଗଳ, ବି. ପୁଂ. (ଗଳ୍-ଅ) କଣ୍ଠ, ଗଳା; ଝିଣା; ବାଦ୍ୟବିଶେଷ ।

ଗଳକମ୍ବଳ, ବି. ପୁଂ. (ଗଳ-କମ୍ବଳ) ଗୋରୁର ଗଳଲମ୍ବିତ କମ୍ବଳାକୃତି ମାଂସ, ସାସ୍ନା ।

**ଗଳଗଣ୍ଡ**, ବ. ପୁଂ. (ଗଳ-ଗଣ୍ଡ) ରୋଗବିଶେଷ, ଗଳଦେଶର ମାଂସପିଣ୍ଡ; ହାଡ଼ଗିଲା ପକ୍ଷୀ ।

**ଗଲଗଲ**, କ୍ରି. କୁଣ୍ଠାଇ ହେବା, ସଲସଲ ।

**ଗଳଗ୍ରହ**, ବ. ପୁଂ. (ଗଳ-ଗ୍ରହ) ସ୍ୱୟଂ ଉତ୍ଥାପିତ ଅପରିହାର୍ଯ୍ୟ ଆପଦ୍, ଅକାରଣରେ ଓ ଅନିଚ୍ଛାପୂର୍ବକ ଯାହାର ଭାର ନିଆ ଯାଇଥାଏ, ଗଳାର ବୋଝ; ମତ୍ସ୍ୟଘଣ୍ଟ; ତିଥିବିଶେଷ; ଅସମାପ୍ତ କର୍ମ ।

**ଗଳଦଶ୍ରୁ**, ବିଂ. (ଗଳତ୍-ଅଶ୍ରୁ) ଯାହାର ଚକ୍ଷୁରୁ ଅଶ୍ରୁ ନିର୍ଗତ ହେଉଅଛି, ଯହିଁରୁ ଅଶ୍ରୁ ନିର୍ଗତ ହେଉଅଛି ।

**ଗଳନ**, ବ. ନ. (ଗଲ୍-ଅନ) ଦ୍ରବ ହେବାର, ତରଳିଯିବାର; ପତନ ।

**ଗଳଥା**, ବ. ସ୍ତ୍ରୀ. (ଗଳ-ଥା) ଗଳ୍ପିଆ । ଯଥା—

ସ୍ୱଭାବ ମୂଢ଼ ବରଷ ପୂର୍ବ ଲକ୍ଷ ହେବାପାଇଁ
ଗଳଥା ପାଇବ ଯାଇ ଲୋକେ ଶପାଶ । ସ୍ୱ. ପ.

**ଗଲନ୍ତିକା**, ବ. ସ୍ତ୍ରୀ. ( ଗଲ୍-ଅନ୍ତ-କ-ଆ ) ସ୍ୱଳ୍ପବାରିଧାନିକା, ଗଡ଼ୁ ।

**ଗଳମେଖଳା**, ବ. ସ୍ତ୍ରୀ. ( ଗଳ-ମେଖଳା ) କଣ୍ଠାଭରଣବିଶେଷ ।

**ଗଳରନ୍ଧ୍ର**, ବ. ନ. (ଗଳ-ରନ୍ଧ୍ର) ଗଳାର ଛିଦ୍ର ।

**ଗଳବ୍ରତ**, ବ. ପୁଂ. (ଗଳ-ବ୍ରତ) ମୟୂର ।

**ଗଳଶୁଣ୍ଡିକା**, ବ. ସ୍ତ୍ରୀ. (ଗଳ-ଶୁଣ୍ଡିକା) ଘଣ୍ଟିକା ।

**ଗଳସ୍ତନୀ**, ବ. ସ୍ତ୍ରୀ. (ଗଳ-ସ୍ତନ) ଛେଳି, ଅଜା ।

**ଗଳହସ୍ତ**, ବ. ପୁଂ. (ଗଳ-ହସ୍ତ) ଅର୍ଦ୍ଧଚନ୍ଦ୍ର, ଗଳା ଚିପିଦେବା, ଗଳାରେ ଧକ୍କା ଦେବା ।

**ଗଳା**, ବ. ( ଗଳ ଶବ୍ଦଜ ) କଣ୍ଠ, ଗଳଦେଶ । ବିଂ. ଗଳିତ, ଦ୍ରବୀଭୂତ ।

**ଗଳି**, ବ. (ଦେଶଜ) ଅଳ୍ପପରିସର ପଥ, କ୍ଷୁଦ୍ର ପଥ ।

**ଗଳିତ**, ବିଂ. ( ଗଲ-ତ ) ପତିତ, କ୍ଷରିତ, ଦ୍ରବୀଭୂତ ।

**ଗଳିବା**, କ୍ରି. ବ. (ଗଳ ଧାତୁଜ) ପ୍ରବିଷ୍ଟହେବା; ତରଳିତହେବା; ପତିତହେବା । ଯଥା—

ହୃଦବେଦନ ନିଦ୍ରନ୍ତୁ ଗ୍ରହି ଅଶ୍ରୁ ଧାର ।

**ଗଲୁ**, କ୍ରି. ବ. (ଦେଶଜ) ଗଲଗଲ ହେବା; କୁଣ୍ଠେଇହେବା । କ୍ରି. ଅମାନ୍ୟାର୍ଥରେ ଯିବା ।

**ଗଳ୍ପ**, ବ. ନ. (ଭାଷଣାର୍ଥ କଲ୍ପ ଧାତୁଜ) ଉପନ୍ୟାସ; ଉପକଥା ।

**ଗଲ୍ଭ**, ବିଂ. (ଗଲଭ୍-ଅ) ପ୍ରଗଲ୍ଭ; ଧୃଷ୍ଟ ।

**ଗଲ୍ଲ**, ବ. ପୁଂ. (ଗଲ୍-ଲ) ଗଣ୍ଡ; ଗାଲ ।

**ଗଲ୍ଲକ**, ବ. ପୁଂ. (ଗଲ୍ଲ-କ) ଚଷକ; ମଦ୍ୟପାନ ପାତ୍ର ।

**ଗବ**, ବ. (ଦେଶଜ) ଏରଣ୍ଡବୃକ୍ଷ ।

**ଗବଦ**, ବ. ନ. (ଗୋ-ଦ) ନଡ଼ା; ଘାସକୁଟା ।

**ଗବୟ**, ବ. ପୁଂ. (ଗୋ-ଅୟ-ଅ) ବାନରବିଶେଷ ଗୋ ସଦୃଶ ଜନ୍ତୁବିଶେଷ ।

**ଗବୟୀ**, ବ. ସ୍ତ୍ରୀ. (ଗୋ-ଅୟ-ଈ) ଗଳକମ୍ବଳଶୂନ୍ୟ ଗୋ ତୁଲ୍ୟ ପଶୁ ।

**ଗବରାଜ**, ବ. ପୁଂ. (ଗବ-ରାଜନ୍) ବୃଷ; ଷଣ୍ଢ ।

**ଗବଳ**, ବ. ପୁଂ. (ଗୁ-ଅଳ) ବନ୍ୟ ମହିଷ । ନ. ମହିଷଶୃଙ୍ଗ ।

**ଗବାକ୍ଷ**, ବ. ପୁଂ. (ଗୋ-ଅକ୍ଷ) ବାନରବିଶେଷ; ଝରକା; ଖିଡ଼କି; ବାତାୟନ । ଯଥା—

ଖୋଜ ନ ପାଇ ବଳି ପ୍ରତାପ ଲେଡ଼ା,
ଚିହ୍ନିତେ ଫେଇ ଦେଇ ଗବାକ୍ଷଫୁଡ଼ା ସେ ।

**ଗବାଗୀ**, ବ. ସ୍ତ୍ରୀ. ତୋଡ଼ିମାଛ ।

**ଗବାଦନ**, ବ. ନ. (ଗୋ-ଅଦନ) ଘାସ; ତୃଣ ।

**ଗବାଦନୀ**, ବ. ସ୍ତ୍ରୀ. ଗୋରୁର ଘାସ ଖାଇବା ପାତ୍ର; ନୀଳ ଅପରାଜିତା ।

**ଗବାମ୍ପତି**, ବ. ପୁଂ. ବୃଷ; ଗୋପାଳକ; ରୁଦ୍ର; ସୂର୍ଯ୍ୟ; ବହ୍ନି ।

**ଗବାଶନ**, ବ. ପୁଂ. (ଗୋ-ଅଶନ) ଗୋଖାଦକ; କଂସେଇ; ମୋଚି; ଚର୍ମକାର ।

**ଗବିନୀ**, ବ. ସ୍ତ୍ରୀ. (ଗୋ-ଇନ୍-ଈ) ଗୋସମୂହ ।

**ଗବୀ**, ବ. ସ୍ତ୍ରୀ. (ଗୋ-ଈ) ଗାଈ, ଗାଭ ।

**ଗବେଡ଼ୁ**, ବ. ପୁଂ. (ଗୋ-ଏଡ-ଉ) ମେଘ । ସ୍ତ୍ରୀ. ତୃଣଧାନ୍ୟ; ଗରଗଡ଼ା ।

ଗବେଧୁ, } ବ. ସ୍ତ୍ରୀ. (ଗୋ-ବଧ-ଉ) ତୃଣ-
ଗବେଧୁକା, } ଧାନ୍ୟ; ଗରଗଜ୍ଞ ।
ଗବେରୁକ, ବ. ନ. (ଗୋ-ଇର-ଅକ) ଗୈରକ; ଗେରୁମାଟି ।
ଗବେଷଣ, ନ. } ବ. (ଗବେଷ୍-ଅନ, ଆ)
ଗବେଷଣା, ସ୍ତ୍ରୀ. } ଅନ୍ୱେଷଣ, ଅନୁସନ୍ଧାନ ।
ବ. ପୁଂ. ନୃପବିଶେଷ ।
ଗବେଷିତ, ବିଂ. (ଗବେଷ୍-ତ) ଅନ୍ୱେଷିତ ।
ଗବ୍ୟ, ବିଂ. ( ଗୋ-ଯ ) ଗୋସମ୍ବନ୍ଧୀୟ; ଦୁଗ୍ଧ, ଘୃତାଦି ।
ଗବ୍ୟୂତ, ନ. } ବ. ( ଗୋ-ଯୁ-ତ, ତି ) ଦୁଇ
ଗବ୍ୟୂତି, ସ୍ତ୍ରୀ. } କ୍ରୋଶ ପରିମାଣ ।
ଗହଣ, ବ. (ଦେଶଜ) ସମାଜ; ଲୋକସମୂହ । ଯଥା—

> ସରୀଏ ଥିଲେ ଗହଣେ,
> ଠାଉଦେଲେ ନେତ୍ର, ନେତ୍ରକୋଣେ ।

ଗହଣା, ବ. ( ଦେଶଜ ) ଆଭରଣ; ଭୂଷଣ; ଅଲଙ୍କାର ।
ଗହନ, ବିଂ. (ଗହ୍-ଅନ) ଦୁର୍ଗମ; ଦୁଷ୍ପ୍ରବେଶ୍ୟ; ଦୁରୂହ; ଦୁର୍ବୋଧ; ବନ; ଗହ୍ୱର; ଯାତନା; ଦୁଃଖ । ଯଥା—

> କୋଇଲ ସେ ତେବେ ସ୍ୱତ୍ତ ବାହୁଡ ନଇଲ,
> ଗହନ ତ ବୃନ୍ଦାବନ ଶୋଭ ନ ପାଇଲ ସେ କୋଇଲ ।

ଗହମ, ବ. (ଗୋଧୂମ ଶବ୍ଦଜ) ଗୋଧୂମ; ଶସ୍ୟବିଶେଷ ।
ଗହଳ, ବିଂ. (ଗହନ ଶବ୍ଦଜ) ଘନ; ସଙ୍କୀର୍ଣ୍ଣ; ଗୋଳମାଳ । ଯଥା—

> ଚଣିବା ଦେଖିଲେ ଗହିଳ ହେଲ । ନ. କେ.

ଗହଳ, ବିଂ. (ଦେଶଜ) ଗହଳ; ଘନ । ଯଥା—

> ଗହଳ ଚମ୍ପାଯନ୍ତ୍ରୀ ଭର୍ମିତ,
> ଗହସ୍ତ ଦନ୍ତରୁ ନାହିଁ ଗହିଁ ଯାହାରୁ ଗୋ ।

ଗହ୍ୱର, } ବିଂ. ( ଗମ୍ଭୀର ଶବ୍ଦଜ )
ଗମ୍ବର, } ଗମ୍ଭୀର ।
ଗହ୍ମାପୂର୍ଣ୍ଣିମା, (ପ୍ରା) ଶ୍ରାବଣ ପୌର୍ଣ୍ଣମାସୀ ।

ଗହ୍ୱର, ବ. ନ. (ଗୋ-ହ୍ୱୃ-ଅ) ଦେବଖାତ; ଗର୍ତ୍ତ, ଗିରିଗୁହା । ପୁଂ. ନିକୁଞ୍ଜ; ଲତାଗୃହ ।
ଗାଁ, ବ. (ଗ୍ରାମ ଶବ୍ଦଜ) ବହୁଜନ ବସତି ସ୍ଥାନ; ଗ୍ରାମ ।
ଗାଈ, ବ. (ଗବୀ ଶବ୍ଦଜ) ଗବୀ ।
ଗାଇବା, କ୍ରି. ବ. ( ପ୍ରା ) ଗାୟନକରିବା । ଯଥା—

> ଗାଇବା ତୋହର ନାମ ଥନନ୍ଦ ଭବେ ।

ଗାଙ୍ଗ, ବ. ପୁଂ. (ଗଙ୍ଗା-ଅ) ଭୀଷ୍ମ; କାର୍ତ୍ତିକେୟ
ବିଂ. ଗଙ୍ଗାସମ୍ବନ୍ଧୀୟ ।
ଗାଙ୍ଗାଟ, } ବ. ପୁଂ. (ଗଙ୍ଗା-ଅଟ) ମତ୍ସ୍ୟବିଶେଷ;
ଗାଙ୍ଗାଟ, } ଚିଙ୍ଗୁଡ଼ିମାଛ ।
ଗାଙ୍ଗାଟେୟ, ବ. ପୁଂ. (ଗଙ୍ଗା-ଅଟ୍-ଏୟ) ଚିଙ୍ଗୁଡ଼ିମାଛ ।
ଗାଙ୍ଗାୟନ, } ବ. ପୁଂ. ( ଗଙ୍ଗା-ଅୟନ, ଏୟ )
ଗାଙ୍ଗେୟ, } ଭୀଷ୍ମ; କାର୍ତ୍ତିକେୟ ।
ଗାଜର, ବ. ଏକପ୍ରକାର ମୂଳବିଶେଷ ।
ଗାଣ୍ଠିଆ, ବ. (ଦେଶଜ) ଟଙ୍କା ପଇସା ରଖିବାର ଥଳିବିଶେଷ ।
ଗାଡ଼, ବ. (ଗର୍ତ୍ତ ଶବ୍ଦଜ) ଗର୍ତ୍ତ ।
ଗାଡ଼, ଗାଡ଼ୀ, ବ. ନ. (ଦେଶଜ) ଶକଟ, ରଥ ।
ଗାଡ଼ିଆ, ବ. ନ. ( ଦେଶଜ ) ଅଳ୍ପ ଜଳଯୁକ୍ତ କ୍ଷୁଦ୍ର ପୁଷ୍କରିଣୀ ।
ଗାଢ଼, ବିଂ. (ଗାହ୍-ତ) ଅତିଶୟ; ଦୃଢ଼; ଗମ୍ଭୀର; ଭିଦ; ଘନ; ସେବିତ ।
ଗାଢ଼ମୁଷ୍ଟି, ବ. ପୁଂ. (ଗାଢ଼-ମୁଷ୍ଟି) ଖଡ୍ଗ । ବିଂ. କୃପଣ; ବ୍ୟୟକୁଣ୍ଠ ।
ଗାଢ଼ୁଆଳିକ, ବିଂ. ( ଦେଶଜ ) ବଡ଼ ଧନୀ; ( ସ୍ୱର୍ଣ୍ଣବଣିକମାନଙ୍କଦ୍ୱାରା ବ୍ୟବହୃତ ) ।
ଗାଣପତ୍ୟ, ବିଂ. (ଗଣପତି-ଯ) ଗଣେଶୋପାସକ; ଗଣପତିସମ୍ବନ୍ଧୀୟ ।
ଗାଣିକ୍ୟ, ବ. ନ. (ଗଣିକା-ଯ) ଗଣିକା ସମୂହ ।
ଗାଣିତିକ, ବିଂ. ( ଗଣିତ-ଇକ ) ଗଣିତଶାସ୍ତ୍ରଜ୍ଞ; ଗଣିତସମ୍ବନ୍ଧୀୟ ।

ଗାଣ୍ଡି, ବ. (ଗଣ୍ଡ୍-ଇ) ଗ୍ରନ୍ଥି, ଗଣ୍ଡି; ( ଦେଶଜ ) ଗୁହ୍ୟଦ୍ୱାର ଓ ତନ୍ନିକଟସ୍ଥ ଅଂଶ ।

ଗାଣ୍ଡିବ, ଗାଣ୍ଡୀବ, } ବ. ପୁଂ. ନ. (ଗାଣ୍ଡି-ବ) ଅର୍ଜୁନର ଧନୁ ।

ଗାଣ୍ଡିବୀ, ଗାଣ୍ଡୀବୀ, } ବ. ( ଗାଣ୍ଡିବ-ଇ ) ଅର୍ଜୁନ । ବଂ. ଧାନୁଷ୍କ ।

ଗାତ, ବ. (ଗର୍ତ୍ତ ଶବ୍ଦଜ) ରନ୍ଧ୍ର, ଛିଦ୍ର ।

ଗାତା, ବଂ. (ଗୈ-ତୃ) ଗାୟକ, ଯେ ଗାନ କରେ ।

ଗାତୁ, ବ. ପୁଂ. ( ଗୈ-ତୁ ) କୋକିଳ; ଭ୍ରମର; ଗନ୍ଧର୍ବ । ବଂ. କ୍ରୁଦ୍ଧ ।

ଗାତୁଆ, ବଂ. (ଗର୍ତ୍ତ ଶବ୍ଦଜ) ଯେ ଗର୍ତ୍ତରେ ବାସ କରେ । ଯଥା—ମୂଷିକ, ସର୍ପପ୍ରଭୃତି ।

ଗାତ୍ର, ବ. ନ. (ଗମ୍-ତ୍ର) ଶରୀର, ଅଙ୍ଗ ।

ଗାତ୍ରମାର୍ଜ୍ଜନୀ, ବ. ସ୍ତ୍ରୀ. (ଗାତ୍ର-ମାର୍ଜ୍ଜନୀ) ଗାମୁଛା ।

ଗାଥକ, ବ. ପୁଂ. ( ଗୈ-ଥକ ) ଗାୟକ, ଗାନକାରୀ ।

ଗାଥା, ବ. ସ୍ତ୍ରୀ. ( ଗୈ-ଥ-ଆ ) ଶ୍ଳୋକ, କବିତା; ପଦ୍ୟ; ଛନ୍ଦ; ଗୀତ, ଛନ୍ଦୋବନ୍ଧରେ ରଚିତ କବିତା; ଗାନ, ଗୀତ ।

ଗାଦି, ବ. (ଯାବନିକ ଗଦୀ ଶବ୍ଦଜ ) ସିଂହାସନ, ସମାଧି ।

ଗାଧ, ବ. ପୁଂ. ( ଗାଧ୍-ଅ ) ତଳସ୍ପର୍ଶ; ସ୍ଥାନ; ଲୋଭ । ବଂ. ତଳସ୍ପର୍ଶ ଯୋଗ୍ୟ, ଅଗଭୀର ।

ଗାଧି, ବ. ପୁଂ. ( ଗାଧ-ଇ ) ବିଶ୍ୱାମିତ୍ର ମୁନିର ପିତା, ଚନ୍ଦ୍ରବଂଶୀୟ ନୃପବିଶେଷ । ଯଥା—

> ବଶିଷ୍ଠ ପୃଚ୍ଛେ କମର୍ଥେ ଅଗତ,
> କୌଶିକ ବୋଲେ ଗାଧିରାଜସୁତ । ବୈ. ବ.

ଗାଧିଜ, ଗାଧିସୁତ, } ବ. ପୁଂ. ( ଗାଧି-ଜ, ସୁତ ) ବିଶ୍ୱାମିତ୍ର ଋଷି ।

ଗାଧିପୁର, ବ. ନ. ( ଗାଧି-ପୁର ) ଗାଧି ନୃପର ନଗର, କାନ୍ୟକୁବ୍ଜ ଦେଶ ।

ଗାଧେୟ, ବ. ପୁଂ. (ଗାଧି-ଏୟ) ବିଶ୍ୱାମିତ୍ର ଋଷି ।

ଗାଧୋଇବା, କ୍ରି. ବ. ( ଗାତ୍ର ଧୌତ ଶବ୍ଦଜ ) ସ୍ନାନ କରିବା ।

ଗାନ, ବ. ନ. (ଗୈ-ଅନ) ଗୀତ; ଧ୍ୱନି ।

ଗାନ୍ଥନୀ, (ଗ୍ରନ୍ଥନ ଶବ୍ଦଜ) ମଶଲା ଦେଇ ଇଷ୍ଟକାଦି ବସାଇବା ।

ଗାନ୍ଦିନୀ, ବ. ସ୍ତ୍ରୀ. (ଗୋ-ଦ-ଇନ୍-ଈ) ଗଙ୍ଗାନଦୀ । ଅକ୍ରୂର ମାତା ।

ଗାନ୍ଧର୍ବ, ବଂ. ( ଗନ୍ଧର୍ବ-ଅ ) ଗନ୍ଧର୍ବ ସମ୍ବନ୍ଧୀୟ । ବ.ପୁଂ. ଅଶ୍ୱ; ବିବାହବିଶେଷ, ଏହି ବିବାହରେ ବର କନ୍ୟା ପରସ୍ପର ପ୍ରତି ଅନୁରକ୍ତ ହୋଇ ପରସ୍ପରର ପାଣିଗ୍ରହଣ କରନ୍ତି; ଦ୍ୱୀପବିଶେଷ । ନ. ଗାନ ।

ଗାନ୍ଧାର, ବ. ପୁଂ. (ଗାନ୍ଧ-ଋ-ଅ ଅଥବା ଗନ୍ଧାର-ଅ) ଦେଶବିଶେଷ, କାନ୍ଦାହାର; ସ୍ୱରବିଶେଷ; ରାଗବିଶେଷ । ନ. ସିନ୍ଦୂର; ଗନ୍ଧକ ।

ଗାନ୍ଧାରରାଜ, ବ. ପୁଂ. (ଗାନ୍ଧାର-ରାଜା) ଶକୁନି, ଦୁର୍ଯ୍ୟୋଧନର ମାମୁଁ ।

ଗାନ୍ଧାରୀ, ବ. ସ୍ତ୍ରୀ. (ଗାନ୍ଧାର-ଈ) ଧୃତରାଷ୍ଟ୍ର ମହିଷୀ, ଦୁର୍ଯ୍ୟୋଧନର ମାତା ।

ଗାନ୍ଧାରେୟ, ବ. ପୁଂ. (ଗାନ୍ଧାରୀ-ଏୟ) ଗାନ୍ଧାରୀ-ପୁତ୍ର, ଦୁର୍ଯ୍ୟୋଧନପ୍ରଭୃତି ।

ଗାନ୍ଧିକ, ବ. ପୁଂ. ( ଗନ୍ଧ-ଇକ ) ଗନ୍ଧବଣିକ୍; ଲେଖକ ।

ଗାଭୀ, ବ. ସ୍ତ୍ରୀ. (ଗବୀ ଶବ୍ଦଜ) ଗବୀ, ଗାଈ ।

ଗାମୀ, ବଂ. ( ଗମ୍-ଇନ୍ ) ଯେ ଗମନ କରିବ, ଗମନଶୀଳ; ଏହି ଶବ୍ଦ ସ୍ୱତନ୍ତ୍ର ପ୍ରୟୋଗ ହୁଅଇ ନାହିଁ । ଅନ୍ୟ ଶବ୍ଦର ପରେ ପ୍ରୟୋଗ ହୋଇ-ଥାଏ । ଯଥା—ଦ୍ରୁତଗାମୀ, ବେଗଗାମୀ, ଶୀଘ୍ରଗାମୀ ଇତ୍ୟାଦି ।

ଗାମୁକ, ବଂ. (ଗମ୍-ଉକ) ଗନ୍ତା, ଗମନକାରୀ ।

ଗାମୁଛା, ବ. (ଦେଶଜ) ଗାତ୍ରମାର୍ଜ୍ଜନୀ ।

ଗାମ୍ଭୀର୍ଯ୍ୟ, ବ. ନ. (ଗମ୍ଭୀର-ଯ) ଗମ୍ଭୀରତା, ଅଳ୍ପ କାରଣରେ ବ୍ୟାକୁଳ ବା ଅସ୍ଥିର ନ ହେବା; ପ୍ରଗାଢତା । ଯଥା—ଅର୍ଥର ଗାମ୍ଭୀର୍ଯ୍ୟ, ଭାବର ଗାମ୍ଭୀର୍ଯ୍ୟ; ଅହଙ୍କାରିତା; ଅଗ୍ରଶଳା, ଅଗ୍ରପଳ । ଯଥା—

> ରକ ବୀଣାର ଧୈର୍ଯ୍ୟ ଗାମ୍ଭୀର୍ଯ୍ୟ,
> କେବଳ ପ୍ରବଳା ବର୍ଦ୍ଧି ବଢ଼ଇଣି । ବ. ଯ.

ଗାୟକ, } ବ. (ଗୈ-ଅକ, ଅନ) ଗାନକାରକ;
ଗାୟନ, } ସଙ୍ଗୀତ ବ୍ୟବସାୟୀ ।

ଗାୟତ୍ରୀ, } ବ. ସ୍ତ୍ରୀ. ( ଗାୟତ୍-ତ୍ରୈ-ଅ-ଈ )
ଗାୟତ୍ତ୍ରୀ, } ତ୍ରିପାଦମନ୍ତ୍ରବିଶେଷ; ବେଦମାତା; ଷଡ଼କ୍ଷର ଛନ୍ଦୋବିଶେଷ ।

ଗାର, ବ. (ଦେଶଜ) ଗିର୍, ରେଖା, ଲମ୍ବଦାଗ ।

ଗାରଡ, ବ.(ଗଡ୍ଡୁର ଶବ୍ଦଜ)ଅଣ୍ଡିର୍ମେଣ୍ଢା, ମେଷ ।

ଗାରମା, ବ. ( ପ୍ରା; ଗରମା ଶବ୍ଦଜ ) ଠେକ, ବଡାଇ । ଯଥା—

ଏହିଠାରେ ଥାଇ ଦର୍ଶନେ ନ ଅସ୍ତ,
ଏତେ ଗାରମା ତୋହର । ମଥୁରାମଙ୍ଗଳ ।

ଗାରୁଡ, ବ. ନ. (ଗରୁଡ-ଅ) ବିଷଶାସ୍ତ୍ର, ବିଷମନ୍ତ୍ର; ସ୍ୱର୍ଣ୍ଣ; ମର୍କତମଣି, ହରିତ ବର୍ଣ୍ଣ ରତ୍ନବିଶେଷ; ପୁରାଣବିଶେଷ । ବିଂ. ଗରୁଡ ସମ୍ବନ୍ଧୀୟ ।

ଗାରୁଡଆ, ବ. (ପ୍ରା; ଗାରୁଡ ଶବ୍ଦଜ) ସାପୁଆ-କେଳା । ଯଥା—

ଗ୍ରହ ବ୍ରହ୍ମଲତା ତା ସଙ୍ଗେ ଖେଳଇ,
ମାର ଗାରୁଡଅ ଖେଳାଏ କ ଅଛି । ନ. କେ.

ଗାରୁଡିକ, ବ. ପୁଂ. (ଗରୁଡ-ଇକ) ବିଷବୈଦ୍ୟ ।

ଗାରୁତ୍ମତ, ବ. ନ. (ଗରୁତ୍ମତ୍-ଅ) ମରକତମଣି ।

ଗାର୍ଗି, ବ. ପୁଂ. (ଗର୍ଗ-ଇ) ଗର୍ଗସନ୍ତାନ ।

ଗାର୍ଦ୍ଦଭ, ବିଂ. ( ଗର୍ଦ୍ଦଭ-ଅ ) ଗର୍ଦ୍ଦଭ ସମ୍ବନ୍ଧୀୟ । ବ. ପୁଂ. ଗର୍ଦ୍ଦଭ ଶବ୍ଦ; ଗର୍ଦ୍ଦଭ ମୂତ୍ର ।

ଗାର୍ଦ୍ଧ, ବ. ପୁଂ (ଗର୍ଦ୍ଧ-ଅ) ଅତିତୃଷ୍ଣା ।

ଗାର୍ଦ୍ଧ୍ୟ ବ. ନ. (ଗୃଧ୍ର-ଯ) ଲିପ୍ସା, ଲୋଭ ।

ଗାର୍ହପତ୍ୟ, ବ. ପୁଂ. (ଗୃହପତି-ଯ) ସାଗ୍ନିକ ଗୃହିର ଯଜ୍ଞାଗ୍ନି । ବିଂ. ଗୃହପତି ସଂକ୍ରାନ୍ତ ।

ଗାର୍ହମେଧ, ବ. ପୁଂ. ( ଗୃହମେଧ-ଅ ) ଗୃହସ୍ଥର କର୍ତ୍ତବ୍ୟ ପଞ୍ଚଯଜ୍ଞରୂପ କର୍ମ ।

ଗାର୍ହସ୍ଥ, } ବିଂ. ( ଗୃହସ୍ଥ-ଅ, ଯ ) ଗୃହସ୍ଥ ସମ୍ବନ୍ଧୀୟ । ବ. ପୁଂ. ଦ୍ୱିତୀୟ ଆଶ୍ରମ,
ଗାର୍ହସ୍ଥ୍ୟ, } ଗୃହସ୍ଥାଶ୍ରମ; ଗୃହସ୍ଥଧର୍ମ ।

ଗାଲ, ବ. (ଗଣ୍ଡ ଶବ୍ଦଜ) କପୋଳ, ଗଣ୍ଡ ।

ଗାଲନ, ବ. ନ. ( ଗାଲ୍-ଅନ ) କ୍ଷାଳନ; ତରଳାଇବା ।

ଗାଲବ, ବ. ପୁଂ. (ଗାଲ-ବ) ଲୋଧ୍ରବୃକ୍ଷ; ମୁନି-ବିଶେଷ ।

ଗାଲି, ଗାଳୀ, ବ. ପୁଂ. ( ଗାଲ-ଇ, ଈ ) ଅଭି-ସମ୍ପାତ, ଶାପ; କଟୁବାକ୍ୟ ।

ଗାଲିଚ୍ଚ, ବି. ( ଯାବନିକ ) ମେଷଲୋମ-ନିର୍ମିତ ବିଛଣାବିଶେଷ ।

ଗାଲିତ, ବିଂ. ( ଗାଲ-ତ ) ଦ୍ରବୀଭୂତ, ଯାହା ତରଳ ହୋଇଅଛି ।

ଗାଲିବା, କ୍ରି. ( ଗାଲନ ଶବ୍ଦଜ ) ପେଜ ପ୍ରଭୃତି ନିଗାଡିବା ।

ଗାଲ୍ପ, ବ. (ଦେଶଜ) ମିଛ, ଭଣ୍ଡିବା, ଧପେଇବା, ସତ୍ୟକୁ ମିଛ କରି କହିବା ।

ଗାଲ୍ପିଆ, ବିଂ.(ଦେଶଜ) ମିଛୁଆ, ଭଣ୍ଡ,ଅମାନସ୍ଥା ।

ଗିନା, ବ. (ଦେଶଜ) ଧାତୁନିର୍ମିତ କ୍ଷୁଦ୍ର କଟୋରୀ ।

ଗିର, ଗିଃ, ବ. ସ୍ତ୍ରୀ. (ଗୃ-ଅ,ଂ) ବାକ୍ୟ; ସରସ୍ୱତୀ । ଯଥା—

ଗହନେ ଗମନ କାଳେ ଶ୍ରେରଙ୍କର,
କହି ଯାଉଥିଲେ ଚିବରେ ସେ ଗିର । ନ. କେ.

ଗିର୍, ବ. (ଦେଶଜ) ଗାର, ରେଖା, ଲମ୍ବଦାଗ ।

ଗିରି, ବ. ପୁଂ. ( ଗୃ-ଇ ) ଶୈଳ, ପର୍ବତ; ଚକ୍ଷୁ ରୋଗବିଶେଷ; ସନ୍ନ୍ୟାସିବିଶେଷ; ପରିବ୍ରାଜକ-ମାନଙ୍କର ଉପାଧିବିଶେଷ; ଭକ୍ଷଣ । ସ୍ତ୍ରୀ. ବାଲ-ମୂଷିକ; ଗେଣ୍ଡୁକ ।

ଗିରିକ, ବ. ପୁଂ. ( ଗିରି-କୈ-ଅ) ଶିବ ।

ଗିରିକଣ୍ଟକ, ବ. ପୁଂ. ( ଗିରି-କଣ୍ଟକ ) ଅଶନି, ବଜ୍ର ।

ଗିରିକର୍ଣ୍ଣିକା, ବ. ସ୍ତ୍ରୀ. ( ଗିରି-କର୍ଣ୍ଣ-କ-ଅ ) ପୃଥିବୀ; ଶ୍ୱେତ ଅପରାଜିତା ଲତା ।

ଗିରିକର୍ଣ୍ଣୀ, ବ. ସ୍ତ୍ରୀ. ( ଗିରି=ବାଲମୂଷିକ-କର୍ଣ୍ଣ-ଈ ) ଅପରାଜିତା ।

ଗିରିକା, ବ. ସ୍ତ୍ରୀ. (ଗିରି-କ-ଅ) ଛୋଟ ମୂଷା; ବସୁ-ରାଜାଙ୍କ ପତ୍ନୀ ।

ଗିରିଗୁଡ, ବ. ପୁଂ. ( ଗିରି-ଗୁଡ ) କନ୍ଦୁକ, ଗେଣ୍ଡୁ ।

ଗିରଜ, ବ. ପୁଂ. ( ଗିର-ଜ ) ଅଭ୍ର; ଗୈରିକ; ଶିଳାଜତୁ; ଲୌହ । ବଂ. ଯାହା ପର୍ବତରେ ଜାତ ହୁଅଇ, ଶୈଳଜ ।

ଗିରିଜା, ବ. ସ୍ତ୍ରୀ. ( ଗିର-ଜା ) ଦୁର୍ଗା, ପାର୍ବତୀ; କ୍ଷୁଦ୍ର ପାଷାଣଭେଦ ଲତା; ବାୟମାଣ ଲତା; ଗିରିମଲ୍ଲିକା; ଗିରିକଦଳୀ; କ୍ଷୁଦ୍ର ପାଷାଣବିଶେଷ ।

ଗିରିଜାମଳ, ବ, ନ. (ଗିରିଜ-ଅମଳ) ଅଭ୍ରକ ।

ଗିରିଜ୍ୱର, ବ. ପୁଂ. ( ଗିରି-ଜ୍ୱର ) ଅଶନି, ବଜ୍ର ।

ଗିରତ, ବଂ. (ଗୃ-ତ) ଭକ୍ଷିତ, ଗିଳିତ ।

ଗିରିଦୁର୍ଗ, ବ. ନ. ( ଗିରି-ଦୁର୍ଗ ) ଗିରିରୂପ ଦୁର୍ଗ, ଦୁର୍ଭେଦ୍ୟ ଗଡ଼ । ଯଥା—

ଜଗସନେ ବଧିଥିଲେ ଗିରିଦୁର୍ଗେ ପଶି,
ବାୟୁସୁତ ବୃକୋଦର କେଶବ କୌଶଳେ । ମ. ଯା.

ଗିରିଧର, ବ. ପୁଂ. ( ଗିରି-ଧର ) ଶ୍ରୀକୃଷ୍ଣ, ମନ୍ଦର ପର୍ବତକୁ ଧାରଣ କରିଥିବାରୁ ତାହାଙ୍କର "ଗିରିଧର" ନାମ ହୋଇଅଛି । ଯଥା—

ଗିରିଧର ବେଶ ବସନେ ପ୍ରସନ୍ନ ଲେଶ ନାହିଁ ବଶୀ ଘର ।
ଘ. ସା.

ଗିରିଧାତୁ; ବ. ନ. ଉପଧାତୁବିଶେଷ, ଗିରିମାଟି, ଗୈରିକ ।

ଗିରିନନ୍ଦିନୀ, ବ. ସ୍ତ୍ରୀ. ( ଗିରି-ନନ୍ଦିନୀ ) ପାର୍ବତୀ, ଗଙ୍ଗା; ନଦୀ ।

ଗିରିପ୍ରିୟା, ବ. ସ୍ତ୍ରୀ. ଚମରୀମୃଗ ।

ଗିରିବ୍ରଜ, ବ. ନ. ବେହାରର ଅନ୍ତର୍ଗତ ନଗରବିଶେଷ ।

ଗିରିଭୂ, ବ. ସ୍ତ୍ରୀ. ( ଗିରି-ଭୂ ) ପାର୍ବତୀ; କ୍ଷୁଦ୍ର ପ୍ରସ୍ତରବିଶେଷ; ଗଙ୍ଗା ।

ଗିରିମଲ୍ଲିକା, ବ. ସ୍ତ୍ରୀ. ( ଗିରି-ମଲ୍ଲିକା ) କୁଟଜବୃକ୍ଷ ।

ଗିରିମୃଦ୍, ବ. ସ୍ତ୍ରୀ. ( ଗିରି-ମୃଦ୍ ) ଗିରିମାଟି ।

ଗିରିମେଦ, ବ. ପୁଂ. ଖଦିରବିଶେଷ ।

ଗିରିଶ; ବ. ପୁଂ. ( ଗିରି=(ଏଠାରେ କୈଳାସ ପର୍ବତ )-ଶ=ଯେ ଶୟନ କରଇ ) ଶିବ, ମହାଦେବ ।

ଗିରିଶୃଙ୍ଗ, ବ. ପୁଂ. ( ଗିରି-ଶୃଙ୍ଗ ) ଗଣେଶ; ପର୍ବତର ଚୂଡ଼ା ।

ଗିରିସଙ୍କଟ, ବ. (Mountain pass) ପର୍ବତଶ୍ରେଣୀର ମଧ୍ୟରେ ସ୍ଥିତ ସଙ୍କୀର୍ଣ୍ଣ ଜମିଭୂମି ।

ଗିରିସାର, ବ. ପୁଂ. (ଗିରି-ସାର) ମଳୟପର୍ବତ; ଲୌହ; ଟିନ ।

ଗିରିସୁତ, ବ, ପୁଂ. ମୈନାକ ପର୍ବତ ।

ଗିରିସୁତା, ବ. ସ୍ତ୍ରୀ. (ଗିରି-ସୁତା) ପାର୍ବତୀ ।

ଗିରୀନ୍ଦ୍ର, ବ. ପୁଂ. (ଗିରି-ଇନ୍ଦ୍ର) ହିମାଳୟ । ବଂ. ପର୍ବତଶ୍ରେଷ୍ଠ ।

ଗିରୀଶ, ବ. ପୁଂ. ( ଗିରି-ଈଶ ) ଶିବ; ହିମାଳୟ ପର୍ବତ । ଯଥା—

ଗିରିଷମସାର ରେ ସମା ଗିରିଷମସାର,
ବେଦ ମୁଁ ପାଉଛି ଚୋଟେ ଗିରୀଶ ମଜାର । ଘ. ସା.

ଗିଲ, ବ. (ଦେଶଜ) ଫଳବିଶେଷ ।

ଗିଳନ, ବ. ନ. (ଗୃ-ଅନ; ଋ=ଇର; ର୍=ଲ୍) ଗ୍ରାସ କରିବା, ଦନ୍ତର ସାହାଯ୍ୟ ନ ନେଇ ଏକାବେଳକେ ଉଦରସ୍ଥ କରିବା ।

ଗିଳା, ବଂ. ଯେ ବହୁତ ଖାଏ, ପେଟା ।

ଗିଳିତ, ବଂ. (ଗୃ-ତ) ଭକ୍ଷିତ, ଗ୍ରସ୍ତ ।

ଗିଳିବା, କ୍ରି. ବ. ( ପ୍ରା; ଗିଳନ ଶବ୍ଦଜ ) ଗ୍ରାସ କରିବା, ଗଳାଧଃ କରିବା ।

ଗିଷ୍ଣୁ, ବ. ପୁଂ. (ଗୈ-ଇଷ୍ଣୁ) ସାମବେଦଜ୍ଞ ବ୍ରାହ୍ମଣ; ଗାୟକ ।

ଗୀତ, ବ. ନ. (ଗୈ-ତ) ଗାନ, ସଙ୍ଗୀତ । ବଂ. ବର୍ଣ୍ଣିତ, ଉଚ୍ଚାରିତ ।

ଗୀତଗୋବିନ୍ଦ, ବ. ପୁଂ. ଜୟଦେବକୃତ ଶ୍ରୀକୃଷ୍ଣ ଚରିତାଖ୍ୟାନ ଗ୍ରନ୍ଥବିଶେଷ ।

ଗୀତମୋଦୀ, ବ. ପୁଂ. (ଗୀତ-ମୋଦନ୍) କିନ୍ନର; ସ୍ୱର୍ଗଗାୟକ ।

ଗୀତା, ବ. ସ୍ତ୍ରୀ. ( ଗୈ-ତ-ଆ ) ଉପଦେଶଗର୍ଭକ କଥାବିଶେଷ; ଗ୍ରନ୍ଥବିଶେଷ ।

ଗୀତ, ବ. ସ୍ତ୍ରୀ. ( ଗୈ-ତ ) ଗାନ; ଛନ୍ଦୋ-ବଶେଷ । ଯଥା—

> କାଶକାପେ ଜନଦେବୀ ଗୀତବେଳ-
> ସଙ୍ଗେ ମିଶେ ଜଳତରଙ୍ଗ ଦଶ୍ଳୋକ । ନ. ବେ.

ଗୀରଥ, ବ. ପୁଂ. ( ଗିର୍-ରଥ ) ବୃହସ୍ପତି ।

ଗୀର୍ଣ୍ଣ, ବଂ. (ଗୃ-ତ) ପ୍ରଶଂସିତ; କଥିତ; ଗିଳିତ, ଭକ୍ଷିତ; ସ୍ୱୀକୃତ ।

ଗୀର୍ତ୍ତି, ବ. ସ୍ତ୍ରୀ. (ଗୃ-ତି) ଗ୍ରାସ, ଭକ୍ଷଣ; ପ୍ରଶଂସା, ସ୍ତୁତି ।

ଗୀର୍ଦ୍ଦେବୀ, ବ. ସ୍ତ୍ରୀ. ( ଗିର୍-ଦେବୀ ) ବାଗଦେବୀ, ସରସ୍ୱତୀ ।

ଗୀର୍ବାଣ, ବ. ପୁଂ. ( ଗିର୍-ବାଣ ) ଦେବତା । ଯଥା—

> ଗୀର୍ବାଣାଦ ବୃନ୍ଦ ବୃନ୍ଦ ବୋଧବୋଧ୍ୟ ।

ଗୀର୍ବାଣକୁସୁମ, ବ. ନ. ଲବଙ୍ଗ ।

ଗୀଷ୍ପତି, ବ. ପୁଂ. ( ଗିର୍-ପତି ) ଦେବଗୁରୁ, ବୃହସ୍ପତି; ପଣ୍ଡିତ ।

ଗୁଆ, ବ. (ପ୍ରା; ଗୁବାକ ଶବ୍ଦଜ) ଗୁବାକ ।

ଗୁଆଁସ୍ତ୍ରୀ, ବ. (ଯାବନକ) ନବୋଧ ସ୍ତ୍ରୀ । ଯଥା—

> ଦେଖିବ ଅତୁଳ ଭଣିବ ଦନ୍ତ ଦେଇ ଗୁଆଁସ,
> ବନଜ ହେବାକୁ ଶକସ ରମା ହେବେ ଅରୁଷ ।

ଗୁଆଳୀ, ବ. ( ପ୍ରା ) ଗୌଡୁଣୀ, ଗୋପାଳୁଣୀ । ଯଥା—

> ବସେ ବ ଦେଜ ବରୁରୁ ଗୁଆଳୀ,
> ଚୋର ବ କସ ମୋର ବନମାଳୀ । ଗୋ. ସ.

ଗୁଗ୍ଗୁଳ, ଗୁଗ୍ଗୁଲୁ, } ବ. ପୁଂ. ବୃକ୍ଷବଶେଷର ନର୍ଯ୍ୟାସ, ସୁଗନ୍ଧଦ୍ରବ୍ୟବଶେଷ ।

ଗୁଚ୍ଛ, ବ. ପୁଂ. (ଗୁ=ଶବ୍ଦ କରବା-ଛ) ସ୍ତବକ, ପୁଷ୍ପଶ୍ରେଣୀ । ଯଥା—

> ସୁନତ ଶାଳଚୂର୍ଣ ଏବେ କେଦାରେ,
> ମଣ୍ଡଳ ତଣ୍ଡୁଳ ଗୁଚ୍ଛର ସ୍ୱରେ । ବୁ. ସ୍ତ.

ଗୁଚ୍ଛ, ଗୁଚ୍ଛକ, } ବ. ପୁଂ. (ଗୁଧ୍=ଖେଳା କରବା-ଛ) ସ୍ତବକ, ପୁଷ୍ପର ଗୋଛା; ତୃଣାଦର ଗୋଛା; ମଲ୍ଲିକାଦଗଛ; ମୁକ୍ତାମାଳା ; ମୟୂରପୁଚ୍ଛ ।

ଗୁଚ୍ଛଦନ୍ତିକା, ବ. ସ୍ତ୍ରୀ. ( ଗୁଚ୍ଛଦନ୍ତ-ଇକ-ଆ ) କଦଳୀବୃକ୍ଷ ।

ଗୁଚ୍ଛପତ୍ର, ବ. ପୁଂ. (ଗୁଚ୍ଛ-ପତ୍ର) ତାଳଗଛ ।

ଗୁଚ୍ଛପୁଷ୍ପ, ବ. ପୁଂ. (ଗୁଚ୍ଛ-ପୁଷ୍ପ) ଛତିଅନାଗଛ ।

ଗୁଚ୍ଛଫଳା, ବ. ସ୍ତ୍ରୀ. (ଗୁଚ୍ଛ-ଫଳ-ଆ) ଦ୍ରାକ୍ଷାଲତା; କଦଳୀବୃକ୍ଷ ।

ଗୁଜରାଟ, ବ. ( ଗୁର୍ଜ୍ଜର ଶବ୍ଦଜ ) ଦାକ୍ଷିଣାତ୍ୟର ଜନପଦବଶେଷ ।

ଗୁର୍ଜ୍ଜରୀ, ବ. ସ୍ତ୍ରୀ. ରାଗିଣୀବଶେଷ ।

ଗୁଞ୍ଜ, ବ. ପୁଂ. ( ଗୁନ୍ଜ-ଅ ) ଗୁଚ୍ଛ, ସ୍ତବକ; ଗୁଞ୍ଜନ; କାଇଞ୍ଚଗଛ ଓ ଫଳ । ଯଥା—

> ତାଙ୍କ ଭୁଲେ ଅମେ ମାନବଗ ହେଲେ ଗୁଞ୍ଜଫଳ ପରଦର୍ଶୁଁ,
> ତନ୍ନ୍ୟାକ ଅନୁରାଗେ ପୂରଥାଇ ମୁଖରେ ତନପ୍ରକାଶୁଁ ।

ଗୁଞ୍ଜକୃତ୍, ବ. ପୁଂ. (ଗୁଞ୍ଜ-କୃତ୍) ଭ୍ରମର ।

ଗୁଞ୍ଜନ, ଗୁଞ୍ଜିତ, } ବ. ନ. (ଗୁଞ୍ଜ-ଅନ,ତ ) ଗୁଣୁଗୁଣୁ ଶବ୍ଦ ।

ଗୁଞ୍ଜର, ବ. (ଗୁଞ୍ଜ ଶବ୍ଦଜ) ଗୁଣୁଗୁଣୁ ଶବ୍ଦ; ପକ୍ଷିବଶେଷ ।

ଗୁଞ୍ଜା, ବ. ନ. ( ଗୁନ୍ଜ-ଆ ) ରତି; କାଇଞ୍ଚ; ଅବ୍ୟକ୍ତ ମଧୁରଧ୍ୱନ; ମଦରାଗୃହ; ପଟହ, ଢୋଲ; ପରମାଣବଶେଷ ।

ଗୁଞ୍ଜିକା, ବ. ସ୍ତ୍ରୀ. (ଗୁଞ୍ଜା-କ-ଆ) ଗୁଞ୍ଜା, କାଇଞ୍ଚ ।

ଗୁଟି, ଗୁଟିକା, ଗୁଟୀ, ବ. ସ୍ତ୍ରୀ. ( ଗୁଡ୍=ବେଷ୍ଟନ କରବା-ଇ, ଇକ-ଆ, ଈ ) ବଟିକା; ଗୁଳି ।

ଗୁଟିକାପାତ, ବ. ପୁଂ. ( ଗୁଟିକା-ପାତ ) ସୁରତିଖେଳ ।

ଗୁଡ଼, ବ. ପୁଂ. ( ଗୁ-ଡ଼ ) ଇକ୍ଷୁରସପ୍ରଭୃତି-ଜାତ ମିଷ୍ଟଦ୍ରବ୍ୟବଶେଷ; ଗ୍ରାସ; ଗୋଲାକାର ବସ୍ତୁ; ହସ୍ତୀର ସଜ୍ଜା ।

ଗୁଡ଼କ ବ. ପୁଂ. (ଗୁଡ଼-କ) ଗୁଡ଼ଦ୍ୱାରା ପକ୍ୱ ଔଷଧବଶେଷ ।

ଗୁଡ଼କଣ୍ଟ, ବ. ଫଳବଶେଷ । ଯଥା—

> ନାନାଜାତ ପୁଷ୍ପପବଗ ଧାରେ ହରେ ଷମୀତ,
> ଗୁଡ଼କଣ୍ଟ ଦେନ କଦମ୍ବ କ୍ରୀଡ଼ା କରେ ଷମୀର । ଚ. ସ.

ଗୁଡ଼କଶ୍ରୀ, ବ. ସ୍ତ୍ରୀ. ରାଗିଣୀବଶେଷ ।

ଗୁଡରୀ, ଗୁଡ଼ରୀ, ଗୁଡୂରୀ, ଗୁଡ଼ୁରୀ, } ବ. ସ୍ତ୍ରୀ. (ଗୁଡ-ଅର, ଉର, ଊର) ଗୁଳଞ୍ଚଲତା ।

ଗୁଡ଼ତୃଣ, ଗୁଡ଼ଦାରୁ, ବ. ନ. ଇକ୍ଷୁ ।

ଗୁଡ଼ତ୍ୱଚ୍, ସ୍ତ୍ରୀ. } ବ. (ଗୁଡ଼ତ୍ୱଚ୍, ତ୍ୱଚ) କସ୍ତୂରୀ;
ଗୁଡ଼ତ୍ୱଚ, ନ. } ଦାରୁଚିନି ।

ଗୁଡ଼ପୁଷ୍ପ, ବ. ପୁଂ. (ଗୁଡ଼-ପୁଷ୍ପ) ମଧୂକବୃକ୍ଷ, ମହୁଲି-ଗଛ ।

ଗୁଡଭୂ, ବ. ସ୍ତ୍ରୀ. (ଗୁଡ଼-ଭୂ-ଅ) ଶର୍କରାବିଶେଷ ।

ଗୁଡ଼ମୂଳ, ବ. ପୁଂ. (ଗୁଡ଼-ମୂଳ) କ୍ଷୁଦ୍ରମାରିଷ ଶାକ ।

ଗୁଡ଼ଳ, ବ. ନ. ( ଗୁଡ଼-ଳ ) ଗୁଡ଼ଦ୍ୱାରା ପ୍ରସ୍ତୁତ ମଦ୍ୟବିଶେଷ । ବିଂ. ଗୁଡ଼ୋତ୍ପନ୍ନ, ଗୁଡ଼ଜ ।

ଗୁଡଶର୍କରା, ବ. ସ୍ତ୍ରୀ. (ଗୁଡ-ଶର୍କରା) ଉତ୍ତମ ଚିନି ।

ଗୁଡ଼ାଇବା, କ୍ରି. ବ. ( ଦେଶଜ ) ବେଢ଼ାଇବା । ଯଥା—

ବ ସ୍ନେହେ ନେଇଁ ଚଢ଼ାରେ ଗୁଡ଼ାଇ ସେ ।

ଗୁଡ଼ାଏ,ଗୁଡ଼ାକ,(ଅମାନ୍ୟାର୍ଥରେ) } ଅଂ.ଅନେକ
ଗୁଡିଏ,ଗୁଡିକ,(ମାନ୍ୟାର୍ଥରେ) } ପରିମାଣ ।

ଗୁଡ଼ାକା, ବ. ସ୍ତ୍ରୀ. ( ଗୁଡ଼-ଅକ-ଆ ) ତନ୍ଦ୍ରା, ଆଳସ୍ୟ; ନିଦ୍ରା ।

ଗୁଡ଼ାକେଶ, ବ. ପୁଂ. ( ଗୁଡ଼ା=ସିଜୁଗଛ-କେଶ, ଯାହାର କେଶ ସିଜୁଗଛ ପରି କିମ୍ବା ଗୁଡ଼ାକା=ନିଦ୍ରା-ଈଶ=ପ୍ରଭୁ) ମହାଦେବ,ଶିବ; ଅର୍ଜୁନ ।

ଗୁଡ଼ାଖୁ, ବ. (ଦେଶଜ) ଗୁଡ଼ମିଶା ଖୁ ।

ଗୁଡ଼ାଚଳ. ବ. ଦାନ ନିମିତ୍ତ କଳ୍ପିତ ଗୁଡ଼ନିର୍ମିତ ମେରୁରୂପ ପର୍ବତ; ଅର୍ଯ୍ୟଶାସ୍ତ୍ରରେ କଳ୍ପିତ ଅଛି ମନୁଷ୍ୟମାନେ ଗୁଡ଼ାଚଳ ଦାନରେ ସ୍ୱର୍ଗ ଲାଭ କରନ୍ତି ।

ଗୁଡ଼ିଆ, ବ. (ଗୁଡ଼ ଶବ୍ଦଜ) ମିଷ୍ଟାନ୍ନ ପ୍ରସ୍ତୁତକାରୀ ଜାତିବିଶେଷ । ବିଂ. ସୁମିଷ୍ଟ ।

ଗୁଡ଼ୋଦ୍ଭବା, ବ. ସ୍ତ୍ରୀ. (ଗୁଡ-ଉଦ୍ଭବ-ଆ) ଶର୍କରା, ଚିନି ।

ଗୁଣ, ବ. ପୁଂ. (ଗୁଣ୍-ଅ) ଉତ୍କର୍ଷ; ପ୍ରକୃତିର ଧର୍ମ, ଯଥା—ସତ୍ତ୍ୱ, ରଜଃ, ତମଃ; ମନରେ ଯେଉଁ ଧର୍ମ ଥିବାରୁ ଲୋକ ପ୍ରଶଂସନୀୟ ହୁଏ । ଯଥା—ଦୟା, ଦାକ୍ଷିଣ୍ୟ, ବିନୟ, ସୌଜନ୍ୟ ଇତ୍ୟାଦି; ଯହିଁରେ ଅମ୍ଭର ଉତ୍କର୍ଷ ସମ୍ପାଦନ ହୁଏ । ଯଥା—ଜ୍ଞାନ, ବିଦ୍ୟା ପ୍ରଭୃତି; ଯାହା ଥିବାରୁ ଶରୀର ସୁନ୍ଦର ବୋଲି ଗଣନୀୟ ହୁଏ । ଯଥା—ରୂପ,ଲାବଣ୍ୟ ଇତ୍ୟାଦି;ଅଳଙ୍କାରରେ ଉତ୍କର୍ଷବ୍ୟଞ୍ଜକ ଧର୍ମ । ଯଥା—ଓଜଃ, ପ୍ରସାଦ, ଲାଳିତ୍ୟ ପ୍ରଭୃତି; ଯେଉଁ ଧର୍ମ ଥିବାରୁ ଜାତି ପଦାର୍ଥର ପରସ୍ପର ଭେଦଜ୍ଞାନ ହୁଏ । ଯଥା—ଶୁକ୍ଳ, କୃଷ୍ଣ ଇତ୍ୟାଦି; ବ୍ୟାକରଣରେ ସ୍ୱରର ପରିବୃତ୍ତିବିଶେଷ । ଯଥା—ଇ, ଈ ସ୍ଥାନରେ ଏ ଇତ୍ୟାଦି; ରଥ ଓ ନୌକା ଟାଣି ନେବା-ପାଇଁ ମାସ୍ତୁଲରେ ବନ୍ଧା ରଜ୍ଜୁ; ଅବୃତ୍ତି; ଫଳ; ଉପକାର; ଗୁଣନ; ଧନୁରେ ଦିଆ ଯାଇଥିବା ରଜ୍ଜୁ, ଜ୍ୟା; ନ୍ୟାୟମତରେ ରୂପରସାଦି ଚତୁର୍ବିଂଶତି ପଦାର୍ଥ; ଯଶଃ; ଶରୀରସ୍ଥ କଫ ପିତ୍ତାଦି; ଅପ୍ରଧାନ; ସୂତ୍ର, ରଜ୍ଜୁ; ଇନ୍ଦ୍ରିୟ; ଅଭ୍ୟାସ; ବୃଦ୍ଧି; ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱୈଧ, ଆଶ୍ରୟ ଏହି ଛ ପ୍ରକାର ନୃପଗୁଣ ।

ଗୁଣକ, ବ. ପୁଂ. ( ଗୁଣ୍-ଅକ ) ଯେଉଁ ଅଙ୍କଦ୍ୱାରା ଅନ୍ୟ ଅଙ୍କକୁ ଗୁଣ କରାଯାଏ ସେହି ଅଙ୍କ । ବିଂ. ଯେ ଗୁଣ କରେ ।

ଗୁଣକାର, ବ. ପୁଂ. ( ଗୁଣ-କାର ) ଭୀମସେନ । ବିଂ. ଗୁଣକାରକ, ଉପକାରୀ ।

ଗୁଣଗୃହ୍ୟ, ବିଂ. (ଗୁଣ-ଗୃହ୍ୟ) ଗୁଣର ପକ୍ଷପାତୀ ।

ଗୁଣଗ୍ରାହ୍ୟ, ଗୁଣଜ୍ଞ, ବିଂ. ( ଗୁଣ-ଗ୍ରାହ୍ୟ, ଜ୍ଞ ) ଯେଉଁ ବ୍ୟକ୍ତି ଗୁଣ ଗ୍ରହଣ କରି ପାରଇ ।

ଗୁଣତ୍ରୟ, ବ. ନ. ସତ୍ତ୍ୱ, ରଜଃ, ତମଃ ଏହି ତିନି ଗୁଣ ।

ଗୁଣନ, ବ. ନ. ( ଗୁଣ୍-ଅନ ) ମନ୍ତ୍ରଣା; ଅଭ୍ୟାସ; ପୂରଣ, ଏକ ଅଙ୍କଦ୍ୱାରା ଅନ୍ୟ ଅଙ୍କକୁ ଗୁଣ କରିବା ।

ଗୁଣନକା, ବ. ସ୍ତ୍ରୀ. ( ଗୁଣନ-କ-ଆ ) ଗୁଣନ; ଅଭ୍ୟାସ; ନୃତ୍ୟ; ଶୂନ୍ୟ, (୦) ।

ଗୁଣନା, ବି. ସ୍ତ୍ରୀ. ବସ୍ତୁର ସଂଖ୍ୟା ପରିମାଣ ପ୍ରଭୃତିର ପରୀକ୍ଷା କରିବା ।

ଗୁଣନୀୟ, ବିଂ. ( ଗୁଣ୍-ଅନୀୟ ) ଯେଉଁ ଅଙ୍କରେ ଗୁଣ କରିବାକୁ ହେବ, ଗୁଣ୍ୟ ।

ଗୁଣନୀୟକ, ବି. ପୁଂ. (ଗୁଣନୀୟ-କ) ଯେଉଁ ରାଶି-ଦ୍ୱାରା ଅଉ ଗୋଟିଏ ରାଶିକୁ ଭାଗ କଲେ କିଛି ମାତ୍ର ଭାଗଶେଷ ନ ଥାଏ ତାହା ଦ୍ୱିତୀୟ ରାଶିର ଗୁଣନୀୟକ ।

ଗୁଣପନ୍ଥ, ବି. (ଗୁଣପଥିନ୍ ଶବ୍ଦଜ) ଧର୍ମର ତାତ୍ପର୍ଯ୍ୟ ପ୍ରକାଶକ ଶାସ୍ତ୍ର, ଯହିଁରେ ନାନା ମତର ମର୍ମ ଭେଦ କରି ଧର୍ମର ପ୍ରକୃତ ତାତ୍ପର୍ଯ୍ୟ ବିବୃତ ଅଛି ।

ଗୁଣପୂର୍ଣ୍ଣ, ବି. ପୁଂ. (ଗୁଣ-ପୂର୍ଣ୍ଣ) ଗୁଣାକର, ଗୁଣାଧାର ।

ଗୁଣଭୃତ୍, ବିଂ. (ଗୁଣ-ଭୃ-୦) ଗୁଣଧାରୀ, ଗୁଣବାନ୍ । ବି. ପୁଂ. ପରମେଶ୍ୱର ।

ଗୁଣମୟ, ବିଂ. (ଗୁଣ-ମୟ) ପ୍ରଭୃତି ଗୁଣସମ୍ପନ୍ନ ।

ଗୁଣଲୟନିକା, ବି. ସ୍ତ୍ରୀ. (ଗୁଣ-ଲୀ-ଅନ-ଇ-କ-ଆ) ବସ୍ତ୍ରନିର୍ମିତ ଗୃହ, ତମ୍ବୁ ।

ଗୁଣଲୁବ୍ଧ, ବିଂ. (ଗୁଣ-ଲୁବ୍ଧ) ଗୁଣଗ୍ରାହୀ ।

ଗୁଣବତ୍ତା, ବି. ସ୍ତ୍ରୀ. ( ଗୁଣବତ୍-ତା ) ଗୁଣଶାଳତା, ଗୁଣ ଥିବାର ।

ଗୁଣବତୀ, ବିଂ. (ଗୁଣ-ବତ୍-ଈ) ଯାହାର ଗୁଣ ଅଛି, ଗୁଣବିଶିଷ୍ଟା ।

ଗୁଣବାଚକ, ବିଂ. (ଗୁଣ-ବାଚକ) ଯାହା ବସ୍ତୁ ବା ବ୍ୟକ୍ତିର ଗୁଣକୁ ବ୍ୟକ୍ତ କରଇ ।

ଗୁଣବାନ୍, ବିଂ. ( ଗୁଣ-ବତ୍ ) ଗୁଣବିଶିଷ୍ଟ । ଯଥା—

> ଦନ୍ ଦନ୍ ଅଧିକ ଗୁଣବାନ,
> ତେଜ କାନ୍ତି ଗୁଣେ ବଶମାନ । ପ୍ରେ. ସୁ.

ଗୁଣବୃକ୍ଷ, ବି. ପୁଂ. ( ଗୁଣ-ବୃକ୍ଷ ) ଜାହାଜର ମାସ୍ତୁଲ ।

ଗୁଣଶାଳୀ, ବିଂ. ( ଗୁଣ-ଶାଲ-ଇନ୍ ) ଗୁଣବାନ୍, ଯାହାର ଗୁଣ ଅଛି ।

ଗୁଣଶୂନ୍ୟ, ବିଂ. (ଗୁଣ-ଶୂନ୍ୟ) ଯାହାର କୌଣସି ଗୁଣ ନାହିଁ, ଗୁଣହୀନ ।

ଗୁଣସଙ୍ଗ, ବି. ପୁଂ. ( ଗୁଣ-ସଙ୍ଗ ) ସୁଖ ଦୁଃଖରେ ଆସକ୍ତି ।

ଗୁଣସାଗର, ବି. ପୁଂ. (ଗୁଣ-ସାଗର) ବ୍ରହ୍ମା; ବୁଦ୍ଧ-ବିଶେଷ । ବିଂ. ସକଳ ଗୁଣର ସାଗର ।

ଗୁଣସ୍ତମ୍ଭ, ବି. ପୁଂ. (ଗୁଣ-ସ୍ତମ୍ଭ) ଗୁଣବୃକ୍ଷ,ଜାହାଜର ମାସ୍ତୁଲ ।

ଗୁଣା, ବି. ( ଦେଶଜ ) ସ୍ତ୍ରୀମାନଙ୍କ ନାସିକାର ଅଳଙ୍କାରବିଶେଷ । ଯଥା—

> ଫୁଲଗୁଣା ନ:ଠଗୁଣା, ଦବେକ କରଇ ବଣା,
> କାସା ପୁଃକେ ପୁଃକେ ଥାଇ ଝଃକେ ଯେ । ଲ. ବ.

ଗୁଣାବଳୀ, ବି. ସ୍ତ୍ରୀ. (ଗୁଣ-ଆବଳୀ) ଗୁଣକଥା ।

ଗୁଣିବା, କ୍ରି. ବି. (ପ୍ରାକୃତଜ) ସ୍ମରଣ କରିବା; ସୁମରିବା; ଘାତ କରିବା । ଯଥା—

୩ × ୪ = ୧୨ ।

ଗୁଣିଆ, ବି. ( ଗୁଣିନ୍ ଶବ୍ଦଜ ) ଐନ୍ଦ୍ରଜାଲିକ । ଯଥା—

> ବନ୍ଧୁରେ ଭୂ ମୋ ଗୁଣିଅଗୁରୁ,
> ବରତ ଦେ ଯିବ ତୋହ ଅଗରୁ ।

ଗୁଣିତ, ବିଂ. (ଗୁଣ-ତ) ପୂରିତ, ଅନ୍ୟ ଅଙ୍କଦ୍ୱାରା ଯେଉଁ ଅଙ୍କରେ ଗୁଣ କରା ହୋଇଅଛି ।

ଗୁଣିତକ, ବି. ପୁଂ. ( ଗୁଣିତ-କ ) ଯେଉଁ ରାଶିକୁ ଅପର ଗୋଟିଏ ରାଶିଦ୍ୱାରା ଭାଗ କଲେ କିଛିମାତ୍ର ଭାଗଶେଷ ନ ଥାଏ ତାହା ଦ୍ୱିତୀୟ ରାଶିର ଗୁଣିତକ ।

ଗୁଣୀ, ବିଂ. (ଗୁଣ-ଇନ୍) ଗୁଣବାନ୍; ଗୁଣବିଶିଷ୍ଟ; ଧର୍ମୀ । ବି. ପୁଂ. ଧନୁ ।

ଗୁଣୀଭୂତ, ବିଂ. ( ଗୁଣ-ଭୂ-ତ; ଈ ଆଗମ ) ଅପ୍ରଧାନଭାବରେ ଅବସ୍ଥିତ ।

ଗୁଣୁଗୁଣୁ, ବି. (ପ୍ରା) ଭ୍ରମର ଶବ୍ଦ; ଶବ୍ଦବିଶେଷ ।

ଗୁଣେଶ୍ୱର, ବି. ପୁଂ. (ଗୁଣ-ଈଶ୍ୱର) ଚିତ୍ରକୂଟ ପର୍ବତ; ଗୁଣର ଆଧାର ।

ଗୁଣୋପେତ, ବି° ( ଗୁଣ-ଉପେତ ) ଗୁଣଶାଳୀ, ଗୁଣବାନ୍ ।

ଗୁଣ୍ଠ, ବି. ( ଦେଶଜ ) ଏକମାଣର ପଚିଶ ଭାଗର ଏକ ଭାଗ ।

ଗୁଣ୍ଠନ, ବି. ନ. (ଗୁଣ୍ଠ-ଅନ) ବେଷ୍ଟନ, ଆବରଣ ।

ଗୁଣ୍ଠିତ, ବି°. (ଗୁନ୍ଠ୍-ତ) ଆବୃତ, ଆଚ୍ଛାଦିତ ।

ଗୁଣ୍ଡ, ବି. ପୁ°. ( ଗୁନ୍ଡ୍-ଅ ) ଚୂର୍ଣ୍ଣ; ମଳିନ, ମଇଳା; ତୃଣବିଶେଷ ।

ଗୁଣ୍ଡ, ଗୁଣ୍ଡି, ବି. (ଗୁଣ୍ଡ ଶବ୍ଦଜ) ଧୂଆଁପତ୍ର ଓ ଭଜା ଧଣିଆ ପ୍ରଭୃତିରେ ପ୍ରସ୍ତୁତ ପାନରେ ଖାଇବା ପଦାର୍ଥବିଶେଷ; ଚୂର୍ଣ୍ଣ ।

ଗୁଣ୍ଡକ, ବି. ପୁ°. (ଗୁଣ୍ଡ-ଅକ) ଚୂର୍ଣ୍ଣ; ମଇଳା ।

ଗୁଣ୍ଡା, ବି. ( ଦେଶଜ ) ଧୂଳି; କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ; ଅନ୍ୟ ଲୋକଙ୍କର ମାରିବାବିଶେଷ ।

ଗୁଣ୍ଡିକ, ବି. ପୁ°. ସ୍ତ୍ରୀ. ( ଗୁନ୍ଡ୍-ଅକ, ଇ ଆଗମ) ତଣ୍ଡୁଳାଦି ଚୂର୍ଣ୍ଣ ।

ଗୁଣ୍ଡିଚା, ବି. ଜଗନ୍ନାଥ ଦେବଙ୍କର ଉତ୍ସବବିଶେଷ । ଯଥା—

> ସ୍ନାନ ଗୁଣ୍ଡିଚା ଏ ବେନି ସୁସଂଗତା ଯାତ,
> ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର ହେ । କୋ. ଚି.

ଗୁଣ୍ଡିତ, ବି°. ( ଗୁଣ୍ଡ-ତ ) ଚୂର୍ଣ୍ଣିତ, ଯାହା ଚୂର୍ଣ୍ଣ କରା ହୋଇଅଛି, ଚୂର୍ଣ୍ଣଯୁକ୍ତ ।

ଗୁଣ୍ଡୁଚିମୂଷା, ବି. ପୁ°. ପର୍ଣ୍ଣମୃଗ; ମୂଷିକବିଶେଷ । ଯଥା—

> କପୋତେ ସବଳେ ଚଲୁଷଣ୍ଡେ ଲୁଚି,
> ପତ୍ର ଅନ୍ତରାଳେ ସବଳେ ଗୁଣ୍ଡୁଚି । ନ. କେ.

ଗୁଣ୍ୟ, ବି°. ( ଗୁଣ୍-ଯ ) ଗୁଣନୀୟ, ଯାହାକୁ ଗୁଣ କରାଯାଏ ।

ଗୁତ୍ସ, ବି. ପୁ°. ( ଗୁଧ୍-ସ ) ସ୍ତବକ; ସ୍ତମ୍ଭ; ହାରବିଶେଷ ।

ଗୁତ୍ସକ, ବି. ପୁ°. (ଗୁତ୍ସ-କ) ଗୁଚ୍ଛ, ସ୍ତବକ; ଗ୍ରନ୍ଥର ପରିଚ୍ଛେଦ; ହାରବିଶେଷ ।

ଗୁତ୍ସପୁଷ୍ପ, ଗୁତ୍ସକପୁଷ୍ପ, } ବି. ପୁ°. ( ଗୁତ୍ସ, ଗୁତ୍ସକ-ପୁଷ୍ପ ) ଛତିଆନା ଗଛ ।

ଗୁଦକୀଳ, ବି. ପୁ°. (ଗୁଦ-କୀଳ) ଅର୍ଶରୋଗ ।

ଗୁଦଗ୍ରହ, ବି. ପୁ°. (ଗୁଦ-ଗ୍ରହ) ଉଦାବର୍ତ୍ତରୋଗ, ମଳବନ୍ଧ ହେବା ।

ଗୁଦାଙ୍କୁର, ବି. ପୁ°. (ଗୁଦ-ଅଙ୍କୁର) ଅର୍ଶରୋଗ ।

ଗୁଦ୍ଡି, ବି. (ଯାବନିକ) କନ୍ଥା, ସନ୍ନ୍ୟାସିମାନଙ୍କର ଗାତ୍ରାଚ୍ଛାଦନ ।

ଗୁନ୍ଦକ, ବି. ପୁ°. (ଗୁଦ୍-ଅକ; ନ ଆଗମ) ମର୍ଦ୍ଦଳ ଧ୍ୱନି, ମୃଦଙ୍ଗ ଧ୍ୱନି ।

ଗୁନ୍ଦ୍ର, ବି. ପୁ°. (ଗୁଦ୍-ର; ନ ଆଗମ) ଶରତୃଣ, ଶରଗଛ ।

ଗୁପ୍ତ, ବି°. (ଗୁପ୍-ତ) ରକ୍ଷିତ; ଗୂଢ଼, ଲୁକ୍କାୟିତ, ଅଦୃଶ୍ୟ; ସମ୍ବୃତ । ବି. ପୁ°. ବୈଶ୍ୟର ଉପାଧି ।

ଗୁପ୍ତଗତି, ବି. ପୁ°. (ଗୁପ୍ତ-ଗତି) ଗୁପ୍ତଚର; ପାଣିସର୍ପ ।

ଗୁପ୍ତଚର, ବି°. ( ଗୁପ୍ତ-ଚର ) ଯାହାର ଚର ଗୋପନରେ ବିଚରଣ କରେ, ଗୂଢ଼ରୂପେ ଚରପ୍ରେରକ । ବି. ପୁ°. ଗୂଢରୂପେ ଭ୍ରମଣକାରୀ ଦୂତ; ବଳଦେବ ।

ଗୁପ୍ତପାଦ, ବି. ପୁ°. (ଗୁପ୍ତ-ପାଦ୍-ଅ) ସର୍ପ ।

ଗୁପ୍ତମଣି, ବି. ପୁ°. କୁମାରୀ କ୍ରୀଡ଼ାବିଶେଷ ।

ଗୁପ୍ତି, ବି. ସ୍ତ୍ରୀ. (ଗୁପ୍-ତି) ରକ୍ଷା; ପହରା; ଗୋପନ; ଭୂମିର ଗହ୍ୱର; କାରାଗାର; ରଥଗର୍ଭ; ନୌକାଦିର ଗର୍ତ୍ତ । ପୁ°. ଯମ; ଅସ୍ତ୍ରବିଶେଷ ।

ଗୁମର, ବି. (ଦେଶଜ) ଅହଂକାର, ଦମ୍ଭ, ମାତ୍ସର୍ଯ୍ୟ ।

ଗୁମାନ, ବି. ( ଦେଶଜ ) ଠେକ; ଅଭିମାନ । ଯଥା—

> ସଜନ ଶୋମ ଗୁଣମାନ,
> ଭଣିଥିଲ କ ମୋ ଧୈର୍ଯ୍ୟ ଗୁମାନ । ବ. ଚ.

ଗୁମାସ୍ତା, (ଯାବନିକ) ଜମିଦାରୀ କଚେରୀର ହିସାବପତ୍ର ରଖିବା ମୋହରର ।

ଗୁମ୍ଫ, ବି. ପୁ°. (ଗୁନ୍ଫ୍-ଅ) ଗ୍ରନ୍ଥନ; ଶ୍ମଶ୍ରୁ, ଦାଢ଼ି; ବାହୁଭୂଷଣ ।

ଗୁମ୍ଫନ, ବ. ନ. (ଗୁମ୍ଫ୍-ଅନ) ଗ୍ରନ୍ଥନ, ଗୁନ୍ଥିବା ।

ଗୁମ୍ଫା, ବ. (ଦେଶଜ) ଗୁହା, ଗର୍ତ୍ତ ।

ଗୁମ୍ଫିତ, ବଂ. (ଗୁମ୍ଫ୍-ତ) ଗ୍ରଥିତ, ଯାହା ଗୁନ୍ଥା ହୋଇଅଛି ।

ଗୁରଣ, ବ. ନ. (ଗୁର୍-ଅନ) ଉଦ୍ୟମ, ଚେଷ୍ଟା ।

ଗୁରୁ, ବ. ପୁଂ. ( ଗୃ-ଉ ) ଆଚାର୍ଯ୍ୟ, ଅଧ୍ୟାପକ, ଶିକ୍ଷାଦାତା, ମନ୍ତ୍ରୋପଦେଷ୍ଟା, ପୁରୋହିତ; ନିଷୁମକାରକ ବ୍ୟକ୍ତି; ବୃହସ୍ପତି; ଦ୍ରୋଣାଚାର୍ଯ୍ୟ; ଦୀର୍ଘ ସ୍ୱରବର୍ଣ୍ଣ, ଯଥା—ଆ, ଈ, ଊ ଇତ୍ୟାଦି । ବଂ. ଅଲଘୁ, ଭାରି; ଉତ୍କଟ ; ଶ୍ଳାଘ୍ୟ; ଦୁସ୍ତର, ଦୁର୍ବହ; ମହତ୍, ବୃହତ୍ ; କଠିନ; ଉତ୍କୃଷ୍ଟ; ପୂଜ୍ୟ; ଅତିଶୟ ।

ଗୁରୁକ୍ରମ, ବ. ପୁଂ. ( ଗୁରୁ-କ୍ରମ ) ପରମ୍ପରାଗତ ଉପଦେଶ ।

ଗୁରୁଘ୍ନ, ବ. ପୁଂ. (ଗୁରୁ-ହନ୍-ଅ) ଧଳାସୋରିଷ । ବଂ. ଗୁରୁ ହତ୍ୟାକାରୀ ।

ଗୁରୁଜନ, ବ. ପୁଂ. ( ଗୁରୁ-ଜନ ) ମାନ୍ୟବ୍ୟକ୍ତି, ପିତା ପିତାମହ ପ୍ରଭୃତି ।

ଗୁରୁଣ୍ଡିବା, କ୍ରି. ବ. ( ଦେଶଜ ) ଶିଶୁମାନଙ୍କର ଆଣ୍ଠୁରେ ଚାଲିବାକୁ ଗୁରୁଣ୍ଡିବା କହନ୍ତି । ଯଥା—

ଗୁରୁଣ୍ଡି ଗୁରୁଣ୍ଡି ଏଣ୍ଡୁଣ୍ଡି ଉପରେ ଶୀଘ୍ରକୃଷ୍ଣ ବଢନ୍ତି ଯାଇ,
ମାତାଙ୍କ ଅଡ଼କୁ ଅନାଇଁ ଅନାଇଁ ମାଟି ଦେହ ଥାନ୍ତି ଖାଇ ।

ଗୁରୁତମ, ବଂ. (ଗୁରୁ-ତମ ) ସର୍ବାପେକ୍ଷା ଅଧିକ ଗୁରୁ ।

ଗୁରୁତର, ବଂ. ( ଗୁରୁ-ତର ) ଦୁଇର ମଧ୍ୟରେ ଅଧିକ ଗୁରୁ ।

ଗୁରୁତଳ୍ପଗ, ବ. ପୁଂ. ( ଗୁରୁ-ତଳ୍ପ-ଗମ୍-ଅ ) ବିମାତୃଗାମୀ; ଗୁରୁପତ୍ନୀଗାମୀ ।

ଗୁରୁତ୍ୱ, ନ. } ବ. ( ଗୁରୁ-ତ୍ୱ,ତା ) ମହତ୍ତ୍ୱ,
ଗୁରୁତା, ସ୍ତ୍ରୀ. } ଗୌରବ; ଆଧିକ୍ୟ; ଭାର; ଗୁରୁର କାର୍ଯ୍ୟ; ଅଲଘୁତା ।

ଗୁରୁପତ୍ର, ବ. ନ. ( ଗୁରୁ-ପତ୍ର ) ଧାତୁବିଶେଷ, ଟିନ୍ ।

ଗୁରୁପତ୍ରା, ବ. ସ୍ତ୍ରୀ. (ଗୁରୁପତ୍ର-ଆ) ତେନ୍ତୁଳିଗଛ ।

ଗୁରୁପାକ, ବଂ. ( ଗୁରୁ-ପାକ ) ଯେଉଁ ପଦାର୍ଥ ଆହାର କଲେ ସହଜରେ ଜୀର୍ଣ୍ଣ ହୁଏ ନାହିଁ ।

ଗୁରୁମର୍ଦ୍ଦଳ, ବ. ପୁଂ. ( ଗୁରୁ-ମର୍ଦ୍ଦଳ ) ବାଦ୍ୟବିଶେଷ, ଢକ୍କାବାଦ୍ୟ ।

ଗୁରୁହା, ବଂ. ( ଗୁରୁ-ହନ୍-୦ ) ଗୁରୁଘ୍ନ, ଗୁରୁହତ୍ୟାକାରୀ ।

ଗୁର୍ଜ୍ଜର, ବ. ପୁଂ. ଗୁଜରାଟ ଦେଶ; ଗୁଜରାଟ ଦେଶୀୟ ଲୋକ ।

ଗୁର୍ଜ୍ଜରୀ, ବ. ସ୍ତ୍ରୀ. ରାଗିଣୀବିଶେଷ; ଗୁର୍ଜ୍ଜର ଦେଶୀୟା ସ୍ତ୍ରୀ ।

ଗୁର୍ବ୍ବିଣୀ, ଗୁର୍ବ୍ବୀ, ବ. ସ୍ତ୍ରୀ. ( ଗୁରୁ-ଇନ୍-ଈ ) ଗର୍ଭିଣୀ, ଅନ୍ତଃସତ୍ତ୍ୱା, ସସତ୍ତ୍ୱା ।

ଗୁର୍ବ୍ବୀ, ବ. ସ୍ତ୍ରୀ.(ଗୁରୁ-ଈ) ଗର୍ଭିଣୀ; ଗୌରବବତୀ; ଗୁରୁପତ୍ନୀ ।

ଗୁଲ, ବ. ପୁଂ. (ଗୁଡ଼୍-ଅ) ଅଙ୍ଗାରବଟିକା, ପୋଡ଼ା ଗୁଡ଼ାଖୁ ବା ପିକାର ଅଂଶ ।

ଗୁଲଞ୍ଚ, ବ. ପୁଂ. (ଗୁଲଚ ଶବ୍ଦଜ) ଲତାବିଶେଷ । ଅଂ. ବହୁତ୍ୱ ବା ସମୂହବୋଧକ ପ୍ରତ୍ୟୟ ।

ଗୁଲା, ବ. (ଦେଶଜ) ଶଗଡ଼ ଚକଦ୍ୱୟ ଯିବାର ପଥ; ବଟିକା ।

ଗୁଲିକା, ବ. ସ୍ତ୍ରୀ. (ଗୁଡ଼୍-ଅକ) ଗୁଲି; ବନ୍ଧୁକପ୍ରଭୃତିରେ ବ୍ୟବହାରଯୋଗ୍ୟ ଗୋଲା ।

ଗୁଲିକାଣ୍ଡ, ବ. ନ. (ଗୁଲି-କାଣ୍ଡ) ବାତୁଳ ।

ଗୁଲୀ, ବ. ସ୍ତ୍ରୀ. (ଗୁଡ଼୍-ଈ) ବଟିକା; ଗୋଲା ।

ଗୁଲୁଞ୍ଛ, ଗୁଲୁଞ୍ଚ, ବ. ପୁଂ. (ଗୁଡ଼୍-ଉଞ୍ଛ, ଉଞ୍ଚ) ଗୁଚ୍ଛ, ସ୍ତବକ ।

ଗୁଲ୍ଫ, ବ. ପୁଂ. (ଗୁଲ୍-ଫ) ପାଦମୂଳ,ଗୋଇଠି ।

ଗୁଲ୍ମ, ବ.ପୁଂ. (ଗୁଡ଼୍-ମ) ରୋଗବିଶେଷ; ପୀଳୋଦର; ସ୍ତମ୍ବ; ଲତାଗୃହ; ସୈନ୍ୟ ସଂଖ୍ୟାବିଶେଷ; ଥାନା; ଛୋଟ ଛୋଟବୃକ୍ଷ, ବୁଦା । ଯଥା—

ଗୁଲ୍ମଗହଳେ ପଥ ଗର୍ବ୍ବ ହର,
ବିଧର୍ମି-ଗଣପଣେ ଶାସ୍ତ୍ର ଯେପରି । ଚି. ଚ.

ଗୁଲ୍ମମୂଳ, ବ. ନ. (ଗୁଲ୍ମ-ମୂଳ) ଅର୍ଦ୍ଧକ, ଅଦା ।

ଗୁଳ୍ମିନୀ, ବ. ସ୍ତ୍ରୀ. (ଗୁଳ୍ମ-ଇନ୍-ଈ) ଲତା, ବିସ୍ତୃତ ଲତା ।

ଗୁବାକ, ଚୂବାକ, ବ. ପୁଂ. (ଗୁ-ଅକ) ଗୁଆଗଛ । ନ. ଗୁଆ । ଯଥା—

ତହିଁରେ ଗୁବାକଶ୍ରେଣୀ ଫଳେ ଅବନିତ । କ. କ.

ଗୁହ, ବ. ପୁଂ. ( ଗୁହ୍-ଅ ) କାର୍ତ୍ତିକେୟ; ବିଷ୍ଣୁ; ରାମର ବନ୍ଧୁବିଶେଷ, ଗୁହକ; ବେଗବାନ୍ ଅଶ୍ୱ; ଗର୍ତ୍ତ; (ଗୂଥ ଶବ୍ଦଜ) ମଳ ।

ଗୁହା, ବ. ସ୍ତ୍ରୀ. ( ଗୁହ୍-ଆ ) ପର୍ବତାଦିର ଗହ୍ୱର, ଗର୍ତ୍ତ, ଅଭ୍ୟନ୍ତର ।

ଗୁହାରି, ଗୁହାରୀ, ବ. (ହିନ୍ଦ)ଫେରାଦ, ଅଭିଯୋଗ, ନିବେଦନ କରିବା । ଯଥା—

ନରପତି ଅଗେ କଲି ଗୁହାରି,
ଦଣ୍ଡ ଦିଅଇଁ ହେ ବଣୀଧାରୀ ।

ଗୁହାଲ, ବ. (ଗୋଶାଳା ଶବ୍ଦଜ) ଗୋରୁ ରହିବାର ସ୍ଥାନ ବା ଘର ।

ଗୁହାଶୟ, ବ. ପୁଂ. (ଗୁହା-ଶୀ-ଅ) ସିଂହ ବ୍ୟାଘ୍ର-ପ୍ରଭୃତି ପଶୁ; ଅଜ୍ଞାନ; ଜୀବାତ୍ମା । ବିଂ. ଗୁହା-ସ୍ଥିତ ।

ଗୁହିନ, (ଗୁହ୍-ଇନ) ବନ, ଅରଣ୍ୟ ।

ଗୁହ୍ୟ, ଗୋହ୍ୟ, ବିଂ. (ଗୁହ୍-ଯ) ଗୋପନୀୟ, ଅପ୍ରକାଶ୍ୟ । ବ. ନ. ନିର୍ଜନସ୍ଥାନ; ମଳଦ୍ୱାର; ଉପସ୍ଥ । ପୁଂ. କଚ୍ଛପ; ଦମ୍ଭ; ଅହଂକାର; ପରମେଶ୍ୱର ।

ଗୁହ୍ୟକ, ବ.ପୁଂ. (ଗୁହ୍-କ) ଦେବଯୋନିବିଶେଷ, କୁବେରାନୁଚର ।

ଗୁହ୍ୟକେଶ୍ୱର, ବ. ପୁଂ. ( ଗୁହ୍ୟକ-ଈଶ୍ୱର ) କୁବେର ।

ଗୁହ୍ୟଗୁରୁ, ବ. ପୁଂ. (ଗୁହ୍ୟ-ଗୁରୁ) ଶିବ ।

ଗୁହ୍ୟଦୀପକ, ବ. ପୁଂ. (ଗୁହ୍ୟ-ଦୀପକ) ଖଦ୍ୟୋତ, ଜୁଳୁଜୁଳିଆପୋକ ।

ଗୁହ୍ୟନିଷ୍ୟନ୍ଦ, ବ. ପୁଂ. ( ଗୁହ୍ୟ-ନିଷ୍ୟନ୍ଦ ) ମୂତ୍ର, ପ୍ରସ୍ରାବ ।

ଗୁହ୍ୟପୁଷ୍ପ, ବ. ପୁଂ. (ଗୁହ୍ୟ-ପୁଷ୍ପ) ଅଶ୍ୱତ୍ଥବୃକ୍ଷ ।

ଗୁହ୍ୟଭାଷିତ, ବ. ନ. ( ଗୁହ୍ୟ-ଭାଷିତ ) ମନ୍ତ୍ର, ଗୁପ୍ତବାକ୍ୟ ।

ଗୂଢ଼, ବିଂ. (ଗୁହ୍-ତ) ଅନ୍ତରିତ; ଅଜ୍ଞାତ; ପ୍ରଚ୍ଛନ୍ନ; ଗୁପ୍ତ, ଅପ୍ରକାଶିତ, ସଂବୃତ; ଗହନ, ଯାହା ସହଜରେ ବୋଧ ହୁଏ ନାହିଁ; ନିଗୂଢ଼; ରହ ।

ଗୂଢଚାରୀ, ବିଂ. ( ଗୂଢ-ଚର୍-ଇନ୍ ) ଯେ ଗୂଢ-ରୂପରେ ଚଳେ, ଯେ ଆପଣାର ଉଦ୍ଦେଶ୍ୟ ଅପ୍ରକାଶ ରଖି ଅନ୍ୟର କର୍ମ ଓ ଅଭିପ୍ରାୟ ଅନୁସନ୍ଧାନ କରେ ।

ଗୂଢଜ, ବ. ପୁଂ. (ଗୂଢ-ଜ) ଗୂଢୋତ୍ପନ୍ନ ପୁତ୍ର ।

ଗୂଢନୀଡ଼, ବ. ପୁଂ. (ଗୂଢ-ନୀଡ଼) ଖଞ୍ଜନପକ୍ଷୀ ।

ଗୂଢପଥ, ବ. ପୁଂ. ( ଗୂଢ-ପଥ ) ଅନ୍ତଃକରଣ, ଗୁପ୍ତପଥ ।

ଗୂଢପଦ୍, ଗୂଢପାଦ୍, ବ. ପୁଂ. (ଗୂଢ-ପଦ୍, ପାଦ୍) ଭୁଜଙ୍ଗ, ସର୍ପ, ସାପ । ବିଂ. ଗୁପ୍ତପଦବିଶିଷ୍ଟ ।

ଗୂଢପୁରୁଷ, ବ. ପୁଂ. ( ଗୂଢ-ପୁରୁଷ ) ଗୂଢଚର, ଛଦ୍ମବେଶୀ ଦୂତ ।

ଗୂଢପୁଷ୍ପକ, ବ. ପୁଂ. ( ଗୂଢ-ପୁଷ୍ପ-କ ) ବକୁଳ ବୃକ୍ଷ ।

ଗୂଢମାର୍ଗ, ବ. ପୁଂ. (ଗୂଢ-ମାର୍ଗ) ଗୋପନୀୟ ପଥ, ସୁଡ଼ଙ୍ଗ ।

ଗୂଢମୈଥୁନ, ବ. ପୁଂ. (ଗୂଢ-ମୈଥୁନ ) କାକ, ବାୟସ ।

ଗୂଢାଙ୍ଗ, ବ. ପୁଂ. (ଗୂଢ-ଅଙ୍ଗ) କଚ୍ଛପ, କଇଁଛ । ବିଂ. ଗୁପ୍ତଦେହ ବିଶିଷ୍ଟ ।

ଗୂଢୋତ୍ପନ୍ନ, ବ. ପୁଂ. (ଗୂଢ-ଉତ୍ପନ୍ନ ) ଅଜ୍ଞାତ ପିତୃକପୁତ୍ର ।

ଗୂଥ, ବ. ପୁଂ. (ଗୂ-ଥ) ବିଷ୍ଠା, ମଳ ।

ଗୂନ, ବିଂ. ( ଗୂ-ତ ) କୃତମଳତ୍ୟାଗ, ଯେ ମଳତ୍ୟାଗ କରିଅଛି ।

ଗୂରଣ, ଗୋରଣ, ବ. ନ. ( ଗୂର, ଗୁର୍-ଅନ ) ଉଦ୍ୟମ, ଚେଷ୍ଟା; ଉତ୍ତୋଳନ ।

ଗୃଷଣା, ବି. ସ୍ତ୍ରୀ. ମୟୂରଚନ୍ଦ୍ରିକା, ମୟୂରପୁଚ୍ଛର ଚନ୍ଦ୍ର ।

ଗୂଢ଼, ବି. (ଗୂଥ ଶବ୍ଦଜ) ବିଷ୍ଠା, ମଳ ।

ଗୃଞ୍ଜନ, ବି. ନ.(ଗୃନ୍‌ଜ୍-ଅନ) ବିଷାକ୍ତ ପଶୁମାଂସ; ରସୁଣ; ରକ୍ତବର୍ଣ୍ଣ ମୂଳବିଶେଷ, ଗାଜର ।

ଗୃଣ୍ଡୀବ, ବି. ପୁଂ. (ଗୃ-ଡୀବ) ବଣଶୃଗାଳ ।

ଗୃଧ୍ନୁ, ବିଂ. (ଗୃଧ୍-ନୁ) ଲୋଲୁପ, ଲୋଭୀ ।

ଗୃଧ୍ର, ବି. ପୁଂ. (ଗୃଧ୍-ର) ଶାଗୁଣାପକ୍ଷୀ । ଯଥା—

ଦଦ୍ଧେ ଓଠାର ଚର୍ହିଶବସ୍ତୁ,
ପୃଚ୍ଛିଲେ ଗୃଧ୍ର ସଙ୍ଗତେ ଗୋମାୟୁ । ନ. ବେ.

ଗୃଧ୍ରରାଜ, ବି. ପୁଂ. (ଗୃଧ୍ର-ରାଜନ୍) ଜଟାୟୁ; ସମ୍ପାତି; ଗରୁଡ ।

ଗୃଧ୍ରସୀ, ବି. ସ୍ତ୍ରୀ. ( ଗୃଧ୍ର-ସୋ-ଅ ) ବାତରୋଗ-ବିଶେଷ ।

ଗୃଷ୍ଟି, ବି. ସ୍ତ୍ରୀ. (ଗୃଷ-ତି) ଏକଥର ପ୍ରସୂତା ଗାଈ ।

ଗୃହ, ବି. ପୁଂ. ନ. (ଗୃହ-ଅ) ଘର; ଗୃହସ୍ଥାଶ୍ରମ; ଭାର୍ଯ୍ୟା; ମେଷାଦି ରାଶି ।

ଗୃହଗୋଧା, ଗୃହଗୋଧିକା, ବି. ସ୍ତ୍ରୀ. ( ଗୃହ-ଗୋଧା, ଗୋଧିକା) ଝିଟିପିଟି, ପଲ୍ଲୀ,ହାଉଆଣୀ ।

ଗୃହଛିଦ୍ର, ବି. ନ. ( ଗୃହ-ଛିଦ୍ର ) ଗୃହର ଦୋଷ, ଆପଣା ଘରର କଳଙ୍କ ।

ଗୃହଜ, ଗୃହଜାତ, ବିଂ. (ଗୃହ-ଜ, ଜାତ) ଯାହା ଗୃହରେ ଜନ୍ମିଅଛି, ଗୃହପ୍ରସୂତ । ପୁଂ. ଦାସ-ବିଶେଷ ।

ଗୃହଣୀ, ବି. ସ୍ତ୍ରୀ. କାଞ୍ଜି, ଅମ୍ଳତୋରାଣୀ ।

ଗୃହତଟୀ, ବି. ସ୍ତ୍ରୀ. ( ଗୃହ-ତଟୀ ) ଗୃହରସମ୍ମୁଖ-ସ୍ଥାନ, ପିଣ୍ଡା ।

ଗୃହନାଶନ, ବି. ପୁଂ. (ଗୃହ-ନାଶନ) କପୋତ ।

ଗୃହନୀଡ଼, ବି.ପୁଂ. (ଗୃହ-ନୀଡ଼) ଘରଚଟିଆ ପକ୍ଷୀ ।

ଗୃହପତି, ବି. ପୁଂ. (ଗୃହ-ପତି) ଗୃହସ୍ଥ, ଗୃହସ୍ଥା-ଶ୍ରମୀ; ଗୃହସ୍ୱାମୀ ।

ଗୃହପୋତକ, ବି. ପୁଂ. ( ଗୃହ-ପୋତକ ) ବାସସ୍ଥାନ ।

ଗୃହବଳିପ୍ରିୟ, ବି. ପୁଂ. (ଗୃହ-ବଳି-ପ୍ରିୟ) କୌଞ୍ଚ, ବକ ।

ଗୃହବଳଭୁକ୍, ବି. ପୁଂ. ( ଗୃହ-ବଳ-ଭୁଜ୍-°) ଚଟକ; ବକ; କାକ ।

ଗୃହଭୂମି, ବି. ସ୍ତ୍ରୀ. (ଗୃହ-ଭୂମି) ବାସସ୍ଥାନ ।

ଗୃହଭେଦ, ବି. ପୁଂ. ନିଜଘରେ; ଗୃହବିଚ୍ଛେଦ ।

ଗୃହମଣି, ବି. ପୁଂ. (ଗୃହ-ମଣି) ପ୍ରଦୀପ, ଦୀପ ।

ଗୃହମାଚିକା, ବି. ସ୍ତ୍ରୀ. (ଗୃହ-ମାଚିକା) ଚେମଣି-ଘଡ଼େଇ ।

ଗୃହମୃଗ, ବି. ପୁଂ. (ଗୃହ-ମୃଗ) କୁକ୍କୁର ।

ଗୃହମେଧୀ, ବି. ପୁଂ. (ଗୃହ-ମେଧ-ଇନ୍) ଗୃହସ୍ଥା-ଶ୍ରମୀ, ଗୃହସ୍ଥ, ଗୃହପତି ।

ଗୃହମେଧୀୟ, ବିଂ. (ଗୃହମେଧିନ୍-ଈୟ) ଗୃହସ୍ଥ-ସମ୍ବନ୍ଧୀୟ ।

ଗୃହଯାଳୁ, ବିଂ. (ଗୃହ-ଆଳୁ) ଗ୍ରହଣେଚ୍ଛୁ; ଗାମୁକ ।

ଗୃହଲକ୍ଷ୍ମୀ, ବି. ସ୍ତ୍ରୀ. (ଗୃହ-ଲକ୍ଷ୍ମୀ ) ଗୃହର ଲକ୍ଷ୍ମୀ-ସ୍ୱରୂପା ସ୍ତ୍ରୀ. ସଚ୍ଚରିତ୍ରା ସ୍ତ୍ରୀ ।

ଗୃହବାଟିକା, ବି. ସ୍ତ୍ରୀ. ( ଗୃହ-ବାଟିକା ) ଘରର ଉଦ୍ୟାନ, ବଗିଚା ।

ଗୃହସ୍ଥ, ବି. ପୁଂ. (ଗୃହ-ସ୍ଥ) ସଂସାରୀ, ଦ୍ୱିତୀୟାଶ୍ରମୀ ।

ଗୃହସ୍ଥୂଣ ବି. ନ. (ଗୃହ-ସ୍ଥୂଣ) ଗୃହସ୍ତମ୍ଭ, ଘରର-ଖୁଣ୍ଟ ।

ଗୃହାଗତ, ବି. ପୁଂ. ( ଗୃହ-ଆଗତ ) ଆଗନ୍ତୁକ, ଅତିଥି । ବିଂ. ଯେ ଘରକୁ ଆସିଅଛି ।

ଗୃହାସ୍ପଣିକ, ବି. ପୁଂ. (ଗୃହ-ଆପଣ-ଇକ) ଗୃହସ୍ଥ ।

ଗୃହାରାମ, ବି. ପୁଂ. ( ଗୃହ-ଆରାମ ) ଘରନିକଟସ୍ଥ ଉଦ୍ୟାନ ।

ଗୃହାଳିକା, ଗୃହୋଳିକା, ବି. ସ୍ତ୍ରୀ. (ଗୃହ-ଅଲ-କ) ଝିଟିପିଟି, ପଲ୍ଲୀ ।

ଗୃହାଶ୍ମା, ବି. ପୁଂ. (ଗୃହ-ଅଶ୍ମନ୍) ପେଷଣ ପ୍ରସ୍ତର, ଶିଳ ।

ଗୃହିଣୀ, ବି. ସ୍ତ୍ରୀ. (ଗୃହ-ଇନ୍-ଈ)ଭାର୍ଯ୍ୟା, ପତ୍ନୀ ।

ଗୃହୀ, ବି. ପୁଂ. (ଗୃହ-ଇନ୍) ଗୃହସ୍ଥ, ଗୃହପତି ।

ଗୃହୀତ, ବି°. (ଗ୍ରହ-ତ) ଯାହା ଗ୍ରହଣ କରା ଯାଇ ଅଛି, ପ୍ରାପ୍ତ; ସ୍ୱୀକୃତ; ଆକ୍ରାନ୍ତ; ଧୃତ; ଅର୍ଜିତ; ଅଭ୍ୟସ୍ତ; ଲବ୍ଧ; ଜ୍ଞାତ; ସାକ୍ଷାତ୍‌କୃତ ।

ଗୃହୀତା, ବି°.(ଗ୍ରହ-ତୃଣ୍) ଗ୍ରାହକ, ଗ୍ରହଣକର୍ତ୍ତା ।

ଗୃହ୍ୟ, ବି°. ( ଗୃହ୍-ଯ ) ଅଧୀନ, ଆଶ୍ରିତ; ପକ୍ଷ, ବଳାତ୍କାର; ଗ୍ରହଣର ଯୋଗ୍ୟ; ଗୃହପାଳିତ; ଗୃହୋତ୍ପନ୍ନ; ଧର୍ମଶାସ୍ତ୍ରର ଗ୍ରନ୍ଥବିଶେଷ; ଗୁହ୍ୟ ଦେଶ ।

ଗେଙ୍ଗୁଟି, ବି. (ଦେଶଜ) ପଥରଚୂନର ଉପାଦେୟ ବସ୍ତୁବିଶେଷ; ପ୍ରସ୍ତରବିଶେଷ ।

ଗେଣ୍ଡା, ବି. (ଗେଣ୍ଡୁକ ଶବ୍ଦଜ) ପ୍ରାଣିବିଶେଷ ।

ଗେଣ୍ଡାଳିଆ, ବି. (ଦେଶଜ) ପକ୍ଷିବିଶେଷ, ସ୍ୱନାମ-ଖ୍ୟାତ ପକ୍ଷୀ ।

ଗେଣ୍ଡୁ, ଗେଣ୍ଡୁକ, ଗେନ୍ଦୁକ, ବି. ପୁଂ. ( ଗା-ଇଣ୍ଡୁ-କ) କନ୍ଦୁକ ।

ଗେୟ, ବି. ନ. (ଗୈ-ଅ ) ଗାନ । ବି°. ଗାନ ଯୋଗ୍ୟ ।

ଗେରୁ, ବି. (ଗୈରିକ ଶବ୍ଦଜ) ରକ୍ତବର୍ଣ୍ଣ ମୃତ୍ତିକା-ବିଶେଷ ।

ଗେଲ, ବି. (ଦେଶଜ) ଶ୍ରଦ୍ଧା, ସ୍ନେହ; ପରିହାସ, ଇଙ୍ଗିତ, ଭଙ୍ଗୀ । ଯଥା—

ଗେଲେ ଗେଲେ କି ଗେଲେ ଗୁଳଇ ।

ଗେଷ୍ଣୁ, ବି. ପୁଂ. ( ଗୈ-ଇଷ୍ଣୁ ) ଗାୟକ; ନଟ; ସାମବେଦ ଗାନକାରୀ ।

ଗେହ, ବି. ନ. ( ଗ-ଈହ-ଅ ) ଗୃହ, ଘର, ନିକେତନ, ବାସସ୍ଥାନ ।

ଗେହୀ, ବି. ପୁଂ. (ଗେହ-ଇନ୍) ଗୃହୀ, ଗୃହସ୍ଥ ।

ଗେହେନର୍ଦ୍ଦୀ, } ବି. ପୁଂ. (ଗେହେ-ନର୍ଦ୍ଦିନ୍, ଗେହେଶୂର, } ଶୂର)କାପୁରୁଷ ; ଅକ୍ଷମବ୍ୟକ୍ତି । ବି°. ସ୍ୱଗୃହସ୍ଥିତ ଆତ୍ମଶ୍ଳାଘାକାରୀ ।

ଗେଞ୍ଜା, ବି. (ଦେଶଜ) ଘେରନ୍ତା ।

ଗୈରିକ, ବି. ନ. ( ଗିରି-ଇକ ) ଗେରୁମାଟି, ସ୍ୱର୍ଣ୍ଣ । ବି°. ଗିରିସମ୍ଭୂତ । ଯଥା—

ଏନ୍ନ କୃଷ୍ଣ ବର୍ଣ୍ଣ, କହୁ ଗୈରିକଗୋରୀ । ଲ. ବ.

ଗୈରେୟ, ବି. ନ. ( ଗିରି-ଏୟ ) ଗେରୁମାଟି । ବି°. ଗିରିଜାତ ବସ୍ତୁ ।

ଗୋ, ବି. ପୁଂ. ( ଗମ୍-ଓ ) ପଶୁ; ବୃଷ; ଚନ୍ଦ୍ର; ସୂର୍ଯ୍ୟ; ସ୍ୱର୍ଗ; ଦୃଷ୍ଟି; ବାଣ; ଜଳ; ଇନ୍ଦ୍ରିୟ; କେଶ, ଶରୀର ଲୋମ; କିରଣ; ବଜ୍ର; ଧେନୁ; ଦିକ୍; ବାକ୍ୟ; ବାଣୀଶ୍ୱରୀ; ପୃଥିବୀ; ମାତା; ଗାୟତ୍ରୀ ।

ଗୋଇ, ବି. ( ହିନ୍ଦି ) ମରମ, ମର୍ମ; ଅପ୍ରକାଶ୍ୟ-ବିଷୟ; ଗୃହଛିଦ୍ର; ( ପ୍ରା; ଗୋପୀ ଶବ୍ଦଜ ) ଗୌଡୁଣୀ ।

ଗୋଇଠା, କ୍ରି. ବି. ( ଦେଶଜ ) ଗୋଇଠିରେ ଆଘାତ କରିବା, ନାତମାରିବା । ଯଥା—

ହା ଦଇବ ! କମ୍ପ କି ପଶି ଦୁର୍ଯ୍ୟୋଧ ଗୃହାରେ,
ଗୋଇଠା ପ୍ରହାର, ନେବ ଘା ମୁଣ୍ଡେ ଓଟାର,
ତ୍ରାସ ପାଇ, ଦୁର୍ଯ୍ୟୋଧ ଘା ସହିବ ମଉନେ । ମ. ଯା.

ଗୋଇଠି, ବି. (ଗୋଡ଼ର ଶବ୍ଦଜ) ପାଦମୂଳ ।

ଗୋକର୍ଣ୍ଣ, ବି. ପୁଂ. (ଗୋ-କର୍ଣ୍ଣ ) ବିତସ୍ତିପରିମାଣ, ଅନାମିକାଯୁକ୍ତ ଅଙ୍ଗୁଷ୍ଠପରିମାଣ, ବିଗତ; ଗଣ୍ଡୁଷ; ମୃଗବିଶେଷ; ଅଶ୍ୱତର; ସର୍ପ, ଚକ୍ଷୁଃଶ୍ରବାଃ; ତୀର୍ଥ ସ୍ଥାନବିଶେଷ ।

ଗୋକଳ, ବି. (ଗୋ-କଳ) ଗୋଗ୍ରାସ, ଗୋରୁକୁ ଦିଆଯିବା ଘାସ ।

ଗୋକରାଟିକା, } ବି. ସ୍ତ୍ରୀ. (ଗୋ-କର-ଅଟ-କ) ଗୋକରାଟୀ, } ସାରିକାପକ୍ଷୀ ।

ଗୋକାଳ, ବି. ପୁଂ. (ଘୋ-କାଳ) ମୂଷଳ, ଲଙ୍ଗଳ ।

ଗୋକୁଳ, ବି. ନ. ( ଗୋ-କୁଳ ) ଗୋସମୂହ; ଗୋଷ୍ଠ, ଗୋସ୍ଥାନ; ଯମୁନାନଦୀର ନିକଟସ୍ଥ ଗ୍ରାମବିଶେଷ ।

ଗୋକୃତ, ବି. ନ. ( ଗୋ-କୃତ ) ଗୋମୟ, ଗୋବର ।

ଗୋଖର, ବି. ( ଦେଶଜ ) ବିଷଧର ସର୍ପବିଶେଷ; କର୍ଣ୍ଣଭୂଷଣବିଶେଷ ।

ଗୋଖା, ବି. ( ଦେଶଜ ) ସ୍ୱନାମଖ୍ୟାତ ଜାତି, ଜାତିବିଶେଷ ।

ଗୋକ୍ଷୁର, ବ. ପୁଂ. ଗୋଖରବୃକ୍ଷ ।

ଗୋଘ୍ନ, ବଂ. (ଗୋ-ଘ୍ନ) ଗୋହନ୍ତା, ଗୋହତ୍ୟାକାରୀ । ବ. ପୁଂ. ଅତିଥି ।

ଗୋଚର, ବ. ପୁଂ. (ଗୋ-ଚର) ଅଶ୍ୱସ୍ଥ; ବିଷୟ, ଯାହା ଗ୍ରହଣ କରାଯାଏ; ଇନ୍ଦ୍ରିୟର ବିଷୟ, ଇନ୍ଦ୍ରିୟଗ୍ରାହ୍ୟ; ସାକ୍ଷାତ୍କାର, ଜ୍ଞାତସାର; ଗୋଚ୍ଚରଣ ସ୍ଥାନ, ଗୋରୁମାନଙ୍କର ଚରିବା ସ୍ଥାନ । ବଂ. ଅର୍ଜିତ, ସ୍ଥିତ ।

ଗୋଛ, ବ. (ପ୍ରା; ଗୁଚ୍ଛ ଶବ୍ଦଜ) ବିଡ଼ା ।

ଗୋଜଣା, ବ. (ଦେଶଜ) ନଅଁ ଖେଳାଇବା ଖୁଣ୍ଟା ।

ଗୋଜା, ବଂ. (ଦେଶଜ) ମୁନିଆ । ଯଥା—

> ସ୍ନେହେ କହୁଥାଇ ଅଧର ଗୋଜ,
> ବୁଝୁନ ନ ଦେବ ବାରଇ ଲଜ । ସ୍ଵ. ରେ.

ଗୋକାଗରକ, ବ. ନ. (ଗୋ-କାଷ୍ଠ-ଅକ) କଲ୍ୟାଣ, ମଙ୍ଗଳ । ପୁଂ. କଣ୍ଟକାରିବୃକ୍ଷ ।

ଗୋଟାଇବା, କ୍ରି. ବ. ଉତ୍ତୋଳନ କରିବା, ତୋଳିବା ।

ଗୋଟାଲ, ବ. ଗୋଲାକାର କ୍ଷୁଦ୍ର ଖଣ୍ଡୀ ।

ଗୋଟି, ଗୋଟିଏ, (ମାନ୍ୟାର୍ଥରେ) } ବ. ଏକ-ଗୋଟାଏ, (ଅମାନ୍ୟାର୍ଥରେ) } ଗୋଟି, ଏକ ।

ଗୋଠ, ବ. (ପ୍ରା; ଗୋଷ୍ଠ ଶବ୍ଦଜ) ଗୋସ୍ଥାନ, ଗୁହାଳ; କଟିଦେଶର ଭୂଷଣ । ଯଥା—(ଗୋ ସ୍ଥାନ ଅର୍ଥରେ) ୦

> କୃଷକ ବଳଦ ଯାଉଛ ବହନ,
> ଗୋଠରୁ ଗହନ ନେଉଛ ଗୋଧନ । ଛ. ମା.

ଗୋଠିଆ, ବଂ. (ଦେଶଜ) ଗୋଠରେ ଥିବା ଗାଈପ୍ରଭୃତି ।

ଗୋଡ଼, ବ. (ଦେଶଜ) ପାଦ; ମୂଳ, ଆଦ୍ୟ ।

ଗୋଡ଼ାଇବା, କ୍ରି. ବ. (ଦେଶଜ) ଅନୁଧାବନ କରିବା ।

ଗୋଡ଼ଶାଳ, ବ. (ଦେଶଜ) କାଷ୍ଠର ଯୋଡ଼ ସ୍ଥାନରେ ବ୍ୟବହୃତ ହେବା କଣ୍ଟାବିଶେଷ ।

ଗୋଣ୍ଡ, ବ. ପୁଂ. (ଗୋ-ଅଣ୍ଡ) ନାଭିଦେଶ ବର୍ଦ୍ଧିତ ମାଂସ; (ଗୁନ୍ଦ୍-ଅ) ଜାତି ଜାତିବିଶେଷ ।

ଗୋତମ, ଗୌତମ, ବ. ପୁଂ. ନ୍ୟାୟଶାସ୍ତ୍ର ପ୍ରଣେତା । ମୁନି; ଗୋଶ୍ରେଷ୍ଠ ।

ଗୋତମାନ୍ୱୟ, ବ. ପୁଂ. (ଗୋତମ-ଅନ୍ୱୟ) ଶାକ୍ୟମୁନି ।

ଗୋତମୀ, ଗୌତମୀ, ବ. ସ୍ତ୍ରୀ. ଦୁର୍ଗା; ରାକ୍ଷସୀ-ବିଶେଷ ।

ଗୋତଲ୍ଲକ, ବଂ. (ଗୋ-ତଲ୍ଲକ) ପ୍ରଶସ୍ତ ଗୋ, ଉତ୍ତମ ଗୋରୁ ।

ଗୋତାମରା, ବଂ. (ଦେଶଜ) ଦଗାବାଜ୍, ଶଠ, ଧୂର୍ତ୍ତ; ପାଣିରେ ଏକ ସ୍ଥାନରେ ବୁଡ଼ି ଅନ୍ୟ ସ୍ଥାନରେ ବାହାରିବା ।

ଗୋତୀର୍ଥ, ବ. ନ. ଗୋଷ୍ଠ; ଗୋଚ୍ଚରଣ ସ୍ଥାନ ।

ଗୋତ୍ର, ବ. ନ. (ଗୁ-ତ୍ର) ବଂଶ, କୁଳ; ନାମ; ଗୋତ୍ରପ୍ରବର୍ତ୍ତକ ଶାଣ୍ଡିଲ୍ୟ ପ୍ରଭୃତି ଋଷିର ସନ୍ତାନ ପରମ୍ପରା; ଅରଣ୍ୟ; କ୍ଷେତ୍ର; ପଥ; ଛତ୍ର; ଗୋଗୃହ; (ଗୋ-ତ୍ରୈ-ଅ) ପୁଂ. ପର୍ବତ ।

ଗୋତ୍ରଜ, ବଂ. (ଗୋତ୍ର-ଜନ୍-ଅ) ଯେ ଏକ ଗୋତ୍ରରେ ଜନ୍ମ ହୋଇଅଛି, ସଗୋତ୍ର ।

ଗୋତ୍ରଭିଦ୍, ବ. ପୁଂ. (ଗୋତ୍ର-ଭିଦ୍-୦) ଇନ୍ଦ୍ର; ପର୍ବତ ଭେଦନକର୍ତ୍ତା ।

ଗୋତ୍ରା, ବ. ସ୍ତ୍ରୀ. (ଗୋତ୍ର-ଅ-ଆ) ଗୋରୁସମୂହ; ପୃଥିବୀ ।

ଗୋଦ, ବ. ପୁଂ. (ଗୋ-ଦ) ମସ୍ତିଷ୍କ, ମଗଜ । ବଂ. ଯେ ଗୋରୁ ଦାନ କରେ ।

ଗୋଦନ୍ତ, ବ. ନ. (ଗୋ-ଦନ୍ତ) ହରିତାଳ । ପୁଂ. ଗୋରୁଦାନ୍ତ ।

ଗୋଦର, ବଂ. ଆମବାତଦ୍ୱାରା ସ୍ଥୂଳ ହୋଇଥିବା ଚରଣାଦି ।

ଗୋଦା, ଗୋଦାବରୀ, ବ. ସ୍ତ୍ରୀ. (ଗୋ-ଦା) ନଦୀବିଶେଷ ।

ଗୋଦାନ, ବ. ନ. (ଗୋ-ଦୋ-ଅନ) କେଶାନ୍ତ ସଂସ୍କାର, କେଶଚ୍ଛେଦନରୂପ ସଂସ୍କାର; (ଗୋ-ଦା-ଅନ) ଗୋ ପ୍ରଦାନ ।

**ଗୋଦାମ**, ବି. (ଦେଶଜ) ବିକ୍ରୟାର୍ଥ କିମ୍ବା ଅନ୍ୟ ଅଭିପ୍ରାୟରେ ସଞ୍ଚିତ ପଦାର୍ଥର ସ୍ଥାନ; ଗଞ୍ଜ ।

**ଗୋଦାରଣ**, ବି. ନ. (ଗୋ-ଦାରଣ) ଲାଙ୍ଗଳ-ପ୍ରଭୃତି ।

**ଗୋଦୋହନୀ**, ବି. ସ୍ତ୍ରୀ. (ଗୋ-ଦୁହ୍-ଅନ-ଈ) ଗୋଦୋହନ ପାତ୍ର, ଦୁଗ୍ଧଭାଣ୍ଡ ।

**ଗୋଦ୍ରବ**, ବି. ପୁଂ. (ଗୋ-ଦ୍ରବ) ଗୋମୂତ୍ର ।

**ଗୋଧନ**, ବି. ନ. ଗୋରୁ, ଗାଈ । ଯଥା—

> ଚିକ୍କଣ ବେଗେ ପଛୁଡ଼ି ଗୋଧନ ଯେନ ଗହଳ,
> ବଜାଇ ବଜାଇ ବଂଶୀ ସୁଲଳିତ ସ୍ୱନେ । କ. ବ.

**ଗୋଧା, ଗୋଧିକା**, ବି. ସ୍ତ୍ରୀ. (ଗୁଧ୍-ଅ, ଇକ-ଅ) ଗୋଧିସାପ; ଧନୁର୍ଗୁଣାଘାତ ନିବାରଣ ନିମିତ୍ତ ବାମ କହୁଣି ତଳଠାରୁ କରଟି ପର୍ଯ୍ୟନ୍ତ ବାନ୍ଧିଥିବା ଚର୍ମମୟ ଆବରଣ । ଯଥା—

> ପ୍ରଥମରେ ଏବଳ ହେଲେ ବାହାର ଯେ,
> ସେଥିରେ ଗୋଧାରେ କରି ମଣ୍ଡନ କର ଯେ । ଲ. ବ.

**ଗୋଧି**, ବି. ପୁଂ. (ଗୋ-ଧା-ଇ କିମ୍ବା ଗୁଧ୍-ଇ) ଲଲାଟଦେଶ, କପୋଳ; ଗୋଧିସାପ ।

**ଗୋଧୁକ୍**, ବିଂ. (ଗୋ-ଦୁହ୍-୦) ଗୋଦୋହନକାରୀ ।

**ଗୋଧୁମ, ଗୋଧୂମ**, ବି. ପୁଂ. (ଗୁଧ୍-ଉମ, ଊମ) ଗହମ ।

**ଗୋଧୂମଚୂର୍ଣ୍ଣ**, ବି. ନ. (ଗୋଧୂମ-ଚୂର୍ଣ୍ଣ) ଅଟା, ମଇଦା, ଗହମଚୂନା ।

**ଗୋଧୂଳି**, ବି. ସ୍ତ୍ରୀ. (ଗୋ-ଧୂଳି) ସାୟଂକାଳ, ଗୋରୁମାନେ ଗୃହକୁ ଆସିବାର ସମୟ, ଗୋରୁମାନେ ଗୃହକୁ ଆସିବା ସମୟରେ ସେମାନଙ୍କର ପଦଚାଳନାରେ ଧୂଳିରାଶି ଊର୍ଦ୍ଧ୍ୱକୁ ଉଠେ ଏହେତୁରୁ ସେ ସମୟକୁ ଗୋଧୂଳି ସମୟ ବୋଲି କହନ୍ତି । ଯଥା—

> ଗୋଧୂଳି ଗଗନ ସୁଚିତ ଦିଶେ ଶଙ୍ଖବରଣେ । ଚ. ଭା.

**ଗୋଧେନୁ**, ବି. ସ୍ତ୍ରୀ. (ଗୋ-ଧେନୁ) ଦୁଗ୍ଧବତୀ ଗାଈ ।

**ଗୋନର୍ଦ୍ଦ**, ବି. ପୁଂ. (ଗୋ-ନର୍ଦ୍ଦ-ଅ) ସାରସପକ୍ଷୀ; ପର୍ବତବିଶେଷ; ଦେଶବିଶେଷ ।

**ଗୋନର୍ଦ୍ଦୀୟ**, ବି. ପୁଂ. (ଗୋ-ନର୍ଦ୍ଦୀୟ) ପାଣିନି ମୁନି ।

**ଗୋନସ, ଗୋନାସ**, ବି. ପୁଂ. (ଗୋ-ନାସିକା) ବୃହତ୍ ସର୍ପ, ବୋଡ଼ା ସାପ ପ୍ରଭୃତି ।

**ଗୋନିଷ୍ୟନ୍ଦ**, ବି. ପୁଂ. (ଗୋ-ନିଷ୍ୟନ୍ଦ) ଗୋମୂତ୍ର ।

**ଗୋପ**, ବି. ପୁଂ. (ଗୋ-ପା-ଅ) ଗୌଡ଼ଜାତି; ଭୂପାଳ; ଗୋରକ୍ଷକ, ଗୋପାଳ । (ଗୁପ୍-ଅ) ବିଂ. ରକ୍ଷକ ।

**ଗୋପକ**, ବିଂ. (ଗୁପ୍-ଅକ ଅଥବା ଗୋପ-କ) ଯେ ଗୋପନ କରଇ; ରକ୍ଷକ ।

**ଗୋପଗୋଈ**, ବି. ସ୍ତ୍ରୀ. (ଗୋପଗୋଷ୍ଠ ଶବ୍ଦଜ) ଗୋପାଙ୍ଗନା ।

**ଗୋପତି**, ବି. ପୁଂ. (ଗୋ-ପତି) ବୃଷ; ଶିବ; ଶ୍ରୀପତି, ଶ୍ରୀକୃଷ୍ଣ; ଭୂପ; ସୂର୍ଯ୍ୟ; ଇନ୍ଦ୍ର ।

**ଗୋପଦଳ**, ବି. ପୁଂ. (ଗୋପ-ଦଳ) ଗୁଆଗଛ ।

**ଗୋପନ**, ବି. ନ. (ଗୁପ୍-ଅନ) ରକ୍ଷଣ; ଲୁଚାଇବାର ।

**ଗୋପନୀୟ**, ବିଂ. (ଗୁପ୍-ଅନୀୟ) ରକ୍ଷଣୀୟ; ଅପ୍ରକାଶ୍ୟ, ଗୋପ୍ୟ ।

**ଗୋପବଲ୍ଲଭ**, ବି. ପୁଂ. (ଗୋପ-ବଲ୍ଲଭ) ଶ୍ରୀକୃଷ୍ଣ । ବିଂ. ଗୋପମାନଙ୍କ ପ୍ରିୟ ।

**ଗୋପାୟିତ**, ବିଂ. (ଗୁପ୍-ଇ-ତ) ରକ୍ଷିତ; ପୁଷ୍ଟ ।

**ଗୋପାଳ**, ବି. ପୁଂ. (ଗୋ-ପାଳ) ରଖୁଆଳ, ଗଉଡ଼, ଗୋପ; କୃଷ୍ଣ; ଭୂପତି ।

**ଗୋପାଳକ**, ବି. ପୁଂ. (ଗୋ-ପାଳକ) କୃଷ୍ଣ; ଶିବ; ଗୋରକ୍ଷକ ।

**ଗୋପାଷ୍ଟମୀ**, ବି. ସ୍ତ୍ରୀ. (ଗୋପ-ଅଷ୍ଟମୀ) କାର୍ତ୍ତିକ ମାସର ଶୁକ୍ଳାଷ୍ଟମୀ ।

**ଗୋପିକା**, ବି. ସ୍ତ୍ରୀ. (ଗୋପୀ-କ-ଅ) ଗୌଡ଼ୁଣୀ; ରକ୍ଷିକା ।

**ଗୋପିତ୍ତ**, ବି. ନ. ଗୋରଚନା, ଗନ୍ଧଦ୍ରବ୍ୟ-ବିଶେଷ ।

ଗୋପୀ, ବ. ସ୍ତ୍ରୀ. (ଗୋପ-ଈ) ଗୋପାଳର ସ୍ତ୍ରୀ, ଗୌଡୁଣୀ ।

ଗୋପୀନାଥ, ଗୋପୀବଲ୍ଲଭ, ବ. ପୁଂ. (ଗୋପୀ-ନାଥ, ବଲ୍ଲଭ) ଶ୍ରୀକୃଷ୍ଣ, ଶ୍ରୀପତି । ଯଥା—

> ଝଷିକଜନଙ୍କ ପ୍ରାଣନାଥ ହେ ମୋହନ,
> ଅରୁଣାଧର କରୁଣାକର ଗୋପୀନାଥ ହେ । ଙ୍କ. ଷା.

ଗୋପୀଯନ୍ତ୍ର, ବ. ଏକତାରା ବାଦ୍ୟଯନ୍ତ୍ରବିଶେଷ ।

ଗୋପୁଚ୍ଛ, ବ. ପୁଂ. (ଗୋ-ପୁଚ୍ଛ) ଗୋଲାଙ୍ଗୁଳ; ହାରବିଶେଷ; ବାନରବିଶେଷ ।

ଗୋପୁର, ବ. ନ. ( ଗୁପ୍-ଉର ) ପୁରଦ୍ୱାର, ନଗରଦ୍ୱାର, ବୃହଦାକାର ତୋରଣବିଶେଷ । ଯଥା—

> ସୁନ୍ଦର ଗୋପୁରବନ୍ଦ କନକ ରଚନେ । ମ. ସା.

ଗୋପୁରୀଷ, ବ. ନ. (ଗୋ-ପୁରୀଷ) ଗୋମୟ, ଗୋବର ।

ଗୋପେନ୍ଦ୍ର, ବ. ପୁଂ. (ଗୋପ-ଇନ୍ଦ୍ର) ବିଷ୍ଣୁ, କୃଷ୍ଣ ।

ଗୋପ୍ତା, ବଂ. (ଗୁପ୍-ତୃ) ରକ୍ଷକ, ରକ୍ଷାକର୍ତ୍ତା, ପ୍ରତିପାଳକ ।

ଗୋପ୍ୟ, ବ. ପୁଂ. (ଗୁପ୍-ଯ) ଭୃତ୍ୟ, ଦାସୀପୁତ୍ର । ବଂ. ରକ୍ଷଣୀୟ; ଗୋପନୀୟ ।

ଗୋପ୍ୟକ, ବ. ପୁଂ. (ଗୋପ୍ୟ-କ) ଦାସ, ଭୃତ୍ୟ ।

ଗୋପ୍ୟାଧି, ବ. ପୁଂ. ( ଗୋପ୍ୟ-ଅଧି ) ରକ୍ଷଣୀୟ ଗଚ୍ଛିତ ବସ୍ତୁ, ବନ୍ଧକୀ ପଦାର୍ଥ ।

ଗୋପ୍ରକାଣ୍ଡ, ବ. ପୁଂ. ( ଗୋ-ପ୍ରକାଣ୍ଡ ) ଉତ୍ତମ ଗୋରୁ, ଶ୍ରେଷ୍ଠ ଗୋରୁ ।

ଗୋପ୍ରଚାର, ବ. ପୁଂ. (ଗୋ-ପ୍ରଚାର) ଗୋଚର-ସ୍ଥାନ, ଗୋରୁ ଚରିବା ସ୍ଥାନ ।

ଗୋପ୍ରତର, ଗୋପ୍ରତାର, ବ ପୁଂ. (ଗୋ-ପ୍ରତର, ପ୍ରତାର) ତୀର୍ଥବିଶେଷ; ଗୋରୁମାନଙ୍କର ପାର ହେବା ।

ଗୋବର, ବ. ନ. ( ପ୍ରା; ଗୋବଟ୍ଟ ଶବ୍ଦଜ ) ଗୋମୟ, ଗୋବିଷ୍ଠା ।

ଗୋମତଲ୍ଲିକା, ବ. ସ୍ତ୍ରୀ. (ଗୋ-ମତଲ୍ଲିକା) ସୁଶୀଳା ଗାଈ, ଉତ୍ତମ ଗୋରୁ ।

ଗୋମତୀ, ବ. ସ୍ତ୍ରୀ. ( ଗୋମତ୍-ଈ ) ନଦୀବିଶେଷ; ବୈଦିକ ମନ୍ତ୍ରବିଶେଷ ।

ଗୋମନ୍ତ, ବ. ପୁଂ. (ଗୋ-ମନ୍-ତ) ବିନ୍ଧ୍ୟପର୍ବତର ପ୍ରତ୍ୟନ୍ତ ପର୍ବତ; ଗୋସମୂହ । ବଂ. ଯାହାର ଗୋରୁ ଅଛି ।

ଗୋମୟ, ବ. ନ. ( ଗୋ-ମୟ ) ଗୋବିଷ୍ଠା, ଗୋବର ।

ଗୋମାନ୍, ବଂ. ( ଗୋ-ମତ୍ ) ଯାହାର ଅନେକ ଗୋରୁ ଅଛି; ସ୍ତୁତିବାଦକ; କିରଣଶାଳୀ ।

ଗୋମାୟୁ, ବ. ପୁଂ. ( ଗୋ-ମା-ଉ ) ଶୃଗାଳ, ବିଲୁଆ । ଯଥା—

> ବକଟେ ଉଠାଇ ଚହିଁ ଶବଅସ୍ଥି,
> ସୁଝୁଥିଲେ ଗୃଧ୍ର ସଙ୍ଗତେ ଗୋମାୟୁ । ନ. ବେ.

ଗନ୍ଧର୍ବବିଶେଷ ।

ଗୋମୁଖ, ବ. ପୁଂ. ( ଗୋ-ମୁଖ ) କୁଟିଳାକାର ଗୃହ, କୁଟିଳ ବାଦ୍ୟଭାଣ୍ଡ, ଶୃଙ୍ଗାଦି; ବିଲେପନ, ପ୍ରମଥବିଶେଷ; କୁମ୍ଭୀର; ଯକ୍ଷବିଶେଷ ।

ଗୋମୁଖୀ, ବ. ସ୍ତ୍ରୀ. ( ଗୋମୁଖ-ଈ ) ହିମାଳୟର ଗୋମୁଖାକାର ଗୁହା; ନଦୀବିଶେଷ; ଜପମାଳାର ମୁଣି ।

ଗୋମୂତ୍ର, ବ. ନ. (ଗୋ-ମୂତ୍ର) ଗୋରୁମୂତ ।

ଗୋମୂତ୍ରିକା, ବ. ସ୍ତ୍ରୀ. ( ଗୋ-ମୂତ୍ରିକା ) ଚିତ୍ର-କାବ୍ୟର ବନ୍ଧବିଶେଷ; ଶ୍ଳୋକରଚନାବିଶେଷ ।

ଗୋମେଦ, ବ. ପୁଂ. ( ଗୋ-ମିଦ୍-ଅ ) ପୀତବର୍ଣ୍ଣ ମଣିବିଶେଷ ; ଦ୍ୱୀପବିଶେଷ ।

ଗୋମେଧ, ବ. ପୁଂ. (ଗୋ-ମେଧ) ଯଜ୍ଞବିଶେଷ ।

ଗୋରକ୍ଷକ, ବ. ପୁଂ. ( ଗୋ-ରକ୍ଷ୍-ଅକ ) ଗୋ-ପାଳକ, ରାଜା । ବଂ. ଗୋପାଳନକାରୀ ।

ଗୋରଡ଼ା, ବ. ( ଦେଶଜ ) ଗୋରୁଖୁଅଡ଼, ଅନ୍ଧେଇ ।

ଗୋରସ, ବ. ପୁଂ. ନ. (ଗୋ-ରସ) ଦୁଗ୍ଧାଦି

ଗୋରସଜ, ବ. ନ. ( ଗୋରସ-ଜ ) ତକ୍ର, ଘୋଳଦହି ।

ଗୋରା, ବି. ( ଗୌର ଶବ୍ଦଜ ) ଗୌରବର୍ଣ୍ଣ । ଯଥା—

ଚନ୍ଦ୍ରମଣ୍ଡଳରେ ମଣ୍ଡିତ ଚନ୍ଦ୍ର କନକ ଗୋରା । ର. ସୁ.

ଗୋରାଚୀ, ଗୋରଚ୍ଛା, ବି. (ଗୋ=ବାକ୍ୟ-ରଚ୍=କହିବା-ଈ) ସାରଳା ପକ୍ଷିଣୀ ।

ଗୋରୁ, ବି. ପୁଂ. ( ଗୋ ଶବ୍ଦଜ ) ବୃଷ, ଗାଈ । ଯଥା—

ଧୂଳି ଉଡ଼ାଇଣ ଦାଣ୍ଡେ କରି ହମ୍ବା ରଡ,
ଯାଉଛନ୍ତି ଗୋରୁପଲ ଗୋଠରୁ ବାହୁଡ଼ି । ସ. ମା.

ଗୋରୂତ, ବି. ନ. କ୍ରୋଶଦ୍ୱୟ ପରିମାଣ ।

ଗୋରୋଚ, ବି. ନ. (ଗୋ-ରୋଚ) ହରିତାଳ ।

ଗୋରୋଚନା, ବି. ସ୍ତ୍ରୀ. ( ଗୋ-ରୁଚ-ଅନ-ଆ ) ଗୋମସ୍ତକଲବ୍ଧ ଉଜ୍ଜ୍ୱଳ ପୀତଦ୍ରବ୍ୟବିଶେଷ, ଗୋମସ୍ତକସ୍ଥିତ ଶୁଷ୍କପିତ୍ତ । ଯଥା—

ଗୋରୋଚନା ତିଳା ଶୋହେ କପୋଳେ । ଧୋ. ଗୁ.

ଗୋଳ, ବି. ( ଦେଶଜ ) ଗୋଳମାଳ; ଅଳ । ଯଥା—

କଲେ ସେ ଦନ ଯେଉଁପେ ଗୋଳ,
କ୍ରୋଧେ ଯଶୋଦା ଷଟାଇଲେ ଦ୍ୱେଳ । ଦ. ଚ.

କ୍ରି. ମିଶାଅ ।

ଗୋଲ, ଗୋଲକ, ବି. ପୁଂ. ( ଗୁଡ଼-ଅ, ଅକ; ଡ=ଲ ) ବର୍ତ୍ତୁଳାକାର ପଦାର୍ଥ; ଯେଉଁ ଦାରୁମୟ ଗୋଲକରେ ଅଥବା ବର୍ତ୍ତୁଳରେ ପୃଥିବୀ ଓ ଆକାଶର ପ୍ରତିରୂପ ଅଙ୍କିତ ଅଛି ।

ଗୋଲନ୍ଦାଜ, ( ଯାବନିକ ) ଯେଉଁମାନେ ଗୋଲା ଚଳାଇ ଯୁଦ୍ଧ କରନ୍ତି ।

ଗୋଲମରଚ, ବି. ପୁଂ. ସ୍ୱନାମପ୍ରସିଦ୍ଧ ବୃକ୍ଷ । ନ. ତତ୍ଫଳ ।

ଗୋଲମାଲ, ବି. (ଯାବନିକ) ଗୋଳ, ତହଳ ।

ଗୋଲା, ବି. ସ୍ତ୍ରୀ. ( ଗୋଲ୍-ଅ ) ଗୋଦାବରୀ ନଦୀ; ସଖୀ; ବାଲକମାନଙ୍କର ଖେଳିବା ପଦାର୍ଥ; ( ଦେଶଜ ) ଧାନ୍ୟାଦିର ଅଗାର ; ଗୋଲାକାର ଲୌହପିଣ୍ଡ, ଗୁଳି ।

ଗୋଲାଙ୍ଗୁଳ, ବି. ପୁଂ. (ଗୋ-ଲାଙ୍ଗୁଳ) କୃଷ୍ଣମୁଖ ବାନରବିଶେଷ; ନ୍ୟାୟସୂତ୍ରବିଶେଷ । ନ. ଗୋରୁ-ଲାଙ୍ଗୁଳ, ଗୋରୁ ଲାଞ୍ଜ ।

ଗୋଲାପ, ବି. (ଯାବନିକ) ପୁଷ୍ପବିଶେଷ । ଯଥା—

ଜାନିମି ନଥିବ ଗୋଲାପ ଫୁଲ
ଫୁଟିବାରୁ ଉପବନ ମଞ୍ଜୁଳ । ସ. ମା.

ଗୋଲାମ, ବି. (ଯାବନିକ) ଦାସ । ଯଥା—

ଲେଙ୍ଗଟିପିଂଧା ଲୋକରୁ ପାଠଢଦା ଗୋଲାମରୁ ବଡ଼ପଣ,
ତୁଳକଲି ସେବ ଯୋଗ୍ୟ ମାଡ଼ବାର ଏ କଥାକୁ ଧନୀ ଧନୀ ।

ଗୋଲିଆ, ବିଂ. (ଦେଶଜ) ପଙ୍କିଳ; ଅସ୍ୱଚ୍ଛ । ଯଥା—

ଗୋଳିଆ ନ ରଖି କହ ଚନ୍ଦ୍ରମୁଖୀ,
ଗହଳି ନ ଥିବା ବେଳେ ।

ଘାଣ୍ଟିବା ଲୋକ ।

ଗୋଲୋକ, ବି. ପୁଂ. (ଗୋ-ଲୋକ) ବୈକୁଣ୍ଠ, କୃଷ୍ଣଙ୍କ ସ୍ଥାନ ।

ଗୋବର୍ଦ୍ଧନ, ବି. ପୁଂ. (ଗୋ-ବର୍ଦ୍ଧନ) ବୃନ୍ଦାବନସ୍ଥ ପର୍ବତବିଶେଷ; ଶ୍ରୀକୃଷ୍ଣ । ଯଥା—

ଗୋବର୍ଦ୍ଧନ ଗୋବର୍ଦ୍ଧନ ଧଇଲ ବାମ କରେ ଅଂପଣେ ।

ଗୋବର୍ଦ୍ଧନଧର, ବି. ପୁଂ. ( ଗୋବର୍ଦ୍ଧନ-ଧର ) ଶ୍ରୀକୃଷ୍ଣ; ପ୍ରସିଦ୍ଧ ଅଛି ଯେ, ଶ୍ରୀକୃଷ୍ଣ ତାହାଙ୍କର ଐଶ୍ୱରିକ ଶକ୍ତି ଜଗତରେ ପ୍ରଦର୍ଶନ କାରଣ ଗୋବର୍ଦ୍ଧନ ପର୍ବତକୁ କନିଷ୍ଠାଙ୍ଗୁଳି ଦ୍ୱାରା ଉଠାଇ ତହିଁ ପ୍ରବଳ ବୃଷ୍ଟିକାରୁ ଗୋପାଳମାନଙ୍କୁ ରକ୍ଷା କରିଥିଲେ ।

ଗୋବତ୍ସ, ବି. ପୁଂ. (ଗୌ-ବତ୍ସ) ଗୋରୁର ବତ୍ସ, ବାଛୁରି ।

ଗୋବଶା, ବି. ସ୍ତ୍ରୀ. (ଗୋ-ବଶା) ବନ୍ଧ୍ୟା ଗୋରୁ ।

ଗୋବିଟ୍, ବି. ସ୍ତ୍ରୀ. ନ. ( ଗୋ-ବିଟ୍ ) ଗୋମୟ, ଗୋବିଷ୍ଠା, ଗୋବର ।

ଗୋବିନ୍ଦ, ବି. ପୁଂ. ( ଗୋ-ବିଦ୍-ଅ ) କୃଷ୍ଣ; ବୃହସ୍ପତି । ବିଂ. ଗୋପାଳକ । ଯଥା—

ଗୋବିନ୍ଦ ଗୋପାଳ ମେଳେ
ଗାଈ କେ ରଖିବ ଯମୁନାକୂଳେ,
ଗୀତ ଗାଇ ଶୀତଳମୂଳେ ।

ଗୋବନ୍ଦଦ୍ୱାଦଶୀ, ବ. ସ୍ତ୍ରୀ. ଫାଲ୍ଗୁନ ମାସର ପୁଷ୍ୟା ନକ୍ଷତ୍ରଯୁକ୍ତା ଶୁକ୍ଳଦ୍ୱାଦଶୀ ।

ଗୋବୃନ୍ଦାରକ, ବ. ପୁଂ. (ଗୋ-ବୃନ୍ଦାରକ) ଉତ୍ତମ ଗୋରୁ ।

ଗୋବ୍ରଜ, ବ. ନ. ( ଗୋ-ବ୍ରଜ୍-ଅ ) ଗୋଷ୍ଠ, ଗୋପଣ୍ଡ ସ୍ଥାନ ।

ଗୋଶାଳ, ବ. ନ. ( ଗୋ-ଶାଳା ) ଗୋଗୃହ, ଗୁହାଳ ।

ଗୋଶୀର୍ଷ, ବ. ନ. ( ଗୋ-ଶୀର୍ଷ ) ଗୋମସ୍ତକ; ଚନ୍ଦନ; ହରିଚନ୍ଦନ; ଅସ୍ତ୍ରବିଶେଷ ।

ଗୋଶୃଙ୍ଗ, ବ. ପୁଂ. ( ଗୋ-ଶୃଙ୍ଗ ) ମୁନିବିଶେଷ; ଗୋରୁର ଶୃଙ୍ଗ; ଗୋଶୃଙ୍ଗ ନିର୍ମିତ ବାଦ୍ୟ ଯନ୍ତ୍ର; ପର୍ବତବିଶେଷ ।

ଗୋଷ୍ଠ, ବ. ପୁଂ. ନ. ( ଗୋ-ସ୍ଥ ) ଗୋସ୍ଥାନ, ଗୋଠ । ଯଥା—

ବଜାଇ ବଜାଇ ବଂଶୀ ଝୁଲନ୍ତ ଫନେ,
ଗୋଷ୍ଠକୁ ଗମନ୍ତ ଧୀରେ ଅହ୍ଲାଦିତ ମନେ ।

ଗୋଷ୍ଠାଷ୍ଟମୀ, ବ. ସ୍ତ୍ରୀ. ଗୋପାଷ୍ଟମୀ, କାର୍ତ୍ତିକ ମାସର ଶୁକ୍ଳାଷ୍ଟମୀ ।

ଗୋଷ୍ଠୀ, ବ. ସ୍ତ୍ରୀ. ( ଗୋଷ୍ଠ-ଅ-ଈ ) ଅନେକ ଲୋକ ସମବେତ ହେବାର ସ୍ଥାନ, ସଭା; ପରିବାର; ଜ୍ଞାତି; ସଳାପ; ପଶୁ ।

ଗୋଷ୍ଠୀପତି, ବ. ପୁଂ. (ଗୋଷ୍ଠୀ-ପତି) ପରିବାର ପାଳକ; ସଭାପତି ।

ଗୋଷ୍ପଦ, ବ.ନ. (ଗୋ-ପଦ,ସ-ଅଗମ) ଗୋ ଖୁର ପରିମିତ ସ୍ଥାନ, ଗୋରୁର ପଦଚିହ୍ନ, ଗୋରୁମାନଙ୍କର ଗତାୟାତ ସ୍ଥାନ । ଯଥା—

ଗୋପାଳଙ୍କ ବୃନ୍ଦଣୀତ ଗଙ୍ଗାବ୍ଧ ଗମ୍ଭୀର ହେ,
ଗୋଷ୍ପଦନ୍ତ ଉଣା ମନିଲ ବ ବଂଶୀଧର ହେ ।

ଗୋସ, ବ. ପୁଂ. (ଗୋ-ସୋ-ଅ) ପ୍ରାତଃକାଳ ।

ଗୋସଙ୍ଗ, ବ. ପୁଂ. (ଗୋ-ସଙ୍ଗ) ପ୍ରଭାତ, ପ୍ରାତଃକାଳ ।

ଗୋସର୍ପ, ବ. ପୁଂ. (ଗୋ-ସର୍ପ) ଗୋଧସାପ ।

ଗୋସ୍ତନ, ବ. ନ. (ଗୋ-ସ୍ତନ) ଗୁଚ୍ଛନର ହାର; ଗୋରୁର ସ୍ତନ ।

ଗୋସ୍ତନୀ, ବ. ସ୍ତ୍ରୀ. ( ଗୋସ୍ତନ-ଈ ) ଦ୍ରାକ୍ଷା, ଅଙ୍ଗୁର ।

ଗୋସା, (ଯାବନିକ) ରାଗ, କୋପ ।

ଗୋସ୍ୱାମୀ, ବ. ପୁଂ. ( ଗୋ-ସ୍ୱାମୀ ) ଗୋସମୂହର ଅଧିକାରୀ ବ୍ୟକ୍ତି, ଗୋରକ୍ଷକ; ବାଚସ୍ପତି; ନିତ୍ୟାନନ୍ଦ ବଂଶୀୟ ବ୍ରାହ୍ମଣ; ଉପାଧିବିଶେଷ ।

ଗୋହରି, (ଦେଶଜ) ଗଳି, ଦୁଇ ପାଖରେ ବାଡ଼ ଥିବା ସଙ୍କୀର୍ଣ୍ଣ ପଥ ।

ଗୋହରୀତକୀ, ବ. ସ୍ତ୍ରୀ. ବେଲଗଛ ।

ଗୋହାଳ, (ଗୋଶାଳ ଶବ୍ଦଜ) ଗୋଗୃହ ।

ଗୋହିର,ବ. (ଗୁହ୍-ଇର) ପାଦମୂଳ, ଗୋଇଠି ।

ଗୋହ୍ୟ, ବିଂ. (ଗୁହ-ଯ) ଆଚ୍ଛାଦିତ, ଆବୃତ; ଲୁକ୍କାୟିତ । ବ. ପୁଂ. ଗୁହ୍ୟଦେଶ ।

ଗୌଞ୍ଜିକ, ବ. (ଗୁଞ୍ଜା-ଇକ) ସ୍ୱର୍ଣ୍ଣକାର ।

ଗୌଡ଼, ବ. ପୁଂ. ଦେଶବିଶେଷ; ଗୌଡ଼ଦେଶୀୟ ଲୋକ ; (ଦେଶଜ) ଗୋପାଳ ଜାତି ।

ଗୌଡ଼ୀ, ବ. ସ୍ତ୍ରୀ. (ଗୁଡ଼-ଅ-ଈ) ଗୁଡ଼ଦ୍ୱାରା ପ୍ରସ୍ତୁତ ସୁରା; ରାଗିଣୀବିଶେଷ; କାବ୍ୟର ରୀତିବିଶେଷ ।

ଗୌଣ, ବିଂ. (ଗୁଣ-ଅ) ଅପ୍ରଧାନ, ଗୁଣୀଭୂତ । ନ. ବିଳମ୍ବ । ଯଥା—

ବ୍ୟଗ୍ରେ ଗୌଣେ ଅତ୍ର ମାର୍ଗରେ,
କେବାର ଦେଖିବ ଏବେ ପାଡ୍ଇ । ବୈ. ଗୌ,

ଗୌଣୀ, ବ. ସ୍ତ୍ରୀ. ( ଗୌଣ-ଈ ) ଶବ୍ଦର ବୃତ୍ତିବିଶେଷ; (ଦେଶଜ) ପରିମାଣ ମାପବିଶେଷ ।

ଗୌତମ, ବ. ପୁଂ. ( ଗୋତମ-ଅ ) ଶତାନନ୍ଦ-ଋଷି, ଋଷିବିଶେଷ; ବୁଦ୍ଧ ।

ଗୌତମସମ୍ଭବା, ବ. ସ୍ତ୍ରୀ. ଗୋଦାବରୀ ନଦୀ ।

ଗୌତମୀ, ବ. ସ୍ତ୍ରୀ. ( ଗୌତମ-ଈ ) ଗୋତମବଂଶୀୟା ସ୍ତ୍ରୀ; ଗୋଦାବରୀ ନଦୀ; ଦୁର୍ଗା; ରାକ୍ଷସୀବିଶେଷ ।

ଗୌଧାର, ଗୌଧେୟ, ଗୌଧେର, ବ. ପୁଂ. (ଗୋଧା-ଆର, ଏୟ, ଏର) ଗୋଧିକାତ୍ମଜ, ଗୋସାପର ଛୁଆ ।

ଗୌର, ବଂ. (ଗୁଙ୍-ଅ; ଡ଼=ର) ଶ୍ୱେତ; ପୀତ; ଶ୍ୱେତରକ୍ତ; ଲୋହିତ; ପରିଷ୍କୃତ; ବିଶୁଦ୍ଧ । ବି. ପୁଂ. ଶ୍ୱେତସର୍ଷପ; ଚନ୍ଦ୍ର । ନ. ପଦ୍ମକିଞ୍ଜଲ୍କ, ପଦ୍ମକେଶର; ସ୍ୱର୍ଣ୍ଣ; କୁଙ୍କୁମ ।

ଗୌରଚନ୍ଦ୍ର, ବି. ପୁଂ. ଚୈତନ୍ୟଦେବ ।

ଗୌରବ, ବି. ନ. ( ଗୁରୁ-ଅ ) ଭାର, ଗୁରୁତ୍ୱ; ଆଦର; ମହିମା; ମର୍ଯ୍ୟାଦା; ଉତ୍କର୍ଷ । ଯଥା—

ଗୁରୁ ଗଉରବ ଯାହାଠାରେ ନାହିଁ
ତାକୁ ଲଗା କେଉଁ କଥା । ଘ. ଷା.

ଗୌରବୀ, ବି. ସ୍ତ୍ରୀ. (ଗୁରୁ-ଅ-ଈ) ମାନ୍ୟା ସ୍ତ୍ରୀ; ଭାଇବହୂ ।

ଗୌରବିତ, ବଂ. (ଗୌରବ-ଇତ) ଗୌରବ-ଯୁକ୍ତ, ମାନ୍ୟ ।

ଗୌରାଙ୍ଗ, ବି. ପୁଂ. ଚୈତନ୍ୟଦେବ; ବିଷ୍ଣୁ ।

ଗୌରାସ୍ୟ, ବି. ପୁଂ. (ଗୌର-ଆସ୍ୟ) ଶ୍ୱେତମୁଖ କୃଷ୍ଣ ବାନର ।

ଗୌରିକା, ବି. ସ୍ତ୍ରୀ. (ଗୌରୀ-କ-ଆ) ଅଷ୍ଟବର୍ଷୀୟା କନ୍ୟା; ଗୌରୀ ।

ଗୌରିଲ, ବି. ପୁଂ. (ଗୌର-ଇଲ) ଶ୍ୱେତସର୍ଷପ, ଧଳା ସୋରିଷ; ଲୌହଚୂର୍ଣ୍ଣ ।

ଗୌରୀ, ବି. ସ୍ତ୍ରୀ. (ଗୌର-ଈ) ପାର୍ବତୀ; ଅଷ୍ଟ-ବର୍ଷୀୟା କନ୍ୟା; ପୃଥିବୀ; ଗୋରୋଚନା; ହରିଦ୍ରା; ରାଗିଣୀବିଶେଷ; ନଦୀବିଶେଷ; ସୁନ୍ଦରୀ ସ୍ତ୍ରୀ ।

ଗୌରୀଜ, ବି. ପୁଂ. (ଗୌରୀ-ଜ) କାର୍ତ୍ତିକେୟ; ଗଣେଶ । ନ. ଧାତୁବିଶେଷ; ଅଭ୍ରକ ।

ଗୌରୀଲଲିତ, ବି. ନ. ହରିତାଳ ।

ଗୌରୀଶିଖର, ବି. ନ. ହିମାଳୟର ଶୃଙ୍ଗବିଶେଷ, ଯେଉଁ ସ୍ଥାନରେ ଗୌରୀ ତପସ୍ୟା କରିଥିଲେ ।

ଗୌରୀସୁତ, ବି. ପୁଂ. (ଗୌରୀ-ସୁତ) କାର୍ତ୍ତିକେୟ ।

ଗୌଶତିକ, ବି. ପୁଂ. (ଗୌ-ଶତ-ଇକ) ଯାହାର ଏକଶତ ଗାଈ ଅଛନ୍ତି ।

ଗ୍ରଥିତ, ଗ୍ରନ୍ଥିତ, ବଂ. (ଗ୍ରନ୍ଥ୍-ତ) ଗୁନ୍ଥିତ, ଯାହା ଗୁନ୍ଥା ହୋଇଅଛି; ପ୍ରୋତ; ରଚିତ; ଆକ୍ରାନ୍ତ ।

ଗ୍ରନ୍ଥ, ବି. ପୁଂ. (ଗ୍ରନ୍ଥ୍-ଅ) ଗାନ୍ଥିବା; ସନ୍ଦର୍ଭ, ଶାସ୍ତ୍ର, ପୁସ୍ତକ; ସମ୍ପତ୍ତି; ସମ୍ପର୍କ; ଅନୁଷ୍ଟୁପ୍-ଛନ୍ଦ ।

ଗ୍ରନ୍ଥକାର, ବି. ପୁଂ. (ଗ୍ରନ୍ଥ-କାର) ଗ୍ରନ୍ଥକର୍ତ୍ତା, ଗ୍ରନ୍ଥ ରଚକ ।

ଗ୍ରନ୍ଥନ, ବି. ନ. (ଗ୍ରନ୍ଥ୍-ଅନ) ଗୁନ୍ଥିବା; ରଚନା ।

ଗ୍ରନ୍ଥି, ବି. ପୁଂ. (ଗ୍ରନ୍ଥ୍-ଇ) ବଂଶାଦିର ସନ୍ଧି; ଶରୀରର ସନ୍ଧି; ଗଣ୍ଠି; ବନ୍ଧ; ରୋଗବିଶେଷ, ବାତରୋଗ; ବକ୍ରତା ।

ଗ୍ରନ୍ଥିକ, ବି. ପୁଂ. (ଗ୍ରନ୍ଥ-କ ଅଥବା ଗ୍ରନ୍ଥ-ଇକ) ଗଣକ, ଦୈବଜ୍ଞ; ପିପ୍ପଳୀବୃକ୍ଷ; କନିଷ୍ଠ ପାଣ୍ଡବ, ସହଦେବ । ନ. ଗୁଗ୍ଗୁଳ ।

ଗ୍ରନ୍ଥିବନ୍ଧନ, ବି. ନ. ( ଗ୍ରନ୍ଥି-ବନ୍ଧନ ) ଗଣ୍ଠି ପକାଇବା; ବିବାହ କାଳରେ ବର-କନ୍ୟାଙ୍କର ବସ୍ତ୍ରରେ ବସ୍ତ୍ର ବନ୍ଧନ ।

ଗ୍ରନ୍ଥିଭେଦ, ବି. ପୁଂ. (ଗ୍ରନ୍ଥି-ଭିଦ୍-ଅ) ଚୌର-ବିଶେଷ ।

ଗ୍ରନ୍ଥିମାନ୍, ବଂ. (ଗ୍ରନ୍ଥି-ମତ୍) ଗ୍ରନ୍ଥିଯୁକ୍ତ ।

ଗ୍ରନ୍ଥିଲ, ବଂ. (ଗ୍ରନ୍ଥି-ଲ) ସନ୍ଧିଯୁକ୍ତ, ଗଣ୍ଠିଯୁକ୍ତ ।

ଗ୍ରନ୍ଥିହର, ବି. ପୁଂ. (ଗ୍ରନ୍ଥି-ହର) ମନ୍ତ୍ରୀ ।

ଗ୍ରନ୍ଥୀ, ବଂ. (ଗ୍ରନ୍ଥ-ଇନ୍) ଯାହାର ଅନେକ ଗ୍ରନ୍ଥ ଅଛି ।

ଗ୍ରସନ, ବି. ନ. ( ଗ୍ରସ୍-ଅନ ) ଗ୍ରାସକରିବା; ଗିଳିବା; ଅସୁରବିଶେଷ ।

ଗ୍ରସମାନ, ବଂ. (ଗ୍ରସ୍-ଆନ) ଯେ ଗ୍ରାସ କରୁଅଛି ।

ଗ୍ରସ୍ତ, ବି. ନ. (ଗ୍ରସ୍-ତ) ଅସମ୍ପୂର୍ଣ୍ଣ ବାକ୍ୟ । ବଂ. ଆଚ୍ଛାଦିତ; ଭକ୍ଷିତ; ଆକ୍ରାନ୍ତ ।

ଗ୍ରହ, ବି. ପୁଂ. ( ଗ୍ରହ୍-ଅ ) ସୂର୍ଯ୍ୟାଦି ନବଗ୍ରହ; ଯେଉଁସବୁ ଜ୍ୟୋତିଃ ପଦାର୍ଥ ସୂର୍ଯ୍ୟ କର୍ତ୍ତୃକ ଆକୃଷ୍ଟ ହୋଇ ତାହାର ଚତୁର୍ଦ୍ଦିଗରେ ମଣ୍ଡଳାକାର ପଥରେ ନିୟତ ପରିଭ୍ରମଣ କରଇ; ସ୍ୱୀକାର; ଅଦାନ; ଗ୍ରହଣ; ଆଗ୍ରହ; ଅଧ୍ୟବସାୟ; ଜ୍ଞାନ; ବୋଧ; ବାଳଘାତକୀ ପୂତନାଦି; ଧାରଣ; ଗ୍ରାସ; ନିର୍ବନ୍ଧ; ରଣୋଦ୍ୟମ; ସନ୍ନିକର୍ଷ; ଚନ୍ଦ୍ର, ସୂର୍ଯ୍ୟଗ୍ରହଣ ।

ଗ୍ରହଣ, ବି. ନ. (ଗ୍ରହ୍-ଅନ) ସ୍ୱୀକାର; ନେବା; ବଶୀକରଣ; ଜ୍ଞାନ; ଇନ୍ଦ୍ରିୟ; ବନ୍ଧନ; ଆଦର; ଗ୍ରହ ବା ଉପଗ୍ରହର ଛାୟାପତନଦ୍ୱାରା କିୟଦଂଶରେ ବା ସର୍ବାଂଶରେ ଅଦର୍ଶନ, ଯଥା—ଚନ୍ଦ୍ରଗ୍ରହଣ, ସୂର୍ଯ୍ୟଗ୍ରହଣ; ଧାରଣ; ଅବଲମ୍ବନ; ହସ୍ତ ।

ଗ୍ରହଣି, ଗ୍ରହଣୀ, ବି. ସ୍ତ୍ରୀ. (ଗ୍ରହ୍-ଅନି; ସ୍ତ୍ରୀଲିଙ୍ଗରେ ଈ) ଉଦରଭଙ୍ଗ ରୋଗ; ନାଡ଼ୀବିଶେଷ ।

ଗ୍ରହଣୀୟ, ବିଂ. (ଗ୍ରହ-ଅନୀୟ) ଗ୍ରହଣଯୋଗ୍ୟ ।

ଗ୍ରହଣୀହର, ବି. ନ. ( ଗ୍ରହଣୀ-ହର ) ଲବଙ୍ଗ । ବିଂ. ଗ୍ରହଣୀ ରୋଗନାଶକ ।

ଗ୍ରହଦେବତା, ବି. ସ୍ତ୍ରୀ. (ଗ୍ରହ-ଦେବତା) ସୂର୍ଯ୍ୟାଦି ଗ୍ରହର ଅଧିଷ୍ଠାତ୍ରୀ ଦେବତା ।

ଗ୍ରହନାୟକ, ବି. ପୁଂ. ( ଗ୍ରହ-ନାୟକ ) ଶନି; ସୂର୍ଯ୍ୟ ।

ଗ୍ରହନେମି, ବି. ପୁଂ. (ଗ୍ରହ-ନେମି) ଚନ୍ଦ୍ର ।

ଗ୍ରହପତି, ବି. ପୁଂ. (ଗ୍ରହ-ପତି) ସୂର୍ଯ୍ୟ ।

ଗ୍ରହପୀଡ଼ା, ବି. ସ୍ତ୍ରୀ. (ଗ୍ରହ-ପୀଡ଼ା) ଗ୍ରହବୈଗୁଣ୍ୟ ନିବନ୍ଧନ ମନୁଷ୍ୟର ଯେ ସମସ୍ତ ଆଧିବ୍ୟାଧି ଉପସ୍ଥିତ ହୁଏ ।

ଗ୍ରହଯାଗ, ବି. ପୁଂ. ( ଗ୍ରହ-ଯାଗ ) ଅଦିତ୍ୟାଦି ନବଗ୍ରହର ବୈଗୁଣ୍ୟ ଶାନ୍ତି ନିମିତ୍ତ ହୋମ ।

ଗ୍ରହରାଜ, ବି. ପୁଂ. (ଗ୍ରହ-ରାଜ) ସୂର୍ଯ୍ୟ । ବିଂ. ଶ୍ରେଷ୍ଠ ଗ୍ରହ । ଯଥା—

> ଅସ୍ତ ହେଲେ ରବି ଗ୍ରହରାଜ ଦିନମଣି,
> ତାରାମଣ୍ଡ ହାର ଚିହ୍ନ ଅସିଲା ରଜନୀ । କ. କ.

ଗ୍ରହବର, ବି. ପୁଂ. (ଗ୍ରହ-ବର) ସୂର୍ଯ୍ୟ; ବୃହସ୍ପତି ।

ଗ୍ରହବର୍ତ୍ତି, ବି. ପୁଂ. ସୂର୍ଯ୍ୟାଦି ଗ୍ରହର ବର୍ତ୍ତି ।

ଗ୍ରହବିପ୍ର, ବି. ପୁଂ. ( ଗ୍ରହ-ବିପ୍ର ) ଅଗ୍ରଦାନୀ; ଦୈବଜ୍ଞ ।

ଗ୍ରହାଧାର, ବି. ପୁଂ. (ଗ୍ରହ-ଆଧାର) ଧ୍ରୁବତାରା, ଏ ଗ୍ରହ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ଥିର ହୋଇ ଅବସ୍ଥିତ କରଇ ।

ଗ୍ରହାମୟ, ବି. ପୁଂ. ( ଗ୍ରହ-ଆମୟ ) ଭୂତାଦିର ଆବେଶ ବଶତଃ ଉତ୍ପନ୍ନ ରୋଗ ।

ଗ୍ରହୀତା, ବିଂ. (ଗ୍ରହ-ତୃ) ଗ୍ରାହକ; ଗ୍ରହଣକାରୀ ।

ଗ୍ରାମ, ବି. ପୁଂ. ( ଗମ୍-ଅ ନିପାତନରେ ) ଲୋକାଳୟ; ବହୁଜନର ବାସସ୍ଥାନ; ଗାଁ । ଯଥା—

> ଅଶୂନ୍ୟେ ସେ ଦିନେ ଯେତେ ଅଶ୍ୱଶାଳରେ ବସି,
> ଗ୍ରାମ କଥା ଗ୍ରାମବାସିଏ ଗଳ୍ପ କରନ୍ତି ହସି । ଶ. ମା.

ଅନ୍ୟ ଶବ୍ଦ ପରେ ଯୁକ୍ତ ହେଲେ ସମୂହ, ଯଥା—ଗୁଣଗ୍ରାମ; ଶବ୍ଦଗ୍ରାମ; ସ୍ୱରର ଅଂଶ-ବିଶେଷ; ସଙ୍ଗୀତରେ ଷଡ଼ଜ ମଧ୍ୟମ ଗାନ୍ଧାର ଏହି ତିନି ସ୍ୱରଭେଦ ।

ଗ୍ରାମକୂଟ, ବି, ପୁଂ. ( ଗ୍ରାମ-କୂଟ ) ଚତୁର୍ଥ ବର୍ଣ୍ଣ; ଶୂଦ୍ର ।

ଗ୍ରାମଣୀ, ବି. ପୁଂ. (ପ୍ରା) ଗ୍ରାମର ପ୍ରଧାନ ଲୋକ ।

ଗ୍ରାମତକ୍ଷ, ବି. ପୁଂ. (ଗ୍ରାମ-ତକ୍ଷ) ଗ୍ରାମ୍ୟସୂତ୍ରଧର; ଗାଁ ବଢ଼େଇ ।

ଗ୍ରାମଦେବତା, ବି. ସ୍ତ୍ରୀ. (ଗ୍ରାମ-ଦେବତା) ଗ୍ରାମସ୍ଥ ସର୍ବସାଧାରଣ ଲୋକପ୍ରତିଷ୍ଠିତ ଦେବମୂର୍ତ୍ତି ।

ଗ୍ରାମଧର୍ମ, ବି. ପୁଂ. ( ଗ୍ରାମ-ଧର୍ମ ) ମୈଥୁନ; ସ୍ତ୍ରୀ-ସଂସର୍ଗ ।

ଗ୍ରାମମୁଖ, ବି. ପୁଂ. (ଗ୍ରାମ-ମୁଖ) ହାଟ, ବଜାର ।

ଗ୍ରାମମୃଗ, ବି. ପୁଂ. (ଗ୍ରାମ-ମୃଗ) କୁକ୍କୁର ।

ଗ୍ରାମଯାଜକ, ବି. ପୁଂ. ( ଗ୍ରାମ-ଯାଜକ ) ଗ୍ରାମ ପୁରୋହିତ ।

ଗ୍ରାମସ୍ଥ, ବିଂ. (ଗ୍ରାମ-ସ୍ଥ) ଏକ ଗ୍ରାମବାସୀ ।

ଗ୍ରାମହାସକ, ବି. ପୁଂ. (ଗ୍ରାମ-ହାସକ) ଭଗିନୀପତି; ଭିଣୋଇ ।

ଗ୍ରାମାଧାନ, ବି. ନ. ( ଗ୍ରାମ-ଆଧାନ ) ମୃଗୟା; ଶିକାର ।

ଗ୍ରାମାନ୍ତ, ବି. ପୁଂ. (ଗ୍ରାମ-ଅନ୍ତ) ଗ୍ରାମର ପ୍ରାନ୍ତଭାଗ, ଉପଶଲ୍ୟ ।

ଗ୍ରାମିକ, ବିଂ. ( ଗ୍ରାମ-ଇକ ) ଗ୍ରାମ ରକ୍ଷଣରେ ନିଯୁକ୍ତ; ଗ୍ରାମାଧ୍ୟକ୍ଷ ।

ଗ୍ରାମୀଣ, ବିଂ. (ଗ୍ରାମ-ଈନ) ଗ୍ରାମୋତ୍ପନ୍ନ; ଗ୍ରାମ-ବାସୀ । ବି. ପୁଂ. ଗ୍ରାମ୍ୟ ଶୂକର; କୁକ୍କୁର; କାକ ।

ଗ୍ରାମୀଣା, ବି. ସ୍ତ୍ରୀ. ( ଗ୍ରାମୀଣ-ଆ ) ନୀଳବୃକ୍ଷ; ଏଥିରୁ ନୀଳରଙ୍ଗ ପ୍ରସ୍ତୁତ ହୁଏ ।

ଗ୍ରାମ୍ୟ, ବିଂ. (ଗ୍ରାମ-ଯ) ଗ୍ରାମଜାତ । ଯଥା—

> ଗ୍ରାମ୍ୟସାମନ୍ତୀ ନଣା-ଅବସାନ-
> ଅନୁକୂଳ ବାଳ-ସ୍ତୁତାବଳୀ ଯାର । ନ. କେ.

ଇତର; ନୀଚ; ଅସଭ୍ୟ; ଅଶ୍ଳୀଳ ।

ଗ୍ରାମ୍ୟକର୍କଟୀ, ବି. ସ୍ତ୍ରୀ. ( ଗ୍ରାମ୍ୟ-କର୍କଟୀ ) କୁଷ୍ମାଣ୍ଡ ।

ଗ୍ରାମ୍ୟତା, ବି. ସ୍ତ୍ରୀ. ( ଗ୍ରାମ୍ୟ-ତା ) ଜଘନ୍ୟତା; ଅସଭ୍ୟତା; ଅଶ୍ଳୀଳତା ।

ଗ୍ରାମ୍ୟଧର୍ମ, ବି. ପୁଂ. ( ଗ୍ରାମ୍ୟ-ଧର୍ମ ) ମୈଥୁନ; ରମଣ ।

ଗ୍ରାମ୍ୟପଶୁ, ବି. ପୁଂ. ଗୋ, ମେଷ, ଛାଗ ଇତ୍ୟାଦି ।

ଗ୍ରାମ୍ୟମୃଗ, ବି. ପୁଂ. (ଗ୍ରାମ୍ୟ-ମୃଗ) କୁକ୍କୁର ।

ଗ୍ରାମ୍ୟାଶ୍ୱ, ବି. ପୁଂ. (ଗ୍ରାମ୍ୟ-ଅଶ୍ୱ) ଗର୍ଦ୍ଦଭ ।

ଗ୍ରାବା, ବି. ପୁଂ. (ଗ୍ରହ-ବନ୍) ପ୍ରସ୍ତର; ମେଘ; ପର୍ବତ । ବିଂ. ଦୃଢ଼ । ଯଥା—

> ପ୍ରତ୍ୟକ୍ଷଗୃହିଣୀ କରୁଣା ପରତ୍ୱେ କେମନ୍ତ ଏ କାଳ ଛବ
> ଦେଖିଥିଲେ ନଷ୍ଟେ ତରଳ ଯାଥନ୍ତା କି ଗ୍ରାବା କି ଥବା ପବ ।
> ଯ. କେ.

ଗ୍ରାସ, ବି. ପୁଂ. (ଗ୍ରସ୍-ଅ) କବଳ ।

ଗ୍ରାସାଚ୍ଛାଦନ, ବି. ନ. (ଗ୍ରାସ-ଆଚ୍ଛାଦନ) ଅନ୍ନ-ବସ୍ତ୍ର; ଅଶନ ବସନ ।

ଗ୍ରାହ, ବି. ପୁଂ. (ଗ୍ରହ-ଅ) ଗ୍ରହଣ; ଜ୍ଞାନ; ଜଳ-ହସ୍ତୀ; ହାଙ୍ଗର । ଯଥା—

> ଗଙ୍ଗାବାରି ଗ୍ରାହଗଣ ଭେଦ ଫେନଶ୍ରେଣି,
> ତରଙ୍ଗ ଉପରେ ଦେଖ ହଠନ୍ତ୍ରୀ ବସି । କ. ବ.

ଗ୍ରାହକ, ବିଂ (ଗ୍ରହ-ଅକ) ଗ୍ରହଣକାରୀ; ଗ୍ରହଣ-କର୍ତ୍ତା । ବି. ପୁଂ. ବାଜପକ୍ଷୀ; ବିଷବୈଦ୍ୟ ।

ଗ୍ରାହିତ, ବିଂ. (ଗ୍ରହ-ଇ-ତ) ସ୍ୱୀକାରିତ ।

ଗ୍ରାହୀ, ବିଂ. ( ଗ୍ରହ-ଇନ୍ ) ଗ୍ରାହକ; ଆକର୍ଷକ । ବି. ପୁଂ. କପିତ୍ଥ, କଇଁଥ ।

ଗ୍ରାହ୍ୟ, ବିଂ. (ଗ୍ରହ-ଯ) ଗ୍ରହଣଯୋଗ୍ୟ; ସ୍ୱୀକାର୍ଯ୍ୟ; ଜ୍ଞେୟ; ଉପାଦେୟ; ଗଣନୀୟ; ଆଦରଣୀୟ ।

ଗ୍ରୀବା, ବି. ସ୍ତ୍ରୀ. (ଗୃ-ବ-ଆ) କନ୍ଧର; ବେକ । ଯଥା—

> ଦାସେରକ ଥଣ୍ଟା କଣ୍ଠ ଘନ୍ଟତଳ
> ରେବାଭଣ୍ଡ ଗ୍ରୀବା ଟେକି ନମ୍ରଦଳ । ନ. କେ.

ଗ୍ରୀବୀ, ବି. ପୁଂ. ସ୍ତ୍ରୀ. (ଗ୍ରୀବା-ଇନ୍) ଉଷ୍ଟ୍ର; ଓଟ ।

ଗ୍ରୀଷ୍ମ, ବି. ପୁଂ. (ଗ୍ରସ୍=ନେବା-ମ) ଉଷ୍ଣଋତୁ; ଆତପସମୟ, ଉତ୍ତାପ । ବିଂ. ଉଷ୍ଣ ।

ଗ୍ରୀଷ୍ମମଣ୍ଡଳ, (Torrid-Zone) କର୍କଟ ଓ ମକରକ୍ରାନ୍ତିର ଅନ୍ତର୍ବର୍ତ୍ତୀ ଭୂଭାଗ ।

ଗ୍ରୈବ, ଗ୍ରୈବେୟ, ଗ୍ରୈବେୟକ, } ବି. ନ. (ଗ୍ରୀବା-ଅ, ଏୟ, କ) କଣ୍ଠଭୂଷଣ; କଣ୍ଠ-ବନ୍ଧନ । ବିଂ. ଗ୍ରୀବାସମ୍ବନ୍ଧୀ ।

ଗ୍ଲପନ, ବି. ନ. (ଗ୍ଲୈ-ଇ-ଅନ) ନିନ୍ଦା; କୁତ୍ସା ।

ଗ୍ଲସ୍ତ, ବିଂ. (ଗ୍ଲସ୍-ତ) ଭକ୍ଷିତ; ଭୁକ୍ତ ।

ଗ୍ଲହ, ବି. ପୁଂ. (ଗ୍ଲହ-ଅ) ପଶାଖେଳରେ ବାଜି ବା ପଣ; ଦ୍ୟୁତ ।

ଗ୍ଲାତା, ବିଂ. (ଗ୍ଲା ବା ଗ୍ଲୈ-ତୃ) ଗ୍ଲାନିଯୁକ୍ତ ।

ଗ୍ଲାନ, ଗ୍ଲାସ୍ନୁ, ବିଂ. ( ଗ୍ଲୈ-ତ, ସ୍ନୁ ) ଗ୍ଲାନିଯୁକ୍ତ, ଶ୍ରାନ୍ତ; ଅସୁସ୍ଥ ।

ଗ୍ଲାନି, ବି. ସ୍ତ୍ରୀ. (ଗ୍ଲୈ-ତି) କ୍ଲାନ୍ତି, ଶ୍ରାନ୍ତି; ଅସ୍ୱାସ୍ଥ୍ୟ; ହାନି; ଅବସନ୍ନତା ।

ଗ୍ଲେୟ, ବିଂ. (ଗ୍ଲା ବା ଗ୍ଲୈ-ଯ) ଗ୍ଲାନିଯୋଗ୍ୟ ।

ଗ୍ଲୌ, ବି. ପୁଂ. ( ଗ୍ଲୈ=କ୍ଷୟ ପାଇବା-ଓ ) ଚନ୍ଦ୍ର; କର୍ପୂର ।

———:o:———

# ଘ

ଘ, ବ୍ୟଞ୍ଜନର ଚତୁର୍ଥ ବର୍ଣ୍ଣ । ଏହାର ଉଚ୍ଚାରଣ-ସ୍ଥାନ ଜିହ୍ୱାମୂଳ । ବି. ପୁଂ. ଠନ୍ ଠନ୍ ଶବ୍ଦ; ଘଣ୍ଟା; ଘୁଙ୍ଗୁର; ଘର୍ଘରଧ୍ୱନି; ବସ୍ତ୍ର । ଘା, ସ୍ତ୍ରୀ. କାଞ୍ଚୀ; ଅଘାତ ।

ଘଉଡ଼ବା, କ୍ରି. ( ଦେଶଜ ) ତଡ଼ ଦେବା, ଦୂର କରି ଦେବା । ଯଥା—

ବର୍ତ୍ତି ମଧ୍ୟେ ଶୁଦ୍ଧ ଗନ୍ଧ ପର ଗନ୍ଧ ବବେକ ଦେଇ ଘଉଡ଼ି । ବ. ଚ.

ଘଞ୍ଚ ବି. ( ଗ୍ରା; ଘନ ଶବ୍ଦଜ ) ଗହଳିଆ, ନିବିଡ଼, ଲଗାଲଗି । ଯଥା—

ଘଞ୍ଚ ଘଞ୍ଚ ଘନ ତରଳ ପରଳ ବର୍ତ୍ତ୍ଲ ମୁକ୍ତାମାଳ । ବ. ଚ.

ଘଟ, ବି. ପୁଂ. (ଘଟ୍-ଅ) କଳସ, କୁମ୍ଭ; ଗଜକୁମ୍ଭ; କୁମ୍ଭରାଶି; ପରିମାଣବିଶେଷ; ( ପ୍ରଚଳିତ କଥାରେ)ଦେହ, ଶରୀର । (କଳସ ଅର୍ଥରେ) ଯଥା—

ଯଥନେ ବହାଇଣ ଘଟ ଜଳରେ । ଜ. ବି.

ଘଟକ, ବି. ପୁଂ. ( ଘଟ୍-ଅକ ) ଦୂତ; ମଧ୍ୟସ୍ଥ; ବନସ୍ପତି, ପୁଷ୍ପ ବ୍ୟତିରେକେ ଯେଉଁ ବୃକ୍ଷର ଫଳ ହୁଏ; ଯୋଜନାକାରୀ । ଯଥା—

ସଙ୍ଗ ସଂଘଟ ଉଚିତ ଘଟ ଘଟକ କମଳଜ । ବ, ଚ.

ଘଟକର୍ପର, ବି. ପୁଂ. ବିକ୍ରମାଦିତ୍ୟଙ୍କ ନବରତ୍ନାନ୍ତର୍ଗତ କବିବିଶେଷ; ଭଗ୍ନ ଘଟାଦିର ଖଣ୍ଡ, ଖପରା ।

ଘଟକାର, ଘଟକୃତ୍, ବି.ପୁଂ. (ଘଟ-କାର, କୃ-ଂ) କୁମ୍ଭକାର, କୁମ୍ଭାର ।

ଘଟକୁମାର, ବି. ପୁଂ. (ଘଟ-କୁମାର) କୁମ୍ଭଯୋନି, ଅଗସ୍ତି । ଯଥା—

ଘୋଟି ଘଟକୁ ମାର ଚନ୍ଦ୍ରେ ଘଟକୁମାର,
ଚିହ୍ନ ଭାବକୁ ଶୁଣି ଯେହ୍ନେ । ଲା. ବ.

ଘଟଜ, ବି. ପୁଂ. (ଘଟ-ଜ) ଅଗସ୍ତ୍ୟ ।

ଘଟଣ, ବିଂ. (ଦେଶଜ) ସୁନ୍ଦର । ଯଥା—

ଘଭ ମୋର ନ ମଣନ୍ତି ନନ୍ଦ,
ଘଟଣ ନ ଘଣେ ପୁର ନ ଥିଲେ ଗୋବିନ୍ଦ ।

ଘଟଣା, ଘଟନା, ବି. ସ୍ତ୍ରୀ. ( ଘଟ୍-ଅନ-ଆ ) ହସ୍ତିସୈନ୍ୟ; ଯୋଜନା; ସଂଘଟନ; ଆକସ୍ମିକ ବ୍ୟାପାର; ଦୈବଗତି, ବଧିନିବନ୍ଧ ।

ଘଟଦାସୀ, ବି. ସ୍ତ୍ରୀ. (ଘଟ-ଦାସୀ) ଦୂତୀ, କୁଟ୍ଟଣୀ ।

ଘଟଯୋନି, ବି. ପୁଂ. (ଘଟ-ଯୋନି) କୁମ୍ଭଯୋନି, ଅଗସ୍ତ୍ୟ ।

ଘଟରଦୁମ୍ମା, ବି. ପୁଂ. (ଦେଶଜ) ଯାମଘୋଷୀ ପକ୍ଷିବିଶେଷ । ଯଥା—

ଦୁନଦୁନ ଦର୍ପେ ଦଉନ୍ତି ସଘନେ ଘଟରଦୁମ୍ମା-ଘରଣୀ । ଉବଣୀ ।

ଘଟସୁତ, ବି. ପୁଂ. ( ଘଟ-ସୁତ ) କୁମ୍ଭଯୋନି, ଅଗସ୍ତ୍ୟ ।

ଘଟସ୍ଥାପନ, ବି. ନ. ଦେବମୂର୍ତ୍ତି ନିର୍ମାଣ ନ କରି ତତ୍ପରିବର୍ତ୍ତରେ ଘଟ ସ୍ଥାପନ କରି ସେହି ଘଟରେ ଉକ୍ତ ଦେବତାର ଆବାହନ ।

ଘଟା, ବି. ପୁଂ. (ଘଟ-ଆ) ସଂଘଟନ; ଗଜସୈନ୍ୟ; ସଭା; ସମୂହ; ସମାରୋହ; ଆଡ଼ମ୍ବର; (ଦେଶଜ) ଦାଗ । (ସମୂହ ଅର୍ଥରେ) ଯଥା—

ଘନଘଟା ଘୋରଧ୍ୱନ ବଧିର ଶ୍ରବଣ । କ. ବି.

ଘଟାଇବା, କ୍ରି. (ଘଟ ଧାତୁଜ) ସଂଘଟନ କରାଇବା, ଆଣି ଉପସ୍ଥିତ କରାଇବା ।

ଘଟାଟୋପ, ବି. ପୁଂ. ଆଡ଼ମ୍ବର । ଶବାର ଢାଙ୍କି ରଖିବା ନିମିତ୍ତ ବ୍ୟବହୃତ ବସ୍ତ୍ରନିର୍ମିତ ଆବରଣ ।

ଘଟିକ, ବି. ନ. (ଘଟ-ଇକ) ନିତମ୍ବ ।

ଘଟିକା, ବି. ସ୍ତ୍ରୀ. (ଘଟୀ-କ-ଆ)ମୁହୂର୍ତ୍ତ, ଦଣ୍ଡାତ୍ମକ କାଳ, ଅଢ଼େଇ ଦଣ୍ଡ; ପାଦଗ୍ରନ୍ଥି; କ୍ଷୁଦ୍ର ଘଟ ।

ଘଟିତ, ବିଂ. ( ଘଟ୍-ତ ) ସଂଘଟିତ; ଯୋଜିତ; ସମ୍ଭୂତ ।

ଘଟିବା, କ୍ରି. (ଘଟଧାତୁଜ) ସଂଘଟନ ହେବା ।

ଘଟୀ, ବି. ସ୍ତ୍ରୀ. (ଘଟ୍-ଇ) ଦଣ୍ଡପରିମାଣ କାଳ; କାଳନିର୍ଣ୍ଣୟାତ୍ମକ ଯନ୍ତ୍ର; ମୁହୂର୍ତ୍ତ; କାଂସ୍ୟ ପିତ୍ତଳାଦି ଧାତୁନିର୍ମିତ ଅନତିବୃହତ୍ ଜଳପାତ୍ର । ଯଥା—

ଘଟୀ ସଘନ ଭରେ ନାହିଁ ବିବେକ ରେ
ମହାର୍ଣ୍ଣବରେ ଅବଗାହିଲୁଁ ଗୋ । କ. ଚ.

ଘଟୀଯନ୍ତ୍ର, ବି. ନ. (ଘଟୀ-ଯନ୍ତ୍ର) କୂପାଦିରୁ ପାଣି କାଢ଼ିବାର କଳ; କାଳନିର୍ଣ୍ଣୟାତ୍ମକ ଯନ୍ତ୍ର, ଘଡ଼ୀ ।

ଘଟୋତ୍କଚ, ବ. ପୁଂ. ( ଘଟ-ଉତ୍କଚ ) ହିଡମ୍ବା ରାକ୍ଷସୀର ଗର୍ଭରେ ଭୀମ ଔରସଜାତ ପୁତ୍ର, ଏହାର ମସ୍ତକ କଲସକୁମ୍ଭ ପରି କେଶଶୂନ୍ୟ ଥିଲା, ଏହି କାରଣରୁ ଏହାର ନାମ ଘଟୋତ୍କଚ ହୋଇଅଛି ।

ଘଟୋଦ୍ଭବ, ବ. ପୁଂ.(ଘଟ-ଉଦ୍ଭବ) ଅଗସ୍ତ୍ୟମୁନି ।

ଘଟ୍ଟ, ପୁଂ. } ବ. (ଘଟ୍ଟ୍-ଅ, ଈ) ନଦୀ ପ୍ରଭୃତିର
ଘଟ୍ଟୀ, ସ୍ତ୍ରୀ. } ଘାଟ; ଶୁଳ୍କଗ୍ରହଣ ସ୍ଥାନ, ଚାଳନ ।

ଘଟ୍ଟଗା, ବ. ସ୍ତ୍ରୀ. ନଦୀବିଶେଷ ।

ଘଟ୍ଟଜୀବୀ, ବ. ପୁଂ. (ଘଟ୍ଟ-ଜୀବୀ) କେଉଟ ।

ଘଟ୍ଟନ, ବ. ନ. ( ଘଟ୍ଟ୍-ଅନ ) ଆଘାତ; ଘର୍ଷଣ, ଘୋଟିବା; ସଙ୍ଘଟନ ।

ଘଟ୍ଟନା, ବ. ସ୍ତ୍ରୀ. (ଘଟ୍ଟ୍-ଅନ-ଆ) ଚାଳନା, ଇତସ୍ତତଃ ହଲେଇବା ।

ଘଟ୍ଟନୀ, ବ. ସ୍ତ୍ରୀ. ( ଘଟ୍ଟ୍-ଅନ-ଈ ) ଘୋଟିବା ନିମିତ୍ତ କାଷ୍ଠଦଣ୍ଡ ।

ଘଟ୍ଟିତ, ବିଂ. ( ଘଟ୍ଟ୍-ତ ) ନିର୍ମିତ; ସଙ୍ଘଟିତ; ଚାଳିତ; ଯାହା ଘୋଟା ହୋଇଅଛି ।

ଘଡଘଡୀ,ବ. (ପ୍ରା) ବଜ୍ରଶବ୍ଦ । ଯଥା—

> ପୁଣି କର୍ଣ୍ଣରେ ଶୁଣି ଏ ଘଡଘଡୀ,
> ଚମକ ପଡୁଥିବ ଦଉଡ଼ଦଉ । ସୁ. ରେ.

ଘଡ଼ା, ବ. ( ଘଟ ଶବ୍ଦଜ ) ବଡ଼ କଳସ, ପିତଳ-ନିର୍ମିତ କଳସ ।

ଘଡି, ବ. (ପ୍ରା) ସମୟବୋଧକ ଯନ୍ତ୍ର; ଦୁଇଦଣ୍ଡ ପରିମିତ କାଳ; ମୃତ୍ତିକାପାତ୍ରବିଶେଷ । (ସମୟ ବୋଧକ ଅର୍ଥରେ) ଯଥା—

> ଥାଉଥିବ ପରି ବୋଲି ଘଡି-ଘଡିକି ନବ ଛଇଳୀ,
> ଘୋଳସଘନେଭ୍ରୂବଳ୍ଲୀ ଗୃହଂ ଥିବେ ଚନ୍ଦ୍ରବଦନୀରେ । ଘ.ସା.

ଘଡ଼ିଆଲ, ବ. (ଦେଶଜ) କୁମ୍ଭୀରବିଶେଷ ।

ଘଣା, ବ. (ଦେଶଜ) ଗବ,ଘୋରଷ,ଖଷା ପ୍ରଭୃତି ତୈଳଜ ପଦାର୍ଥରୁ ତୈଳ ବାହାର କରିବା ଯନ୍ତ୍ରବିଶେଷ ।

ଘଣ୍ଟ, ପୁଂ. } ବ. ( ହନ୍-ଟ, ଆ ) କାଂସ୍ୟାଦି
ଘଣ୍ଟା, ସ୍ତ୍ରୀ. } ଧାତୁନିର୍ମିତ ବାଦ୍ୟଯନ୍ତ୍ରବିଶେଷ ।

ଘଣ୍ଟପାଟୁଆ, ବ. (ଦେଶଜ) ଶାରଳା ଠାକୁରାଣୀଙ୍କର ଆଜ୍ଞାପ୍ରଚାରକବିଶେଷ ।

ଘଣ୍ଟାକର୍ଣ୍ଣ, ବ. ପୁଂ. ( ଘଣ୍ଟା-ଆକର୍ଣ୍ଣ ) ଶିବଗଣ-ବିଶେଷ; ପଣ୍ଡିତବିଶେଷ ।

ଘଣ୍ଟାପଥ, ବ. ପୁଂ. ( ଘଣ୍ଟା-ପଥ ) ଗ୍ରାମର ପ୍ରଧାନ ପଥ ।

ଘଣ୍ଟାବୀଜ, ବ. ପୁଂ. (ଘଣ୍ଟା-ବୀଜ) ଜୟପାଳବୃକ୍ଷ । ନ. ଜୟପାଳ ମଞ୍ଜି ।

ଘଣ୍ଟିକା, ଘଣ୍ଟୀ, ବ. ସ୍ତ୍ରୀ. (ଘଣ୍ଟା-ଇକ୍-ଆ, ଘଣ୍ଟା-ଇନ୍ ) ଜିହ୍ୱା ଉପରେ ଶ୍ୱାସନଳୀ ରୋଧାର୍ଥ ଯେଉଁ କ୍ଷୁଦ୍ର ମାଂସଖଣ୍ଡ ଥାଏ, ଉପଜିହ୍ୱା ।

ଘଣ୍ଟୀ, ବ. ( ଦେଶଜ ) ଘାଗୁଡି, କାଂସ୍ୟନିର୍ମିତ ବଡ ଘୁଙ୍ଗୁର । ଯଥା—

> ଘଣ୍ଟୀ ନାଦେ ବର୍ଷି ଝେଙ୍କେ ଯେମନ୍ତ ମୃଗ । ଲ. ବ.

ଘଣ୍ଟୁ, ବ. ପୁଂ. ( ଘଣ୍-ଟୁ ) ହସ୍ତିର ଗଳଲମ୍ବିତ ଘଣ୍ଟା; ପ୍ରତାପ ।

ଘଣ୍ଟେଶ୍ୱର, ବ. ପୁଂ. (ଘଣ୍ଟା-ଈଶ୍ୱର) ମଙ୍ଗଳପୁତ୍ର; ଶିବ ।

ଘତ, ବିଂ. (ଦେଶଜ) ଧରଣ; କୌଶଳ ।

ଘନ, ବ. ନ. ( ହନ୍-ଅ ) କରତାଳ, ମନ୍ଦିରା, ଘଣ୍ଟା, ଘୁଙ୍ଗୁର ପ୍ରଭୃତି ଧାତୁମୟ ବାଦ୍ୟଯନ୍ତ୍ର; ମଧ୍ୟମ ନୃତ୍ୟ; ଲୌହ; ଚର୍ମ । ପୁଂ. ମେଘ; ଲୌହ; ମୁଦ୍ଗର; ଜମାଟ; ଦୃଢ଼ତା, କାଠିନ୍ୟ; ମୁସ୍ତା; ଓଘ; ଦେହ; ବିସ୍ତାର; କୌଣସି ରାଶିକୁ ସେହି ରାଶିଦ୍ୱାରା ଦୁଇଥର ଗୁଣନ । ଯଥା— ୩ ର ଘନ=୨୭ । ବିଂ. ନିବିଡ, ସାନ୍ଦ୍ର; କଠିନ; ଦୁର୍ଭେଦ୍ୟ; ଭାରି; ଅବିରତ । (ମେଘ ଅର୍ଥରେ) ଯଥା—

> ଉତ୍କଣ୍ଠାକୁଳ ହୋଇ ଘନକୁ ଲଭେ,
> ସଜୀବ ମଣି କହେ କଥା ପ୍ରକାଶେ । ମେ. ଦୂ.

ଘନକଫ, ବ. ପୁଂ. (ଘନ-କଫ) କରକା, କୁଅ-ପଥର ।

ଘନକାଳ, ବ. ପୁଂ. (ଘନ-କାଳ) ବର୍ଷାସମୟ । ଯଥା—

> ଜେନ ଘନକାଳ କାଳ ମଣି ବନ୍ଧ୍ୟକାଳ କ୍ଷାଳ
> ଅଗ୍ନି ବନ୍ହି ନହୋଇ ଲକ୍ଷ୍ୟ । ପ୍ରେ. ସୁ.

**ଘନକ୍ଷେତ୍ର**, ବ. ନ. ଦୈର୍ଘ୍ୟ ପ୍ରସ୍ଥ ଓ ବେଧବିଶିଷ୍ଟ କ୍ଷେତ୍ର ।

**ଘନଗୋଲକ**, ବ. ପୁଂ. ମିଶ୍ରିତ ସ୍ୱର୍ଣ୍ଣ ରୌପ୍ୟ ।

**ଘନଘନ**, ବ. (ଦେଶଜ) ଶୀଘ୍ର ଶୀଘ୍ର ।

**ଘନଘୋଷ**, ବ. ପୁଂ. (ଘନ-ଘୋଷ) ମେଘଗର୍ଜ୍ଜନ, ଘଡ଼ଘଡ଼ି ।

**ଘନଚତୁଷ୍କୋଣ**, ବ. ପୁଂ. ଦୈର୍ଘ୍ୟ ପ୍ରସ୍ଥ ଓ ବେଧ-ବିଶିଷ୍ଟ ଚତୁଷ୍କୋଣ ।

**ଘନଜ୍ୱାଳା**, ବ. ସ୍ତ୍ରୀ. ( ଘନ-ଜ୍ୱାଳା ) ବଜ୍ରାଗ୍ନି, ବିଦ୍ୟୁତ୍ ।

**ଘନତୋଳ**, ବ. ପୁଂ. ( ଘନ-ତୁଲ୍-ଅ) ଚାତକ-ପକ୍ଷୀ ।

**ଘନତ୍ୱ**, ବ. ନ. (ଘନ-ତ୍ୱ) ଗାଢତା, କାଠିନ୍ୟ; ନିବିଡ଼ତା ।

**ଘନନାଭ**, ବ. ପୁଂ. (ଘନ-ନାଭ) ଧୂମ, ଧୂଆଁ ।

**ଘନପଦବୀ**, ବ. ସ୍ତ୍ରୀ. (ଘନ-ପଦବୀ) ଆକାଶ ।

**ଘନପାଷଣ୍ଡ**, ବ. ପୁଂ. (ଘନ-ପାଷଣ୍ଡ) ମୟୂର ।

**ଘନଫଳ**, ବ. ନ. ଗୋଟିଏ ରାଶିକୁ ସେହି ରାଶି-ଦ୍ୱାରା ଦୁଇଥର ଗୁଣ କଲେ ଯେଉଁ ଫଳ ହୁଏ । ଯଥା—୩ × ୩ × ୩=୨୭ ।

**ଘନମୂଳ**, ବ. ନ. ଯେଉଁ ରାଶି ଆପଣାଦ୍ୱାରା ଦୁଇ-ଥର ଗୁଣିତ ହୁଏ ସେହି ରାଶି ସେହିପରି ଗୁଣଫଳର ଘନମୂଳ, ଯେପରି ୨୭ର ଘନ-ମୂଳ ୩ ।

**ଘନରସ**, ବ. ପୁଂ. (ଘନ-ରସ) ଜଳ, କର୍ପୂର; ଘନ ଅଠା । ଯଥା—

> ବନା ମେଘେ ଘନରସ ବରଷା ହୋଇବ,
> ଭସ୍ମ ହୋଇଥିବା ଜନ ମୂର୍ତ୍ତିକି ପାଇବ ଯେ । ଲ.ବ.

**ଘନବଲ୍ଲିକା**, **ଘନବଲ୍ଲୀ**, } ବ. ସ୍ତ୍ରୀ. (ଘନ-ବଲ୍ଲିକା, ବଲ୍ଲୀ) ବିଦ୍ୟୁତ୍; ଅମୃତସ୍ରବ୍‌ଲତା ।

**ଘନବାତ**, ବ.ପୁଂ. (ଘନ-ବାତ) ନରକବିଶେଷ ।

**ଘନବାସ**, ବ. ପୁଂ. (ଘନ-ବାସ) କୁଷ୍ମାଣ୍ଡ ।

**ଘନବାହନ**, ବ. ପୁଂ. (ଘନ-ବାହନ) ମେଘର ବାହନ; ଇନ୍ଦ୍ର, ଶିବ ।

**ଘନବୀଥି**, ବ. ସ୍ତ୍ରୀ. (ଘନ-ବୀଥି) ଆକାଶ ।

**ଘନଶ୍ୟାମ**, ବିଂ. (ଘନ-ଶ୍ୟାମ) ସଜଳ ମେଘପରି ଶ୍ୟାମବର୍ଣ୍ଣ ।

**ଘନସାର**, ବ. ପୁଂ. (ଘନ-ସାର) କର୍ପୂର; ପାରଦ; ଜଳ । (କର୍ପୂର ଅର୍ଥରେ) ଯଥା—

> ସାରସଗତ ଚନ୍ଦ୍ର ସଙ୍ଗ ବନା
> ମୁଁ ଲେଡ଼ା ନ କରଇ ଘନସାର ହେ କୋକିଳ । ପ୍ରେ. ସୁ.

**ଘନାଗମ**, ବ. ପୁଂ. (ଘନ-ଆଗମ) ବର୍ଷାକାଳ ।

**ଘନାଘନ**, ବ. ପୁଂ. (ଘନ ଦେଖ ଦ୍ୱିତ୍ୱ) ଇନ୍ଦ୍ର; ଅପକାରକ ହସ୍ତୀ, ମତ୍ତହସ୍ତୀ; ବର୍ଷଣକାରୀ ମେଘ; ପରସ୍ପର ସଂଘର୍ଷଣ । ବିଂ. ସତତଘାତୁକ; ନିରନ୍ତର; ସାନ୍ଦ୍ର; ନିଷ୍ଠୁର ।

**ଘନାତ୍ୟୟ**, **ଘନାନ୍ତ**, ବ. ପୁଂ. (ଘନ-ଅତ୍ୟୟ, ଅନ୍ତ) ଶରତ୍‌କାଳ ।

**ଘନାମୟ**, ବ. ପୁଂ. ( ଘନ-ଆମୟ=ରୋଗ ) ଖର୍ଜ୍ଜୁରବୃକ୍ଷ ।

**ଘନାଶ୍ରୟ**, ବ. ପୁଂ. (ଘନ-ଆଶ୍ରୟ) ଆକାଶ ।

**ଘନିଷ୍ଠ**, ବିଂ. ( ଘନ-ଇଷ୍ଠ ) ଅତିଶୟ ଘନ; ନିକଟସ୍ଥ, ଆସନ୍ନ, ଅତି ନିକଟ ।

**ଘନୀଭୂତ**, ବିଂ. (ଘନ-ଭୂ-ତ; ଈ ଆଗମ) ସାନ୍ଦ୍ରୀ-ଭୂତ, ଯାହା ଘନ ହୋଇଅଛି ।

**ଘନୋପଳ**, ବ. ପୁଂ. (ଘନ-ଉପଳ) କରକା, କୁଆପଥର ।

**ଘମାଘୋଟ**, ବ. ଯାକଯମକ, ଆନନ୍ଦବିଶେଷ ।

**ଘର**, ବ. (ଗୃହ ଶବ୍ଦଜ) ଗୃହ, ଭବନ ।

**ଘରକରଣା**, ବ. (ପ୍ରା) ଗୃହଧର୍ମ ।

**ଘରଚଟିଆ**, ବ. (ଦେଶଜ) ସ୍ୱନାମଖ୍ୟାତ କ୍ଷୁଦ୍ର-ପକ୍ଷୀ ।

**ଘରଟ୍ଟ**, ବ. ପୁଂ. ( ଘର-ଅଟ୍-ଅ ) ପେଷଣ ଯନ୍ତ୍ର, ଚକି ।

**ଘରଣୀ**, ବ. (ଗୃହିଣୀ ଶବ୍ଦଜ) ଗୃହିଣୀ । ଯଥା—

> ପୋଡା ଶାଳ ଉଷ୍ଣ ଡାଳ, ଭୂଥ ହେନ୍ତାଳ, ଗଣ୍ଡି ବେଢାଳ,
> ଘରଣୀ ଚେରୁଥିଲ, ଏ ଘର ଚହୁଇ ଥପାରକାଳ ।

**ଘଣ୍ଟ**, ବ. (ଦେଶଜ) ଚିହ୍ନ ।

ଘର୍ଘଟ, ବ. ପୁଂ. ( ଘର୍-ଘଟ୍-ଅ ) ମତ୍ସ୍ୟବିଶେଷ, ସିଙ୍ଗିମାଛ ।

ଘର୍ଘର, ବ. ପୁଂ. (ଘର୍ଘ-ଋ; ଋ=ଦାନ) ପର୍ବତ-ପଥ; ଦ୍ୱାର; ପେଚକ; ନାଦବିଶେଷ; ଶବ୍ଦ-ବିଶେଷ ।

ଘର୍ଘରା, ବ.ସ୍ତ୍ରୀ. (ଘର୍ଘର-ଆ) ଘୁଙ୍ଗୁର; ନଦୀବିଶେଷ; ବୀଣାବିଶେଷ । ବିଂ. ଘର୍ଘର ଶବ୍ଦବିଶିଷ୍ଟ ।

ଘର୍ଘରିକା, ବ. ସ୍ତ୍ରୀ. ( ଘର୍ଘରା-କ-ଆ ) ଘୁଙ୍ଗୁର; ଭଜାଧାନ; ନଦୀବିଶେଷ; ବାଦ୍ୟଯନ୍ତ୍ରବିଶେଷ ।

ଘର୍ମ, ବ. ପୁଂ. (ଘୃ-ମ) ଗ୍ରୀଷ୍ମ, ରୌଦ୍ର; ଝାଳ, ସ୍ୱେଦ । ବିଂ. ଉଷ୍ଣ । (ସ୍ୱେଦାର୍ଥରେ) ଯଥା—

ଝଟକ ହାସିକା ଘର୍ମେ ଲିବଗଲା,
ମର୍ମେ ଲେଖିଥିଲା ତନରେ । ଲା. ବ.

ଘର୍ମଭାନୁ, ବ. ପୁଂ. (ଘର୍ମ-ଭାନୁ) ସୂର୍ଯ୍ୟ ।

ଘର୍ମବିଚର୍ଚ୍ଚିକା, ବ. ସ୍ତ୍ରୀ. (ଘର୍ମ-ବିଚର୍ଚ୍ଚିକା) ଘିମିରି

ଘର୍ମସ୍ପୃକ୍, ବ. ପୁଂ. (ଘର୍ମ-ସ୍ପୃଶ୍-ଂ) ବାୟୁ ।

ଘର୍ମାକ୍ତ, ବିଂ. (ଘର୍ମ-ଅକ୍ତ) ଯାହା ଘର୍ମଦ୍ୱାରା ଆର୍ଦ୍ର ହୋଇଅଛି, ସ୍ୱେଦାର୍ଦ୍ର ।

ଘର୍ମାନ୍ତ, ବ. ପୁଂ. (ଘର୍ମ-ଅନ୍ତ) ବର୍ଷାକାଳ ।

ଘର୍ଷକପକ୍ଷୀ, ବ. ପୁଂ. ଯେଉଁ ପକ୍ଷିମାନେ ନଖଦ୍ୱାରା ଭୂମି ବିଦାରଣ କରନ୍ତି, ଯଥା—ମୟୂର, କୁକ୍କୁଟ ପ୍ରଭୃତି ।

ଘର୍ଷଣ, ବ. ନ. (ଘୃଷ୍-ଅନ) ଘଷିବା, ମାର୍ଜ୍ଜନ ।

ଘର୍ଷଣାଳ, ବ. (ଘର୍ଷଣ-ଅଳ) ଶିଳପୁଆ ।

ଘର୍ଷଣୀ, ବ. ସ୍ତ୍ରୀ. (ଘର୍ଷଣ-ଈ) ହରିଦ୍ରା ।

ଘର୍ଷିତ, ବିଂ. ( ଘୃଷ-ତ ) ଯାହାକୁ ଘର୍ଷଣ କରି ଯାଇଅଛି, ଯହିଁରେ ଘର୍ଷଣ ଲାଗିଅଛି ।

ଘଷି, ବ. (ଦେଶଜ) ଶୁଷ୍କ ଗୋମୟ ।

ଘଷିବା, କ୍ରି. (ଘର୍ଷଣ ଶବ୍ଦଜ) ଘର୍ଷଣ କରିବା ।

ଘସି, ବ. ପୁଂ. (ଘସ୍=ଭକ୍ଷଣ କରିବା-ଇ) ଭକ୍ଷଣ, ଭୋଜନ ।

ଘସ୍ମର, ବିଂ. (ଘସ୍-ମର) ଅଦ୍ମର, ଖାଦକ ।

ଘସ୍ର, ବ. ପୁଂ. (ଘସ୍-ର) ଦିନ । ନି. କୁଙ୍କୁମ ।

ଘସ୍ରନାଥ, ବ. ପୁଂ. (ଘସ୍ର-ନାଥ) ସୂର୍ଯ୍ୟ । ଯଥା—

ଘସ୍ରନାଥନନ୍ଦନା ଅନାଘର୍ଣ୍ଣିକ ମନା
କହୁଁ ସେ ଥାଇଁ ତଟ ରହିଁଲୁ ଗୋ । କ. ଚ.

ଘା, ବ. (ପ୍ରା; ଘାତ ଶବ୍ଦଜ) ଆଘାତ, କ୍ଷତଚିହ୍ନ ।

ଘାଇ, ବ. (ଦେଶଜ) ସଂକୀର୍ଣ୍ଣ ଜଳପଥ, ନଦୀ ବୃଦ୍ଧିଦ୍ୱାରା ବନ୍ଧାଦି ଭଗ୍ନ ହୋଇ ଯେଉଁ ଜଳପଥ ହୁଏ ।

ଘାଉଡ, ବ. (ଘାଟି=ହିଂସା କରିବା, ଧାତୁଜ) ସର୍ପଦଂଶନ, ସାପ ଚାମୁଡିବା ।

ଘାଗର ବ. (ଘର୍ଘରୀ ଶବ୍ଦଜ) ଅରିଧେୟ ବସ୍ତ୍ର-ବିଶେଷ ।

ଘାଗୁଡ଼ି,ବ. (ପ୍ରା; ଘର୍ଘରୀ ଶବ୍ଦଜ)କଟିର ଆଭରଣ-ବିଶେଷ, କ୍ଷୁଦ୍ର ଘଣ୍ଟିକା, ଘୁଙ୍ଗୁର । ଯଥା—

କଟିରେ ବାନ୍ଧିଥାଇ ସ୍ୱର୍ଣ୍ଣଘାଗୁଡ଼ି ସେ ।

ଘାଟ, ବ. (ପ୍ରା; ଘଟ୍ଟ ଶବ୍ଦ) ନଦୀ ପାର ହେବାର ସ୍ଥାନ, ଜଳାଶୟାଦିରେ ଅବତରଣ କରିବା ସ୍ଥାନ । ଯଥା—

ଜଗି ବଧୁ ବିକ ଯିବା ବାଟକୁ,
ଗୋପୀଙ୍କି ମାଗନ୍ତି ଦାଅ ଘାଟକୁ ।

ଘାଟ, ବ. ପୁଂ. (ଘଟ୍-ଇ-ଅ) ଗ୍ରୀବା, ବେକ ।

ଘାଟିଆ, } ବ. (ପ୍ରା; ଘଟ୍ଟ ଶବ୍ଦଜ) ନଦୀ ପାର
ଘାଟୁଆ, } କରିବା ବ୍ୟକ୍ତି । ଯଥା—

ତପନତନୟା ତଟେ, ଚେଲଙ୍କଦମ୍ବ ନିକଟେ,
କପଟ ଚେଜଣ ବାଟେ, ସେ ନୂଆ ଘାଟିଆ । ପ. ଷା.

ଘାଟୀ, ବ. (ପ୍ରା; ଘଟ୍ଟଶବ୍ଦଜ) ଗିରିସଙ୍କଟ, ପର୍ବତ-ଦ୍ୱୟର ମଧ୍ୟବର୍ତ୍ତୀ ସଂକୀର୍ଣ୍ଣ ପଥ; ବିପଦ ।

ଘାଣ୍ଟିଆ, ବ. (ଦେଶଜ) ତର୍କାରିବିଶେଷ । ବିଂ. ଗୋଳିଆ । ଯଥା—

ଭୈରବର ଭୋଗଯୋଗ୍ୟ ଖାରସ୍ତ ଘାଣ୍ଟିଆ । ମ. ଯା.

ଘାଣ୍ଟିକ, ବିଂ. (ଘଣ୍ଟା-ଇକ) ଘଣ୍ଟାବାଦକ । ବ. ପୁଂ. ଯେଉଁ ସବୁ ଲୋକ ଏକତ୍ରିତ ହୋଇ ଦେବତା ସମ୍ମୁଖରେ ଘଣ୍ଟା ବଜାଇ ଆରାଧନା କରନ୍ତି ।

ଘାଣ୍ଟିବା, କ୍ରି. (ଦେଶଜ) ଗୋଳାଇବା ।

ଘାତ, ବ. ପୁଂ. (ହନ୍-ଅ) ପ୍ରହାର, ହନନ, ବଧ; ପ୍ରହାର ସାଧନ ଅସ୍ତ୍ର; ଗୁଣନ; ଅଙ୍କଗୁଣନ, କୌଣସି ରାଶିକୁ ସେହି ରାଶିଦ୍ୱାରା ବାରମ୍ବାର ଗୁଣ କରିବାର(Power) ।

ଘାତକ, ବିଂ. (ହନ୍-ଅକ)ବଧକାରକ, ପ୍ରହାରକ । ଯଥା—

ଘାତକ ଅହତ ପରେ ନାହେ ଦମ୍ବରରେ । ଵ. ବ.

ଘାତନ, ବ. ନ. (ହନ୍-ଅନ) ହନନ, ବଧ; ଆଘାତ; ( ହାନ-ଅନ ) ହତ୍ୟା ସମ୍ପାଦନ, ଅନ୍ୟଦ୍ୱାରା ବଧ କରାଇବା । ବିଂ. ଘାତକ ।

ଘାତସହ, ବିଂ. ଯେଉଁ ସବୁ ଦ୍ରବ୍ୟ ଅଳ୍ପମାତ୍ର ଆଘାତ ପାଇଲେ ଭଗ୍ନ ହୁଏ ନାହିଁ କିନ୍ତୁ ବଢ଼େ ।

ଘାତାବେଶ, ବ. ପୁଂ. କୌଣସି ରାଶି ଧାରାବାହିକ-ରୂପେ ସେହି ରାଶିଦ୍ୱାରା ଗୁଣିତ ହେଲେ ଗୋଟିଏ ରାଶି ଉତ୍ପନ୍ନ ହୁଏ, ଯେଉଁ ପ୍ରକ୍ରିୟାଦ୍ୱାରା ସେହି ରାଶି ଉତ୍ପନ୍ନ ହୁଏ ତାହାର ନାମ "ଘାତାବେଶ" ।

ଘାତି, ବ. ପୁଂ. (ଘାତ-ଇ) ପକ୍ଷିବନ୍ଧନ ବା ନାଶ; ଆଘାତ, ପ୍ରହାର ।

ଘାତିପକ୍ଷୀ, ବ.ପୁଂ. (ଘାତି-ପକ୍ଷୀ) ବାଜପକ୍ଷୀ ।

ଘାତୀ, ବିଂ. ( ଘାତ-ଇନ୍ ) ଘାତକ, ହତ୍ୟାକାରୀ ।

ଘାତୁକ, ବିଂ. ( ଘାତ-ଉକ ) ହିଂସ୍ର, ନାଶକ; ନିଷ୍ଠୁର ।

ଘାତ୍ୟ, ବିଂ. (ଘାତ-ଯ ) ବଧ୍ୟ, ହନନଯୋଗ୍ୟ ।

ଘାର, ବ. ପୁଂ. (ଘୃ-ଅ) ସିଞ୍ଚନ, ଛିଞ୍ଚିବା ।

ଘାରିବା, କ୍ରି. (ଘୂର୍ଣ୍ଣ ଶବ୍ଦଜ ) ଲାଗିବା; ଘୋଟିବା; ଘାଲ ହେବା, ଢୁଳାଇବା । ଯଥା—

ଣେର ନ ହୋଏ ତୋର,
ଵଣପ୍ରାଏ ଘାରେ ମୋ ଶରୀର । ବୈ. ବି.

ଘାର୍ତ୍ତିକ, ବ. ପୁଂ. (ଘୃତ-ଇକ) ଘୃତପୂର ଖାଦ୍ୟ-ବିଶେଷ ।

ଘାଲ, ( ଦେଶଜ ) ମିଥ୍ୟାରେ ଅବା ଛଳରେ ଶୋଇଲା ପ୍ରାୟେ ।

ଘାସ, ବ. ପୁଂ. (ଘସ୍-ଅ) ଦୂର୍ବାଦି ତୃଣ ।

ଘାସି ବ. ପୁଂ. (ଘସ୍-ଇ) ଅଗ୍ନି ।

ଘିଅ, ବ. (ପ୍ରା; ଘୃତ ଶବ୍ଦଜ) ହବିଃ, ଆଜ୍ୟ ।

ଘିକୁଆଁରୀ, ବ. ( ପ୍ରା; ଘୃତକୁମାରୀ ଶବ୍ଦଜ ) ଘୃତକୁମାରୀ, ସ୍ୱନାମଖ୍ୟାତ ଗୁଳ୍ମବିଶେଷ ।

ଘିନିବା, କ୍ରି. (ଦେଶଜ) ନେବା,ଗ୍ରହଣ କରିବା ।

ଘିନ୍‌ଘିନ, ବିଂ. (ପ୍ରା; ଘୃଣା ଶବ୍ଦଜ) ଘୃଣାଜନକ ।

ଘିମିରି, ବ. (ପ୍ରା; ଘର୍ମ ଶବ୍ଦଜ) ଘର୍ମବଚଚିକା ।

ଘୁଘୁ, ବ. (ଅନୁକରଣ ଶବ୍ଦ) ଶବ୍ଦବିଶେଷ ।

ଘୁଙ୍ଘୁଡ଼, ବ. (ଅନୁକରଣ ଶବ୍ଦ) ଶୟନକାଳରେ ନାସିକାର ଉଚ୍ଚଶବ୍ଦ ।

ଘୁଙ୍ଗୁର, ବ. (ଘଣ୍ଟିକା ଶବ୍ଦଜ) କଟିଦେଶର ଅଳ-ଙ୍କାରବିଶେଷ ।

ଘୁଞ୍ଚାଇବା, କ୍ରି. (ଦେଶଜ) ଚଳାଇବା ।

ଘୁଟ, ପୁଂ.
ଘୁଟି, ସ୍ତ୍ରୀ.
ଘୁଟିକ, ପୁଂ.
ଘୁଟିକା, ସ୍ତ୍ରୀ.
} ବିଂ. (ଘୁଟ୍-ଅ, ଇ, ଇକ, ଇକ-ଆ) ଗୁଲ୍‌ଫ, ଗୋଇଠି ।

ଘୁଡ଼ୀ, ବ. (ପ୍ରା; ଘୂର୍ଣ୍ଣ ଶବ୍ଦଜ) କାଗଜରେ ପ୍ରସ୍ତୁତ ଶୂନ୍ୟଗାମୀ କ୍ରୀଡ଼ନଦ୍ରବ୍ୟବିଶେଷ ।

ଘୁଣ, ବ.ପୁଂ. ( ଘୁଣ୍-ଅ ) କାଷ୍ଠକୀଟବିଶେଷ । ଯଥା—

ସମାକେ ଏ ସ୍ଥାନଙ୍କର ଘୁଣରୂପେ ପଶି,
ଅଛି ମନ୍ତ୍ରୀ ଶୋଷି, ତାକୁ କରିବ ଜର୍ଜର । ମ. ଯା.

ଘୁଣାକ୍ଷର, ବ. ନ. (ଘୁଣ-ଅକ୍ଷର) ଘୁଣକୃତ ଅକ୍ଷର; ଘୁଣ ଅକ୍ଷର କାଟିବ ବୋଲି ଚେଷ୍ଟା କରଇ ନାହିଁ କିନ୍ତୁ କାଟୁ କାଟୁ କୌଣସି କୌଣସି ସ୍ଥାନରେ ଅକ୍ଷରାକାର ହୋଇ ଯାଏ; ସେହିପରି କରିବ ବୋଲି ମନସ୍ଥ ନ କରି ଯାହା ଯାହା ଘଟେ ତାହାକୁ ଘୁଣାକ୍ଷର ଶବ୍ଦରେ ନିର୍ଦ୍ଦିଷ୍ଟ କରାଯାଏ । ଯଥା—

ଘୁଣାକ୍ଷରପ୍ରାଏ ଦୋଷ ଯେବେ ହେଲା
ଦେନଥିରୁ ନିଜ ତାହୁ । ଚୁ. ଚ.

ଘୁଣ୍ଟ, ଘୁଣ୍ଟକ, ବ. ପୁଂ. ( ଘଣ୍ଟ୍-ଅ, କ ) ଗୁଲ୍ଫ, ଗୋଇଠି ।

ଘୁଣ୍ଟିକା, ବ. ନ. ଏଲଦଂଷି ।

ଘୁଣ୍ଡ, ବ. ପୁଂ. (ଘୁଣ୍-ଡ) ଭ୍ରମର ।

ଘୁମ, ବ. ( ଦେଶଜ ) ନିଦ୍ରା, ତନ୍ଦ୍ରା, ଶୟନ; ଶସ୍ୟାଦି ରଖିବା ନିମିତ୍ତ ମାଟିରେ ପ୍ରସ୍ତୁତ ବଡ ବଡ ପାତ୍ରବିଶେଷ ।

ଘୁମା, ବ. (ଦେଶଜ) ଘୁମ, ଘଣ୍ଟବିଶେଷ । ବିଂ. ଢୁଳା ।

ଘୁମାଇବା, କ୍ରି. (ଦେଶଜ) ଢୁଳାଇବା ।

ଘୁମୁରିବା, କ୍ରି. (ଅନୁକରଣ ଶବ୍ଦ) ଶବ୍ଦବିଶେଷ ।

ଘୁର୍ଘୁର, ବ. ପୁଂ. ( ଘୁର=ଅନୁକରଣ ଶବ୍ଦ-ଘୁର୍=ଶବ୍ଦ କରିବା-ଅ) କଲକତଟିଗ୍ଗ ।

ଘୁରାଇବାର, କ୍ରି. (ଘୂର୍ଣ୍ଣନ ଶବ୍ଦଜ)ବୁଲାଇବାର ।

ଘୁରିବାର, କ୍ରି. ( ଘୂର୍ଣ୍ଣନ ଶବ୍ଦଜ ) ବୁଲିବାର ।

ଘୁଷ୍, ବ. ପୁଂ. ( ଯାବନକ ) କାର୍ଯ୍ୟ ସିଦ୍ଧି ନିମିତ୍ତ ଗୋପନରେ ଦେୟବସ୍ତୁ, ଉତ୍କୋଚ ।

ଘୁଷଖୋର, ବ. (ଯାବନକ) ଯେ ବ୍ୟକ୍ତି ଉତ୍କୋଚ ଗ୍ରହଣ କରି କାର୍ଯ୍ୟ କରେ, ଲାଞ୍ଚୁଆ ।

ଘୁଷିତ, ଘୁଷ୍ଟ, ବିଂ. ( ଘୁଷ୍-ତ ) ଶବ୍ଦିତ, ବାଦିତ, ନାଦିତ । ନ. ଘୋଷଣା ।

ଘୁଷୁରି ବ. (ଘୃଷ୍ଟି ଶବ୍ଦଜ) ଶୂକର, ବରାହ ।

ଘୁଷୁରିଆ, ବିଂ. ( ଘୃଷ୍ଟି ଶବ୍ଦଜ ) ଶୂକରରକ୍ଷକ, ଶୂକରପାଳକ ।

ଘୁଷୁରିବା, କ୍ରି. (ଦେଶଜ) ଭୂମିରେ ଲୁଣ୍ଠିତ ହେବା ।

ଘୁସୃଣ, ବ. ନ. (ଘୁନ୍ସ୍=ଭୂଷିତ କରିବା-ଣ) କୁଙ୍କୁମ ।

ଘୂକ, ବ. ପୁଂ. (ଘୂ=ଅନୁକରଣ ଶବ୍ଦ-କୈ-ଅ) ପେଚକ ।

ଘୂକାରି, ବ. ପୁଂ. (ଘୂକ-ଅରି) କାକ, ବାୟସ ।

ଘୂର୍ଣ୍ଣ, ବ. ପୁଂ. (ଘୂର୍ଣ୍ଣ-ଅ) ଭ୍ରମି, ଘୂର୍ଣ୍ଣି; ପିତ୍ତାଶୀଗ ।

ଘୂର୍ଣ୍ଣନ, ନ. } ବ. (ଘୂର୍ଣ୍ଣ-ଅନ,ଇ)ମଣ୍ଡଳାକାର ଘୂର୍ଣ୍ଣି, ସ୍ତ୍ରୀ. } ପଥରେ ପରିଭ୍ରମଣ, ଆବର୍ତ୍ତ, ଘୂରିବା ।

ଘୂର୍ଣ୍ଣାୟମାନ, ବିଂ. ( ଘୂର୍ଣ୍ଣ-ଆନ; ଯ, ମ ଅଗମ) ଭ୍ରାମ୍ୟମାଣ, ଯାହା ବୁଲୁଅଛି ।

ଘୂର୍ଣ୍ଣିତ, ବିଂ. (ଘୂର୍ଣ୍ଣ-ତ) ଭ୍ରାନ୍ତ, ଭ୍ରମିତ ।

ଘୃଣା, ବ. ସ୍ତ୍ରୀ. ( ଘୃଣ୍-ଅ-ଆ ) ଦୟା, କରୁଣା; ଅବଜ୍ଞା, ଅଶ୍ରଦ୍ଧା, ଜୁଗୁପ୍ସା । ଯଥା—

ଘେନେ ଏ କଥା ମନେ ଥିଲା, ଘୃଣା କ କାରଣେ ନୋହିଲ ।
ଅ. ଚ.

ଘୃଣାବାସ, ବ. ପୁଂ. (ଘୃଣା-ଅବାସ) କୁଷ୍ମାଣ୍ଡ । ବିଂ. ଘୃଣାଯୁକ୍ତ ।

ଘୃଣି, ବ. ପୁଂ. (ଘୃଣ୍-ଇ) ଚନ୍ଦ୍ର ସୂର୍ଯ୍ୟର କିରଣ; ସୂର୍ଯ୍ୟ; ତରଙ୍ଗ; ଜଳ ।

ଘୃଣିତ, ବିଂ. (ଘୃଣ୍-ତ) ଘୃଣାଯୁକ୍ତ, ଅବଜ୍ଞାତ ।

ଘୃଣୀ, ବିଂ. ( ଘୃଣା-ଇନ୍ ) ଜୁଗୁପ୍ସାକାରୀ, ଦୟାଳୁ ।

ଘୃତ, ବ. ନ. ( ଘୃ-ତ ) ଘିଅ, ଆଜ୍ୟ, ହବିଃ; ଜଳ ।

ଘୃତକୁମାରୀ, ବ. ସ୍ତ୍ରୀ. (ଘୃତ-କୁମାରୀ) ସ୍ୱନାମ-ଖ୍ୟାତ ଗୁଳ୍ମବିଶେଷ, ଘିକୁଆଁରୀ ।

ଘୃତଦୀଧିତ, ବ. ପୁଂ. (ଘୃତ-ଦୀଧିତ) ଅଗ୍ନି ।

ଘୃତପୂର, ବ. ପୁଂ. (ଘୃତ-ପୂର) ପକ୍ୱାନ୍ନବିଶେଷ ।

ଘୃତାକ୍ତ, ବିଂ. ( ଘୃତ-ଅକ୍ତ=ଲେପିତ ) ଯାହା ଘୃତରେ ଲିପ୍ତ ହୋଇଅଛି, ଯେ ସର୍ବାଙ୍ଗରେ ଘୃତ ଲଗାଇଅଛି ।

ଘୃତାଚୀ, ବ. ସ୍ତ୍ରୀ. (ଘୃତ-ଅନଚ୍-•-ଈ) ଅପ୍ସରା-ବିଶେଷ ।

ଘୃତେଲୀ, ବ. ସ୍ତ୍ରୀ. ( ଘୃତ-ଇର୍-ଅ; ର=ଲ, ଈ) ତେଲ୍ଲୁଣୀପୋକ ।

ଘୃତୋଦ, ବ. ପୁଂ. (ଘୃତ-ଉଦ) ଘୃତସମୁଦ୍ର ।

ଘୃଷ୍ଟ, ବିଂ. ( ଘୃଷ୍-ତ ) ମାର୍ଜିତ, ଯାହା ଘଷା ହୋଇଅଛି । ବିଂ. ପୁଂ. ଗନ୍ଧଦ୍ରବ୍ୟବିଶେଷ ।

ଘୃଷ୍ଟତାଡିତ, ବ. ନ. (Frictional Electricity ) ଘର୍ଷଣଦ୍ୱାରା ଯେଉଁ ତାଡିତ ଶକ୍ତି ଜନ୍ମେ ।

ଘୃଷ୍ଟି, ବ. ସ୍ତ୍ରୀ. (ଘୃଷ୍-ତି) ଘର୍ଷଣ; ଅପରାଜିତା । ପୁଂ. ସ୍ତ୍ରୀ. ଶୂକର, ଶୂକରୀ । (ଶୂକର ଅର୍ଥରେ ) ଯଥା—

ପୂର୍ଣ୍ଣ ହେବାରୁ ଘର ଦୃଷ୍ଟିମନ୍ଦ ହେ । ଉ. ଘ.

ଘେନାଇବା, କ୍ରି. (ଦେଶଜ) ମନାଇବା, ବୁଝାଇବା । ଯଥା—

ଘେନାଇ ଥମେ ଘେଘେ କହୁଲୁଁ ଗୋ,
ଘେନଲୁ ନାହିଁ ବାଳା ପହୁଲୁ ଗୋ । ବ. ଚ.

ଘେନାଘେନ, କ୍ରି. ବି. ଝେଙ୍କାଝେଙ୍କ । ଯଥା—

ଘନପୀନସ୍ତନା ଗ୍ରନ୍ଥବେଣୀ,
ଘେନାଘେନ ହେଲେ ତାଣ୍ ପୁଣି । କା. ଚୌ.

ଘେର, ଘେରା, ବି. (ଦେଶଜ) ବେଷ୍ଟନ, ବେଢଣ, ପ୍ରାଚୀର । ଯଥା—

ଛୋର ସଖି ଘେର ପଡବା ହେବଃ
ଗ୍ରେର ପର ଅନ୍ତରଣ । ବ. ଚ.

ଘେରବାର, କ୍ରି. ବେଢିବାର ।

ଘୈତା, ବି. (ଗୃହସ୍ଥ ଶବ୍ଦଜ) ସ୍ୱାମୀ, ପୁରୁଷ ।

ଘୋଘା, ( ଅନୁକରଣ ଶବ୍ଦ ) ଗୋଲମାଲସୂଚକ ଶବ୍ଦ ।

ଘୋଟ, ଘୋଟକ, ବି. ପୁଂ. (ଘୁଟ୍-ଅ, ଅକ)ଅଶ୍ୱ, ଘୋଟକ ।

ଘୋଟିବା, କ୍ରି. (ଦେଶଜ) ଢାଙ୍କିବା, ଆଚ୍ଛାଦନ କରିବା । ଯଥା—

ଘୋଟି ଅଛନ୍ତି ସେ ଘୋର ଅନ୍ଧକାର ନଭି ।

ମର୍ଦ୍ଦନ କରିବା । ଯଥା—

ଘୋଟି କଡବନ୍ଧ ଘୋର ଘୋର ଜାଙ୍ଗଳ,
ନହର ଭୂଲେ ଘାହା ପିଇଲୁ ଗୋ । ବ. ଚ.

ଘୋଡ଼ଣୀ, ବି. (ଦେଶଜ) ଢାଙ୍କୁଣୀ । ଯଥା—

ଗ୍ରେଳ ଘୋଡ଼ଣୀକ ମଣ୍ଡନ ହାର,
ପ୍ରବାଳମାଳା କ ବଉଳ ଝର ।

ଘୋଡ଼ଲାଗି, ବି. ( ଦେଶଜ ) ଜଗନ୍ନାଥଙ୍କର ଶୀତକାଳର ବସ୍ତ୍ର ଭୂଷଣବିଶେଷ । ଯଥା—

ଦାରୁବ୍ରହ୍ମ କେ ବଡ଼ ଘୋଡ଼ଲାଗି ଲାଗିଛନ୍ତି ତରଣ,
ଅଧଳକୋଷକୁ ଥରେ କଲେ ଭନ୍ ତେଜସ୍ୱୀ ହୋଇଣ ।

ଘୋଡ଼ା, ବି. ପୁଂ. (ଘୋଟକ ଶବ୍ଦଜ) ଅଶ୍ୱ, ତୁରଙ୍ଗ ।

ଘୋଡ଼ାଇବା, କ୍ରି. ଶେଜ ଢାଙ୍କିବା, ଆଚ୍ଛାଦନ କରିବା ।

ଘୋଡ଼ୀ, ବି. ସ୍ତ୍ରୀ. ( ପ୍ରା; ଘୋଟକୀ ଶବ୍ଦଜ ) ସ୍ତ୍ରୀ ଅଶ୍ୱ, ମାଈଘୋଡ଼ା ।

ଘୋଣା, ବି. ସ୍ତ୍ରୀ. (ଘୁଣ୍-ଅ) ଅଶ୍ୱ ନାସିକା;ନାସିକା । ଯଥା—

ଘୋଣାରେ ଦେଲେ ମୋତି ନାକଚଣା । ଲା. ବ.

ଘୋଣୀ, ବି. ପୁଂ. (ଘୋଣ-ଇନ୍) ଶୂକର ।

ଘୋର, ବି. ପୁଂ. (ଘୁର୍-ଅ) ଶିବ; ଋଷିବିଶେଷ । ସ୍ତ୍ରୀ. ସ୍ତ୍ରୀ. ଭୟାନକ ରାତ୍ରି; ଭୟ; ବିଷ । ବିଂ. ଭୟଙ୍କର; ବିକଟ; ମହତ୍; ବିଷମ; ଦୁର୍ଗମ; ଦାରୁଣ; ଜାବଡ଼ ।

ଘୋରଦର୍ଶନ, ବି. ପୁଂ. (ଘୋର-ଦର୍ଶନ) ପେଚକ । ବିଂ. ବିକଟାକାର ।

ଘୋରବାସନ, ବି. ପୁଂ. ( ଘୋର-ବାସ୍-ଅନ ) ଶୃଗାଳ ।

ଘୋରିବା, କ୍ରି. (ଘର୍ଷଣ ଶବ୍ଦଜ) ଘର୍ଷଣ କରିବା, ଘଷି ଚୂର୍ଣ୍ଣ କରିବା ।

ଘୋରୀ, ବି. (ଯାବନିକ) ମୁସଲମାନ ରାଜବଂଶ ବିଶେଷ ।

ଘୋଲଦହି, ବି. (ଦେଶଜ) ତକ୍ର, ଦଧିକୁ ମନ୍ଥନ କରି ଲହୁଣୀ ବାହାର କରି ନେଲେ ଅବଶିଷ୍ଟ ଯାହା ରହେ ।

ଘୋଲାବିନ୍ଧା, ବି. ବେଦନାବିଶେଷ ।

ଘୋଷ, ବି. ପୁଂ. (ଘୁଷ୍-ଅ) ଗଉଡ଼ପାଡ଼ା; ଗଉଡ଼; ଧ୍ୱନି; ମେଘଧ୍ୱନି; କଂସା; କାୟସ୍ଥମାନଙ୍କ ପଦବୀ ।

ଘୋଷକ, ବିଂ. (ଘୁଷ୍-ଅକ) ପ୍ରଚାରକ ।

ଘୋଷଣ, ନ. } ବି. (ଘୋଷ-ଅନ) ଉଚ୍ଚୈଃଶବ୍ଦ,
ଘୋଷଣା, ସ୍ତ୍ରୀ. } ଇତସ୍ତତଃ ବିଜ୍ଞାପନ ପ୍ରଚାର ।

ଘୋଷୟିତ୍ନୁ, ବି. ପୁଂ. (ଘୁଷ୍-ଇତ୍ନୁ, ଯ ଆଗମ) ବ୍ରାହ୍ମଣ; କୋକିଳ; କମ୍ବୋଦୀ ।

ଘୋଷବତୀ, ବି. ସ୍ତ୍ରୀ. (ଘୋଷ-ବତ୍-ଈ) ବୀଣା ।

ଘୋଷା, ବି. ସ୍ତ୍ରୀ. (ଦେଶଜ) ସଙ୍ଗୀତାଦ ଗାନ କାଳରେ ଆଦ୍ୟୋଚ୍ଚାରିତ ଯେଉଁ ବିଷୟ ପ୍ରତ୍ୟେକ ପଦ ଶେଷରେ ପୁନଃ ପୁନଃ ଗାନ କରିବାକୁ ହୁଏ ତାହାକୁ ଘୋଷା ବୋଲାଯାଏ ।

ଘୋଷିତ, ବିଂ. ( ଘୁଷ୍-ତ ) ପ୍ରଚାରିତ, ଯେଉଁ ବିଷୟର ଘୋଷଣା ହୋଇ ଯାଇଅଛି ।

ଘୋଷିବା, କ୍ରି. ( ଘୁଷ୍ ଧାତୁଜ ) ପାଠାଭ୍ୟାସ କରିବା, ପ୍ରଚାର କରିବା, ଘୋଷଣା କରିବା ।

ଘୋସାଡିବା, କ୍ରି. (ଦେଶଜ) ଓଟାରିବା,ଟାଣିବା ।

ଘ୍ନ, ବିଂ. (ହନ୍-ଅ) ଧ୍ୱଂସକ, ନଷ୍ଟକାରୀ ।

ଘ୍ରାଣ, ବି. ନ. (ଘ୍ରା-ଅନ) ନାସିକା; ଗନ୍ଧଗ୍ରହଣ । ବିଂ. ଘ୍ରାତ, ଆଘ୍ରାତ ।

ଘ୍ରାଣତର୍ପଣ, ବି. ପୁଂ. ( ଘ୍ରାଣ-ତର୍ପଣ ) ସୁଗନ୍ଧ, ସୌରଭ ।

ଘ୍ରାଣେନ୍ଦ୍ରିୟ, ବି. ନ. (ଘ୍ରାଣ-ଇନ୍ଦ୍ରିୟ) ନାସିକା, ଯେଉଁ ଇନ୍ଦ୍ରିୟଦ୍ୱାରା ବସ୍ତୁର ଗନ୍ଧ ଗ୍ରହଣ କରାଯାଏ ।

ଘ୍ରାତ, ବିଂ. (ଘ୍ରା-ତ) ଯାହା ଘ୍ରାଣ କରା ହୋଇ-ଅଛି, ଆଘ୍ରାତ ।

ଘ୍ରାତବ୍ୟ, ବିଂ. ( ଘ୍ରା-ତବ୍ୟ ) ଯାହାର ଗନ୍ଧ ନେବାକୁ ହୁଏ, ଘ୍ରାଣଯୋଗ୍ୟ ।

ଘ୍ରାତି, ବି. ସ୍ତ୍ରୀ. (ଘ୍ରା-ତି) ନାସିକା; ଆଘ୍ରାଣ ।

———:o:———

# ଙ

ଙ,ବ୍ୟଞ୍ଜନବର୍ଣ୍ଣର ପଞ୍ଚମ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଜିହ୍ୱାମୂଳ । ବି. ପୁଂ. (ଙୁ=ଶବ୍ଦ କରିବା -ଅ) ବିଷୟସ୍ପୃହା; ବିଷୟ; ବିଷୟରକ୍ଷା; ଭୈରବ; ଭୈରବ; ଧ୍ୱନି ।

———:o:———

# ଚ

ଚ, ବ୍ୟଞ୍ଜନବର୍ଣ୍ଣର ଷଷ୍ଠ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ । ଅ. ସମୁଚ୍ଚୟ; ଅନ୍ୱୟ; ଏବଂ; ପକ୍ଷାନ୍ତର; ଇତରେତର ଯୋଗ; ସମାହାର; ହେତୁ; ଆନୁଷଙ୍ଗିକତା; ଅବଧାରଣ;ପାଦପୂରଣ । ବି. ପୁଂ. ଚୌର; ଚନ୍ଦ୍ର; ଚଣ୍ଡେଶ୍ୱର; କୂର୍ମ ।

ଚଅଁର, ବି. (ପ୍ରା; ଚାମର ଶବ୍ଦଜ) ଚମରୀପୁଚ୍ଛ-ନିର୍ମିତ ବ୍ୟଜନବିଶେଷ, ବାଳବ୍ୟଜନ ।

ଚଉଡୋଳ, ବି. (ପ୍ରା; ଚତୁର୍ଦ୍ଦୋଳ ଶବ୍ଦଜ)ଚାରି ଜଣ ମନୁଷ୍ୟଦ୍ୱାରା ବହନୀୟ ଶିବିକାବିଶେଷ ।

ଚଉଧୁରୀ, ବି. (ଦେଶଜ) ଜାତିବିଶେଷର ଉପାଧି-ବିଶେଷ ।

ଚଉପାଢ଼ୀ, ବି. (ଦେଶଜ) ଗ୍ରାମବାସୀ ବା ସାଧାରଣ ଆଗନ୍ତୁକ ବ୍ୟକ୍ତିମାନଙ୍କ ଉପବେଶନାର୍ଥ ଗୃହ-ମଧ୍ୟରେ ବା ପାର୍ଶ୍ୱରେ ଥିବା ମୃତ୍ତିକାନିର୍ମିତ ପୀଢ଼ି, ବାରଣ୍ଡା ।

ଚଉରା, ବି. (ଦେଶଜ) ହିନ୍ଦୁଙ୍କର ତୁଳସୀବୃକ୍ଷ ରୋପଣ କରିବାର ସ୍ତୂପବିଶେଷ ।

ଚଉରାଶି, ବି. (ଚତୁଃ-ଅଶି) ୮୪ ସଂଖ୍ୟକରାଶି ।

ଚଉଁରୀ, ବି. (ଦେଶଜ) ଏକମହଲା କୋଠାଘର; କେଶନିର୍ମିତ ଚାମର ।

ଗର୍ଭକୁ କଲ ଚଉଁରୀ, ପ୍ରକାଶ ରୂପା ଚଉଁରୀ । ଲ. ବ.

ଚକ, ବି. (ଚକ୍ରର ଅପଭ୍ରଂଶ) ଚକ୍ର ।

ଚକଟା, ବି. ( ଦେଶଜ ) ଦୁଗ୍ଧ ପାଚିଲାକଦଳୀ ମିଶ୍ରିତ ସୁମିଷ୍ଟ ଖାଦ୍ୟବିଶେଷ ।

ଚକଡ଼ା, ବି. (ଦେଶଜ) ଗହ୍ୱର ।

ଚକମକି, ବି. (ଦେଶଜ) ଅଗ୍ନ୍ୟୁତ୍ପାଦକ ପ୍ରସ୍ତର ।

ଚକବନ୍ଦୀ, ବି. କୌଣସି ଜମି ବା ଗ୍ରାମର ସୀମା ନିର୍ଣ୍ଣୟ ।

ଚକା, ବିଂ. ( ଚକ୍ରଶବ୍ଦଜ ) ଗୋଲ, ବର୍ତ୍ତୁଳ । ଯଥା—

ଚକାନୟନକୁ ଚକା ରେ ମାଳସ ଚକାନୟନକୁ ଚକା ।

ବି. ଜାନୁ ଛନ୍ଦି ବସିବା ।

ଚକାସିତ, ବିଂ. ( ଚକାସ୍=ଦୀପ୍ତି ପାଇବା-ତ ) ଦୀପ୍ତ, ଉଜ୍ଜ୍ୱଳ; ଶୋଭିତ; ପ୍ରକାଶିତ ।

ଚକି, ବି. (ଚକ୍ରଶବ୍ଦଜ) ଗହମ ପ୍ରଭୃତି ପେଷଣାର୍ଥ ପ୍ରସ୍ତରନିର୍ମିତ ଯନ୍ତ୍ରବିଶେଷ; କାଗଜନିର୍ମିତ ପଦାର୍ଥ, ଯାହା ସୂତାଦ୍ୱାରା ବାୟୁରେ ଉଡ଼ା ଯାଏ ।

ଚକିତ, ବି. (ଚକ୍-ତ) ଭୀତ, ଚମକିତ । ବି. ଭୟ । ଯଥା—

କର ଗୋପବୃନ୍ଦମାନଙ୍କୁ ଚକିତ, ବତ୍ସମାନେ ରଖାଇଲେ ।

ଚକିତା, ବି. ସ୍ତ୍ରୀ. ( ଚକିତ-ଆ ) ଷୋଡଶାକ୍ଷର ଛନ୍ଦୋବିଶେଷ । ବିଂ. ଭୀତା, ଚମକିତା ।

ଚକୁଳିଆପଣ୍ଡା, ବି. ( ଦେଶଜ ) ନିମ୍ନଶ୍ରେଣୀୟ ବ୍ରାହ୍ମଣ ।

ଚକୁଳୀ, ବି. (ଧ୍ୱନ୍ୟାତ୍ମକ) ପିଷ୍ଟକବିଶେଷ ।

ଚକୋର, ବି. ପୁଂ. ( ଚକ୍-ଓର ) ପକ୍ଷିବିଶେଷ, ଏହି ପକ୍ଷୀ ଚନ୍ଦ୍ରିକାପାନରେ ତୃପ୍ତ ହୁଏ । ଯଥା—

ଚନ୍ଦ୍ରକୁ ଚକୋର ଜଳଧରକୁ ଚାତକ,
ଚାହେଁ ଯେତେ ଆଶା କରିଅଛି ମୁଁ ଅନେକ । ପ୍ରେ. ସୁ.

ଚକୋରୀ, ବି. ସ୍ତ୍ରୀ. (ଚକୋର-ଈ) ସ୍ତ୍ରୀ ଚକୋର ।

ଚକ୍କର, ବି. ( ପ୍ରା; ଚକ୍ରଶବ୍ଦଜ ) ଘୋଟକାଦିର ଗୋଲାକୃତି ଭ୍ରମଣ । ଯଥା—

କାହିଁ ଅଶ୍ୱାରୋହୀ ଦେଇ ଏକବର
କଦମେ ବୁଲଇ ଦିଅଇ ଚକ୍କର । ନ. କେ.

ଚକ୍‌ଚକ୍, ବି. ( ଚକଚକ୍ୟ ଶବ୍ଦଜ ) ସ୍ୱଚ୍ଛତା, ଉଜ୍ଜ୍ୱଳତା, ଦୀପ୍ତି ।

ଚକ୍ତି, ବି. କ୍ଷୁଦ୍ର କ୍ଷୁଦ୍ର ଗୋଲାକାର କାଗଜ ବା ଚର୍ମ ।

ଚକ୍ର, ବି. ପୁଂ. (ଚକ୍-ର ଅଥବା କୃ=କରିବା-ଅ, ଦ୍ୱିତ୍ୱ) ଚକ୍ରବାକପକ୍ଷୀ । ନ. ସୈନ୍ୟ; ରାଜ୍ୟ; ଦେଶ, ପ୍ରଦେଶ; ସମୂହ; ରଥାଦିର ଚକ; ତୈଳଯନ୍ତ୍ର, ଘଣା; ଚକ୍ରାକୃତି ଅସ୍ତ୍ର; ଗ୍ରାମ-ସମୂହ; ଇନ୍ଦ୍ରଜାଲ; କୁମ୍ଭକାରର ଚକ; ଜଳର ଆବର୍ତ୍ତ; ସୈନ୍ୟରଚନାବିଶେଷ; ତନ୍ତ୍ରୋକ୍ତ ମୂଳାଧାରସ୍ଥିତ ଷଟ୍‌ପଦ୍ମ; ବାଦ୍ୟଚକ୍ର; କାବ୍ୟ-ବନ୍ଧବିଶେଷ; ଛଳ, କୁମନ୍ତ୍ରଣା; ହସ୍ତସ୍ଥ ରେଖା-ବିଶେଷ; ଦଣ୍ଡବିଶେଷ; ଚକ୍ରବିଶେଷ । (ସମୂହ ଅର୍ଥରେ) ଯଥା—

ଚକ୍ର-ସୂର୍ଯ୍ୟ-ଚକ୍ର ନକ୍ର ଛେଦନେ ଘୋରକଚକ୍ର,
ପିଙ୍ଗିଛି ତାତ ବିଷ୍ଣୁରେ କାମ କ ଷେଷେ । ସ୍ୱ. ବ.

ଚକ୍ରଗଣ୍ଡୁ, ବି. ପୁଂ. ( ଚକ୍ର-ଗଣ୍ଡୁ ) ଚକ୍ରାକାର ପାଧାନ, ଗୋଲ ତକିଆ ।

ଚକ୍ରଗୁଚ୍ଛ, ବି. ପୁଂ. (ଚକ୍ର-ଗୁଚ୍ଛ) ଅଶୋକ ବୃକ୍ଷ ।

ଚକ୍ରଜୀବକ, ବି. ପୁଂ. (ଚକ୍ର-ଜୀବକ) କୁମ୍ଭକାର, କୁମ୍ଭାର ।

ଚକ୍ରତୀର୍ଥ, ବି. ନ. ( ଚକ୍ର-ତୀର୍ଥ ) ସୁଦର୍ଶନ ଚକ୍ର-ଦ୍ୱାରା କୃତ ପ୍ରଭାସସ୍ଥ ବୈଷ୍ଣବ ତୀର୍ଥବିଶେଷ । କେହି କେହି ପୁରୀଧାମକୁ ମଧ୍ୟ ଚକ୍ରତୀର୍ଥ କହନ୍ତି । ଯଥା—

ସେ ଧନ୍ୟ ହେ ପୁଣ୍ୟଶ୍ଳୋକ ଯେବେ ଏକ୍ଷୁପଲୀ,
ସିନ୍ଧୁତୀରେ ବୋଲଉଛ ଚକ୍ରତୀର୍ଥ ନାମେ । ମ. ଯା.

ଚକ୍ରଦଂଷ୍ଟ୍ର, ବି. ପୁଂ. (ଚକ୍ର-ଦଂଷ୍ଟ୍ର) ଶୂକର, ବରାହ ।

ଚକ୍ରଧର, ବି. ପୁଂ. ( ଚକ୍ର-ଧର ) ବିଷ୍ଣୁ; ସର୍ପ; ଦେଶାଧିପ, ଗ୍ରାମାଧିପ । ବିଂ. ଐନ୍ଦ୍ରଜାଲିକ ।

ଚକ୍ରନଦୀ, ବି. ସ୍ତ୍ରୀ. ଗଣ୍ଡକୀ ନଦୀ ।

ଚକ୍ରପଥ, ବି. ପୁଂ. (ଚକ୍ର-ପଥ) ମଣ୍ଡଳାକାର ପଥ ।

ଚକ୍ରପାଣି, ବି. ପୁଂ. (ଚକ୍ର-ପାଣି) ବିଷ୍ଣୁ । ଯଥା—

ଧର୍ମଙ୍କ ଘେନିକୁ ପାର୍ଥ ଦେଇଣ ମେଲାଣି,
କତିଥିଲେ ବିଜେ କଲେ ସଙ୍ଗେ ଚକ୍ରପାଣି । କା. ବ.

ଚକ୍ରପାଦ, ବି. ପୁଂ. ( ଚକ୍ର-ପାଦ ) ରଥ, ଗାଡ଼ି; ହସ୍ତୀ ।

ଚକ୍ରପାଳ, ବି. ପୁଂ. ( ଚକ୍ର-ପାଳ ) ଦେଶାଧିପ, କୌଣସି ଦେଶ ବା ପ୍ରଦେଶର ଶାସନକର୍ତ୍ତା ।

ଚକ୍ରପୁଷ୍କରଣୀ, ବି. ସ୍ତ୍ରୀ. କାଶୀସ୍ଥ ମଣିକର୍ଣ୍ଣିକା ।

ଚକ୍ରବନ୍ଧୁ, ଚକ୍ରବାନ୍ଧବ, ବି. ପୁଂ. ( ଚକ୍ର-ବନ୍ଧୁ, ବାନ୍ଧବ) ସୂର୍ଯ୍ୟ; ଦିବସରେ ଚକ୍ରବାକମିଥୁନର ମିଳନ ହୁଏ ବୋଲି ସୂର୍ଯ୍ୟଙ୍କୁ ଚକ୍ରବନ୍ଧୁ ବୋଲାଯାଏ ।

ଚକ୍ରଭୃତ୍, ବି. ପୁଂ. (ଚକ୍ର-ଭୃ-୦) ବିଷ୍ଣୁ । ବିଂ. ଚକ୍ରଧାରୀ ।

ଚକ୍ରଭେଦନୀ, ବି. ସ୍ତ୍ରୀ. ( ଚକ୍ର-ଭେଦନୀ ) ରାତ୍ରି; ରାତ୍ରିରେ ଚକ୍ରବାକମିଥୁନର ବିଚ୍ଛେଦ ହୁଏ ବୋଲି ରାତ୍ରିର ନାମ ଚକ୍ରଭେଦନୀ ।

ଚକ୍ରଭ୍ରମ, ବ. ପୁଂ. ( ଚକ୍ର-ଭ୍ରମ ) ଶାଣାଦଯନ୍ତ୍ର; କୁନ୍ଦଯନ୍ତ୍ର ।

ଚକ୍ରମଣ୍ଡଳୀ, ବ. ପୁଂ. ( ଚକ୍ର-ମଣ୍ଡଳ-ଇନ୍ ) ବୃହତ୍ ସର୍ପ ।

ଚକ୍ରମୁଖ, ବ. ପୁଂ. (ଚକ୍ର-ମୁଖ) ଘୁଷୁରି, ଶୂକର ।

ଚକ୍ରଯାନ, ବ. ନ. ( ଚକ୍ର-ଯାନ ) ରଥ, ଗାଡ଼ି ପ୍ରଭୃତି ।

ଚକ୍ରରଦ, ବ. ପୁଂ. (ଚକ୍ର-ରଦ) ଶୂକର, ବରାହ ।

ଚକ୍ରବର୍ତ୍ତୀ, ବ. ପୁଂ. ( ଚକ୍ର-ବର୍ତ୍ତୀ ) ସମ୍ରାଟ୍, ସାର୍ବଭୌମ; ବ୍ରାହ୍ମଣଜାତିର ଉପାଧିବିଶେଷ ।

ଚକ୍ରବାକ, ପୁଂ. } ବ. ( ଚକ୍ର-ବଚ୍-ଅ, ଈ )
ଚକ୍ରବାକୀ, ସ୍ତ୍ରୀ. } ଚକୋର, ଚକୁଅଚକୀ, ପକ୍ଷିବିଶେଷ । ଯଥା—

ସର ସଦ୍ମ ଚକ୍ରବାକ ବଲେ ପଦ୍ମ
ଅବଲୋକ ମନ ଶଙ୍କ । ଲା. ବ.

ଚକ୍ରବାଡ଼, } ବ. ପୁଂ. ( ଚକ୍ର-ବଲ-ଅ )
ଚକ୍ରବାଳ, } (Horizon) ଲୋକାଲୋକପର୍ବତ । ନ. ମଣ୍ଡଳାକାର ଦିକ୍‌ସମୂହ, କୌଣସି ସ୍ଥାନରେ ଠିଆ ହୋଇ ଦୃଷ୍ଟି ସଞ୍ଚାରଣ କଲେ ଯେଉଁ ସ୍ଥଳରେ ପୃଥିବୀ ଓ ଆକାଶ ମିଳିତ ହେଲା ପରି ବୋଧ ହୁଏ । ଯଥା—

କେତେ ରୂପ ଧରୁଅଛି ଚକ୍ରବାଳ
ଦେଖାଉଛି ନବ ନବ ଇନ୍ଦ୍ରଜାଲ । ନ. କେ.

ଚକ୍ରବାତ, ବ. ପୁଂ. ( ଚକ୍ର-ବାତ ) ବାତ୍ୟା, ଘୂର୍ଣ୍ଣିବାୟୁ ।

ଚକ୍ରବୃଦ୍ଧି, ବ. ସ୍ତ୍ରୀ. (Compound interest.) ସୁଧର ସୁଧ, ବୃଦ୍ଧିର ବୃଦ୍ଧି ।

ଚକ୍ରବ୍ୟୂହ, ବ. ପୁଂ. ( ଚକ୍ର-ବ୍ୟୂହ ) ଯୁଦ୍ଧାର୍ଥ ମଣ୍ଡଳାକାରରେ ସୈନ୍ୟସ୍ଥାପନ ।

ଚକ୍ରହସ୍ତ, ବ. ପୁଂ. (ଚକ୍ର-ହସ୍ତ) ବିଷ୍ଣୁ ।

ଚକ୍ରାଙ୍ଗ, ବ. ପୁଂ. (ଚକ୍ର-ଅଙ୍ଗ) ରଥ, ଶକଟ; ବଗିଗ୍; ହଂସ ।

ଚକ୍ରାଙ୍ଗୀ, ବ. ସ୍ତ୍ରୀ. (ଚକ୍ରାଙ୍ଗ-ଈ) ହଂସୀ ।

ଚକ୍ରାଟ, ବ. ପୁଂ. (ଚକ୍ର-ଅଟ) ବିଷବୈଦ୍ୟ; ଧୂର୍ତ୍ତ; ସ୍ୱର୍ଣ୍ଣମୁଦ୍ରା ।

ଚକ୍ରାନ୍ତ, ବ. ପୁଂ.(ଚକ୍ର-ଅନ୍ତ)(Conspiracy) ଷଡ଼ଯନ୍ତ୍ର, କୁମନ୍ତ୍ରଣା ।

ଚକ୍ରାନ୍ତକାରୀ, ବିଂ. ( ଚକ୍ରାନ୍ତ-କାରିନ୍ ) ଯେ ଚକ୍ରାନ୍ତ କରେ, ଯେ ଚକ୍ରାନ୍ତରେ ଲିପ୍ତ ଥାଏ ।

ଚକ୍ରାୟୁଧ, ବ. ପୁଂ. (ଚକ୍ର-ଆୟୁଧ) ବିଷ୍ଣୁ ।

ଚକ୍ରାବର୍ତ୍ତ, ବ. ପୁଂ. ( ଚକ୍ର-ଆବର୍ତ୍ତ ) ମଣ୍ଡଳାକାରରେ ଭ୍ରମଣ ।

ଚକ୍ରିକା, ବ. ସ୍ତ୍ରୀ. ଜାନୁ, ଆଣ୍ଠୁ ।

ଚକ୍ରୀ, ବ. ପୁଂ. (ଚକ୍ର-ଇନ୍) ବିଷ୍ଣୁ; କୁମ୍ଭକାର; ଚକ୍ରବାକ; ସର୍ପ; ସମ୍ରାଟ୍; ତେଲୀ; ବାଜୀକର; କୁମନ୍ତ୍ରଣାଦାୟକ, ଖଳ; ଦେଶାଧିପ; କାକ; ଗର୍ଦ୍ଦଭ; ସୂଚକ ।

ଚକ୍ରୀବାନ୍, ବ. ପୁଂ. (ଚକ୍ରୀ-ବତ୍) ଗର୍ଦ୍ଦଭ, ଗଧ; ନୃପବିଶେଷ ।

ଚକ୍ରେଶ୍ୱର, ବ. ପୁଂ. ( ଚକ୍ର-ଈଶ୍ୱର ) ସମ୍ରାଟ୍; ତାନ୍ତ୍ରିକମତାବଲମ୍ବୀ; ମଦ୍ୟପାୟିମାନଙ୍କ ଦଳପତି ।

ଚକ୍ରେଶ୍ୱରୀ, ବ. ସ୍ତ୍ରୀ. (ଚକ୍ର-ଈଶ୍ୱର-ଈ) ଦେବୀବିଶେଷ; ବିଦ୍ୟାଦେବୀ, ସରସ୍ୱତୀ ।

ଚକ୍ଷଣ, ବ. ନ. (ଚକ୍ଷ୍-ଅନ) ମଦ୍ୟପାନରୋଚକ ଭକ୍ଷ୍ୟଦ୍ରବ୍ୟ; ଚଟଣୀ; କଥନ ।

ଚକ୍ଷାଃ, ବ. ପୁଂ. (ଚକ୍ଷ୍-ଅସ୍) ବୃହସ୍ପତି,ଦେବଗୁରୁ; ଉପଦେଶକ, ଶିକ୍ଷକ ।

ଚକ୍ଷୁଃ, ବ.ନ.(ଚକ୍ଷ୍-ଉସ୍) ନୟନ; ଦର୍ଶନେନ୍ଦ୍ରିୟ, ଈକ୍ଷଣ ।

ଚକ୍ଷୁଃଶ୍ରବାଃ, ବ. ପୁଂ. ( ଚକ୍ଷୁସ୍-ଶ୍ରବସ୍ ) ସର୍ପ ।

ବଣ ଶୋଭ ସ୍ୱନେ ହୋଇ ସେ,
ବର୍ଗର ଚକ୍ଷୁଃଶ୍ରବା ହୋଇଗଲେ ସେ
ସ୍ୱଗ୍ଧ ଅସ୍ୱାଦନ ପାଇ ସେ । ବି. ଚ.

ଚକ୍ଷୁଷ୍ମତ୍ତା, ବ. ସ୍ତ୍ରୀ. (ଚକ୍ଷୁଷ୍ମତ୍-ତା) ତୀକ୍ଷ୍ଣଦୃଷ୍ଟି; ଦର୍ଶନଶକ୍ତିର ପ୍ରବଳତା ।

ଚକ୍ଷୁଷ୍ମାନ୍, ବ. (ଚକ୍ଷୁସ୍-ମତ୍) ଯାହାର ଦର୍ଶନଶକ୍ତି ବିଲକ୍ଷଣ ପ୍ରବଳ ।

ଚକ୍ଷୁଷ୍ୟ, ବଂ. (ଚକ୍ଷୁସ୍-ଯ) ଚକ୍ଷୁର ହିତଜନକ; ସୁନ୍ଦର, ପ୍ରିୟଦର୍ଶନ ।

ଚଗଲା, ବ. (ଦେଶଜ) ଧୃଷ୍ଟ; ଅସ୍ଥିରମନା ।

ଚକ୍କର, ବ. ପୁଂ. (ଚକ୍-ଉର) ରଥ, ଶକଟ ; ବୃକ୍ଷ । ବି. ଯାନ, ବାହାନ ।

ଚଙ୍କ୍ରମଣ, ବ. ନ. (ଚଙ୍କ୍ରମ୍-ଅନ) ପୁନଃ ପୁନଃ ଭ୍ରମଣ ।

ଚଙ୍ଗ, ବଂ. (ଚ-ଗ) ସୁନ୍ଦର; ନିପୁଣ, କର୍ମଣ୍ୟ; ସୁସ୍ଥ, ନୀରୋଗ ।

ଚଜବା, କ୍ରି. ବ. (ଦେଶଜ) ତର୍ଜ୍ଜନ କରିବା ।

ଚଞ୍ଚତ୍, ବଂ. (ଚନ୍ଚ-ଅତ୍) ଚଞ୍ଚଳ ।

ଚଞ୍ଚରୀ, ବ. ସ୍ତ୍ରୀ. ଭ୍ରମରୀ; ଡେଙ୍ଗୁଲୀ ।

ଚଞ୍ଚରୀକ, ବ. ପୁଂ. (ଚର୍-ଈକ) ଭ୍ରମର । ଯଥା—

ଚଞ୍ଚରୀକ ଭୁଲି ଘାର ଚରଲେ ଭୋଳାରେ ।

ଚଞ୍ଚଳ, ବଂ. ( ଚଲ୍-ଅ ) ଅସ୍ଥିର , ଚପଳ ; ଅବ୍ୟବସ୍ଥିତ, ଯାହାର ମତର ସ୍ଥିରତା ନାହିଁ; ଲୋଲୁପ; କମ୍ପିତ, ବଞ୍ଚଳିତ । ବ. ପୁଂ. ବାୟୁ ।

ଚଞ୍ଚଳା, ବ. ସ୍ତ୍ରୀ. (ଚଞ୍ଚଳ-ଆ) ବିଦ୍ୟୁତ୍ ; ଲକ୍ଷ୍ମୀ । ଯଥା—

ଘନେ କି ଚଞ୍ଚଳା ଥରେ । ବି. ଚ.

ଚଞ୍ଚା, ବ. ସ୍ତ୍ରୀ. (ଚଞ୍ଚ୍-ଆ) ନଳନିର୍ମିତ ଆସ୍ତରଣ ।

ଚଞ୍ଚୁକା, ବ. ସ୍ତ୍ରୀ. (ଚଞ୍ଚୁ-କ) ପକ୍ଷିର ଥଣ୍ଟ ।

ଚଞ୍ଚୁଭୃତ୍, ବ. ପୁଂ. (ଚଞ୍ଚୁ-ଭୃତ୍) ପକ୍ଷୀ ।

ଚଞ୍ଚୁର, ବଂ. (ଚଞ୍ଚ୍-ଉର) ପଟୁ, ଦକ୍ଷ, ନିପୁଣ ।

ଚଞ୍ଚୁ, ବ. ସ୍ତ୍ରୀ. (ଚଞ୍ଚ୍-ଉ) ପକ୍ଷିର ଥଣ୍ଟ ।

ଚଟକ,ବ.ପୁଂ. (ଚଟ୍-ଅକ) ଘରଚଟିଆ (ଦେଶଜ) ସୁଖ, ମଜା ।

ଚଟକଣା, ବ. (ଦେଶଜ) ଗୃଧ୍ରଚୂଡ଼ା ।

ଚଟକା, ବ. (ଚଟକାର ଶବ୍ଦଜ) ଚେପଟା ।

ଚଟାଣ, ବ. (ଦେଶଜ) (Floor) ଗୃହତଳ; ବନ୍ଧନ୍ତ ସମତଳଭୂମି ।

ଚଟି; ଚଟୀ, ବ. ପଥ ନିକଟରେ ଟିକା ଯାତ୍ର ବଜାର; ଚର୍ମପାଦୁକାବିଶେଷ ।

ଚଟୁ, ବ. ନ. (ଚଟ୍-ଉ) ଚାଟୁ ; ପ୍ରିୟବାକ୍ୟ; ଉଦର, ପେଟ; ବ୍ରତମାନଙ୍କର ଆସନବିଶେଷ; ଭୁଣ ପ୍ରଭୃତ ଘାଣ୍ଟିବା ନିମିତ୍ତ ବ୍ୟବହୃତ କାଷ୍ଠ-ଦଣ୍ଡବିଶେଷ । ଯଥା—

ଯେବେ ଇଚ୍ଛା ତେବେ ଘାଣ୍ଟ, ଭୃଙ୍ଗ ସୁଅଦ କ ଜାଣିବ ଚଟୁ ।

ଚଟୁଆ, ବ. (ଦେଶଜ) ଫଡ଼ିଙ୍ଗ ।

ଚଟୁଣି, ଚଟୁଣୀ, ଚଟଣୀ, ବ. ମୁଖରୋଚକ ଅମ୍ଳ-ଦ୍ରବ୍ୟବିଶେଷ ।

ଚଟୁଳ, ବଂ. (ଚଟ-ଉଳ ବା ଚଟୁ-ଳ) ଚଞ୍ଚଳ; ଶୀଘ୍ର; ସୁନ୍ଦର, ମନୋହର । ଯଥା—

ଚଟୁଳ ଭୃଗ୍ଲ ନର୍ତ୍ତକୀ, ଏ ଲକ୍ଷ୍ୟ ନ ଛାଡ଼େ ମନ ।

ଚଟୁଳା, ବ. ସ୍ତ୍ରୀ. (ଚଟୁଳ-ଆ) ବିଦ୍ୟୁତ୍ ।

ଚଟୁଲୋଳ, ବଂ. (ଚଟୁ-ଲୋଳ) ଅତିଶୟ ଚଞ୍ଚଳ; ଅତିଶୟ ସୁନ୍ଦର; ଚାଟୁକାର ।

ଚଟେଇ, ଚଟାଇ, } ବ. (ଦେଶଜ) ତେଁସ; ମସିଣା ।

ଚଡକ, ବ. (ଦେଶଜ) ବଜ୍ର । ଯଥା—

ଚଡ ଚଡ ଚଡେ ଯେବେ ପଡଇ ଚଡକ,
ଉପୁଜାଇ ବିଶ୍ୱବାସି-ହୃଦୟେ ଦମକ । କ. ବ.

ଚଡା, ବ. (ଦେଶଜ) ଦ୍ୱୀପ ।

ଚଡାଇ, ବ. (ଦେଶଜ) ପକ୍ଷୀ । ଯଥା—

ଚପଳେ କିଏ ବିଗୁର ଏତେ,
ଚଡାଇ ଚଡି ଅଇଲେ ଦୂରେ । ବି. ଚ.

ଚଢାଇବା, କ୍ରି. ବ. ( ଦେଶଜ ) ବସାଇବା । ଯଥା—

କନ୍ଦ ଫୁଲଧନୁ ଧନୁ ଭୃଙ୍ଗରେ ତା ଅଞ୍ଜନଗୁଣ ଚଢ଼ାଇବି ।

ମଜାଇବା । ଯଥା—

ଚଢାଇ ଦେଲ ଗୁରୁତର ଚନ୍ଦନ,
ଚନ୍ଦ୍ର ବୁଲେକର୍ପୂର ଲକ୍ଷ ଘରକୁ ରେ । ଫ.ସା.

ଚଢାଉ, କ୍ରି. ବ. (ଦେଶଜ) ଆକ୍ରମଣ କରିବା ।

ଚଢିବା, କ୍ରି. ବ. (ଦେଶଜ) ଆରୋହଣ କରିବା ।

ଚଣକ, ବ. ପୁଂ. (ଚଣ୍-ଅକ) ବୁଟ; ମୁନିବିଶେଷ ।

ଚଣକାତ୍ମଜ, ବ. ପୁଂ. (ଚଣକ-ଆତ୍ମଜ) ବାତ୍ସ୍ୟା-ୟନମୁନି ।

ଚଣା, ବ. (ଗଣକ ଶବ୍ଦଜ) ବୁଟ । ଯଥା—

ଶାଗ ଚଣା ନାରଦ ଶ୍ରେବେଇଥିର ପଦ । ବି. ଚ.

ଚଣ୍ଡ, ବି. ପୁଂ. (ଚଣ୍ଡ୍-ଅ) ଛନ୍ନତ ବୃଷ; ଯମଦୂତ; ଦୈତ୍ୟବିଶେଷ, ଶୁମ୍ଭ ନିଶୁମ୍ଭର ଅନୁଚର । ନ. ଉଷ୍ଣତା; କ୍ରୋଧ; ତୀକ୍ଷ୍ଣତା, ଉଗ୍ରତା । ବିଂ. ଉଷ୍ଣ; ତୀକ୍ଷ୍ଣ, ଉଗ୍ର; ଅତିକୋପନ, ଅତିଶୟ କ୍ରୁଦ୍ଧ । ଯଥା—

ଚଣ୍ଡ ହୋଇ ଦେଶ ବିଖଣ୍ଡ କରୁଛ,
ମଧୁର ନାହିଁ ତା ତୁଣ୍ଡରେ । ବି. ଚ.

ଚଣ୍ଡନାୟିକା, } ବି. ସ୍ତ୍ରୀ. (ଚଣ୍ଡ-ନାୟିକା, ବତ୍-
ଚଣ୍ଡବତୀ, } ଈ) ଦୁର୍ଗା; ଅଷ୍ଟନାୟିକାର ଅନ୍ତର୍ଗତ ନାୟିକାବିଶେଷ ।

ଚଣ୍ଡବଳି, ବି. ନ. (ଚଣ୍ଡ-ବଳି) ଦେବତାଙ୍କୁ ନୈବେଦ୍ୟ ଅର୍ପଣ କରି ଯେଉଁ ଅଳ୍ପାଂଶ ଭୂମିରେ ଦିଆଯାଏ ।

ଚଣ୍ଡାଂଶୁ, ବି. ପୁଂ. (ଚଣ୍ଡ-ଅଂଶୁ) ସୂର୍ଯ୍ୟ ।

ଚଣ୍ଡାଳ, } ବି. ପୁଂ. (ଚଣ୍ଡ୍-ଅଲ୍-ଅ ଅଥବା
ଚାଣ୍ଡାଳ, } ଚଣ୍ଡ୍-ଅଳ) ନିଷାଦଜାତି, ଶୂଦ୍ରର ଔରସରେ ବ୍ରାହ୍ମଣୀର ଗର୍ଭରେ ଏହି ଜାତିର ଜନ୍ମ ହୁଏ; ଯେଉଁ ବ୍ୟକ୍ତିର ଦୟା ମମତା ନାହିଁ ଏବଂ ଲୋକଙ୍କ ପ୍ରତି ନିଷ୍ଠୁର ବ୍ୟବହାର କରଇ ତାହାକୁ ମଧ୍ୟ ଚଣ୍ଡାଳ ଶବ୍ଦରେ ନିର୍ଦ୍ଦେଶ କରାଯାଏ । ଯଥା—

ନିରଦୟ ଭଇପେଷ ନିର୍ଦ୍ଦୟେ ଚଣ୍ଡାଳ,
ବାମ କରେ କରଷି ଧରଣ ଘୋର ବାଳ । କ. ବ.

ଚଣ୍ଡିକା, } ବି. ସ୍ତ୍ରୀ. (ଚଣ୍ଡ-ଇକ-ଆ, ଚଣ୍ଡ୍-ଈ)
ଚଣ୍ଡୀ, } ଅତି କୋପନା ସ୍ତ୍ରୀ; ଦୁର୍ଗା । ଯଥା—

ଚଣ୍ଡିକା ଦେଉଳେ ଘଗିଛି ଗହଳ ।

ଚଣ୍ଡୀମଣ୍ଡପ, ବି. ପୁଂ. (ଚଣ୍ଡୀ-ମଣ୍ଡପ) ଦୁର୍ଗା କାଳୀ ପ୍ରଭୃତି ଦେବୀମାନଙ୍କର ପୂଜାର ସ୍ଥାନ ।

ଚଣ୍ଡୁ, ବି. ପୁଂ. (ଚଣ୍ଡ୍-ଉ) ମୂଷା; (ଦେଶଜ) ମାଦକଦ୍ରବ୍ୟବିଶେଷ ।

ଚତରା, ବିଂ. (ଦେଶଜ) ଚନ୍ଦ୍ରାକୃତି ସମତଳ ।

ଚତୁଃଶାଲ, ନ. } ବିଂ. (ଚତୁର୍-ଶାଳା, ଅ)
ଚତୁଃଶାଳା, ସ୍ତ୍ରୀ. } ଯେଉଁ ଗୃହ ମଧ୍ୟରେ ଚାରିଟା ଗୃହ ଅଛି, ପରସ୍ପରଅଭିମୁଖ ଚାରି ଗୃହ ।

ଚତୁଃଷଷ୍ଟି, ବି. ସ୍ତ୍ରୀ. (ଚତୁର୍-ଷଷ୍ଟି) ଚୌଷଠି, ୬୪ ।

ଚତୁର୍, } ବିଂ. (ଚତ୍-ଉର୍, ବାର) ଚାରି,୪;
ଚତ୍ୱାର, } ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ; ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏହି ଚତୁର୍ବର୍ଣ୍ଣ; ଋକ୍, ଯଜୁଃ, ସାମ, ଅଥର୍ବ ଏହି ଚାରି ବେଦ; ସତ୍ୟ, ତ୍ରେତା, ଦ୍ୱାପର, କଳି ଏହି ଚାରି ଯୁଗ ।

ଚତୁର, ବିଂ. (ଚତ୍-ଉର) କାର୍ଯ୍ୟଦକ୍ଷ, ନିପୁଣ; ସୁନ୍ଦର; ନେତ୍ରଗୋଚର; ବୁଦ୍ଧିଜୀବୀ, ଚଲାକ; (ଦେଶଜ) ଶଠ, ଧୂର୍ତ୍ତ ।

ଚତୁରଂଶିତ, ବିଂ. (ଚତୁର୍-ଅଂଶିତ) ପୃଷ୍ଠଚତୁଷ୍ଟୟରେ ବିଭକ୍ତ, ଚାରିପେଜୀ ।

ଚତୁରଙ୍ଗ, ବି. ପୁଂ. (ଚତୁର୍-ଅଙ୍ଗ) ହସ୍ତୀ ଅଶ୍ୱ ରଥ ପଦାତିରୂପ ଚାରିଭାଗରେ ବିଭକ୍ତ ସେନା; ପାଶକ୍ରୀଡ଼ାବିଶେଷ, ପଶାଖେଳ । ବିଂ. ଚାରି ଅଙ୍ଗଯୁକ୍ତ । ଯଥା—

ବାଜିଲେ ତୂର ସାଜିଲେ ଚତୁରଙ୍ଗ
ପ୍ରବେଶ ହେଲେ ସିଂହଦ୍ୱାର । ଲ. ବ.

ଚତୁରତା, ବି. ସ୍ତ୍ରୀ. (ଚତୁର-ତା) ସୁବୋଧତା; ବୁଦ୍ଧିଜୀବିତା; ଦକ୍ଷତା; ଶଠତା ।

ଚତୁରଶୀତି, ବିଂ. (ଚତୁର୍-ଅଶୀତି) ୮୪ ସଂଖ୍ୟା; ଚୌରାଅଶୀ ।

ଚତୁରସ୍ର, ବିଂ. (ଚତୁର୍-ଅସ୍ର) ଚତୁଷ୍କୋଣ, ଚାରିକୋଣିଆ; ଗୌରବ, ଉଚ୍ଚମିତ ନୁହେଁ; ନିର୍ଦ୍ଦୋଷ, ଅବ୍ୟାହତଗତି ।

ଚତୁରାତ୍ମା, ବି. ପୁଂ. (ଚତୁର୍-ଆତ୍ମନ୍) ପରମେଶ୍ୱର ।

ଚତୁରାନନ, ବି. ପୁଂ. (ଚତୁର୍-ଆନନ) ଚତୁର୍ମୁଖ, ବ୍ରହ୍ମା ।

ଚତୁରାଶ୍ରମ, ବି. ନ. (ଚତୁର୍-ଆଶ୍ରମ) ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ ଏହି ଚାରି ଆଶ୍ରମ ।

ଚତୁରୀ, ବିଂ. (ଚତୁର-ଈ) ନିପୁଣା । ଯଥା—

ଅତି ଭାବ ଥିଲୁ ତୁହି ଚତୁରୀ,
ଭାଳି ହସିଥିଲୁ ମୋତେ ସୁମରି ।

ଚତୁର୍ଗତି, ବି. ପୁଂ. ( ଚତୁର୍-ଗତି ) କଚ୍ଛପ; ପରମେଶ୍ୱର ।

ଚତୁର୍ଥ, ବିଂ. (ଚତୁର୍-ଥ) ଚାରି ସଂଖ୍ୟାର ପୂରକ ।

ଚତୁର୍ଥୀ, ବି. ସ୍ତ୍ରୀ. ( ଚତୁର୍ଥ-ଈ ) ତିଥିବିଶେଷ; ବ୍ୟାକରଣରେ ବିଭକ୍ତିବିଶେଷ ।

ଚତୁର୍ଥୀକର୍ମ, ବି. ନ. (ଚତୁର୍ଥୀ-କର୍ମ) ବିବାହାନନ୍ତର ଚତୁର୍ଥୀ ତିଥିରେ କର୍ତ୍ତବ୍ୟ କର୍ମ ।

ଚତୁର୍ଦ୍ଦଶ, ବିଂ. ( ଚତୁର୍-ଦଶନ୍-ଅ ) ଚୌଦ ସଂଖ୍ୟା, ୧୪ ।

ଚତୁର୍ଦ୍ଦଶବିଦ୍ୟା, ବି. ସ୍ତ୍ରୀ. ବେଦାଦି ଚତୁର୍ଦ୍ଦଶ ବିଦ୍ୟା ।

ଚତୁର୍ଦ୍ଦଶଭୁବନ, ବି. ନ. ସପ୍ତସ୍ୱର୍ଗ ଓ ସପ୍ତପାତାଳ, ଯଥା—ଭୂଃ, ଭୁବଃ, ସ୍ୱଃ, ମହଃ, ଜନ, ତପଃ, ସତ୍ୟ; ଅତଳ, ସୁତଳ, ବିତଳ, ତଳାତଳ, ମହାତଳ, ରସାତଳ, ପାତାଳ ।

ଚତୁର୍ଦ୍ଦଶୀ, ବି. ସ୍ତ୍ରୀ. (ଚତୁର୍ଦ୍ଦଶ-ଈ) ତିଥିବିଶେଷ ।

ଚତୁର୍ଦ୍ଦିକ୍, ବି. ସ୍ତ୍ରୀ. (ଚତୁର୍-ଦିଶ୍) ଚାରିଆଡ଼ ।

ଚତୁର୍ଦ୍ଦୋଳ, ବି. ପୁଂ. (ଚତୁର୍-ଦୋଳ) ଚାରିଜଣ ମନୁଷ୍ୟଦ୍ୱାରା ବହନୀୟ ଶିବିକାବିଶେଷ, ଚଉଦୋଳ । ଯଥା—

ବେନିଙ୍କି ବସାଇ ଚତୁର୍ଦ୍ଦୋଳେ ସବେ ନେଲେ ଶ୍ମଶାନେ ।
ରସା ।

ଚତୁର୍ଦ୍ଧାମ, ବି. ନ. (ଚତୁର୍-ଧାମ) ମର୍ତ୍ତ୍ୟମଣ୍ଡଳସ୍ଥ ଚାରିଧାମ, ଯଥା—ରାମନାଥ, ବୈଦ୍ୟନାଥ, ଜଗନ୍ନାଥ, ଦ୍ୱାରକାନାଥ ।

ଚତୁର୍ଦ୍ଧା, ଅଂ. (ଚତୁର୍-ଧା) ଚାରି ପ୍ରକାର; ଚାରିଥର ।

ଚତୁର୍ଭଦ୍ର, ବି. ନ. ( ଚତୁର୍-ଭଦ୍ର ) ଚତୁର୍ବର୍ଗ; ଧର୍ମ, ଅର୍ଥ, କାମ, ମୋକ୍ଷ ।

ଚତୁର୍ଭୁଜ, ବି. ପୁଂ. ( ଚତୁର୍-ଭୁଜ ) ବିଷ୍ଣୁ, ନାରାୟଣ; ଚାରି ସରଳରେଖାଦ୍ୱାରା ଆବୃତ କ୍ଷେତ୍ର ।

ଚତୁର୍ମୁଖ, ବି. ପୁଂ. (ଚତୁର୍-ମୁଖ) ବ୍ରହ୍ମା ।

ଚତୁର୍ଯୁଗ, ବି.ନ. (ଚତୁର୍-ଯୁଗ) ସତ୍ୟ, ତ୍ରେତା, ଦ୍ୱାପର, କଳି ଏହି ଚାରି ଯୁଗ ।

ଚତୁର୍ବର୍ଗ, ବି. ପୁଂ. (ଚତୁର୍-ବର୍ଗ) ଧର୍ମ, ଅର୍ଥ, କାମ, ମୋକ୍ଷ । ଯଥା—

ଚଉବର୍ଣ୍ଣେ ଚତୁର୍ବର୍ଗ ଦେବାକୁ ସମର୍ଥ ହେ । କୋ. ତ୍ରି. ମୁ.

ଚତୁର୍ବର୍ଣ୍ଣ, ବି. ପୁଂ. ( ଚତୁର୍-ବର୍ଣ୍ଣ ) ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏହି ଚାରି ଜାତି ।

ଚତୁର୍ବିଂଶତି, ବି. ସ୍ତ୍ରୀ. (ଚତୁର୍-ବିଂଶତି) ଚବିଶ, ୨୪ ।

ଚତୁର୍ବିଦ୍ୟ, ଚତୁର୍ବେଦୀ, } ବି. ପୁଂ. ( ଚତୁର-ବିଦ୍ୟା) ଚାରି ବେଦବେତ୍ତା ।

ଚତୁର୍ବିଧ, ବିଂ. (ଚତୁର୍-ବିଧା) ଚାରି ପ୍ରକାର ।

ଚତୁର୍ବ୍ୟୂହ, ବି. ପୁଂ. କୃଷ୍ଣ, ବଳରାମ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଏହି ଚତୁରାତ୍ମକ ବିଷ୍ଣୁ । ବିଂ. ଚାରି ପ୍ରକାର ବ୍ୟୂହବିଶିଷ୍ଟ ।

ଚତୁର୍ବେଦ, ବି. ପୁଂ. ( ଚତୁର୍-ବେଦ ) ଋକ୍, ଯଜୁଃ, ସାମ, ଅଥର୍ବ ଏହି ଚାରିବେଦ ।

ଚତୁଶ୍ଚତ୍ୱାରିଂଶତ୍, ବି. ସ୍ତ୍ରୀ.(ଚତୁର୍-ଚତ୍ୱାରିଂଶତ୍) ଚଉରାଳିଶ, ୪୪ ।

ଚତୁଷ୍କ, ବି. ନ. (ଚତୁର୍-କ) ଚତ୍ୱର; ଚତୁଃସ୍ତମ୍ଭଯୁକ୍ତ ମଣ୍ଡପ ।

ଚତୁଷ୍କର, ବି. ପୁଂ. (ଚତୁର୍-କର) ଯେଉଁ ସବୁ ଜୀବମାନଙ୍କର ହସ୍ତ ଓ ପଦର ଅଗ୍ରଭାଗ କରର ତୁଲ୍ୟ । ବିଂ. ଚାରିହସ୍ତବିଶିଷ୍ଟ ।

ଚତୁଷ୍କରୀ, ବି. ପୁଂ. (Quadrumana) ଚତୁର୍-କର-ଇନ୍) ଯେଉଁ ସବୁ ପଶୁମାନଙ୍କର ପଦଚତୁଷ୍ଟୟର ଅଗ୍ରଭାଗ କରରୂପରେ ପରିଣତ, ଯଥା—ବାନରାଦି ।

ଚତୁଷ୍କୀ, ବି. ସ୍ତ୍ରୀ. ଚାରିକୋଣିଆ ପୁଷ୍କରିଣୀ; ମଶାରି; ଚୌକି ।

ଚତୁଷ୍ଟୟ, ବିଂ. (ଚତୁର୍-ତୟ) ଚାରି ଅବୟବ; ଚତୁର୍ବିଧ, ଚାରି ପ୍ରକାର । ବି. ନ. ଚାରି ସଂଖ୍ୟା ।

ଛଲ, ବ. (ଛଲ୍ଲି ଶବ୍ଦଜ) ତ୍ୱକ୍, ବଲ୍କଳ, ପଶୁଚର୍ମ ।

ଛି, ଅଂ. ନିନ୍ଦା, ଘୃଣାସୂଚକ ଶବ୍ଦ ।

ଛିଙ୍କ, ବ. ଶବ୍ଦରେ ନାସିକାଧ୍ୱନି ।

ଛିଞ୍ଚିବାର, କ୍ରି. (ସିଞ୍ଚନ ଶବ୍ଦଜ) ସେଚନ କରିବା ।

ଛିଟ, ବଂ. ଚିତ୍ରିତ ବସ୍ତ୍ର ।

ଛିଟା, ବ. (ହିନ୍ଦୀ) ବିନ୍ଦୁ, କଣା, କୌଣସି ପଦାର୍ଥରେ ଦାଗ ଲାଗିଯିବା; ପରିମାଣବିଶେଷ ।

ଛିଟିକା, ବ. (ହିନ୍ଦୀ) ବିନ୍ଦୁ, ଛିଟା ।

ଛିତ, ବଂ. (ଛୋ-ତ) ଛିନ୍ନ, ଛିଣ୍ଡା ।

ଛିଡା, ବ. (ଦେଶଜ) ଠିଆ । ଯଥା—

 ଯବେ ହୋଇଥିଲି ଛିଡା ଛଡା,
 ଅସି ଦିଶି ଗଲେ ପରବୁଡା ।

ଛିଣ୍ଡା, ବଂ. (ଛିନ୍ନ ଶବ୍ଦଜ) ଛିନ୍ନ ।

ଛିଣ୍ଡାଳ, ବ. ( ହିନ୍ଦୀ ଛିନାଲ ଶବ୍ଦଜ ) ନଷ୍ଟ, କୁଳଟା ।

ଛିତ୍ୱର, ବ. ପୁଂ. ( ଛିଦ୍-ବର ) ଧୂର୍ତ୍ତ; ବୈରୀ । ବଂ. ଛେଦକ ।

ଛିଦ୍, ଛିଦା, ବ. ସ୍ତ୍ରୀ. ( ଛିଦ୍-ଂ, ଅ ) ଛେଦନ, ଅପହରଣ ।

ଛିଦକ, ବ. ନ. ବଜ୍ର ।

ଛିଦି, ବ. ସ୍ତ୍ରୀ. (ଛିଦ୍-ଇ) କୁଠାର, କୁରାଢୀ ।

ଛିଦିର, ବ. ପୁଂ. (ଛିଦ୍-ଇର) ଅଗ୍ନି; ରଜ୍ଜୁ, ଖଡ୍ଗ; କୁଠାର ।

ଛିଦୁର, ବଂ. (ଛିଦ୍-ଉର) ଛିନ୍ନ, ଛିଣ୍ଡା; ଛେଦକ, ଛେଦନଶୀଳ; ବୈରୀ; ପ୍ରତାରକ ।

ଛିଦ୍ର, ବ. ନ. ( ଛିଦ୍-ର ) ବିବର; ସୁଦ୍ର, ଗର୍ତ୍ତ; ଅବକାଶ; ଅପକର୍ଷ; ନ୍ୟୂନତା; ଦୋଷ । ଯଥା—

 ଛିଦ୍ର ଭେଦ ଯେନମାନ୍ତ ମୋହର,
 ଛଳେ ଛଳେ କରିଥିଛନ୍ତି ଚର ।

ଛିଦ୍ରଶ୍ୱାସୀ, ବ. (Tracheoria) ଯେଉଁମାନେ କେତୋଟି ଶରୀରପାର୍ଶ୍ୱସ୍ଥ ଛିଦ୍ରଦ୍ୱାରା ଶ୍ୱାସ-କର୍ମ ନିଷ୍ପନ୍ନ କରନ୍ତି, ଏମାନଙ୍କର ଚକ୍ଷୁଃ ସଂଖ୍ୟା ୪, ଯଥା—ମାଠ-ମାଙ୍କଡ ।

ଛିଦ୍ରାନୁସରଣ, ଛିଦ୍ରାନୁସନ୍ଧାନ, ଛିଦ୍ରାନ୍ୱେଷଣ । ବ. ନ. (ଛିଦ୍ର-ଅନୁସରଣ, ଅନୁସନ୍ଧାନ, ଅନ୍ୱେଷଣ) ଛିଦ୍ର ଖୋଜି ବୁଲିବା, ଦୋଷ ଅନୁସନ୍ଧାନ କରିବା ।

ଛିଦ୍ରାନୁସାରୀ, ବଂ. ( ଛିଦ୍ର-ଅନୁସାରୀ ) ଯେ ଛିଦ୍ର ଖୋଜି ବୁଲେ, ଯେ ଦୋଷ ଅନୁସନ୍ଧାନ କରେ ।

ଛିଦ୍ରାନ୍ତଃ, ବ. ପୁଂ. (ଛିଦ୍ର-ଅନ୍ତର୍) ନଳ ।

ଛିଦ୍ରାନ୍ୱେଷୀ, ବଂ. ( ଛିଦ୍ର-ଅନ୍ୱେଷୀ ) ଯେ ଦୋଷ ଅନୁସନ୍ଧାନ କରେ; ଯେ ଛିଦ୍ର ଖୋଜି ବୁଲେ ।

ଛିଦ୍ରିତ, ବଂ. (ଛିଦ୍ର-ଇତ) ବିଦ୍ଧ; ଛିଦ୍ର ଥିବା ବସ୍ତୁ ।

ଛିନ୍ନ, ବଂ. (ଛିଦ୍-ତ) ଖଣ୍ଡିତ; ଛିଣ୍ଡା ।

ଛିନ୍ନଭିନ୍ନ, ବଂ. (ଛିନ୍ନ-ଭିନ୍ନ) ଇତସ୍ତତଃ ବିକ୍ଷିପ୍ତ, ଉଚ୍ଛିନ୍ନ, ବିନଷ୍ଟ ।

ଛିନ୍ନମସ୍ତକ, ବଂ. (ଛିନ୍ନ-ମସ୍ତକ) ମସ୍ତକହୀନ ।

ଛିନ୍ନମସ୍ତା, ଛିନ୍ନା, ବ. ସ୍ତ୍ରୀ. ଦେବୀବିଶେଷ ।

ଛିଲ୍ଲୀ, ବ. ନ. (ଛଲ୍ଲି ଶବ୍ଦଜ) ବଲ୍କଳ; ଛଲ ।

ଛୁ, ବ. (ହିନ୍ଦୀ) ପଳାୟନ; ଚମ୍ପଟ, ଦଉଡ଼ ।

ଛୁଆଁ, ବଂ. (ସ୍ପର୍ଶ ଶବ୍ଦଜ) ଦୂଷିତ ।

ଛୁଆଇବା, କ୍ରି. (ଦେଶଜ) ଆଚ୍ଛାଦନ କରାଇବା । ଯଥା—

 ପତ୍ରାବଳୀରେ ଯତନେ ଛୁଆଇ ।

ଛୁଁଇ, ବ. (ହିନ୍ଦୀ, ଛୁମୀ ଶବ୍ଦଜ) ଫଳବିଶେଷ ।

ଛୁଁଇବା, କ୍ରି. ସ୍ପର୍ଶ କରିବା ।

ଛୁଞ୍ଚି, ବ. (ସୂଚି ଶବ୍ଦଜ) ସୂଚି, ଲୁଗା ପ୍ରଭୃତି ସିଇଁବାର ଯନ୍ତ୍ରବିଶେଷ ।

ଛୁଟି, ଛୁଟୀ, ବ. (ହିନ୍ଦୀ) ବିଦାୟ, ଛାଡ଼, ଉଦ୍ଧାର ।

ଛୁପ୍, ବ. ପୁଂ. (ଛୁପ୍=ଶବ୍ଦ କରିବା-ଅ) ସ୍ପର୍ଶ; ଯୁଦ୍ଧ; ଚପଳତା ।

ଛୁରା, ବ. ସ୍ତ୍ରୀ. (ଛୁର୍-ଅ-ଆ) ଚୂର୍ଣ୍ଣ, ଚୂନା; (ଦେଶଜ) ବଡ଼ ଛୁରି ।

ଛୁରିଅନା, ବ. ପୁଂ. ପୁଷ୍ପ ବୃକ୍ଷବିଶେଷ । ଯଥା—

 ପୁନାଗ ବଉଳେ ପନ୍ତୁଁ ବସାଗଲା
 ଦୂର ଛୁର ପର ମଣେ ଛୁରିଥନା । ଜ. କେ. ।

ଛୁରି, ଛୁରିକା, ଛୁରୀ, ବି. ସ୍ତ୍ରୀ. (ଛୁର୍-ଇ, ଅକ-ଆ, ଈ) ଅସ୍ତ୍ରବିଶେଷ; ଅସିପୁତ୍ରୀ ।

ଛୁରିତ, ବିଂ. (ଛୁର-ତ) ଲିପ୍ତ, ବ୍ୟାପ୍ତ; ଖଚିତ, ଶୋଭିତ; ଛିନ୍ନ । ଶୋଭିତ ଅର୍ଥରେ ଯଥା—

> ଗନ୍ଧ ଗନ୍ଧ ରବ ହେଲେ ଅତ୍ରନିଧି,
> ପଶ୍ଚିମାଶା ହେଲା ଚନ୍ଦ୍ରେ ଛୁରିତ ।

ଛୁଆରା, ବି. (ବିଦେଶଜ) ଖଜୁରୀ ।

ଛେଉଣ୍ଡ, } ବିଂ. ( ଛମଣ୍ଡ ଶବ୍ଦଜ ) ପିତୃ-
ଛେଉଣ୍ଡା, } ମାତୃହୀନ; ଅନାଥ ।

ଛେକ, ବି. ପୁଂ. ( ଛେ-ଇକ ) ପାଳିତ ପକ୍ଷି-ମୃଗାଦି; ଅନୁପ୍ରାସବିଶେଷ; ବ୍ୟଞ୍ଜନସମୂହର ଯଥାକ୍ରମେ ପୁନରାବୃତ୍ତି ସଂଖ୍ୟା । ବିଂ. ବିଦଗ୍ଧ; ଦେବତା ନିକଟକୁ ଉଦ୍ଧନଭୋଗ ଭାରଦ୍ୱାରା ବହନ କରିବା ।

ଛେଚିବା, କ୍ରି. (ଦେଶଜ) କୁଟିବା ।

ଛେଣୀ,ବି. (ଛିଦ୍ ଧାତୁଜ) ଲୌହ ଅସ୍ତ୍ରବିଶେଷ ।

ଛେଦ, ବି. ପୁଂ. (ଛିଦ୍-ଅ) ଛେଦନ; ଖଣ୍ଡ, ଭାଗ; ବିରାମ; ପରିଚ୍ଛେଦ ।

ଛେଦକ, ବିଂ. ( ଛିଦ୍-ଅକ ) ଯେ ଛେଦନ କରେ, କର୍ତ୍ତକ; ଭାଜକ ।

ଛେଦନ, ବି. ନ. (ଛିଦ୍-ଅନ) କର୍ତ୍ତନ; କାଟ; ଖଣ୍ଡ ।

ଛେଦନୀୟ, ବିଂ. (ଛିଦ୍-ଅନୀୟ) ଯାହାକୁ ଛେଦନ କରିବା ଉଚିତ, ଛେଦ୍ୟ; ଛେଦନଯୋଗ୍ୟ, କର୍ତ୍ତନୀୟ ।

ଛେଦା, ବି. (ଦେଶଜ) ଧଡି ରହିତ ଲୁଗା-ବିଶେଷ; ନୀରସ କ୍ଷୁଦ୍ର ଇକ୍ଷୁଖଣ୍ଡ; ଦଧିବିଶେଷ ।

ଛେଦିତ, ବିଂ. (ଛିଦ୍-ତ) କର୍ତ୍ତିତ; ଦ୍ୱିଧାକୃତ ।

ଛେଦ୍ୟ, ବିଂ. ( ଛିଦ୍-ଯ ) ଛେଦନଯୋଗ୍ୟ; କର୍ତ୍ତନୀୟ ।

ଛେନା, ବି. (ଦେଶଜ) ଦୁଗ୍ଧଜାତ ଖାଦ୍ୟଦ୍ରବ୍ୟ-ବିଶେଷ ।

ଛେପ, ବି. ନ. (ଷ୍ଠୀବ ଧାତୁଜ) ନିଷ୍ଠୀବନ; ଥୁଥୁ ।

ଛେମ,ବି. (କ୍ଷେମ ଶବ୍ଦଜ) କ୍ଷମତା, ଯୋଗ୍ୟତା ।

ଛେରି, ବିଂ. (ଦେଶଜ) ଚନ୍ଦନାଦିବିଶିଷ୍ଟ । ବି. ତରଳ ପୁରୀଷବିଶେଷ ।

ଛେରିବା, କ୍ରି. (ଦେଶଜ) ଜଳୀୟ ମଳ ନିଃସରଣ ।

ଛେଲ, ବି. (ଶେଲ ଶବ୍ଦଜ) ଅସ୍ତ୍ରବିଶେଷ । ଯଥା—

> ଛେଲକୁ ତ ଚାପା ବନ, ଛତରେ କଲଣି କେଉ । ବି. ଚ.

ଛେଲା, ବି. (ଦେଶଜ) ପରିମାଣବିଶେଷ । କ୍ରି. ଗ୍ରନ୍ଥିବା ।

ଛେଳ, ବି. ପୁଂ. ଛାଗଳ, ଅଜା ।

ଛେଲି, ବି. (ଛଲ୍ଲୀ ଶବ୍ଦଜ) ତ୍ୱକ୍; ବଳ୍କଳ ।

ଛୋକାର, ବି. (ହିନ୍ଦୀ) ବେଶ୍ୟାପୁତ୍ର; ଜାରଜ; ଅପଭ୍ରଂଶ ।

ଛୋଟ, ବିଂ. (ହିନ୍ଦୀ, ଛୋଟା ଶବ୍ଦଜ) କ୍ଷୁଦ୍ର; କନିଷ୍ଠ; ଅଧମ ।

ଛୋଟିକା, ବି. ସ୍ତ୍ରୀ. ( ଛୁଟ-ଅକ-ଆ ) ଅଙ୍ଗୁଳି-ଧ୍ୱନି; ଚୁଟୁକି ।

ଛୋଠା, ବିଂ. (ଦେଶଜ) ଲେଙ୍ଗଡ଼ା ।

ଛୋଠୀ, ବି.ପୁଂ. (ଛୁଠ୍-ଇନ୍) ଧୀବର; କାଳୁଆ । ବିଂ. ଲେଙ୍ଗଡ଼ୀ ।

ଛୋପରା, ବି. (ଦେଶଜ) ବେଲ୍ଲ; ବଗ୍ଲ ।

ଛୋରଣ, ବି. ନ. (ଛୁର୍-ଅନ) ପରିତ୍ୟାଗ; ଛାଡି-ଦେବା ।

—:୦:—

# ଜ

ଜ, ବି. ପୁଂ. ବ୍ୟଞ୍ଜନ ବର୍ଣ୍ଣର ଅଷ୍ଟମ ଅକ୍ଷର, ଏହାର ଉଚ୍ଚାରଣ ସ୍ଥାନ ତାଳୁ; ଶିବ; ବିଷ୍ଣୁ । ବିଂ. ଜନ୍ମପ୍ରଦ୍ଧ; ଉତ୍ପତ୍ତି; ବେଗ; ଦୀପ୍ତି; ଜନକ; ପିତା; ମାତା; ଭୁକ୍ତ; ଶୀଘ୍ର ।

ଜଉ, ବି. (ଜତୁ ଶବ୍ଦଜ) ଲାଖ ।

ଜକ୍ଷ୍ମା, ବ. ପୁଂ. (ଜକ୍ଷ୍-ମନ୍) କ୍ଷୟରୋଗ, କାଶ-ରୋଗ ।

ଜକଜକ, ବିଂ. (ଦେଶଜ) ଉଜ୍ଜ୍ୱଳ; ଚିକ୍କଣ । ଯଥା —

ଜକଜକ ହୋଇ ଅଙ୍ଗେ ଝଟକଇ ମାଣିକ୍ୟଙ୍କ । ହଷା ।

ଜଖ, ବ. (ଯକ୍ଷ ଶବ୍ଦର ଅପଭ୍ରଂଶ) ପ୍ରବାଦ ଅଛି ଯେ କୌଣସି ସ୍ଥାନରେ ଘନା ଅନେକ ଧନ ରହିଲେ ସେ ଜନ୍ମ ପାଲଟି ଯାଇ ଭ୍ରମଣଶୀଳ ହୁଏ, ସେହି ସ୍ୱର୍ଣ୍ଣରାଶିକୁ "ଜଖ" କହନ୍ତି ।

ଜଗଚ୍ଚକ୍ଷୁ, ବ. ପୁଂ. (ଜଗତ୍-ଚକ୍ଷୁସ୍) ସୂର୍ଯ୍ୟ ।

ଜଗଝମ୍ପା, ବ. ବାଦ୍ୟଯନ୍ତ୍ରବିଶେଷ ।

ଜଗତ୍, ବ. ନ. (ଗମ୍-ଅତ୍) ବିଶ୍ୱ; ଲୋକ; ଶରୀର; ବାୟୁ; ଜଙ୍ଗମ; ଅସ୍ଥାୟୀ ।

ଜଗତ୍‌କର୍ତ୍ତା, ବ. ପୁଂ. (ଜଗତ୍-କର୍ତ୍ତୃ) ଈଶ୍ୱର ।

ଜଗତ୍‌ପାତା, ବ.ପୁଂ. (ଜଗତ୍-ପାତୃ) ଜଗଦୀଶ୍ୱର ।

ଜଗତ୍‌ପିତା, ବ. ପୁଂ. (ଜଗତ୍-ପିତୃ) ଜଗଦୀଶ୍ୱର ।

ଜଗତ୍‌ପ୍ରାଣ, ବ. ପୁଂ. (ଜଗତ୍-ପ୍ରାଣ) ବାୟୁ, ପବନ ।

ଜଗତୀ, ବ. ସ୍ତ୍ରୀ. (ଜଗତ୍ ଦେଖ-ଈ) ପୃଥିବୀ, ଭୁବନ; ଲୋକ; ଛନ୍ଦୋବିଶେଷ । ଚନ୍ଦ୍ର-ଶାଳାର୍ଥେ ଜଗତୀ । ଯଥା—

ମଥୁରା କନ୍ଦର୍ପ-ଦର୍ପ ଜଗତୀରୁ ଯହୁଁ
ଦେଖୁଥିଲେ ଭୂଭୃତଙ୍କେ ଯାଦବୀ ଯୁବତୀ
ଘନନୀଲଦ୍ୟୁତି ଚକ୍ରବାକିନୀ ଯମୁନା । ମ. ଯା.

ଜଗଦମ୍ବା, ବ. ସ୍ତ୍ରୀ. (ଜଗତ୍ ଅମ୍ବା) ଦୁର୍ଗା, ଜଗ-ନ୍ନାଥା; କାଳୀ ।

ଜଗଦାତ୍ମନ୍, } ବ.ପୁଂ.(ଜଗତ୍-ଆତ୍ମନ୍, ଆଧାର)
ଜଗଦାଧାର, } କାଳ; ବାୟୁ; ଈଶ୍ୱର ।

ଜଗଦୀଶ, ବ. ପୁଂ. (ଜଗତ୍-ଈଶ) ଜଗତ୍‌ପ୍ରଭୁ, ବିଷ୍ଣୁ ।

ଜଗଦ୍‌ଗୌରୀ, ବ. ସ୍ତ୍ରୀ. (ଜଗତ୍-ଗୌରୀ) ମନସା-ଦେବୀ ।

ଜଗଦ୍ଦୀପ, ବ. ପୁଂ. (ଜଗତ୍-ଦୀପ) ପରମେଶ୍ୱର ।

ଜଗଦ୍‌ଦ୍ରୁହ୍, ବିଂ. (ଜଗତ୍-ଦ୍ରୁହ୍) ଜଗତର ଅନିଷ୍ଟକାରୀ ।

ଜଗଦ୍ଧାତ୍ରୀ, ବ. ସ୍ତ୍ରୀ. (ଜଗତ୍-ଧାତ୍ରୀ) ଦୁର୍ଗା, ଜଗନ୍ମାତା ।

ଜଗଦ୍‌ଯୋନି, ବ. ପୁଂ. (ଜଗତ୍-ଯୋନି) ବ୍ରହ୍ମା; ବିଷ୍ଣୁ; ଶିବ । ସ୍ତ୍ରୀ. ପୃଥିବୀ ।

ଜଗନ୍ନାଥ, ବ. ପୁଂ. (ଜଗତ୍-ନାଥ) ବିଷ୍ଣୁ; ପୁରୁଷୋତ୍ତମ ।

ଜଘନ, ବ. ନ. (ହନ୍-ଅନ) ସ୍ତ୍ରୀଲୋକର ନିତମ୍ବର ସମ୍ମୁଖ ଭାଗ । ଯଥା—

କୃଶାଙ୍ଗୀ କୃଶୋଦରୀ କୁନ୍ଦଦଶନା,
ସ୍ଥୂଳ ଜଘନଭରେ ମନ୍ଦଗମନା । ମେ. ଦୂ.

ଜଘନ୍ୟ, ବିଂ. (ଜଘନ-ଯ) ନୀଚ; ଗର୍ହିତ; ଚରମ । ବ. ପୁଂ. ଶୂଦ୍ର ।

ଜଙ୍ଗମ, ବିଂ. (ଗମ୍-ଅ) ଗମନଶୀଳ; ଅସ୍ଥାବର । ଯଥା—

ଜଙ୍ଗମ ହେବାର ଜମ୍ବୁନଦସାର-
ଶିର ଛୁରିଣ ସେ କ ପ୍ରକାର । ଭ. ଚ.

ଜଙ୍ଗଲ, ବ. ନ. (ଜଙ୍ଗମ-ଲା-ଅ) ବନ । ପୁଂ. ନ. ମାଂସ । ବିଂ. ନିର୍ଜନ ।

ଜଙ୍ଗୁଳ, ବ. ନ. (ଜଙ୍ଗ୍-ଉଳ) ବିଷ ।

ଜଙ୍ଘ, ବ. (ଜଙ୍ଘା ଶବ୍ଦଜ) ଆଣ୍ଠୁର ଉପରଭାଗ ।

ଜଙ୍ଘା, ବ. ସ୍ତ୍ରୀ. (ହନ୍-ଅ) ଗୋଇଠିଠାରୁ ଜାନୁ ପର୍ଯ୍ୟନ୍ତ ।

ଜଙ୍ଘାକରିକ, } ବ. ପୁଂ. (ଜଙ୍ଘା-କର-ଇକ,
ଜଙ୍ଘାଳ, } ଜଙ୍ଘା-ଲ, ଜଙ୍ଘା-ଇଲ)
ଜଙ୍ଘିଲ, } ଦ୍ରୁତଗାମୀ; ଧାବକ; ମୃଗ ।

ଜଙ୍ଘିହରଡ଼ା, ବ. ସ୍ତ୍ରୀ. କ୍ଷୁଦ୍ର ହରୀତକୀ, ଛୋଟ ହରଡ଼ା ।

ଜଞ୍ଜାଳ, ବ. (ଦେଶଜ) ଅଳି, ଗୋଳ, ଉତ୍ପାତ ।

ଜଟ, ବ. (ଜଟା ଶବ୍ଦଜ) କେଶବିନ୍ୟାସବିଶେଷ; ମଞ୍ଜରୀ; ଜଟା । ଯଥା—

ବଟଶାଖାରେ ଜଟ କରଣ ପ୍ରକଟ ଚିହ୍ନିଲେ ବକୁଳ ପଟ । ବୈ. ବ.

ଜଟା, ବ. ସ୍ତ୍ରୀ. ( ଜଟ-ଅ-ଆ ) ସଂହତ କେଶ; ଜଟ, ମଞ୍ଜରୀ । ଯଥା—

> ଧୂର୍ଜଟୀ ଜଟାରୁ ଯେହ୍ନେ ଗଙ୍ଗାଜଳ,
> ଜ୍ୟୋତ୍ସ୍ନପୂର ପୂରୁଅଛ ଧବଳ ।

ଜଟାଜୂଟ, ବ. ପୁଂ. (ଜଟା-ଜୂଟ) ଜଟାସମୂହ ।

ଜଟାଧର, ବ. ପୁଂ. (ଜଟା-ଧର) ଶିବ ।

ଜଟାମାଂସୀ, ବ. ସ୍ତ୍ରୀ. (ଜଟା-ମାଂସୀ) ଲତାବିଶେଷ; ସୁଗନ୍ଧଦ୍ରବ୍ୟବିଶେଷ ।

ଜଟାୟୁ, ଜଟାୟୁଃ, ବ. ପୁଂ. (ଜଟା-ଆୟୁସ୍) ଶକୁନ୍ତରାଜ, ସମ୍ପାତିର ସାନଭାଇ, ଦଶରଥଙ୍କ ସଖା; ଅରୁଣପୁତ୍ର ।

ଜଟାଳ, ବିଂ. ( ଜଟା-ଳ ) ଜଟାଧର, ଜଟାଯୁକ୍ତ; ବ. ପୁଂ. ଜଟାଧାରୀ; ବ୍ରହ୍ମଚାରୀ; ବଟବୃକ୍ଷ; ସିଂହ; ଗୁଗ୍ଗୁଳ; କର୍ପୂର ।

ଜଟାସୁର, ବ. ପୁଂ. ଅସୁରବିଶେଷ, ଏହାକୁ ଭୀମ ବଧ କରିଥିଲେ ।

ଜଟିଳ, ବ. ପୁଂ. (ଜଟା-ଇଲ) ବଟବୃକ୍ଷ; ସିଂହ; ଜଟାଧାରୀ ବ୍ରହ୍ମଚାରୀ । ବିଂ. ଜଟାବିଶିଷ୍ଟ; କୁଟିଳ ।

ଜଟିଳା, ବ. ସ୍ତ୍ରୀ. (ଜଟିଳ-ଆ) ଶାଶୁ ।

ଜଠର, ବ. ପୁଂ. ନ. ( ଜନ-ଅର,ନ, ସ୍ଥାନରେ ଠ) ଉଦର, ଜରାୟୁ, ଗର୍ଭ । ବିଂ. କଠିନ, କର୍କଶ, ବୃଦ୍ଧ ।

ଜଡ଼, ବିଂ. (ଜଲ୍-ଅ) ନଶ୍ଚେଷ୍ଟ, ନିସ୍ପନ୍ଦ । ବ. ପୁଂ. ଜ୍ଞାନଶକ୍ତିବିହୀନ, ନିଷ୍କ୍ରିୟ ବ୍ୟକ୍ତି, ମୂର୍ଖ । ନ. ସୀସା ।

ଜଡ଼ତା, ବ. ସ୍ତ୍ରୀ. (ଜଡ଼-ତା) ମୂର୍ଖତା, ଜାଡ୍ୟ, ଶୈଥିଲ୍ୟ, ଅପଟୁତା; ଶୈତ୍ୟ ।

ଜଡ଼ତ୍ୱ, ବ. ସ୍ତ୍ରୀ. (ଜଡ଼-ତା) ମୂର୍ଖତା; ଶୀତଳତା; ଅପଟୁତା ।

ଜଡ଼ପଦାର୍ଥ, ବ. ପୁଂ. ଅଚେତନ ବସ୍ତୁ, ଯେପରି କାଷ୍ଠ, ପାଷାଣ ଇତ୍ୟାଦି ।

ଜଡ଼ବର, ବ. ପୁଂ. ବୃକ୍ଷ । ଯଥା—

> ପ୍ରବେଶ ସୁରଭି ସଙ୍ଗରେ ସମସ୍ତ ଜଡ଼ବର ସୁରଞ୍ଜନା । ଲ. ବ.

ଜଡ଼ଭରତ, ବ. ପୁଂ. ବ୍ରାହ୍ମଣବିଶେଷ, ଜନ୍ମାନ୍ତରେ ଏ ରାଜର୍ଷି ଭରତ ଥିଲେ । (ଦେଶଜ) ଅତିଶୟ ଅକର୍ମଣ୍ୟ ।

ଜଡ଼ା, ବ. (ଦେଶଜ) ଏରଣ୍ଡ, ଗଚ୍ଛ, ଡାଳ ।

ଜଡ଼ିବା, କ୍ରି. ମିଶିବା, ଯୁକ୍ତ ହେବା । ଯଥା—

> ଅନ୍ଧକାରେ ଉଦ୍ ଭଟଣ ପତଙ୍ଗ,
> ଅରଣ୍ୟକ ଶ୍ୟାମ ତମାଳେ ଜଡ଼ଙ୍ଗ । କ. ଦେ.

ଜଡ଼ୀଭୂତ, ବିଂ. (ଜଡ଼ୀ-ଭୂତ) ହତବୁଦ୍ଧି, ଯାହାର ବୁଦ୍ଧି ଲୋପ ହୋଇଅଛି; ନିତାନ୍ତ ସ୍ଫୂର୍ତ୍ତିହୀନ, ବିସ୍ମୟ ବା ଭୟ ହେତୁ ସ୍ପନ୍ଦରହିତ ।

ଜଣ, ବ. ପୁଂ. (ଜନର ଅପଭ୍ରଂଶ) ମନୁଷ୍ୟର ସଂଖ୍ୟା; ଗୋଟା, ଯଥା—ଦୁଇ ଜଣ ମନୁଷ୍ୟ= ଦୁଇ ଗୋଟି ମନୁଷ୍ୟ ।

ଜଣାଣ, ବିଂ. (ଜ୍ଞାପନାତ୍ମକ) ପ୍ରାର୍ଥନା ।

ଜତୁ, ବ. ନ. (ଜନ୍-ଉ) ଲାକ୍ଷା, ଲାଖ, ଜୌ ବା ଜଉ

ଜତୁକ, ବ. ନ. (ଜତୁ-କ) ହିଙ୍ଗୁ; ଲାକ୍ଷା ।

ଜତୁରସ, ବ. ପୁଂ. ଅଳତା ।

ଜତ୍ରୁ, ବ. ନ. (ଜନ୍-ରୁ) କଣ୍ଠର ଦୁଇପାର୍ଶ୍ୱସ୍ଥିତ ଅସ୍ଥିଦ୍ୱୟ, କଣ୍ଠର ହାଡ଼ ।

ଜନ, ବ. ପୁଂ. (ଜନ୍-ଅ) ଲୋକ, ବ୍ୟକ୍ତି; ଭୁବନ; ଇତର ଲୋକ; ଅସୁରବିଶେଷ ।

ଜନକ, ବ. ପୁଂ. (ଜନ-ଅକ) ପିତା, ଜନ୍ମଦାତା; ମିଥିଳାର ରାଜା ।

ଜନକତନୟା, ବ. ସ୍ତ୍ରୀ. ( ଜନକ-ତନୟା ) ଜାନକୀ, ସୀତା ।

ଜନକାରୀ, ବ. ପୁଂ. (ଜନ-କୃ-ଇନ୍) ଅଲକ୍ତକ, ଲାକ୍ଷା ।

ଜନତା, ବ. ସ୍ତ୍ରୀ. ( ଜନ-ତା ) ଜନସମୂହ; ଗହଳ, ଭିଡ଼ ।

ଜନନ, ବ. ପୁଂ. (ଜନ୍-ଇ-ଅନ) ପିତା, ଉତ୍ପାଦକ ।

ଜନନ, ବ. ସ୍ତ୍ରୀ. (ଜନ୍‌-ଅନ) ଉତ୍ପତ୍ତି; ବଂଶ ।

ଜନନୀ, ବ. ସ୍ତ୍ରୀ. (ଜନ୍‌-ଅନ-ଈ) ମାତା; ଦୟା; ପୃଥ୍ୱୀ ।

ଜନପଦ, ଜନପାଦ, ବ. ପୁଂ. (ଜନ-ପଦ= ସ୍ଥାନ; ଜନପଦ-ଅ) ଦେଶ, ବସତି ସ୍ଥାନ, ଲୋକାଳୟ ।

ଜନମେଜୟ, } ବ. ପୁଂ. (ଜନମ୍‌-ଏଜ-ଅ)
ଜନ୍ମେଜୟ, } ବିଷ୍ଣୁ, ପରୀକ୍ଷିତର ପୁତ୍ର ।

ଜନୟିତା, ବ. ପୁଂ. (ଜନ-ଇ-ତୃ) ପିତା ।

ଜନୟିତ୍ରୀ, ବ. ସ୍ତ୍ରୀ. (ଜନ-ଇ-ତୃ-ଈ) ମାତା । ବିଂ. ଉତ୍ପାଦିକା ।

ଜନରବ, ବ. ପୁଂ. ଲୋକେ ଯେଉଁ କଥା ରଟନା କରନ୍ତି, କୋଳାହଳ ।

ଜନଲୋକ, ବ. ପୁଂ. (ଜନ-ଲୋକ) ମହର୍ଲୋକର ଉପରସ୍ଥ ଲୋକ ।

ଜନଶ୍ରୁତି, ବ. ସ୍ତ୍ରୀ. କିମ୍ବଦନ୍ତୀ, ଶୁଣାକଥା ।

ଜନସ୍ଥାନ, ବ. ନ. (ଜନ-ସ୍ଥାନ) ଦଣ୍ଡକାରଣ୍ୟ ମଧ୍ୟସ୍ଥ ସ୍ଥାନବିଶେଷ; ଲୋକାଳୟ ।

ଜନାନ୍ତିକ, ବ. ନ. (ଜନ-ଅନ୍ତିକ) ଅନ୍ୟ ଜନ ସମକ୍ଷରେ ପରସ୍ପର ଗୋପନରେ କଥୋପକଥନ ।

ଜନାର୍ଦ୍ଦନ, ବ. ପୁଂ. (ଜନ-ଅର୍ଦ୍ଦନ) ବିଷ୍ଣୁ । ବିଂ. ଲୋକପୀଡ଼କ ।

ଜନାଶ୍ରୟ, ବ. ପୁଂ. (ଜନ-ଆଶ୍ରୟ) ପଟମଣ୍ଡପ; ଅଳ୍ପ ଧନ ନିମନ୍ତେ ନିର୍ମ୍ମିତ ଗୃହ; ଲୋକାଳୟ ।

ଜନି, ଜନୀ, ବ. ସ୍ତ୍ରୀ. (ଜନ-ଇ) ଉତ୍ପତ୍ତି, ଜନ୍ମ; ନାରୀ; ମାତା; ପୁତ୍ରବଧୂ; ଭାର୍ଯ୍ୟା ।

ଜନିକା, ବ. ସ୍ତ୍ରୀ. (ଜନକ-ଆ) ପୁତ୍ରବଧୂ; ଜନୟିତ୍ରୀ ।

ଜନିତ, ବିଂ. (ଜନ-ତ) ଉତ୍ପାଦିତ; ଯାହା ଉତ୍ପନ୍ନ କରା ହୋଇଅଛି ।

ଜନିତା, ବ. ପୁଂ. ସ୍ତ୍ରୀ. (ଜନ-ତୃ) ପିତା; ମାତା ।

ଜନେଷ୍ଟା, ବ. ନ. (ଜନ-ଇଷ୍ଟ) ହରିଦ୍ରା ।

ଜନ୍ତୁ, ବ. ପୁଂ. (ଜନ-ତୁ) ପ୍ରାଣୀ, ଜୀବ; ଶରୀରୀ ।

ଜନ୍ଦା, ବ. (ଦେଶଜ) ପିପୀଲିକାବିଶେଷ ।

ଜନ୍ମ, ବ. ନ. (ଜନ୍‌-ମନ୍‌) ଉତ୍ପତ୍ତି, ଉଦ୍ଭବ; ଲୋକ, ସଂସାର ।

ଜନ୍ମଗତ, ବିଂ. (ଜନ୍ମ-ଗତ) ସ୍ୱାଭାବିକ, ପ୍ରକୃତିସିଦ୍ଧ; ସହଜ; ପୈତୃକ ।

ଜନ୍ମଦ, ବ. ପୁଂ. (ଜନ୍ମନ୍‌-ଦ) ଜନ୍ମଦାତା, ପିତା ।

ଜନ୍ମପତ୍ରିକା, ବ. ସ୍ତ୍ରୀ. କୋଷ୍ଠୀ, ଜାତକପତ୍ର ।

ଜନ୍ମାନ୍ତର, ବ. ନ. (ଜନ୍ମନ୍‌-ଅନ୍ତର) ଅନ୍ୟଜନ୍ମ, ପୂର୍ବଜନ୍ମ; ଲୋକାନ୍ତର, ପରଲୋକ ।

ଜନ୍ମାନ୍ତରୀଣ, ବିଂ. (ଜନ୍ମାନ୍ତର-ଈନ) ଯାହା ଜନ୍ମାନ୍ତରରେ ଘଟିଅଛି ବା ଘଟିବ ।

ଜନ୍ମାନ୍ଧ, ବ. (ଜନ୍ମନ୍‌-ଅନ୍ଧ) ଅଜନ୍ମ ଦୃଷ୍ଟିହୀନ, ଭୂମିଷ୍ଠ ହେବା ପୂର୍ବରୁ ଯାହାର ଦର୍ଶନ ଶକ୍ତି ନଷ୍ଟ ହୋଇଅଛି ।

ଜନ୍ମାବଚ୍ଛିନ୍ନ, ବ. (ଜନ୍ମନ୍‌-ଅବଚ୍ଛିନ୍ନ) ଯାବଜ୍ଜୀବନ ସମୟ, ବଞ୍ଚିବାକାଳ ।

ଜନ୍ମାଷ୍ଟମୀ, ବ. ସ୍ତ୍ରୀ. (ଜନ୍ମନ୍‌-ଅଷ୍ଟମୀ) କୃଷ୍ଣଜନ୍ମ ତିଥି, ଭାଦ୍ର ମାସର କୃଷ୍ଣାଷ୍ଟମୀ ।

ଜନ୍ୟ, ବିଂ. (ଜନ୍‌-ଯ) ଜାୟମାନ; (ଜନ୍‌-ଇ-ଯ) ଉତ୍ପାଦ୍ୟ ।

ଜପ, ଜାପ, ବ. ପୁଂ. (ଜପ-ଅ, ଜପା-ଅ) ମନ୍ତ୍ରାଦିର ପୁନଃପୁନଃ ଉଚ୍ଚାରଣ; ସ୍ୱାଧ୍ୟାୟ ।

ଜପନ, ବ. ନ. (ଜପ୍‌-ଅନ) ଜପ ।

ଜପମାଳା, } ବ. ସ୍ତ୍ରୀ. ଯେଉଁ ମାଳାକୁ ଅବଲମ୍ବନ
ଜପାମାଳା, } କରି ଜପ କରନ୍ତି । ଯଥା—

ଦେହ ଥିବା ଜପମାଳା ଜପେ ଅବିରତେ । ନ. ଯା.

ଜମଜ, ବିଂ. ଏକ କାଳଜାତ; ଜାଆଁଳା ।

ଜମଦଗ୍ନି, ବ. ପୁଂ. (ଜମତ୍‌-ଅଗ୍ନି) ପରଶୁରାମପିତା ।

ଜମା, ବ. (ଯାବନିକ) ଆୟ, ସଞ୍ଚୟ, ବୃଦ୍ଧି ।

ଜମି, ବ. (ଯାବନିକ) ଭୂମି, କ୍ଷେତ୍ର ।

ଜମିଦାର, ବ. (ଯାବନିକ) ଭୂମ୍ୟଧିକାରୀ ।

ଜମ୍ପତି, ବ. ପୁଂ. (ଜମ୍‌-ପତି) ସ୍ତ୍ରୀପୁରୁଷ ।

ଜମ୍ବାଳ, ବ. ପୁଂ. (ଜମ୍-ବଳ-ଅ) କେତକୀବୃକ୍ଷ । ନ. କର୍ଦ୍ଦମ, ଶୈବାଳ । ଯଥା—

ତନ୍ଦନାଦ ଉପଚ୍ଚାର,
ହେଉଛ ଉପତ ଲେହ ଜମ୍ବାଳ ପ୍ରକାର । ପ୍ରେ. ମୁ.

ଜମ୍ବାଳନୀ, ବ. ସ୍ତ୍ରୀ. ( ଜମ୍ବାଳ-ଇନ୍-ଈ ) ଶୈବଳନୀ, ନଦୀ ।

ଜମ୍ବିର, ଜମ୍ବୀର, ବ. ପୁଂ. (ଜମ୍-ଇର, ଈର; ବ ଆଗମ) ଲେମ୍ବୁ ଗଛ । ନ. ତହିଁର ଫଳ ।

ଜମ୍ବୁ, ଜମ୍ବୂ, ବ. ସ୍ତ୍ରୀ. (ଜମ୍-ଉ,ଊ;ବ ଆଗମ) ଜମ୍ବୁଦ୍ୱୀପ; ଜାମୁଗଛ ।

ଜମ୍ବୁକ, ଜମ୍ବୂକ, ବ. ପୁଂ. ( ଜମ୍-ଉକ, ଊକ, ବ ଆଗମ ) ବରୁଣ; ନୀଚବ୍ୟକ୍ତି; ଗୋଲାପ ଜାମୁ ଗଛ; ଶୃଗାଳ ।

ଜମ୍ବୁଦ୍ୱୀପ, ବ. ପୁଂ. ( ଜମ୍ବୁ-ଦ୍ୱୀପ ) ପୃଥିବୀର ସପ୍ତ ଦ୍ୱୀପାନ୍ତର୍ଗତ ଦ୍ୱୀପବିଶେଷ, ଭାରତବର୍ଷ, ଏହି ଦ୍ୱୀପରେ ସୁଦର୍ଶନନାମକ ପ୍ରସିଦ୍ଧ ଗୋଟିଏ ଜାମୁ ଗଛ ଅଛି, ସେଥିପାଇଁ ଏ ଦ୍ୱୀପକୁ ଜମ୍ବୁଦ୍ୱୀପ କହନ୍ତି ।

ଜମ୍ବୁଲ, ଜମ୍ବୂଲ, ବ. ପୁଂ. ( ଜମ୍ବୁ , ମୂ-ଲ ) ଜାମୁ ଗଛ; କେତକୀ ଗଛ ।

ଜମ୍ଭ, ବ. ପୁଂ. (ଜଭ୍-ଅ) ଦୈତ୍ୟବିଶେଷ;ଦନ୍ତ; ଅଂଶ; ତୂଣ; ହନୁ; ଜମ୍ବୀର; ଲେମ୍ବୁ ।

ଜମ୍ଭାରି, ବ. ପୁଂ. ( ଜମ୍ଭ-ଅରି ) ଇନ୍ଦ୍ର; ବଜ୍ର; ଅଗ୍ନି ।

ଜୟ, ବ. ପୁଂ. (ଜି-ଅ) ଯୁଦ୍ଧାଦି ସ୍ଥଳରେ ଶତ୍ରୁଦମନ; ବଶୀକରଣ; ଶତ୍ରୁପରାଜୟ ।

ଜୟଢକ୍କା, ବ. ସ୍ତ୍ରୀ. ( ଜୟ-ଢକ୍କା ) ଜୟସୂଚକ ଢକ୍କା, ଯୁଦ୍ଧକାଳରେ ଯେ ଢକ୍କା ବଜାଯାଏ ।

ଜୟଦୁର୍ଗା, ବ. ସ୍ତ୍ରୀ. ଦୁର୍ଗାମୂର୍ତ୍ତିବିଶେଷ ।

ଜୟଦେବ, ବ. ପୁଂ. ଗୀତଗୋବିନ୍ଦ କାବ୍ୟକାରକ ।

ଜୟତ୍ସେନ, ବ. ପୁଂ. ବିରାଟଭବନରେ ଥିବା ଛଦ୍ମବେଶୀ ନକୁଳ ।

ଜୟଦ୍ବଳ, ବ. ପୁଂ. ବିରାଟଭବନରେ ଥିବା ଛଦ୍ମବେଶୀ ସହଦେବ ।

ଜୟଦ୍ରଥ, ବ. ପୁଂ. ( ଜୟତ୍-ରଥ ) ସିନ୍ଧୁରାଜ, ଦୁର୍ଯ୍ୟୋଧନର ଭଗିନୀପତି, ଦୁଃଶୀଳାର ସ୍ୱାମୀ ।

ଜୟଧ୍ୱନି, ବ. ପୁଂ. (ଜୟ-ଧ୍ୱନି) ଜୟଶବ୍ଦ ।

ଜୟନ୍ତ, ବ. ପୁଂ. (ଜି-ଅନ୍ତ) ଇନ୍ଦ୍ରପୁତ୍ର; ଶିବ ।

ଜୟନ୍ତିକା, ବ. ସ୍ତ୍ରୀ. (ଜୟନ୍ତୀ-କ, ସ୍ତ୍ରୀ) ହରିଦ୍ରା, ହଳଦୀ ।

ଜୟନ୍ତୀ, ବ. ସ୍ତ୍ରୀ. (ଜି-ଅନ୍ତୀ) ଇନ୍ଦ୍ରଙ୍କର କନ୍ୟା; ଦୁର୍ଗା, ଅଷ୍ଟମୀଘଟିତ ଯୋଗବିଶେଷ; ବୃକ୍ଷବିଶେଷ ।

ଜୟପତାକା, ବ. ସ୍ତ୍ରୀ. ଜୟସୂଚକ ପତାକା,ଜିଣିବା ପରେ ଯେଉଁ ପତାକା ଉତ୍ତୋଳନ କରାଯାଏ ।

ଜୟପତ୍ର, ବ. ନ. ଜୟସୂଚକ ପତ୍ର, ବିଚାରକ ମକଦ୍ଦମାରେ ଚୂଡ଼ାନ୍ତ ନିଷ୍ପତ୍ତି ଯେଉଁ ପତ୍ରରେ ଲେଖି ଜୟୀକୁ ପ୍ରଦାନ କରନ୍ତି, ଡିକ୍ରୀ ।

ଜୟପାଳ, ଜୈପାଳ, ବ. ପୁଂ. (ଜୟ-ପାଳ)ରାଜା; ବ୍ରହ୍ମା; ବିଷ୍ଣୁ; ବୃକ୍ଷବିଶେଷ ।

ଜୟମଙ୍ଗଳ, ବ. ପୁଂ. (ଜୟ-ମଙ୍ଗଳ) ରାଜବାହ୍ୟହସ୍ତୀ; ଜ୍ୱରନାଶକ ଔଷଧବିଶେଷ ।

ଜୟଶୀଳ, ବିଂ. (ଜୟ-ଶୀଳ) ଜୟୀ, ଯେ ସର୍ବତ୍ର ଜୟଲାଭ କରେ ।

ଜୟା, ବ.ସ୍ତ୍ରୀ. (ଜୟ-ଆ) ପାର୍ବତୀର ସଖୀ;ପାର୍ବତୀ; ହରୀତକୀ; ଜୟନ୍ତୀବୃକ୍ଷ; ଭାଙ୍ଗ; ତୃତୀୟା, ଅଷ୍ଟମୀ, ତ୍ରୟୋଦଶୀ ତିଥି, ପତାକାବିଶେଷ ।

ଜୟୀ, ବିଂ. ( ଜୟ-ଇନ୍ ) ଜୟଶୀଳ, ଜୟଯୁକ୍ତ, ଯେ ସର୍ବଦା ଜୟଲାଭ କରଇ ।

ଜରଜର, ବିଂ. ( ଜର୍ଜ୍ଜର ଶବ୍ଦର ଅପଭ୍ରଂଶ ) ଜର୍ଜ୍ଜର ।

ଜରଠ, ବିଂ. ( ଜୃ-ଅଠ ) ନିଷ୍ଠୁର; କର୍କଶ, କଠିଣ; ଜୀର୍ଣ୍ଣ; ବୃଦ୍ଧ । ପୁଂ. ଜରା ।

ଜରଣ, ବିଂ. ( ଜୃ-ଅନ ) ଜୀର୍ଣ୍ଣ, ବୃଦ୍ଧ । ପୁଂ. ଜୀରକ, ଜୀରା । ନ. ହେଙ୍ଗୁ ।

ଜରତ୍ , ବିଂ. (ଜୃ-ଅତ୍) ଅଶକ୍ତ, ବୃଦ୍ଧ, ଜୀର୍ଣ୍ଣ; ପୁରାତନ ।

ଜରଘ, ବ. ସ୍ତ୍ରୀ. ବୃଦ୍ଧା, ବୁଢ଼ୀ । ଯଥା—

ଜରଗ ବରଷାର ଧବଳ ଜଟା
କାଣ ଲମ୍ବେ ଶୁକ୍ଳ ଜଟାପଟା । ବୂ. ସ୍ତ.

ଜରତ୍କାରୁ, ବ. ପୁଂ. ( ଜରତ୍-କାରୁ ) ସ୍ୱନାମ-ପ୍ରସିଦ୍ଧ ମୁନି, ଏହି ମହର୍ଷି କଠୋର ତପସ୍ୟା-ଦ୍ୱାରା ଆପଣାର କଠିଣ ଓ ବଳିଷ୍ଠ ଦେହକୁ କ୍ରମେ କ୍ରମେ କ୍ଷୀଣ କରିଥିଲେ ବୋଲି ତାହାଙ୍କର ନାମ ଜରତ୍କାରୁ ହେଲା ଏବଂ ଉକ୍ତ କାରଣବଶତଃ ବାସୁକିର ଭଗିନୀ ମଧ୍ୟ ଜରତ୍କାରୁ ନାମରେ ବିଖ୍ୟାତ ହୋଇଥିଲା । ସ୍ତ୍ରୀ. ମନସାଦେବୀ, ଜରତ୍କାରୁପତ୍ନୀ ।

ଜରଦ୍ଗବ, ବ. ପୁଂ. ( ଜରତ୍-ଗୋ ) ବୃଦ୍ଧବୃଷ; ଗୃଧ୍ରବିଶେଷ ।

ଜରନ୍ତ, ବି°. (ଜୄ-ଅନ୍ତ) ବୃଦ୍ଧ, ଜୀର୍ଣ୍ଣ । ବ. ପୁଂ. ମହିଷ ।

ଜରା, ବ. ସ୍ତ୍ରୀ. (ଜୄ-ଅ) ବାର୍ଦ୍ଧକ୍ୟ । ଯଥା—

ଜନ୍ମ ମରଣ ଜରା ମୃତ୍ୟୁ, ଉରସ୍ ସୁଖ ଦୁଃଖ ହେତୁ ।

ଜୀର୍ଣ୍ଣତା; ରାକ୍ଷସୀବିଶେଷ; କାଳକନ୍ୟା, ମୃତ୍ୟୁକନ୍ୟା; କ୍ଷୀରିକା ବୃକ୍ଷ ।

ଜରାଗ୍ରସ୍ତ, ବି°. (ଜରା-ଗ୍ରସ୍ତ) ଜରା ଯାହାକୁ ଗ୍ରାସ କରିଅଛି, ଜରାଭିଭୂତ ।

ଜରାଭୀରୁ, ବ. ପୁଂ. (ଜରା-ଭୀରୁ) କନ୍ଦର୍ପ । ବି°. ଜରା ନିମିତ୍ତ ଭୀରୁ, ଯେଉଁ ବ୍ୟକ୍ତି ବାର୍ଦ୍ଧକ୍ୟକୁ ଅତ୍ୟନ୍ତ ଭୟ କରେ ।

ଜରାୟୁ, ବ. ପୁଂ. ( ଜରା-ଇ-ଉ ) ମାଂସପେଶି-ବିଶିଷ୍ଟ ସ୍ଥଳୀ, ଗର୍ଭାଶୟ, ଗର୍ଭ, ଯେଉଁ ସ୍ଥାନରେ ଭ୍ରୂଣ ଜାତ ହୋଇ ପରିବର୍ଦ୍ଧିତ ହୁଏ; ଜଟାୟୁ ପକ୍ଷୀ ।

ଜରାୟୁଜ, ବି°. (ଜରାୟୁ-ଜ) ଗର୍ଭଚର୍ମସ୍ଥଳୀଜାତ, (ମନୁଷ୍ୟ ଗୋ ପ୍ରଭୃତି) ।

ଜରାସନ୍ଧ, ବ. ପୁଂ. (ଜରା-ସନ୍ଧ) ମଗଧ ଦେଶର ନୃପବିଶେଷ, କୃଷ୍ଣଶତ୍ରୁ; ବୃହଦ୍ରଥର ପୁତ୍ର; ଏହିପରି ପ୍ରବାଦ ଅଛି ଯେ ଜନ୍ମକାଳୀନ ଜରାସନ୍ଧର ଦେହ ଦୁଇ ଖଣ୍ଡରେ ବିଭକ୍ତ ହୋଇ ଗର୍ଭରୁ ନିର୍ଗତ ହୋଇଥିଲା, ପରେ ଜରା ନାମକ ରାକ୍ଷସୀ ଉକ୍ତ ଦୁଇ ଖଣ୍ଡକୁ ଏକତ୍ର ସଂଯୋଜିତ କରିଥିଲା । ଯଥା—

ଜରାସନ୍ଧେ ବଧିଥିଲେ ଗିରିଦୁର୍ଗେ ପଶି,
ବାୟୁସୁତ ବୃକୋଦର କେଶବକୌଶଳେ । ମ. ଯା.

ଜରିବ୍, (ଆରବୀ) ଜମିର ପରିମାଣ ସ୍ଥିର କରିବା ।

ଜରିମାନା, (ଆରବୀ) ଅର୍ଥଦଣ୍ଡ ।

ଜର୍ଜ୍ଜର, ବ. ପୁଂ. ( ଜର୍ଜ୍-ଅର ) ଶୈଳଜ; ଇନ୍ଦ୍ରଧ୍ୱଜ । ବି°. ଜୀର୍ଣ୍ଣ, ବଶୀର୍ଣ୍ଣ ।

ଜର୍ଜ୍ଜରିତ, ବି°. ( ଜର୍ଜର-ଇତ ) ଯାହାକୁ ଜର୍ଜର କରିଅଛି, ମିଶ୍ରିତ ।

ଜଳ, ବି. ନ. (ଜଳ୍-ଅ) ସଲିଳ; ଅମ୍ବୁ; ବାରି ।

ଜଳକ, ବ. ନ. ଶଙ୍ଖ ।

ଜଳକା, ବି°. କ୍ଷୀଣଦୃଶ୍ୟ, ଯେ ଚହିଁଥିଲେ ସୁଦ୍ଧା ଦେଖି ପାରଇ ନାହିଁ ।

ଜଳକଣ୍ଟକ, ବ. ପୁଂ. (ଜଳ-କଣ୍ଟକ) କୁମ୍ଭୀର ।

ଜଳକର, ବ. ପୁଂ. ( ଜଳ-କର ) ଜଳରୁ ଯେ ରାଜସ୍ୱ ଉତ୍ପନ୍ନ ହୁଏ ।

ଜଳକରଙ୍କ, ବ. ପୁଂ. (ଜଳ-କରଙ୍କ) ପଦ୍ମ; ଶଙ୍ଖ; ମେଘ; ନାରିକେଳ ।

ଜଳକରାଟ, ବ. ପୁଂ. ( ଜଳ-କର-ଅଟ ) ଗ୍ରାହ; ଜଳଜନ୍ତୁ ।

ଜଳକୂର୍ମ, ବ. ପୁଂ. (ଜଳ-କୂର୍ମ) ଶିଶୁମାର ।

ଜଳକୁନ୍ତଳ, ଜଳକେଶ, ବ. ପୁଂ. (ଜଳ-କୁନ୍ତଳ) ଶୈବାଳ ।

ଜଳକ୍ରୀଡା, ବ. ସ୍ତ୍ରୀ. ନଦ୍ୟାଦିରେ ସମବୟସ୍କ ସଖା ବା ସଖୀଗଣ ସହିତ ଜଳକ୍ଷେପରୂପ କ୍ରୀଡା ।

ଜଳଚର, ବି°. ( ଜଳ-ଚର ) ଜଳଜନ୍ତୁ, ଜଳଚାରୀ ।

ଜଳଚାରୀ, ବି°. ( ଜଳ-ଚାରିନ୍ ) ଯେଉଁମାନେ ଜଳରେ ବିଚରଣ କରନ୍ତି, ଯଥା—ବକ, ସାରସାଦି ।

ଜଳଛତ୍ର, ବି. ଗ୍ରୀଷ୍ମକାଳରେ କ୍ଳାନ୍ତ ଲଭିଥିବା ପଥିକମାନଙ୍କର ଜଳପ୍ରାପ୍ତି ସ୍ଥାନ, ପ୍ରପା ।

ଜଳଜ, ବି. ନ. (ଜଳ-ଜ) ପଦ୍ମ; ଶଙ୍ଖ । ବିଂ. ଜଳଜାତ ।

ଜଳଜଳ, ବିଂ. (ଜାଜ୍ୱଲ୍ୟ ଶବ୍ଦଜ) ଉଜ୍ଜ୍ୱଳ; ଚକଚକ ।

ଜଳଜଳା, ବିଂ. (ଦେଶଜ) ନିର୍ଲଜ୍ଜ, ବେହିୟା, ଅଲଜୁକ ।

ଜଳଜନ୍ତୁ, ବି. ପୁଂ. (ଜଳ-ଜନ୍ତୁ) ଯେଉଁ ଜନ୍ତୁ ଜଳରେ ବାସ କରନ୍ତି; ମକର କୁମ୍ଭୀରାଦି ।

ଜଳଡିମ୍ବ, ବି. ପୁଂ. (ଜଳ-ଡିମ୍ବ) ଶମ୍ବୂକ; ଶାମୁକା ।

ଜଳଦ, ବି. ପୁଂ. (ଜଳ-ଦ) ପୟୋଦ; ମେଘ; ବାରିଦ; ମେଘଦୂତ । ଯଥା—

> ପ୍ରବଳ-ବାୟୁ ଜେବେ ଉଡ଼େ ଜଳଦ
> କୁପୁତ୍ର ଯଥା କୁଳଧର୍ମ ସମ୍ପଦ । ଭୂ. ସ୍ତୁ.

ବିଂ. ଜଳଦାତା ।

ଜଳଧର, ବି. ନ. (ଜଳ-ଧର) ମେଘ; ସମୁଦ୍ର; ମୁଥାଘାସ ।

ଜଳଧି, ବି. ନ. (ଜଳ-ଧା-ଇ) ସମୁଦ୍ର ।

ଜଳନିଧି, ବି. ନ. (ଜଳ-ନି-ଧା-ଇ) ସମୁଦ୍ର ।

ଜଳନ୍ଧର, ବି. ପୁଂ. (ଜଳ-ଧର) ଶିବଙ୍କଠାରୁ ଉତ୍ପନ୍ନ ବୋଲି ଏହାଙ୍କୁ ସମୁଦ୍ର ଗ୍ରହଣ କରିଥିଲେ, ଅସୁରବିଶେଷ ।

ଜଳପତି, ବି. ପୁଂ. (ଜଳ-ପତି) ବରୁଣ; ସମୁଦ୍ର ।

ଜଳପାତ୍ର, ବି. ନ. (ଜଳ-ପାତ୍ର) ପାନପାତ୍ର, ଜଳ ରଖିବା ପାତ୍ର, ଲୋଟା, ଅବଖୁରା ପ୍ରଭୃତି ।

ଜଳପାନ, ବି. ନ. ଜଳପାନ କରିବା; (ଦେଶଜ) ଜଳଖିଆ; ଭଜା ବା ପିଷ୍ଟକାଦି ଦ୍ରବ୍ୟ ।

ଜଳପ୍ରପା, ବି. ସ୍ତ୍ରୀ. (ଜଳ-ପ୍ରପା) ଜଳ ଦାନର ଗୃହ, ଜଳଛତ୍ର ।

ଜଳପ୍ରପାତ, ବି. ପୁଂ. (ଜଳ-ପ୍ରପାତ) ନିର୍ଝର, ଝରଣା ।

ଜଳପ୍ଳାବନ ବି. ନ. (ଜଳ-ପ୍ଳାବନ) ବନ୍ୟା; ଜଳଦ୍ୱାରା ଦେଶ ଭାସି ଯିବା ।

ଜଳପ୍ଳାବିତ, ବିଂ. (ଜଳ-ପ୍ଳୁ-ତ) ଜଳରେ ନିମଗ୍ନ, ଜଳଦ୍ୱାରା ବ୍ୟାପ୍ତ ।

ଜଳବୁଦ୍‌ବୁଦ, ବି. ନ. (ଜଳ-ବୁଦ୍‌ବୁଦ) ଜଳବିମ୍ବ; ପାଣିଫୋଟକା ।

ଜଳବେଣୀ, ବି. ସ୍ତ୍ରୀ. ପ୍ରବାହ, ଧାରା । ଯଥା—

> ପ୍ରଫୁଲ୍ଲ ସୁରଭି କଦମ୍ବମୂଳେ,
> ଜଳବେଣୀରମ୍ୟ କାଳିନ୍ଦୀକୂଳେ । କ. ବ.

ଜଳମାର୍ଗ, ବି. ପୁଂ. (ଜଳ-ମାର୍ଗ) ଜଳପ୍ରଣାଳୀ, ଜଳପଥ; ନର୍ଦ୍ଦମା ।

ଜଳମୁକ୍, ବି. ପୁଂ. (ଜଳ-ମୁଚ୍+୦) ମେଘ ।

ଜଳମୋଦ, ବି. ନ. (ଜଳ-ମୋଦ) ଉଶୀର; ବେଣାମୂଳ ।

ଜଳଯନ୍ତ୍ର,ବି. ନ. (ଜଳ-ଯନ୍ତ୍ର) ଜଳୋତ୍ତୋଳନର କଳ; ଧାରାଯନ୍ତ୍ର; ଯେଉଁ ଯନ୍ତ୍ରରୁ ଜଳ ଅନବରତ ଝରୁଥାଏ କିମ୍ବା ଯେଉଁ ଯନ୍ତ୍ରରେ ଜଳ ପରିଷ୍କୃତ କରାଯାଏ । ଯଥା—

> ଜଳଯନ୍ତ୍ରଗୃହରେ ରମା ସଙ୍ଗରେ ବସି ହେଉଥାଇ ବନକୁ ।

ଜଳଯାନ, ବି. ନ. (ଜଳ-ଯାନ) ଜାହାଜ; ନୌକା ।

ଜଳରସ, ବି. ନ. (ଜଳ-ରସ) ଲବଣ; ଲୁଣ ।

ଜଳରାକ୍ଷସୀ, ବି. ସ୍ତ୍ରୀ. ଲବଣସମୁଦ୍ରସ୍ଥିତା ସିଂହିକା ରାକ୍ଷସୀ ।

ଜଳରୁଟ୍, ଜଳରୁହ, ବି. ପୁଂ. ନ. (ଜଳ-ରୁହ) ପଦ୍ମ । ବିଂ. ଜଳଜାତ ।

ଜଳଲତା, ବି. ସ୍ତ୍ରୀ. ତରଙ୍ଗ; ଢେଉ ।

ଜଳବାହ, ବି. ପୁଂ. (ଜଳ-ବହ-ଅ) ମେଘ, ଯେ ଜଳ ବହନ କରେ ।

ଜଳବିଷୁବ, ବି. ନ. (ଜଳ-ବିଷୁବ) କାର୍ତ୍ତିକ ସଂକ୍ରାନ୍ତି ।

ଜଳବୃଶ୍ଚିକ, ବି. ପୁଂ. (ଜଳ-ବୃଶ୍ଚିକ) ଚିଙ୍ଗୁଡ଼ିମାଛ ।

ଜଳଶଯ୍ୟ, ଜଳଶୟନ, ଜଳଶାୟୀ, } ବିଂ ପୁଂ. (ଜଳ-ଶପ୍, ଶୟନ, ଶାୟୀ) ବିଷ୍ଣୁ, ନାରାୟଣ । ବିଂ. ଜଳସ୍ଥିତ ।

ଜଳସ୍ତମ୍ଭ, ବ. ପୁଂ. (Water spout) ସ୍ତମ୍ଭାକାରରେ ପତିତ ବା ଉତ୍ତୋଳିତ ଜଳରାଶି ।
ଜଳହସ୍ତୀ, ବ. ପୁଂ. ସ୍ତ୍ରୀ. ( ଜଳ-ହସ୍ତିନ୍ ) ହସ୍ତୀ ସଦୃଶ ଜଳଜନ୍ତୁବିଶେଷ ।
ଜଳା, (ଦେଶଜ) ଛିଦ୍ର, କଣା ।
ଜଳାକବାଟୀ, ବ. (ଦେଶଜ) ଝରକା (Window) । ଯଥା—

ହୃଦ ଘରର ବାଟ, ବନ୍ଧ ପଦ୍ମେ ବାଟୀ,
ଜଳାକବାଟୀକି ନବାଇ ରେ । ଲ. ଚ.

ଜଳାକା, ବ. ସ୍ତ୍ରୀ. (ଜଳ-ଅକ୍-ଆ) ଜୋକ ।
ଜଳାଞ୍ଜଳି, ବ. ପୁଂ. ( ଜଳ-ଅଞ୍ଜଳି ) ଜଳର ଅଞ୍ଜଳି, ଅଞ୍ଜଳି ପ୍ରମାଣ ଜଳ ; ତର୍ପଣ; ନବାପ; (ଦେଶଜ) କୌଣସି କାର୍ଯ୍ୟରୁ ଏକାବେଳକେ ବିରତି, ପରିତ୍ୟାଗ ।
ଜଳାଧାର, ବ. ପୁଂ. (ଜଳ-ଅଧାର) ଜଳାଶୟ, ଯହିଁରେ ଜଳ ଥାଏ; ସମୁଦ୍ର; ଜଳପାତ୍ର । ବି°. ଜଳସ୍ଥିତ ।
ଜଳାର୍ଦ୍ର, ବି°. (ଜଳ-ଅର୍ଦ୍ର) ଜଳରେ ଅଭିଷିକ୍ତ, ଭିଜା, ତିନ୍ତା । ଯଥା—

ଜଳାର୍ଦ୍ର ବସ୍ତ୍ରକ ଧୀରେ ଜଙ୍ଘେ ସମ୍ବରେ । ବ. ବ.

ଜଳାବର୍ତ୍ତ, ବ. ପୁଂ. ( ଜଳ-ଅବର୍ତ୍ତ ) ଘୂର୍ଣ୍ଣିତ ଜଳ, ଜଳଭଉଁରୀ, ଜଳଭ୍ରମୀ ।
ଜଳାଶୟ, ବ. ପୁଂ. ( ଜଳ-ଆଶୟ ) ଜଳର ଅଧାର, ସମୁଦ୍ର, ନଦନଦୀ ପ୍ରଭୃତି । ନ. ସୁଗନ୍ଧ ଘାସବିଶେଷ ।
ଜଳେଚର, ବ. ପୁଂ. (ଜଳେ-ଚର) ହଂସ, ବକ ଇତ୍ୟାଦି ଜଳଚର ପକ୍ଷୀ ମତ୍ସ୍ୟାଦି ।
ଜଳେନ୍ଦ୍ର, ବ. ପୁଂ. (ଜଳ-ଇନ୍ଦ୍ର) ବରୁଣ; ସମୁଦ୍ର ।
ଜଳେନ୍ଧନ, ବ. ପୁଂ. ( ଜଳ-ଇନ୍ଧନ ) ବାଡ଼ବାନଳ ।
ଜଳେଶୟ, ବ. ପୁଂ. ( ଜଳେ-ଶୀ-ଅ ) ମତ୍ସ୍ୟ; ସମୁଦ୍ର; ବିଷ୍ଣୁ ।
ଜଳେଶ୍ୱର, ବ. ପୁଂ. (ଜଳ-ଈଶ୍ୱର) ଜଳାଧିପତି, ବରୁଣ; ସମୁଦ୍ର ।
ଜଳୋଚ୍ଛ୍ୱାସ, ବ. ପୁଂ. (ଜଳ-ଉଚ୍ଛ୍ୱାସ) ଜଳର ସ୍ଫୀତତା, ଜୁଆର, ନଦୀ ପ୍ରଭୃତିର ସୀମା ଅତିକ୍ରମ କରି ଜଳ ଉଠିବା ।
ଜଳୋଦର, ବ. ନ. ( ଜଳ-ଉଦର ) ଉଦରରୋଗବିଶେଷ, ଉଦରୀ ।
ଜଳୌକା, ଜଳୌକାଃ, ବ. ସ୍ତ୍ରୀ. (ଜଳ-ଓକସ୍) ଜୋକ ।
ଜଳ୍ପ, ଜଳ୍ପନ, ଜଳ୍ପନା, ବ. ନ. (ଜଳ୍ପ-ଅ, ଅନ, ଆ) ବାଗ୍‌ବହୁଳତା; କଥନ, କହିବାର ।
ଜଳ୍ପକ, ବି°. (ଜଳ୍ପ୍-ଅକ) ଯେ ଅନେକ ବକେ, ଯେ ବୃଥା ଅନେକ କଥା କହେ, ବାଚାଳ ।
ଜଳ୍ପିତ, ବି°. ( ଜଳ୍ପ-ତ ) କଥିତ, ଉକ୍ତ, ପ୍ରସ୍ତାବିତ । ବ. ନ. ଜଳ୍ପନ, କଥନ ।
ଜଲଦୀ, କ୍ରି. ବ. (ଯାବନିକ) ତ୍ୱରା, ଶୀଘ୍ର, ସତ୍ୱରେ ।
ଜଲବି, ବ. (ଦେଶଜ) ମିଷ୍ଟାନ୍ନବିଶେଷ ।
ଜବ, ବ. ପୁଂ. (ଜୁ-ଅ) ବେଗ, ଗତି । (ଜବ୍-ଅ) ବି°. ବେଗବାନ୍, ସତ୍ୱର ।
ଜବନ, ବି°. (ଜବ୍-ଅନ) ଦ୍ରୁତଗାମୀ, ବେଗବାନ୍ । ବ. ପୁଂ. ବେଗ । ନ. ବେଗ; ଅଶ୍ୱ; ମୃଗବିଶେଷ; ଆରବଦେଶ; ଯବନ ଜାତି ।
ଜବନିକା, ଜବନୀ, } ବ. ସ୍ତ୍ରୀ. (ଜୁ-ଅନ, କ) ତିରସ୍କରଣୀ, ପରଦା; ଯବନସ୍ତ୍ରୀ ।
ଜବସ, ବ. ପୁଂ. (ଜୁ-ଅସ) ତୃଣ, ଘାସ । ଯଥା—

ଗଜ ହସ୍ତ ଉପଜାବୀ କ୍ରମନ୍ତ କେଦାରେ,
ମାତଙ୍ଗ କ୍ୟୋଡକ କର ଜବସ ମନରେ ସେ । ଉ. ବ.

ଜବା, ବ. ସ୍ତ୍ରୀ. ସ୍ୱନାମପ୍ରସିଦ୍ଧ ପୁଷ୍ପ ବା ବୃକ୍ଷ ।
ଜହର, ବ. (ଯାବନିକ) ବିଷ, ଗରଳ । ଯଥା—

ଜହରକୁ ଗୋଟି ଦେଲ ପର ଗିଳି
ଦେହର ମୋହର ପୀଡ଼ା ଗଲ ଚଳି ।

ଜହ୍ନ, ବ. ( ଜ୍ୟୋତ୍ସ୍ନାର ଅପଭ୍ରଂଶ ) ଚନ୍ଦ୍ର, ଶଶୀ ।
ଜହ୍ନୀ, ବ. ସ୍ତ୍ରୀ. (ଜ୍ୟୋତ୍ସ୍ନୀ ଶବ୍ଦଜ) ଫଳବିଶେଷ ।
ଜହ୍ନୁ, ବ. ପୁଂ. ଋଷିବିଶେଷ; ଚନ୍ଦ୍ରବଂଶୋଦ୍ଭବ କୁରୁରାଜପୁତ୍ର ।

ଜହ୍ନୁକନ୍ୟା, ଜହ୍ନୁତନୟା, ବି. ସ୍ତ୍ରୀ. ଗଙ୍ଗା, ଭାଗୀରଥୀ ।

ଜା, ବି. ସ୍ତ୍ରୀ. (ଦେଶଜ) ସ୍ୱାମିର ଭାଇର ସ୍ତ୍ରୀ ।

ଜାଇ, ବି. (ଜାତି ଶବ୍ଦଜ) ସୁନାମପ୍ରସିଦ୍ଧ ପୁଷ୍ପ ବା ବୃକ୍ଷ । ଯଥା—

> କଦମ୍ବ ନାଗେଶ୍ୱର ଚମ୍ପା ମାଳତୀ
> ଯୂଥି ଜାଇ ପୁନ୍ନାଗ ପ୍ରଫୁଲ୍ଲ ଅତି । ଲ. ମା.

(ଦେଶଜ) ଡାଳ ।

ଜାଉ, ବି. (ଜବାଗୁ ଶବ୍ଦଜ) ଅନ୍ନମଣ୍ଡ ।

ଜାକ, ବିଂ. (ଦେଶଜ) ସଙ୍କୀର୍ଣ୍ଣ ।

ଜାକିବା, କ୍ରି. (ଦେଶଜ) କୁଣ୍ଢାଇ ଚାପିବା ।

ଜାଗର, ବି. ନ. (ଜାଗୃ-ଅ) ଅନିଦ୍ରା; ଶିବରାତ୍ରି, ଫାଲ୍ଗୁନ କୃଷ୍ଣ ଚତୁର୍ଦ୍ଦଶୀ ।

ଜାଗରଣ, ବି. ନ. ( ଜାଗୃ-ଅନ ) ଅନିଦ୍ରା, ଚେଇଁବା ।

ଜାଗରିତ, ବିଂ. (ଜାଗୃ-ଇତ) ଜାଗରଣଯୁକ୍ତ, ଜାଗ୍ରତ, ବିନିଦ୍ର ।

ଜାଗରୂକ, ବିଂ. (ଜାଗୃ-ଊକ) ସଜୀବ, ଜାଗରଣ-ଶୀଳ, ଜାଗ୍ରତ; ପ୍ରବୁଦ୍ଧ ।

ଜାଗା, ବି. (ଦେଶଜ) ଆଖଡ଼ା; ସ୍ଥାନ ।

ଜାଗିର, ବି. ( ଜାଯ୍‌ଗୀର ଶବ୍ଦଜ, ପାରସ୍ୟ ଭାଷା) ରାଜଦତ୍ତ ପୁରସ୍କାରସ୍ୱରୂପ ଭୂସମ୍ପତ୍ତି ।

ଜାଗୁଲି, ବି. (ଦେଶଜ) ଦହି ବସାଇବା ନିମିତ୍ତ ମୃତ୍ତିକାନିର୍ମିତ କ୍ଷୁଦ୍ର କ୍ଷୁଦ୍ର ପାତ୍ର ।

ଜାଗ୍ରତ୍, ବିଂ. (ଜାଗୃ-ଅତ୍) ଜାଗରଣବିଶିଷ୍ଟ, ନିଦ୍ରୋତ୍ଥିତ, ସଜୀବ; ଚେଇଁବା ବ୍ୟକ୍ତି ।

ଜାଙ୍ଗଳ, ବି. ପୁଂ. କପିଞ୍ଜଳ ପକ୍ଷୀ; ସ୍ଥଳଜ ପଶୁ-ବିଶେଷ; ଜଙ୍ଗଲଦେଶୋଦ୍ଭବ । ନ. ମାଂସ । ବିଂ. ଜଙ୍ଗଲସମ୍ବନ୍ଧୀୟ ।

ଜାଙ୍ଗଲି, ଜାଙ୍ଗଲିକ, ବି. ପୁଂ. (ଜଙ୍ଗଲ-ଇ, ଇକ) ବ୍ୟାଳଗ୍ରାହୀ, ସାପୁଆ । ବିଂ. ଜଙ୍ଗଲ-ବାସୀ ।

ଜାଙ୍ଗଲୀ, ଜାଙ୍ଗୁଲୀ, ବି. ସ୍ତ୍ରୀ. ( ଜାଙ୍ଗଲ, ଜାଙ୍ଗୁଲ-ଈ) ବିଷବିଦ୍ୟା ।

ଜାଙ୍ଗୁଲିକ, ବି. ପୁଂ. (ଜାଙ୍ଗୁଲ-ଇକ) ବିଷବୈଦ୍ୟ, ସାପୁଆ ।

ଜାଜ୍ୱଲ୍ୟମାନ, ବିଂ. (ଜ୍ୱଲ-ଆନ) ଅତ୍ୟୁଜ୍ଜ୍ୱଳ; ଅତି ଜ୍ୱଳନ୍ତ ।

ଜାଡ଼, ବି. (ଦେଶଜ) ହିମ, ଶୀତ । ଯଥା—

> ଦାରୁଣ ହିମ ଯେ ବଡ଼ ଘୋଡ଼ାଇଗି ଜାଡ଼କୁ ଡରେଣ ।

ଜାଡ୍ୟ, ବି. ନ. (ଜଡ-ଯ) ଜଡ଼ତା, ମୂର୍ଖତା, ଅବସନ୍ନତା; ସ୍ତମ୍ଭ ।

ଜାତ, ବିଂ. (ଜନ୍-ତ) ଉତ୍ପନ୍ନ, ଉଦ୍ଭୂତ; ପ୍ରଶସ୍ତ; ବ୍ୟକ୍ତ । ବି. ନ. ଜନ୍ମ, ଉତ୍ପତ୍ତି; ସମୂହ ।

ଜାତକ, ବି. ନ. (ଜାତ-କ) ଭୂମିଷ୍ଠ ବାଳକର ଶୁଭାଶୁଭ ନିର୍ଣ୍ଣାୟକ ପତ୍ର । ପୁଂ. ଭିକ୍ଷୁକ, ସନ୍ନ୍ୟାସୀ । ବିଂ. ଉତ୍ପନ୍ନ ।

ଜାତକର୍ମ, ବି. ନ. ( ଜାତ-କର୍ମ ) ଜନ୍ମସଂସ୍କାର-ବିଶେଷ; ଦଶବିଧସଂସ୍କାର ଅନ୍ତର୍ଗତ ସଂସ୍କାର-ବିଶେଷ ।

ଜାତରୂପ, ବି. ନ. (ଜାତ-ରୂପ) ପ୍ରଶସ୍ତବର୍ଣ୍ଣ; ସ୍ୱର୍ଣ୍ଣ ।

ଜାତବେଦାଃ, ବି. ପୁଂ. (ଜାତ-ବିଦ୍-ଅସ୍ ) ଅଗ୍ନି । ଯଥା—

> କରୁଛ ଜାତ ଜାତବେଦାକୁ ସତ ଶତକ୍ରତୁ
> ଛଳରେ ଦନ କୋଳରେ, ସହଚର । ଲ. ବ.

ଜାତି, ବି. ସ୍ତ୍ରୀ. (ଜନ-ତି) ଗୋତ୍ର; ପ୍ରକାର; ଜନ୍ମ; ବଂଶ; କ୍ଷତ୍ରିୟ ବ୍ରାହ୍ମଣ ଶୂଦ୍ର ପ୍ରଭୃତି; ଜାତିପୁଷ୍ପ, ଜାଇଫୁଲ ।

ଜାତିକୋଷ, ଜାତିସାର, } ବି. ନ. ଜାତିଫଳ, ଜାଇଫଳ ।

ଜାତିସଙ୍କର, ବି. ପୁଂ. ବିଭିନ୍ନ ଜାତୀୟ ପିତା ମାତାଠାରୁ ଉତ୍ପନ୍ନ, ବର୍ଣ୍ଣସଙ୍କର ।

ଜାତିସ୍ମର, ବିଂ. (ଜାତି=ପୂର୍ବଜନ୍ମ-ସ୍ମର) ପୂର୍ବ-ଜନ୍ମର ବୃତ୍ତାନ୍ତସ୍ମାରକ, ଯାହାର ପୂର୍ବଜନ୍ମର କଥା ମନେ ଥାଏ; ପକ୍ଷୀବିଶେଷ ।

ଜାତିପତ୍ରୀ, ବି. ସ୍ତ୍ରୀ. (ଜାତି-ପତ୍ରୀ) ଜାୟିତ୍ରୀ ।

ଜାତିଫଳ, ବି. ନ. ସୁଗନ୍ଧ ଫଳବିଶେଷ, ଜାଇଫଳ ।

ଜାଗୟ, ବିଂ. (ଜାଡ-ଈୟ) ଜାଡସମ୍ବନ୍ଧୀୟ ।

ଜାତୁକ, ବି. ନ. (ଜତୁକ-ଅ) ହିଙ୍ଗୁ ।

ଜାତୁଧାନ, ବି. ପୁଂ. (ଜାତୁ-ଧାନ) ରାକ୍ଷସ, ନିଶାଚର, ରଜନୀଚର ।

ଜାତୁଷ, ବିଂ. (ଜତୁ-ଅ, ଷ ଆଗମ) ଜତୁନିର୍ମିତ, ଲାକ୍ଷାନିର୍ମିତ ।

ଜାତ୍ୟ, ବିଂ. ( ଜାତି-ଯ ) କୁଲୀନ, ଶ୍ରେଷ୍ଠ, ପ୍ରଧାନ; କାନ୍ତ, ରମଣୀୟ, ମନୋହର ।

ଜାତ୍ୟତ୍ରିଭୁଜ, ବି. ପୁଂ. ଯେ ତ୍ରିଭୁଜ କ୍ଷେତ୍ରରେ ଗୋଟିଏ ସମକୋଣ ଥାଏ । ( Rightangled Triangle)

ଜାଦୁ, ବି. ନ. (ଯାବନିକ) କୁହୁକ, ମାୟା, ଭେଲ୍କି । (ଦଦ୍ରୁ ଶବ୍ଦଜ) କଣ୍ଡୁରୋଗବିଶେଷ ।

ଜାଦୁଗର, ବି. ପୁଂ. (ଯାବନିକ) କୁହୁକୀ, ମାୟାବୀ ।

ଜାନକୀ, ବି. ସ୍ତ୍ରୀ. (ଜନକ-ଈ) ସୀତା, ଜନକସୁତା, ବୈଦେହୀ ।

ଜାନପଦ, ବିଂ. (ଜନପଦ-ଅ) ଜନପଦସମ୍ବନ୍ଧୀୟ, ଦେଶସ୍ଥ, ଦେଶାନ୍ତରୁ ଆଗତ । ବି. ଦେଶ; ଜନପଦ ।

ଜାନୁ, ବି. ପୁଂ. ନ. (ଜାନ୍-ଉ) ଊରୁସନ୍ଧି, ଆଣ୍ଠୁ ।

ଜାପ, ବି. ପୁଂ. (ଜାପ୍-ଅ) ମନେ ମନେ ମନ୍ତ୍ରାଦି ପାଠ, ଈଶ୍ୱରଙ୍କର ସ୍ତୋତ୍ରପାଠ; ମନ୍ତ୍ରୋଚ୍ଚାରଣ ।

ଜାପକ, ବିଂ. (ଜାପ୍-ଅକ) ଜପକର୍ତ୍ତା, ସର୍ବଦା ମନ୍ତ୍ରୋଚ୍ଚାରଣକାରୀ; ଯେ ଜପ କରେ ।

ଜାପନ, ବି. ନ. (ଜାପି-ଅନ) ନିରସନ; ନିଷ୍ପାଦନ; ପ୍ରତ୍ୟାଖ୍ୟାନ; ସମାପନ; ନିବର୍ତ୍ତନ ।

ଜାବାଳ, } ବି. ପୁଂ. (ଅଜା-ବାଲ, ଇ )
ଜାବାଲି, } ଛାଗୋପଜୀବୀ; ମୁନିବିଶେଷ ।

ଜାମଦଗ୍ନ୍ୟ, ବି. ପୁଂ. (ଜମଦଗ୍ନି-ଯ) ଜମଦଗ୍ନିର ପୁତ୍ର, ପରଶୁରାମ ।

ଜାମ୍‌ଦାନି, (ଯାବନିକ) ବସ୍ତ୍ରବିଶେଷ ।

ଜାମା, ବି. (ଯାବନିକ) କୁର୍ତ୍ତା, ଅଙ୍ଗରଖା ।

ଜାମାତା, ବି. ପୁଂ. (ଜା-ମା-ତୃ) କନ୍ୟାର ପତି, ଜୁଆଁଇ; (ଜ-ଆ-ମା-ତୃ) ସୂର୍ଯ୍ୟର ପରିଧି ।

ଜାମି, } ବି. ସ୍ତ୍ରୀ. (ଜେ-ମି ) ଭଗିନୀ; କୁଳସ୍ତ୍ରୀ,
ଜାମୀ, } ପତିବ୍ରତା ନାରୀ ।

ଜାମିନ୍, ବି. (ଯାବନିକ) ସଂରକ୍ଷଣ, ବନ୍ଧକ ।

ଜାମିନ୍‌ଦାର, ବି. (ଯାବନିକ) ପ୍ରତିଭୂ ।

ଜାମୁକୀ, ବି. ସ୍ତ୍ରୀ. ରଞ୍ଜକବଟୀ । ଯଥା—

ବନ୍ଧୁକ ଜାମୁକୀ ସନାଳୀ ନଳୀ
ତୁନିତ ରୂ ଶବ୍ଦ କୁଳିଶରୂପ । ସ. ବ.

ଜାମ୍ବବତୀ, ବି. ସ୍ତ୍ରୀ. (ଜାମ୍ବବତ୍-ଈ) କୃଷ୍ଣଙ୍କର ପତ୍ନୀବିଶେଷ ।

ଜାମ୍ବବାନ୍, } ବି. ପୁଂ. (ଜାମ୍ବ-ବତ୍, ଜାମ୍ବୁ-
ଜାମ୍ବୁବାନ୍, } ବତ୍ ) ଭଲ୍ଲୁକରାଜା, ଋକ୍ଷରାଜା ।

ଜାମ୍ବୁନଦ, ବି. ନ. (ଜାମ୍ବୁନଦୀ-ଅ) ସ୍ୱର୍ଣ୍ଣ; ଜମ୍ବୁନଦୀଜାତ ।

ଜାୟ, ବି. (ଯାବନିକ) ବିବରଣ, ସମ୍ପତ୍ତି ।

ଜାୟଦାଦ, ବି. (ପାରସ୍ୟ ଭାଷା) ସମ୍ପତ୍ତି ।

ଜାୟମାନ, ବିଂ. (ଜନ୍-ଆନ [ଶାନ] ଉତ୍ପଦ୍ୟମାନ, ଯାହା ଜନ୍ମିଅଛି ।

ଜାୟା, ବି. ସ୍ତ୍ରୀ. (ଜନ୍-ଯ) ଭାର୍ଯ୍ୟା, ବନିତା, ପତ୍ନୀ ।

ଜାୟାପତି, ବି. ପୁଂ. (ଜାୟା-ପତି) ସ୍ତ୍ରୀ ପୁରୁଷ, ଦମ୍ପତି; ଚକ୍ରପକ୍ଷୀ ।

ଜାୟାଜୀବ, } ବି. ପୁଂ. ନଟ, ବେଶ୍ୟାପତି ।
ଜାୟାନୁଜୀବୀ, }

ଜାର, ବି. ପୁଂ. (ଜୃ-ଅ) ଉପପତି, ଗୁପ୍ତପତି ।

ଜାରକ, ବିଂ. (ଜୃ-ଅକ) ଜୀର୍ଣ୍ଣକାରକ; ପାଚକ ।

ଜାରଜ, ବି. ପୁଂ. (ଜାର-ଜ) ଉପପତିଜାତ ସନ୍ତାନସନ୍ତତି ।

ଜାରଜଯୋଗ, ବି. ପୁଂ. (ଜାରଜ-ଯୋଗ) ଲଗ୍ନବିଶେଷ, ଯେଉଁ ଲଗ୍ନରେ ଉପପତିଠାରୁ ପୁତ୍ର କନ୍ୟା ଜନ୍ମନ୍ତି ।

ଜାରଣ, ବି. ନ. (ଜୃ-ଅନ) ଜାରିବା; ଜୀର୍ଣ୍ଣ କରିବା; ସଂଶୋଧନ କରିବା; ସ୍ୱର୍ଣ୍ଣାଦି ଧାତୁ କିମ୍ବା ପାରଦ ରସର ଶୋଧନ ।

ଜାଲ, ବି. ନ. (ଜଲ୍-ଅ) ସମୂହ । (ଦେଶଜ) ଜାଲେଣୀ କାଠ ।

ଜାଲ, ବି. ନ. (ଜାଲ୍-ଅ) ମତ୍ସ୍ୟାଦି ବା ପକ୍ଷ୍ୟାଦି ବନ୍ଧନାର୍ଥ ସୂତ୍ରନିର୍ମିତ ଯନ୍ତ୍ର । ଯଥା—

ଲବଣ ସାଗର ପ୍ରବଳ ଲହରି ଜାଲମାର୍ଗେ କ ବହର ।
କୋ. ବ୍ର. ସୁ.

ଜାଲ, ବି. (ଯାବନିକ) କପଟତା; ମିଥ୍ୟାବାଦ । ବିଂ. କୃତ୍ରିମ ।

ଜାଲକ, ବି. ନ. (ଜାଲ-କ) ଜାଲ; ସମୂହ । ଯଥା—

ଯଥା ନପଜାଲକ, ତଥା ତନୁ ପୁଲକ
ପ୍ରଭୁ ପୁଲକତନୁ ଦେଖେ ରେ, ସହଚରୀ । ଲ. ବ.

ପୁଂ. ଗବାକ୍ଷ ।

ଜାଲପାଦ, ବି. ପୁଂ. (ଜାଲ-ପାଦ) ହଂସ; ଶରାରି-ପକ୍ଷୀ (Web-footed) ।

ଜାଲିଆ, (ଆରବୀ) ଜାଲକାରକ, ପ୍ରତାରକ ।

ଜାଲିକ, ବି. ପୁଂ. (ଜାଲ୍-ଇକ) ବ୍ୟାଧ; ଇପଟୀ; ମାଙ୍କଡ଼ସା; ଧୀବରବିଶେଷ ।

ଜାଲି, ଜାଲୀ, ବି. (ଦେଶଜ) ଜାଲପରି ଅସଂଖ୍ୟ ଛିଦ୍ରବିଶିଷ୍ଟ ପଦାର୍ଥ । ଯଥା—

କୂଡ଼ାଜାଲି ଏସବୁଣୀ ଯେ,
ଶ୍ୟାମଳ କମଳ କଳୀରେ କଲା କ ସେକେଣି ସୁଧା ବରଷା ଯେ ।
ଲ. ବ.

ଜାଲିଚଟୁ, ଜାଲୀଚଟୁ, ବି. (ଦେଶଜ) ପୁରି ବା ଅନ୍ୟ ପ୍ରକାର ପିଷ୍ଟକ ଉତ୍ତପ୍ତ ଘୃତରୁ ଉଠାଇ-ବାକୁ ବ୍ୟବହୃତ ଛିଦ୍ରବିଶିଷ୍ଟ ଲୌହ ଯନ୍ତ୍ର-ବିଶେଷ ।

ଜାରୁଡ଼ା, ବି. (ଦେଶଜ) ଗୃହପୁଜା ।

ଜାମତି, ବି. ପୁଂ. (ଜା=କନ୍ୟା-ପତି) କନ୍ୟାର ପତି, ଜାମାତା ।

ଜାହାଜ, ବି. (ଯାବନିକ) ଜଳଯାନ; ପୋତ; ନୌକା; ସମୁଦ୍ରରେ ଗମନ କରିବାଉଳି ବଡ଼ ବଡ଼ ନୌକା ।

ଜାହ୍ନବୀ, ବି. ସ୍ତ୍ରୀ. ( ଜହ୍ନୁ-ଅ-ଈ ) ଜହ୍ନୁକନ୍ୟା; ଗଙ୍ଗା ।

ଜିଗମିଷା, ବି. ସ୍ତ୍ରୀ. (ଗମ୍-ସ-ଅ) ଗମନେଚ୍ଛା ।

ଜିଗମିଷୁ, ବିଂ. (ଗମ୍-ସ-ଉ) ଗମନେଚ୍ଛୁ ।

ଜିଗୀଷା, ବି. ସ୍ତ୍ରୀ.(ଜି-ସ-ଅ) ଜୟେଚ୍ଛା; ଉଦ୍ୟମ ।

ଜିଗୀଷୁ, ବିଂ. (ଜି-ସ-ଉ) ଜୟେଚ୍ଛୁ; ଉଦ୍ୟମ-ଶାଳୀ ।

ଜିଘତ୍ସା, ବି. ସ୍ତ୍ରୀ. ( ଅଦ୍-ସ-ଅ ) ଭୋଜନେଚ୍ଛା, ବୁଭୁକ୍ଷା, କ୍ଷୁଧା ।

ଜିଘତ୍ସୁ, ବିଂ.(ଅଦ୍-ସ-ଉ)ଭୋଜନେଚ୍ଛୁ;ବୁଭୁକ୍ଷୁ ।

ଜିଘୃକ୍ଷା, ବି. ସ୍ତ୍ରୀ. (ଗ୍ରହ୍-ସନ୍ ଇଚ୍ଛାର୍ଥେ-ଅ, ଭାବେ) ଗ୍ରହଣେଚ୍ଛା ।

ଜିଘୃକ୍ଷୁ, ବିଂ. ( ଗ୍ରହ୍-ସନ୍-ଉ ) ଗ୍ରହଣେଚ୍ଛୁ; ନେବାକୁ ଇଚ୍ଛୁକ ।

ଜିଘ୍ର, ବିଂ. (ଘ୍ରା-ଅ) ଘ୍ରାଣକାରୀ ।

ଜିଘାଂସା, ବି. ସ୍ତ୍ରୀ. ( ହନ୍-ସ-ଅ ) ହନନେଚ୍ଛା, ବଧଚେଷ୍ଟା ।

ଜିଘାଂସୁ, ବିଂ. (ହନ-ସ-ଉ) ହନନେଚ୍ଛୁ । ବି.ପୁଂ. ଶତ୍ରୁ ।

ଜିଜ୍ଞାସା, ବି. ସ୍ତ୍ରୀ. (ଜ୍ଞା-ସ-ଅ) ପ୍ରଶ୍ନ, ଜାଣିବାର ଇଚ୍ଛା; ଅନୁସନ୍ଧାନ କରିବାର ଇଚ୍ଛା ।

ଜିଜ୍ଞାସିତ, ବିଂ. ( ଜିଜ୍ଞାସା-ତ ) ପୃଷ୍ଟ, ଯେଉଁ-ବିଷୟରେ ଜିଜ୍ଞାସା କରାଯାଇଅଛି ।

ଜିଜ୍ଞାସୁ, ବିଂ. (ଜ୍ଞା-ସ-ଉ) ଜାଣିବାକୁ ଇଚ୍ଛୁକ; ମୁମୁକ୍ଷୁ ।

ଜିଜ୍ଞାସ୍ୟ, ବିଂ. ( ଜ୍ଞା-ସ-ଯ ) ପ୍ରଶ୍ନର ଯୋଗ୍ୟ; ଜାଣିବାର ଉଚିତ; ଅନୁସନ୍ଧେୟ ।

ଜିଜୀବିଷା, ବି. ସ୍ତ୍ରୀ. (ଜୀବ-ସ-ଅ) ଜୀବନେଚ୍ଛା, ବଞ୍ଚିବାର ଇଚ୍ଛା ।

ଜିଜୀବିଷୁ, ବିଂ. (ଜୀବ୍-ସନ୍-ଉ) ଜୀବନାଭିଳାଷୀ, ବଞ୍ଚିବାକୁ ଇଚ୍ଛୁକ ।

ଜିତ, ବି°. (ଜି-ତ) ପରାଜିତ; ବଶୀକୃତ; ଜୟ-
  ଲବ୍ଧ । ବି. ନ. ଜୟ ।

ଜିତେନ୍ଦ୍ରିୟ, ବି°. (ଜିତ-ଇନ୍ଦ୍ରିୟ) ଯେ ଇନ୍ଦ୍ରିୟ-
  ମାନଙ୍କୁ ବଶ କରିଅଛି, ଇନ୍ଦ୍ରିୟଜୟକାରୀ ।
  ବି. ପୁଂ. ତପସ୍ୱୀ ।

ଜିତ୍ୱର, ବି°. ( ଜି-ବର, ତ-ଆଗମ ) ଜୟଶୀଳ,
  ଜୟୀ ।

ଜିନସ, ବି. (ଯାବନିକ) ଦ୍ରବ୍ୟ, ବସ୍ତୁ, ପଦାର୍ଥ ।

ଜିଭ, ବି. (ଜିହ୍ୱା ଶବ୍ଦଜ) ଜିହ୍ୱା, ରସନା ।

ଜିରେଫ, ବି. ଲମ୍ବପଦ ଓ ଲମ୍ବ ଗ୍ରୀବାବିଶିଷ୍ଟ
  ଚତୁଷ୍ପଦ ଜନ୍ତୁବିଶେଷ । (Giraffe)

ଜିଷ୍ଣୁ, ବି. ପୁଂ. (ଜି-ଷ୍ଣୁ) ଇନ୍ଦ୍ର; ବିଷ୍ଣୁ; ସୂର୍ଯ୍ୟ;
  ଅର୍ଜୁନ । ବି°. ଜୟଶୀଳ । ଯଥା—

> ଦୁର୍ଦ୍ଧର୍ଷ, ହେ ଜିଷ୍ଣୁ, ଏହୁ କୋଦଣ୍ଡ ଗାଣ୍ଡୀବ । ମ.ଯା.

ଜିହୀର୍ଷା, ବି. ସ୍ତ୍ରୀ, (ହୃ-ସନ୍ ଇଚ୍ଛାର୍ଥେ-ଅ, ଭାବେ)
  ହରଣେଚ୍ଛା ।

ଜିହୀର୍ଷୁ, ବି°. ( ହୃ-ସନ୍-ଉ ) ହରଣ କରିବାକୁ
  ଇଚ୍ଛୁକ ।

ଜିହ୍ମ, ବି°. (ହ୍ୱା-ମ) କୁଟିଳ, ବକ୍ର; ଖଳ; ଜଡ଼;
  ଅପ୍ରସନ୍ନ; ଅସତ୍ ।

ଜିହ୍ମଗ, ବି. ପୁଂ. (ଜିହ୍ମ=ବକ୍ର-ଗମ୍-ଅ) ସର୍ପ ।
  ବି°. ବକ୍ରଗାମୀ, ମନ୍ଦଗତି ।

ଜିହ୍ୱା, ବି. ସ୍ତ୍ରୀ. (ଲିହ-ବ-ଆ) ରସନା, ଜିଭ ।

ଜିହ୍ୱାମୂଳୀୟ, ବି. ପୁଂ. ( ଜିହ୍ୱାମୂଳ-ଈୟ ) ଜିହ୍ୱା
  ମୂଳରୁ ଉଚ୍ଚାରିତ ବର୍ଣ୍ଣ, ଯଥା—କ, ଖ, ଗ,
  ଘ, ଙ ।

ଜୀନ, ବି°. (ଜ୍ୟା-ତ) ଜୀର୍ଣ୍ଣ, ବୃଦ୍ଧ, ପ୍ରାଚୀନ ।

ଜୀମୂତ, ବି. ପୁଂ. ( ଜୀ-ମୂତ ) ଇନ୍ଦ୍ର; ପର୍ବତ;
  ମେଘ । ଯଥା—

> ଘନେ ସେ ଦେଖି ବିସ୍ମିତ-ଜୀମୂତ,
> କବିତ କରିବାରୁ କିହି ଜୀମୂତ ସେ । ପ୍ରେ. ସୁ.

ଜୀମୂତବାହନ, ବି. ପୁଂ. (ଜୀମୂତ-ବାହନ) ମେଘ-
  ବାହନ, ଇନ୍ଦ୍ର ।

ଜୀର, ଜୀରକ, ବି. ପୁଂ. (ଜୃ-ଅ, ଅକ) ଜୀରା;
  ଖଡ୍ଗ; ଅଣୁ ।

ଜୀର୍ଣ୍ଣ, ବି°. (ଜୃ-ତ) ପୁରାତନ; ବୃଦ୍ଧ; ଜର୍ଜ୍ଜରିତ;
  ପରିପାକ ।

ଜୀର୍ଣ୍ଣସଂସ୍କାର, ବି. ପୁଂ. ମରାମତି, ପୁନଃ ପ୍ରସ୍ତୁତ-
  କରଣ ।

ଜୀର୍ଣ୍ଣୋଦ୍ଧାର, ବି. ପୁଂ. ( ଜୀର୍ଣ୍ଣ-ଉତ୍-ହୃ-ଅ )
  ସଂସ୍କରଣ, ମରାମତି ।

ଜୀବ, ବି. ପୁଂ. (ଜୀବ୍-ଅ) ଦେହାବଚ୍ଛିନ୍ନ ଆତ୍ମା;
  ପ୍ରାଣୀ; ଜୀବାତ୍ମା; ବୃହସ୍ପତି ।

ଜୀବଜୀବ, ଜୀବଞ୍ଜୀବ, ବି. ପୁଂ. ( ଜୀବ-ଜୀବ )
  ଚକୋର । ଯଥା—

> ଜୀବଞ୍ଜୀବନେତ୍ରୀ ଲଗି ଜୀବ, ଜୀବଧବପୁରକୁ ନ ଯିବ ।

ଜୀବତ୍, ବି°. ( ଜୀବ୍-ଅତ୍ ) ଜୀବନବିଶିଷ୍ଟ,
  ଜୀବିତ ।

ଜୀବତତ୍ତ୍ୱ, ବି. ନ. ଯେଉଁ ଶାସ୍ତ୍ରରେ ଜୀବମାନଙ୍କର
  ଜାତି ସ୍ୱଭାବ କ୍ରିୟା ଏବଂ ଗଠନ ପ୍ରଭୃତି ବର୍ଣ୍ଣିତ
  ଥାଏ । (Zoology)

ଜୀବନ, ବି. ନ. (ଜୀବ୍-ଅନ) ପ୍ରାଣ; ଜୀବିକା;
  ଜଳ; ମଜ୍ଜା; ବାୟୁ । ଜଳ ଅର୍ଥରେ । ଯଥା—

> ବଢ଼ରେ ଅକାଳରେ ଜୀବନ ଘନ । ଭୂ. ସୁ.

  ପ୍ରାଣ ଅର୍ଥରେ । ଯଥା—

> ଜୀବନ ଯୌବନ ଧନ ପଦ୍ମପତ୍ର ନୀର । ବି. ବି.

ଜୀବନ୍ୟାସ, ବି. ପୁଂ. (ଜୀବ-ନ୍ୟାସ) ପ୍ରାଣପ୍ରତିଷ୍ଠା
  ମନ୍ତ୍ର । ଯଥା—

> ବିଗ୍ରହ ପ୍ରକାଶ, ମୋହନମନ୍ତ୍ରେ ଦେଇ ଜୀବନ୍ୟାସ ।

ଜୀବନ୍ତ, ବି°. (ଜୀବ୍-ଅନ୍ତ) ଜୀଅନ୍ତା; ପ୍ରାଣ-
  ବିଶିଷ୍ଟ । ବି. ପୁଂ. ପ୍ରାଣ; ଔଷଧ ।

ଜୀବନ୍ମୁକ୍ତ, ବି°. (ଜୀବତ୍-ମୁକ୍ତ) ତତ୍ତ୍ୱଜ୍ଞାନୀ ।

ଜୀବଲୋକ, ବି. ପୁଂ. (ଜୀବ-ଲୋକ) ପ୍ରାଣ ଓ
  ଚେତନବିଶିଷ୍ଟ ପଦାର୍ଥର ବାସସ୍ଥାନ, ସଂସାର,
  ମର୍ତ୍ତ୍ୟଲୋକ ।

ଜୀବହତ୍ୟା, ବି. ସ୍ତ୍ରୀ. (ଜୀବ-ହତ୍ୟା) ଜୀବର ପ୍ରାଣ
  ନାଶ କରିବା, ଜୀବହିଂସା ।

ଜୀବାତୁ, ବ. ପୁଂ. ନ. ( ଜୀବ-ଅତୁ ) ଜୀବିକା; ଅନ୍ନ; ଜୀବନ; ଜୀବନୌଷଧ ।

ଜୀବାତ୍ମା ବ. ପୁଂ. (ଜୀବ-ଆତ୍ମା) ଦେହସ୍ଥ ଆତ୍ମା । ଯଥା—

> ମିଶି ଯାଏ ଯଥା ଜୀବାତ୍ମା ପରମ-ଆତ୍ମା ଚରଣେ । ଚ. ଚ.

ଜୀବପୁରୁଷ, ଶରୀର ।

ଜୀବିକା, ବ. ସ୍ତ୍ରୀ. (ଜୀବ-ଅକ-ଆ) ଜୀବନୋପାୟ, ବୃତ୍ତି, କୃଷି ବାଣିଜ୍ୟାଦି । ଯଥା—

> ମୁମୁକ୍ଷୁ ହୃଦକମଳ ତପନ, ଶ୍ରାବକ ବଣିକ ଅମୂଲ୍ୟ ରତ୍ନ;
> ଚତୁର ଜୀବିକା, ଶୁଣି କାହା ମନ ନୋହିବ ବଶ । ବ. ଚ.

ଜୀବିତ, ବିଂ. (ଜୀବ-ତ) ଜୀବନଯୁକ୍ତ । ବ. ନ. ପ୍ରାଣ, ଜୀବନ ।

ଜୀବିତେଶ, ବ. ପୁଂ. (ଜୀବିତ-ଈଶ) ପ୍ରାଣେଶ୍ୱର; ସୂର୍ଯ୍ୟ; ଚନ୍ଦ୍ର; ଯମ ।

ଜୀବୀ, ବିଂ. (ଜୀବ-ଇନ୍) ଜୀବନବିଶିଷ୍ଟ; ପ୍ରାଣୀ ।

ଜୁଆଁଇ, ବ. (ଜାମାତୃ ଶବ୍ଦଜ) ଜାମାତା ।

ଜୁଅଙ୍ଗ, ବ. ପାର୍ବତୀୟ ଜାତିବିଶେଷ, ଏମାନେ ବୃକ୍ଷର ପତ୍ର ପରିଧାନ କରନ୍ତି ।

ଜୁଆର, ବ. ସମୁଦ୍ରରୁ ଆଗତ ଜଳସ୍ରୋତଃ, ଜଳୋଚ୍ଛ୍ୱାସ ।

ଜୁଆଳି, ବ. (ଯୁଗଳ ଶବ୍ଦଜ) ଲଙ୍ଗଳର ଗୋରୁ-କାନ୍ଧସ୍ଥ କାଷ୍ଠଖଣ୍ଡ ।

ଜୁଇ, ବ. ପୁଷ୍ପବିଶେଷ, ଯୂଥି ପୁଷ୍ପ ।

ଜୁଗୁପ୍ସା, ବ. ସ୍ତ୍ରୀ. (ଗୁପ୍-ସ-ଅ-ଆ) ନିନ୍ଦା, କୁତ୍ସା; ଘୃଣା ।

ଜୁଡ଼ା, ବ. (ଚୂଡ଼ା ଶବ୍ଦଜ) କେଶବିନ୍ୟାସବିଶେଷ । ଯଥା—

> ରଙ୍ଗରଣି ରସ ଦିବ୍ୟ ଚୂଡ଼ାରୁ
> ସଜାଇଲେ ପ୍ରବାଳଜନିଜୁଡ଼ାରୁ । ଲ. ବ.

ଜୁତା, ବ. (ଯାବନିକ) ଚର୍ମପାଦୁକା ।

ଜୁଳି, ଜୁଳିକା, (ଯୁଗଳ ଶବ୍ଦଜ) କଳଣୀ ଅଟକ-ବାର ଲୌହ ବା କାଷ୍ଠର ଅଟକବିଶେଷ ।

ଜୁଳୁଜୁଳିପୋକ, ବ. (ଦେଶଜ) ଖଦ୍ୟୋତ; ଜ୍ୟୋତିରିଙ୍ଗଣ ।

ଜୁଷ୍ଟ, ବିଂ. ( ଜୁଷ୍-ତ ) ସେବିତ; ଉପାସିତ; ଅଧିଷ୍ଠିତ; ପୂଜିତ ।

ଜୁହାର, ବ. (ହିନ୍ଦୀ) ବିନୀତ ଭାବରେ ଯୋଡ଼-ହସ୍ତରେ ଦଣ୍ଡବତ କରିବା । ଯଥା—

> ପ୍ରତ୍ୟୁଷ କଥାରୁ ତରେ ସେ କରେ ଦୂରୁଁ ଜୁହାର । ଚ. ଚ.

ଜୂଟ, ବ. ପୁଂ. (ଜୁଟ୍-ଅ) ସମୂହ; ଜଟା; ବନ୍ଧନ ।

ଜୂତି, ବ. ସ୍ତ୍ରୀ. (ଜୁ-ତି) ଜବ, ବେଗ, ଗତି ।

ଜୂର, ବିଂ. (ଦେଶଜ) ନଷ୍ଟ, ଲୁଣ୍ଠିତ, ଉଜାଡ଼ । ଯଥା—

> ନଶାକାଳେ ମୃଗ ବରାହ ବନ୍ ହୋଇ ବାହାର
> କରନ୍ତି କୃଷକେ ଅଥଯ ଶସ୍ୟ କରିଣ ଜୂର । ଛ. ମା.

ଜୂଷ, ବ. ସ୍ତ୍ରୀ. (ଜୂଷ୍-ଅ) କ୍ୱାଥ; ଝୋଳ ।

| | | |
|---|---|---|
| ଜୃମ୍ଭ, ପୁଂ. | } | ବ. (ଜୃନ୍ଭ୍-ଅ, ଅନ, ଆ) |
| ଜୃମ୍ଭଣ, ନ. | } | ପ୍ରସ୍ଫୁଟନ; ପ୍ରକାଶିତ ହୋଇ, |
| ଜୃମ୍ଭା, ସ୍ତ୍ରୀ. | } | ମୁଖବିକାଶ । ଯଥା— |

> ମୁଖ ଜୃମ୍ଭାବଶେ ଲଳିତ,
> ଦରବିକଶିତ କୋକନଦ ଯେମନ୍ତ । ଲ. ବ.

ଜୃମ୍ଭକାସ୍ତ୍ର, ବ. ସ୍ତ୍ରୀ. (ଜୃମ୍ଭକ-ଅସ୍ତ୍ର) ଶତ୍ରୁମାନଙ୍କର ନିଦ୍ରାକାରକ ଅସ୍ତ୍ର ।

ଜୃମ୍ଭିତ, ବିଂ. (ଜୃନ୍ଭ୍-ତ) ପ୍ରସ୍ଫୁଟିତ, ପ୍ରକାଶିତ, ବିକଶିତ ।

ଜେଉଟ, ବ. (ଦେଶଜ) ଫଳବିଶେଷ ।

ଜେଠା, ବ. ପୁଂ. ( ଦେଶଜ ) ( ଜ୍ୟେଷ୍ଠତାତ ଶବ୍ଦଜ) ପିତାର ଜ୍ୟେଷ୍ଠ ଭ୍ରାତା ।

ଜେଠାଇ, ବ. ସ୍ତ୍ରୀ. (ଦେଶଜ) ପିତାର ଜ୍ୟେଷ୍ଠ ଭ୍ରାତାର ସ୍ତ୍ରୀ ।

ଜେତା, ବିଂ. (ଜି-ତୃ) ଜୟଶୀଳ ।

ଜେନାମଣି, ବ. ପୁଂ. ଦୁଲାଳ, କୁମାର; ରାଜପୁତ୍ର ।

ଜେମା, ବ. ସ୍ତ୍ରୀ. (ଦେଶଜ) ରାଜକନ୍ୟା, ରାଜାର ଝିଅ । ଯଥା—

> ଏମନ୍ତ ଯଶ ଜେମାର ଜଗତେ ଶୁଭଇ ।

ଜେୟ, ବିଂ. (ଜି-ଯ) ଜେତବ୍ୟ ।

ଜୈତ୍ର, ବିଂ. ( ଜି-ତ୍ର ) ଜୟଶୀଳ । ବ. ନ. ଔଷଧ । ପୁଂ. ପାରଦ । (ଜୟଶୀଳ ଅର୍ଥରେ)

> ଶତ୍ରୁ ଦର୍ପହାରୀ ଏହୁ ଜୈତ୍ର ମଣି
> ଶିରେ ମଣିରୂପେ ଚିହ୍ନରୁ ନୃମଣି । ନ. କେ.

ଜୈନ, ବି. ପୁଂ. (ଜିନ-ଅ) ବୌଦ୍ଧ; ଜିନମତା-ବଲମ୍ବୀ ।

ଜୈବାତୃକ, ବି. ପୁଂ. (ଜୀବ-ଅତୃକନ୍) ଚନ୍ଦ୍ର; କର୍ପୂର; ପୁତ୍ର; ଔଷଧ । ବିଂ. ଦୀର୍ଘଜୀବୀ, ଦୀର୍ଘାୟୁଃ; କୃଶ ।

ଜୈମିନି, ବି. ପୁଂ. ମୀମାଂସାଦର୍ଶନପ୍ରଣେତା ମୁନି ।

ଜୋଗାଡ଼, ବି. (ଦେଶଜ) ଉଦ୍‌ଯୋଗ, ତଦ୍‌ବୀର ।

ଜୋଗାଡ଼ିବା, କ୍ରି. କୌଣସି ପଦାର୍ଥ ପ୍ରସ୍ତୁତ କରି ରନ୍ଧନ ଆରମ୍ଭ କରିବା ।

ଜୋଷିତ୍ } ବି. ସ୍ତ୍ରୀ. (ଜୁଷ୍-ଇତ୍, ଇତ-ଆ)
ଜୋଷିତା } ନାରୀ; ସ୍ତ୍ରୀ ।

ଜ୍ଞ, ବିଂ. (ଜ୍ଞା-ଅ) ଜ୍ଞାନୀ, ପଣ୍ଡିତ । ବି. ପୁଂ. ବ୍ରହ୍ମା; ଚନ୍ଦ୍ର; ମଙ୍ଗଳଗ୍ରହ; ବୁଧ ।

ଜ୍ଞପିତ, ଜ୍ଞପ୍ତ, ବିଂ. (ଜ୍ଞପି-ତ) ଜ୍ଞାପିତ ।

ଜ୍ଞପ୍ତି, ବି. ସ୍ତ୍ରୀ. (ଜ୍ଞପି-ତି) ବିଜ୍ଞାପନ; ଜ୍ଞାନ; ବୋଧ ।

ଜ୍ଞା, ବି. ସ୍ତ୍ରୀ. (ଜ୍ଞା-ଅ) ଜ୍ଞାନ ।

ଜ୍ଞାତ, ବିଂ. (ଜ୍ଞା-ତ) ବିଦିତ; ଅବଗତ ।

ଜ୍ଞାତବ୍ୟ, ବିଂ. (ଜ୍ଞା-ତବ୍ୟ) ଜାଣିବାର ଯୋଗ୍ୟ; ଜ୍ଞେୟ ।

ଜ୍ଞାତସାର, ବିଂ. (ଜ୍ଞାତ-ସାର) ଯେ ସାର ଜାଣି-ଅଛି, ସାରଜ୍ଞ । କ୍ରି. ବିଂ. ଜ୍ଞାନଗୋଚରରେ ।

ଜ୍ଞାତା, ବିଂ. (ଜ୍ଞା-ତୃ) ବୋଧା, ଯେ ଜାଣେ ।

ଜ୍ଞାତି, ବି. ପୁଂ. (ଜ୍ଞା-ତି) ଦାୟାଦ; ସଗୋତ୍ର; ସପିଣ୍ଡ ।

ଜ୍ଞାନ, ବି. ନ. (ଜ୍ଞା-ଅନ) ବୋଧ, ପ୍ରତୀତି; ବୁଦ୍ଧି ।

ଜ୍ଞାନବାନ୍, ବିଂ. (ଜ୍ଞାନ-ବତ୍) ଜ୍ଞାନୀ, ପଣ୍ଡିତ ।

ଜ୍ଞାନମୟ, ବି. ପୁଂ. (ଜ୍ଞାନ-ମୟ) ପରବ୍ରହ୍ମ, ପରମେଶ୍ୱର ।

ଜ୍ଞାନଯୋଗ, ବି. ପୁଂ. ଜ୍ଞାନର ସହିତ ସମ୍ବନ୍ଧ, ବ୍ରହ୍ମ ପ୍ରାପ୍ତିର ଉପାୟ, ବ୍ରହ୍ମପ୍ରାପ୍ତିଜନକ ଚେଷ୍ଟା-ବିଶେଷ ।

ଜ୍ଞାନୀ, ବିଂ. (ଜ୍ଞାନ-ଇନ୍) ଜ୍ଞାନବାନ୍, ବିଜ୍ଞ; ତତ୍ତ୍ୱଜ୍ଞାନୀ ।

ଜ୍ଞାନେନ୍ଦ୍ରିୟ, ବି. ନ. (ଜ୍ଞାନ-ଇନ୍ଦ୍ରିୟ) ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍ ଏବଂ ମନ ।

ଜ୍ଞାପକ, ବିଂ. (ଜ୍ଞପି-ଅକ) ନିବେଦକ, ଅବେଦକ ।

ଜ୍ଞାପନ, ବି. ନ. (ଜ୍ଞପି-ଅନ) ଅବେଦନ, ବିଦିତକରଣ, ଜଣାଣ ।

ଜ୍ଞାପୟିତା, ବିଂ. (ଜ୍ଞପି-ତୃ) ଜ୍ଞାପକ ।

ଜ୍ଞାପିତ, ବିଂ. (ଜ୍ଞପି-ତ) ବିଜ୍ଞାପିତ ।

ଜ୍ଞେୟ, ବିଂ. (ଜ୍ଞା-ଯ) ବୋଧଗମ୍ୟ, ଜ୍ଞାତବ୍ୟ ।

ଜ୍ୟା, ବି. ସ୍ତ୍ରୀ. (ଜ୍ୟା-୦) ପୃଥିବୀ; ମାତା; ଧନୁର ଗୁଣ ।

ଜ୍ୟାମିତି, ବି. ସ୍ତ୍ରୀ (Geometry) କ୍ଷେତ୍ରତତ୍ତ୍ୱ ।

ଜ୍ୟାୟାନ୍, ବିଂ. (ବୃଦ୍ଧ-ଈୟସ୍) ଜ୍ୟେଷ୍ଠ, ଅଧିକ ବୟସ୍କ, ଶ୍ରେଷ୍ଠ, ଅଗ୍ରଜ ।

ଜ୍ୟେଷ୍ଠ, ବିଂ. (ବୃଦ୍ଧ-ଇଷ୍ଠ) ଅଗ୍ରଜ; ପ୍ରବୃଦ୍ଧ ।

ଜ୍ୟେଷ୍ଠତାତ, ବି. ପୁଂ. (ଜ୍ୟେଷ୍ଠ-ତାତ) ପିତାର ବଡ଼ ଭାଇ, ବଡ଼ ବାପ, ଜେଠା, ଦଦେଇ ।

ଜ୍ୟେଷ୍ଠା, ବି. ସ୍ତ୍ରୀ. (ବୃଦ୍ଧ-ଇଷ୍ଠ-ଆ) ବଡ଼ଭଉଣୀ; ମଧ୍ୟମାଙ୍ଗୁଳି; ଗଙ୍ଗା; ଅଷ୍ଟାଦଶ ନକ୍ଷତ୍ର । ଯଥା—

> ଖଞ୍ଜନନେତ୍ରି ଦେଖ ଏ ଜ୍ୟେଷ୍ଠାରକ୍ଷ,
> ଚନ୍ଦ ଧାରଇ କୋଳ-ରଦନଲକ୍ଷ୍ୟ ।

ଜ୍ୟୈଷ୍ଠ, ବି. ପୁଂ. (ଜ୍ୟେଷ୍ଠା-ଅ) ଦ୍ୱିତୀୟ ମାସ ।

ଜ୍ୟୋତିଃ, ବି. ନ. (ଦ୍ୟୁତ୍-ଇସ୍) ତେଜଃ, ପ୍ରକାଶ; ଦୀପ୍ତି; ଜ୍ୱାଳା; ନକ୍ଷତ୍ର; ଚୈତନ୍ୟ; ଚକ୍ଷୁରିନ୍ଦ୍ରିୟ; ଶସ୍ତ୍ରବିଶେଷ; ସୂର୍ଯ୍ୟ; ଅଗ୍ନି; ଆତ୍ମା; ପୁତ୍ର; ଅର୍ଥ; ଜ୍ୟୋତିଷଶାସ୍ତ୍ର; ଶାଖା ।

ଜ୍ୟୋତିରିଙ୍ଗଣ, ବି. ପୁଂ. (ଜ୍ୟୋତିସ୍-ଇନ୍ଗି-ଅନ) ଖଦ୍ୟୋତ; ଜୁଳୁଜୁଳିଅପୋକ । ଯଥା—

> ଦିବସରେ ଜ୍ୟୋତିରିଙ୍ଗଣଗଣ ଜ୍ୟୋତିକି ଦେଖାନ୍ତି ପୁଣ ।
> ବୈ. ଚ.

ଜ୍ୟୋତିର୍ବେଦ, ଜ୍ୟୋତିର୍ବେତ୍ତା, ବିଂ. (ଜ୍ୟୋତିଃ-ବିଦ୍-ଅ, ତୃ) ଜ୍ୟୋତିଷଶାସ୍ତ୍ରଜ୍ଞ ।

ଜ୍ୟୋତିର୍ମୟ, ବିଂ. (ଜ୍ୟୋତିସ୍-ମୟ) ଜ୍ୟୋତିରାତ୍ମକ, ଜ୍ୟୋତିଃସ୍ୱରୂପ; ଜ୍ୟୋତିଃପୂର୍ଣ୍ଣ ।

ଜ୍ୟୋତିଷ୍ଚକ୍ର, ବି. ନ. (ଜ୍ୟୋତିସ୍-ଚକ୍ର) ରାଶିଚକ୍ର, ଚନ୍ଦ୍ର ସୂର୍ଯ୍ୟ ଗ୍ରହ ନକ୍ଷତ୍ରସମୂହ ।

ଜ୍ୟୋତିଃଶାସ୍ତ୍ର, ବି. ନ. ଆକାଶସ୍ଥ ଗ୍ରହ ନକ୍ଷତ୍ରାଦିଙ୍କର ଆକାର, ଗତି, ଆକର୍ଷଣ, ଗତି-କାଳ ଓ ସ୍ଥିତି ଏବଂ ତଦନୁସାରେ ଲୋକ-ମାନଙ୍କ ଉପରେ ଫଳାଫଳ ଯେଉଁ ଶାସ୍ତ୍ରରେ ବିଶଦରୂପେ ବର୍ଣ୍ଣିତ ଥାଏ ।

ଜ୍ୟୋତିଷ, ଜ୍ୟୌତିଷ, ବି. ନ. (ଜ୍ୟୋତିଷ-ଅ) ଜ୍ୟୋତିଃଶାସ୍ତ୍ର, ଅଙ୍କଶାସ୍ତ୍ର ।

ଜ୍ୟୋତିଷିକ, ବିଂ. ( ଜ୍ୟୋତିଷ-ଇକ ) ଜ୍ୟୋତିର୍ବେତ୍ତା ।

ଜ୍ୟୋତିଷ୍କ, ବି. ପୁଂ. ( ଜ୍ୟୋତିଷ୍-କ ) ଗ୍ରହ ନକ୍ଷତ୍ରାଦି । ନ. ମେରୁ ଶୃଙ୍ଗବିଶେଷ (Heavenly bodies) ।

ଜ୍ୟୋତିଷ୍ପଥ, ବି. ପୁଂ. (ଜ୍ୟୋତିଷ୍-ପଥ-ଅ) ଆକାଶ ।

ଜ୍ୟୋତିଷ୍ମାନ୍, ବିଂ. (ଜ୍ୟୋତିସ୍-ମତ୍) ଜ୍ୟୋତି-ର୍ବିଶିଷ୍ଟ । ବି. ପୁଂ. ସୂର୍ଯ୍ୟ ।

ଜ୍ୟୋତ୍ସ୍ନା, ବି. ସ୍ତ୍ରୀ. (ଜ୍ୟୋତିସ୍-ନ-ଆ) ଚନ୍ଦ୍ରିକା; କାନ୍ତି, ଶୋଭା ।

ଜ୍ୟୋତ୍ସ୍ନୀ, ଜ୍ୟୌତ୍ସ୍ନୀ, ଜ୍ୟୋତ୍ସ୍ନିକା, ବି. ସ୍ତ୍ରୀ. (ଜ୍ୟୋତ୍ସ୍ନା-ଅ-ଈ, ଇକ-ଆ) ଚନ୍ଦ୍ରିକାଯୁକ୍ତ ରାତ୍ରି; ଲତାବିଶେଷ; ଫଳବିଶେଷ ।

ଜ୍ୱର, ବି. ପୁଂ. (ଜ୍ୱର୍-ଅ) ଗାତ୍ରତାପ, ସନ୍ତାପ; ରୋଗବିଶେଷ ।

ଜ୍ୱରଘ୍ନ, ବିଂ. ( ଜ୍ୱର-ହନ୍-ଅ ) ଜ୍ୱରନାଶକ, ବାସ୍ତୁକ ।

ଜ୍ୱରାତିସାର, ବି. ପୁଂ. (ଜ୍ୱର-ଅତିସାର) ଜ୍ୱରଯୁକ୍ତ ଅତିସାର ରୋଗ ।

ଜ୍ୱରାନ୍ତକ, ବି. ପୁଂ. ( ଜ୍ୱର-ଅନ୍ତକ ) ଔଷଧ-ବିଶେଷ । ବିଂ. ଜ୍ୱରନାଶକ ।

ଜ୍ୱଳତ୍, ବିଂ. (ଜ୍ୱଲ୍-ଅତ୍) ଯାହା ଜଳୁଅଛି, ଜ୍ୱଳନ୍ତ ।

ଜ୍ୱଳନ, ବି. ନ. ( ଜ୍ୱଲ୍-ଅନ ) ଦୀପନ, ଜ୍ୱାଳା । ପୁଂ. ଅଗ୍ନି । ଯଥା—

ଏ ମହୋତ୍କ୍ଷ୍ଟ ଜଳଳ ଜ୍ୱଳନ ଜନ୍ମିଲ,
ଛୁଇଁଲେ ମଦନ ଦହନ ରେ ସହଚର । ସ. ବ.

ଜ୍ୱଳିତ, ବିଂ. (ଜ୍ୱଲ-ତ) ଦୀପ୍ତ; ଦଗ୍ଧ ।

ଜ୍ୱାଳା, ବି. ପୁଂ. (ଜ୍ୱଲ-ଆ) ଅଗ୍ନିଶିଖା; ଦାହ ।

ଜ୍ୱାଳାମୁଖୀ, ବି. ସ୍ତ୍ରୀ. ତୀର୍ଥବିଶେଷ ।

ଜ୍ୱାଳାବକ୍ତ୍ର, ବି. ପୁଂ. ( ଜ୍ୱାଳା-ବକ୍ତ୍ର ) ବ୍ରହ୍ମା; ଶିବ ।

ଜ୍ୱାଳିତ, ବିଂ. (ଜ୍ୱଲ-ଇ-ତ) ଦୀପିତ, ଦାହିତ, ଭସ୍ମୀକୃତ; ସନ୍ତାପିତ, କ୍ଲେଶିତ ।

ଜ୍ୱାଳୀ, ବି. ପୁଂ. ( ଜ୍ୱଲ୍-ଇନ୍ ) ଶିବ । ବିଂ. ଶିଖାଯୁକ୍ତ; ଦୀପ୍ତିମାନ୍ ।

—o—

# ଝ

ଝ, ବ୍ୟଞ୍ଜନବର୍ଣ୍ଣର ନବମ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ । ବି. ପୁଂ. ବୃହସ୍ପତି; ଦୈତ୍ୟପତି; ଇନ୍ଦ୍ର । ସ୍ତ୍ରୀ. ଝଞ୍ଜାବାତ; ଜଳବର୍ଷଣ; ଶବ୍ଦ । ବିଂ. ନଷ୍ଟ; ନଷ୍ଟ ।

ଝକମକ, ବି. (ଦେଶଜ) ଅଗ୍ନି ଉତ୍ପାଦକ ପ୍ରସ୍ତର-ବିଶେଷ ।

ଝକମାରି, ବି. (ଦେଶଜ) ଅପରାଧ; ତ୍ରୁଟି ।

ଝଙ୍କାର, ଝଙ୍କୃତ, ବି. ପୁଂ. ସ୍ତ୍ରୀ. (ଝମ୍-କୃ-ଅ,ତ) ଧ୍ୱନିବିଶେଷ, ଝନଝନଶବ୍ଦ; ଭ୍ରମରାଦିର ଶବ୍ଦ । ଯଥା—

ଝଙ୍କାର କରେ ମଧୁପ ସେ, ଝାଡ଼େ କ ପଡ଼ି କନ୍ଦର୍ପ । ବ.ଚ.

ଝଙ୍କାଘୋର, ବିଂ. (ଦେଶଜ) ପ୍ରଚୁର, ଯଥେଷ୍ଟ ।

ଝଗଡ଼, ଝଗଡ଼ା, } ବି. ( ଦେଶଜ ) କଳହ, ବିବାଦ; ଦ୍ୱନ୍ଦ । ଯଥା—

ଝଗଡା ସାରଣ କୃଷ୍ଣ ମଧ୍ୟରେ ରହିବ ଲେ, କୋଇଲ ।

ଝଗଡ ହେବାର, କ୍ରି. ବି. ( ଦେଶଜ ) ବଢ଼ ହେବାର; ଅକାରଣ ଗପିବାର । ଯଥା—

ଝଗଡ ମାତ୍ର ହେଲେ ହେ ଶ୍ୟାମ । ବ. ଚ.

ଝଞ୍ଜଟ, ବି. (ଝନ୍-ଝଟ୍-ଅ) ଗୋଳମାଳ; ଲେଞ୍ଜରା; ଜଞ୍ଜାଳ; କାର୍ଯ୍ୟାଡମ୍ବର ।

ଝଞ୍ଝା, ବି. ସ୍ତ୍ରୀ. ଝଡ, ବୃଷ୍ଟି; ଧ୍ୱନିବିଶେଷ; ଚପ୍ରି ।

ଝଞ୍ଝାନିଳ, ଝଞ୍ଝାବାତ, ବି. ପୁଂ. (ଝଞ୍ଝା-ଅନିଳ, ବାତ ) ଝଡ, ତୋଫାନ; ବର୍ଷାକାଳୀନ ପବନ । ଯଥା—

ଝଞ୍ଝାନିଳ ଲଗି ପ୍ରବଳ ପ୍ରକାଶି,
ସଙ୍ଗବରେ ବହୁ ଦେଇ ବଦେଶୀ । ଲ. ବ.

ଝଟ, କ୍ରି. ବିଂ. (ଝଟିତି ଶବ୍ଦର ଅପଭ୍ରଂଶ) ତ୍ୱରେ, ବେଗେ, ଶୀଘ୍ରେ, ଅବିଳମ୍ବେ ।

ଝଟଝଟ, ବି. (ଦେଶଜ) ଦୀପ୍ତି । ଯଥା—

ଝଟ ଝଟ ହେଉଥାଉ ଦେହଟିସ ।

ଝଟକ, ବି. (ଦେଶଜ) ଦୀପ୍ତି, କାନ୍ତି, ଶୋଭା । ଯଥା—

ହିନ ପତନ ଅଙ୍ଗେ ଶୋଭେ, ଝଟକ ବଢ଼ୁ ପ୍ରଦେ ଅଭ ।

ଝଟକିବା, ଜାଜ୍ୱଲ୍ୟମାନ ହେବା । ଯଥା—

କର୍ଣ୍ଣେ ମକରକୁଣ୍ଡଳ, ଝଟକେ ଗଣ୍ଡମଣ୍ଡଳ ।

ଝଟା, ଝାଟି, ବି. (ପ୍ରାକୃତଜ) ବୃକ୍ଷ ଗୁଳ୍ମାଦିର ସରୁ ସରୁ ଶାଖା । ଯଥା—

ବୃନ୍ଦାର ବୋଲୁ, ଝାଟିକ ନ ଗଲେ ମାଟିକ ଯାଉ ।

ଝଟିକା, ବି. (ପ୍ରାକୃତଜ) ତୋଫାନ, ବାତ୍ୟା ।

ଝଟିତି, କ୍ରି. ବିଂ. (ଝଟ୍-ଇତି) ଶୀଘ୍ର, ଦ୍ରୁତ, ବେଗ ।

ଝଡ଼, ବି. (ଦେଶଜ) ଅବଶ୍ରାନ୍ତ ବୃଷ୍ଟିପାତ ।

ଝଡପୋକ, ବି. (ଦେଶଜ) ବୃଷ୍ଟିସୂଚକ ପୋକବିଶେଷ; ପକ୍ଷିଯୁକ୍ତ ଉଇ ପିମ୍ପୁଡି ।

ଝଡ଼ିବା, କ୍ରି. (ଦେଶଜ) ଖସିପଡିବା ।

ଝଣତ୍କାର, ଝନତ୍କାର, ବି. ପୁଂ. (ଝନତ୍-କାର) ଝନ୍‌ଝନ୍ ଶବ୍ଦ, ଅନୁକରଣ ଶବ୍ଦ ।

ଝପ, କ୍ରି. ବିଂ. (ଦେଶଜ) କବଳ, ଶୀଘ୍ର, ଚଞ୍ଚଳ ।

ଝପଟ, ବି. (ହିନ୍ଦୀ ଭାଷାଜ) ଦଉଡ଼ ।

ଝମକ, ବି. ଧମକ ।

ଝରା, ଝୁରା, ଝୋରା, ବି. ( ଦେଶଜ ) ଛୋଟ କଳସ । ଯଥା—

ଝରା ବନା ବକ ବାର୍ଦ୍ଧ ଯେ, ଝାଙ୍କରେ ହୋଇବ ଥର । ବ. ଚ.

ଝର, ଝରଣା, ବି. ପୁଂ. ସ୍ତ୍ରୀ. (ଝୃ-ଅ, ଅନ-ଆ) ନିର୍ଝର, ଉତ୍ସ । ଯଥା—

ଝରର ନଦୀକୁ ପାଣି ଯେ, ଝର ବୋହୁବାର ଜାଣି ।

ଝରକା, ବି. (ଦେଶଜ) ବାତାୟନ, ଖିଡକି ।

ଝରଝର, ବି. (ପ୍ରାକୃତଜ) ଜଳାଦିର ପତନ ଶବ୍ଦ । ଯଥା—

ନିର୍ଝରିଣୀ ଝରଝର ଶବଦେ
ବହୁଇ କାନନ ଶଇଳପଦେ । ଷ. ମା.

ଝରସୁତା, ବି. ସ୍ତ୍ରୀ. (ଝର-ସୁତା) ନଦୀ ।

ଝରି, ବି. (ଦେଶଜ) ପୁଷ୍ପଗୁଚ୍ଛ; କନ୍ଦରୁ ନିର୍ଗତ ଗୁଳ୍ମବିଶେଷ । ପୁଷ୍ପଗୁଚ୍ଛ ଅର୍ଥରେ । ଯଥା—

ଝରି ମଞ୍ଜରୀ କାଳେ ସୁମନସରେ
ମ୍ଳାସ ଦେଲ ମନ୍ଦିର ସୁମନଶରେ । ପ୍ରେ. ସୁ.

ଝରି, ବି. (ଦେଶଜ) କଳପାତ୍ରବିଶେଷ, ଗଡ଼ୁବିଶେଷ ।

ଝରିବା, କ୍ରି. (ଦେଶଜ) ଖସିବାର, ବହିବାର ।

ଝଲ, ବି. ନ. ବୌଦ୍ଧଭେକ ।

ଝଲକ, ବି. ନ. (ଝଁଲ ଶବ୍ଦଜ) ଆନ୍ଦୋଳନ; ଝଟକ । ଯଥା—

ଝଲକଭଙ୍ଗୀ ତ କରୁଛ ଉଗତ ଦ୍ୱାରୁରେ ଭେଳେ ଗ୍ରନ୍ଥ ।

ବିଂ. ପ୍ରତିବିମ୍ବ । ଯଥା—

କପାଳେ ସୁବର୍ଣ୍ଣ ଚନ୍ଦ୍ରରେଖା ଝଲକ ।

ଝଲକା, ବି. (ଝଲତ୍ ଶବ୍ଦଜ) କର୍ଣ୍ଣାଳଙ୍କାରବିଶେଷ । ଯଥା—

ଝଲକେ ଝଲକା ଏ ଅନୁମାନ ।

ଝଲକାଏ, ବିଂ. (ଦେଶଜ) ମନ୍ଦାଏ (ତରଳ ପଦାର୍ଥ ପ୍ରତି ପ୍ରଯୁଜ୍ୟ) ।

ଝଲକିବା, କ୍ରି. ( ଝଲ ଶବ୍ଦଜ ) ଚହଲିବା; ଝଟକିବା; ଆନ୍ଦୋଳିତ ହେବା; ପଝରିବା । ଯଥା—

ଶତ ମନୋରଥ ଝଲକେ ପେଟରେ ଅଶାବାନରେ । ନ. ହେ.

ଝଲମଲ, କ୍ରି. ବି. (ଝଲ ଶବ୍ଦଜ) ଚକ୍‌ମକ, ଜକଜକ, ଉଜ୍ଜ୍ୱଳ । ଯଥା—

ହସ୍ତୁ ଦଣେ ସୁନା ଶିଳ ଝଲମଲ ଦନ୍ତେ
ପାନେ ପାତ ଯାଉଛ ସେ କମ୍ପ ଫଳମତେ ସେ । ଭ. ବ.

ଝଲ, ବି. (ଝଲ ଶବ୍ଦଜ) ଉଜ୍ଜ୍ୱଳ, ସୁନ୍ଦର । ଯଥା—

ରସିକା ରସିକାନ୍ତ ଘବ ଗୋପନେ
ଘଗ ସଘଗ ଝଲ ଦଣେ ବଦନେ । ବ. ଚ.

ଝଲିବା, କ୍ରି. (ଝଲ ଶବ୍ଦଜ) ଶୋଭା ପାଇବା, ସୁନ୍ଦର ଦିଶିବା; ମିଶିବା ।

ଝଲ୍ଲ, ବି. ପୁଂ. (ଝଲ୍‌-ଲ) ଜାତିବିଶେଷ ।

ଝଲ୍ଲକ, ବି. ନ. (ଝଲ୍ଲ-କୈ-ଅ) କାଂସ୍ୟନିର୍ମିତ ବାଦ୍ୟବିଶେଷ ।

ଝଲ୍ଲରୀ, ବି. ସ୍ତ୍ରୀ. (ଝଲ୍ଲ-ଋ-ଈ) ବାଦ୍ୟବିଶେଷ ।

ଝଷ, ବି. ପୁଂ. (ଝଷ୍‌-ଅ) ମତ୍ସ୍ୟ; ତାପ; ବନ; ମୀନରାଶି ।

ଝଷକେତନ, ଝଷକେତୁ, } ବି. ପୁଂ. (ଝଷ-କେତନ, କେତୁ) କନ୍ଦର୍ପ, ମୀନକେତନ, ମଦନ । ଯଥା—

ଝାଉ ବନୋଦୟ ହର ସେ ଝଷକେତନଙ୍କୁ ଭର । ବ. ଚ.

ଝାଇଁ, ବି. (ଅନୁକରଣ ଶବ୍ଦଜ) ମୂର୍ଚ୍ଛା । ବି. ଖର, ତୀବ୍ର ।

ଝାଉଁ, ବି. (ଝାବୁକ ଶବ୍ଦ) ବୃକ୍ଷବିଶେଷ, ଝାଉଁଗଛ ।

ଝାଉଁଳିବା, କ୍ରି. (ଝଳସ ଶବ୍ଦଜ) ମଉଳି ଯିବାର, ବୃକ୍ଷ ପତ୍ରାଦି ଶୁଖିଯିବାର । ଯଥା—

ଝାଉଁଳିବା ନବ ତମାଳ ରମା
ଛିଙ୍କି ଥଣି ଅଙ୍ଗେ କଲଣି ଜମା । ବ. ଚ.

ଝାଙ୍କ, ବି. (ଦେଶଜ) ଦମ୍; ଦଳ, ଗୋଠ; ମଣ୍ଡଳୀ ।

ଝାଙ୍କିବା, କ୍ରି. (ଝାଙ୍କନ ଶବ୍ଦଜ) ଲୁଚି ଅନାଇବା, ଅତର୍କିତ ଭାବରେ ଆକ୍ରମଣ କରିବାର; ମାଦକ ଦ୍ରବ୍ୟାଦି ସେବନଜନିତ ମସ୍ତିଷ୍କର ଆବେଶ ।

ଝାଞ୍ଜ, ବି. (ଝନଝନ ଶବ୍ଦଜ) କରତାଳ, ମନ୍ଦିରାବିଶେଷ ।

ଝାଞ୍ଜୀ, ବି. (ଦେଶଜ) ଗ୍ରୀଷ୍ମ, ଉଷ୍ଣପବନ, ତାତି ।

ଝଟୁଆ, ବି. (ହିନ୍ଦୀ, ଝାଡ଼ୁଣ ଶବ୍ଦଜ) ଝାଡ଼ୁଣି, ସମ୍ମାର୍ଜ୍ଜନୀ; ଅବର୍ଜ୍ଜନା, ଅଳିଆ ।

ଝାଡ଼, ବି. (ହିନ୍ଦୀ) କାଚନିର୍ମିତ ଆଲୋକାଧାର; ଜଙ୍ଗଲ, ବନ । ଯଥା—

ଝାଡ଼ବନୋଦୟ ହର, ଝଷକେତନକୁ ଭର । ବି. ଚ.

ଝାଡ଼ା, ବି. (ହିନ୍ଦୀ) ମଳ, ମଳନିଃସରଣ ।

ଝଡ଼ାବାନ୍ତି, ବି. (ଦେଶଜ; ଝାଡ଼ା=ମଳନିଃସରଣ-ବାନ୍ତି=ବମନ) ଝାଡ଼ାବାନ୍ତି, ଓଲାଉଠାରୋଗ ।

ଝାଡ଼ିବା, କ୍ରି. (ହିନ୍ଦୀ, ଝାଡ଼ୁ ଶବ୍ଦଜ) ପରିଷ୍କାର କରିବା; ମନ୍ତ୍ରପାଠ କରି ଫୁଙ୍କିବା ଓ ଭୂତାଦି ଛଡ଼ାଇବା ।

ଝାଡ଼ୁ, ବି. (ହିନ୍ଦୀ) ସମ୍ମାର୍ଜ୍ଜନୀ, ଝାଡ଼ୁଣି ।

ଝାଡ଼କା, ବି. (ଝଟିତି ଶବ୍ଦଜ) ଶୀଘ୍ର । ଯଥା—

ଝୁଣ୍ଟି ନାମ ଭ୍ରମ ହେଲେ ସେ ଝାଡ଼କାରେ ଗୃହ୍ନ କଲେ ।
ବି. ଚ.

ଝପ୍‌ସା, ବି. ଅସ୍ପଷ୍ଟ; (ଦୃଷ୍ଟିସମ୍ବନ୍ଧରେ) ଜାଲୁଜାଲୁଆ ।

ଝାମ୍ପ, ବି. (ଝମ୍ପ ଶବ୍ଦଜ) କୁଦା, ଲମ୍ଫ; ମାଛ ମାରିବାର ଯନ୍ତ୍ରବିଶେଷ ।

ଝାମ୍ପି, ବି. (ଦେଶଜ) ପତ୍ରନିର୍ମିତ ମସ୍ତକାବରଣ ।

ଝାମ୍ପିବା, କ୍ରି. (ଝମ୍ପ ଶବ୍ଦଜ) ଉପରୁ ହଠାତ୍ ଆକ୍ରମଣ, ପକ୍ଷ୍ୟାଦି ମନୁଷ୍ୟାଦିଙ୍କଠାରୁ ଅତର୍କିତ ଭାବରେ କୌଣସି ପଦାର୍ଥ ନେଇଯିବାର ।

ଝାମ, ଝାମୁ, } ବି. (ଝମ୍ ଧାତୁଜ) ଅଗ୍ନିପୂର୍ଣ୍ଣ ଗର୍ତ୍ତ; ପଣା ସଂକ୍ରାନ୍ତିରେ ଅଗ୍ନି ଉପରେ ଚାଲିବା । ଯଥା—

ବାମ ଚଳ ଭଲ୍ଲ ସରଣି ଝାମରେ
ନାଗସିଦୋଷୀ ବଦେଶୀ । ଭ. ବ.

ମୂର୍ଚ୍ଛା । ଯଥା—

ଝାମ ସିବେ ଦାମ୍ଭିକ ଦେଖି କହ ।

ଝାମା, (ଝାମକ ଶବ୍ଦଜ) ଅତ୍ୟନ୍ତ ଦଗ୍ଧ ଇଷ୍ଟକ ।

ଝାଳ, ବି. (ଝଳ ଶବ୍ଦଜ) ଘର୍ମ, ସ୍ୱେଦ । ଯଥା—

ଝଲକଇ ଝାଳ ବଦନ ସୁଧା ଝର ।

ଝାଲର, ବି. (ଝଳ ଶବ୍ଦଜ) ମଶାରି ଓ ଚନ୍ଦ୍ରୁଆ ପ୍ରଭୃତିର ସୀମାନ୍ତ ପ୍ରଦେଶରେ ଝୁଲୁଥିବା ବସ୍ତ୍ରବିଶେଷ ।

ଝାଲିବା, କ୍ରି. (ଦେଶଜ) ଧାତୁନିର୍ମିତ ପାତ୍ର ଓ ଅଳଙ୍କାରାଦି ମରାମତ୍ କରିବା; ଉଜ୍ଜ୍ୱଳ କରିବା ।

ଝାସ, ବି. (ଝମ୍ପ ଶବ୍ଦଜ) ଆତ୍ମହତ୍ୟା ଉଦ୍ଦେଶ୍ୟରେ ଜଳ ବା ଅଗ୍ନିରେ ପ୍ରବେଶ । ଯଥା—

ଝାସ ଯମୁନାରେ ଦେବି ବନ୍ଧନାରେ,ଜନ୍ମାନ୍ତେ ପାଇବି ପୁଣି ।

ଅଗ୍ନି ବା ସୂର୍ଯ୍ୟ ତେଜ ।

ଝିଅ, ବି. (ଦେଶଜ) ଦୁହିତା, ତନୟା ।

ଝିଅଣ୍ଟ, ବି. (ଦେଶଜ) ଜ୍ୟେଷ୍ଠ ବା କନିଷ୍ଠ ଭାଇର ଝିଅ ।

ଝିଙ୍କ, ବି. (ଦେଶଜ) କ୍ଷୁଦ୍ର ପଶୁବିଶେଷ । ଯଥା—

ଝିଙ୍କ ଝାଙ୍କ ଦେବା ଲକ୍ଷିତ ନୋହିବ
ଶରେ ଦେଲା ଚନ୍ଦ୍ର ଭର । ବି. ଚି.

ଝିଙ୍କର, ବି. (ଦେଶଜ) ବଡ଼ ଗୋଡ, ଖପରା ।

ଝିଙ୍କା, ବି. (ଦେଶଜ) ଚୁଲ୍ଲୀ ଉପରେ ହାଣ୍ଡି ପ୍ରଭୃତି ରଖିବାର ମୃତ୍ତିକାସ୍ତୂପବିଶେଷ । କ୍ରି. ବି. ଓଟାରି । ଯଥା—

ହୁରନ୍ତି କୁରରୀ ପକ୍ଷୀ ଯେ, ଝିଙ୍କା ରଥ ସଂସ୍କୃତ ଲକ୍ଷି ।

ଝିଙ୍କିବା, କ୍ରି. ବି. (ଦେଶଜ) ଟାଣିବା, ସବଳେ ଆକର୍ଷଣ କରିବା । ଯଥା—

ଝଗଡା କରି ଅତନୁ ଝିଙ୍କିଛି କୁସୁମ ଧନୁ । ବି. ଚି.

ଝିଙ୍କାରି, ବି. ଝିଲ୍ଲୀ, ପୋକବିଶେଷ ।

ଝିଟିପିଟି, ଝିଟିପିଟି, ବି. (ଦେଶଜ) ସରୀସୃପବିଶେଷ; ଗୃହଗୋଧିକା ।

ଝିଣ୍ଟିକା, ବି. (ଦେଶଜ) ପତଙ୍ଗବିଶେଷ ।

ଝିଞ୍ଜାରିବା, କ୍ରି. (ଦେଶଜ) ବିଦାରିବା, ସାରହୀନ କରିବା ।

ଝିନ, ବିଂ. (କ୍ଷୀଣ ଶବ୍ଦଜ) ସରୁ, ପାତଳ । ଯଥା—

ଝିନବସନାକୁ ଦେଖିବ ମୁଁ କେବେ,
ଭଲ୍ପ ବୁଡି ଯିବ ସର ଯେ । ବି. ଚି.

ଝିପିଝିପି, ଅଂ. (ଅନୁକରଣ ଅବ୍ୟୟ) ଅଳ୍ପ ଅଳ୍ପ ବର୍ଷା ପ୍ରଭୃତି ପ୍ରଯୁଜ୍ୟ ।

ଝିମିଝିମି, ଅଂ. (ଝିଞ୍ଝିମ ଶବ୍ଦଜ) ଅଙ୍ଗବିଶେଷରେ ରକ୍ତ ସଞ୍ଚାଳନର ବ୍ୟାଘାତ ହେଲେ ଯେଉଁ ଯନ୍ତ୍ରଣା ଅନୁଭୂତ ହୁଏ । ଯଥା—

ଝିମିଝିମି କଳେବର ଯେ, ଝାଳ ବହେ ଝରଝର । ବ. ଚ.

ଝିମିଟି, ବି. (ଦେଶଜ) ମୁହୂର୍ତ୍ତ, ଅଳ୍ପ ସମୟ । ଯଥା—

ଝଗଡ଼ ମାତ୍ର ହେଲ ହେ ଶ୍ୟାମ,
ଝିମିଟି ହେବାକୁ ସହସ୍ରେ ଯାମ । ବ. ଚ.

ଝିମିଟିଖେଳ, ଝିମାଣିଖେଳ, ବି. ( ଦେଶଜ ) ଗୁଡୁଖେଳ, ବାଗୁଡଖେଳ; (ଝିମିଟି ଖେଳରୁ ମହାଭାରତ ଜାତ; ତଗ) ।

ଝିଲ୍ଲିକା, ଝିଲ୍ଲୀ, ବି. ସ୍ତ୍ରୀ. ( ଝିଲ୍ଲ-ଇକ-ଆ, ଈ ) ପତଙ୍ଗବିଶେଷ; ଝିଙ୍କାରି । ଯଥା—

ଦଗଦଗନ୍ତରେ ଶୁଭେ ଝିଲ୍ଲୀସ୍ୱନ,
କବା ସେ ଯାମିନୀ ନୂପୁରନିକ୍ୱଣ । ନ. ଢେ.

ଝୁକ୍କିବା, କ୍ରି. ( ଦେଶଜ ) ଅକ୍ଳୁଷ୍ଟ ହେବା, ନୋଇଁବା; ମାଦକଦ୍ରବ୍ୟ ସେବନ କରି ବିହ୍ୱଳ ହେବାର ।

ଝୁଣା, ବି. (ଧୂନା ଶବ୍ଦଜ) ସାଲଗଛର ନିର୍ଯ୍ୟାସ; ଦନ୍ତଦ୍ୱାରା ସବଳେ ଆଘାତ କରଣ ।

ଝୁଣିବା, କ୍ରି. ( ଦେଶଜ ) ରକ୍ତ ଶୋଷଣପୂର୍ବକ କାମୁଡିବା; ଶବ୍ଦ ଏବଂ ଅଙ୍ଗଭଙ୍ଗୀର ସହିତ ମୁଖଦ୍ୱାରା ଅସ୍ଥି ମାଂସର ପୃଥକ୍‌କରଣ ।

ଝୁଣ୍ଟା, ଝୁଣ୍ଟାମାରିବା, ବି. ( ଦେଶଜ ) କୌଣସି କାର୍ଯ୍ୟ ବା ଆକ୍ରମଣରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ମହତ୍ ବ୍ୟକ୍ତିଙ୍କ ନାମରେ ଶପଥ ଦେବା, ରାଣ ପକାଇବା ।

ଝୁଣ୍ଟିଆ, ବି. (ଦେଶଜ) ପାଦାଙ୍ଗୁଳିର ଅଳଙ୍କାରବିଶେଷ । ଯଥା—

ଝିଲ୍ଲୀ ଭାବ କର୍ଣ୍ଣେ ଶୁଣି, ଝୁଣ୍ଟିଆ ପଞ୍ଚସ୍ୱ ମଣି । ବି. ଚି.

ଝୁଣ୍ଟିବା, କ୍ରି. ( ଦେଶଜ ) ବାଟ ଚାଲୁଁ ଚାଲୁଁ କୌଣସି କଠିନ ପଦାର୍ଥରେ ପାଦାଙ୍ଗୁଳି ଆଘାତ ପାଇବାର । ଯଥା—

ମୂର୍ହିଁ ମାତ କାଳେ କରଣ୍ଡ ବାଳା ପଡ଼ିବୁ ଝୁଣ୍ଟି । ଚ. ଷ୍ଟ.

ଝୁମ୍ପୁକା, ସଂ. (ଦେଶଜ) ଖେଳିବା ପଦାର୍ଥବିଶେଷ; କର୍ଣ୍ଣଭୂଷଣବିଶେଷ ।

ଝୁମ୍‌ଝୁମ୍, ଅ. (ଅନୁକରଣ ଶବ୍ଦଜ) ଅଳଙ୍କାରାଦିର ମଧୁର ଶବ୍ଦ ।

ଝୁମ୍ପା, ବି. (ଦେଶଜ) ଫୁନ୍ଦି; କେଶବନ୍ଧନ ନିମିତ୍ତ ଯେଉଁ ପାଟଫୁଲ ହୁଏ ତାହାର ସୀମାସ୍ଥିତ ରଞ୍ଜିତ ଗ୍ରନ୍ଥି; ଗୁଚ୍ଛ । ଯଥା—

ଝିଆ ସଜଡ଼ା ଜବରୀ ଯେ, ଝୁମ୍ପା ଫୁଲ ପ୍ରଭେ କବି ଯେ ।

ଝୁମ୍ପୁରି, ବି. (ଦେଶଜ) ଗୁଳ୍ମବିଶେଷ; ଶାକ-ବିଶେଷ ।

ଝୁରିବା, କ୍ରି. ( ସ୍ମରଣ ଶବ୍ଦଜ ) ଅଶ୍ରୁସହ ଖେଦ କରିବା; ପ୍ରିୟ ବ୍ୟକ୍ତିର ବିରହରେ ତାହାର ଗୁଣାଦି ସ୍ମରଣ କରିବା । ଯଥା—

ଏବେ ମରୁଥିଛି ଝୁରି, ଦରିଦ୍ର ରତନ ପାଇ ହରାଇଲା ପରି ।
ପ୍ରେ. ସୁ.

ଝୁଲ, ବି. ( ଦଲ ଧାତୁଜ ) ଘରର କଳା; ଅଳନ୍ଧୁ; ଗୃହଧୂମ; ଅଗ୍ନିକଣା । ଯଥା—

ଝୁଲଅନଳରୁ ବାଦ୍ ଗରଳରୁ ବୃଷ୍ଟିବାତ ପରଗତ ପେ ।

ପାଦାଙ୍ଗୁଳିର ଅଳଙ୍କାରବିଶେଷ ।

ଝୁଲଣ, ଝୁଲଣଯାତ୍ରା, ବି. ( ଦୋଳନ ଶବ୍ଦଜ ) କୃଷ୍ଣଙ୍କର ଝୁଲିବା ଉତ୍ସବ, ଶ୍ରାବଣ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଦିବସରେ କୃତ ଉତ୍ସବ ।

ଝୁଲଣା, ବି. (ଦୋଳଣ ଶବ୍ଦଜ) ଦୋଳି । ଯଥା—

ଝର ବଉଳ ତରୁର ଯେ,
ଝୁଲଣା ରଧାକୃଷ୍ଣର ଝୁଲାଇ ଦେବ କି,
ଏ ପବଣ ବନ୍ଧ ସବେ ସାମନ୍ତର ହାର । ବ. ଚ.

ଝୁଲି, ବି. (ଦୁଲ ଧାତୁଜ) ମୁଣି, କୋଥଳି । ଯଥା—

ଝୁଲିମାଳା ଧରି କପି ବମ୍ଭାଧର,
ଯୋଗୀ ହେବ ମିଳେ ଭଣି । ବ. ଚ.

ଝୁଲିବା, କ୍ରି. ( ଦୁଲ ଧାତୁଜ ଦୋହଲିବା, ହଲିବା ।

ଝୋଟ, ବି. (ଦେଶଜ) ନଳିତା ଓ କାଉଁରିଆ ନାମକ ଗୁଳ୍ମଜାତୀୟ ବୃକ୍ଷ ତ୍ୱକରୁ ନିର୍ଗତ ସୂତ୍ରବତ୍ ପଦାର୍ଥ । ଯଥା—

ଝୋଟରୁ ଅନଳ ପରି ଯେ, ଝାମ ଦେଲା ସମ୍ବରି ।

ଝୋଳ, ବି. (ଦେଶଜ) ଅଣ; ରସା ।

ଝୋଲା, ବି. (ଦୁଲ ଧାତୁଜ) ମୁଣି ।

ଝୋଲାମାରିବା, କ୍ରି. ( ଦେଶଜ ) ଅଚେତନ ହେବା, ମୂର୍ଚ୍ଛିତ ହେବାର । ଯଥା—

ଝନ ପଞ୍ଚାଳୀ ଝଟକେ ନାହିଁ କି,
ଝୋଲାମାଇଲା ଭୂମିକ୍ ତାହିଁ କି । ବ. ଚ.

——:୦:——

# ଞ

ଞ, ବ୍ୟଞ୍ଜନବର୍ଣ୍ଣର ଦଶମ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଅନୁନାସିକ ତାଳୁ । ବି. ପୁଂ. ଗାୟନ; ଘର୍ଘର ଧ୍ୱନି; ବଳିବର୍ଦ୍ଦ; ଶୁକ; ଯୋଗୀ; ଶବ୍ଦ; ସ୍ୱଧର୍ମଭ୍ରଷ୍ଟ; କ୍ରୂର; ଶୁକ୍ରାଚାର୍ଯ୍ୟ ।

——:୦:——

# ଠ

ଠ, ବ୍ୟଞ୍ଜନବର୍ଣ୍ଣର ଏକାଦଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା । ବି. ପୁଂ. (ଠକ୍-ଅ) ଶବ୍ଦ; ପାଦ; ଶିବ; ବାମନ । ନ. କରଙ୍କ ।

ଟକ, ବି. (ଦେଶଜ) ଖାଇବା ଇଚ୍ଛା; ଯେପରି ପ୍ରତିଦିନ ଦୁଧ ଖାଉଥିବା ବ୍ୟକ୍ତିର ଦୁଧରେ ଟକ ଥାଏ, ଲାଳସା ।

**ଟକଟକ**, ବି°. (ଦେଶଜ) ଚଞ୍ଚଳ; ଶବ୍ଦବିଶେଷ; ବେଦନାବିଶେଷ ।

**ଟକତନ୍ତ୍ରୀ**, ବି. ସ୍ତ୍ରୀ. ହିନ୍ଦୁମାନଙ୍କର ପ୍ରାଚୀନ ବାଦ୍ୟଯନ୍ତ୍ରବିଶେଷ ।

**ଟକ୍କର**, ବି. (ଯାବନିକ) ବାଜିମାରିବା; ସମକକ୍ଷତା; ପ୍ରତିଯୋଗିତା ।

**ଟକମକ**, ବି°. (ଅନୁକରଣ ଶବ୍ଦବିଶେଷ) ଯଥା—

ଘିଅ ଟକମକ ହୋଇ ଫୁଟୁଅଛି ।

**ଟକଲା**, ବି°. (ଦେଶଜ) ଦେହରଖା, ଠାପୁଆ, ଅଳସୁଆ ।

**ଟକଟକା**, ବି°. (ଦେଶଜ) ଲୋଭୀ; ତରତରିଆ; ଲାଳସାଯୁକ୍ତ ।

**ଟଙ୍କୁ**, ବି. ନ. (ସଂସ୍କୃତ) ତାକୁଡ ।

**ଟଗର**, ବି. (ତଗର ଶବ୍ଦଜ) ପୁଷ୍ପବିଶେଷ, ତତ୍‌ବୃକ୍ଷ । ଯଥା—

ଅସିତ ଅପରାଜିତା ଧବଳ ଟଗର ।

**ଟଙ୍କ**, ବି. ପୁଂ. (ଟନ୍‌କ-ଅ) ପ୍ରସ୍ତରଭେଦନ ଅସ୍ତ୍ର, ଗଇନ୍ତି, ମୁନା; ଖଡ୍ଗକୋଷ; ପର୍ବତର ଉନ୍ନତ ପ୍ରଦେଶ; ଠାଙ୍ଗୀ । ଯଥା—

ମାତୃ ପାଦ ଧାଇଁ ଟଳି ମୁଁ ନିଃଶଙ୍କେ,
ବନାନ୍ତେ ପଶିଲି ଯାଇ ଗିରିଟଙ୍କେ । ନ. କେ.

**ଟଙ୍କଣ**, ବି. ପୁଂ. (ଟନ୍‌କ୍-ଅନ) ପାର୍ବତୀୟ ଅଶ୍ୱ; ଠାଙ୍ଗଣ; ସୋହାଗା ।

**ଟଙ୍କଧର**, ବି. ପୁଂ. (ଟଙ୍କ-ଧୃ-ଅ) ମହାଦେବ ।

**ଟଙ୍କଶାଳା**, ବି. ସ୍ତ୍ରୀ. ( ଟଙ୍କ-ଶାଳା ) ଯେଉଁ ଗୃହରେ ଟଙ୍କା ନିର୍ମାଣ ହୁଏ ।

**ଟଙ୍କା**, ବି. ସ୍ତ୍ରୀ. (ଟନକ୍ ଶବ୍ଦଜ) ରୌପ୍ୟମୁଦ୍ରା, ଏକ ଟଙ୍କା ଷୋଳ ଅଣା ବା ଚଉଷଠି ପଇସା ମାନ ।

**ଟଙ୍କାର**, ବି. ପୁଂ. (ଟେ-କୃ-ଅ) ଧନୁକର ଜ୍ୟାର ଶବ୍ଦ; ବିସ୍ମୟ, ଆଶ୍ଚର୍ଯ୍ୟ; ଖ୍ୟାତି, ପ୍ରସିଦ୍ଧି; ପ୍ରତିପତ୍ତି । ବି°. ଟଙ୍କାରଯୁକ୍ତ । ଶ, ସ୍ତ୍ରୀ. ତାରାଦେବୀ ।

**ଟଙ୍କି**, ବି. (ଦେଶଜ) ସ୍ୱରକରଣବିଶେଷ ।

**ଟଙ୍କିତ**, ବି°. ( ଟଙ୍କ-ତ ) ଖଚିତ; ଉଲ୍ଲିଖିତ; ବଦ୍ଧ ।

**ଟଙ୍କିଳ**, ବି°.(ଟଙ୍କ ଶବ୍ଦଜ) ପ୍ରସ୍ତରମୟ, ପାହାଡ଼ମୟ, ଠାଙ୍ଗିପରିପୂର୍ଣ୍ଣ । ଯଥା—

ଯା ବାଟକୁ ଟେକ ଟଙ୍କିଳ ଅଟଇ ।

**ଟଙ୍ଗାଇବା**, କ୍ରି. ( ଦେଶଜ ) ଝୁଲାଇବାର, ଲଟକାଇବାର ।

**ଟଣକା**, ବି. (ଟନ୍‌କ୍ ଧାତୁଜ) ଟାଣି ଧରିବା ରଜ୍ଜୁ ।

**ଟଣଟଣ**, ବି. (ଅନୁକରଣ ଶବ୍ଦ) ଶବ୍ଦବିଶେଷ, ବ୍ରଣାଦିର ପକ୍ୱାବସ୍ଥାର ବେଦନା ।

**ଟଣାଟଣି**, କ୍ରି. ବି. (ଟନ୍‌କ୍ ଧାତୁଜ) ଓଟରା-ଓଟରି ।

**ଟଣ୍ଡି**, ବି. (ଇଂରାଜୀ ଶବ୍ଦ) ମୁକ୍ତାର ବା ଓକିଲଙ୍କ ନିକଟରେ ମୌକାଲ ସଗ୍ରହକାରୀ ।

**ଟପଟପ**, ବି°. (ଅନୁକରଣ ଶବ୍ଦ) ଜଳବିନ୍ଦୁ ପତନ ଶବ୍ଦ; ଶୀଘ୍ର । ଯଥା—

ଟପଟପ ଲୁହ ଝରେ ସହୁବେ । ବି. ଚ.

**ଟପିବା**, କ୍ରି. ବି. ( ହିନ୍ଦୀ ) ଡେଇଁବା, ଅତିକ୍ରମ କରିବା ।

**ଟଭି**, ବି. ( ଦେଶଜ ) ଫଳବିଶେଷ, ଲେମ୍ବୁ-ଜାତୀୟ ଫଳ । ଯଥା—

ଟଭି ଫଳ ପ୍ରାୟେ ସ୍ତନ ଶୋଭିଲେ ଗୋଟା । ଲ. ବ.

**ଟମକ**, ବି. (ଦେଶଜ) ଧେଣ୍ଡୁରା, ଡେଙ୍ଗୁରା, ଘୋଷଣା । ଯଥା—

**ଟଳଟଳ, ଟଳମଳ**, ବି°. (ଟଳ୍ ଧାତୁଜ) ଅସ୍ଥିର, ଚଞ୍ଚଳ । ଯଥା—

ଟଳଟଳ ହେଉଥାନ୍ତି ଗ୍ଲାନିବାର ବେଗେ ।

**ଟଳାଟଳ, ଟାଳମଟାଳ**, ବି°. (ଦେଶଜ) ଭଣ୍ଡାଭଣ୍ଡି, ଟାଳଟୁଳ ।

**ଟଳିବା**, କ୍ରି. ( ଟଳ୍ ଧାତୁଜ ) ଗଡି ପଡ଼ିବାର; ଦୋହଲିବାର; ହଟିବାର; ଅନ୍ୟଥା ହେବାର; ଅଗତ ହେବାର । ଯଥା—

ସଧୀ ପତିବ୍ରତା ଦୃଢ ଅଟଳ,
କେ ଟାଳିଲେ ଟଳିବ କି ଅଚଳେ । ବି. ଚ.

ଟହ୍, ଅ. (ଅନୁକରଣ ଶବ୍ଦ) ଜଳାଦି ତରଳ ପଦାର୍ଥରେ ଅନ୍ୟ ପଦାର୍ଥର ପତନ ଶବ୍ଦ । ଯଥା—

ଟହଟହାସୀ କଶୋଗ୍ର ମନ,
ଟେ ପଡ଼ ରସେ ବୁଡ଼ିବ ପେନ । ବି. ଚ.

ଇଂ. ବି. ପୁଷ୍ପବୃକ୍ଷ ରଖିବାପାଇଁ ମୃତ୍ତିକାନିର୍ମିତ ପାତ୍ରବିଶେଷ, କୁଣ୍ଡଆ ।

ଟହକ, ବିଂ. ( ଦେଶଜ ) ସୁନ୍ଦର; ରକ୍ତବର୍ଣ୍ଣ । ଯଥା—

ଟହକହସି ବୁଟିଲ ଲୋକେ ନବ ବନ୍ଧନମୁକ୍ତ ବେଦରରେ ।
ଲା. ବ.

ଟହଟହ, ବିଂ. (ଦେଶଜ) ଅତି ଲାଲ୍ । ଯଥା—

ଟହଟହ ହସୁଥାନ୍ତି ବୋଲେ
ଟଳଟଳ ହେଉଥାନ୍ତି ଗଲବାର ବେଳେ ।

ଟହଲ, ବି. (ହିନ୍ଦୀ) ବୁଲିବା, ଭ୍ରମଣ; ସେବା ।

ଟହଲଅ, ବିଂ. (ହିନ୍ଦୀ) ସେବାକାରୀ; ଭ୍ରମଣକାରୀ, ବୃଥା ଭ୍ରମଣକାରୀ ।

ଟାଉଟାଉ, କ୍ରି. ବିଂ. (ଦେଶଜ) ଥରଥର । ଯଥା—

ଅନଦେ ଥଟାଉ ପିଟାଉ ପିଟାଉ ଟାଉଟାଉ ହେଲା ମନ ।
ବ. ଚ.

ଟାକର, ବି. ( ଅନୁକରଣ ଶବ୍ଦ ) ମୁଖର ଶବ୍ଦବିଶେଷ; ଅଙ୍ଗୁଳି ଗଣ୍ଠିଦ୍ୱାରା ମସ୍ତକରେ ଅଘାତ କରିବା । ଯଥା—

ପ୍ରେମ ସ୍ୱାଦୁ ନଦେ ସୁଧା ଶିକର,
ସୁରତ ମୁଣ୍ଡରେ ଶଏ ଟାକର ।

ଟାକରା, ବି. (ଦେଶଜ) ଡାକୁ ।

ଟକିବା, କ୍ରି. (ଦେଶଜ) ଜଗି ବସିବା, ଅପେକ୍ଷା କରି ରହିବା । ଯଥା—

ଟାକଛି ସୁଧାଂଶୁକଳାକୁ ଅକାଶୁଁ କରିବାକୁ ପାଣିଗତ ।

ଟାକୁଅ, ବି. ( ଦେଶଜ ) ଆମ୍ବଖଜ; ମିଷ୍ଟାନ୍ନବିଶେଷ; ବାଣି କାଟିବାର ଯନ୍ତ୍ରବିଶେଷ ।

ଟାଙ୍କୁରିବା, କ୍ରି. ( ଦେଶଜ ) ଲୋମାଞ୍ଚ ହେବା; ଗଜୁରିବା ।

ଟାଙ୍କେ, ବିଂ. (ଦେଶଜ) ବହୁତ, ଅନେକ ।

ଟାଙ୍ଗଣା, ବି. ( ଟଙ୍କଣ ଶବ୍ଦଜ ) ଘୋଡ଼ାଗା । ଯଥା—

ଟାଙ୍ଗଣା ସେ ସୁନାକୁ ଭୂମ ପ୍ରଁତ ।

ଟାଙ୍ଗର, ବି. ( ଟଙ୍କ ଶବ୍ଦଜ ) ବୃକ୍ଷାଦିଶୂନ୍ୟ ପାହାଡ଼ିଆ ଭୂମି, ପ୍ରସ୍ତରମୟ ପ୍ରଦେଶ; କେଶଶୂନ୍ୟ ମସ୍ତକ । ଯଥା—

ପିଟିଛି ଟେର ଦେଶ ଟାଙ୍ଗର ଅଙ୍ଗେ,
ପାଷଣ୍ଡେ ହରପ୍ରେମ ଯଥା ସୁସଙ୍ଗେ । ଭୂ. ସୁ.

ଟାଙ୍ଗରା, ଟେଙ୍ଗରା, ବିଂ. (ଟଙ୍କ ଶବ୍ଦଜ) ଯାହା ମୁଣ୍ଡରେ ବାଳ ନ ଥାଏ, ଚନ୍ଦାମୁଣ୍ଡିଆ- ରନ୍ଧନଗୃହରେ ହାଣ୍ଡି ପ୍ରଭୃତି ରଖିବା ସ୍ଥାନ ।

ଟାଙ୍ଗିଆ, ଟାଙ୍ଗୀ, ବି. (ଟଙ୍ଗ ଶବ୍ଦଜ) କୁଠାରବିଶେଷ; କ୍ଷୁଦ୍ର ପାହାଡ଼, ପ୍ରସ୍ତରମୟ ପ୍ରଦେଶ ।

ଟାଙ୍ଗିବା, କ୍ରି. (ଦେଶଜ) ଲଟକାଇବା ।

ଟାଣ, ବିଂ. (ଦେଶଜ) ଶକ୍ତ, କଠିନ । ଯଥା—

ବାଲା ବଚନ କୁଳଶୁଁ ଟାଣ ।

ବି. ଗୁମାନ; ଶ୍ରେଷ୍ଠତା ।

ଟାଣିବା, କ୍ରି. (ଟଣ୍ ଧାତୁଜ) ଝିଙ୍କିବା; ଓଟାରିବା, ଆକର୍ଷଣ କରିବା । ଯଥା—

ଟାଣୁଛି କର୍ଷିପାଏ ଶରସନ,
ଟାଣ ଦେଉଛି ମୋ ଧୈର୍ଯ୍ୟ ଗୁମାନ । ବ. ଚ.

ଟାପରା, ବି. ( ଦେଶଜ ) ପରିହାସ, ଥଟ୍ଟା । ଯଥା—

ଟାପରାଯୋଗେ କେ କହିଲେ ବଚ୍ଛା,
ଟାକ ରହୁଛ ଘୋ ଅଙ୍କୁ ମୁହିଁ । ବ.ଚ.

ଟାପୁ, ବି.(ଦେଶଜ) ଦ୍ୱୀପ; ପଶୁମାନଙ୍କର ପାଦ ।

ଟାଳଟୁଳ, ବିଂ. (ଉର୍ଦ୍ଦୁ) ଟାଳମଟାଳ, ଠକାଠକି, ଭଣ୍ଡାଇବାର ।

ଟାଳିବା, କ୍ରି. (ଦେଶଜ) ଭାଙ୍ଗିବା; ବ୍ୟର୍ଥ କରିବା, ଅନ୍ୟଥା କରିବା । ଯଥା—

ଅଟଳ ମହିମା ଅଟେ ଚ.ହାଙ୍କର,
ଟାଳିବାକୁ ସାଧ୍ୟ ନାହିଁଟି କାହାର ।

ଟାଁସା, ବିଂ. (ଦେଶଜ) କର୍କଶ, କଠୋର ।

ଟାହ, ବି. (ଦେଶଜ) ପରିହାସ, ଉପହାସମିଶ୍ରିତ ଠଟ୍ଟା । ଯଥା—

ଟାହୁରେ ପଣ୍ଡରେ ନ ପ୍ରକାଶତି,
ଟଙ୍କେ ବିଦାରୁଛି ମଦନ ଶର । ବି. ଚି.

ଟାହିବା, କ୍ରି. (ଦେଶଜ) ପରିହାସ କରିବା, ବିଦ୍ରୂପ କରିବା ।

ଟାହୁଲି, ବି. (ଦେଶଜ) ଠଟ୍ଟା, ପରିହାସ । ଯଥା—

ଟାହୁଲି ନ କର ହେ ବଂଶୀଧର ।

ଟିଅ, ବି. (ଦେଶଜ) ଏକ ପ୍ରକାର ଶୁଆ, ପକ୍ଷିବିଶେଷ ।

ଟିକି, ଟିକିକ, ବିଂ. (ଦେଶଜ) ଅଳ୍ପ, ଅଳ୍ପକ, କ୍ଷୁଦ୍ର, ସାମାନ୍ୟ । ଯଥା—

ଟିକିକ କଥାକୁ ସମା ଏଡେ ଦୁଷା ଦ୍ବନ୍ଦ୍ବିଲୁ ରେ । ର. ଚ.

ଟିକିର, ବିଂ. (ଦେଶଜ) କୁଦ, ଉଚ୍ଚସ୍ଥାନ ।

ଟିକା, ବି. (ଦେଶଜ) ତିଳକବିନ୍ଦୁ; ବସନ୍ତ ରୋଗ ନିବାରଣାର୍ଥ ହସ୍ତରେ ସୂକ୍ଷ୍ମ ଛିଦ୍ର କରି ଗୋବୀଜ ଗ୍ରହଣ କରିବା । ବିଂ. ଶ୍ରେଷ୍ଠ, ପ୍ରଧାନ, ସାର । (ତିଳକ ଅର୍ଥରେ) । ଯଥା—

ଟୋପିଏ ସେଚନା ସେନ କପାଳେ,
ଟିକା ଦେଖି ମୋହ ହେବେ ଅଖିଳେ । ବି. ଚି.

ଟିକାୟତ, ଟିକାଏତ, ଟିକାଇତ, ଟୀକାଇତ, ବିଂ. (ଦେଶଜ) ରାଜାଙ୍କ ନିକଟରେ ଉପାଧିପ୍ରାପ୍ତ । ବି. ରାଜପୁତ୍ର; ସମ୍ଭ୍ରାନ୍ତ ବ୍ୟକ୍ତି । ଯଥା—

ଟିକାଏତ ଅଷ୍ଟବର୍ଗର କହିଲ ଶ୍ୟାମ ଏବେ ଅଚରିତ ।

ଟିକିଟିକି, ବିଂ. (ଅନୁକରଣ ଶବ୍ଦଜ) ଖଣ୍ଡ ଖଣ୍ଡ, କ୍ଷୁଦ୍ର, ଛୋଟଛୋଟ । ଯଥା—

ଟିକିଟିକି ହେବ ଯୁବତୀ ଶତ, ଟାଙ୍ଗଣା ସେ ଧୂନାକୁ ଭୂମ ପ୍ରୀତ ।

ଟିକିଏ, ଟିକାଏ, ବିଂ. (ଦେଶଜ) ଅଳ୍ପ, କଥିତ; କ୍ଷୁଦ୍ର । ଯଥା—

ଟିକାଏ ହେଲେ ସେ ହୃଦୟ ସଙ୍ଗେ ନୋହୁଣ ହ୍ରାସ ବିଳାସ ।

ଟିକଲି, ବି. (ଟିକା ଶବ୍ଦଜ) ସ୍ତ୍ରୀମାନଙ୍କର ଭ୍ରୂଦ୍ୱୟର ମଧ୍ୟସ୍ଥ ଅଳଙ୍କାରବିଶେଷ ।

ଟିଙ୍କ, ବି. (ଦେଶଜ) ଗୋରୁ ଦେହର କୀଟବିଶେଷ ।

ଟିଟିର, ବି. (ଟିଟ୍ ଧାତୁଜ) ପକ୍ଷିବିଶେଷ, ଟେଁଟେଁଯ୍ବା ଚଢ଼େଇ ।

ଟିଟ୍ଟିଭ, ବି. ପୁଂ. (ଟିଟ୍ଟି-ଭୃ-ଅ) ଟେଁଟେଁଯ୍ବା ପକ୍ଷୀ ।

ଟିଣା, ବିଂ. (ଦେଶଜ) ରାଗୀ, ଯେ ଅଳ୍ପ କଥାରେ ଚିଡ଼ି ଉଠେ । ବି. ଉପଧାତୁବିଶେଷ ।

ଟିନ, ଟିଣ, ବି. (ଇଂରାଜୀ) ଉପଧାତୁବିଶେଷ ।

ଟିପଣା, ବି. (ଟିପ୍ପଣୀ ଶବ୍ଦଜ) ସ୍ମରଣାର୍ଥ କୌଣସି ବିଷୟ ଲେଖି ରଖିବା, ଜାତକ ବା ଜନ୍ମପତ୍ରିକାର ସଂକ୍ଷେପ ।

ଟିପିବା, କ୍ରି. (ଟିପ୍ପଣୀ ଶବ୍ଦଜ) ସ୍ମରଣାର୍ଥ କୌଣସି ବିଷୟ ଲେଖିବା ।

ଟିପ୍ପଣୀ, ବି. (ଟିପ୍ ଧାତୁଜ) ଜନ୍ମପତ୍ରିକାର ସଂକ୍ଷେପ; ଟୀକା, ସଂକ୍ଷିପ୍ତ ଟୀକା ।

ଟିପାଇ, ବି. (ତ୍ରିପାଦ ଶବ୍ଦଜ) ଶଗଡ଼ଝୁରାମୂର୍ତ୍ତି ଟେକିଧରିବା କାଷ୍ଠ; ତିନପାଦବିଶିଷ୍ଟ କ୍ଷୁଦ୍ର ମେଜ ବା କାଷ୍ଠାଧାରବିଶେଷ ।

ଟିପିଦେବା, କ୍ରି. (ଟିପ୍ ଧାତୁଜ) ଇସାରା କରିବା । ଯଥା—

ଟିପି ଦେଲେ କଂସ ଅଗେ କେ ନୃଶଂସ
ନନ୍ଦ ବନ୍ଦୀ ହେବେ ଖୋଟେ ।

ଚିପିଦେବା ।

ଟିପ, କ୍ରି. ବିଂ. (ଟିପ୍ ଧାତୁଜ) ଅଙ୍ଗୁଳ୍ୟଗ୍ରପରିମିତ, ଅତି ଅଳ୍ପ; ସ୍ୱଳ୍ପ ଦୋଷ । ଯଥା—

ଥାଉ ଥାଉ ଗୁଣ କେଉଁ ବିଚକ୍ଷଣ
ଟିପ ଦେବ ଦଶୁ ନାହିଁ । ବି. ଚି.

ଟିମା, ବି. (ଦେଶଜ) ଗେଡ଼ା, ବାଙ୍ଗରା, ଖର୍ବ ।

ଟିରିକ, ବି. (ଦେଶଜ) ମେରୁଦଣ୍ଡର ନିମ୍ନସ୍ଥାନ ।

ଟୀକା, ବି. ସ୍ତ୍ରୀ. (ଟୀକ୍-ଅ-ଆ) ବିବୃତି, ବ୍ୟାଖ୍ୟା ।

ଟୀକାକାର, ବିଂ. (ଟୀକା-କୃ-ଅ) ଗ୍ରନ୍ଥର ବିବରଣକର୍ତ୍ତା, ବ୍ୟାଖ୍ୟାତା ।

ଟୁଣ୍ଡା, ବି. (ଦେଶଜ) ଘୁଞ୍ଚୁକା, କମିଅ, ଗାରଡ଼ି ଇତ୍ୟାଦି ।

ଠେକ, ବି. (ଦେଶଜ) ଗୁମାନ; ବଡିମା; ପ୍ରଶଂସା; ପ୍ରାଧାନ୍ୟ; ଠାଣି । ଯଥା—

ବହୁ ନୃପଙ୍କ ଯୁଦ୍ଧରେ ଅଧର ଠେକ ।

କ୍ରି. ଉଠାଅ ।

ଠେକା, ବି.(ଦେଶଜ) ଲୋଷ୍ଟ୍ର, ଢେଣୁଅଁ, ମୃତ୍ତିକା ଖଣ୍ଡ । କ୍ରି. ଉତ୍ତୋଳନ କରିବା । (ଲୋଷ୍ଟ୍ର ଅର୍ଥରେ) ଯଥା—

ଠେକା ଶସ୍ୟକୁ ଡର ନ ଥିବା ଗଇଡ଼ର
କନ୍ଦରେ ବୁହାଇଲ ଘରକୁ ରେ ।

ଠେକାଠେକି, ବି. ( ଦେଶଜ ) ଘେନାଘେନି, ଧରାଧରି, ଉତ୍ତୋଳନକରଣ । ବି. ତୋଷାମୋଦ; ଗୃନ୍ଥ । ଯଥା—

ଠେକାଠେକି ମୋତେ କରି ନାନାମତେ
ଭୂମ୍ବ ଜାନନା ଦୂରିବ ।

ଠେକିବା, ଠେକାଇବା, କ୍ରି. (ଦେଶଜ) ଉଠାଇବା, ଉତ୍ତୋଳନ କରିବା । ଯଥା—

ପ୍ରେମିକାକୁଳେ ମୁଁ ଠେକାଇବ ହଠ ।

ଠେର, ବି. (ଦେଶଜ) ପ୍ରମାଣ, ସନ୍ଧାନ, ଅନୁସନ୍ଧାନ, ଅଡାଗମ ।

ଠେରା, ବିଂ. (ଠେରକ ଶବ୍ଦଜ) ଯାହାର ଗୋଟିଏ ଚକ୍ଷୁ ବଡ଼ ଗୋଟିଏ ଚକ୍ଷୁ ସାନ ।

ଠେରୀ, ବିଂ. ଯେଉଁ ସ୍ତ୍ରୀଲୋକର ଗୋଟିଏ ଚକ୍ଷୁ ବଡ଼ ଅନ୍ୟଟି ସାନ ।

ଠେଲା, ବି. (ଦେଶଜ ) ଠେକା, ଲୋଷ୍ଟ୍ର ।

ଠେହିବା, କ୍ରି. ( ଦେଶଜ ) ଉସ୍କେଇବା, ଉତ୍ତେଜିତ କରିବା, ମନ୍ଦ କାର୍ଯ୍ୟରେ ପ୍ରବର୍ତ୍ତାଇବା ।

ଠୋକା, ବି. (ତୋକ ଶବ୍ଦଜ=ଅପତ୍ୟ) ପିଲା, ବାଳକ ।

ଠୋକାଇ, ବି. ( ଦେଶଜ ) ବେତୁଲି, ବେତା, ବାଁଶ ବା ବେତନିର୍ମିତ ପାତ୍ରବିଶେଷ ।

ଠୋକୀ, ଠୋକଲୀ, ବି. (ଦେଶଜ) ଅଳ୍ପବୟସ୍କା ସ୍ତ୍ରୀ, ବାଳିକା । ଯଥା—

ଠୋକୀ କେ ଗୋପେ ରହୁଛେ ତା ଶୁଣି,
ଠାଉ ଠାଉ ହେବେ ପୁରରମଣୀ । ବି. ଚି.

ଠୋକିବାର, କ୍ରି. (ଦେଶଜ) ଝୁଣ୍ଟିବା; ବାଡ଼ିବାର; ଦୋଷ ଦେବାର; ଖୁଣ୍ଟିବା; ଶସ୍ୟାଦି ଗୋଟାଇ ଚର୍ବଣ କରିବା ।

ଠୋପ, ବି. ( ଦେଶଜ ) ଖାଲ, ହାଘ ଧରିବା ସକାଶେ ଯେଉଁ ଗର୍ତ୍ତ ଖୋଳାଯାଏ । ଯଥା—

ଠାଣ କ ଅଛି କହନ୍ତି ହସି,
ଠୋପ ସଥା ମୋ ମନ ମରୁ ବସି । ବି. ଚି,

ଠୋପର, ବି. (ଦେଶଜ) ମୁକୁଟ, ମସ୍ତକାବରଣ, ପତ୍ର ବା ବାଁଶନିର୍ମିତ ମୁଣ୍ଡର ଢାଙ୍କୁଣୀବିଶେଷ ।

ଠୋପା, ବି. ( ଦେଶଜ ) ବିନ୍ଦୁ, ଜଳକବିନ୍ଦୁ; ଜଳାଦି ତରଳପଦାର୍ଥର ଅଳ୍ପ ପରିମାଣ ।

ଠୋପି, ଠୋପୀ, } ବି. ( ଦେଶଜ ) ଶିରସ୍ତ୍ରାଣ ବା ମସ୍ତକାବରଣ; ଜଳକାଦି; ଡାଲା ବା ଛୋଟ ଛୋଟ ଫୁଙ୍ଗୁଡ଼ି । (ଜଳକ ଅର୍ଥରେ) ଯଥା—

ଠୋପିଏ ସ୍ୱେଦନା ସେନ କପାଳେ,
ଟିକା ଦେଖି ମୋହ ହେବେ ଅଳିଳେ ।

ଠୋଲ, ବି. (ବଙ୍ଗ ଭାଷା) ଚତୁଷ୍ପାଠୀ, ସଂସ୍କୃତ ପାଠଶାଳା ।

ଠୋଲା, ବିଂ. (ଦେଶଜ) ଚେପା, ଆଘାତ ପାଇ ଧାତୁନିର୍ମିତ ଜଳପାତ୍ରାଦିର କୌଣସି ଅଂଶ ଦବି ଗଲେ ତାହାକୁ "ଠୋଲା" କହନ୍ତି ।

——:o:——

# ଠ

ଠ, ବ୍ୟଞ୍ଜନବର୍ଣ୍ଣର ଦ୍ୱାଦଶବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା । ବି. ପୁଂ. ଶିବ; ମହାଧ୍ୱନି; ଚନ୍ଦ୍ରମଣ୍ଡଳ; ଶୂନ୍ୟ; ଇନ୍ଦ୍ରିୟଗୋଚର ।

ଠଉର, ବି. ( ସ୍ଥା ଧାତୁଜ ) ସ୍ଥିରତା, ଠିକଣା; ଅନୁମାନ ।

ଠଉରାଇବା, କ୍ରି. ( ସ୍ଥା ଧାତୁଜ ) ଖୋଜିବା, ଅନୁମାନ କରିବା, ସ୍ଥିର କରିବା ।

ଠଉରିବା, କ୍ରି. ( ସ୍ଥା ଧାତୁଜ ) ଅବସ୍ଥାନ, ସ୍ଥିର ରହିବାର । ଯଥା—

ଠାବ ନାହିଁ ମହାବାହୁ, ଠଉରିବ ମୁଁ କେମନ୍ତେ ଅଇ ।

ଠକ, ଠଗ, ବିଂ. ( ଦେଶଜ ) ଖଳ, ଧୂର୍ତ୍ତ, ପ୍ରତାରକ, ପ୍ରବଞ୍ଚକ ।

ଠକାଠକ, ବିଂ. (ଠକ ଶବ୍ଦଜ) ଭଣ୍ଡାଭଣ୍ଡି ।

ଠକାଇବା, କ୍ରି. (ଠକ ଶବ୍ଦଜ) ପ୍ରତାରିତ କରିବାର; ଅବଲମ୍ବନ କରିବାର, ଆଶ୍ରୟ ଦେବାର ।

ଠକିବା, କ୍ରି. (ଠକ ଶବ୍ଦଜ) ପ୍ରତାରିତ କରିବା, ପ୍ରତାରିତ ହେବା ।

ଠକ୍କୁର, ବି. ପୁଂ. ଦେବତାର ପ୍ରତିମା, ଠାକୁର ।

ଠଣ, ବି. (ଦେଶଜ) ଅଙ୍ଗର ଶୋଭା, ଗଠନ । ଯଥା—

ଠଣ ସୁନ୍ଦର ଶିରୋମଣି, ଠିକେ କମଳା ଯାର ରାଣୀ ।

ଠଣଠଣ, ଅଂ. (ଅନୁକରଣ ଶବ୍ଦଜ) ଶବ୍ଦବିଶେଷ।

ଠଣା, ବି. ( ଦେଶଜ ) ଡାକ, କାନ୍ଥଖୋଲା; ପ୍ରହରୀର ସ୍ଥାନ । ଯଥା—

ବଣାକୁ ଦମ୍ଭବାଡ ଠଣାକୁ ପଳାଯିବ
ଉଡର କପି ଉଡନ୍ତ ସେ । ବୈ. ବ.

ବଙ୍କାଙ୍ଗୁଳଦ୍ୱାରା ମସ୍ତକରେ ଅଘାତବିଶେଷ ।

ଠରାଠର, ବି. (ଦେଶଜ) ସଙ୍କେତ କାରକର ।

ଠସ, ବି. (ଦେଶଜ) ଛନ୍ଦ; ପରିହାସ । ଯଥା—

ଶଠ ଦୁଷ୍ଟ ଧୃଷ୍ଟ ଲମ୍ପଟ ନାୟକ
ବିଦେଶକୁ ଯିବା କଥା ସତ କି ଅବା ଠସ ।

ଠସା, ବି. (ଦେଶଜ) ଠାପରା, ଥଟ୍ଟା; ଛନ୍ଦ ।

ଠା, ବି. (ଦେଶଜ) ସ୍ଥାନ, ଜାଗା; ଭୋଜନର ସ୍ଥାନ, ପିଢ଼ାପାଣି ।

ଠାଇଁ, ବି. (ଦେଶଜ) ସ୍ଥାନରେ, ସମୀପରେ, ନିକଟରେ; ଧୂଆଥୋଇ;ବିଧବାର ପୁନର୍ବିବାହ ।

ଠାକିବା, କ୍ରି. (ସ୍ଥିତ ଶବ୍ଦଜ) ସ୍ଥିର ହେବା, ରହିବା । ଯଥା—

ଅନେକ ଶାସ୍ତ୍ର ସେ ଧାର, କେହି ନ ଠାକଇ ତହିଁର ।

ଠାକୁର, ବି. (ଠକ୍କୁର ଶବ୍ଦଜ) ଦେବତା; ସମ୍ମାନ୍ୟ ବ୍ୟକ୍ତି ।

ଠାକୁରାଣୀ, ବି. (ଠାକୁର-ଆଣୀ) ଦେବୀ; ରାଣୀ; ଗୃହିଣୀ ।

ଠାଣି, ଠାଣୀ, ବି. (ଦେଶଜ) ପ୍ରକାର, ଅଙ୍ଗଭଙ୍ଗି, ଶୋଭା, ଆକୃତି । ଯଥା—

ଭଲ ସେ ରୂପ ଠାଣୀ କାହିଁ ନାହିଁ ରେ ।

ଠାପୁଆ, ବିଂ. (ଦେଶଜ) ଅଳସୁଆ, ମଠୁଆ । ଯଥା—

କେହିବା ଠାପୁଅପଣେ, ଧର୍ମ ଧ୍ୱଜ ଧରି,
ପରଠାରୁ ସଦା ଅର୍ଥ ଶୋଷଣ ପ୍ରୟାସୀ
ଧର୍ମ ନାମେ, ନିଜ ପେଟ ପୋଷଣ ସକାଶେ । ମ. ଯା.

ଠାବ, ବି. (ସ୍ଥା ଧାତୁଜ) ସ୍ଥାନ, ଠିକଣା । ଯଥା—

ଠାବ ନାହିଁ ମହାବାହୁ, ଠଉରିବି ମୁଁ କେମନ୍ତେ ଅଇ ।

ଠାର, ବି. (ଦେଶଜ) ଇଙ୍ଗିତ, ସଙ୍କେତ । ଯଥା—

ଠାର ଦେଲେ ନେହାଣ୍ଟିଲେ ବଜନଷ୍ଟଲେ ସେ ବଲେ ।

ଠିଆ, ବି. (ଦେଶଜ) ଛିଡ଼ା, ଉଭା ।

ଠିକ, ବିଂ. (ଦେଶଜ) ଠୁଳ, ଗାଏ, ମୋଟ, ସମଷ୍ଟି ; ନିଶ୍ଚିତ । ଯଥା—

ଠିକେ ମୁଁ କହୁଛ ତୋତେ, ଠାବ ଦେଇଥିବୁ ତରେ ।

ଠିକଣା, ବି. (ଦେଶଜ) ନିଶ୍ଚିତ ସ୍ଥାନ, ନିଦର୍ଶନ, ଠାବ ।

ଠିକା, ବିଂ. (ଦେଶଜ) ଅଛିରକ୍ତ; ସାମୟିକ ।

ଠୁକ୍‌ଠୁକ୍, ଅଂ. (ଅନୁକରଣ ଶବ୍ଦ) ଶବ୍ଦବିଶେଷ ।

ଠୁଣ୍ଟୁକା, ଠୁଣା, ବିଂ. (ଦେଶଜ) ବାଙ୍ଗରା, ଛୋଟ, ଖର୍ବ ।

ଠୁରା, ବିଂ. (ଦେଶଜ) ବାମନ, ଖର୍ବ, ଗେଡ଼ା ।

ଠୁଳ, ବିଂ. (ଦେଶଜ) ସମୂହ, ଏକତ୍ର, ରୁଣ୍ଡ; ଠିକ । ଯଥା—

ନବୀନଯଷ୍ଟୀ ନବୀନ ନବୀନକୂଳ
ସବୁଠାରେ ଲୋକେ ହୋଇଛନ୍ତି ଠୁଳ । ନ. କେ.

ଠୁଲ, ବ. (ଦେଶଜ) ମସ୍ତକାବରକ ହାଡ଼, ମୁଣ୍ଡର ହାଡ଼, ଖପୁରି ।

ଠେକ, ବ. (ଦେଶଜ) ଠେଁସ, ଅବଲମ୍ବନ, ଆଶ୍ରୟ, ଅଟକ; ଉଚ୍ଚ ।

ଠେକଣ, ବ. (ଦେଶଜ) ଠେକ ।

ଠେଟା, ବ. (ଦେଶଜ) ପାଗପ୍ରାପ୍ତ ମୁଣ୍ଡରେ ଲୁଗା ବାନ୍ଧିବା ।

ଠେକ, ବ. (ଦେଶଜ) ଭାଣ୍ଡ, ମୃତ୍ତିକାପାତ୍ର-ବିଶେଷ ।

ଠେକୁଆ, ବ. (ଦେଶଜ) ଶଶକ, ମୃଗବିଶେଷ ।

ଠେଙ୍ଗ, ବ. (ଦେଶଜ) ନଳଗୋଡ଼; ଉଚ୍ଚ-ଭୂମି ।

ଠେଙ୍ଗା, ବ. (ଦେଶଜ) ବଡ଼ ବାଡ଼ି, ଯଷ୍ଟି; ଜ୍ୱରବିଶେଷ ।

ଠେଙ୍ଗାଠେଙ୍ଗି, ବ. (ଦେଶଜ) ପିଟାପିଟି, ମରାମରି, ବାଡ଼ିଆବାଡ଼ି ।

ଠେଙ୍ଗେଣୀ, ବ. (ଦେଶଜ) ସାନ ବାଡ଼ି; ଗୋରୁ-ପ୍ରଭୃତିଙ୍କର ପିଠିର ହାଡ଼ ।

ଠେଲାଠେଲି, ବ. (ଦେଶଜ) ପେଲାପେଲି ।

ଠେଲିବାର, କ୍ରି. (ଦେଶଜ) ପେଲିବାର, ଏକ ଆଡ଼କୁ ଚଳାଇବାକୁ ବଳ ପ୍ରୟୋଗ କରିବାର ।

ଠେସ, ଠେଁସ, ବ. (ଦେଶଜ) ଅବଲମ୍ବନ, ଆଶ୍ରୟ; ପେଲା ।

ଠୈପା, ବିଂ. (ଦେଶଜ) ଠାପୁଆ, ଅଳସୁଆ ।

ଠୋ, ଅଂ. (ଅନୁକରଣ ଶବ୍ଦ) ଶବ୍ଦବିଶେଷ । ଯଥା—

ଠୋ କରି ଛଣାର ଦେ ନା, ପ୍ରିୟସଖି ମୋ ବେଦନା । ବ.ଠ.

ଠୋକର, ବ. (ହିନ୍ଦୀ) ବାଧା, ଆଘାତ ।

ଠୋଠୋ, ଅଂ. (ଅନୁକରଣ ଶବ୍ଦ) ହାସ୍ୟବିଶେଷ; ଶବ୍ଦବିଶେଷ ।

ଠୋଲା, ବ. (ଦେଶଜ) ପତ୍ରନିର୍ମିତ ପାତ୍ର, ଗୌପଦ, ଦୋନା ବା ଦନା ।

ଠୌର, ବିଂ. (ସ୍ଥା ଧାତୁଜ) ନିଶ୍ଚୟ, ଅନ୍ଦାଜ; ଠିକଣା । ଯଥା—

ଠାବ କାହିଁ ମହାବାହୁ, ଠଉରିବ ମୁଁ କେମନ୍ତେ ଅବା ।

—o—

# ଡ

ଡ, ବ୍ୟଞ୍ଜନ ବର୍ଣ୍ଣର ତ୍ରୟୋଦଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା । ବ. ପୁଂ. ଶିବ; ଶବ୍ଦ; ତ୍ରାସ; ବାଡ଼ବାଗ୍ନି । ସ୍ତ୍ରୀ. ଡାକିନୀ ।

ଡଉଁରିଆ, } ବ. (ଦେଶଜ) ହସ୍ତ ବା କଣ୍ଠା-
ଡେଉଁରିଆ, } ଭରଣ, ଅଳଙ୍କାରବିଶେଷ ।

ଡଉଲ, ବିଂ. (ଦେଶଜ) ସୁନ୍ଦର ।

ଡକା, ବ. (ଦେଶଜ) ଚିତ୍କାର, କ୍ରନ୍ଦନ; ଆହ୍ୱାନ; ଚହଳ । ଯଥା—

କାଳକପାଳ ହେଲା ଗୋପରେ ଡକା
କଁଅଳା ପୁଅର ଶ୍ରେଷ୍ଠ ଜୀବକା । ର. ଭ.

ଡକାଏତ, (ହିନ୍ଦୀ) ଖଣ୍ଟ, ଖଳଲୋକ ।

ଡକାଡକି, କ୍ରି. ବ. (ଦେଶଜ) ପରସ୍ପରର ଆହ୍ୱାନ ।

ଡକାବୋବାଳି, କ୍ରି. ବ. (ଦେଶଜ) କାନ୍ଦ-ବୋବାଳି ।

ଡଗଡଗ, କ୍ରି. ବିଂ. (ଦେଶଜ) ଶୀଘ୍ର ଶୀଘ୍ର, ଚଞ୍ଚଳ ଚଞ୍ଚଳ ।

ଡଗର, ବ. (ଦେଶଜ) ଦୂତ, ଚର । ଯଥା—

ଅକ୍ଷ୍ଣ ପ୍ରମାଣେ ଡଗର ଅଟଇ ।
କଂସ ଅକ୍ଷ୍ଣ ବୋଲି ଗୋପେ କହିଲା ।

ଡଗରା, ବ. (ଦେଶଜ) ପ୍ରଚାରକ ଅର୍ଥାତ୍ ଯେଉଁ ବ୍ୟକ୍ତିଦ୍ୱାରା ଘୋଷଣା ପ୍ରଚାରିତ ହୁଏ । ଯଥା—

କ୍ଷମାନ୍ତ ଖଗ ପ୍ରକଟଡ଼ଗର
ରଙ୍ଗେ ବଜାଇଲା କାନନନାଗର । ବ. ବୈ.

ଡଙ୍କ, ବ. (ଦେଶଜ) ଲତାର ଶାଖାବିଶେଷ ।

ଡଙ୍କା, ବ. (ଦେଶଜ) ଅଣକ, ଡାଲି ପ୍ରଭୃତି ଯୋଡିବାର ଏକପ୍ରକାର ଯନ୍ତ୍ରବିଶେଷ ।

ଡଙ୍କାର, ବ. (ଦେଶଜ) କଣ୍ଟକ ବୃକ୍ଷବିଶେଷ ।

ଡଙ୍କି, ବ. (ଦେଶଜ) ତମ୍ବା ବା ପିତ୍ତଳନିର୍ମିତ ପାନହତା ।

ଡଙ୍କୁଣୀ, ବ. ସ୍ତ୍ରୀ. (ଡାକିନୀ ଶବ୍ଦଜ) ଡାଆଣୀ ।

ଡଙ୍ଗା, ବ. (ଦେଶଜ) ନୌକା, ଜଳଯାନ ।

ଡଜନ, ବଂ. (ଇଂ.) ବାରଗୋଟା ପରିମାଣ ।

ଡମ, ବ. ପୁଂ. (ଦେଶଜ) ଜାତିବିଶେଷ; ନୀଚ-ଜାତି ।

ଡମଣି, ବ. (ଦେଶଜ) କବାଟରେ ଲଗାଇବା ଲୁହା କବ୍‌ଜାବିଶେଷ ।

ଡମରୁ, ବ. ପୁଂ. (ଡମ=ଅନୁକରଣ ଶବ୍ଦ-ଋ= ଗମନ କରିବା-ଉ) ବାଦ୍ୟବିଶେଷ, ଡୁବ୍‌ଡୁବି ବାଦ୍ୟଯନ୍ତ୍ର ।

ଡମାଡୌଲ, ବଂ. (ଦେଶଜ) ଅମିତବ୍ୟୟୀ ।

ଡମ୍ଫା, ବଂ. (ଦେଶଜ) ଉଦ୍ଧତ, ଅଗଚଲା, ଅଗବୋଲା,ଡବଡବା; ଫମ୍ପା ।

ଡମ୍ବର, ବଂ. (ଡମ୍ବ-ଅର) ଉଦ୍ଧତ; ବିଖ୍ୟାତ । ବ. ପୁଂ. ଉତ୍କର୍ଷ ।

ଡର, ବ. (ହିନ୍ଦୀ; ଦର ଶବ୍ଦଜ) ଭୟ । ଯଥା—

ଡର ନାହିଁ କି ହେ ପର ତରୁଣୀ ହରଣ । ବ. ଚ.

ଡରୁଆ, ବଂ. (ଦର ଶବ୍ଦଜ) ଭୟାକ୍ରାନ୍ତ, ଡରକୁଳା ।

ଡବଡବ, ଅଂ. (ଅନୁକରଣ ଶବ୍ଦ) ଶବ୍ଦବିଶେଷ । ଯଥା—

ଡବଡବ ବାଦ୍ୟ ନିଃସ୍ୱନ ଶ୍ରବଣ ପ୍ରହରେ ନଦ୍ୟନସୂତ୍ରଁ ।

ଡବଡବା, ବଂ. ( ଦେଶଜ ) ଡମ୍ଫା; ଯାହା ପେଟରେ କଥା ରହେ ନାହିଁ ।

ଡହକ, (ଦାହ ଶବ୍ଦଜ) ତାତି, ତପ୍ତି ।

ଡହଡ଼, ଡହଡ଼ହ, ବଂ. (ଦହ ଧାତୁଜ) ଗରମ, ଉତ୍ତପ୍ତ । ଯଥା—

ଡହଡହ ହେବ ମୃଦୁ ଅବୟବ ଶ୍ୟାମ ଶ୍ରୀଅଙ୍ଗ ଶ୍ରେଗୁଁ ।

ଡହଗ, ବଂ. (ଦେଶଜ) ଡମ୍ଫା, ଯାହା ପେଟରେ କଥା ରହେ ନାହିଁ; ନାରଦ ।

ଡହଳବିକଳ, ବଂ. (ଦେଶଜ) ଶୋକରେ କାତର ହେବା, ଶୋକାକୁଳ, ଚିନ୍ତାବିଦଗ୍ଧ ।

ଡାଁଆଣା, ବଂ. ଦେଶଜ) ଲୋଷ୍ଟ୍ର, ରଙ୍କ, ଅଦ୍ଧାରଲୋଷ୍ଟ୍ର ।

ଡାଆଣୀ, ବ. ସ୍ତ୍ରୀ. ( ଡାକିନୀର ଅପଭ୍ରଂଶ ) ଯୋଗିନୀ, ଅପଦେବତାଙ୍କର ଗୁଣଯୁକ୍ତା ସ୍ତ୍ରୀ ।

ଡାଁଆଶ, ବ. (ଦଂଶ ଶବ୍ଦଜ) ଦଂଶକ, ପଶୁଦଂଶକ ମକ୍ଷିକା ।

ଡାକ, ବ. ପୁଂ. ପିଶାଚବିଶେଷ; ଅହ୍ୱାନ; ଶବ୍ଦ; ଚିତ୍କାର ।

ଡାକଘର, ବ. (ବିଦେଶଜ) ଚିଠିପତ୍ର ଆଦାନ-ପ୍ରଦାନାର୍ଥ ନିର୍ଦ୍ଦିଷ୍ଟ ଗୃହ ବା ସ୍ଥାନ ।

ଡାକବ, ବ. (ଦେଶଜ) ନିମନ୍ତ୍ରଣ ।

ଡାକୁ , ବଂ. (ଦେଶଜ) ବିଖ୍ୟାତ ।

ଡାକୁଆ, ବଂ. (ଦେଶଜ) ଅହ୍ୱାନକାରୀ ।

ଡାଗର, ବ. (ଦେଶଜ) କେଶକୀଟବିଶେଷ ।

ଡାଙ୍ଗ, ବ. (ଦେଶଜ) ଛାଟ, ପାଞ୍ଚଣ, ଯଷ୍ଟି-ବିଶେଷ । ଯଥା—

ଯେବେ ମଣ୍ଡାରଙ୍କି ଦେଖଇ ଅଗେ
ଧାଇଁ କର ଧୃତ ପିଟଇ ଡାଙ୍ଗେ ।

ଡାମର , ବ. ପୁଂ. (ଡମ-ଅର) ତନ୍ତ୍ରଶାସ୍ତ୍ରବିଶେଷ । ବଂ. ଉଦ୍ଧତ ।

ଡାମରକୁଆ, ବ. ବଡବଡ କାଉ ।

ଡାମ୍ଫଣ, ବ. (ଦେଶଜ) ବଡକୁମ୍ଭ ।

ଡାଳ, ବ. (ଦଳ ଶବ୍ଦଜ) ଶାଖା । ଯଥା—

ତରୁ ଡାଳେ ବସି ପିକ ଭୃଙ୍ଗ ପ୍ରେମ ଗୀତ,
ମନୋହର ତାନେ ଗାଇ ରମେ ଲେକଚଉ । କ. ବ.

ଡାଳଚିନୀ, ବ. ( ଦାରୁଚିନୀ ଶବ୍ଦଜ ) ମିଷ୍ଟତ୍ୱକ୍-ବିଶେଷ, ଗୁଡ଼ତ୍ୱକ ।

ଡାଲି, ବ. ( ଡଲ୍ଲକ ଶବ୍ଦଜ ) ବାଁଶନିର୍ମିତ ପାତ୍ର-ବିଶେଷ, ଟୋକେଇ ।

ଡାଳିମ, ଡାଳିମ୍ବ, ବ. ପୁଂ. ( ଦଳ-ଅ-ଇମ ) ଡାଳିମ୍ବଗଛ । ସ୍ତ୍ରୀ. ଡାଳିମ୍ବ ଫଳ ।

ଡାଲି, ବି. (ଦେଶଜ) ହରଡ଼, ମୁଗ, ବିରି, ମସୁର ପ୍ରଭୃତି ଶସ୍ୟ; ଉକ୍ତ ପଦାର୍ଥର ସିଝା ଖାଦ୍ୟ-ଦ୍ରବ୍ୟବିଶେଷ ।

ଡାଳୁଅ, ବି. ( ଦେଶଜ ) ଧାନ୍ୟବିଶେଷ, ଗ୍ରୀଷ୍ମ ଋତୁରେ ଯେଉଁ ଧାନ୍ୟ ହୁଏ ।

ଡାବ, ବଂ. ଔଷଧ ଢାଳିବା; ନାଲି ନଡିଆ ।

ଡାହା, ବଂ. (ଦହ ଧାତୁଜ) ତପ୍ତ, ପୋଡ଼ା ।

ଡାହାଣ, ବି. (ଦକ୍ଷିଣ ଶବ୍ଦଜ) ଦକ୍ଷିଣ ।

ଡାହୁକ, ବି. ( ଦାତ୍ୟୂହ ଶବ୍ଦଜ ) କାଳକଣ୍ଠକ, ପକ୍ଷିବିଶେଷ । ଯଥା—

ହିଙ୍କାର ଡାହୁକ ବେକା ଭେକ ଡାକ ସଢ଼ ସଢ଼ ଚମକାଏ ।

ଡିଅଁ, କ୍ରି. ବି. (ଦେଶଜ) କୁଦା, ଲମ୍ଫ; ବାଡ-ସଂଲଗ୍ନ ଡେଇଁ ଯିବା ପଥ ।

ଡିଙ୍ଗର, ବି. ପୁଂ. ( ଲିଙ୍ଗ=ପାଇବା-ଅର; ଲ=ଡ ) ସେବକ, ଦାସ, ନୀଚଲୋକ; ଲମ୍ପଟ; ସ୍ଥୂଳକାୟ ବ୍ୟକ୍ତି; ନିକ୍ଷେପ; ପଠାଇବା । ବଂ. ଶଠ, ଧୂର୍ତ୍ତ ।

ଡିଙ୍ଗା, ବି. (ଦେଶଜ) ବଡ ଡଙ୍ଗା, କେଶକାଠ ।

ଡିଙ୍ଗୀ, ବି. (ଦେଶଜ) କ୍ଷୁଦ୍ର ନୌକା ।

ଡିଣ୍ଡିମ, ବି. ପୁଂ. (ଡିଣ୍ଡି=ଅନୁକରଣ ଶବ୍ଦ-ମି=କ୍ଷେପଣ କରିବା-ଅ ) ନାଗରା, ବାଦ୍ୟଯନ୍ତ୍ର-ବିଶେଷ ।

ଡିଣ୍ଡିର, ଡିଣ୍ଡୀର, ବି. ପୁଂ. (ଡିଣ୍ଡି-ର) ସାମୁଦ୍ରିକ ମତ୍ସ୍ୟବିଶେଷର ଅସ୍ଥି; ସମୁଦ୍ରର ଫେଣା ।

ଡିମିରି, ବି. ( ଉଦୁମ୍ବର ଶବ୍ଦଜ ) ଫଳବିଶେଷ, ବୃକ୍ଷବିଶେଷ ।

ଡିମ୍ବ, ବି. ପୁଂ. (ଡିମ୍ବ- ଅ) ଅଣ୍ଡା, ଡିମ, ପ୍ରଜା-ପତି ପ୍ରଭୃତି କୀଟାଦିର ଶୈଶବକାଳୀନ ଆକୃତିବିଶେଷ; ଅଳ୍ପବୟସ୍କ ଜନ୍ତୁ; ଭୟଜନିତ ଚିତ୍କାରାଦି; ବିବାଦ, କଳହ, ବିପ୍ଳବ; ଫୁସ୍ଫୁସ୍; ପ୍ଲୀହା ।

ଡିମ୍ବଜ, ବଂ. (ଡିମ୍ବ-ଜନ୍-ଅ) ଡିମ୍ବରୁ ଜାତ । ବି. ପକ୍ଷୀ ।

ଡିମ୍ଭ, ଡିମ୍ଭକ, ବି. ପୁଂ. (ଡିମ୍ଭ-ଅ, ଅକ) ଶିଶୁ । ବଂ. ମୂର୍ଖ, ଅଜ୍ଞ ।

ଡିବା, ଡିବିଆ, ବି. ( ଦେଶଜ ) ପାନ ରଖିବାର ପାତ୍ରବିଶେଷ; ଧାନ୍ୟାଦି ମାପିବାର ପାତ୍ର-ବିଶେଷ ।

ଡିବିଡିବି, ଅଂ. ଧ୍ୱନିବିଶେଷ, ଡିଣ୍ଡିମ ଧ୍ୱନି ।

ଡିହ, ବି. ( ଦେଶଜ ) ବାସଯୋଗ୍ୟ ଉଚ୍ଚ ଭୂମି; ଯଷ୍ଟ୍ୟଗ୍ର ଆଘାତ । ଯଥା—

ବାଡ଼ି ଧରି ବୁଢୀ କରଇ କୋହ,
ଯତ ଉହାଡକୁ ମାରଇ ଡିହ ।

ଡୁଇଁ, ବି. (ଦେଶଜ ) ଆକୁଳଯୁକ୍ତ, ବ୍ୟାକୁଳ । ଯଥା—

ଭାବତ ଜାଣ ମୋହନ ବଂଶୀରବେ ଦହର ସୁଖେ ଏ ବନେ,
ଡୁଇଁ ହେବୁ ସିନା ଥୟେ ଫଳ ବନା ନ ପଡୁଛି ଥୟ କାନେ ।

କ. ଚ.

ଡୁଣ୍ଡୁ, ଡୁଣ୍ଡୁଭ, ବି. ପୁଂ. (ଡୁଣ୍ଡୁ-ଭ) ଧଣ୍ଡସାପ ।

ଡୁଣ୍ଡୁଳ, ବି. ପୁଂ. (ଡୁଣ୍ଡୁ-ଳ) କ୍ଷୁଦ୍ର ପେଚକ ।

ଡୁବନ, ବି. ନ. (ଦେଶଜ) ନିମଜ୍ଜନ, ଅବଗାହନ, ଡୁବିବାର ।

ଡେଇଁବାର, କ୍ରି. ( ଦେଶଜ ) କୁଦିବାର, ଲମ୍ଫ ଦେବାର ।

ଡେକ୍‌ଚି, ବି. (ଯାବନିକ) ଧାତୁନିର୍ମିତ ପାକପାତ୍ର ।

ଡେଙ୍ଗା, ବଂ. (ଦେଶଜ) ଲମ୍ବା, ଅତି ଉଚ୍ଚ ।

ଡେଙ୍ଗୁରା, ବି. (ଦେଶଜ) ନାଗରା ।

ଡେଣା, ବି. (ଡୀ ଧାତୁଜ) ପକ୍ଷ, ହାତ ।

ଡେଣୁଆ, ବି. (ଦେଶଜ) ପଥରର ଢେଲା, ଟେକା, ଟେଳା, ବୋଲୁଅ ।

ଡେମ୍ଫ, (ଦେଶଜ) ଫଳ ଓ ଫୁଲର ନାଡ; ବାଦ୍ୟ-ବିଶେଷ ।

ଡେରା, (ଯାବନିକ) ବସ୍ତ୍ରନିର୍ମିତ ଗୃହ ।

ଡେରିବା, କ୍ରି. ( ଦେଶଜ ) ଶୁଣିବା, ପାତିବା । ଯଥା—

ଡେରି କର୍ଣ୍ଣପଥ, ଶୁଣ ମୋ ଅରଟ, ଅହେ ବାଞ୍ଛାକଳ୍ପତରୁ ।

ସଂଲଗ୍ନ କରି ଥୋଇବା ।

ଢେବଢ଼, ବିଂ. ( ଦେଶଜ ) ବାମଭାଗର ହସ୍ତ ପାଦାଦ ।

ଡୋମ, ଡମ, ବ. ନୀଚ ଜାତିବିଶେଷ, ବର୍ଣ୍ଣସଙ୍କର ଜାତିବିଶେଷ ।

ଡୋର, ଡୋରକ, ବ. ନ. (ଦୋଷ-ସ୍ରି-ଅ, କ ) ରଜ୍ଜୁ, ତାଗ ପ୍ରଭୃତି । ଯଥା—

> ଡୋର ଲଗି ଦେଇ ପଡବ
> ହେବଟି ଗ୍ରେର ପଦ ଅଚରଣ । ବ. ଚ.

ଡୋରିଆ, ବିଂ. ( ଦେଶଜ ) ଗାରଗାରକିଆ, ରେଖାରଞ୍ଜିତ ବସ୍ତ୍ରବିଶେଷ ।

ଡୋଳା, ବ. (ଦେଶଜ) ଅଖିର ପିତୁଳ । ଯଥା—

> ଡୋଳା ପ୍ରତିମାକୁ ପଦ୍ମେ ଭୂମିକୁ ଯଶୋଦା ଝଟନ୍ତ ପାଳ ।

ଡୋଲା, ବ. (ଦୁଲ୍- ଧାତୁଜ) ଖଟିଆ ।

ଡୋଲି, ବ. (ଦୁଲ୍ ଧାତୁଜ) ଖଟିଆ, ଶୁରପାଯ୍ୟା ଯୁକ୍ତ ଯାନବିଶେଷ; ଧାନ୍ୟାଦ ରଖିବାର ପାତ୍ର-ବିଶେଷ ।

ଢୌଲ, ବ. (ଦେଶଜ) ଢଙ୍ଗ, ଆଚରଣ, ରୀତି, ବ୍ୟବହାର; ଆକୃତି । ବିଂ. ସୁନ୍ଦର ।

—:୦:—

# ଢ

ଢ, ବ୍ୟଞ୍ଜନ ବର୍ଣ୍ଣର ଚତୁର୍ଦ୍ଦଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା । ବ. ପୁଂ. ଢକ୍କା; କୁକ୍କୁର; କୁକ୍କୁର ଲାଙ୍ଗୁଳ; ସର୍ପ; ଧ୍ୱନି । ବିଂ. ନିର୍ଗୁଣ ।

ଢକ୍କା, ବ. ସ୍ତ୍ରୀ. (ଢକ=ଅନୁକରଣ ଶବ୍ଦ-କୈ-ଅ) ପଟହ, ଢୋଲ, ବାଦ୍ୟଯନ୍ତ୍ରବିଶେଷ ।

ଢକ୍କାର, ବ. ହାକୁଟି ।

ଢଗ, ବ. ( ଦେଶଜ ) ସ୍ତ୍ରୀଲୋକ ବା ଇତର ସାଧାରଣ ଲୋକ ଯେଉଁ ସବୁ ପ୍ରବଚନ ଉଦାହରଣ ସ୍ଥଳରେ କହନ୍ତି । ଯଥା—

> ଯେତେ ମାଟିରୁ ମାଠ, ମୁଁ ସେହି ଦରପୋଡ଼ା କାଠ ।

ଢଙ୍ଗ, ବ. (ଦେଶଜ) ଆଚରଣ, ଭଙ୍ଗୀ ।

ଢଣା, ବିଂ. (ଦେଶଜ) ପରିଶ୍ରାନ୍ତ ।

ଢଣୁଆ, ବିଂ. (ଦେଶଜ) ଦୁଧିଆଳୀ । ବ. ଦୁହାଁଳ ଗାଈ ।

ଢପ, ବ. (ଦେଶଜ) ଛବି, ରୂପ, ଆକୃତି, ମୂର୍ତ୍ତି ।

ଢମ, ବ. (ଦେଶଜ) ଗର୍ବ, ବଡେଇ । ଯଥା—

> ଢମ ଯେ କଲା ଭୟେ କଂସ, ତାଳେ ଅସୁର ଗଲା ନାଶ ।

ଢମା, ବ. (ଦେଶଜ) ଗୋରୁ ଗାଈଙ୍କୁ ଖୁଆଇବାର ବାଉଁଶନିର୍ମିତ ପାତ୍ରବିଶେଷ ।

ଢମାଳୀ, ବ. (ଦେଶଜ) ଉପକଥା; କବିତ୍ୱହୀନ ରଚନା ।

ଢଳଢଳ, କ୍ରି. ବି. (ଦେଶଜ) ଅସ୍ଥିର, ଅଥୟ, ଚଞ୍ଚଳ ।

ଢଳବା, କ୍ରି. (ଦେଶଜ) ଝୁଲିବା । ଯଥା—

> ଢଳ ଢଳ ହୋଇ ଗେଲେ ଶୁଳଇ ରେ ।

ଢବା, ବିଂ. (ଦେଶଜ) ପୋଲା ।

ଢାଇ, ବ. (ଦେଶଜ) ମୁଣ୍ଡ ନଡେଇ ।

ଢାଉଁଢାଉଁ, ବ. (ଦେଶଜ) ବାଦ୍ୟଯନ୍ତ୍ରର ଶବ୍ଦ-ବିଶେଷ ।

ଢାଉ, ବ. (ଦେଶଜ) ଗେରୁ, ଲାଲମାଟି ।

ଢାକ, ବ. (ଦେଶଜ) ବୃହତ୍ ବାଦ୍ୟଯନ୍ତ୍ରବିଶେଷ ।

ଢାଙ୍କିବା, କ୍ରି. ( ଦେଶଜ ) ଆଚ୍ଛାଦନ କରିବା, ଘୋଡାଇ ରଖିବା । ଯଥା—

> ବାବୁ ଦୁଃଖିଧନ ନୀଳମଣି, କହାଇ କହାଇ ଡାକ ଡାକ ମୁହିଁ
> ଢାଙ୍କି ରଖିଅଛି ଏ ସବୁ ଲବଣି ।

ଢାଙ୍କୁଣି, ବ. ( ଦେଶଜ ) ଆବରଣ ପାତ୍ର, ଆଚ୍ଛାଦନ ।

ଢାଲ, ବ. ( ଯାବନିକ ) ଫଳକ, ତରବାରି ଆଘାତରୁ ଆପଣାକୁ ରକ୍ଷା କରିବା ନିମନ୍ତେ ଚର୍ମନିର୍ମିତ ଅସ୍ତ୍ରବିଶେଷ ।

ଢାଳ, ବ. ( ଦେଶଜ ) ଘଣ୍ଟିକୁମ୍ଭ, ଧାତୁନିର୍ମିତ ଜଳପାତ୍ରବିଶେଷ ।

ଢାଳବା, କ୍ରି. (ଦେଶଜ) ଭଡ଼ିବା, ଅଜାଡିବା ।

ଢାଲୁ, ବଂ. (ଦେଶଜ) ଗଡ଼ାଣିଯୁକ୍ତ ।

ଢାଳେ, ବଂ. (ଦେଶଜ) ବାରେ, ଥରେ ।
ଯଥା—

ଢାଳେ ତ ଢାଳିଲୁ କାହୁଁ କୃପାମୃତ ଝରକ ରେ । ବ. ଚ.

କଟାକ୍ଷେ । ଯଥା—

ଢାଳେ ଅମୃତ ଗଙ୍ଗ ଜାଣ ।

ଢିଙ୍କି, } ବ. (ଦେଶଜ) ଧାନ କୁଟିବାର ଯନ୍ତ୍ର-
ଢେଙ୍କି, } ବିଶେଷ ।

ଢିଙ୍କିଶାଳ, ବ. (ଦେଶଜ) ଯେଉଁ ଘରେ ଢିଙ୍କି ଥାଏ ।

ଢିପ, ବଂ. (ଦେଶଜ) ଉଚ୍ଚସ୍ଥାନ, କୁଦ ।

ଢିଗ୍ର, ବ. (ଦେଶଜ) ଢେଲ । ଯଥା—

ଢାଳେ ବୋଲି କଥା ମଥା ସେ ଜାଣନ୍ତି
ଢିଗ୍ର ବାଢ ଅମ୍ଭେମାନେ ।

ଢିଲା, ବଂ. (ହିନ୍ଦୀ) ଢ଼ିଗୁଲା, ଶିଥିଳ ।

ଢୁଳାଇବା, କ୍ରି. (ଦେଶଜ) ଉଙ୍ଘାଇବା, ନିଦ୍ରା-ବିଷ୍ଟ ହେବା । ଯଥା—

ଢୁଳାଇଲ ପରି ଚାଳି ଚଳେ ପଡ଼ଯିବା ରଥ,
ଦେଖିନ ସେ ବୃନ୍ଦକୁଞ୍ଜଦଣ୍ଡନା ଏ ସଙ୍କେରେ । ବ. ଚ.

ଢୁଳୁଢୁଳୁ, କ୍ରି. (ଦେଶଜ) ନିଦରେ ଘାରିହେବା ।

ଢେଉ, ବ. (ହିନ୍ଦୀ) ଲହରୀ, ତରଙ୍ଗ ।

ଢେଙ୍କା, ବ. (ଦେଶଜ) ଢିଗ୍ର ।

ଢେମଣା, ବ. (ଦେଶଜ) ଜାର, ଉପପତି; ସର୍ପ-ବିଶେଷ ।

ଢେର, ବଂ. ( ଯାବନିକ ) ବହୁତ, ଅଧିକ, ଯଥେଷ୍ଟ ।

ଢେଲା, ବ. (ଦେଶଜ) ଢେକା, ମୃତ୍ତିକାଖଣ୍ଡ ।

ଢୋକ, ବ. (ଦେଶଜ) ଏକ କଳ ଜଳ ।

ଢୋକିବା, କ୍ରି. (ଦେଶଜ) ପିଇବା, ଉଦରସ୍ଥ କରିବା । ଯଥା—

ଢୋକାଇ ଦେଲେ ଦୃଷ୍ଟି ଚକୋର ଚଞ୍ଚୁରେ
ଶୀତଳନ୍ତି ଚନ୍ଦ୍ରକାକୁ ବଡ଼ ଯାଏ ଛନ୍ତି ସଙ୍କେ ରେ । ବ. ଚ.

ଢୋକେ, କଂ. ( ଦେଶଜ ) ମନାଏ, ଟିକେ, କଳେ । ଯଥା—

ଢୋକେ ପି ପଣ୍ଡେ ନ୍ ।

ଢୋଲ, ଢୋଲକ, ବ. (ଢୁଲ୍-ଅ,କ) ବାଦ୍ୟ-ଯନ୍ତ୍ରବିଶେଷ; ପେଟ ।

ଢୋଲା, ବଂ. (ଢୋଲ ଶବ୍ଦଜ) ଫମ୍ପା; ପେଟୁ; ମୋଟା; ଯାହାର ପେଟ ବଡ଼ ।

ଢୋଲିଆ, ବଂ. (ଢୋଲ ଶବ୍ଦଜ) ଢୋଲବାଦ୍ୟ-କାରୀ ।

ଢୌକନ, ବ. ନ. ( ଢୌକ-ଅନ ) ଗମନ; ଉତ୍କୋଚ, ଲାଞ୍ଚ ।

—o—

# ଣ

ଣ, ବ୍ୟଞ୍ଜନ ବର୍ଣ୍ଣର ପଞ୍ଚଦଶ ବର୍ଣ୍ଣ, ଏହାର ଉଚ୍ଚା-ରଣ ସ୍ଥାନ ମୂର୍ଦ୍ଧା । ବ. ପୁଂ. ଜ୍ଞାନ; ନିର୍ଣ୍ଣୟ, ନିଶ୍ଚୟ; ଶିବ; ଭୂଷଣ; ଜଳାଶୟ ।

ଣ୍ୟ, ବ. ପୁଂ. ବ୍ରହ୍ମଲୋକସ୍ଥ ସରୋବରବିଶେଷ ।

—:o:—

# ତ

ତ, ବ୍ୟଞ୍ଜନ ବର୍ଣ୍ଣର ଷୋଡଶ ବର୍ଣ୍ଣ, ଏହାର ଉଚ୍ଚା-ରଣ ସ୍ଥାନ ଦନ୍ତ । (ତକ୍-ଅ) ବ.ପୁଂ. ଚୋର; ବୃଷ; ଅମୃତ; ପୁଚ୍ଛ; ମ୍ଳେଚ୍ଛ; କ୍ରୋଡ଼; ରତ୍ନ । ନ. ସ୍ତ୍ରୀ. ତରଣ; ପୁଣ୍ୟ ।

ତଅଁର, ବ. (ଦେଶଜ) ରଞ୍ଜିତ ସୂତ୍ରବିଶେଷ ।

ତଉଁସୀ, ବ. (ଦେଶଜ) ଲତାବିଶେଷ ।

ତକରାର, ବ. ( ଯାବନିକ ) କଳହ, କଜିଆ, ପୁନରୁକ୍ତି, ବାଦାନୁବାଦ ।

ତକିଆ, ବ. (ଦେଶଜ) ମାଣ୍ଡି, ଅପସର ।

ତକ୍ର, ବ. ନ. (ତକ୍-ର) ଦୁଗ୍ଧବିକାର, ଘୋଳ-ଦହି ।

ତକ୍ରପିଣ୍ଡ, ବି. ପୁଂ. ( ତକ୍ର-ପିଣ୍ଡ ) ତକ୍ରଦୁଷ୍ଟ ଦୁଗ୍ଧପିଣ୍ଡ, ଛେନା ।

ତକ୍ରାଟ, ବି. ପୁଂ. ( ତକ୍ର-ଅଟ ) ମନ୍ଥନଦଣ୍ଡ, ଘୁଅ ।

ତକ୍ତା, ବି. (ଯାବନକ) କାଠପଟା ।

ତକ୍ତପୋଷ, ବି. ( ଯାବନକ ) କାଷ୍ଠନିର୍ମିତ ଶଯ୍ୟାଧାର, ଖଟ ।

ତକ୍ଷ, ବି. ପୁଂ. (ତକ୍ଷ୍-ଅ) ଭରତରାଜାଙ୍କ ପୁତ୍ର ।

ତକ୍ଷକ, ବି. ପୁଂ. ( ତକ୍ଷ୍-ଅକ ) ନାଗବିଶେଷ; ବିଶ୍ୱକର୍ମା, ବଢେଇ; ନାଟ୍ୟାଧ୍ୟକ୍ଷ, ସୂତ୍ରଧର ।

ତକ୍ଷଣ, ବି. ନ. (ତକ୍ଷ୍-ଅନ) ରନ୍ଦା, ଗୁଣ୍ଡିବା ଅସ୍ତ୍ରବିଶେଷ; କୃଶକରଣ, ପରିଷ୍କାରକରଣ ।

ତକ୍ଷଶିଳା, ବି.ସ୍ତ୍ରୀ.(ତକ୍ଷ୍=ଗୁଣ୍ଡିବା-ଶିଳା=ପ୍ରସ୍ତର) ପଞ୍ଜାବର ଅନ୍ତର୍ଗତ ନଗରୀବିଶେଷ ।

ତକ୍ଷା, ବି. ପୁଂ. (ତକ୍ଷ୍-ଅ) ବିଶ୍ୱକର୍ମା, ବଢେଇ; ଚିତ୍ରା ନକ୍ଷତ୍ର ।

ତଗର, ବି. ପୁଂ. (ତ-ଗ-ଅ) ଟଗରଫୁଲର ଗଛ । ନ. ଟଗରଫୁଲ ।

ତଙ୍କ, ବି. ପୁଂ. (ତଙ୍କ୍-ଅ) ପଥରକଟା ଅସ୍ତ୍ର-ବିଶେଷ, ପୁଅର ।

ତଙ୍କନ, ବି. ନ. (ତଙ୍କ୍-ଅନ) ଦୁଃଖରେ ପ୍ରାଣ-ଧାରଣ ।

ତଜ୍‌ବୀଜ, ବି. ( ଆରବୀ ଭାଷା ) ବିଚାର, ଅନୁ-ସନ୍ଧାନ, ପରୀକ୍ଷା ।

ତଞ୍ଚକ, ବିଂ. ( ବଞ୍ଚକ ଶବ୍ଦଜ ) ପ୍ରବଞ୍ଚକ, ପ୍ରତାରକ ।

ତଞ୍ଚକତା, ବି. ସ୍ତ୍ରୀ. ( ତଞ୍ଚକ-ତା ) ପ୍ରବଞ୍ଚନା, ଶଠତା, ଛଳ, ଚତୁରୀ ।

ତଟ, ବି. ତ୍ରି. (ତଟ୍-ଅ) କୂଳ, ତୀର ।

ତଟକା, ବିଂ. (ଯାବନକ) ସଦ୍ୟ ।

ତଟସ୍ଥ, ବିଂ. ( ତଟ୍-ସ୍ଥା-ଅ ) ତୀରସ୍ଥ; ମଧ୍ୟସ୍ଥ; ଅପକ୍ଷପାତୀ; ସମୀପସ୍ଥ ; ବ୍ୟସ୍ତ; ଚମତ୍କୃତ ।

ତଟାକ, } ବି. ପୁଂ. (ତଟ୍-ଅକ, ଅଗ, ଅ )
ତଟାଗ, } ବୃହତ୍ ପୁଷ୍କରଣୀ ।
ତଡ଼ାଗ, }

ତଗାବି, (ଯାବନକ ) ଜମିର ଉନ୍ନତି ନିମନ୍ତେ ଜମିଦାର ବା ଗବର୍ଣ୍ଣମେଣ୍ଟ ପ୍ରଜାମାନଙ୍କୁ ଯେଉଁ କର୍ଜ ଦିଅନ୍ତି ।

ତଟିନୀ, ବି. ସ୍ତ୍ରୀ. (ତଟ-ଇନ୍-ଈ) ନଦୀ, ନିମ୍ନଗା ।

ତଟୀ, ବି. ସ୍ତ୍ରୀ. ତୀର, ତଟ ।

ତଡ଼, ବି. କିନାର, ପ୍ରାନ୍ତ ।

ତଡ଼ଛି, କ୍ରି. ବିଂ. ( ଦେଶଜ ) ଶୀଘ୍ର, ଚଞ୍ଚଳ । ଯଥା—

ଦକ୍ଷିଣ ପବନ ପ୍ରଭାବ ତୀରେ ମୁଁ ଉଠିଲି ଯାଇ ତଡ଼ଛି । ଦ. ବେ.

ତଡ଼ପନ, ବି. ଉଲ୍ଲଙ୍ଘନ ।

ତଡ଼ବଡ଼, ଝଟଛି, ଶୀଘ୍ର ।

ତଡ଼ାକା, ବି. ସ୍ତ୍ରୀ. ତଟ; ଅଘାତ ।

ତଡ଼ାଗ, ବି. ପୁଷ୍କରଣୀ, ବଡ଼ ପୋଖରୀ ।

ତଡ଼ାଘାତ, ବି. ପୁଂ. (ତଡ଼୍-ଅଘାତ) ବପ୍ରକ୍ରୀଡ଼ା; ତଟାଘାତ ।

ତଡ଼ିତ୍, ବି. ସ୍ତ୍ରୀ.(ତଡ଼୍-ଇତ୍) ବିଦ୍ୟୁତ୍, ବିଜୁଳି, ସୌଦାମିନୀ, ଚପଳା ।

ତଡ଼ିତ୍ୱାନ୍, ବିଂ. ( ତଡ଼ିତ୍-ବତ୍ ) ବିଦ୍ୟୁତ୍‌ଯୁକ୍ତ । ବି. ମେଘ ।

ତଡ଼ିଦ୍‌ଗର୍ଭ, ବି. ପୁଂ. (ତଡ଼ିତ୍-ଗର୍ଭ) ମେଘ ।

ତଡ଼ିନ୍ମୟ, ବିଂ. (ତଡ଼ିତ୍-ମୟ) ତଡ଼ିତ୍‌ସ୍ୱରୂପ ।

ତଡ଼ିବାର, କ୍ରି. (ଦେଶଜ) ବାହାର କରି ଦେବାର, ଦୂର କରି ଦେବାର ।

ତଣ୍ଟା, ବି. (ଦେଶଜ) ଅଡୁଆ; ଅପଦ ।

ତଣ୍ଟି, ବି. ପୁଂ. ( ଦେଶଜ ) କଣ୍ଠ, ଗଳଦେଶ, ବେକ ।

ତଣ୍ଟିଆ, ବି. ପୁଂ. ( ଦେଶଜ ) ଗଳାରେ ହସ୍ତ ଦେଇ ଠେଲି ଦେବାର ।

ତଣ୍ଡ, ବି. ପୁଂ. (ଦେଶଜ) ଜରିମାନା, ଅର୍ଥଦଣ୍ଡ ।

ତଣ୍ଡକ, ବି. ପୁଂ. ( ତଣ୍ଡ୍-ଅକ ) ଖଞ୍ଜନପକ୍ଷୀ; ଫେଣ; ବଞ୍ଚକ; ସମାସବହୁଳ ବାକ୍ୟ; ତରୁ-ସ୍କନ୍ଧ । ବିଂ. ବିନାଶକ; ବହୁରୂପୀ ।

ତଣ୍ଡି, ବି. ପୁଂ. ତୃଣବିଶେଷ; ଋଷିବିଶେଷ, ଏହାଙ୍କର ପୂର୍ବ ବେଦର ସୂତ୍ରକାରକ ।

ତଣ୍ଡୁ, ବି. ପୁଂ.(ତଣ୍ଡ୍-ଉ) ଶିବାନୁଚରବିଶେଷ ।
ତଣ୍ଡୁଳ, ବି. ପୁଂ. (ତଣ୍ଡ୍-ଉଳ) ଚାଉଳ ।
ତଣ୍ଡୁଳିକାଶ୍ରମ, ବି. ନ. ତୀର୍ଥବିଶେଷ ।
ତତ, ବିଂ. (ତନ୍-ତ) ବିସ୍ତୃତ, ବ୍ୟାପ୍ତ । ବି. ପୁଂ. ବାୟୁ । ନ. ବୀଣାଦି ବାଦ୍ୟ ।
ତତପତ୍ରୀ, ବି. ସ୍ତ୍ରୀ. ଯାହାର ବିସ୍ତୃତ ପତ୍ର, କଦଳୀ-ବୃକ୍ଷ ।
ତତଲ, ବିଂ. (ତପ୍ତ ଶବ୍ଦଜ) ଉଷ୍ଣ, ଗରମ ।
ତତଃ, ଅଂ. ( ତଦ୍-ତସ୍ ) ତଦନନ୍ତର; ସେହି ନିମିତ୍ତ; ତେବେ; ସେଠାରେ; ତହିଁରୁ ।
ତତସ୍ତ୍ୟ, ବିଂ. (ତତସ୍-ତ୍ୟ) ତତ୍ରତ୍ୟ, ତତ୍ରସ୍ଥ, ତଦାଗତ ।
ତତେଇବା, କ୍ରି. (ତପ୍ତ ଶବ୍ଦଜ) ଗରମକରିବାର ।
ତତ୍, ଅଂ. ସେ, ସେହି । ବିଂ. ବିସ୍ତାରକ ।
ତତ୍କାଳ, ବି. ପୁଂ. (ତଦ୍-କାଳ) ସେହି ସମୟ । କ୍ରି. ବିଂ. ଶୀଘ୍ର, ହଠାତ୍ ।
ତତ୍କାଳଧୀ, ବିଂ. ( ତତ୍କାଳ-ଧୀ ) ପ୍ରତ୍ୟୁତ୍ପନ୍ନ-ମତି, ଉପସ୍ଥିତବୁଦ୍ଧି ।
ତତ୍କାଳିକ, ବିଂ. (ତତ୍କାଳ-ଇକ) } ସେହି କାଳରେ ଯାହା
ତତ୍କାଳୀନ, ବିଂ. (ତତ୍କାଳ-ଈନ) } ଘଟିଅଛି, ତଦାନୀନ୍ତନ ।
ତତ୍କ୍ରିୟ, ବିଂ. (ତତ୍-କ୍ରିୟା) ବିନା ବେତନରେ ଯେ କର୍ମ କରେ ।
ତତ୍କ୍ଷଣ, ବି. ପୁଂ. (ତତ୍-କ୍ଷଣ) ସେହିକ୍ଷଣି ।
ତତ୍କ୍ଷଣାତ୍, ଅଂ. ( ତତ୍-କ୍ଷଣ-ଆତ୍ ) ସେହିକ୍ଷଣି, ଅବିଳମ୍ବେ ।
ତତ୍ତୁଲ୍ୟ, ବିଂ. ( ତଦ୍-ତୁଲ୍ୟ ) ତାହାର ସମାନ, ତତ୍ସମ, ତତ୍ସଦୃଶ ।
ତତ୍ପର, ବିଂ. (ତଦ୍-ପର) ଆସକ୍ତ; ବ୍ୟଗ୍ର; ନିପୁଣ; ତତ୍ପ୍ରଧାନ । କ୍ରି. ବିଂ. ତଦନନ୍ତର ।
ତତ୍ପରତା, ବି. ସ୍ତ୍ରୀ. ( ତଦ୍-ପର-ତା ) ସଚେଷ୍ଟତା, ଦକ୍ଷତା; ଯତ୍ନ; ଆଗ୍ରହ; ଅଭିନିବେଶ; ସତର୍କତା ।
ତତ୍ପରାୟଣ, ବିଂ. (ତଦ୍-ପରାୟଣ) ତଦାସକ୍ତ, ତଦାଶ୍ରିତ ।
ତତ୍ପୁରୁଷ, ବି.ପୁଂ.(ତଦ୍-ପୁରୁଷ) ସମାସବିଶେଷ, ଯେଉଁ ସମାସରେ ଦ୍ୱିତୀୟାଦି ବିଭକ୍ତି ପୂର୍ବରେ ଯୁକ୍ତ ଥାଏ; ପରମ ପୁରୁଷ ।
ତତ୍ତ୍ୱ, ବି. ନ. (ତଦ୍-ତ୍ୱ) ଈଶ୍ୱର; ବ୍ରହ୍ମ; ସତ୍ୟ; ତଥ୍ୟ; ପ୍ରକୃତ ଅବସ୍ଥା; ସ୍ୱରୂପ; ତତ୍ତ୍ୱ; ପଦାର୍ଥ; ଅନ୍ୱେଷଣ; ଅନୁସନ୍ଧାନ ।
ତତ୍ତ୍ୱଜିଜ୍ଞାସୁ, ବିଂ. ( ତତ୍ତ୍ୱ-ଜିଜ୍ଞାସୁ ) ଯେଉଁ ବ୍ୟକ୍ତି ବ୍ରହ୍ମ ବିଷୟ ଜାଣିବାକୁ ଇଚ୍ଛା କରେ ।
ତତ୍ତ୍ୱଜ୍ଞ, ବିଂ. ( ତତ୍ତ୍ୱ-ଜ୍ଞା-ଅ ) ତତ୍ତ୍ୱଜ୍ଞାନୀ, ଯାଥାର୍ଥବେତ୍ତା, ସ୍ୱରୂପଜ୍ଞ ।
ତତ୍ତ୍ୱଜ୍ଞାନୀ, ବିଂ. ( ତତ୍ତ୍ୱ-ଜ୍ଞା-ଇନ୍ ) ବ୍ରହ୍ମଜ୍ଞାନୀ, ବ୍ରହ୍ମଜ୍ଞ, ସ୍ୱରୂପଜ୍ଞ, ଯାଥାର୍ଥ୍ୟବେଦୀ ।
ତତ୍ତ୍ୱଦର୍ଶୀ, ବିଂ. (ତତ୍ତ୍ୱ-ଦର୍ଶିନ୍ ) } ତତ୍ତ୍ୱଜ୍ଞ,
ତତ୍ତ୍ୱବିଦ୍, ବିଂ. ( ତତ୍ତ୍ୱ-ବିଦ୍ ) } ଜ୍ଞାନୀ, ବିଚକ୍ଷଣ; ଦର୍ଶନଶାସ୍ତ୍ରଜ୍ଞ ।
ତତ୍ତ୍ୱାନୁସନ୍ଧାନ, ବି. ନ. ( ତତ୍ତ୍ୱ-ଅନୁସନ୍ଧାନ ) ପ୍ରକୃତ ଅବସ୍ଥାର ଅନ୍ୱେଷଣ, ତଥ୍ୟାନୁସନ୍ଧାନ ।
ତତ୍ତ୍ୱାନୁସନ୍ଧାୟୀ, ବିଂ. ତତ୍ତ୍ୱାନ୍ୱେଷୀ ।
ତତ୍ତ୍ୱାବଧାୟକ, ବିଂ. ( ତତ୍ତ୍ୱ-ଅବ-ଧେ-ଅକ ) ତତ୍ତ୍ୱାବଧାନକାରୀ ।
ତତ୍ତ୍ୱାବଧାରକ, ବିଂ. ( ତତ୍ତ୍ୱ-ଅବ-ଧୃ-ଇ-ଅକ ) ଯେ କୌଣସି ବିଷୟରେ ତତ୍ତ୍ୱ ନିରୂପଣ କରେ; ରକ୍ଷଣାବେକ୍ଷଣକର୍ତ୍ତା, ଅଭିଭାବକ ।
ତତ୍ତ୍ୱାବଧାନ, ବି. ନ. ( ତତ୍ତ୍ୱ-ଅବଧାନ ) କୌଣସି ବିଷୟ ପ୍ରକୃତରୂପେ ସମ୍ପନ୍ନ ହେଉ-ଅଛି କି ନାହିଁ ଏ ବିଷୟରେ ଅବଲୋକନ, ଅଧ୍ୟକ୍ଷତା କରିବା ।
ତତ୍ତ୍ୱାବଧାରଣ, ବି. ନ. ( ତତ୍ତ୍ୱ-ଅବଧାରଣ ) ଯଥାର୍ଥ ବୋଧ, ବିଷୟାଦିର ସ୍ୱରୂପ ନିର୍ଣ୍ଣୟ ।
ତତ୍ର, ଅଂ. (ତଦ୍-ତ୍ର) ସେଠାରେ, ତଦ୍ବିଷୟରେ ।
ତତ୍ରତ୍ୟ, ବିଂ. ( ତତ୍ର-ତ୍ୟ ) ତତ୍ସ୍ଥାନଜାତ, ସେଠାର, ସେହି ସ୍ଥାନସ୍ଥ ।

ତଥାପି, ଅ. (ତଥ-ଅପି) ତଥାଚ, ତେବେହେଁ ।

ତଥା, ଅ. ( ତଦ୍-ଥା ) ସେହି ପ୍ରକାର; ତଥ୍ୟ; ସତ୍ୟ; ଏବଂ, ଅଧିକ; ତନ୍ନିମିତ୍ତ; ତହିଁରେ; ସ୍ୱୀକାର; ସାଦୃଶ୍ୟ, ସମୁଚ୍ଚୟ; ନିଶ୍ଚୟ ।

ତଥାଗତ, ବଂ. (ତଥା-ଅଗତ) ସେହି ପ୍ରକାର ଅସିବାର । ବ. ପୁଂ. ବୁଦ୍ଧ ।

ତଥାଚ, ତଥାପି, ଅ. (ତଥା-ଚ, ଅପି) ତଥାପି, ତେବେହେଁ ।

ତଥାବିଧ, ବଂ. ( ତଥା-ବିଧା ) ତାଦୃଶ, ସେହି-ପ୍ରକାର ।

ତଥାସ୍ତୁ, ଅ. (ତଥା-ଅସ୍ତୁ ) ତାହା ହେଉ ।

ତଥି, ସ. (ତତ୍ ଶବ୍ଦଜ) ତହିଁ, ସେଠାରେ ।

ତଥୈବ, ଅ. (ତଥା-ଏବ) ସେହି ପ୍ରକାର ।

ତଥୈବଚ, ଅ. (ତଥା-ଏବ-ଚ) ସେହିରୂପରେ ହେବାର, ସନ୍ତପୂର୍ବକ ନୁହେ ।

ତଥ୍ୟ, ବ. ନ. ( ତଥା-ଯ ) ଯଥାର୍ଥ, ପ୍ରକୃତ ଅବସ୍ଥା । ବଂ. ସତ୍ୟ, ପ୍ରକୃତ ।

ତଦ୍, ସ. ( ତନ୍-ଅଦ୍ ) ସେ, ସେହି, ପ୍ରସିଦ୍ଧ । ନ. ବ୍ରହ୍ମ । ଅ. ତନ୍ନିମିତ୍ତ, ସେହି ହେତୁ ।

ତଦ୍‌ବୀର, (ହିନ୍ଦୀ) ଉଦ୍‌ଯୋଗ, ଚେଷ୍ଟା, ଯତ୍ନ ।

ତଦତିରିକ୍ତ, ବଂ. ( ତଦ୍-ଅତିରିକ୍ତ ) ତାହା ଅପେକ୍ଷା ଅଧିକ ।

ତଦନନ୍ତର, ଅ. (ତଦ୍-ଅନନ୍ତର) ତହିଁଉତ୍ତାରୁ, ତାହା ପରେ ।

ତଦନୁଗତ, ବଂ. ( ତଦ୍-ଅନୁଗତ ) ତାହାର ଅନୁଗତ ।

ତଦନୁଯାୟୀ, ବଂ. (ତଦ୍-ଅନୁଯାୟୀ) ସେହିପରି ।

ତଦନୁରୂପ, ବଂ. ( ତଦ୍-ଅନୁରୂପ ) ସେହିପରି, ତାଦୃଶ, ତତ୍ତୁଲ୍ୟ ।

ତଦନୁସାରୀ, ବଂ. ସେହି ଅନୁସାରେ ଯେ ଚଳେ ।

ତଦନ୍ତ, ବ. ନ. ( ତଦ୍-ଅନ୍ତ ) ଶେଷ, ସୀମା; ଅନୁସନ୍ଧାନ, ତଜ୍ଞ । ବଂ. ତତ୍ପରେ, ତଦ-ନନ୍ତର ।

ତଦପି, ଅ. (ତଦ୍-ଅପି) ତଥାପି, ସେହି ମଧ୍ୟ ।

ତଦ୍‌ବତ୍, ବଂ.(ତଦ୍-ବତ୍) ତତ୍ତୁଲ୍ୟ, ତତ୍ସଦୃଶ, ସେହିପରି ।

ତଦବଧି, କ୍ରି. ବଂ. ( ତଦ୍-ଅବଧି ) ସେହି ସମୟରୁ, ତଦାପ୍ରଭୃତି ।

ତଦବସ୍ଥ, ବଂ. (ତଦ୍-ଅବସ୍ଥା) ସେହିପରି, ଏକ-ଦଶାପନ୍ନ, ତଦ୍ଭାବାପନ୍ନ ।

ତଦର୍ଥ, କ୍ରି. ବଂ. ( ତଦ୍-ଅର୍ଥ ) ତନ୍ନିମିତ୍ତ, ସେହିହେତୁ ।

ତଦା, ଅ. ( ତଦ୍-ଦା ) ସେହି ସମୟରେ, ସେତେବେଳେ ।

ତଦାନୀଂ, ଅ. (ତଦ୍-ଦାନୀଂ) ସେତେବେଳେ ।

ତଦାନୀନ୍ତନ, ବଂ. ( ତଦାନୀମ୍-ତନ ) ତତ୍-କାଳୀନ, ସେହି ସମୟରେ ଯାହା ଘଟିଅଛି ।

ତଦୀୟ, ବଂ.(ତଦ୍-ଈୟ) ତତ୍ସମ୍ବନ୍ଧୀୟ, ତାହାର ଅଧିକୃତ ।

ତଦୁତ୍ତର, ବ. (ତଦ୍-ଉତ୍ତର) ତାହାର ଉତ୍ତର ।

ତଦ୍‌ଗୁଣ, ବ. ପୁଂ. (ତଦ୍-ଗୁଣ) କାବ୍ୟ ଅଳଙ୍କାର-ବିଶେଷ; ତାହାର ଗୁଣ ।

ତଦ୍‌ଗତ, ବଂ. (ତଦ୍-ଗତ) ଏକାଗ୍ର, ଅନନ୍ୟବିଷ୍ଟ, ତଦାସକ୍ତ ।

ତଦ୍ଦଣ୍ଡ, କ୍ରି. ବଂ. ( ତଦ୍-ଦଣ୍ଡ ) ତତ୍କ୍ଷଣାତ୍, ଅବିଳମ୍ବରେ, ସେହି ମୁହୂର୍ତ୍ତରେ ।

ତଦ୍ଧନ, ବଂ. (ତଦ୍-ଧନ) କୃପଣ, ବ୍ୟୟକୁଣ୍ଠ ।

ତଦ୍ବିଧ, ବଂ. ( ତଦ୍-ବିଧା ) ତଥାବିଧ, ସେହି-ପ୍ରକାର ।

ତଦ୍ଭାବ, ବ. ପୁଂ. ( ତଦ୍-ଭବ ) ତଦ୍ବିଷୟକ ଚିନ୍ତା ।

ତଦ୍ଭିନ୍ନ, ବଂ. (ତଦ୍-ଭିନ୍ନ) ତାହାଠାରୁ ଅନ୍ୟ, ତଦ୍ବ୍ୟତିରିକ୍ତ ।

ତଦ୍ରୂପ, ବଂ. (ତଦ୍-ରୂପ) ତଦ୍ବିଧ, ସେହିରୂପ, ସେହିପ୍ରକାର ।

ତଦ୍ଧିତ, ବ. ନ. (ତଦ୍-ହିତ ) ଶବ୍ଦର ଉତ୍ତର ପ୍ରତ୍ୟୟ କରି ଯେଉଁ ସବୁ ପଦ ନିଷ୍ପନ୍ନ ହୁଏ । ବଂ. ତଦ୍ବିଷୟର ଉପଯୁକ୍ତ ।

ତନଖା, ବ. (ହନ୍ଦୀ) ବେତନ, ଦରମା, ଖଟି ।
ତନୟ, ବ. ପୁଂ. (ତନ୍=ବସ୍ତାର କରବା-ଅ=ଯଶ, ବଂଶ ଇତ୍ୟାଦ ବସ୍ତାର କରବା-ଅୟ ) ପୁତ୍ର ।
ତନୟା, ବ. ସ୍ତ୍ରୀ. (ତନୟ-ଆ) କନ୍ୟା, ଝିଅ ।
ତନୟିତ୍ନୁ, ବ. ପୁଂ. (ତନ-ଇତ୍ନୁ) ବଜ୍ର; ମେଘ, ବଳାହକ ।
ତନଷ୍ଠ, ବଂ. (ତନୁ-ଇଷ୍ଠ) କ୍ଷୀଣତର, ଅଭକୃଶ; ଅତକ୍ଷୁଦ୍ର, ଅତ୍ୟଳ୍ପ ।
ତନୁଃ, ବ. ନ. (ତନ୍-ଉସ୍) ଶରୀର, ଦେହ ।
ତନୁ, ତନୂ, ବ. ସ୍ତ୍ରୀ. (ତନ୍-ଉ, ଊ) ଶରୀର, ମୂର୍ତ୍ତି । ବଂ. ଅଳ୍ପ; କୃଶ; ସୂକ୍ଷ୍ମ; କୋମଳ ।
ତନୁଚ୍ଛଦ, ବ. ପୁଂ. (ତନୁ-ଛଦ) ବର୍ମ, କବଚ, ସାଞ୍ଜୁ ।
ତନୁଚ୍ଛାୟ, ବଂ. (ତନୁ-ଛାୟା) ଅଳ୍ପଛାୟାବଶିଷ୍ଟ ।
ତନୁଜ, ତନୂଜ, ବ. ପୁଂ. (ତନୁ-ଜ; ତନୂ-ଜ) ପୁତ୍ର, ପୁଅ । ଯଥା—

ବହନ୍ତ ବଂଶରେ ତନୁଜ, ଶୁଣ ପରୀକ୍ଷ ମହାରାଜ ।

ତନୁଜା, ବ. ସ୍ତ୍ରୀ. ( ତନୁ-ଜା ) କନ୍ୟା, ଝିଅ, ଦୁହତା ।
ତନୁତ୍ୟାଗ, ବ. ପୁଂ. ( ତନୁ-ତ୍ୟଜ୍-ଅ ) ଦେହ-ତ୍ୟାଗ, ମୃତ୍ୟୁ, ମରଣ ।
ତନୁଭୃତ୍, ବ. ପୁଂ. (ତନୁ-ଭୃତ୍) ଦେହୀ, ଜୀବ ।
ତନୁମଧ୍ୟା, ବ. ସ୍ତ୍ରୀ. (ତନୁ-ମଧ୍ୟା) କୃଶାଙ୍ଗୀ ।
ତନୁରସ, ବ. ପୁଂ. (ତନୁ-ରସ) ସ୍ୱେଦ, ଘର୍ମ ।
ତନୁରୁହ, ବ. ପୁଂ. (ତନୁ-ରୁହ) ଲୋମ; ପକ୍ଷିର ପର ।
ତନୁତ୍ରାର, ବ. ପୁଂ. (ତନୁ-ତ୍ରୃ-ଅ) ବର୍ମ, ସାଞ୍ଜୁ ।
ତନୁସଞ୍ଚାରଣୀ, ବ. ସ୍ତ୍ରୀ. ( ତନୁ-ସଞ୍ଚାରଣୀ ) ବାଳିକା ସ୍ତ୍ରୀ ।
ତନୂନ, ବ. ପୁଂ. (ତନୁ-ଊନ) ବାୟୁ, ପବନ ।
ତନୂନପ, ବ. ନ. (ତନୁ-ଊନ-ପ) ଘୃତ, ଘିଅ ।
ତନୂରୁହ, ତନୁରୁହ, ବ. ପୁଂ. ନ. (ତନୂ-ରୁହ୍-ଅ) ଲୋମ । ପୁଂ. ସ୍ତ୍ରୀ. ପୁତ୍ର; କନ୍ୟା ।

ତନ୍ତ, ବ. (ତନ୍ ଧାତୁଜ) ଲୁଗା ବୁଣିବାର ଯନ୍ତ୍ର ।
ତନ୍ତୀ, ବ. ( ତନ୍ ଧାତୁଜ ) ଯେ ଲୁଗା ବୁଣେ, ତନ୍ତୁବାୟ ।
ତନ୍ତୁ, ବ. ପୁଂ. (ତନ୍-ତୁ) ସୂତ୍ର, ସୂତା, ତାର ।
ତନ୍ତୁକ, ବ. ପୁଂ. ସର୍ଷପ, ସୋରଷ । ସ୍ତ୍ରୀ. ଶିରା, ନାଡ଼ୀ ।
ତନ୍ତୁକାଷ୍ଠ, ବ. ନ. ( ତନ୍ତୁ-କାଷ୍ଠ ) ଯାହାଦ୍ୱାରା ତନ୍ତୀମାନେ ସୂତା ପରଷ୍କାର କରନ୍ତି ।
ତନ୍ତୁକୀ, ବ. ସ୍ତ୍ରୀ. (ତନ୍ତୁ-କୀ) ନାଡ଼ୀ, ଶିରା, ଧମନୀ ।
ତନ୍ତୁକୀଟ, ବ. ପୁଂ. ପୋକବଶେଷ, ବୁଢ଼ିଆଣି, ଗୋଟିପୋକ ।
ତନ୍ତୁନାଗ, ବ. ପୁଂ. (ତନ୍ତୁ-ନାଗ) ଗ୍ରାହ,ହାଙ୍ଗର ।
ତନ୍ତୁନାଭ, ବ. ସ୍ତ୍ରୀ. (ତନ୍ତୁ-ନାଭ-ଅ) ବୁଢ଼ିଆଣି ପୋକ, ମାଙ୍କଡ଼ସା ।
ତନ୍ତୁପର୍ବ, ବ. ନ. (ତନ୍ତୁ-ପର୍ବନ୍) ଶ୍ରାବଣୀ ପୂର୍ଣ୍ଣିମା ।
ତନ୍ତୁବାପ, ତନ୍ତୁବାୟ, ବ. ପୁଂ. ( ତନ୍ତୁ-ବପ୍-ଅ, ବେ-ଅ ) ତନ୍ତୀ; ମାଙ୍କଡ଼ସା ।
ତନ୍ତୁବଗ୍ରହା, ବ. ସ୍ତ୍ରୀ. (ତନ୍ତୁ-ବଗ୍ରହ) କଦଳୀବୃକ୍ଷ ।
ତନ୍ତୁଭ, ବ. ପୁଂ. (ତନ୍ତୁ-ଭା-ଅ) ସର୍ଷପ; ବାଛୁର ।
ତନ୍ତୁସାର, ବ. ପୁଂ. (ତନ୍ତୁ-ସାର) ଗୁଆଗଛ ।
ତନ୍ତ୍ର, ବ. ନ. (ତନ୍-ତ୍ର) ଶିବୋକ୍ତ ଗ୍ରନ୍ଥବଶେଷ, ଶିବ ଓ ଶକ୍ତିର ଉପାସନାବୋଧାୟକ ବେଦର ଶାଖାବଶେଷ; ସିଦ୍ଧାନ୍ତ, ମୀମାଂସା; ଔଷଧ; କାରଣ; ଉପାୟ; ସୈନ୍ୟ; ରାଜ୍ୟ; ସୂତ୍ର; ତନ୍ତୁ-ବାୟ; ବ୍ୟବସାୟ । ବଂ. ଅଧୀନ, ଆୟତ୍ତ ।
ତନ୍ତ୍ରବାପ, ତନ୍ତ୍ରବାୟ, ବ. ପୁଂ. ( ତନ୍ତ୍ର-ବାପ; ବେ-ଅ) ତନ୍ତୀ ।
ତନ୍ତ୍ରସଂସ୍ଥା, ତନ୍ତ୍ରସଂସ୍ଥିତ, ବ. ସ୍ତ୍ରୀ. ରାଜ୍ୟଶାସନ-ପ୍ରଣାଳୀ । ( System of Government)
ତନ୍ତ୍ରିପାଳ, ବ. ପୁଂ. ବରାଟରାଜ୍ୟରେ ବାସକାଳରେ ସହଦେବ ଏହ ନାମ ଧାରଣ କରିଥିଲେ ।
ତନ୍ତ୍ରୀ, ବ. ନ. (ତନ୍ତ୍ର-ଈ) ବୀଣା; ରଜ୍ଜୁ ।
ତନ୍ଦ୍ରା, ବ. ସ୍ତ୍ରୀ. (ତନ୍ଦ୍ର-ଆ) ଅଳ୍ପନଦ୍ରା, ନଦ୍ରାବେଶ ।

ତନ୍ଦ୍ରାକ୍ତ, ତନ୍ଦ୍ରିତ, ବଂ. ( ତନ୍ଦ୍ରା-ଅକ୍ତ, ଇତ ) ନିଦ୍ରାକ୍ତ; କ୍ଲାନ୍ତ ।

ତନ୍ଦ୍ରି, ତନ୍ଦ୍ରୀ, ତନ୍ଦ୍ରିକା, ବ. ସ୍ତ୍ରୀ. (ତନ୍ଦ୍ର-ଇ,ଈ, ଇକ-ଆ) ନିଦ୍ରାବେଶ; ଆଳସ୍ୟ; ମୂର୍ଚ୍ଛା ।

ତନ୍ନତନ୍ନ, କ୍ରି. ବଂ. (ତଦ୍-ନ,ଦ୍ୱିତ୍ୱ) ତାହା ନୁହେ ତାହା ନୁହେ ; ଖଣ୍ଡଖଣ୍ଡ ; ସୂକ୍ଷ୍ମାନୁସୂକ୍ଷ୍ମ, ପୁଙ୍ଖାନୁପୁଙ୍ଖ ।

ତନ୍ମୟ, ବଂ. (ତଦ୍-ମୟ) ତଦାତ୍ମକ, ତତ୍ସ୍ୱରୂପ ।

ତନ୍ମାତ୍ର, କ୍ରି. ବଂ. ( ତଦ୍-ମାତ୍ର ) ସେହିମାତ୍ର, କେବଳ ତାହା । ବ. ସାଙ୍ଖ୍ୟମତରେ ସୂକ୍ଷ୍ମ ପଞ୍ଚଭୂତ ।

ତନ୍ୱୀ, ବଂ. (ତନୁ-ଈ) କ୍ଷୀଣା, କୃଶାଙ୍ଗୀ ।

ତପଃ, ବ. ନ. (ତପ୍-ଅସ୍ ) ତପସ୍ୟା ।

ତପ, ବ. ନ. (ତପ୍-ଅ) ଗ୍ରୀଷ୍ମକାଳ ।

ତପତୀ, ବ. ସ୍ତ୍ରୀ. ( ତପ୍-ଅତ-ଈ ) ସୂର୍ଯ୍ୟପତ୍ନୀ, ଛାୟା; ନଦୀବିଶେଷ ।

ତପନ, ବ. ପୁଂ. (ତପ୍-ଅନ) ସୂର୍ଯ୍ୟ ; ଗ୍ରୀଷ୍ମଋତୁ ; ତାପ ; ସୂର୍ଯ୍ୟକାନ୍ତମଣି ; ଅର୍କବୃକ୍ଷ । ବଂ. ସନ୍ତାପଜନକ ।

ତପନତନୟ, ବ. ପୁଂ. ( ତପନ-ତନୟ ) ଯମ; କର୍ଣ୍ଣ ।

ତପନତନୟା, ତପନଜା, ବ. ସ୍ତ୍ରୀ. ( ତପନ-ତନୟ-ଆ; ତପନ-ଜନ୍-ଅ ) ଶମୀ; ଯମୁନା ନଦୀ ।

ତପନୀୟ, ବଂ. (ତପ୍-ଅନୀୟ) ତାପଯୋଗ୍ୟ । ବ. ସ୍ୱର୍ଣ୍ଣ । ଯଥା—

ତପନୀୟ ଗୋର ବରଣ ଜାଣି, ତନ୍ତପତନ ପଦ୍ମପତ୍ର ଅଣି।
ବ. ଚ.

ତପନେଷ୍ଟ, ବ. ନ. (ତପନ-ଇଷ୍ଟ) ତାମ୍ର,ତମ୍ବା ।

ତପଶ୍ଚରଣ, ତପଶ୍ଚାରଣ, } ବ. ନ. (ତପଃ-ଚରଣ, ଚାରଣ) ତପସ୍ୟାର ଅନୁଷ୍ଠାନ, ତପଃସାଧନ ।

ତପସ, ବ. ପୁଂ. (ତପ୍-ଅସ) ଚନ୍ଦ୍ର; ପକ୍ଷୀ; ସୂର୍ଯ୍ୟ ।

ତପସ୍ତକ୍ଷ, ବ. ପୁଂ. (ତପସ୍-ତକ୍ଷ) ଇନ୍ଦ୍ର, ମରୁତ୍ୱାନ୍ ।

ତପସ୍ୟ, ବ. ପୁଂ. ( ତପସ୍-ଯ ) ଫାଲ୍‌ଗୁନ ମାସ; କୁନ୍ଦପୁଷ୍ପ; ଅର୍ଜୁନ । ବଂ. ତପସ୍ୟାରତ ।

ତପସ୍ୟା, ବ. ସ୍ତ୍ରୀ. (ତପସ୍-ଯ-ଆ) ବ୍ରତଚର୍ଯ୍ୟା ।

ତପସ୍ୱୀ, ବ. ପୁଂ. ( ତପସ୍-ବିନ୍ ) ତାପସ, ମୁନି । ବଂ. ଧାର୍ମିକ; କ୍ଲେଶସହିଷ୍ଣୁ ।

ତପାତ୍ୟୟ, ବ. ପୁଂ. (ତପ-ଅତ୍ୟୟ) ବର୍ଷାକାଳ, ବର୍ଷା ସମୟ ।

ତପୂ,ତପୂ,ବଂ. ତାହାରପୂର୍ବ,ତତ୍ପୂର୍ବ,
ତପ, ବଂ. ତାହାର ପଶ୍ଚିମ, ତତ୍ପଶ୍ଚିମ,
ତଦ, ବଂ. ତାହାର ଦକ୍ଷିଣ, ତଦ୍ଦକ୍ଷିଣ, } ଏପରି ବ୍ୟବହାର ଉଡ଼ିଆରେ ହୋଇଥାଏ ।

ତପୋଧନ, ତପୋନିଧି, ବ. ପୁଂ. (ତପସ୍-ଧନ, ନିଧି ) ତାପସ, ଯୋଗୀ, ମୁନି, ଋଷି ।

ତପୋବଟ, ବ. ପୁଂ. ( ତପସ୍-ବଟ ) ବ୍ରହ୍ମାବର୍ତ୍ତ-ଦେଶ ।

ତପୋବନ, ବ. ନ. ମୁନିମାନଙ୍କର ମଠ ବା ଆଶ୍ରମ ।

ତପୋରାଶି, ବ. ପୁଂ. ତପସ୍ୱୀ ।

ତପୋଲୋକ, ବ. ପୁଂ. ପୃଥିବୀର କୋଟିଯୋଜନ ଊର୍ଦ୍ଧ୍ୱସ୍ଥିତ ଲୋକବିଶେଷ ।

ତପ୍ତ, ବଂ. (ତପ୍-ତ) ଉଷ୍ମ, ତାପଯୁକ୍ତ; ଖେଦ-ଯୁକ୍ତ ।

ତପ୍ତକୁମ୍ଭ, ବ. ପୁଂ. (ତପ୍ତ-କୁମ୍ଭ) ନରକବିଶେଷ ।

ତପ୍ତକୃଚ୍ଛ୍ର, ବ. ପୁଂ. (ତପ୍ତ-କୃଚ୍ଛ୍ର) ବ୍ରତବିଶେଷ, ଯେଉଁ ବ୍ରତରେ ତିନି ଦିବସ ଉଷ୍ଣ ଦୁଗ୍ଧ, ଘୃତ ଏବଂ ଜଳ ପାନ କରିବାକୁ ହୁଏ ।

ତଫାତ୍, ବ. (ଆରବୀ) ପୃଥକ୍, ଦୂରତ୍ୱ । ବଂ. ଦୂର, ଭିନ୍ନ ।

ତବ୍‌ଲା, ବ. (ଆରବୀ) ବାଦ୍ୟଯନ୍ତ୍ରବିଶେଷ ।

ତବ, ସ. (ଯୁଷ୍ମଦ୍ ଶବ୍ଦଜ) ତୁମ୍ଭର ।

ତମଃ, ବ. ନ. ( ତମ୍-ଅସ୍ ) ତମୋଗୁଣ; ଅନ୍ଧକାର; ନରକ; ପାପ; ଶୋକ; ରାହୁ ।

ତମ, ବ. ପୁଂ. ( ତମ୍-ଅ ) ତମୋଗୁଣ; ରାହୁ; ଅନ୍ଧକାର । ବଂ. ଅଧିକ ( ଅନେକ ) ଙ୍କ ମଧ୍ୟରେ ଉତ୍କର୍ଷ ବା ଅପକର୍ଷ ବୁଝିବାପାଇଁ ଗୁଣବାଚକ ଶବ୍ଦର ଉତ୍ତର "ତମ ପ୍ରତ୍ୟୟ ହୁଏ ।"

ତମର, ବ. ନ. (ତମ୍-ଅର) ସୀସକ, ସୀସା ।

ତମସ, ବ. ନ.(ତମ୍-ଅସ) ଅନ୍ଧକାର ।

ତମସା, ବ. ସ୍ତ୍ରୀ. ନଦୀବିଶେଷ ।

ତମସୁକ, (ଯାବନିକ) ଖତ, ଅଧମର୍ଣ୍ଣ ରାଜକୀୟ ପତ୍ରରେ ଯାହା ଲେଖି ଦେଇ ଉତ୍ତମର୍ଣ୍ଣ ନିକଟରୁ ଋଣସ୍ୱରୂପ ଅର୍ଥାଦି ଗ୍ରହଣ କରେ, ଦସ୍ତାବୀଜବିଶେଷ ।

ତମସ୍ତତ, ବ. ( ତମସ୍-ତତ ) ଅନ୍ଧକାରରାଶି, ଘୋର ଅନ୍ଧକାର ।

ତମସ୍ୱିନୀ, ବ. ସ୍ତ୍ରୀ. (ତମସ୍-ବିନ୍-ଈ) ଅନ୍ଧକାରମୟୀ ରାତ୍ରି; ଦାରିଦ୍ର୍ୟ ।

ତମା, ବ. ସ୍ତ୍ରୀ. (ତମ୍-ଆ) ରାତ୍ରି; ତମାଳବୃକ୍ଷ ।

ତମାଖୁ, ବ. ନ. ( ତାମ୍ରକୂଟ ଶବ୍ଦଜ) ଧୂଆଁପତ୍ର ବା ନାସପତ୍ର ।

ତମାମ୍, ବଂ. (ଆରବୀ) ସମ୍ପୂର୍ଣ୍ଣ, ସମସ୍ତ, ପୂର୍ଣ୍ଣ ।

ତମାଲ, ବ. ପୁଂ. ( ତମ୍-ଆଲ ) ବୃକ୍ଷବିଶେଷ, ସତ୍ୟାମ୍ବା ଗଛ; ଚନ୍ଦନ ତିଳକ; ଖଡ୍ଗ । ବୃକ୍ଷାର୍ଥରେ । ଯଥା—

> ନୀଳ ଦଶେ ଗିର ଡାଳୀ-ତମାଳମାଳାରେ । କ. ବ.

ତମାଲକ, ବ. ନ. ( ତମାଲ-କ ) ତେଜପତ୍ର । ପୁଂ. ତମାଲବୃକ୍ଷ ।

ତମାଲପତ୍ର, ବ. ନ. ( ତମାଲ-ପତ୍ର ) ତିଳକ; ସତ୍ୟାମ୍ବା ଗଛର ପତ୍ର ।

ତମି, ତମୀ, ବ. ସ୍ତ୍ରୀ. (ତମ-ଇ, ଈ) ରାତ୍ରି ।

ତମିସ୍ର, ବ. ପୁଂ. (ତମସ୍-ର) ଅନ୍ଧକାର; କ୍ରୋଧ; ଅଜ୍ଞାନ । ବଂ. ଅନ୍ଧକାରଯୁକ୍ତ ।

ତମିସ୍ରପକ୍ଷ, ବ. ପୁଂ. କୃଷ୍ଣପକ୍ଷ ।

ତମୋମୟ, ବଂ. ( ତମସ୍-ମୟ ) ଅନ୍ଧକାରାଚ୍ଛନ୍ନ; ଅଜ୍ଞାନାବୃତ; ଅହଙ୍କାରପରିପୂର୍ଣ୍ଣ ।

ତମୋଲିପ୍ତୀ, ବ. ସ୍ତ୍ରୀ. ( ତମଃ-ଲିପ୍ତ-ଈ ) ତମଲୁକଦେଶ ।

ତମୋବିକାର, ବ. ନ. (ତମଃ-ବିକାର) ରୋଗ, ପୀଡ଼ା ।

ତମୋହର, ବ. ପୁଂ. (ତମଃ-ହର) ଚନ୍ଦ୍ର । ବଂ. ତମୋନାଶକ ।

ତମୋଗୁଣ, ବ. ପୁଂ. ( ତମସ୍-ଗୁଣ ) ପ୍ରକୃତିର ତୃତୀୟ ଗୁଣ, ଏହି ଗୁଣର ପ୍ରାଧାନ୍ୟ ହେଲେ ମନୁଷ୍ୟ କାମକ୍ରୋଧାଦି ନୀଚ ପ୍ରକୃତିର ବଶବର୍ତ୍ତୀ ହୁଅନ୍ତି ।

ତମୋଘ୍ନ, ବ. ପୁଂ. (ତମଃ-ହନ୍-ଅ) ଅଗ୍ନି; ଚନ୍ଦ୍ର; ସୂର୍ଯ୍ୟ; ପ୍ରଦୀପ; ଜ୍ଞାନ; ବିଷ୍ଣୁ; ଶିବ । ବଂ. ତମୋନାଶକ ।

ତମୋନୁଦ୍, ତମୋନୁଦ, ବ. ପୁଂ. (ତମଃ-ନୁଦ୍, ନୁଦ-ଂ, ଅ) ଚନ୍ଦ୍ର; ସୂର୍ଯ୍ୟ; ଅଗ୍ନି; ପୁତ୍ର; ଦୀପ; ଜ୍ଞାନ । ବଂ. ଅନ୍ଧକାରନାଶକ ।

ତମୋପହ, ବ. ପୁଂ. (ତମଃ-ଅପ-ହନ୍-ଅ) ଚନ୍ଦ୍ର; ସୂର୍ଯ୍ୟ; ଦୀପ; ଜ୍ଞାନ; ପୁତ୍ର ।

ତମୋଭିଦ୍, ବ. ପୁଂ. (ତମଃ-ଭିଦ୍) ଖଦ୍ୟୋତ, ଜୁଳୁଜୁଳିଆପୋକ ।

ତମୋମଣି, ବ. ପୁଂ.(ତମସ୍-ମଣି) ଖଦ୍ୟୋତ ।

ତମୋମୟ, ବଂ. (ତମସ୍-ମୟ) ଅନ୍ଧକାରାଚ୍ଛନ୍ନ; ଅହଙ୍କାରପରିପୂର୍ଣ୍ଣ; ଅଜ୍ଞାନାବୃତ ।

ତମୋହର, ବ. ପୁଂ. (ତମସ୍-ହର) ଚନ୍ଦ୍ର ।

ତମ୍ପ, ବ. (ଦେଶଜ) ବାଁଶରେ ସର୍ପବିଶେଷ ।

ତମ୍ପୀ, ବ. ସ୍ତ୍ରୀ. ଗାଭୀ; ଗାଈ ।

ତମ୍ବା, ବ. ସ୍ତ୍ରୀ. (ତାମ୍ର ଶବ୍ଦଜ) ଧାତୁବିଶେଷ ।

ତମ୍ବି, ତମ୍ବୀ, ବ. ( ଯାବନିକ ) ରାଗ ବା କ୍ରୋଧ; ବାରମ୍ବାର, କୌଣସି ବିଷୟରେ ହୁକୁମଦେବା ।

ତମ୍ବୁ, ବ. (ଯାବନିକ) ରାଉଟି, ଶିବିର, ବସ୍ତ୍ରନିର୍ମିତ ଗୃହ । ଯଥା—

> ଧାଡ ଧାଡ ହୋଇ ମହାନଦୀ ଯାଏ<br>ଶୁଦ୍ଧ ତମ୍ବୁ ଶୋଭେ ଶରତଶୈଳ ପ୍ରାଏ । ନ. କେ.

ତର, ବ. ପୁଂ. ( ତୃ-ଅ ) ଦୁଇ ବସ୍ତୁ ମଧ୍ୟରେ ଏକର ଉତ୍କର୍ଷ ସାଧନବଶେଷ; ସନ୍ତରଣ; (ଦେଶଜ) ସମସ୍ୟାବସର । ଯଥା—

ତର ନ ସହଇ ।

ତରକାରି, ବ. ରନ୍ଧଣ, ଭୁଞ୍ଜଣ, ବ୍ୟଞ୍ଜନର ଯୋଗ୍ୟ ଫଳମୂଳାଦି ।

ତରକିବା, କ୍ରି. (ଦେଶଜ) ଝୁରୁଡିବା ।

ତରକ୍ଷୁ, ତକ୍ଷୁ, ବ. ପୁଂ. ( ତର-କ୍ଷି-ଉ ) ହେଣ୍ଟା-ବାଘ, କ୍ଷୁଦ୍ରବାଘ ।

ତରଙ୍ଗ, ବ. ନ. ( ତୃ-ଅଙ୍ଗ ) ଊର୍ମି, ଲହଡ଼ି, ଢେଉ, ଘାତ, ଭଙ୍ଗି । (ଊର୍ମି ଅର୍ଥରେ) ଯଥା—

ଅଘାତେ ଅଘାତେ ଧାଏଁ ତରଙ୍ଗ ଫେନିଳ । କ. ବ.

ତରଙ୍ଗିଣୀ, ବ. ସ୍ତ୍ରୀ. (ତରଙ୍ଗ-ଇନ୍-ଈ) ନଦୀ ।

ତରଙ୍ଗିତ, ତରଙ୍ଗାୟିତ, ବିଂ. ( ତରଙ୍ଗ-ଇତ ) ଲହଡ଼ିଯୁକ୍ତ, ତରଙ୍ଗଯୁକ୍ତ; ଚଞ୍ଚଳ; ଭଙ୍ଗି-ବିଶିଷ୍ଟ । ଯଥା—

ତନ୍ଦ୍ରରେ ଜଳ ତରବାରଷ ତରଙ୍ଗାୟିତ । ତ. ଭ.

ତରଣ, ବ. ନ. (ତୃ-ଅନ) ପାରଗମନ, ପାରହେବାର; ଭେଳା; ସ୍ୱର୍ଗ ।

ତରଣି, ତରଣୀ, ବ.ସ୍ତ୍ରୀ. (ତୃ-ଅନ-ଇ)ନୌକା, ଭେଳା; ସୂର୍ଯ୍ୟ; କିରଣ; ତାମ୍ର । ଯଥା—

ବସ୍ତ୍ରେ ବେଷ୍ଟି ପଦ ଶବାର ଭେଦ ଶବଦ
ତରଣିରେ ଶୋଧାଉ ତହୁଁ ଉଠତ । ବୈ. ବ.

ତରଣିରତ୍ନ, ବ. ନ. ପଦ୍ମରାଗମଣି ।

ତରଣିସୁତ, ବ. ପୁଂ. ଶନି; ଯମ ।

ତରଣ୍ଡ, ବ. ପୁଂ. (ତୃ-ଅଣ୍ଡ) ଭେଳା; ଦେଶ-ବିଶେଷ । ସ୍ତ୍ରୀ. ନୌକା ।

ତରତମ, ବିଂ. ନ୍ୟୂନାଧିକ । ବ. ତଦ୍ଧିତ ପ୍ରତ୍ୟୟ-ବିଶେଷ, ଏହା ଅତିଶୟ ଅର୍ଥରେ ପ୍ରୟୋଗ ହୁଏ ।

ତରନ୍ତ, ବ. ପୁଂ. (ତୃ-ଅନ୍ତ) ସମୁଦ୍ର; ପ୍ଲବ, ଭେକ; ରାକ୍ଷସ ।

ତରନ୍ତୀ, ବ. ସ୍ତ୍ରୀ. (ତୃ-ଅନ୍ତୀ) ନୌକା ।

ତରତର, କ୍ରି. ବିଂ. (ତୃ ଧାତୁ) ଶୀଘ୍ର, ଚଞ୍ଚଳ । ଯଥା—

ତରତର କର ଦେଇ ଚଳ୍ହି ।

ତରତିବ୍, (ଆରବୀ) ସଜ୍ଜିତ; ନିୟମାନୁଯାୟୀ ।

ତରପଣ୍ୟ, ବ. ନ. (ତର-ପଣ୍ୟ) ପାରହେବାର ମୂଲ୍ୟ, ପାରଉତ୍ତରର ଭଡ଼ା ବା ମାସୁଲ ।

ତରଭୁଜ, ତରମୁଜ, ବ. ନ. ଲତାବିଶେଷ; ଫଳବିଶେଷ ।

ତରଜମା, ବ. (ଯାବନିକ) ଭାଷାନ୍ତର କରିବା ।

ତରଳ, ବିଂ. (ତୃ-ଅଳ) ଚଞ୍ଚଳ; ଦ୍ରବୀଭୂତ, ପାତଳ; ଦୀପ୍ତିଯୁକ୍ତ । ବ. ହାର, ହାରମଧ୍ୟସ୍ଥ ମଣି ।

ତରଳା, ବ. ପୁଂ. (ତୃ-ଅଳ-ଅ) କାମୁକ; ମତ୍ସ୍ୟ-ମାଛ । ସ୍ତ୍ରୀ. ମଦ୍ୟ । ବିଂ. ଉଜ୍ଜ୍ୱଳା ।

ତରଳଲୋଚନା, ବିଂ. ( ତରଳ-ଲୋଚନ-ଅ ) ଯେଉଁ ସ୍ତ୍ରୀର ନୟନ ଚଞ୍ଚଳ ।

ତରଳିତ, ବିଂ.(ତରଳ-ତ) କମ୍ପିତ; ଚଞ୍ଚଳିତ; ଦ୍ରବୀଭୂତ ।

ତରବର, ବିଂ. ଚଞ୍ଚଳ ।

ତରବାର, ତରବାରି, ବ. ପୁଂ. (ତର-ବୃ-ଅ,ଇ) ଶସ୍ତ୍ରବିଶେଷ, ଖଡ୍ଗ, ଖଣ୍ଡା ।

ତରସ୍, ବ. ନ. ( ତୃ-ଅସ୍ ) ବେଗ; ବୈଗ; ଭେଳା; ତୀର; ରୋଧ ।

ତରସ୍ତ, (ବସ୍ତ ଶବ୍ଦଜ) ବ୍ୟସ୍ତ, ଦ୍ରୁତଗାମୀ ।

ତରସ୍ଥାନ, ବ. ନ. (ତର-ସ୍ଥାନ)ଉତ୍ତରଣ ସ୍ଥାନ, ଘାଟ ।

ତରସ୍ୱାନ୍, ବିଂ. ( ତରସ୍-ବତ୍ ) ବେଗବାନ୍; ବଳବାନ୍ ।

ତରଃ, ବିଂ. (ତୃ-ଅସ୍) ବେଗ । ବ. ବଳ; ତୀର ।

ତରସ, ବ. ନ. (ତୃ-ଅସ୍-ଅ) ମାଂସ ।

ତରସା, କ୍ରି. ବିଂ. (ତର-ଅସା) ଶୀଘ୍ର, ଚଞ୍ଚଳ ।

ତରସ୍ୱୀ, ବିଂ. (ତରସ୍-ବିନ୍) ବେଗବାନ୍; ବଳିଷ୍ଠ; ବ. ବାୟୁ; ଗରୁଡ ।

ତଗାର୍, ବ. (ପାରସ୍ୟ ଭାଷା) ଓଜନ କରିବାର ଯନ୍ତ୍ରବିଶେଷ; ନିକ୍ତି ।

ତଗାଟ, ବ. ଟଗର ଫୁଲ ।

ତଗାଡି, ବିଂ. ଅପାଙ୍ଗ, କଟାକ୍ଷଦୃଷ୍ଟି । ଯଥା—

ଢଗାଡି ଦୃଷ୍ଟି ପ୍ରେମ ଭଙ୍ଗୀ ପ୍ରତି । କ. ବ.

ତରି, ତରୀ, ବ. ସ୍ତ୍ରୀ. (ତୃ-ଇ, ଈ ) ନୌକା, ଭେଳା, ତରଙ୍ଗ; ବସ୍ତ୍ରାଦି ରଖିବା ନିମନ୍ତେ ପେଟକ । ନୌକା ଅର୍ଥରେ । ଯଥା—

ଅଷ୍ଟଗିରିଙ୍କୁ ଯେ ତରୀରେ ଦେବର
ବହି ଥିଲେ ଏହି ବନ ଭିତର । କ. ବ.

ତରତା, ବ. ସ୍ତ୍ରୀ. ଗଞ୍ଜେଇ; ତର୍କିନୀ ।

ତରନ୍ତ, ବ. ନ. ( ତୃ-ନ୍ତ ) ତରଣ ସାଧନ, ନୌକା ପ୍ରଭୃତି ।

ତରବିତ୍, ବ. (ଯାବନିକ) ଶିକ୍ଷା, ଉପଦେଶ ।

ତରୀଷ, ବ. ପୁଂ. (ତୃ-ଈଷ) ସମୁଦ୍ର; ସ୍ୱର୍ଗ;ଭେଳା; ବ୍ୟବସାୟ; ଶୁଷ୍କ ଗୋମୟ । ସ୍ତ୍ରୀ. ଇନ୍ଦ୍ରକନ୍ୟା ।

ତରୁ, ବ. ପୁଂ. (ତୃ-ଉ) ବୃକ୍ଷ, ଗଛ, ପାଦପ ।

ତରୁଜୀବନ, ବ. ନ. (ତରୁ-ଜୀବନ) ବୃକ୍ଷମୂଳ ।

ତରୁଣ, ବିଂ. (ତୃ-ଉନ) ନୂତନ; ଯୁବା ।

ତରୁଣଦଧି, ବ. ନ. ସଦ୍ୟୋଜାତ ଦଧି ।

ତରୁଣୀ, ବ. ସ୍ତ୍ରୀ. (ତୃ-ଉନ-ଈ) ଯୁବତୀ; ଦନ୍ତୀ ବୃକ୍ଷ; ଘୃତକୁମାରୀ ।

ତରୁତୂଳିକା, ବ. ସ୍ତ୍ରୀ. (ତରୁ-ତୂଳିକା) ବାଦୁଡି ।

ତରୁନଖ, ବ. ପୁଂ. କଣ୍ଟା ।

ତରୁମୃଗ, ବ. ପୁଂ. (ତରୁ-ମୃଗ) ବାନର, ଶାଖାମୃଗ, ମର୍କଟ, ମାଙ୍କଡ ।

ତରୁରାଗ, ବ. ପୁଂ. (ତରୁ-ରାଗ) ନୂତନ ପଲ୍ଲବ, କିଶଳୟ ।

ତରୁରାଜ, ବ. ପୁଂ. ( ତରୁ-ରାଜା ) ତାଳଗଛ; ନଡ଼ିଆଗଛ ।

ତରୁରୂହ, ବ. ପୁଂ. (ତରୁ-ରୂହ) ବୃକ୍ଷ ଉପରେ ଜାତ ବୃକ୍ଷ ।

ତରୁବଲ୍ଲୀ, ବ. ସ୍ତ୍ରୀ. (ତରୁ-ବଲ୍ଲୀ) ବୃକ୍ଷର ଉପରେ ହୋଇଥିବା ଲତା ।

ତରୁଶାୟୀ, ବିଂ. (ତରୁ-ଶୀ-ଇନ୍) ଯେଉଁମାନେ ବୃକ୍ଷ ଉପରେ ଶୟନ ବା ବିଶ୍ରାମ କରନ୍ତି, ମର୍କଟାଦି ।

ତରୁସାର, ବ. ପୁଂ. (ତରୁ-ସାର) ବୃକ୍ଷସାର; କର୍ପୂର, ସୁଗନ୍ଧ ଦ୍ରବ୍ୟବିଶେଷ ।

ତର୍କ, ବ. ପୁଂ. (ତର୍କ-ଅ) ବାଦାନୁବାଦ, ବିଚାର, ନ୍ୟାୟଶାସ୍ତ୍ର ।

ତର୍କବିଦ୍ୟା, ବ. ସ୍ତ୍ରୀ. (ତର୍କ-ବିଦ୍ୟା) ନ୍ୟାୟବିଦ୍ୟା, ତର୍କଶାସ୍ତ୍ର ।

ତର୍କାଭାସ, ବ. ପୁଂ. (ତର୍କ-ଆଭାସ) ଅସତ୍ତର୍କ, ଅକିଞ୍ଚିତ୍କର ଯୁକ୍ତି ।

ତର୍କିତ, ବିଂ. (ତର୍କ-ଇତ) ବିଚାରିତ,ବିବେଚିତ, ସମ୍ଭାବିତ; ଅନୁମିତ, ଉତ୍ପ୍ରେକ୍ଷିତ ।

ତର୍କିବା, କ୍ରି. ବ. (ପ୍ରା) ହୁରୁଡ଼ିବା,ସତର୍କହେବା ।

ତର୍କୀ, ବିଂ. ( ତର୍କ-ଇନ୍ ) ତର୍କକାରକ । ବ. ନୈୟାୟିକ, ତର୍କଶାସ୍ତ୍ରବେତ୍ତା ।

ତର୍ଜନ, ବ. ନ. ( ତର୍ଜ୍-ଅନ ) ଭୟପ୍ରଦର୍ଶନ; ଭର୍ତ୍ସନା; ଆସ୍ଫାଳନ; କ୍ରୋଧ, ଦ୍ୱେଷ ।

ତର୍ଜନୀ, ବ. ସ୍ତ୍ରୀ. (ତର୍ଜ-ଅନ-ଈ) ବୃଦ୍ଧ ଅଙ୍ଗୁଷ୍ଠର ନିକଟସ୍ଥ ଅଙ୍ଗୁଳି ।

ତର୍ଜିତ, ବିଂ. (ତର୍ଜ-ତ) ତାଡ଼ିତ; ଭର୍ତ୍ସିତ; ଭୟପ୍ରଦର୍ଶିତ ।

ତର୍ଣ୍ଣ, ତର୍ଣ୍ଣକ, ବ. ପୁଂ. (ତୃଣ-ଅ, ଅକ) ସଦ୍ୟୋଜାତ ଗୋବତ୍ସ; ସଦ୍ୟୋଜାତ ଶିଶୁ ।

ତର୍ଣ୍ଣି, ବ. ପୁଂ. (ତର୍ଣ୍ଣ-ଈ) ସୂର୍ଯ୍ୟ; ଭେଳା ।

ତର୍ତ୍ତରୀକ, ବ. ନ. (ତୃ-ଈକ) ନୌକା,ଭେଳା ।

ତର୍ପଣ, ବ. ନ. ( ତୃପ୍-ଅନ ) ତୃପ୍ତିଜନନ; ପିତୃଲୋକର ପ୍ରୀତ୍ୟର୍ଥ ଜଳଦାନ ।

ତର୍ପିତ, ବିଂ. (ତୃପ୍-ତ) ସନ୍ତୋଷିତ ।

ତର୍ବ୍ବଟ, ବ. ପୁଂ. (ତ୍ୟର୍ବ୍ବ-ଅଟ) ବତ୍ସର ।

ତର୍ଷ, ବ. ପୁଂ. (ତୃଷ୍-ଅ) ତୃଷା, ପିପାସା; ଇଚ୍ଛା ।

ତର୍ହି, ଅଂ. (ତଦ୍-ହି ) ତେବେ ।

ତଳ, ବ. ପୁଂ. (ତଳ୍-ଅ) ଅଧୋଭାଗ, ପାତାଳ; ଉପରିଭାଗ; ମୂଳର ଚତୁଃପାର୍ଶ୍ୱବର୍ତ୍ତୀ ସ୍ଥାନ । ନ. କାନନ; ଗର୍ତ୍ତ; ଜ୍ୟାଘାତ ବାରଣ; ଚର୍ମପୁଟା; ତାଳବୃକ୍ଷ; ଖଡ୍ଗାଦିର ମୁଷ୍ଟି ।

ତଳତ୍ର, ବ. ନ. ( ତଳ-ତ୍ରୈ-ଅ ) ଚର୍ମନିର୍ମିତ ହସ୍ତାନା ।

ତଳପ୍ରହାର, ବ. ପୁଂ. (ତଳ-ପ୍ରହାର) ଚପେଡ଼ା ।

ତଳଲୋକ, ବ. ପୁଂ. ଭୂତଳସ୍ଥଲୋକ, ପାତାଳ ।

ତଳବ, ବ. (ତଳ-ବା-ଅ) ତଳବାଦ୍ୟ ବାଦନ । (ଆରବୀ) ବେତନ; ଆହ୍ୱାନପତ୍ର ।

ତଳବାର, ବ. (ଯାବନିକ) ଅସି, ଖଡ୍ଗ, ତରବାରି ।

ତଳାତଳ, ବ. ନ. ( ତଳ-ତଳ ଦ୍ୱିତ୍ୱ ) ସପ୍ତ-ପାତାଳର ଗୋଟିଏ ।

ତଳାଭିଘାତ, ବ. ନ. ( ତଳ-ଅଭିଘାତ ) କରତଳଦ୍ୱାରା ପ୍ରହାର, ଚପେଟାଘାତ ।

ତଲାସ, ତଲ୍ଲାସ, (ଆରବୀ) ଅନୁସନ୍ଧାନ, ଅନ୍ୱେଷଣ ।

ତଲ୍ପ, ବ. ଶଯ୍ୟା । ଯଥା—

> ଶୁଥଇଲେ ଭଲ୍ଲକ୍ରିଡ଼ା ପଲଙ୍କି ଝଃଚ
> ଅସ୍ୱପ୍ନସୁଲଭ ତଲ୍ପେ ପରଶୁ ଅଘାତେ । ନ. ଯା.

ତଲି, ବ. (ଦେଶଜ) ଗଜାଗଛ ।

ତଲିନ, ବ. ନ. (ତଲ-ଇନ) ଶଯ୍ୟା । ବି. ବିରଳ, ସ୍ୱଚ୍ଛ, ନିର୍ମଳ ।

ତଲପା, ବ. (ଦେଶଜ) ପାଦତଳ, ଗୋଡ଼ତଳ ।

ତଲୁନ, ବ. ପୁଂ. (ତୃ-ଉନ) ବାୟୁ; ଯୁବା । ସ୍ତ୍ରୀ. ଯୁବତୀ ।

ତଲ୍ଲକୀଟ, ବ. ପୁଂ. (ତଲ୍ଲ-କୀଟ) ଘରପୋଡ଼ ।

ତଲ୍ଲି, (ଯାବନିକ) ଗଣ୍ଠିରି, ବୁକ୍‌ଚ୍ଛ; ବସ୍ତ୍ର ।

ତଲ୍ଲ, ବ. ନ. ଗର୍ତ୍ତ, ଜଳାଶୟ । ସ୍ତ୍ରୀ. ଯୁବତୀ, ନୌକା; ବରୁଣର ସ୍ତ୍ରୀ ।

ତଷତ, ବି. (ତପ୍ତ ଶବ୍ଦଜ) ତତଲା ।

ତସର, ବ. ପୁଂ. ଗୋଟିପୋକର ସୂତା ।

ତସବୀର, (ଆରବୀ) ପ୍ରତିମୂର୍ତ୍ତି, ଛବି ।

ତସା, ବ. (ଦେଶଜ) ଚଷା ।

ତସ୍କ, ବ. (ତୁଷ ଶବ୍ଦଜ) ଧାନର ଚୋପା ।

ତସ୍କର, ବ. ପୁଂ. (ତତ୍-କୃ-ଅ) ଚୋର, ଅପ-ହାରକ ।

ତସ୍କରତା, ବ. (ତସ୍କର-ତା) ଚୌର୍ଯ୍ୟ, ଚୋରୀ ।

ତସ୍କରୀ, ବି. (ତସ୍କର-ଈ) କୋପନା ସ୍ତ୍ରୀ ।

ତସ୍ଥିବାନ୍, ବି. ( ସ୍ଥା-ବସୁ ) ସ୍ଥିତ ।

ତହ୍ନ, ବ. (ଦେଶଜ) ଲୁଗାର ଭଙ୍ଗ ।

ତହବିଲ, ବ. ( ଯାବନିକ ) ପୁଞ୍ଜି, ରୋକଡ଼; ପାଣ୍ଠି ।

ତହିଁ, ସଂ. (ପ୍ରା) ତା ପରେ ।

ତାକ, ବ. (ଦେଶଜ) କାନ୍ଥ ଖୋଲା, ଠଣା ।

ତାକତରକ, (ଦେଶଜ) ଭଙ୍ଗି । ଯଥା—

> ଥରେ ଚନ୍ଦ୍ରଦନ, ତାକତରକ ତୁ ଜାଣୁ କେତେ ପଦ ।

ତାକୁଡ଼, ବ. (ଦେଶଜ) ସୂତାକାଟିବାର ଯନ୍ତ୍ର-ବିଶେଷ ।

ତାଚ୍ଛଲ୍ୟ, ବ. (ଦେଶଜ) ଅବହେଳା, ଅବଜ୍ଞା, ଅଶ୍ରଦ୍ଧା ।

ତାଟ, ବ. ( ଦେଶଜ ) ଚୁଙ୍ଗୁଡ଼ି; ତାଲ୍ପଥ, ତାଳପତ୍ରନିର୍ମିତ ଆବରଣବିଶେଷ ।

ତାଟଙ୍କ, ବ. ପୁଂ. (ତଟ-ଅଙ୍କ) କର୍ଣ୍ଣଭୂଷଣ, କାପ ।

ତାଟଙ୍କା, ତାଟକା, ବି. (ପ୍ରା) ସ୍ତବ୍ଧ, ଭୀତ । ଯଥା—

> ସଙ୍ଗୀମାନେ ଦେଖି ହେଲେ ତାଟକା ।

ତାଟି, ବ. (ଦେଶଜ) ବାଉଁଶ କମ୍ୱା ତାଳପତ୍ର-ନିର୍ମିତ ବାଡ଼ ।

ତାଟିଆ, ବ. (ଦେଶଜ) ଧାତୁନିର୍ମିତ ପାତ୍ର-ବିଶେଷ ।

ତାଡ଼, ବ. (ତାଟଙ୍କଶବ୍ଦଜ) ବାହୁର ଆଭରଣ ।

ତାଡ଼କା, ବ. ସ୍ତ୍ରୀ. ସୁକେତୁ ରାକ୍ଷସର କନ୍ୟା, ମାରୀଚ ରାକ୍ଷସର ମାତା ।

ତାଡ଼ନ, ବ. ନ. (ତାଡ଼-ଅନ) ତର୍ଜ୍ଜନ, ଭର୍ତ୍ସନା; ଶାସନ, ଦଣ୍ଡ ।

ତାଡ଼ନା, ବ. ସ୍ତ୍ରୀ. ଶାସନ, ଉତ୍ପୀଡ଼ନ ।

ତାଡ଼ନୀ, ବ. (ତାଡ଼-ଅନ-ଈ) କଶା; ତାଡ଼ନ, ଦଣ୍ଡ ।

ତାଡ଼ପତ୍ର, ବ. ନ. କର୍ଣ୍ଣାଳଙ୍କାରବିଶେଷ ।

ତାଡିତ, ବି. (ତାଡ-ତ) ଆହତ, ଶାସିତ, ତିରସ୍କୃତ, ଉତ୍ପୀଡିତ, ଦୂଷିକୃତ ।

ତାଡିବା, କ୍ରି. ବ. ମୂଳୋତ୍ପାଟନ କରିବା । ଯଥା—

ବିଷ ଦଣ୍ଡ ଦଶେ ଯେଣୁ ଛଦେ କର ତାଡ଼ନ୍ତି ।

ତାଡ଼ୀ, ବ. ସ୍ତ୍ରୀ. (ତାଡକା ଶବ୍ଦଜ) ଆଭରଣ-ବିଶେଷ; ତାଳ ବା ଖଜୁରି ଗଛର ରସ ।

ତାଡ୍ୟମାନ, ବି. (ତାଡ-ଅନ, ଯ, ମ ଆଗମ) ପୀଡ଼୍ୟମାନ; ଯାହାକୁ ପ୍ରହାର ଦଣ୍ଡ ବା ଶାସନ କରାଯାଇଅଛି । ବ. ବାଦ୍ୟଯନ୍ତ୍ରବିଶେଷ ।

ତାଣ୍ଡବ, ବ. ପୁଂ. (ତଣ୍ଡୁ-ଅ) ଉଦ୍ଧତନୃତ୍ୟ; ଦେବତାମାନଙ୍କର ନୃତ୍ୟ; ଶିବଙ୍କର ନୃତ୍ୟ ।

ତାତ, ବ. ପୁଂ. (ତାୟୃ=ପାଳନ କରିବା-ତ) ପିତା; ପବିତ୍ରବ୍ୟକ୍ତି; ସ୍ନେହପାତ୍ର; ସ୍ନେହସୂଚକ ବାକ୍ୟ । ବି. ମାନ୍ୟ, ପୂଜ୍ୟ ।

ତାତଗୁ, ବ. ପୁଂ. (ତାତ-ଗମ୍-ଉ) ଖୁଡ଼ିତାତ, ଖୁଲ୍ଲତାତ, ପିତୃବ୍ୟ, ଖୁଡୁତା ।

ତାତଲ, ବ. ପୁଂ. (ତାତ-ଲ) ରୋଗ, ପୀଡ଼ା; ପାକ, ରନ୍ଧନ; ଲୌହକୂଟ ।

ତାତି, ବ. ପୁଂ. (ତନ୍-ତି) ପୁତ୍ର, ସୁତ, ଆତ୍ମଜ; ବୃଦ୍ଧି ।

ତାତି, ବି. (ତପ୍ ଧାତୁଜ) ଗରମ, ଝାଞ୍ଜି, ଉତ୍ତାପ, ତାପ ।

ତାତ୍, ବ. (ସନ୍ତାପାର୍ଥ ତପ୍ ଧାତୁଜ) ଉତ୍ତାପ, ତାପ ।

ତାତ୍କାଳିକ, ବି. (ତତ୍କାଳ-ଇକ) ତତ୍କାଳୋ-ଦ୍ଭବ, ତତ୍କାଳଜାତ ।

ତାତ୍ପର୍ଯ୍ୟ, ବ. ନ. (ତତ୍ପର-ଯ) ଅଭିପ୍ରାୟ, ମର୍ମ, ଅର୍ଥ ।

ତାଦବସ୍ଥ୍ୟ, ବ. ନ. (ତଦବସ୍ଥା-ଯ) ସେହି ଭାବ ସେହି ପ୍ରକାରେ ସ୍ଥିତି; ତଦ୍ରୂପତା ।

ତାଦର୍ଥ୍ୟ, ବ. ନ. (ତଦର୍ଥ-ଯ) ତନ୍ନିମତ୍ତାର୍ଥ, ତଦର୍ଥତା, ସେନିମିତ୍ତ ।

ତାଦର୍ଥ୍ୟ, ବ. ନ. (ତଦ୍-ଅର୍ଥ) ସମାନାଭିପ୍ରାୟ, ତତ୍ ପ୍ରୟୋଜନ ।

ତାଦାତ୍ମ୍ୟ, ବ. ନ. ( ତଦାତ୍ମ-ଯ ) ଅଭେଦ, ତତ୍ସ୍ୱରୂପତା ।

ତାଦୃକ୍, ତାଦୃଶ, ବି. (ତଦ୍-ଦୃଶ) ସେହି ପ୍ରକାର, ତଦ୍ରୂପ ।

ତାନ, ବ. ପୁଂ. (ତନ୍-ଅ) ଗାନାଙ୍ଗବିଶେଷ, ସ୍ୱରାନ୍ତରପ୍ରବର୍ତ୍ତକ ସ୍ୱରସ୍ଥିତ ପ୍ରବୃତ୍ତ୍ୟାଦି ହେତୁ ବଂଶାଦି ବାଦ୍ୟସ୍ୱରବିଶେଷ ।

ତାନପୁରା, ବ. ପୁଂ. (ତାନ-ପୂର୍ଣ୍ଣ) ବୀଣାକାର ବାଦ୍ୟଯନ୍ତ୍ରବିଶେଷ ।

ତାନୂର, ବ. ପୁଂ. (ତନ୍-ଉର) ଜଳର ଭଉଁରୀ, ଆବର୍ତ୍ତ ।

ତାନ୍ତ, ବି. (ତମ୍-ତ) କ୍ଳାନ୍ତ, ଶ୍ରାନ୍ତ, ଦୁର୍ବଳ, କ୍ଷୀଣ; ମ୍ଳାନ ।

ତାନ୍ତବ, ବି. (ତନ୍ତୁ-ଅ) ତନ୍ତୁନିର୍ମିତ; ଯେ ସବୁ ଦ୍ରବ୍ୟକୁ ଟାଣି ଅତ୍ୟନ୍ତ ସୂକ୍ଷ୍ମ ତାର ପ୍ରସ୍ତୁତ କରାଯାଏ ।

ତାନ୍ତବତା, ଯେଉଁ ଗୁଣ ଥିବାରୁ କେତେଗୁଡ଼ିଏ ପଦାର୍ଥକୁ ଟାଣି ତନ୍ତୁ ଅର୍ଥାତ୍ ତାର ପ୍ରସ୍ତୁତ କରାଯାଇପାରେ ।

ତାନ୍ତ୍ରିକ, ବି. ( ତନ୍ତ୍ର-ଇକ ) ତନ୍ତ୍ରଶାସ୍ତ୍ରମତା-ବଲମ୍ବୀ; ତନ୍ତ୍ରଶାସ୍ତ୍ରବେତ୍ତା; ତନ୍ତ୍ରଶାସ୍ତ୍ରସମ୍ବ-ନ୍ଧୀୟ ।

ତାପ, ବ. ପୁଂ. (ତପ୍-ଅ) ଉଷ୍ଣତା; ଜ୍ୱର, କ୍ଳେଶ, ମନଃପୀଡ଼ା, ଯାତନା; ଆଧ୍ୟାତ୍ମିକ, ଆଧି-ଭୌତିକ, ଆଧିଦୈବିକ ଏହି ତିନି ପ୍ରକାର ତାପ ।

ତାପକ, ବି. (ତପ-ଅକ) ତାପଜନକ । ବ. ପୁଂ. ଜ୍ୱର ।

ତାପତ୍ୟ, ବ. ପୁଂ. (ତପତୀ-ଯ) ଅର୍ଜ୍ଜୁନ ।

ତାପବସ୍ଥ, ବି. ନ. ଆଧ୍ୟାତ୍ମିକ, ଅଧିଦୈବିକ, ଆଧିଭୌତିକ ଏହି ତ୍ରିବିଧ ସନ୍ତାପ ।

ତାପନ, ବି. ପୁଂ. (ତାପି-ଅନ) ସୂର୍ଯ୍ୟ; ମଦନର ପଞ୍ଚଶରାନ୍ତର୍ଗତ ଶରବିଶେଷ; ସୂର୍ଯ୍ୟକାନ୍ତମଣି; ସୂର୍ଯ୍ୟକିରଣ । ବିଂ. ତାପଜନକ ।

ତାପମାନଯନ୍ତ୍ର, (Thermometer) ବି. ଯେ ଯନ୍ତ୍ରଦ୍ୱାରା ଉତ୍ତାପର ପରିମାଣ ନିରୂପଣ କରାଯାଏ ।

ତାପସ, ବି. ପୁଂ. (ତପସ୍-ଅ) ତପସ୍ୱୀ, ମୁନି । ବି. ନ. ତେଜପତ୍ର ।

ତାପସତରୁ, ତାପସଦ୍ରୁମ, ବି. ପୁଂ. (ତାପସ-ତରୁ, ଦ୍ରୁମ) ଇଙ୍ଗୁଦୀବୃକ୍ଷ, ଏହି ବୃକ୍ଷର ତୈଳରେ ତପସ୍ୱିମାନଙ୍କର ସମସ୍ତ କାର୍ଯ୍ୟ ନିର୍ବାହ ହୁଏ, ଏଣୁକରି ଏହାକୁ ତାପସତରୁ କହନ୍ତି ।

ତାପସ୍ୟ, ବି. ନ. (ତପସ୍-ଯ) ତାପସର ଧର୍ମ, ତପସ୍ୱିର ଆଚରଣ ।

ତାପିଚ୍ଛ, ତାପିଞ୍ଛ ତାପିଞ୍ଜ, ବି. ପୁଂ. (ତାପିନ୍-ଛଦ୍-ଅ) ତମାଳବୃକ୍ଷ । (ତାପିଞ୍ଜ ପକ୍ଷେ କ ଧାତୁ ) ।

ତାପିତ, ବିଂ. (ତାପି-ତ) ଦୁଃଖିତ, ଖେଦାନ୍ୱିତ; ତାପଯୁକ୍ତ ।

ତାପୀ, ବିଂ. (ତାପ-ଇନ୍) ତାପଯୁକ୍ତ; ତାପଜନକ । ବି. ସ୍ତ୍ରୀ. ନଦୀ ।

ତାପେଶ୍ୱର, ବି. ପୁଂ. ତୀର୍ଥବିଶେଷ ।

ତାମ, ବି. ପୁଂ. (ତମ-ଅ) ଦୁଃଖ; ଦୋଷ; ପାପ; ଉଦ୍‌ବେଗ ବିଷୟ ।

ତାମର, ବି. ନ. (ତମ-ର) ଜଳ; ଘୃତ ।

ତାମରସ, ବି. ନ. ( ତମରସ-ଅ ) ପଦ୍ମ; ତମ୍ବା; ସ୍ୱର୍ଣ୍ଣ; ସାରସ ପକ୍ଷୀ ।

ତାମସ, ବି. ପୁଂ. (ତମସ୍-ଅ) ପେଚକ; ଖଳ; ସର୍ପ; ଖଳବ୍ୟକ୍ତି । ଯଥା—

> ତଡ଼ାଗ ତାରକତ ଶ୍ୱେତ ଦ୍ରୁମ୍ଭେ ।
> ତାମସ ଛଦେ ପତ୍ରସୁଣ ବ ଉଦେ । ଢୁ. ସ୍ତ୍ର.

ତାମସା, ବି. (ଯାବନିକ) ରହସ୍ୟ, କୌତୁକ ।

ତାମସିକ, ବିଂ. (ତାମସ-ଇକ) ଗର୍ବିତ, ନିନ୍ଦିତ; ତମୋଗୁଣାନ୍ୱିତ ।

ତାମସୀ, ବି. ସ୍ତ୍ରୀ. (ତାମସ-ଈ) ଅନ୍ଧକାରରାତ୍ରି; ଦୁର୍ଗା; କାଳୀ ବା ମସୀ । ବିଂ. ତାମସିକ; ତମୋଗୁଣଯୁକ୍ତ, ଗାଢ ଅନ୍ଧକାରାଚ୍ଛନ୍ନ ।

ତାମିସ୍ର, ବି. ପୁଂ. (ତମିସ୍ର-ଅ) ନିଶାଚର; ଅଜ୍ଞାନବିଶେଷ । ନ. ଅନ୍ଧକାରମୟ ନରକବିଶେଷ ।

ତାମ୍ର, ବି. ନ. (ତମ୍-ର) ତମ୍ବା, ଧାତୁବିଶେଷ; କୁଷ୍ଠରୋଗବିଶେଷ । ବିଂ. ଅରୁଣବର୍ଣ୍ଣ ।

ତାମ୍ରକ, ବି. ନ. (ତାମ୍ର-କ) ତମ୍ବା ।

ତାମ୍ରକର୍ଣ୍ଣୀ, ବି. ସ୍ତ୍ରୀ. (ତାମ୍ର-କର୍ଣ୍ଣୀ ) ଅଞ୍ଜନା ନାମ ପଶ୍ଚିମଦିଗ୍ ହସ୍ତିନୀ ।

ତାମ୍ରକୂଟ, ବି. ପୁଂ. ନ. ( ତାମ୍ର-କୂଟ ) ତମାଖୁ, ଧୂଆଁପତ୍ର; ଧୂମ୍ରପାନଯୋଗ୍ୟ ପତ୍ରବିଶେଷ ।

ତାମ୍ରକୃମି, ବି.ପୁଂ. (ତାମ୍ର-କୃମି) ଇନ୍ଦ୍ରଗୋପକୀଟ, ସାଧବବୋହୂ ପୋକ ।

ତାମ୍ରଗର୍ଭ, ବି. ସ୍ତ୍ରୀ. (ତାମ୍ର-ଗର୍ଭ) ତୁତିଆ ।

ତାମ୍ରଚୂଡ଼, ବି. ପୁଂ. ( ତାମ୍ର-ଚୂଡ଼ା ) କୁକ୍କୁଟ, କୁକୁଡ଼ା ।

ତାମ୍ରପତ୍ର, ବି. ପୁଂ. (ତାମ୍ର-ପତ୍ର) ଜୀବଶାକ । ନ. ତାମ୍ରନିର୍ମିତ ପତ୍ର; ନୂତନ ପଲ୍ଲବ ।

ତାମ୍ରପର୍ଣ୍ଣୀ, ବି. ସ୍ତ୍ରୀ. (ତାମ୍ର-ପର୍ଣ୍ଣୀ) ନଦୀବିଶେଷ, କର୍ଣ୍ଣାଟର ଅନ୍ତର୍ଗତ ନଦୀ ।

ତାମ୍ରପଲ୍ଲବ, ବି.ପୁଂ. (ତାମ୍ର-ପଲ୍ଲବ) ଅଶୋକବୃକ୍ଷ; ରକ୍ତପଲ୍ଲବ ।

ତାମ୍ରପୁଷ୍ପ, ବି. ପୁଂ. (ତାମ୍ର-ପୁଷ୍ପ) ରକ୍ତକାଞ୍ଚନ ବୃକ୍ଷ, ଭୂମିଚମ୍ପକ । ବିଂ. ରକ୍ତ ପୁଷ୍ପଯୁକ୍ତ ।

ତାମ୍ରଲିପ୍ତ, ବି. ନ. ତମଲୁକ ।

ତାମ୍ରବଲ୍ଲୀ, ବି. ସ୍ତ୍ରୀ. (ତାମ୍ର-ବଲ୍ଲୀ) ମଞ୍ଜିଷ୍ଠା ଲତା ।

ତାମ୍ରବୃକ୍ଷ, ବି. ପୁଂ. ( ତାମ୍ର-ବୃକ୍ଷ ) ରକ୍ତଚନ୍ଦନ ବୃକ୍ଷ ।

ତାମ୍ରଶିଖୀ, ବି. ପୁଂ. (ତାମ୍ର-ଶିଖା-ଇନ୍) କୁକ୍କୁଟ, କୁକୁଡ଼ା ।

ତାମ୍ରସାର, ବ. ପୁଂ (ତାମ୍ର-ସାର) ରକ୍ତଚନ୍ଦନ ବୃକ୍ଷ । ନ. ରକ୍ତଚନ୍ଦନ ।
ତାମ୍ରାକ୍ଷ, ବ. ନ. (ତାମ୍ର-ଅକ୍ଷି) ରକ୍ତବର୍ଣ୍ଣ ଚକ୍ଷୁ । ପୁଂ. କୋକିଳ । ବିଂ. ରକ୍ତବର୍ଣ୍ଣ ପ୍ରଭାଯୁକ୍ତ ।
ତାମ୍ରାଭ, ବ. ନ. (ତାମ୍ର-ଆଭା) ରକ୍ତଚନ୍ଦନ ।
ତାମ୍ରାର୍ଦ୍ଧ, ବ. ପୁଂ. (ତାମ୍ର-ଅର୍ଦ୍ଧ) କାଂସ୍ୟ, କଂସା ।
ତାମ୍ରାଶ୍ମ, ବ. ପୁଂ. ପଦ୍ମରାଗମଣି ।
ତାମ୍ରିକା, ତାମ୍ରୀ, ବ. ସ୍ତ୍ରୀ, ଘଟୀସୂଚକ ଧାତୁ-ନିର୍ମିତ ଯନ୍ତ୍ରବିଶେଷ । ବିଂ. ତାମ୍ରସମ୍ବନ୍ଧୀୟ ।
ତାମ୍ବୁ, ବ. (ଦେଶଜ) ଶିବିର, ବସ୍ତ୍ରଗୃହ, ଡେରା ।
ତାମ୍ବୂଲ, ବ. ନ. (ତମ୍-ବୂଲ) ପାନ,ନାଗବଲ୍ଲୀ ।
ତାମ୍ବୂଲକରଙ୍କ, ବ. ପୁଂ. (ତାମ୍ବୂଲ-କରଙ୍କ) ପାନବଟା, ପାନଡିବିଯ୍ଯା ।
ତାମ୍ବୂଲକରଙ୍କବାହିନୀ, ବ. ସ୍ତ୍ରୀ. (ତାମ୍ବୂଲକରଙ୍କ ବହ-ଇନ୍-ଈ) ଦାସୀ, ଯେ ପାନ ଭାଙ୍ଗି ଡିବିଯ୍ଯାରେ ଦିଏ ।
ତାମ୍ବୂଲୀ, ତାମ୍ବୂଲିକ, ବ. ପୁଂ. ସ୍ତ୍ରୀ. (ତାମ୍ବୂଲ-ଈ,ଇକ) ତାମ୍ବୂଲବିକ୍ରୟୀ, ତାମ୍ଳି ଜାତି ।
ତାର, ବ. ପୁଂ. (ତୃ-ଅ) ଉଚ୍ଚୈଃସ୍ୱର; ପରିଷ୍କାର; ମୁକ୍ତାହାରମଧ୍ୟମଣି ; ଋକ୍ଷ୍ମ; ବାନରବିଶେଷ; ବାଲିର ପୁତ୍ର; ଉତ୍ତରଣ; ଓଁକାର; ପ୍ରଣବ । ନ. ରୌପ୍ୟ; ମୁକ୍ତା; ଚକ୍ଷୁର ତାରା; ନକ୍ଷତ୍ର; ଗ୍ରହ । ବିଂ. ଅତି ଉଚ୍ଚ; ସ୍ଥୂଳ; ଦୀପ୍ତିଯୁକ୍ତ; ଉତ୍କୃଷ୍ଟ; ଉତ୍ତମ; ପରିଷ୍କୃତ; ବିସ୍ତୃତ ।
ତାରକ, ନ. } ବ.(ତୃ-ଅକ); ଚକ୍ଷୁର ତୋଳା;
ତାରକା, ସ୍ତ୍ରୀ. } ନକ୍ଷତ୍ର । ପୁଂ. କର୍ଣ୍ଣଧାର ; ତାରକାସୁର । ନ. ଭେଳା । ବିଂ. ରକ୍ଷକ, ରକ୍ଷାକର୍ତ୍ତା । (ନକ୍ଷତ୍ର ଅର୍ଥରେ) । ଯଥା—

ତରଳ ତାରକା ହାରମଧ୍ୟ ନାଇ ନାଗର ଟିକା ।

ତାରକଜିତ୍, ବ. ପୁଂ. (ତାରକ-ଜିତ୍) କାର୍ତ୍ତିକେୟ ।
ତାରକବ୍ରହ୍ମ, ବ. ନ. (ତାରକ-ବ୍ରହ୍ମ) ଓଁ ଶ୍ରୀରାମରାମ ଏହି ଛ ଅକ୍ଷର ମନ୍ତ୍ର ।
ତାରକାରି, ବ. ପୁଂ. (ତାରକ-ଅରି) କାର୍ତ୍ତିକେୟ ।
ତାରକିତ, ବିଂ. (ତାରକ-ଇତ) ନକ୍ଷତ୍ରିତ, ତାରକାଯୁକ୍ତ, ସଜାତ ତାରକାୟ ଉଜ୍ଜ୍ୱଳ ।
ତାରକୀ, ବିଂ. (ତାରକ-ଇନ୍) ତାରକାଯୁକ୍ତ । ସ୍ତ୍ରୀ. ରାତ୍ରି ।
ତାରଣ, ବିଂ. (ତୃ-ଅନ) ଭେଳକ, ଯେଉଁ ବ୍ୟକ୍ତି ପାର କରେ ; ତ୍ରାଣକର୍ତ୍ତା । ବିଂ. ପୁଂ. ଭେଳା; ପାର କରିବା; ବିପଦରୁ ଉଦ୍ଧାର କରିବା ।
ତାରତମ୍ୟ, ବ. ନ. (ତାରତମ-ଯ) ନ୍ୟୂନାଧିକ, ଇତରବିଶେଷ ।
ତାରଳ, ବିଂ. (ତରଳ-ଅ) କାମୁକ; ଲମ୍ପଟ ।
ତାରଲ୍ୟ, ବ. ନ. (ତରଳ-ଯ) ଚଞ୍ଚଳତା; ତରଳତା ।
ତାରା, ବ. ସ୍ତ୍ରୀ. (ତୃ-ଅ) ନକ୍ଷତ୍ର; ଅକ୍ଷିମଧ୍ୟ; ବୃହସ୍ପତିଭାର୍ଯ୍ୟା; ବାଲିର ଭାର୍ଯ୍ୟା; ମୁକ୍ତା; ଦ୍ୱିତୀୟା ଶକ୍ତି, ଦ୍ୱିତୀୟା ମହାବିଦ୍ୟା; ଦୁର୍ଗା; ବୌଦ୍ଧଦେବୀ ।
ତାରାଧିପ, ତାରାଧିପତି, ବ. ପୁଂ. (ତାରା-ଅଧିପ, ଅଧିପତି) ଚନ୍ଦ୍ର ।
ତାରାପତି, ବ. ପୁଂ. (ତାରା-ପତି) ଚନ୍ଦ୍ର; ବୃହସ୍ପତି; ବାଲି; ଶିବ; ସୁଗ୍ରୀବ ।
ତାରାପଥ, ବ. ପୁଂ. (ତାରା-ପଥ) ଆକାଶ, ନଭୋମଣ୍ଡଳ ।
ତାରାପୀଡ଼, ବ. ପୁଂ. (ତାରା-ଆପୀଡ଼) ଚନ୍ଦ୍ର; ନୃପତିବିଶେଷ ।
ତାରାଭୂଷା, ବ. ସ୍ତ୍ରୀ. (ତାରା-ଭୂଷା) ରାତ୍ରି; ରଜନୀ ।
ତାରାଭ୍ର, ବ.ପୁଂ. (ତାରା-ଅଭ୍ର) କର୍ପୂର ।
ତାରାମଣ୍ଡଳ, ବ. ନ. (ତାରା-ମଣ୍ଡଳ) ପ୍ରକାଣ୍ଡ ଦେବମନ୍ଦିର; ନକ୍ଷତ୍ରମଣ୍ଡଳ ।
ତାରାମୃଗ, ବ. ପୁଂ. (ତାରା-ମୃଗ) ତାରାଚକ୍ରଦ୍ୱାରା ଚହ୍ନିତ ମୃଗ, ମାୟାମୃଗ, ମୃଗଶିରା ନକ୍ଷତ୍ର ।
ତାରିଖ, (ଆରବୀ ଭାଷା) ଦିବସ, ଦିନ ।
ତାରିଣୀ, ବ. ସ୍ତ୍ରୀ. (ତୃ-ଇନ୍-ଈ) ଦୁର୍ଗା । ବିଂ. ତ୍ରାଣକର୍ତ୍ତ୍ରୀ ।
ତାରିଫ, (ହିନ୍ଦୀ) ପ୍ରଶଂସା, ସ୍ତବ, ସ୍ତୁତି ।

ତାରୁଣ୍ୟ, ବି. ନ. (ତରୁଣ-ଯ) ଯୌବନ, ଯୁବତ୍ୱ, ଯୌବନାବସ୍ଥା ।

ତାରେୟ, ବି. ପୁଂ. ( ତାରା-ଏୟ ) ତାରାପୁତ୍ର, ଅଙ୍ଗଦ ।

ତାର୍କିକ, ବିଂ. ( ତର୍କ-ଇକ ) ତର୍କଶାସ୍ତ୍ରଜ୍ଞ, ତର୍କଶାସ୍ତ୍ରାଧ୍ୟାୟୀ ।

ତାର୍କ୍ଷ୍ୟ, ବି. ପୁଂ. ( ତାର୍କ୍ଷ-ଯ ) ରସାଞ୍ଜନ; ଅଶ୍ୱ; ସର୍ପ; ଗରୁଡ଼; ଶାଳବୃକ୍ଷ; ଅରୁଣ; ରଥ; ଅର୍ଜୁନ; ବୃକ୍ଷବିଶେଷ ।

ତାର୍କ୍ଷ୍ୟଧ୍ୱଜ, ବି. ପୁଂ. ( ତାର୍କ୍ଷ୍ୟ-ଧ୍ୱଜ ) ବିଷ୍ଣୁ, ନାରାୟଣ ।

ତାର୍କ୍ଷ୍ୟନାୟକ, ବି. ପୁଂ. ( ତାର୍କ୍ଷ୍ୟ-ନୀ-ଅକ ) ଗରୁଡ଼ ।

ତାର୍ଯ୍ୟ, ବିଂ. ( ତୃ-ଯ ) ତରଣୀୟ, ତରଣାର୍ଥେ ଯାହା ଦିଆଯାଏ ( ଶୁଳ୍କ ) ।

ତାଲ, ବି. ପୁଂ. (ତଲ୍-ଅ) ଗୀତବାଦ୍ୟ ବିଷୟରେ କାଳ ଓ କ୍ରିୟାର ପରିମାଣ, କାଳ ପରିମାଣ-ବିଶେଷ; ବିସ୍ତୃତ ଅଙ୍ଗୁଷ୍ଠ ଓ ମଧ୍ୟମାଙ୍ଗୁଳି ପରିମାଣ; ବୃକ୍ଷବିଶେଷ, ତୃଣରାଜ; ହରିତାଳ; ତାଳଫଳ ।

ତାଲକ, ବି. ନ. ( ତାଳ-ଅକ ) ହରିତାଳ; ତାରା; ଦ୍ୱାରରୋଧକଯନ୍ତ୍ର; ସୁଗନ୍ଧମୃତ୍ତିକା ।

ତାଲକୀ, ବି. ସ୍ତ୍ରୀ. ( ତାଳ-କ-ଈ ) ତାଳରସ, ତାଡ଼ି ।

ତାଲକେତୁ, ବି. ପୁଂ. (ତାଳ-କେତୁ) ଭୀଷ୍ମ ।

ତାଲଜଙ୍ଘ, ବି. ପୁଂ. ଯଦୁବଂଶୀୟ ନୃପତିବିଶେଷ ।

ତାଲଧ୍ୱଜ, ବି. ପୁଂ. ( ତାଳ-ଧ୍ୱଜ ) ବଳଦେବ, ବଳରାମ ।

ତାଲଧ୍ୱଜା, ବି. ସ୍ତ୍ରୀ. ( ତାଳ-ଧ୍ୱଜ-ଆ ) ନଗରୀ-ବିଶେଷ; ତାଳଗଛର ପତ୍ର ।

ତାଲନବମୀ, ବି. ସ୍ତ୍ରୀ. ଭାଦ୍ରବ ମାସର ଶୁକ୍ଳନବମୀ ।

ତାଲପତ୍ର, ବି. ନ. ( ତାଳ-ପତ୍ର ) କର୍ଣ୍ଣଭୂଷଣ-ବିଶେଷ; ତାଳଗଛର ପତ୍ର ।

ତାଲଭୃତ୍, ବି. ପୁଂ. (ତାଳ-ଭୃ-୦) ବଳଦେବ ।

ତାଲଯନ୍ତ୍ର, ବି. ନ. (ତାଳ-ଯନ୍ତ୍ର) କୋଲପ, ଚାବି ।

ତାଲଲକ୍ଷ୍ମା, ବି. ପୁଂ. (ତାଳ-ଲକ୍ଷ୍ମନ୍) ବଳରାମ ।

ତାଲବୃନ୍ତ, ତାଲବୃନ୍ତକ, ବି. ପୁଂ. (ତାଳ-ବୃନ୍ତ-କ) ବ୍ୟଜନ, ପଙ୍ଖା, ତାଳବିଞ୍ଚଣା ।

ତାଲବେତାଲ, ବି. ପୁଂ. ବିକ୍ରମାଦିତ୍ୟଙ୍କ ବଶୀଭୂତ ଓ ଆଜ୍ଞାବହ ଉପଦେବତାଦ୍ୱୟ ।

ତାଲବ୍ୟ, ବିଂ. (ତାଳୁ-ଯ) ତାଳୁସମ୍ବନ୍ଧୀୟ । ବି. ତାଳୁରୁ ଉଚ୍ଚାରିତ ବର୍ଣ୍ଣ ।

ତାଲସଜ, ବି. ନ. ( ଦେଶଜ ) ତାଳଗଛର କୋମଳ ଫଳ ।

ତାଲା, ବି. ( ଦେଶଜ ) କୋଲପ, ଦ୍ୱାରଦେଶ ରୋଧକ ଯନ୍ତ୍ର ।

ତାଲାଙ୍କ, ବି. ପୁଂ. ( ତାଳ-ଅଙ୍କ ) ବଳରାମ; ମହାଦେବ; ଲକ୍ଷଣାକ୍ରାନ୍ତପୁରୁଷ; ପୁସ୍ତକ; ଶାକବିଶେଷ ।

ତାଲି, ବି. ସ୍ତ୍ରୀ. (ତାଳ ଶବ୍ଦଜ) କରତାଳଧ୍ୱନି ।

ତାଲିମ୍, (ଆରବୀ ଇଲମ୍ ଶବ୍ଦଜ) ଶିକ୍ଷା, ଉପଦେଶ ।

ତାଲୀ, ବି. ସ୍ତ୍ରୀ. (ତାଳ-ଈ) ହେନ୍ତାଳଗଛ, ତାଳଗଛ; ତାଳବନ; ତାଡ଼ି; ତାଲା; ଯେ ବାଦ୍ୟ ସଂଯୋଗରେ ତାଳ ପ୍ରଦାନ କରେ । ପୁଂ. ଶିବ; ମୁନିବିଶେଷ ।

ତାଲୁ, ବି. ନ. (ତୃ=ଗମନ କରିବା-ଉ) ଯାହା-ଠାରୁ ବାକ୍ୟ ନିର୍ଗତ ହୁଏ, ପାଟିର ଉପର ଭାଗ, ମୂର୍ଦ୍ଧା ଓ ଦନ୍ତର ମଧ୍ୟବର୍ତ୍ତୀ ସ୍ଥାନ ।

ତାଲୁକ, ବି. ନ. (ତାଲୁ-କ) ତାଳୁ; ଭୂମ୍ୟଧିକାର, ଜମିଦାରୀ ରାଜ୍ୟ ।

ତାଲୁଜିହ୍ୱ, ବି. ପୁଂ. (ତାଲୁ-ଜିହ୍ୱା-ଅ) କୁମ୍ଭୀର-ଘଣ୍ଟିକା ।

ତାଲୂର, ବି. ପୁଂ. (ତାଳ-ଉର) ଆବର୍ତ୍ତ, ଜଳ ଭଉଁରୀ ।

ତାଲେବର, ବିଂ. (ଯାବନକ) ଧନାଢ୍ୟ, ଭାଗ୍ୟ-ବାନ୍ ।

ତାବକ, ତାବକୀନ, ବି°. (ଯୁଷ୍ମଦ୍-ଅ,ଈନ) ତ୍ୱଦୀୟ, ତୁମ୍ଭର ।

ତାବତ୍, ଅ°. ଅବଧି; ପରିଚ୍ଛେଦ; ସାକଲ୍ୟ; ଅବଧାରଣ; ତଦବଧି, ସେହି ପର୍ଯ୍ୟନ୍ତ, ତତ୍କାଳରେ । ବି°. ତତ୍ସଂଖ୍ୟକ ।

ତାବିଜ, ବି. ନ. (ଯାବନିକ) କଣ୍ଠର ଆଭରଣ-ବିଶେଷ, ଅଳଙ୍କାରବିଶେଷ ।

ତାବିଷ, ବି. ପୁଂ. (ତବ୍-ଇଷ) ସ୍ୱର୍ଗ; ସ୍ୱର୍ଣ୍ଣ; ସମୁଦ୍ର । ସ୍ତ୍ରୀ. ଦେବକନ୍ୟା; ନଦୀ; ଭୂମି ।

ତାବେଦାର, (ଯାବନିକ) ଅଧୀନ ।

ତାସ, ବି. (ଦେଶଜ) କ୍ରୀଡ଼ାର୍ଥ ଚିହ୍ନିତ କ୍ଷୁଦ୍ର ଚିତ୍ରପଟ ।

ତାସୁଣୀ, ବି. ସ୍ତ୍ରୀ. (ଦେଶଜ) ଶ୍ୱସୁଣୀ, ତଥାର ସ୍ତ୍ରୀ ।

ତାହା, (ତଦ୍‌ଶବ୍ଦଜ) ସେହି ।

ତାହୁବା, ତାଇବା, କ୍ରି. (ଦେଶଜ) ଉତ୍ତେଜିତ କରିବା, ଉସ୍କୈବା । ଯଥା—

ନାସେ ଶ୍ୱାସ ରହିଲା ନାଶେ ମାତ,
ତାହିଲା ମୂର୍ଚ୍ଛା ମୂର୍ଚ୍ଛିତ ଗଲା କାହିଁ ସେ ।

ତିଅଣ, (ସଂସ୍କୃତ ତେମନ୍) ତରକାରି ।

ତିକ୍ତ, ବି. ପୁଂ. (ତିଜ୍-ତ) ତିକ୍ତରସ । ବି°. ତିକ୍ତରସଯୁକ୍ତ, ସୁଗନ୍ଧ ।

ତିକ୍ତକ, ବି. ପୁଂ. (ତିକ୍ତ-କ) ପୋଟଳ; ଚିରେଇତା; ନିମ୍ବ ।

ତିକ୍ତପର୍ବ, ବି. ପୁଂ. (ତିକ୍ତ-ପର୍ବ) କାଙ୍କଡ଼ ।

ତିକ୍ତସାର, ବି. ପୁଂ. (ତିକ୍ତ-ସାର) ଖଦିରବୃକ୍ଷ ।

ତିଖ, ବି°. (ଦେଶଜ) ଉଚ, ଉଗ୍ର ।

ତିଗ୍ମ, ବି°. (ତିଜ୍-ମ) ତୀକ୍ଷ୍ଣ, ଉଷ୍ଣ, ଖର, ଉଗ୍ର, କଟୁ, ଉଦ୍ଧତ । ବି. ନ. ଉଷ୍ଣତା ।

ତିଗ୍ମରଶ୍ମି, ବି. ପୁଂ. (ତିଗ୍ମ-ରଶ୍ମି) ସୂର୍ଯ୍ୟ, ଭାସ୍କର, ଦିବାକର ।

ତିଗ୍ମାଂଶୁ, ବି. ପୁଂ. (ତିଗ୍ମ-ଅଂଶୁ) ସୂର୍ଯ୍ୟ ।

ତିଙ୍ଗୁଦ, ବି. ପୁଂ. ବୃକ୍ଷବିଶେଷ, ଇଙ୍ଗୁଦୀବୃକ୍ଷ ।

ତିତଉ, ବି. ପୁଂ. (ତନ୍-ଇତନ୍) ଚାଲୁଣୀ, ସଚ୍ଛିଦ୍ର ବଂଶନିର୍ମିତ ପାତ୍ରବିଶେଷ ।

ତିତିକ୍ଷା, ବି. ସ୍ତ୍ରୀ. (ତିଜ୍-ସନ୍-ଅ) କ୍ଷମା, ସହିଷ୍ଣୁତା । ଯଥା—

ତିତିକ୍ଷା ସେ ରତ ସଦା ମହାଭାଗ୍ୟବନ୍ତେ । ମ. ଯା.

ତିତିକ୍ଷୁ, ବି°. (ତିଜ୍-ସନ୍-ଉ) କ୍ଷମାଶୀଳ, ସହିଷ୍ଣୁ ।

ତିତିଭ, ବି. ପୁଂ. ଇନ୍ଦ୍ରଗୋପ କୀଟ, ସାଧବବୋହୂ ପୋକ ।

ତିତୀର୍ଷୁ, ବି°. (ତୃ-ସନ୍-ଉ) ତରଣେଚ୍ଛୁ ।

ତିତ୍ତିରି, ତିତ୍ତିର, } ବି. ପୁଂ. (ତିତ୍ତି-ରା-ଅ,ଇ) ପକ୍ଷି-ବିଶେଷ; ମୁନିବିଶେଷ ।

ତିଥ, ବି. ପୁଂ. (ତିଜ୍-ଥ) ଅଗ୍ନି; କାଳ; ପ୍ରାବୃଟ୍-କାଳ ।

ତିଥି, ବି. ସ୍ତ୍ରୀ. (ଅତ୍-ଇଥି) ଚାନ୍ଦ୍ରମାସର ତିଂଶ-ଅଂଶ, ପ୍ରତିପଦାଦି, ଚନ୍ଦ୍ରକଳାର ହ୍ରାସ ବୃଦ୍ଧିଦ୍ୱାରା ସୀମାବଦ୍ଧ କାଳ ।

ତିଥିକ୍ଷୟ, ବି. ପୁଂ. (ତିଥି-କ୍ଷୟ) ଅମାବାସ୍ୟା ।

ତିଥିପ୍ରଣୀ, ବି. ପୁଂ. (ତିଥି-ପ୍ର-ଣୀ) ଚନ୍ଦ୍ର, ତିଥି-ପ୍ରଣେତା ।

ତିଥିସନ୍ଧି, ବି. ପୁଂ. ଦୁଇ ତିଥିର ମିଳନ ।

ତିନ, ବି°. (ତି ଶବ୍ଦଜ) ୩ ସଂଖ୍ୟା ।

ତିନକାଳ, ବି. ବାଲ୍ୟାବସ୍ଥା, ଯୌବନାବସ୍ଥା ଓ ପ୍ରୌଢ଼ାବସ୍ଥା; ସତ୍ୟ, ତ୍ରେତା ଓ ଦ୍ୱାପର; ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ ।

ତିନ୍ତିଡ଼ୀକା, ବି. ସ୍ତ୍ରୀ. (ତିନ୍ତିଡ଼-କ-ଆ) ତିନ୍ତୁଳୀ-ଗଛ । ନ. ତିନ୍ତୁଳୀଫଳ ।

ତିନ୍ତିବା, କ୍ରି. ବି°. (ଦେଶଜ) ଆର୍ଦ୍ର ହେବା, ତିନ୍ତିବା, ଭିଜିବା ।

ତିନ୍ଦୁ, ତିନ୍ଦୁକ, } ବି. ପୁଂ. (ତିମ୍-ଉ-କ) ଗବଗଛ ।

ତିନ୍ଦୁକତୀର୍ଥ, ବି. ନ. ମଥୁରାନିକଟସ୍ଥ ତୀର୍ଥ-ବିଶେଷ ।

ତିବ୍ବତ୍, ବି. ଦେଶବିଶେଷ ।

ତିମି, ବ. ପୁଂ. (ତିମ୍-ଇ) ପ୍ରକାଣ୍ଡ ମତ୍ସ୍ୟବିଶେଷ; ସମୁଦ୍ର । (ମତ୍ସ୍ୟ ଅର୍ଥରେ) ଯଥା—

ହ୍ରଦେ ତିମିବୃନ୍ଦ ଏହା କରନ୍ତ ରକ୍ଷଣ । ବ. ବ.

ତିମିକୋଷ, ବ. ପୁଂ. (ତିମି-କୋଷ) ସମୁଦ୍ର ।

ତିମିଙ୍ଗିଳ, ବ. ପୁଂ. (ତିମିଂ-ଗିଲ) (ଗୃଧାଦ୍ୟୁକ) ଅତି ବଡ଼ମତ୍ସ୍ୟ । ଯଥା—

ତିମି ତିମିଙ୍ଗିଳରୂପେ ଭ୍ରମିଲେ ବେଳିରବେ । ମ. ଯା.

ତିମିକ, ବ. ନ. (ତିମି-ଜନ୍-ଅ) ମୁକ୍ତାବିଶେଷ ।

ତିମିତ, ବଂ. (ତିମି-ତ) ନିଶ୍ଚଳ; ଆର୍ଦ୍ର, ଓଦା ।

ତିମିର, ବ. ନ. (ତିମ୍-ଇର) ଅନ୍ଧକାର; ନେତ୍ର-ରୋଗବିଶେଷ । ବଂ. ଅନ୍ଧକାରମୟ ।

ତିମିରନୁଦ୍, ବ. ପୁଂ. (ତିମିର-ନୁଦ୍-ଂ) ସୂର୍ଯ୍ୟ ।

ତିମିରରିପୁ, ବ. ପୁଂ. ସୂର୍ଯ୍ୟ; ଅଲୋକ ।

ତିରଶ୍ଚୀ, ବ. ସ୍ତ୍ରୀ. (ତିର୍ଯ୍ୟର୍-ଈ) ପକ୍ଷିଣୀ; ସ୍ତ୍ରୀଜାତୀୟ ପଶୁ ।

ତିରଶ୍ଚୀନ, ବଂ. (ତିର୍ଯ୍ୟର୍-ଈନ) ତେର୍ଚ୍ଛା, କୁଟିଳ । ଯଥା—

ଝଟକୁ ଥିବା ସେ ପ୍ରଭୁ ଥଗେ ଦୂଷ୍ଟ ବୈଚିତ୍ର୍ୟବଳ ଗ୍ରାସ
ବଣାଳ ତ୍ରିଶୂଳଦଣ୍ଡ ତିରଶ୍ଚୀନେ ଘଟଚହେମନାଙ୍କାଶ । ଯ. କେ.

ତିରଃ, ଅଂ. (ତୃ-ଅସ୍) ଅନ୍ତର୍ଦ୍ଧାନ; ଅବଜ୍ଞା; ଅପ୍ରକାଶ୍ୟ; ତିରସ୍କାର ।

ତିରସ୍କରଣୀ, } ବ. ( ତିରସ୍-କୃ-ଇନ୍-ଈ )
ତିରସ୍କାରିଣୀ, } ପର୍ଦ୍ଦା, ଅଚ୍ଛାଦନ; ଅଦର୍ଶନୀ ବିଦ୍ୟା ।

ତିରସ୍କାର, ପୁଂ. } ବ. ସ୍ତ୍ରୀ. (ତିରସ୍-କୃ-ଅ)
ତିରସ୍କ୍ରିୟା, ସ୍ତ୍ରୀ. } ନିନ୍ଦା, ଭର୍ତ୍ସନା, ଅବଜ୍ଞା; ଅଚ୍ଛାଦନ, କଞ୍ଚୁକ ।

ତିରସ୍କୃତ, ବଂ. (ତିରସ୍-କୃ-ତ) ଅବଜ୍ଞାତ, ନିନ୍ଦିତ, ଭର୍ତ୍ସିତ; ଅଚ୍ଛାଦିତ ।

ତିରୋଧାନ, ବ. ନ. (ତିରସ୍-ଧାନ) ଅଦର୍ଶନ, ଅନ୍ତର୍ଦ୍ଧାନ; ଅଚ୍ଛାଦନ, ବ୍ୟବଧାନ ।

ତିରୋଭବ, ବଂ ପୁଂ. (ତିରସ୍-ଭୂ-ଅ) ଅଦର୍ଶନ; ଅଚ୍ଛାଦନ ।

ତିରୋଭୂତ, ବଂ. (ତିରସ୍-ଭୂ-ତ) ଅଚ୍ଛାଦିତ; ଅନ୍ତର୍ହିତ ।

ତିରୋହିତ, ବଂ. (ତିରସ୍-ଧା-ତ) ଅନ୍ତର୍ହିତ; ଅଚ୍ଛାଦିତ ।

ତିର୍ଯ୍ୟକ୍, ଅଂ. ବଂ. (ତିରସ୍-ଅନ୍-ର୍-ଂ) ବକ୍ର, କୁଟିଳ; ତେର୍ଚ୍ଛା; ପାର୍ଶ୍ୱ; ନିରୂଦ୍ଧ । ଯଥା—

ଚଟଳେ ଏଡ଼ାଇ ଶିକାର ଖରେ ତିର୍ଯ୍ୟକେ ଖସେ ।

ତିର୍ଯ୍ୟଗ୍‌ଯୋନି, ବ. ସ୍ତ୍ରୀ. ( ତିର୍ଯ୍ୟକ୍-ଯୋନି ) ପଶୁପକ୍ଷ୍ୟାଦି ଜାତି ।

ତିର୍ଯ୍ୟକ୍‌ସ୍ରୋତାଃ, ବ. ପୁଂ. ( ତିର୍ଯ୍ୟକ୍-ସ୍ରୋତସ୍ ) ପଶୁପକ୍ଷ୍ୟାଦି ।

ତିର୍ଯ୍ୟଗ୍‌ଗତି, ବ. ସ୍ତ୍ରୀ. (ତିରସ୍-ଅନ୍-ର୍-ଗମ୍-ତି ) ବକ୍ରଗମନ ।

ତିର୍ଯ୍ୟଗ୍‌ଯାନ, ବ. ପୁଂ. (ତିର୍ଯ୍ୟକ୍-ଯାନ) କୁଳୀର, କଙ୍କଡ଼ା ।

ତିର୍ଯ୍ୟଞ୍ଚ୍, } ବଂ. (ତିରସ୍-ଅଞ୍ଚ୍-ଂ,ଅ) ବକ୍ର-
ତିର୍ଯ୍ୟଞ୍ଚ, } ଗମନଶୀଳ । ବ. ପଶୁ; ପକ୍ଷୀ ।

ତିଲ, ବ. ପୁଂ. (ତିଲ୍-ଅ) ରାଶି; ତଦାକାର ଦେହସ୍ଥ ଚିହ୍ନ; ସୂକ୍ଷ୍ମକାଳ । ବଂ. ଅତ୍ୟଳ୍ପ ।

ତିଲକ, ବ. ପୁଂ. ନ. (ତିଲ୍-ଅକ) ଚୋପା ଚିତା; ରୋଗବିଶେଷ । ପୁଂ. ତିଳବୃକ୍ଷ ।

ତିଲକଟ, ବ. ପୁଂ. ( ତିଲ-କଟ ) ତିଲଚୂର୍ଣ୍ଣ, ତିଲର ଗୁଣ୍ଡ ।

ତିଲକାଲକ, ବ. ପୁଂ. (ତିଲ-କାଲ-ଅକ) ଶରୀ-ରସ୍ଥ ତିଲ; ତିଲଯୁକ୍ତ ବ୍ୟକ୍ତି; ଯାହାର ଅଳ-କରେ ତିଲକ ଅଛି ।

ତିଲକାଶ୍ରୟ, ବ. ପୁଂ. (ତିଲକ-ଆଶ୍ରୟ) ଲଲାଟ, କପାଳ ।

ତିଲକୀ, ବଂ. ( ତିଲକ-ଇନ୍ ) ତିଲକଯୁକ୍ତ, ତିଲକଧାରୀ ।

ତିଲତଣ୍ଡୁଳକ, ବ. ନ. ( ତିଲ-ତଣ୍ଡୁଳ-କ ) ତିଲମିଶ୍ରିତ ତଣ୍ଡୁଳ ।

ତିଲପର୍ଣ୍ଣିକା, ବ. ସ୍ତ୍ରୀ. ରକ୍ତଚନ୍ଦନ; ତିଲପର୍ଣ୍ଣୀ ।

ତିଳରସ, } ବ. ପୁଂ. {ତିଳ-ରସ} ଖଜା-
ତିଳସ୍ନେହ, } {ତିଳ-ସ୍ନେହ}
ତେଲ, ରାଶିତେଲ, ତିଳତୈଳ ।

ତିଳିତ୍ସ, ବ. ପୁଂ. (ତିଳତ୍-ସ) ବୃହତ୍ ସର୍ପ ।

ତିଳୋତ୍ତମା, ବ. ସ୍ତ୍ରୀ. ( ତିଳ-ଉତ୍ତମା ) ସ୍ୱର୍ଗୀୟ ଅପ୍ସରାବିଶେଷ ।

ତିଳୋଦକ, ବ. ନ. (ତିଳ-ଉଦକ) ତିଳମିଶ୍ରିତ ଜଳ ।

ତିଳୌଦନ, ବ. ନ. (ତିଳ-ଓଦନ) ତିଳମିଶ୍ରିତ ଅନ୍ନ ।

ତିଲ୍ୟ, ବ. ନ. (ତିଳ-ଯ) ତିଳକ୍ଷେତ୍ର ।

ତିଲ୍ୱ, ବ. ପୁଂ. ( ତିଲ୍ୟ-ବ ) ଲୋଧ୍ରବୃକ୍ଷବିଶେଷ ।

ତିଷ୍ୟ, ବ. ପୁଂ. (ତିଷ-ଯ) ପୁଷ୍ୟାନକ୍ଷତ୍ର; ପୌଷ ମାସ; କଳିଯୁଗ ।

ତିଷ୍ୟକ, ବ. ପୁଂ. (ତିଷ୍ୟ-କ) ଯେଉଁ ମାସରେ ପୁଷ୍ୟାନକ୍ଷତ୍ରଯୁକ୍ତ ପୌର୍ଣ୍ଣମାସୀ ହୁଏ ।

ତିଷ୍ୟପୁଷ୍ପ, ବ. ନ. (ତିଷ୍ୟ-ପୁଷ୍ପ) ଅଁଳା ।

ତୀକ୍ଷ୍ଣ, ବ. ନ. (ତିଜ୍-ସ୍ନ) ଉଗ୍ରତା; ଉଷ୍ଣତା; ବିଷ; ଲୌହବିଶେଷ; ଯୁଦ୍ଧ; ମରକ; ମୃତ୍ୟୁ; ଅସ୍ତ୍ର; ଦୈନବଲ୍ୱଣ; ଝାଳ । ପୁଂ. ସୋରା । ବିଂ. ଉଷ୍ଣ; କ୍ଷିପ୍ରକାରୀ; ଅନଳସ; ବୁଦ୍ଧିମାନ୍, ଖର; ଉଗ୍ର; ଆତ୍ମତ୍ୟାଗୀ; ଆତ୍ମହତ୍ୟାକାରୀ ।

ତୀକ୍ଷ୍ଣକଣ୍ଟକ, ବ. ପୁଂ. (ତୀକ୍ଷ୍ଣ-କଣ୍ଟକ) ଧୂତୁରାଗଛ, ବବୁରିଗଛ ।

ତୀକ୍ଷ୍ଣକନ୍ଦ, ବ. ପୁଂ. ( ତୀକ୍ଷ୍ଣ-କନ୍ଦ ) ପଲାଣ୍ଡୁ, ପିଆଜ ।

ତୀକ୍ଷ୍ଣକର୍ମା, ବିଂ. ( ତୀକ୍ଷ୍ଣ-କର୍ମନ୍ ) କାର୍ଯ୍ୟଦକ୍ଷ, ପାରଗ, ତତ୍ପର, ଉଦ୍ୟୋଗୀ ।

ତୀକ୍ଷ୍ଣଗନ୍ଧ, } ବ. ପୁଂ. (ତୀକ୍ଷ୍ଣ-ଗନ୍ଧ,କ) ସଜନା-
ତୀକ୍ଷ୍ଣଗନ୍ଧକ, } ଗଛ; ରକ୍ତତୁଳସୀ; ଛୋଟଅଳାଇଚ; ବୃକ୍ଷବିଶେଷ । ସ୍ତ୍ରୀ. ସର୍ଷପ ।

ତୀକ୍ଷ୍ଣତଣ୍ଡୁଳା, ବ. ସ୍ତ୍ରୀ. ( ତୀକ୍ଷ୍ଣ-ତଣ୍ଡୁଳ-ଅ ) ପିପଳୀ ।

ତୀକ୍ଷ୍ଣଦଂଷ୍ଟ୍ର, ବ. ପୁଂ. (ତୀକ୍ଷ୍ଣ-ଦଂଷ୍ଟ୍ରା) ବ୍ୟାଘ୍ର ।

ତୀକ୍ଷ୍ଣଧାର, ବ. ପୁଂ. (ତୀକ୍ଷ୍ଣ-ଧାର) ଖଡ୍ଗ, ଖଣ୍ଡା ।

ତୀକ୍ଷ୍ଣପତ୍ର, ପୁଂ. } ବ.(ତୀକ୍ଷ୍ଣ-ପତ୍ର, ପୁଷ୍ପ) ଲବଙ୍ଗ ।
ତୀକ୍ଷ୍ଣପୁଷ୍ପ, ନ. } ସ୍ତ୍ରୀ. କେତକୀବୃକ୍ଷ ।

ତୀକ୍ଷ୍ଣରସ, ବ.ପୁଂ. (ତୀକ୍ଷ୍ଣ-ରସ) ସୋରା, ଯବକ୍ଷାର ।

ତୀକ୍ଷ୍ଣାୟସ, ବ. ନ. ( ତୀକ୍ଷ୍ଣ-ଅୟସ୍ ) ଇସ୍ପାତ । ବିଂ. ଇସ୍ପାତନିର୍ମିତ ।

ତୀୟର, ବ. ( ଧୀବର ଶବ୍ଦଜ ) ବର୍ଣ୍ଣସଙ୍କରବିଶେଷ ।

ତୀଖ, ତିଖ, ବିଂ. (ପ୍ରା:) ଲମ୍ବଭାବରେ ଉଚ୍ଚ, ତାଳୁହୀନ; ଗରମ ।

ତୀଖା, ବ. (ଦେଶଜ) କାଚନିର୍ମିତ ହସ୍ତାଭରଣ ।

ତୀଖାଇବା, କ୍ରି. (ଦେଶଜ) ମଜେଇଦେବା, ଉତ୍ତେଜିତ କରିବା ।

ତୀର, ବ. ନ. (ତୀର-ଅ) ନଦୀକୂଳ, ତଟ; ବାଣ; ଟିଣଧାତୁ ।

ତୀର୍ଣ୍ଣ, ବିଂ. (ତୃ-ତ) ଉତ୍ତୀର୍ଣ୍ଣ, ଆପ୍ଲୁତ; ଅତିକ୍ରାନ୍ତ ।

ତୀର୍ଥ, ବ. ପୁଂ. ନ. (ତୃ-ଥ) ପାପରୁ ମୁକ୍ତି ପାଇବା ନିମିତ୍ତ ଲୋକେ ଯେଉଁ ସ୍ଥାନକୁ ଗମନ କରନ୍ତି, ପୁଣ୍ୟସ୍ଥାନ ।

ତୀର୍ଥଙ୍କର, } ବ. ପୁଂ. ( ତୀର୍ଥ-କୃ-ଅ, କୃତ୍ )
ତୀର୍ଥକୃତ୍, } ଶାସ୍ତ୍ରକାର; ବୌଦ୍ଧମତପ୍ରବର୍ତ୍ତକ ମୁନି ।

ତୀର୍ଥକାକ, ବ. ପୁଂ. ( ତୀର୍ଥ-କାକ ) ତୀର୍ଥସ୍ଥିତ କାକପରି ବ୍ୟବହାରୀ ଲୋକ, ଲୋଲୁପ; ତୀର୍ଥସ୍ଥିତ କାକ ।

ତୀର୍ଥରାଜ, ବ. ପୁଂ. ( ତୀର୍ଥ-ରାଜ ) ପ୍ରୟାଗତୀର୍ଥ; ସମୁଦ୍ର । ଯଥା—

ସେ ଦୁର୍ଗ ପରିଖା ତୀର୍ଥରାଜ ଗର୍ଜ୍ଜନରେ
ବହେ ଅବଗାହେ ପାପବୃନ୍ଦ ଦହନରେ । କୋ. କ୍ର. ଛ.

ତୀର୍ଥରାଜୀ, ବ. ସ୍ତ୍ରୀ. ( ତୀର୍ଥ-ରାଜୀ ) କାଶୀ, ବାରାଣସୀ ।

ତୀର୍ଥସେବୀ, ବ. ପୁଂ. ସ୍ତ୍ରୀ. (ତୀର୍ଥ-ସେବିନ୍ ) ବକ-ପକ୍ଷୀ । ବିଂ. ତୀର୍ଥବାସୀ ।

ତୀବର, ବ. ପୁଂ. (ତୃ-ବର) ସମୁଦ୍ର ବ୍ୟାଧ; ଧୀବର ଜାତି।

ତୀବ୍ର, ବିଂ. (ତୀବ୍-ର) ଉଷ୍ଣ; ଅଧିକ; ମହତ୍; ଦୁଃସହ; ତୀକ୍ଷ୍ଣ। ବ. ନ. ଆଧିକ୍ୟ; ଉଷ୍ଣତା; ତୀକ୍ଷ୍ଣତା। ପୁଂ. ଶିବ।

ତୀବ୍ରଗନ୍ଧା, ବ. ସ୍ତ୍ରୀ. (ତୀବ୍ର-ଗନ୍ଧ) ଯୁଆଣୀ।

ତୁ, ସଂ. (ଦେଶଜ) ତୁମ୍ଭର ଅପଭ୍ରଂଶ।

ତୁ, ଅଂ. (ତୁଦ୍-ଉ) ସମ୍ପର୍କ; ପ୍ରଭେଦ; କିନ୍ତୁ; ଆଧିକ୍ୟ; ଅଧିକନ୍ତୁ; ନିୟୋଗ; ନିଗ୍ରହ; ପଦ; ପ୍ରଶଂସା; ଅବଧାରଣ।

ତୁକ୍, ବ. ପୁଂ. (ତୁଜ୍-୦) ଅପତ୍ୟ, ସନ୍ତାନ।

ତୁଗା, ବ. ସ୍ତ୍ରୀ. ବଂଶଲୋଚନ।

ତୁଙ୍ଗ, ବିଂ. (ତୁନ୍ଜ-ଅ) ଉନ୍ନତ; ଶ୍ରେଷ୍ଠ; ଉଗ୍ର। ବ. ପୁଂ. ପର୍ବତ; ନଡିଆଗଛ; ମେଷାଦି ରାଶିବିଶେଷ; ହରିଦ୍ରା; ଗିରି।

ତୁଙ୍ଗକ, ବ. ପୁଂ. (ତୁଙ୍ଗ-କ) ପୁନ୍ନାଗବୃକ୍ଷ; ତୁଙ୍ଗକାରଣ୍ୟ, ତୀର୍ଥବିଶେଷ।

ତୁଙ୍ଗଭଦ୍ରା, ବ. (ତୁଙ୍ଗ-ଭଦ୍ରା) ପୁଂ. ମତ୍ତହସ୍ତୀ। ସ୍ତ୍ରୀ. ମହୀଶୂର ଅନ୍ତର୍ଗତ ନଦୀବିଶେଷ।

ତୁଙ୍ଗଶେଖର, ବ. ପୁଂ. (ତୁଙ୍ଗ-ଶେଖର) ପର୍ବତ। ବିଂ. ଉଚ୍ଚଶେଖରଯୁକ୍ତ।

ତୁଙ୍ଗୀ, ବ. ପୁଂ. (ତୁଙ୍ଗ-ଇନ୍) ଉଚ୍ଚସ୍ଥ ଗ୍ରହ। ବିଂ. ଉଚ୍ଚସ୍ଥାନସ୍ଥିତ। ସ୍ତ୍ରୀ. ହରିଦ୍ରା; ଗିରି; ମହାଶତାବରୀ।

ତୁଙ୍ଗୀପତି, ବ. ପୁଂ. (ତୁଙ୍ଗୀ-ପତି) ଚନ୍ଦ୍ର।

ତୁଙ୍ଗୀଶ, ବ. ପୁଂ. (ତୁଙ୍ଗୀ-ଈଶ) ଶିବ; ଚନ୍ଦ୍ର; ସୂର୍ଯ୍ୟ; କୃଷ୍ଣ।

ତୁଚ୍ଛ, ବିଂ. (ତୁଦ=ପୀଡନ କରିବା-ଛ) ହେୟ; ଅଳ୍ପ; ଅସାର; ଶୂନ୍ୟ; ହୀନ। ବ. ନ. ତୁଷ।

ତୁଚ୍ଛଦ୍ରୁ, ବ. ପୁଂ. (ତୁଚ୍ଛ-ଦ୍ରୁ) ଏରଣ୍ଡବୃକ୍ଷ, ଗବଗଛ।

ତୁଚ୍ଛା, ତୁଛ, ବିଂ. (ଦେଶଜ) କେବଳ। ଯଥା—

ତୁଛା ତଲା କେବେ ପେଡଇ କପଣ।

ଖାଲି, ଅମିଶ୍ର।

ତୁଟିବାର, କ୍ରି. (ତ୍ରୁଟ୍ ଧାତୁଜ) ଭଗ୍ନ ହେବାର; ଚକ୍ଷୁଲଜ୍ଜା ତ୍ୟାଗ କରିବାର; ଛାଡିବା। ଯଥା—

ବେଶରେ ଅବେଶ ହେବା କ୍ରମଶେ ତୁଟିବ,
ଅହାରେ ବମନା ହୋଇ ଗମବେ ଫୁଟିଲ। ସ. ବ.

ତୁଞ୍ଜ, ବ. ପୁଂ. (ତୁନ୍ଜ୍-ଅ) ବଜ୍ର।

ତୁଠ, ବ. (ଦେଶଜ) ନଦୀ ବା ପୁଷ୍କରିଣୀରେ ସ୍ନାନ କରିବା ସ୍ଥାନ।

ତୁଣ୍ଡ, ବ. ନ. (ତୁଣ୍ଡ୍-ଅ) ମୁଖ, ଓଷ୍ଠାଧାର; ଚଞ୍ଚୁ; ଶିବ। (ମୁଖ ଅର୍ଥରେ) ଯଥା—

ବଡ ବଡ ହେଲେ ବହୁ ବୋଲିବ ତୁଣ୍ଡେ।

ତୁଣ୍ଡପୋଡ଼ା, ବ. (ଦେଶଜ) କଣ୍ଟକବୃକ୍ଷବିଶେଷ।

ତୁଣ୍ଡି, ବ. ପୁଂ. (ତୁଣ୍ଡ୍-ଇ) ଆସ୍ୟ। ସ୍ତ୍ରୀ. ନାଭି।

ତୁଣ୍ଡିଭ, ତୁଣ୍ଡିଲ, ବିଂ. (ତୁଣ୍ଡି-ଭ, ଲ) ବୃହତ ନାଭିଯୁକ୍ତ, ସ୍ଥୂଳୋଦର।

ତୁଣ୍ଡୀ, ବ. (ତୁଣ୍ଡ-ଇନ୍) ଗୋରୁ ଆଦିଙ୍କର ମୁଖରେ ପ୍ରଦତ୍ତ ପାଶ।

ତୁଣ୍ଡେଇ, ବିଂ. କଳହୀ ସ୍ତ୍ରୀ।

ତୁତ୍ୟା, ବ. (ତୁଥକ୍ ଶବ୍ଦଜ) ତାମ୍ରର ମଳ, ବିଷାକ୍ତ ପଦାର୍ଥବିଶେଷ।

ତୁଦାଦି, ବ. ପୁଂ. ଧାତୁଗଣବିଶେଷ।

ତୁନିହେବା, କ୍ରି. ନୀରବ ହେବା, ମୁଖବନ୍ଦକରିବା, ଚୁପ୍ ହେବା। ଯଥା—

ମିଛ ତୁନି ହୋଇଲେ ତୁ ତ ଅନୁରାଗ ନୋହୁ,
ସ୍ନେହନାହିଁ ସୁଖ ତା ବଢ଼େଇଦେ ଦୁଃଖ,
ଯେ ଜାଣେ ସେ ଅଟେ ବନ୍ଧୁ।

ତୁନ୍ଦ, ବ. ନ. (ତୁଦ୍-ଅ, ନ ଆଗମ) ଉଦର, ପେଟ। ସ୍ତ୍ରୀ. ନାଭି।

ତୁନ୍ଦି, ବ. ନ. (ତୁଦ୍-ଅ-ଇ) ଉଦର, ପେଟ; ନାଭି; ଗନ୍ଧର୍ବବିଶେଷ।

ତୁନ୍ଦିକ, ତୁନ୍ଦିଭ, ତୁନ୍ଦିଲ, ବିଂ. (ତୁଦ୍-ଇକ, ଇଭ, ଇଲ) ସ୍ଥୂଳୋଦର, ପେଟା।

ତୁନ୍ନ, ବିଂ. (ତୁଦ୍-ତ) ବ୍ୟଥିତ; ଛିନ୍ନ। ବ. ପୁଂ. ବୃକ୍ଷବିଶେଷ।

ତୁନ୍ନବାୟ, ବ. ପୁଂ. (ତୁନ୍ନ-ବେ-ଅ) ଦରଜୀ ।

ତୁମୁଳ, ତୁମୂଳ, ବିଂ. (ତୁ=ବଧ କରିବା-ମୂଳ, ମୂଳ) ବିଶୃଙ୍ଖଳ; ଘୋରତର, ଅତିଶୟ, ଉତ୍କଟ, ଭୟାନକ; ବ୍ୟାକୁଳ । ବ. ପୁଂ. ନ. କଳହ, ଗଣ୍ଡଗୋଳ ।

ତୁମ୍ବ, ତୁମ୍ବି, ତୁମ୍ବୀ, ବ. ପୁଂ. (ତୁମ୍ବ୍-ଅ, ଇ, ଈ) ଲାଉ, ଲାଉଖୋଳ; ବୀଣାଦି ବାଦ୍ୟ-ଯନ୍ତ୍ରର ହାଣ୍ଡି ବା ଆଧାର ।

ତୁମ୍ବୁରୀ, ବ. ସ୍ତ୍ରୀ, (ତୁମ୍ବ୍-ଉର-ଈ) କୁକୁନ୍ଦୀ ।

ତୁମ୍ବୁରୁ, ବ. ପୁଂ. (ତୁମ୍ବ-ଉରୁ) ଗନ୍ଧର୍ବବିଶେଷ; ବୃକ୍ଷବିଶେଷ ।

ତୁମ୍ଭେ, ସଂ. (ଯୁଷ୍ମଦ୍ ଶବ୍ଦ) ତୁମେ ।

ତୁରଗ, ତୁରଙ୍ଗ, ତୁରଙ୍ଗମ, ବ. ପୁଂ. ( ତୁର-ଗମ୍-ଅ ) ଅଶ୍ୱ; ମନଃ । ( ଅଶ୍ୱାର୍ଥରେ ) ଯଥା—

ମାତଙ୍ଗେ ମାହୁନ୍ତ ପଡ଼େ ତୁରଙ୍ଗେ ସାଦୀ । କ. କ.

ତୁରଗଦାନବ, ବ. ପୁଂ. ( ତୁରଗ-ଦନୁ-ଅ ) ଅଶ୍ୱାକାର ଦୈତ୍ୟ, କେଶିନାମକ ଅସୁର ।

ତୁରଗାତୁ , ବିଂ. ( ତୁର-ଗା-ତୁ ) ଶୀଘ୍ରଗାମୀ । ପୁଂ. ତୂର୍ଣ୍ଣଗମନ ।

ତୁରଗୀ, ତୁରଙ୍ଗୀ, ବ. ପୁଂ. ( ତୁରଗ, ତୁରଙ୍ଗ-ଇନ୍ ) ଘୋଡ଼ସବାର । ସ୍ତ୍ରୀ. ଅଶ୍ୱଗନ୍ଧା; ଅଶ୍ୱିନୀ, ଜାତି ।

ତୁରଙ୍ଗବଦନ, ବ. ପୁଂ. (ତୁରଙ୍ଗ-ବଦନ) ସ୍ୱର୍ଗଗାୟକ, କିନ୍ନର ।

ତୁରନ୍ତ, ( ଦେଶଜ ) ଶୀଘ୍ର, ଚଞ୍ଚଳ , ତ୍ୱରା, ଜବ ।

ତୁରାସହ, ତୁରାଷାଟ୍ , ବ. ପୁଂ. (ତୁରା-ସହ-୦) ଇନ୍ଦ୍ର, ମେଘବାହନ, ମଘବା, ପାକଶାସନ, ସୁନାସୀର, ପୁରନ୍ଦର, ଶକ୍ର, ବାସବ ।

ତୁରି, ତୁରୀ, ବ. ସ୍ତ୍ରୀ. (ତୁର=ସଙ୍କୁଚିତହେବାର-ଅ କିମ୍ବା ତୁର-ଇ) ତନ୍ତୁବାୟର ଯନ୍ତ୍ରବିଶେଷ ।

ତୁରିତ, ବିଂ. (ତ୍ୱରା ଶବ୍ଦଜ) ଶୀଘ୍ର, ହଠାତ୍ । ଯଥା—

କଠୋରହୃଦୟ ଦଇତ କହିବାରୁ ନାଶ ଅଇଲ ତୁରିତ ।

ତୁରୀୟ, ବିଂ, (ଚତୁର୍-ଈୟ) ଚତୁର୍ଥ । ବ. ନ. ପରବ୍ରହ୍ମ, ପରମାତ୍ମା ।

ତୁରୁଷ୍କ, ବ. ନ. (ତୁର-ଉସ୍-କ) ତୁର୍କିସ୍ଥାନ, ଦେଶବିଶେଷ ।

ତୁର୍ଯ୍ୟ, ତୂର୍ଯ୍ୟ, ବିଂ. (ଚତୁର୍-ଯ) ଚତୁର୍ଥ ।

ତୁର୍ବସୁ, ବ. ପୁଂ. (ଚତୁର୍-ବସୁ) ଯଯାତି ରାଜାର ପୁତ୍ରବିଶେଷ ।

ତୁଳ, କ୍ରି. ଓଜନ କର, ତୌଲ ।

ତୁଳନା, ବ. ସ୍ତ୍ରୀ. ( ତୁଲ୍-ଅନ୍-ଆ ) ଉପମା, ସାଦୃଶ୍ୟ, ଦୃଷ୍ଟାନ୍ତ; ପରିମାଣ ।

ତୁଳପାରଣୀ, ବ. ସ୍ତ୍ରୀ. ତୂଣ, ବାଣାଧାର ।

ତୁଳସୀ, ବ. ସ୍ତ୍ରୀ. (ତୁଲ୍-ସୋ-ଅ-ଈ) ସ୍ୱନାମ-ପ୍ରସିଦ୍ଧ ବୃକ୍ଷ; ବିଷ୍ଣୁପୁରାଣମତେ ଜାଳନ୍ଧରର କନ୍ୟା; ବ୍ରହ୍ମପୁରାଣମତେ ରାଧିକାର ସଖୀ ।

ତୁଳା, ବ. ସ୍ତ୍ରୀ. (ତୁଲ୍-ଅ) ପରିମାଣଦଣ୍ଡ, ଭାରର ପରିମାଣ; ସପ୍ତମରାଶି; ସାଦୃଶ୍ୟ; ସାମ୍ୟ ।

ତୁଳାକୂଟ, ବିଂ. (ତୁଳା-କୂଟ) ଯେ ଦ୍ରବ୍ୟାଦିର ପରିମାଣ ବିଷୟରେ ଅନ୍ୟଥା କରେ, ଯେ ଓଜନ କମ ଦିଏ । ବ. ନ. ପରିମାଣରେ ଅନ୍ୟଥା କରିବା, ଓଜନ କମ ଦେବା ।

ତୁଳାକୋଟି, ବସ୍ତ୍ରୀ, (ତୁଳା-କୁଟ୍-ଇ) ନୂପୁର, ପରିମାଣବିଶେଷ; ଅର୍ବୁଦସଂଖ୍ୟା; ତୁଳାଦଣ୍ଡର ଅଗ୍ରଭାଗ ।

ତୁଳାଦଣ୍ଡ, ବ. ପୁଂ. ପରିମାଣଦଣ୍ଡ, ନିକ୍ତି ।

ତୁଳାଦାନ, ବ. ନ. ସ୍ୱୀୟ ଦେହ ପରିମାଣା-ନୁସାରେ ଦାନ । ତୁଳାପୁରୁଷସଂଜ୍ଞକ ମହା-ଦାନ ।

ତୁଳାଧଟ, ବ. ପୁଂ. (ତୁଳା-ଧଟ) ତୁଳାଦଣ୍ଡ ।

ତୁଳାଧର, ବ. ପୁଂ. (ତୁଳା-ଧର) ସୂର୍ଯ୍ୟ ।

ତୁଳାଧାର, ବିଂ. (ତୁଳା-ଆ-ଧୃ-ଅ) ବାଣିଜ୍ୟ-କାରୀ । ବ. ପୁଂ. ତୁଳାରାଶି; କାରଣ ।

ତୁଳାଧାରୀ, ବିଂ. (ତୁଳା-ଧୃ-ଇନ୍ ) ଯେ ବ୍ୟକ୍ତି ଓଜନ କରେ ।

ତୁଳାପୁରୁଷ, ବ. ପୁଂ. ମହାଦାନବିଶେଷ, ଯହିଁରେ ଆପଣାର ଭାରପରିମିତ ସ୍ୱର୍ଣ୍ଣାଦି ଦାନ କରା-ଯାଏ ।

ତୁଳାଯନ୍ତ୍ର, ବ. ନ. ତୁଳାଦଣ୍ଡ, ପରିମାଣଦଣ୍ଡ ।
ତୁଳି, ତୁଳିକା, ତୁଳୀ, ବ. ସ୍ତ୍ରୀ. (ତୁଳ-ଇ, ଇକ-ଆ, ଈ) ତୁଳାନିର୍ମିତ ଶଯ୍ୟା, ତୋଷକ, (ଦେଶଜ) ମଥାନ; ଚିତ୍ରକରର ଲେଖନୀ ।
ତୁଳିତ, ବିଂ. (ତୁଳ୍-ଇ-ତ) ପରିମିତ; ଉପମିତ, ଯାହାର ସହିତ ତୁଳନା କରି ହୋଇଅଛି; ଉତ୍କ୍ଷିପ୍ତ ।
ତୁଲ୍ୟ, ବିଂ. (ତୁଲା-ଯ) ସଦୃଶ, ସମାନ ।
ତୁଲ୍ୟଯୋଗିତା, ବ. ସ୍ତ୍ରୀ. ( ତୁଲ୍ୟ-ଯୋଗିନ୍-ତା ) ବାକ୍ୟାଲଙ୍କାରବିଶେଷ ।
ତୁବର, ବ. ପୁଂ. (ତୁ-ବର) କଷାୟରସ, କଷା । ବିଂ. କଷାୟରସଯୁକ୍ତ । ସ୍ତ୍ରୀ. ଆଢ଼କୀ, ଧାନ୍ୟବିଶେଷ ।
ତୁଷ, ବ. ପୁଂ. (ତୁଷ୍-ଅ) ଧାନ୍ୟାଦିର ଚୋପା, ଚଷୁ ।
ତୁଷଗ୍ରହ, ବ. ପୁଂ. (ତୁଷ-ଗ୍ରହ) ଅଗ୍ନି, ଅନଳ, ବହ୍ନି ।
ତୁଷସାର, ବ. ପୁଂ. (ତୁଷ-ସୃ-ଅ) ଅଗ୍ନି ।
ତୁଷାନଳ, ବ. ପୁଂ. (ତୁଷ-ଅନଳ) ତୁଷାଗ୍ନି; ତୁଷାଗ୍ନିରେ ଶରୀର ଦାହରୂପ ପ୍ରାୟଶ୍ଚିତ୍ତବିଶେଷ ।
ତୁଷାର, ବ. ପୁଂ. (ତୁଷ-ଆର) ନୀହାର, ହିମ; ଜଳକଣା; ଶୈତ୍ୟ; ବରଫ; ଦେଶବିଶେଷ । ବିଂ. ଶୀତଳ ।
ତୁଷାରଗିରି, ବ. ପୁଂ. ହିମାଳୟ ।
ତୁଷାରମୂର୍ତ୍ତି, ତୁଷାରାଂଶୁ, ବ. ପୁଂ. ( ତୁଷାରମୂର୍ତ୍ତି, ଅଂଶୁ) ହିମାଂଶୁ, ଚନ୍ଦ୍ର ।
ତୁଷାରାଦ୍ରି, ବ. ପୁଂ. (ତୁଷାର-ଅଦ୍ରି) ହିମାଳୟ ପର୍ବତ ।
ତୁଷ୍ଟ, ବିଂ. (ତୁଷ୍-ତ) ତୃପ୍ତ, ଅହ୍ଲାଦିତ ।
ତୁଷ୍ଟି, ବ. ସ୍ତ୍ରୀ. ( ତୁଷ୍-ତି ) ସନ୍ତୋଷ, ତୃପ୍ତି, ହର୍ଷ ।
ତୁଷ୍ଟୁ, ବ. ପୁଂ. (ତୁଷ୍-ତୁ ) କର୍ଣ୍ଣସ୍ଥ ମଣି ।
ତୁଷ୍ୟ, ବ. ପୁଂ. (ତୁଷ୍-ଯ) ମହାଦେବ ।
ତୁସ୍ତ, ବ. ନ. (ତୁସ୍-ତ) ଧୂଳି, ରେଣୁ; ପାପ; ସୂକ୍ଷ୍ମ ଅଣୁ ।
ତୁହି, ସଂ. ତୁମ୍ଭର ଅପଭ୍ରଂଶ ।
ତୁହିନ, ବ. ନ. (ତୁହ-ଇନ ) ହିମ; ଜ୍ୟୋତ୍ସ୍ନା । ବିଂ. ଶୀତଳ ।
ତୁହିନକର, ବ. ପୁଂ. ( ତୁହିନ-କର ) ଚନ୍ଦ୍ର; କର୍ପୂର ।
ତୁହିନାଂଶୁ, ବ. ପୁଂ. (ତୁହିନ-ଅଂଶୁ) ଚନ୍ଦ୍ର, କର୍ପୂର ।
ତୁହିନାଦ୍ରି, ବ. ପୁଂ. (ତୁହିନ-ଅଦ୍ରି ) ହିମାଳୟ ପର୍ବତ ।
ତୂଣ, ପୁଂ. } ତୂଣୀ, ସ୍ତ୍ରୀ. } ତୂଣୀର, ପୁଂ. } ବ. (ତୂଣ୍-ଅ, ଈ) ଶର ରଖିବାର ପାତ୍ର, ଶରଧାର ।
ତୂର, ନ. } ତୂରୀ, ସ୍ତ୍ରୀ. } ବ. (ତୂର-ଅ) ବାଦ୍ୟଯନ୍ତ୍ର, କ୍ଷୁଦ୍ର ଭେରୀ ।
ତୂର୍ଣ୍ଣ, କ୍ରି. ବିଂ. (ତୂର୍-ତ) ଶୀଘ୍ର, ଦ୍ରୁତ । ବିଂ. ସତ୍ୱର ।
ତୂର୍ଯ୍ୟ, ବ. ନ. ( ତୂର୍-ଯ କିମ୍ବା ଚତୁର୍-ଯ ) ବାଦ୍ୟଯନ୍ତ୍ରବିଶେଷ ।
ତୂର୍ଯ୍ୟାଚାର୍ଯ୍ୟ, ବ. ପୁଂ. (ତୂର୍ଯ୍ୟ-ଆଚାର୍ଯ୍ୟ) ଯେ ବ୍ୟକ୍ତି ବାଦ୍ୟ ବିଷୟରେ ଶିକ୍ଷା ପ୍ରଦାନ କରେ ।
ତୂଳ, ବ. ପୁଂ. ନ. ( ତୂଳ୍-ଅ ) ଢଳୁଲୀଗଛ; କପା; ଶିମିଳିତୂଳା । ନ. ଆକାଶ ।
ତୂଳକ, ବ. ନ. (ତୂଳ-କ) କପା ।
ତୂଳକାର୍ମୁକ, ବ. ନ. (ତୂଳ-କାର୍ମୁକ) ଯହିଁରେ ତୁଳା ଧୁଣା ଯାଏ ।
ତୂଳବୃକ୍ଷ, ବ. ପୁଂ. ଶିମିଳୀଗଛ ।
ତୂଳଶର୍କରା, ବ. ସ୍ତ୍ରୀ. (ତୂଳ-ଶର୍କରା) କପାମଞ୍ଜି ।
ତୂଳି, ତୂଳିକା, ବ. ସ୍ତ୍ରୀ. ଚିତ୍ରକରର ବଣା, ଯାହାଦ୍ୱାରା ରଙ୍ଗ ଦିଆଯାଏ ।
ତୂବର, ତୂବରକ, ବ. ପୁଂ. (ତୂ-ବର-କ) ଶ୍ମଶ୍ରୁହୀନ ପୁରୁଷ; କଷାୟ ରସ; ଶୃଙ୍ଗହୀନ ବୃଷ; ନପୁଂସକ ।

ତୂଷ୍ଣୀକ, ବଂ. (ତୂଷ୍ଣୀମ୍-ଇକ) ନୀରବ, ମୌନୀ ।
ତୂଷ୍ଣୀମ୍ଭାବ, ବ. ପୁଂ. ( ତୂଷ୍ଣୀମ୍-ଭାବ ) ମୌନା-ବଲମ୍ବନ, ଚୁପ ହୋଇଥିବା ।
ତୂଷ୍ଣୀମ୍ଭୂତ, ବଂ. (ତୂଷ୍ଣୀମ୍-ଭୂ-ତ) ନୀରବ ।
ତୂସ୍ତ, ବ. ନ. (ତୂସ୍-ତ) ଧୂଳି, ରେଣୁ; ଜଟା; ସୂକ୍ଷ୍ମ; ପରମାଣୁ; ପାପ ।
ତୂଷ, ବ. ନ. ଜାଇଫଳ ।
ତୃଣ, ବ. ନ. (ତୃହ-ଣ) ଘାସ, କୁଟା ପ୍ରଭୃତି ।
ତୃଣକୁଟୀ, ବ. ସ୍ତ୍ରୀ. ( ତୃଣ-କୁଟୀ ) ତୃଣାଚ୍ଛାଦିତ ଗୃହ ।
ତୃଣକେତୁ, ବ. ପୁଂ. ( ତୃଣ-କେତୁ ) ବଂଶ, ବାଉଁଶ; ତାଳଗଛ ।
ତୃଣଜୀବୀ, ବଂ. ( ତୃଣ-ଜୀବୀ ) ଯେ ସମସ୍ତ ପଶୁ ତୃଣ ଭୋଜନ କରି ପ୍ରାଣ ଧାରଣ କରନ୍ତି ।
ତୃଣଦ୍ରୁମ, ବ. ପୁଂ. ନାରିକେଳ; ତାଳ; ଗୁବାକ; ତାଳୀ; କେତକୀ; ଖର୍ଜୁର; ହନ୍ତାଳ ।
ତୃଣଧାନ୍ୟ, ବ. ନ. ନୀବାର, ବାଲୁଙ୍ଗା ଧାନ ।
ତୃଣଧ୍ୱଜ, ବ. ପୁଂ. (ତୃଣ-ଧ୍ୱଜ) ବଂଶ, ବାଉଁଶ ।
ତୃଣନମ୍ବ, ବ. ପୁଂ. (ତୃଣ-ନମ୍ବ) ଚିରେଇତା ।
ତୃଣମୟ, ବଂ. (ତୃଣ-ମୟ) ତୃଣରଚିତ ।
ତୃଣରାଜ, ବ. ପୁଂ. ( ତୃଣ-ରାଜନ୍ ) ତାଳଗଛ; ନଡିଆ ଗଛ ।
ତୃଣବତ୍, ଅଂ. (ତୃଣ-ବତ୍) ତୃଣତୁଲ୍ୟ, ତୃଣପ୍ରାୟ ।
ତୃଣଶୂନ୍ୟ, ବ. ନ. ମଲ୍ଲିଫୁଲ; କେତକୀ ଫୁଲ । ବଂ. ତୃଣରହିତ ।
ତୃଣସାରା, ବ. ସ୍ତ୍ରୀ. (ତୃଣ-ସାର-ଆ) କଦଳୀଗଛ ।
ତୃଣାବର୍ତ୍ତ, ବ. ପୁଂ. ( ତୃଣ-ଆ-ବୃତ-ଅ ) କଂସ-ରାଜାର ଅନୁଚର, ଦୈତ୍ୟବିଶେଷ; ଘୂର୍ଣ୍ଣିବାୟୁ ।
ତୃଣୋଦ୍ଭବ, ବ. ପୁଂ. ( ତୃଣ-ଉଦ୍ଭବ ) ନୀବାର; ତୃଣଜାତ ଅଗ୍ନି ।
ତୃଣ୍ୟା, ବ. ସ୍ତ୍ରୀ. (ତୃଣ-ଯ-ଆ) ତୃଣରାଶି, ତୃଣସମୂହ ।
ତୃତୀୟ, ବଂ. (ତ୍ରି-ତୀୟ) ତିନିର ପୂରଣବାଚକ ।
ତୃତୀୟା, ବ. ସ୍ତ୍ରୀ. ତିଥିବିଶେଷ ।
ତୃତୀୟାଶ୍ରମ, ବ. ନ. (ତୃତୀୟ-ଆଶ୍ରମ) ବାନପ୍ରସ୍ଥା-ଶ୍ରମ ।
ତୃପ୍ତ, ବଂ. (ତୃପ୍-ତ) ସନ୍ତୁଷ୍ଟ; ଆହ୍ଲାଦିତ; ହୃଷ୍ଟ; ପୂର୍ଣ୍ଣକାମ ।
ତୃପ୍ତି, ବ. ସ୍ତ୍ରୀ. (ତୃପ୍-ତି) ସନ୍ତୋଷ; ତୃଷାନିବୃତ୍ତି; ଆହ୍ଲାଦ ।
ତୃପ୍ନୁ, ବଂ. (ତୃଦ୍-ନୁ) ହିଂସକ । ବ. ପୁଂ. ଗନ୍ଧର୍ବ-ବିଶେଷ ।
ତୃଷ୍, ତୃଷା, ତୃଷ୍ଣା, ବ. ସ୍ତ୍ରୀ. (ତୃଷ୍-ଆ) ପିପାସା; ଇଚ୍ଛା, ଆକାଙ୍କ୍ଷା; ଲୋଭ ।
ତୃଷିତ, ତୃଷାର୍ତ୍ତ, ବଂ. (ତୃଷ୍-ତ) ପିପାସୁ; ଇଚ୍ଛୁକ; ଲୁବ୍ଧ ।
ତେଇଶ, ବଯ୍ୟୋବିଂଶ, ୨୩ ସଂଖ୍ୟା ।
ତେଜଃ, ବ. ନ. (ତିଜ୍-ଅସ୍) ଦୀପ୍ତି ।
ତେଜଣା, ବ. (ପ୍ରା) ତୀକ୍ଷ୍ଣକରଣ ।
ତେଜନ, ବ. ନ. ( ତିଜ୍-ଅନ ) ତୀକ୍ଷ୍ଣକରଣ; ବାଉଁଶ ।
ତେଜପତ୍ର, ବ. ନ. (ତେଜ-ପତ୍ର) ବୃକ୍ଷବିଶେଷର ପତ୍ର ।
ତେଜସ୍କର, ବଂ. (ତେଜସ୍-କୃ-ଅ ) ତେଜୋ-ବୃଦ୍ଧିକାରକ, ଶକ୍ତିକାରକ ।
ତେଜସ୍ୱାନ୍, ତେଜସ୍ୱୀ, ବଂ. ( ତେଜସ୍-ବତୁ, ବିନ୍) ପ୍ରଭାବଶାଳୀ, ବଳବାନ୍, ତେଜୋବିଶିଷ୍ଟ ।
ତେଜିତ, ବଂ. ( ତିଜ୍-ତ ) ଶାଣିତ; ମାର୍ଜିତ; ଉତ୍ତେଜିତ ।
ତେଜୀୟାନ୍, ବଂ. ( ତେଜସ୍-ଇୟସ୍ ) ଅତି ତେଜସ୍ୱୀ ।
ତେଜୋମୟ, ବଂ. (ତେଜସ୍-ମୟ) ଜ୍ୟୋତିର୍ମୟ, ତେଜଃପୂର୍ଣ୍ଣ; ଉଜ୍ଜ୍ୱଳ ।
ତେଜୋରୂପ, ବ. ନ. (ତେଜସ୍-ରୂପ) ବ୍ରହ୍ମ ।
ତେଢା, (ଫାର୍ସୀ ଶବ୍ଦଜ) ବଙ୍କା, ବକ୍ରଭାବ ।
ତେଣିକି, ଅ. ସେହି ଦିଗକୁ ।
ତେଣେ, ଅ. ସେ ଦିଗରେ ।

ତେଙ୍ଗା, ବି. ( ଦେଶଜ ) ମତ୍ସ୍ୟାଦି ଭେଦନ କରିବାର ଅସ୍ତ୍ରବିଶେଷ୍ୟ କଣ୍ଟାଳ । ଯଥା—

ଓଳିଆକୁ ଶିକାରଘେରେ କ୍ରାନ୍ତୀଗରରୁମେ,
ତେଙ୍ଗା, ଏକ ମୂନା, ଝାଙ୍ଗି ଅବ ଶସ୍ତ୍ର ଧରି । ମ. ଯା.

ତେଙ୍ଗେଇ, ବି. ସ୍ତ୍ରୀ. ( ଦେଶଜ ) ଅମାନିଆ ସ୍ତ୍ରୀ; ପକ୍ଷିବିଶେଷ; ଯେଉଁ ପକ୍ଷୀ କୌଣସି ପ୍ରାଣୀକୁ ଦେଖିବାମାତ୍ର ରବ କରେ ।

ତେଣ୍ଡା, ବି. (ଦେଶଜ) ଜଳ ଉଠାଇବା ଯନ୍ତ୍ର-ବିଶେଷ ।

ତେତାଲା, ବି. ( ତ୍ରିତଳ ଶବ୍ଦଜ ) ଉପର୍ଯ୍ୟୁପରି ତିନି ପ୍ରସ୍ଥ ଗୃହ ।

ତେତିଶ, ବି°. ( ତ୍ରୟସ୍ତ୍ରିଂଶତ୍ ଶବ୍ଦଜ ) ସଂଖ୍ୟା-ବିଶେଷ, [illegible] ।

ତେତେ, ସ. ପରିମାଣ ।

ତେତେବେଳେ, ସ. ସେହି ସମୟରେ ।

ତେନ୍ତୁଳି, (ଦେଶଜ) ଶଗଡ଼ ଦଣ୍ଡାର ଅଗ୍ର ଉପରସ୍ଥ କାଷ୍ଠଖଣ୍ଡ ।

ତେପନ, ବି°. ସଂଖ୍ୟାବିଶେଷ, ୫୩ ସଂଖ୍ୟା ।

ତେମନ୍ତ, ସ. ସେହିପରି, ତଦ୍ରୂପ । ଯଥା—

କର୍ ତେମନ୍ତ ମୁଁ ତୋର,
ବରୁଠାରେ ବୁହାଇବ ଯୁଦ୍ଧଯୋଗ୍ୟର । ପ୍ରେ. ସୁ.

ତେର, ବି°. ସଂଖ୍ୟାବିଶେଷ, [illegible] ।

ତେରଜ, ବି°. (ଯାବନିକ) ଯୋଗ, ମିଶାଣ ।

ତେଲ, ବି. ନ. (ତୈଳ ଶବ୍ଦଜ) ମାଲପା, ମଥା-ଦିହ ।

ତେଲଙ୍ଗା, ବି. ଜାତିବିଶେଷ ।

ତେଲୁଉଣି, ବି. (ଦେଶଜ) ପଲମ ।

ତେଲି, ବି. ଜାତିବିଶେଷ ।

ତେବନ, ବି. ନ. (ତେବ୍-ଅନ) କ୍ରୀଡ଼ାକାନନ, କେଳିବନ ।

ତେବେ, ଅ°. ଅପେକ୍ଷିକ ଶବ୍ଦ ।

ତେସନ, ସ. ତେମନ୍ତ, ସେପରି ।

ତେହ୍ନେ, ସ. ସେପ୍ରକାର, ସେପରି ।

ତୈଜସ, ବି°. ( ତେଜସ୍-ଅ ) ଧାତୁମୟ ପାତ୍ର; ଘୃତ; ତେଜୋବିକାର; ରଜୋଗୁଣୋତ୍ପନ୍ନ । ବି. ନ. ଧାତୁଦ୍ରବ୍ୟ; ଘୃତ ।

ତୈଜସାବର୍ତ୍ତନୀ, ବି. ସ୍ତ୍ରୀ. ( ତୈଜସ୍-ଆବର୍ତ୍ତନୀ ) ଧାତୁଦ୍ରବ୍ୟ ତରଳାଇବାର କୋଇ ବା ପାତ୍ର ।

ତୈକ୍ଷ୍ଣ, ବି°. (ତିକ୍ଷା-ଅ) ତିତିକ୍ଷାଶୀଳ; ସହିଷ୍ଣୁ ।

ତୈତିଳ, ବି. ପୁ°. ( ତିତିଲ-ଅ ) ଗଣ୍ଡାର । ନ. ବବ, ବାଳବ ପ୍ରଭୃତି କରଣର ଅନ୍ତର୍ଗତ ଚତୁର୍ଥ କରଣ; ଦେବତା ।

ତୈଳ, ବି. ନ. (ତିଳ-ଅ) ତିଳାଦିର ତେଲ, ମାଲପା ।

ତୈଳକାର, ବି. ପୁ°. (ତୈଳ-କୃ-ଅ) ତେଲି ।

ତୈଲଙ୍ଗ, ବି. (ଦେଶଜ) ଦେଶବିଶେଷ; ଜାତି-ବିଶେଷ ।

ତୈଳଦ୍ରୋଣୀ, ବି. ସ୍ତ୍ରୀ. ( ତୈଳ-ଦ୍ରୋଣୀ ) କଣ୍ଠ ପର୍ଯ୍ୟନ୍ତ ମଜ୍ଜନାର୍ଥ ତୈଳପୂର୍ଣ୍ଣ କାଷ୍ଠାଦିନିର୍ମିତ ପାତ୍ର ।

ତୈଳପର୍ଣ୍ଣିକ, ନ. } ବି. ( ତିଳପର୍ଣ୍ଣ-ଇକ, ତୈଳପର୍ଣ୍ଣୀ, ସ୍ତ୍ରୀ. } ତିଳପର୍ଣ୍ଣ-ଈ) ଚନ୍ଦନ-ବିଶେଷ, ହରିଚନ୍ଦନ ।

ତୈଳପା, ତୈଳପାୟିକା, ବି. ସ୍ତ୍ରୀ. (ତୈଳ-ପା-ଅ; ଅକ-ଅ) ତେଲପୋକ, ଅସରପା ।

ତୈଳଫଳା, ବି. ସ୍ତ୍ରୀ. ଇଙ୍ଗୁଦୀବୃକ୍ଷ, ବିଭୀତକବୃକ୍ଷ ।

ତୈଳମାଳୀ, ବି. ସ୍ତ୍ରୀ. (ତୈଳ-ମାଳ-ଈ) ବର୍ତ୍ତିକା, ବଳିତା ।

ତୈଳଯନ୍ତ୍ର, ବି. ନ. (ତୈଳ-ଯନ୍ତ୍ର) ଘଣା ।

ତୈଳିକ, ତୈଳୀ, ବି. ପୁ°. (ତୈଳ-ଇକ,ଇନ୍ ) ତେଲି । ବି°. ତୈଳସମ୍ବନ୍ଧୀୟ ।

ତୈଷ, ବି. ପୁ°. (ତିଷ-ଅ) ପୌଷ ମାସ ।

ତୋଟକ, ବି.ନ. ଦ୍ୱାଦଶାକ୍ଷର ପାଦ ଛନ୍ଦ, ଯେଉଁ ଛନ୍ଦର ପ୍ରତ୍ୟେକ ଚରଣରେ ୧୨ଟି ଅକ୍ଷର ଥାଏ ।

ତୋଟା, ବି. ନ. (ଦେଶଜ) ବଡ଼ ବଗିଚା; ନାନା ଜାତୀୟ ବୃକ୍ଷର ସମାବେଶ ।

ତୋଡ, ବଂ. (ଦେଶଜ) ବେଗ; ଝୋଙ୍କ; ସ୍ରୋତ ।

ତୋଡ଼କ, ବଂ. (ତୁଡ୍-ଅକ) ଯେ ଭାଙ୍ଗି ଫୋପାଡ଼ି ଦିଏ, ଭଞ୍ଜକ ।

ତୋଡ଼ା, ବି. (ଦେଶଜ) ଟଙ୍କାର ଥଳୀ; କେତେ ଗୁଡ଼ିଏ ଫୁଲ ଏକତ୍ର କରି ସଜାଇବା ।

ତୋଡ, ବି. (ଦେଶଜ) ମତ୍ସ୍ୟବିଶେଷ ।

ତୋତା, ବି. (ଯାବନକ) ଶୁକପକ୍ଷୀ ।

ତୋଦ, ବି. ନ. (ତୁଦ୍-ଦ) ପାଞ୍ଚଣବାଡ଼ି, ଗୋରୁ ଆଦି ଜନ୍ତୁଙ୍କୁ ମାରିବାର ଛଟଣି; ଅଙ୍କୁଶ ।

ତୋଦନ, ବି. ନ. (ତୁଦ୍-ଅନ) ମୁଖ; ବେଦନା; ପୀଡ଼ା; ଅଙ୍କୁଶ ।

ତୋପ, ବି. (ଯାବନକ) ଆଗ୍ନେୟଅସ୍ତ୍ର, କମାଣ ।

ତୋମର, ବି. ନ. (ତୁ-ମୃ-ଅ) ଶାବଳାଦି ଅସ୍ତ୍ର ।

ତୋୟ, ବି. ନ. ( ତୁ-ୟ ) ଜଳ; ପୂର୍ବାଷାଢ଼ା ନକ୍ଷତ୍ର ।

ତୋୟଡିମ୍ବ, ବି. ପୁଂ. ( ତୋୟ-ଡିମ୍ବ ) କରକା, କୁଆପଥର ।

ତୋୟଦ, ବି.ପୁଂ. (ତୋୟ-ଦ) ମେଘ, ଜଳଦ । ନ. ଘୃତ ।

ତୋୟଦାଗମ, ବି. ପୁଂ. ( ତୋୟଦ-ଆଗମ ) ମେଘାଗମ, ବର୍ଷାକାଳ ।

ତୋୟଧର, ବି. ପୁଂ. ( ତୋୟ-ଧର ) ମେଘ, ଜଳଧର ।

ତୋୟଧି, ତୋୟନିଧି, ବି. ପୁଂ.(ତୋୟ-ଧି,ନିଧି) ସମୁଦ୍ର, ସାଗର ।

ତୋୟବମ୍ବ, ବି. ନ. (ତୋୟ-ବମ୍ବ) ଜଳବମ୍ବ ।

ତୋରଣ, ବି. ପୁଂ. ନ. (ତୁର-ଅନ) ବହିର୍ଦ୍ୱାର, ଫାଟକ, ଚୌକାଠ । ଯଥା—

> ଅଦ୍ଭୁତ ସେ ଶ୍ରେଣୀ—ତାକୁ ଦେଖିଲେ ତୋରଣ
> ପାଚେରି ଲଙ୍ଘିଣ ସୁରେ ପଶେ ଅନାୟାସେ । ମ. ଯା.

ତୋଶ୍ଵା, ବି. ( ଆରବୀ ତୁରସ୍ ଶବ୍ଦଜ ) ସୁନ୍ଦର, ମନୋହର । ଯଥା—

> ନୈଲଙ୍ଗୀ ବସନ ଭୂଷଣେ ପୁଣି ବଶର ତୋଶ୍ଵା ।

ତୋୟର୍ଣ, ବି. (ତୋୟ ଶବ୍ଦଜ) ଅନ୍ନରେ ମିଶ୍ରିତ ହୋଇଥିବା ପାଣି ।

ତୋଳ, ତୋଳକ, ବି. ପୁଂ. ନ. (ତୁଲ୍-ଅ,କ) ପରିମାଣବିଶେଷ; ଏକ ଭରି ।

ତୋଳନ, ବି. ପୁଂ. ( ତୁଲ୍-ଅନ ) ଉତ୍ଥାପନ; ଓଜନ, ତୁଳିବା ।

ତୋଳା, ବି. (ତୋଳକ ଶବ୍ଦଜ) ଭରି, ୧୦ ମସା ଓଜନ ।

ତୋଳିବା, କ୍ରି. ( ତୁଳ ଧାତୁଜ ) ଉଠାଇବା; ଝୁଣ୍ଡାଇବା; ନିର୍ମାଣ କରିବା; ଗୋଟାଇବା ।

ତୋଷ, ବି. ପୁଂ. (ତୁଷ୍-ଅ) ସନ୍ତୋଷ; ହର୍ଷ, ଆହ୍ଲାଦ ।

ତୋଷଣ, ବି. ନ. (ତୁଷ୍-ଅନ) ସନ୍ତୁଷ୍ଟକରଣ ।

ତୋଷାମଦ, ବି. ( ଯାବନକ ) ଚାଟୁବଚନ, ଖୋସାମଦ୍ ।

ତୋଷିତ, ବଂ. (ତୁଷ୍-ତ) ସନ୍ତୁଷ୍ଟ, ହର୍ଷିତ ।

ତୋଷିବା, କ୍ରି. (ତୁଷ୍ ଧାତୁଜ) ସନ୍ତୁଷ୍ଟ କରିବା । ଯଥା—

> ଅମୃତ ବଚନ୍ଥ ବଚନ, କହି ତୋଷିବ ପ୍ରାଣ-ମନ ॥

ତୌକ, ବି. ( ଯାବନକ ) ମହାଜନୀ ସିରସ୍ତାର ହିସାବପତ୍ର ।

ତୌର୍ଯ୍ୟ, ବି. ନ. ( ତୁର୍ଯ୍ୟ-ଅ ) ତୁର୍ଯ୍ୟବାଦ୍ୟ; ମୃଦଙ୍ଗାଦି; ଧ୍ୱନି ।

ତୌର୍ଯ୍ୟତ୍ରିକ, ବି. ନ. ( ତୌର୍ଯ୍ୟ-ତ୍ରିକ ) ନୃତ୍ୟ, ଗୀତ , ବାଦ୍ୟ ଏହି ତିନି ପ୍ରକାର ଏକତ୍ର ମିଳନକୁ ତୌର୍ଯ୍ୟତ୍ରିକ କହନ୍ତି । ଯଥା—

> ବହୁଲେ କାନ୍ତାରେ ବିହୃତ କୌଶିକ
> ତଣାପ୍ରୟ ମିଳ ଭଷାତୌର୍ଯ୍ୟତ୍ରିକ । ର. କେ.

ତୌଲକ, ତୌଲକକ, } ବି. ପୁଂ. (ତୂଲକା-ଅ, ଇକ) ତନ୍ତକାର ।

ତୌଷାର, ବି. ନ. ( ତୁଷାର-ଅ ) ନୀହାର, ତୁଷାରଜଳ । ବଂ. ତୁଷାରସମ୍ବନ୍ଧୀୟ ।

ତ୍ୟକ୍ତ, ବଂ. (ତ୍ୟଜ୍-ତ) ବର୍ଜିତ, ବର୍ତ୍ତୃଷ୍ଟ; କ୍ଷିପ୍ତ; ଦତ୍ତ ।

ତ୍ୟାଗ, ବି. ପୁଂ. ( ତ୍ୟଜ୍-ଅ ) ବର୍ଜ୍ଜନ; ଦାନ; ବୈରାଗ୍ୟ; ବିସର୍ଜ୍ଜନ ।

ତ୍ୟାଗପତ୍ର, ବ. ( ତ୍ୟାଗ-ପତ୍ର ) ଫାରଖତିପତ୍ର, ଛାଡ଼ପତ୍ର ।

ତ୍ୟାଗୀ, ବିଂ. ( ତ୍ୟାଗ-ଇନ୍ ) ଦାତା; ଶୂର, ବୀର; ବର୍ଜନଶୀଳ; ବୈରାଗୀ; ବିବେକୀ; କର୍ମଫଳତ୍ୟାଗୀ, ଯେ ସମସ୍ତ ତ୍ୟାଗ କରିଅଛି ।

ତ୍ୟାଜ୍ୟ, ବିଂ. ( ତ୍ୟଜ୍-ଯ ) ତ୍ୟାଗ କରିବାର ଯୋଗ୍ୟ, ବର୍ଜନଯୋଗ୍ୟ ।

ତ୍ରପ, ପୁଂ. } ବ. ( ତ୍ରପ୍-ଅ, ଆ ) ଲଜ୍ଜା;
ତ୍ରପା ସ୍ତ୍ରୀ. } କୁଳଟା; ବେଶ୍ୟା; କୀର୍ତ୍ତି; କୁଳ, ବଂଶ; ବନସ୍ତୁ; ଯଶଃ । ଯଥା—

ଅଯତନ ମୂଷବଗେ ରକ୍ଷି ଦେଲ ସେ ତ୍ରପା କଣ୍ଠ କପୋଳ ।
ଯ. ବେ.

ତ୍ରପାକ, ବ. ପୁଂ. ସ୍ତ୍ରୀ. ମ୍ଲେଚ୍ଛବିଶେଷ ।

ତ୍ରପାରଣ୍ଡା, ବ. ସ୍ତ୍ରୀ. ( ତ୍ରପା-ଲନ୍ଜ୍-ଅ ) ସ୍ତ୍ରୀ; ବେଶ୍ୟା ।

ତ୍ରପିତ, ବିଂ. (ତ୍ରପ୍-ତ) ଲଜ୍ଜିତ ।

ତ୍ରପିଷ୍ଠ, ତ୍ରପୀୟାନ୍, ବିଂ. (ତ୍ରପା-ଇଷ୍ଠ, ଈୟସ୍) ଅତିଶୟ ଲଜ୍ଜିତ ।

ତ୍ରପୁଷ, ବ. ନ. ( ତ୍ରପ-ଉଷ ) କର୍କଟୀ । ପୁଂ. ଇନ୍ଦ୍ରବୃକ୍ଷ; ଟିଣ । ସ୍ତ୍ରୀ. କାକୁଡ଼ି ଗଛ ।

ତ୍ରୟ, ବ. ନ. (ତ୍ରି-ଅୟ) ୩ ସଂଖ୍ୟା ।

ତ୍ରୟୀ, ବ. ସ୍ତ୍ରୀ. (ତ୍ରି-ଅୟ-ଈ) ଋକ୍, ଯଜୁଃ, ସାମ ଏହି ତିନି ବେଦ; ଗୃହିଣୀ; ବୁଦ୍ଧି; ସୋମରାଜୀ ବୃକ୍ଷ; ବ୍ରହ୍ମା, ବିଷ୍ଣୁ, ଶିବ ଏହି ତିନିମୂର୍ତ୍ତି; ଦୁର୍ଗା । ବିଂ. ତ୍ରିତ୍ୱସଂଖ୍ୟାବିଶିଷ୍ଟ ।

ତ୍ରୟୀତନୁ, ବ. ପୁଂ. ( ତ୍ରୟୀ-ତନୁ ) ସୂର୍ଯ୍ୟ, ଧର୍ମଶାସ୍ତ୍ରରେ ପ୍ରସିଦ୍ଧ ଅଛି ଯେ ସାମବେଦ ଓ ଅନ୍ୟାନ୍ୟ ବେଦାଂଶ ସୂର୍ଯ୍ୟଠାରୁ ପ୍ରବୃତ୍ତ ହୋଇଅଛି ।

ତ୍ରୟୀଧର୍ମ, ବ. ପୁଂ. (ତ୍ରୟୀ-ଧର୍ମ) ଋକ୍, ଯଜୁଃ, ସାମ ଏହି ତିନି ବେଦର ଧର୍ମକାଣ୍ଡ ।

ତ୍ରୟୀମୁଖ, ବ. ପୁଂ. (ତ୍ରୟୀ-ମୁଖ) ବ୍ରାହ୍ମଣ ।

ତ୍ରୟୋଦଶ, ବିଂ. (ତ୍ରି-ଦଶନ୍-ଅ) ତେରସଂଖ୍ୟାର ପୂରଣବାଚକ ।

ତ୍ରୟୋଦଶୀ, ବ. ସ୍ତ୍ରୀ. ( ତ୍ରିଦଶନ୍-ଅ-ଈ ) ତିଥି-ବିଶେଷ ।

ତ୍ରସ, ବିଂ. (ତ୍ରସ୍-ଅ) ଚର; ଗମନଶୀଳ । ନ. ଭୟଙ୍କର ବନ ।

ତ୍ରସର, ବ. ପୁଂ. (ତ୍ରସ୍-ଅର) ତନ୍ତୁବାୟର ତୁରୀ ।

ତ୍ରସରେଣୁ, ବ. ପୁଂ. ସ୍ତ୍ରୀ. ( ତ୍ରସ୍=ଗମନଶୀଳ କମ୍ବା ବି ସ୍ଥାନରେ ତ୍ରସ୍-ରେଣୁ ) ସୂକ୍ଷ୍ମକଣା; ଛିଦ୍ରାଗତ ସୂର୍ଯ୍ୟକିରଣରେ ଯାହା ଦୃଷ୍ଟ ହୁଏ; ସୂର୍ଯ୍ୟପତ୍ନୀବିଶେଷ ।

ତ୍ରସ୍ତ, ବିଂ. (ତ୍ରସ୍-ତ) ଚକିତ, ଭୀତ, ଭୀରୁ; ବିଚଳିତ, କମ୍ପିତ ।

ତ୍ରସ୍ନୁ, ବିଂ. (ତ୍ରସ୍-ନୁ) ତ୍ରାସଯୁକ୍ତ, ଭୀରୁ; ଦ୍ରୁତ; ଚକିତ ।

ତ୍ରାଣ, ବ. ନ. ( ତ୍ରୈ-ଅନ ) ରକ୍ଷା, ଉଦ୍ଧାର । ବିଂ. ରକ୍ଷକ ।

ତ୍ରାତ, ବିଂ. (ତ୍ରୈ-ତ ) ରକ୍ଷିତ ।

ତ୍ରାତା, ବିଂ. (ତ୍ରୈ-ତୃ) ରକ୍ଷାକର୍ତ୍ତା, ଉଦ୍ଧାରକର୍ତ୍ତା, ପାଳକ ।

ତ୍ରାୟମାଣ, ବିଂ. (ତ୍ରୈ-ଆନ) ତ୍ରାଣକାରୀ, ଯାହାକୁ ତ୍ରାଣ ବା ରକ୍ଷା କରି ଯାଉଅଛି । ସ୍ତ୍ରୀ. ଲତା-ବିଶେଷ ।

ତ୍ରାସ, ବ. ପୁଂ. (ତ୍ରସ୍-ଅ) ଭୟ, ଶଙ୍କା; ସାଧ୍ୱସ; ମଣିର ଦୋଷ; କଳଙ୍କ ।

ତ୍ରାସିତ, ବିଂ. (ତ୍ରସ୍-ତ) ବିଭୀଷିତ ।

ତ୍ରାହି, କ୍ରି. (ତ୍ରୈ-ହି) ରକ୍ଷା କର । ଯଥା—

ତ୍ରାହି ରବରେ ଗଗନ ପ୍ରତିଧ୍ୱନିତ ହେବାକୁ ଲାଗିଲା ।
ପ୍ର. ମା.

ତ୍ରି, ବିଂ. (ତୃ-ଇ) ସଂଖ୍ୟା ବିଶେଷ, ୩ ; ଅନ୍ୟାନ୍ୟ ଭାଷାରେ ଏହାର ସୌସାଦୃଶ୍ୟ ଦେଖ, ଯଥା ; ସଂସ୍କୃତ=ତ୍ରି, ଗ୍ରୀକ୍=ଟ୍ରାଇସ୍, ଲାଟିନ୍=ଟ୍ରେସ୍, ଜର୍ମାନ୍=ଡ୍ରାଇ, ଇଂରାଜୀ=ଥ୍ରି, ବଙ୍ଗଳା=ତିନ ।

ତ୍ରିଂଶ, ବିଂ. (ତ୍ରିଂଶତ୍-ଅ) ୩୦ ସଂଖ୍ୟାର ପୂରଣ ।

ତ୍ରିଂଶତ୍, ବ. ସ୍ତ୍ରୀ. ( ତ୍ରିଂ-ଦଶନ୍ ) ୩୦ ସଂଖ୍ୟା ।

ତ୍ରିଂଶତ୍ତମ, ବଂ. (ତ୍ରିଂଶତ୍-ତମ) ତ୍ରିଂଶତ୍ ସଂଖ୍ୟାର ପୂରକ ।

ତ୍ରିକ, ବ. (ତ୍ରି-କ) ପୃଷ୍ଠଦଣ୍ଡର ନିମ୍ନ; କଟୀ; ତେମୁହାଣି ଛକ ସ୍ଥାନ ।

ତ୍ରିକଟୁ, ବ. ପୁଂ. ( ତ୍ରି-କଟୁ ) ଶୁଣ୍ଠି, ପିପ୍ପଳୀ, ଗୋଲମରଚ ।

ତ୍ରିକର୍ମା, ବ. ପୁଂ. ( ତ୍ରି-କର୍ମନ୍ ) ଦାନ, ଯଜ୍ଞ, ଅଧ୍ୟୟନନିଷ୍ଠ ବ୍ରାହ୍ମଣ ।

ତ୍ରିକାଳ, ବ. ନ. (ତ୍ରି-କାଳ) ପ୍ରାତଃ, ମଧ୍ୟାହ୍ନ, ସାୟାହ୍ନ; ଭୂତ, ଭବିଷ୍ୟତ୍, ବର୍ତ୍ତମାନ ।

ତ୍ରିକାଳଜ୍ଞ, ବଂ. (ତ୍ରିକାଳ-ଜ୍ଞା-ଅ) କାଳତ୍ରୟ-ଦର୍ଶୀ, ଭୂତ, ଭବିଷ୍ୟତ୍, ବର୍ତ୍ତମାନ ଏହି ତିନି କାଳର କଥାକୁ ଯେ ଜାଣେ ।

ତ୍ରିକାଳଦର୍ଶୀ, ବଂ. (ତ୍ରିକାଳ-ଦର୍ଶିନ୍) ତ୍ରିକାଳଜ୍ଞ । ବ. ପୁଂ. ଋଷି, ମୁନି ।

ତ୍ରିକୁଳ, ବ. (ତ୍ରି-କୁଳ) ପିତୃକୁଳ, ମାତୃକୁଳ ଓ ଶ୍ୱଶୁରକୁଳ ।

ତ୍ରିକୂଟ, ବ. ପୁଂ. ( ତ୍ରି-କୂଟ ) କେରଳ ଦେଶର ପର୍ବତବିଶେଷ;ଯାହାର ଉପରେ ଲଙ୍କା ନଗରୀ । ନ. ସାମୁଦ୍ରିକ ଲବଣ, ସୈନ୍ଧବ ଲୁଣ । ସ୍ତ୍ରୀ. ଭୈରବୀବିଶେଷ ।

ତ୍ରିକୋଣ, ବଂ. ( ତ୍ରି-କୋଣ ) ତିନି କୋଣବିଶିଷ୍ଟ ସ୍ଥାନ ।

ତ୍ରିକୋଣମଣ୍ଡଳଭୂମି, ବ. ନଦୀମୁହାଣସ୍ଥିତ ଦ୍ୱୀପ ।

ତ୍ରିକୋଣମିତି, ବ. ସ୍ତ୍ରୀ. ( ତ୍ରିକୋଣ-ମା-ତି ) ତ୍ରିକୋଣ ବସ୍ତୁର ପରିମାପକ ବିଦ୍ୟା ।

ତ୍ରିଖ, ବ. ନ. (ତ୍ରି-ଖ) ଶଶା; ସୀସା; ଟିଣ ।

ତ୍ରିଗଣ, ବ. ପୁଂ. (ତ୍ରି-ଗଣ) ଧର୍ମ, ଅର୍ଥ, କାମ ଏହି ତିନି, ତ୍ରିବର୍ଗ ।

ତ୍ରିଗର୍ତ୍ତ, ବ. ପୁଂ. ( ତ୍ରି-ଗର୍ତ୍ତ ) ଗଣିତବିଶେଷ, ଲାହୋର ସନ୍ନିହିତ ଦେଶବିଶେଷ । ସ୍ତ୍ରୀ. ଭୋଗାଭିଳାଷିଣୀ ସ୍ତ୍ରୀ । ବଂ. ତ୍ରିଗର୍ତ୍ତ ଦେଶ-ବାସୀ ।

ତ୍ରିଗୁଣ, ବ. ନ. (ତ୍ରି-ଗୁଣ) ସତ୍ତ୍ୱ ରଜଃ ତମ ଏହି ୩ ପ୍ରକାର ଗୁଣ; ସୁଖ, ଦୁଃଖ ଓ ମୋହ ଏହି ତିନି ଗୁଣ । ଯଥା—

ତ୍ରିଗୁଣ ରଜ୍ଜୁ କରେ ଧର, ମୃଗ ନିଗ୍ରହ କରହର ;

ବଂ. ତିନିଥର ଗୁଣିତ । ସ୍ତ୍ରୀ. ଦୁର୍ଗା ।

ତ୍ରିଗୁଣାତ୍ମକ, ବଂ. (ତ୍ରିଗୁଣ-ଆତ୍ମନ୍-କ) ଗୁଣତ୍ରୟ-ବିଶିଷ୍ଟ, ଯାହାର ତିନିଗୁଣ ଅଛି ।

ତ୍ରିଗୁଣିତ, ବଂ. ( ତ୍ରିଗୁଣ-ଇତ ) ତ୍ରିବାହୃତ; ତିନିବାର ଗୁଣିତ ।

ତ୍ରିଜଗତ୍, ବ. ନ. ( ତ୍ରି-ଜଗତ୍ ) ତ୍ରିଭୁବନ, ସ୍ୱର୍ଗ ମର୍ତ୍ତ୍ୟ ପାତାଳ ।

ତ୍ରିଜଟା, ବ. ସ୍ତ୍ରୀ. ରାକ୍ଷସୀବିଶେଷ, ରାବଣାଳୟସ୍ଥ ଜାନକୀର ପକ୍ଷପାତିନୀ ରାକ୍ଷସୀ । ପୁଂ. ଶିବ, ବିଲ୍ୱବୃକ୍ଷ ।

ତ୍ରିଜାତକ, ବ. ନ. ( ତ୍ରି-ଜାତ-କ ) ଜାଇତ୍ରୀ, ଅଳାଇଚ ଓ ତେଜପତ୍ର ।

ତ୍ରିତୟ, } ବଂ. (ତ୍ରି-ତୟ) ତିନି ସଂଖ୍ୟାଯୁକ୍ତ ।<br>
ତ୍ରିତୟୀ, }

ତ୍ରିତାପ, ବ. ନ. ( ତ୍ରି-ତାପ ) ଆଧ୍ୟାତ୍ମିକ, ଆଧି-ଦୈବିକ ଏବଂ ଆଧିଭୌତିକ ଏହି ତିନି ପ୍ରକାର ତାପ ।

ତ୍ରିଦଣ୍ଡ, ବ. ନ. (ତ୍ରି-ଦଣ୍ଡ) ବାଗ୍‌ଦଣ୍ଡ, ମନୋ-ଦଣ୍ଡ, କାୟଦଣ୍ଡ ଏହି ତିନି ପ୍ରକାର ।

ତ୍ରିଦଣ୍ଡୀ, ବଂ. ( ତ୍ରିଦଣ୍ଡ-ଇନ୍ ) ତ୍ରିଦଣ୍ଡଧାରୀ; ସନ୍ନ୍ୟାସିବିଶେଷ ।

ତ୍ରିଦଶ, ବ. (ତ୍ରି-ଦଶା) ଦେବତା, ଅମର । ବଂ. ତ୍ରିଂଶସଂଖ୍ୟକ ।

ତ୍ରିଦଶଗୁରୁ, ବ. ପୁଂ. (ତ୍ରିଦଶ-ଗୁରୁ) ଦେବଗୁରୁ, ବୃହସ୍ପତି ।

ତ୍ରିଦଶଗୋପ, ବ. ପୁଂ. ରକ୍ତବର୍ଣ୍ଣ କୀଟବିଶେଷ, ସାଧବବୋହୂ ପୋକ ।

ତ୍ରିଦଶପତି, ବ. ପୁଂ. ( ତ୍ରିଦଶ-ପତି ) ଇନ୍ଦ୍ର, ଦେବରାଜ ।

ତ୍ରିଦଶମଞ୍ଜରୀ, ବ. ସ୍ତ୍ରୀ. (ତ୍ରିଦଶ-ମଞ୍ଜରୀ) ତୁଳସୀ।

ତ୍ରିଦଶାଧିପ, } ବ. ପୁଂ. (ତ୍ରିଦଶ-ଅଧିପ, ଅଧି-
ତ୍ରିଦଶାଧିପତି } ପତି) ଇନ୍ଦ୍ର।

ତ୍ରିଦଶାୟୁଧ, ବ. କ୍ଳ. (ତ୍ରିଦଶ-ଆୟୁଧ) ଅଶନି, ବଜ୍ର; ଇନ୍ଦ୍ରଧନୁ।

ତ୍ରିଦଶାରି, ବ. ପୁଂ. (ତ୍ରିଦଶ-ଅରି) ଅସୁର, ଦୈତ୍ୟ, ଦାନବ।

ତ୍ରିଦଶାଳୟ, ବ. ପୁଂ. (ତ୍ରିଦଶ-ଆଳୟ) ସ୍ୱର୍ଗ; ସୁମେରୁ।

ତ୍ରିଦଶାହାର, ବ. ପୁଂ. (ତ୍ରିଦଶ-ଆହାର) ଅମୃତ, ସୁଧା।

ତ୍ରିଦିବ, ବ. ପୁଂ. କ୍ଳ. (ତ୍ରି-ଦିବ୍-ଅ) ସ୍ୱର୍ଗ, ଆକାଶ। ସ୍ତ୍ରୀ. ନଦୀବିଶେଷ।

ତ୍ରିଦିବେଶ, ବ. ପୁଂ. (ତ୍ରିଦିବ-ଈଶ) ଦେବତା, ଅମର।

ତ୍ରିଦୋଷ, ବ. ପୁଂ. (ତ୍ରି-ଦୋଷ) ବାତ, ପିତ୍ତ, କଫ ଏହି ତ୍ରିଦୋଷ।

ତ୍ରିଧା, ତ୍ରିବିଧ, ଅ. (ତ୍ରି-ଧା, ବିଧ) ତିନି ପ୍ରକାର, ତିନିଖଣ୍ଡ, ତିନିବାର।

ତ୍ରିଧାତୁ, ବ. ପୁଂ. (ତ୍ରି-ଧା-ତୁ) ଗଣେଶ। କ୍ଳ. ଧାତୁତ୍ରୟ।

ତ୍ରିଧାମ, ବ. ପୁଂ. (ତ୍ରି-ଧାମନ୍) ବିଷ୍ଣୁ; ଶିବ; ଅଗ୍ନି; ମୃତ୍ୟୁ। ବ. ତ୍ରିସଂଖ୍ୟାନ୍ୱିତ।

ତ୍ରିନୟନ, ତ୍ରିନେତ୍ର, ତ୍ରିଲୋଚନ, ବ. ପୁଂ. (ତ୍ରି-ନୀ-ଅନ, ତ୍ର, ଲୋଚନ) ଶିବ, ମହାଦେବ, ଶଙ୍କର; ପୂର୍ବେ ପାର୍ବତୀ ଦେବୀ ଶିବଙ୍କର ନେତ୍ରଦ୍ୱୟ ସମାବୃତ କରିବାରୁ ସମସ୍ତ ଜଗତ୍ ଅନ୍ଧକାରରେ ସମାଚ୍ଛନ୍ନ ହେଲା, ସେହି ସମୟରେ ସୃଷ୍ଟିରକ୍ଷା ନିମିତ୍ତ ଶିବଙ୍କ ଇଚ୍ଛାନୁଯାୟୀ ଅତିଶୟ ତେଜସ୍ୱାନ୍ ତୃତୀୟ ନେତ୍ର ପ୍ରାଦୁର୍ଭୂତ ହେଲା।

ତ୍ରିନୟନା, ତ୍ରିନେତ୍ରା, ତ୍ରିଲୋଚନା, ବ. ସ୍ତ୍ରୀ. (ତ୍ରି-ନୟନ, ନେତ୍ର, ଲୋଚନ-ସ୍ତ୍ରୀ ଲିଙ୍ଗେ ଆ) ପାର୍ବତୀ, ଦୁର୍ଗା, ଭବାନୀ, ଅମ୍ବିକା।

ତ୍ରିନେତ୍ରଚୂଡ଼ାମଣି, ବ. ପୁଂ. (ତ୍ରିନେତ୍ର-ଚୂଡ଼ାମଣି) ଚନ୍ଦ୍ର।

ତ୍ରିପକ୍ଷ, ବ. ପୁଂ. (ତ୍ରି-ପକ୍ଷ) ତୃତୀୟ ପକ୍ଷ।

ତ୍ରିପତାକ, ବି. (ତ୍ରି-ପତାକା) ତିନିପତାକାବିଶିଷ୍ଟ। ପୁଂ. ମଧ୍ୟମା ଓ ଅନାମିକା ବ୍ୟତୀତ ଉନ୍ନତାଙ୍ଗୁଳିତ୍ରୟଯୁକ୍ତହସ୍ତ। ବ. କ୍ଳ. ରେଖାତ୍ରୟାଙ୍କିତ ଲଲାଟଦେଶ।

ତ୍ରିପତ୍ର, ବ. ପୁଂ. (ତ୍ରି-ପତ୍ର) ବେଲଗଛ। ବି. ପତ୍ରତ୍ରୟବିଶିଷ୍ଟ।

ତ୍ରିପଥ, ବ. କ୍ଳ. (ତ୍ରି-ପଥିନ୍) ତ୍ରିମାର୍ଗ।

ତ୍ରିପଥଗା, ବ. ସ୍ତ୍ରୀ. (ତ୍ରିପଥ-ଗ) ତ୍ରିପଥଗାମିନୀ ଗଙ୍ଗା।

ତ୍ରିପଦୀ, ତ୍ରିପଦିକା, ବ. ସ୍ତ୍ରୀ. (ତ୍ରି-ପଦ୍-ଈ, ତ୍ରି-ପଦ୍-ଇକ-ଆ) ଛନ୍ଦୋବିଶେଷ, ଯେଉଁ ଛନ୍ଦରେ ଶ୍ଲୋକର ଅର୍ଦ୍ଧଭାଗ ତିନି ଅଂଶରେ ବିଭକ୍ତ ଥାଏ; ଟିପେଇ; ହସ୍ତିର ପାଦବନ୍ଧନ ରଜ୍ଜୁ, ଶୃଙ୍ଖଳାଦି।

ତ୍ରିପର୍ଣ୍ଣ, ବ. ପୁଂ. (ତ୍ରି-ପର୍ଣ୍ଣ) ପଳାଶ ବୃକ୍ଷ। ବି. ଯାହାର ତିନିଟି ପତ୍ର ଅଛି।

ତ୍ରିପାଦ୍, } ବ. ପୁଂ. (ତ୍ରି-ପାଦ୍, ପାଦ)
ତ୍ରିପାଦ, } ତ୍ରିବିକ୍ରମ, ବାମନଦେବ, ବିଷ୍ଣୁ। ବି. ତ୍ରିପାଦବିଶିଷ୍ଟ।

ତ୍ରିପିଷ୍ଟପ, } ବ. କ୍ଳ. (ତ୍ରି-ପିଷ୍ଟପ, ବିଷ୍ଟପ)
ତ୍ରିବିଷ୍ଟପ, } ତ୍ରିଲୋକ; ସ୍ୱର୍ଗ; ତ୍ରିଭୁବନ।

ତ୍ରିପୁଟ, ବ. ପୁଂ. (ତ୍ରି-ପୁଟ) ତଟ, ଘର; ଖେସାରି ଡାଲି; ଶର; ତାଳ। ସ୍ତ୍ରୀ. ମଲ୍ଲିକା; ଛୋଟ ଅଳାଇଚ।

ତ୍ରିପୁଣ୍ଡ୍ର, } ବ. କ୍ଳ. (ତ୍ରି-ପୁଣ୍ଡ୍ର, କ) ଭସ୍ମାଦି-
ତ୍ରିପୁଣ୍ଡ୍ରକ, } କୃତ କପାଳସ୍ଥ ତିର୍ଯ୍ୟକ୍‌ରେଖା।

ତ୍ରିପୁରଘ୍ନ, ବ. ପୁଂ. (ତ୍ରିପୁର-ହନ୍-ଅ) ତ୍ରିପୁରହନ୍ତା ମହାଦେବ।

ତ୍ରିପୁରଦହନ, ତ୍ରିପୁରାନ୍ତକ, ତ୍ରିପୁରାରି, ବ. ପୁଂ. (ତ୍ରିପୁର-ଦହ-ଅନ, ଅନ୍ତ-କ, ଅରି) ଶିବ, ମହାଦେବ, ତ୍ରିନେତ୍ର, ଶୂଳପାଣି।

ତ୍ରିଫଳା, ବ. ସ୍ତ୍ରୀ. ( ତ୍ରି-ଫଳ-ଆ ) ହରଡ଼ା, ବାହାଡ଼ା, ଅଁଳା ଏହି ତିନି ଫଳ ।

ତ୍ରିବଳ, ତ୍ରିବଳୀ, ବ. ସ୍ତ୍ରୀ. ( ତ୍ରି-ବଳ, ବଳୀ ) ଉଦର ଓ କଣ୍ଠାଦିର ମାଂସ ସଙ୍କୋଚଜନିତ ରେଖାତ୍ରୟ ।

ତ୍ରିଭଦ୍ର, ବ. ନ. (ତ୍ରି-ଭଦ୍ର) ସୁରତପ୍ରସଙ୍ଗ, ରତି-କ୍ରୀଡ଼ା ।

ତ୍ରିଭୁଜ, ବ. ପୁଂ. (ତ୍ରି-ଭୁଜ) ତ୍ରିକୋଣକ୍ଷେତ୍ର, ତିନି ଗୋଟି ସରଳରେଖାଦ୍ୱାରା ଆବୃତ କ୍ଷେତ୍ର ।

ତ୍ରିଭୁବନ, ବ. ନ. ( ତ୍ରି-ଭୁବନ) ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ।

ତ୍ରିମଦ, ବ. ପୁଂ. (ତ୍ରି-ମଦ) ବିଦ୍ୟାମଦ, ଧନମଦ ଓ ଅଭିଜାତ୍ୟ ମଦ ।

ତ୍ରିମଧୁ, ବ. ପୁଂ. (ତ୍ରି-ମଧୁ) ଋଗ୍ୱେଦର ଅଂଶ-ବିଶେଷ । ନ. ଘୃତ, ମଧୁ ଓ ଚିନି ।

ତ୍ରିମାର୍ଗଗା, ବ. ସ୍ତ୍ରୀ. (ତ୍ରିମାର୍ଗ-ଗମ୍-ଅ) ତ୍ରିପଥଗା, ଗଙ୍ଗା ।

ତ୍ରିମୂର୍ତ୍ତି, ବ. ପୁଂ. ( ତ୍ରି-ମୂର୍ତ୍ତି ) ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ।

ତ୍ରିଯମ୍ବକ, ବ. ପୁଂ. (ତ୍ରି=ତିନି-ଅମ୍ବକ=ନେତ୍ର) ଶିବ, ମହାଦେବ ।

ତ୍ରିଯାମକ, ବ. ନ. (ତ୍ରି-ଯମ୍-ଅକ) କଳୁଷ,ପାପ ।

ତ୍ରିଯାମା, ବ. ସ୍ତ୍ରୀ. (ତ୍ରି-ଯାମ) ରାତ୍ରି; ଯମୁନାନଦୀ; ହରିଦ୍ରା ।

ତ୍ରିରାତ୍ର, ବ. ନ. (ତ୍ରି-ରାତ୍ରି) ୩ ରାତ୍ରି, ରାତ୍ରିସହ ଦିବସତ୍ରୟ ।

ତ୍ରିଲିଙ୍ଗ, ବି. (ତ୍ରି-ଲିଙ୍ଗ) ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ଓ ନପୁଂସକ ଲିଙ୍ଗ; ଅଦୃଷ୍ଟାଶ୍ରିତ ।

ତ୍ରିଲୋକ, ବ. ନ. (ତ୍ରି-ଲୋକ) ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ।

ତ୍ରିଲୋକୀ, ବ. ସ୍ତ୍ରୀ. (ତ୍ରି-ଲୋକ-ଈ) ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ।

ତ୍ରିଲୋକେଶ, ବ. ପୁଂ. (ତ୍ରି-ଲୋକ-ଈଶ) ଶିବ, ବିଷ୍ଣୁ ଓ ସୂର୍ଯ୍ୟ ତ୍ରିଲୋକର ଅଧିପତି ।

ତ୍ରିଲୋଚନ, ବ. ପୁଂ. (ତ୍ରି-ଲୋଚନ)ମହାଦେବ ।

ତ୍ରିବର୍ଗ, ବ. ପୁଂ. (ତ୍ରି-ବର୍ଗ ) ଧର୍ମ, ଅର୍ଥ ଓ କାମ ଏହି ତିନି; ତ୍ରିଫଳା; ତ୍ରିକଟୁ ।

ତ୍ରିବର୍ଣ୍ଣକ, ବ. ପୁଂ. ( ତ୍ରି-ବର୍ଣ୍ଣ-କ ) ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏହି ତିନି ବର୍ଣ୍ଣ; ତ୍ରିଫଳା; ତ୍ରିକଟୁ ।

ତ୍ରିବର୍ଷିକା, ବ. ସ୍ତ୍ରୀ. (ତ୍ରି-ବର୍ଷ-ଇକ-ଆ) ୩ ବର୍ଷ-ବୟସ୍କା ଗାଭୀ; ତ୍ରିହାୟଣୀ ।

ତ୍ରିବିକ୍ରମ, ବ. ପୁଂ. ( ତ୍ରି-ବିକ୍ରମ ) ବାମନରୂପୀ ବିଷ୍ଣୁ; ଏ ତିନି ପଦଦ୍ୱାରା ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳକୁ ଆକ୍ରମଣ କରିଥିଲେ ।

ତ୍ରିବିଦ୍ୟା, ବ. ସ୍ତ୍ରୀ. ( ତ୍ରି-ବିଦ୍ୟା ) ବେଦର ଶାଖାତ୍ରୟ ।

ତ୍ରିବିଧ, ବି. (ତ୍ରି-ବିଧା) ତିନି ପ୍ରକାର, ତ୍ରିଧା ।

ତ୍ରିବିଷ୍ଟପ, ବ. ନ. (ତ୍ରି-ବିଷ୍ଟପ=ଭୁବନ) ସ୍ୱର୍ଗ; ତ୍ରିଭୁବନ ।

ତ୍ରିବେଣୀ, ବ. ସ୍ତ୍ରୀ. (ତ୍ରି-ବେଣୀ) ଯେଉଁ ସ୍ଥାନରେ ଗଙ୍ଗା, ଯମୁନା ଓ ସରସ୍ୱତୀର ଯୋଗ ହୋଇ-ଅଛି ।

ତ୍ରିବେଣୁ, ବ. ପୁଂ. ( ତ୍ରି-ବେଣୁ ) ରଥମୁଖସ୍ଥ ଅବୟବବିଶେଷ ।

ତ୍ରିବେଦୀ, ବ. ପୁଂ. ( ତ୍ରିବେଦ-ଇନ୍ ) ଋକ୍, ଯଜୁଃ, ସାମ ଏହି ତିନି ବେଦଜ୍ଞାତା ବ୍ରାହ୍ମଣ ।

ତ୍ରିଶଙ୍କୁ, ବ. ପୁଂ. ( ତ୍ରି-ଶଙ୍କୁ ) ଚାତକପକ୍ଷୀ; ଖଦ୍ୟୋତ; ଶଲଭ; ସ୍ୱନାମପ୍ରସିଦ୍ଧ ନୃପ ।

ତ୍ରିଶଙ୍କୁଯାଜୀ, ବ. ପୁଂ. ( ତ୍ରିଶଙ୍କୁ-ଯାଜିନ୍ ) ବିଶ୍ୱାମିତ୍ର ଋଷି ।

ତ୍ରିଶତ, ବ. ନ. ତିନିଶତ, ୩୦୦ ।

ତ୍ରିଶିର, } ବ. ପୁଂ. ରାବଣର ପୁତ୍ର । ନ. ତ୍ରିଶୂଳ;
ତ୍ରିଶିଖା, } କିରୀଟ । ବି. ଶାଖାତ୍ରୟଯୁକ୍ତ ।

ତ୍ରିଶିରାଃ, ବ. ପୁଂ. ( ତ୍ରି-ଶିରସ୍ ) କୁବେର; ରାକ୍ଷସବିଶେଷ; ନଡିଆ; ତ୍ରିମସ୍ତକ ।

ତ୍ରିଶୀର୍ଷକ, ବ. ନ. (ତ୍ରି-ଶୀର୍ଷକ) ତ୍ରିଫଳଯୁକ୍ତ ଅସ୍ତ୍ର, ତ୍ରିଶୂଳ ।

ତ୍ରିଶୂଳ, ବ. ନ. ଶିବଙ୍କର ଅସ୍ତ୍ର ।

ତ୍ରିଶୂଳୀ, ବ. ପୁଂ. ( ତ୍ରିଶୂଳ-ଇନ୍ ) ଶିବ । ବି. ତ୍ରିଶୂଳଧାରୀ ।

ତ୍ରିଶୃଙ୍ଗ, ବ. ( ତ୍ରି-ଶୃଙ୍ଗ ) ତ୍ରିକୂଟ ପର୍ବତ; ତ୍ରିକୋଣ ।

ତ୍ରିଷ୍ଟୁଭ୍, ବ. ନ. ( ତ୍ରି-ସ୍ତୁମ୍ଭ-° ) ୧୧ ଅକ୍ଷର ଛନ୍ଦୋବିଶେଷ ।

ତ୍ରିସନ୍ଧ୍ୟ, ବ. ନ. ( ତ୍ରି-ସନ୍ଧ୍ୟା ) ପ୍ରାତଃ, ମଧ୍ୟାହ୍ନ ଓ ସାୟଂକାଳ ।

ତ୍ରିସପ୍ତ, ବ. ନ. ( ତ୍ରି-ସପ୍ତ ) ୭ର ୩ଗୁଣ, ଏକ-ବିଂଶତି ସଂଖ୍ୟକ ।

ତ୍ରିସପ୍ତତି, ବ. ସ୍ତ୍ରୀ. ତିନି ଅଧିକ ସପ୍ତତି, ୭୩ ।

ତ୍ରିସବନ, } ବ. ନ. ( ତ୍ରି-ସବନ ) ତ୍ରୈକାଳିକ
ତ୍ରିଷବନ, } ସ୍ନାନ, ତ୍ରିସନ୍ଧ୍ୟା ସ୍ନାନ ।

ତ୍ରିସର, ବ. ପୁଂ. (ତ୍ରି-ସୃ-ଅ) ତିଳମିଶ୍ରିତ ଅନ୍ନ ।

ତ୍ରିସରକ, ବ. ପୁଂ. ତିନି ଥର ମଦ୍ୟପାନ ।

ତ୍ରିସ୍ରୋତାଃ, ବ.ସ୍ତ୍ରୀ. ଭାଗୀରଥୀ, ଗଙ୍ଗା, ତ୍ରିପଥଗା ।

ତ୍ରିହାୟଣୀ, ବ. ସ୍ତ୍ରୀ. ( ତ୍ରି-ହାୟନ-ଈ ) ୩ ବର୍ଷ-ବୟସ୍କା ଗାଭୀ; ଦ୍ରୌପଦୀ ।

ତ୍ରୁଟି, ତ୍ରୁଟୀ, (ତ୍ରୁଟ୍-ଇ, ଈ) ନ୍ୟୂନତା,ଅପଚୟ, କ୍ଷତି, ହାନି; ସଂଶୟ; ପଞ୍ଚକ୍ଷଣ ପରିମିତ କାଳ; ଛୋଟ ଅଳାଇଚ ।

ତ୍ରୁଟିତ, ବି. ( ତ୍ରୁଟି-ତ ) ଛିନ୍ନ; ଭଗ୍ନ; ସ୍ଖଳିତ; ଗଳିତ ।

ତ୍ରୁଟିବୀଜ, ବ. ପୁଂ. ( ତ୍ରୁଟି-ବୀଜ ) ସାରୁ ।

ତ୍ରେତା, ବ. ସ୍ତ୍ରୀ. ( ତ୍ରି-ଇତ-ଆ ) ଦ୍ୱିତୀୟ ଯୁଗ; ଦକ୍ଷିଣ, ଗାର୍ହପତ୍ୟ, ଆହବନୀୟ ଏହି ତିନି ପ୍ରକାର ଅଗ୍ନି ।

ତ୍ରେଧା, ତ୍ରୈଧା, ଅ. ( ତ୍ରି-ଧା ) ତିନି ପ୍ରକାର, ତିନି ବାର ।

ତ୍ରୈକାଳିକ, ବି. ( ତ୍ରିକାଳ-ଇକ ) ତ୍ରିକାଳ-ସମ୍ବନ୍ଧୀୟ, ପ୍ରାତଃ, ମଧ୍ୟାହ୍ନ ଓ ସାୟଂକାଳରେ ଯାହା ଘଟେ; ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ-ସଂକ୍ରାନ୍ତ ।

ତ୍ରୈଗୁଣ୍ୟ, ବ. ନ. ( ତ୍ରିଗୁଣ-ଯ ) ସତ୍ତ୍ୱ, ରଜଃ, ତମ ଏହି ତିନି ଗୁଣର ସମଷ୍ଟି; ତିନି ଗୁଣ ଧର୍ମ ।

ତ୍ରୈଧାତୁକ, ବି. ( ତ୍ରିଧାତୁ-କ ) ସ୍ୱର୍ଣ୍ଣ, ରୌପ୍ୟ ଓ ତାମ୍ର ଏହି ତିନି ଧାତୁରେ ନିର୍ମିତ ।

ତ୍ରୈମାତୁର, ବ. ପୁଂ. ( ତ୍ରିମାତୃ-ଉର୍-ଅ ) ତିନି ମାତାର ପୁତ୍ର, କୌଶଲ୍ୟା ଓ କୈକେୟୀପ୍ରଦତ୍ତ ପାୟସାଂଶ ଭୋଜନ କରି ସୁମିତ୍ରା ଯାହାକୁ ଗର୍ଭରେ ଧାରଣ କରିଥିଲେ, ଲକ୍ଷ୍ମଣ ।

ତ୍ରୈମାସିକ, ବି. (ତ୍ରିମାସ-ଇକ) ତିନି ମାସରେ ଯାହା ଉତ୍ପନ୍ନ ହୁଏ, ତ୍ରିମାସଜ ।

ତ୍ରୈରାଶିକ, ବ. ନ. (ତ୍ରି-ରାଶି-ଇକ) ତିନି ରାଶି ଜଣାଥିଲେ ଚତୁର୍ଥ ରାଶି ବାହାର କରିବାର ଗାଣିତିକ ନିୟମବିଶେଷ ।

ତ୍ରୈଲୋକ୍ୟ, ବ. ନ. (ତ୍ରିଲୋକ-ଯ) ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ।

ତ୍ରୈବର୍ଗିକ, } ବି. (ତ୍ରିବର୍ଗ-ଇକ, ଯ) ଧର୍ମାର୍ଥ-
ତ୍ରୈବର୍ଗ୍ୟ, } କାମସାଧକ ।

ତ୍ରୈବାର୍ଷିକ, ବି. ( ତ୍ରିବର୍ଷ-ଇକ ) ତ୍ରିବର୍ଷଭୂତ, ତିନିବର୍ଷବ୍ୟାପୀ ।

ତ୍ରୈବିଦ୍ୟ, ବ. ପୁଂ. ( ତ୍ରିବିଦ୍ୟା-ଅ ) ତ୍ରିବେଦୀ, ତିନି ବେଦବେତ୍ତା ।

ତ୍ରୈବିଧ, ବ. ନ. (ତ୍ରିବିଧ-ଯ) ତିନି ପ୍ରକାର ।

ତ୍ରୋଟକ, ବି. (ତ୍ରୁଟ୍-ଅକ) ଯାହାଦ୍ୱାରା ଛେଦନ କରାଯାଏ । ବ. ନ. ନାଟ୍ୟଗ୍ରନ୍ଥବିଶେଷ । ଯଥା—ବିକ୍ରମୋର୍ବଶୀ ।

ତ୍ରୋଟି, ତ୍ରୋଟୀ, ବ. ସ୍ତ୍ରୀ. ( ତ୍ରୁଟ୍-ଇ, ଇନ୍ ) ଚଞ୍ଚୁ, ପକ୍ଷୀର ଥଣ୍ଟ ।

ତ୍ରୋତ୍ର, ବ. ନ. (ତ୍ରୈ-ଉତ୍ର) ଗବାଦି ତାଡ଼ନ-ଦଣ୍ଡ, ପାଞ୍ଚଣ ବାଡ଼ି ।

ତ୍ର୍ୟଂଶ, ବ. ପୁଂ. (ତ୍ରି-ଅଂଶ) ତୃତୀୟ ଅଂଶ ।

ତ୍ର୍ୟମ୍ବକ, ବ. ପୁଂ. ( ତ୍ରି-ଅମ୍ବ-ଅକ ) ଶିବ, ତ୍ରିଲୋଚନ ।

ତ୍ର୍ୟମ୍ବକସଖ, ବ. ପୁଂ. ଯକ୍ଷରାଜ, କୁବେର ।

ତ୍ୟହସ୍ପର୍ଶ, ବ. ପୁଂ. ( ତ୍ରି-ଅହନ୍-ସ୍ପର୍ଶ ) ଏକ-ଦିନରେ ତିନି ତିଥିର ମିଳନ ।

ତ୍ୟାହିକ, ବିଂ. ( ତ୍ରି-ଅହନ୍-ଇକ ) ତିନିଦିନରେ ଯାହା ହୁଏ, ତିନିଦିନ ଦିବସ-ସମ୍ବନ୍ଧୀୟ ।

ତ୍ୱ, ବିଂ. (ତନ୍-୦, ଅନ୍=ବ) ଅନ୍ୟ, ଭିନ୍ନ ।

ତ୍ୱକ୍, ସ୍ତ୍ରୀ.
ତ୍ୱଚ୍, ନ.
ତ୍ୱଚ୍, ସ୍ତ୍ରୀ. } ବ. (ତ୍ୱଚ୍-୦) ବଳ୍କଳ, ଚର୍ମ; ସ୍ପର୍ଶେନ୍ଦ୍ରିୟ; ଦାରୁଚିନି ।

ତ୍ୱକ୍କ୍ଷୀରୀ, ବ. ସ୍ତ୍ରୀ. (ତ୍ୱକ୍-କ୍ଷୀର) ବଂଶଲୋଚନା ।

ତ୍ୱକ୍ପତ୍ର, ବ. ନ. (ତ୍ୱକ୍-ପତ୍ର) ତେଜପତ୍ର; ଦାରୁଚିନି ।

ତ୍ୱକ୍ସାର, ତ୍ୱଚସାର, ବ. ପୁଂ. (ତ୍ୱକ୍-ସାର) ବଂଶ, ବାଉଁଶ; ଦାରୁଚିନି ।

ତ୍ୱଗଙ୍କୁର, ବ. ପୁଂ. (ତ୍ୱକ୍-ଅଙ୍କୁର) ରୋମାଞ୍ଚ ।

ତ୍ୱଗ୍‌ଜ, ବ. ନ. (ତ୍ୱକ୍-ଜ) ରୋମ, ଲୋମ; ରୁଧିର, ରକ୍ତ ।

ତ୍ୱଗ୍‌ଦୋଷ, ବ. ପୁଂ. (ତ୍ୱକ୍-ଦୋଷ) କୁଷ୍ଠରୋଗ । ବିଂ. କୁଷ୍ଠରୋଗାକ୍ରାନ୍ତ ।

ତ୍ୱତ୍, ବିଂ. (ତନ୍-୦) ଅନ୍ୟ, ଭିନ୍ନ; ଏକ-ବଚନାନ୍ତ ଯୁଷ୍ମଦ୍ ବାଚକ ।

ତ୍ୱଦୀୟ, ବିଂ. (ତ୍ୱତ୍-ଈୟ) ତୁମ୍ଭର, ତୁମ୍ଭସମ୍ବନ୍ଧୀୟ ।

ତ୍ୱଦ୍‌ବିଧ, ବିଂ. (ତ୍ୱତ୍-ବିଧା) ତୁମ୍ଭପରି, ତୁମ୍ଭସଦୃଶ ।

ତ୍ୱରମାଣ, ବିଂ. (ତ୍ୱର୍-ଅନ) ସତ୍ୱର ।

ତ୍ୱରା, ବ. ସ୍ତ୍ରୀ. (ତ୍ୱର-ଅ) ବେଗ, ଶୀଘ୍ରତା ।

ତ୍ୱରିତ, ବିଂ. (ତ୍ୱର୍-ତ) ସତ୍ୱର, ଶୀଘ୍ର । ଯଥା—

> ତ୍ୱରିତ ବଧୂମୋହ ବିନାଶ ଅଣେ
> ଶୀକର ଶୀତବାୟୁ ସେଜିଲେ ପାଣେ । ବ. ବ.

ତ୍ୱାଦୃକ୍,
ତ୍ୱାଦୃଶ,
ତ୍ୱାଦୃକ୍ଷ, } ବିଂ. (ଯୁଷ୍ମଦ୍-ଦୃଶ୍-୦, ଅ) ତୁମ୍ଭ ସଦୃଶ ।

ତ୍ୱିଷ୍, ତ୍ୱିଷା, ବ. ସ୍ତ୍ରୀ. (ତ୍ୱିଷ୍-୦) ତେଜଃ, କାନ୍ତି, ବର୍ଣ୍ଣ ।

ତ୍ୱିଷାମ୍ପତି, ବ. ପୁଂ, ସୂର୍ଯ୍ୟ; ଅର୍କବୃକ୍ଷ ।

ତ୍ୱିଷାମ୍ପତି, ବ. ପୁଂ. ( ତ୍ୱିଷାଂ-ପତି ) ସୂର୍ଯ୍ୟ । ଯଥା—

> ଗମନ୍ତି ଦେଖିଲେ ଯହିଁ ତ୍ୱିଷାମ୍ପତି,
> କେଦାରଧର୍ମଧ୍ୱ ବର୍ଣ୍ଣେ ବ୍ରମାସ ବସତି ।

ଅର୍କବୃକ୍ଷ ।

ତ୍ୱିଷିତ, ବିଂ. (ତ୍ୱିଷ୍-ଇତ) ଜ୍ୱଳିତ ।

——o——

# ଥ

ଥ, ବ୍ୟଞ୍ଜନବର୍ଣ୍ଣର ସପ୍ତଦଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଦନ୍ତ । ବ. ପୁଂ. ପର୍ବତ; ରୋଗବିଶେଷ; ଚିହ୍ନ । ନ. ଭକ୍ଷଣ; ରକ୍ଷଣ; ଭୟ ।

ଥକା, ବ. (ସ୍ଥଗିତ ଶବ୍ଦଜ) ଅବସାଦ, କ୍ଲାନ୍ତି, ଶ୍ରାନ୍ତି । ବିଂ. ଶ୍ରାନ୍ତ ।

ଥକାମରା, ବିଂ. (ସ୍ଥଗିତ ଶବ୍ଦଜ) ଅବସନ୍ନ, କ୍ଲାନ୍ତ, ଶ୍ରାନ୍ତ ।

ଥକିଯିବାର, କ୍ରି. (ସ୍ଥଗିତ ଶବ୍ଦଜ) ରହିଯିବାର, ଅବସନ୍ନ ହେବାର ।

ଥଙ୍ଗଥଙ୍ଗ, (ଦେଶଜ) ରହି ରହି ହେବା ।

ଥଟା, ଥଟ୍ଟା, ବ. (ଦେଶଜ) ପରିହାସ ।

ଥଟାରି, ବ. ( ଦେଶଜ ) ଜାତିବିଶେଷ, ଯେଉଁମାନେ କଂସା ଏବଂ ପିତ୍ତଳନିର୍ମିତ ପାତ୍ର ଓ ଅଳଙ୍କାରାଦି ପ୍ରସ୍ତୁତ ଏବଂ କାରବାର କରନ୍ତି ।

ଥଣ୍ଡା, ବିଂ. (ଦେଶଜ) ଶୀତଳ, ଉତ୍ତାପହୀନ ।

ଥଣ୍ଟା, ବ. (ଦେଶଜ) ଚଞ୍ଚୁ ।

ଥନ, ବ. (ସ୍ତନର ଅପଭ୍ରଂଶ) କୁଚ, ପୟୋଧର । ଯଥା—

> କୋଇଲ ସେ ଥନ ଧର୍ମ କ୍ଷୀରପାନ ଦେଲ,
> ଥବର ବାଳକୁ ସ୍ତନ ଦେଖି ନ ପାରିଲ ସେ ।

ଥନଥନ, ବ. (ଦେଶଜ) ଚକ୍ଷୁର ଲୋତକପୂର୍ଣ୍ଣ ଅବସ୍ଥା ।

**ଥନାହରା**, ବି°. (ଦେଶଜ) ସ୍ତନରୋଗବିଶେଷ ।

**ଥନ୍ତରା**, ବି°. (ଦେଶଜ) ଅକର୍ମଣ୍ୟ, ନପୁଂସକ ; ବାଡ଼ ବା ମୂନହୀନ ।

**ଥନ୍ତଲ**, ବି°. (ଦେଶଜ) ମୋଟା, କେବଳ ପେଟ ପ୍ରତି ପ୍ରୟୋଗ ହୋଇଥାଏ ।

**ଥପଥପ**, ଅ°. (ଦେଶଜ) ଜଳାଦି ତରଳ ପଦାର୍ଥର ବିନ୍ଦୁ ବିନ୍ଦୁ ପତନର ଶବ୍ଦ ।

**ଥବିର**, ବି°. (ସ୍ଥବିର ଶବ୍ଦଜ) ବୃଦ୍ଧ । ଯଥା—

ଥବିର ବାଳକୁ ପୁତ୍ର ଦେଖି ନ ପାରିଲ ସେ ବୋଇଲ ।

**ଥମିବା**, କ୍ରି. (ସ୍ତମ୍ଭ ଶବ୍ଦଜ) ଥକିବା, ରହିଯିବା ।

**ଥୟ୍ୟ**, ବି°. (ସ୍ଥା ଧାତୁଜ) ସ୍ଥିର । ଯଥା—

ଚାପ ଚପୋଳନ୍ତକ ଥୟ ନୋହିଲ ।

**ଥର**, ବି. ବାର ; କମ୍ପ । ଯଥା—

ଯେବେ ମୋ ନେତ୍ରପଥରେ ପଡ଼ିଗଲେ ବାଳଚୂଡ଼ାଅ ଥରେ
ଅଳ ଯାଏ ମୋ ହୃଦୟ ଥରେ । ବ. ଚ.

**ଥରଥର**, ବି°. (ଦେଶଜ) କମ୍ପାନ୍ୱିତ, କମ୍ପିତ । ଯଥା—

ଯେବେ ଭୟେ ଅହା ଚନ୍ଦ୍ରିଁ ଫୁଲ ଥରଥରେ ।

**ଥଳ**, ବି. (ସ୍ଥଳ ଶବ୍ଦର ଅପଭ୍ରଂଶ) ଶୁଖିଲ ସ୍ଥାନ ।

**ଥଳଥଳଅ**, ବି°. (ଦେଶଜ) ଥକଥକିଆ, ମେଣ୍ଢା-ମେଣ୍ଢା ।

**ଥଳି**, **ଥଳୀ**, ବି. (ସ୍ଥଳୀ ଶବ୍ଦଜ) ମୁଣା ।

**ଥାଉ**, କ୍ରି. (ସ୍ଥା ଧାତୁଜ) ରହୁ । ଯଥା—

ଥାଉ ପଛେ ଭୂମ୍ନ ଦେଖା ନେବା ପଣ
ଦେଖିବା ସ୍ୱପନ ହେଲ ।

**ଥାକ**, ବି. (ଯାବନିକ) ଶ୍ରେଣୀ, ଦଳ ।

**ଥାକୁଲ**, ବି°. (ଦେଶଜ) ଅତି ମୋଟା ।

**ଥାଟ**, ବି. (ପ୍ରା) ସୈନ୍ୟ । ଯଥା—

ପୂର୍ଣ୍ଣ ସେ ଗୃହିଁଲ ବୀର ନିଜ ଥାଟ ପ୍ରତ,
ଅତି ସାହା ହୁଅ ଯାର ଅଛଇ ଶବତ । ବ. ବ.

କଙ୍କାଳ ; ପ୍ରତିମାର ମେଢ଼ ।

**ଥାତି**, ବି°. (ସ୍ଥା ଧାତୁଜ) ପାଉଣା, ଜମା, ସଞ୍ଚିତ ଧନ । ଯଥା—

ଶୋଭ ବସ୍ତୁକୁ ଥାତି ରଣ୍ଡାର
ଏ ବସ୍ତୁ ମୋହନ କେତେ ମାତର ।

**ଥାନ**, ବି. (ସ୍ଥା ଧାତୁଜ) ଲୁଗା ପ୍ରଭୃତିର ଥାନ, କେତେକ ପରିମାଣ ଜମି ।

**ଥାପିବା**, କ୍ରି. (ସ୍ଥାପନ ଶବ୍ଦଜ) ରଖିବା, ସ୍ଥାପନ କରିବା ।

**ଥାଳ**, ବି. (ଦେଶଜ) ଲଉ ଶୋଳରେ ନିର୍ମିତ ଭିକ୍ଷାପାତ୍ର । ଯଥା—

ଏ ଛଦର ଭଳ, ପ୍ରେମବିଯୋଗୀ ଯୋଗୀଜନ ଥାଳ ।

**ଥାଳି**, **ଥାଳୀ**, ବି. (ସ୍ଥାଲୀ ଶବ୍ଦଜ) ଧାତୁନିର୍ମିତ ପାତ୍ରବିଶେଷ ।

**ଥାଳଅ**, ବି. (ସ୍ଥାଲୀ ଶବ୍ଦଜ) ଛୋଟ ଥାଳି ; ରେକାବି ।

**ଥୁଆଥୋଇ**, ବି. (ଦେଶଜ) ବିଧବା ସ୍ତ୍ରୀର ପୁନର୍ବିବାହ; ବିଭିନ୍ନ ପଦାର୍ଥମାନ ଯଥାସ୍ଥାନରେ ରଖିବା ।

**ଥୁକ**, ବି. (ଦେଶଜ) ଛେପ ।

**ଥୁକାର**, ବି. (ଥୁତ୍କାର ଶବ୍ଦଜ) ଛେପ ପକା-ଇବା ।

**ଥୁଣ୍ଟା**, ବି°. (ଦେଶଜ) ଶାଖାହୀନ ।

**ଥେଟା**, ବି°. (ହିନ୍ଦୀ, ଥେଣ୍ଟ୍ ଶବ୍ଦଜ) ଅମାନିଆ, ଅବାଧ୍ୟ ।

**ଥୋଇବା**, କ୍ରି. (ସ୍ଥା ଧାତୁଜ) ରଖିବା । ଯଥା—

ମନ ଭୃପଣକୁ ଯେଉଁ ଚଉଦ ରତନ
ଗଣ୍ଠି କରି ଥୋଇଅଛ କରି ବ ଯତନ ।

**ଥୋକେ**, **ଥୋକାଏ**, ବି°. କେତେକ, କେତେ-ଗୁଡ଼ିଏ । ଯଥା—

ଥୋକେ ଡାକ ନାରିଦେଲ ଶତ୍ରୁରି ସେବକ ହେ ।

**ଥୋଡ଼**, ବି. (ଦେଶଜ) କେଣ୍ଡା ; କଦଳୀଗଛର ମଞ୍ଜ; ବାହାରି ନ ଥିବା କାନ୍ଦି ।

**ଥୋଡ଼**, **ଥୋଡ଼ୀ**, ବି. (ଦେଶଜ) ଓଷ୍ଠ ।

**ଥୋଡ଼ଅ**, **ଥୋରଅ**, ବି. ନ. (ଦେଶଜ) ଯେଉଁ ଲୋକ ବଳଦଦ୍ୱାରା ଭାର ବହନ କରେ, ଜାତିବିଶେଷ । ଯଥା—

ଥୋଡ଼ଅ ବଳଦ ଉପରେ, ଲବଣ ପକାଏ ସବୁରେ ।

ଥୋଇଲୀ, ବି. ସ୍ତ୍ରୀ. ( ଦେଶଜ ) ଦାସୀ, ରକ୍ଷିତା ସ୍ତ୍ରୀ । (ଲି) କ୍ରି. ରଖିଲି ।

ଥୋମଣି, ଥୋମୁଣୀ, ବି. (ଦେଶଜ) ପଶୁମାନଙ୍କର ଓଷ୍ଠ ।

ଥୋପ, ବି. ( ଦେଶଜ ) ବନ୍ଶି ଇତ୍ୟାଦିରେ ମତ୍ସ୍ୟାଦି ଧରିବା ନିମନ୍ତେ ଯେଉଁ ଆହାର ଦିଆଯାଏ । ଯଥା—

ନାସେ ଗଜ ମୋତିବର, ଥୋପ ମେଲିଛି କି କାମ ଧିବର ।

ଥୋପା, ବି. ( ସ୍ତବକ ଶବ୍ଦଜ ) ଗୁଚ୍ଛ; କାନ୍ଧ; ଲୁହାର ମୁଗୁର ।

ଥୋପିପଡ଼ିବା, କ୍ରି. ( ଦେଶଜ ) ବୋହୁପଡ଼ିବା । ଯଥା—

ଥୋପି ପଡ଼ୁଛୁ କି ରଙ୍ଗ ଅଧରୁ ।

ଥୋବରା, ବିଂ. (ଦେଶଜ) ନିର୍ଲଜ୍ଜ । କ୍ରି. ଥକ୍କାଯିବା ।

ଥୋର, ଥୋରପାହାର, ବି.(ଦେଶଜ) ହସ୍ତି ଶୁଣ୍ଢ ।

—•—

# ଦ

ଦ, ବ୍ୟଞ୍ଜନବର୍ଣ୍ଣର ଅଷ୍ଟାଦଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଦନ୍ତ । ବି. ନ. (ଦା=ଦାନ କରିବା, ଦୋ=ଛେଦନ କରିବା-ଅ ) ପୁଂ. ପର୍ବତ; ଦାନ; ଛେଦ; ଭାଗକରଣ । ନ. କଦଳୀପତ୍ର ।

ଦଅଣା, ବି. ସ୍ତ୍ରୀ. ପୁଷ୍ପବିଶେଷ ।

ଦଇନୀ କରିବା, କ୍ରି. ( ଦୈନ୍ୟ ଶବ୍ଦଜ ) ବିନତି କରିବା । ଯଥା—

ମୁଁ ଦଇନୀ କରୁଛି ତୁ କି ଯିବୁ ଯମୁନା ।

ଦଉଡ଼, ବି. (ଦେଶଜ) ରଜ୍ଜୁ । ଯଥା—

ବଡ଼ିକ ପ୍ରେମ ବନ୍ଧା ଦଉଡ଼ି
ଶିଥିଳ ହେଲେ ପ୍ରାଣ ଯାଏ ଛଡ଼ି ।

ଦଂଶକ, ବି. ପୁଂ. (ଦନ୍ଶ୍-ଅକ) ଡାଂଶ; ମଶା । ବିଂ. ଦଂଶନକାରୀ ।

ଦଂଶନ, ବି. ପୁଂ. ( ଦନ୍ଶ୍-ଅନ ) ବନମକ୍ଷିକା; ଡାଂଶ; ଦନ୍ତ; ବର୍ମ; ଦୋଷ; ଖଣ୍ଡନ ।

ଦଂଶିତ, ବିଂ. (ଦନ୍ଶ୍-ତ) ଦନ୍ତଦ୍ୱାରା ଖଣ୍ଡିତ ।

ଦଂଷ୍ଟ୍ର, ବି. ପୁଂ. (ଦନ୍ଶ୍-ତ୍ର) ଦନ୍ତ, ରଦନ ।

ଦଂଷ୍ଟ୍ରା, ବି. ସ୍ତ୍ରୀ. (ଦନ୍ଶ୍-ତ୍ର-ଆ) ବଡ଼ ଦନ୍ତ ।

ଦଂଷ୍ଟ୍ରୀ, ବିଂ. ( ଦଂଷ୍ଟ୍ର-ଇନ୍ ) ବୃହଦ୍‌ଦନ୍ତବିଶିଷ୍ଟ, ଦାନ୍ତୁଡ଼ା । ବି. ପୁଂ. ସର୍ପ; ବରାହ ।

ଦକ, ବି. ଭୟ; ଚିନ୍ତା ।

ଦକା, ବି. (ଦେଶଜ) ଡର, ଭୟ, ଛନକା ।

ଦକ୍ଷ, ବିଂ. (ଦକ୍ଷ୍-ଅ) ସମର୍ଥ, ପଟୁ, ନିପୁଣ । ବି. ପୁଂ. ସ୍ୱନାମପ୍ରସିଦ୍ଧ ରାଜା; କୁକ୍କୁଟ; ମହାଦେବଙ୍କ ବୃଷଭ; ମୁନିବିଶେଷ । ବି. ସ୍ତ୍ରୀ. ପୃଥିବୀ ।

ଦକ୍ଷକନ୍ୟା, ଦକ୍ଷଜା, ବି. ସ୍ତ୍ରୀ. ( ଦକ୍ଷ-କନ୍ୟା, ଜନ୍-ଆ) ଦୁର୍ଗା; ସତୀ; ଅଶ୍ୱିନ୍ୟାଦି ସପ୍ତବିଂଶତି ନକ୍ଷତ୍ର ।

ଦକ୍ଷତା, ବି. ସ୍ତ୍ରୀ. ( ଦକ୍ଷ-ତା ) ପଟୁତା, ନୈପୁଣ୍ୟ, କ୍ଷମତା ।

ଦକ୍ଷିଣ, ବିଂ. (ଦକ୍ଷ୍-ଇନ) ଅନୁକୂଳ;ଦାକ୍ଷିଣ୍ୟଯୁକ୍ତ; ପରଚ୍ଛନ୍ଦାନୁବର୍ତ୍ତୀ; ସରଳ, ଅକପଟ, ଉଦାର; ସମର୍ଥ, ଦକ୍ଷ, ନିପୁଣ; ଉତ୍ତରର ବିପରୀତ; ବାମେତର, ଡାହାଣ । ବି. ପୁଂ. ନାୟକ-ବିଶେଷ, ସକଳ ନାୟିକା ସହିତ ଯେ ନାୟକର ସମାନ ଅନୁରାଗ ଥାଏ ।

ଦକ୍ଷିଣକେନ୍ଦ୍ର, ଦକ୍ଷିଣମେରୁ ବି. ପୁଂ. ପୃଥିବୀର ଦକ୍ଷିଣପ୍ରାନ୍ତ ।

ଦକ୍ଷିଣା, ବି. ସ୍ତ୍ରୀ. ( ଦକ୍ଷିଣ-ଆ ) ପୁରୋହିତର ବେତନ, ଯଜ୍ଞାଦି କର୍ମାବସାନରେ ଅନୁଷ୍ଠିତ କର୍ମର ସମ୍ପୂର୍ଣ୍ଣତା ନିମନ୍ତେ ଦାନ; ପୁରସ୍କାର; ଯଜ୍ଞପତ୍ନୀ; ଦକ୍ଷିଣ ଦିଗ ବା ଦେଶ; ଦେବୀ-ବିଶେଷ ।

ଦକ୍ଷିଣାଗ୍ନି, ବି. ପୁଂ. ( ଦକ୍ଷିଣ-ଅଗ୍ନି ) ଅଧ୍ୱରପତ୍ନୀ, ଦକ୍ଷିଣଦିଗରେ ସ୍ଥାପନୀୟ ଯଜ୍ଞାଗ୍ନିବିଶେଷ ।

ଦକ୍ଷିଣାଚଳ, ବି. ପୁଂ. ( ଦକ୍ଷିଣ-ଅଚଳ ) ମଳୟ ପର୍ବତ ।

ଦକ୍ଷିଣାନଳ, ବି. ପୁଂ. ( ଦକ୍ଷିଣ-ଅନଳ ) ମଳୟ ସମୀରଣ

ଦକ୍ଷିଣାପଥ, ବି. ପୁଂ. (ଦକ୍ଷିଣା-ପଥ) ଦକ୍ଷିଣଦେଶ, ଦାକ୍ଷିଣାତ୍ୟ ।

ଦକ୍ଷିଣାୟନ, ବି. ନ. ( ଦକ୍ଷିଣ-ଅୟନ ) ବିଷୁବ-ରେଖାର ଦକ୍ଷିଣବର୍ତ୍ତୀ ସୂର୍ଯ୍ୟମାର୍ଗ ।

ଦକ୍ଷିଣାୟନାନ୍ତବୃତ୍ତ, ସୂର୍ଯ୍ୟର ଦକ୍ଷିଣ ଦିଗ ଗତିର ସୀମାନିରୂପକ ରେଖା ।

ଦକ୍ଷିଣାବର୍ତ୍ତ, ବି. ପୁଂ. ( ଦକ୍ଷିଣ-ଆବର୍ତ୍ତ ) ଶଙ୍ଖ-ବିଶେଷ; ବିନ୍ଧ୍ୟଗିରିର ଦକ୍ଷିଣଦେଶ । ବିଂ. ଯାହା ଦକ୍ଷିଣ ଦିଗକୁ ଝୁଙ୍କିଅଛି ।

ଦକ୍ଷିଣାଶାପତି, ବି. ପୁଂ. (ଦକ୍ଷିଣ-ଆଶା-ପତି) ଯମ; ଭୌମଗ୍ରହ ।

ଦଖଲ, ବି. (ଯାବନିକ) ଅଧିକାର ।

ଦଖଲ୍, ବି. (ଦେଶଜ) କର୍ଦ୍ଦମ, କାଦୁଅ ।

ଦଗା, ବି. (ଦେଶଜ) ଶଠତା ।

ଦଗାଦିଆ, ଦଗାଦାର, ବିଂ. (ଯାବନିକ) ଶଠ, ଠକ ।

ଦଙ୍ଗା, ବିଂ. (ଯାବନିକ) କଳହ ।

ଦଗ୍ଧ, ବିଂ. (ଦହ-ତ) ସନ୍ତପ୍ତ; ଭସ୍ମୀକୃତ ।

ଦଣ୍ଡ, ବି. ପୁଂ. ନ. (ଦଣ୍ଡ୍-ଅ) ଯଷ୍ଟି । ପୁଂ. ଶାସନ, ଦମନ, ଶିକ୍ଷା ।

ଦଣ୍ଡକ, ବି. ପୁଂ. (ଦଣ୍ଡ-କ) ନୃପବିଶେଷ । ନ. ଛନ୍ଦୋବିଶେଷ ।

ଦଣ୍ଡକା, ବି. ସ୍ତ୍ରୀ. (ଦଣ୍ଡ-କି-ଅ) ଦେଶବିଶେଷ, ଯେଉଁ ଦେଶରେ ଦଣ୍ଡକାରଣ୍ୟ ନାମକ ବନ ଅଛି ।

ଦଣ୍ଡକାକ, ବି. ପୁଂ. ଡାମରା କୁଆ ।

ଦଣ୍ଡକାରଣ୍ୟ , ବି. ନ. ( ଦଣ୍ଡକ-ଅରଣ୍ୟ ) ସମୁଦାୟ ଦାକ୍ଷିଣାତ୍ୟ, ବିଶେଷତଃ ଦାକ୍ଷିଣା-ତ୍ୟର ପୂର୍ବଭାଗ ।

ଦଣ୍ଡକରେ, ଦଣ୍ଡକେ, କ୍ରି. ବିଂ. (ଦେଶଜ) ଅଳ୍ପ ସମୟ ମଧ୍ୟରେ ।

ଦଣ୍ଡଧର, ବି. ପୁଂ. (ଦଣ୍ଡ-ଧର) ରାଜା ; ଯମ ; କୁମ୍ଭକାର; ସନ୍ନ୍ୟାସୀ । ବିଂ. ଯଷ୍ଟିଧାରୀ ।

ଦଣ୍ଡନାୟକ, ବି. ପୁଂ. (ଦଣ୍ଡ-ନାୟକ) ସେନାପତି, ଦଣ୍ଡବିଧାନକର୍ତ୍ତା, ରାଜା ।

ଦଣ୍ଡନୀତି, ବି. ସ୍ତ୍ରୀ. ( ଦଣ୍ଡ-ନୀତି ) ରାଜନୀତି ଶାସ୍ତ୍ରବିଶେଷ, ଯହିଁରେ ରାଜ୍ୟ-ଶାସନସଂକ୍ରାନ୍ତ ଯାବତୀୟ ନିୟମ ଓ ଉପଦେଶ ଅଛି ।

ଦଣ୍ଡନୀୟ, ବିଂ. (ଦଣ୍ଡ-ଅନୀୟ) ଦଣ୍ଡାର୍ହ, ଦଣ୍ଡ-ଦେବାଯୋଗ୍ୟ ।

ଦଣ୍ଡପାଣି, ବି. ପୁଂ. ( ଦଣ୍ଡ-ପାଣି ) ଯମ; ରାଜା; କୁମ୍ଭକାର; ଶିବଙ୍କର ଅନୁଚରବିଶେଷ । ବିଂ. ଯଷ୍ଟିଧାରୀ ।

ଦଣ୍ଡପାଳ, ଦଣ୍ଡପାଳକ, ବି. ପୁଂ. (ଦଣ୍ଡ-ପାଳ, ପାଳକ) ଦ୍ୱାରପାଳ ।

ଦଣ୍ଡଭୃତ୍, ବି. ପୁଂ. ( ଦଣ୍ଡ-ଭୃତ୍ ) କୁମ୍ଭକାର । ବିଂ. ଦଣ୍ଡଧାରୀ ।

ଦଣ୍ଡମାଥ, ବି. ପୁଂ. (ଦଣ୍ଡ=ଦଣ୍ଡାକାର-ମାଥ= ପଥ) ପ୍ରଧାନ ସଦର ରାସ୍ତା ।

ଦଣ୍ଡଯାତ୍ରା, ବି. ସ୍ତ୍ରୀ. (ଦଣ୍ଡ-ଯାତ୍ରା) ଦିଗ୍‌ବିଜୟାର୍ଥ ଗମନ; ବରଯାତ୍ରା; ସମ୍ୟକ୍ ଗମନ ।

ଦଣ୍ଡବତ୍, ଅଂ. ( ଦଣ୍ଡ-ବତ୍ ) ଦଣ୍ଡପରି ପତିତ ହେବା, ଭୂମିଷ୍ଠ ପ୍ରଣାମ ।

ଦଣ୍ଡବିଧି, ବି. ପୁଂ. (ଦଣ୍ଡ-ବିଧି) ଦୁଷ୍କୃତ ଦମନାର୍ଥ ନିୟମାବଳୀ, ଦଣ୍ଡବିଧାନ ।

ଦଣ୍ଡସଂହିତା, ବି. ସ୍ତ୍ରୀ. (ଦଣ୍ଡ-ସଂହିତା) ଦଣ୍ଡ-ବିଷୟକ ଶାସ୍ତ୍ର, ଫୌଜଦାରୀ ଆଇନ ।

ଦଣ୍ଡା, ବିଂ. (ଦେଶଜ) ଗୋଚର ପଡିଆ; ଯଷ୍ଟି; ଶକଟର ପଶ୍ଚାଦ୍ ଭାଗ ।

ଦଣ୍ଡାୟମାନ, ବିଂ. (ଦଣ୍ଡ-ଆୟ-ମାନ) ଯେ ଠିଆ ହୋଇଅଛି ।

ଦଣ୍ଡାର, ବି. ପୁଂ. (ଦଣ୍ଡ-ଋ-ଅ) କୁଲାଲଚକ୍ର; ଶକଟବିଶେଷ; ଧନୁକ; ବନ୍ୟହସ୍ତୀ, ମତ୍ତ-ହସ୍ତୀ ।

ଦଣ୍ଡି, ବି.(ଦେଶଜ) ନାସିକାର ଆଭରଣବିଶେଷ ।
ଦଣ୍ଡିତ, ବିଂ. (ଦଣ୍ଡ୍-ତ) ଶାସିତ, ଦଣ୍ଡପ୍ରାପ୍ତ ।
ଦଣ୍ଡିଦାର, ବି. (ପ୍ରା) ଯେ ଚାଉଳ ଇତ୍ୟାଦି ଓଜନ କରେ ।
ଦଣ୍ଡୀ, ବି. ପୁଂ. (ଦଣ୍ଡ-ଇନ୍) ଯମ ; ଦ୍ୱାରପାଳ ; ନୃପବିଶେଷ; ଚତୁର୍ଥାଶ୍ରମୀ; ମହାଦେବ ; ଦମନକ ବୃକ୍ଷ । ବିଂ. ଦଣ୍ଡଧାରୀ; (ଦେଶଜ) ତୁଳାଦଣ୍ଡ ।
ଦଣ୍ଡୁଆସି, ବି. (ଦେଶଜ) ଗୌଙ୍କଥ; ଚିମୁଟା ।
ଦଣ୍ଡ୍ୟ, ବିଂ. (ଦଣ୍ଡ-ଯ) ଦଣ୍ଡାର୍ହ, ଦଣ୍ଡନୀୟ ।
ଦଢ଼, ବିଂ. (ଦୃଢ଼ ଶବ୍ଦଜ) ଅଚ୍ଛିନ୍ନ ।
ଦତ୍ତ, ବିଂ. (ଦା-ତ) ଅର୍ପିତ, ଉତ୍ସୃଷ୍ଟ; ତ୍ୟକ୍ତ ।
ଦତ୍ତକପୁତ୍ର, ବି. ପୁଂ. (ଦତ୍ତକ-ପୁତ୍ର) ପୋଷ୍ୟ-ପୁତ୍ର ।
ଦତ୍ତାତ୍ରେୟ, ବି.ପୁଂ. (ଦତ୍ତ-ଆତ୍ରେୟ) ଅତ୍ରି ମୁନିଙ୍କ ପୁତ୍ର, ଭଗବାନଙ୍କର ଅବତାରବିଶେଷ ।
ଦତ୍ତାପହାରୀ, ବିଂ. ( ଦତ୍ତ-ଅପ-ହୃ-ଇନ୍ ) ଦତ୍ତ-ପଦାର୍ଥ ଯେ ଫେରି ନିଏ ।
ଦତ୍ତାବଧାନ, ବିଂ. (ଦତ୍ତ-ଅବଧାନ) ଅବହିତ, ମନୋଯୋଗୀ ।
ଦଦରା, ବିଂ. ( ଦେଶଜ ) ଫଟା, ଅଳ୍ପଭଗ୍ନ । ଯଥା—

ଦଦରା ନାବକୁ ବିହିଛ ପାଣି, ଅଖାଳ ଦାଢ଼ ଯରିଛ ଟାଣି ।

ଦଦ୍ରୁ, ଦଦ୍ରୂ, ବି. ପୁଂ. (ଦରିଦ୍ରା-ଉ, ଊ) ଚର୍ମ-ରୋଗ, ଦାଦୁ ।
ଦଦ୍ରୁଘ୍ନ, ବି. ପୁଂ. (ଦଦ୍ରୁ-ହନ୍-ଅ) ଚକୁଣ୍ଡାଗଛ । ବିଂ. ଦଦ୍ରୁନାଶକ ।
ଦଧାନ, ବିଂ. (ଧା-ଆନ) ଯେ ଧାରଣ କରେ ।
ଦଧି, ବି. ନ. (ଧା-ଇ) ଦହି, ତକ୍ର ।
ଦଧିଚର, ବି. ପୁଂ. (ଦଧି-ଚର-ଅ) ଦଧିମନ୍ଥନ-ଦଣ୍ଡ, ଖୁଆ ।
ଦଧିମୁଖ, ବି. ପୁଂ. (ଦଧି-ମୁଖ) ବାନରବିଶେଷ ।
ଦଧିବାମନ, ବି. ପୁଂ. (ଦଧି-ବାମନ) କୃଷ୍ଣ ।
ଦଧିକ୍ଷାର, ବି.ପୁଂ. (ଦଧି-କ୍ଷାର) ଲବଣୀ, ଲହୁଣୀ ।
ଦଧୀଚ, ଦଧୀଚି, ବି. ପୁଂ. ( ଦଧି-ଈଚ, ଈଚି ) ଅଥର୍ବ ମୁନିଙ୍କ ଔରସରେ କର୍ଦ୍ଦମ ପ୍ରଜାପତିଙ୍କ କନ୍ୟାର ଗର୍ଭରେ ଉତ୍ପନ୍ନ ମୁନିବିଶେଷ, ବୃତ୍ରାସୁର ବଧ ନିମନ୍ତେ ଏହି ମୁନିଙ୍କ ଅସ୍ଥିରେ ବଜ୍ର ନିର୍ମିତ ହୋଇଥିଲା । ଯଥା—

ଦୟାବୀର ମନ୍ତ୍ର ଦଧୀଚ ପଦ୍ମର ପ୍ରକ୍ଷାଳକେ ପୂତମାଗ
ବନ୍ଦେ ପାଦେ ଯାର ଦୟା ପ୍ରବାହୁମା ସୁପ୍ରସନ୍ନା ସୁଗମାର ।
ପାବଗ ।

ଦଧୃକ୍, ବିଂ. (ଦଧୃଷ୍-୦) ନିର୍ଲଜ୍ଜ, ବେହିୟା ।
ଦନା, ଦୋନା, ବି. (ଦେଶଜ) ଠୋଲା ।
ଦନୁ, ବି. ସ୍ତ୍ରୀ. (ଦନ୍-ଉ) କାଶ୍ୟପସ୍ତ୍ରୀ, ରାକ୍ଷସମାତା, ଦକ୍ଷକନ୍ୟା ।
ଦନୁଜ, ବି. ପୁଂ. ( ଦନୁ-ଜନ୍-ଅ ) ଦାନବ, ରାକ୍ଷସ, ଅସୁର ।
ଦନ୍ତ, ବି. ପୁଂ. (ଦମ୍-ତ) ଦାନ୍ତ ; ପର୍ବତଶୃଙ୍ଗ ; ଗିରିନିତମ୍ବ, ନିକୁଞ୍ଜ; ସାନୁ; ୩୨ ସଂଖ୍ୟା ।
ଦନ୍ତକର୍ଷଣ, ବି. ପୁଂ. ( ଦନ୍ତ-କର୍ଷଣ ) ଲେମ୍ବୁ, ଜମ୍ବୀର ।
ଦନ୍ତକାଷ୍ଠ, ବି. ନ. (ଦନ୍ତ-କାଷ୍ଠ) ଦନ୍ତଧାବନ କାଷ୍ଠ ।
ଦନ୍ତଛଦ, ବି. ପୁଂ. ( ଦନ୍ତ-ଛଦ ) ଓଷ୍ଠ, ଓଠ ।
ଦନ୍ତଧାବନ, ବି. ନ. (ଦନ୍ତ-ଧାବ୍-ଅନ) ଦନ୍ତ-ମାର୍ଜ୍ଜନା, ଦାନ୍ତଘଷିବା ।
ଦନ୍ତବକ୍ର, ବି. ପୁଂ. କୃଷ୍ଣଙ୍କର ବିଦ୍ୱେଷୀ ନୃପ-ବିଶେଷ, ଶିଶୁପାଳର ଭ୍ରାତା ।
ଦନ୍ତବୀଜକ, ବି. ପୁଂ. (ଦନ୍ତ-ବୀଜ) ଡାଳିମ୍ବବୃକ୍ଷ ।
ଦନ୍ତଶଠ, ବି. ପୁଂ. (ଦନ୍ତ-ଶଠ୍-ଅ) କପିତ୍ଥ; ନାରଙ୍ଗ; କରମଙ୍ଗା ।
ଦନ୍ତାୟୁଧ, ବି. ପୁଂ. (ଦନ୍ତ-ଆୟୁଧ) ଶୂକର ।
ଦନ୍ତାଳିକା, ଦନ୍ତାଳୀ, ବି. ସ୍ତ୍ରୀ. ( ଦନ୍ତ-ଆଳୀ= ଶ୍ରେଣୀ, ଦନ୍ତ-ଅଲ୍=ଭୂଷିତ କରିବା-ଅ-ଈ) ଅଶ୍ୱ ପ୍ରଭୃତିର ମୁଖରଜ୍ଜୁ, ଲଗାମ ।
ଦନ୍ତାବଳ, ବି. ପୁଂ. (ଦନ୍ତ-ବଳ, ଅ ସ୍ଥାନରେ ଆ) ହସ୍ତୀ ।

ଦନ୍ତୀ, ବ. ପୁଂ. ( ଦନ୍ତ-ଇନ୍ ) ହସ୍ତୀ; ପର୍ବତ । ବିଂ. ଦନ୍ତଯୁକ୍ତ ।

ଦନ୍ତୁର, ବିଂ. (ଦନ୍ତ-ଉର) ଉନ୍ନତ ବା ବହିର୍ଗତ ଦନ୍ତବିଶିଷ୍ଟ; ଉନ୍ନତାନତ, ଉଚ୍ଚନୀଚ, ବନ୍ଧୁର; କୁଟିଳ ।

ଦନ୍ତ୍ୟ, ବିଂ. (ଦନ୍ତ-ଯ) ଦନ୍ତଦ୍ୱାରା ଉଚ୍ଚାରିତ, ଯଥା; ତ, ଥ, ଦ, ଧ, ନ, ଲ, ସ ପ୍ରଭୃତି ।

ଦନ୍ଦଶୂକ, ବ. ପୁଂ. (ଦନ୍ଦନ୍ଶ୍ (ଯଙ୍ ଲୁଗନ୍ତ)-ଉକ) ସର୍ପ, ରାକ୍ଷସ ।

ଦପ୍ତର, ବ. (ଯାବନିକ) ଖାତା, ହିସାବ ବହି ।

ଦପ୍ତରୀ, ବ. (ଯାବନିକ) ଯେ ବହି ବାନ୍ଧେ ।

ଦଫା, ବ. (ଯାବନିକ) ଧାରା, ନିୟମ, ପରିଚ୍ଛେଦ, ପ୍ରକରଣ; ପୃଷ୍ଠା ।

ଦମ୍ , ବ. (ଯାବନିକ) ନିଃଶ୍ୱାସ; ଜୀବନ; ବଞ୍ଚନା, ପ୍ରତାରଣା ।

ଦମ, ବ. ପୁଂ. (ଦମ୍-ଅ) ଦମନ, ଶାସନ; ଇନ୍ଦ୍ରିୟ-ନିଗ୍ରହ; କ୍ଲେଶସହନ; କୁକର୍ମରୁ ମନୋନିବୃତ୍ତି ।

ଦମକ, ବିଂ. (ଦମ୍-ଅକ) ଦମନକାରୀ, ଶାସନ-କର୍ତ୍ତା; (ଦେଶଜ) ଚମକ ।

ଦମଘୋଷ, ବ. ପୁଂ. ଚେଦିଦେଶର ରାଜା, ଶିଶୁପାଳପିତା ।

ଦମନ, ବ. ନ. (ଦମ୍-ଅନ) ଶାସନ, ବଶୀକରଣ; ନିବାରଣ; ଇନ୍ଦ୍ରିୟନିଗ୍ରହ । ପୁଂ. ବୀର; ମୁନି-ବିଶେଷ; ପୁଷ୍ପବିଶେଷ ।

ଦମନୀୟ, ବିଂ. (ଦମ୍-ଅନୀୟ) ଶାସନୀୟ, ଦମନ-ଯୋଗ୍ୟ ।

ଦମୟନ୍ତୀ, ବ. ସ୍ତ୍ରୀ. ( ଦମ୍-ଇ-ଅତ୍-ଈ ) ନଳ ରାଜାର ମହିଷୀ ।

ଦମିତ, ବିଂ. (ଦମ୍-ତ) ଶାସିତ, ବଶୀକୃତ ।

ଦମ୍ପତି, ବ. ପୁଂ. (ଜାୟା-ପତି) ସ୍ତ୍ରୀ ଓ ପୁରୁଷ ।

ଦମ୍ଭ, ବ. ପୁଂ. ( ଦନ୍ଭ୍-ଅ ) ଗର୍ବ; କପଟତା; ଧୂର୍ତ୍ତତା; ଶଠତା ।

ଦମ୍ଭୀ, ବିଂ. (ଦମ୍ଭ-ଇନ୍) ଗର୍ବକାରୀ; ପ୍ରବଞ୍ଚକ, ଶଠ ।

ଦମ୍ଭୋଳି, ବ. ପୁଂ. ( ଦମ୍ଭ-ଲି ) କୁଳିଶ, ବଜ୍ର ।

ଦମ୍ଭୋଳି ଅଇଲେ ପୁଣି ଗରଜି ଗମ୍ଭୀର । ବ. ବ.

ଦମ୍ୟ, ବିଂ. (ଦମ୍-ଯ) ଦମନର ଯୋଗ୍ୟ; ଶିଶୁ ବୃଷଭ; ଛୋଟ ବାଛୁରି ।

ଦୟା, ବ. ସ୍ତ୍ରୀ. (ଦୟ୍-ଅ) ପରଦୁଃଖରେ ଦୁଃଖା-ନୁଭବ, ପରଦୁଃଖ ହରଣେଚ୍ଛା, କୃପା, ସ୍ନେହ, ଅନୁଗ୍ରହ ।

ଦୟାମୟ, ଦୟାବାନ୍ , ବିଂ. (ଦୟା-ମୟ, ବତ୍ ) ଦୟାଳୁ ।

ଦୟାରତ୍ନ, ବ. ନ. ବୌଦ୍ଧମାନଙ୍କର ଧର୍ମଶାସ୍ତ୍ର ।

ଦୟାଳୁ, ବିଂ.(ଦୟା-ଆଳୁ ଶୀଳାର୍ଥେ ) ଦୟାବାନ୍, କାରୁଣିକ, ସ୍ନେହବାନ୍ ।

ଦୟିତ, ବିଂ. ( ଦୟ୍-ତ ) ପ୍ରିୟ, ସ୍ନେହପାତ୍ର । ବ. ପୁଂ. ବଲ୍ଲଭ । ସ୍ତ୍ରୀ. ପତ୍ନୀ, ଅଙ୍କଲକ୍ଷ୍ମୀ, ପ୍ରଣୟିନୀ, ଭାର୍ଯ୍ୟା ।

ଦର୍ , ବ. (ଯାବନିକ) ଭାଉ, ମୂଲ୍ୟ ।

ଦର, ବ. ପୁଂ. ନ. (ଦୃ-ଅ) ଭୟ; କମ୍ପ । ନ. ଶଙ୍ଖ । ଅଂ. ଈଷତ୍ । ଯଥା—

ଦରହସିତ ବଦନ ଦେଖିଣ ଠାକୁର ।

ଦରକ, ବିଂ. (ଦର-କ) ଭୀରୁ, ଭୟପ୍ରାପ୍ତ, ଶଙ୍କିତ ।

ଦରକାର, (ଯାବନିକ) ଆବଶ୍ୟକ, ପ୍ରୟୋଜନ ।

ଦରଜୀ, ବ. ( ଦେଶଜ ) ବସ୍ତ୍ରସୀବନକାରୀ, ସୌଚିକ ।

ଦରଦ୍ , ବ. ସ୍ତ୍ରୀ. ( ଦୃ-ଅଦ୍ ) ପର୍ବତର ଅତ୍ୟୁଚ୍ଚ ସ୍ଥାନ; ପର୍ବତ; ହୃଦୟ; ତୀର; ପ୍ରପାତ; ଭୟ; (ଦେଶଜ) ବ୍ୟଥା, ଦୁଃଖ, ବେଦନା । ଯଥା—

ଗୋଡ଼ ଖସି ଖେଦ ଦେବାର ଦରଦ
ଯିବାର ଉପାୟ କହ ରେ । ବ. ଚ.

ଦରବାର, (ପାରସୀ) ସଭା, ମକଦମା ।

ଦରମାହା, ବ. (ଯାବନିକ) ବେତନ ।

ଦରଣ୍ଡିବା, କ୍ରି. ଅଣ୍ଡାଳିବା, ଖୋଜିବା । ଯଥା—

ଚକିତ ହୋଇ ଦରଣ୍ଡଇ ଶେଯ,
ଚହିଁ ନ ଦେଖି ହୋଇଲା ଅଧୈର୍ଯ୍ୟ ।

ଦରୀ, ଦରୀ, ବି. ସ୍ତ୍ରୀ. (ଦର-ଈ) ଗିରିକନ୍ଦର ।
ଦରିତ, ବିଂ. (ଦର-ଇତ) ଭୀତ, ଶଙ୍କିତ;ବିଦୀର୍ଣ୍ଣ; ବିରକ୍ତ । ନ. ଦୁଃଖ ।
ଦରିଦ୍ର, ବିଂ. (ଦରିଦ୍ରା-ଅ) ନିର୍ଦ୍ଧନ, ନିଃସ୍ୱ; ଦୀନ; ବିହୀନ; ରହିତ; କ୍ଷୀଣ ।
ଦରୋଟି, ବିଂ. (ଦେଶଜ) ଅର୍ଦ୍ଧପକ୍ୱ ।
ଦରୋଆନ, (ଯାବନିକ) ଦ୍ୱାରରକ୍ଷକ, ଦ୍ୱାରପାଳ ।
ଦର୍ଦ୍ଦର, ବି. ପୁଂ. (ଦୃ-ଅ) ପର୍ବତ । ବିଂ. ବିଦୀର୍ଣ୍ଣ, ଭଗ୍ନ ।
ଦର୍ଦ୍ଦୁର, ବି. ପୁଂ. ( ଦୃ-ଉର ) ଭେକ, ବେଙ୍ଗ; ମେଘ; ବାଦ୍ୟଯନ୍ତ୍ରବିଶେଷ । ନ. ଗ୍ରାମସମୂହ ।
ଦର୍ଦ୍ଦୁରା, ବି. ସ୍ତ୍ରୀ. (ଦୃ-ଉର-ଆ) ଚଣ୍ଡିକା, ଦୁର୍ଗା।
ଦଦ୍ରୁ,ଦଦ୍ରୂ,ବି. ପୁଂ. ଯାଦୁରୋଗ, କଣ୍ଡୂରୋଗ ।
ଦର୍ପ, ବି. ପୁଂ. (ଦୃପ୍-ଅ) ଗର୍ବ, ଅହଙ୍କାର; ତାପ ।
ଦର୍ପକ, ବି. ପୁଂ. (ଦୃପ୍-ଇ-ଅକ) ମଦନ, କାମଦେବ । ବିଂ. ଉତ୍ତେଜକ ।
ଦର୍ପଣ, ବି. ପୁଂ. ( ଦୃପ୍-ଅନ ) ଆଦର୍ଶ, ମୁକୁର । ଯଥା—

ଅନାଇ ଜଳ-ଦର୍ପଣେ ମୁଖ ତାମରସ ।

ନ. ଚକ୍ଷୁଃ ।
ଦର୍ପହା, ବି. ପୁଂ. ( ଦର୍ପ-ହନ୍-୦ ) ବିଷ୍ଣୁ । ବିଂ. ଦର୍ପହାରୀ ।
ଦର୍ପୀ, ବିଂ. (ଦର୍ପ-ଇନ୍) ଦାମ୍ଭିକ, ଅହଂକାରୀ ।
ଦର୍ବ୍ବଟ, ବି. ପୁଂ. ଦ୍ୱାରପାଳ ।
ଦର୍ଭ, ବି. ପୁଂ. (ଦୃଭ୍-ଅ) ଘାସ; ଦୁବ; କୁଶ ।
ଦର୍ଶ, ବି. ପୁଂ. ( ଦୃଶ୍-ଅ ) ଅମାବାସ୍ୟା ; ଦୃଷ୍ଟି ; ଦର୍ଶନ । ବିଂ. ଦ୍ରଷ୍ଟା ।
ଦର୍ଶକ, ବିଂ. (ଦୃଶ୍-ଅକ) ଦୃଷ୍ଟିକର୍ତ୍ତା,ଯେ ଦେଖେ।
ଦର୍ଶନ, ବି. ନ. ( ଦୃଶ୍-ଅନ ) ଅବଲୋକନ, ଦେଖିବାର; ଜ୍ଞାନ; ସ୍ୱପ୍ନ; ନୟନ; ଧର୍ମ; ଅକ୍ଷତି; ଚକ୍ଷୁ; ଦର୍ପଣ; ସାଙ୍ଖ୍ୟ, ପାତଞ୍ଜଳ, ନ୍ୟାୟ, ବୈଶେଷିକ, ମୀମାଂସା ଓ ବେଦାନ୍ତ ଏହି ଛ ଶାସ୍ତ୍ର ।
ଦର୍ଶନୀୟ, ବିଂ. ( ଦୃଶ୍-ଅନୀୟ ) ଦର୍ଶନଯୋଗ୍ୟ; ସୁନ୍ଦର, ରମଣୀୟ, ମନୋଜ୍ଞ; ଯାହା ଦେଖିବା ଆବଶ୍ୟକ ।
ଦର୍ଶୟିତା, ବିଂ. (ଦୃଶ୍-ଇ-ତୃ ) ପ୍ରଦର୍ଶକ । ବି. ପୁଂ. ଦ୍ୱାରପାଳ ।
ଦର୍ଶିତ, ବିଂ. (ଦୃଶ୍-ଇ-ତ) ପ୍ରକାଶିତ ।
ଦର୍ଶୀ, ବିଂ. ( ଦୃଶ୍-ଇନ୍ ) ନିରୀକ୍ଷକ, ଦ୍ରଷ୍ଟା, ଦର୍ଶନକାରୀ; ଏହି ଶବ୍ଦ ସ୍ୱତନ୍ତ୍ର ପ୍ରୟୋଗ ହୁଅଇ ନାହିଁ । ଯଥା—ପରିଣାମଦର୍ଶୀ, ଦୂରଦର୍ଶୀ ଇତ୍ୟାଦି ।
ଦଳ, ବି. ପୁଂ. ନ. (ଦଳ୍-ଅ) ପତ୍ର; ପୁଷ୍ପପାଖୁଡ଼ା; ସମୂହ; ଦଳନ ।
ଦଳ, ବି. (ଦେଶଜ) ଜଳଜାତ ଘାସ, ବୋଳଝାଙ୍ଗି ।
ଦଳନ, ବି. ନ. (ଦଳ୍-ଅନ) ମର୍ଦ୍ଦନ, ନିଷ୍ପୀଡ଼ନ; ବିଦାରଣ; ବିକାଶ; ଭେଦନ; ଚୂର୍ଣ୍ଣନ; ଗୁଣ୍ଠନ ସ୍ତ୍ରୀ. ଲୋଷ୍ଟ୍ର, ଢେଲା ।
ଦଳପତି, ବି. ପୁଂ. (ଦଳ-ପତି) ସେନାପତି ।
ଦଲମ, ଗୃହାଦି ନିର୍ମାଣର ଉପକରଣ ।
ଦଳବେହେରା, ବି. ପୁଂ. ( ଦେଶଜ ) ଜାୟଗିରଦାର, ପାଇକମାନଙ୍କ ମଧ୍ୟରେ ଶ୍ରେଷ୍ଠ ।
ଦଲାଲ, ବି. (ଯାବନିକ) କ୍ରୟବିକ୍ରୟ ମଧ୍ୟସ୍ଥ ।
ଦଲାଲି, ବି.(ଯାବନିକ) ଦସ୍ତୁରୀ; ଦଲାଲର କର୍ମ ।
ଦଳିତ, ବିଂ. ( ଦଳ୍-ତ ) ମର୍ଦ୍ଦିତ; ଖଣ୍ଡିତ; ପ୍ରସ୍ଫୁଟିତ; ବିକସିତ; ଉଦ୍ଘାଟିତ ।
ଦବ, ବି. ପୁଂ. (ଦୁ=ଉତ୍ତପ୍ତ କରିବା-ଅ)ବନାଗ୍ନି, ଦାବାନଳ; ଅରଣ୍ୟ, ବନ; ସନ୍ତାପ ।
ଦବଥୁ, ବି. ପୁଂ. (ଦୁ=ଉତପ୍ତ କରିବା—ଅଥୁ) ଉଦ୍ବେଗ; ଦୁଃଖ, ପରିତାପ, ସନ୍ତାପ ।
ଦବିଷ୍ଠ, ଦବୀୟସ୍, ବିଂ. ( ଦୂର-ଇଷ୍ଠ, ଈୟସ୍ ) ଅତିଦୂରବର୍ତ୍ତୀ ।
ଦଶ, ବିଂ. (ଦନ୍ଶ୍-ଅନ୍) ଦଶ ସଂଖ୍ୟା, ୧୦ ।
ଦଶକ, ବି. ନ. (ଦଶନ୍-କ) ୧୦ ସଂଖ୍ୟା ।

ଦଶକଣ୍ଠ, ଦଶକନ୍ଧର, ଦଶଗ୍ରୀବ, ଦଶମୁଖ, ଦଶାନନ, ଦଶାସ୍ୟ, ବ. ପୁଂ. ( ଦଶନ୍, ଦଶ-କଣ୍ଠାଦ ) ରାବଣ ।

ଦଶକର୍ମ, ବ. ନ. ( ଦଶ-କର୍ମନ୍ ) ଗର୍ଭାଧାନାଦ ଦଶବଧ ସଂସ୍କାର କର୍ମ ।

ଦଶକୁମାର, ବ. ନ. ଦଣ୍ଡିପ୍ରଣୀତ ଦଶଜଣ କୁମାରଙ୍କର ଜୀବନଦ୍ୟୋତକ ଆଖ୍ୟାୟିକା ଉପନ୍ୟାସ ।

ଦଶତ, ବଂ. ଶତ, ଏକ ଶତ ।

ଦଶଦକ୍‌ପାଳ, ବ. ପୁଂ. କୁବେର, ଇନ୍ଦ୍ର, ଯମ, ବରୁଣ, ଈଶାନ, ଅଗ୍ନି, ନୈଋତ, ବାୟୁ, ବ୍ରହ୍ମ, ଅନନ୍ତ ଯଥାକ୍ରମେ ଉତ୍ତର, ପୂର୍ବ, ଦକ୍ଷିଣ, ପଶ୍ଚିମ, ଉତ୍ତରପୂର୍ବ, ଦକ୍ଷିଣପୂର୍ବ, ଦକ୍ଷିଣପଶ୍ଚିମ, ଉତ୍ତରପଶ୍ଚିମ, ଊର୍ଦ୍ଧ୍ୱ ଓ ଅଧଃ ଏହ ଦଗମାନଙ୍କୁ ପାଳନ କରୁଥିବାରୁ ସେମାନଙ୍କୁ ଦଶଦକ୍‌ପାଳ ବୋଲଯାଏ ।

ଦଶଧା, ଅଂ. (ଦଶ-ଧା) ଦଶପ୍ରକାର, ଦଶଥର ।

ଦଶନ, ବ. ପୁଂ. (ଦନ୍‌ଶ୍‌-ଅନ) ଦନ୍ତ ।

ଦଶପୁର, ବ. ନ. ( ଦଶ-ପୁର ) ମାଳବଦେଶର ଅନ୍ତର୍ଗତ ନଗରବଶେଷ ।

ଦଶଭୂଜା, ବ. ସ୍ତ୍ରୀ. (ଦଶ-ଭୂଜ) ଦୁର୍ଗାଦେବୀ ।

ଦଶମ, ବଂ. (ଦଶନ୍-ମ) ୧୦ ସଂଖ୍ୟାର ପୂରଣ ।

ଦଶମହାବଦ୍ୟା, ବ. ସ୍ତ୍ରୀ. କାଳୀ, ତାରା ଭୁବନେଶ୍ୱରୀ ଆଦ ଦେବୀଗଣ ଦଶମହାବଦ୍ୟାର ଅନ୍ତର୍ଗତା ।

ଦଶମିକ, ବଂ. ( ଦଶମ-ଇକ ) ଯାହାଦ୍ୱାରା କୌଣସି ଅଖଣ୍ଡରାଶିର ଦଶାଂଶର ଏକାଂଶ ବ୍ୟକ୍ତ କରାଯାଏ ।

ଦଶମୀ, ବ. ସ୍ତ୍ରୀ. ( ଦଶମ-ଈ ) ତଥିବଶେଷ । ବଂ. ନବତବର୍ଷାତରକ୍ତ ବୟୃଷ୍ଟ ।

ଦଶମୂଳ, ବ. ନ. (ଦଶନ୍-ମୂଳ) ପାଚନବଶେଷ, ଦଶମୂଳ ସଂଖ୍ୟାପ୍ରଣାଳୀ ।

ଦଶରଥ, ବ. ପୁଂ. ( ଦଶନ୍-ରଥ ) ରାମଚନ୍ଦ୍ରଙ୍କର ପିତା ।

ଦଶବଧ, ବଂ. (ଦଶନ୍-ବଧ) ଦଶପ୍ରକାର ।

ଦଶହରା, ବ. ସ୍ତ୍ରୀ. (ଦଶନ୍-ହୃ-ଅ) ଜ୍ୟୈଷ୍ଠମାସର ଶୁକ୍ଳଦଶମୀ; ଗଙ୍ଗାର ଜନ୍ମଦନ; (ଦେଶଜ) ଆଶ୍ୱିନ ଶୁକ୍ଳଦଶମୀ ।

ଦଶା, ଦଶୀ, ବ. ସ୍ତ୍ରୀ. (ଦଶନ୍-ଅ) ବସ୍ତ୍ରର ପ୍ରାନ୍ତ; ଅବସ୍ଥା; ଦୀପବର୍ତ୍ତିକା; ଭାବ; ଅଭିଳାଷ; ଚନ୍ତା ।

ଦଶାକର୍ଷ, ଦଶାକର୍ଷୀ, ବ. ପୁଂ. ( ଦଶା-ଆକର୍ଷ; ଆକର୍ଷୀ) ପ୍ରଦୀପ; ବସ୍ତ୍ରାଞ୍ଚଳ; ଗ୍ରହଣ ।

ଦଶାନନ, ବ. ପୁଂ. (ଦଶ-ଆନନ) ରାବଣ ।

ଦଶାର୍ଣ୍ଣ, ବ. ପୁଂ. (ଦଶ-ଋଣ) ବନ୍ଧ୍ୟପର୍ବତର ପୂର୍ବ ଦକ୍ଷିଣସ୍ଥ ଦେଶବଶେଷ ।

ଦଶାର୍ହ, ବଂ. (ଦଶନ୍-ଅର୍ହ) ବୁଦ୍ଧ; ଦେଶବଶେଷ ।

ଦଶାବତାର, ବ. ପୁଂ. (ଦଶନ୍-ଅବତାର) ବଷ୍ଣୁ; ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ପର୍ଶୁରାମ, ରାମଚନ୍ଦ୍ର, ବଳରାମ, ବୁଦ୍ଧ, କଳ୍କୀ, ବଷ୍ଣୁଙ୍କର ଏହ ଦଶାବତାର ।

ଦଶାଶ୍ୱ, ବ. ପୁଂ. (ଦଶନ୍-ଅଶ୍ୱ) ଚନ୍ଦ୍ର ।

ଦଶାଶ୍ୱମେଧିକ, ବ. ପୁଂ. ( ଦଶାଶ୍ୱମେଧ-ଇକ ) କାଶୀସ୍ଥ ତୀର୍ଥବଶେଷ ।

ଦଶାହ, ବ. ପୁଂ. ( ଦଶନ୍-ଅହନ୍ ) ଦଶଦନ, ମୃତ୍ୟୁର ଦଶମ ଦବସ; ଦଶଦିନବ୍ୟାପକ କାଳ ।

ଦଶି, ବ. (ଦେଶଜ) ଲୁଗାର ଧଡ ।

ଦଶେନ୍ଧନ, ବ. ପୁଂ. (ଦଶା-ଇନ୍ଧନ)ପ୍ରଦୀପ,ଦୀପ ।

ଦଶେର, ବ. ପୁଂ. (ଦଶନ୍-ଏର) ହଂସ୍ରଜନ୍ତୁ ।

ଦଶେରକ, ବ. ପୁଂ. ( ଦଶେର-କ ) ମରୁଦେଶ, ତୃଣଜଳାଦଶୂନ୍ୟ ପ୍ରଦେଶ, ମରୁଭୂମି ।

ଦଷ୍ଟ, ବଂ. (ଦନ୍‌ଶ୍‌-ତ) ଯାହାକୁ ଦଂଶନ କରଅଛ ।

ଦସିଆ, ବ. (ଦେଶଜ) ମୋଟା ବସ୍ତ୍ରବଶେଷ ।

ଦସ୍ତଖତ, (ଯାବନକ) ସ୍ୱାକ୍ଷର ।

ଦସ୍ତା, ବ. (ଦେଶଜ) ଧାତୁବଶେଷ ।

ଦସ୍ତାବଜ, (ପାରସୀ) ଅଦାଲତରେ ପ୍ରମାଣାର୍ଥ କାଗଜ ପତ୍ରାଦ ।

ଦସ୍ତି, ବ. (ଦେଶଜ) ଭୂମି ମାପିବାର ପରିମାଣ-ବିଶେଷ ।

ଦସ୍ତୂର ବ. (ଯାବନକ) ଧାସ୍ତ, ପ୍ରଣାଳୀ ।

ଦସ୍ତୁରି, ବଂ. (ଯାବନକ) ଦ୍ରବ୍ୟ ବିକ୍ରୟକାଳରେ କ୍ରେତା ଓ ବିକ୍ରେତାଠାରୁ ଯାହା ପାଏ ।

ଦସ୍ୟୁ, ବ. ପୁଂ. (ଦସ୍=କ୍ଷୟ କରିବା-ଯୁ) ଚୋର, ଡକାଇତ; ଶତ୍ରୁ; ଉତ୍ପୀଡ଼ନକାରୀ ।

ଦହ, ବ. ପୁଂ. (ଦହ୍-ଅ) ଦଗ୍ଧ ହେବା । (ଦୀର୍ଘିକା ଶବ୍ଦଜ) ଜଳପାଠ, ଝିଲ । ଯଥା—

> ପଡ଼ିଥି ଦହରୁ ପକ୍ଷୀ ଦଳେଦଳେ
> ଉଡ଼ ଅମ୍ବୁଚର କରେ କୋଳାହଳେ । ନ. କେ.

ଦହନ, ବ. ପୁଂ. (ଦହ୍-ଅନ) ଅଗ୍ନି; ଭଲ୍ଲାତକ; ଦାହ । ବଂ. ଜଳାରକ; ଦଗ୍ଧକାରୀ ।

ଦହନୀୟ, ବଂ. (ଦହ୍-ଅନୀୟ) ଜ୍ୱଳନୀୟ, ଦାହ୍ୟ ।

ଦହର, ବ. ପୁଂ. (ଦହ୍-ଅର) ଛୋଟ ଇନ୍ଦୁର; ଶିଶୁ । ବଂ. ସ୍ୱଳ୍ପ, ସୂକ୍ଷ୍ମ ।

ଦହଲ, ବଂ. କାଦୁଅ ।

ଦହି, ବ. (ଦଧି ଶବ୍ଦଜ) ଦୁଗ୍ଧର ବିକାର ।

ଦହିମାଣ୍ଡୁଅ, ବ. (ଦେଶଜ) ଧୋବା ।

ଦହ୍ର, ବ. ପୁଂ. (ଦହ୍-ର) ଦାବାଗ୍ନି, ଜଠରାଗ୍ନି; ନରକ; ବରୁଣ; ହୃଦୟ; ଆକାଶ । ନ. ବନ ।

ଦହ୍ୟମାନ, ବଂ. (ଦହ୍-ଅନ) ଯାହା ଦଗ୍ଧ ହେଉଅଛି ।

ଦା, ବ. (ଦାବ ଶବ୍ଦଜ) ଧାନ୍ୟାଦି କାଟିବାର ଅସ୍ତ୍ରବିଶେଷ ।

ଦାଉ, ବଂ. (ଦେଶଜ) ଅହଲ୍ୟା, ଅପୌଢ଼ । ଯଥା—

> ସମ୍ଭାଳି ନ ପାରି ଅତି,
> ଅମ୍ଭୋରୁହାକ୍ଷୀର ନେତ୍ରକଟାକ୍ଷର ଦମ୍ଭୋଳିରୁ ବଳ ଦାଉ ।

ଦାଉଦାଉ, ବଂ. (ଦେଶଜ) ଜକଜକ, ଉଜ୍ଜ୍ୱଳ । ଯଥା—

> ତା ଶିରମୁକୁଟ ଦିଶେ ଦାଉଦାଉ ।

ଦାଉଣୀ, ବ. ସ୍ତ୍ରୀ. (ଦାମନ ଶବ୍ଦଜ) ଯହିଁରେ ଅନେକ ଗୋରୁ ବନ୍ଧାଯାନ୍ତି ।

ଦାକ୍ଷାୟଣୀ, } ବ. ସ୍ତ୍ରୀ. (ଦକ୍ଷ-ଆୟନ-ଈ)
ଦାକ୍ଷାୟିଣୀ, } ଦୁର୍ଗା, ଦେବମାତା, ସତୀ; ଦନ୍ତିବୃକ୍ଷ; ରେବତୀନକ୍ଷତ୍ର ।

ଦାକ୍ଷିଣାତ୍ୟ, ବ. ପୁଂ. (ଦକ୍ଷିଣ-ତ୍ୟ) ଦକ୍ଷିଣଦେଶ; ବିନ୍ଧ୍ୟଗିରିର ଦକ୍ଷିଣସ୍ଥ ଦେଶ; ନାରିକେଳ । ବଂ. ଦକ୍ଷିଣ ଦେଶଜାତ, ଦକ୍ଷିଣଦେଶସ୍ଥ ।

ଦାକ୍ଷିଣ୍ୟ, ବ. ନ. ( ଦକ୍ଷିଣ ବା ଦକ୍ଷିଣା-ଯ ) ଅନୁକୂଳତା, ପରଚ୍ଛନ୍ଦାନୁବୃତ୍ତି; ସାମର୍ଥ୍ୟ; ସରଳତା, ସୌଜନ୍ୟ ।

ଦାକ୍ଷେୟ, ବ. ପୁଂ. ( ଦାକ୍ଷୀ-ଏୟ ) ବ୍ୟାକରଣ-ରଚୟିତା ପାଣିନି ମୁନି ।

ଦାକ୍ଷ୍ୟ, ବ. ନ. (ଦକ୍ଷ-ଯ) ଦକ୍ଷତା, ନୈପୁଣ୍ୟ ।

ଦାଖଲ, (ଯାବନକ) ପ୍ରବେଶ କରିବା, ଅର୍ପଣ କରିବା, ଉପସ୍ଥିତ ହେବା ।

ଦାଖଲଖାରଜ, (ଆରବୀ) କଲେକ୍ଟରୀ ରେଜେ-ଷ୍ଟରରୁ ପୁରାତନ ଅଧିକାରୀର ନାମ କର୍ତ୍ତନ କରି ସେଥିରେ ନୂତନ ଅଧିକାରୀର ନାମ ଲେଖାଇବା ।

ଦାଗ, ବ. (ଯାବନକ) ଚିହ୍ନ, ଅଙ୍କ, କଳଙ୍କ ।

ଦାଗୀ, ବଂ. (ଯାବନକ) ଚିହ୍ନିତ; ଦୋଷ କରି ଯେ ଦଣ୍ଡ ପାଇଅଛି ।

ଦାଡ଼ିମ୍ବ, ବ. ପୁଂ. ଡାଳିମ୍ବ ।

ଦାଡ଼ିମ୍ବପ୍ରିୟ, ବ. ପୁଂ. ଶୁକପକ୍ଷୀ ।

ଦାଢ଼, ବ. (ଦେଶଜ) ଅସ୍ତ୍ରାଦିର ଧାର । ଯଥା—

> ସଦା ସ୍ନେହ କାର ବଚନରେ ଦାଢେ ।

ପରିମାଣ ବିଶେଷ ।

ଦାଢ଼ି, ବ. ସ୍ତ୍ରୀ. (ଦୋ=ଛେଦନ କରିବା-ଡ଼-ଇ) ଗଣ୍ଡ ଓ ଚିବୁକନିର୍ଗତ ରକ୍ଷିତ କେଶ, ଶ୍ମଶ୍ରୁ ।

ଦାଣ୍ଡିବା, କ୍ରି. (ଦେଶଜ) ଅଟକ କରିବା ।

ଦାଣ୍ଡ, ବ. (ଦେଶଜ) ପଥ, ବାଟ । ଯଥା—

> ଯେବେ ପବନ ଥିବ ଏ ପିଣ୍ଡରେ
> ଅଙ୍ଗ ଦେବେ ନ ଯିବୁଁ ଏ ଦାଣ୍ଡରେ ।

ଦାତ, ବଂ. ( ଦୋ=ଛେଦନ କରିବା-ତ ) ଛିନ୍ନ ।
(ଦୈ=ଶୁଦ୍ଧ କରିବା-ତ) ଶୁଦ୍ଧ, ପବିତ୍ର ।

ଦାତବ୍ୟ, ବଂ. (ଦା-ତବ୍ୟ) ଦାନଯୋଗ୍ୟ, ଦେୟ ।

ଦାତା, ବଂ. (ଦା-ତୃ) ଦାନଶୀଳ, ବଦାନ୍ୟ, ଦାନକର୍ତ୍ତା ।

ଦାତୃତ୍ୱ, ବି. ନ. ( ଦାତୃ-ତ୍ୱ ) ବଦାନ୍ୟତା, ଦାନଶୀଳତା ।

ଦାତ୍ୟୂହ, ଦାତ୍ୟୌହ, ବି. ପୁଂ. (ଦାତି-ଊହ) ଡାହୁକ, ପକ୍ଷିବିଶେଷ; ପାଣିକୁଅ; ଚାତକ; ମେଘ ।

ଦାତ୍ର, ବି. ନ. (ଦୋ-ତ୍ର) ଦା, ତୃଣାଦି ଛେଦନ କରିବାର ଅସ୍ତ୍ରବିଶେଷ । ଯଥା—

କୃଷିବଳ ଦାତ୍ରେ ଅବା ପକ୍ୱ ଶସ୍ୟାବଳି । ମ. ଯା.

ଦାଦନ, ବି. (ଯାବନିକ) ଠିକା କର୍ମାଦିର ଅଗ୍ରିମ ବେତନ ।

ଦାଦି, ବି. (ଦାୟାଦ ଶବ୍ଦଜ) ପିତାର ସାନଭ୍ରାତା, ଖୁଡ଼ୁତା ।

ଦାନ, ବି. ନ. (ଦା=ଦାନ କରିବା; ଦୋ= ଛେଦନ କରିବା, ଦୈ=ଶୁଦ୍ଧ କରିବା, ଦେ= ପାଳନ କରିବା-ଅନ) ବିତରଣ; ତ୍ୟାଗ; ହସ୍ତିର ମଦଜଳ; ଛେଦନ ।

ଦାନପତ୍ର, ବି. ନ. "ଏ ପଦାର୍ଥ ଏହାକୁ ଦେଲି" ଏହା ଯେଉଁ ପତ୍ରରେ ଲେଖାଯାଏ ।

ଦାନବ, ବି. ପୁଂ. (ଦନୁ-ଅ) ଦୈତ୍ୟ, ଅସୁର ।

ଦାନବାରି, ବି. ପୁଂ. (ଦାନବ-ଅରି) ଦୈତ୍ୟଗୁରୁ; ଦେବତା; ବିଷ୍ଣୁ; (ଦାନ-ବାରି) ହସ୍ତିର ମଦଜଳ ।

ଦାନଶୀର, ବି. ପୁଂ. (ଦାନ-ଶୂର) ବଳି; କର୍ଣ୍ଣ ।

ଦାନଶୀଳ, ବଂ. ( ଦାନ-ଶୀଳ ) ଦାତା, ବଦାନ୍ୟ ।

ଦାନା, ( ଦାନବ ଶବ୍ଦଜ ) ଦୈତ୍ୟ; ଭୂତ; ଦେବଯୋନି; (ଯାବନିକ) ଶସ୍ୟାଦିର ବୀଜ ।

ଦାଣୀ, ବଂ. (ଦେଶଜ) ଯେ ଦାନ କରେ ।

ଦାନୀୟ, ବଂ. (ଦା-ଅନୀୟ) ଦେୟ, ଦାନର ଯୋଗ୍ୟ ।

ଦାନ୍ତ, ବଂ. (ଦମ୍-ତ) ବଶୀକୃତ; ତପଃକ୍ଲେଶ ସହିଷ୍ଣୁ; ଜିତେନ୍ଦ୍ରିୟ; ସୌମ୍ୟ; ଶାସିତ । ପ୍ରାକୃତରେ ଦନ୍ତକୁ ଦାନ୍ତ କହନ୍ତି ।

ଦାନ୍ତକାଠି, ବି. (ଦେଶଜ) ଦାନ୍ତ ପରିଷ୍କାର କରିବା କାଠି ।

ଦାନ୍ତଖୁଞ୍ଚା, ବି. (ଦେଶଜ) ଦାନ୍ତ ଖୁଞ୍ଚିବାର କାଠି ।

ଦାନ୍ତୁଡ଼ା, ବଂ. (ଦନ୍ତୁର ଶବ୍ଦଜ) ଯାହାର ବଡ଼ ବଡ଼ ଦାନ୍ତ ଅଛି ।

ଦାନ୍ତି, ବି. ସ୍ତ୍ରୀ. (ଦମ୍-ତି) ଦମନ, ଇନ୍ଦ୍ରିୟ-ନିଗ୍ରହ ।

ଦାମ, ବି. ନ. ( ଦୋ-ମନ୍ ) ରଜ୍ଜୁ, ସୂତ୍ର, ମାଲ୍ୟ, ଗୁଚ୍ଛ । ଯଥା—

ମାଲୋତ୍ପଲଦଳଦାମଭୂତ ବେନି ଅକ୍ଷି । ମ. ଯା.

ଦାମୁଡ଼ି, ବି. (ଦେଶଜ) ଅଳ୍ପବୟସ୍କ ବଳଦ ।

ଦାମୋଦର, ବି. ପୁଂ. (ଦାମନ୍=ରଜ୍ଜୁ-ଉଦର) କୃଷ୍ଣ, ବିଷ୍ଣୁ, ନାରାୟଣ ।

ଦାକ୍ଷତ୍ୟ, ବଂ. (ଦକ୍ଷତ-ଯ) ଦକ୍ଷତସମ୍ବନ୍ଧୀୟ ।

ଦାକ୍ଷତ୍ୟପ୍ରଣୟ, ପତି ପତ୍ନୀ ଉଭୟଙ୍କର ପ୍ରଣୟ ।

ଦାମ୍ଭିକ, ବଂ. (ଦମ୍ଭ-ଇକ) ଅହଙ୍କାରୀ; ଧୂର୍ତ୍ତ । ବି. ପୁଂ. ବକ; କପଟାଗ୍ରଣୀ ।

ଦାୟ, ବି. ପୁଂ. (ଦା-ଯ) ପୈତୃକଧନ; ବିଭାଜ୍ୟ ବସ୍ତୁ, ପୂର୍ବ ସ୍ୱାମିର ସ୍ୱାମିତ୍ୱ ନାଶ ଉତ୍ତାରୁ ତତ୍ସମ୍ବନ୍ଧାଧୀନ ଦ୍ରବ୍ୟରେ ଯେଉଁ ସ୍ୱତ୍ୱ ହୁଏ ତହିଁରେ ଦାୟ ଶବ୍ଦ ପ୍ରୟୋଗ କରାଯାଏ ।

ଦାୟକ, ବଂ. (ଦା-ଅକ) ଇଷ୍ଟପୂରକ; ଦାତା ।

ଦାୟବନ୍ଧୁ, ବି.ପୁଂ. (ଦାୟ=ପୈତୃକଧନ-ବନ୍ଧୁ) ଭ୍ରାତା ।

ଦାୟଭାଗ, ବି. ପୁଂ. (ଦାୟ-ଭାଗ) ପିତାଦିର ଧନବିଭାଗବିଷୟକ ଶାସ୍ତ୍ର, ପୈତୃକ ଧନ-ବିଭାଗ ।

ଦାୟାଦ, ବ. ପୁଂ. ( ଦାୟ-ଆ-ଦା-ଅ ) ପୁତ୍ର, କନ୍ୟା; ଜ୍ଞାତି; ସପିଣ୍ଡ; ଉତ୍ତରାଧିକାରୀ । ଯଥା—

ଭୂମ୍ନେଙ୍କ ଅର୍ଥେ କାମ ଦାୟାଦ ଜଗତେ । ମ. ଶା.

ଦାୟୀ, ବଂ. (ଦା-ଇନ୍) ଦାତା; କ୍ଷତିପୂରକ ।

ଦାର, ବ. ପୁଂ. (ଦୃ-ଅ) ପତ୍ନୀ, ସ୍ତ୍ରୀ ।

ଦାରକ, ବ. ପୁଂ. (ଦୃ-ଅକ) ପୁତ୍ର, ଶିଶୁ ।

ଦାରକର୍ମ, ବ. ନ. (ଦାର-କର୍ମନ୍) ବିବାହ ।

ଦାରଗ୍ରହଣ, ବ. ନ. ପତ୍ନୀଗ୍ରହଣ, ବିବାହ ।

ଦାରଣ, ବ. ନ. (ଦୃ-ଅନ) ବିଦାରଣ, ଭେଦ କରିବା । ବଂ. ବିଦାରକ ।

ଦାରଦ, ବ. ପୁଂ. (ଦରଦ-ଅ) ବୃକ୍ଷବିଶେଷ; ସମୁଦ୍ର; ହେଙ୍ଗୁଳ ।

ଦାରପରିଗ୍ରହ, ବ. ପୁଂ. ( ଦାର-ପରିଗ୍ରହ ) ସ୍ତ୍ରୀ ଗ୍ରହଣ, ବିବାହ ।

ଦାରବ, ବଂ. (ଦାରୁ-ଅ) କାଷ୍ଠନିର୍ମିତ, ଦାରୁମୟ ।

ଦାରା, ବ. ସ୍ତ୍ରୀ. (ଦୃ-ଆ) ଭାର୍ଯ୍ୟା, ପତ୍ନୀ; (ଯାବନିକ) ବାଦ୍ୟଯନ୍ତ୍ରବିଶେଷ ।

ଦାରି, ବ. ସ୍ତ୍ରୀ. ବିଦାରଣ, ବିଦୀର୍ଣ୍ଣ କରଣ ।

ଦାରିତ, ବଂ. (ଦୃ-ଇ-ତ) ଭେଦିତ, ବିଦାରିତ ।

ଦାରିଦ୍ର, ଦାରିଦ୍ର୍ୟ, ବ. ନ. (ଦରିଦ୍ର-ଅ, ଯ ) ଦୈନ୍ୟ, ଅକିଞ୍ଚନତ୍ବ, ନିର୍ଦ୍ଧନତା ।

ଦାରୀ, ବ. ସ୍ତ୍ରୀ. ( ଦାର ଶବ୍ଦଜ ) କସ୍‌ବୀ, ବେଶ୍ୟା ।

ଦାରୁ, ବ. ପୁଂ. (ଦୃ-ଉ) କାଷ୍ଠ । ନ. ଦେବଦାରୁ ବୃକ୍ଷ ।

ଦାରୁକ, ବ. ପୁଂ. (ଦୃ-ଉକ) ଦେବଦାରୁ ବୃକ୍ଷ; କୃଷ୍ଣଙ୍କର ସାରଥି; କାଷ୍ଠ ।

ଦାରୁଗନ୍ଧା, ବ. ସ୍ତ୍ରୀ. ଗନ୍ଧଦ୍ରବ୍ୟବିଶେଷ ।

ଦାରୁଣ, ବଂ. (ଦୃ-ଇ-ଉନ) ଭୟଙ୍କର; କ୍ରୂର; କଠୋର; ଦୁଃସହ; ଉତ୍କଟ; କର୍କଶ; ଉଗ୍ର, ମର୍ମଭେଦୀ, ନିଷ୍ଠୁର । ଯଥା—

ତାହାଂ ଦାରୁଣ ଅଙ୍କୁର ଅଇଲା,

ବଂଶ ଅଛି ବୋଲି ଯେ ପେ କହିଲା । ଗୋ. ସ୍ବ.

ଦାରୁମୟ, ବଂ. ( ଦାରୁ-ମୟ ) କାଷ୍ଠନିର୍ମିତ, କାଷ୍ଠମୟ ।

ଦାରୁସାର, ବ. ନ. (ଦାରୁ-ସାର) ଚନ୍ଦନ ।

ଦାରୁହରିଦ୍ରା, ବ. ଦାରୁହଳଦୀ ।

ଦାର୍ଢ୍ୟ, ବ. ନ. (ଦୃଢ଼-ଯ) କାଠିନ୍ୟ; ଦୃଢ଼ତା; ସ୍ଥୈର୍ଯ୍ୟ ।

ଦାର୍ଦ୍ଦୁର, ବ. ନ. ( ଦର୍ଦ୍ଦୁର=ପର୍ବତ ଇତ୍ୟାଦି-ଅ) ଦକ୍ଷିଣାବର୍ତ୍ତ ଶଙ୍ଖ, ଲାକ୍ଷା; ଜତୁ; ଜଳ ।

ଦାର୍ବଟ, ବ. ନ. ( ଦାରୁ-ଅଟ୍-ଅ ) ମନ୍ତ୍ରଭବନ, ମନ୍ତ୍ରଣାକରିବା ଗୃହ, ଚନ୍ଦ୍ରାଭବନ ।

ଦାର୍ବୀ, ବ. ସ୍ତ୍ରୀ. (ଦୃ=ରୋଗବିଦାରଣକରିବା-ବ) ଦାରୁହରିଦ୍ରା; ଦେବଦାରୁବୃକ୍ଷ; ଗୋଜିହ୍ବା; ହରିଦ୍ରା ।

ଦାର୍ଶନିକ, ବଂ. (ଦର୍ଶନ-ଇକ) ଦର୍ଶନଶାସ୍ତ୍ରବେତ୍ତା ।

ଦାବ, ବ. ପୁଂ. ( ଦୁ-ଅ ) ବନାଗ୍ନି, ଦାବାନଳ; ବନ; ଅଗ୍ନି ।

ଦାବାଗ୍ନି, ଦାବାନଳ, ବ. ପୁ. ( ଦାବ-ଅଗ୍ନି, ଅନଳ ) ବନୋଦ୍ଭବ ଅଗ୍ନି, କାଷ୍ଠଘର୍ଷଣଦ୍ବାରା ଯେ ଅଗ୍ନି ଜାତ ହୋଇ ବନକୁ ଦହନ କରେ ।

ଦାବି, ବ. (ଯାବନିକ) ପାଉଣା ।

ଦାଶରଥ, ଦାଶରଥି, ବ. ପୁଂ. (ଦଶରଥ-ଅ,ଇ) ରାମଚନ୍ଦ୍ର । ବଂ. ଦଶରଥସମ୍ବନ୍ଧୀୟ ।

ଦାସ, ବ. ପୁଂ. (ଦାସ୍-ଅ) ଧୀବର ; ଭୃତ୍ୟ ; ଶୂଦ୍ରଜାତି ।

ଦାସକେରଣ୍ଡା, ବ. (ଦେଶଜ) ଫୁଲ୍ଲବିଶେଷ ।

ଦାସତ୍ବ, ବ. ନ. ( ଦାସ-ତ୍ବ ) ଦାସର କର୍ମ ବା ଅବସ୍ଥା, ଅଧୀନତା । ଯଥା—

ଦାସତ୍ବଶୃଙ୍ଖଳ ପିନ୍ଧିବ ଗଳାର

ଶିରେ କି ସହିବ ରିପୁ ଅଙ୍କୁଶ । ଜ. ବ.

ଦାସୀ, ବ. ସ୍ତ୍ରୀ. (ଦାସ୍-ଅ-ଈ) ଦାସର ସ୍ତ୍ରୀ, ଶୁଦ୍ର ସ୍ତ୍ରୀ, ଚାକରାଣୀ । ଯଥା—

ବଣ୍ଟରଳ ହେଲେ ମୋ ପର ପଣେ ଗୋ,

ଶୋଭା ନ ବହିବ ଦାସୀପଣେ । ବ. ଚ

ଦାସେୟ, ବ. ପୁଂ. (ଦାସୀ ବା ଦାସ-ଏୟ) ଦାସ ଗର୍ଭଜାତ ପୁତ୍ର; ଧୀବର ।

ଦାସେୟୀ, ବ. ସ୍ତ୍ରୀ. ( ଦାସୀ ବା ଦାସ-ଏୟ-ଈ ) ସତ୍ୟବତୀ ।

ଦାସେର, ବ. ପୁଂ. ( ଦାସ-ଏର ) ଉଷ୍ଟ୍ର; ଶୂଦ୍ର; କୈବର୍ତ୍ତ ।

ଦାସେରକ, ବ. ପୁଂ. (ଦାସ-ଏର-କ) ଦାସୀପୁତ୍ର; ଉଷ୍ଟ୍ର, ଓଟ । ଯଥା—

ଦାସେରକ ଅଶ୍ୱ କର ତତ୍ପର,
ସେବାଉଛ ଗ୍ରୀବା ଟେକ ନିରନ୍ତର । ନ. କେ.

ଦାସ୍ୟ, ବ. ନ. ( ଦାସ-ଯ ) ଦାସତ୍ୱ, ସେବା, ଜୀବିକା ।

ଦାହ, ବ. ପୁଂ. ( ଦହ୍-ଅ ) ଦହନ, ଜ୍ୱଳନ, ସନ୍ତାପ ।

ଦାହକ, ବଂ. (ଦହ୍-ଅକ) ଦାହକାରୀ ।

ଦାହଜ୍ୱର, ବ. ପୁଂ. (ଦାହ-ଜ୍ୱର) ଯେଉଁ ଜ୍ୱରରେ ଅତ୍ୟନ୍ତ ଗାତ୍ରଦାହ ଉପସ୍ଥିତ ହୁଏ, ଦାହ-ପ୍ରଧାନ ଜ୍ୱର ।

ଦାହନ, ବ. ନ. ( ଦାହ-ଅନ ) ଭସ୍ମୀକରଣ, ପୋଡିବା ।

ଦାହସର, ବ. ପୁଂ. (ଦାହ-ସୃ-ଅ) ଶବଦାହସ୍ଥାନ, ଶ୍ମଶାନ ।

ଦାହ୍ୟ, ବଂ. (ଦହ୍-ଯ) ଦହନଯୋଗ୍ୟ,ଜ୍ୱଳନୀୟ ।

ଦିଅଁ, ବ. (ଦେବ ଶବ୍ଦଜ) ଦେବତା ।

ଦିଅ, କ୍ରି. (ଦା ଧାତୁଜ) ଦାନ କର ।

ଦିଅର, ବ. ପୁଂ. (ଦେବର ଶବ୍ଦଜ) ପତିର କନିଷ୍ଠ ଭ୍ରାତା ।

ଦିକ୍, ବ. ସ୍ତ୍ରୀ. ( ଦିଶ୍-ଂ ) ପୂର୍ବାଦିଦିଗ; ଅଂଶ, ଖଣ୍ଡ; ସୀମା; ପକ୍ଷ; ଦେଶ; ଅଞ୍ଚଳ; ଆଶା ।

ଦିକ୍ପତି, ଦିକ୍ପାଳ, ବ. ପୁଂ. (ଦିଗ୍-ପତି,ପାଳ) ପୂର୍ବାଦି ଦଶ ଦିଗର ରକ୍ଷକ । ଯଥା—ଇନ୍ଦ୍ର, ଅଗ୍ନି, ଯମ, ନୈଋତ, ବରୁଣ, ବାୟୁ, କୁବେର, ମହାଦେବ; ବ୍ରହ୍ମା, ଅନନ୍ତ, ସୂର୍ଯ୍ୟ, ଶୁକ୍ର, ମଙ୍ଗଳ, ରାହୁ, ଶନି, ସୋମ, ବୁଧ, ବୃହସ୍ପତି ପୂର୍ବାଦିକ୍ରମେ ଏହି ଅଷ୍ଟ ଦିଗପାଳ ।

ଦିକ୍ଶୂଳ, ବ. ନ. ( ଦିକ୍-ଶୂଳ ) ଦିଗ୍ବିଶେଷକୁ ଗମନ କରିବା ନିଷିଦ୍ଧ ବାର ।

ଦିଗନ୍ତ, ବ. ପୁଂ. ନ. (ଦିକ୍-ଅନ୍ତ) ଦିଗସମୁଦାୟର ଶେଷଭାଗ ।

ଦିଗମ୍ବର, ବ. ପୁଂ. (ଦିକ୍-ଅମ୍ବର) ଶିବ; ବୌଦ୍ଧ-ବିଶେଷ । ନ. ଅନ୍ଧକାର । ବଂ. ବିବସ୍ତ୍ର,ଉଲଙ୍ଗ । ଯଥା—

ଏକାନ୍ତ-ଈଶ୍ୱର ପ୍ରଭୁ ଦିଗମ୍ବର ପାଦପଦ୍ମ ଧ୍ୟାୟି ଚିତ୍ତେ,
ସାହସ ବାନ୍ଧିଲା ହୃଦୟେ ଅବଳା ପ୍ରାଣ ଦେବ କାନ୍ତ ପ୍ରୀତେ ।
କେ. ଦା.

ଦିଗ୍ଗଜ, ବ. ପୁଂ. ( ଦିକ୍-ଗଜ ) ଐରାବତ, ପୁଣ୍ଡରୀକ, ବାମନ, କୁମୁଦ, ଅଞ୍ଜନ, ପୁଷ୍ପଦନ୍ତ, ସାର୍ବଭୌମ, ସୁପ୍ରତୀକ ଏହି ଆଠ ଦିଗର ହସ୍ତୀ ।

ଦିଗ୍ବାରଣ, ବ. (ପ୍ରା) ଦିଗଜରୂପଣ ।

ଦିଗ୍ଦର୍ଶନ, ବ. ନ. (ଦିକ୍-ଦୃଶ୍-ଅନ) ବିଜ୍ଞତା, ବହୁଦର୍ଶିତା; ଦିକ୍ନିର୍ଣ୍ଣୟ ।

ଦିଗ୍ଦର୍ଶନ-ଯନ୍ତ୍ର, ବ. ନ. ଦିଗ୍ନିର୍ଣ୍ଣାୟକ ଯନ୍ତ୍ର । (Compass)

ଦିଗ୍ଧ, ବଂ. (ଦିହ୍-ତ) ଲିପ୍ତ, ମିଶ୍ରିତ; ବିଷାକ୍ତ । ବ. ବିଷାକ୍ତ ବାଣ; ଅଗ୍ନି । ନ. ସ୍ନେହ; ଲେପନ; ପ୍ରବନ୍ଧ ।

ଦିଗ୍ବାସାଃ, ବ. ପୁଂ. ( ଦିକ୍-ବାସସ୍ ) ଶିବ । ବଂ. ଉଲଙ୍ଗ ।

ଦିଗ୍ବିଜୟ, ବ. ପୁଂ. ( ଦିକ୍-ବି-ଜି-ଅ ) ବିଦ୍ୟା ବା ଯୁଦ୍ଧଦ୍ୱାରା ନାନାପ୍ରକାର ଆପଣାର କ୍ଷମତା ପ୍ରଦର୍ଶନ, ଆଧିପତ୍ୟ ସଂସ୍ଥାପନ ।

ଦିଗ୍ବିଦିକ୍, ବ. ସ୍ତ୍ରୀ. (ଦିକ୍-ବିଦିକ୍) ସକଳ ଦିକ୍ ।

ଦିଙ୍ନାଗ, ବ. ପୁଂ. (ଦିକ୍-ନାଗ) ଦିଗ୍ଗଜ ।

ଦିଙ୍ମଣ୍ଡଳ, ବ. ନ. ( ଦିକ୍-ମଣ୍ଡଳ ) ଦିକ୍ଚକ୍ର, ଦିଗଚକ୍ରବାଳ ।

ଦିଙ୍ମାତ୍ର, ବ. ନ. (ଦିକ୍-ମାତ୍ର) ଏକଦେଶ । ବଂ. ଅଳ୍ପମାତ୍ର ।

ଦିତି, ବ. ସ୍ତ୍ରୀ. (ଦୋ-ତି) କାଶ୍ୟପମୁନିର ପତ୍ନୀ; ଦୈତ୍ୟଜନନୀ । ପୁଂ. ସ୍ୱନାମପ୍ରସିଦ୍ଧ ନୃପବିଶେଷ; ଛେଦନ; ଖଣ୍ଡନ ।

ଦିତିଜ, ଦିତିସୁତ, ବ. ପୁଂ. ( ଦିତି-ଜ, ସୁତ ) ଦୈତ୍ୟ, ଅସୁର, ଦାନବ ।

ଦିତ୍ସା, ବ. ସ୍ତ୍ରୀ. (ଦା-ସ ଅଥବା ସନ୍) ଦାନେଚ୍ଛା ।

ଦିଧି, ବ. ପୁଂ. (ଧା-ଇ) ଧାରଣ; ଧୈର୍ଯ୍ୟ ।

ଦିଧିଷୁ, ବ.ପୁଂ.(ଧା-[ପାପ] ଧାରଣ କରିବା-ଯୋ= ଗ୍ରହଣ କରିବା-ଉ ) ଦୁଇବାର ବିବାହିତ ପୁରୁଷ । ସ୍ତ୍ରୀଲିଙ୍ଗରେ ଦିଧିଷୂ = ଦୁଇବାର ବିବାହିତା ସ୍ତ୍ରୀ । ଜ୍ୟେଷ୍ଠା ଭଗିନୀ,ଅବିବାହିତା ଥାଉଁ ଥାଉଁ କନିଷ୍ଠା ବିବାହ କଲେ, ତାହାକୁ ମଧ୍ୟ ଦିଧିଷୂ ବୋଲାଯାଏ ।

ଦିଧିଷୁ, ବ. ପୁଂ. ( ଧା-ଯୋ-ଉ ) ଦୁଇଥର ବିବାହିତା ସ୍ତ୍ରୀର ସ୍ୱାମୀ; ଦ୍ୱିତୀୟ ସ୍ୱାମୀ ।

ଦିନ, ବ. ପୁଂ. ନ. (ଦୋ-ଇନ୍) ଦିବସ,ଦିବାଭାଗ ।

ଦିନକର, ଦିନମଣି, ବ. ପୁଂ. (ଦିନ-କୃ-ଅ,ଦିନ-ମଣି) ସୂର୍ଯ୍ୟ, ଦିବାକର । ଯଥା—

ଅସ୍ତ ହେଲେ ରବି ଗହଗହ ଦିନମଣି । ବ. ବ.

ଦିନକରାତ୍ମଜ, ବ. ପୁଂ. (ଦିନକର-ଆତ୍ମଜ) ଶନି; ଯମ । ସ୍ତ୍ରୀ. ଯମୁନା ।

ଦିନଦୁଃଖିତ, ବ. ପୁଂ. ସ୍ତ୍ରୀ. ( ଦିନ-ଦୁଃଖିତ ) ଚକ୍ରବାକ ପକ୍ଷୀ ।

ଦିନପାତ, ବ.ପୁଂ. (ଦିନ-ପାତ) ଦିନକଟାଇବାର, ଦିନଯାପନ ।

ଦିନବନ୍ଧୁ, ବ. ପୁଂ. (ଦିନ-ବନ୍ଧୁ) ସୂର୍ଯ୍ୟ ।

ଦିନମୁଖ, ବ. ନ. (ଦିନ-ମୁଖ) ପ୍ରାତଃକାଳ ।

ଦିନାନ୍ତ, ଦିନାତ୍ୟୟ, ଦିନାବସାନ, } ବ. ପୁଂ. (ଦିନ-ଅନ୍ତ, ଅତ୍ୟୟ, ଅବସାନ ) ଦିନର ଶେଷ, ସନ୍ଧ୍ୟାସମୟ, ସାୟଂକାଳ ।

ଦିନେଶ, ବ. ପୁଂ. (ଦିନ-ଈଶ) ସୂର୍ଯ୍ୟ;ଅର୍କବୃକ୍ଷ ।

ଦିଲୀପ, ବ. ପୁଂ. (ଦିଲୀ-ପ) ସୂର୍ଯ୍ୟବଂଶୀୟ ନୃପବିଶେଷ, ରଘୁରାଜାଙ୍କ ପିତା ।

ଦିବ୍, ସ୍ତ୍ରୀ., ଦିବ, ନ. } ବ. ( ଦିବ୍-୦, ଅ ) ସ୍ୱର୍ଗ; ଆକାଶ; ଦିବ୍ ଶବ୍ଦରେ ସ୍ୱର୍ଗାଧିଷ୍ଠାତ୍ରୀ ଦେବତା; ଅଦୃଷ୍ଟ ।

ଦିବସ, ବ. ପୁଂ. ନ. (ଦିବ୍-ଅସ) ଦିନ ।

ଦିବସକର, ବ. ପୁଂ. ( ଦିବସ-କୃ-ଅ ) ସୂର୍ଯ୍ୟ, ଦିନମଣି, ପ୍ରଭାକର ।

ଦିବସମୁଖ, ବ. ନ. (ଦିବସ-ମୁଖ) ପ୍ରାତଃକାଳ ।

ଦିବାକର, ବ. ପୁଂ. (ଦିବା-କୃ-ଅ) ସୂର୍ଯ୍ୟ ।

ଦିବାନ୍ଧ, ବ. ପୁଂ. (ଦିବା-ଅନ୍ଧ) ପେଚକ । ବି. ଦିନକଣା ।

ଦିବାମଧ୍ୟ, ବ. ନ. ( ଦିବା-ମଧ୍ୟ ) ମଧ୍ୟାହ୍ନ, ଦୁଇପ୍ରହରବେଳା ।

ଦିବାରାତ୍ର, ବ. ନ. (ଦିବା-ରାତ୍ରି) ଅହୋରାତ୍ର, ଦିନରାତି ।

ଦିବାବସୁ, ବ. ପୁଂ. ( ଦିବା-ବସୁ ) ସୂର୍ଯ୍ୟ; ଅର୍କବୃକ୍ଷ ।

ଦିବି, ବ. ନ. (ଦିବ୍-ଇ) ସ୍ୱର୍ଗ; ଗଗନ । ପୁଂ, ଚାଷପକ୍ଷୀ ।

ଦିବିଷଦ୍, ଦିବୋକସ୍, ଦିବୌକସ୍, } ବ. ପୁଂ. { (ଦିବି-ସଦ୍-୦) (ଦିବ୍, ଦିବ-ଓକସ୍) } ଦେବତା, ଅମର ।

ଦିବିସ୍ଥ, ବି. (ଦିବି=ସ୍ୱର୍ଗରେ-ସ୍ଥା-ଅ) ସ୍ୱର୍ଗସ୍ଥ, ସ୍ୱର୍ଗୀୟ ।

ଦିବ୍ୟ, ବି. (ଦିବ୍=ସ୍ୱର୍ଗ-ଯ) ସ୍ୱର୍ଗୀୟ, ଆକାଶୀୟ; ( ଦିବ୍=ଦୀପ୍ତି ହେବା-ଯ ) ସୁନ୍ଦର, ମନୋହର; ଶ୍ରେଷ୍ଠ, ଉତ୍କୃଷ୍ଟ । ବ. ନ. ଶପଥ ।

ଦିବ୍ୟଗନ୍ଧ, ବ. ପୁଂ. (ଦିବ୍ୟ-ଗନ୍ଧ) ଗନ୍ଧକ । ନ. ଲବଙ୍ଗ ।

ଦିବ୍ୟରଥ, ବ. ପୁଂ. ( ଦିବ୍ୟ-ରଥ ) ବିମାନ, ବ୍ୟୋମଯାନ ।

ଦିବ୍ୟରସ, ବ.ପୁଂ. (ଦିବ୍ୟ-ରସ) ପାରଦ, ପାରା ।

ଦୃଶଇ, କ୍ରି. (ଦୃଶଧାତୁଜ) ଦେଖାଯାଏ ।

ଦଣା, ବ. ସ୍ତ୍ରୀ. ପୂର୍ବାଦ ଦକ୍; ବସ୍ତ୍ରଖଣ୍ଡବିଶେଷ; ଗୀତ; ବୃତ୍ତି ।

ଦଷ୍ଟ, ବ. ପୁଂ. (ଦଶ୍-ତ) କାଳ । ନ. ଭାଗ୍ୟ । ବିଂ. ଆଦଷ୍ଟ; କଥିତ; ଦତ୍ତ; ପ୍ରଦର୍ଶିତ ।

ଦଷ୍ଟାନ୍ତ, ବ. ପୁଂ. (ଦଷ୍ଟ-ଅନ୍ତ) ମରଣ, ମୃତ୍ୟୁ ।

ଦହୁଡ, ବ. (ଦେଶଜ) ମଶାଲ । ଯଥା—

> ବହୁଡ ଦହୁଡ଼ ଅନ୍ଧାର ଘଉଡ
> ଶୁଭେ ମଣିମା ମଣିମା ସ୍ୱନ ସେ । ବୈ. ବ.

ଦୀକ୍ଷକ, ବିଂ. (ଦୀକ୍ଷା-ଅକ) ଶିକ୍ଷକ, ଉପଦେଷ୍ଟା ।

ଦୀକ୍ଷା, ବ. ସ୍ତ୍ରୀ. (ଦୀକ୍ଷ-ଅ-ଆ) ଉପଦେଶ; ମନ୍ତ୍ରଗ୍ରହଣ; ଅର୍ଚ୍ଚନା; ଯଜ୍ଞାଦି କର୍ମରେ ସଂସ୍କାର; ଅନୁଷ୍ଠାନ; ନିୟମ ବା ସଂକଳ୍ପ କରି ପ୍ରବୃତ୍ତ ହେବା ।

ଦୀକ୍ଷାଗୁରୁ, ବ. ପୁଂ. ଇଷ୍ଟଦେବ, ଯେ ତନ୍ତ୍ର ମତାନୁସାରେ ମନ୍ତ୍ରର ଉପଦେଶ ଦିଅନ୍ତି ।

ଦୀକ୍ଷିତ, ବିଂ. (ଦୀକ୍ଷା-ତ) ବ୍ରତାଦି ବା ଯଜ୍ଞାଦି କର୍ମରେ ସଂକଳ୍ପପୂର୍ବକ ପ୍ରବୃତ୍ତ; ଉପଦେଶିତ ।

ଦୀଘୀ, ବ.(ଦୀର୍ଘିକାଶବ୍ଦଜ) ଦୀର୍ଘ ଜଳାଶୟ. ବଡ଼ପୋଖରୀ ।

ଦୀଧିତି, ବ. ସ୍ତ୍ରୀ. (ଦୀଧି-ତି) କିରଣ, ଆଲୋକ ।

ଦୀନ, ବିଂ. (ଦୀ=କ୍ଷୟ ପାଇବା-ତ) ଦରିଦ୍ର, ଦୁଃଖିତ; କାତର; ଶୋଚ୍ୟ; ହୀନ; କ୍ଷୁଦ୍ର; ସନ୍ତପ୍ତ; ଭୀତ ।

ଦୀନନାଥ, ବ. ପୁଂ. (ଦୀନ-ନାଥ) ନାରାୟଣ ।

ଦୀନାର, ବ. ପୁଂ. (ଦୀନ-ଋ-ଅ) ସ୍ୱର୍ଣ୍ଣମୁଦ୍ରା, ବିଦେଶରତ୍ନ ସୁବର୍ଣ୍ଣ ମୋହର ।

ଦୀପ, ବ. ପୁଂ. (ଦୀପ୍-ଅ) ପ୍ରଦୀପ, ବର୍ତ୍ତିସ୍ଥ ଜ୍ୱଳନ୍ତ ଅଗ୍ନିଶିଖା ।

ଦୀପକ, ବିଂ. (ଦୀପ୍-ଅକ) ଉତ୍ତେଜକ, ଦୀପ୍ତିକାରକ । ବ. ନ. କୁଙ୍କୁମ; କାବ୍ୟାଳଙ୍କାର ।

ଦୀପଦଣ୍ଡି, ବ. ପୁଷ୍କରଣୀ ଆଦିର ମଧ୍ୟସ୍ଥିତ ଦେଉଳବିଶେଷ । ଯଥା—

> ଦୀପଦଣ୍ଡି ଲବ ମଙ୍ଗଳ ପତ୍ର ଦିଏ ରହଂସ । ସ. ବ.

ଦୀପନ, ବ. ନ. (ଦୀପ୍-ଅନ) ଉଦ୍ଦୀପନ, ଉତ୍ତେଜନ; ପଲାଣ୍ଡୁ; ଲସୁନ ।

ଦୀପବୃକ୍ଷ, ବ. ପୁଂ. (ଦୀପ-ବୃକ୍ଷ) ଦୀପାଧାର, ପିଲ୍‌ସଜ ପ୍ରଭୃତି ।

ଦୀପଶଳାକା, ବ. ପୁଂ. (ଦୀପ-ଶଳାକା) ଦୀପ୍ତିଶଳାଇ ।

ଦୀପଶିଖା, ବ. ସ୍ତ୍ରୀ. (ଦୀପ-ଶିଖା) କଜ୍ଜଳ; କାଳିମା; ଦୀପର ଶିଖା ।

ଦୀପାଳୀ, ବ. ସ୍ତ୍ରୀ. (ଦୀପ-ଅଳୀ) ଦୀପମାଳା; ଦେୱାଳୀ, ଯକ୍ଷରାତ୍ରି ।

ଦୀପିକା, ବ. ସ୍ତ୍ରୀ, (ଦୀପକ-ଆ) ଗ୍ରନ୍ଥବିଶେଷ; ରାଗିଣୀବିଶେଷ; ଜ୍ୟୋତ୍ସ୍ନା ।

ଦୀପ୍ତ, ବିଂ. (ଦୀପ୍-ତ) ପ୍ରଜ୍ୱଳିତ, ପ୍ରକାଶିତ, ଉଦ୍ଦୀପିତ, ଆଲୋକମୟ ।

ଦୀପ୍ତଜିହ୍ୱା, ବ. ସ୍ତ୍ରୀ. ଉଲ୍କାମୁଖୀ, ଶୃଗାଳୀବିଶେଷ ।

ଦୀପ୍ତଲୋଚନ, ବ. ପୁଂ. (ଦୀପ୍ତ-ଲୋଚନ) ବିରାଡ, ଅନ୍ଧକାରରେ ଯାହାର ଚକ୍ଷୁ ଦୀପ୍ତିବିଶିଷ୍ଟ ହୁଏ ।

ଦୀପ୍ତଲୋହ, ବ. ନ. (ଦୀପ୍ତ-ଲୋହ) କଂସା ।

ଦୀପ୍ତାକ୍ଷ, ବ. ପୁଂ. (ଦୀପ୍ତ-ଅକ୍ଷି) ବିରାଡ଼ି । ବିଂ. ଉଜ୍ଜ୍ୱଳ ଚକ୍ଷୁବିଶିଷ୍ଟ ।

ଦୀପ୍ତାଗ୍ନି, ବ. ପୁଂ. (ଦୀପ୍ତ-ଅଗ୍ନି) ଅଗସ୍ତ୍ୟ ମୁନି; ପ୍ରଜ୍ୱଳିତ ଅଗ୍ନି । ବିଂ. ତୀକ୍ଷ୍ଣଜଠରାନଳବିଶିଷ୍ଟ ।

ଦୀପ୍ତାଙ୍ଗ, ବ. ପୁଂ. (ଦୀପ୍ତ-ଅଙ୍ଗ) ମୟୂର । ନ. ପ୍ରଭାବିଶିଷ୍ଟ ଅଙ୍ଗ ।

ଦୀପ୍ତି, ବ. ସ୍ତ୍ରୀ. (ଦୀପ୍-ତି) ତେଜଃ, ପ୍ରଭା, ଶୋଭା, କାନ୍ତି ।

ଦୀପ୍ତିମାନ୍, ବିଂ. (ଦୀପ୍ତି-ମତ୍) ଉଜ୍ଜ୍ୱଳ, ପ୍ରଭାଶାଳୀ; ଶୋଭାବିଶିଷ୍ଟ ।

ଦୀପ୍ୟ, ବିଂ. (ଦୀପ୍-ଯ) ପ୍ରଜ୍ୱଳନଯୋଗ୍ୟ । ବ. ପୁଂ. ମୟୂରଶିଖା ।

ଦୀପ୍ୟମାନ, ବିଂ. (ଦୀପ୍-ଅନ) ଦୀପ୍ତିଶୀଳ; ଶୋଭମାନ ।

ଦୀପ୍ର, ବିଂ. (ଦୀପ୍-ର, ଶୀଳାଦ୍ୟର୍ଥେ) ଦୀପ୍ତିଶାଳୀ । ଯଥା—

> ଗର୍ଦ୍ଦଭଙ୍କେ ବଣାଇ ଶୂଳ ଥୋଇ ସ୍କନ୍ଧଦେଶେ
> ଧାଉଁ ଧାଉଁ ଦୀପ୍ର ଖେଞ୍ଚେ ପଣାଧର-ପଣା । ମ. ଯା.

ଦୀୟମାନ, ବିଂ. (ଦା-ଅନ) ଯାହା ଦିଆ ଯାଉଅଛି ।

ଦାପ୍ପାଶିଲାଇ, ବ. (ଦୀପଶଳାକା ଶବ୍ଦର ଅପଭ୍ରଂଶ) ଦୀପଶଳାକା ।
ଦୀର୍ଘ, ବଂ. (ଦ୍ରାଘ୍-ଅ) ଲମ୍ବା; ଅଧିକ । ବ. ପୁଂ. ରାମଶର; ଉଷ୍ଟ୍ର; ସିଂହ, କନ୍ୟା, ତୁଳା, ବୃଶ୍ଚିକ ଏହି ଚାରୋଟି ଦୀର୍ଘରାଶି ।
ଦୀର୍ଘକଣ୍ଠ, ବ. ପୁଂ. (ଦୀର୍ଘ-କଣ୍ଠ) ବକପକ୍ଷୀ । ବଂ. ଲମ୍ବକଣ୍ଠ ।
ଦୀର୍ଘକେଶ, ବ. ନ. (ଦୀର୍ଘ-କେଶ) ଭଲ୍ଲୁକ ।
ଦୀର୍ଘଗତି, ବ. ପୁଂ. (ଦୀର୍ଘ-ଗମ୍-ତି ) ଉଷ୍ଟ୍ର; ସତ୍ୱର ଗମନ । ,
ଦୀର୍ଘଗ୍ରୀବ, ବ. ପୁଂ. ( ଦୀର୍ଘ-ଗ୍ରୀବା ) ଉଷ୍ଟ୍ର; ବକ । ବଂ. ଲମ୍ବଗ୍ରୀବାଯୁକ୍ତ ।
ଦୀର୍ଘଚ୍ଛଦ, ବ. ପୁଂ. (ଦୀର୍ଘ-ଛଦ=ପତ୍ର) ଇକ୍ଷୁଦଣ୍ଡ । ବଂ. ଦୀର୍ଘପତ୍ରବିଶିଷ୍ଟ ।
ଦୀର୍ଘଜଙ୍ଘ, ବ. ପୁଂ. (ଦୀର୍ଘ-ଜଙ୍ଘା) ବକ; ଉଷ୍ଟ୍ର । ବଂ. ଯାହାର ଜଙ୍ଘ ଦୀର୍ଘ ।
ଦୀର୍ଘଜିହ୍ୱ, ବ. ପୁଂ. (ଦୀର୍ଘ-ଜିହ୍ୱା) ସର୍ପ ।
ଦୀର୍ଘଜୀବୀ, ବଂ. ( ଦୀର୍ଘ-ଜୀବନ୍ ) ଯେ ଅଧିକ କାଳ ବଞ୍ଚେ ।
ଦୀର୍ଘତପାଃ, ବ. ପୁଂ. ( ଦୀର୍ଘ-ତପସ୍ ) ଗୌତମ ଋଷି; ନୃପବିଶେଷ ।
ଦୀର୍ଘତରୁ, ବ. ପୁଂ. ତାଳବୃକ୍ଷ ।
ଦୀର୍ଘଦଣ୍ଡ, ବ. ପୁଂ. (ଦୀର୍ଘ-ଦଣ୍ଡ) ଗବଗଛ, ଏରଣ୍ଡ ବୃକ୍ଷ ।
ଦୀର୍ଘଦର୍ଶୀ, ବଂ. ( ଦୀର୍ଘ-ଦର୍ଶିନ୍ ) ଦୂରଦର୍ଶୀ, ପରିଣାମଦର୍ଶୀ । ବ. ପଣ୍ଡିତ; ଗୃଧ୍ର; ଭଲ୍ଲୁକ, ଭାଲୁ ।
ଦୀର୍ଘଦୃଷ୍ଟି, ବ. ସ୍ତ୍ରୀ. (ଦୀର୍ଘ-ଦୃଷ୍ଟି) ଦୂରବୀକ୍ଷଣଯନ୍ତ୍ର । ବଂ, ଦୂରଦର୍ଶୀ ।
ଦୀର୍ଘନାଦ, ବ. ପୁଂ. (ଦୀର୍ଘ-ନାଦ ) ଶଙ୍ଖ । ବଂ. ଦୀର୍ଘଶବ୍ଦକାରୀ ।
ଦୀର୍ଘନିଦ୍ରା, ବ. ସ୍ତ୍ରୀ. ( ଦୀର୍ଘ-ନିଦ୍ରା ) ମୃତ୍ୟୁ, ମହାନିଦ୍ରା; ବହୁକ୍ଷଣସ୍ଥାୟିନୀ ନିଦ୍ରା ।
ଦୀର୍ଘପାଦପ, ବ. ପୁଂ. ତାଳବୃକ୍ଷ, ଗୁବାକ ବୃକ୍ଷ ।
ଦୀର୍ଘପୃଷ୍ଠ, ବ. ପୁଂ. (ଦୀର୍ଘ-ପୃଷ୍ଠ) ସର୍ପ ।
ଦୀର୍ଘପାଦ, ବ. ପୁଂ. (ଦୀର୍ଘ-ପାଦ) କଙ୍କପକ୍ଷୀ ।
ଦୀର୍ଘମାତା, ବ. ସ୍ତ୍ରୀ. ବନ୍ଧନୀ ।
ଦୀର୍ଘମାରୁତ, ବ. ପୁଂ. ସ୍ତ୍ରୀ. (ଦୀର୍ଘ-ମାରୁତ ) ହସ୍ତୀ; ହସ୍ତିନୀ ।
ଦୀର୍ଘରଦ, ବ. ପୁଂ. (ଦୀର୍ଘ-ରଦ) ଶୂକର ।
ଦୀର୍ଘରସନ, ବ. ପୁଂ. (ଦୀର୍ଘ-ରସନା) ସର୍ପ ।
ଦୀର୍ଘରାତ୍ର, ବ. ପୁଂ. ( ଦୀର୍ଘ-ରାତ୍ରି ) ବଡରାତ୍ରି, ଦୀର୍ଘରଜନୀ; ବହୁକାଳ ।
ଦୀର୍ଘରୋମା, ବ. ପୁଂ. ( ଦୀର୍ଘ-ରୋମନ୍ ) ଭଲ୍ଲୁକ । ବଂ. ଦୀର୍ଘ ଲୋମଯୁକ୍ତ ।
ଦୀର୍ଘବକ୍ତ୍ର, ବ. ପୁଂ. ସ୍ତ୍ରୀ. (ଦୀର୍ଘ-ବକ୍ତ୍ର=ମୁଖ) ହସ୍ତୀ ।
ଦୀର୍ଘବାଲା, ବ. ସ୍ତ୍ରୀ. ( ଦୀର୍ଘ-ବାଲ ) ଚମରୀମୃଗ ।
ଦୀର୍ଘଶାଖ, ବ. ପୁଂ. ( ଦୀର୍ଘ-ଶାଖା ) ଶାଲବୃକ୍ଷ, ଶଣବୃକ୍ଷ ।
ଦୀର୍ଘସକ୍ଥି, ବ. ନ. ( ଦୀର୍ଘ-ସକ୍ଥି=ଉରୁ ) ଶକଟ ।
ଦୀର୍ଘସତ୍ର, ବ. ନ. ( ଦୀର୍ଘ-ସତ୍ର ) ଦୀର୍ଘକାଳସାଧ୍ୟ ଯଜ୍ଞବିଶେଷ ।
ଦୀର୍ଘସୁରତ, ବ. ପୁଂ. (ଦୀର୍ଘ-ସୁରତ=ରତିକୀଡ଼ା) କୁକ୍କୁର ।
ଦୀର୍ଘସୂତ୍ରତା, ଦୀର୍ଘସୂତ୍ରିତା, ବ. ସ୍ତ୍ରୀ. ( ଦୀର୍ଘ-ସୂତ୍ରିନ୍, ତା) ଅନେକ ବିଳମ୍ବରେ କର୍ମ କରିବାର, ଶୀଘ୍ର କାର୍ଯ୍ୟ କରିବାକୁ ଅଯତ୍ନ ବା ଅନିଚ୍ଛା କରିବା ।
ଦୀର୍ଘସୂତ୍ରୀ, ବଂ. ଯେ ଅତ୍ୟନ୍ତ ବିଳମ୍ବରେ କାର୍ଯ୍ୟ କରେ ।
ଦୀର୍ଘାୟୁଃ, ବଂ. (ଦୀର୍ଘ-ଆୟୁସ୍ ) ଚିରଞ୍ଜୀବୀ । ବ. ପୁଂ. ମାର୍କଣ୍ଡେୟ ମୁନି; କାକ; ଶାଲ୍ମଲୀବୃକ୍ଷ ।
ଦୀର୍ଘିକା, ବ. ସ୍ତ୍ରୀ. (ଦୀର୍ଘ-କ-ଆ) ବୃହତ୍ପୁଷ୍କରିଣୀ ।
ଦୀର୍ଣ୍ଣ, ବଂ. (ଦୃ-ତ) ବିଦାରିତ; ଭଗ୍ନ; ଭୀତ । ବ. ନ. ବିଦାରଣ ।
ଦୁଇ, ସଂଖ୍ୟାବିଶେଷ, ୨ ।

ଦୁଃଖ, ବ. ନ. ( ଦୁଃଖ-ଅ ) ସନ୍ତାପ; କ୍ଲେଶ; ମନଃକ୍ଷୋଭ, ଯନ୍ତ୍ରଣା, ମନଃପୀଡ଼ା; ଅସୁଖ ।

ଦୁଖାର୍ତ୍ତ, ବଂ. (ଦୁଃଖ-ଆର୍ତ୍ତ) କାତର; ପୀଡ଼ିତ, ଯେ ଦୁଃଖରେ କାତର ହୋଇଥାଏ ।

ଦୁଃଖିତ, ବଂ. (ଦୁଃଖ-ତ) ଦୁଃଖଯୁକ୍ତ, କ୍ଲେଶିତ; ତାପିତ ।

ଦୁଃଖୀ, ବଂ. ( ଦୁଃଖ-ଇନ୍ ) ଦୁଃଖିତ, ଯେ ଦୁଃଖଭୋଗ କରେ; ଦୀନ, ଦରିଦ୍ର । ଯଥା—

ଦୁଃଖୀପାଇଁ ସ୍ଥାନ କାହିଁ ସଂସାର ଗହ୍ୱରେ ? ମ, ପା.

ଦୁଃଶଳା, ବ. ସ୍ତ୍ରୀ. ଧୃତରାଷ୍ଟ୍ରକନ୍ୟା, ଜୟଦ୍ରଥ-ପତ୍ନୀ ।

ଦୁଃଶାସ, ବଂ. ( ଦୁର୍-ଶାସ୍ ) ଯାହାକୁ ଅତି କଷ୍ଟରେ ଶାସନ କରାଯାଏ ।

ଦୁଃଶାସନ, ବ. ପୁଂ. (ଦୁର୍-ଶାସ୍-ଅନ) ଦୁର୍ଯ୍ୟୋଧନର ମଧ୍ୟମ ଭ୍ରାତା । ବଂ. ଯାହାକୁ ଅତି କଷ୍ଟରେ ଶାସନ କରାଯାଏ ।

ଦୁଃଶୀଳ, ବଂ. ( ଦୁର୍-ଶୀଳ ) ଦୁଶ୍ଚରିତ୍ର, ମନ୍ଦ ସ୍ୱଭାବବିଶିଷ୍ଟ ।

ଦୁଃଶ୍ରବ, ବଂ. ( ଦୁର୍-ଶ୍ରୁ-ଅ ) ଅଶ୍ରାବ୍ୟ, ଯାହା ଶୁଣିଲେ ଦୁଃଖ ଉପସ୍ଥିତ ହୁଏ ।

ଦୁଃସମୟ, ବ. ପୁଂ. (ଦୁର୍-ସମୟ) ମନ୍ଦ ସମୟ; ଦୁଃଖର ଅବସ୍ଥା; ଅକାଳ; ଦୁର୍ଭିକ୍ଷ ।

ଦୁଃସହ, ବଂ. (ଦୁର୍-ସହ) କଷ୍ଟସହ୍ୟ, ଅସହ-ନୀୟ, ଅତ୍ୟନ୍ତ କ୍ଲେଶଦାୟକ ।

ଦୁଃସାଧ୍ୟ, ବଂ. (ଦୁର୍-ସାଧ୍ୟ) ଦୁଷ୍କର, ଯାହାକୁ କଷ୍ଟରେ କରାଯାଏ; ଅସାଧ୍ୟ; ଅପ୍ରତିକାର୍ଯ୍ୟ ।

ଦୁଃସାହସ, ବ. ପୁଂ. ( ଦୁର୍-ସାହସ ) ଅନୁଚିତ ସାହସ । ବଂ. ଦୁଃସାହସିକ ।

ଦୁଃସ୍ଥ, ଦୁସ୍ଥ, ବଂ. ( ଦୁର୍-ସ୍ଥା-ଅ ) ଦରିଦ୍ର, ଦୁରବସ୍ଥାପନ୍ନ; ମୂର୍ଖ ।

ଦୁଃସ୍ଥିତ, ବଂ. ( ଦୁର୍-ସ୍ଥା-ତ ) ଦୁଃଖରେ ଅବସ୍ଥିତ ।

ଦୁଃସ୍ଥିତି, ବ. ସ୍ତ୍ରୀ. ( ଦୁର୍-ସ୍ଥିତି ) ଦୁରବସ୍ଥା; ଅସ୍ଥିରତା; ଦୁଃଖରେ ଅବସ୍ଥାନ ।

ଦୁଃସ୍ୱପ୍ନ, ବ. ପୁଂ. ଅଶୁଭସ୍ୱପ୍ନ, ଯେଉଁ ସ୍ୱପ୍ନ ଦେଖିଲେ ଅମଙ୍ଗଳ ଘଟେ ।

ଦୁକ୍‌ଦୁକ୍, କ୍ରି. ବଂ. (ଦେଶଜ) ହୃଦୟକମ୍ପନ, ଭୟ ବା ଉଦ୍ଭ୍ରାନ୍ତିଜନିତ ହୃଦର ଅସ୍ଥିରତା । ଯଥା—

ଏବେ ସ୍ପନ୍ଦା ଲଗି ସେ ମୃଗଛାରଙ୍ଗ ଛତି କରେ ଦୁକ୍‌ଦୁକ୍ । ଯ. ମେ.

ଦୁକୂଳ, ବ. ନ. (ଦୁ-ଉଲ, କ୍ ଆଗମ) ରେସମୀ ଲୁଗା; ଶୁଭ୍ରବସ୍ତ୍ର; ସୂକ୍ଷ୍ମବସ୍ତ୍ର; ଉତ୍ତରୀୟ ବସ୍ତ୍ର । ଯଥା—

ଦୁକୂଳ କବରୀ ସମ୍ଭାଳି ଅଙ୍ଗ ଦକ୍ଷିଣେତରେ,
ପିଙ୍ଗୁଳ ଧନୁଷ ଗଦ ଦ୍ୱୟ ବାମା ଦକ୍ଷିଣକରେ । ଚ. ଚ.

ଦୁଗ୍ଧ, ବ. ନ. ( ଦୁହ୍-ତ ) କ୍ଷୀର, ଦୁଧ; ଦୋହନ । ବଂ. ଯାହାକୁ ଦୋହନ କରା ହୋଇଅଛି ।

ଦୁଗ୍ଧପୋଷ୍ୟ, ବଂ. (ଦୁଗ୍ଧ-ପୋଷ୍ୟ) ଯେଉଁମାନେ କେବଳ ଦୁଗ୍ଧପାନ କରି ଜୀବନ ଧାରଣ କରନ୍ତି । ବ. ପୁଂ. ଶିଶୁ ।

ଦୁଣ୍ଡୁଭ, ବ. ପୁଂ. (ଦୁଣ୍ଡୁ-ଭା-ଅ) ଧଣ୍ଡସାପ ।

ଦୁତ, ବଂ. ( ଦୁ=ଯନ୍ତ୍ରଣା ଦେବା, ଗମନ କରିବା-ତ) ପୀଡ଼ିତ; ଗତ ।

ଦୁଦୁରା, ବ. ଧାତୁରା ।

ଦୁଧ, ବ. (ଦୁଗ୍ଧ ଶବ୍ଦଜ) ପୟଃ; କ୍ଷୀର ।

ଦୁନ୍ଦୁ, ବ. ପୁଂ. (ଦୁ-ଦମ୍-ଉ) ବସୁଦେବ, କୃଷ୍ଣର ପିତା; ଦୁନ୍ଦୁଭି ବାଦ୍ୟ ।

ଦୁନ୍ଦୁଭି, ବ. ପୁଂ. ( ଦୁନ୍ଦୁ-ଭା-ଇ ) ବୃହତ୍ ଢକ୍କା; ନାଗରା; ରାକ୍ଷସବିଶେଷ; ବରୁଣ; ବିଷ ।

ଦୁବ, ବ, ସ୍ତ୍ରୀ. ( ଦୁବା ଶବ୍ଦଜ ) ଘାସ-ବିଶେଷ ।

ଦୁର୍, ଅଂ. ଦୁଃଖ; ନିନ୍ଦିତ; ମନ୍ଦ; ଦୁଷ୍ଟ; ନିଷିଦ୍ଧ ।

ଦୁରକ୍ଷ, ବ. ପୁଂ. ( ଦୁର୍-ଅକ୍ଷ ) କପଟପାଶକ; ଦୁଷ୍ଟଦ୍ୟୂତ । ବଂ. ଦୁଷ୍ଟ ନେତ୍ରଯୁକ୍ତ ।

ଦୁରତିକ୍ରମ, ବି°. ( ଦୁର୍-ଅତି-କ୍ରମ୍-ଅ ) ଅଲଙ୍ଘନୀୟ, ଯାହା ଅତିକ୍ରମ କରିବା ଦୁଃସାଧ୍ୟ ।

ଦୁରତ୍ୟୟ, ବି°. (ଦୁର୍-ଅତ୍ୟୟ) ଦୁର୍ବିନାଶ୍ୟ, ଦୁରତିକ୍ରମ, ଦୁସ୍ତର ।

ଦୁରଦୃଷ୍ଟ, ବି.ନ. (ଦୁର୍-ଅଦୃଷ୍ଟ) ଦୁର୍ଭାଗ୍ୟ, ମନ୍ଦକପାଳ; ପାପ ।

ଦୁରଧିଗମ, ବି°. ( ଦୁର୍-ଅଧିଗମ ) ଦୁଷ୍ପ୍ରାପ୍ୟ, ଯାହା କଷ୍ଟରେ ମିଳେ; ଦୁର୍ଗମ, ଦୁଷ୍ପ୍ରବେଶ; ଦୁର୍ଜ୍ଞେୟ ।

ଦୁରନ୍ତ, ବି°. ( ଦୁର୍-ଅନ୍ତ ) ଦୁର୍ଦ୍ଦାନ୍ତ, ଦୁଷ୍ଟ, ଅବାଧ୍ୟ ।

ଦୁରପନେୟ, ବି°. ( ଦୁର୍-ଅପ-ନୀ-ଅ ) ଯାହା ଦୂର କରିବାର କଠିନ ଅଟେ ।

ଦୁରଭିଗ୍ରହ, ବି°. (ଦୁର୍-ଅଭି-ଗ୍ରହ-ଅ) ଯାହା କଷ୍ଟରେ ଗ୍ରହଣ କରାଯାଏ ।

ଦୁରବଗମ, ବି°. (ଦୁର୍-ଅବଗମ) ଦୁର୍ଜ୍ଞେୟ ।

ଦୁରବସ୍ଥ, ବି°. ( ଦୁର୍-ଅବସ୍ଥା ) ଦୁର୍ଦ୍ଦଶାପନ୍ନ, ଯାହାର ଅବସ୍ଥା ମନ୍ଦ ।

ଦୁରବସ୍ଥା, ବି. ସ୍ତ୍ରୀ. (ଦୁର୍-ଅବସ୍ଥା) ମନ୍ଦଅବସ୍ଥା, ଦୁର୍ଦ୍ଦଶା ।

ଦୁରାକାଙ୍କ୍ଷ, ବି°. (ଦୁର୍-ଆକାଙ୍କ୍ଷା) ଯେ ବ୍ୟକ୍ତିର ଇଚ୍ଛା କାହିଁରେ ସୁଦ୍ଧା ନିବୃତ୍ତି ହୁଏ ନାହିଁ ।

ଦୁରାକାଙ୍କ୍ଷା, ବି. ସ୍ତ୍ରୀ. ( ଦୁର୍-ଆକାଙ୍କ୍ଷା ) ଦୁଷ୍ଟ ଆକାଙ୍କ୍ଷା, କାହିଁରେ ଆକାଙ୍କ୍ଷା ନିବୃତ୍ତି ନ ହେବାର ।

ଦୁରାକ୍ରମ୍ୟ, ବି°. ( ଦୁର୍-ଆକ୍ରମ୍ୟ ) ଯାହାକୁ ଆକ୍ରମଣ କରିବା ଦୁଃସାଧ୍ୟ ।

ଦୁରାଗ୍ରହ, ବି. ପୁଂ. ( ଦୁର୍-ଆଗ୍ରହ ) ଦୁଶ୍ଚେଷ୍ଟା, ମନ୍ଦ ବିଷୟରେ ଅଭିନିବେଶ ।

ଦୁରାଚାର, ବି°. (ଦୁର୍-ଆଚାର) ଦୁଷ୍ଟାଚାରୀ । ବି. ପୁଂ. କୁବ୍ୟବହାର, କଦାଚାର ।

ଦୁରାତ୍ମା, ବି°. (ଦୁର୍-ଆତ୍ମନ୍) ପାପାତ୍ମା; ନିର୍ଦ୍ଦୟ; ଦୁଷ୍ଟ, ଉତ୍ପୀଡ଼କ, ଅତ୍ୟାଚାରୀ; ଦୁଷ୍ଟଚରିତ୍ର, ମନ୍ଦସ୍ୱଭାବ ।

ଦୁରାଧର୍ଷ, ବି°. (ଦୁର୍-ଆ-ଧୃଷ୍-ଅ) ଦୁର୍ଦ୍ଧର୍ଷଣୀୟ । ବି. ପୁଂ. ଶ୍ୱେତସର୍ଷପ ।

ଦୁରାନମ, ବି°. ( ଦୁର୍-ଆ-ନମ୍-ଅ ) ଦୁଷ୍ପ୍ରାପ୍ୟ, ଦୁର୍ଲ୍ଲଭ ।

ଦୁରାପ, ବି°. (ଦୁର୍-ଆପ୍-ଅ) ଦୁଷ୍ପ୍ରାପ୍ୟ, ଦୁର୍ଲ୍ଲଭ ।

ଦୁରାରୋହ, ବି°. ( ଦୁର୍-ଆ-ରୁହ୍-ଅ ) ଦୁର୍ଗମ୍ୟ; ଅତ୍ୟୁନ୍ନତ । ବି. ପୁଂ. ନାରିକେଳ ବୃକ୍ଷ ।

ଦୁରାଲଭା, ବି. ସ୍ତ୍ରୀ. (ଦୁର୍-ଆ-ଲଭ୍-ଅ) ସ୍ୱନାମ-ପ୍ରସିଦ୍ଧ କ୍ଷୁଦ୍ରବୃକ୍ଷ । ଯାହା ଦୁଃଖରେ ସ୍ପର୍ଶ କରାଯାଏ ।

ଦୁରାଳାପ, ବି. ପୁଂ. (ଦୁର୍-ଆଳାପ) ଦୁଷ୍ଟବାକ୍ୟ, କଟୂକଥା, ଗାଳି; କୁତ୍ସିତ କଥୋପକଥନ । ବି°. କଟୂଭାଷୀ, ଦୁଷ୍ଟବକ୍ତା ।

ଦୁରାଶୟ, ବି.ନ. (ଦୁର୍-ଆଶୟ) ମନ୍ଦ ଅଭିପ୍ରାୟ, ଯାହାର ମନ୍ଦ ଉଦ୍ଦେଶ୍ୟ ।

ଦୁରାଶା, ବି. ସ୍ତ୍ରୀ. ( ଦୁର୍-ଆଶା ) ଦୁଷ୍ଟ ଆଶା, ଦୁର୍ମନୋରଥ ।

ଦୁରାସଦ, ବି°. ( ଦୁର୍-ଆ-ସଦ୍-ଅ ) ଦୁଷ୍ପ୍ରାପ୍ୟ, ଦୁର୍ଲ୍ଲଭ; ଦୁର୍ଦ୍ଧର୍ଷ ।

ଦୁରିତ, ବି. ନ. (ଦୁର୍-ଇତ) ପାପ, ଦୁଷ୍କୃତ । ବି°. ପାପିଷ୍ଠ ।

ଦୁରିଷ୍ଟ, ବି. ନ. (ଦୁର୍-ଇଷ୍ଟ) କୁତ୍ସିତ ଯଜ୍ଞ, ଅଭିଚାରାର୍ଥ ଯାଗ ।

ଦୁରିଷ୍ଠ, ବି°. (ଦୁର୍-ଇଷ୍ଠ) ଅତିଶୟ ମନ୍ଦ ।

ଦୁରୀଷଣା, ବି. ସ୍ତ୍ରୀ. (ଦୁର୍-ଈଷଣା) ଅଭିସମ୍ପାତ, ଶାପ ।

ଦୁରୁକ୍ତ, ବି. ନ. (ଦୁର୍-ଉକ୍ତ) ଦୁର୍ବାକ୍ୟ, ଗାଳି ।

ଦୁରୁଚ୍ଛେଦ, ବି°. (ଦୁର୍-ଉଚ୍ଛେଦ) ଦୁର୍ନିବାର, ଦୁରପନେୟ । ବି. ନ. ଦୁର୍ନିବାରଣ ।

ଦୁରୁତ୍ତର, ବି°. (ଦୁର୍-ଉତ୍ତର) ଦୁସ୍ତର, ଯାହା ପାର ହେବା କଠିନ । ବି. ନ. ଅସତ୍ ଉତ୍ତର ।

ଦୁରୂପସଦ, ବି°. (ଦୁର୍-ଉପ-ସଦ୍-ଅ) ଦୁଃସଦ; ଦୁଷ୍ପ୍ରାପ୍ୟ ।

ଦୁରୂହ, ବି°. (ଦୁର୍-ଉହ-ଅ) କଠିନ;ଦୁର୍ବୋଧ; କଷ୍ଟସାଧ୍ୟ; ଦୁର୍ଜ୍ଞେୟ ।

ଦୁରୋଦର, ବି. ପୁଂ. (ଦୁର୍-ଆ-ଉଦର=ବିବାଦ) ପାଶକ୍ରୀଡ଼ା, ପଶ ଖେଳ; ବାଜ ରଖି ଖେଳିବାର; ଦ୍ୟୂତ; ଅସୁରବିଶେଷ ।

ଦୁର୍ଗ, ବି. ନ. ( ଦୁର୍-ଗମ୍-ଅ ) ଗଡ଼, କିଲ୍ଲା । ବି°. ଯେଉଁ ସ୍ଥାନକୁ ଯିବା କଠିନ ।

ଦୁର୍ଗତ, ବି°. (ଦୁର୍-ଗମ୍-ତ) ଦରିଦ୍ର,ଦୁର୍ଦ୍ଦଶାଗ୍ରସ୍ତ; ବିପଦ୍‌ଗ୍ରସ୍ତ ।

ଦୁର୍ଗତି, ବି. ସ୍ତ୍ରୀ. ( ଦୁର୍-ଗମ୍-ତି ) ଦାରିଦ୍ର୍ୟ; ଦୁରବସ୍ଥା; ନରକ ।

ଦୁର୍ଗନ୍ଧ, ବି. ପୁଂ. (ଦୁର୍-ଗନ୍ଧ) ମନ୍ଦଗନ୍ଧ, ପୂତି-ଗନ୍ଧ; ପଲାଣ୍ଡୁ; ପିଆଜ । ବି°. ଦୁର୍ଗନ୍ଧଯୁକ୍ତ ।

ଦୁର୍ଗମ, ( ଦୁର୍-ଗମ୍-ଅ ) ଯେଉଁ ସ୍ଥାନକୁ ଅତି କଷ୍ଟରେ ଗମନ କରାଯାଏ; ଦୁର୍ଲ୍ଲଭ; ଦୁର୍ଜ୍ଞେୟ ।

ଦୁର୍ଗସଞ୍ଚର, ବି. ପୁଂ. ( ଦୁର୍ଗ ସଞ୍ଚର ) ପୋଲ, ଶଙ୍ଘ ।

ଦୁର୍ଗା, ବି. ସ୍ତ୍ରୀ. (ଦୁର୍-ଗମ୍-ଅ-ସ୍ତ୍ରୀଲିଙ୍ଗରେ ଆ) ମହାଦେବୀ, ଶିବପତ୍ନୀ; ଅପରାଜିତା ଲତା ।

ଦୁର୍ଗ୍ରହ, ବି°. (ଦୁର୍-ଗ୍ରହ୍-ଅ) ଦୁଷ୍ପ୍ରାପ୍ୟ,ଦୁର୍ଲ୍ଲଭ । ବି. ପୁଂ. ମନ୍ଦଗ୍ରହ ।

ଦୁର୍ଗାନବମୀ, ବି. ସ୍ତ୍ରୀ. କାର୍ତ୍ତିକମାସର ଶୁକ୍ଳନବମୀ ।

ଦୁର୍ଗୋତ୍ସବ, ବି. ପୁଂ. ନ୍. (ଦୁର୍ଗା-ଉତ୍ସବ) ଦୁର୍ଗା ଦେବୀଙ୍କ ପୂଜା ନିମିତ୍ତ ଉତ୍ସବ ।

ଦୁର୍ଘଟ, ବି°. (ଦୁର୍-ଘଟ) କଠିନ, ଯାହା ଅତି କଷ୍ଟରେ ଘଟେ, ଦୁଃସାଧ୍ୟ ।

ଦୁର୍ଘଟନା, ବି. ସ୍ତ୍ରୀ. (ଦୁର୍-ଘଟ-ଅନ-ଆ) ଅଶୁଭ ଘଟନା, ବିପଦ ।

ଦୁର୍ଘୋଷ, ବି. ପୁଂ. (ଦୁର୍-ଘୋଷ) ଭଲ୍ଲୁ; କୁତ୍ସିତ ଶବ୍ଦ । ବି°. ମନ୍ଦରବବିଶିଷ୍ଟ ।

ଦୁର୍ଜନ, ବି°. (ଦୁର୍-ଜନ) ଖଳ; କ୍ରୂର,ନିଷ୍ଠୁର; ଦୁଷ୍ଟ ।

ଦୁର୍ଜ୍ଜୟ, ବି°. ( ଦୁର୍-ଜି-ଅ ) ଯାହାକୁ ଅତ୍ୟନ୍ତ କଷ୍ଟରେ ଜୟ କରାଯାଏ, ଅଦମ୍ୟ ।

ଦୁର୍ଜାତ, ବି°. (ଦୁର୍-ଜାତ) ଯାହାର ଜନ୍ମ ବୃଥା । ବି. ନ. ଦୁର୍ଭାଗ୍ୟ, ବିପଦ ।

ଦୁର୍ଦ୍ଦମ୍ୟ, ଦୁର୍ଦ୍ଦାନ୍ତ, ବି°. ( ଦୁର୍-ଦମ୍ୟ, ଦାନ୍ତ ) ଅଶାନ୍ତ; ଦୁରନ୍ତ, ଦୁଷ୍ଟ, କଷ୍ଟରେ ଦମନୀୟ । ବି. ପୁଂ. ବତ୍ସତର ।

ଦୁର୍ଦ୍ଦଶା, ବି. ସ୍ତ୍ରୀ. ( ଦୁର୍-ଦଶା ) ଦୁରବସ୍ଥା, ମନ୍ଦାବସ୍ଥା ।

ଦୁର୍ଦ୍ଦାନ୍ତ, ବି°. ( ଦୁର୍-ଦମ୍-ତ ) ଯାହାକୁ ଦମନ କରିବା ଅସାଧ୍ୟ ।

ଦୁର୍ଦ୍ଦିନ, ବି. ନ. (ଦୁର୍-ଦିନ) ମେଘାଚ୍ଛନ୍ନ ଦିବସ; ଦୁଃସମୟ । ଯଥା—

> ଏବେ ତ କ୍ଷୀଣ ଧନ, ହେଲ ଦୁର୍ଦ୍ଦିନ ଦିନ,
> ନ ଲଭ ବନ୍ଧୁଭମେଳକୁ । ଲ. ବ.

ଦୁର୍ଦ୍ଦୈବ. ବି. ନ. (ଦୁର୍-ଦୈବ) ଦୁର୍ଭାଗ୍ୟ, ମନ୍ଦ ଭାଗ୍ୟ; ଦୁର୍ଘଟନା; ପାପ ।

ଦୁର୍ଦ୍ଧର, ବି°. (ଦୁର୍-ଧୃ-ଅ) ଦୁଃସହ, ଅନିବାର୍ଯ୍ୟ; ଦୁର୍ଦ୍ଧର୍ଷ; ଦୁର୍ଗମ । ବି. ପାରଦ, ପାରା; ଭଲ୍ଲୁଆ; ଦୈତ୍ୟବିଶେଷ ।

ଦୁର୍ଦ୍ଧର୍ଷ, ବି°. ( ଦୁର୍-ଧୃଷ୍-ଅ ) ଯାହାର କୌଣସି ଅବମାନ ବା ଅନିଷ୍ଟ କରାଯାଇ ନ ପାରେ; ଯାହାର ତେଜ ବିକ୍ରମ ପ୍ରଭୃତି ଏପରି ଯେ ତାହା ନିକଟକୁ ଯିବାକୁ ଭୟ ହୁଏ । ଯଥା—

> ମାଲ୍ୟଗିରିବାସୀ ଦୁର୍ଦ୍ଧର୍ଷ ଜୁଅଙ୍ଗ । ନ. କେ.

ଅସହନୀୟ; ଦୁର୍ଦ୍ଦମନୀୟ ।

ଦୁର୍ନ୍ନୟ, ବି. ପୁଂ. ( ଦୁର୍-ନୟ ) କୁନୀତି, ମନ୍ଦନୀତି ।

ଦୁର୍ନାମକ, ବି. ନ. (ଦୁର୍ନାମ-କ) ଅର୍ଶରୋଗ ।

ଦୁର୍ନାମ, ବି.ନ. (ଦୁର୍-ନାମନ୍) କଳଙ୍କ; ନିନ୍ଦା, ଅପ୍ରଶଂସା, କୁଖ୍ୟାତି; ଅର୍ଶରୋଗ ।

ଦୁର୍ନିବାର, ବି°. (ଦୁର୍-ନିବାର) ଯାହାକୁ କଷ୍ଟରେ ନିବାରଣ କରାଯାଏ ।

ଦୁର୍ନିମିତ୍ତ, ବି. ନ. ( ଦୁର୍-ନିମିତ୍ତ ) ଅଶୁଭଚିହ୍ନ, ଅମଙ୍ଗଳ ଚିହ୍ନ ।

ଦୁର୍ନିରୀକ୍ଷ୍ୟ, ବିଂ. ( ଦୁର୍-ନିରୀକ୍ଷ୍ୟ ) ଯାହାପ୍ରତି ଦୃଷ୍ଟିପାତ କରିବା ଅସାଧ୍ୟ ।

ଦୁର୍ନୀତ, ବିଂ. (ଦୁର୍-ନୀ-ତ) ଯାହାର ରୀତି ନୀତି ଭଲ ନୁହେ, ଉଚ୍ଛୃଙ୍ଖଳ, ଅଶିଷ୍ଟ । ବି. ସ୍ତ୍ରୀ. କୁରୀତି, ଅସଦାଚରଣ ।

ଦୁର୍ବା, ବି. ସ୍ତ୍ରୀ. (ଦୁର୍ବ-ଅ) ଦୁବ, ଘାସବିଶେଷ ।

ଦୁର୍ବଳ, ବିଂ. ( ଦୁର୍-ବଳ ) ବଳହୀନ; ଜୀର୍ଣ୍ଣ; ଅଶକ୍ତ; କ୍ଷୀଣ, କୃଶ; ଶିଥିଳ ।

ଦୁର୍ବୁଦ୍ଧି, ବିଂ. (ଦୁର୍-ବୁଦ୍ଧି) ଦୁର୍ମତି,କୁବୁଦ୍ଧିଶାଳୀ। ବି. ସ୍ତ୍ରୀ. ମନ୍ଦବୁଦ୍ଧି ।

ଦୁର୍ଭଗ, ବିଂ. (ଦୁର୍-ଭଗ) ଭାଗ୍ୟହୀନ, ଦୁରଦୃଷ୍ଟ; ଅପ୍ରିୟ ।

ଦୁର୍ଭର, ବିଂ. ( ଦୁର୍-ଭର ) ଦୁଃସହ; ଦୁର୍ବହ; ଗୁରୁ, ଭାରି ।

ଦୁର୍ଭାଗ୍ୟ, ବି. ନ. (ଦୁର୍-ଭାଗ୍ୟ) ଦୁରଦୃଷ୍ଟ, ମନ୍ଦ-ଭାଗ୍ୟ। ବିଂ. ଯାହାର ଅଦୃଷ୍ଟ ଭଲ ନୁହେ ।

ଦୁର୍ଭାବନା, ବି. ସ୍ତ୍ରୀ. ( ଦୁର୍-ଭାବନା ) ଉତ୍କଣ୍ଠା, ଉଦ୍ବେଗ ।

ଦୁର୍ଭିକ୍ଷ, ବି. ନ. (ଦୁର୍-ଭିକ୍ଷା) ଦେଶରେ ଖାଦ୍ୟ-ଦ୍ରବ୍ୟର ଅଭାବ, ଅକାଳ ।

ଦୁର୍ଭେଦ୍ୟ, ବିଂ. (ଦୁର୍-ଭେଦ୍ୟ) ଅଭେଦ୍ୟ, ଯାହା ଭେଦ କରି ହୁଏ ନାହିଁ ।

ଦୁର୍ମତି, ବିଂ.(ଦୁର୍-ମତି) ଦୁର୍ବୁଦ୍ଧି, କୁମତିଶାଳୀ । ବି. ବତ୍ସରବିଶେଷ ।

ଦୁର୍ମଦ, ବିଂ. (ଦୁର୍-ମଦ୍-ଅ) ଉନ୍ମତ୍ତ, ଦୁର୍ଦ୍ଧର୍ଷ । ବି. ପୁଂ. ଧୃତରାଷ୍ଟ୍ରପୁତ୍ରବିଶେଷ, ରାଧିକାର ଦେବର ।

ଦୁର୍ମନାଃ, ବିଂ. (ଦୁର୍-ମନସ୍ ) ଚିନ୍ତିତ, ଦୁଃଖିତ, ବିଷଣ୍ଣ, ଉଦ୍ବିଗ୍ନଚିତ୍ତ ।

ଦୁର୍ମନାୟମାନ, ବିଂ. (ଦୁର୍ମନାୟ-ମାନ) ଉଦ୍ବିଗ୍ନ-ଚିତ୍ତ, ଦୁର୍ଭାବନାଗ୍ରସ୍ତ ।

ଦୁର୍ମର୍ଷଣ, ବିଂ. ( ଦୁର୍-ମୃଷ୍-ଅନ ) ଯାହା ସହ୍ୟ କରିବା କଠିନ, ଅସହନୀୟ । ବି. ପୁଂ. ବିଷ୍ଣୁ, ଧୃତରାଷ୍ଟ୍ରପୁତ୍ରବିଶେଷ ।

ଦୁର୍ମୁଖ, ବି. ପୁଂ. ( ଦୁର୍-ମୁଖ ) ଅଶ୍ୱ; ବାନର; ଅସୁରବିଶେଷ; ନାଗବିଶେଷ; ରାମଚନ୍ଦ୍ରଙ୍କ ଗୁପ୍ତଚର । ବିଂ. କଟୁଭାଷୀ, ଅପ୍ରିୟ କର୍କଶ-ବାଦୀ; ଅଶିକ୍ଷିତ ।

ଦୁର୍ମୂଲ୍ୟ, ବିଂ. (ଦୁର୍-ମୂଲ୍ୟ) ମହାର୍ଘ, ବହୁମୂଲ୍ୟ ।

ଦୁର୍ମେଧାଃ, ବିଂ. ( ଦୁର୍-ମେଧସ୍ ) ମେଧାହୀନ, ଅବୋଧ, ନିର୍ବୁଦ୍ଧି ।

ଦୁର୍ଯୋଗ, ବି. ପୁଂ. ( ଦୁର୍-ଯୋଗ ) ଦୁର୍ଦ୍ଦିନ; ଦୁଃସମୟ ।

ଦୁର୍ଯ୍ୟୋଧନ, ବି. ପୁଂ. ( ଦୁର୍-ଯୁଧ୍-ଅନ ) ଧୃତରାଷ୍ଟ୍ରର ଜ୍ୟେଷ୍ଠପୁତ୍ର । ବିଂ. ଯାହା ସଙ୍ଗରେ ଅତି କଷ୍ଟରେ ଯୁଦ୍ଧ କରାଯାଏ ।

ଦୁଲଣା, ବି. (ଦେଶଜ) ଗେଲବସର । ଯଥା—
ସଜନସଣୀଙ୍କର ନଯୁନବିଭୂଳା ଥିଲା ସେ ସଜନଦୁଲଣା । ଯଦେ.

ଦୁଲାଳ, ବି. (ଦେଶଜ) ପ୍ରେମ, ଅନୁରାଗ । ବିଂ. ପ୍ରିୟ; ମନୋଜ୍ଞ; ଗେହ୍ଲା ।

ଦୁର୍ଲକ୍ଷ୍ୟ, ବିଂ. (ଦୁର୍-ଲକ୍ଷ୍-ଯ ) ଅଦୃଶ୍ୟ, ଯାହା ଅତି କଷ୍ଟରେ ଦେଖାଯାଏ ।

ଦୁର୍ଲଙ୍ଘ, ଦୁର୍ଲଙ୍ଘ୍ୟ, ବିଂ. ( ଦୁର୍-ଲଙ୍ଘ, ଲଙ୍ଘ୍ୟ ) ଯାହା କଷ୍ଟରେ ଲଙ୍ଘନ କରିବାକୁ ହୁଏ, ଅଲଙ୍ଘ୍ୟ ।

ଦୁର୍ଲଭ, ଦୁର୍ଲଭ୍ୟ, ବିଂ. ( ଦୁର୍-ଲଭ୍-ଅ, ଯ ) ଦୁଷ୍ପ୍ରାପ୍ୟ, ଯାହା ସହଜରେ ମିଳେ ନାହିଁ, ବହୁମୂଲ୍ୟ ।

ଦୁର୍ଲେଖ୍ୟ, ବି. ନ. ( ଦୁର୍-ଲେଖ୍ୟ ) ଗହିତ ଲେଖ୍ୟପତ୍ର, ଜାଲଦଲିଲ ।

ଦୁର୍ବଚଃ, ବି.ନ. (ଦୁର୍-ବଚସ୍ ) ଦୁର୍ବାକ୍ୟ, କଟୁ କଥା, ନିନ୍ଦାବାକ୍ୟ । ବିଂ. ଅକଥ୍ୟ,ଅବକ୍ତବ୍ୟ ।

ଦୁର୍ବର୍ଣ୍ଣ, ବି.ନ. (ଦୁର୍-ବର୍ଣ୍ଣ ) ରଜତ, ରୌପ୍ୟ । ବିଂ. ମଳିନ ।

ଦୁର୍ବହ, ବଂ. (ଦୁର୍-ବହ୍-ଅ) ଦୁଃସହ, କଷ୍ଟରେ ବହନୀୟ ।

ଦୁର୍ବାକ୍, } ବଂ. ( ଦୁର୍-ବାଚ୍, ବାଦ) କଟୁଭାଷୀ, ଯେ ମନ୍ଦ କଥା କହେ ।
ଦୁର୍ବାଦ, }

ଦୁର୍ବାକ୍ୟ, ବ. ନ. ( ଦୁର୍-ବାକ୍ୟ ) କଟୁବାକ୍ୟ, ଅପ୍ରିୟ କଥା; ଅଶ୍ଳୀଳ ବାକ୍ୟ ।

ଦୁର୍ବାର, ବଂ. (ଦୁର୍-ବୃ-ଅ) ଅନିବାର୍ଯ୍ୟ, ଯାହା ବାରଣ କରାଯାଇ ନ ପାରେ ।

ଦୁର୍ବାସାଃ, ବ.ପୁଂ. (ଦୁର୍-ବାସସ୍ ) ଅତ୍ରିମୁନିଙ୍କର ପୁତ୍ର । ବଂ. କୁତ୍ସିତ ବସ୍ତ୍ରଧାରୀ ।

ଦୁର୍ବିଧ, ବଂ. (ଦୁର୍-ବିଧ ) ଦରିଦ୍ର; ଖଳ, ଦୁଷ୍ଟ; ମୂର୍ଖ ।

ଦୁର୍ବିନୀତ, ବଂ.(ଦୁର୍-ବି-ନୀ-ତ) ଖଳ; ଅହଙ୍କାରୀ, ଉଦ୍ଧତ; ଦୁଷ୍ଟ, ଅଶିଷ୍ଟ, ଅବିନୀତ ।

ଦୁର୍ବିପାକ, ବ. ପୁଂ. ( ଦୁର୍-ବିପାକ ) ଦୁର୍ଘଟଣା, ମନ୍ଦ ପରିଣାମ ।

ଦୁର୍ବିଷହ, ବଂ. ( ଦୁର୍-ବି-ସହ-ଅ ) ଅସହ୍ୟ, ଦୁର୍ବହ । ବ. ପୁଂ. ଧୃତରାଷ୍ଟ୍ରପୁତ୍ରବିଶେଷ।

ଦୁର୍ବୃତ୍ତ, ବଂ. ( ଦୁର୍-ବୃତ୍ତ ) ଦୁଶ୍ଚରିତ୍ର, ଧୂର୍ତ୍ତ; ଦୁର୍ଜନ; ଉଦ୍ଧତ; ଦୁରାତ୍ମା ।

ଦୁର୍ହୃଦ୍, ବ. ପୁଂ. ( ଦୁର୍-ହୃଦ୍ ) ଶତ୍ରୁ । ବଂ. ଦୁଷ୍ଟାନ୍ତଃକରଣ, କ୍ରୂରଚିତ୍ତ ।

ଦୁଶ୍ଚର, ବଂ. ( ଦୁର୍-ଚର୍-ଅ ) ଯାହା ଆଚରଣ କରିବା କଠିନ, ଦୁର୍ଗମ । ବ. ପୁଂ. ଶମ୍ବୂକ, ଭଲ୍ଲୂକ ।

ଦୁଶ୍ଚରିତ, } ବ. ନ. ( ଦୁର୍-ଚରିତ, ଚରିତ୍ର ) ମନ୍ଦ ପ୍ରକୃତି, କୁସ୍ୱଭାବ । ବଂ. ଯାହାର ଚରିତ୍ର ମନ୍ଦ ।
ଦୁଶ୍ଚରିତ୍ର, }

ଦୁଶ୍ଚିକିତ୍ସ୍ୟ, ବଂ. ( ଦୁର୍-ଚିକିତ୍ସା-ଯ ) ଯାହାର ସହଜରେ ଚିକିତ୍ସା ହୋଇ ନ ପାରେ, ଉତ୍କଟ, ଅପ୍ରତିବିଧେୟ ।

ଦୁଶ୍ଚେଷ୍ଟିତ, ବ. ନ. ( ଦୁର୍-ଚେଷ୍ଟିତ ) ମନ୍ଦ ଆଚରଣ, ମନ୍ଦଚେଷ୍ଟା ।

ଦୁଷ୍କର, ବଂ. (ଦୁର୍-କୃ-ଅ) ଯାହା କଷ୍ଟରେ କରାଯାଏ, ଦୁଃଖସାଧ୍ୟ ।

ଦୁଷ୍କର୍ମ, ବ. ନ. (ଦୁର୍-କର୍ମନ୍ ) ମନ୍ଦକର୍ମ ।

ଦୁଷ୍କର୍ମା, ବଂ. (ଦୁର୍-କର୍ମନ୍ ) ମନ୍ଦକର୍ମା ।

ଦୁଷ୍କୁଳ, ବ. ନ. (ଦୁର୍-କୁଳ) ମନ୍ଦକୁଳ, ନୀଚ-ବଂଶ ।

ଦୁଷ୍କୁଳୀନ, ବଂ. (ଦୁଷ୍କୁଳ-ଈନ) ଅସତ୍ କୁଳ-ଜାତ, ନୀଚ ବଂଶୋତ୍ପନ୍ନ ।

ଦୁଷ୍କୃତ, ବ. ନ. ( ଦୁର୍-କୃ-ତ ) ପାପ, ଦୁଷ୍କର୍ମ । ବଂ. ପାପଜନକ, ପାପଯୁକ୍ତ ।

ଦୁଷ୍କୃତି, ବ. ସ୍ତ୍ରୀ. (ଦୁର୍-କୃ-ତି) ପାପ; ମନ୍ଦକର୍ମ; ଦୁର୍ଭାଗ୍ୟ ।

ଦୁଷ୍କୃତୀ, ବଂ. ( ଦୁଷ୍କୃତ-ଇନ୍ ) ଦୁଷ୍କୃତକାରୀ, ପାପକାରକ ।

ଦୁଷ୍ଟ, ବଂ. ( ଦୁଷ୍-ତ ) ଦୋଷଯୁକ୍ତ, ଅପବିତ୍ର, ଅଧାର୍ମିକ; ଦୁର୍ବଳ; ଅଧମ, ଦୁର୍ଜନ ।

ଦୁଷ୍ଟଯୋଗ, ବ. ପୁଂ. ବୈଧୃତ, ବ୍ୟତୀପାତାଦି ଯୋଗ ।

ଦୁଷ୍ପ୍ରଧର୍ଷ, ବଂ. ( ଦୁର୍-ପ୍ର-ଧୃଷ୍-ଅ ) ଅଧର୍ଷଣୀୟ, ଦୁର୍ଦ୍ଧର୍ଷ ।

ଦୁଷ୍ପ୍ରବେଶ, ବଂ. (ଦୁର୍-ପ୍ରବେଶ) ଦୁର୍ଗମ, ଯହିଁରେ ପ୍ରବେଶ କରିବା କଠିନ ।

ଦୁଷ୍ପ୍ରସହ, ବଂ. (ଦୁର୍-ପ୍ର-ସହ୍-ଅ) ଅତିଦୁଃସହ, ଅସହ୍ୟ ।

ଦୁଷ୍ପ୍ରମେୟ, ବଂ. ( ଦୁର୍-ପ୍ରମେୟ ) ଅପରିମେୟ, ଯାହା ପରିମାଣ କରିବା କଠିନ ।

ଦୁଷ୍ପ୍ରାପ; ଦୁଷ୍ପ୍ରାପ୍ୟ, ବଂ. ( ଦୁର୍-ପ୍ରାପ, ପ୍ରାପ୍ୟ ) ଦୁର୍ଲଭ, ଯାହା ପାଇବା କଠିନ ।

ଦୁଷ୍ମନ୍ତ, } ବ. ପୁଂ. ( ଦୁଷ୍-ମନ୍-ତ ) ଭରତ-ରାଜାଙ୍କ ପିତା, ଶକୁନ୍ତଳାପତି ।
ଦୁଷ୍ୟନ୍ତ, }

ଦୁସ୍ତର, ବଂ. (ଦୁର୍-ତୄ-ଅ) ଦୁରତିକ୍ରମ, ଦୁଷ୍ପରି-ହର, ଯାହା ପାର ହେବା କଠିନ ।

ଦୁହିତା, ବ. ସ୍ତ୍ରୀ. (ଦୁହ୍-ତୃ) କନ୍ୟା, ଝିଅ,ପୁତ୍ରୀ।

ଦୁହିଁବା, କ୍ରି. (ଦୋହନ ଶବ୍ଦଜ) ଦୋହନକରିବା ।

ଦୁହ୍ୟ, ବଂ. (ଦୁହ୍-ଯ) ଦୋହନର ଯୋଗ୍ୟ ।

ଦୂହ୍ୟମାନ, ବିଂ. (ଦୁହ୍ୟ-ଆନ, ମ ଆଗମ) ଯାହାକୁ ଦୋହନ କରାଯାଏ, ଦୋହନବିଶିଷ୍ଟ ।

ଦୂ, ବି. ସ୍ତ୍ରୀ. (ଦୁ-ଂ) କ୍ଲେଶ, ଯନ୍ତ୍ରଣା, ଦୁଃଖ ।

ଦୂତ, ବି. ପୁଂ. (ଦୁ=ଗମନ କରିବା-ତ) ବାର୍ତ୍ତାବହ, ଚର, ସନ୍ଦେଶବହ, ଉଗର ।

ଦୂତୀ, ଦୂତିକା, ଦୂତୀ, ବି. ସ୍ତ୍ରୀ. (ଦୁ-ତି,ତିକା,ତୀ) ବାର୍ତ୍ତାବାହନୀ, କୁଟ୍ଟନୀ ।

ଦୂତ୍ୟ, ବି. ନ. ( ଦୂତ-ଯ ) ଦୂତର କାର୍ଯ୍ୟ, ଦୂତର ଧର୍ମ ।

ଦୂର, ବିଂ.(ଦୁର୍-ଇ-ଷକ୍) ଦୀର୍ଘ; ଅତ୍ୟନ୍ତ; ଗାଢ଼; ଅଗୋଚର ।

ଦୂରଗ, ଦୂରଗାମୀ; ବିଂ. ( ଦୂର-ଗ, ଗାମୀ ) ଯେ ଦୂରକୁ ଯାଏ ।

ଦୂରତଃ, ଅଂ. (ଦୂର-ତସ୍) ଦୂରରୁ ।

ଦୂରଦର୍ଶୀ, ବି. ପୁଂ. (ଦୂର-ଦୃଶ୍-ଇନ୍) ପରିଣାମଦର୍ଶୀ, ପଣ୍ଡିତ; ଗୃଧ୍ର ।

ଦୂରଦୃଷ୍ଟି, ବିଂ. ( ଦୂର-ଦୃଷ୍ଟି ) ଅନେକ ଦୂର ପର୍ଯ୍ୟନ୍ତ ଯେ ଦେଖିପାରେ, ଦୀର୍ଘଦୃଷ୍ଟି । ବି. ସ୍ତ୍ରୀ. ଦୂରଦର୍ଶନ ।

ଦୂରବର୍ତ୍ତୀ, ବିଂ. ( ଦୂର-ବର୍ତ୍ତୀ ) ଯାହା ଦୂରରେ ଅଛି, ଦୂରସ୍ଥ ।

ଦୂରଯାୟୀ, ବିଂ. (ଦୂର-ଯାୟୀ) ଦୂରଗାମୀ ।

ଦୂରବୀକ୍ଷଣ, ବି. ନ. (ଦୂର-ବି-ଈକ୍ଷ-ଅନ) ଯାହାଦ୍ୱାରା ଦୂରସ୍ଥିତ ପଦାର୍ଥ ନିକଟରେ ଦୃଶ୍ୟ ହୁଅଇ ।

ଦୂରବେଧୀ, ବିଂ. ( ଦୂର-ବିଧ୍-ଇନ୍ ) ଦୂରସ୍ଥିତ ପଦାର୍ଥକୁ ଯେ ବିଦ୍ଧ କରେ, ଶର ଗୁଳି ପ୍ରଭୃତି ।

ଦୂରସ୍ଥ, ବିଂ. (ଦୂର-ସ୍ଥା-ଅ) ଦୂରବର୍ତ୍ତୀ ।

ଦୂରୀକରଣ, ବି. ନ. (ଦୂର-କୃ-ଅନ) ବହିଷ୍କୃତ କରିବା, ଅବମାନନାପୂର୍ବକ ତଡ଼ିଦେବାର ।

ଦୂରୀକୃତ, ବିଂ.(ଦୂର-କୃତ) ତାଡ଼ିତ, ଅବମାନନାପୂର୍ବକ ଯାହାକୁ ଦୂର କରି ହୋଇଅଛି ।

ଦୂରୀଭୂତ, ବିଂ. ( ଦୂର-ଭୂତ, ଈ ଆଗମ ) ଯେ ଦୂର ହୋଇ ଯାଇଅଛି, ଯେ ଅବମାନନା ସହିତ ଦୂର ହୋଇ ଯାଇଅଛି ।

ଦୂରୋହ, ବିଂ. (ଦୁର୍-ରୁହ୍-ଅ) ଯହିଁରେ ଆରୋହଣ କରିବା ଦୁଃସାଧ, ଦୁରାରୋହ ।

ଦୂର୍ବା, ବି. ସ୍ତ୍ରୀ. (ଦୂର୍ବ-ଅ-ଆ) ଦୁବଘାସ, ସ୍ୱନାମପ୍ରସିଦ୍ଧ ତୃଣ ।

ଦୂର୍ବାଷ୍ଟମୀ, ବି. ସ୍ତ୍ରୀ. ଭାଦ୍ରମାସର ଶୁକ୍ଲାଷ୍ଟମୀ ।

ଦୂଷକ, ବିଂ. ( ଦୁଷ୍-ଅକ ) ଅପବାଦକ, ଯେ ଦୋଷ ଦିଏ ।

ଦୂଷଣ, ବି. ନ. (ଦୁଷ୍-ଇ-ଅନ) ଦୋଷ । ଯଥା—

> ବାଜୁ ଦୂଷଣ ଘୋଷଣ,
> ହେଲେ ହେବ ପଛେ ନାନା କଷଣ ଗୋ,
> ମୁଁ ତ କଲିଣି ନନ୍ଦା ଭୂଷଣ । ବ. ଚ.

ପୁଂ. ରାବଣର ମାତୃସ୍ୱସ୍ରେୟ, ରାକ୍ଷସବିଶେଷ ।

ଦୂଷଣାରି, ବି. ପୁଂ. (ଦୂଷଣ-ଅରି) ରାମ ।

ଦୂଷିତ, ବିଂ. (ଦୁଷ୍-ଇ-ତ) ନିନ୍ଦିତ, ଦୋଷଯୁକ୍ତ ।

ଦୂଷ୍ୟ, ବିଂ. (ଦୁଷ୍-ଯ) ଦୂଷଣୀୟ, ନିନ୍ଦନୀୟ ।

ଦୃକ୍, ବି. ସ୍ତ୍ରୀ. (ଦୃଶ୍-ଂ) ଚକ୍ଷୁ, ଦର୍ଶନ; ଜ୍ଞାନ । ବିଂ. ଦର୍ଶକ ।

ଦୃକ୍‌ପାତ, ବି. ପୁଂ. (ଦୃକ୍-ପାତ) ଦୃଷ୍ଟିନିକ୍ଷେପ ।

ଦୃକ୍କର୍ଣ୍ଣ, ଦୃକ୍‌ଶ୍ରୁତି, ବି. ପୁଂ. ( ଦୃଶ୍-କର୍ଣ୍ଣ, ଶ୍ରୁତି ) ଚକ୍ଷୁଃଶ୍ରବାଃ, ସର୍ପ ।

ଦୃଢ଼, ବିଂ. ( ଦୃହ୍-ତ ) କଠିନ; ସମର୍ଥ; ଗାଢ଼; ଅତିଶୟ । ବି. ନ. ଲୌହ ।

ଦୃଢ଼ତା, ବି.ସ୍ତ୍ରୀ. (ଦୃଢ଼-ତା) କାଠିନ୍ୟ; ସ୍ଥିରତା; ଅବିଚଳନ ।

ଦୃଢ଼ପ୍ରତିଜ୍ଞ, ବିଂ. (ଦୃଢ଼-ପ୍ରତିଜ୍ଞା) ଯାହାର ପ୍ରତିଜ୍ଞା କଦାପି ଅନ୍ୟଥା ହୁଏ ନାହିଁ, ସ୍ଥିରପ୍ରତିଜ୍ଞ ।

ଦୃଢ଼ଫଳ, ବି. ପୁଂ. (ଦୃଢ଼-ଫଳ) ନାରିକେଳବୃକ୍ଷ ।

ଦୃଢ଼ମୁଷ୍ଟି, ବିଂ. (ଦୃଢ଼-ମୁଷ୍ଟି) କୃପଣ, ବ୍ୟୟକୁଣ୍ଠ । ବି. ପୁଂ. ଖଡ୍ଗାଦି ଅସ୍ତ୍ର ।

ଦୃଢ଼ଲୋମା, ବି. ପୁଂ. ସ୍ତ୍ରୀ. ( ଦୃଢ଼-ଲୋମନ୍ ) ଶୂକର । ବିଂ. କଠିନ ଲୋମଯୁକ୍ତ ।

ଦୃଢ଼ବ୍ରତ, ବିଂ. ଅଧ୍ୟବସାୟବିଶିଷ୍ଟ, ଅବଲମ୍ବିତ କାର୍ଯ୍ୟ ସାଧନରେ ଯାହାର ଦୃଢ଼ ଯତ୍ନ ଅଛି ।

ଦୃଢ଼ପକ୍ଷ, ବିଂ. (ଦୃଢ଼-ପକ୍ଷ) ସ୍ଥିରପକ୍ଷାବାନ, ଦୃଢ଼-ପ୍ରତିଜ୍ଞ । ପୁଂ. ଧୃତରାଷ୍ଟ୍ରପୁତ୍ରବିଶେଷ ।

ଦୃଢ଼ାଙ୍ଗ, ବିଂ. (ଦୃଢ଼-ଅଙ୍ଗ) ଦୃଢ଼କାୟ ।

ଦୃତ, ବିଂ. (ଦୃ-ତ) ଆଦୃତ, ସମ୍ମାନିତ ।

ଦୃନ୍‌ଭୂ, ବି.ପୁଂ. ( ଦୃଭ୍-ଉ, ନ ଅଗମ ) ବଜ୍ର; ସୂର୍ଯ୍ୟ; ସର୍ପ; ଚକ୍ର; ନୃପ ।

ଦୃପ୍ତ, ଦୃପ୍ର, ବିଂ. (ଦୃପ୍-ତ, ର) ଗର୍ବିତ, ଉଦ୍ଧତ, ଦୁଷ୍ଟ । ବି. ପୁଂ. ବଷ୍ଟ ।

ଦୃଶଦ୍, ଦୃଷଦ୍, ବି. ସ୍ତ୍ରୀ. (ଦୃ-ଶଦ୍, ଷଦ୍) ପାଷାଣ, ପ୍ରସ୍ତର; ବସ୍ତୁଚଣିଲା ।

ଦୃଶଦ୍ୱତୀ, ବି. ସ୍ତ୍ରୀ. ( ଦୃଶଦ୍-ବତ୍-ଈ ) ଆଧୁନିକ ଦିଲ୍ଲୀନଗରର ଉତ୍ତରପୂର୍ବସ୍ଥିତ ନଦୀବିଶେଷ; ଦୁର୍ଗା ।

ଦୃଶା, ବି. ସ୍ତ୍ରୀ. (ଦୃଶ୍-ଅ-ଆ) ଚକ୍ଷୁ, ନୟନ ।

ଦୃଶୋପମ, ବି. ନ. (ଦୃଶା-ଉପମା) ଶ୍ୱେତପଦ୍ମ ।

ଦୃଶ୍ୟ, ବିଂ. (ଦୃଶ୍-ଯ) ଦର୍ଶନୀୟ; ସୁନ୍ଦର; ସ୍ୱରୂପ । ବି. ନ. ଦର୍ଶନୀୟ ବସ୍ତୁ । ଯଥା—

ଏହି ଭଳି ଦୃଶ୍ୟ ବନ୍ଧେ ଦେଖିଥିଲେ ଥରେ,
ଛେଦାପୁଚ୍ଛେ ବର୍ମବାଣୀ, ବଶୁମ୍ବରପୁରା । ମ. ଯା.

ଦୃଶ୍ୟକାବ୍ୟ, ବି. ନ. ରଙ୍ଗାଳୟରେ ନଟଗଣ-କର୍ତ୍ତୃକ ଦର୍ଶନୀୟ କାବ୍ୟବିଶେଷ ।

ଦୃଷ୍ଟ, ବିଂ. (ଦୃଶ୍-ତ) ଜ୍ଞାତ; ଲୌକିକ । ବି. ନ. ଦର୍ଶନ ।

ଦୃଷ୍ଟରଜାଃ, ବି. ସ୍ତ୍ରୀ. (ଦୃଷ୍ଟ-ରଜସ୍) ନବଯୁବତୀ, ପ୍ରାପ୍ତବୟସ୍କା ।

ଦୃଷ୍ଟାନ୍ତ, ବି. ପୁଂ. ( ଦୃଷ୍ଟ-ଅନ୍ତ ) ଉଦାହରଣ, ନିଦର୍ଶନ; ମୃତ୍ୟୁ ।

ଦୃଷ୍ଟି, ବି. ସ୍ତ୍ରୀ. (ଦୃଶ୍-ତି) ଚକ୍ଷୁ, ଦର୍ଶନ; ଜ୍ଞାନ ।

ଦୃଷ୍ଟିଗୋଚର, ବିଂ. ( ଦୃଷ୍ଟି-ଗୋଚର ) ନେତ୍ର-ଗୋଚର, ଚକ୍ଷୁଦ୍ୱାରା ଯାହା ଦେଖାଯାଏ ।

ଦୃଷ୍ଟିବିକ୍ଷେପ, ବି. ପୁଂ. ( ଦୃଷ୍ଟି-ବିକ୍ଷେପ ) କଟାକ୍ଷ, ଅଡ଼ଦୃଷ୍ଟି ।

ଦୃଷ୍ଟିବିଜ୍ଞାନ, ବି. ନ. ( ଦୃଷ୍ଟି-ବିଜ୍ଞାନ ) ଆଲୋକ ଓ ଦର୍ଶନବିଷୟକ ବିଦ୍ୟା ।

ଦେଈ, ବି. ସ୍ତ୍ରୀ. (ଦେବୀ ଶବ୍ଦଜ) ରାଜକନ୍ୟା; ଏ ଦେଶସ୍ଥ କାୟସ୍ଥମାନଙ୍କ ମଧ୍ୟରେ କନ୍ୟାକୁ ଦେଈ ନାମରେ ଡାକିବାର ପ୍ରଥା ଅଛି ।

ଦେଉଳ, ବି. (ଦେବକୁଳ ଶବ୍ଦଜ) ଦେବାଳୟ, ଦେବମନ୍ଦିର ।

ଦେଉଳିଆ, ବିଂ. ( ଦେଶଜ ) ଋଣୀ, ଋଣ ପରି-ଶୋଧର ଅକ୍ଷମ, ନିଃସ୍ୱ ; ଯେଉଁମାନେ ଦେଉଳରେ ସେବା ପୂଜାଦି କାର୍ଯ୍ୟ ନିର୍ବାହ କରନ୍ତି ।

ଦେଖଣାହାର, ବି. (ଦେଶଜ) ଦେଖିବା ଲୋକ, ଦର୍ଶକ ।

ଦେଖିବା, କ୍ରି. ( ଦୃଶ୍ ଧାତୁଜ ) ଦର୍ଶନ କରିବା, ନିରୀକ୍ଷଣ କରିବା ।

ଦେଣା, ବି. (ଯାବନିକ) ଋଣ ।

ଦେଦୀପ୍ୟମାନ, ବି. ( ଦୀପ୍-ଯଙ୍-ଆନ ) ଜାଜ୍ୱଲ୍ୟ-ମାନ, ଅତି ଦୀପ୍ତିବିଶିଷ୍ଟ ।

ଦେୟ, ବିଂ. (ଦା-ଯ) ଦେଣା; ଦାନର ଯୋଗ୍ୟ, ଦାନର ଉପଯୁକ୍ତ ।

ଦେବ, ବି. ପୁଂ. ( ଦିବ୍-ଅ ) ଈଶ୍ୱର ; ଦେବତା, ସୁର; ରାଜା; ବ୍ରାହ୍ମଣ ।

ଦେବକ, ବି. ପୁଂ. (ଦେବ-ଅକ) କୃଷ୍ଣଙ୍କର ମାତା-ମହ, ଦେବକୀର ପିତା । ବିଂ. କ୍ରୀଡ଼କ ।

ଦେବକର୍ଦ୍ଦମ, ବି. ପୁଂ. ( ଦେବ-କର୍ଦ୍ଦମ ) ଚନ୍ଦନ କର୍ପୂର ଓ କୁଙ୍କୁମମିଶ୍ରିତ ପଦାର୍ଥ ।

ଦେବକୀ, ଦୈବକୀ, ବି. ସ୍ତ୍ରୀ. ( ଦେବକ-ଅ-ଅପତ୍ୟାର୍ଥେ ଈ) ବସୁଦେବ ସ୍ତ୍ରୀ, କଂସର ଭଗ୍ନୀ, କୃଷ୍ଣଙ୍କର ମାତା ।

ଦେବକୁଳ, ବି. ନ. (ଦେବ-କୁଳ) ଦେବାଳୟ, ଦେଉଳ; ପୂଜାସ୍ଥାନ; ବଂଶ, ସମୂହ ।

ଦେବକୁସୁମ, ବି. ସ୍ତ୍ରୀ. (ଦେବ-କୁସୁମ) ଲବଙ୍ଗ ।

ଦେବଖାତ, ବି. ନ. ( ଦେବ-ଖାତ ) ସ୍ୱାଭାବିକ ଖାତ, ହ୍ରଦ, ଅକୃତ୍ରିମ ଜଳାଶୟ ।

ଦେବଗାୟନ, ବି. ପୁଂ. (ଦେବ-ଗାୟନ)ଗନ୍ଧର୍ବ ।

ଦେବଗିର, ବି. ପୁଂ. (ଦେବ-ଗିର) ପର୍ବତବିଶେଷ ।

ଦେବଗୁରୁ, ବ. ପୁଂ. (ଦେବ-ଗୁରୁ) ବୃହସ୍ପତି ।

ଦେବଗୃହ, ବ. ନ. ( ଦେବ-ଗୃହ ) ଦେବତାର ସ୍ଥାନ, ଦେବାଳୟ; ଚନ୍ଦ୍ର ଓ ସୂର୍ଯ୍ୟମଣ୍ଡଳ ।

ଦେବଚକିତ୍ସକ, ବ. ପୁଂ. ( ଦେବ-ଚକିତ୍ସକ ) ଅଶ୍ୱିନୀକୁମାର ।

ଦେବତରୁ, ବ. ପୁଂ. ( ଦେବ-ତରୁ ) ମନ୍ଦାର, ସନ୍ତାନ, ପାରିଜାତ, କଳ୍ପବୃକ୍ଷ, ହରିଚନ୍ଦନ ଏହି ପାଞ୍ଚ ବୃକ୍ଷ ।

ଦେବତା, ବ. ସ୍ତ୍ରୀ. (ଦେବ-ତନ୍-ଅ-ଆ) ଦେବ, ଅମର, ସୁର, ତ୍ରିଦଶ ।

ଦେବତାଡ଼, ବ. ପୁଂ. ( ଦେବ-ତଡ଼-ଅ ) ରାହୁ; ଅଗ୍ନି; ମେଘ ।

ଦେବତ୍ୱ, ବ. ନ. ( ଦେବ-ତ୍ୱ ) ଦେବତାର ଧର୍ମ ଗୁଣ ବା ଅବସ୍ଥା; ଦେବଭାବ ।

ଦେବତ୍ର, ଦେବୋତ୍ତର, } ବଂ. { (ଦେବ-ତ୍ରୈ-ଅ) (ଦେବ-ଉତ୍ତର) } ଦେବତାର ସେବା ନିମିତ୍ତ ପ୍ରଦତ୍ତ ଭୂମି ।

ଦେବଦତ୍ତ, ବଂ. (ଦେବ-ଦତ୍ତ) ଦେବତାଙ୍କ ଦତ୍ତ, ଦେବତାକର୍ତ୍ତୃକ ଦତ୍ତ । ବ. ପୁଂ. ଅର୍ଜୁନଙ୍କ ଶଙ୍ଖ ।

ଦେବଦାରୁ, ବ. ପୁଂ. ( ଦେବ-ଦାରୁ ) ସ୍ୱନାମ-ପ୍ରସିଦ୍ଧ ବୃକ୍ଷ ।

ଦେବଦାସୀ, ବ. ସ୍ତ୍ରୀ. ( ଦେବ-ଦାସୀ ) ଯେଉଁ ନର୍ତ୍ତକୀ ଦେବତା ନିକଟରେ ନୃତ୍ୟ ଗାନ କରେ, ବାରାଙ୍ଗନା ।

ଦେବଦୀପ, ବ. ପୁଂ. ( ଦେବ-ଦୀପ ) ଲୋଚନ, ଚକ୍ଷୁ ।

ଦେବଦୁନ୍ଦୁଭି, ବ. ପୁଂ. ରକ୍ତତୁଳସୀ; ଦେବଢକ୍କା ।

ଦେବଦେବ, ବ. ପୁଂ. ( ଦେବ-ଦେବ ) ବ୍ରହ୍ମା; ଶିବ; ବିଷ୍ଣୁ; ଦେବଶ୍ରେଷ୍ଠ । ଯଥା—

ନମ ଦେବଦେବ ପଶ ରଣସ୍ଥଳେ ।

ଦେବଦ୍ରୋଣୀ, ବ. ସ୍ତ୍ରୀ. (ଦେବ-ଦ୍ରୋଣୀ) ଦେବତା ନିକଟରେ ସମାରୋହପୂର୍ବକ ଯାତ୍ରା ।

ଦେବଧୂପ, ବ. ପୁଂ. ( ଦେବ-ଧୂପ ) ଗୋଗୁଳ, ଗୁଗ୍ଗୁଳ ।

ଦେବନଦୀ, ବ. ସ୍ତ୍ରୀ. (ଦେବ-ନଦୀ) ଗଙ୍ଗା ।

ଦେବପଥ, ବ. ପୁଂ. ( ଦେବ-ପଥ ) ସ୍ୱର୍ଗପଥ, ଆକାଶପଥ, ଛାୟାପଥ ।

ଦେବପୁଷ୍ପ, ବ. ସ୍ତ୍ରୀ. ( ଦେବ-ପୁଷ୍ପ ) ଇନ୍ଦ୍ରପୁଷ୍ପ, ଅମରାବତୀ ।

ଦେବପ୍ରଶ୍ନ, ଦୈବପ୍ରଶ୍ନ, } ବ. ପୁଂ. ଗ୍ରହନକ୍ଷତ୍ରାଦିର ଗତି ଓ ସଞ୍ଚାର ଅନୁସାରେ ଶୁଭା-ଶୁଭ ଜାଣିବାର ଇଚ୍ଛା ।

ଦେବଭବନ, ବ. ନ. ( ଦେବ-ଭବନ ) ସ୍ୱର୍ଗ; ଦେବାଳୟ; ଅଶ୍ୱତ୍ଥବୃକ୍ଷ ।

ଦେବଭୂତି, ବ. ସ୍ତ୍ରୀ. (ଦେବ-ଭୂତି) ମନ୍ଦାକିନୀ, ସ୍ୱର୍ଗଗଙ୍ଗା ।

ଦେବମଣି, ବ. ପୁଂ. (ଦେବ-ମଣି) କୃଷ୍ଣଙ୍କର ମଣି, କୌସ୍ତୁଭମଣି; ଶିବ ।

ଦେବମାତା, ବ. ସ୍ତ୍ରୀ. ( ଦେବ-ମାତୃ ) ଅଦିତି, କଶ୍ୟପପତ୍ନୀ ।

ଦେବମାତୃକ, ବଂ. (ଦେବ-ମାତୃ-କ) ବୃଷ୍ଟି-ଜଳୋତ୍ପନ୍ନ ଶସ୍ୟଦ୍ୱାରା ପାଳିତ ଦେଶ ।

ଦେବମାନକ, ବ. ପୁଂ. ( ଦେବ-ମାନ-କ ) କୌସ୍ତୁଭମଣି ।

ଦେବମାସ, ବ. ପୁଂ. ଗର୍ଭର ଅଷ୍ଟମ ମାସ ।

ଦେବମୁନି, ବ. ପୁଂ. ନାରଦ, ତୁମ୍ବୁରୁ ପ୍ରଭୃତି ।

ଦେବଯାନ, ବ. ନ. (ଦେବ-ଯାନ) ଦେବରଥ, ବ୍ୟୋମଯାନ ।

ଦେବଯାନୀ, ଦେବଯାନୀ, ବ. ସ୍ତ୍ରୀ. ଶୁକ୍ରାଚାର୍ଯ୍ୟ-କନ୍ୟା, ଯଯାତିରାଜାଙ୍କ ପତ୍ନୀ ।

ଦେବଯୁଗ, ବ. ପୁଂ. ଦେବପ୍ରିୟ ଯୁଗ, ସତ୍ୟ-ଯୁଗ ।

ଦେବଯୋନି, ବ. ପୁଂ. (ଦେବ-ଯୋନି) ଉପ-ଦେବତା, ଭୂତାଦି ।

ଦେବର, ବ. ପୁଂ. (ଦିବ୍-ଅର) ପତିର କନିଷ୍ଠ-ଭ୍ରାତା, ଦିଅର ।

ଦେବରାଜ, ବ. ପୁଂ. (ଦେବ-ରାଜନ୍) ଇନ୍ଦ୍ର ।

ଦେବର୍ଷି, ବ. ପୁଂ. ( ଦେବ-ଋଷି ) ନାରଦାଦି ମୁନି ।

ଦେବଳ, କ. ପୁଂ. (ଦେବ-ଲା-ଅ) ଯେ ବ୍ରାହ୍ମଣ ଗ୍ରାମ୍ୟ ଅଥବା ଅନେକ ସାଧାରଣ ଦେବତା ପୂଜା କରି ଜୀବିକା ନିର୍ବାହ କରେ ।

ଦେବଲତା, ବ. ସ୍ତ୍ରୀ. ନବମଲ୍ଲିକା ।

ଦେବଲୋକ, ବ. ପୁଂ. (ଦେବ-ଲୋକ) ସ୍ୱର୍ଗ ।

ଦେବବକ୍ତ୍ର, ବ. ପୁଂ. ( ଦେବ-ବକ୍ତ୍ର=ମୁଖ ) ଅଗ୍ନି ।

ଦେବବାଣୀ, ବ. ସ୍ତ୍ରୀ. (ଦେବ-ବାଣୀ) ସଂସ୍କୃତ-ଭାଷା ।

ଦେବଶିଳ୍ପୀ, ବ. ପୁଂ. (ଦେବ-ଶିଳ୍ପିନ୍) ବିଶ୍ୱକର୍ମା । ଯଥା—

ବହୁଁ ଦେବଶିଳ୍ପୀ ଯା ଦେଖି ଲଜ୍ଜିଥିଲେ ଲଜ । ଚ. ଚ.

ଦେବବୃକ୍ଷ, ବ. ପୁଂ. ମନ୍ଦାରବୃକ୍ଷ; ଗୁଗ୍ଗୁଲ; ସପ୍ତପର୍ଣ୍ଣବୃକ୍ଷ ।

ଦେବବ୍ରତ, ବ. ପୁଂ. (ଦେବ=ଇନ୍ଦ୍ରିୟ ସଂଯମ-ବ୍ରତ) ଗାଙ୍ଗେୟ, ଭୀଷ୍ମ ।

ଦେବସେନା, ବ. ସ୍ତ୍ରୀ. (ଦେବ-ସେନା) ଦେବ-ସୈନ୍ୟ; ବ୍ରହ୍ମାର କନ୍ୟା; ସ୍କନ୍ଦପତ୍ନୀ ।

ଦେବସେନାପତି, ବ. ପୁଂ. (ଦେବସେନା-ପତି) କାର୍ତ୍ତିକେୟ ।

ଦେବସ୍ୱ, ବ. ନ. (ଦେବ-ସ୍ୱ) ଦେବତାର ବସ୍ତୁ, ଯାଜ୍ଞିକ ଧନ, ଦେବସେବାନିମିତ୍ତ ନିୟୋଜିତ ଧନ ।

ଦେବହୂତି, ବ. ସ୍ତ୍ରୀ. ସ୍ୱାୟମ୍ଭୁବ ମନୁର କନ୍ୟା ।

ଦେବାୟୁଧ, ବ. ନ. (ଦେବ-ଆୟୁଧ) ଶକ୍ରଧନୁ; ଦେବାସ୍ତ୍ର; ବଜ୍ରାଦି ।

ଦେବାର, କ୍ରି. (ଦା ଧାତୁଜ) ଦାନ କରିବାର ।

ଦେବାଳୟ, ବ. ପୁଂ. (ଦେବ-ଆଳୟ) ଦେଉଳ, ମନ୍ଦିର; ସ୍ୱର୍ଗ ।

ଦେବାଶ୍ୱ, ବ. ପୁଂ. (ଦେବ-ଅଶ୍ୱ) ଉଚ୍ଚୈଃଶ୍ରବାଃ, ଇନ୍ଦ୍ରଘୋଟକ ।

ଦେବୀ, ବ. ସ୍ତ୍ରୀ. ( ଦିବ୍-ଅ-ଈ ) ଦେବତା, ଠାକୁରାଣୀ; ମାନନୀୟା ସ୍ତ୍ରୀ; ବ୍ରାହ୍ମଣୀ ।

ଦେବେଶ, ବ. ପୁଂ. (ଦେବ-ଈଶ) ଶିବ, ମହା-ଦେବ ।

ଦେଶ, ବ. ପୁଂ. (ଦିଶ୍-ଅ) ପୃଥିବୀର ଅଂଶ-ବିଶେଷ, ରାଜ୍ୟ, ପୃଥିବୀର ଯେଉଁ ଅଂଶରେ ଏକଜାତୀୟ ଲୋକର ବାସ ଥାଏ; ଅଂଶ, ଭାଗ । ଯଥା—ନିମ୍ନଦେଶ, ପୃଷ୍ଠଦେଶ ।

ଦେଶକ, ବ. ପୁଂ. (ଦିଶ୍-ଅକ) ଶାସନକର୍ତ୍ତା, ଉପଦେଶକ ।

ଦେଶକାଳଜ୍ଞ, } ବିଂ. (ଦେଶ-କାଳ-ଜ୍ଞ,
ଦେଶକାଳବିଦ୍, } ବିଦ୍) ଯେଉଁ ବ୍ୟକ୍ତି ଦେଶ କାଳ ବୁଝି କାର୍ଯ୍ୟ କରେ ।

ଦେଶଧର୍ମ, ବ. ପୁଂ. ( ଦେଶ-ଧର୍ମ ) ଦେଶର ବ୍ୟବହାର, ଦେଶାଚାର ।

ଦେଶବିଧାନ, ବ. ନ. (ଦେଶ-ବିଧାନ) ଦେଶୀୟ ଲୋକସମୂହର ଲୌକିକ ଆଚରଣସମ୍ବନ୍ଧୀୟ ନିୟମ ।

ଦେଶାଚାର, ବ. ପୁଂ. (ଦେଶ-ଆଚାର) ଦେଶର ରୀତି, ଦେଶବ୍ୟବହାର ।

ଦେଶାଧିପ, } ବ. ପୁଂ. (ଦେଶ-ଅଧିପ, ଅଧି-
ଦେଶାଧିପତି, } ପତି) ଦେଶର ଶାସନକର୍ତ୍ତା, ରାଜା ।

ଦେଶାନ୍ତର, ବ. ପୁଂ. (ଦେଶ-ଅନ୍ତର) ଅନ୍ୟ-ଦେଶ, ଦୂରଦେଶ ।

ଦେଶୀୟ, ଦେଶୀ, ବିଂ. (ଦେଶ-ଈୟ, ଇନ୍) ଦେଶଜାତ, ଦେଶସମ୍ବନ୍ଧୀୟ ।

ଦେହ, ବ. ପୁଂ. ନ. (ଦିହ୍-ଅ) ଅଙ୍ଗ, ଶରୀର । ପୁଂ. ଲେପନ; ଜୀବନ, ଜୀବିତକାଳ । ଯଥା—

ସେବା କର ନାହିଁ ହରେ ତା ଦେହରେ ।

ଦେହକ୍ଷୟ, ବ. ପୁଂ. ( ଦେହ-କ୍ଷୟ ) ରୋଗ, ପୀଡ଼ା । ନ. ଦେହନାଶ ।

ଦେହଜ, ବ. ପୁଂ. (ଦେହ-ଜନ୍-ଅ) ପୁତ୍ର । ସ୍ତ୍ରୀ. କନ୍ୟା ।

ଦେହଦ, ବ. ପୁଂ. ( ଦେହ-ଦା-ଅ ) ପାରଦ, ପାରା ।

ଦେହଭୃତ୍, ବ୍. ପୁଂ. ( ଦେହ-ଭୃତ୍ ) ଜୀବ, ଜନ୍ତୁ; ଆତ୍ମା ।

ଦେହଯାତ୍ରା, ବ. ସ୍ତ୍ରୀ. (ଦେହ-ଯାତ୍ରା) ପ୍ରାଣ-ଧାରଣର ଉପଯୋଗୀ ବ୍ୟାପାର; ଜୀବନଯାପନ; ମୃତ୍ୟୁ ।

ଦେହଲ, } ବ. ସ୍ତ୍ରୀ. (ଦେହ-ଲା-ଅ-ଇ, ଈ)
ଦେହଲୀ, } ଚୌକାଠର ତଳ ବା ଉପର କାଠ, ଏରୁଣ୍ଡୀ । ଯଥା—

ଚକ୍ରବାତ ପର ଦେହଳକ ବାଳା ତହୁଁ
ଅରୁଣ ଅମ୍ବୁଜପଦ ନ ପାରେ ବଳାଇ । ଲ. ବ.

ଦେହସାର, ବ. ପୁଂ. (ଦେହ-ସାର) ମଜ୍ଜା, ଅସ୍ଥି ଏବଂ ମାଂସମଧ୍ୟସ୍ଥ ସ୍ନେହବିଶେଷ ।

ଦେହୀ, ବିଂ. (ଦେହ-ଇନ୍) ପ୍ରାଣୀ, ଶରୀରୀ । ବ. ପୁଂ. ଆତ୍ମା; ଜୀବ ।

ଦେହୁଡ଼ୀ, (ହିନ୍ଦୀ) ସିଂହଦ୍ୱାର ।

ଦୈତେୟ, } ବ. ପୁଂ. (ଦିତି-ଏୟ,ଯ) ଅସୁର,
ଦୈତ୍ୟ, } ଦିତିସୁତ ।

ଦୈତ୍ୟଗୁରୁ, ବ. ପୁଂ. (ଦୈତ୍ୟ-ଗୁରୁ) ଶୁକ୍ରା-ଚାର୍ଯ୍ୟ ।

ଦୈତ୍ୟଦେବ, ବ. ପୁଂ. (ଦୈତ୍ୟ-ଦେବ) ବାୟୁ; ବରୁଣ ।

ଦୈତ୍ୟମାତା, ବ. ସ୍ତ୍ରୀ. ଦିତି, କାଶ୍ୟପପତ୍ନୀ ।

ଦୈତ୍ୟାରି, ବ. ପୁଂ. (ଦୈତ୍ୟ-ଅରି) କୃଷ୍ଣ, ବିଷ୍ଣୁ; ଦେବତା ।

ଦୈନ, ବ. ନ. (ଦୀନ-ଅ) ଦୀନତା, ଦାରିଦ୍ର୍ୟ । ବିଂ. ଦୈନିକ ।

ଦୈନନ୍ଦିନ, ବିଂ. (ଦିନ-ଦିନ-ଅ) ପ୍ରାତ୍ୟହିକ, ପ୍ରତିଦିବସୀୟ ।

ଦୈନିକ, ବିଂ. (ଦିନ-ଇକ) ଦିନସମ୍ବନ୍ଧୀୟ, ପ୍ରାତ୍ୟହିକ ।

ଦୈନ୍ୟ, ବ. ନ. (ଦୀନ-ଯ) ଦାରିଦ୍ର୍ୟ, ଦୁଃଖ, କାର୍ପଣ୍ୟ; ଶୋଚନୀୟତା, କ୍ଷୋଭ, ସନ୍ତାପ ।

ଦୈର୍ଘ୍ୟ, ବ. ନ. (ଦୀର୍ଘ-ଯ) ଦୀର୍ଘତା, ଲମ୍ବ-ପରିମାଣ ।

ଦୈବ, ବ. ପୁଂ. ନ. (ଦେବ-ଅ) ଭାଗ୍ୟ, ଅଦୃଷ୍ଟ; ବିବାହବିଶେଷ । ବିଂ. ଦେବସମ୍ବନ୍ଧୀୟ; ଭାଗ୍ୟଜାତ; ସ୍ୱର୍ଗଲୋକସଂକ୍ରାନ୍ତ; ଲୌକିକ ।

ଦୈବକର୍ମ, ବ. ନ. ( ଦୈବ-କର୍ମନ୍ ) ଦେବ ଉଦ୍ଦେଶ୍ୟରେ ଯେଉଁ ସବୁ କାର୍ଯ୍ୟ କରାଯାଏ, ଯଜ୍ଞାଦି କର୍ମ ।

ଦୈବଗତି, ବ. ସ୍ତ୍ରୀ. ଦୈବଘଟନା ।

ଦୈବଘଟନା, ବ. ସ୍ତ୍ରୀ. ଅତର୍କିତ ଘଟନା, ଅସମ୍ଭାବିତ ବ୍ୟାପାର ।

ଦୈବଜ୍ଞ, ବ. ପୁଂ. ( ଦୈବ-ଜ୍ଞା-ଅ ) ଗଣକ, ଭାଗ୍ୟକଥୟିତା, ଜ୍ୟୋତିଷଶାସ୍ତ୍ରଜ୍ଞ । ବିଂ. ଯେ ଗଣନାଦ୍ୱାରା ଶୁଭାଶୁଭ ନିର୍ଦ୍ଦେଶ କରିପାରେ ।

ଦୈବଦୁର୍ବିପାକ, ବ. ପୁଂ. ଦୈବପ୍ରତିକୂଳତା, ଭାଗ୍ୟବିପର୍ଯ୍ୟୟ ।

ଦୈବବାଣୀ, ବ. ସ୍ତ୍ରୀ. (ଦୈବ-ବାଣୀ) ଆକାଶ-ବାଣୀ, ଅମାନୁଷୀ କଥା, ଦେବତାମାନେ ଅଲକ୍ଷିତ ଥାଇଁ ଯେଉଁ ଉପଦେଶ ବାକ୍ୟ ନିର୍ଦ୍ଦେଶ କରନ୍ତି; ସଂସ୍କୃତଭାଷା ।

ଦୈବବିଡ଼ମ୍ବନା, ବ. ସ୍ତ୍ରୀ. ଦୈବର ପ୍ରତିକୂଳତା, ବିଧିବିଡ଼ମ୍ବନା ।

ଦୈବଯୋଗ, ବ. ପୁଂ. ଦୈବଘଟନା । କ୍ରି. ବିଂ. ଦୈବବଶତଃ ।

ଦୈବାତ୍, ଅଂ. (ଦୈବ-ଅତ୍) ଦୈବବଶତଃ, ଅକସ୍ମାତ୍, ହଠାତ୍ ।

ଦୈବାଦେଶ, ବ. ପୁଂ. (ଦୈବ-ଆଦେଶ) ଦୈବ-ବାଣୀ, ପ୍ରତ୍ୟାଦେଶ ।

ଦୈବାୟତ୍ତ, ବିଂ. ( ଦୈବ-ଆୟତ୍ତ ) ଯାହା ମନୁଷ୍ୟର ଇଚ୍ଛାନୁସାରେ ଘଟଇ ନାହିଁ, ଦୈବାଧୀନ ।

ଦୈବିକ, ବିଂ. (ଦେବ-ଇକ) ଦେବସମ୍ବନ୍ଧୀୟ; ଦୈବଘଟିତ ।

ଦୈବୀ, ବ. ସ୍ତ୍ରୀ. ( ଦେବ-ଅ-ଈ ) ଦୈବଘଟନା, ଦୈବଯୋଗ ।

ଦୈବୋପହତ, ବଂ. ( ଦୈବ-ଉପହତ ) ହତଭାଗ୍ୟ, ଦୈବ ଯାହାର ପ୍ରତିକୂଳ ହୋଇ-ଅଛି ।

ଦୈଶିକ, ବଂ. ( ଦେଶ-ଇକ ) ଦେଶସମ୍ବନ୍ଧୀୟ, ଏକ ଦେଶସଂକ୍ରାନ୍ତ ।

ଦୈହିକ, ବଂ. ( ଦେହ-ଇକ ) ଦେହସମ୍ବନ୍ଧୀୟ, ଶାରୀରିକ ।

ଦୋକାନ, (ଯାବନିକ) ପଣ୍ୟଶାଳା ।

ଦୋଗ୍ଧ୍ରୀ, ବ.ସ୍ତ୍ରୀ. (ଦୁହ୍-ତୃ-ଈ) ଦୁଗ୍ଧବତୀ ଧେନୁ ।

ଦୋଦୁଲ୍ୟମାନ, ବଂ. ( ଦୁଲ୍-ଯଙ୍-ଅନ ) ଯାହା ପୁନଃ ପୁନଃ ଦୋହଲୁଅଛି ।

ଦୋର୍ଦଣ୍ଡ, ବ. ପୁଂ. ( ଦୋସ୍-ଦଣ୍ଡ ) ବାହୁଦଣ୍ଡ, ଭୁଜଦଣ୍ଡ, ଦୁଇ ବାହୁ ।

ଦୋର୍ମୂଳ, ବ. ନ. (ଦୋସ୍-ମୂଳ) କକ୍ଷ, ବାହୁ-ମୂଳ ।

ଦୋଳ, ବ. ପୁଂ. ( ଦୋଲ-ଅ ) ଦୋଳନ; ଦୋଳା; ଝୁଲଣ; ବିମାନାଦି ଯାନ; ପର୍ବ-ବିଶେଷ ।

ଦୋଳକ, ବ. ପୁଂ. ( ଦୋଲ-କ ) ସୂକ୍ଷ୍ମସୂତ୍ରରେ ବନ୍ଧା ଦୋଳାୟମାନ ଭାରି ବସ୍ତୁ ।

ଦୋଳାୟମାନ, ବଂ. ( ଦୋଲ-ଯ-ମାନ ) ଦୋଦୁଲ୍ୟମାନ, ଯାହା ଦୋହଲୁଅଛି ।

ଦୋଲାୟିତ, ବ. ନ. (ଦୋଳା-ଯ-ତ) ଇତସ୍ତତଃ ଚଳନ, କମ୍ପନ ।

ଦୋଷ,ବ. ପୁଂ. (ଦୁଷ୍-ଅ) ପାପ; ଅପରାଧ; ଅନିଷ୍ଟ; କୁକର୍ମ; ନିନ୍ଦା; କଳଙ୍କ; ତ୍ରୁଟି; ହାନି, କ୍ଷତି; ବାତ ପିତ୍ତ କଫାଦିର ଅନ୍ୟଥା ଭାବ ।

ଦୋଷଗ୍ରାହୀ, ବଂ. (ଦୋଷ-ଗ୍ରହ-ଇନ୍) ଯେ ଦୋଷ ଗ୍ରହଣ କରେ ।

ଦୋଷଜ୍ଞ,ବ. ପୁଂ. (ଦୋଷ-ଜ୍ଞ) ପଣ୍ଡିତ; ଚିକିତ୍ସକ । ବଂ, ଯେ ଦୋଷ ଜାଣେ ।

ଦୋଷତ୍ରୟ, ବ. ନ. (ଦୋଷ-ତ୍ରୟ) ବାତ, ପିତ୍ତ, କଫ ଏହି ତ୍ରିବିଧ ଦୋଷ ।

ଦୋଷା, ବ. ସ୍ତ୍ରୀ. (ଦୁଷ୍-ଅ) ରାତ୍ରି; ବାହୁ ।

ଦୋଷାକର, ବ. ପୁଂ. ( ଦୋଷା-କର ) ଚନ୍ଦ୍ର, ନିଶାକର । ଯଥା—

ପ୍ରଦୋଷରେ ନାଶ କଲ୍ଲ ଦୋଷାକର ହୋଇ ।

ଦୋଷାତିଲକ, ଦୋଷାସ୍ୟ, ବ. ପୁଂ. (ଦୋଷା-ତିଲକ, ଆସ୍ୟ) ପ୍ରଦୀପ, ଦୀପ ।

ଦୋଷାବହ, ବଂ. ( ଦୋଷ-ଆବହ ) ଯହିଁରେ ଦୋଷ ଅଛି, ଦୋଷଜନକ ।

ଦୋଷୀ, ବଂ. (ଦୋଷ-ଇନ୍) ଅପରାଧୀ, ଦୋଷ-ଯୁକ୍ତ ।

ଦୋସର, ବଂ. (ଦ୍ୱିତୀୟ ଶବ୍ଦଜ) ସଙ୍ଗୀ ।

ଦୋସରା, ବଂ. (ଦ୍ୱିତୀୟ ଶବ୍ଦଜ ) ଅନ୍ୟ, ଭିନ୍ନ; ଦ୍ୱିତୀୟ ।

ଦୋସାଧୁ, ବ. (ଦେଶଜ) କଣ୍ଠୁଆଳ ।

ଦୋହ, ବ. ପୁଂ. (ଦୁହ୍-ଅ) ଦୋହନ; ଦୋହନ ପାତ୍ର; ସନ୍ତୋଷ; ଦୁଗ୍ଧ; ଛନ୍ଦୋବିଶେଷ; ତୃପ୍ତି ।

ଦୋହକ,ବଂ. (ଦୋହ-ଅକ) ଯେ ଦୁଗ୍ଧ ଦୋହନ କରେ ।

ଦୋହଦ, ବ. ନ. (ଦୋହ=ସନ୍ତୋଷ-ଦ) ଇଚ୍ଛା; ଗର୍ଭିଣୀର ଅଭିଳାଷ; ଗର୍ଭଚିହ୍ନ ।

ଦୋହଦବତୀ, ବଂ. (ଦୋହଦ-ବତ୍-ଈ) ଦ୍ରବ୍ୟ-ବିଶେଷରେ ସ୍ପୃହାବତୀ; ଗର୍ଭିଣୀ ।

ଦୋହଦଲକ୍ଷଣ, ବ.ନ. (ଦୋହଦ-ଲକ୍ଷଣ) ଭ୍ରୂଣ, ଗର୍ଭସ୍ଥ ଶିଶୁ; ଗର୍ଭଚିହ୍ନ ।

ଦୋହଦିନୀ, ବ. ସ୍ତ୍ରୀ. (ଦୋହଦ-ଇନ୍) ଗର୍ଭବତୀ ।

ଦୋହନ, ବ. ନ. (ଦୁହ୍-ଅନ) ଦୁହିଁବା; ସଂଗ୍ରହ-କରଣ । ସ୍ତ୍ରୀ. ଦୋହନପାତ୍ର ।

ଦୋହଲିବା, (ଦେଶଜ) ଝୁଲିବା, ହଲିବା ।

ଦୋହାଇ, ବ. (ଦଇ-ହାହା ଦୁଃଖସୂଚକ ଅବ୍ୟୟ) ସ୍ୱତ୍ତ୍ୱର ପ୍ରାର୍ଥନାକରଣ; ଶପଥ, ଗୁଣ ।

ଦୌଡ଼ିବା, କ୍ରି. (ଦେଶଜ) ଶୀଘ୍ର ଗମନକରିବା ।

ଦୌର୍ଗମ୍ୟ, ବ. ନ. (ଦୁର୍ଗମନ୍-ଯ) ଅତ୍ୟାଗ୍ରହ, ଉପଦ୍ରବ, କଷ୍ଟ୍ରଭତା ।

ଦୌର୍ବଲ୍ୟ, ବ. ନ. (ଦୁର୍ବଲ-ଯ) ଦୁର୍ବଳତା, କ୍ଷୀଣତା ।

ଦୌର୍ଭାଗ୍ୟ, ବ. ନ. (ଦୁର୍ଭଗା-ଯ) ଦୁରଦୃଷ୍ଟ, ମନ୍ଦଭାଗ୍ୟ ।

ଦୌଲତ, (ଆରବୀ) ଧନ, ସମ୍ପତ୍ତି, ଅର୍ଥ ।

ଦୌବାରିକ, ବ. ପୁଂ. (ଦ୍ୱାର-ଇକ) ଦ୍ୱାରପାଳ, ଦ୍ୱାରୀ, ଦ୍ୱାରରେ ନିଯୁକ୍ତ ଲୋକ ।

ଦୌହିତ୍ର, ବ. ପୁଂ. (ଦୁହିତୃ-ଅ) ଦୁହିତାର ପୁତ୍ର, ନାତି ।

ଦୌହିତ୍ରୀ, ବ. ସ୍ତ୍ରୀ. (ଦୁହିତୃ-ଈ) ଦୁହିତାର କନ୍ୟା, ଝିଅର ଝିଅ, ନାତୁଣୀ ।

ଦ୍ୟାବାପୃଥିବୀ, ଦ୍ୟାବାଭୂମି, ବ. ସ୍ତ୍ରୀ. (ଦ୍ୟୋ-ପୃଥିବୀ, ଭୂମି) ପୃଥିବୀ ଓ ସ୍ୱର୍ଗ ଉଭୟ; ପୃଥିବୀ ଓ ଆକାଶର ମଧ୍ୟସ୍ଥାନ ।

ଦ୍ୟୁ, ବ. ନ. (ଦିବ୍-ଂ) ଆକାଶ; ସ୍ୱର୍ଗ ଦିନ; ଅଗ୍ନି; ସୂର୍ଯ୍ୟ ।

ଦ୍ୟୁତ୍, ବ. ପୁଂ. (ଦ୍ୟୁତ୍-ଂ) କିରଣ, ତେଜଃ ।

ଦ୍ୟୁତି, ବ. ସ୍ତ୍ରୀ. (ଦ୍ୟୁତ୍-ଇ) ଦୀପ୍ତି; ପ୍ରକାଶ; ଶୋଭା; ତେଜଃ, କିରଣ ।

ଦ୍ୟୁତିକର, ବ. ପୁଂ. (ଦ୍ୟୁତି-କର) ଧ୍ରୁବନକ୍ଷତ୍ର । ବିଂ. ଦୀପ୍ତିକାରକ ।

ଦ୍ୟୁତିମାନ୍, ବିଂ. (ଦ୍ୟୁତି-ମତ୍) ପ୍ରଶସ୍ତ କାନ୍ତିଯୁକ୍ତ ।

ଦ୍ୟୁପତି, ବ. ପୁଂ. (ଦ୍ୟୁ-ପତି)<br>ଦ୍ୟୁମଣି, ବ. ପୁଂ. (ଦ୍ୟୁ-ମଣି) } ସୂର୍ଯ୍ୟ; ଇନ୍ଦ୍ର ।

ଦ୍ୟୁମତ୍ସେନ, ବ. ପୁଂ. ନୃପବିଶେଷ, ସତ୍ୟବାନଙ୍କର ପିତା ।

ଦ୍ୟୁମ୍ନ, ବ. ନ. (ଦ୍ୟୁ-ମ୍ନା-ଅ) ଧନ, ସମ୍ପତ୍ତି; ହିରଣ୍ୟ, ସୁବର୍ଣ୍ଣ; ବଳ, ସାମର୍ଥ୍ୟ ।

ଦ୍ୟୁଲୋକ, ବ. ପୁଂ. (ଦ୍ୟୁ-ଲୋକ) ସ୍ୱର୍ଗଲୋକ ।

ଦ୍ୟୂତ, ବ. ନ. (ଦିବ୍-ତ) ପାଶକ୍ରୀଡ଼ା, ଜୁଆ-ଖେଳ, ବାଜି ରଖି ଖେଳିବା ।

ଦ୍ୟୂତକର, ବ. ପୁଂ. (ଦ୍ୟୂତ-କର) ପାଶକ୍ରୀଡ଼କ ।

ଦ୍ୟୂତବୀଜ, ବ. ନ. (ଦ୍ୟୂତ-ବୀଜ) କପର୍ଦ୍ଦକ, କଉଡ଼ି ।

ଦ୍ୟୂନ, ବିଂ. (ଦିବ୍-ତ) କ୍ରୀଡ଼ାଶୀଳ ।

ଦ୍ୟୋ, ବ. ସ୍ତ୍ରୀ. (ଦିବ୍-ଓ) ସ୍ୱର୍ଗ; ଆକାଶ ।

ଦ୍ୟୋତ, ବ. ପୁଂ. (ଦ୍ୟୁତ୍-ଅ) ଆତପ; ଆଲୋକ, ଦୀପ୍ତି; ପ୍ରକାଶ ।

ଦ୍ୟୋତକ, ବିଂ. (ଦ୍ୟୁତ୍-ଅକ) ବ୍ୟଞ୍ଜକ; ଉଦ୍ବୋଧକ; ସୂଚକ ।

ଦ୍ୟୋତିତ, ଦ୍ୟୁତିତ, ବିଂ. (ଦ୍ୟୋତ-ତ) ଦୀପିତ, ପ୍ରକାଶିତ; ଶୋଭିତ; ଉଦ୍ବୋଧିତ ।

ଦ୍ୟୋସଦ୍, ବ. ପୁଂ. (ଦ୍ୟୋ-ସଦ୍) ଦେବତା ।

ଦ୍ରଗଡ଼, ବ. ପୁଂ. ବାଦ୍ୟବିଶେଷ ।

ଦ୍ରଢ଼ିମା, ବ. ପୁଂ. (ଦୃଢ଼-ଇମନ୍) କାଠିନ୍ୟ, ଦୃଢ଼ତା ।

ଦ୍ରବ, ବ. ପୁଂ. (ଦ୍ରୁ-ଅ) ଗତି; ଗଳନ; ପଳାୟନ; ବେଗ; ପରିହାସ । ବିଂ. ତରଳ, ଗଳିତ ।

ଦ୍ରବଣ, ବ. ନ. (ଦ୍ରୁ-ଅନ) କ୍ଷରଣ; ଗତି; ଅନୁତାପ ।

ଦ୍ରବିଡ଼, ବ. ପୁଂ. (ଦ୍ରୁ-ଇଡ଼) ମ୍ଳେଚ୍ଛବିଶେଷ, ଦେଶବିଶେଷ ।

ଦ୍ରବୀକରଣ, ବ. ନ. (ଦ୍ରବ-କରଣ) ଦ୍ରବ କରିବା, ତରଳ କରିବା ।

ଦ୍ରବୀକୃତ, ବିଂ. (ଦ୍ରବ-କୃତ) ଯାହା ତରଳା ଯାଇଅଛି ।

ଦ୍ରବୀଭୂତ, ବିଂ. (ଦ୍ରବ-ଭୂତ) ତରଳିତ, ଯାହା ଦ୍ରବ ହୋଇଅଛି ।

ଦ୍ରବ୍ୟ, ବ. ନ. (ଦ୍ରୁ-ଯ) ପଦାର୍ଥ, ସାମଗ୍ରୀ, ବସ୍ତୁ ।

ଦ୍ରଷ୍ଟବ୍ୟ, ବିଂ. (ଦୃଶ୍-ତବ୍ୟ) ଦର୍ଶନୀୟ, ଦର୍ଶନ-ଯୋଗ୍ୟ ।

ଦ୍ରଷ୍ଟା, ବିଂ. (ଦୃଶ୍-ତୃ) ଯେ ଦେଖେ, ଦର୍ଶକ; ସାକ୍ଷୀ; ବିଚାରକ ।

ଦ୍ରାକ୍ଷା, ବ. ସ୍ତ୍ରୀ. (ଦ୍ରାକ୍ଷ-ଅ) କିସ୍‌ମିସ୍, ଅଙ୍ଗୁର ।

ଦ୍ରାଘିମା, ବ. ପୁଂ. (ଦୀର୍ଘ-ଇମନ୍) ଦୈର୍ଘ୍ୟ; ପୃଥିବୀ ଗୋଲକର ଉତ୍ତର ଓ ଦକ୍ଷିଣ କେନ୍ଦ୍ର ଭେଦ କରି ପୃଥିବୀ ଉପରେ କଳ୍ପିତ ରେଖା ।

ଦ୍ରାଘିମାନ୍ତର, ଏକ ଦ୍ରାଘିମାଂଶଠାରୁ ଅନ୍ୟ ଦ୍ରାଘିମାଂଶ ପର୍ଯ୍ୟନ୍ତ ସ୍ଥାନର ଦୂରତ୍ୱ ।

ଦ୍ରାଘିଷ୍ଠ, ବିଂ. (ଦୀର୍ଘ ଇଷ୍ଠ) ଅତ୍ୟନ୍ତ ଦୀର୍ଘ ।

ଦ୍ରାବ, ବି. ପୁଂ. (ଦ୍ରବ-ଅ) କ୍ଷରଣ; ଶୀଘ୍ରଗମନ ।

ଦ୍ରାବକ, ବି. ପୁଂ. (ଦ୍ରୁ-ଅକ) ରସିକ; ଲମ୍ପଟ; ଚନ୍ଦ୍ରକାନ୍ତମଣି; ସ୍ପର୍ଶମଣି; ଚୋର; ସୋହାଗ । ବିଂ. ଦ୍ରବକାରକ; ପ୍ରବର୍ତ୍ତକ ।

ଦ୍ରାବଡ଼; ବି. ପୁଂ. (ଦ୍ରବଡ଼-ଅ) ପ୍ରଦେଶବିଶେଷ ।

ଦ୍ରାବ୍ୟ, ବିଂ. (ଦ୍ରବ-ଯ) ଯେ ସବୁ ପଦାର୍ଥ ତାପ ସଂଯୋଗରେ ତରଳ ହୁଏ । ଯଥା—ସ୍ୱର୍ଣ୍ଣ, ରୌପ୍ୟ, ସୋହାଗ, ସୀସା ।

ଦ୍ରୁ, ବି. ପୁଂ. (ଦ୍ରୁ-ଉ) ବୃକ୍ଷ, ଶାଖା । ସ୍ତ୍ରୀ. ଗତି ।

ଦ୍ରୁଣ, ବି. ନ. (ଦ୍ରୁଣ୍-ଅ) ଧନୁକ; ଖଡ୍ଗ । ପୁଂ. ଭ୍ରମର; ବୃଶ୍ଚିକ; ଖଳ ।

ଦ୍ରୁଣସ, ବିଂ. (ଦ୍ରୁ-ନାସିକା, ନାସିକା ସ୍ଥାନରେ ନସ୍) ଦୀର୍ଘନାସିକାଯୁକ୍ତ ।

ଦ୍ରୁତ, ବିଂ. (ଦ୍ରୁ-ତ) ପଳାୟିତ; ଧାବିତ; ଦ୍ରବୀଭୂତ; ଆର୍ଦ୍ର; ଶୀଘ୍ର । ବି. ନ. ଶୀଘ୍ରତା ।

ଦ୍ରୁତି, ବି. ସ୍ତ୍ରୀ. (ଦ୍ରୁ-ତି) ପଳାୟନ; ଦ୍ରବୀଭାବ; ତରଳ ହୋଇଯିବା ।

ଦ୍ରୁନଖ, ବି. ପୁଂ. (ଦ୍ରୁ-ନଖ) କଣ୍ଟକ ।

ଦ୍ରୁପଦ, ବି. ପୁଂ. ପଞ୍ଚାଳଦେଶରଜା, ପାଣ୍ଡବଙ୍କ ଶ୍ୱଶୁର, ଚନ୍ଦ୍ରବଂଶୀୟ ନୃପବିଶେଷ ।

ଦ୍ରୁମ, ବି. ପୁଂ. (ଦ୍ରୁ-ମ) ଗଛ, ବୃକ୍ଷ, ପାରିଜାତ ବୃକ୍ଷ; କୁବେର ।

ଦ୍ରୁମବ୍ୟାଧ, ବି. ପୁଂ. (ଦ୍ରୁମ-ବ୍ୟାଧି) ଲାକ୍ଷା, ଅଳତା । ନ. ବୃକ୍ଷରୋଗ ।

ଦ୍ରୁମର, ବି. ପୁଂ. (ଦ୍ରୁମ-ର) କଣ୍ଟକ, କଣ୍ଟା ।

ଦ୍ରୁହ, ବିଂ. (ଦ୍ରୁହ-୦) ଅପକାରକ, ଘାତକାରକ, ଅନିଷ୍ଟକାରୀ । ବି. ପୁଂ. ପୁତ୍ର । ସ୍ତ୍ରୀ. କନ୍ୟା ।

ଦ୍ରୁହ୍ୟୁ, ବି. ପୁଂ. ଯଯାତି ରାଜାର ପୁତ୍ରବିଶେଷ ।

ଦ୍ରୋଣ, ବି. ପୁଂ. ନ. (ଦ୍ରୁ-ନ) ୩୨ ସେର ପରିମାଣ; କୁରୁବଂଶର ଗୁରୁ, ଦ୍ରୋଣାଚାର୍ଯ୍ୟ; ଡାମରକୁଆ; ବୃଶ୍ଚିକ; ବୃହତ୍ କଳାଶସ୍ୱ; ମେଘବିଶେଷ; ପର୍ବତବିଶେଷ ।

ଦ୍ରୋଣାଚାର୍ଯ୍ୟ, ବି. ପୁଂ. (ଦ୍ରୋଣ-ଆଚାର୍ଯ୍ୟ) ଭରଦ୍ୱାଜମୁନିପୁତ୍ର, ଅଶ୍ୱତ୍ଥାମାଙ୍କର ପିତା, କୁରୁବଂଶର ଗୁରୁ ।

ଦ୍ରୋଣି, ଦ୍ରୋଣୀ, ବି. ସ୍ତ୍ରୀ. (ଦ୍ରୁ-ନ, ଣୀ) ଜଳସେଚନୀ; ଜଳକୁଣ୍ଡ; ଦେଶବିଶେଷ; ପର୍ବତବିଶେଷ । ଉପତ୍ୟକାର୍ଥେ । ଯଥା—

ତୀର୍ଥାଶ୍ରମଗିରିପୂର୍ଣ୍ଣ ମହାନଦୀଦ୍ରୋଣି ।

ଦ୍ରୋହ, ବି. ପୁଂ. (ଦ୍ରୁହ-ଅ) ବିରୁଦ୍ଧାଚରଣ; ଅପକାର; ଅନିଷ୍ଟ ଚିନ୍ତା; ହିଂସା; ପରାଭବ ।

ଦ୍ରୋହୀ, ବିଂ. (ଦ୍ରୁହ-ଇନ୍) ଅନିଷ୍ଟଚେଷ୍ଟୀ, ଅପକାରୀ, ଯେ ଅନିଷ୍ଟ ଚିନ୍ତା କରେ ।

ଦ୍ରୌଣାୟନ, ଦ୍ରୌଣାୟନି, ଦ୍ରୌଣି, ବି. ପୁଂ. (ଦ୍ରୋଣ-ଅୟନ-ଅୟନି) ଦ୍ରୋଣପୁତ୍ର, ଅଶ୍ୱତ୍ଥାମା ।

ଦ୍ରୌପଦୀ, ବି. ସ୍ତ୍ରୀ. (ଦ୍ରୁପଦ-ଅ-ଈ) ପାଣ୍ଡବମାନଙ୍କର ସ୍ତ୍ରୀ, ଦ୍ରୁପଦରାଜାଙ୍କ କନ୍ୟା ।

ଦ୍ରୌପଦେୟ, ବି. ପୁଂ. (ଦ୍ରୌପଦୀ-ଏୟ, ଅପତ୍ୟାର୍ଥେ) ଯୁଧିଷ୍ଠିରାଦି ପଞ୍ଚଭ୍ରାତାଙ୍କର ଦ୍ରୌପଦୀ ଗର୍ଭଜାତ ପଞ୍ଚ ପୁତ୍ର ।

ଦ୍ୱନ୍ଦ, ଦ୍ୱନ୍ଦ୍ୱ, ବି. ନ. (ଦ୍ୱି ଶବ୍ଦଜ) ମିଥୁନ, ସ୍ତ୍ରୀପୁରୁଷ; ଯୋଡ଼ା; ସମାସବିଶେଷ; ରୋଗବିଶେଷ ।

ଦ୍ୱନ୍ଦ୍ୱଚର, ଦ୍ୱନ୍ଦ୍ୱଚାରୀ, ବି. ପୁଂ. (ଦ୍ୱନ୍ଦ୍ୱ-ଚର, ଚାରୀ) ଚକ୍ରବାକ ପକ୍ଷୀ ।

ଦ୍ୱନ୍ଦ୍ୱଜ, ବି. ପୁଂ. (ଦ୍ୱନ୍ଦ୍ୱ-ଜ) ଦୋଷଦ୍ୱୟୋତ୍ପନ୍ନ ରୋଗ ।

ଦ୍ୱନ୍ଦ୍ୱଯୁଦ୍ଧ, ବି. ନ. (ଦ୍ୱନ୍ଦ୍ୱ-ଯୁଦ୍ଧ) ମଲ୍ଲଯୁଦ୍ଧ ।

ଦ୍ୱୟ, ନ.
ଦ୍ୱୟୀ, ସ୍ତ୍ରୀ.
ଦ୍ୱିକ, ନ.
} ବି. ଦୁଇ, ଉଭୟ, ଦୁଇସଂଖ୍ୟା ।

ଦ୍ୱାଃସ୍ଥ, ଦ୍ୱାସ୍ଥ, ବ. ପୁଂ. ( ଦ୍ୱାର୍-ସ୍ଥ ) ଦ୍ୱାରପାଳ । ଯଥା—

ବସିଛନ୍ତି ଦଶରଥ ସଭ ମଧ୍ୟେ,
ବେତ୍ରହସ୍ତ ଦ୍ୱାଃସ୍ଥ କହେ ଅତ ଶ୍ରବେ । ବୈ. ଦ.

ମହାଦେବଙ୍କ ଦ୍ୱାରୀ ନନ୍ଦୀ ।

ଦ୍ୱାଚତ୍ୱାରିଂଶତ୍, ବଂ. ( ଦ୍ୱି-ଚତ୍ୱାରିଂଶତ୍ ) ୪୨ ସଂଖ୍ୟା ।

ଦ୍ୱାତ୍ରିଂଶତ୍, ବଂ. (ଦ୍ୱି-ତ୍ରିଂଶତ୍) ୩୨ ସଂଖ୍ୟା ।

ଦ୍ୱାଦଶ, ବଂ. (ଦ୍ୱି-ଦଶନ୍) ୧୨ ସଂଖ୍ୟା ।

ଦ୍ୱାଦଶକର, ବ. ପୁଂ. ( ଦ୍ୱାଦଶ-କର ) ବୃହସ୍ପତି; କାର୍ତ୍ତିକେୟ ।

ଦ୍ୱାଦଶାଂଶୁ, ବ. ପୁଂ. (ଦ୍ୱାଦଶ-ଅଂଶୁ) ବୃହସ୍ପତି ।

ଦ୍ୱାଦଶାତ୍ମା, ବ. ପୁଂ. ( ଦ୍ୱାଦଶ-ଆତ୍ମନ୍ ) ସୂର୍ଯ୍ୟ; ଅର୍କବୃକ୍ଷ ।

ଦ୍ୱାଦଶାୟୁଃ, ବ. ପୁଂ. (ଦ୍ୱାଦଶ-ଆୟୁଃ) କୁକ୍କୁର ।

ଦ୍ୱାପର, ବ. ପୁଂ. ( ଦ୍ୱି-ପର ) ତୃତୀୟ ଯୁଗ; ୮୬୪୦୦୦ ବର୍ଷପରିମିତ କାଳ ।

ଦ୍ୱାର, ବ. ନ. ( ଦ୍ୱାର-ଅ ) ଦୁଆର; ଉପାୟ; ସମ୍ମୁଖ; କପାଟ ।

ଦ୍ୱାରକା, ଦ୍ୱାରିକା, ବ. ସ୍ତ୍ରୀ. (ଦ୍ୱାର-କ, କା+ଆ) କୃଷ୍ଣଙ୍କ ରାଜଧାନୀ, ହିନ୍ଦୁତୀର୍ଥବିଶେଷ ।

ଦ୍ୱାରକେଶ, ବ. ପୁଂ. (ଦ୍ୱାରକା-ଈଶ) ଶ୍ରୀକୃଷ୍ଣ ।

ଦ୍ୱାରପାଳ, ଦ୍ୱାରପାଲ, ଦ୍ୱାରପାଳକ, ବ. ପୁଂ. (ଦ୍ୱାର-ପାଳ, ପାଲ, ପାଳକ) ପ୍ରହରୀ, ଦ୍ୱାରୀ, ଦ୍ୱାରରକ୍ଷକ ।

ଦ୍ୱାରଦେଶ, ବ. ନ. (ଦ୍ୱାର-ଦେଶ) ଦ୍ୱାରନିକଟ ।

ଦ୍ୱାରଯନ୍ତ୍ର, ବ. ନ. (ଦ୍ୱାର-ଯନ୍ତ୍ର) ତାଲା,କୋଲପ; ଅର୍ଗଳ ।

ଦ୍ୱାରବାନ୍, ବ. ପୁଂ. ( ଦ୍ୱାର-ବତ୍ ) ଯେ ଦ୍ୱାର ରକ୍ଷା କରେ, ଦୌବାରିକ ।

ଦ୍ୱାରସ୍ଥ, ବ. ପୁଂ. (ଦ୍ୱାର-ସ୍ଥା-ଅ) ଦ୍ୱାରପାଳ । ବଂ. ଦ୍ୱାରସ୍ଥିତ ।

ଦ୍ୱାରା, ଅଂ. ( ଦ୍ୱାର-ଆ ) କର୍ତ୍ତୃକ; କରଣକାରକ; ହେତୁ ।

ଦ୍ୱାରିକ, ଦ୍ୱାରୀ, ବ. ପୁଂ. ( ଦ୍ୱାର-ଇକ, ଇନ୍ ) ଦ୍ୱାରପାଳ, ପ୍ରହରୀ ।

ଦ୍ୱାବିଂଶ, ବଂ. (ଦ୍ୱି-ବିଂଶ) ୨୨ ସଂଖ୍ୟାର ପୂରଣ ।

ଦ୍ୱାବିଂଶତି, ବଂ. (ଦ୍ୱି-ବିଂଶତି) ୨୨ ସଂଖ୍ୟା ।

ଦ୍ୱି, ବଂ. (ଦ୍ୱୃ-ଇ) ଦୁଇ ସଂଖ୍ୟା; ସଂଖ୍ୟାବାଚକ ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହେଲେ ଦ୍ୱି ଶବ୍ଦ ସ୍ଥାନରେ ଦ୍ୱା ଆଦେଶ ହୁଏ, ଯଥା—ଦ୍ୱାଦଶ ।

ଦ୍ୱିଃ, ଅଂ. ( ଦ୍ୱି-ସ୍ ) ଦୁଇ ବାର, ଦୁଇ ପ୍ରକାର ।

ଦ୍ୱିକ, ବ. ପୁଂ. ( ଦ୍ୱି-କ ) ଚକ୍ରବାକ; କାକ । ବଂ. ଦ୍ୱିତ୍ୱସଂଖ୍ୟାଯୁକ୍ତ । ନ. ଦ୍ୱୟ, ଦୁଇ ।

ଦ୍ୱିଗର୍ଭ, ବ. ପୁଂ. ( ଦ୍ୱି-ଗର୍ଭ ) ଯେଉଁ ସବୁ ପ୍ରାଣିମାନଙ୍କ ଉଦରର ଅଧଃପ୍ରଦେଶରେ ସନ୍ତାନ ଧାରଣୋପଯୁକ୍ତ ଥଳି ପରି ଦୁଇ ଆଧାର ଥାଏ, ଯଥା—କଙ୍ଗାରୁ ।

ଦ୍ୱିଗୁ, ବ. ପୁଂ. ( ଦ୍ୱି-ଗୋ ) ସମାସବିଶେଷ, ଯାହାର ପୂର୍ବରେ ସଂଖ୍ୟାବାଚକ ପଦ ଥାଏ ।

ଦ୍ୱିଗୁଣ, ଦ୍ୱିଗୁଣିତ, ବଂ. ( ଦ୍ୱି-ଗୁଣ, ଗୁଣିତ) ଦୁଇ ବାର ଗୁଣିତ; ଦୁଇଦ୍ୱାରା ଗୁଣିତ ।

ଦ୍ୱିଗୁଣୀକୃତ, ବଂ. ( ଦ୍ୱିଗୁଣ-କୃତ ) ଯାହା ଦ୍ୱିଗୁଣ କରା ଯାଇଅଛି ।

ଦ୍ୱିଜ, ଦ୍ୱିଜନ୍ମା, ଦ୍ୱିଜାତି, ବ. ପୁଂ. ( ଦ୍ୱି-ଜ, ଜନ୍ମନ୍, ଜାତି ) ବ୍ରାହ୍ମଣ; କ୍ଷତ୍ରିୟ; ବୈଶ୍ୟ; ପକ୍ଷୀ ଆଦି; ଯାହା ଦୁଇ ଥର ଜାତ ହୁଏ ।

ଦ୍ୱିଜପତି, ବ. ପୁଂ. ( ଦ୍ୱିଜ-ପତି ) ଚନ୍ଦ୍ର; କର୍ପୂର; ଗରୁଡ଼; ଦ୍ୱିଜଶ୍ରେଷ୍ଠ ।

ଦ୍ୱିଜରାଜ, ବ. ପୁଂ. ( ଦ୍ୱିଜ-ରାଜନ୍ ) ଚନ୍ଦ୍ର; ବ୍ରାହ୍ମଣ । ଯଥା—

ମଙ୍ଗଳର ଅଣା-ନରେ ତୁମ୍ଭେ ଶୁଣିଅଛ
ହେ ରାଜେନ୍ଦ୍ର, ବଚନହିଁ ଦ୍ୱିଜରାଜରୂପେ । ମ. ଯା.

ଦ୍ୱିଜବନ୍ଧୁ, ବ. ପୁଂ. ଅପକୃଷ୍ଟ ଦ୍ୱିଜ, ଦୈବଜ୍ଞ, ଭାଟ ପ୍ରଭୃତି ।

ଦ୍ୱିଜବର, ବ. ପୁଂ. (ଦ୍ୱିଜ-ବର) ବ୍ରାହ୍ମଣ ।

ଦ୍ୱିଜିହ୍ୱ, ବ. ପୁଂ. (ଦ୍ୱି-ଜିହ୍ୱା) ଯାହାର ଦୁଇ ଜିହ୍ୱା, ସର୍ପ; ଯେ ଏକ ବ୍ୟକ୍ତି ନିକଟରେ ଏକ ପ୍ରକାର କହି ଅନ୍ୟ ନିକଟରେ ଅନ୍ୟ ପ୍ରକାର କହେ; ଦୁର୍ଜନ; ଖଳ; ଚୋର ।

ଦ୍ୱିଜେନ୍ଦ୍ର, ବ. ପୁଂ. (ଦ୍ୱିଜ-ଇନ୍ଦ୍ର) ଦ୍ୱିଜଶ୍ରେଷ୍ଠ ।

ଦ୍ୱିଜେଶ, ବ. ପୁଂ. (ଦ୍ୱିଜ-ଈଶ) ଗରୁଡ଼; ଚନ୍ଦ୍ର; କର୍ପୂର ।

ଦ୍ୱିତୟ, ବ. ନ. ( ଦ୍ୱି-ତୟ ) ୨ ସଂଖ୍ୟା ; ଦ୍ୱୟ; ଦୁଇ ପ୍ରକାର ।

ଦ୍ୱିତଳ, ବିଂ. (ଦ୍ୱି-ତଳ) ଦୋମହଲା;ଦୋତାଲା ।

ଦ୍ୱିତୀୟ, ବିଂ. (ଦ୍ୱି-ତୀୟ) ୨ ସଂଖ୍ୟାର ପୂରକ ।

ଦ୍ୱିତୀୟା, ବ. ସ୍ତ୍ରୀ. ତିଥିବିଶେଷ; ଭାର୍ଯ୍ୟା ।

ଦ୍ୱିତୀୟାଶ୍ରମ, ବ. ପୁଂ. (ଦ୍ୱିତୀୟ-ଆଶ୍ରମ) ଗାର୍ହସ୍ଥ୍ୟାଶ୍ରମ ।

ଦ୍ୱିଦେହ, ବ. ପୁଂ. ( ଦ୍ୱି-ଦେହ ) ଗଜାନନ, ଗଣେଶ ।

ଦ୍ୱିଧା, ଦ୍ୱେଧା, କ୍ରି. ବିଂ. ଅଂ. ( ଦ୍ୱି-ଧା ) ଦୁଇ ପ୍ରକାର, ଦ୍ୱିବିଧ ।

ଦ୍ୱିଧାକୃତ, ବିଂ. ଯାହାକୁ ଦୁଇ ଅଂଶରେ ବିଭକ୍ତ କରି ଯାଇଅଛି ।

ଦ୍ୱିପ, ବ. ପୁଂ. (ଦ୍ୱି-ପା-ଅ) ଯେ ଦୁଇ ଇନ୍ଦ୍ରିୟରେ ପାନ କରେ । ଯଥା—ଗଜ, ନାଗ, ହସ୍ତୀ ।

ଦ୍ୱିପଦ, ବ. ପୁଂ. ( ଦ୍ୱି-ପଦ ) ମନୁଷ୍ୟ; ରାକ୍ଷସ; ଦେବତା; ପକ୍ଷୀ । ବିଂ. ପଦଦ୍ୱୟବିଶିଷ୍ଟ । ସ୍ତ୍ରୀ. ଛନ୍ଦୋବିଶେଷ ।

ଦ୍ୱିପାଧିପ, ଦ୍ୱିପାଧିପତି, ବ. ପୁଂ. ( ଦ୍ୱିପ-ଅଧିପ, ଅଧିପତି ) ଐରାବତ ।

ଦ୍ୱିଭୁଜ, ବିଂ. (ଦ୍ୱି-ଭୁଜ) ଭୁଜଦ୍ୱୟବିଶିଷ୍ଟ ।

ଦ୍ୱିମାତୃକ, ବ. ପୁଂ. ( ଦ୍ୱି-ମାତୃ-କ ) ଗଣେଶ; ଜରାସନ୍ଧ; ଭଗୀରଥ ।

ଦ୍ୱୈମାତୁର, ବ. ପୁଂ. (ଦ୍ୱିମାତୃ-ଜନ୍-ଅ) ଗଣେଶ; ଜରାସନ୍ଧ ।

ଦ୍ୱିରଦ, ବ. ପୁଂ. (ଦ୍ୱି-ରଦ) ହସ୍ତୀ । ଯଥା—

ଦ୍ୱିରଦଗତି ଅଷେ ଘନ ।

ଦ୍ୱିରଦାନ୍ତକ, ବ. ପୁଂ. (ଦ୍ୱିରଦ-ଅନ୍ତକ) ସିଂହ ।

ଦ୍ୱିରୁକ୍ତ, ବିଂ. ( ଦ୍ୱିଃ-ଉକ୍ତ ) ଦୁଇବାର କଥିତ; ଅଭ୍ୟସ୍ତ ।

ଦ୍ୱିରୁକ୍ତି, ବ. ସ୍ତ୍ରୀ. (ଦ୍ୱିଃ-ବଚ୍-ତି) ଦୁଇ ପ୍ରକାର ଉକ୍ତି, ଗୋଟିଏ କଥାକୁ ଦୁଇଥର କହିବାର ।

ଦ୍ୱିରୂଢ଼ା, ବ. ସ୍ତ୍ରୀ. ( ଦ୍ୱିଃ-ଊଢ଼ା ) ଦୁଇ ବାର ବିବାହିତା ସ୍ତ୍ରୀ; ପୁନର୍ଭୂ ।

ଦ୍ୱିରେଫ, ବ.ପୁଂ. (ଦ୍ୱି-ରେଫ) ଭ୍ରମର, ମଧୁକର, ଷଟ୍‌ପଦ ।

ଦ୍ୱିବଚନ, ବ. ନ. ବ୍ୟାକରଣର ଦ୍ୱି ସଂଖ୍ୟାବୋଧକ ବିଭକ୍ତି ।

ଦ୍ୱିବିଧ, ବିଂ. (ଦ୍ୱି-ବିଧ) ଦୁଇ ପ୍ରକାର ।

ଦ୍ୱିଶଫ, ବ. ପୁଂ. (ଦ୍ୱି-ଶଫ=ଖୁର) ଦୁଇ ଖୁରଯୁକ୍ତ ପଶୁ, ଗୋ ମହିଷାଦି ।

ଦ୍ୱିଶୀର୍ଷକ, ବ. ପୁଂ. (ଦ୍ୱି-ଶୀର୍ଷ-କ) ଅଗ୍ନି ।

ଦ୍ୱିଷତ୍, ବିଂ. } ବ. ( ଦ୍ୱିଷ୍-ଅତ୍, ୦ ) ଶତ୍ରୁ,
ଦ୍ୱିଟ୍, ପୁଂ. } ଦ୍ୱେଷୀ । ବିଂ. ଦ୍ୱେଷକାରୀ ।

ଦ୍ୱିସପ୍ତତି, ବ. ସ୍ତ୍ରୀ. (ଦ୍ୱି-ସପ୍ତତି) ୭୨ ସଂଖ୍ୟା ।

ଦ୍ୱିସହସ୍ରାକ୍ଷ, ବ. ପୁଂ. ( ଦ୍ୱିସହସ୍ର-ଅକ୍ଷି ) ଅନନ୍ତଦେବ ।

ଦ୍ୱିହୃଦୟା, ବ. ସ୍ତ୍ରୀ. ( ଦ୍ୱି-ହୃଦୟ ) ଗର୍ଭିଣୀ, ଅନ୍ତଃସତ୍ତ୍ୱା ।

ଦ୍ୱୀପ, ବ. ପୁଂ. ନ. ( ଦ୍ୱି-ଅପ୍-ଅ ) ଚତୁର୍ଦ୍ଦିଗରେ ଜଳବେଷ୍ଟିତ ସ୍ଥଳଭାଗ ।

ଦ୍ୱୀପବାନ୍, ବ.ପୁଂ. (ଦ୍ୱୀପ-ବତ୍ ) ସମୁଦ୍ର; ନଦ । ସ୍ତ୍ରୀ. ନଦୀ; ଭୂମି ।

ଦ୍ୱୀପୀ, ବ. ପୁଂ. (ଦ୍ୱୀପ-ଇନ୍) ବ୍ୟାଘ୍ର; ସମୁଦ୍ର ।

ଦ୍ୱେଷ, ବ. ପୁଂ. (ଦ୍ୱିଷ୍-ଅ) ଶତ୍ରୁତା, ବୈର, ଈର୍ଷା, କ୍ରୋଧ, ଅସୂୟା; ବିରାଗ ।

ଦ୍ୱେଷୀ, ବିଂ. (ଦ୍ୱିଷ୍-ଇନ୍) ଦ୍ୱେଷଯୁକ୍ତ ।

ଦ୍ୱେଷ୍ୟ, ବିଂ. ( ଦ୍ୱିଷ୍-ଯ ) ଦ୍ୱେଷର ପାତ୍ର ବା ବିଷୟ ।

ଦ୍ୱେଷ୍ଟା, ବିଂ. ( ଦ୍ୱିଷ୍-ତୃ) ଦ୍ୱେଷକର୍ତ୍ତା, ଶତ୍ରୁ ।

ଦ୍ୱୈତ, ବି. ନ. ( ଦ୍ୱି-ଇତ=ଦ୍ୱୀତ, ଦ୍ୱୀତ-ଅ=ଦ୍ୱୈତ) ଦ୍ୱିବିଧତ୍ୱ, ଦ୍ୱିତୀୟତ୍ୱ; ଦୁଇ ପଦାର୍ଥର ଅସ୍ତିତ୍ୱ; ବନବିଶେଷ । ବିଂ. ଦ୍ୱୈଧବାଦୀ; ଦ୍ୱିତ୍ୱଶୂନ୍ୟ ।

ଦ୍ୱୈତବନ, ବି. ନ. ବନବିଶେଷ, ବନବାସ କାଳରେ ଯୁଧିଷ୍ଠିରାଦି ଏହି ବନରେ ବାସ କରିଥିଲେ; ଶୋକମୋହରହିତ ବନବିଶେଷ ।

ଦ୍ୱୈତବାଦୀ, ବିଂ.(ଦ୍ୱୈତ-ବଦ୍-ଇନ୍) ଯେଉଁମାନେ ଜୀବାତ୍ମା ଓ ପରମାତ୍ମାକୁ ଭିନ୍ନ ବୋଲି ସ୍ୱୀକାର କରନ୍ତି ।

ଦ୍ୱୈଧ, ବି. ନ. ( ଦ୍ୱିଧା-ଅ ) ଦ୍ୱିଧା, ଦ୍ୱିପ୍ରକାର; ସନ୍ଦେହ; ବିବାଦ; ଯୁଦ୍ଧକୌଶଳ; ମତଭେଦ; ଯୁଦ୍ଧବିଭୁଗ ।

ଦ୍ୱୈପାୟନ, ବି.ପୁଂ. (ଦ୍ୱୀପ-ଅୟନ) ଦ୍ୱୀପ ଯାହାର ଜନ୍ମସ୍ଥାନ, ବ୍ୟାସଦେବ ।

ଦ୍ୱୈମାତୁର, ବି. ପୁଂ. ( ଦ୍ୱିମାତୃ-ଅ ) ଗଣେଶ; ଜରାସନ୍ଧ । ବିଂ. ଦୁଇ ମାତାର ସନ୍ତାନ ।

ଦ୍ୱୈମାତୃକ, ବି. ପୁଂ. ( ଦ୍ୱିମାତୃ-କ ) ବୃଷ୍ଟିଜଳ ଓ ନଦୀଜଳୋତ୍ପନ୍ନ ଧାନ୍ୟାଦି ।

ଦ୍ୱ୍ୟର୍ଥ, ବିଂ. (ଦ୍ୱି-ଅର୍ଥ) ଯହିଁରେ ଦୁଇ ଅର୍ଥ ବୁଝାଯାଏ, ଅର୍ଥଦ୍ୱୟଯୁକ୍ତ ।

—୪୦୫—

# ଧ

ଧ, ବ୍ୟଞ୍ଜନ ବର୍ଣ୍ଣର ଊନବିଂଶ ଅକ୍ଷର; ଏହାର ଉଚ୍ଚାରଣସ୍ଥାନ ଦନ୍ତ । ବି. ନ. ( ଧା-ଅ ) ଧନ । ପୁଂ. ବ୍ରହ୍ମା ।

ଧଇଁ, ବି. (ଦେଶଜ ) କାଶରୋଗବିଶେଷ ।

ଧକ, ବି. (ଦେଶଜ) ଧକାଇବା । ଯଥା—

> ଖଞ୍ଜନ-ଗଞ୍ଜନ-ଗଞ୍ଜନନେତ୍ରୀ କ ଧକ ମୁହାଁର ଦୃଥାଇଛି । ସା. ବ.

ଧକ୍‌ଧକ୍, ବି. ( ଦେଶଜ ) ବେଦନା; ଉଦରର ଅପୂର୍ତ୍ତିଭାବ । କ୍ରି. ବିଂ. ଉଜ୍ଜ୍ୱଳରୂପେ ।

ଧକ୍କା, ବି. (ଦେଶଜ) ଆଘାତ, ବାହୁର ଘାତ ।

ଧଟୀ, ବିଂ. ଲୁଗାଧଡି । ଯଥା—

> ଚାରୁ କଟିବାସଧଟୀ ବୃତରେ ଧରି
> ଷଡ଼ଙ୍ଗଦନାସ୍ତିତସ୍ଥ ଗମନ କରି ।

ଧଡ, ବି. (ଦେଶଜ) ଶରୀର, ଦେହ ।

ଧଡ଼୍‌ପଡ଼୍, କ୍ରି. ବିଂ. (ଦେଶଜ) ଶୀଘ୍ର ।

ଧଡିପି, ଧଡ଼ିପି, ବିଂ. (ଦେଶଜ) ଶୀଘ୍ର । ଯଥା—

> ନେଇ ବଢଶୀରେ ସେ ଧଡ଼ିପି ଅନୁରାଗେ
> ପୁରୁଷ ମନ-ମୀନକୁ ଧରି ନେଲ ବେଗେ । ସା. ବ.

ଧଡ଼ା, ବି. (ଦେଶଜ) ଅର୍ଗଳ, କାଷ୍ଠଦଣ୍ଡ ।

ଧଡ଼ି, ଧଡୀ, ବି. (ଧଟୀ ଶବ୍ଦଜ) ବସ୍ତ୍ରାଦିର ଧାର, ସୀମା ବା କନାରି ।

ଧଡ଼ିଆ, ବିଂ. (ଦେଶଜ) ଦୁର୍ବଳ, କୃଶ ।

ଧଣିଆ, ଧଣୀଆ, ଧନିଆ, ବି. ନ. (ଧନକାୟନ ଶବ୍ଦଜ) ଶସ୍ୟବିଶେଷ, କୋଥମିର ଫଳ ।

ଧଣ୍ଡ, ବି. (ଦେଶଜ) ସର୍ପବିଶେଷ ।

ଧଣ୍ଡା, ବି. (ଦେଶଜ) ମାଳା, ହାର ।

ଧତୁର, ବି. ପୁଂ. (ଧେ-ଉର) ଧୂତୁରା, ଦୁଦୁରା ।

ଧନ, ବି. ନ. (ଧନ୍-ଅ) ବିତ୍ତ, ସମ୍ପତ୍ତି; ଗୋ; ଧାନ୍ୟାଦି ।

ଧନଞ୍ଜୟ, ବି. ପୁଂ. (ଧନ-ଜି-ଅ) ଅଗ୍ନି; ଅର୍ଜ୍ଜୁନ । ଯଥା—

> ତାହାକୁ କରୁ ରୁ ରୋପ ଅଭେ ଧନଞ୍ଜୟ । ଭ. ବି.

ସର୍ପବିଶେଷ; ଶରୀରସ୍ଥ ବାୟୁ; କକୁଭବୃକ୍ଷ ।

ଧନଦ, ବି. ପୁଂ. (ଧନ-ଦା-ଅ) କୁବେର । ବିଂ. ଧନଦାତା ।

ଧନପତି, ଧନାଧିପ, ବି. ପୁଂ. (ଧନ-ପତି, ଅଧିପ) କୁବେର ।

ଧନବତୀ, ବି. ସ୍ତ୍ରୀ. ( ଧନ-ବତ୍-ଈ ) ଧନିଷ୍ଠା-ନକ୍ଷତ୍ର ।ବିଂ. ଧନଶାଳିନୀ ।

ଧନବାନ୍, ଧନୀ, ବିଂ. ( ଧନ-ବତ୍, ଧନ-ଇନ୍) ଧନୀ, ଐଶ୍ୱର୍ଯ୍ୟଶାଳୀ । ବି. ପୁଂ. ମହାଜନ ।

ଧନାଗମ, ବି. ପୁଂ. ( ଧନ-ଆଗମ ) ଅର୍ଥାଗମ, ଆୟ ।

ଧନାଧ୍ୟକ୍ଷ, ବି. ପୁଂ. (ଧନ-ଅଧ୍ୟକ୍ଷ) କୁବେର; ଧନରକ୍ଷକ ।

ଧନାର୍ଥୀ, ବିଂ. (ଧନ-ଅର୍ଥୀ) ଯେ ଧନ ଅନ୍ୱେଷଣ କରେ; କୃପଣ ।

ଧନିଷ୍ଠା, ବି. ସ୍ତ୍ରୀ. (ଧନବତ୍-ଇଷ୍ଠ, ବତ୍ ଲୋପ-ଆ) ନକ୍ଷତ୍ରବିଶେଷ, ତ୍ରୟୋବିଂଶ ନକ୍ଷତ୍ର ।

ଧନିକା, ବି. ସ୍ତ୍ରୀ. (ଧନ-ଇକ-ଆ) ଯୁବତୀ ।

ଧନୁ, ଧନୁଃ, ବି. ପୁଂ. ନ. ( ଧନ-ଉ, ଉସ୍ ) କାର୍ମୁକ, ଧନୁକ; ନବମରାଶି; ଚତୁର୍ହସ୍ତଦଣ୍ଡ ।

ଧନୁର୍ଗୁଣ, ବି. ପୁଂ. (ଧନୁଃ-ଗୁଣ) ଧନୁର ଗୁଣ, ଜ୍ୟା, ମୌର୍ବୀ ।

ଧନୁର୍ଦ୍ଧର, ଧନୁର୍ଭୃତ୍, ଧନୁଷ୍ମାନ୍, ବି. ପୁଂ. (ଧନୁସ୍-ଧୃ-ଅ, ଧନୁସ୍-ଭୃତ୍, ଧନୁସ୍-ମତ୍) ଧନୁର୍ଦ୍ଧାରୀ, ଧନ୍ୱୀ, ଧାନୁଷ୍କ, ତୀରନ୍ଦାଜ, ଯେ ଧନୁ ଧାରଣ କରେ ।

ଧନୁର୍ବେଦ, ବି. ପୁଂ. (ଧନୁସ୍-ବେଦ) ଧନୁର୍ବିଦ୍ୟା-ବୋଧକ ଶାସ୍ତ୍ର ।

ଧନୁଷ୍କର, ବି. ପୁଂ. (ଧନୁସ୍-କର) ଧନୁର୍ଦ୍ଧର ।

ଧନୁଷ୍କୋଟି, ବି. ସ୍ତ୍ରୀ. ( ଧନୁସ୍-କୋଟି ) ଧନୁର ଅଗ୍ରଭାଗ ।

ଧନୁଷ୍ଟଙ୍କାର, ବି. ନ. (ଧନୁସ୍-ଟଙ୍କାର) ଧନୁଃଶବ୍ଦ । ପୁଂ. ରୋଗବିଶେଷ ।

ଧନୁଷ୍ପାଣି, ବିଂ. (ଧନୁଃ-ପାଣି ) ଧନୁର୍ଦ୍ଧର, ଯେ ଧନୁ ଧାରଣ କରେ ।

ଧନେଶ, ଧନେଶ୍ୱର, ବି. ପୁଂ. ( ଧନ-ଈଶ, ଈଶ୍ୱର) କୁବେର । ବିଂ. ଧନସ୍ୱାମୀ ।

ଧନ୍ଦା, ବି. (ଦେଶଜ) କାର୍ଯ୍ୟସମୂହ । ଯଥା—

ଧୋକା ରଖିଲେ ଧନ୍ଦା ଚିଟିବ ନାହିଁ ।

ପରିଶ୍ରମ ।

ଧନ୍ଦାଳହେବା, କ୍ରି. ( ଦେଶଜ ) ବ୍ୟସ୍ତସମସ୍ତ ହୋଇବା; ଶୋକକରିବା ।

ଧନ୍ଦହେବା, କ୍ରି. (ଦେଶଜ) ବ୍ୟସ୍ତ ହେବା ।

ଧନ୍ୟ, ବିଂ. (ଧନ-ଯ ) ଭାଗ୍ୟବାନ୍, ସୌଭାଗ୍ୟ-ଶାଳୀ; ସାଧୁ; ଧାର୍ମିକ ।

ଧନ୍ୟବାଦ, ବି. ପୁଂ. (ଧନ୍ୟ-ବାଦ) ପ୍ରଶଂସାବାଦ ।

ଧନ୍ୱନ୍ତରି, ବି. ପୁଂ. (ଧନ୍ୱ-ଅନ୍ତ-ଋ-ଇ) ଦେବ-ଚିକିତ୍ସକ; ରାଜା ବିକ୍ରମାଦିତ୍ୟଙ୍କର ନବରତ୍ନର ଏକ ରତ୍ନ । ଯଥା—

ଅସାଧ୍ୟ ସେ ବ୍ୟାଧି, ଯାହା ଘରଚର ଦେହେ
ପୋଡିବ, ଜାଣି ନ ଥିବେ ଧ୍ୟାନେ ଧନ୍ୱନ୍ତରି । ମ. ଯା.

ଧନ୍ୱୀ, ବିଂ. (ଧନ୍ୱ-ଇନ୍) ଧନୁର୍ଦ୍ଧାରୀ, ଧନୁଷ୍ମାନ୍; ବିଦଗ୍ଧ । ବି. ପୁଂ. ଅର୍ଜୁନ; ବକୁଳ; ଅର୍ଜୁନ-ବୃକ୍ଷ ।

ଧପଧପ, ବି. (ଦେଶଜ) ଉଜ୍ଜ୍ୱଳତର ଦୀପ୍ତି ।

ଧପା, ବି. ( ଯାବନିକ ) ଭଣ୍ଡାଇବାର, ଠକାଇ-ବାର ।

ଧମକ, ବି.ପୁଂ.(ଧ୍ମା=ଶବ୍ଦ କରିବା-ଅକ) କର୍ମକାର; ଭୟପ୍ରଦର୍ଶନ । ଯଥା—

ଦେଖିବା ଚମକ ପକାଇ ଦେବ ଏ ଧମକ ଚମକ ନାଦେ ।

ବଳ ।

ଧମନି, ଧମନୀ,(Artery) ବି. ସ୍ତ୍ରୀ. (ଧ୍ମା-ଅନ,ଈ) ନାଡୀ, ଶିରା; ଗଳା; ହରିଦ୍ରା; ହଟ୍ଟବିଲାସିନୀ ।

ଧର, ବି. ପୁଂ. (ଧୃ-ଅ) ପର୍ବତ; କାର୍ପାସ ତୁଳା; କୂର୍ମରାଜ; ବସୁବିଶେଷ । ବିଂ. ଧାରଣକର୍ତ୍ତା, ଯଥା—ଜଳଧର, ଗଙ୍ଗାଧର ।

ଧରଣ, ବି. ନ. (ଧୃ-ଅନ ) ପ୍ରକାର, ପ୍ରଣାଳୀ, ପଦ୍ଧତି; ଧାରଣ । ପୁଂ. ହିମାଳୟ ପର୍ବତ; ଭୁବନ, ଲୋକ; ସୂର୍ଯ୍ୟ; ସ୍ତନ; ଧାନ୍ୟ; ସେତୁ ।

ଧରଣା, ବି. (ଦେଶଜ) ଅଧିଆ ପଡିବାର ।

ଧରଣି, ଧରଣୀ, ବି. ସ୍ତ୍ରୀ. (ଧୃ-ଅନ,ଇ ) ପୃଥିବୀ; ବସୁନ୍ଧରା ।

ଧରଣିଧର, ଧରଣୀଧର, ବି. ପୁଂ. (ଧରଣି,ଧରଣୀ-ଧର) ବିଷ୍ଣୁ; ଅନନ୍ତ; ମହାବରାହ; ପର୍ବତ; କୂର୍ମରାଜ ।

ଧରଣୀଶ୍ୱର, ବି. ପୁଂ. ( ଧରଣୀ-ଈଶ୍ୱର ) ଶିବ; ରାଜା; ବିଷ୍ଣୁ ।

ଧରଣୀସୁତା, ବି. ସ୍ତ୍ରୀ. ( ଧରଣୀ-ସୁତା ) ସୀତା, ରାଜର୍ଷି ଜନକ ଭୂମି କର୍ଷଣ କରିବାକାଳରେ ସୀତାଦେବୀଙ୍କୁ ପ୍ରାପ୍ତ ହୋଇଥିବାରୁ ଏପରି ନାମ ହୋଇଅଛି ।

ଧରା, ବି. ସ୍ତ୍ରୀ. (ଧୃ-ଅ) ପୃଥିବୀ; ନାଡ଼ୀ; ଜରାୟୁ, ଗର୍ଭାଶୟ; ମେଦ । ବି°. ଧାରଣକର୍ତ୍ତ୍ରୀ ।

ଧରାତଳ, ବି. ନ. (ଧରା-ତଳ) ଯାହାର ଦୈର୍ଘ୍ୟ ପ୍ରସ୍ଥ ଅଛି ଓ ବେଧ ନାହିଁ; ପୃଥିବୀର ଉପରଭାଗ, ଭୂତଳ ।

ଧରାତ୍ମଜ, ବି. ପୁଂ. (ଧରା-ଆତ୍ମଜ) ଭୌମ,ମଙ୍ଗଳ-ଗ୍ରହ; ନରକାସୁର । ଜା-ସ୍ତ୍ରୀ. ସୀତା ।

ଧରାଧର, ବି. ପୁଂ. ( ଧରା-ଧର ) ବିଷ୍ଣୁ; ପର୍ବତ; କୂର୍ମରାଜ; ମହାବରାହ ।

ଧରିତ୍ରୀ, ବି. ସ୍ତ୍ରୀ. (ଧୃ-ଇତ୍ର-ଈ) ପୃଥିବୀ, ଧରଣୀ । ଯଥା—

ଶତ୍ରୁ ଧର ଦୁଃଖରେ ମଜ୍ଜନ ସୈନ୍ଧବନୁ ବନ୍ଧୁାଧର୍ଷ,
ଧରିତ୍ରୀ ଶଯ୍ୟାହ ଉନ୍ନିଦ୍ର ନୟନ ଲଭେ ନ ଭୂଞ୍ଜ ନ ପାର ।
ପ୍ରେ. ସୁ.

ଧରିବା, କ୍ରି. ( ଧୃ ଧାତୁଜ ) ଧାରଣ କରିବା, ଘେନିବା । ଯଥା—

ରାଧା ଧର ସଖୀ କର,
ବୋଲନ୍ତି ଅକଟ ଅଉ ନ କର ଗୋ । ବି. ଚି.

ଧର୍ତ୍ତବ୍ୟ, ବି°. ( ଧୃ-ତବ୍ୟ ) ଗ୍ରାହ୍ୟ; ବିବେଚ୍ୟ, ଧାରଣଯୋଗ୍ୟ ।

ଧର୍ତ୍ତା, ବି°. (ଧୃ-ତୃ) ଧାରଣକର୍ତ୍ତା; ବହନକର୍ତ୍ତା ।

ଧର୍ମ, ବି. ପୁଂ. ନ. ( ଧୃ-ମ ) ସୁକୃତ, ପୁଣ୍ୟ; ଶାସ୍ତ୍ରାନୁଯାୟୀ ଆଚାର ବ୍ୟବହାର; ରୀତି; କର୍ତ୍ତବ୍ୟ; ଭାବ; ସ୍ୱାଭାବିକ ଅବସ୍ଥା; ଗୁଣ; ସତ୍କର୍ମ; ଯଜ୍ଞ; ସ୍ୱଭାବ; ସାଦୃଶ୍ୟ; ଲଗ୍ନର ନବମ ସ୍ଥାନ; ଅହିଂସା । ପୁଂ. ଜୀବ; ଯମ; ଧନୁକ; ବୃଷ ।

ଧର୍ମକ୍ଷେତ୍ର, ବି. ନ. ( ଧର୍ମ-କ୍ଷେତ୍ର ) କୁରୁକ୍ଷେତ୍ର; ପୁଣ୍ୟସ୍ଥାନ ।

ଧର୍ମଘଟ, ବି. ପୁଂ. ବୈଶାଖମାସରେ ଦାତବ୍ୟ ସୁଗନ୍ଧୋଦକପୂର୍ଣ୍ଣ କଳସ; ଧର୍ମରକ୍ଷା ନିମିତ୍ତ ଘଟ ।

ଧର୍ମଚାରିଣୀ, ବି. ସ୍ତ୍ରୀ. ( ଧର୍ମ-ଚର-ଇନ୍-ଈ ) ସହଧର୍ମିଣୀ, ସାଧ୍ୱୀ ।

ଧର୍ମଚାରୀ, ବି°. ( ଧର୍ମ-ଚର୍-ଇନ୍ ) ଧାର୍ମିକ, ପୁଣ୍ୟଶୀଳ, ସଦାଚାରୀ ।

ଧର୍ମଜ, ବି. ପୁଂ. (ଧର୍ମ-ଜନ୍-ଅ) ଔରସପୁତ୍ର ।

ଧର୍ମଜ୍ଞ, ବି°. (ଧର୍ମ-ଜ୍ଞ) ଯେ ଧର୍ମ ଜାଣେ,ଧାର୍ମିକ ।

ଧର୍ମତଃ, ଅ°. ( ଧର୍ମ-ତ ) ଯଥାର୍ଥରୂପେ, ଯଥା-ଯୋଗ୍ୟ ।

ଧର୍ମତତ୍ତ୍ୱ, ବି. ନ. (ଧର୍ମ-ତତ୍ତ୍ୱ) ପରମାର୍ଥ ରହସ୍ୟ, ଧର୍ମର ନିଗୂଢ଼ ମର୍ମ ।

ଧର୍ମଦ୍ରୋହୀ, ବି°. ( ଧର୍ମ-ଦ୍ରୁହ୍-ଇନ୍ ) ଧର୍ମଦ୍ୱେଷ-କାରୀ । ବି. ପୁଂ. ରାକ୍ଷସ ।

ଧର୍ମନନ୍ଦନ ବି. ପୁଂ. (ଧର୍ମ-ନନ୍ଦନ) ଯୁଧିଷ୍ଠିର ।

ଧର୍ମନିଷ୍ଠ, ବି°. (ଧର୍ମ-ନିଷ୍ଠା) ଧର୍ମିଷ୍ଠ, ପୁଣ୍ୟବାନ୍, ଧର୍ମପରାୟଣ, ଯାହାର ଧର୍ମରେ ଆନ୍ତରିକ ଆସ୍ଥା ଅଛି ।

ଧର୍ମନୀତି, ବି. ସ୍ତ୍ରୀ. ନୀତିଜ୍ଞାନବିଷୟକ ଶାସ୍ତ୍ର, ଯେ ଶାସ୍ତ୍ରଦ୍ୱାରା ଉଚିତ୍ୟାନୌଚିତ୍ୟାବଧାରଣ କରା-ଯାଏ ।

ଧର୍ମପତି, ବି. ପୁଂ. (ଧର୍ମ-ପତି) ବରୁଣ ।

ଧର୍ମପତ୍ନୀ, ବି. ସ୍ତ୍ରୀ. ( ଧର୍ମ-ପତ୍ନୀ ) ସହଧର୍ମିଣୀ, ଭାର୍ଯ୍ୟା ।

ଧର୍ମପରାୟଣ, ବି. ପୁଂ. (ଧର୍ମ-ପରାୟଣ) ଯେ ବ୍ୟକ୍ତି ଧର୍ମକୁ ପରମ ପଦାର୍ଥ ଜ୍ଞାନ କରେ, ଧାର୍ମିକ ।

ଧର୍ମପୁତ୍ର, ବି. ପୁଂ. ( ଧର୍ମ-ପୁତ୍ର ) ଯୁଧିଷ୍ଠିର; ଧର୍ମାନୁସାରେ କୃତ ପୁତ୍ର ।

ଧର୍ମବକ, ବି. ପୁଂ. ( ଧର୍ମ-ବକ ) କପଟଧାର୍ମିକ ଲୋକ ।

ଧର୍ମଯୁଗ, ବି. ନ. ଧର୍ମପ୍ରଧାନ ଯୁଗ, ସତ୍ୟଯୁଗ ।

ଧର୍ମରାଜ, ବି. ପୁଂ. (ଧର୍ମ-ରାଜ) ଯମ; ଯୁଧିଷ୍ଠିର; ବୁଦ୍ଧ ।

ଧର୍ମଲକ୍ଷଣ, ବି. ନ. ( ଧର୍ମ-ଲକ୍ଷଣ ) ଧର୍ମଚିହ୍ନ; ଧୃତି, କ୍ଷମା, ଦମ, ଶୌଚ, ଅସ୍ତେୟ, ଇନ୍ଦ୍ରିୟ-ନିଗ୍ରହ, ଧୀ, ବିଦ୍ୟା, ସତ୍ୟ, ଅକ୍ରୋଧ ଏହି ଦଶବିଧ ।

ଧର୍ମବାସର, ବି. ପୁଂ. (ଧର୍ମ-ବାସର) ପୌର୍ଣ୍ଣମାସୀ, ପୂର୍ଣ୍ଣିମା, ଏହି ଦିନରେ ଧର୍ମକାର୍ଯ୍ୟ ସମ୍ପାଦନ କରାଯାଏ ।

ଧର୍ମବାହନ, ବି. ପୁଂ. (ଧର୍ମ-ବାହନ) ଶିବ । ନ. ଧର୍ମଙ୍କ ବାହନ ।

ଧର୍ମବନ୍ତ, ବିଂ. (ଧର୍ମ-ବତ୍) ଧାର୍ମିକ, ଧର୍ମଜ୍ଞ ।

ଧର୍ମଶାଳା, ବି. ସ୍ତ୍ରୀ. (ଧର୍ମ-ଶାଳା) ଧର୍ମାର୍ଥ ଗୃହ, ପାନ୍ଥଶାଳା; ବିଚାରାଳୟ ।

ଧର୍ମଶାସ୍ତ୍ର, ବି. ନ. (ଧର୍ମ-ଶାସ୍ତ୍ର) ସ୍ମୃତିଶାସ୍ତ୍ର,ମନ୍ୱାଦି ସ୍ମୃତି ।

ଧର୍ମଶୀଳ, ବିଂ. (ଧର୍ମ-ଶୀଳ) ଧାର୍ମିକ ।

ଧର୍ମସଂହିତା, ବି. ସ୍ତ୍ରୀ. (ଧର୍ମ-ସଂହିତା) ଯେଉଁ ପୁସ୍ତକରେ ଯାବତୀୟ ଧର୍ମବିଷୟକ ଉପଦେଶ ସଂଗୃହୀତ ହୋଇଅଛି, ଧର୍ମଶାସ୍ତ୍ର ।

ଧର୍ମସୁତ, ବି. ପୁଂ. ( ଧର୍ମ-ସୁତ) ରାଜା ଯୁଧିଷ୍ଠିର ।

ଧର୍ମାତ୍ମା, ବିଂ. (ଧର୍ମ-ଆତ୍ମନ୍) ଧର୍ମଶୀଳ, ଧାର୍ମିକ ।

ଧର୍ମାଧିକରଣ, ବି. ନ. ( ଧର୍ମ-ଅଧିକରଣ ) ବିଚାରାଳୟ । ପୁଂ. ବିଚାରକ । ବିଂ. ଧର୍ମଶାସ୍ତ୍ରଜ୍ଞ ।

ଧର୍ମାଧିକାର, ବି. ପୁଂ. (ଧର୍ମ-ଅଧିକାର) ନ୍ୟାଯ୍ୟ ଅନ୍ୟାଯ୍ୟ ବିଚାରର ଅଧିକାର, ବିଚାରପତିର ପଦ ବା କାର୍ଯ୍ୟ ।

ଧର୍ମାଧିକାରୀ, ବି. ପୁଂ. ( ଧର୍ମାଧିକାର-ଇନ୍ ) ଯାହାର ହସ୍ତରେ ନ୍ୟାଯ୍ୟ ଅନ୍ୟାଯ୍ୟ ବିଚାରର ଭାର ନ୍ୟସ୍ତ ଥାଏ, ବିଚାରକ ।

ଧର୍ମାଧ୍ୟକ୍ଷ, ବି. ପୁଂ. (ଧର୍ମ-ଅଧ୍ୟକ୍ଷ) ବିଚାରପତି ।

ଧର୍ମାବତାର, ବି. ପୁଂ. (ଧର୍ମ-ଅବତାର) ମୂର୍ତ୍ତିମାନ୍ ଧର୍ମ ।

ଧର୍ମାବହ, ବିଂ. ଧର୍ମର ରକ୍ଷକ ।

ଧର୍ମାଭାସ, ବି. ପୁଂ. (ଧର୍ମ-ଆଭାସ) ଅପ୍ରଶସ୍ତ ଧର୍ମ ।

ଧର୍ମାସନ, ବି. ନ. ( ଧର୍ମ-ଆସନ ) ବିଚାରାସନ, ବିଚାରପତିର ଉପବେଶନ ସ୍ଥାନ ।

ଧର୍ମିଷ୍ଠ, ବିଂ. (ଧର୍ମ-ଇଷ୍ଠ) ଅତି ଧାର୍ମିକ ।

ଧର୍ଷ, ପୁଂ. } ଧର୍ଷଣ,ନ. } ବି.(ଧୃଷ୍-ଅ, ଅନ) ପରାଜୟକରିବା, ଅବଜ୍ଞାକରଣ; ଅବଜ୍ଞା; ପରାଭବ । ସ୍ତ୍ରୀ. ଅସତୀ ସ୍ତ୍ରୀ । ଯଥା—

ସ୍ୱୈରଜନ ମନ ମଦ୍ଧ ଭ ଚୋର ଏଡ଼େ ଗୁମାନ
ଚେଜସ୍ୱି ଧର୍ଷଣ ପ୍ରମାଦେ ଦନେ ଶିବ ତୋ ପ୍ରାଣ । ଚ. ଚ.

ଧର୍ଷକ, ବି. ପୁଂ. (ଧୃଷ୍-ଅକ) ନଟ, ନୃତ୍ୟକାରକ । ବିଂ. ଧର୍ଷଣକାରୀ; ଦାମ୍ଭିକ ।

ଧର୍ଷଣକାରିଣୀ, ବି. ସ୍ତ୍ରୀ. ( ଧର୍ଷଣ-କୃ-ଇନ୍-ଈ ) ଭ୍ରଷ୍ଟା ସ୍ତ୍ରୀ, ଦୂଷିତା କୁମାରୀ ।

ଧର୍ଷିତ, ବିଂ. (ଧୃଷ୍-ତ) ପରାଜିତ, ଅବମାନିତ ।

ଧଳା, ବିଂ. (ଧବଳ ଶବ୍ଦଜ) ଶ୍ୱେତ ବା ଶୁକ୍ଳ ।

ଧଳାଚିତା, ବି. (ଦେଶଜ) ବୃକ୍ଷବିଶେଷ ।

ଧବ, ବି. ପୁଂ. ( ଧୂ-ଅ ) ପତି; ଖଦିରଜାତୀୟ ବୃକ୍ଷ ।

ଧବଳ, ବି. ପୁଂ. (ଧାବ୍-ଅଳ) ଶୁକ୍ଳବର୍ଣ୍ଣ; କୁଷ୍ଠ-ରୋଗ; ବିଂ. ସୁନ୍ଦର । ନ. ରୋଗବିଶେଷ; ଶ୍ୱେତମରିଚ ।

ଧବଳପକ୍ଷ, ବି. ପୁଂ. (ଧବଳ-ପକ୍ଷ) ହଂସ; ଶୁକ୍ଳ-ପକ୍ଷ ।

ଧବଳା, ଧବଳୀ, ବି. ସ୍ତ୍ରୀ. (ଧବଳ-ଅ, ଆ, ଈ) ଶୁକ୍ଳବର୍ଣ୍ଣ ଧେନୁ ।

ଧବଳିତ, ବିଂ. (ଧବଳ-ଇତ) ଶୁକ୍ଳୀକୃତ, ଯାହା ଶ୍ୱେତବର୍ଣ୍ଣ କରା ହୋଇଅଛି । ଯଥା—

ଅସ୍ଥି ମାଳା ନରମୁଣ୍ଡେ ଧବଳିତ ଦେଶ ।

ଧା, ବି. ପୁଂ. (ଧା-୦) ବ୍ରହ୍ମା; ବୃହସ୍ପତି; ଧାରଣ-କର୍ତ୍ତା ।

ଧାଇଁବା, କ୍ରି. ଦୌଡ଼ିବା, ଧାବମାନ ହେବା । ଯଥା—

ଧାଇଁଯାଇ ଧରନ୍ତ ମୁଁ ତାଙ୍କ ଅଞ୍ଚଳ,
ସେ ଯାଇ ଚେଉଁ ପଡ଼ିଲେ ଯମୁନାଜଳ ।

ଧାଈ, ବି. ସ୍ତ୍ରୀ. ( ଧାତ୍ରୀ ଶବ୍ଦଜ ) ଉପମାତା; ଦାଈ ।

ଧାଡ଼ି, ବି. ନ. ପଂକ୍ତି, ଶ୍ରେଣୀ; ରଉଡ଼ି ।

ଧାଡ଼, ବି. ( ଧାଟୀ ଶବ୍ଦଜ କି ? ) ଶ୍ରେଣୀ ।

ଧାତକୀ, ବି. ସ୍ତ୍ରୀ. (ଧା-ଅକ୍, ତ ଆଗମ, ଈ) ପୁଷ୍ପ ବୃକ୍ଷବିଶେଷ ।

ଧାତା, ବ. ପୁଂ. (ଧା-ତୃ) ବିଧାତା, ବ୍ରହ୍ମା; ବିଷ୍ଣୁ; ପିତା । ବିଂ. ରକ୍ଷକ; ଧାରଣକର୍ତ୍ତା; ସୃଷ୍ଟିକର୍ତ୍ତା, ନିର୍ମାତା ।

ଧାଡକାର, ବିଂ. (ଦେଶଜ) ଶୀଘ୍ର ।

ଧାତୁ, ବ. ପୁଂ. (ଧା-ତୁ) ଦେହଧାରକ ବସ୍ତୁ । ଯଥା—ବାତ, ପିତ୍ତ, କଫ, ଶୋଣିତ, ମାଂସ, ମେଦଃ, ମଜ୍ଜା, ଶୁକ୍ର, ଅସ୍ଥି ପ୍ରଭୃତି; ସ୍ୱର୍ଣ୍ଣ, ରୌପ୍ୟ, କାଂସ୍ୟ, ପିତ୍ତଳ, ତାମ୍ର, ସୀସ, ରଙ୍ଗ, ଲୌହ ଏହି ଅଷ୍ଟବିଧ ତୈଜସ ପଦାର୍ଥ; ଭୂ, ସ୍ଥା, ଗମ୍ ପ୍ରଭୃତି କ୍ରିୟାବାଚକ ପ୍ରକୃତି; ସ୍ୱଭାବ; ସ୍ୱରୂପ; ଉପାଦାନ; ଜ୍ଞାନେନ୍ଦ୍ରିୟ; ପାରଦ; ହିଙ୍ଗୁଳ ।

ଧାତୁଦ୍ରାବକ, ବ. ପୁଂ. ( ଧାତୁ-ଦ୍ରାବି-ଅକ ) ଟାଙ୍ଗଣା, ସୋହାଗା ।

ଧାତୁପାଠ, ବ. ପୁଂ. ( ଧାତୁ-ପାଠ ) ପାଣିନ୍ୟାଦି ପ୍ରଣୀତ ଧାତ୍ୱର୍ଥବୋଧକ ଗ୍ରନ୍ଥବିଶେଷ ।

ଧାତୁବିଦ୍ୟା, ବ. ସ୍ତ୍ରୀ. ( ଧାତୁ-ବିଦ୍ୟା ) ଯେଉଁ ବିଦ୍ୟାଦ୍ୱାରା ସ୍ୱର୍ଣ୍ଣ, ରୌପ୍ୟ, ଲୌହ, ଅଙ୍ଗାର ପ୍ରଭୃତି ଧାତୁର ସ୍ୱରୂପ ବା ଅବସ୍ଥା ଜଣାଯାଏ ।

ଧାତୁବୈରୀ, ବ. ପୁଂ. ନ. (ଧାତୁ-ବୈରିନ୍)ଗନ୍ଧକ ।

ଧାତୁମୟ, ବିଂ. (ଧାତୁ-ମୟ) ଧାତୁନିର୍ମିତ ।

ଧାତୁରାଜକ, ବ. ନ. ( ଧାତୁ-ରାଜ-କ ) ଶୁକ୍ର, ରେତଃ, ବୀର୍ଯ୍ୟ ।

ଧାତ୍ରୀକା, ବ. ସ୍ତ୍ରୀ. (ଧାତ୍ରୀ-କ-ଆ) ଅଁଳା ।

ଧାତ୍ରୀ, ବ. ସ୍ତ୍ରୀ. ( ଧାତୃ-ଈ ) ଉପମାତା; ପୃଥିବୀ; ମା ।

ଧାତ୍ରୀପୁତ୍ର, ବ. ପୁଂ. ( ଧାତ୍ରୀ-ପୁତ୍ର ) ନଟ, ଉପମାତାର ପୁତ୍ର ।

ଧାନ, ବ. ନ. (ଧା-ଅନ) ନିଧାନ, ସ୍ଥାନ, ଆଧାର; (ଧାନ୍ୟ ଶବ୍ଦଜ) ସତୁଷ ତଣ୍ଡୁଳ; (ଦେଶଜ) ଓଜନ ପରିମାଣ । ଯଥା—ଚାରି ଧାନରେ ଏକ ରତି ।

ଧାନୁକୀ, ବ. (ଧାନୁଷ୍କ ଶବ୍ଦଜ) ଧନୁର୍ଦ୍ଧାରୀ ।

ଧାନୁଷ୍କ, ବିଂ. (ଧନୁଷ୍-ଅ) ଧନୁର୍ଦ୍ଧର ।

ଧାନ୍ୟ, ବ. ନ. (ଧନ-ଯ) ଧାନ, ସତୁଷ ତଣ୍ଡୁଳ; ଚାରି ତିଳ ପରିମାଣ ।

ଧାନ୍ୟକ, ବ. ନ. (ଧାନ୍ୟ-କ) ଧଣିଆ ।

ଧାନ୍ୟତ୍ୱକ୍, ବ. ସ୍ତ୍ରୀ. (ଧାନ୍ୟ-ତ୍ୱଚ୍) ତୁଷ ।

ଧାନ୍ୟରାଜ, ବ. ପୁଂ. (ଧାନ୍ୟ-ରାଜନ୍) ଯବ,ଯଅ ।

ଧାମ, ବ. ନ. (ଧା-ମନ୍) ଗୃହ; ସ୍ଥାନ; ପ୍ରଭାବ; ଦୀପ୍ତି, ତେଜଃ; ଶରୀର; ଆଧାର; ଆସ୍ପଦ ।

ଧାର, ବ. ପୁଂ. (ଧୃ-ଅ) ଋଣ; ପ୍ରାନ୍ତଭାଗ, ଶେଷ-ସୀମା; ଅସ୍ତ୍ରର ତୀକ୍ଷ୍ଣାଂଶ ।

ଧାରକ, ବିଂ. (ଧୃ-ଅକ) ଧାରଣକର୍ତ୍ତା । ପୁଂ. ଯେ ଅନ୍ୟର ନିକଟରୁ ଋଣ କରେ, ଅଧମର୍ଣ୍ଣ; ଔଷଧବିଶେଷ ।

ଧାରଣ, ବ. ନ. (ଧୃ-ଇ=ଧାରି-ଅନ) ଗ୍ରହଣ, ଅବଲମ୍ବନ ।

ଧାରଣା, ବ. ସ୍ତ୍ରୀ. ( ଧୃ-ଇ=ଧାରି-ଅନ-ଆ ) ସ୍ଥିରତା, ନିଶ୍ଚୟ, ବୁଦ୍ଧି, ବିଶ୍ୱାସ; (ଦେଶଜ) ମଞ୍ଚୋପରି ପଡିଥିବା କାଷ୍ଠ ବା ବାଂଶଦଣ୍ଡ ।

ଧାରଣୀୟ, ବିଂ. (ଧୃ-ଅନୀୟ) ଧାରଣଯୋଗ୍ୟ ।

ଧାରୟିତା, ବିଂ. ( ଧାରି-ତୃ ) ଧାରକ । ବ. ସ୍ତ୍ରୀ. ପୃଥିବୀ, ଧରଣୀ ।

ଧାରା, ବ. ସ୍ତ୍ରୀ. ( ଧୃ-ଆ ) ଘଟାଦି ଛିଦ୍ର; ରୀତି; ନିୟମ; ବୃଷ୍ଟି; ଅସ୍ତ୍ରର ତୀକ୍ଷ୍ଣ ପ୍ରାନ୍ତଭାଗ । ଯଥା—

ଶର ଶତ୍ରୁ ଧାର ଶତ ଲମ୍ବିଥ ଶୋଇଲୁ ରେ । ବ. ଚ.

ଧାରାଧର, ବ. ପୁଂ. ( ଧାରା-ଧର ) ମେଘ; ଖଡ୍ଗ; ଅସ୍ତ୍ର ।

ଧାରାପାତ, ବ. ପୁଂ. (ଧାରା-ପାତ) ଜଳଧାରାର ପତନ; ଅଙ୍କସୂତ୍ର ।

ଧାରାଯନ୍ତ୍ର, ବ. ନ. (ଧାରା-ଯନ୍ତ୍ର) ଯେ ଯନ୍ତ୍ରରୁ ଜଳ ଧାରା ନିର୍ଗତ ହୁଏ ।

ଧାରାବାହକ, ଧାରାବାହୀ, ବିଂ. (ଧାରା-ବହ୍-ଇକ, ଇନ୍) ଅବିଚ୍ଛିନ୍ନ; ଅବିରତସ୍ଥାୟୀ; ଯାହା ଚିରକାଳ ଚାଲି ଆସୁଅଛି ।

ଧାରାସମ୍ପାତ, ବି. ପୁଂ. ( ଧାରା-ସମ୍-ପତ୍-ଅ ) ଅତିଶଯ୍ୟ ବର୍ଷଣ ।

ଧାରୀ, ବି°. (ଧୃ-ଇନ୍) ଧାରଣକର୍ତ୍ତା ।

ଧାରୁଆ, ବି°. (ପ୍ରା) ଋଣୀ, କର୍ଜ୍ଜଦାର ।

ଧାର୍ତ୍ତରାଷ୍ଟ୍ର, ବି. ପୁଂ. (ଧୃତରାଷ୍ଟ୍ର=ରାଜା,ପଶ୍ଚାଦ୍-ଅ) କୃଷ୍ଣବର୍ଣ୍ଣ ଓଷ୍ଠ ଓ ଚରଣବିଶିଷ୍ଟ ଶ୍ୱେତହଂସ, ଗେଡ଼ି ହଂସ; ଧୃତରାଷ୍ଟ୍ର ରାଜାର ସନ୍ତାନଗଣ ।

ଧାର୍ମିକ, ବି°. ( ଧର୍ମ-ଇକ ) ଧର୍ମଶୀଳ, ଧର୍ମିଷ୍ଠ, ପୁଣ୍ୟାତ୍ମା ।

ଧାର୍ଯ୍ୟ, ବି°. (ଧୃ-ଯ) ଗ୍ରାହ୍ୟ, ଧାରଣୀୟ, ସ୍ଥିରୀକରଣୀୟ ।

ଧାବକ, ବି°. (ଧାବ୍-ଅକ) ଦ୍ରୁତଗାମୀ । ବି. ପୁଂ. ରଜକ, ଧୋବା; କବିବିଶେଷ ।

ଧାବନ, ବି. ନ. (ଧାବ୍-ଅନ) ଧୌତ କରଣ; ବେଗଗମନ, ଦୌଡ଼ିବା ।

ଧାବମାନ, ବି°. (ଧାବ୍-ଆନ) ଯେ ଚାଲୁଅଛି, ଯେ ଦୌଡ଼ୁଅଛି ।

ଧାବିତ, ବି°. (ଧାବ୍-ତ) ଧୌତ; ଦ୍ରୁତଗତ, ଯେ ବେଗରେ ଚାଲୁଅଛି ।

ଧାସ, ବି. (ଦେଶଜ) ଉତ୍ତାପ ।

ଧିକ୍, ଅ°. (ଧକ୍କ=ବିନାଶ କରିବା-ଇକ) ନିନ୍ଦା; ଭର୍ତ୍ସନାସୂଚକ ଅବ୍ୟୟ ।

ଧିକ୍କାର, ପୁଂ. }<br>ଧିକ୍‌କ୍ରିୟା, ସ୍ତ୍ରୀ. } ବି. ( ଧିକ୍-କାର, କ୍ରିୟା ) ନିନ୍ଦା, ଭର୍ତ୍ସନା; ଅବଜ୍ଞା ।

ଧିଠ, ବି°. (ଧୃଷ୍ଟଶବ୍ଦଜ) ଧୃଷ୍ଟ; ନିର୍ଲ୍ଲଜ । ଯଥା—
ମୁହଁ ନ ଲଗାଅ କେହି ଏ ଧିଠକୁ ।

ଧିମା, ବି°. (ଦେଶଜ) ଧୀର, ଅଚଞ୍ଚଳ ।

ଧିଷଣ, ବି. ପୁଂ. (ଧିଷଣା-ଅ) ବୃହସ୍ପତି । ସ୍ତ୍ରୀ. ବୁଦ୍ଧି, ଜ୍ଞାନ ।

ଧିଷଣାଧିପ, ବି. ପୁଂ. ( ଧିଷଣା=ବୁଦ୍ଧି-ଅଧିପ= ଅଧିପତି) ବୃହସ୍ପତି ।

ଧୀ, ବି. ପୁଂ. (ଧ୍ୟୈ-୦) ବୁଦ୍ଧି, ଜ୍ଞାନ; ମତି ।

ଧୀଗୁଣ, ବି. ପୁଂ. ଶୁଶ୍ରୂଷା, ଶ୍ରବଣ, ଗ୍ରହଣ, ଧାରଣ, ତର୍କ, ବିତର୍କ, ଅର୍ଥବୋଧ, ତତ୍ତ୍ୱଜ୍ଞାନ ଏହି ଅଷ୍ଟବିଧ ବୁଦ୍ଧିଗୁଣ ।

ଧୀମାନ୍, ବି°. (ଧୀ-ମତ୍) ବୁଦ୍ଧିମାନ୍, ଜ୍ଞାନୀ । ବି. ପୁଂ. ବୃହସ୍ପତି । ସ୍ତ୍ରୀ. ବୁଦ୍ଧିମତୀ ।

ଧୀର, ବି°. ( ଧୀ-ରା-ଅ ) ଧୈର୍ଯ୍ୟଶାଳୀ; ପଣ୍ଡିତ; ଗମ୍ଭୀର ।

ଧୀରତା, ସ୍ତ୍ରୀ. }<br>ଧୀରତ୍ୱ, ନ. } ବି. (ଧୀର-ତା, ତ୍ୱ ) ଧୈର୍ଯ୍ୟ; ସ୍ଥିରତା; ସହିଷ୍ଣୁତା; ଗାମ୍ଭୀର୍ଯ୍ୟ; ପାଣ୍ଡିତ୍ୟ ।

ଧୀରପ୍ରଶାନ୍ତ, ବି. ପୁଂ. ( ଧୀର-ପ୍ରଶାନ୍ତ ) ନାୟକବିଶେଷ, ଯାହାର ସାମାନ୍ୟ ଗୁଣ ଅନେକ ଅଛି ।

ଧୀରଲଳିତ, ବି. ପୁଂ. ( ଧୀର-ଲଳିତ ) ନାୟକବିଶେଷ, ଯେ ନାୟକ ଚିନ୍ତାଶୂନ୍ୟ, ନମ୍ର ଏବଂ ନୃତ୍ୟଗୀତାଦିରେ ଆସକ୍ତ । ଷୋଡ଼ଶାକ୍ଷରପାଦକ ଛନ୍ଦୋବିଶେଷ ।

ଧୀରସ୍କନ୍ଧ, ବି. ପୁଂ. (ଧୀର-ସ୍କନ୍ଧ) ମହିଷ; ମସ୍ତିଷ୍କ ।

ଧୀରାଧୀରା, ବି. ସ୍ତ୍ରୀ. ( ଧୀରା-ଅଧୀରା ) ନାୟିକାବିଶେଷ, ଯେ ନାୟିକାର କୋପ ପ୍ରକାଶ କିୟତ୍ ପରିମାଣ ଜଣାଯାଏ କିୟତ୍ ପରିମାଣ ଅବ୍ୟକ୍ତ ଥାଏ ।

ଧୀରୋଦାତ୍ତ, ବି. ପୁଂ. (ଧୀର-ଉଦାତ୍ତ ) ନାୟକବିଶେଷ, ଯେ ବ୍ୟକ୍ତି ଆତ୍ମଶ୍ଳାଘା ନ କରେ ।

ଧୀରୋଦ୍ଧତ, ବି. ପୁଂ. (ଧୀର-ଉଦ୍ଧତ) ନାୟକବିଶେଷ, ଯେ ବ୍ୟକ୍ତି ମାୟାବୀ, ଉଦ୍ଧତ, ଚଞ୍ଚଳ, ଅହଙ୍କୃତ ଏବଂ ଆତ୍ମଶ୍ଳାଘା ବିଷୟରେ ନିରତ ।

ଧୀବର, ବି. ପୁଂ. (ଧୀ-ବର) କେଉଟ । ରୀ, ସ୍ତ୍ରୀ. କେଉଟୁଣୀ ।

ଧୀଶକ୍ତି, ବି. ସ୍ତ୍ରୀ. (ଧୀ-ଶକ୍ତି) ବୁଦ୍ଧିଶକ୍ତି; ବୁଦ୍ଧି; ସାମର୍ଥ୍ୟ ।

ଧୁ, ବି. ସ୍ତ୍ରୀ. (ଧୁ=କମ୍ପନ-୦ ) କମ୍ପନ ।

ଧୁତ, ଧୂତ, ବି°. (ଧୁ, ଧୂ-ତ) ତ୍ୟକ୍ତ; କମ୍ପିତ ।

ଧୁତୁରା, (ଧୁସ୍ତୁରଶବ୍ଦଜ) ଦୁଦୁରା ।

ଧୁନନ, ଧୂନନ, ବି. ନ. (ଧୁ-ଧୂ-ଇ-ଅନ) ଚାଳନ, କମ୍ପନ ।

ଧୂନ, ଧୂନୀ, ବ. ସ୍ତ୍ରୀ. (ଧୂ-ନ,ନୀ) ନଦୀ ।

ଧୂମାଧୂମି, ବ. (ଦେଶଜ) ଉତ୍ପାତ ।

ଧୂରନ୍ଧର, ଧୁରୀଣ, ଧୂର୍ଯ୍ୟ, ଧୂର୍ବହ, } ବଂ. ( ଧୁରଂ-ଧର, ଧୁର୍-ଈନ,ଯ:ଧୁର୍-ବହ୍-ଅ) ଭାରବାହକ, ବହନକାରୀ; ବାହକ; ଅଗ୍ରଣୀ, ଶ୍ରେଷ୍ଠ ।

ଧୂର୍, ଅଂ. ଅଗ୍ରେ ।

ଧୁରୀଯ୍ଯ, ବଂ. ( ଧୁର୍-ଈୟ ) ଭାରବହନଯୋଗ୍ୟ, କାର୍ଯ୍ୟଦକ୍ଷ । ବ. ପୁଂ. ବୃଷ ।

ଧୂବନ, ବଂ. (ଧୂ-ଅନ) ପରିଚାଳନ । ବ. ପୁଂ. ଅଗ୍ନି । ନ. କମ୍ପନ ।

ଧୂବିବ, ବ. ନ. (ଧୂ-ଇବ) ଯଜ୍ଞାଗ୍ନି ପ୍ରଜ୍ୱଳନାର୍ଥ ମୃଗଚର୍ମନିର୍ମିତ ବ୍ୟଜନବିଶେଷ ।

ଧୂସ୍ତୁର, ଧୁସ୍ତୂର, ଧୂସ୍ତୁର, ଧୁସ୍ତୂର, } ବ. ପୁଂ. ଧୂତୁରା ଗଛ ।

ଧୂଆଁ, ବ. ସ୍ତ୍ରୀ. (ଧୂମ ଶବ୍ଦଜ) ଧୂମ ।

ଧୂଆଁପତ୍ର, ବ. ( ଧୂମ ଓ ପତ୍ର ଶବ୍ଦଜ ) ତମାଖୁ ପତ୍ର ।

ଧୂତ, ବଂ. (ଧୂ-ତ) ତ୍ୟକ୍ତ; କମ୍ପିତ; ଭର୍ତ୍ସିତ; ନିରସ୍ତ; ତର୍କିତ । ବ. ସ୍ତ୍ରୀ. ଭାର୍ଯ୍ୟା ।

ଧୂନକ, ବ. ପୁଂ. ( ଧୂନ-ଅକ ) ଝୁଣା, ଶାଳୁଅ-କ୍ଷୀର ।

ଧୂପ, ବ. ପୁଂ. (ଧୂପ୍-ଅ) ଗନ୍ଧଦ୍ରବ୍ୟବିଶେଷ ।

ଧୂପନ, ବ. ନ. (ଧୂପ୍-ଅନ) ଧୂପଦ୍ୱାରା ସୁବାସିତ କରିବା; ତାପନ; ଝୁଣା ।

ଧୂପାଙ୍ଗ, ବ. ପୁଂ. (ଧୂପ-ଅଙ୍ଗ) ତାର୍ପିନତେଲ ।

ଧୂପିକା, ବ. ସ୍ତ୍ରୀ. (ଧୂପ-କ) କୁଜ୍‍ଝଟିକା ।

ଧୂପାୟିତ, ଧୂପିତ, ବଂ. (ଧୂପ-ଆୟ-ତ) ପଥଶ୍ରାନ୍ତ; ତାପିତ; ଧୂପଦ୍ୱାରା ସୁବାସିତ ।

ଧୂମ, ବ. ପୁଂ. (ଧୂ-ମ) ଧୂଆଁ ।

ଧୂମକେତନ, ଧୂମକେତୁ, ବ. ପୁଂ.(ଧୂମ-କେତନ, କେତୁ) ଅଗ୍ନି; କେତୁଗ୍ରହ; ଉତ୍ପାତବିଶେଷ । ବଂ. ଧୂମକେତୁ ପରି ରକ୍ତବର୍ଣ୍ଣ ।

ଧୂମଜ, ବ. ପୁଂ. (ଧୂମ-ଜନ୍-ଅ) ମେଘ ।

ଧୂମଧ୍ୱଜ, ବ. ପୁଂ. (ଧୂମ-ଧ୍ୱଜ) ଅଗ୍ନି,କେତୁଗ୍ରହ ।

ଧୂମପାୟୀ,ବଂ. (ଧୂମ-ପାୟୀ) ଯେ ଧୂମ ପାନ କରେ ।

ଧୂମ୍ର, ଧୂମଳ, ବ. ପୁଂ. (ଧୂମ-ର, ଳା-ଅ) କୃଷ୍ଣ-ଲୋହିତବର୍ଣ୍ଣ ।

ଧୂମାବତୀ, ବ. ସ୍ତ୍ରୀ. ( ଧୂମ-ଅ=ଧୂମା-ବତ୍-ଈ ) ଦୁର୍ଗା; ଦୁର୍ଗାଙ୍କର ଦଶବିଧ ମୂର୍ତ୍ତି ମଧ୍ୟରେ ଏକ ମୂର୍ତ୍ତି ।

ଧୂମିକା, ବ. ସ୍ତ୍ରୀ. ( ଧୂମ ଇକ-ଆ ) କୁଜ୍‍ଝଟିକା, କୁହୁଡି ।

ଧୂମ୍ରଲୋଚନ, ବ. ପୁଂ. (ଧୂମ୍ର-ଲୋଚନ) କପୋତ; ପାରା; ଶୁମ୍ଭ, ନିଶୁମ୍ଭ ଦୈତ୍ୟଙ୍କ ସେନାପତି ।

ଧୂମ୍ରାକ୍ଷ, ବଂ. (ଧୂମ୍ର-ଅକ୍ଷି) ଧୂମ୍ରବର୍ଣ୍ଣ ନେତ୍ରବିଶିଷ୍ଟ । ବ. ପୁଂ. ରାଜପୁତ୍ରବିଶେଷ; ରାବଣ-ସୈନ୍ୟାନ୍ତର୍ଗତ ରାକ୍ଷସବିଶେଷ ।

ଧୂର୍ଜଟି, ବ. ପୁଂ. ( ଧୂର୍-ଜଟ୍-ଇ ) ଶିବ, ତ୍ରିଲୋଚନ । ଯଥା—

ଧୂର୍ଜଟି ଜଟାରୁ ସେହେ ଚୋଳଲ,
ଜ୍ୟୋତ୍ସ୍ନା ପୂର ପୂର୍ଣ୍ଣଚନ୍ଦ୍ର ଯହଁଭଲ । ନ. କେ.

ଧୂର୍ତ୍ତ, ବଂ. (ଧୂର୍ବ-ତ) ଶଠ, ପ୍ରବଞ୍ଚକ । ବ. ପୁଂ. ଦ୍ୟୂତକୃତ୍, ଜୁଆଡ଼ି । ନ. ବିଟଲବଣ ।

ଧୂର୍ତ୍ତକ, ବ. ପୁଂ. (ଧୂର୍ତ୍ତ-କ) ଶୃଗାଳ; ଧୂର୍ତ୍ତ ।

ଧୂର୍ଦ୍ଧର, ଧୂର୍ବହ, ବଂ. ( ଧୂର୍-ଧର, ବହ୍-ଅ ) ଧୁରନ୍ଧର, ଭାରବାହୀ ।

ଧୂଳ, ଧୂଳୀ, ବ. ସ୍ତ୍ରୀ. ( ଧୂ-ଳ, ଳୀ ) ପାଂଶୁ, ରେଣୁ । ଯଥା—

ବୋଇଲେ ଅତୀବ ଏ ବଡ଼ଧୂଳିଟି
ବୋଇବଅ ମୋର ହୃଦୟରେ । ବ. ଚ.

ଧୂଳିକା, ବ. ସ୍ତ୍ରୀ. (ଧୂଳି-କ-ଆ) କୁଜ୍‍ଝଟିକା ।

ଧୂଳିଧ୍ୱଜ, ବ. ପୁଂ. ( ଧୂଳି-ଧ୍ୱଜ ) ଘୂର୍ଣ୍ଣିବାୟୁ । (Whirl-wind.)

ଧୂଳିପଟଳ, ବ. ପୁଂ. (ଧୂଳି-ପଟଳ) ଉଡ୍ଡୀୟମାନ ଧୂଳିରାଶି ।

ଧୂସର, ବ. ପୁଂ. ( ଧୂ-ସର ) ଧୂଳିଅବର୍ଣ୍ଣ, ଈଷତ୍ ପାଣ୍ଡୁବର୍ଣ୍ଣ; ଉଷ୍ଟ୍ର; ଗର୍ଦ୍ଦଭ; କପୋତ ।

ଧୂସରିତ, ବିଂ. (ଧୂସର-ଇତ) ଈଷତ୍ ପାଣ୍ଡୁବର୍ଣ୍ଣ-ବିଶିଷ୍ଟ ।

ଧୃତ, ବିଂ. (ଧୃ-ତ) ଗୃହୀତ; ସ୍ଥିତ; ଅବଲମ୍ବିତ; ସ୍ଥାପିତ; ଅଲୋଚିତ । ବି. ପୁଂ. ତ୍ରୟୋଦଶ ମନୁର ପୁତ୍ରବିଶେଷ, ନୃପବିଶେଷ । ନ. ଧାରଣ, ଗ୍ରହଣ ।

ଧୃତବର୍ମା, ବିଂ. (ଧୃତ-ବର୍ମନ୍) ବର୍ମଧାରୀ । ବି. ପୁଂ. ନୃପବିଶେଷ ।

ଧୃତରାଷ୍ଟ୍ର, ବି. ପୁଂ. (ଧୃତ-ରାଷ୍ଟ୍ର) ପାଣ୍ଡୁରାଜାଙ୍କ ଜ୍ୟେଷ୍ଠଭ୍ରାତା; ହଂସବିଶେଷ; ନାଗବିଶେଷ; ଚନ୍ଦ୍ରବର୍ମାଙ୍କର ଜ୍ୟେଷ୍ଠପୁତ୍ର । ସ୍ତ୍ରୀ. ହଂସୀ, କାଶ୍ୟପର କନ୍ୟା ।

ଧୃତି, ବି. ସ୍ତ୍ରୀ. (ଧୃ-ତି) ଧାରଣ; ଧୈର୍ଯ୍ୟ; ଯୋଗ-ବିଶେଷ; ସନ୍ତୋଷ; ସ୍ଥିତି; ସୁଖ; ଯାଗ; ସତର ଧ୍ରୀତି । (ଧୈର୍ଯ୍ୟ ଅର୍ଥରେ) ଯଥା—

ଏ ବ୍ରତରେ ସୁଧୀ ବଇତି ଧୃତ ନାଶେ ଅପଦନେ ।

ଧୃତିମାନ୍, ବି. (ଧୃତି-ମତ୍) ଧୈର୍ଯ୍ୟଶାଳୀ; ସନ୍ତୁଷ୍ଟ; ସୁଖୀ । ବି. ପୁଂ. ଅଜାମିଢ଼ ରାଜାର ପୁତ୍ର ।

ଧୃତ୍ବା, ବି. ପୁଂ. (ଧୃ-ବନ୍, ତ ଆଗମ) ଧର୍ମ; ବ୍ରାହ୍ମଣ; ସମୁଦ୍ର; ଆକାଶ; ବିଷ୍ଣୁ; ପଣ୍ଡିତ ।

ଧୃଷ୍ଟ, ବିଂ. (ଧୃଷ୍-ତ) ନିର୍ଲଜ୍ଜ; ଉଦ୍ଧତସ୍ୱଭାବ; ଲମ୍ପଟ । ବି. ପୁଂ. ନାୟକବିଶେଷ, ଯେ ନାୟକ ଅପରାଧୀ ହୋଇ ଆପଣାର ଅପରାଧ ସ୍ୱୀକାର କରେ ନାହିଁ ।

ଧୃଷ୍ଟତା, ବି. ସ୍ତ୍ରୀ. (ଧୃଷ୍ଟ-ତା) ନିର୍ଲଜ୍ଜତା, ପ୍ରଗଲ୍ଭତା, ଔଦ୍ଧତ୍ୟ ।

ଧୃଷ୍ଟଦ୍ୟୁମ୍ନ, ବି. ପୁଂ. (ଧୃଷ୍ଟ-ଦ୍ୟୁମ୍ନ) ଦ୍ରୁପଦରାଜାର ପୁତ୍ର ।

ଧୃଷ୍ଟା, ବି. ସ୍ତ୍ରୀ. (ଧୃଷ୍-ତ-ଆ) ଅସତୀ ।

ଧୃଷ୍ଟି, ବି. ପୁଂ. (ଧୃଷ୍-ନି) କିରଣ, ଅଲୋକ ।

ଧୃଷ୍ଣୁ, ବିଂ. (ଧୃଷ୍-ନୁ) ପ୍ରଗଲ୍ଭ; ନିର୍ଲଜ୍ଜ; ସହିଷ୍ଣୁ ଧର୍ଷଣଶୀଳ ।

ଧେଡ଼ା, (ଦେଶଜ) ମାଚ; ମାଚ କାଉବିଶେଷ ।

ଧେଣ୍ଟୁରା, ବି. (ହିନ୍ଦି) ନାଗରା, ବାଦ୍ୟବିଶେଷ; ମନାଦ ।

ଧେନ, ବି. ପୁଂ. (ଧେ-ପାନକରିବା-ନ) ସମୁଦ୍ର, ନଦ । ସ୍ତ୍ରୀ. ନଦୀ ।

ଧେନୁ, ବି. ସ୍ତ୍ରୀ. (ଧେ-ନୁ) ନବପ୍ରସୂତା ଗାଭୀ, ସବତ୍ସା ଗୋ ।

ଧେନୁକ, ବି. ପୁଂ. (ଧେନୁ-କ) ଅସୁରବିଶେଷ; ଧେନୁସମୂହ ।

ଧେନୁକା, ବି. ସ୍ତ୍ରୀ. (ଧେନୁ-କ-ଆ) ପଶୁନାୟିକା; ହସ୍ତିନୀ ।

ଧେନୁକାରି, ବି. ପୁଂ. (ଧେନୁକ-ଅରି) କୃଷ୍ଣ ।

ଧେୟ, ବିଂ. (ଧା-ଯ) ଗ୍ରହଣୀୟ; ଜ୍ଞେୟ ।

ଧୈର୍ଯ୍ୟ, ବି. ନ. (ଧୀର-ଯ) ସ୍ଥିରତା, ଧୀରତା, ସହିଷ୍ଣୁତା ।

ଧୈବତ, ବି. ନ. (ଧୀବତ୍-ଅ) ସ୍ୱରବିଶେଷ, କେହି କେହି ଏହି ସ୍ୱରକୁ ଘୋଡ଼ା ଶବ୍ଦ ପରି, କେହି କେହି ଭେକ ଶବ୍ଦ ପରି କହନ୍ତି ।

ଧୋଇବା, କ୍ରି. (ଧୌତ ଶବ୍ଦଜ) ଧୌତ କରିବା । ଯଥା—

ବିଭୁ ମୋ ଏ ପୋତେ ଲଭ୍ୟନ୍ତ
ବସାଇ ନ ଦେବ ପାଦ ନ ଧୋଇ ନାବ । ବୈ. ବ.

ଧୋକା, ବି. (ଦେଶଜ) ସନ୍ଦେହ, ସଂଶୟ । ଯଥା—

ଧୋକା ରଖିଲେ ଧନ୍ଦା ଫିଟିବ ନାହିଁ ।

ଧୋତି, ବି. (ଦେଶଜ) ପିନ୍ଧିବାବସ୍ତ୍ର ପଞ୍ଚାଲକଙ୍ଗା ।

ଧୋବା, ବି. (ଧାବ ଧାତୁଜ) ରଜକ ।

ଧୌତ, ବିଂ. (ଧାବ-ତ) ପରିଷ୍କୃତ; କ୍ଷାଳିତ; ମାର୍ଜିତ । ବି. ନ. ରଜତ ।

ଧୌତଶିଳ, ବି. ନ. (ଧୌତ-ଶିଳା) ସ୍ଫଟିକ, ସ୍ଫଟିକମଣି ।

ଧୌମ୍ୟ, ବି. ପୁଂ. ଧୂମର୍ଷିର ପୁତ୍ର, ଦେବଳର କନିଷ୍ଠ ଭ୍ରାତା, ପାଣ୍ଡବମାନଙ୍କ ପୁରୋହିତ ।

ଧୌର୍ଯ୍ୟ, ବି. ନ. (ଧୁର୍-ଯ) ଅଶ୍ୱର ପ୍ରଥମଗତି ।

ଧ୍ମାତ, ବିଂ. (ଧ୍ମା=ଅଗ୍ନି ସଂଯୋଗ କରିବା, ଶବ୍ଦ କରିବା-ତ) ଶବ୍ଦିତ, ବାଦିତ, ଦଗ୍ଧ ।

ଧ୍ୟାତ, ବିଂ. ( ଧ୍ୟୈ-ତ ) ଚିନ୍ତିତ; ସ୍ମୃତ; ଅନୁଶୀଳିତ ।

ଧ୍ୟାତବ୍ୟ. ବିଂ.(ଧ୍ୟୈ-ତବ୍ୟ) ଚିନ୍ତନୀୟ, ସ୍ମରଣୀୟ ।

ଧ୍ୟାନ, ବି. ନ. (ଧ୍ୟୈ-ଅନ ) ଚିନ୍ତା; ସ୍ମରଣ; ଆଲୋଚନା ।

ଧ୍ୟେୟ, ବିଂ. (ଧ୍ୟୈ-ଯ) ଧ୍ୟାନର ଯୋଗ୍ୟ;ସ୍ମରଣୀୟ ।

ଧ୍ରୁବ, ବି. ପୁଂ. (ଧ୍ରୁ-ଅ) ନିଶ୍ଚୟ । ଯଥା—

ଏ ବାଣୀକି ମୋର ଧ୍ରୁବ କରି ଜାଣ ।

ନକ୍ଷତ୍ରବିଶେଷ; ବ୍ରହ୍ମା; ବିଷ୍ଣୁ; ଶିବ; ଉତ୍ତାନପାଦ ରାଜାର ପୁତ୍ର ।

ଧ୍ରୁବରେଖା, ବି. ସ୍ତ୍ରୀ. ବିଷୁବରେଖା, ନାଡ଼ୀମଣ୍ଡଳ, ( Equator. )

ଧ୍ରୁବଲୋକ, ବି. ପୁଂ.(ଧ୍ରୁବ-ଲୋକ) ସ୍ୱର୍ଗବିଶେଷ । ଯଥା—

ଧ୍ରୁବ ଧ୍ରୁବଲୋକ ବଳ ମୋ ନିଦା ଥବଲୀ
ଗଲେ କି ତାହା ଲେଖିବ ଜୀବ । ବି. ଚ.

ଧ୍ୱଂସ, ବି. ପୁଂ. (ଧ୍ୱନ୍‌ସ୍-ଅ) ନାଶ; କ୍ଷୟ; ହାନି; ପତନ; ଖଣ୍ଡନ; ଗମନ ।

ଧ୍ୱଂସନ, ବି. ନ. (ଧ୍ୱନ୍‌ସ୍-ଅନ) ନାଶ;କ୍ଷୟ;ପତନ ।

ଧ୍ୱଂସିତ, ବିଂ. ( ଧ୍ୱନ୍‌ସ୍-ତ ) ବିନାଶିତ; ପାତିତ; ଖଣ୍ଡିତ ।

ଧ୍ୱଜ, ବି. ନ. (ଧ୍ୱଜ୍-ଅ) ଚିହ୍ନ; ପତାକା; ନିଶାଣ ।

ଧ୍ୱଜଭଙ୍ଗ, ବି. ପୁଂ. ( ଧ୍ୱଜ-ଭଙ୍ଗ ) କ୍ଲୀବତ୍ୱଜନକ ରୋଗବିଶେଷ, ପୁରୁଷର ସନ୍ତାନୋତ୍ପାଦକ ଶକ୍ତି ନ ଥିବାର ।

ଧ୍ୱଜା, ବି. ସ୍ତ୍ରୀ. (ଧ୍ୱଜ-ଆ) କେତନ, ପତାକା ।

ଧ୍ୱଜୀ, ବି. ପୁଂ. (ଧ୍ୱଜ-ଇନ୍ ) ବ୍ରାହ୍ମଣ, ରଥ,ସର୍ପ, ଅଶ୍ୱ, ମୟୂର, ଚମୂ , ସେନା । ସ୍ତ୍ରୀ. ସେନା, ବାହିନୀ । ବିଂ. ଧ୍ୱଜଧାରୀ ।

ଧ୍ୱନି, ବି.ପୁଂ. (ଧ୍ୱନ୍-ଇ)ଶବ୍ଦ, ରବ, ସ୍ୱନ, ନାଦ ।

ଧ୍ୱନିତ, ବିଂ (ଧ୍ୱନ୍-ତ) ନାଦିତ, ଶବ୍ଦିତ ।

ଧ୍ୱସ୍ତ, ବିଂ (ଧ୍ୱନ୍‌ସ୍-ତ) ପତିତ, ନଷ୍ଟ ।

ଧ୍ୱାନ, ବି. ପୁଂ. (ଧ୍ୱନ୍-ଅ) ଶବ୍ଦ, ନାଦ, ଧ୍ୱନି ।

ଧ୍ୱାନ୍ତ, ବି. ନ. (ଧ୍ୱନ୍-ତ) ତିମିର, ଅନ୍ଧକାର ।

ଧ୍ୱାନ୍ତାରି, ବି. ପୁଂ. (ଧ୍ୱନ୍-ତ-ଅରି) ଚନ୍ଦ୍ର; ଅଗ୍ନି; ସୂର୍ଯ୍ୟ ।

ଧ୍ୱାନ୍ତହାରୀ, ବିଂ. ଅନ୍ଧକାରନାଶକାରୀ । ବି. ପୁଂ. ସୂର୍ଯ୍ୟ, ଚନ୍ଦ୍ର, ଆଲୋକ, ପ୍ରଦୀପ ।

——:o:——

# ନ

ନ, ବ୍ୟଞ୍ଜନ ବର୍ଣ୍ଣର ବିଂଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଦନ୍ତ । ଅଂ. (ଣୀ-ଅ) ନିଷେଧବାଚକ ଅବ୍ୟୟ; ଭେଦ; ସାଦୃଶ୍ୟ; ଅଭାବ । ବି. ପୁଂ. ବୌଦ୍ଧ; ଗଣେଶ; ବନ୍ଧନ; ରଣ; ଦାନ ।

ନଅର, ବି. (ନଗର ଶବ୍ଦଜ) ରାଜାର ଉଆସ, ରାଜଭବନ ।

ନଇଁବା, କ୍ରି. (ନମ୍ ଧାତୁଜ) ନତ ହେବାର । ଯଥା—

ନଇଁପଡଥିବୁ ଯେତେବେଳେ
ବଧାଏ ମାରିବ ସେତେବେଳେ ।

ନଈ, ବି. ସ୍ତ୍ରୀ. (ନଦୀର ଅପଭ୍ରଂଶ) ନଦୀ ।

ନଉଡ, ଲଉଡ, ବିଂ. (ଲଗୁଡ଼ ଶବ୍ଦଜ) ବାଡି । ଯଥା—

ଏତେ ବୋଲି କୋପ କରଣ ବୁଢୀ
ହସ୍ତରେ ତାର ଧରଲା ନଉଡ଼ି ।

ନଉଡ, ବି. ( ଦେଶଜ ) ପରିମାପକବିଶେଷ; ବଡ଼ହାଣ୍ଡି । ଯଥା—

ଏଣେତେଣକୁ ପଳାନ୍ତି ମଣ୍ଡାସି,
ଉଦ ବାଛ କଣା ନଉଡ ଗୃହ ।

ନଉରୁଣି, ବି. (ଦେଶଜ) ନଖ କାଟିବା ଶସ୍ତ୍ର ।

ନକଲ, ବି. (ଯାବନିକ) କୌତୁକ, ପରିହାସ; ଉତ୍ତାରିବା, ଆଦର୍ଶ, ଅନୁରୂପ, ପ୍ରତିଲିପି, ଅନୁକରଣ ।

ନକ୍‌ଶା, ବି. (ଯାବନିକ) ଛବି, ପ୍ରତିମୂର୍ତ୍ତି ।

ନକୁଳ, ବି. ପୁଂ. (ନ-କୁଳ) ନେଉଳ; ଚତୁର୍ଥ ପାଣ୍ଡବ; ମହାଦେବ; । ବିଂ. କୁଳହୀନ ।

ନକୁଳୀ, ବ. ସ୍ତ୍ରୀ. (ନ-କୁଳ୍-ଈ) କୁକୁଟୀ; କୁକ୍କୁମ ।

ନକ୍ତ, ବ. ନ. (ନଜ୍=ଲଜ୍ଜିତ ହେବା-ତ) ରାତ୍ରି ।

ନକ୍ତକ, ବ. ପୁଂ. (ନକ୍ତ-କ) ଛିନ୍ନବସ୍ତ୍ର ।

ନକ୍ତଚର, ବ. ପୁଂ. (ନକ୍ତ-ଚର୍-ଅ) ରାକ୍ଷସ, ପିଶାଚ; ପେଚକ; ଚୋର । ବଂ. ରାତ୍ରିଚର ।

ନକ୍ତନ୍ଦିବ, ବ. ନ. (ନକ୍ତମ୍-ଦିବା) ଦିବାରାତ୍ରି, ଦିନରାତ ।

ନକ୍ତମାଳ, ବ. ପୁଂ. (ନକ୍ତମ୍-ଆ-ଅଲ୍-ଅ) କରଞ୍ଜବୃକ୍ଷ ।

ନକ୍ତମୁଖା, ବ. ସ୍ତ୍ରୀ. (ନକ୍ତମ୍-ଉଖ୍-ଅ) ରଜନୀ, ରାତ୍ରି ।

ନକ୍ର, ବ. ପୁଂ. (ନ-କ୍ରମ୍-ଅ) କୁମ୍ଭୀର । ନ. ଦ୍ୱାରର ଅଗ୍ରକାଷ୍ଠ ।

ନକ୍ରା, ବ. ସ୍ତ୍ରୀ. (ନ-କ୍ରମ୍-ଅ-ଆ) ନାସିକା ।

ନକ୍ଷତ୍ର, ବ. ନ. (ନ-କ୍ଷି-ଅତ୍ର) ତାରକା, ଅଶ୍ୱିନ୍ୟାଦି ସପ୍ତବିଂଶତି ତାରା, ତାରା; ମୁକ୍ତା ।

ନକ୍ଷତ୍ରଚକ୍ର, ବ. ନ. (ନକ୍ଷତ୍ର-ଚକ୍ର) ରାଶିଚକ୍ର, ତନ୍ତ୍ରୋକ୍ତମନ୍ତ୍ରଗ୍ରହଣୋପଯୋଗୀ ଚକ୍ରବିଶେଷ ।

ନକ୍ଷତ୍ରନେମି, ବ. ପୁଂ. (ନକ୍ଷତ୍ର-ନେମି) ଚନ୍ଦ୍ର; ବିଷ୍ଣୁ; ଧ୍ରୁବନକ୍ଷତ୍ର । ବ. ସ୍ତ୍ରୀ. ରେବତୀ-ନକ୍ଷତ୍ର ।

ନକ୍ଷତ୍ରପ, ବ. ପୁଂ. (ନକ୍ଷତ୍ର-ପା-ଅ) ଚନ୍ଦ୍ର ।

ନକ୍ଷତ୍ରମାଳା, ବ. ସ୍ତ୍ରୀ. (ନକ୍ଷତ୍ର-ମାଳା) ନକ୍ଷତ୍ର-ସମୂହ, ନକ୍ଷତ୍ରଶ୍ରେଣୀ ।

ନଖ, ବ. ପୁଂ. ନ. (ନ-ଖନ୍-ଅ) ଅଙ୍ଗୁଳିର ଅଗ୍ରସ୍ଥ ଅସ୍ଥିବିଶେଷ । ପୁଂ. ଅଂଶ, ଖଣ୍ଡ ।

ନଖକୁଟ୍ଟ, ବ. ପୁଂ. (ନଖ-କୁଟ୍ଟ=କାଟିବା-ଅ) ନାପିତ ।

ନଖର, ବ. ପୁଂ. (ନଖ-ରା-ଅ) ନଖ ।

ନଖରାୟୁଧ, ବ. ପୁଂ. (ନଖର-ଆୟୁଧ) ସିଂହ, ବ୍ୟାଘ୍ର, କୁକ୍କୁଟ ପ୍ରଭୃତି, ଯେଉଁମାନେ ନଖ-ଦ୍ୱାରା ଅସ୍ତ୍ର କାର୍ଯ୍ୟ ନିର୍ବାହ କରନ୍ତି ।

ନଖୀ, ବଂ. (ନଖ-ଇନ୍) ନଖବିଶିଷ୍ଟ, ଯାହାର ନଖ ଅଛି; ଅତି ପ୍ରଚଳିତ କଥାରେ ସିତାର ପ୍ରଭୃତି ବଜାଇବାନିମିତ୍ତ ଲୌହତାରରେ ନିର୍ମିତ ଅଙ୍ଗୁରୀୟବିଶେଷ ।

ନଗ, ବ. ପୁଂ. (ନ-ଗମ୍-ଅ) ପର୍ବତ; ବୃକ୍ଷ ।

ନଗଜ, ବ. ପୁଂ. (ନଗ=ଜନ୍-ଅ) ହସ୍ତୀ । ବଂ. ପର୍ବତଜାତ, ପାର୍ବତୀୟ । ସ୍ତ୍ରୀ. ପାର୍ବତୀ; କ୍ଷୁଦ୍ରପାଷାଣଭେଦୀ ଲତା ।

ନଗଦ, ବଂ. (ଯାବନିକ) ପ୍ରସ୍ତୁତ ମୂଲ୍ୟ ଦେଇ କ୍ରୟ କରିବା ।

ନଗନନ୍ଦିନୀ, ବ. ସ୍ତ୍ରୀ. (ନଗ-ନନ୍ଦିନୀ) ଦୁର୍ଗା ।

ନଗପତି, ବ. ପୁଂ. (ନଗ-ପତି) ହିମାଳୟ; ଚନ୍ଦ୍ର; ପର୍ବତଶ୍ରେଷ୍ଠ ।

ନଗଭିଦ୍, ବ. ପୁଂ. (ନଗ-ଭିଦ୍-୦) ଇନ୍ଦ୍ର ।

ନଗର, ନ. } ବ. (ନଗ-ର, ଈ) ସହର,
ନଗରୀ, ସ୍ତ୍ରୀ. } ନାନା ଜାତି ଓ ନାନା ଶିଳ୍ପ ବାଣିଜ୍ୟାଦିର ସ୍ଥାନ ।

ନଗରପାଳ, ବ. ପୁଂ. (ନଗର-ପାଳ) ନଗର-ରକ୍ଷକ, ଚୌକିଦାର ।

ନଗରରକ୍ଷୀ, ବଂ. (ନଗର-ରକ୍ଷ୍-ଇନ୍) ନଗର-ପାଳ ।

ନଗରସ୍ଥ, ବଂ. (ନଗର-ସ୍ଥା-ଅ) ନଗରବାସୀ; ନାଗରିକ; ଯାହା ନଗରରେ ଥାଏ ।

ନଗରୀୟ, ବଂ. (ନଗର-ଈୟ) ନଗରସମ୍ବନ୍ଧୀୟ; ନଗରସ୍ଥ; ନଗରୋତ୍ପନ୍ନ ।

ନଗାଟନ, ବ. ପୁଂ. (ନଗ-ଅଟ୍-ଅନ) ବାନର, କପି ।

ନଗାଧିପ, ବ. ପୁଂ. (ନଗ-ଅଧିପ) ହିମାଳୟ ।

ନଗାଧିରାଜ, ବ. ପୁଂ. (ନଗ-ଅଧିରାଜ) ହିମା-ଳୟ ।

ନଗ୍ନ, ବଂ. (ନଜ୍-ତ) ଉଲଗ୍ନ, ବିବସ୍ତ୍ର, ଲଙ୍ଗଳା । ବ. ପୁଂ. କ୍ଷପଣକ; ସ୍ତୁତିପାଠକ ।

ନଗ୍ନକ, ବଂ. (ନଗ୍ନ-କ) ବିବସ୍ତ୍ର ।

ନଗ୍ନାଟ, ବ. ପୁଂ. (ନଗ୍ନ-ଅଟ) ଦିଗମ୍ବର, ବିବସ୍ତ୍ର ।

ନଗ୍ନିକା, ବ. ସ୍ତ୍ରୀ. (ନଗ୍ନ-କ-ଅ) ଅପ୍ରାପ୍ତବୟସ୍କା ନାରୀ; ବଳବସ୍ତ୍ରା ସ୍ତ୍ରୀ ।

ନଚେତ୍, ଅଂ (ନ-ଚେତ୍) ନହୁବା ।

ନଜର, (ଯାବନିକ) ଦୃଷ୍ଟି, ତତ୍ତ୍ୱାବଧାନ । ଯଥା—

ପଡ଼ିଗଲେ ତା ନଜରେ ।

ନଜୀର, (ଆରବୀ, ନଜର ଶବ୍ଦଜ) ଉଦାହରଣ ।

ନଟ, ବ. ପୁଂ. ସ୍ତ୍ରୀ. (ନଟ୍-ଅ) ନର୍ତ୍ତକ, ଅଭିନୟକର୍ତ୍ତା, ଯେ ନୃତ୍ୟ କରେ; ବେଶ୍ୟା ; ମାୟା; କଙ୍କାଳ । ଯଥା—

କେ ବୋଲେ ଏତେ ନଟକୁ, ସଜନ କହ,
ଗୋଇଠ ଦେବା ବାଟ ଛଡ଼ୁ ଏ ଯିବା ହାଟକୁ । ବ. ଚ.

ନଟକାର, ବ. ପୁଂ. ବାଜିକାର, ଐନ୍ଦ୍ରଜାଲିକ । ଯଥା—

ଯାହା ନଟକାର ପରି, ଦେଖାଇ ତ ହରିନେଇ କନକଗଢ଼ରି ।
ପ୍ରେ. ସୁ.

ନଟନ, ବ. ନ. (ନଟ୍-ଅନ) ନୃତ୍ୟ, ନାଟ୍ୟ ।

ନଟବର, ବ. ପୁଂ. (ନଟ-ବର) କୃଷ୍ଣ, ନୃତ୍ୟକର୍ମରେ ପଟୁ ।

ନଟାନ୍ତିକ, ବ. ସ୍ତ୍ରୀ. (ନଟ-ଅନ୍ତ-କ) ଲଜ୍ଜା ।

ନଟୀ, ବ. ସ୍ତ୍ରୀ. (ନଟ-ଈ) ନର୍ତ୍ତକୀ, ଅଭିନୟକର୍ତ୍ତ୍ରୀ; ବେଶ୍ୟା ।

ନଟେଶ୍ୱର, ବ. ପୁଂ. (ନଟ-ଈଶ୍ୱର) ଶିବ ।

ନଡ଼, ବ. ପୁଂ. (ନଲ୍-ଅ, ଲ ସ୍ଥାନେ ଡ) ନଳ ।

ନଡ଼ା, ବ. (ଦୈଶଜ) ଛଣ ।

ନଡ଼ିଆ, ବ. (ନାରିକେଳ ଶବ୍ଦଜ) ନାରିକେଳ ।

ନଣନ୍ଦ, ବ. (ନନାନ୍ଦୃ ଶବ୍ଦଜ) ପତିର ଭଗିନୀ ।

ନଣନ୍ଦୋଇ, ବ. (ନନାନ୍ଦୃ ଶବ୍ଦଜ) ନଣନ୍ଦର ପତି ।

ନଣ୍ଡା, ବଂ. ଶିଖାଶୂନ୍ୟ ।

ନତ, ବଂ. (ନମ୍-ତ) ପ୍ରଣତ, ନମ୍ର; କୁଟିଳ; ଆନତ; ଈଷତ୍‌ବକ୍ର ।

ନତାଙ୍ଗୀ, ବ.ସ୍ତ୍ରୀ. (ନତ-ଅଙ୍ଗ-ଈ) ସନ୍ନତଗାତ୍ରୀ ସ୍ତ୍ରୀ ।

ନତି, ବ. ସ୍ତ୍ରୀ. (ନମ୍-ତି) ପ୍ରଣାମ, ନମସ୍କାର; କୁଟିଳତା; ଆକର୍ଷଣ ।

ନତୁବା, ଅଂ. (ନ-ତୁ-ବା) ନଚେତ୍, ଅଥବା ।

ନଥ, ବ. ନ. (ହିନ୍ଦୀ) ନାକର ଅଳଙ୍କାରବିଶେଷ । ଯଥା—

ଓଢ଼ଣୀ ଦେଇ ମାଥରେ, ଅଡସି କରେ ହାତରେ,
ଦେଖି ମନ୍ମଥରେ କେ ଥିବା ନ ଥରେ ନେତ୍ର ପଡ଼ିଲେ ନଥରେ ।
ବ. ଚ.

ନଥା, ବ. (ଦେଶଜ) ଚାଳ; ଉପରେ ପଡିବା ।

ନଥି, ବ. (ଯାବନିକ) ଏକାବେ ଗୁନ୍ଥା କାଗଜ ।

ନଦ, ବ. ପୁଂ. (ନଦ୍-ଅ) ପୁଂବାଚକ ଜଳପ୍ରବାହ; ଯଥା—ବ୍ରହ୍ମପୁତ୍ର ନଦ ।

ନଦୀ, ବ. ସ୍ତ୍ରୀ. (ନଦ୍-ଈ) ସ୍ତ୍ରୀବାଚକ ଜଳପ୍ରବାହ । ଯଥା—ଗଙ୍ଗାନଦୀ ।

ନଦୀକୂଳବନ୍ଧୁ, ବ. (ଦେଶଜ) ଯାମଘୋଷୀ ପକ୍ଷିବିଶେଷ । ଯଥା—

ନଦୀକୂଳଁ ଶୁଣି ସ୍ୱନାଡର ସ୍ୱର
ନଦୀକୂଳ-ବନ୍ଧୁ ଦେଲ ପ୍ରତ୍ୟୁତ୍ତର । ନ. କେ.

ନଦୀଜ, ବ. ପୁଂ. (ନଦୀ-ଜ) ଗାଙ୍ଗେୟ; ଭୀଷ୍ମ; ଅର୍ଜୁନବୃକ୍ଷ; ହିଜ୍ଜଳବୃକ୍ଷ । ବଂ. ନଦୀରୁ ଜାତ ।

ନଦୀତରସ୍ଥାନ, ବ. ନ. (ନଦୀ-ତର-ସ୍ଥାନ) ନଦୀ ପାର ହେବାର ଘାଟ ।

ନଦୀନ, ବ. ପୁଂ. (ନଦୀ-ଇନ) ସମୁଦ୍ର, ବରୁଣ ।

ନଦୀମାତୃକ, ବଂ. (ନଦୀ-ମାତୃକ) ନଦୀ ଜଳରେ ଉତ୍ପନ୍ନ ଶସ୍ୟରେ ପାଳିତଦେଶ ।

ନଦୀଷ୍ଣ, ବଂ. (ନଦୀ-ସ୍ନା-ଅ) ଯେ ନଦୀରେ ସ୍ନାନ କରେ ।

ନଧ୍ରୀ, ବ. ସ୍ତ୍ରୀ. (ନଦ୍ଧ-ର-ଈ) ଚର୍ମରଜ୍ଜୁ, ଚମଦଉଡ଼ି ।

ନନୁ, ଅଂ. (ନ-ନୁଦ୍-ଉ, ଉଦ୍‌ଲୋପ) ପ୍ରଶ୍ନ; ସ୍ୱୀକାର; ଅନୁଜ୍ଞା; ସନ୍ଦେହ; ସମ୍ଭାବନା; ନିଶ୍ଚୟ, ଅବଧାରଣା ।

ନନ୍ଦ, ବ. ପୁଂ. (ନନ୍ଦ୍-ଅ) କୃଷ୍ଣଙ୍କ ପାଳକ ପିତା, ପରମେଶ୍ୱର; ଚନ୍ଦ୍ରବଂଶୀୟ ନୃପବିଶେଷ । ନ୍ଦା, ପୁଂ. ସ୍ତ୍ରୀ. ଆନନ୍ଦ; (ଦେଶଜ) କୂଅନନ୍ଦ ।

ନନ୍ଦକ, ବି. ପୁଂ. (ନନ୍ଦ୍-ଅକ) କୃଷ୍ଣଙ୍କ ଖଡ୍ଗ । ବିଂ. ଆନନ୍ଦଜନକ ।

ନନ୍ଦକୀ, ବିଂ. ( ନନ୍ଦକ-ଇନ୍ ) ବିଷ୍ଣୁ, କୃଷ୍ଣ ।

ନନ୍ଦନ, ବି. ପୁଂ. (ନନ୍ଦ୍-ଇ-ଅନ) ପୁତ୍ର; ବିଷ୍ଣୁ; ମହାଦେବ; ପର୍ବତବିଶେଷ । ସ୍ତ୍ରୀ. କନ୍ୟା । ନ. ଇନ୍ଦ୍ରୋଦ୍ୟାନ । ବିଂ. ଆନନ୍ଦଜନକ ।

ନନ୍ଦନନ୍ଦନ, ବି. ପୁଂ. (ନନ୍ଦ-ନନ୍ଦନ) କୃଷ୍ଣ ।

ନନ୍ଦନନ୍ଦନୀ, ବି. ସ୍ତ୍ରୀ. (ନନ୍ଦ-ନନ୍ଦନୀ) ଦୁର୍ଗା ।

ନନ୍ଦା, ବି. ସ୍ତ୍ରୀ. ( ନନ୍ଦ-ଇ-ଅ-ଆ ) ଜଳାଧାର; ଦୁର୍ଗା; ପ୍ରତିପଦ୍, ଷଷ୍ଠୀ, ଏକାଦଶୀ ଏହି ତିନି ତିଥି ।

ନନ୍ଦାତ୍ମକ, ବି. ପୁଂ. ( ନନ୍ଦ-ଆତ୍ମକ ) ଶ୍ରୀକୃଷ୍ଣ । ସ୍ତ୍ରୀ. ଦୁର୍ଗା ।

ନନ୍ଦି, ବି. ପୁଂ. (ନନ୍ଦ-ଇ) ଆନନ୍ଦ ।

ନନ୍ଦିଆ, ବି. (ଦେଶଜ) ବଡ ବଡ କୁଣ୍ଡ; କାହାଲି ।

ନନ୍ଦିକା, ବି. ସ୍ତ୍ରୀ. (ନନ୍ଦୀ-କ-ଆ) କେଶରୀବଂଶୀୟ ଶେଷ ରାଜା ସୁବର୍ଣ୍ଣକେଶରୀଙ୍କର କନ୍ୟା; ଇନ୍ଦ୍ରୋଦ୍ୟାନ; ତିଥିବିଶେଷ, ନନ୍ଦା ।

ନନ୍ଦିକେଶ୍ୱର, ବି. ପୁଂ. (ନନ୍ଦିକା-ଈଶ୍ୱର) ଶିବଙ୍କ ପ୍ରଧାନ ଅନୁଚର, ନନ୍ଦୀ ।

ନନ୍ଦିଗ୍ରାମ, ବି. ପୁଂ. ଗ୍ରାମବିଶେଷ, ରାମଚନ୍ଦ୍ରଙ୍କ ବନବାସ କାଳରେ ଭରତ ତାହାଙ୍କ ପାଦୁକା ସିଂହାସନୋପରି ରଖି ଏ ସ୍ଥାନରେ ରାଜତ୍ୱ କରିଥିଲେ ।

ନନ୍ଦିଘୋଷ, ବି. ପୁଂ. (ନନ୍ଦି-ଘୋଷ) ଅର୍ଜୁନଙ୍କର ରଥ ।

ନନ୍ଦିତ, ବିଂ. (ନନ୍ଦ-ଇ-ତ) ଆନନ୍ଦିତ, ତୋଷିତ ।

ନନ୍ଦିନୀ, ବି. ସ୍ତ୍ରୀ. (ନନ୍ଦନ୍-ଈ) ପାର୍ବତୀ; କନ୍ୟା, ଝିଅ । ଯଥା—

କହନ୍ତି ବୃଷଭାନୁନନ୍ଦିନୀ କ୍ରୋଧେ ।

ଗଙ୍ଗା; ବଶିଷ୍ଠଙ୍କର ହୋମଧେନୁ ।

ନନ୍ଦୀ, ବି. ପୁଂ. ( ନନ୍ଦ-ଇନ୍ ) ଶିବର ପ୍ରଧାନ ଅନୁଚର । ସ୍ତ୍ରୀ. ଦୁର୍ଗା । ବିଂ. ଆନନ୍ଦିତ ।

ନନ୍ଦୀଶ, ନନ୍ଦୀଶ୍ୱର, ବି.ପୁଂ. (ନନ୍ଦୀ-ଈଶ,ଈଶ୍ୱର) ଶିବ, ମହାଦେବ; ନନ୍ଦୀ, ନନ୍ଦିକେଶ୍ୱର ।

ନପୁଂସକ, ବି. ପୁ. ନ. (ନ-ପୁଂସକ) ଯେଉଁ ବ୍ୟକ୍ତିକୁ ସ୍ତ୍ରୀ ବା ପୁରୁଷ ବୋଲି ଗଣନା କରି ଯାଏ ନାହିଁ, କ୍ଲୀବ, ଛିନ୍ନମୁଷ୍କ; ଲିଙ୍ଗବିଶେଷ ।

ନପ୍ତା, ବି. ପୁଂ. ( ନ-ପତ୍-ତୃ ) ନାତି, ପୁତ୍ର ବା କନ୍ୟାର ପୁତ୍ର ।

ନପ୍ତ୍ରୀ, ବି. ସ୍ତ୍ରୀ. ( ନ-ପତ୍-ତୃ-ଈ ) ନାତୁଣୀ, ପୌତ୍ରୀ, ଦୌହିତ୍ରୀ ।

ନଫର, (ଆରବୀ) ଭୃତ୍ୟ, ଦାସ ।

ନଫା, ବି. (ଯାବନିକ) ଲାଭ, ମୁନଫା ।

ନବିସିନ୍ଦା, (ଯାବନିକ) ଲେଖକ ।

ନଭ, ବି. ନ. (ନଭ୍-ଅ) ଆକାଶ । ପୁଂ. ଶ୍ରାବଣ ମାସ । ବିଂ. ହିଂସକ ।

ନଭଃ, ବି. ନ. (ନଭ୍-ଅସ୍) ଆକାଶ; ସ୍ୱର୍ଗ । ପୁଂ. ଶ୍ରାବଣ ମାସ, ବର୍ଷାକାଳ ।

ନଭଃକ୍ରାନ୍ତୀ, ବି. ପୁଂ. ( ନଭସ୍-କ୍ରାନ୍ତିନ୍ ) ସିଂହ, ମୃଗେନ୍ଦ୍ର ।

ନଭଶ୍ଚକ୍ଷୁଃ, ବି. ପୁଂ. (ନଭସ୍-ଚକ୍ଷୁସ୍) ସୂର୍ଯ୍ୟ ।

ନଭଶ୍ଚମସ, ବି. ପୁଂ. ( ନଭସ୍-ଚମସ ) ଚନ୍ଦ୍ର; ଇନ୍ଦ୍ରଜାଲ; ନାନାବର୍ଣ୍ଣ ପିଷ୍ଟକ; ଚରୁ; ଅପୂପ ।

ନଭଶ୍ଚର, ବିଂ. ( ନଭସ୍-ଚର୍-ଅ ) ଆକାଶଗାମୀ । ବି. ପୁଂ. ପକ୍ଷୀ; ବିଦ୍ୟାଧର, ଗନ୍ଧର୍ବ ପ୍ରଭୃତି; ବାୟୁ; ମେଘ; ସୂର୍ଯ୍ୟାଦି ଗ୍ରହ; ରାକ୍ଷସ ।

ନଭସ, ବି. ନ. (ନଭ୍-ଅସ) ଆକାଶ; ସ୍ୱର୍ଗ ।

ନଭସ୍ତଳ, ବି. ନ. ( ନଭସ୍-ତଳ ) ଗଗନତଳ, ଆକାଶଦେଶ ।

ନଭୋଗ, ବି. ପୁଂ. (ନଭସ୍-ଗମ୍-ଅ) ଦେବତା; ମେଘ । ବିଂ. ଆକାଶଗାମୀ ।

ନଭୋଗଜ, ନଭୋଦୁହ, ନଭୋଦ୍ୱୀପ, ନଭୋଧୂମ, } ବି. ପୁଂ. ( ନଭସ୍=ଆକାଶ-ଗଜ=ହସ୍ତୀ, ନଭସ୍=ବୃଷ୍ଟି-ଦୁହ୍=ଦୋହନକରିବା-ଅ, ନଭସ୍=ବୃଷ୍ଟି-ଦୀପ, ନଭସ୍=ଆକାଶ-ଧୂମ=ଧୂଆଁ) ମେଘ, ଅମ୍ବୁଦ, ଜଳଦ ।

ନଭୋନଦୀ, ବ. ସ୍ତ୍ରୀ. (ନଭସ୍-ନଦୀ) ସ୍ୱର୍ଗଗଙ୍ଗା, ମନ୍ଦାକିନୀ ।

ନଭୋମଣି, ବ. ପୁଂ. (ନଭସ୍-ମଣି) ସୂର୍ଯ୍ୟ ।

ନଭୋମଣ୍ଡଳ, ବ. ନ. (ନଭସ୍-ମଣ୍ଡଳ) ଗଗନମଣ୍ଡଳ, ଆକାଶମଣ୍ଡଳ ।

ନଭୋରେଣୁ, ବ. ପୁଂ. ସ୍ତ୍ରୀ. ( ନଭସ୍-ରେଣୁ ) କୁଜ୍‌ଝଟିକା, କୁହୁଡ଼ି; ଅନ୍ଧକାର ।

ନମଃ, ଅଂ. (ନମ୍-ଅସ୍) ନମସ୍କାର ।

ନମତ, ବ.ପୁଂ. (ନମ୍-ଅତ) ପ୍ରଭୁ; ନଟ,ନର୍ତ୍ତକ; ଧୂମ ।

ନମନ, ବ. ନ. ( ନମ୍-ଅନ ) ନତ ହେବା, ନୁଆଁଇବା, ପ୍ରଣାମ ।

ନମନୀୟ, ବଂ. (ନମ୍-ଅନୀୟ) ନମନର ଯୋଗ୍ୟ, ଯାହାକୁ ନୁଆଁ ଯାଇପାରେ ।

ନମସ୍କାର, ବ. ପୁଂ. ( ନମସ୍-କାର ) କର ଶିରଃ ସଂଯୋଗପୂର୍ବକ ନତ ହେବା, ପ୍ରଣାମ, ନତିକରଣ ।

ନମସ୍କୃତ, ବଂ. (ନମସ୍-କୃ-ତ) ଯାହାଙ୍କୁ ନମସ୍କାର କରି ଯାଇଅଛି ।

ନମସ୍ୟ, ବଂ. ( ନମସ୍-ଯ ) ପୂଜନୀୟ, ପ୍ରଣମ୍ୟ, ନମସ୍କାରଯୋଗ୍ୟ । ସ୍ତ୍ରୀ. ପୂଜା, ଅର୍ଚ୍ଚନା, ନତି ।

ନମିତ, ବଂ. ( ନମି-ତ ) ବକ୍ରକୃତ, ପ୍ରଣମିତ, ନମସ୍କୃତ ।

ନମୁଚି, ବ. ପୁଂ.(ନ-ମୁଚ୍-ଇ)କନ୍ଦର୍ପ,କାମଦେବ; ଅସୁରବିଶେଷ ।

ନମୁଚିସୂଦନ, ନମୁଚିଦ୍ୱିଟ୍, ବ. ପୁଂ. ( ନମୁଚି=ଅସୁରବିଶେଷ-ସୂଦନ=ନାଶକରିବା, ନମୁଚି-ଦ୍ୱିଷ୍=ଦ୍ୱେଷକରିବା) ଇନ୍ଦ୍ର ।

ନମୁନା, ନମୁନା, ବ. ( ଯାବନିକ ) ଆଦର୍ଶ, ନିଦର୍ଶନ ।

ନମେରୁ, ବ. ପୁଂ. ( ନ-ମେରୁ ଅବା ନମ୍-ଏରୁ ) ସୁରପୁନ୍ନାଗ ବୃକ୍ଷ; ରୁଦ୍ରାକ୍ଷ ।

ନମ୍ୟ, ବଂ. (ନମ୍-ଯ) ନମନୀୟ, ନତ କରିବାର ଯୋଗ୍ୟ ।

ନମ୍ର, ବଂ. (ନମ୍-ର)ବିନୀତ, ଶିଷ୍ଟ, ନତ,ପ୍ରଣତ ।

ନମ୍ରକ, ବ. ପୁଂ. (ନମ୍ର-କୈ-ଅ) ବେତସବୃକ୍ଷ ।

ନମ୍ରତା, ବ. ସ୍ତ୍ରୀ. (ନମ୍ର-ତା) ଶିଷ୍ଟତା, ନମ୍ରତା, କୋମଳତା, ସୁଶୀଳତା ।

ନୟ, ବ. ପୁଂ. (ନୀ-ଅ) ଉପଦେଶ, ନୀତି, ନୀତିଶାସ୍ତ୍ର; ଦ୍ୟୂତକ୍ରୀଡ଼ାବିଶେଷ । ବଂ. ନ୍ୟାଯ୍ୟ, ଉପଯୁକ୍ତ । (ନୀତି ଅର୍ଥରେ) ଯଥା—

ନୟେ ବୃହସ୍ପତି, ପାଳନେ ଶ୍ରୀପତି । ଜ. ବ.

ନୟନ, ବ.ନ. (ନୀ-ଅନ) ନେତ୍ର, ଚକ୍ଷୁ; ପ୍ରାପଣ; ଯାପନ । ସ୍ତ୍ରୀ. ଚକ୍ଷୁର ତାରା ।

ନୟନୋତ୍ସବ, ବ. ପୁଂ. (ନୟନ-ଉତ୍ସବ) ପ୍ରଦୀପ, ଅଲୋକ; ଚକ୍ଷୁର ଆନନ୍ଦ ।

ନୟବିଦ୍, ବ. ପୁଂ. (ନୟ-ବିଦ୍) ନୀତିଜ୍ଞ, ନୀତିଶାସ୍ତ୍ରବିଦ୍ ।

ନର, ବ. ପୁଂ. (ନୃ-ଅ) ମନୁଷ୍ୟ, ମାନୁଷ, ପୁରୁଷ; ଅର୍ଜୁନ; ବିଷ୍ଣୁ; ଋଷିବିଶେଷ; ବିଷ୍ଣୁର ଅବତାରବିଶେଷ । ସ୍ତ୍ରୀ. ନାରୀ ।

ନରକ, ବ. ପୁଂ. (ନୃ-ଅକ) ନିରୟ, ଦୁଃଖଭୋଗର ସ୍ଥାନ; ଦୈତ୍ୟବିଶେଷ ।

ନରକକୁଣ୍ଡ, ବ. ନ. ଯମପୁରୀସ୍ଥିତ ଯାତନାମୟ ସ୍ଥାନବିଶେଷ ।

ନରକଜିତ୍, ବ. ପୁଂ. (ନରକ-ଜି-୦) ବିଷ୍ଣୁ ।

ନରକପାଳ, ବ. ପୁଂ. ନ. ମଣିଷର ମୁଣ୍ଡ ।

ନରକଭୂମି, ବ. ସ୍ତ୍ରୀ. ( ନରକ-ଭୂମି ) ଯାତନାବିଶେଷର ଭୋଗଯୋଗ୍ୟ ସ୍ଥାନ ।

ନରକାନ୍ତକ, ବଂ. ( ନରକ-ଅନ୍ତକ ) ବିଷ୍ଣୁ, ନାରାୟଣ ।

ନରଘାତକ, ବ. ପୁଂ. (ନର-ଘାତକ) ଗୁରୁଘ୍ନ, ଗୁରୁହତ୍ୟାକାରୀ ।

ନରକେଶରୀ, ବ. ପୁଂ. (ନର-କେଶରୀ) ନୃସିଂହଦେବ; ମାନବଶ୍ରେଷ୍ଠ ।

ନରଙ୍ଗ, ବ. ପୁଂ. (ନର-ଅଙ୍ଗ) ବ୍ରଣ । ନ. ମେଢ୍ର ।

ନରଦେବ, ବ. ପୁଂ. ( ନର-ଦେବ ) ରାଜା; ବ୍ରାହ୍ମଣ ।

ନରଦ୍ୱିଟ୍, ବି. ପୁଂ. (ନର-ଦ୍ୱିଷ୍-୦) ରାକ୍ଷସ ।
ନରନାରାୟଣ, ବି. ପୁଂ. ( ନର-ନାରାୟଣ ) ଅର୍ଜୁନ; ବଦରିକାଶ୍ରମସ୍ଥ ଋଷିଦ୍ୱୟ ।
ନରପତି, ବି. ପୁଂ. (ନର-ପତି) ରାଜା, ନୃପତି ।
ନରପୁଙ୍ଗବ, ବି. ପୁଂ. (ନର-ପୁଙ୍ଗବ) ନର-ଶ୍ରେଷ୍ଠ, ରାଜା ।
ନରମ, ବିଂ. (ନମ୍ର ଶବ୍ଦଜ) କୋମଳ, ଅକଠିନ, ସହଜ ।
ନରମେଧ, ବି. ପୁଂ. (ନର-ମେଧ) ଯଜ୍ଞବିଶେଷ ।
ନରଲୋକ, ବି. ପୁଂ. (ନର-ଲୋକ) ମନୁଷ୍ୟ-ଲୋକ, ମର୍ତ୍ତ୍ୟଲୋକ ।
ନରସିଂହ, ବି. ପୁଂ. ( ନର-ସିଂହ ) ନୃସିଂହ ଅବତାର, ନାରାୟଣଙ୍କର ଚତୁର୍ଥ ଅବତାର; ମନୁଷ୍ୟଶ୍ରେଷ୍ଠ ।
ନରହରି, ବି. ପୁଂ. (ନର-ହରି) ନୃସିଂହ ଅବତାର, ବିଷ୍ଣୁ ହିରଣ୍ୟକଶିପୁର ବିନାଶାର୍ଥ ଏହି ରୂପ ଧାରଣ କରିଥିଲେ ।
ନରାଧମ, ବି. ପୁଂ. (ନର-ଅଧମ) ମନୁଷ୍ୟ ମଧ୍ୟରେ ହେୟ, ଯାହାର ସ୍ୱଭାବ ଅତ୍ୟନ୍ତ ଓ ଚରିତ୍ର ଅତି ମନ୍ଦ ।
ନରାଧିପ, ବି. ପୁଂ. (ନର-ଅଧିପ) ରାଜା ।
ନରାନ୍ତକ, ବି. ପୁଂ. (ନର-ଅନ୍ତକ) ଯମ; ରାକ୍ଷସ-ବିଶେଷ, ରାବଣର ପୁତ୍ର । ବିଂ. ନରଘାତ ।
ନରେନ୍ଦ୍ର, ବି. ପୁଂ. (ନର-ଇନ୍ଦ୍ର) ନରଶ୍ରେଷ୍ଠ, ରାଜା; ବିଷବୈଦ୍ୟ ।
ନରେଶ, ନରେଶ୍ୱର, ବି. ପୁଂ. ( ନର-ଈଶ, ଈଶ୍ୱର ) ନରପତି,, ରାଜା ।
ନରୋତ୍ତମ, ବି. ପୁଂ. (ନର-ଉତ୍ତମ) ବିଷ୍ଣୁ, ନୃପତି; ହରିଭକ୍ତିପରାୟଣ ସାଧକବିଶେଷ ।
ନର୍କୁଟକ, ବି. ନ. ନାକ, ନାସିକା ।
ନର୍ତ୍ତକ, ବି. ପୁଂ. ( ନୃତ୍-ଅକ ) ନଟ; ହସ୍ତୀ; ମୟୂର । ବିଂ. ନୃତ୍ୟକାରକ । ସ୍ତ୍ରୀ. ନର୍ତ୍ତକୀ; ହସ୍ତିନୀ; ମୟୂରୀ ।
ନର୍ତ୍ତନ, ବି. ନ. (ନୃତ୍-ଅନ) ନୃତ୍ୟ, ନାଚ ।
ନର୍ତ୍ତିତ, ବିଂ. (ନର୍ତ୍ତି-ତ) ଦୋଳିତ, କମ୍ପିତ । ବି. ନ. ନର୍ତ୍ତନ ।
ନର୍ଦ୍ଦମା, ବି. (ଦେଶଜ) ପାଣି ବହିଯିବାର ନଳା, ପୟଃନାଳ; ପ୍ରଣାଳୀ ।
ନର୍ଦ୍ଦିତ, ବିଂ. (ନର୍ଦ୍ଦ୍-ତ) ଶବ୍ଦିତ, କୃତନାଦ ।
ନର୍ମ, ବି. ନ. (ନୃ-ମନ୍) କ୍ରୀଡ଼ା; ପରିହାସ; ବିହାର; ପ୍ରିୟ; କୌତୁକ ।
ନର୍ମକୀଳ, ବି. ପୁଂ. (ନର୍ମନ୍=ବିହାର-କୀଳ= ଶଙ୍କୁ ) ସ୍ୱାମୀ ।
ନର୍ମଠ, ବି. ପୁଂ. (ନର୍ମନ୍-ଠ) ସ୍ତନର ଅଗ୍ରଭାଗ; ଲମ୍ପଟ । ବିଂ. କ୍ରୀଡ଼ାରତ ।
ନର୍ମଦ, ବି. ପୁଂ. ( ନର୍ମନ୍-ଦା-ଅ ) କ୍ରୀଡ଼ା; ସଚିବ । ବିଂ. ପରିହାସଦାୟକ ।
ନର୍ମଦା, ବି. ସ୍ତ୍ରୀ. (ନର୍ମନ୍-ଦା-ଅ-ଆ) ବିନ୍ଧ୍ୟା-ଚଳରୁ ନିର୍ଗତ ନଦୀବିଶେଷ, ରେବା ନଦୀ ।
ନର୍ମସଚିବ, ବି. ପୁଂ. (ନର୍ମନ୍=ବିହାରାଦି-ସଚିବ =ମନ୍ତ୍ରୀ ) କ୍ରୀଡ଼ାସଚିବ; ଭାଣ୍ଡ ।
ନଳ, ବି. ପୁଂ. (ନଲ୍-ଅ) ଶର; ସୂର୍ଯ୍ୟବଂଶୀୟ ନୃପବିଶେଷ; ଗୋଲାକାର ଛିଦ୍ରବିଶିଷ୍ଟ ଲମ୍ବ-ପଦାର୍ଥ; ଦମୟନ୍ତୀଙ୍କ ପତି, ନଳନାମକ ରାଜା; ପିତୃଲୋକବିଶେଷ; ବାନରବିଶେଷ । ନ. ପଦ୍ମ; (ଦେଶରେ) ପଦକାକୁ ନଳ କହନ୍ତି, ଭୂମି ମାପ କରିବାର ବ୍ୟବହୃତ ଯଷ୍ଟି ।
ନଳକ, ବି. ନ. (ନଳ-କ ) ନଳ; ସଚ୍ଛିଦ୍ର ଅସ୍ଥି, ଅସ୍ଥିବିଶେଷ ।
ନଳକିନୀ, ବି. ସ୍ତ୍ରୀ. (ନଳକ-ଇନ୍-ଈ) ଜଙ୍ଘ ।
ନଳକୀଳ, ବି. ପୁଂ. (ନଳ-କୀଳ) ଜାନୁ, ଅଣ୍ଟୁ ।
ନଳକୂବର, ବି. ପୁଂ. ( ନଳ-କୂବର ) କୁବେର ପୁତ୍ର ।
ନଳଦ, ବି. ନ. (ନଳ=ସୁଗନ୍ଧ-ଦା-ଅ) ଉଶୀର, ବେଣାର ମୂଳ; ପୁଷ୍ପରସ; ମକରନ୍ଦ । ବିଂ. ନଳଦାତା ।
ନଳମୀନ, ବି. ପୁଂ. (ନଳ-ମୀନ) ଚଙ୍ଗୁଡ଼ିମାଛ ।

ନଲ, ନଳୀ, ବି. (ନଳ ଶବ୍ଦଜ) ନଳ, ବନ୍ଧୁକ । ବିଂ. ସରୁ, କ୍ଷଣ ।

ନଲକା, ବି. ସ୍ତ୍ରୀ. (ନଲୀ-କ-ଆ) ନାଡୀ; ନଳ; ସୁଗନ୍ଧଦ୍ରବ୍ୟବିଶେଷ; ତୃଣ ।

ନଲତ, ପୁଂ. } ବି. (ନଲ୍-ତ) ଶାକବିଶେଷ।
ନଲତା, ସ୍ତ୍ରୀ. } ନଲିତାପତ୍ର, ଏଥିରୁ ଝୋଟ ଉତ୍ପନ୍ନ ହୁଅଇ ।

ନଲିନ; ବି. ନ. (ନଲ୍-ଇନ) ପଦ୍ମ; ଜଳ; ନୀଳଗଛ, ଶୈବାଳ । ପୁଂ ସାରସପକ୍ଷୀ । ସ୍ତ୍ରୀ. ପଦ୍ମିନୀ; ପଦ୍ମସମୂହ ।

ନଲିନୀ, ବି. ସ୍ତ୍ରୀ. (ନଲ୍-ଇନ୍-ଈ) ପଦ୍ମିନୀ, କମଳସମୂହ, ଯେଉଁ ଜଳାଶୟରେ ଯଥେଷ୍ଟ ପଦ୍ମ ଜନ୍ମଇ; ସ୍ୱର୍ଗଗଙ୍ଗା ।

ନଲିନୀରୁହ, ବି. ନ. (ନଲିନୀ-ରୁହ) ମୃଣାଳ; ପଦ୍ମଯୋନ, ବ୍ରହ୍ମା ।

ନଲିନେଶୟ, ବି. ପୁଂ. (ନଲିନେ-ଶୀ-ଅ) ବିଷ୍ଣୁ, ନାରାୟଣ ।

ନଲ୍ୱ, ବି. ପୁଂ. (ନଲ୍-ବ) ଚାରିଶତ ହସ୍ତ ପରିମିତ ସ୍ଥାନ ।

ନଲ୍ୱବର୍ମଗା, ବି. ସ୍ତ୍ରୀ. ( ନଲ୍ୱ-ବର୍ମନ୍-ଗମ୍-ଅ ) କମଳାଲେମ୍ବୁ ଗଛ ।

ନବ, ବିଂ. (ନୁ=ସ୍ତବକରି ଇତ୍ୟାଦି-ଅ) ନୂତନ, ନୂଆ; (ନବନ୍ ଶବ୍ଦଜ) ୯ମ ସଂଖ୍ୟା । ବି. ପୁଂ. ସ୍ତବ ।

ନବକାରିକା, ବି. ସ୍ତ୍ରୀ. (ନବ-କାରିକା) ନବୋଢା, ନବବିବାହିତା, ଅଚିରପ୍ରାପ୍ତରଜସ୍କା; ନୂତନ କାରିକା ।

ନବଗ୍ରହ, ବି. ପୁଂ. (ନବନ୍ ଗ୍ରହ) ସୂର୍ଯ୍ୟ, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ, କେତୁ ଏହି ନଅ ଗ୍ରହ ।

ନବଚତ୍ୱାରିଂଶତ୍, ବି. ସ୍ତ୍ରୀ. ( ନବ=ନବାଧିକ-ଚତ୍ୱାରିଂଶତ୍ ) ଊନପଞ୍ଚାଶ ସଂଖ୍ୟା, ୪୯ ।

ନବଚ୍ଛିଦ୍ର, ବି. ନ. (ନବ-ଛିଦ୍ର) ଦେହ ।

ନବତି, ବି. ସ୍ତ୍ରୀ. (ନବନ୍-ଅତି ) ୯୦ ସଂଖ୍ୟା । ବିଂ. ୯୦ ସଂଖ୍ୟାଯୁକ୍ତ ।

ନବତିକା, ବି. ସ୍ତ୍ରୀ. (ନବ-ତିକ୍-ଅ-ଆ) ତୁଳିକା; ତୁଳୀ ।

ନବଦଣ୍ଡ, ବି. ନ. (ନବ-ଦଣ୍ଡ) ରାଜଛତ୍ରବିଶେଷ ।

ନବଦଳ, ବି. ନ. (ନବ-ଦଳ) ନୂତନ ପତ୍ର; ନୂତନ ପଦ୍ମପତ୍ର, ପଦ୍ମର କେଶର ସମୀପସ୍ଥ ପତ୍ର ।

ନବଦୀଧିତି, ବି. ପୁଂ. ( ନବନ୍-ଦୀଧିତି ) ମଙ୍ଗଳଗ୍ରହ ।

ନବଦୁର୍ଗା, ବି. ସ୍ତ୍ରୀ. ଶୈଳପୁତ୍ରୀ, ବ୍ରହ୍ମଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡା, ସ୍କନ୍ଦମାତା, କାତ୍ୟାୟନୀ, କାଳରାତ୍ରି, ମହାଗୌରୀ, ସିଦ୍ଧିଦା ଏହି ନବ ଦୁର୍ଗାମୂର୍ତ୍ତି ।

ନବଦ୍ୱାର, ବି. ନ. ( ନବନ୍-ଦ୍ୱାର ) କର୍ଣ୍ଣଦ୍ୱୟ, ଚକ୍ଷୁଦ୍ୱୟ, ନାସାଦ୍ୱୟ, ମୁଖ, ଉପସ୍ଥ ଓ ଗୁହ୍ୟ ନଅ ଦ୍ୱାର ।

ନବଧା, କ୍ରି. ବିଂ. ( ନବ-ଧା ) ନଅ ପ୍ରକାର, ନଅ ଥର ।

ନବନ୍, ବିଂ. (ନୁ-ଅନ୍) ନଅ ସଂଖ୍ୟା ।

ନବନୀତ, ବି. ନ. (ନବ-ନୀତ) ଲହୁଣୀ, ଲବଣୀ ।

ନବନୀତକ, ବି. ନ. (ନବ-ନୀତ-କ) ଘୃତ ।

ନବପତ୍ରିକା, ବି. ସ୍ତ୍ରୀ. କଦଳୀ, ଡାଳିମ୍ବ, ଧାନ୍ୟ, ହରିଦ୍ରା, କଚୁ, ମାଣକଚୁ, ବେଲ୍ୱ, ଅଶୋକ, ଜୟନ୍ତୀ ଏହି ନଅ ପତ୍ରଯୁକ୍ତା ନବଦୁର୍ଗା; ସ୍ତ୍ରୀ; ମୂର୍ତ୍ତି ।

ନବଫଲିକା, ବି. ସ୍ତ୍ରୀ. ( ନବ-ଫଲ-କ-ଆ ) ନବୋଢା, ନବକିଶୋରରଜସ୍କା, ଯେଉଁ ସ୍ତ୍ରୀର ପ୍ରଥମବାର ଋତୁ ହୋଇଅଛି ।

ନବବଧୂ, ବି. ସ୍ତ୍ରୀ. (ନବ-ବଧୂ) ନୂତନ ବିବାହିତା ସ୍ତ୍ରୀ, ନବୋଢ଼ା, ନବୀନ ଭାର୍ଯ୍ୟା ।

ନବମ, ବିଂ ( ନବନ୍-ମ ) ୯ ସଂଖ୍ୟାର ପୂରଣ ।

ନବମୀ, ବି. ସ୍ତ୍ରୀ. (ନବନ୍-ମ-ଈ) ତିଥିବିଶେଷ ।

ନବମଲ୍ଲିକା, ନବମାଲିକା, ବି. ସ୍ତ୍ରୀ. ( ନବ-ମଲ୍ଲିକା, ମାଲିକା) ନଉମାଳୀଫୁଲ; ପୁଷ୍ପବିଶେଷ; ଲତାବିଶେଷ ।

ନବର, ନଅର, ବ. (ନଗର ଶବ୍ଦଜ) ଉଆସ ।

ନବଯୌବନା, ବ. ସ୍ତ୍ରୀ. ( ନବ-ଯୌବନ-ଆ ) ଯୁବତୀ ସ୍ତ୍ରୀ ।

ନବରଙ୍ଗ, ବି. ନ. (ନବ-ରଙ୍ଗ) କାୟସ୍ଥପ୍ରଭୃତି କୁଳୀନମାନଙ୍କର ୯ ପ୍ରକାର କନ୍ୟା ଆଦାନ-ପ୍ରଦାନରୂପ କୁଳବିଶେଷ; (ଦେଶଜ) ଭଙ୍ଗି ।

ନବରତ୍ନ, ବି. ନ. (ନବନ୍-ରତ୍ନ) ମୁକ୍ତା, ମାଣିକ୍ୟ, ବୈଦୂର୍ଯ୍ୟ, ଗୋମେଦ, ବଜ୍ର, ବିଦ୍ରୁମ, ପଦ୍ମରାଗ, ମରକତ, ନୀଳକାନ୍ତ ଏହି ନବରତ୍ନ; ବିକ୍ରମାଦିତ୍ୟ ରାଜାଙ୍କର ନଅ ଜଣ ସଭାପଣ୍ଡିତ । ଯଥା—ଧନ୍ୱନ୍ତରି, କ୍ଷପଣକ, ଅମରସିଂହ, ଶଙ୍କୁ, ବେତାଳଭଟ୍ଟ, ଘଟକର୍ପର, କାଳିଦାସ, ବରାହ-ମିହିର, ବରରୁଚି ।

ନବରସ, ବି. ପୁଂ. ( ନବ-ରସ ) ଅଳଙ୍କାରୋକ୍ତ ଶୃଙ୍ଗାରାଦି ସ୍ଥାୟିଭାବକ ନବବିଧ ରସ । ଯଥା—ଶୃଙ୍ଗାର, ବୀର, କରୁଣ, ଅଦ୍ଭୁତ, ହାସ୍ୟ, ଭୟାନକ, ବୀଭତ୍ସ, ରୌଦ୍ର ଓ ଶାନ୍ତ ଏହି ନଅ ରସ ।

ନବରାତ୍ର, ବି. ନ. (ନବନ୍-ରାତ୍ରି) ଆଶ୍ୱିନ ଶୁକ୍ଳ ପ୍ରତିପଦାଦି ନବମୀ ପର୍ଯ୍ୟନ୍ତ ନଅ ଦିନ କର୍ତ୍ତବ୍ୟ ଦୁର୍ଗାବ୍ରତବିଶେଷ ।

ନବସୂତିକା, ବି. ସ୍ତ୍ରୀ. (ନବ-ସୂତି-କ-ଆ) ଧେନୁ; ନବପ୍ରସୂତା ସ୍ତ୍ରୀ ।

ନବାତ, ବି. (ଦେଶଜ) କନ୍ଦ ।

ନବାନ୍ନ, ବି. ନ. (ନବ-ଅନ୍ନ) ନୂତନ-ଅନ୍ନ; ସ୍ୱନାମପ୍ରସିଦ୍ଧ କ୍ରିୟାବିଶେଷ ।

ନବାବ, ବି. (ଯାବନିକ) ରାଜପ୍ରତିନିଧି; କୌଣସି ନଗର ବା ପ୍ରଦେଶର ଶାସନକର୍ତ୍ତା ।

ନବୀକରଣ, ବି. ନ. (ନବ-କରଣ, ମଧ୍ୟରେ ଈ ଆଗମ) ପୁନର୍ବାର ନୂତନ କରିବା ।

ନବୀକୃତ, ବିଂ. (ନବ-କୃତ) ଯାହା ନୂତନ କରା ହୋଇଅଛି ।

ନବୀନ, ବିଂ. (ନବ-ଈନ) ନୂତନ; ନବ୍ୟ; ତରୁଣ; ଅଧୁନିକ; ସଦ୍ୟ ।

ନବୀଭୂତ, ବିଂ. (ନବ-ଭୂତ) ନୂତନତ୍ୱ ପ୍ରାପ୍ତ ।

ନବୋଢ଼ା, ବି. ସ୍ତ୍ରୀ. ( ନବ-ଉଢ଼ା ) ନୂତନ ବିବାହିତା ସ୍ତ୍ରୀ ।

ନବ୍ୟ, ବିଂ. (ନବ-ଯ) ନୂତନ, ନବୀନ; ଯୁବା; ଅଳ୍ପବୟସ୍କ; ଅପ୍ରବୀଣ; ଇଦାନୀନ୍ତନ । ବି. ପୁଂ. ସ୍ତବ; ପ୍ରଶଂସା ।

ନଶ୍ୱର, ବିଂ. (ନଶ୍-ବର) ନାଶଶୀଳ; ଅନିତ୍ୟ, ଅସ୍ଥାୟୀ । ଯଥା—

> ଜାଣାଏ ମାନବ ବର୍ଗେ ସମସ୍ତ ନଶ୍ୱର
> ଚିରସ୍ଥାୟୀ ନୁହେ କିଛି ଜଗତ ମଧ୍ୟର । କ. ବ.

ନଶ୍ୟତ୍, ବିଂ. ( ନଶ୍-ଅତ୍ ) ଯାହା ନାଶପ୍ରାପ୍ତ ହୋଇଅଛି ।

ନଷ୍ଟ, ବିଂ. (ନଶ୍-ତ) ନାଶପ୍ରାପ୍ତ; ପଳାୟିତ; ପ୍ରକୃତ ଗୁଣହୀନ, ଅଭଦ୍ର; ଅସତ୍ ।

ନଷ୍ଟଚନ୍ଦ୍ର, ବି. ପୁଂ. (ନଷ୍ଟ-ଚନ୍ଦ୍ର) ଦୋଷଯୁକ୍ତ ଚନ୍ଦ୍ର ।

ନଷ୍ଟଚେତନ, ବିଂ. (ନଷ୍ଟ-ଚେତନା) ହତ-ଚେତନ, ଅଚେତନ, ଚୈତନ୍ୟଶୂନ୍ୟ, ହତ-ଜ୍ଞାନ ।

ନଷ୍ଟଚେଷ୍ଟ, ବିଂ. (ନଷ୍ଟ-ଚେଷ୍ଟା) ସ୍ପନ୍ଦହୀନ, ଜଡ଼, ସ୍ପନ୍ଦଶୂନ୍ୟ ।

ନଷ୍ଟା, ବି. ସ୍ତ୍ରୀ. (ନଶ୍-ତ, ସ୍ତ୍ରୀ-ଆ) ଭ୍ରଷ୍ଟା, କୁଳଟା, ବ୍ୟଭିଚାରିଣୀ ।

ନସ୍, ପୁଂ. } ବି. ( ନସ୍-୦, ଆ ) ନାସିକା,
ନସା, ସ୍ତ୍ରୀ. } ନାକ ।

ନସୀବ, (ଆରବୀ) ଭାଗ୍ୟ, ଅଦୃଷ୍ଟ ।

ନସ୍ୟ, ବି. ନ. (ନସ୍-ଯ) ନାସ । ସ୍ତ୍ରୀ. ନାସିକା । ବିଂ. ନାସିକାର ହିତଜନକ ।

ନସ୍ୟଧାନୀ, ବି. ସ୍ତ୍ରୀ. ( ନସ୍ୟ-ଧାନୀ=ଅଧାର ) ନାସାଧାର, ଯହିଁରେ ନସ୍ୟ ରଖାଯାଏ ।

ନହି, ଅଂ. (ନ-ହି) ନା, ନିଷେଧ ।

ନହୁଣୀ, } ବି. (ନବନୀତ ଶବ୍ଦଜ) ଲବଣୀ ।
ଲହୁଣୀ, }

ନହୁଷ, ବିଂ. ପୁଂ. (ନହ୍-ଉଷ) ଯଯାତିଙ୍କର ପିତା; ସର୍ପବିଶେଷ ।

ନହୁଷାତ୍ମଜ, ବି. ପୁଂ. ( ନହୁଷ-ଆତ୍ମଜ) ଯଯାତି ରାଜା ।

ନା, ଅଂ. (ନହ-ଅ-ଆ) ନିଷେଧବାଚକ ଅବ୍ୟୟ, ନାହିଁ ।

ନାକ, ବି. ପୁଂ. ( ନ-ଅକ ) ସ୍ୱର୍ଗ; ଆକାଶ; (ନାସିକା ଶବ୍ଦଜ) ନାସିକା, ଘ୍ରାଣେନ୍ଦ୍ରିୟ ।

ନାକରା, ବିଂ. (ଦେଶଜ) ମନ୍ଦ ।

ନାକୁଆସୀ, ବି. (ଦେଶଜ) ନାକରୁ ବାଳ ବାହାର କରିବା ଅସ୍ତ୍ର ।

ନାକ୍ଷତ୍ର, ନାକ୍ଷତ୍ରିକ, ବିଂ. (ନକ୍ଷତ୍ର-ଅ, ଇକ) ନକ୍ଷତ୍ରସମ୍ବନ୍ଧୀୟ ।

ନାଗ, ବି. ପୁଂ. (ନଗ-ଅ) କଦ୍ରୁସନ୍ତାନ; ସର୍ପ; ହସ୍ତୀ; ମେଘ; ଶ୍ରେଷ୍ଠ; ନାଗକେଶର; ପୁନ୍ନାଗ; ମୁଥା; ଅଶ୍ଳେଷାନକ୍ଷତ୍ର । ନ. ସୀସକ ।

ନାଗକର୍ଣ୍ଣ, ବି. ପୁଂ. ଏରଣ୍ଡବୃକ୍ଷ, ଗବଗଛ ।

ନାଗକୁମାରିକା, ବି. ସ୍ତ୍ରୀ. ଗୁଳୁଚ ।

ନାଗକେଶର, ବି. ପୁଂ. (ନାଗ-କେଶର) ପୁଷ୍ପ ବୃକ୍ଷବିଶେଷ, ନାଗକେଶ୍ୱର ବୃକ୍ଷ ।

ନାଗଗର୍ଭ, ବି. ପୁଂ. (ନାଗ-ଗର୍ଭ) ସିନ୍ଦୂର ।

ନାଗଚୂଡ଼, ବି. ପୁଂ. (ନାଗ-ଚୂଡ଼ା) ମହାଦେବ ।

ନାଗଜ, ବି. ନ. (ନାଗ-ଜ) ସିନ୍ଦୂର । ବିଂ. ନାଗଠାରୁ ଜାତ ।

ନାଗଦନ୍ତ, ବି. ପୁଂ. (ନାଗ-ଦନ୍ତ) ହସ୍ତିଦନ୍ତ; ଗୃହର ଭିତ୍ତିନିର୍ଗତ କାଷ୍ଠ; ଦଣ୍ଡ । ସ୍ତ୍ରୀ. ବେଶ୍ୟା; ହସ୍ତିଶୁଣ୍ଡାଗଛ ।

ନାଗପାଶ, ବି. ପୁଂ. (ନାଗ-ପାଶ) ବରୁଣର ଅସ୍ତ୍ର, ସର୍ପରୂପ ପାଶ ।

ନାଗପୁର, ବି. ନ. (ନାଗ-ପୁର) ହସ୍ତିନାପୁର; ପାତାଳ; ଦେଶବିଶେଷ ।

ନାଗପୁଷ୍ପ, ବି. ପୁଂ. (ନାଗ-ପୁଷ୍ପ) ନାଗେଶ୍ୱର ବୃକ୍ଷ; ଚମ୍ପକବୃକ୍ଷ; ପୁନ୍ନାଗବୃକ୍ଷ ।

ନାଗବଳ, ବିଂ. (ନାଗ-ବଳ) ହସ୍ତିତୁଲ୍ୟ ବଳବାନ୍ । ବି. ପୁଂ. ଭୀମ ।

ନାଗବନ୍ଧୁ, ବି. ପୁଂ. (ନାଗ-ବନ୍ଧୁ) ଅଶ୍ୱତ୍ଥବୃକ୍ଷ ।

ନାଗମଣ୍ଡ, ବି. ପୁଂ. (ନାଗ-ମଣ୍ଡ) ଐରାବତ ହସ୍ତୀ ।

ନାଗମାତା, ବି. ସ୍ତ୍ରୀ. (ନାଗମାତୃ ଶବ୍ଦଜ) ମନସାଦେବୀ; ମନଃଶୀଳା ।

ନାଗର, ବିଂ. (ନଗର-ଅ) ନଗରଜାତ, ନଗରସମ୍ବନ୍ଧୀୟ; ରସିକ । ବି. ପୁଂ. ଦେବର, ଦିଅର; ନାରଙ୍ଗଲେମ୍ବୁଗଛ । ନ. ଦେବନାଗର ଅକ୍ଷର; ରତିବନ୍ଧ ।

ନାଗରକ, ବି. ପୁଂ. (ନାଗର-କ) ଚୋର; ନଗରରକ୍ଷକ; ଚତୁରକର ।

ନାଗରକ୍ତ, ବି. ନ. (ନାଗ-ରକ୍ତ) ସିନ୍ଦୂର ।

ନାଗରଙ୍ଗ, ବି. ପୁଂ. (ନାଗ-ରଙ୍ଗ) ନାରଙ୍ଗ, କମଳାଜାତୀୟ ।

ନାଗରା, ବି. (ଦେଶଜ) ବାଦ୍ୟବିଶେଷ, ନାଗରା । ଯଥା—

> କୃଷ୍ଣାଙ୍କୁଅ ଖଗ ପ୍ରଭାତତଗର୍ଭ,
> ରଙ୍ଗେ ବଜାଇବ କାନନନାଗର । ବ. କେ.

ଚର୍ମପାଦୁକାବିଶେଷ ।

ନାଗରାଜ, ବି. ପୁଂ. ( ନାଗ-ରାଜନ୍ ) ଅନନ୍ତ; ଐରାବତ; ସର୍ପରାଜ ।

ନାଗରିକ, ବିଂ. ( ନଗର-ଇକ ) ନଗରବାସୀ; ନଗରସମ୍ବନ୍ଧୀୟ ।

ନାଗଲତା, ବି. ସ୍ତ୍ରୀ. ( ନାଗ-ଲତା ) ତମ୍ବୂଳ ଲତା । ପୁଂ. ଚଣ୍ଡ ।

ନାଗଲୋକ, ବି. ପୁଂ. (ନାଗ-ଲୋକ) ପାତାଳ, ରସାତଳ ।

ନାଗବଲ୍ଲରୀ, ନାଗବଲ୍ଲୀ, ବି. ସ୍ତ୍ରୀ. (ନାଗ-ବଲ୍ଲରୀ, ବଲ୍ଲୀ) ତାମ୍ବୂଳ ଲତା, ପାନଗଛ । ଯଥା—

> ପୂଗମାନେ ସହି ଜଡ଼େ ନାଗବଲ୍ଲୀ । ନ. କେ.

ନାଗସମ୍ଭବ, ବି. ନ. (ନାଗ-ସମ୍ଭବ) ସିନ୍ଦୂର ।

ନାଗା, ସନ୍ନ୍ୟାସିବିଶେଷ; ପାର୍ବତ୍ୟ ଅସଭ୍ୟ ଜାତିବିଶେଷ ।

ନାଗାଧିପ, ନାଗାଧିପତି, ବି. ପୁଂ. (ନାଗ-ଅଧିପ, ଅଧିପତି) ଅନନ୍ତ, ସର୍ପରାଜ, ବାସୁକି; ଐରାବତ; ପା-ସ୍ତ୍ରୀ. ସିଂହ ।

ନାଗାନ୍ତକ, ନାଗାଶନ, ନାଗାରିଭ, } ବି. ପୁଂ. (ନାଗ-ଅନ୍ତକ, ଅଶନ, ଅରିଭ ) ଗରୁଡ଼; ମୟୂର; ସିଂହ ।

ନାଗେଶ, ବି. ପୁଂ. (ନାଗ-ଈଶ) ଅନନ୍ତ, ଶେଷ-ନାଗ, ଶିବଲିଙ୍ଗବିଶେଷ; ତୀର୍ଥବିଶେଷ ।

ନାଗେଶ୍ୱର, ବି. ପୁଂ. (ନାଗ-ଈଶ୍ୱର) ପୁଷ୍ପବିଶେଷ; ଐରାବତ ହସ୍ତୀ; ଅନନ୍ତ; ଗରୁଡ଼; ଶିବ ।

ନାଚ, ବି. (ନୃତ୍ୟ ଶବ୍ଦଜ) ନୃତ୍ୟ, ଅଙ୍ଗଭଙ୍ଗି, ନର୍ତ୍ତନ ।

ନାଚାର, ବିଂ. (ଯାବନିକ) ଅସହାୟ, ନିରୁପାୟ; ଅନାବୃତ୍ତ ।

ନାଛିବା, କ୍ରି. ( ଲକ୍ଷ ଶବ୍ଦଜ ) ଲକ୍ଷ କରିବା । ଯଥା—

ଛକି ଅନଙ୍ଗ ବି ନାଛଇ ଧୂର୍ଜଟି ।

ନାଟ, ବି. ପୁଂ. (ନଟ୍-ଅ) ନୃତ୍ୟ, ନାଚ, ଅଭି-ନୟ; ଦେଶବିଶେଷ; କର୍ଣ୍ଣାଟିକ; ବସ୍ତ୍ର । ଯଥା—

ନାଟ ଦିଅଁ କାହିଁ ଧବଧବ ହୋଇ ଦିଶିଲେ ଯେଝା ଅମ୍ବର ।

ନାଟକ, ବି. ନ. (ନଟ୍-ଅକ) ରୂପକ ଓ ଉପରୂପକ ଏହି ଦୁଇ ଭାଗରେ ବିଭକ୍ତ ଦୃଶ୍ୟକାବ୍ୟର ରୂପକ ଭାଗର ପ୍ରଥମ ଓ ପ୍ରଧାନ ପ୍ରକାର ଦୃଶ୍ୟକାବ୍ୟ, ଅଭିନୟ ଗ୍ରନ୍ଥ । ଯଥା—ଶକୁନ୍ତଳା, ବେଣୀସଂହାର ପ୍ରଭୃତି । ସ୍ତ୍ରୀ. ଇନ୍ଦ୍ରସଭା । ବିଂ. ନର୍ତ୍ତକ ।

ନାଟକୀୟ, ବିଂ. (ନାଟକ-ଈୟ) ନାଟକସଂଯୁକ୍ତ ।

ନାଟମନ୍ଦିର, ବି. ନ. ଦେବମନ୍ଦିର ସମ୍ମୁଖସ୍ଥ ପ୍ରାସାଦବିଶେଷ ।

ନାଟାମ୍ର, ବି. ପୁଂ. ତରୁଭୂଜ; କାଙ୍କଡ ।

ନାଟିକା, ବି. ସ୍ତ୍ରୀ. ( ନଟ୍-ଅକ-ଆ ) କ୍ଷୁଦ୍ରନାଟକ-ବିଶେଷ, ଯହିଁରେ କେବଳ ଚାରୋଟି ଅଙ୍କଥାଏ, ଯଥା—ରତ୍ନାବଳୀ ପ୍ରଭୃତି; ନର୍ତ୍ତକୀ; ନାଚୁଣୀ । ଯଥା—

ସରୁ କି ଥିଲା ମୋ ବରିବୁ ନାଟିକା ।

ନାଟ୍ୟ, ବି. ନ. (ନଟ-ଯ) ନୃତ୍ୟ, ଗୀତ, ବାଦ୍ୟ ଏହି ତିନିର ସମବାୟ; ତୌର୍ଯ୍ୟତ୍ରିକ; ନୃତ୍ୟକ୍ରିୟା ।

ନାଟ୍ୟଶାଳା, ବି. ସ୍ତ୍ରୀ. (ନାଟ୍ୟ-ଶାଳା) ନାଟଘର, ନାଟ୍ୟମନ୍ଦିର, ରଙ୍ଗଭୂମି ।

ନାଡ଼, ନାଡ଼ୀ, ବି. ସ୍ତ୍ରୀ. (ନଡ୍-ଇ, ଈ) ଦେହସ୍ଥ-ଶିରା, ଚାଳୀ; ହସ୍ତସ୍ଥଶିରା; ଏକଦଣ୍ଡ ସମୟ ।

ନାଡ଼ୀଚକ୍ର, ବି. ନ. ନାଭିସ୍ଥ ନାଡ଼ୀମୂଳ ।

ନାଡ଼ୀନକ୍ଷତ୍ର, ବି. ନ. (ନାଡ଼ୀ-ନକ୍ଷତ୍ର) ଜନ୍ମ-ନକ୍ଷତ୍ର ।

ନାଡ଼ୀମଣ୍ଡଳ, ବି. (Equator) ବିଷୁବରେଖା ।

ନାତ, ବି. (ଦେଶଜ) ଗୋଡ଼ରେ ପ୍ରହାର ।

ନାତି, ବି. (ନପ୍ତୃ ଶବ୍ଦଜ) ପୁତ୍ର ବା କନ୍ୟାର ପୁତ୍ର ।

ନାତୁଣୀ, ବି. (ନପ୍ତୃ ଶବ୍ଦଜ) ପୁତ୍ର ବା କନ୍ୟାର ଝିଅ ।

ନାଥ, ବି. ପୁଂ. (ନାଥ୍-ଅ) ସ୍ୱାମୀ, ପ୍ରଭୁ, କର୍ତ୍ତା ।

ନାଦ, ବି. ପୁଂ. (ନଦ୍-ଅ) ଧ୍ୱନି, ଶବ୍ଦ, ଗର୍ଜ୍ଜନ ।

ନାଦବିନ୍ଦୁ, ବି. ପୁଂ. ଉପନିଷଦ୍‌ବିଶେଷ; ଅର୍ଦ୍ଧ-ଚନ୍ଦ୍ରାକୃତି ବର୍ଣ୍ଣବିଶେଷ ।

ନାଦିତ, ବିଂ. (ନାଦ-ଇତ) ଶବ୍ଦିତ, ନିନାଦିତ, ଧ୍ୱନିତ ।

ନାଦୀ, ବିଂ. ( ନଦ୍-ଇନ୍ ) ଯେ ଶବ୍ଦ କରେ, ଶବ୍ଦାୟମାନ, ଶବ୍ଦିତ ।

ନାଦେୟ, ବିଂ. (ନଦ ବା ନଦୀ-ଏୟ) ନଦୀଜାତ; ନଦୀସମ୍ବନ୍ଧୀୟ । ବି. ପୁଂ. କାଶତୃଣ । ନ. ସୈନ୍ଧବଲବଣ ।

ନାଦ୍ୟ, ବିଂ. (ନଦୀ-ଯ) ନଦୀଜାତ ।

ନାନା, ଅଂ. (ନଞ୍-ନାଞ୍) ବହୁବିଧ, ଅନେକ-ପ୍ରକାର; ବ୍ୟତିରେକ, ଭିନ୍ନ ।

ନାନୀ, ବି. (ଦେଶଜ) ବଡ଼ ଭଉଣୀ ।

ନାନାବିଧ, ନାନାରୂପ, ବିଂ. (ନାନା-ବିଧ, ରୂପ) ବିବିଧ, ବହୁପ୍ରକାର ।

ନାନାର୍ଥ, ବିଂ. ( ନାନା-ଅର୍ଥ ) ଯେଉଁ ଶବ୍ଦର ଅନେକ ଅର୍ଥ, ଅନେକାର୍ଥଯୁକ୍ତ ।

ନାନ୍ଦୀ, ବି. ସ୍ତ୍ରୀ. (ନନ୍ଦ୍-ଈ) ନାଟକାଦି ପ୍ରାରମ୍ଭରେ ଦେବତାଦିଙ୍କର ସ୍ତୁତି ବା ବନ୍ଦନା; ମଙ୍ଗଳା-ଚରଣ ।

ନାନ୍ଦୀମୁଖ, ବ. ପୁଂ. ( ନାନ୍ଦୀ-ମୁଖ ) ବୃଦ୍ଧିଶ୍ରାଦ୍ଧ-ଭୋଗୀ ମାତୃପିତୃଗଣ; କୂପାଦର ଅଚ୍ଛାଦନ । ନ. ଅଭ୍ୟୁଦୟିକ ଶ୍ରାଦ୍ଧ ।

ନାପିତ, ବ. ପୁଂ. ( ନ-ଆପ୍-ତ ) ଜାତିବିଶେଷ, ଭଣ୍ଡାରି ।

ନାଭି, ବ. ପୁଂ. ସ୍ତ୍ରୀ. (ନହ୍-ଇ, ହ ସ୍ଥାନରେ ଭ) ଉଦରର ମଧ୍ୟବର୍ତ୍ତୀ; ଉଦରର ମଧ୍ୟଭାଗରେ ଗର୍ତ୍ତାକାର କମ୍ପାଂଶ ନାହି । ପୁଂ. ଚକ୍ରର ମଧ୍ୟ ପିଣ୍ଡିକା; ସମ୍ରାଟ୍; ପ୍ରଧାନ; କ୍ଷତ୍ରିୟ । ସ୍ତ୍ରୀ-ସ୍ତ୍ରୀ. କସ୍ତୁରୀ; ମଦ୍ୟ ।

ନାଭିଜ, ନାଭିଜନ୍ମା, ବ. ପୁଂ. (ନାଭି-ଜନ୍-ଅ, ଜନ୍ମନ୍) ପଦ୍ମଯୋନ, ବ୍ରହ୍ମା ।

ନାଭିଭୂ , ବ. ପୁଂ. ( ନାଭି-ଭୂ ) ବ୍ରହ୍ମା ।

ନାଭିସ୍ଥଳ, ବ. ନ. (ନାଭି-ସ୍ଥଳ) ସନ୍ଧିସ୍ଥାନ; ମଧ୍ୟସ୍ଥଳ, ନାହିପ୍ରଦେଶ ।

ନାଭୀଲ, ବ. ନ. (ନାଭି-ଲ) ସ୍ତ୍ରୀଲୋକର ଉରୁ-ସନ୍ଧି, ନାଭିର ଗଭୀରତା; କଷ୍ଟ ।

ନାମ, ଅଂ. (ନମ୍-ଅ) ସମ୍ଭାବନା; ନିଶ୍ଚୟ; ଆଶ୍ଚର୍ଯ୍ୟ; କୋପ; ସ୍ମରଣ; ବିତର୍କ; କ୍ରୋଧ; ଛଳ; ଅଖ୍ୟା; ପ୍ରସିଦ୍ଧି; ସ୍ୱୀକାର; ନିନ୍ଦା; ଅଳୀକ ।

ନାମ, ବ. ନ. ( ନମ୍-ମନ୍ ) ବିଭକ୍ତିହୀନ ଶବ୍ଦ; ବସ୍ତୁ ବା ବ୍ୟକ୍ତିବୋଧକ ଅସାଧାରଣ ଶବ୍ଦ; ସଂଜ୍ଞା ।

ନାମକରଣ, ବ. ନ. (ନାମନ୍-କୃ-ଅନ) ସଂସ୍କାର-ବିଶେଷ, ବିଧିପୂର୍ବକ ସନ୍ତାନର ପ୍ରଥମ ନାମ ଦେବା ।

ନାମଧେୟ, ବ. ନ. (ନାମ-ଧା-ଯ) ନାମ, ସଂଜ୍ଞା, ଅଖ୍ୟା ।

ନାମାବଳି, ବ.ନ. (ନାମ-ଆବଳି) ଦେବତାନାମ-ଯୁକ୍ତ ଉତ୍ତରୀୟ ବସ୍ତ୍ର ।

ନାୟକ, ବ. ପୁଂ. ( ନୀ-ଅକ ) ଗ୍ରନ୍ଥର ପ୍ରଧାନ ବର୍ଣ୍ଣନୀୟ ବ୍ୟକ୍ତି; ସେନାପତି; ଉପଦେଷ୍ଟା; ହାରମଧ୍ୟମଣି; ପ୍ରଣୟୀ ପୁରୁଷ; ନେତା; ଗୃହ-ସ୍ୱାମୀ; ଶ୍ରେଷ୍ଠ; ଅଧ୍ୟକ୍ଷ ।

ନାୟିକା, ବ. ସ୍ତ୍ରୀ. (ନୀ-ଅକ-ଆ) ଗ୍ରନ୍ଥର ପ୍ରଧାନ ବର୍ଣ୍ଣନୀୟା ସ୍ତ୍ରୀ; ପ୍ରଣୟିନୀ ସ୍ତ୍ରୀ; ଭଗବତୀର ଅଷ୍ଟ ଶକ୍ତି । ଯଥା—ଉଗ୍ରଚଣ୍ଡା, ପ୍ରଚଣ୍ଡା, ଚଣ୍ଡୋଗ୍ରା, ଚଣ୍ଡନାୟିକା, ଅତିଚଣ୍ଡା, ଚାମୁଣ୍ଡା, ଚଣ୍ଡା, ଚଣ୍ଡାବତୀ ।

ନାର, ନ, ନାରା, ସ୍ତ୍ରୀ, } ବ.(ନର=ବିଷ୍ଣୁ-ଅ=ଅପତ୍ୟାର୍ଥେ) ଜଳ । ନ. ନରସମୂହ । ପୁଂ. ବତ୍ସ, ବାଛୁରି, ବାଳକ ।

ନାରକ, ବଂ. ( ନରକ-ଅ ) ନରକଭୋଗୀ; ନରକସ୍ଥ; ନରକସମ୍ବନ୍ଧୀ; ନରକସଂକ୍ରାନ୍ତ । ପୁଂ. ଦୁଃଖଭୋଗର ସ୍ଥାନ, ନରକ ।

ନାରକୀ, ବଂ. (ନରକ-ଇନ୍) ନରକସ୍ଥ; ନରକ-ଭୋଗୀ; ପାପିଷ୍ଠ ।

ନାରଖାର, ବ. ( ଦେଶଜ ) ଛାରଖାର, ନଷ୍ଟ, ଧ୍ୱଂସ । ଯଥା—

ତାଙ୍କ ଇଚ୍ଛାରେ ହେବେ ନାରଖାର ।

ନାରଙ୍ଗ, ବ. ପୁଂ. ( ନାର-ଗ ) ନାରଙ୍ଗ ଗଛ; ଯମଜ ।

ନାରଦ, ବ. ପୁଂ. (ନାର-ଦା-ଅ) ବ୍ରହ୍ମାର ପୁତ୍ର; ଦେବର୍ଷିବିଶେଷ; ପୁରାଣବିଶେଷ ।

ନାରଦୀୟ, ବ. ନ. (ନାରଦ-ଈୟ) ନାରଦ-ସମ୍ବନ୍ଧୀୟ; ଉପପୁରାଣବିଶେଷ ।

ନାରାଚ, ବ. ପୁଂ. (ନାର-ଆ-ଚମ୍-ଅ) ଲୌହମୟ ବାଣ; ଦୁର୍ଦ୍ଦିନ, ମେଘାଚ୍ଛନ୍ନ ଦିବସ; ଅକ୍ଷର-ଛନ୍ଦୋବିଶେଷ ।

ନାରାଚୀ,ବ. ସ୍ତ୍ରୀ. (ନାରାଚ-ଈ) ନକ୍ତି; ନାରାଚାକୃତି ଲୌହମୟ ତୁଳା ।

ନାରାୟଣ, ବ. ପୁଂ. (ନାରା=ଜଳ-ଅୟନ=ସ୍ଥାନ ଅଥବା ନାର=ନରସମୂହ-ଅୟନ=ସ୍ଥାନ ) ପରମେଶ୍ୱର, ବିଷ୍ଣୁ; କୃଷ୍ଣ; ଅଜାମିଳ ପୁତ୍ର ।

ନାରାୟଣତୈଳ, ବ. ନ. ଔଷଧପକ୍ୱ ତୈଳ-ବିଶେଷ ।

ନାରିକେଳ , ନାରୀକେଳ , ବ. ପୁଂ. ସ୍ତ୍ରୀ. (ନାରକ-ଇର୍-ଅ) ସ୍ୱନାମପ୍ରସିଦ୍ଧ ଫଳ ବୃକ୍ଷ-ବିଶେଷ । ନ. ତତ୍‌ଫଳ, ନଡିଆ ।

ନାଗ୍ନ, ବି. ସ୍ତ୍ରୀ. (ନର-ଅ-ଈ) ସ୍ତ୍ରୀଲୋକ ।

ନାଳ, ବି. ନ. ସ୍ତ୍ରୀ. (ନଲ୍-ଅ) ନଳ; ମୃଣାଳ; ହରିତାଳ । ନ. (ଯାବନିକ) ଘୋଡ଼ାପାଦର ଲୌହଦଣ୍ଡ । ବିଂ. ରକ୍ତବର୍ଣ୍ଣ (ନାଲ, ନାଲା, ନାଲୀ) ସ୍ତ୍ରୀ. ନାଡ଼ୀ, ଦେହସ୍ଥ ଶିରା; ଏକଦଣ୍ଡ ସମୟ । ବିଂ. ପ୍ରା. ଯାବନିକ ଲାଲ ଶବ୍ଦଜ= ରକ୍ତବର୍ଣ୍ଣ ପଦାର୍ଥ । ବି. ରକ୍ତିମା ।

ନାଳକ, ବି. ପୁଂ. (ନାଳ-କ) ମହୁଷ । ନ. ପଦ୍ମ । ସ୍ତ୍ରୀ. ନଳିତା ଶାକ ।

ନାଳୀକ, ବି. ପୁଂ. (ନାଳୀ-କୈ-ଅ) ଶର; ଶସ୍ତ୍ରାସ୍ତ୍ର, ଶଲ୍ଲୀର । ନ. ପଦ୍ମସମୂହ; ପଦ୍ମନାଡ଼ ।

ନାବ, ବି. ନ. (ନୁ-ଅ) ନୌକା । ଯଥା—

> ହରି ଏ ମୋ ପୋଷେ କୁଟୁମ୍ବ,
> ବସାଇ ନ ଦେବ ପାଦ ନ ଧୋଇ ନାବ । ବୈ. ବ.

ନାବିକ, ବି. ପୁଂ. (ନୌ-ଇକ) କର୍ଣ୍ଣଧାର, ମାଝୀ, ଯେ ନୌକା ଚଳାଏ । ବିଂ. ନୌକାସଂକ୍ରାନ୍ତ ।

ନାବୀ, ବି. ସ୍ତ୍ରୀ. ଶ୍ରେଣୀବଦ୍ଧ ନୌକା, ଜାହାଜ ପ୍ରଭୃତି । ବିଂ. ( ନୌ-ଇନ୍ ) ପୋତାଧ୍ୟକ୍ଷ, ନାବିକ ।

ନାବ୍ୟ, ବିଂ. (ନୌ-ଯ) ନୌକାଦ୍ୱାରାଗମ୍ୟ, ଯେଉଁ ବାଟରେ ନୌକା ଯାଇ ପାରଇ; ଯାହା ନୌକା ଭିନ୍ନ ଗମନଯୋଗ୍ୟ ନୁହେ । ବି. ନ. (ନବ-ଯ) ତରୁଣାବସ୍ଥା; ନୂତନତ୍ୱ ।

ନାଶ, ବି. ପୁଂ. (ନଶ୍-ଅ) ଧ୍ୱଂସ; ମୃତ୍ୟୁ; ପଳାୟନ; ଅଦର୍ଶନ ।

ନାଶକ, ବିଂ. (ନଶ୍-ଅକ) ନାଶକାରୀ, ଯେ ନାଶ କରେ, କ୍ଷୟକାରୀ, ଧ୍ୱଂସକ ।

ନାଶନ, ବି. ନ. ( ନଶ୍-ଅନ ) ଉଚ୍ଛେଦନ; ବିଲୋପନ । ବିଂ. କ୍ଷୟକାରୀ ।

ନାଶିତ, ବିଂ. (ନଶ୍-ତ) ବିନାଶିତ, ନିହତ ।

ନାଶୀ, ବିଂ. (ନାଶ-ଇନ୍) ଯାହାର ନାଶ ଅଛି, ବିନାଶଶୀଳ, ନଶ୍ୱର; (ନାଶି-ଇନ୍) ଯେ ନାଶ କରେ, ଉଚ୍ଛେଦକ ।

ନାସ, ବି. (ନସ୍ୟ ଶବ୍ଦଜ) ଧୂଁଆପତ୍ରର ଚୂର୍ଣ୍ଣ ।

ନାସତ୍ୟ, ବି. ପୁଂ. ( ନାସା, ତ୍ୟକ୍-ଅ ) ( ନ-ଅସତ୍ୟ) ସ୍ୱର୍ଗ ବୈଦ୍ୟ, ଅଶ୍ୱିନୀକୁମାରଦ୍ୱୟ ।

ନାସପତ୍ର, ବି. ( ଦେଶଜ ) ନାସ=ନସ୍ୟ+ପତ୍ର, ନାସ କରିବା ନିମିତ୍ତ ବ୍ୟବହାର୍ଯ୍ୟପତ୍ର; ତମାଖୁ ପତ୍ର, ଧୂଁଆପତ୍ର ।

ନାସା, ନାସିକା, ବି. ସ୍ତ୍ରୀ. (ନାସ୍-ଅ-ଆ; ନାସା-କ-ଆ) ଘ୍ରାଣେନ୍ଦ୍ରିୟ ।

ନାସାଦାରୁ, ବି. ନ. ଦ୍ୱାରବନ୍ଧ ଉପରଭାଗସ୍ଥିତ କାଷ୍ଠଖଣ୍ଡ ।

ନାସୀର, ବି. ନ. (ନାସ୍=ଶବ୍ଦ କରିବା ଈରନ୍) ସେନାମୁଖ; ଅଗ୍ରବର୍ତ୍ତୀ ସୈନ୍ୟ ।

ନାସ୍ତି, ଅଂ. (ନ-ଅସ୍ତି) ନୁହେ, ନାହିଁ ।

ନାସ୍ତିକ, ବିଂ. (ନାସ୍ତି-କ) ଯେଉଁ ଲୋକ ଈଶ୍ୱରଙ୍କ ଅସ୍ତିତ୍ୱ କିମ୍ବା ପରଲୋକ ସ୍ୱୀକାର କରେ ନାହିଁ ।

ନାସ୍ତିକତା, ସ୍ତ୍ରୀ. }
ନାସ୍ତିକ୍ୟ, ନ. } ବି. (ନାସ୍ତିକ-ତା, ଯ) ଈଶ୍ୱର ବା ପରଲୋକରେ ଅବିଶ୍ୱାସ କରିବା ।

ନାହା, ବି. ପୁଂ. (ନାଥ ଶବ୍ଦଜ) ସ୍ୱାମୀ, ପ୍ରଭୁ । ଯଥା—

> ଲଜ୍ଜା ହେଉଛି କାହାକୁ
> ଚେଡାଇବାର ଅପୃତ ବିନା ମୋ ନାହାକୁ । ପ୍ରେ. ସୁ.

ନାହିଁ, ଅଂ. (ନିଷେଧାର୍ଥକ) ନାସ୍ତି, ନା ।

ନି, ଉପସର୍ଗ, ଅବ୍ୟୟ, ନିଷେଧ; ଅଭାବ; ନିକୃଷ୍ଟ; ନିଶ୍ଚୟ; ସଂଶୟ; ସାମୀପ୍ୟ; ନିନ୍ଦା; ନିବେଶ; ବିନ୍ୟାସ; ନିତ୍ୟ; କୌଶଳ; ଆଶ୍ରୟ; ଦାନ; ମୁକ୍ତି; ଅନ୍ତର୍ଭାବ; ବନ୍ଧନ; ଗ୍ରଶି; ଅଧୋଭାଗ ।

ନିଃକ୍ଷତ୍ର, ନିଃକ୍ଷତ୍ରିୟ, ବିଂ. ( ନିର୍-କ୍ଷତ୍ର, କ୍ଷତ୍ରିୟ ) କ୍ଷତ୍ରିୟରହିତ ।

ନିଃଶଙ୍କ, ବିଂ. (ନିର୍-ଶଙ୍କା) ନିର୍ଭୟ, ଭୟଶୂନ୍ୟ, ଶଙ୍କାରହିତ ।

ନିଃଶବ୍ଦ, ବିଂ. (ନିର୍-ଶବ୍ଦ) ଶବ୍ଦରହିତ, ନୀରବ ।

ନିଃଶେଷ, ବିଂ. ( ନିର୍-ଶେଷ ) ଶେଷରହିତ; ସମ୍ପୂର୍ଣ୍ଣ ।

ନିଃଶେଷିତ, ବିଂ. (ନିଃଶେଷ-ଇତ) ନିଃଶେଷ-ପ୍ରାପ୍ତ, ଯାହା ଶେଷ ହୋଇ ଯାଇଅଛି ।

ନିଃଶ୍ରେଣି, ନିଃଶ୍ରେଣୀ, ବି. ସ୍ତ୍ରୀ. (ନିର୍-ଶ୍ରେଣି, ଶ୍ରେଣୀ) ଅଧିରୋହଣୀ, ନିଶୁଣି, ସିଡି ।

ନିଃଶ୍ରେୟସ, ବି. ନ. (ନିର୍-ଶ୍ରେୟସ୍-ଅ) ମୁକ୍ତି; ଭକ୍ତି; ସୁଖ; ଜ୍ଞାନ; କୁଶଳ; ମଙ୍ଗଳ । ପୁଂ. ଶିବ ।

ନିଃଶ୍ୱାସ, ବି. ପୁଂ. ( ନିର୍-ଶ୍ୱସ୍-ଅ ) ନାସାଗତ ବାୟୁ ।

ନିଃସଙ୍ଗ, ବିଂ. (ନିର୍-ସଙ୍ଗ) ସଙ୍ଗରହିତ; ସମ୍ପର୍କ-ଶୂନ୍ୟ; ବିଷୟାନୁରାଗରହିତ ।

ନିଃସତ୍ତ୍ୱ, ବିଂ. (ନିର୍-ସତ୍ତ୍ୱ) ଅସାର; ଦୁର୍ବଳ; ପ୍ରାଣିଶୂନ୍ୟ ।

ନିଃସନ୍ଧ, ବିଂ. (ନିର୍-ସନ୍ଧି) ଦୃଢ଼; ସନ୍ଧିରହିତ ।

ନିଃସମ୍ପାତ, ବି. ପୁଂ. (ନିର୍-ସମ୍ପାତ) ନିଶୀଥ, ଅର୍ଦ୍ଧରାତ୍ର । ବିଂ. ଗମନାଗମନ ଶୂନ୍ୟ ।

ନିଃସମ୍ବଳ, ବିଂ. (ନିର୍-ସମ୍ବଳ) ସଙ୍ଗତିହୀନ, ଯାହାର କୌଣସି ସମ୍ବଳ ନାହିଁ, ଦରିଦ୍ର ।

ନିଃସରଣ, ବି. ନ. (ନିର୍-ସୃ-ଅନ) ନିର୍ଗମ; ଦ୍ୱାର; ମୃତ୍ୟୁ; ଉପାୟ; ମୁକ୍ତି ।

ନିଃସାର, ବିଂ.(ନିର୍-ସୃ-ଅ) ବଳହୀନ, ରସହୀନ ।

ନିସ୍ରେକ, ବି. ପୁଂ. ନିର୍ଗମ ପଥ ।

ନିଃସାରଣ, ବି. ନ. (ନିର୍-ସାରି-ଅନ) ନିର୍ବାସନ, ବହିଷ୍କରଣ; ନିର୍ଗମ ପଥ ।

ନିଃସାରିତ, ବିଂ. (ନିର୍-ସାରି-ତ) ବହିଷ୍କୃତ, ନିର୍ବାସିତ, ନିଷ୍କୃତ ।

ନିଃସୃତ, ବିଂ. (ନିର୍-ସୃ-ତ) ନିର୍ଗତ, ବହିର୍ଗତ ।

ନିଃସ୍ରବ, ନିସ୍ରାବ, ବି. ପୁଂ. (ନିର୍-ସ୍ରୁ-ଅ) କ୍ଷରଣ, ତରଳପଦାର୍ଥ ନିର୍ଗମନ; ତରଳପଦାର୍ଥ; ଭାତର ମଣ୍ଡ ।

ନିଃସ୍ୱ, ବିଂ. (ନିର୍-ସ୍ୱ) ଦରିଦ୍ର, ଦୁଃଖୀ, ନିର୍ଧନ; ଜ୍ଞାତିରହିତ ।

ନିଆଁ, ବି. (ଦେଶଜ) ଅଗ୍ନି, ଅନଳ ।

ନିଆସ୍ତ, (ଯାବନିକ) ସ୍ୱତନ୍ତ୍ର, ଭିନ୍ନ ।

ନିଆଳି, ବି. (ନବମାଳିକା ଶବ୍ଦଜ) ପୁଷ୍ପବିଶେଷ । ଯଥା—

> କାମିନୀ ନିଆଳୀ ଗୋଲାପ ଫୁଲ
> ଫୁଟିବାରୁ ଉପବନ ମଞ୍ଜୁଳ ।

ନିଉଁଛାଇବା, କ୍ରି. (ଦେଶଜ) ବନ୍ଦାଇବା। ଯଥା—

> ସପ୍ତଥର ବନ୍ଦାଇ, ପରକ୍ରମେ ଅନ୍ତ ନିଉଁଛାଇ ।

ନିଉଁଛାଳ, ବି. (ଦେଶଜ) ବନ୍ଦାପନା କରିବା ।

ନିକ, ବିଂ. (ଦେଶଜ) ସରୁ; ପରିଷ୍କାର; ସୁନ୍ଦର ।

ନିକଟ, ବିଂ. (ନି-କଟ୍-ଅ) ସମୀପ, ଅଦୂର ।

ନିକଟବର୍ତ୍ତୀ, ନିକଟସ୍ଥ, ବିଂ. (ନିକଟ-ବୃତ୍-ଇନ୍-ନିକଟ-ସ୍ଥା-ଅ) ଯେ ନିକଟରେ ଅଛି, ସମୀପ-ସ୍ଥିତ ।

ନିକର, ବି. (ଦେଶଜ) ନିଶ୍ଚୟ । ଯଥା—

> ସାନ ଭଉ ଲକ୍ଷ୍ମଣ ନିକର ସଜନ ଗୋ ।

ବିଂ. କରରହିତ ।

ନିକର, ବି. ପୁଂ. (ନି-କୃ-ଅ) ସମୂହ, ରାଶି । ଅଂ. (ଦେଶଜ) ନିଶ୍ଚୟ । ଯଥା—

> ଉତ୍ତରରେ ଅଗ୍ନି ବାର ପଡ଼ିବ ନିକର,
> କହିଲ ପା, କେବେ ତାହା ନୋହିବ ଅନ୍ୟଥା । ମ. ପା.

ନିକସ, ନିକଷ, ବି. ପୁଂ. ( ନି-କସ୍-କଷ୍-ଅ ) କଷ୍ଟିପଥର, ଶାଣ, ସୁବର୍ଣ୍ଣ ରଜତାଦିର ପରୀକ୍ଷା ସ୍ଥାନ ।

ନିକଷଣ, ବି. ନ. (ନି-କଷ୍-ଅନ) ଘର୍ଷଣ; ଉତ୍କ୍ଷେ-ଷଣ; ଖନନ ।

ନିକଷା, ବି. ସ୍ତ୍ରୀ. ରାକ୍ଷସୀବିଶେଷ, ରାବଣର ମାତା ।

ନିକଷାତ୍ମଜ, ବି. ପୁଂ. (ନିକଷା-ଆତ୍ମଜ) ରାକ୍ଷସ ।

ନିକଷୋପଳ, ବି. ପୁଂ. (ନିକଷ-ଉପଳ) କଷ୍ଟି-ପଥର, ଶାଣ ।

ନିକା, (ଯାବନିକ) ଦ୍ୱିତୀୟ ବିବାହ, ଥୁଆଥୁଇ ।

ନିକାଞ୍ଚନ, ବିଂ. (ଦେଶଜ) ଜନଶୂନ୍ୟ, ନିର୍ଜନ । ଯଥା—

> ଏବେ ଯା ନଗରୀ, ଥିଲା ଅଗେ ତାହା ମହା ନିକାଞ୍ଚନ ପଡ଼ା ।
> ଯ. କୋ

ନିକାଯ୍ୟ, ବି. ପୁଂ. (ନି-ଚି-ଯ, ନିପାତନ) ଆଳୟ, ଗୃହ ।

ନିକାର, ବି. ନ. ( ନି-କୃ=ପରାଜୟ କରିବା-ଅ ) ଅପକାର; ପରାଭବ; ଅପମାନ; ତିରସ୍କାର; ଅନାଦର ।

ନିକାରଣ, ବି. ନ. ( ନି-କୃ-ଇ-ଅନ ) ମାରଣ, ବଧ ।

ନିକାଶ, ବି. ନ. (ନି-କାଶ୍-ଅ) ପ୍ରକାଶ ।

ନିକାଷ, ବି. ନ. (ନିକଷ୍-ଅ) କର୍ଷଣ, ଘର୍ଷଣ ।

ନିକାସ, ନିକାଶ, ବିଂ. ( ନି-କାସ୍-ଅ ) ତୁଲ୍ୟ, (ଯାବନିକ) ଶେଷ; ଜଳନିର୍ଗମ ପଥ ।

ନିକିତି, ନିକ୍ତି, ବି. ( ଦେଶଜ ) ସୁନା ରୁପାଦି ଓଜନ କରିବାର ଯନ୍ତ୍ରବିଶେଷ; ତୁଳପାଦି । ଯଥା—

କାଚ କାଞ୍ଚନେ ତୁଳସ ପରସ୍ୱେ,
କବିବାଣୀ ନିକିତିରେ ସେ ହୁଏ ।

ନିକୁଞ୍ଜ, ବି. ପୁଂ. ନ. ( ନି-କୁଞ୍ଜ ) ଲତାମଣ୍ଡପ, ଲତାଗୃହ, କୁଞ୍ଜ ।

ନିକୁମ୍ଭ, ବି. ପୁଂ. ( ନି-କୁ-ଭୂ-ଅ, ମ୍ ଆଗମ ) କୁମ୍ଭକର୍ଣ୍ଣ ରାକ୍ଷସର ପୁତ୍ର; ଶିବଙ୍କର ଅନୁଚର; ଦନ୍ତିକା ଗଛ । ମ୍ଭୀ, ସ୍ତ୍ରୀ. କୁମ୍ଭକର୍ଣ୍ଣର କନ୍ୟା ।

ନିକୃତ, ବି. ନ. (ନି-କୃ-ତ) ତିରସ୍କାର; ଅପକାର; ଶଠତା; ଦୈନ୍ୟ; ନିନ୍ଦା । ବିଂ. ଅପକୃତ, ପରାଭୂତ; ପ୍ରତାରିତ; ଅବମାନିତ ।

ନିକୃତ୍ତ, ବିଂ. (ନି-କୃତ୍-ତି) ଛିନ୍ନ, ଖଣ୍ଡିତ ।

ନିକୃଷ୍ଟ, ବିଂ. ( ନି-କୃଷ୍-ତ ) ଅପକୃଷ୍ଟ, ନୀଚ, ଜଘନ୍ୟ ।

ନିକେତ, ପୁଂ. } ବି. (ନି-କିତ୍ ଅ, ଅନ )
ନିକେତନ, ନ. } ଘର, ଆଳୟ, ଗୃହ ।

ଯଥା—

ସ୍ୱାଧୀନତା ଦେବୀ ପ୍ରିୟନିକେତନ ଅଟେ ସେ ଦ୍ୱୀପେ । କ. ବ.

ନିକ୍ୱଣ, ନିକ୍ୱାଣ, ବି. ପୁଂ. ( ନି-କ୍ୱଣ୍-ଅ ) ଧ୍ୱନି, ବୀଣାଦିର ଧ୍ୱନି; ଶବ୍ଦ ।

ନିକ୍ଷଣ, ବି. ନ. (ନିକ୍ଷ୍-ଅନ) ଚୁମ୍ବନ ।

ନିକ୍ଷିପ୍ତ, ବିଂ. (ନି-କ୍ଷିପ୍-ତ) ନ୍ୟସ୍ତ; ତ୍ୟକ୍ତ; ଅର୍ପିତ; ଯାହା ନିକ୍ଷେପ କରା ଯାଇଅଛି ।

ନିକ୍ଷେପ, ବି. ପୁଂ. (ନି-କ୍ଷିପ୍-ଅ) ନ୍ୟାସ; ସ୍ଥାପନ; ତ୍ୟାଗ ।

ନିଖ, ବି. (ଦେଶଜ) କେଶକୀଟବିଶେଷ ।

ନିଖଟ୍ଟୁ, ବିଂ. (ଦେଶଜ) ଅସମର୍ଥ, ଅଯୋଗ୍ୟ ।

ନିଖର୍ବ, ବିଂ. (ନି-ଖର୍ବ) ବାମନ । ବି. ନ. ଦଶସହସ୍ର କୋଟି ସଂଖ୍ୟା ।

ନିଖଡ଼ା, ବି. (ଦେଶଜ) ଜଳଜାତ ଫଳବିଶେଷ ।

ନିଖାତ, ବି. ( ନି-ଖନ୍-ତ ) ସ୍ଥାପିତ; ଖନିତ, ପ୍ରୋଥିତ, ଯାହା ମୃତ୍ତିକାରେ ପୋତା ହୋଇଅଛି ।

ନିଖିଳ, ବିଂ. ( ନି-ଖିଳ ) ସମସ୍ତ, ସମ୍ପୂର୍ଣ୍ଣ; ଅଖଣ୍ଡ ।

ନିଖୁଣ, ବିଂ. (ଅକ୍ଷୁଣ୍ଣ ଶବ୍ଦଜ) ସମ୍ପୂର୍ଣ୍ଣ ।

ନିଗଡ଼, ବି.ପୁଂ. ନ. (ନି-ଗଡ଼୍-ଅ) ବେଡ଼ି, ଲୌହଶୃଙ୍ଖଳ, ଲୌହମୟ ପାଦବନ୍ଧନୀ ।

ନିଗଡ଼ିତ, ବିଂ. (ନିଗଡ଼-ଇତ) ଶୃଙ୍ଖଳବଦ୍ଧ;ବଦ୍ଧ ।

ନିଗଦିତ, ବିଂ. ( ନି-ଗଦ୍-ତ ) କଥିତ, ଉକ୍ତ; ନିର୍ଦ୍ଦିଷ୍ଟ; ଉଲ୍ଲିଖିତ । ବି. ନ. କଥନ, କଥା ।

ନିଗମ, ବି. ପୁଂ. ( ନି-ଗମ୍-ଅ ) ନଗର; ପଥ; ବାଣିଜ୍ୟ; ହାଟ; ଶାସ୍ତ୍ରବିଶେଷ; ବେଦାଦି ଶାସ୍ତ୍ର ।

ନିଗାଡ଼ିବା, କ୍ରି. (ଦେଶଜ) ଗାଳିବା, ଝରାଇବା ।

ନିଗୂଢ଼, ବିଂ. ( ନି-ଗୁହ୍-ତ ) ଗୁପ୍ତ, ଲୁକ୍କାୟିତ, ଅପ୍ରକାଶିତ ।

ନିଗୃହୀତ, ବିଂ. (ନି-ଗ୍ରହ-ତ) ଦଣ୍ଡିତ, ଶାସିତ; ବଶୀକୃତ; ରୁଦ୍ଧ ।

ନିଗ୍ରହ, ବି. ପୁଂ. ( ନି-ଗ୍ରହ-ଅ ) ଅନୁଗ୍ରହର ବିପରୀତ; ତାଡ଼ନା, ପ୍ରହାର; ନିରାକରଣ; ତିରସ୍କାର; ଶାସନ; ଦମନ; ଦଣ୍ଡ; ବନ୍ଧନ; ଭର୍ତ୍ସନା; ସଂଯମ; ଚିକିତ୍ସା; ସୀମା; ଯାତନା; ବିଡ଼ମ୍ବନା; ନିବାରଣ ।

ନିଗ୍ଘା, ବିଂ. (ଦେଶଜ) କୃପଣ ।

ନିଘ୍ନ, ବିଂ. (ନି-ହନ୍-ଅ) ଆୟତ୍ତ; ବଶୀଭୂତ; ଗୁଣିତ; ପୋଷା; ଘାତକ ।

ନିଚୟ, ବି. ପୁଂ. (ନି-ଚି-ଅ) ସମୂହ; ପୂର; ଉପଚୟ; ନିଶ୍ଚୟ ।

ନିଚୁଳ, ବି. ପୁଂ. (ନି-ଚୁଳ୍-ଅ) ସ୍ଥଳବେତସ, ବେତସ ।

ନିଚୋଳ, ବି. ନ. (ନି-ଚୁଲ୍-ଅ) ଆଚ୍ଛାଦନ ବସ୍ତ୍ର, ଉତ୍ତରୀୟ ବସ୍ତ୍ର ।

ନିଛାଟ, ବିଂ. (ଦେଶଜ) ନିର୍ଜନ । ଯଥା—

ଚଉଦଗେ ରହିଁ, କେହି କେଣେ ନାହିଁ,
ନିଛାଟ ଘାଟକୁ ଗଲି ।

ନିଜ, ବିଂ. (ନି-ଜନ୍-ଅ) ଆପଣାର, ସ୍ୱକୀୟ । ଯଥା—

ନିଜଘର ସୁଖ ଭୁଞ୍ଜିବାକୁ ଘରେ
ଇଚ୍ଛା ଯେବେ କର ଯବନ ହର ।

ସ୍ୱାଭାବିକ, ନିତ୍ୟ ।

ନିଟ, ବି. (ଦେଶଜ) ନିଶ୍ଚୟ, ତଥ୍ୟ ।

ନିଠେଇବା, କ୍ରି. (ଦେଶଜ) ମଠେଇବା ।

ନିତମ୍ବ, ବି. ପୁଂ. (ନି-ତମ୍-ବ) ସ୍ତ୍ରୀଲୋକର କଟିର ପଶ୍ଚାଦ୍‌ଭାଗ, ପିଚ୍ଛ; ପର୍ବତ ପାର୍ଶ୍ୱ-ଦେଶ; ତଟ; ସ୍କନ୍ଧ । ଯଥା—

ଲମ୍ବିତ ସୁଗୋଳ ନିତମ୍ବବିମ୍ବେ ହେମ ମେଖଳା । ଚ. ଘ.

ନିତମ୍ବିନୀ, ବି. ସ୍ତ୍ରୀ. (ନିତମ୍ବ-ଇନ୍ ସ୍ତ୍ରୀଲିଙ୍ଗରେ ଈ) ପ୍ରଶସ୍ତ ନିତମ୍ବବତୀ ରମଣୀ ।

ନିତରାଂ, କ୍ରି. ବିଂ. ଅଂ. ସର୍ବଦା, ଅତ୍ୟନ୍ତ, ଅବଶ୍ୟ ।

ନିତଳ, ବି. ପୁଂ. (ନି-ତଳ) ସପ୍ତପାତାଳାନ୍ତର୍ଗତ ପାତାଳବିଶେଷ ।

ନିତାନ୍ତ, ବିଂ. (ନି-ତମ୍-ତ) ଅତ୍ୟନ୍ତ, ଅତିଶୟ; ଅବଶ୍ୟ ।

ନିତି, କ୍ରି. ବିଂ. (ନିତ୍ୟ ଶବ୍ଦଜ) ପ୍ରତ୍ୟହ ।

ନିତ୍ୟ, କ୍ରି. ବିଂ. (ନି-ତ୍ୟ) ଅହରହ, ସର୍ବଦା, ସତତ; ଧାରାବାହିକ, ପ୍ରାତ୍ୟହିକ ।

ନିତ୍ୟକର୍ମ, ବି.ନ. (ନିତ୍ୟ-କର୍ମନ୍) / ନିତ୍ୟକ୍ରିୟା, ବି.ସ୍ତ୍ରୀ. (ନିତ୍ୟ-କ୍ରିୟା) — ପ୍ରତିଦିନ ଯେ କର୍ମ କରାଯାଏ; ଦୈନନ୍ଦିନ ବ୍ୟାପାର ।

ନିତ୍ୟଗତି, ବି. ପୁଂ. (ନିତ୍ୟ-ଗତି) ସଦାଗତି, ବାୟୁ ।

ନିତ୍ୟପ୍ରଳୟ, ବି. ପୁଂ. (ନିତ୍ୟ-ପ୍ରଳୟ) ଚତୁର୍ବିଧ ପ୍ରଳୟର ଅନ୍ତର୍ଗତ ପ୍ରଳୟବିଶେଷ; ସୁଷୁପ୍ତି ।

ନିତ୍ୟଯଜ୍ଞ, ବି. ପୁଂ. ଅଗ୍ନିହୋତ୍ରାଦି ଯଜ୍ଞ ।

ନିତ୍ୟଯୌବନ, ବିଂ. (ନିତ୍ୟ-ଯୌବନ) ସ୍ଥିର-ଯୌବନ । ନା, ସ୍ତ୍ରୀ. ଦ୍ରୌପଦୀ ।

ନିତ୍ୟସମାସ, ବି. ପୁଂ. ଯାହା ଅସମସ୍ତ ଅବସ୍ଥାରେ ପ୍ରୟୋଗ ହୁଏ ନାହିଁ ।

ନିଦ, ବି. ପୁଂ. (ନି-ଦୋ-ଅ) ବିଷ; (ନିଦ୍ରା ଶବ୍ଦର ଅପଭ୍ରଂଶ) ନିଦ୍ରା । ଯଥା—

ସ୍ୱବବିନୋଦ ହେ, କୃଷ୍ଣବର୍ଷ ଶେଷେ ମାଡ଼େ ନିଦ ।

ନିଦର୍ଶନ, ବି. ନ. (ନି-ଦୃଶ୍-ଅନ) ଉଦାହରଣ, ଦୃଷ୍ଟାନ୍ତ; ଚିହ୍ନ ।

ନିଦାଘ, ବି. ପୁଂ. (ନି-ଦହ୍-ଅ) ଗ୍ରୀଷ୍ମକାଳ; ଘର୍ମଜଳ । ବିଂ. ଉଷ୍ଣ, ତପ୍ତ ।

ନିଦାନ, ବି. ନ. (ନି-ଦା-ଅନ) ମୂଳକାରଣ; କାରଣ; ଚିକିତ୍ସା ଗ୍ରନ୍ଥବିଶେଷ ।

ନିଦାରୁଣ, ବିଂ. (ନି-ଦାରୁଣ) ଅତି ଦାରୁଣ; ଭୟାନକ; ନିର୍ଦ୍ଦୟ; କଠିନ; ଦୁଃସହ, ଅସହ୍ୟ ।

ନିଦିଷ୍ଟ, ବିଂ. (ନି-ଦିଶ୍-ତ) ଆଦିଷ୍ଟ; ଉପଦିଷ୍ଟ; କଥିତ ।

ନିଦେଶ, ବି. ପୁଂ. (ନି-ଦିଶ୍-ଅ) ଆଜ୍ଞା, ଅନୁମତି; ଉକ୍ତି, କଥନ; ସମୀପ, ନିକଟ; ପାତ୍ର ।

ନିଦେଷ୍ଟା, ବିଂ. (ନି-ଦିଶ୍-ତୃ) ଆଦେଷ୍ଟା, ଆଜ୍ଞା-କାରକ, ଆଜ୍ଞାଦାତା ।

ନିଦ୍ରା, ବି. ସ୍ତ୍ରୀ. (ନି-ଦ୍ରା-ଅ) ନିଦ; ନିମୀଳନ; ଆଳସ୍ୟ; ସମୟବିଶେଷରେ ଶାରୀରିକ ଓ ମାନସିକ ବ୍ୟାପାରର ବିରାମ ।

ନିଦ୍ରାଣ, ନିଦ୍ରିତ, ବିଂ. ( ନି-ଦ୍ରା-ତ, ଇତ ) ନିଦ୍ରାଗତ; ଅଳସ ।

ନିଦ୍ରାଳୁ, ବିଂ. (ନିଦ୍ରା-ଆଳୁ) ନିଦ୍ରିତ, ନିଦ୍ରାଶୀଳ; ଅଳସ ।

ନିଧନ, ବି. ପୁଂ. (ନି-ଧନ୍-ଅ) ମୃତ୍ୟୁ; ବିନାଶ ।

ନିଧାନ, ବି. ନ. (ନି-ଧା-ଅନ) ନିଧି; ଭୂଗର୍ଭସ୍ଥ ଅସ୍ୱାମିକ ଦ୍ରବ୍ୟ; କୁବେରର ସମ୍ପତ୍ତିବିଶେଷ; ଗଚ୍ଛିତ ବସ୍ତୁ; ସମୁଦ୍ର ।

ନିଧିନାଥ, ନିଧୀଶ, ନିଧୀଶ୍ୱର, } ବି. ପୁଂ. (ନିଧି-ନାଥ, ଈଶ, ଈଶ୍ୱର) କୁବେର ।

ନିଧୁବନ, ବି. ନ. ( ନି-ଧୁବନ ) ରତିକ୍ରୀଡ଼ା; ଆମୋଦ; ରମଣ, କେଳି; ଉପଭୋଗ ।

ନିଧ୍ୱାନ, ବି. ପୁଂ. (ନି-ଧ୍ୱନ୍-ଅ) ଶବ୍ଦ, ଧ୍ୱନି ।

ନିନଦ, ନିନାଦ, ବି. ପୁଂ. (ନି-ନଦ୍-ଅ) ଧ୍ୱନି, ଶବ୍ଦ, ଗର୍ଜ୍ଜନ ।

ନିନାଦିତ, ବିଂ. (ନି-ନଦ୍-ତ) ଶବ୍ଦିତ, ଧ୍ୱନିତ, ବାଦିତ ।

ନିନ୍ଦକ, ବିଂ. (ନିନ୍ଦା-ଅକ) ଅପବାଦକ, ନିନ୍ଦାକାରୀ ।

ନିନ୍ଦନ, ନ. / ନିନ୍ଦା, ସ୍ତ୍ରୀ. } ବି. (ନିନ୍ଦ୍-ଅନ, ଅ) କୁତ୍ସା, ଅପବାଦ, ଜୁଗୁପ୍ସା ।

ନିନ୍ଦନୀୟ, ନିନ୍ଦ୍ୟ, ବିଂ. ( ନିନ୍ଦ୍-ଅନୀୟ, ଯ ) ଅପ୍ରଶଂସନୀୟ, ଦୂଷଣୀୟ ।

ନିନ୍ଦିତ, ବିଂ. (ନିନ୍ଦ୍-ତ) ଦୂଷିତ; ଗର୍ହିତ; ହୀନ ।

ନିନ୍ଦ୍ୟ, ବିଂ. (ନିନ୍ଦ୍-ଯ) ଅପ୍ରଶଂସ୍ୟ, ଦୂଷଣୀୟ ।

ନିପ, ବି. ପୁଂ. ନ. (ନି-ପା) କଦମ୍ବବୃକ୍ଷ; କଳସ, ଘଟ ।

ନିପଟ, ବିଂ. (ଦେଶଜ) ଅତ୍ୟନ୍ତ, ଅତିଶୟ । ଯଥା—

ନିପଟ ନିପ୍ରେମ ଦିଶୁଛି ଅତି ନିରଳସ ଚନ୍ଦ୍ରମୁଖ । କ. ଚ.

ନିପଠ, ନିପାଠ, ବି. ପୁଂ. (ନି-ପଠ୍-ଅ) ପାଠ, ଅଧ୍ୟୟନ ।

ନିପତନ, ବି. ନ. (ନି-ପତ୍-ଅନ) ପତନ, ନିପାତ, ପଡିବାର ।

ନିପତିତ, ବିଂ. (ନି-ପତ୍-ତ) ଅଧଃପତିତ, ଯେ ପଡି ଯାଇଅଛି ।

ନିପାତ, ବି. ପୁଂ. (ନି-ପତ୍-ଅ) ମୃତ୍ୟୁ, ନିଧନ, ମରଣ; ପତନ; ଅଧଃପତନ ।

ନିପାତନ, ବି. ନ. (ନି-ପାତି-ଅନ) ପ୍ରକ୍ଷେପଣ; ଅଧଃକ୍ଷେପଣ; ପ୍ରହାର; ବଧ, ବିନାଶନ; ଅଧୋନୟନ; ବ୍ୟାକରଣର ପଦ ସିଦ୍ଧ କରିବାପାଇଁ ପୂର୍ବୋକ୍ତ ଯେଉଁ ନିୟମ ଅଛି ତାହା ଅତିକ୍ରମ କରି ପଦସାଧନ ।

ନିପାତିତ, ବିଂ. (ନି-ପାତି-ତ) ଅଧୋନୀତ; ବିନାଶିତ ।

ନିପାନ, ବି. ନ. (ନି-ପା-ଅନ) କୂପ ନିକଟରେ ପଶ୍ୱାଦିର ଜଳପାନ ନିମିତ୍ତ କ୍ଷୁଦ୍ର ଜଳାଧାର; ଦୁଗ୍ଧଭାଣ୍ଡ; ପଶ୍ୱାଦିର ଜଳପାନ କରିବାର ଘାଟ; ଗୋଦୋହନପାତ୍ର ।

ନିପୀଡ଼କ, ବିଂ. ( ନି-ପୀଡ୍-ଅକ ) ଯେ ପୀଡ଼ା ଦିଏ, ଯେ ଅପକାର ବା ଅତ୍ୟାଚାର କରେ ।

ନିପୀଡ଼ନ, ବି. ନ. (ନି-ପୀଡ୍-ଅନ) ଅଭିବାଦନ; ପଦାଦି ସେବା; ମର୍ଦ୍ଦନ, କ୍ଳେଶପ୍ରଦାନ; ନିଷ୍ପୀଡ଼ନ ।

ନିପୀଡ଼ିତ, ବିଂ. ( ନି-ପୀଡ୍-ତ ) ଅଭିବାଦିତ; ଆକ୍ରାନ୍ତ; କ୍ଳେଶିତ; ଉତ୍ପୀଡିତ; ମର୍ଦ୍ଦିତ ।

ନିପୁଣ, ବିଂ. (ନି-ପୁଣ୍-ଅ) ଦକ୍ଷ, ସମର୍ଥ, ପଟୁ, କାର୍ଯ୍ୟକ୍ଷମ ।

ନିବଦ୍ଧ, ବିଂ. (ନି-ବନ୍ଧ୍-ତ) ଗ୍ରଥିତ; ବଦ୍ଧ; ନିବେଶିତ; ସ୍ୱୀକୃତ; ରଚିତ; ଅର୍ପିତ; ନିୟମିତ, ସଂହତ ।

ନିବନ୍ଧ, ବି. ପୁଂ. (ନି-ବନ୍ଧ୍-ଅ) ରଚନା, ପ୍ରଣୟନ; ଗ୍ରନ୍ଥ; ପ୍ରସ୍ତାବ; ନିୟମ; ବ୍ୟବସ୍ଥା; ନିମ୍ବବୃକ୍ଷ । ନ. ଗୀତ, ଗାନ ।

ନିବନ୍ଧନ, ବି. ନ. ( ନି-ବନ୍ଧ୍-ଅନ ) କାରଣ, ହେତୁ; ବ୍ୟବସ୍ଥା; ନିୟମ; ରଚନା ।

ନିବନ୍ଧା, ବିଂ. (ନି-ବନ୍ଧ୍-ତୃ) ରଚୟିତା, ଗ୍ରନ୍ଥକର୍ତ୍ତା; ପ୍ରସ୍ତାବଲେଖକ ।

ନିବର୍ହଣ, ବି. ନ. (ନି-ବର୍ହ=ବଧ କରିବା-ଅନ) ମାରଣ, ଉଚ୍ଛେଦ ।

ନିଭ, ବିଂ. (ନି-ଭା-ଅ) ତୁଲ୍ୟ, ସଦୃଶ । ବି. ପୁଂ. ବ୍ୟାଜ, କପଟ; ପ୍ରକାଶ ।

ନିଭୃତ, ବିଂ. (ନି-ଭୃ-ତ) ବିନୀତ; ଗୁପ୍ତ, ଲୁକ୍କାୟିତ, ଅସ୍ତମିତ; ନିଶ୍ଚଳ; ନିର୍ଜ୍ଜନ ।

ନିମ, ବି. (ନିମ୍ବ ଶବ୍ଦଜ) ବୃକ୍ଷବିଶେଷ, ନିମ୍ବବୃକ୍ଷ ।

ନିମକ, ବି. (ଯାବନିକ) ଲବଣ ।

ନିମକହାରାମ, ବିଂ. (ଯାବନିକ) କୃତଘ୍ନ ।

ନିମଗ୍ନ, ବିଂ. (ନି-ମସ୍ଜ୍-ତ) ମଗ୍ନ, ବୁଡିଯିବା; ଆବିଷ୍ଟ; ଏକାଗ୍ର; ଆସକ୍ତ ।

ନିମଜ୍ଜଥୁ, ବି. ପୁଂ. (ନି-ମସ୍ଜ୍-ଅଥୁ) ଶୟନ, ଅବଗାହନ; ଅନ୍ତର୍ନିବେଶ ।

ନିମଜ୍ଜନ, ବି. ନ. (ନି-ମସ୍ଜ୍-ଅନ) ସ୍ନାନ, ଅବଗାହନ, ବୁଡିଯିବାର ।

ନିମନ୍ତ୍ରଣ, ବି. ନ. (ନି-ମନ୍ତ୍ର-ଅନ) ଭୋଜନାର୍ଥ ଆହ୍ୱାନ, କୌଣସି ସ୍ଥାନରେ ଉପସ୍ଥିତ ହେବା ନିମିତ୍ତ ଆହ୍ୱାନ ।

ନିମନ୍ତ୍ରିତ, ବିଂ. (ନି-ମନ୍ତ୍ର-ତ) ଆହୂତ; ଯାହାକୁ ନିମନ୍ତ୍ରଣ କରା ହୋଇଅଛି ।

ନିମି, ବି. ପୁଂ. (ନି-ମା=ପରିମାଣ କରିବା-ଇ) ଚନ୍ଦ୍ରବଂଶୀୟ ନୃପବିଶେଷ, ଇକ୍ଷ୍ୱାକୁର ପୁତ୍ରବିଶେଷ ।

ନିମିତ, ବିଂ. (ନି-ମା-ତ) ପ୍ରକ୍ଷିପ୍ତ, ଉତ୍କ୍ଷିପ୍ତ ।

ନିମିତ୍ତ, ବି. ନ. (ନି-ମିଦ୍=ସ୍ନିଗ୍ଧ ହେବା-ତ) କାରଣ, ହେତୁ; ଶୁଭାଶୁଭ ଚିହ୍ନ; ପ୍ରୟୋଜନ; ଉଦ୍ଦେଶ୍ୟ; ଚିହ୍ନ ।

ନିମିତ୍ତବିଦ୍, ବି. ପୁଂ. (ନିମିତ୍ତ-ବିଦ୍-୦) ଦୈବଜ୍ଞ; ଗଣକ; ଯେ ଶୁଭାଶୁଭ ଚିହ୍ନ ବୁଝି ପାରେ ।

ନିମିଷ, ନିମେଷ, ବି. ପୁଂ. (ନି-ମିଷ୍-ଅ) ପଲକ; ଚକ୍ଷୁର୍ନିମୀଳନ, ପକ୍ଷ୍ମପାତ ।

ନିମୀଳନ, ବି. ନ. (ନି-ମୀଲ୍-ଅନ) ବୁଜିବା, ମୁଦିବା; ମୋହ; ସଙ୍କୋଚକରଣ; ମରଣ; ଅପ୍ରକାଶ; ମୁଦ୍ରିତକରଣ ।

ନିମୀଳିତ, ବିଂ. (ନି-ମୀଲ୍-ତ) ମୁଦ୍ରିତ, ସଙ୍କୁଚିତ; ମୋହିତ, ନିଷ୍ପନ୍ଦ ।

ନିମ୍ନ, ବିଂ. (ନି-ମ୍ନା-ଅ) ନୀଚ; ଅଧଃ; ଗମ୍ଭୀର ।

ନିମ୍ନଗା, ବି. ସ୍ତ୍ରୀ. (ନିମ୍ନ-ଗମ୍-ଅ-ଆ) ନଦୀ । ବିଂ. ଅଧୋଗାମିନୀ । ଯଥା—

ନିମ୍ନଗା ନୀର ବେଗେ ସାଗରେ ଧାଏଁ । ଭୂ. ସ୍ତୁ.

ନିମ୍ନୋନ୍ନତ, ବିଂ. (ନିମ୍ନ-ଉନ୍ନତ) ବନ୍ଧୁର, ଉଚ୍ଚ-ନୀଚ, ଉନ୍ନତାନତ ।

ନିମ୍ବ, ନିମ୍ବକ, ବି. ପୁଂ. (ନିମ୍ବ୍-ଅ, ଅକ) ନିମ୍ବ-ଗଛ ।

ନିମ୍ବୁକ, ବି. ପୁଂ. କାଗଜଲେମ୍ବୁ ଗଛ ।

ନିୟତ, ବିଂ. (ନି-ଯମ୍-ତ) ଦମିତ; ସଂଯତ; ବଦ୍ଧ; ଶାସିତ; ବଶୀକୃତ; ସ୍ଥିର; ନିଶ୍ଚିତ ।

ନିୟତି, ବି. ସ୍ତ୍ରୀ. (ନି-ଯମ୍-ତି) ଭାଗ୍ୟ, ବିଧିର ବିଧାନ, ଅଦୃଷ୍ଟ ।

ନିୟତା, ବି. ସ୍ତ୍ରୀ. (ନି-ଯମ୍-ତା) ଦୁର୍ଗା ।

ନିୟନ୍ତା, ବିଂ. (ନି-ଯମ୍-ତୃ) ସାରଥି । ବିଂ. ନିୟାମକ; ଶାସକ ।

ନିୟନ୍ତ୍ରିତ, ବିଂ. (ନି-ଯନ୍ତ୍ର-ତ) ଦମିତ, ବଦ୍ଧ; ନିବାରିତ; ସଙ୍କୋଚିତ ।

ନିୟମ, ବି. ପୁଂ. (ନି-ଯମ୍-ଅ) ପ୍ରତିଜ୍ଞା, ଅଙ୍ଗୀକାର; ବିଧିବ୍ୟବସ୍ଥା; ଅବଧାରଣ; ଧାରା, ରୀତି; ବ୍ରତାଦି; ଦମନ; ଧର୍ମକର୍ମ; ଧର୍ମାନୁଷ୍ଠାନ; ସୂତ୍ର; ଲକ୍ଷଣ; ବନ୍ଧନ ; ଶପଥ ।

ନିୟମତନ୍ତ୍ର, ଯେଉଁ ଶାସନପ୍ରଣାଳୀରେ ରାଜାଙ୍କୁ କେତେକ ନିର୍ଦ୍ଧାରିତ ନିୟମର ଅଧୀନ ହୋଇ ଚଳିବାକୁ ହୁଏ ।

ନିୟମିତ, ବିଂ. (ନି-ଯମ୍-ତ) ଦମିତ; ନିବାରିତ, ନିଷିଦ୍ଧ; ନିୟମବଦ୍ଧ; ବ୍ୟବସ୍ଥାପିତ; ଅବଧାରିତ, ନିଶ୍ଚିତ; ଅକୃଷ୍ଟ ।

ନିୟାନ, ବି. ନ. (ନି-ଯା-ଅନ) ଗୋଚାରଣ ସ୍ଥାନ, ଗୋଷ୍ଠ ।

ନିୟାମକ, ବିଂ. (ନି-ଯମ୍-ଅକ) ଯେ ନିୟମ ବ୍ୟବସ୍ଥା କରେ; ନିୟନ୍ତା; ନିୟମକର୍ତ୍ତା; ବିଧିଦାୟକ; ବ୍ୟବସ୍ଥାପକ । ବି. ପୁଂ. ପୋତବାହକ, ନାବିକ ।

ନିଯୁକ୍ତ, ବିଂ. (ନି-ଯୁଜ୍-ତ) ପ୍ରବର୍ତ୍ତିତ; ବ୍ୟାପୃତ; ଅଧିକୃତ; ଆଦିଷ୍ଟ; ପ୍ରବୃତ୍ତ ।

ନିଯୁତ, ବି. ପୁଂ. ନ. (ନି-ଯୁ-ତ) ଦଶଲକ୍ଷ ସଂଖ୍ୟା ।

ନିଯୁଦ୍ଧ, ବି. ନ. (ନି-ଯୁଦ୍ଧ) ମଲ୍ଲଯୁଦ୍ଧ; ବାହୁଯୁଦ୍ଧ; ଦ୍ୱନ୍ଦ୍ୱଯୁଦ୍ଧ ।

ନିଯୋକ୍ତା, ବିଂ. (ନି-ଯୁଜ୍-ତୃ) ନିଯୋଗକର୍ତ୍ତା; ପ୍ରଭୁ; ପ୍ରବର୍ତ୍ତକ ।

ନିଯୋଗ, ବି. ପୁଂ. (ନି-ଯୁଜ୍-ଅ) ଶାସନ; ଆଜ୍ଞା; ପ୍ରେରଣ; ଭାରାର୍ପଣ; ମନୋଯୋଗ; ପ୍ରବୃତ୍ତି; ନିଶ୍ଚୟ; ଅଧିକାର ।

ନିଯୋଗପତ୍ର, ବି. ନ. (ନିଯୋଗ-ପତ୍ର) ଯେ ପତ୍ରଦ୍ୱାରା କୌଣସି ବ୍ୟକ୍ତିକୁ କୌଣସି କର୍ମ ବା ପଦରେ ନିଯୁକ୍ତ କରାଯାଏ ।

ନିଯୋଗୀ, ବିଂ. (ନିଯୋଗ-ଇନ୍) ଯେ କୌଣସି କାର୍ଯ୍ୟରେ ନିଯୁକ୍ତ ବା ବ୍ୟାପୃତ ହୋଇଅଛି; ଯେ ଆଦିଷ୍ଟ ହୋଇଅଛି; ବ୍ୟାପୃତ ।

ନିଯୋଜନ, ବି. ନ. (ନି-ଯୁଜ୍-ଅନ) ପ୍ରେରଣ; ପ୍ରବର୍ତ୍ତନ; ନିଯୋଗ କରିବା; ଆଦେଶ କରିବା ।

ନିଯୋଜୟିତା, ବିଂ. (ନି-ଯୋଜ-ତୃ) ନିଯୋଗକର୍ତ୍ତା, ଯେ ନିଯୋଗ କରେ ।

ନିଯୋଜିତ, ବିଂ. (ନି-ଯୋଜ-ତ) ବ୍ୟାପାରିତ; ପ୍ରବର୍ତ୍ତିତ; ପ୍ରେରିତ ।

ନିଯୋଜ୍ୟ, ବିଂ. (ନି-ଯୁଜ୍-ଯ) କିଙ୍କର, ଦାସ, ସେବକ, ଭୃତ୍ୟ ।

ନିର୍, ନିସ୍, (ଉପସର୍ଗ ଅବ୍ୟୟ, ନୃ-୦) ନିଶ୍ଚୟ; ନିଷେଧ; ନିଃଶେଷ; ନିତାନ୍ତ, ବହିଷ୍କରଣ; ନିର୍ଗମନ ।

ନିରକ୍ଷ, ବି. ନିରକ୍ଷଦେଶ, ନିରକ୍ଷବୃତ୍ତ, ନିରକ୍ଷରେଖା, ବିଷୁବରେଖା; ନାଡ଼ୀମଣ୍ଡଳ (Equator) ।

ନିରକ୍ଷାନ୍ତର, ନିରକ୍ଷ ରେଖାଠାରୁ ପୃଥିବୀର କୌଣସି ଏକ ସ୍ଥାନର ଦୂରତ୍ୱ (Latitude) ।

ନିରଂଶ, ବିଂ. (ନିର୍-ଅଂଶ) ଅଂଶରହିତ; ଭାଗ୍ୟହୀନ । ବି. ପୁଂ. ସଂକ୍ରାନ୍ତି; ରାଶିଭୋଗ କାଳର ପ୍ରଥମ ଓ ଶେଷଦିନ ।

ନିରଙ୍କୁଶ, ବିଂ. ( ନିର୍-ଅଙ୍କୁଶ ) ଅନିବାର୍ଯ୍ୟ; ସ୍ୱେଚ୍ଛାଚାରୀ; ସ୍ୱାଧୀନ ।

ନିରଖ, ବି. (ଯାବନିକ) ଭାଉ, ଦର ।

ନିରଞ୍ଜନ, ବିଂ. (ନିର୍-ଅଞ୍ଜନ) ନିର୍ମଳ; ଅଞ୍ଜନଶୂନ୍ୟ; ଅବିଦ୍ୟାଦୋଷରହିତ । ବି. ନ. ପରବ୍ରହ୍ମ । ପୁଂ. ଶିବ । ସ୍ତ୍ରୀ. ପୂର୍ଣ୍ଣିମା ତିଥି ।

ନିରତ, ବିଂ. (ନି-ରମ୍-ତ) ଆସକ୍ତ, ଅନୁରକ୍ତ, ବ୍ୟାପୃତ, ନିଯୁକ୍ତ । କ୍ରି. ବିଂ. ସର୍ବଦା । ଯଥା—

ନିରତେ ଚରୁଥିବ ମୋ ଗୁଣମାନ ।

ନିରତିଶୟ, ବିଂ. (ନିର୍-ଅତିଶୟ) ଅତ୍ୟୁତ୍କୃଷ୍ଟ, ଅତ୍ୟଧିକ ।

ନିରନ୍ତର, ବିଂ. (ନିର୍-ଅନ୍ତର) ନିବିଡ଼, ଘନ । କ୍ରି. ବିଂ. ପ୍ରତିକ୍ଷଣ, ସର୍ବଦା ।

ନିରନ୍ତରାଳ, ବିଂ. (ନିର୍-ଅନ୍ତରାଳ) ସଙ୍କୀର୍ଣ୍ଣ ।

ନିରନ୍ନ, ବିଂ. (ନିର୍-ଅନ୍ନ) ଦରିଦ୍ର ।

ନିରନ୍ୱୟ, ବିଂ. ( ନିର୍-ଅନ୍ୱୟ ) ନିଃସନ୍ତାନ; ନିଃସମ୍ପର୍କ ।

ନିରପତ୍ୟ, ବିଂ. (ନିର୍-ଅପତ୍ୟ) ନିଃସନ୍ତାନ, ପୁତ୍ରକନ୍ୟାରହିତ ।

ନିରପତ୍ରପ, ବିଂ. (ନିର୍-ଅପତ୍ରପା) ନିର୍ଲଜ୍ଜ ।

ନିରପରାଧ, ବିଂ. (ନିର୍-ଅପରାଧ) ଅପରାଧଶୂନ୍ୟ, ନିର୍ଦ୍ଦୋଷ ।

ନିରପାୟ, } ବିଂ. (ନିର୍-ଅପାୟ) ଅପାୟରହିତ;
ନିରପାୟୀ, } ଅକ୍ଷୟ, ଅବିନଶ୍ୱର ।

ନିରପେକ୍ଷ, ବିଂ. (ନିର୍-ଅପେକ୍ଷା) ଅପେକ୍ଷାରହିତ, ଅପକ୍ଷପାତୀ; ଉଦାସୀନ; ସ୍ୱାଧୀନ ।

ନିରୟ, ବି.-ପୁଂ. (ନିର୍=ନିର୍ଗତ-ଅୟ=ସୌଭାଗ୍ୟ) ପାପିମାନେ ମୃତ୍ୟୁ ପରେ ଯେଉଁ ସ୍ଥାନକୁ ଯାଇ ଶାସ୍ତି ଭୋଗ କରନ୍ତି, ନରକ ।

ନିରର୍ଗଳ, ବି. (ନିର୍-ଅର୍ଗଳ) ଅବାଧ; ଅପ୍ରତି-ବନ୍ଧକ; ଅନର୍ଗଳ, ଅର୍ଗଳରହିତ; ଉଦ୍ଦାମ; ବିଶୃଙ୍ଖଳ ।

ନିରର୍ଥକ, ବି. (ନିର୍-ଅର୍ଥ-କ) ବ୍ୟର୍ଥ, ବିଫଳ, ଅର୍ଥରହିତ, ଅନର୍ଥକ, ନିଷ୍ପ୍ରୟୋଜନ ।

ନିରବ, ବି. (ନି-ରବ) ନିଃଶବ୍ଦ, ମୌନୀ ।

ନିରବକାଶ, ବି. ( ନିର୍-ଅବକାଶ ) ଅବକାଶ-ଶୂନ୍ୟ, ଅବସରରହିତ ।

ନିରବଗ୍ରହ, ବି. ( ନିର୍-ଅବଗ୍ରହ ) ସ୍ୱତନ୍ତ୍ର, ନିଷ୍ପ୍ରତିବନ୍ଧକ, ବ୍ୟାଘାତ ପ୍ରତିବନ୍ଧଶୂନ୍ୟ ।

ନିରବଚ୍ଛିନ୍ନ, ବି. (ନିର୍-ଅବଚ୍ଛିନ୍ନ) ଅନବଚ୍ଛିନ୍ନ, ନିରନ୍ତର; ଶାଶ୍ୱତ, ନିର୍ମଳ; କେବଳ; ନିରବକାଶ ।

ନିରବଧି, ବି. (ନିର୍-ଅବଧି) ନିରନ୍ତର, ସତତ, ସନ୍ତତ, ସର୍ବଦା; ଅସୀମ ।

ନିରବୟବ, ବି. ( ନିର୍-ଅବୟବ ) ନିରାକାର, ଅବୟବରହିତ । ବି. ପୁଂ. ପରମାଣୁ ।

ନିରବଲମ୍ବନ, ବି. (ନିର୍-ଅବଲମ୍ବନ) ନିରାଶ୍ରୟ, ନିଃସହାୟ ।

ନିରବଶେଷ, ବି. ( ନିର୍-ଅବଶେଷ ) ସମଗ୍ର, ସମୁଦାୟ ।

ନିରବସିତ,ବି. (ନିର୍-ଅବ-ସୋ-ତ) ବହିଷ୍କୃତ ।

ନୀରସ, ବି. (ନି-ରସ) ଶୁଷ୍କ, ରସହୀନ ।

ନିରସନ, ବି. ନ. (ନିର୍-ଅସ୍-ଅନ) ନିରାକରଣ, ନିକ୍ଷେପ, ହନନ, ବଧ ।

ନିରସ୍ତ, ବି. (ନିର୍-ଅସ୍-ତ) ନିକ୍ଷିପ୍ତ, ପରିତ୍ୟକ୍ତ, ଦୂରୀକୃତ; ବହିଷ୍କୃତ; କ୍ଷାନ୍ତ, ନିବୃତ୍ତ; ପ୍ରତି-ହତ, ଭର୍ତ୍ସିତ ।

ନିରସ୍ତ୍ର, ବି. (ନିର୍-ଅସ୍ତ୍ର) ଅସ୍ତ୍ରଶୂନ୍ୟ, ନିରାୟୁଧ ।

ନିରାକରଣ,ବି. ନ. (ନିର୍-ଆ-କୃ-ଅନ) ନିବାରଣ, ଦୂରୀକରଣ ; ଖଣ୍ଡନ; , ନିର୍ଣ୍ଣୟ, ଅବଧାରଣ, ମୀମାଂସା, ସିଦ୍ଧାନ୍ତ ।

ନିରାକରିଷ୍ଣୁ, ବି. ( ନିର୍-ଆ-କୃ-ଇଷ୍ଣୁ ) ନିରା-କରଣଶୀଳ; ଦୂରୀକରଣସମର୍ଥ ; ବ୍ୟାଘାତ-ଜନକ ।

ନିରାକାଙ୍କ୍ଷ, ବି.(ନିର୍-ଆକାଙ୍କ୍ଷା) ନିଃସ୍ପୃହ, ଆକାଙ୍କ୍ଷା-ରହିତ ।

ନିରାକାର, ବି. ପୁଂ. (ନିର୍-ଆ-କୃ-ଅ) ଆକାଶ ; ବିଷ୍ଣୁ; ଶିବ; ପରମେଶ୍ୱର । ବି. ଆକାର-ରହିତ, ଯାହାର ଶରୀର ନାହିଁ ।

ନିରାକୃତ, ବି. (ନିର୍-ଆ-କୃ-ତ) ନିବାରିତ; ଦୂରୀ-କୃତ; ଖଣ୍ଡିତ; ନିରସ୍ତ; ନିର୍ଣ୍ଣୀତ; ଅବଧାରିତ, ମୀମାଂସିତ ।

ନିରାକୃତି, ବି. ସ୍ତ୍ରୀ. (ନିର୍-ଆ-କୃ-ତି) ନିବାରଣ । ବି. ନିରାକାର, ଅଧ୍ୟୟନହୀନ; ବେଦାଧ୍ୟୟନ-ହୀନ ।

ନିରାଟ, ବି. (ଦେଶଜ) ଅଛିଦ୍ର, ଦୃଢ଼, ନିଦା ।

ନିରାତଙ୍କ, ବି. (ନିର୍-ଆତଙ୍କ) ଆତଙ୍କରହିତ, ନିର୍ଭୟ ।

ନିରାତପ, ବି. (ନିର୍-ଆତପ) ଆତପଶୂନ୍ୟ । ବି. ସ୍ତ୍ରୀ. ରାତ୍ରି ।

ନିରାନନ୍ଦ, ବି. (ନିର-ଆନନ୍ଦ) ଆନନ୍ଦରହିତ, ଶୋକାକୁଳ ।

ନିରାପଦ, ବି. ( ନିର୍-ଆପଦ୍ ) ଯାହାର ଆପଦ ନାହିଁ, ନିରୁପଦ୍ରବ, ଅକଣ୍ଟକ ।

ନିରାବାଧ, ବି. (ନିର୍-ଆ-ବାଧା) ବାଧାହୀନ ।

ନିରାମୟ, ବି. ( ନିର୍-ଆମୟ ) ନୀରୋଗ, ସୁସ୍ଥ; ରୋଗହୀନ । ବି. ପୁଂ. ବନ୍ୟଛାଗ; ଶୂକର ।

ନିରାମିଷ, ବି. ( ନିର୍-ଆମିଷ ) ମାଂସାଦି ଆମିଷ-ରହିତ ।

ନିରାୟୁଧ, ବି. ( ନିର୍-ଆୟୁଧ ) ନିରସ୍ତ୍ର, ଆୟୁଧ-ଶୂନ୍ୟ ।

ନିରାଲମ୍ବ, ବି. (ନିର୍-ଆଲମ୍ବ) ଅବଲମ୍ବନଶୂନ୍ୟ, ଆଶ୍ରୟହୀନ ।

ନିରାଶ, ବି. (ନିର୍-ଆଶା) ହତାଶ, ଆଶାରହିତ ।

ନିରାଶ୍ରୟ, ବି. (ନିର୍-ଆଶ୍ରୟ) ଅସହାୟ, ସହାୟ-ରହିତ, ଅଶରଣ ।

ନିରାସ, ବି. ପୁଂ. (ନିର୍-ଆସ) ନିକ୍ଷେପ, ତ୍ୟାଗ; ନିରାକରଣ; ଦୂରୀକରଣ; ଖଣ୍ଡନ ।

**ନିରାହାର**, ବି°. (ନିର୍-ଆହାର) ଆହାରରହିତ, ଉପବାସୀ । ବି. ପୁ°. ଭୋଜନାଭାବ ।

**ନିରିନ୍ଦ୍ରିୟ**, ବି°. (ନିର-ଇନ୍ଦ୍ରିୟ) ଇନ୍ଦ୍ରିୟରହିତ । ଯଥା—ଅନ୍ଧ, ପଙ୍ଗୁ, କ୍ଲୀବ ପ୍ରଭୃତି ।

**ନିରୀକ୍ଷକ**, ବି°. (ନିର୍-ଈକ୍ଷ-ଅକ) ଦର୍ଶକ, ଯେ ନିରୀକ୍ଷଣ କରେ ।

**ନିରୀକ୍ଷଣ**, ନ. } ବି.(ନିର୍-ଈକ୍ଷ-ଅନ,ଆ)ଦର୍ଶନ,
**ନିରୀକ୍ଷା**, ସ୍ତ୍ରୀ. } ନୟନଦ୍ୱାରା ଅନୁଭବ କରିବା ।

**ନିରୀକ୍ଷମାଣ**, ବି°. (ନିର୍-ଈକ୍ଷ-ଆନ) ଦର୍ଶୀ, ଯେ ଦେଖୁଅଛି ।

**ନିରୀକ୍ଷିତ**, ବି°. (ନିର୍-ଈକ୍ଷ-ତ) ଦୃଷ୍ଟ, ଅବଲୋକିତ ।

**ନିରୀଶ୍ୱର**, ବି°. (ନିର୍-ଈଶ୍ୱର) ଯେ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରେ ନାହିଁ, ନାସ୍ତିକ ।

**ନିରୀଶ୍ୱରବାଦୀ**, ବି°. (ନିରୀଶ୍ୱର-ବାଦୀ) "ଈଶ୍ୱର ନାହାନ୍ତି" ଏହି ମତ ଯେ ଅବଲମ୍ବନ କରେ ।

**ନିରୀହ**, ବି°. (ନିର୍-ଈହା) ନିଶ୍ଚେଷ୍ଟ, ଶାନ୍ତପ୍ରକୃତି, ଯେ କାହାର ସହିତ ବିରୋଧ ବା ବିବାଦ କରେ ନାହିଁ; ଧୀର, ଶିଷ୍ଟ ।

**ନିରୁକ୍ତ**, ବି. ନ. (ନିର୍-ବଚ୍-ତ) ବେଦାଙ୍ଗଗ୍ରନ୍ଥବିଶେଷ; ଅପ୍ରକାଶିତ । ବି°. ନିର୍ଣ୍ଣୀତ, ମୀମାଂସିତ ।

**ନିରୁକ୍ତି**, ବି. ସ୍ତ୍ରୀ. (ନିର୍-ଉକ୍ତି) ନିଃଶେଷକଥନ; ନିର୍ବଚନ, ନିର୍ଣ୍ଣୟ, ମୀମାଂସା ।

**ନିରୁତ୍ତର**, ବି°. (ନିର-ଉତ୍ତର) ଉତ୍ତରହୀନ, ଯେ ଉତ୍ତର ଦେଇ ନ ପାରେ ।

**ନିରୁଦ୍ଧ**, ବି°. (ନି-ରୁଧ୍-ତ) ନିବାରିତ, ପ୍ରତିବଦ୍ଧ; ଅବରୁଦ୍ଧ ।

**ନିରୁପମ**, ବି°. (ନିର୍-ଉପମା) ଯାହାର ଉପମା ନାହିଁ, ଅନୁପମ, ଅତୁଳ, ସର୍ବୋତ୍କୃଷ୍ଟ, ଅପ୍ରତିମ, ଅସାଦୃଶ୍ୟ ।

**ନିରୁପାଖ୍ୟ**, ବି°. (ନିର୍-ଉପ-ଆଖ୍ୟା) ଅନିର୍ବଚନୀୟ, ଅସତ୍ ପଦାର୍ଥ । ବି. ନ. ପରବ୍ରହ୍ମ ।

**ନିରୁପାଧି**, ବି°. (ନିର୍-ଉପାଧି) ପରଶୁଦ୍ଧ; ଛଳଶୂନ୍ୟ, ଅମାୟିକ ।

**ନିରୂଢ଼**, ବି°. (ନି-ରୂଢ଼) ଉତ୍ପନ୍ନ; ପ୍ରସିଦ୍ଧ; ଅବିବାହିତ । ବି. ପୁ°. ରୂଢ଼ିଲକ୍ଷଣଦ୍ୱାରା ଅର୍ଥପ୍ରତିପାଦକ ଶବ୍ଦ; ପଶୁଯାଗବିଶେଷ ।

**ନିରୂପକ**, ବି°. (ନି-ରୂପ-କ) ନିର୍ଣ୍ଣାୟକ, ଯେ ନିରୂପଣ କରେ ।

**ନିରୂପଣ**, ବି. ନ. (ନି-ରୂପ୍-ଅନ) ନିର୍ଣ୍ଣୟ; ଦର୍ଶନ; ବିତର୍କ; ନିୟୋଗ; ବିବରଣ । ବି°. ନିର୍ଣ୍ଣୀତ, ସ୍ଥିରୀକୃତ, ନିଶ୍ଚିତ; ଦୃଷ୍ଟ; ବିଗ୍ରହିତ; ନିଯୁକ୍ତ ।

**ନିରେଖିବା**, କ୍ରି. (ନିରୀକ୍ଷଣର ଅପଭ୍ରଂଶ) ଦେଖିବା, ଅନାଇବା, ଅତ୍ୟନ୍ତ ମନୋଯୋଗ ସହିତ ଦେଖିବା । ଯଥା—

ନିରେଖିବା ବୁଝିମ ନକର ।

**ନିରୋଧ**, ବି. ପୁ°. (ନି-ରୁଧ୍-ଅ) ବେଷ୍ଟନ, ଅବରୋଧ, କାରାବନ୍ଧନ; ବିନାଶ; ପ୍ରତିରୋଧ, ବାରଣ; କ୍ଷତି; ନିଗ୍ରହ ।

**ନିରୋଧକ**, ବି°. (ନି-ରୁଧ୍-ଅକ) ନିରୋଧକାରକ ।

**ନିରୋଧନ**, ବି. ନ. (ନି-ରୁଧ୍-ଅନ) ରୁଦ୍ଧକରଣ; ବାଧା ।

**ନିରୋଳ**, ବି°. (ନି-ରୋଳ) ନିର୍ଜ୍ଜନ, ଏକାନ୍ତ । ଯଥା—

ଅହାର ଥୋଇ କାଳି ତଳେ,
ଅନ୍ତରେ ବସିଲ ନିରୋଳେ ।

**ନିର୍ଗତ**, ବି°. (ନିର୍-ଗମ୍-ତ) ବହିର୍ଗତ, ଅପଗତ, ନିଃସୃତ ।

**ନିର୍ଗନ୍ଧ**, ବି°. (ନିର୍-ଗନ୍ଧ) ଗନ୍ଧଶୂନ୍ୟ ।

**ନିର୍ଗମ**, ପୁ°. } ବି. (ନିର୍-ଗମ୍-ଅନ, ଅ) ବହିର୍-
**ନିର୍ଗମନ**, ନ. } ଗମନ, ବହିର୍ଗତ ହେବାର ।

**ନିର୍ଗୁଣ**, ବି°. (ନିର୍-ଗୁଣ) ଗୁଣହୀନ, ବିଦ୍ୟାଦିଶୂନ୍ୟ । ବି. ପୁ°. ସତ୍ତ୍ୱ ରଜଃ ତମୋଗୁଣହୀନ ପରମାତ୍ମା, ପରମେଶ୍ୱର ।

ନିର୍ଗୁଣ୍ଡୀ, ବ. ସ୍ତ୍ରୀ.(ନିର୍-ଗୁଣ୍ଡ୍-ଅ-ଈ) ସିନ୍ଧୁବାର-ବୃକ୍ଷ ।

ନିର୍ଗୂଢ଼, ବଂ. (ନିର୍-ଗୁହ-ତ) ସଂବୃତ; ନିତାନ୍ତ ଗୂଢ଼ । ବ. ପୁଂ. ବୃକ୍ଷର କୋଠର ।

ନିର୍ଗ୍ରନ୍ଥ, ବ. ପୁଂ. (ନିର୍-ଗ୍ରନ୍ଥ) ଦିଗମ୍ବର; ଦରିଦ୍ର; ମୂର୍ଖ; ମୁନି; ଦ୍ୟୂତକାର । ବଂ. ନିଃସହାୟ; ନିର୍ବେଦଗ୍ରସ୍ତ; ଗ୍ରନ୍ଥିଶୂନ୍ୟ ।

ନିର୍ଘଣ୍ଟ, ବ. ପୁଂ. ( ନିର୍-ଘଣ୍ଟ୍-ଅ ) ସୂଚୀପତ୍ର, ନିର୍ଣ୍ଣୟ ।

ନିରୂପଣ,ବ.ନ. ମୀମାଂସା, ସିଦ୍ଧାନ୍ତ; ଅନୁକ୍ରମଣିକା।

ନିର୍ଘାତ, ବ. ପୁଂ. (ନିର୍-ହନ୍-ତ) ପ୍ରବଳବାୟୁ, ଘୂର୍ଣ୍ଣାବାୟୁ; ବାୟୁରେ ବାୟୁର ଅଘାତଜନିତ ଶବ୍ଦ; ଗମ୍ଭୀରଶବ୍ଦ; (ଦେଶଜ) ବଜ୍ର । ବଂ. ବିଷମ, ନିଷ୍ଠୁର; ଭୟାନକ ।

ନିର୍ଘୃଣ, ବଂ. (ନିର୍-ଘୃଣା) ନିର୍ଦ୍ଦୟ; ନିଷ୍ଠୁର; ଘୃଣାହୀନ ।

ନିର୍ଘୋଷ, ବ. ପୁଂ. (ନିର୍-ଘୁଷ୍-ଅ) ଶବ୍ଦ, ଧ୍ୱନି; ଗମ୍ଭୀରଧ୍ୱନି, ଉତ୍କଟଶବ୍ଦ, ଯେଉଁ ଶବ୍ଦ ଶୁଣିଲେ ଭୟ ଜାତ ହୁଏ; ଯଥା, ବଜ୍ର ଶବ୍ଦ ।

ନିର୍ଜନ, ବଂ. (ନିର୍-ଜନ) ଜନଶୂନ୍ୟ, ନିଭୃତ, ବିଜନ, ବସତିହୀନ ।

ନିର୍ଜର, ବ. ପୁଂ. ( ନିର୍-ଜର୍-ଅ ) ଦେବତା, ତ୍ରିଦଶ । ନ. ସୁଧା । ବଂ. ଜରାରହିତ ।

ନିର୍ଜଳ, ବଂ.(ନିର୍-ଜଳ) ଜଳହୀନ, ଜଳଶୂନ୍ୟ, ଶୁଷ୍କ ।

ନିର୍ଜିତ, ବଂ. (ନିର୍-ଜି-ତ) ପରାଜିତ, ବଶୀକୃତ ।

ନିର୍ଜୀବ, ବଂ. (ନିର୍-ଜୀବ) ଜୀବଶୂନ୍ୟ, ନିତାନ୍ତ କ୍ଳାନ୍ତ, ମୃତପ୍ରାୟ, ଅଚେତନ, ମୂର୍ଚ୍ଛାଗତ ।

ନିର୍ଝର, ବ. ପୁଂ. (ନିର୍-ଝର) ଝରଣା, ବାରି-ପ୍ରବାହ । ଯଥା—

ମଦବାରିଧାର ଯା ଶୃଙ୍ଗ କ୍ଷରେ, ଶଇଳଁ ଯେହ୍ନେ ନିର୍ଝର ।

ସୂର୍ଯ୍ୟସୋଠକ; ତୁଷାନଳ ।

ନିର୍ଝରଣୀ,ବ. ସ୍ତ୍ରୀ. (ନିର୍ଝର-ଇନ୍-ଈ) ନଦୀ, ଗିରି-ନଦୀ, ପ୍ରବାହବତୀ ନଦୀ । ଯଥା—

ନିର୍ଝରଣୀ ଝରଝର ଶବଦେ, ବହଇ ବାଜନେ ଶଇଳପଦେ ।

ନିର୍ଝରୀ, ବ. ପୁଂ. (ନିର୍ଝର-ଇନ୍ ) ପର୍ବତ ।

ନିର୍ଣ୍ଣୟ, ପୁଂ. } ବ. (ନିର୍-ଣୀ-ଅ, ଅନ) ନିଶ୍ଚୟ, ନିର୍ଣ୍ଣୟନ, ନ. } ଅବଧାରଣ, ନିଷ୍ପତ୍ତି, ସିଦ୍ଧାନ୍ତ ।

ନିର୍ଣ୍ଣାୟକ, ବଂ. (ନିର୍-ଣୀ-ଅକ) ନିଶ୍ଚୟକାରକ, ମୀମାଂସକ, ସିଦ୍ଧାନ୍ତବାଦୀ, ନିଷ୍ପାଦକ, ଯେ ନିର୍ଣ୍ଣୟ କରେ ।

ନିର୍ଣ୍ଣୀତ, ବଂ. ( ନିର୍-ଣୀ-ତ ) ଅବଧାରିତ, ନିଶ୍ଚିତ, ନିରୂପିତ, ନିର୍ଦ୍ଧିଷ୍ଟ ।

ନିର୍ଣ୍ଣେୟ, ବଂ. ( ନିର୍-ଣୀ-ଯ ) ନିଶ୍ଚୟ ହେବା-ଯୋଗ୍ୟ ।

ନିର୍ଦ୍ଦୟ, ବଂ. ( ନିର୍-ଦୟା-ଅ) ନିଷ୍ଠୁର, ଦୟା-ହୀନ; ହିଂସ୍ର; କ୍ରୂର ।

ନିର୍ଦ୍ଦର, ବଂ. ( ନିର୍-ଦୃ-ଅ ) ନିର୍ଲଜ୍ଜ; କଠିନ, କର୍କଶ; ନିର୍ଭୟ । ବ. ପୁଂ. ନିର୍ଝର ।

ନିର୍ଦ୍ଦଶନ, ବଂ. (ନିର୍-ଦଶନ) ଦନ୍ତହୀନ, ଦନ୍ତ-ରହିତ ।

ନିର୍ଦ୍ଦହନ, ବଂ. (ନିର୍-ଦହ୍-ଅନ) ଅଗ୍ନିଶୂନ୍ୟ । ବ. ପୁଂ. ଭଲ୍ଲାଅ ଗଛ । ନ. ସମ୍ୟଗ୍ ଦହନ ।

ନିର୍ଦ୍ଦିଷ୍ଟ, ବଂ. ( ନିର୍-ଦିଶ୍-ତ ) ନିରୂପିତ, ନିର୍ଦ୍ଧାରିତ; ଉଲ୍ଲିଖିତ; କଥିତ; ଉପଦିଷ୍ଟ; ଆଦିଷ୍ଟ ।

ନିର୍ଦ୍ଦେଶ, ବ. ପୁଂ. ( ନିର୍-ଦିଶ୍-ଅ ) ଆଦେଶ, ଆଜ୍ଞା; ନିରୂପଣ; କଥନ; ପ୍ରଦର୍ଶନ; ଅବଧାରଣ, ଉଲ୍ଲେଖ; ବର୍ଣ୍ଣନ ।

ନିର୍ଦ୍ଦେଶକ, ନିର୍ଦ୍ଦେଷ୍ଟା, ବଂ. (ନିର୍-ଦିଶ୍-ଅକ୍, ତୃ ) ଯେ ନିର୍ଦ୍ଦେଶ କରେ; ଆଜ୍ଞାପକ; ଉଲ୍ଲେଖକ; ପ୍ରଦର୍ଶକ ।

ନିର୍ଦ୍ଦୋଷ, ବଂ. ( ନିର୍-ଦୋଷ ) ଦୋଷରହିତ, ଅପରାଧଶୂନ୍ୟ ।

ନିର୍ଦ୍ଧନ, ବଂ. ( ନିର୍-ଧନ ) ଧନହୀନ, ଦରିଦ୍ର । ବ. ପୁଂ. ବୃଦ୍ଧ ବୃଷଭ ।

ନିର୍ଦ୍ଧାର, ପୁଂ. } ବ. ( ନିର୍-ଧୃ-ଅ, ଅନ ) ନିର୍ଦ୍ଧାରଣ, ନ. } ନିର୍ଣ୍ଣୟ, ମୀମାଂସା, ସିଦ୍ଧାନ୍ତ ।

ନିର୍ଦ୍ଧାରକ, ବିଂ. (ନିର୍-ଧାର୍‌-ଅକ) ଯେ ନିର୍ଦ୍ଧାରଣ କରେ, ନିର୍ଣ୍ଣାୟକ ।

ନିର୍ଦ୍ଧାରିତ, ବିଂ. (ନିର୍-ଧାର୍‌-ତ) ନିଶ୍ଚିତ, ସ୍ଥିରୀକୃତ, ନିର୍ଣ୍ଣୀତ, ଅବଧାରିତ, ସିଦ୍ଧାନ୍ତ, ମୀମାଂସିତ ।

ନିର୍ଦ୍ଧାର୍ଯ୍ୟ, ବିଂ. ( ନିର୍-ଧାର୍-ଯ ) ନିର୍ଣ୍ଣେୟ, ନିରୂପଣୀୟ ।

ନିର୍ଦ୍ୱନ୍ଦ୍ୱ, ବିଂ. (ନିର୍-ଦ୍ୱନ୍ଦ୍ୱ) ଦ୍ୱନ୍ଦ୍ୱରହିତ ।

ନିର୍ଦ୍ଧୂତ, ବିଂ. ( ନିର୍-ଧୂ-ତ ) ବିବର୍ଜିତ, ପରିତ୍ୟକ୍ତ, ବହିଷ୍କୃତ; କ୍ଷତ; ଦୂରୀକୃତ ।

ନିର୍ଦ୍ଧୌତ, ବିଂ. ( ନିର୍-ଧୌତ ) ଧୌତ, ପରିଷ୍କୃତ, କ୍ଷାଳିତ, ମାର୍ଜିତ ।

ନିର୍ନିମିତ୍ତ, ବିଂ. ( ନିର୍-ନିମିତ୍ତ ) ଅକାରଣ, ନିମିତ୍ତରହିତ ; ଆକସ୍ମିକ ; ନିରର୍ଥକ, ନିଷ୍ପ୍ରୟୋଜନ ।

ନିର୍ବନ୍ଧ, ବି. ପୁଂ. (ନିର୍-ବନ୍ଧ୍-ଅ) ଅଭିନିବେଶ, ଆଗ୍ରହ; ବ୍ୟବସ୍ଥା, ନିୟମ; ଉତ୍କଟ ଯତ୍ନ ।

ନିର୍ବଳ, ବିଂ. (ନିର୍-ବଳ) ଶକ୍ତିହୀନ, କ୍ଷୀଣ ।

ନିର୍ବାଧ, ବିଂ. ( ନିର୍-ବାଧା ) ବାଧାରହିତ, ନିଷ୍ପ୍ରତିବନ୍ଧକ ।

ନିର୍ବୁଦ୍ଧି, ନିର୍ବୋଧ, ବିଂ. (ନିର୍-ବୁଦ୍ଧି, ବୋଧ) ଅଜ୍ଞାନ, ମୂର୍ଖ, ଯାହାର ହିତାହିତ ବିଚାର ନାହିଁ ।

ନିର୍ଭୟ, ବିଂ. ( ନିର୍-ଭୀ-ଅ ) ଭୟରହିତ, ନିଃଶଙ୍କ । ବି. ପୁଂ. ଦୃଢ଼ାଙ୍ଗ ଅଶ୍ୱ ।

ନିର୍ଭର, ବିଂ. (ନିର୍-ଭୃ-ଅ) ଅଧିକ; ଅତିରିକ୍ତ, ବହୁଳ, ପୂର୍ଣ୍ଣ । ନ. ସାରଭାଗ; ଅତିରେକ । ପୁଂ. ଭାର, ଆଶ୍ରୟ ।

ନିର୍ଭର୍ତ୍ସନ, ବି. ନ. (ନିର୍-ଭର୍ତ୍ସ-ଅନ) ତିରସ୍କାର, ନିନ୍ଦା ।

ନିର୍ଭାଗ୍ୟ, ବିଂ. ( ନିର୍-ଭାଗ୍ୟ ) ମନ୍ଦଭାଗ୍ୟ, ଦୁର୍ଭାଗ୍ୟ ।

ନିର୍ଭିନ୍ନ, ବି. ନ. ( ନିର୍-ଭିନ୍ନ ) ବିଦଳିତ, ଖଣ୍ଡିତ; ଅଭିନ୍ନ; ବିକସିତ ।

ନିର୍ଭୀକ, ବିଂ. ( ନିର୍-ଭୀ-କ ) ଭୟରହିତ, ନିଃଶଙ୍କ ।

ନିର୍ଭେଦ, ବି. ପୁଂ. ( ନିର୍-ଭେଦ ) ବିଦାରଣ, ବିଭାଜନ ।

ନିର୍ମଦ, ବି. ପୁଂ. (ନିର୍-ମଦ) ମଦକ୍ଷରଣରହିତ ହସ୍ତୀ ।

ନିର୍ମନ୍ଥ, ପୁଂ. } ବି. ( ନିର୍-ମନ୍ଥ୍-ଅ, ଅନ )
ନିର୍ମନ୍ଥନ, ନ. } ମର୍ଦ୍ଦନ; ସଂଘର୍ଷଣ ।

ନିର୍ମମ, ବିଂ. (ନିର୍-ମମ) ମମତାଶୂନ୍ୟ, ବାସନାରହିତ ।

ନିର୍ମଳ, ବିଂ. ( ନିର୍-ମଲ୍-ଅ ) ଶୁଦ୍ଧ; ପରିଷ୍କୃତ, ସ୍ୱଚ୍ଛ । ବି. ନ. ନିର୍ମାଲ୍ୟ ।

ନିର୍ମାଣୀ, ବିଂ. ( ଗ୍ରାମ୍ୟ ଶବ୍ଦ ) ନିର୍ଭରଯୋଗ୍ୟ । ଯଥା—

> ନିର୍ମାଣୀ ଲୋକର ଧର୍ମହିଁ ସାହା,
> ଅପକ୍ଷ ଲୋକ ପକ୍ଷ ତହିଁବାହା ।

ନିର୍ମାଣ, ନ. } ବି. (ନିର୍-ମା-ଅନ, ତି) ଗଠନ,
ନିର୍ମିତି, ସ୍ତ୍ରୀ. } ରଚନ, ଗ୍ରନ୍ଥନ, ପ୍ରସ୍ତୁତକରଣ ।

ନିର୍ମାତା, ବିଂ. ( ନିର୍-ମା-ତୃ ) ନିର୍ମାଣକର୍ତ୍ତା, ଯେ ନିର୍ମାଣ କରେ ।

ନିର୍ମାଲ୍ୟ, ବି. ନ. ( ନିର୍ମଳ-ଯ, କିମ୍ବା, ନିର୍-ମାଲ୍ୟ ) ନିର୍ମଳତା ; ଦେବତା ନିକଟରେ ନିବେଦିତ ପୁଷ୍ପାଦି ।

ନିର୍ମିତ, ବିଂ. ( ନିର୍-ମା-ତ ) ରଚିତ, ଗଠିତ, ପ୍ରସ୍ତୁତ ।

ନିର୍ମୁକ୍ତ, ବି. ପୁଂ. ( ନିର୍-ମୁଚ୍-ତ ) କାତିଛଡ଼ା ସାପ । ବିଂ. ବନ୍ଧନମୁକ୍ତ ।

ନିର୍ମୂଳ, ବିଂ. (ନିର୍-ମୂଳ) ଯାହାର ମୂଳ ପର୍ଯ୍ୟନ୍ତ ନଷ୍ଟ ହୋଇଅଛି ।

ନିର୍ମୋକ, ବି. ପୁଂ. (ନିର୍-ମୁଚ୍-ଅ) ସାପକାତି, କଞ୍ଚୁକ; ସାଞ୍ଜୁ; ଆକାଶ । ଯଥା—

> ନିର୍ମୋକନିର୍ମୁକ୍ତ ତନୁ ପ୍ରାୟେ ବିଭ୍ରମପ୍ରଦ । ମ. ଯା.

ନିର୍ମୋହ, ବିଂ. (ନିର୍-ମୋହ) ମୋହଶୂନ୍ୟ । ବି. ପୁଂ. ରୈବତମନୁର ପୁତ୍ର ।

**ନିର୍ଯନ୍ତ୍ରଣ**, ବିଂ. (ନିର୍-ଯନ୍ତ୍ର-ଅନ) ଯନ୍ତ୍ରଣାରହିତ; ଅନିବାରିତ ।

**ନିର୍ଯାଣ**, ବି. ନ. (ନିର୍-ଯା-ଅନ) ମୁକ୍ତି; ପଶୁର ପୃଷ୍ଠାସ୍ତରଣ; ହସ୍ତି ଚକ୍ଷୁର କୋଣ; ପଶୁମାନଙ୍କ ପାଦବନ୍ଧନ ରଜ୍ଜୁ ।

**ନିର୍ଯାତ**, ବିଂ. ( ନିର୍-ଯା-ତ ) ନିଃସୃତ, ବହିର୍ଗତ, ନିର୍ଗତ ।

**ନିର୍ଯାତକ**, ବିଂ. ( ନିର୍-ଯାତକ ) ଯେ ଅନିଷ୍ଟ କରେ, ଯେ ବୈରି ପରିଶୋଧ କରେ ।

**ନିର୍ଯାତନ**, ବି. ନ. (ନିର୍-ଯାତ-ଅନ) ଅନିଷ୍ଟକାରିର ଅନିଷ୍ଟ କରିବା, ପ୍ରତିହିଂସା ; ଦାନ, ପ୍ରତ୍ୟର୍ପଣ ।

**ନିର୍ଯାମ**, ବି. ପୁଂ. (ନିର୍-ଯମ୍-ଅ) ପୋତବାହ, ନାବିକ ।

**ନିର୍ଯାସ**, ବି. ପୁଂ. (ନିର୍-ଯସ୍-ଅ) ଷରଣ;କ୍ୱାଥ । ଅଂ. ନିଗୂଢ଼; ନିଷ୍କର୍ଷ; ସିଦ୍ଧାନ୍ତ ।

**ନିର୍ଲଜ୍ଜ**, ବିଂ. ( ନିର୍-ଲଜ୍ଜା-ଅ ) ଲଜ୍ଜାହୀନ, ବେହୟା ।

**ନିର୍ଲିପ୍ତ**, ବିଂ. (ନିର୍-ଲିପ୍ତ) ଲେପଶୂନ୍ୟ; ସମ୍ବନ୍ଧଶୂନ୍ୟ ।

**ନିର୍ଲେପ**, ବିଂ. ( ନିର୍-ଲିପ-ଅ ) ଲେପଶୂନ୍ୟ; ଆସଙ୍ଗରହିତ; ପାପଶୂନ୍ୟ; ସ୍ୱତନ୍ତ୍ର । ଯଥା—

ସକଳ ଛାନ୍ଦ ରସ ହରେ, ନିର୍ଦୋଷ ନିର୍ଲେପ ବିଗ୍ରହରେ ।

ବି. ପୁଂ. ସାଧୁ ।

**ନିର୍ଲୋଡିତ**, ବିଂ. (ନିର୍-ଲୁଡ୍=ମନ୍ଥନକରି-ତ) ଆଲୋଡିତ; ଦୃଷ୍ଟ; ବିବେଚିତ; ଆଲୋଚିତ ।

**ନିର୍ଲୋମ**, ବିଂ. (ନିର୍-ଲୋମ) ଲୋମଶୂନ୍ୟ ।

**ନିର୍ବଚନ**, ବି. ନ. ( ନିର୍-ବଚନ ) ବର୍ଣ୍ଣନ; ନିଶ୍ଚୟ କଥନ, ନିରୁକ୍ତି; ବ୍ୟାଖ୍ୟା; ମୀମାଂସା । ବିଂ. ବଚନଶୂନ୍ୟ ।

**ନିର୍ବପଣ**, ବି. ନ. ( ନିର୍-ବପ୍-ଅନ ) ପିତୃଲୋକର ଉଦ୍ଦେଶ୍ୟରେ ଦାନ ; ଅନ୍ନାଦି ପରିବେଶନ; ଦାନ ।

**ନିର୍ବର୍ଣ୍ଣନ**, ବି. ନ. (ନିର୍-ବର୍ଣ୍ଣ-ଅନ) ଦର୍ଶନ, ଅବଲୋକନ; ବିଶେଷରୂପେ ବର୍ଣ୍ଣନା କରିବା ।

**ନିର୍ବର୍ତ୍ତକ**, ବିଂ. (ନିର୍-ବୃତ୍-ଅକ) ସମ୍ପାଦକ, ଯେ କାର୍ଯ୍ୟାଦି ନିର୍ବାହ କରେ ।

**ନିର୍ବର୍ତ୍ତନ**, ବି. ନ. (ନିର୍-ବୃତ୍-ଅନ) ନିଷ୍ପାଦନ, ସମ୍ପାଦନ ।

**ନିର୍ବର୍ତ୍ତିତ**, ବିଂ. ( ନିର-ବୃତ୍-ଣି-ତ ) ସମ୍ପାଦିତ, ନିଷ୍ପାଦିତ ।

**ନିର୍ବର୍ଷପ୍ରଦେଶ**, ବି. ପୁଂ. ବର୍ଷାଶୂନ୍ୟ ପ୍ରଦେଶ, ଯେଉଁ ପ୍ରଦେଶରେ ବୃଷ୍ଟି ହୁଏ ନାହିଁ ।

**ନିର୍ବର୍ହଣ**, ବି. ନ. ( ନିର୍-ବର୍ହ୍-ଅନ ) ବିନାଶ, ମାରଣ ।

**ନିର୍ବହଣ**, ବି. ନ. ( ନିର୍-ବହ୍-ଅନ) ନିଷ୍ଠା; ନିର୍ବାହ ।

**ନିର୍ବାଚନ**, ବି. ନ. (ନିର୍-ବାଚ-ଅନ)ନିର୍ଦ୍ଧାରଣକରଣ; ବାଛି ବାହାର କରିବା; ମନୋନୀତ କରିବା ।

**ନିର୍ବାଚ୍ୟ**, ବିଂ. ( ନିର୍-ବାଚ୍ୟ ) ନିରୂପଣୀୟ; ଅନିନ୍ଦନୀୟ ।

**ନିର୍ବାଣ**, ବି. ନ. (ନିର୍-ବା-ଅନ) ମୋକ୍ଷ; ନାଶ; ନିଭିଯିବା; ଶାନ୍ତି; ଅସ୍ତଗମନ । ଯଥା—

ଅସ୍ତଚର ଦେଖ ବର ହେ ନିର୍ବାଣ । କ. ବ.

ବିଶ୍ରାମ, ହସ୍ତିର ସ୍ନାନ ।

**ନିର୍ବାତ**, ବିଂ. ( ନିର୍-ବା-ତ ) ବାୟୁଶୂନ୍ୟ; ଅଚଞ୍ଚଳ, ସ୍ଥିର । ଯଥା—

ନିର୍ବାତ ନିସ୍ତବ୍ଧ ହୁଦେ ତରଙ୍ଗ ଯେସନ । କ. ବ.

**ନିର୍ବାଦ**, ବି. ପୁଂ. (ନିର୍-ବାଦ) ଅପବାଦ, ନିନ୍ଦା; ଅବଜ୍ଞା; କଳହ ।

**ନିର୍ବାପ**, ନିବାପ, ବି. ପୁଂ. (ନିର୍, ନି-ବପ୍-ଅ ) ମୃତ ବ୍ୟକ୍ତିର ଉଦ୍ଦେଶ୍ୟରେ ଦାନ,ପିତୃଲୋକ ଉଦ୍ଦେଶ୍ୟରେ ଦାନ; ନିବାଇ ଦେବା ।

**ନିର୍ବାପକ**, ବିଂ. (ନିର୍-ବାପି-ଅକ) ବିନାଶକ; ଯେ ନିବାଇ ଦିଏ ।

ନର୍ବାପଣ, ବି. ନ. (ନିର୍-ବାପି-ଅନ) ବଧ, ନାଶ; ଦାନ; ନିବାଇ ଦେବା; ପୂର୍ଣ୍ଣୀକରଣ ।

ନର୍ବାପିତ, ବିଂ (ନିର୍-ବାପି-ତ) ନାଶିତ; ଦତ୍ତ; ନିର୍ବାଣପ୍ରାପିତ ।

ନିର୍ବାସକ, ବିଂ. (ନିର୍-ବାସି-ଅକ) ନିର୍ବାସନକାରୀ ।

ନିର୍ବାସନ, ବି. ନ. (ନିର୍-ବାସି-ଅନ) ଦେଶରୁ ତଡ଼ି ଦେବାର; ବଧ; ଦୂରୀକରଣ ।

ନିର୍ବାସିତ, ବିଂ. (ନିର୍-ବାସି-ତ) ଦ୍ୱୀପାନ୍ତରିତ, ବହିଷ୍କୃତ, ବହିଷ୍କୃତ; ହତ ।

ନିର୍ବାହ, ବି. ପୁଂ. (ନିର୍-ବହ୍-ଅ) ସମ୍ପାଦନ; ନିଷ୍ପତ୍ତି; ସମାପ୍ତି ।

ନିର୍ବାହକ, ବିଂ. (ନିର୍-ବାହି-ଅକ) ନିର୍ବାହକାରକ, ସମ୍ପାଦକ, ନିଷ୍ପାଦକ ।

ନିର୍ବାହିତ, ବିଂ. (ନିର-ବାହି-ତ) ସମ୍ପାଦିତ, ନିଷ୍ପାଦିତ, ଯାହା ସମ୍ପନ୍ନ ହୋଇଅଛି ।

ନିର୍ବିକଳ୍ପ, ବିଂ. (ନିର୍-ବିକଳ୍ପ) ବିକଳ୍ପରହିତ; ବିଶେଷ୍ୟ ବିଶେଷଣତା ସମ୍ବନ୍ଧଶୂନ୍ୟ । ବି. ନ. ଅଖଣ୍ଡଜ୍ଞାନ ।

ନିର୍ବିକାର, ବିଂ. (ନିର୍-ବିକାର) ଅବିକୃତ, ବିକାରଶୂନ୍ୟ ।

ନିର୍ବିଘ୍ନ, ବି. ନ. (ନିର୍-ବିଘ୍ନ) ବିଘ୍ନଶୂନ୍ୟ, ବାଧା-ରହିତ ।

ନିର୍ବିଦ, ନିର୍ବିଣ୍ଣ, ବିଂ. (ନିର୍-ବିଦ୍-ଂ, ତ) ଖିନ୍ନ, ଦୁଃଖିତ; ଭୟ ବା ଶୋକରେ ନିତାନ୍ତ କାତର; ନିର୍ବେଦଯୁକ୍ତ ।

ନିର୍ବିବେକ, ବିଂ. (ନିର୍-ବିବେକ) ବିବେଚନା-ରହିତ, ଅବିବେକୀ, ହିତାହିତଜ୍ଞାନଶୂନ୍ୟ ।

ନିର୍ବିଭେଦ, ବିଂ. (ନିର୍-ବିଭେଦ) ଅଭିନ୍ନ, ଭେଦ-ରହିତ ।

ନିର୍ବିଶଙ୍କ, ବିଂ. (ନିର୍-ବି-ଶଙ୍କା) ନିଃଶଙ୍କ, ନିର୍ଭୟ ।

ନିର୍ବିଶେଷ, ବିଂ. (ନିର୍-ବିଶେଷ) ପ୍ରଭେଦରହିତ, ଅଭିନ୍ନ । କ୍ରି. ବିଂ. ବିଶେଷ ବ୍ୟତିରେକେ ।

ନିର୍ବିଷୟ, ବିଂ. (ନିର୍-ବିଷୟ) ଯାହା ଇନ୍ଦ୍ରିୟର ଗ୍ରାହ୍ୟ ନୁହେଁ; ଚକ୍ଷୁ କର୍ଣ୍ଣାଦି ବହିରିନ୍ଦ୍ରିୟ ଅଗୋଚର ।

ନିର୍ବିଷ୍ଟ, ବିଂ. (ନିର୍-ବିଶ୍-ତ) ପ୍ରାପ୍ତ; ଲବ୍ଧ; ଅନୁଭୂତ; ଉପଭୁକ୍ତ; ପୁଷ୍ଟ; ସ୍ଥିତ; ବିବାହିତ ।

ନିର୍ବୀର୍ଯ୍ୟ, ବିଂ. (ନିର୍-ବୀର୍ଯ୍ୟ) ବୀର୍ଯ୍ୟହୀନ, ବଳ-ହୀନ, ନିସ୍ତେଜ ।

ନିର୍ବୀର, ବିଂ. (ନିର୍-ବୀର) ବୀରଶୂନ୍ୟ ।

ନିର୍ବୁଦ୍ଧି, ବିଂ. (ନିର୍-ବୁଦ୍ଧି) ବୁଦ୍ଧିଶୂନ୍ୟ, ନିର୍ବୋଧ, ବୋକା ।

ନିର୍ବୃତ, ବିଂ. (ନିର୍-ବୃ-ତ) ସନ୍ତୁଷ୍ଟ ।

ନିର୍ବୃତି, ବି. ସ୍ତ୍ରୀ. (ନିର୍-ବୃ-ତି) ମୃତ୍ୟୁ; ମୁକ୍ତି; ଶାନ୍ତି; ସିଦ୍ଧି, ସନ୍ତୋଷ; ସୁଖ ।

ନିର୍ବୃତ୍ତ, ବିଂ. (ନିର୍-ବୃତ୍-ତ) ନିଷ୍ପନ୍ନ, ସମ୍ପନ୍ନ; ସୁସିଦ୍ଧ; ଜାତ ।

ନିର୍ବୃତ୍ତି, ବି. ସ୍ତ୍ରୀ. (ନିର୍-ବୃତ୍-ତି) ନିଷ୍ପତ୍ତି । ବିଂ. ଜୀବିକାଶୂନ୍ୟ ।

ନିର୍ବେଦ, ବି. ପୁଂ. (ନିର୍-ବିଦ୍-ଅ) ସ୍ୱାବମାନନା; ଅନୁତାପ; ବୈରାଗ୍ୟ; ଔଦାସୀନ୍ୟ । ବିଂ. ବେଦବହିର୍ଭୂତ ।

ନିର୍ବେଶ, ବି. ପୁଂ. (ନିର୍-ବିଶ୍-ଅ) ଭୋଗ; ବିବାହ; ମୂର୍ଚ୍ଛା; ବେତନ; ଲାଭ ।

ନିର୍ବ୍ୟଥନ, ବି. ନ. (ନିର୍-ବ୍ୟଥନ) ଛିଦ୍ର, ଗର୍ତ୍ତ, ବିବର; ଦୁଃଖ; ଅତିଶୟ ପୀଡ଼ନ; ଅତ୍ୟନ୍ତ କ୍ଲେଶ ଦେବା । ବିଂ. ବ୍ୟଥାଶୂନ୍ୟ ।

ନିର୍ବ୍ୟାଜ, ବିଂ. (ନିର୍-ବ୍ୟାଜ) ଅକପଟ, ବ୍ୟାଜ-ରହିତ, ଛଳଶୂନ୍ୟ ।

ନିର୍ହାର, ବି.ପୁଂ. (ନିର୍-ହୃ-ଅ) ବାହାର କରିବା; ଶବଦାହ; ଦ୍ରବ୍ୟନିଃସରଣ; ସମ୍ପତ୍ତି; ଅଗ୍ନିଦାହ ।

ନିର୍ହାରୀ, ବିଂ. (ନିର୍ହାର-ଇନ୍) ଅତି ସୁରଭିତ; ଧନୀ; ନିର୍ହାରକାରୀ । ବି. ପୁଂ. ଅତି ଦୂରଗାମୀ ଗନ୍ଧ ।

ନିର୍ହ୍ରାଦ, ବି. ପୁଂ. (ନିର୍-ହ୍ରାଦ୍-ଅ) ନିନାଦ, ଶବ୍ଦ, ଧ୍ୱନି, ରବ ।

ନିଲୟ, ବି. ପୁଂ. (ନି-ଲୀ-ଅ) ଆଳୟ, ଗୃହ, ବାସସ୍ଥାନ; ଆଶ୍ରୟ ।

ନିଲମ, ବି. (ଦେଶଜ) ବିକ୍ରୟର ରୀତିବିଶେଷ ।

ନିବର୍ତ୍ତ, ବି. ( ନି-ବୃତ୍-ଅ ) ନିବୃତ୍ତ, କ୍ଷାନ୍ତ, ବିରତ ।

ନିବର୍ତ୍ତନ, ବି. ନ. ( ନି-ବୃତ୍-ଅନ ) ବିରାମ; ପ୍ରତ୍ୟାବର୍ତ୍ତନ, ନିବୃତ୍ତି; ପୁନରାଗମନ; ପ୍ରତ୍ୟର୍ପଣ ।

ନିବର୍ତ୍ତିତ, ବି. ( ନି-ବର୍ତ୍ତି-ତ ) ପ୍ରତ୍ୟାବର୍ତ୍ତିତ; ନିବାରିତ ।

ନିବର୍ହଣ, ବି. ନ. (ନି-ବର୍ହ-ଅନ) ଉଚ୍ଛେଦ-ସାଧନ; ବିନାଶ; ମାରଣ, ବଧ ।

ନିବର୍ହିତ, ବି. (ନି-ବର୍ହ୍-ତ) ବିନାଶିତ,ନିହତ; ଅପହୃତ; ଅପସାରିତ ।

ନିବସତି, ବି. ସ୍ତ୍ରୀ. (ନି-ବସ୍-ତି) ଗୃହ,ବାସସ୍ଥାନ ।

ନିବସଥ, ବି. ପୁଂ. (ନି-ବସ୍-ଅଥ) ଲୋକାଳୟ, ଗ୍ରାମ, ଜନପଦ ।

ନିବସନ, ବି. ନ. ( ନି-ବସ୍-ଅନ ) ନିବାସ, ଗୃହ; ବସ୍ତ୍ର ।

ନିବହ, ବି. ପୁଂ. (ନି-ବହ୍-ଅ) ନିକର, ସମୂହ; ସପ୍ତବାୟୁର ଅନ୍ତର୍ଗତ ବାୟୁବିଶେଷ । ( ସମୂହ ଅର୍ଥରେ) ଯଥା—

ମହାବୃହନିବହ ପୁଷ୍ପଭୂଷଣ
ପିନ୍ଧିଲେ ଅଙ୍ଗ ମହାଘଳେ ତକ୍ଷଣ । ବ. ବ.

ନିବାଡ଼, ବି. (ନିବଡ଼ ଶବ୍ଦଜ) ଦୃଢ଼; ମଜବୁତ ।

ନିବାତ, ବି. ପୁଂ. (ନି-ବାତ) ଦୃଢ଼ କବଚ, ଅସ୍ତ୍ର-ଦ୍ୱାରା ଅଭେଦ୍ୟ ବର୍ମ; ଆଶ୍ରୟ, ନିବାସ । ବି. ବାତଶୂନ୍ୟ ସ୍ଥାନ; ଦୃଢ଼ ।

ନିବାତକବଚ, ବି. ପୁଂ. ଅତି ଦୁର୍ଦ୍ଦାନ୍ତ ମହା-ପରାକ୍ରାନ୍ତ ତିନିକୋଟି ଅସୁର; ଏମାନେ ହିରଣ୍ୟକଶିପୁର ପୁତ୍ର ସହ୍ରାଦର ତନୟ ।

ନିବାର, ବି. ପୁଂ. ( ନି-ବୃ-ଅ ) ନିବାରଣ, ପ୍ରତିବନ୍ଧକ, ପ୍ରତିରୋଧ ।

ନିବାରଣ, ବି. ନ. ( ନି-ବାର-ଅନ ) ନିଷେଧ, ବାରଣ, ନିରାକରଣ; ପ୍ରତିବନ୍ଧ ।

ନିବାରଣୀୟ, ନିବାର୍ଯ୍ୟ, ବି. ( ନି-ବୃ-ଅନୀୟ, ଯ ) ନିବାରଣ କରିବାର ଯୋଗ୍ୟ ।

ନିବାରିତ, ବି. (ନି-ବାର-ତ) ଯାହାକୁ ବାରଣ କରା ହୋଇଅଛି, ନିଷିଦ୍ଧ ।

ନିବାସ, ବି. ପୁଂ. (ନି-ବସ୍-ଅ) ଗୃହ, ବାସସ୍ଥାନ, ଆଧାର ।

ନିବାସୀ, ବି. (ନି-ବସ୍-ଇନ୍) ଯେ ବାସ କରେ, ବାସିନ୍ଦା, ବାସକାରୀ ।

ନିବିଡ଼, ବି. (ନି-ବିଲ, ଲ ସ୍ଥାନରେ ଡ) ଗାଢ଼, ଘନ; ଦୃଢ଼; ନିରବକାଶ; ସ୍ଥୂଳ ।

ନିବିଷ୍ଟ, ବି. (ନି-ବିଶ୍-ତ) ନିବେଶଯୁକ୍ତ; ସଂଲଗ୍ନ; ଲବ୍ଧ; ମନଃସଂଯୋଗାନ୍ୱିତ, ଅବିଷ୍ଟ, ମନୋ-ଯୋଗୀ ।

ନିବୃତ, ବି. ନ. ( ନି-ବୃ-ତ ) ଆଚ୍ଛାଦନ ବସ୍ତ୍ର, ଉତ୍ତରୀୟ ବସ୍ତ୍ର । ବି. ଆଚ୍ଛାଦିତ, ପରି-ବେଷ୍ଟିତ ।

ନିବୃତ୍ତ, ବି. ( ନି-ବୃତ୍-ତ ) ବିରତ, କ୍ଷାନ୍ତ, ସମାପିତ; ପ୍ରତ୍ୟାବୃତ୍ତ; ଗଳିତ; ବାଧିତ । ବି. ନ. ନିବୃତ୍ତି ।

ନିବୃତ୍ତି, ବି. ସ୍ତ୍ରୀ. ( ନି-ବୃତ୍-ତି ) ବିରାମ; କ୍ଷାନ୍ତି; ବିଶ୍ରାମ; ଉପଶମ; ସମାପନ; ଅସ୍ୱୀକାର ।

ନିବେଦନ, ବି. ନ. ( ନି-ବେଦି-ଅନ ) ଜଣାଣ, ବିଜ୍ଞାପନ; ସମର୍ପଣ; ଆବେଦନ; ବର୍ଣ୍ଣନ ।

ନିବେଦିତ, ବି. (ନି-ବେଦି-ତ) ଜ୍ଞାପିତ; ସମର୍ପିତ; ଦତ୍ତ; ସୂଚିତ ।

ନିବେଦ୍ୟ, ବି. ( ନି-ବେଦି-ଯ ) ଜ୍ଞାପନୀୟ, ନିବେଦନାର୍ହ; ସମର୍ପଣୀୟ ।

ନିବେଶ, ବି. ପୁଂ. (ନି-ବିଶ୍-ଅ) ଶିବିର; ସୈନ୍ୟ-ବିନ୍ୟାସ; ବିବାହ; ନିବେଶନ; ପ୍ରବେଶ; ଯୁକ୍ତ; ସ୍ଥାନ; ଅର୍ପଣ; ଉପବେଶନ; ମନୋ-ଯୋଗ ।

ନିବେଶିତ, ବି. ( ନି-ବିଶ୍-ଇ-ତ ) ସ୍ଥାପିତ; ବିନ୍ୟସ୍ତ; ନିବିଷ୍ଟ; ପ୍ରବେଶିତ, ପ୍ରେରିତ ।

ନିଶମନ, ବି. ନ, (ନି-ଶମ୍-ଅନ) ଦର୍ଶନ; ଶ୍ରବଣ ।

ନିଶା, ବି. ସ୍ତ୍ରୀ. (ନି-ଶୋ-ଅ-ଆ) ରାତ୍ରି, ରଜନୀ; ହରିଦ୍ରା; ମେଷ, ବୃଷ, ମିଥୁନ, କର୍କଟ, ଧନ ଓ ମକର ଲଗ୍ନ ।

ନଶାକର, ବ. ପୁଂ. (ନଶା-କୃ-ଅ) ଚନ୍ଦ୍ର; କୁକ୍କୁଟ ।
ନଶାଚର, ବ. ପୁଂ. (ନଶା-ଚର) ରାକ୍ଷସ; ଶୃଗାଳ; ପେଚକ; ସର୍ପ; ଚକ୍ରବାକ; ପିଶାଚ; ଭୂତ; ଚୋର; ପ୍ରହରୀ । ସ୍ତ୍ରୀ. ରାକ୍ଷସୀ; ପିଶାଚୀ; ଅଭିସାରିକା; ବେଶ୍ୟା; ସୁଗନ୍ଧଦ୍ରବ୍ୟବିଶେଷ ।
ନଶାଜଳ, ବ. ନ. (ନଶା-ଜଳ) ହିମ, ଶିଶିର, ନହାର, ତୁଷାର ।
ନିଶାଟ, ବ. ପୁଂ. (ନିଶା-ଅଟ=ଗମନ କରିବା) ପେଚକ, ନିଶାଚର ।
ନଶାଣ, ବ. (ନଦର୍ଶନ ଶବ୍ଦଜ) ଧ୍ୱଜା, ପତାକା; ଚିହ୍ନ ।
ନଶାତ, ନଶିତ, ବଂ. (ନି-ଶୋ-ତ) ଶାଣିତ, ତୀକ୍ଷ୍ଣୀକୃତ ।
ନିଶାଦ, ବ. ପୁଂ. (ନି-ଶଦ୍-ଅ) ଚଣ୍ଡାଳ; ବ୍ୟାଧ । ବଂ. ରାତ୍ରିଭୋଜୀ ।
ନିଶାନ୍ତ, ବ. ନ. (ନି-ଶମ୍-ତ, କିମ୍ବା ନିଶା-ଅମ୍-ତ) ଗୃହ, ଭବନ । ପୁଂ. (ନିଶା-ଅନ୍ତ) ରାତ୍ରିଶେଷ, ପ୍ରାତଃକାଳ । ବଂ. ଶାନ୍ତ, ଅକ୍ଷୁବ୍ଧ ।
ନିଶାପତି, ନିଶାନାଥ, ନିଶାମଣି, ବ. ପୁଂ. (ନିଶା-ପତି, ନାଥ, ମଣି) ଚନ୍ଦ୍ର; କର୍ପୂର ।
ନିଶାମୃଗ, ବ. ପୁଂ. (ନିଶା-ମୃଗ) ଶୃଗାଳ ।
ନଶାରତ୍ନ, ବ. ନ. (ନଶା-ରତ୍ନ) ଚନ୍ଦ୍ର; କର୍ପୂର ।
ନିଶାବେଦୀ, ବ. ପୁଂ. (ନିଶା-ବେଦନ୍) କୁକ୍କୁଟ ।
ନିଶାହସ, (ନିଶା-ହସ) କୁମୁଦ, ଶ୍ୱେତପଦ୍ମ ।
ନିଶିତ, ବଂ. (ନି-ଶୋ=ତୀକ୍ଷ୍ଣକରିବା-ତ) ଶାଣିତ, ତୀକ୍ଷ୍ଣୀକୃତ । ବ. ନ. ଲୌହ ।
ନିଶୀଥ, ବ. ପୁଂ. (ନି-ଶୀ-ଥ) ଅର୍ଦ୍ଧରାତ୍ର । ଯଥା—

ଚନ୍ଦ୍ରାଲୋକେ ସହି ନଶୀଥେ ଜଳଦେବୀ ସଙ୍ଗୀତ
ଶୁଣନ୍ତି ଚକିତେ ନାବକେ ହୃଦେ ବାହି ବୋଇତ । ଚ. ଙ୍କ.

ନିଶୀଥିନୀ, ନଶୀଥ୍ୟା, ବ. ସ୍ତ୍ରୀ. (ନଶୀଥ-ଇନ୍, ଯ) ରାତ୍ରି, ରଜନୀ ।
ନିଃଶ୍ରେଣୀ, ବ. ସ୍ତ୍ରୀ. (ନଃଶ୍ରେଣୀ ଶବ୍ଦଜ) କାଠ ବା ବାଉଁଶନିର୍ମିତ ସିଡ଼ି ।
ନିଶ୍ଚୟ, ବ. ପୁଂ. (ନିର୍-ଚି-ଅ) ନିର୍ଦ୍ଧାରଣ, ଅସଂଶୟ; ବ୍ୟବସାୟ; ସଂକଳ୍ପ; ସିଦ୍ଧାନ୍ତ; ପରିଚ୍ଛେଦ ।
ନଶ୍ଚଳ, ବଂ. (ନର୍-ଚଳ-ଅ) ସ୍ଥିର, ଅଚଳ । ସ୍ତ୍ରୀ. ଅଚଳା, ପୃଥିବୀ; ଶାଲପର୍ଣ୍ଣୀ ।
ନଶ୍ଚାୟକ, ବଂ. (ନଶ୍ଚୟ-ଅକ) ନିର୍ଦ୍ଧାରକ, ନଶ୍ଚୟକାରକ ।
ନିଶ୍ଚିତ, ବଂ. (ନିର୍-ଚି-ତ) ନିର୍ଣ୍ଣୀତ, ନିଃସନ୍ଦିଗ୍ଧ; ପରିଜ୍ଞାତ ।
ନିଶ୍ଚିନ୍ତ, ବଂ. (ନିର୍-ଚିନ୍ତା) ଚିନ୍ତାରହିତ, ଚିନ୍ତାଶୂନ୍ୟ; ନିରୁଦ୍ବେଗ, ସ୍ଥିର ।
ନିଶ୍ଚେଷ୍ଟ, ବଂ. (ନିର୍-ଚେଷ୍ଟା) ଚେଷ୍ଟାରହିତ, ଗତିଶକ୍ତିରହିତ; ଅଳସ ।
ନିଶ୍ଚେଷ୍ଟତା, ଯେଉଁ ଗୁଣ ଥିବାରୁ ଜଡ଼ପଦାର୍ଥସବୁ ଚଳ ପାରେ ନାହିଁ ଏବଂ ଚଳିତ ହେଲେ ସୁଦ୍ଧା ସ୍ୱୟଂ ସ୍ଥିର ହୋଇ ପାରେ ନାହିଁ ସେହି ଗୁଣର ନାମ ନିଶ୍ଚେଷ୍ଟତା । (Inertia)
ନିଶ୍ୱସିତ, ବ. ନ. (ନି-ଶ୍ୱସ୍-ତ) ନାସାଗତ ବାୟୁ, ନଶ୍ୱାସ । ବଂ. ଯେ ନିଶ୍ୱାସ ପକାଉ-ଅଛି ।
ନିଶ୍ୱାସ, ପୁଂ. } ବ. (ନି-ଶ୍ୱସ୍-ଅ, ଅନ )
ନିଶ୍ୱସନ, ନ. } ପ୍ରାଣବାୟୁ, ବହିର୍ମୁଖଶ୍ୱାସ ।
ନିଷକ୍ତ, ବଂ. (ନି-ସନ୍‌ଜ୍-ତ) ସଂଲଗ୍ନ; ସଂକ୍ରାନ୍ତ; ସଂଯୁକ୍ତ; ସମାଶ୍ଳିଷ୍ଟ ।
ନିଷଙ୍ଗ, ବ. ପୁଂ. (ନି-ସଞ୍ଜ-ଅ) ବାଣାଧାର, ତୂଣୀର; ସଂସର୍ଗ; ସମ୍ମିଳନ; ଆଲିଙ୍ଗନ ।
ନିଷଙ୍ଗୀ, ବଂ. (ନିଷଙ୍ଗ-ଇନ୍) ବାଣଧାରୀ, ଧନୁର୍ଦ୍ଧାରୀ, ଧାନୁଷ୍କ । ବ. ପୁଂ. ଧୃତରାଷ୍ଟ୍ରପୁତ୍ରବିଶେଷ ।
ନିଷଣ୍ଣ, ବଂ. (ନି-ସଦ୍-ତ) ଉପବିଷ୍ଟ; ଶାୟିତ; ସ୍ଥିତ; ଅବଲମ୍ବନକାରୀ ।
ନିଷଦ୍ୟା, ବ. ସ୍ତ୍ରୀ. (ନି-ସଦ୍=ଗମନ କରିବା-ଯ) କ୍ଷୁଦ୍ରଖଟ୍ୱା; ପଣ୍ୟବୀଥିକା, ହାଟ ।
ନିଷଧ, ବ. ପୁଂ. (ନି-ସଦ୍-ଅ) ଭାରତବର୍ଷର ଦକ୍ଷିଣପୂର୍ବ ଦେଶ; ନିଷଧଦେଶର ରାଜା; ନିଷାଦସ୍ୱର । ବଂ. କଠିନ ।

ନିଷାଣ, ବ. (ଦେଶଜ) ଢକ୍କା, ଶଙ୍ଖ ।

ନିଷାଦ, ବ. ପୁଂ. (ନି-ସଦ୍-ଅ) ଚଣ୍ଡାଳ; ଧୀବର, ବ୍ୟାଧ; ଜାତିବିଶେଷ; ସପ୍ତସ୍ୱରାନ୍ତର୍ଗତ ସ୍ୱରବିଶେଷ ।

ନିଷାଦୀ, ବ. ପୁଂ. (ନି-ସଦ୍-ଇନ୍) ହସ୍ତିପକ, ମାହୁନ୍ତ; ହସ୍ତ୍ୟାରୋହୀ । ବି°. ନିଷଣ୍ଣ, ଉପବିଷ୍ଟ, ସ୍ଥିତ ।

ନିଷିକ୍ତ, ବି°. (ନି-ସିଚ୍-ତ) ଜଳାଭିଷିକ୍ତ; କ୍ଷରିତ ।

ନିଷିଦ୍ଧ, ବି°. (ନି-ସିଧ୍-ତ) ନିବାରିତ, ପ୍ରତ୍ୟାଖ୍ୟାତ; ବାଧିତ; ତିରସ୍କୃତ ।

ନିଷୂଦନ, ନିସୂଦନ, ବ. ନ. (ନି-ସୂଦ=ବଧ କରିବା-ଅନ) ହତ୍ୟା, ବଧ; ନିଷେଧ, ନିବାରଣ । ବି°. ବିନାଶକ ।

ନିଷେକ, ବ. ପୁଂ. (ନି-ସିଚ୍-ଅ) କ୍ଷରଣ; ବର୍ଷଣ; ସେଚନ; ଗର୍ଭାଧାନ ।

ନିଷେଧ, ବ. ପୁଂ. (ନି-ସିଧ୍-ଅ) ନିବାରଣ, ମନା; ଭର୍ତ୍ସନା; ବାଧା ।

ନିଷେଧକ, ବି°. (ନି-ସିଧ୍-ଅକ) ନିବାରକ, ଯେ ନିବାରଣ କରେ ।

ନିଷେବଣ, ବ. ନ. (ନି-ସେବ୍-ଅନ) ସେବା, ଶୁଶ୍ରୂଷା, ପରିଚର୍ଯ୍ୟା; ଅନୁରାଗ; ଔଷଧାଦିପାନ ।

ନିଷେବିତ, ବି°. (ନି-ସେବ୍-ତ) ଆରାଧିତ; ଉପାସିତ; ଆଦୃତ; ସେବିତ ।

ନିଷ୍କ, ବ. ପୁଂ. ନ. (ନିର୍-କୈ=ପ୍ରକାଶ ବା ଦୀପ୍ତି-ଅ) ମୁଦ୍ରା, ମୋହର; ବତିଶ ରତି ସ୍ୱର୍ଣ୍ଣ, ସ୍ୱର୍ଣ୍ଣ; ଅଳଙ୍କାର ।

ନିଷ୍କଣ୍ଟକ, ବି°. (ନିର୍-କଣ୍ଟକ) କଣ୍ଟକରହିତ, ନିରାପଦ; ଶତ୍ରୁହୀନ ।

ନିଷ୍କର୍ମା, ବି°. (ନିର୍-କର୍ମନ୍) ନିକମା, ଯାହାର କୌଣସି କର୍ମ ନାହିଁ; ନିରୁତ୍ସାହ; ଅଳସ ।

ନିଷ୍କରୁଣ, ବି°.(ନିର୍-କରୁଣା) ନିଷ୍ଠୁର,ଅକରୁଣ; କ୍ରୂର ।

ନିଷ୍କର୍ଷ, ବ. ପୁଂ. (ନିର୍-କୃଷ୍-ଅ) ସତ୍ୟପ୍ରମାଣ; ନିଷ୍ପତ୍ତି; ନିଶ୍ଚୟ; ବିଶ୍ୱାସ ।

ନିଷ୍କର୍ଷଣ, ବ. ନ. (ନିର୍-କୃଷ୍-ଅନ) ସାର ବାହାର କରିବା; ଅପନୟନ; ନିଶ୍ଚୟ ।

ନିଷ୍କାମ, ବି°. (ନିର୍-କାମ) କାମନାରହିତ, ନିସ୍ପୃହ ।

ନିଷ୍କାଶ, ବ. ପୁଂ. (ନିର୍-କଶ୍-ଅ) ବାରନ୍ଦା; ବାତାୟନ ।

ନିଷ୍କାଶନ, ନିଷ୍କାସନ, ବ. ନ. (ନିର୍-କଶ୍-ଅନ) ବହିଷ୍କରଣ; ଦୂରୀକରଣ; ନିଃସାରଣ; ନିର୍ବାସନ ।

ନିଷ୍କାଶିତ, ନିଷ୍କାସିତ, ବି°. (ନିର୍-କାଶି-ତ) ନିଃସାରିତ, ଦୂରୀକୃତ; ନିର୍ବାସିତ; ତାଡ଼ିତ ।

ନିଷ୍କୁଟ, ବ. ନ. (ନିର୍-କୁଟ) ଅନ୍ତଃପୁର; କବାଟ; ଗୃହର ସମୀପସ୍ଥ ଉପବନ; କ୍ଷେତ୍ର; ଅବରୋଧ ।

ନିଷ୍କୁଷିତ, ବି°. (ନିର୍-କୁଷ୍-ତ) ଆକୃଷ୍ଟ; ଦୂରୀକୃତ; ନିଃସାରିତ ।

ନିଷ୍କୁହ, ବ. ପୁଂ. (ନିର୍-କୁହ) ବୃକ୍ଷର କୋଟର ।

ନିଷ୍କୃତି, ବ. ସ୍ତ୍ରୀ. (ନିର୍-କୃ-ତି) ନିସ୍ତାର, ଉଦ୍ଧାର, ମୁକ୍ତି; ପରିଶୋଧକରଣ ।

ନିଷ୍କୃଷ୍ଟ, ବି°. (ନିର୍-କୃଷ୍-ତ) ମର୍ଦ୍ଦିତ; ଯଥାର୍ଥ; ନିର୍ଣ୍ଣୀତ ।

ନିଷ୍କୋଷଣ, ବ. ନ. (ନିର୍-କୁଷ୍-ଅନ) ବହିର୍ନିଃସାରଣ; ନିଷ୍କାଶନ ।

ନିଷ୍କ୍ରମ, ବ. ପୁଂ. (ନିର୍-କ୍ରମ୍-ଅ) ବହିର୍ଗମ; ବୁଦ୍ଧିବୃତ୍ତି; ଶକ୍ତି; ଦୁଷ୍କୁଳ; ନୀଚତା; ଅବନତି ।

ନିଷ୍କ୍ରୟ, ବ. ପୁଂ. (ନିର୍-କ୍ରୀ-ଅ) ବେତନ, ମୂଲ୍ୟ; ସାମର୍ଥ୍ୟ; ବିନିମୟ; ପ୍ରତ୍ୟୁପକାର ।

ନିଷ୍କ୍ରାନ୍ତ, ବି°. (ନିର୍-କ୍ରମ୍-ତ) ନିର୍ଗତ,ବହିର୍ଗତ ।

ନିଷ୍କ୍ରିୟ, ବି°. (ନିର୍-କ୍ରିୟା) କ୍ରିୟାଶୂନ୍ୟ; ଜଡ଼; ନିଷ୍କର୍ମା ।

ନିଷ୍ଠା, ବ. ସ୍ତ୍ରୀ. (ନି-ସ୍ଥା-ଅ) ନିର୍ବାହ, ନିଷ୍ପତ୍ତି; ଦୃଢ଼ଜ୍ଞାନ; ଦୃଢ଼ଭକ୍ତି; ବ୍ରତାଦିକ୍ଲେଶ; ପ୍ରାପ୍ୟ ।

ନିଷ୍ଠୀବ, ନିଷ୍ଠେବ, ପୁଂ. } ବି. ( ନି-ଷ୍ଠୀବ୍, ଷ୍ଠିବ୍-ଅ, ଅନ )
ନିଷ୍ଠୀବନ, ନିଷ୍ଠେବନ,ନ. }
ଥୁ ଥୁ କରିବା, ଛେପ ପକାଇବା ।

ନିଷ୍ଠୁର, ବିଂ. ( ନି-ସ୍ଥା-ଉର ) କ୍ରୂର, ନିର୍ଦ୍ଦୟ, କଠିନ । ବି. ନ. କର୍କଶ ବା ଅଶ୍ଳୀଳ ବାକ୍ୟ; ପରୁଷବଚନ ।

ନିଷ୍ଣ, ବିଂ. (ନି-ସ୍ନା-ଅ) କୁଶଳ, ନିପୁଣ ।

ନିଷ୍ଣାତ, ବିଂ. ( ନି-ସ୍ନା-ତ ) ନିପୁଣ, ପ୍ରବୀଣ, ପଣ୍ଡିତ, ପାରଗ ।

ନିଷ୍ପତ୍ତି, ବି. ସ୍ତ୍ରୀ. ( ନିର୍-ପଦ୍-ତି) ସମାପ୍ତି; ସିଦ୍ଧି; ଅବଧାରଣ, ନିଶ୍ଚୟ; ମୀମାଂସା; ଉତ୍ପତ୍ତି ।

ନିଷ୍ପନ୍ଦ, ବିଂ. (ନିର୍-ସ୍ପନ୍ଦ) ସ୍ପନ୍ଦରହିତ, ଅଚଳ ।

ନିଷ୍ପନ୍ନ, ବିଂ. ( ନିର୍-ପଦ-ତ ) ସିଦ୍ଧ, ସମାପ୍ତ, ସମ୍ପନ୍ନ ।

ନିଷ୍ପରିଗ୍ରହ, ବି. ପୁଂ. ( ନିର-ପରିଗ୍ରହ ) ଯୋଗୀ, ତପସ୍ୱୀ, ସନ୍ନ୍ୟାସୀ, ଯତି; ବାନପ୍ରସ୍ଥ; ପରିବ୍ରାଜକ ।

ନିଷ୍ପାଦନ, ବି.ନ. (ନିର୍-ପାଦ-ଅନ)ନିଷ୍ପତ୍ତିକରଣ, ସିଦ୍ଧାନ୍ତକରଣ, ସମାଧାକରଣ; ପ୍ରତିଜ୍ଞାପୂରଣ, ନିଷ୍ପତ୍ତି, ସମ୍ପାଦନ, ନିର୍ବାହ ।

ନିଷ୍ପାଦନୀୟ, ବିଂ. (ନିର୍-ପଦ୍-ଅନୀୟ) ନିଷ୍ପାଦ୍ୟ, ସମାପ୍ୟ ।

ନିଷ୍ପାଦିତ, ବିଂ. ( ନିର୍-ପାଦ-ତ ) ସମ୍ପାଦିତ, ନିର୍ବାହିତ, ସମାପିତ; ସମ୍ପନ୍ନ କରିବା ।

ନିଷ୍ପାଦ୍ୟ, ବିଂ. ( ନିର୍-ପାଦ-ଯ ) ନିଷ୍ପାଦନୀୟ, ସାଧ୍ୟ, ସମାପ୍ୟ, ସାଧନୀୟ; ଉପପାଦ୍ୟ ।

ନିଷ୍ପାପୀ, ବିଂ. ( ନିର୍-ପାପ-ଇନ୍ ) ନିର୍ଦ୍ଦୋଷୀ, ନିରପରାଧୀ; ପାପହୀନ ।

ନିଷ୍ପୀଡ଼ନ, ବି. ନ. (ନିର୍-ପୀଡ଼ନ) ନିପୀଡ଼ନ ।

ନିଷ୍ପୁତ୍ର, ବି. ପୁଂ. ( ନିର୍-ପୁତ୍ର ) ନିଃସନ୍ତାନ, ଅନପତ୍ୟ ।

ନିଷ୍ପୃହ, ବିଂ. ( ନିର୍-ସ୍ପୃହ-ଅ ) ସ୍ପୃହାରହିତ, ଅନାସକ୍ତ ।

ନିଷ୍ପେଷ, ନିଷ୍ପେଷଣ, ବି. ନ. (ନିର୍-ପିଷ-ଅ, ଅନ) ଚୂର୍ଣ୍ଣନ, ମର୍ଦ୍ଦନ; ଘର୍ଷଣ; ପେଷଣ ।

ନିଷ୍ପ୍ରତିଭ, ବିଂ. (ନିର୍-ପ୍ରତିଭା) ପ୍ରତିଭାଶୂନ୍ୟ; ଦୀପ୍ତିହୀନ; ଅଜ୍ଞ, ମୂର୍ଖ; ଜଡ଼ ।

ନିଷ୍ପ୍ରଭ, ବିଂ. ( ନିର୍-ପ୍ରଭା-ଅ ) ପ୍ରଭାଶୂନ୍ୟ, ନିସ୍ତେଜ, ଦୀପ୍ତିରହିତ । ଯଥା—

ସମସ୍ତ ନିଷ୍ପ୍ରଭ ହେଲାଟି ମନୁଷ୍ୟ କରମ ଫଳେ । କ. ବ.

ଅସ୍ୱଚ୍ଛ । ବି. ପୁଂ. ଦାନବବିଶେଷ ।

ନିଷ୍ପ୍ରୟୋଜନ, ବିଂ. (ନିର୍-ପ୍ର-ଯୁଜ୍-ଅନ) ପ୍ରୟୋଜନଶୂନ୍ୟ, ଅନାବଶ୍ୟକ, ନିରର୍ଥକ, ଅକାରଣ ।

ନିଷ୍ଫଳ, ବିଂ. (ନିର୍-ଫଳ) ବିଫଳ, ବୃଥା, ନିରର୍ଥକ, ବ୍ୟର୍ଥ ।

ନିଃ, ଅଂ. ନିଷେଧ; ନିଶ୍ଚୟ; ସାକଲ୍ୟ ।

ନିସମ୍ପାତ, ବି. ପୁଂ. (ନି-ସମ୍ପାତ) ନିଶୀଥ, ଅର୍ଦ୍ଧରାତ୍ର ।

ନିସର୍ଗ, ବି. ପୁଂ. (ନି-ସୃଜ୍-ଅ) ପ୍ରକୃତି, ସ୍ୱାଭାବିକ; ଅବସ୍ଥା; ସୃଷ୍ଟି; ସ୍ୱଭାବ; ସର୍ଗ ।

ନିସାର, ବିଂ. (ନି-ସାର) ସାରହୀନ, ଅସାର ।

ନିସୃଷ୍ଟ, ବିଂ. ( ନି-ସୃଜ୍-ତ ) ନ୍ୟସ୍ତ; ଅର୍ପିତ; ମଧ୍ୟସ୍ଥ; ପ୍ରେରିତ; ରକ୍ଷିତ; ସମର୍ପିତ ।

ନିସ୍ତବ୍ଧ, ବିଂ. (ନି-ସ୍ତନ୍ଭ-ତ) ନୀରବ, ସ୍ପନ୍ଦରହିତ, ସ୍ଥିର ।

ନିସ୍ତରଣ, ବି. ନ. (ନିର୍-ତୃ-ଅନ) ଉଦ୍ଧାର; ପାର ହେବା; ସିଦ୍ଧି; ମୁକ୍ତି; ଉପାୟ; ନିସ୍ତାର; ନିର୍ଗମ ।

ନିସ୍ତଳ, ବିଂ. (ନିର୍-ତଳ) ବର୍ତ୍ତୁଳ, ଗୋଲାକାର ।

ନିସ୍ତାର, ବି. ନ. (ନିର୍-ତୃ-ଅ) ମୁକ୍ତି; ଉପାୟ; ରକ୍ଷା, ତ୍ରାଣ ।

ନିସ୍ତାରକ, ବିଂ. ( ନିର୍-ତୃ-ଅକ ) ତ୍ରାଣକର୍ତ୍ତା, ଉଦ୍ଧାରକର୍ତ୍ତା ।

ନିସ୍ତାରଣ, ବି. ନ. (ନିର୍-ତୃ-ଅନ) ଉଦ୍ଧାର, ମୁକ୍ତି, ନିର୍ଗମନ; ସିଦ୍ଧି; ରକ୍ଷଣ ।

ନିସ୍ତୁଲ, ବିଂ. (ନିର୍-ତୁଲା-ଅ) ଅସମ, ଅସଦୃଶ; ଅନୁପମ, ତୁଳନାରହିତ ।

ନିସ୍ତେଜ, ନିସ୍ତେଜାଃ, ବିଂ. (ନିର୍-ତେଜ୍-ଅ, ଅସ୍) ତେଜୋରହିତ; ପ୍ରତାପଶୂନ୍ୟ, ଦୁର୍ବଳ ।

ନିସ୍ତ୍ରିଂଶ, ବି. ପୁଂ. (ନିର୍-ତ୍ରିଂଶତ୍-ଅ) ଖଡ୍ଗ । ବିଂ. ନିର୍ଦ୍ଦୟ, ନିଷ୍ଠୁର, କ୍ରୂର ।

ନିସ୍ପନ୍ଦ ବିଂ. (ନି-ସ୍ପନ୍ଦ୍-ଅ) ସ୍ପନ୍ଦରହିତ, ଅଚଳ, ସ୍ଥିର ।

ନିସ୍ପୃହ, ବିଂ. (ନିର୍-ସ୍ପୃହା) ଆକାଙ୍କ୍ଷାରହିତ, ସ୍ପୃହାବର୍ଜିତ ।

ନିସ୍ପୃହା, ବି. ସ୍ତ୍ରୀ. (ନିର୍-ସ୍ପୃହା) ଇଚ୍ଛାଅଭାବ, ଅନିଚ୍ଛା ।

ନିସ୍ୟନ୍ଦ, ନିଷ୍ୟନ୍ଦ, ବି. ପୁଂ. ( ନି-ସ୍ୟନ୍ଦ-ଅ ) କ୍ଷରଣ ।

ନିସ୍ରବ, ନିସ୍ରାବ, ବି. ପୁଂ. ( ନି-ସ୍ରୁ-ଅ ) କ୍ଷରଣ; ନିର୍ଗମନ; ଅନ୍ନମଣ୍ଡ, ପେଜ ।

ନିସ୍ୱ, ବିଂ. (ନି-ସ୍ୱ) ନିର୍ଧନ, ଦୁଃଖୀ, ଅର୍ଥହୀନ ।

ନିସ୍ୱନ, ବି. ପୁଂ. ( ନି-ସ୍ୱନ୍-ଅ ) ଧ୍ୱନି, ଶବ୍ଦ, ନିନାଦ ।

ନିହତ, ବିଂ. (ନି-ହନ୍-ତ) ବିନଷ୍ଟ, ହତ ।

ନିହନନ, ବି. ନ. (ନି-ହନ୍-ଅନ) ବଧ, ହତ୍ୟା ।

ନିହନ୍ତା, ବିଂ. ( ନି-ହନ୍-ତୃ ) ବିନାଶକାରୀ, ସଂହାରକ ।

ନିହାର, ବି. ପୁଂ. ( ନି-ହୃ-ଅ ) ଶିଶିର, କାକର, ହିମ ।

ନିହିତ, ବିଂ. (ନି-ଧା-ତ) ସ୍ଥାପିତ; ଗୁପ୍ତ; ସ୍ଥିତ; ନିକ୍ଷିପ୍ତ; ଅଭିହିତ; ଅର୍ପିତ ।

ନିହୀନ, ବିଂ. (ନି-ହୀନ) ନୀଚ, ଇତର ।

ନିହ୍ନବ, ବି.ପୁଂ. (ନି-ହ୍ନୁ-ଅ) ଅପଳାପ; ଗୋପନ; ଅବଶ୍ୱାସ; ଅସ୍ୱୀକାର ।

ନିର୍ହ୍ରାଦ, ବି.ପୁଂ. (ନିର୍-ହ୍ରାଦ୍-ଅ) ଧ୍ୱନି, ନିନାଦ, ଶବ୍ଦ । ଯଥା—

> ଦନ୍ତାବଳ ସଞ୍ଚାରବେ, ଅବର ବୃଂହତେ
> ଉଠିଲା ନିର୍ହ୍ରାଦ କର୍ଣ୍ଣ ବିବର ବଦାର । ମ, ଧା.

ନୀକାର, ବି. ପୁଂ. ( ନି-କୃ-ଅ ) ଧିକ୍କାର, ଘୃଣା, ଅବଜ୍ଞା ।

ନୀକାଶ, } ବିଂ. ( ନି-କାଶ୍-ଅ ) ସଦୃଶ, ତୁଲ୍ୟ,
ନୀକାସ, } ଉପମା; ନିଶ୍ଚୟ; (ଦେଶଜ) ସମାପନ, ଶେଷ ।

ନୀଚ, ବିଂ. (ନ-ଇ-ଚି-ଅ) ନିମ୍ନ, ମନ୍ଦ, ଅପକୃଷ୍ଟ, ନିକୃଷ୍ଟ, କ୍ଷୁଦ୍ର, ଇତର ।

ନୀଚତା, ବି. ସ୍ତ୍ରୀ. ( ନୀଚ-ତା ) ଅଧମତା, ଅପକୃଷ୍ଟତା, ଜଘନ୍ୟତା ।

ନୀଚାଶୟ, ବିଂ. (ନୀଚ-ଆଶୟ) କ୍ଷୁଦ୍ରାଶୟ, ନୀଚମନବିଶିଷ୍ଟ ।

ନୀଚୁ, ବି. ଫଳବିଶେଷ ।

ନୀଡ଼, ବି. ପୁଂ. ନ. ( ନି-ଇଡ଼-ଅ ) କୁଲାୟ, ପକ୍ଷିର ବସା ।

ନୀଡ଼ଜ, ନିଡ୍ରୋଦ୍ଭବ, ବି. ପୁଂ. (ନୀଡ଼-ଜ,ଉଦ୍ଭବ) ପକ୍ଷୀ ।

ନୀତ, ବିଂ. ( ନୀ-ତ ) ଗୃହୀତ ।

ନୀତି, ବି. ସ୍ତ୍ରୀ. ( ନୀ-ତି ) ନ୍ୟାଯ୍ୟ ବ୍ୟବହାର; ଶାସ୍ତ୍ରବିଶେଷ; ସୀତି; ପ୍ରାପ୍ତି; ସୁଧାସ୍ୱ ।

ନୀତିଜ୍ଞ, ବିଂ. (ନୀତି-ଜ୍ଞା-ଅ) ନୀତିଶାସ୍ତ୍ରବିଶାରଦ ।

ନୀଖ, ବି. (ଦେଶଜ) କେଶକାଟବିଶେଷ ।

ନୀପ, ବି. ପୁଂ. (ନୀ-ପ) କଦମ୍ବଗଛ ।

ନୀବାର, ବି. ପୁଂ. ( ନୀ-ବାର ) ତୃଣଧାନ୍ୟବିଶେଷ, ବାଲୁଙ୍ଗାଧାନ ।

ନୀବି, ବି. ସ୍ତ୍ରୀ. (ନୀବ-ଇ) ବଣିକମାନଙ୍କର ମୂଳଧନ; ସ୍ତ୍ରୀଲୋକମାନଙ୍କର କଟୀବନ୍ଧନ ବସ୍ତ୍ର ।

ନୀୟମାନ, ବିଂ. (ନୀ-ଶାନ-ଯ, ମ ଆଗମ) ଗୃହ୍ୟମାଣ; ପ୍ରାପ୍ୟମାଣ; ନେଇନିଯିବା ।

ନୀର, ବି. ନ. (ନୀ-ର) ଜଳ, ରସ, ସଲିଳ ।

ନୀରଜ, ବି. ନ. (ନୀର୍-ଜନ୍-ଅ) ଜଳଜ, ପଦ୍ମ; ମୁକ୍ତା । ବିଂ. ଜଳଜାତ ବସ୍ତୁ; ନିର୍ଧୂଳି । ସ୍ତ୍ରୀ. ଅରଜସ୍ୱଳା ।

ନୀରତ, ବିଂ. (ନିର୍-ରତ) କ୍ଷାନ୍ତ, ନିବୃତ୍ତ ।

ନୀରଦ, ବି. ପୁଂ. (ନୀର୍-ଦା-ଅ) ମେଘ, ଜଳଦ; ମୁଥା । ବିଂ. (ନିର୍-ରଦ) ଦନ୍ତହୀନ ।

ନୀରଧି, } ବି. ପୁଂ. (ନୀର-ଧି, ନିଧି) ସମୁଦ୍ର,
ନୀରନିଧି, } ପୟୋନିଧି, ଜଳନିଧି ।

ନୀରନ୍ଧ୍ର, ବିଂ. ( ନିର୍-ରନ୍ଧ୍ର ) ଘନ, ଛିଦ୍ରରହିତ, ନିବିଡ଼ । ଯଥା—

ଅର୍ଦ୍ଧପଥେ ତାଙ୍କ ଗତ ରୋଧିଲେ ଏ ଠାବେ
ନୀରନ୍ଧ୍ର ପ୍ରାଚୀରକୃତ ଏହି ମହାବିଦ୍ର । ମ. ଯା.

ନୀରବ, ବିଂ. (ନୀର୍-ରବ) ଶବ୍ଦଶୂନ୍ୟ, ନିଃଶବ୍ଦ ।

ନୀରସ, ବିଂ. (ନିର୍-ରସ) ରସହୀନ, ଶୁଷ୍କ । ବି. ପୁଂ. ଡାଳିମ୍ବ ।

ନୀରାଜନ, ବି. ନ. } ( ନୀର-ଅଜନ) ଆରତି,
ନୀରାଜନା, ବି. ସ୍ତ୍ରୀ. } ପୂଜା । ଯଥା—

ବନ୍ଦୀଗଣ ଉଚ୍ଚଗାନ ପତ୍ନୀହସ୍ତେ ସେନ
ସନ୍ଧ୍ୟାଦଲେ ଦକ୍ଷୀରଣୀ ନୀରାଜନା ଦିଏ । ମ. ଯା.

ନୀରୋଗୀ, ବିଂ. ( ନିର୍-ରୋଗ-ଇନ୍ ) ରୋଗଶୂନ୍ୟ, ପୀଡ଼ାରହିତ, ସୁସ୍ଥ ।

ନୀଳ, ବି. ପୁଂ. (ନୀଲ୍-ଅ) ବର୍ଣ୍ଣବିଶେଷ; ପର୍ବତବିଶେଷ; ବାନରବିଶେଷ; ନିଧିବିଶେଷ; ମଣିବିଶେଷ । ସ୍ତ୍ରୀ. ନୀଳବର୍ଣ୍ଣ ମକ୍ଷିକା । ବିଂ. ନୀଳବର୍ଣ୍ଣଯୁକ୍ତ ।

ନୀଳକଣ୍ଠ, ବି. ପୁଂ. (ନୀଳ-କଣ୍ଠ) ଶିବ; ମୟୂର; ଖଞ୍ଜନପକ୍ଷୀ; ଭରଦ୍ୱାଜପକ୍ଷୀ; ତୀର୍ଥବିଶେଷ; ରାକ୍ଷସବିଶେଷ ।

ନୀଳକାନ୍ତ, ବି. ପୁଂ. ( ନୀଳ-କାନ୍ତ ) ନୀଳଶିଳା, ଇନ୍ଦ୍ରନୀଳମଣି ।

ନୀଳକୁନ୍ତଳା, ବି. ସ୍ତ୍ରୀ. ଦୁର୍ଗା-ସଖୀବିଶେଷ ।

ନୀଳକ୍ରାନ୍ତା, ବି. ସ୍ତ୍ରୀ. କୃଷ୍ଣାପରାଜିତା ।

ନୀଳଗ୍ରୀବ, ବି. ପୁଂ. ( ନୀଳ-ଗ୍ରୀବା ) ଶିବ, ମହାଦେବ ।

ନୀଳତାଳ, ବି. ପୁଂ. ହିନ୍ତାଳବୃକ୍ଷ; ତମାଳଗଛ ।

ନୀଳଧ୍ୱଜ, ବି. ପୁଂ. ( ନୀଳ-ଧ୍ୱଜା ) ତମାଳଗଛ; ନୀଳବର୍ଣ୍ଣପତାକା; ନୃପବିଶେଷ ।

ନୀଳପଟଳ, ବି. ନ. ନୀଳବସ୍ତ୍ର ।

ନୀଳପିଚ୍ଛ, ବି. ପୁଂ. (ନୀଳ-ପିଚ୍ଛ) ଶ୍ୟେନପକ୍ଷୀ ।

ନୀଳାଚଳ, ବି. ପୁଂ. ପୁରୁଷୋତ୍ତମକ୍ଷେତ୍ର, ଶ୍ରୀକ୍ଷେତ୍ର, ନୀଳଗିରି ନାମକ ପାର୍ବତ୍ୟ ଭୂମିର ପ୍ରାନ୍ତଦେଶରେ ଜଗନ୍ନାଥକ୍ଷେତ୍ର ପ୍ରତିଷ୍ଠିତ ହୋଇଥିବାରୁ ଏହାର ନାମ ନୀଳାଚଳ । ଯଥା—

ନୀଳାଚଳ ଚଳେ ଯହିଁ ଲୋକେ ବାରନଧି । ମ. ଯା.

ନୀଳାମ୍ବର, ବି. ପୁଂ. ( ନୀଳ-ଅମ୍ବର ) ବଳରାମ; ଶନୈଶ୍ଚର; ରାକ୍ଷସ । ନ. ନୀଳବସନ; ଆକାଶ ।

ନୀଳାମ୍ବୁ, ବି. ନ. (ନୀଳ-ଅମ୍ବୁ) ସମୁଦ୍ର ।

ନୀଳିମା, ବି. ପୁଂ. ( ନୀଳ-ଇମନ୍ ) ନୀଳତ୍ୱ; ନୀଳବର୍ଣ୍ଣ ।

ନୀଳୋତ୍ପଳ, ବି. ନ. (ନୀଳ-ଉତ୍ପଳ) ନୀଳକଇଁ, ଇନ୍ଦୀବର ।

ନୀବି, } ବି. ସ୍ତ୍ରୀ. (ନି-ବ୍ୟେ-ଇ) ମୂଳଧନ; ପଣ;
ନୀବୀ, } କଟିବସ୍ତ୍ର । ଯଥା—

ଗଣ୍ଠି ଦେଇ ତର କଷାଡ଼େ
ନୀବିକ କାଢ଼ି ଗଞ୍ଜି ମଧ୍ୟଦେଶେ ।

ନୀବୃତ୍, ବି. ପୁଂ. ସ୍ତ୍ରୀ. ( ନି-ବୃତ୍-୦ ) ଦେଶ, ଜନପଦ ।

ନୀଶାର, ବି. ପୁଂ. ( ନି-ଶୃ-ଅ ) ହିମ ଓ ବାୟୁ ଇତ୍ୟାଦି ନିବାରକ ଆବରଣ ବସ୍ତ୍ର; ମଶାରି ଓ ପରଦା ପ୍ରଭୃତି ।

ନୀହାର, ବି. ପୁଂ. ( ନି-ହୃ-ଅ ) ତୁଷାର, ହିମ, ବରଫ ।

ନୀହାରିକା, ବି. ସ୍ତ୍ରୀ. ଯେ ସବୁ ନକ୍ଷତ୍ର ଚକ୍ଷୁର ଗୋଚର ନୁହେ କିନ୍ତୁ ଦୂରବୀକ୍ଷଣ ଯନ୍ତ୍ରଦ୍ୱାରା ଦେଖିଲେ କୁହୁଡ଼ି ପରି ଦିଶେ ।

ନୁ, ଅଂ. ସମ୍ବୋଧନ; ପ୍ରଶ୍ନ; ଭେଦ; ତର୍କ; ବିତର୍କ; ସଂଶୟ; ଛଳ; ଅନାଦର; ଅବଜ୍ଞା; ସମ୍ମାନ; ଅପମାନ; ବିକଳ୍ପ; ଅନୁନୟ; ଅନୁତାପ; ହେତୁ ।

ନୁଆଁଇବା, କ୍ରି. (ନମ ଧାତୁଜ) ନତ କରିବା ।

ନୁଉକ୍ଷୁଣା, ବିଂ. (ଦେଶଜ) ହତଶ୍ରୀ; ଅକର୍ମଣ୍ୟ ।

ନୁଖୁରା, ବିଂ. (ଦେଶଜ) ମାଖରା, ଅଚିକ୍କଣ ।

ନୁତ, ବିଂ. ( ନୁ=ସ୍ତବ କରିବା-ତ ) ସ୍ତୁତ, ପ୍ରଶଂସିତ, ପୂଜିତ ।

ନୂଆ, ବିଂ. (ନୂତନ ଶବ୍ଦଜ) ନୂତନ ।

ନୂତନ, ନୂତ୍ନ, ବିଂ. ( ନୂ-ତନ, ନ ) ନବୀନ, ଅଭିନବ, ନୂଆ ।

ନୂନଂ, ଅଂ. ନିଶ୍ଚୟ, ସତ୍ୟ, ବିତର୍କ, ସ୍ମରଣ, ପାଦପୂରଣାର୍ଥକ ଶବ୍ଦ ।

ନୂପୁର, ବି. ପୁଂ. (ନୂ-ପୁ-ଅ) ପ୍ରସିଦ୍ଧ ପଦଭୂଷଣ, ନେପୁର ।

ନୃ, ବି. ପୁଂ. (ଣୀ-ଋ) ମନୁଷ୍ୟ, ପୁରୁଷ ।

ନୃତ୍ୟ, ବି. ନ. (ନୃତ୍-ଯ) ତାଳ, ମାନ, ରସାଶ୍ରୟ, ବିଳାସଯୁକ୍ତ ହାବଭାବ ପ୍ରକାଶ ସହକାରେ ଅଙ୍ଗିକ କ୍ରିୟାର ନାମ ନୃତ୍ୟ, ଅଭିନୟ, ନାଚ ।

ନୃପ, ନୃପତି, ବି. ପୁଂ. ( ନୃ-ପା-ଅ, ନୃ-ପତି ) ରାଜା, ନରପତି ।

ନୃବାହନ, ବି. ପୁଂ. ( ନୃ=ମନୁଷ୍ୟ-ବାହନ ) କୁବେର ।

ନୃଶଂସ, ବିଂ. ( ନୃ-ଶଂସ୍-ଅ ) ନିର୍ଦ୍ଦୟ, କ୍ରୂର; ପରଦ୍ରୋହୀ ।

ନୃସିଂହ, ନୃହରି, ବି. ପୁଂ. ( ନୃ-ସିଂହ, ହରି ) ବିଷ୍ଣୁର ଅବତାରବିଶେଷ । ବିଂ. ମନୁଷ୍ୟଶ୍ରେଷ୍ଠ ।

ନୃସିଂହଚତୁର୍ଦ୍ଦଶୀ, ବି. ସ୍ତ୍ରୀ. ବୈଶାଖ ମାସର ଶୁକ୍ଳ ଚତୁର୍ଦ୍ଦଶୀ, ଏହି ଦିବସ ହିରଣ୍ୟକଶିପୁବଧାର୍ଥେ ନୃସିଂହଦେବ ଅବତୀର୍ଣ୍ଣ ହୋଇଥିଲେ ।

ନେଉଟିଆ, ବି. (ଦେଶଜ) ଶାକବିଶେଷ ।

ନେଉଟିବା, କ୍ରି. ବି. (ଦେଶଜ) ଫେରିବା ।

ନେଉଳ, ବି. (ନକୁଳ ଶବ୍ଦର ଅପଭ୍ରଂଶ) ଜନ୍ତୁବିଶେଷ; ସର୍ପଶତ୍ରୁ ।

ନେଉ, ବି. (ଦେଶଜ) କରତଳ ।

ନେତ, ବି. ( ନେତ୍ର ଶବ୍ଦଜ ) ବସ୍ତ୍ରବିଶେଷ; ପତାକା ।

ନେତା, ବି. ପୁଂ. (ଣୀ-ତୃ) ପ୍ରେରକ; ପ୍ରାପକ; ନିର୍ବାହକ; ଚାଳକ; ଅଧ୍ୟକ୍ଷ ।

ନେଣ୍ଟୁଗ, ବି. (ଦେଶଜ) ଅଳସ ।

ନେତୃତ୍ୱ, ବି. ନ. ( ନେତୃ-ତ୍ୱ ) ନାୟକତା, ଅଧ୍ୟକ୍ଷତା ।

ନେତ୍ର, ବି. ନ. (ଣୀ-ତ୍ର) ଚକ୍ଷୁଃ, ନୟନ; ବୃକ୍ଷମୂଳ; ପଥ; ଚନ୍ଦ୍ର; ରଥ; ବସ୍ତ୍ର । ବିଂ. ନାୟକ; ଚାଳକ; ପ୍ରେରକ ; ପ୍ରାପକ ; ରକ୍ଷକ । ସ୍ତ୍ରୀ. ଲକ୍ଷ୍ମୀ; ନଦୀ; ନାଡ଼ୀ ।

ନେତ୍ରାମ୍ବୁ, ବି. ନ. ( ନେତ୍ର-ଅମ୍ବୁ ) ଅଶ୍ରୁ । ନେତ୍ରଜଳ, ନୟନବାରି ।

ନେପଥ୍ୟ ବି. ନ. ( ଣୀ-୦=ନେ-ପଥ୍ୟ ) ସଜ୍ଜା; ସଜ୍ଜାଗୃହ; ବେଶ; ରଙ୍ଗଭୂମି; ଅଳଙ୍କାର ।

ନେପାଳ, ବି. ପ୍ରଦେଶବିଶେଷ ।

ନେପୁର, ବି. ( ନୂପୁର ଶବ୍ଦଜ ) ପାଦାଭରଣବିଶେଷ ।

ନେଫଡ଼ା, ବି. ( ଦେଶଜ ) ଫଳବିଶେଷ । ବିଂ. ଦରିଦ୍ର ।

ନେମି, ନେମୀ, ବି. ସ୍ତ୍ରୀ. (ଣୀ-ମି) ଚକ୍ରର ପ୍ରାନ୍ତ, ଚକ୍ରଧାର ।

ନେଳୀ, ବି. (ନୀଳ ଶବ୍ଦଜ) ନୀଳବର୍ଣ୍ଣ ।

ନେବାର, କ୍ରି. ବି. ( ଣୀ ଧାତୁଜ ) ସେନବାର; (ହିନ୍ଦୀ) ଫିତା ।

ନୈକଟ୍ୟ, ବି. ନ. ( ନିକଟ-ଯ ) ସାମୀପ୍ୟ, ନିକଟତ୍ୱ ।

ନୈକଷେୟ, ବି. ପୁଂ. (ନିକଷା-ଏୟ) ନିକଷାପୁତ୍ର, ରାବଣ ପ୍ରଭୃତି ।

ନୈଦାଘ, ବିଂ. (ନିଦାଘ-ଅ) ନିଦାଘସମ୍ବନ୍ଧୀୟ ।

ନୈପୁଣ୍ୟ, ନୈପୁଣ, ବି. ନ. ( ନିପୁଣ-ଯ, ଅ ) ଦକ୍ଷତା, ନିପୁଣତା ।

ନୈମିତ୍ତିକ, ବିଂ. (ନିମିତ୍ତ-ଇକ) ପ୍ରୟୋଜନାର୍ଥକ, ନିମିତ୍ତଭୂକ୍ତ ।

ନୈୟାୟିକ, ବି. ପୁଂ. ( ନ୍ୟାୟ-ଇକ ) ନ୍ୟାୟଶାସ୍ତ୍ରଜ୍ଞ, ତାର୍କିକ, ନ୍ୟାୟାଧ୍ୟାୟୀ ।

ନୈରପେକ୍ଷ୍ୟ, ବି. ନ. ( ନିରପେକ୍ଷ-ଯ ) ନିରପେକ୍ଷତା ।

ନୈରାଶ୍ୟ, ବି. ନ. ( ନିରାଶ-ଯ ) ଆଶାଶୂନ୍ୟତା, ହତାଶ ହେବା ।

ନୈର୍ଋତ, ବି. ପୁଂ. ( ନିର୍ଋତି-ଅ ) ଦକ୍ଷିଣପଶ୍ଚିମ କୋଣ; ରାକ୍ଷସ ।

ନୈର୍ମଲ୍ୟ, ବି. ନ. ( ନିର୍ମଳ-ଯ ) ନିର୍ମଳତା, ସ୍ୱଚ୍ଛତା; ବିଷୟବୈରାଗ୍ୟ ।

ନୈବେଦ୍ୟ, ବି. ନ. (ନି-ବିଦ-ଅ-ଯ) ଦେବୋଦେଶ୍ୟରେ ନିବେଦନୀୟ ପଦାର୍ଥ ।

ନୈଶ, ବିଂ. ( ନିଶା-ଯ ) ରାତ୍ରିକାଳୀନ, ରାତ୍ରିସମ୍ବନ୍ଧୀୟ ।

ନୈଷଧ, ବି. ପୁଂ. (ନିଷଧ-ଅ) ନଳରାଜା, ନିଷଧ ଦେଶର ରାଜା । ନ. ଶ୍ରୀହର୍ଷ କବିରଚିତ କାବ୍ୟ ଗ୍ରନ୍ଥବିଶେଷ । ବିଂ. ନିଷଧସମ୍ବନ୍ଧୀୟ ।

ନୈଷ୍ଠୁର୍ଯ୍ୟ, ବି. ନ. (ନିଷ୍ଠୁର-ଯ) ନିଷ୍ଠୁରତା ।

ନୈସର୍ଗିକ, ବିଂ. ( ନିସର୍ଗ-ଇକ ) ସ୍ୱାଭାବିକ, ପ୍ରାକୃତିକ, ନିସର୍ଗଜାତ ।

ନୋ, ଅଂ. (ନୁଦ୍-ଓ) ନା, ନାହିଁ, ନିଷେଧ ।

ନୋଦନ, ବି. ନ. ( ନୁଦ୍-ଅନ ) ଛେଦନ; ନିବାରଣ; ଅପସାରଣ; ପ୍ରେରଣ ।

ନୋଲ, ବି. (ଦେଶଜ) କର୍ଣ୍ଣାଭରଣବିଶେଷ ।

ନୌ, ନୌକା, ବି. ସ୍ତ୍ରୀ. (ନୁଦ୍-ଔ, କ) ତରଣୀ, ଜଳଯାନ ।

ନୌତାର୍ଯ୍ୟ, ବିଂ. (ନୌ-ତାର୍ଯ୍ୟ) ନାବ୍ୟ, ନୌକାଗମ୍ୟ ।

ନୌବିଦ୍ୟା, ବି. ସ୍ତ୍ରୀ. ନାବିକବିଦ୍ୟା ।

ନ୍ୟଗ୍ରୋଧ, ବି. ପୁଂ. (ନ୍ୟକ୍-ରୋଧ) ବଟବୃକ୍ଷ ।

ନ୍ୟସ୍ତ, ବିଂ. ( ନି-ଅସ୍-ତ ) ନିକ୍ଷିପ୍ତ; ତ୍ୟକ୍ତ; ଅର୍ପିତ; ସ୍ଥାପିତ; ପ୍ରେରିତ; ରଚିତ; ପାତିତ; ବିସ୍ତାରିତ ।

ନ୍ୟସ୍ତଶସ୍ତ୍ର, ବି. ପୁଂ. (ନ୍ୟସ୍ତ-ଶସ୍ତ୍ର) ପିତୃଲୋକ । ବିଂ. ଯେ ଅସ୍ତ୍ର ପରିତ୍ୟାଗ କରିଅଛି ।

ନ୍ୟାୟ, ବି. ପୁଂ. ( ନି-ଇ-ଅ ) ନୀତି; ଯୁକ୍ତି; ତର୍କଶାସ୍ତ୍ର ।

ନ୍ୟାୟବଳ, ବି. ନ. ( ନ୍ୟାୟ-ବଳ ) ଶତରଞ୍ଜ ଖେଳର ପୁତ୍ତଳିକା । ଯଥା—

> ଚତୁର୍ଥଳେ ଅନୁକ୍ଷଣେ ଶ୍ରୀବରେ ଯାଇବ
> ନ୍ୟାୟବଳ ବଳ-ରୂପେ କୋଟି କୋଟି ପ୍ରାଣୀ । ମ. ଯା.

ନ୍ୟାୟୀ, ବିଂ. ( ନ୍ୟାୟ-ଇନ୍ ) ନ୍ୟାୟବାନ୍, ନ୍ୟାୟପର ।

ନ୍ୟାଯ୍ୟ, ବିଂ. ( ନ୍ୟାୟ-ଯ ) ଯଥାର୍ଥ, ଉଚିତ, ଯୋଗ୍ୟ ।

ନ୍ୟାସ, ବି. ପୁଂ. (ନି-ଅସ୍-ଅ) ଅର୍ପଣ, ନିକ୍ଷେପ; ବିନ୍ୟାସ; ତ୍ୟାଗ ।

ନ୍ୟାସୀ, ବିଂ. ( ନ୍ୟାସ-ଇନ୍ ) ତ୍ୟାଗଶୀଳ, ସନ୍ନ୍ୟାସଧର୍ମାବଲମ୍ବୀ ।

ନ୍ୟୁବ୍ଜ, ବିଂ. ( ନି-ଉବ୍ଜ-ଅ ) କୁବ୍ଜ; ବକ୍ର; ଅଧୋମୁଖ ।

ନ୍ୟୂନ, ବିଂ. (ନି-ଊନ୍-ଅ) ଅଳ୍ପ, କ୍ଷୁଦ୍ର, ଊଣା ।

ନ୍ୟୂନତା, ବି. ସ୍ତ୍ରୀ. ( ନ୍ୟୂନ-ତା ) ଅଳ୍ପତା, କ୍ଷୁଦ୍ରତା ।

ନ୍ୟୂନାତିରେକ, ବିଂ. ( ନ୍ୟୂନ-ଅତିରେକ ) କମ୍ ବେଶି, ଅଳ୍ପାଧିକ ।

ନ୍ୟୂନାଧିକ, ବିଂ. ( ନ୍ୟୂନ-ଅଧିକ ) ନ୍ୟୂନାତିରେକ; ତାରତମ୍ୟ; ଅଳ୍ପବହୁତ ।

—:୦:—

# ପ

ପ, ବ୍ୟଞ୍ଜନ ବର୍ଣ୍ଣର ଏକବିଂଶ ବର୍ଣ୍ଣ ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ । ବି. ପୁଂ. ( ପା=ପାଳନ କରିବା, ପାନ କରିବା-ଅ ) ରାଜା; ରାଜପୁତ୍ର; ଅଣ୍ଡ; ବାୟୁ; ପାନ; ପତ୍ର । ବିଂ. ଯେ ପାଳନ କରେ, ଯେ ପାନ କରେ; ( ଏହା କୌଣସି ଶବ୍ଦର ଶେଷରେ ପ୍ରଯୁକ୍ତ ହୁଏ ) ଯଥା—ଦ୍ୱୀପ, ମଧୁପ, ନୃପ ।

ପଇଷ୍ଣ, ବ. (ଦେଶଜ) ହସ୍ତାଭରଣ ।

ପଇଠ, ପଇଠ, ବ. (ଦେଶଜ) ଭଗ୍ନ; କସ୍ତିବନ୍ଦୀ କର ଦେବା ।

ପଇଠାଇବା, କ୍ରି. ବ. (ଦେଶଜ) ଅଭ୍ୟାସ କରିବା ।

ପଇଠି, ବ. (ଦେଶଜ) ଭର, ନର୍ଭର । ଯଥା—

> ସଖୀଙ୍କରେ କରପଇଠିଙ୍କ ଦେଇ ମଝେ ଉଷା କୃଶୋଦରୀ
> ନୈସ୍ତଶେ୍ୟ ମରବ ନଷ୍ଟଲ ଅଲେଖ୍ୟଲିଖିତ ପ୍ରତିମା ପରି ।
> ଯ. କେ.

ପଇଡ଼, ବ. (ପଯୃଃପେଷ୍ଟୀ ଶବ୍ଦଜ) କର୍ଣ୍ଣି ନଡଆ ।

ପଇତା, ବ. (ପବନ ଶବ୍ଦଜ) ଯଜ୍ଞୋପବୀତ ।

ପଇଡ, ବ. (ଦେଶଜ) ରନ୍ଧାଡାଲି ।

ପଇଁବିଶ, ବଂ. ସଂଖ୍ୟାବିଶେଷ, ୩୫ ।

ପଇସା, ବ. (ଦେଶଜ) ତାମ୍ରମୁଦ୍ରା ।

ପକ୍ଷା, ବଂ. (ଦେଶଜ) ନବାଡ଼ ।

ପକାଇବା, କ୍ରି. (ଦେଶଜ) ଫୋପାଡିବା ।

ପକ୍ୱ, ବଂ. (ପଚ୍-ତ) ପରିଣତ; ପାଚଲି; ପାକ; ହଷ୍ଟଲ; ବିନାଶୋନ୍ମୁଖ ।

ପକ୍ୱରସ, ବ. ପୁଂ (ପକ୍ୱ-ରସ) ମଦିରା, ମଦ୍ୟ ।

ପକ୍ଷ, ବ. ପୁଂ. (ପକ୍ଷ୍=ପରିଗ୍ରହ କରିବା-ଅ) ଶୁକ୍ଳ ବା କୃଷ୍ଣ ପ୍ରତିପଦ୍‌ଠାରୁ ପୂର୍ଣ୍ଣିମା ବା ଅମାବାସ୍ୟା ପର୍ଯ୍ୟନ୍ତ; ପକ୍ଷିର ଡେଣା; ପିଚ୍ଛ; ବାଣର ପୁଙ୍ଖ; ପାର୍ଶ୍ୱ; ସଖା ।

ପକ୍ଷକ, ବ. ପୁଂ. (ପକ୍ଷ-କ) ପକ୍ଷଦ୍ୱାର; ଝିଡକି-ଦ୍ୱାର; ପାର୍ଶ୍ୱ; ସହାୟ ।

ପକ୍ଷଚର, ବ. ପୁଂ. (ପକ୍ଷ=ଅର୍ଦ୍ଧମାସ-ଚର=ଯେ ଗମନ କରେ-ଅ) ଚନ୍ଦ୍ର; ହସ୍ତୀ । ପୁଂ. ସ୍ତ୍ରୀ. ଦ୍ୱନ୍ଦ୍ୱଚର; ଚକ୍ରବାକ; ସହଚର ।

ପକ୍ଷତା, ବ. ସ୍ତ୍ରୀ. (ପକ୍ଷ-ତା) ପକ୍ଷଧର୍ମ ।

ପକ୍ଷତି, ବ. ସ୍ତ୍ରୀ. (ପକ୍ଷ-ତି) ପ୍ରତିପଦ୍; ପକ୍ଷମୂଳ ।

ପକ୍ଷଦ୍ୱାର, ବ. ନ. (ପକ୍ଷ-ଦ୍ୱାର) ପାର୍ଶ୍ୱଦ୍ୱାର; ଝିଡ଼କୀ ଦ୍ୱାର ।

ପକ୍ଷପାତ, ବ. ପୁଂ. (ପକ୍ଷ-ପାତ) ଅନୁଗ୍ରହ; ଆସକ୍ତି; ଏକ ପକ୍ଷରେ ଅଧିକ ଅନୁଗ୍ରହ ।

ପକ୍ଷପାତିତା, ବ. ସ୍ତ୍ରୀ. (ପକ୍ଷପାତିନ୍-ତା) ଅନୁକୂଳ-ବର୍ତ୍ତିତା, ସାହାଯ୍ୟକରଣ ।

ପକ୍ଷପାତୀ, ବଂ. (ପକ୍ଷ-ପତ୍-ଇନ୍) ଅନୁଗ୍ରାହକ, ଏକ ପକ୍ଷରେ ଅଧିକ ଅନୁଗ୍ରହକାରୀ ।

ପକ୍ଷାଘାତ, ବ. ପୁଂ. (ପକ୍ଷ-ଅଘାତ) ରୋଗ-ବିଶେଷ, ଏହି ରୋଗରେ ଦେହର ଅର୍ଦ୍ଧଭାଗ ବା ସମସ୍ତ ହସ୍ତ ପଦାଦି ଅବଶ ଓ ଅସାର ହୋଇଯାଏ ।

ପକ୍ଷାନ୍ତ, ବ. ପୁଂ. (ପକ୍ଷ-ଅନ୍ତ) ପୂର୍ଣ୍ଣିମା; ଅମାବାସ୍ୟା ।

ପକ୍ଷାନ୍ତର, ବ. ନ. (ପକ୍ଷ-ଅନ୍ତର) ଅନ୍ୟ ପକ୍ଷ ।

ପକ୍ଷିରାଜ, ବ. ପୁଂ. (ପକ୍ଷିନ୍-ରାଜା) ଗରୁଡ଼ ।

ପକ୍ଷୀ, ବ. ପୁଂ. (ପକ୍ଷ-ଇନ୍) ଖଗ, ବିହଙ୍ଗ; ବାଣ ।

ପକ୍ଷୀନ୍ଦ୍ର, ବ. ପୁଂ. (ପକ୍ଷୀ-ଇନ୍ଦ୍ର) ଗରୁଡ଼ ।

ପକ୍ଷ୍ମ, ବ. ନ. ( ପକ୍ଷ୍-ମନ୍ ) ନେତ୍ରଲୋମ, ପଲକ; ପୁଷ୍ପକେଶର; ସୂକ୍ଷ୍ମାଦିର ଅଗ୍ରଭାଗ ।

ପଖାଳ, ବ. (ଦେଶଜ) ପାଣିମିଶା ଭାତ ।

ପଖାଳିବା, କ୍ରି. (ପ୍ରକ୍ଷାଳନ ଶବ୍ଦଜ) ଧୋଇବା ।

ପଖିଆ, ବ. ( ଦେଶଜ ) ତାଳପତ୍ର ଆଚ୍ଛାଦନୀ-ବିଶେଷ, ବୃଷ୍ଟିନିବାରକ ।

ପଗଡ଼ି, ବ. (ଯାବନିକ) ଠେକା, ଉଷ୍ଣୀଷ ।

ପଗାର, ବ. (ଯାବନିକ) ପରିଖା, ହିଡ଼; ସୀମା ।

ପଘା, ବ. (ଦେଶଜ) ଗୋରୁ ବାଛୁରୀ ବାନ୍ଧିବାର ଦଉଡ଼ି ।

ପଙ୍କ, ବ. ପୁଂ. ନ. (ପଚ୍-ଅ) ପାପ; କର୍ଦ୍ଦମ ।

ପଙ୍କଜ, ବ. ପୁଂ. (ପଙ୍କ-ଜ) ସାରସପକ୍ଷୀ । ବ. ନ. ପଦ୍ମ । ବଂ. କର୍ଦ୍ଦମଜାତ ।

ପଙ୍କଜିନୀ, ବ. ସ୍ତ୍ରୀ. (ପଙ୍କଜ-ଇନ୍-ଈ) ପଦ୍ମିନୀ; ପଦ୍ମାକର, ପୁଷ୍କରିଣୀ ।

ପଙ୍କରୁହ, ପଙ୍କରୁହ, ପଙ୍କେରୁହ } ବ. ନ. ( ପଙ୍କ-ରୁହ ) ପଦ୍ମ । ପୁଂ. ସାରସ-ପକ୍ଷୀ । ଯଥା—

> ଅନ୍ଧାରେ ବାହାର ପଙ୍କେରୁହମିତ୍ରୀ ସଙ୍କେତ ସ୍ଥଳକୁ ଗଲ ।
> କେ. ଗୀ.

ପଙ୍କିଳ, ବଂ. (ପଙ୍କ-ଇଳ) କର୍ଦ୍ଦମଯୁକ୍ତ, ପଙ୍କଯୁକ୍ତ ।

ପଂକ୍ତି, ବଂ. ସ୍ତ୍ରୀ. (ପଚ୍-ତି) ଶ୍ରେଣୀ; ଦଶାକ୍ଷର ପାଦ ଛନ୍ଦୋବିଶେଷ; ଦଳ; ଧାଡ଼ି ।

ପଙ୍ଗତ, (ପଂକ୍ତି ଶବ୍ଦଜ) ଏକ ସ୍ଥାନରେ ପଂକ୍ତି-କ୍ରମେ ବସି ଆହାର କରିବା ।

ପଙ୍ଗୁ, ବି. (ପଣ୍-ଅଙ୍ଗୁ) ହସ୍ତପଦହୀନ; ଲେଙ୍ଗଡ଼ା । ବି. ପୁଂ. ଶନିଗ୍ରହ ।

ପଚନ, ବି. ପୁଂ. (ପଚ୍-ଅନ) ଅଗ୍ନି; ପାକକାଷ୍ଠ । ନ. ପାକ, ରନ୍ଧନ ।

ପଚା, ବି. ସ୍ତ୍ରୀ. (ପଚ୍-ଆ) ପାକ; (ପାକ ଅର୍ଥରେ ପଚ୍ ଧାତୁଜ) । ବି. ବିକୃତ; ନଷ୍ଟ ।

ପଚାରିବା, କ୍ରି. (ଦେଶଜ) ଜିଜ୍ଞାସା କରିବା ।

ପଚିଶ, ବି. ପଞ୍ଚବିଂଶତି, ୨୫ ।

ପଛ, ବି. (ପଶ୍ଚାତ୍ ଶବ୍ଦଜ) ପୃଷ୍ଠଦେଶ ।

ପଜାଇବା, କ୍ରି. (ଦେଶଜ) ଧାର କରିବା ।

ପଞ୍ଜା, ବି. (ପ୍ରା) ହେମନ୍ତ, ପାକୁଳ କରିବାର, ଉର୍ଦ୍ଧିତଚର୍ଣ୍ଣ ।

ପଞ୍ଚ, ବି. (ପନ୍ ଚ୍-ଅ) ପଞ୍ଚସଂଖ୍ୟା, ୫ ।

ପଞ୍ଚକ, ବି. ନ. (ପଞ୍ଚନ୍-କ) ପାଞ୍ଚ; ପଞ୍ଚସମ୍ବନ୍ଧୀୟ, (ପ୍ରା) କାର୍ତ୍ତିକ ମାସର ଶେଷ ପାଞ୍ଚଦିନ ।

ପଞ୍ଚକଷାୟ, ବି. ପୁଂ. ଜମ୍ବୁ, ଶାଲ୍ମଳି, ବାଟ୍ୟାଳ, ବକୁଳ, ବଦର, ଏହି ପାଞ୍ଚ ପ୍ରକାର ମହା-ସ୍ୱାଦୀୟ କଷାୟ ପଦାର୍ଥ ।

ପଞ୍ଚକୋଲ, ବି. ନ. (ପଞ୍ଚ-କୋଲ) ପାଚନ-ବିଶେଷ ।

ପଞ୍ଚଗବ୍ୟ, ବି. ନ. (ପଞ୍ଚ-ଗବ୍ୟ) ଦଧି, ଦୁଗ୍ଧ, ଘୃତ, ଗୋମୟ ଏବଂ ଗୋମୂତ୍ର ଏହି ପାଞ୍ଚ ।

ପଞ୍ଚଚାମର, ବି. ନ. ଷୋଡ଼ଶାକ୍ଷର ପାଦ ଛନ୍ଦୋ-ବିଶେଷ ।

ପଞ୍ଚଜନ, ବି. ପୁଂ. (ପଞ୍ଚ-ଜନ) ପୁରୁଷ, ମନୁଷ୍ୟ; ଦୈତ୍ୟବିଶେଷ, ଏହି ଦୈତ୍ୟର ଅସ୍ଥିରୁ କୃଷ୍ଣଙ୍କର ପାଞ୍ଚଜନ୍ୟ ଶଙ୍ଖ ନିର୍ମିତ ହୋଇଅଛି ।

ପଞ୍ଚତତ୍ତ୍ୱ, ବି. ନ. (ପଞ୍ଚନ୍-ତତ୍ତ୍ୱ) ପୃଥିବ୍ୟାଦି ପଞ୍ଚଭୂତ; କ୍ଷିତି, ତେଜଃ, ଜଳ, ବାୟୁ, ଆକାଶ; ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା, ମୈଥୁନ ଏହି ପାଞ୍ଚ ମକାରାଦି ଶବ୍ଦ ।

ପଞ୍ଚତନ୍ତ୍ର, ବି. ନ. ନୀତିଶାସ୍ତ୍ରବିଶେଷ ।

ପଞ୍ଚତନ୍ମାତ୍ର, ବି. ନ. (ପଞ୍ଚନ୍-ତନ୍ମାତ୍ର) ରୂପ, ରସ, ଗନ୍ଧ, ସ୍ପର୍ଶ ଓ ଶବ୍ଦ । ପୃଥିବ୍ୟାଦି ସୂକ୍ଷ୍ମ ପଞ୍ଚଭୂତ ଆକାଶାଦି ।

ପଞ୍ଚତପାଃ, ବି. ପୁଂ. (ପଞ୍ଚନ୍-ତପସ୍) ଯେ ପଞ୍ଚାଗ୍ନି ମଧ୍ୟରେ ପ୍ରବେଶ କରନ୍ତି; ତପସ୍ୱି-ବିଶେଷ ।

ପଞ୍ଚତା, ପଞ୍ଚତ୍ୱ, ବି. ସ୍ତ୍ରୀ. ନ. (ପଞ୍ଚନ୍-ତା, ତ୍ୱ) ମରଣ, ମୃତ୍ୟୁ; ପଞ୍ଚଭୂତ ।

ପଞ୍ଚଦଶ, ବି. (ପଞ୍ଚନ୍-ଦଶନ୍) ପନ୍ଦର ସଂଖ୍ୟାର ପୂରକ ।

ପଞ୍ଚଦଶୀ, ବି. ସ୍ତ୍ରୀ. (ପଞ୍ଚ-ଦଶ-ଈ) ଅମାବାସ୍ୟା; ପୂର୍ଣ୍ଣିମା; ବେଦାନ୍ତଗ୍ରନ୍ଥବିଶେଷ ।

ପଞ୍ଚଦେବତା, ବି. ସ୍ତ୍ରୀ. ଆଦିତ୍ୟ, ଗଣେଶ, ଦେବୀ, ରୁଦ୍ର ଓ କେଶବ ଏହି ପଞ୍ଚଦେବ । କେହି କେହି ଗଣେଶାଦି ପଞ୍ଚଦେବ କହନ୍ତି ।

ପଞ୍ଚଧା, କ୍ରି. ବି. ଅ. ପାଞ୍ଚ ପ୍ରକାର ।

ପଞ୍ଚନଖ, ବି. ପୁଂ. (ପଞ୍ଚନ୍-ନଖ) ମନୁଷ୍ୟ; ବାନର; ହସ୍ତୀ; କୂର୍ମ; ବ୍ୟାଘ୍ର । ବି. ପଞ୍ଚନଖ-ଯୁକ୍ତ ।

ପଞ୍ଚନଦ, ବି. ପୁଂ. (ପଞ୍ଚନ୍-ନଦୀ-ଅ) ଶତଦ୍ରୁ, ବିପାଶା, ଇରାବତୀ, ଚନ୍ଦ୍ରଭାଗା, ବିତସ୍ତା ଏହି ପଞ୍ଚନଦୀଯୁକ୍ତ ଦେଶ, ପଞ୍ଜାବ ।

ପଞ୍ଚନିମ୍ବ, ବି. ନ. (ପଞ୍ଚ-ନିମ୍ବ) ନିମ୍ବବୃକ୍ଷର ପତ୍ର, ତ୍ୱକ୍, ପୁଷ୍ପ, ଫଳ ଓ ମୂଳ ।

ପଞ୍ଚପଲ୍ଲବ, ବି. ନ. (ପଞ୍ଚନ୍-ପଲ୍ଲବ) ଆମ୍ର, ଅଶ୍ୱତ୍ଥ, ବଟ, ପ୍ଲକ୍ଷ, ଯଜ୍ଞଡୁମ୍ବର; ସଚରାଚର ବୈଦିକ କର୍ମରେ ଘଟ ଉପରେ ଏହି ପଞ୍ଚପଲ୍ଲବ ଦିଆ ଯାଇଥାଏ; ତନ୍ତ୍ର ମତରେ ପନସ, ଆମ୍ର, ଅଶ୍ୱତ୍ଥ, ବଟ, ବକୁଳ ଏହି ପଞ୍ଚପଲ୍ଲବ; ଅନ୍ୟ ମତରେ ଆମ୍ର, ଜାମ୍ବୁ, କପିତ୍ଥ, ବୀଜପୂରକ ଏବଂ ବିଲ୍ୱ ଏହି ପଞ୍ଚପଲ୍ଲବ ।

ପଞ୍ଚପାବ, ବି. ନ. (ପଞ୍ଚନ୍-ପାବ) ଦେବପକ୍ଷଦ୍ୱୟ ଏବଂ ପିତୃପକ୍ଷତ୍ରୟ ଏହି ପଞ୍ଚପାବ ଶ୍ରାଦ୍ଧ; ପାଞ୍ଚୋଟି ପାବ ।

ପଞ୍ଚପିତା, ବ. ପୁଂ. ଅନ୍ନଦାତା, ଭୟତ୍ରାତା, ପିତା, ଶ୍ୱଶୁର, ଉପନେତା ଏହି ପାଞ୍ଚ ।

ପଞ୍ଚପିତ୍ତ, ବ. ନ. ବରାହ, ଛାଗ, ମହିଷ, ମତ୍ସ୍ୟ ଓ ମୟୂର ପିତ୍ତ ।

ପଞ୍ଚପ୍ରାଣ, ବ.ପୁଂ. ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ ଶରୀରସ୍ଥ ଏହି ପଞ୍ଚବାୟୁ ।

ପଞ୍ଚଭଦ୍ର, ବ. ପୁଂ. (ପଞ୍ଚନ୍-ଭଦ୍ର) ଯେଉଁ ଅଶ୍ୱର ହୃଦୟରେ, ପୃଷ୍ଠରେ, ମୁଖରେ ଓ ପାର୍ଶ୍ୱଦ୍ୱୟରେ ଅବର୍ତ୍ତ ଅଛି । ନ. ପାଚନବିଶେଷ ।

ପଞ୍ଚଭୂତ ବ. ନ. ( ପଞ୍ଚନ୍-ଭୂତ ) କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ ।

ପଞ୍ଚମ, ବି°. (ପଞ୍ଚନ୍-ମ ପୂରଣାର୍ଥେ) ରାଗବିଶେଷ, ଅତି ଉଚ୍ଚୈଃସ୍ୱର; ଏହି ସ୍ୱର ନାଭିରୁ ଉତ୍ଥିତ ହୋଇ ବକ୍ଷ, ହୃଦୟ, କଣ୍ଠ ଏବଂ ମସ୍ତକ ଏହି ଚାରି ସ୍ଥାନ ବିଚରଣ କରେ ବୋଲି ଏହାକୁ "ପଞ୍ଚମ ସ୍ୱର" ବୋଲାଯାଏ; କୋକିଳ ଧ୍ୱନି । ନ. ମୈଥୁନ । ବି°. ପାଞ୍ଚର ପୂରଣ; ସୁନ୍ଦର, ରୁଚିର, ମନୋଜ୍ଞ; ନିପୁଣ, ଦକ୍ଷ ।

ପଞ୍ଚମକାର, ବ. ନ. (ପଞ୍ଚନ୍-ମକାର=ମ, ଅକ୍ଷର ଯେଉଁ ପାଞ୍ଚ ଶବ୍ଦର ପ୍ରଥମରେ ଥାଏ) ମତ୍ସ୍ୟ, ମାଂସ, ମଦ୍ୟ, ମୁଦ୍ରା, ମୈଥୁନ ଏହି ପାଞ୍ଚ ।

ପଞ୍ଚମହାପାତକ, ବ. ନ. (ପଞ୍ଚ-ମହାପାତକ) ବ୍ରହ୍ମହତ୍ୟା, ସୁରାପାନ, ସ୍ତେୟ, ଗୁରୁପତ୍ନୀସଂସର୍ଗ ଏବଂ ପାପିଗଣର ସହବାସ ଏହି ପାଞ୍ଚ ।

ପଞ୍ଚମହାଯଜ୍ଞ, ବ. ପୁଂ. ( ପଞ୍ଚନ୍-ମହତ୍-ଯଜ୍ଞ ) ବେଦାଧ୍ୟୟନ, ଅଗ୍ନିହୋତ୍ର, ପିତୃତର୍ପଣ, ଭୂତବଳି, ଅତିଥିପୂଜା ଏହି ପାଞ୍ଚ ପ୍ରକାର ଗୃହସ୍ଥର କର୍ତ୍ତବ୍ୟ କର୍ମ ।

ପଞ୍ଚମାସ୍ୟ, ବ. ପୁଂ. (ପଞ୍ଚମ=ସ୍ୱରବିଶେଷ-ଆସ୍ୟ=ମୁଖ) ପଞ୍ଚମ ସ୍ୱରରେ ଯେ ଗାନ କରେ, ପଞ୍ଚମ ସ୍ୱରଭାଷୀ, କୋକିଳ ।

ପଞ୍ଚମୀ, ବ. ସ୍ତ୍ରୀ. (ପଞ୍ଚମ-ଈ) ପାଣ୍ଡବପତ୍ନୀ, ଦ୍ରୌପଦୀ; ତିଥିବିଶେଷ, ଚନ୍ଦ୍ରର ପଞ୍ଚମ କଳାର କ୍ରିୟାକାଳ ।

ପଞ୍ଚମୁଖ, ଶ. ପୁଂ. (ପଞ୍ଚନ୍-ମୁଖ) ଶିବ, ପଞ୍ଚାନନ; ସିଂହ, କେଶରୀ ।

ପଞ୍ଚଯଜ୍ଞ, ବ. ପୁଂ. ( ପଞ୍ଚନ୍-ଯଜ୍ଞ ) ବ୍ରହ୍ମଯଜ୍ଞ, ନୃଯଜ୍ଞ, ଦୈବଯଜ୍ଞ, ପିତୃଯଜ୍ଞ, ଭୂତଯଜ୍ଞ, ଏହି ପାଞ୍ଚ ।

ପଞ୍ଚରତ୍ନ, ବ. ନ. (ପଞ୍ଚନ୍-ରତ୍ନ) କନକ, ହୀରକ, ମୁକ୍ତା, ନୀଳକାନ୍ତ, ପଦ୍ମରାଗ ଏହି ପାଞ୍ଚ ।

ପଞ୍ଚରାତ୍ର, ବ. ନ. ( ପଞ୍ଚନ୍-ରାତ୍ର ) ପଞ୍ଚଜ୍ଞାନ ସାଧନ ଗ୍ରନ୍ଥବିଶେଷ; ପାଞ୍ଚ ରାତି ।

ପଞ୍ଚଲକ୍ଷଣ, ବ.ନ. (ପଞ୍ଚନ୍ (ସୃଷ୍ଟି, ପ୍ରଳୟ, ବଂଶବର୍ଣ୍ଣନା, ମନୁର ରାଜତ୍ୱ ଏବଂ ତାହାଙ୍କର ପୂର୍ବାପର ଚରିତ=ପାଞ୍ଚ-ଲକ୍ଷଣ=ଚିହ୍ନ ) ପୁରାଣଶାସ୍ତ୍ର ।

ପଞ୍ଚଲବଣ, ବ. ନ. ( ପଞ୍ଚନ୍-ଲବଣ ) କାଚ, ସୈନ୍ଧବ, ସାମୁଦ୍ର, ବିଟ, ସୌବର୍ଚ୍ଚଳ ଏହି ପାଞ୍ଚ ପ୍ରକାର ଲବଣ ।

ପଞ୍ଚଲୌହ, ପଞ୍ଚଲୌହକ, ବି. ନ. (ପଞ୍ଚ=ପାଞ୍ଚ-ଲୌହ, ଲୌହକ) ସୁବର୍ଣ୍ଣ, ରଜତ, ତାମ୍ର, ରଙ୍ଗ, ସୀସକ ଏହି ପଞ୍ଚବିଧ ଧାତୁ ।

ପଞ୍ଚବଟୀ, ବି. ନ. ଦଣ୍ଡକାରଣ୍ୟସ୍ଥ ବନବିଶେଷ; ଅଶ୍ୱତ୍ଥ, ବିଲ୍ୱ, ବଟ, ଧାତ୍ରୀ, ଅଶୋକ ଏହି ପାଞ୍ଚ ପ୍ରକାର ବୃକ୍ଷ ଥିବାରୁ ଏହାର ନାମ ପଞ୍ଚବଟୀ ।

ପଞ୍ଚବକ୍ତ୍ର, ବ. ପୁଂ. ( ପଞ୍ଚନ୍=ପାଞ୍ଚ-ବକ୍ତ୍ର=ମୁଖ ) ପଞ୍ଚାନନ, ଶିବ; ରୁଦ୍ରାକ୍ଷବିଶେଷ । ବି°. (ପଞ୍ଚ=ଆୟତ, ବିସ୍ତୃତ-ବକ୍ତ୍ର=ମୁଖ) ସିଂହ, କେଶରୀ ।

ପଞ୍ଚବାଣ, ପଞ୍ଚଶର, ବ. ପୁଂ. (ପଞ୍ଚନ୍-ବାଣ; ଶର) କନ୍ଦର୍ପ, କାମ; କନ୍ଦର୍ପର ପାଞ୍ଚଟି ବାଣ । ଯଥା— ଅରବିନ୍ଦ, ଅଶୋକ, ଚୂତ, ନବମାଲିକା, ନୀଳୋତ୍ପଳ ଅଥବା ସମ୍ମୋହନ, ଉନ୍ମାଦନ, ଶୋଷଣ, ତାପନ, ସ୍ତମ୍ଭନ ।

ପଞ୍ଚଶସ୍ୟ, ବ. ନ. (ପଞ୍ଚନ୍-ଶସ୍ୟ) ଧାନ୍ୟ, ମୁଗ, ଯବ, ତିଳ, ଶ୍ୱେତସର୍ଷପ ।

ପଞ୍ଚଶାଖ, ବ. ପୁଂ. (ପଞ୍ଚନ୍-ଶାଖା) କର, ହସ୍ତ । ବିଂ. ପାଞ୍ଚଶାଖାଯୁକ୍ତ ।

ପଞ୍ଚଶିଖ, ବ. ପୁଂ. ( ପଞ୍ଚ=ବିସ୍ତୃତ-ଶିଖା=ଚୂଡ଼ା ବା କେଶର ) ସିଂହ; ଧର୍ମର ଔରସରେ ହଂସାର ଗର୍ଭସମ୍ଭୂତ ମୁନିବିଶେଷ ।

ପଞ୍ଚସୁଗନ୍ଧକ, ବ. ନ. (ପଞ୍ଚନ୍-ସୁଗନ୍ଧ-କ)ଲବଙ୍ଗ, କର୍ପୂର, କକ୍କୋଲ, ଗୁବାକ, କାତଫଳ, ଏହି ପାଞ୍ଚ ସୁଗନ୍ଧ ଦ୍ରବ୍ୟ ।

ପଞ୍ଚାଏତ, ବ. ପୁଂ. ( ଦେଶଜ ) କୌଣସି ବିଷୟ ନିଷ୍ପତ୍ତି କରିବାପାଇଁ ଗ୍ରାମରେ କେତେକ ଜଣ ଭଦ୍ରଲୋକ ମିଶି ଯେଉଁ ସଭା କରନ୍ତି ସେହି ସଭାର ନାମ "ପଞ୍ଚାଏତ" ।

ପଞ୍ଚାଗ୍ନି, ବ. ପୁଂ. ( ପଞ୍ଚନ୍-ଅଗ୍ନି ) ଚତୁର୍ଦିଗରେ ଅଗ୍ନି ଉପରେ ସୂର୍ଯ୍ୟ ଏହି ପାଞ୍ଚ; ତପସ୍ୟାବିଶେଷ ।

ପଞ୍ଚାଙ୍ଗ, ବିଂ. (ପଞ୍ଚନ୍-ଅଙ୍ଗ) ପଞ୍ଚ ଅବୟବବିଶିଷ୍ଟ । ବ. କଚ୍ଛପ; ଅଶ୍ୱବିଶେଷ; ମୂଳ, ତ୍ୱକ୍, ପତ୍ର, ପୁଷ୍ପ, ଫଳ ଏହି ପାଞ୍ଚ; ଜପ, ହୋମ, ତର୍ପଣ, ସ୍ନାନ, ବ୍ରାହ୍ମଣଭୋଜନ ଏହି ପଞ୍ଚାଙ୍ଗ ।

ପଞ୍ଚାଙ୍ଗୁଳ, ବ. ପୁଂ. ( ପଞ୍ଚନ୍=ପାଞ୍ଚ-ଅଙ୍ଗୁଳ= ଯାହାର ପତ୍ର ପାଞ୍ଚ ଅଙ୍ଗୁଳିର ସଦୃଶ ) ଏରଣ୍ଡ ବୃକ୍ଷ, ଗବଗଛ । ବିଂ. ପାଞ୍ଚ ଅଙ୍ଗୁଳିପରିମିତ ।

ପଞ୍ଚାନନ, ବ.ପୁଂ. (ପଞ୍ଚନ୍-ଆନନ) ଶିବ; ସିଂହ ।

ପଞ୍ଚାମୃତ, ବ. ନ. (ପଞ୍ଚନ୍=ପାଞ୍ଚ-ଅମୃତ=ସୁଧା) ଦଧି, ଦୁଗ୍ଧ, ଘୃତ, ମଧୁ, କନ୍ଦ ଏହି ପାଞ୍ଚ ।

ପଞ୍ଚାମ୍ର, ବ. ନ. ( ପଞ୍ଚନ୍-ଆମ୍ର ) ଅଶ୍ୱତ୍ଥ, ଜମ୍ବୁ, ଚମ୍ପକ, ବକୁଳ, ନାରକେଳ ଏହି ପାଞ୍ଚ ।

ପଞ୍ଚାଳ, ବ. ପୁଂ. ( ପଞ୍ଚନ୍-ଅଳ ) ଭାରତବର୍ଷର ଉତ୍ତରଭାଗସ୍ଥ ଦେଶବିଶେଷ ।

ପଞ୍ଚାଳିକା, ବ. ସ୍ତ୍ରୀ. (ପଞ୍ଚାଳ-ଇକ, ଆ) ପୁତ୍ତଳୀ; ଗୀତବିଶେଷ; ପାଶାର ଛକ ।

ପଞ୍ଚାଶତ୍, ବିଂ. (ପଞ୍ଚନ୍-ଶତ) ୫୦ ସଂଖ୍ୟା ।

ପଞ୍ଚାସ୍ୟ, ବ.ପୁଂ. (ପଞ୍ଚନ୍-ଆସ୍ୟ) ଶିବ, ମହାଦେବ; ସିଂହ, ମୃଗେନ୍ଦ୍ର, କେଶରୀ ।

ପଞ୍ଚେନ୍ଦ୍ରିୟ, ବ. ନ. (ପଞ୍ଚନ୍-ଇନ୍ଦ୍ରିୟ) ଚକ୍ଷୁ, କର୍ଣ୍ଣ, ନାସିକା, ତ୍ୱକ୍, ଜିହ୍ୱା ଏହି ପାଞ୍ଚ ଇନ୍ଦ୍ରିୟ ।

ପଞ୍ଚେଷୁ, ବ. ପୁଂ. (ପଞ୍ଚନ୍-ଇଷୁ) କନ୍ଦର୍ପ, ପଞ୍ଚଶର, ମଦନ ।

ପଞ୍ଜର, ବ. ନ. ( ପଜ୍-ଅର ) କଙ୍କାଳ, ଅସ୍ଥିମାତ୍ରାବଶିଷ୍ଟ ଶରୀର; ପକ୍ଷ୍ୟାଦି ବନ୍ଧଗୃହ, ପିଞ୍ଜରା ।

ପଞ୍ଜି, ପଞ୍ଜିକା, ପଞ୍ଜୀ, ବ. ସ୍ତ୍ରୀ. (ପିଜ୍-ଇ)ପାଞ୍ଜି, ତିଥି ନକ୍ଷତ୍ରାଦି କାଳଜ୍ଞାପକ ଗ୍ରନ୍ଥ ।

ପଞ୍ଜୁର, ବ. ନ. ( ପିଞ୍ଜର ଶବ୍ଦର ଅପଭ୍ରଂଶ ) ପକ୍ଷ୍ୟାଦିର ବନ୍ଧଗୃହ ।

ପଞ୍ଝା, ବ. ନ. (ପ୍ରା) ଦଳ, ସମୂହ, ପଲ ।

ପଟ, ବ. ପୁଂ. ନ. (ପଟ୍-ଅ) ବସ୍ତ୍ର; ଚିତ୍ରପଟ, ଛବି । ନ. ଛାଲ; ଛେଲି, ପଟୁକା । ସ୍ତ୍ରୀ. ଯବନିକା ।

ପଟଣା, ବ. (ପତ୍ତନ ଶବ୍ଦଜ) ଗ୍ରାମପୁଞ୍ଜ ।

ପଟମଣ୍ଡପ, ବ. ପୁଂ. ( ପଟ=ବସ୍ତ୍ର-ମଣ୍ଡପ=ଗୃହ ) ତମ୍ବୁ, ବସ୍ତ୍ରଗୃହ ।

ପଟଳ, ବିଂ. (ପଟ୍-ଅଳ) ସ୍ତୂପାକାର; ସମୂହ । ବ. ଚକ୍ଷୁରୋଗବିଶେଷ, ପରଳ ପଡ଼ିବା ।

ପଟବାସ, ବ. ପୁଂ. ( ପଟ-ବାସ ) ଶାଟୀ, ଶାଢ଼ୀ; ତମ୍ବୁ, ବସ୍ତ୍ରଗୃହ ।

ପଟହ, ବ. ପୁଂ. ନ. (ପଟ-ହା-ଅ) ନାଗରା, ରଣଢକ୍କା; ଆଡ଼ମ୍ବର ।

ପଟା, ବ. (ଦେଶଜ) ତକ୍ତା ।

ପଟାନ୍ତର, ବ. ନ. ( ପଟ-ଅନ୍ତର ) ତୁଳନା, ଉପମା ।

ପଟୀ, ବ. ସ୍ତ୍ରୀ. ( ପଟ୍-ଇ ) ବସ୍ତ୍ରବିଶେଷ; ପଟ୍ଟୀ; କାଠର ଖଣ୍ଡବିଶେଷ; ଖଜୁରୀଆଦି ପତ୍ରବୁଣା ବିଛଣା ।

ପଟୀୟାନ୍, ବିଂ. ( ପଟୁ-ଈୟସ୍ ) ଅତି ପଟୁ, ସୁଚତୁର, ସୁନିପୁଣ, ଅତିଶୟ ଦକ୍ଷ ।

ପଟୀର, ବ. ନ. ( ପଟ୍-ଈର ) କ୍ଷେତ୍ର; ଉଚ୍ଚତା ଲୋଚନ; ଚନ୍ଦନ; ମେଘ; ବଂଶ; ଉଦର; ମୂଳକ; ଖଦିର; ବାତରୋଗବିଶେଷ । ବ. ପୁଂ. କନ୍ଦର୍ପ; ଚନ୍ଦନବୃକ୍ଷ; ମେଘ ।

ପଟୁ, ବିଂ. ( ପାଟି-ଉ ) ନିପୁଣ, ଦକ୍ଷ, ସମର୍ଥ; ପରଶ୍ରମୀ; ଚତୁର; ତୀକ୍ଷ୍ଣ ।

ପଟୁଆର, ବି. (ଦେଶଜ) ଜମି ମାପିବାର କର୍ମଶ୍ରେଣୀ ।

ପଟେ, (ଦେଶଜ) ଅଧଯୋଡ଼ା ।

ପଟୋଳ, ବି. ପୁଂ. ( ପଟ୍-ଓଲ ) ସ୍ୱନାମପ୍ରସିଦ୍ଧ ଫଳବିଶେଷ । ନ. ବସ୍ତ୍ରବିଶେଷ, ପଟ୍ଟବସ୍ତ୍ର ।

ପଟୋଳୀ, ବି. ସ୍ତ୍ରୀ. (ପଟୋଳ-ଈ) କ୍ଷୁଦ୍ର ପଟୋଳ, ଫଳବିଶେଷ ।

ପଟ୍ଟ, ବି. ପୁଂ. (ପଟ୍-ତ) ପେଷଣାର୍ଥ ପ୍ରସ୍ତର, ଶିଳ; ପିଢ଼ା; ରାଜାସନ; ବସ୍ତ୍ରବିଶେଷ ।

ପଟ୍ଟଗୃହ, ବି. ନ. (ପଟ୍ଟ-ଗୃହ) ତମ୍ବୁ, ବସ୍ତ୍ରନିର୍ମିତ ଗୃହ ।

ପଟ୍ଟନ, ବି. ନ. (ପଟ୍-ତନ) ପଟଣା, ନଗର ।

ପଟ୍ଟଦେବୀ, ପଟ୍ଟମହିଷୀ, ବି. ସ୍ତ୍ରୀ. (ପଟ୍ଟ-ଦେବୀ, ମହିଷୀ) ରାଜାର ପ୍ରଧାନ ମହିଷୀ, ପାଟରାଣୀ ।

ପଟ୍ଟା, ବି. ନ. ( ଦେଶଜ ) ଜମି ଭୋଗ କରିବା ନିମିତ୍ତ ଜମିଦାରଠାରୁ ପ୍ରାପ୍ତ ଅନୁମତିପତ୍ର ।

ପଟ୍ଟିକା, ବି. ସ୍ତ୍ରୀ. ( ପଟ୍ଟ-କ, ଆ ) ଅଞ୍ଚଳ । ଯଥା—

ଅଦୂରେ କାଳନ୍ଦୀ ସ୍ରୋତେ ଯାଏଁ ଶରବେଗେ
ନୀଳାଚଳ, ରଙ୍ଗେ ତୋଳ ଧବଳ ପଟ୍ଟିକା । ମ. ଯା.

ପଠନ, ବି. ନ. (ପଠ୍-ଅନ) ପାଠ, ଅଧ୍ୟୟନ ।

ପଠା, ବି. (ଦେଶଜ) ପୃଷ୍ଠଦେଶସ୍ଥ ବ୍ରଣରୋଗ-ବିଶେଷ; ନଦୀମଧ୍ୟସ୍ଥ ଗୋଚର ସ୍ଥାନ । ଯଥା—

କାଶକୁସୁମେ ଶୁକ୍ଳ ତଟନୀପଠା ।

ପଠାଇବା, କ୍ରି. (ଦେଶଜ) ପ୍ରେରଣ କରିବା ।

ପଠାଣ, ବି. (ଯାବନିକ) ଯବନ ।

ପଠନୀୟ, ବିଂ. (ପଠ୍-ଅନୀୟ) ପାଠ୍ୟ, ପଢ଼ିବାର ଯୋଗ୍ୟ ।

ପଠିତ, ବିଂ. (ପଠ୍-ତ) ଅଧୀତ, ଉଚ୍ଚାରିତ ।

ପଡ଼ା, ବି. ନ. ( ଦେଶଜ ) ପଲ୍ଲିଗ୍ରାମ; ଖଣ୍ଡ । କ୍ରି. ପଡ଼ିବା ।

ପଡ଼ି, ବି. ନ. ( ଦେଶଜ ) କୌଣସି ଲୋକର ଭରଣପୋଷଣାର୍ଥ ଯେଉଁ ନିର୍ଦ୍ଦିଷ୍ଟ ସାହାଯ୍ୟ ହୁଏ ତାହାକୁ ପଡ଼ି କହନ୍ତି ।

ପଢ଼ିଆ, ବି. (ଦେଶଜ) ପଦା ।

ପଢ଼ିବା, କ୍ରି. (ପଠନ ଶବ୍ଦଜ) ପଠିତ ହେବା ।

ପଡିହାରି, ବି. ( ପ୍ରତିହାରୀ ଶବ୍ଦଜ ) ଦ୍ୱାରପାଳ; ଦେବପୂଜକବିଶେଷ ।

ପଡୋଶୀ, ବି. (ପ୍ରତିବାସୀ ଶବ୍ଦଜ) ପ୍ରତିବାସୀ ।

ପଢା, ବି. (ଦେଶଜ) ପାଠ ଅଧ୍ୟୟନ କରିବା ।

ପଢୁଆ, ବି. ନ. (ଦେଶଜ) ଛୋଟ କୌଡ଼ି । ବିଂ. ଛାତ୍ର; ପାଠକ ।

ପଣ, ବି. ପୁଂ. (ପଣ୍-ଅ) ପ୍ରତିଜ୍ଞା, ବାଜିମାରିବା; ବେତନ; ମୂଲ୍ୟ; ୨୦ ଗଣ୍ଡା ପରିମାଣ । ଯଥା—

ଗୃହଁ ମୁଷ ଦରପଣେ, ବଗୁଡିଲ ହେଲେ ମୋ ପର ପଣେ,
ଶୋଭ ନ ଦଶିବ ଦାସୀପଣେ । ଦ. ଚ.

ପଣନ୍ତ, ବି. ନ. (ଦେଶଜ) ବସ୍ତ୍ରାଞ୍ଚଳ । ଯଥା—

ପଣନ୍ତ ବେଇଛି ଶିରେ, ଧରିଛି ଦକ୍ଷିଣ କରେ । ଲ. ବ.

ପଣସ, ବି. ପୁଂ. (ପଣ୍-ଅସ) ପଣ୍ୟଦ୍ରବ୍ୟ, ବିକ୍ରେୟ ସାମଗ୍ରୀ; (ଦେଶଜ) ଫଳବିଶେଷ ।

ପଣକିଆ, ଦେଶୀୟ ରୀତି ଅନୁସାରେ ଗୁଣନ ।

ପଣା, ବି. (ପ୍ରପାନକ ଶବ୍ଦଜ) ନବାତମିଶ୍ରିତଜଳ । ଯଥା—

ଛଣା ସୁଧାସର ପଣାରୁ ମଧୁର, ସଗୁଣ ଶ୍ୟାମପ୍ରୀତ ।

ପଣାଙ୍ଗନା, ବି. ସ୍ତ୍ରୀ. ( ପଣ-ଅଙ୍ଗନା ) ବେଶ୍ୟା, କୁଳଟା ।

ପଣାୟିତ, ପଣିତ, ବିଂ. ( ପଣ-ତ ) ସ୍ତୁତ; ପ୍ରଶଂସିତ; କ୍ରୀତ; ବ୍ୟବହୃତ; ବର୍ତ୍ତିତ; ବିକ୍ରୀତ ।

ପଣାସଂକ୍ରାନ୍ତି, ମହାବିଷୁବ ସଂକ୍ରାନ୍ତି ।

ପଣିତବ୍ୟ, ବିଂ. ( ପଣ-ତବ୍ୟ ) ବ୍ୟବହାର୍ଯ୍ୟ; ସ୍ତୋତବ୍ୟ; ବିକ୍ରେୟ; ବିକବାର ଉପଯୁକ୍ତ ।

ପଣ୍ଡ, ବି. ପୁଂ. ନ. (ପଣ୍ଡ = ଗମନ କରିବା-ଅ) ନପୁଂସକ । ବିଂ. ନିଷ୍ଫଳ; ନିରର୍ଥକ ।

ପଣ୍ଡଶ୍ରମ, ବି. ( ପଣ୍ଡ-ଶ୍ରମ ) ଅନର୍ଥକ ଆୟାସ; ବିଫଳ ଯତ୍ନ, ନିରର୍ଥକ ଶ୍ରମ ।

ପଣ୍ଡା, ବି. ସ୍ତ୍ରୀ. (ପଣ୍ଡ-ଆ) ତୀକ୍ଷ୍ଣବୁଦ୍ଧି; ପାଣ୍ଡିତ୍ୟ, ଶାସ୍ତ୍ରଜ୍ଞାନ; ( ଦେଶଜ ) ଅଣ୍ଡିରା ମଇଁଷି; ବ୍ରାହ୍ମଣର ପଦବୀବିଶେଷ ।

ପଣ୍ଡିତ, ବ. ପୁଂ. (ପଣ୍ଡା-ଇତ) ଶାସ୍ତ୍ରଜ୍ଞ, ବିଦ୍ୱାନ୍; ନିପୁଣ, ଦକ୍ଷ; ମେଧାବୀ ।

ପଣ୍ଡିତମ୍ମନ୍ୟ, } ବିଂ. { ପଣ୍ଡିତ-ମନ୍-ଯ }
ପଣ୍ଡିତମାନୀ, } { ପଣ୍ଡିତ-ମନ୍-ଇନ୍ }
ପଣ୍ଡିତାଭିମାନୀ, ଯେ ପଣ୍ଡିତ ନ ହୋଇ ଅପଣାକୁ ପଣ୍ଡିତ ଜ୍ଞାନ କରେ ।

ପଣ୍ୟ, ବିଂ.(ପଣ-ଯ) ବିକ୍ରେୟ ବସ୍ତୁ; ବ୍ୟବହାର୍ଯ୍ୟ ।

ପଣ୍ୟବୀଥିକା, ପଣ୍ୟବୀଥୀ, ବ. ସ୍ତ୍ରୀ. (ପଣ୍ୟ-ବୀଥିକା, ବୀଥୀ) ବିପଣି, ହାଟ, ବଜାର ।

ପଣ୍ୟଶାଳା, ବ. ସ୍ତ୍ରୀ. (ପଣ୍ୟ=ବିକ୍ରେୟଦ୍ରବ୍ୟ-ଶାଳା =ଗୃହ) ହାଟ, ବଜାର ପ୍ରଭୃତି ।

ପଣ୍ୟସ୍ତ୍ରୀ, ବ.ସ୍ତ୍ରୀ. (ପଣ୍ୟ-ସ୍ତ୍ରୀ) ପଣ୍ୟାଙ୍ଗନା,ବେଶ୍ୟା, ସାଧାରଣ ଉପଭୋଗ୍ୟା କାମିନୀ ।

ପଣ୍ୟାଙ୍ଗନା, ପଣାଙ୍ଗନା, ବ. ସ୍ତ୍ରୀ. (ପଣ୍ୟ, ପଣ-ଅଙ୍ଗନା) ବେଶ୍ୟା ।

ପଣ୍ୟାଜୀବ, ବ. ପୁଂ. ବଣିକ ।

ପତଗ, } ବ. ପୁଂ. (ପତ୍-ଗମ୍-ଅ) ବିହଙ୍ଗ,
ପତଙ୍ଗ, } ପକ୍ଷୀ; ଝିଣ୍ଟିକା, ଶଲଭ; ସୂର୍ଯ୍ୟ;
ପତଙ୍ଗମ, } ଅଗ୍ନି; ଶର; ଚନ୍ଦନବିଶେଷ; ପାରଦ ।

ପତଙ୍ଗିକା, ବ. ସ୍ତ୍ରୀ. (ପତଙ୍ଗ-କ-ଆ) ଏକପ୍ରକାର ମଧୁମକ୍ଷିକା, ମହୁମାଛିବିଶେଷ ।

ପତଞ୍ଜଳ, ବ.ପୁଂ. (ପତତ୍-ଅଞ୍ଜଳ) ମୁନିବିଶେଷ, ପାତଞ୍ଜଳ ନାମକ ଯୋଗଶାସ୍ତ୍ରଜ୍ଞ ଓ ପାଣିନି ବ୍ୟାକରଣ ଭାଷ୍ୟକର୍ତ୍ତା; କଥିତ ଅଛି ଯେ ଏ ସର୍ପରୂପରେ ପାଣିନି [illegible]ଙ୍କ ହସ୍ତରେ ସ୍ୱର୍ଗରୁ ପଡିଥିଲେ ।

ପତତ୍ର, ବ. ନ. (ପତ୍-ତ୍ରୈ-ଅ) ପକ୍ଷିର ଡେଣା ।

ପତତ୍ରି, ପତତ୍ରୀ. ବ. ପୁଂ. ( ପତତ୍ର-ଇ, ଇନ୍ ) ବିହଙ୍ଗ, ଖଗ, ପକ୍ଷୀ ।

ପତନ, ବ. (ପତ-ଅନ) ଚଳନ, ସ୍ଖଳନ; ଭ୍ରଂଶ; ପାପ ।

ପତନୀ, ବିଂ. (ଦେଶଜ) ସରୁ; ଯଥା—ପତନୀ ଶାଢୀ ।

ପତରସଉରୁଣୀ, ବ. ସ୍ତ୍ରୀ. ପାର୍ବତୀୟ ସ୍ତ୍ରୀଜାତି-ବିଶେଷ ।

ପତାକା, ବ. ସ୍ତ୍ରୀ. ( ପତ୍-ଅକ-ଆ ) ଧ୍ୱଜା, ଧ୍ୱଜପଟ; ନାଟକର ଅଙ୍ଗବିଶେଷ ।

ପତାକୀ, ବିଂ. ( ପତାକ-ଇନ୍ ) ପତାକାଧାରୀ । ପୁଂ. ପଦାତି ।

ପତି, ବ. ପୁଂ. (ପା-ଅତି) ଭର୍ତ୍ତା, ସ୍ୱାମୀ; ନାୟକ; ପ୍ରଭୁ ।

ପତିଘାତିନୀ, ବ. ସ୍ତ୍ରୀ. (ପତି-ହନ୍-ଇନ୍-ଈ) ସ୍ୱାମି-ହତ୍ୟାକାରଣୀ, ପତିବିନାଶିନୀ ।

ପତିଘ୍ନି, ବ. ସ୍ତ୍ରୀ. ପତିନାଶକ ହସ୍ତରେଖାବିଶେଷ; ସ୍ୱାମିହତ୍ୟାକାରଣୀ ।

ପତିତ, ବିଂ. ( ପତ୍-ତ ) ଚଳିତ; ଗଳିତ; ଅଧୋଗତ; କ୍ଷରିତ; ଧର୍ମଚ୍ୟୁତ; ପାପୀ ।

ପତିତପାବନ, ବ. ପୁଂ. ପତିତର ପରିତ୍ରାଣ-କାରୀ ।

ପତିଦେବତା, ବ. ସ୍ତ୍ରୀ. (ପତି-ଦେବତା) ସତୀ, ସାଧ୍ୱୀ, ପତିବ୍ରତା ।

ପତିପ୍ରାଣା, ବ. ସ୍ତ୍ରୀ. ( ପତି-ପ୍ରାଣ ) ପତିବ୍ରତା, ସତୀ । ଯଥା—

ପତିପ୍ରାଣା ଜାନକୀ ହେଲେ ମୂର୍ଚ୍ଛିତ । କ. ବ.

ପତିମ୍ୱରା, ବ. ସ୍ତ୍ରୀ. (ପତି-ବୃ-ଆ) ସ୍ୱୟମ୍ବରା, ଯେଉଁ ସ୍ତ୍ରୀ ଅନେକ ପୁରୁଷ ମଧ୍ୟରୁ ପତି ମନୋନୀତ କରେ; କୃଷ୍ଣଜୀରକ, କଳାଜୀରା ।

ପତିବ୍ରତା, ବ. ସ୍ତ୍ରୀ. ( ପତି-ବ୍ରତ ) ଯାହାର ପତି ବ୍ରତର ତୁଲ୍ୟ ଅର୍ଥାତ୍ ସଦା ସେବ୍ୟ, ସତୀ, ସାଧ୍ୱୀ, ପତିପରାୟଣା ।

ପତିହୀନା, ବ. ସ୍ତ୍ରୀ. ( ପତି-ହୀନ ) ପତିରହିତ, ସ୍ୱାମିହୀନା, ବିଧବା ।

ପତ୍ତନ, ବ. ନ. (ପତ୍-ତନ) ଉପକ୍ରମ, ଆରମ୍ଭ; ନଗର, ସହର ; ଘଟଣା ; ଯେଉଁଠାରେ ଗମନର ବିସ୍ତାର ଅଛି ।

ପତ୍ତି, ବ.ପୁଂ. (ପଦ୍-ତି) ପଦାତିକ ସୈନ୍ୟ; ବୀର । ସ୍ତ୍ରୀ. ଗତି; ସେନାବିଶେଷ, ଏକ ହସ୍ତୀ, ଏକ ରଥ, ତିନି ଅଶ୍ୱ ଏବଂ ପଞ୍ଚ ପଦାତିକ ।

ପତ୍ନୀ, ବି. ସ୍ତ୍ରୀ. (ପତି-ଈ=ଜାୟାର୍ଥେ, ନ ଆଗମ) ପରିଣୀତା ସ୍ତ୍ରୀ, ଭାର୍ଯ୍ୟା, ଜାୟା ।

ପତ୍ର, ବି. ନ. (ପତ୍-ର) ଦଳ, ପତର; ବାଣର ପଖା; ପୁସ୍ତକାଦିର ପୃଷ୍ଠା; ପକ୍ଷିର ଡେଣା; ବାହନ; ଚିଠି; ଭୂଷା ।

ପତ୍ରଦାରକ, ବି. ପୁଂ. କରତ ।

ପତ୍ରରଥ, ବି. ପୁଂ. (ପତ୍ର-ରଥ) ପକ୍ଷୀ ।

ପତ୍ରଲତା, ବି. ସ୍ତ୍ରୀ. (ପତ୍ର-ଲତା) ତିଳକ, ପତ୍ରାବଳୀ ରଚନା; ପାନର ଗଛ ।

ପତ୍ରଲେଖା, ବି. ସ୍ତ୍ରୀ. ନ. ( ପତ୍ର-ଲେଖା ) କପୋଳାଦିରେ ପତ୍ରାବଳୀ ବିରଚନା,ତିଳକ ।

ପତ୍ରବଲ୍ଲୀ, ବି. ସ୍ତ୍ରୀ. ( ପତ୍ର-ବଲ୍ଲୀ ) ତିଳକ, ପତ୍ରାବଳୀ ରଚନା; ପାନର ଗଛ ।

ପତ୍ରବାଳ, ବି. ପୁଂ. ( ପତ୍ର-ବଲ୍-ଅ ) କ୍ଷେପଣୀ, ନୌକାଦଣ୍ଡ ।

ପତ୍ରବିଶେଷକ, ବି. ସ୍ତ୍ରୀ. ନ. (ପତ୍ର-ବିଶେଷକ) କପୋଳାଦିରେ ପତ୍ରାବଳୀ ବିରଚନ, ତିଳକ ।

ପତ୍ରାଞ୍ଜନ, ବି. ନ. (ପତ୍ର-ଅଞ୍ଜନ) ମସୀ, କାଳି ।

ପତ୍ରିକା, ପତ୍ରୀ, ବି. ସ୍ତ୍ରୀ. (ପତ୍ର-ଇକ-ଆ, ପତ୍ର-ଈ ) ଲିପି, ଚିଠି, ଭୂଷା ।

ପତ୍ରୀ, ବି. ପୁଂ. (ପତ୍ର-ଇନ୍) ପକ୍ଷୀ; ବାଣ । ବିଂ. ପତ୍ରବିଶିଷ୍ଟ ।

ପଥ, ବି. ପୁଂ. (ପଥ୍=ଗମନ କରିବା-ଅ) ରାସ୍ତା, ବାଟ; ଉପାୟ ।

ପଥର, ବି. (ପ୍ରସ୍ତର ଶବ୍ଦଜ) ପାଷାଣ । ଯଥା—

ନାଥର ହୃଦ ଏଥର ପଥର ହେଲ ରେ ।

ପଥି, ବି. ରୋଗିର ହିତକର ଆହାର ।

ପଥିକ, ବି. ପୁଂ. (ପଥିନ୍-କ) ଭ୍ରମଣକାରୀ, ପାନ୍ଥ, ବିଦେଶୀ, ବାଟୋଇ ।

ପଥିନ୍, ପଥି, ବି. ପୁଂ. (ପଥ୍-ଇନ୍, ଇ) ସ୍ୱର୍ଗର; ପଥ; ଉପାୟ; ରୀତି ।

ପଥୁରି, ବି. (ଦେଶଜ) ପଥର ବାସନ ।

ପଥ୍ୟ, ବିଂ. (ପଥି-ଯ) ହିତଜନକ । ବି. ପଥି, ରୋଗିର ଯୋଗ୍ୟ ଆହାର।

ପଦ, ବି. ନ. (ପଦ୍-ଅ) ଚରଣ; ଚରଣଚିହ୍ନ; ପଦ୍ୟାଂଶ; ବିଭକ୍ତିଯୁକ୍ତ ଶବ୍ଦ; ବିଶେଷ୍ୟାଦି ପାଞ୍ଚ ପ୍ରକାର; ଐଶ୍ୱର୍ଯ୍ୟ; ବ୍ୟବସାୟ ।

ପଦକ, ବି. ପୁଂ. ( ପଦ-କ ) କଣ୍ଠଭୂଷଣ । ଯଥା—

ହରେ ହଟଣ ବାହୁଣ ହଦେ ପଦକ ।

ଗୋଟିଏ କଥା ।

ପଦଗ, ବି. ପୁଂ. (ପଦ-ଗମ୍-ଅ) ପଦାତି ।

ପଦବି, ପଦବୀ, ବି. ସ୍ତ୍ରୀ. ( ପଦ୍-ଅବି ) ପଥ; ବ୍ୟବସାୟ; ଉପଗମ; ଉପାଧି; ସୋପାନ ।

ପଦା, ବି. (ଦେଶଜ) ପଡିଆ ।

ପଦାତି, ବି. ପୁଂ. (ପଦ-ଅତ୍-ଇ) ପାଦଗାମୀ ସୈନ୍ୟ; ପିଯ୍ୟାଦା ।

ପଦାର୍ଥ, ବି. ପୁଂ. (ପଦ-ଅର୍ଥ)· ଅଭିଧେୟ ପଦର ଅର୍ଥ; ବସ୍ତୁ, ଦ୍ରବ୍ୟ ।

ପଦାର୍ଥବିଦ୍ୟା, ବି. ସ୍ତ୍ରୀ. ଯେଉଁ ଶାସ୍ତ୍ରଦ୍ୱାରା ଜଡପଦାର୍ଥମାନଙ୍କର ଗୁଣ ଓ ଗଠନ ବିଷୟ ଜଣାଯାଏ ।

ପଦିକା, ବି. (ଦେଶଜ) ଭୂମିପରିମାପକ ଦଣ୍ଡ ।

ପଦ୍ଧତି, ବି. ସ୍ତ୍ରୀ. (ପଦ୍-ହନ୍-ତି) ପଥ; ଶ୍ରେଣୀ; ରୀତି; ଉପାଧି, ପଦବୀ ।

ପଦ୍ମ, ବି. ପୁଂ. ନ. ( ପଦ୍-ମ ) କମଳ; ସଂଖ୍ୟା-ବିଶେଷ; ସର୍ପବିଶେଷ; ନିଧିବିଶେଷ ।

ପଦ୍ମକ, ବି. ନ. ( ପଦ୍ମ-କ) ହସ୍ତିର ମସ୍ତକାଦିରେ ରକ୍ତବର୍ଣ୍ଣ ବିନ୍ଦୁ ବିନ୍ଦୁ ଚିହ୍ନ ।

ପଦ୍ମନାଭ, ବି. ପୁଂ- (ପଦ୍ମ-ନାଭି-ଅ) ବିଷ୍ଣୁ । ବିଂ. ପଦ୍ମପରି ନାଭିଯୁକ୍ତ ।

ପଦ୍ମପୁରାଣ, ବି. ନ. ବ୍ୟାସଦେବପ୍ରଣୀତ ମହା-ପୁରାଣବିଶେଷ ।

ପଦ୍ମବନ୍ଧ, ବି. ପୁଂ. ଚିତ୍ରକାବ୍ୟବିଶେଷ ।

ପଦ୍ମବନ୍ଧୁ, ବି. ପୁଂ. (ପଦ୍ମ-ବନ୍ଧୁ) ସୂର୍ଯ୍ୟ; ଭ୍ରମର ।

ପଦ୍ମଭୂ, ବି. ପୁଂ. (ପଦ୍ମ-ଭୂ) ବ୍ରହ୍ମା ।

ପଦ୍ମଯୋନ, ବି. ପୁଂ. ( ପଦ-ଯୋନ ) ବ୍ରହ୍ମା, ପିତାମହ ।

ପଦ୍ମରାଗ, ବି. ପୁଂ. ରକ୍ତବର୍ଣ୍ଣ ମଣିବିଶେଷ ।

ପଦ୍ମଲାଞ୍ଛନ, ବି.ପୁଂ.ନୃପ; ବ୍ରହ୍ମା; ସୂର୍ଯ୍ୟ; କୁବେର ।

ପଦ୍ମଲାଞ୍ଛନା, ବି. ସ୍ତ୍ରୀ. ଲକ୍ଷ୍ମୀ; ସରସ୍ୱତୀ; ଦୁର୍ଗା ।

ପଦ୍ମବାସା, ବି. ସ୍ତ୍ରୀ. ସରସ୍ୱତୀ; ଲକ୍ଷ୍ମୀ ।

ପଦ୍ମା, ବି. ସ୍ତ୍ରୀ. (ପଦ୍ମ-ଅ-ଆ) ଲକ୍ଷ୍ମୀ; ମନସା ଦେବୀ; ନଦୀବିଶେଷ; ଲବଙ୍ଗ ।

ପଦ୍ମାକର, ବି. ପୁଂ. ( ପଦ୍ମ-ଆକର ) ପଦ୍ମଯୁକ୍ତ ଜଳାଶୟ ।

ପଦ୍ମାଳୟା, ବି. ସ୍ତ୍ରୀ. (ପଦ୍ମ-ଆଳୟ-ଆ) ଲକ୍ଷ୍ମୀ ।

ପଦ୍ମାବତୀ, ବି. ସ୍ତ୍ରୀ. (ପଦ୍ମ-ବତ୍-ଈ) ମନସାଦେବୀ; ନଦୀବିଶେଷ ।

ପଦ୍ମାସନ, ବି. ନ. (ପଦ୍ମ-ଆସନ) ଯୋଗାସନ; ଉପବେଶନବିଶେଷ । ପୁଂ. ବ୍ରହ୍ମା ।

ପଦ୍ମିନୀ, ବି. ସ୍ତ୍ରୀ. ( ପଦ୍ମ-ଇନ୍-ଈ ) କମଳିନୀ; ଚତୁର୍ବିଧ ସ୍ତ୍ରୀ ମଧ୍ୟରେ ପ୍ରଥମା ସ୍ତ୍ରୀ ।

ପଦ୍ମିନୀକାନ୍ତ, ପଦ୍ମିନୀବଲ୍ଲଭ, ବି. ପୁଂ. (ପଦ୍ମିନୀ-କାନ୍ତ, ବଲ୍ଲଭ) ସୂର୍ଯ୍ୟ ।

ପଦ୍ମେଶୟ, ବି. ପୁଂ. (ପଦ୍ମେ-ଶୟ) ବିଷ୍ଣୁ ।

ପଦ୍ମୋଦ୍ଭବ, ବି. ପୁଂ. (ପଦ୍ମ-ଉଦ୍ଭବ) ବ୍ରହ୍ମା ।

ପଦ୍ୟ, ବି. ନ. (ପଦ୍-ଯ) ଶ୍ଳୋକ, ଛନ୍ଦୋଯୁକ୍ତ ବାକ୍ୟ ।

ପଧାନ, ବି. ପୁଂ. (ପ୍ରଧାନର ଅପଭ୍ରଂଶ) ଗ୍ରାମର ପ୍ରଧାନ ବ୍ୟକ୍ତି ।

ପନସ, ବି. ପୁଂ. (ପଣ୍-ଅସ) ପଣସ ଗଛ । ନ. ପଣସ ଫଳ ।

ପନି, ପନୀ, ଡ. (ଦେଶଜ) ଚଟକରର ପଦାର୍ଥବିଶେଷ ।

ପନ୍ଥା, ବି. ପୁଂ. ( ପଥିନ୍ ଶବ୍ଦଜ ) ପଥ; ଉପାୟ; ରାସ୍ତା ।

ପନାର, ବି. (ଦେଶଜ) ତୈଳ ।

ପନ୍ନ, ବିଂ. (ପଦ୍-ତ) ଚ୍ୟୁତ, ଗଳିତ ।

ପନ୍ନଗ, ବି. ପୁଂ. (ପଦ୍-ନ-ଗମ୍-ଅ) ସର୍ପ ।

ପନ୍ନଗାରି, ପନ୍ନଗାଶନ, ବି. ପୁଂ. ( ପନ୍ନଗ-ଅରି, ଅଶନ) ଗରୁଡ଼ ।

ପମ୍ପା, ବି. ସ୍ତ୍ରୀ. ନଦୀବିଶେଷ; ସରୋବରବିଶେଷ ।

ପୟଃ, ପୟସ, ବି. ନ. ( ପା-ଅସ୍, ଈସ ) ଦୁଗ୍ଧ; ଜଳ ।

ପୟଃପ୍ରଣାଳୀ, ବି. ସ୍ତ୍ରୀ. ଜଳନିର୍ଗମ ପଥ, ନର୍ଦ୍ଦମା ।

ପୟସ୍ୟ, ବିଂ. (ପୟସ୍-ଯ) ଦୁଗ୍ଧଦ୍ୱାରା ପ୍ରସ୍ତୁତ ।

ପୟସ୍ୱିନୀ, ବିଂ. (ପୟସ୍-ବିନ୍-ଈ) ଦୁଗ୍ଧବତୀ । ବି. ସ୍ତ୍ରୀ. ନଦୀ ।

ପଂୟାର, ବି. (ଦେଶଜ) ଚତୁର୍ଦ୍ଦଶାକ୍ଷର କବିତା-ବିଶେଷ ।

ପୟୋଜ, ବି. ନ. (ପୟସ୍-ଜନ୍-ଅ) ପଦ୍ମ ।

ପୟୋଦ, ବି. ପୁଂ. (ପୟସ୍-ଦା-ଅ) ମେଘ ।

ପୟୋଧର, ବି. ପୁଂ. ( ପୟସ୍-ଧୃ-ଅ ) ମେଘ; ସ୍ତନ; ନାରିକେଳ ।

ପୟୋଧି, ପୟୋନିଧି, ବି. ପୁଂ. (ପୟସ୍-ଧି, ନିଧି) ସମୁଦ୍ର, ସାଗର । ଯଥା—

ଅର୍ଣ୍ଣବ ନମିଲେ ସବେ ପୟୋଧି ସୃଜନେ । ମ. ସା.

ପୟୋମୁକ୍, ବି. ପୁଂ. (ପୟସ୍-ମୁଚ୍-୦ ) ଜଳଧର, ମେଘ ।

ପର, ବିଂ. (ପୃ-ଅ) ଆସକ୍ତ; ନଷ୍ଟ; ଶତ୍ରୁ; ଭିନ୍ନ-ଲୋକ; ପଶ୍ଚିପକ୍ଷ; ପ୍ରଧାନ । ବି. ପୁଂ. ପରମାତ୍ମା । ନ. ମୁକ୍ତି; ମୋକ୍ଷ, ବ୍ରହ୍ମ । କ୍ରି. ବିଂ. ଅନନ୍ତର, ପଶ୍ଚାତ୍; କେବଳ ।

ପରଃଶତ, (ପର-ଶତ ) ଶତାଧିକ । ବି. ନ. ଶତାଧିକ ସଂଖ୍ୟା ।

ପରଃଶ୍ୱଃ, ବିଂ. (ପର=ଅନନ୍ତର-ଶ୍ୱସ୍=ଭବିଷ୍ୟତ୍ କାଳ)ଆଗାମୀ ଦିବସର ପରଦିବସ, ପରଦିନ ।

ପରକନା, ବି. ନ. କଂଣ୍ଡା କାଟିବା ନିମନ୍ତେ ବ୍ୟବହୃତ ଯନ୍ତ୍ରବିଶେଷ ।

ପରକାଳ, ବି. ପୁଂ. (ପର-କାଳ) ଉତ୍ତରକାଳ, ଶେଷକାଳ; ପରଜନ୍ମ, ପରଲୋକ ।

ପରକୀୟ, ବିଂ. (ପର-କ-ଈୟ) ଅପରର ସମ୍ବନ୍ଧୀୟ; ଅନ୍ୟର । ସ୍ତ୍ରୀ. ନାୟିକାବିଶେଷ ।

ପରଖ, ବି. ( ପରୀକ୍ଷା ଶବ୍ଦଜ ) ପର୍ଯ୍ୟାଲୋଚନା; ବିବେଚନା କରିବା ।

ପରଗଣା, ବ. (ଯାବନିକ) ପ୍ରଦେଶ, ଚକଲା ।

ପରଗ୍ଳାନି, ବ. ସ୍ତ୍ରୀ. ପରନିନ୍ଦା ।

ପରଚ୍ଛିଦ୍ର, ବ. ନ. ଅନ୍ୟର ଦୋଷ, ପରର ଦୋଷ ।

ପରତନ୍ତ୍ର, ବିଂ. ପରାଧୀନ, ପରବଶ ।

ପରତ, ଅଂ. (ପର୍-ତ) ପରକାଳରେ ।

ପରତ୍ୱ, ବ. ନ. (ପର-ତ୍ୱ) ଗୁଣବିଶେଷ ।

ପରଦା, (ଯାବନିକ) ଯବନିକା; ଆବରଣ ।

ପରଦାର, ବ. ପୁଂ. ପରସ୍ତ୍ରୀ, ପରଭାର୍ଯ୍ୟା ।

ପରଦାରିକ, ବିଂ. (ପରଦାର-ଇକ) ପରସ୍ତ୍ରୀରେ ଆସକ୍ତ, ପରସ୍ତ୍ରୀଗମନକାରୀ ।

ପରଦେଶ, ବ. ପୁଂ. ସ୍ୱୀୟ ଅଧିକୃତ ଦେଶର ଭିନ୍ନଦେଶ ।

ପରନ୍ତପ, ବିଂ. (ପରଂ-ତପ) ଯେ ଶତ୍ରୁକୁ ତାପ ଦିଅନ୍ତି, ଶତ୍ରୁଦମନକାରୀ, ଯେ ଶତ୍ରୁକୁ କଷ୍ଟ ଦିଅନ୍ତି ।

ପରନ୍ତୁ, ଅଂ. (ପରମ୍-ତୁ) କିନ୍ତୁ; ଅଧିକନ୍ତୁ ।

ପରପଦ, ବ. ନ. (ପର-ପଦ) ଶ୍ରେଷ୍ଠପଦ; ଉତ୍କୃଷ୍ଟ-ସ୍ଥାନ; ମୁକ୍ତି, ମୋକ୍ଷ ।

ପରପିଣ୍ଡାଦ, ବିଂ. (ପର-ପିଣ୍ଡ-ଅଦ୍-ଅ) ପରାନ୍ନ-ଜୀବୀ, ପରାନ୍ନଦ୍ୱାରା ଯେ ଜୀବନ ଧାରଣ କରେ ।

ପରପୁରୁଷ, ବ. ପୁଂ. (ପର-ପୁରୁଷ) ଶ୍ରେଷ୍ଠ ପୁରୁଷ, ବିଷ୍ଣୁ; ସ୍ୱତନ୍ତ୍ର ପୁରୁଷ, ଅନ୍ୟ ପୁରୁଷ ।

ପରପୁଷ୍ଟ, ବ. ପୁଂ. (ପର-ପୁଷ୍ଟ) କୋକିଳ । ବିଂ. ପରପୋଷିତ ।

ପରପୂର୍ବା, ବ. ସ୍ତ୍ରୀ. (ପର-ପୂର୍ବ) ଯେଉଁ ସ୍ତ୍ରୀର ପୂର୍ବରେ ଅନ୍ୟ ସ୍ୱାମୀ ଥିଲା, ଯେଉଁ ସ୍ତ୍ରୀ ପୂର୍ବ ପତି ତ୍ୟାଗାନନ୍ତର ଅନ୍ୟ ପତି ଗ୍ରହଣ କରେ ।

ପରବ, ବ. (ପର୍ବନ୍ ଶବ୍ଦଜ) ଉତ୍ସବ, ଆନନ୍ଦ-ଜନକ କ୍ରିୟା ।

ପରବଶ, ବିଂ. (ପର-ବଶ) ଅନ୍ୟ ବ୍ୟକ୍ତିର ବଶୀଭୂତ, ପରାଧୀନ ।

ପରବାନା, (ଯାବନିକ) ହୁକୁମନାମା, ଆଜ୍ଞାପତ୍ର ।

ପରବ୍ରହ୍ମ, ବ. ନ. (ପର-ବ୍ରହ୍ମନ୍) ପରମେଶ୍ୱର, ପରମପୁରୁଷ ।

ପରଭାଗ, ବ. ପୁଂ. (ପର-ଭାଗ) ଶ୍ରେଷ୍ଠାଂଶ; ଉତ୍କୃଷ୍ଟ ଭାଗ୍ୟ; ସୁସମ୍ପଦ; ପରର ଭାଗ; ଶେଷ ଭାଗ ।

ପରଭୁକ୍ତା, ବ. ସ୍ତ୍ରୀ. (ପର-ଭୁଜ୍-ତ-ଆ) ଅନ୍ୟ ପୁରୁଷ ସମ୍ଭୋଗବିଶିଷ୍ଟା, ପରପୁରୁଷରତା ।

ପରଭୃତ, ବ. ପୁଂ.(ପର-ଭୃତ=ପୁଷ୍ଟ)କୋକିଳ । ବିଂ. ଅନ୍ୟର ପ୍ରତିପାଳିତ । ସ୍ତ୍ରୀ. କୋକିଳା ।

ପରମ, ବିଂ. (ପର-ମା-ଅ) ଉତ୍କୃଷ୍ଟ, ଶ୍ରେଷ୍ଠ, ପ୍ରଧାନ; ଶେଷ; ପ୍ରକୃତ; ଆଦ୍ୟ, ପ୍ରଥମ; ପ୍ରଣବ । ଯଥା—

ଦଶଇ ପରମ ମଙ୍ଗଳ ଶିରେ ଖେଳନ୍ତୀ ଜନ୍ତା । ଚ. ଚି.

ପରମଗତି, ବ. ସ୍ତ୍ରୀ. (ପରମ-ଗତି) ମୁକ୍ତି, ମୋକ୍ଷ । ବିଂ. ମୁକ୍ତିର ହେତୁ; ମୋକ୍ଷର ଉପାୟ ।

ପରମପଦ, ବ. ପୁଂ. ନ. ମୁକ୍ତି, ଅପବର୍ଗ ।

ପରମପୁରୁଷ, ବ. ପୁଂ. ପରମେଶ୍ୱର, ଜଗତର ଆଦିକାରଣ ।

ପରମର୍ଷି, ବ. ପୁଂ. (ପରମ-ଋଷି) ଶ୍ରେଷ୍ଠ ଋଷି; ବେଦବ୍ୟାସାଦି ଋଷି ।

ପରମହଂସ, ବ. ପୁଂ. (ପରମ-ହଂସ) ମହାଯୋଗୀ, ସିଦ୍ଧପୁରୁଷବିଶେଷ ।

ପରମାଣୁ, ବ. ପୁଂ. (ପରମ-ଅଣୁ) ପଦାର୍ଥର କ୍ଷୁଦ୍ରତମ ଅବିଭାଜ୍ୟ ଅଂଶ ।

ପରମାତ୍ମା, ବ. ପୁଂ. (ପରମ-ଆତ୍ମନ୍) ପରମେଶ୍ୱର, ପରବ୍ରହ୍ମ । ଯଥା—

ଅଦ୍ୱୈ ପରମାତ୍ମା ପ୍ରତି ନଇଲେ ଧାବତି । ମ. ଯା.

ପରମାନନ୍ଦ, ବ. ପୁଂ. (ପରମ-ଆନନ୍ଦ) ପରମାତ୍ମା ।

ପରମାୟୁଃ, ବ. ନ. (ପରମ-ଆୟୁସ୍) ଜୀବିତକାଳ, ଆୟୁଃ ।

ପରମାର୍ଥ, ବ. ପୁଂ. (ପରମ-ଅର୍ଥ) ତତ୍ତ୍ୱବିଷୟ; ଯଥାର୍ଥ; ଉତ୍କୃଷ୍ଟ ବସ୍ତୁ; ଧର୍ମ; ଧନ ।

ପରମାର୍ଥବିଦ୍, ବିଂ. (ପରମାର୍ଥ-ବିଦ୍) ଯାଥାର୍ଥ୍ୟ-ବେତ୍ତା; ଈଶ୍ୱରତତ୍ତ୍ୱଜ୍ଞ ।

ପରମେଶ, ବ. ପୁଂ. (ପରମ-ଈଶ) ବିଷ୍ଣୁ, ପରମେଶ୍ୱର ।

**ପରମେଶ୍ୱର**, ବି. ପୁଂ. ( ପରମ-ଈଶ୍ୱର ) ଶିବ ; ବିଷ୍ଣୁ ; ପରବ୍ରହ୍ମ, ଜଗଦୀଶ୍ୱର ।

**ପରମେଷ୍ଠୀ**, ବି. ପୁଂ. (ପରମେ-ସ୍ଥା-ଇନ୍ ) ପରମେଶ୍ୱର; ବ୍ରହ୍ମା; ଶିବ; ବିଷ୍ଣୁ ।

**ପରମ୍ପର**, ବିଂ. ଅନୁକ୍ରମ, ପରପର ।

**ପରମ୍ପରା**, ବି. ସ୍ତ୍ରୀ. (ପର-ପର-ଆ) ଧାରା, ଶ୍ରେଣୀ; ଅନୁକ୍ରମ; ବଂଶ ।

**ପରମ୍ପରୀଣ**, ବିଂ. ( ପରମ୍ପରା-ଈନ ) କ୍ରମାଗତ, ଧାରାବାହିକ ।

**ପରଲ**, ବି. (ଦେଶଜ) ନେତ୍ର ରୋଗବିଶେଷ ।

**ପରଲୋକ**, ବି. ପୁଂ. (ପର-ଲୋକ) ଲୋକାନ୍ତର; ମୃତ୍ୟୁ; ଅନ୍ୟଲୋକ ।

**ପରବଶ**, ବିଂ. (ପର–ବଶ) ଅନ୍ୟର ବଶୀଭୂତ ,

**ପରବାଣି**, ବି. ପୁଂ. ( ପର–ବାଣି ) ଧର୍ମାଧ୍ୟକ୍ଷ, ବତ୍ସରକ ; ବତ୍ସର ; ମୟୂର ; ଷଡ଼ାନନର ବାହନ ।

**ପରଶ**, ବି. ନ. ( ଦେଶଜ ଶବ୍ଦ ) ରତ୍ନବିଶେଷ, ପରଶ ପଥର ।

**ପରଶୁ**, ବି. ପୁଂ. (ପର-ଶୃ-ଉ) କୁଠାର, କୁରାଢ଼ୀ ।

**ପରଶୁଧର**, ବି. ପୁଂ. ( ପରଶୁ-ଧର ) ଗଣେଶ; ପରଶୁରାମ । ବିଂ. ପରଶୁଧାରୀ ।

**ପରଶୁରାମ**, ବି. ପୁଂ. ( ପରଶୁ-ରାମ ) ଜମଦଗ୍ନିର ପୁତ୍ର, ଭାର୍ଗବ, ଏ ପିତାଙ୍କ ଆଜ୍ଞା ପ୍ରତିପାଳନାର୍ଥ ମାତୃହତ୍ୟା କରିଥିଲେ, ପୃଥିବୀକୁ ଏକବିଂଶଥର ନିଃକ୍ଷତ୍ରିୟ କରିଥିଲେ ଏବଂ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନକୁ ବଧ କରିଥିଲେ ।

**ପରଶ୍ୱଃ**, ଅ. ପରଦିନ ।

**ପରସ୍ପର**, ବିଂ. ଅନ୍ୟୋନ୍ୟ, ଇତରେତର, ଏକକୁଆରେକ; ଉଭୟତଃ ।

**ପରା**, ଅ. (ପୃ-ଆ) ଉପସର୍ଗ; ଅହଙ୍କାର; ଗମନ; ପ୍ରାଧାନ୍ୟ; କ୍ଷତି; ଅତିକ୍ରମ; ବିକ୍ରମ; ଅଭିମୁଖ୍ୟ; ବଧ; ଅତିଶଯ୍ୟ; ତିରସ୍କାର; ବିମୋକ୍ଷ; ଅନାଦର; ଭଙ୍ଗ; ଗତି; ପ୍ରତ୍ୟାବୃତ୍ତି ।

**ପରାକ୍**, ବି. ପୁଂ. ( ପରା-ଅକ୍ ) ଦ୍ୱାଦଶଦିବସ ଉପବାସବ୍ରତ; ଖଡ୍ଗ; ରୋଗବିଶେଷ; ଜନ୍ତୁବିଶେଷ ।

**ପରାକାଷ୍ଠା**, ବିଂ. ଏକଶେଷ; ଶେଷ ।

**ପରାକୃତ**, ବିଂ. (ପରା-କୃ-ତ) ପ୍ରାକୃତ ।

**ପରାକ୍ରମ**, ବି. ପୁଂ. (ପରା-କ୍ରମ୍-ଅ) ବଳ, ବୀର୍ଯ୍ୟ, ଶକ୍ତି ।

**ପରାକ୍ରାନ୍ତ**, ବିଂ. (ପରା-କ୍ରମ-ତ) ପ୍ରଭାବଶାଳୀ, ଶୌର୍ଯ୍ୟସମ୍ପନ୍ନ, ଶକ୍ତିସମ୍ପନ୍ନ, ପରାକ୍ରମଶାଳୀ ।

**ପରାଗ**, ବି. ପୁଂ. (ପରା-ଗ) ଧୂଳି; ପୁଷ୍ପରେଣୁ; ଗନ୍ଧଚୂର୍ଣ୍ଣ; ଗିରିବିଶେଷ; ଉପରାଗ ।

**ପରାଗତ**, ବିଂ. (ପରା-ଆ-ଗମ୍-ତ) ଯୁକ୍ତ; ବ୍ୟାପ୍ତ ; ପ୍ରତ୍ୟାଗତ ।

**ପରାଙ୍ମୁଖ**, ବିଂ. (ପରାଙ୍-ମୁଖ) ବିମୁଖ; ନିବୃତ୍ତ; ପ୍ରତିକୂଳ; ମୁହଁ ବୁଲାଇବା ।

**ପରାଞ୍ଚ**, ବିଂ. (ପରା-ଅନ୍‌ଚ-୦) ପରାଙ୍ମୁଖ, ବିମୁଖ ।

**ପରାଚିତ**, ବିଂ. (ପର–ଆଚିତ) ପରକର୍ତ୍ତୃକ ପରିପାଳିତ; ସମ୍ୟଗ୍ ବ୍ୟାପ୍ତ ।

**ପରାଚୀନ**, ବିଂ. (ପରାଚ୍-ଈନ) ବିମୁଖ, ପରାଙ୍ମୁଖ; ପୁରାତନ, ପ୍ରାଚୀନ ।

**ପରାଜୟ**, ବି. ପୁଂ. (ପରା-ଜି-ଅ) ପରାଭବ, ହାରିଯିବାର ।

**ପରାଜିତ**, ବିଂ. ( ପରା-ଜିତ ) ବିଜିତ, ପରାଭୂତ, ଯେ ହାରି ଯାଇଅଛି ।

**ପରାଧୀନ**, ବିଂ. (ପର-ଅଧୀନ) ପରତନ୍ତ୍ର, ପରାୟତ୍ତ, ପରବଶ ।

**ପରାନ୍ନ**, ବିଂ. ( ପର–ଅନ୍ନ ) ପରାନ୍ନଭୋଜୀ । ବି. ନ. ପରର ଅନ୍ନ ।

**ପରାଭବ**, ବି. ପୁଂ. (ପରା-ଭୂ-ଅ) ପରାଜୟ; ଅତିକ୍ରମ; ବିନାଶ; ତିରସ୍କାର ।

**ପରାଭୂତ**, ବିଂ. ( ପରା-ଭୂ-ତ ) ପରାଜିତ, ପରାସ୍ତ, ତିରସ୍କୃତ ।

**ପରାମର୍ଶ**, ବି. ପୁଂ. ( ପରା-ମୃଶ୍-ଅ ) ମନ୍ତ୍ରଣା, ବିଚାର; ଯୁକ୍ତି ।

ପରାୟଣ, ବିଂ. (ପର-ଅୟନ) ଅନୁରକ୍ତ, ଆସକ୍ତ । ବି. ନ. ଶ୍ରେଷ୍ଠ ଆଶ୍ରୟ, ଉତ୍ତମ ଅବଲମ୍ବନ । ବି. ପୁଂ. ବିଷ୍ଣୁ ।

ପରାରି, ଅଂ. (ପର-ଅରି) ଗତବର୍ଷର ପୂର୍ବ ବର୍ଷରେ ।

ପରାର୍ଦ୍ଧ, ବି. ନ. (ପର-ଅର୍ଦ୍ଧ) ବ୍ରହ୍ମାଙ୍କ ପରମାୟୁର ଅର୍ଦ୍ଧ; ସଂଖ୍ୟାବିଶେଷ ।

ପରାବର୍ତ୍ତ, ବି. ପୁଂ. ( ପରା-ବୃତ୍-ଅ ) ପରିବର୍ତ୍ତନ, ବିନିମୟ; ପ୍ରତିଦାନ; ପ୍ରତ୍ୟାବର୍ତ୍ତନ, ପୁନରାଗମନ ।

ପରାବର୍ତ୍ତିତ, ବିଂ. (ପରା-ବୃତ୍-ତ) ପ୍ରତ୍ୟାବର୍ତ୍ତିତ ।

ପରାବୃତ୍ତି, ବି. ସ୍ତ୍ରୀ. (ପରା-ବୃତ୍-ତି) ପ୍ରତ୍ୟାବର୍ତ୍ତନ, ପରିବର୍ତ୍ତନ ।

ପରାଶର, ବି. ପୁଂ. (ପର-ଆ-ଶୃ-ଅ) ବ୍ୟାସଦେବଙ୍କ ପିତା, ସ୍ମୃତିଶାସ୍ତ୍ରପ୍ରଣେତା ଋଷିବିଶେଷ ।

ପରାସନ, ବି. ନ. (ପର-ଅସ୍-ଅନ) ହତ୍ୟା, ବଧ ।

ପରାସୁ, ବିଂ. (ପର-ଅସୁ) ମୃତ, ଗତପ୍ରାଣ ।

ପରାସୁତା, ବି. ନ. ( ପରାସୁ-ତା ) ମୃତ୍ୟୁ; ନିଦ୍ରାବଶତା ।

ପରାସ୍ତ, ବିଂ. (ପରା-ଅସ୍-ତ) ପରାଜିତ ।

ପରାହ୍ନ, ବି. ପୁଂ. (ପର-ଅହନ୍ ) ପରଦିନ ।

ପରାହତ, ବିଂ. ( ପରା-ହନ୍-ତ ) ପରାଭୂତ ; ତିରସ୍କୃତ; ଆହତ; ଆକ୍ରାନ୍ତ ।

ପରାହ୍ଣ, ବି. ପୁଂ. (ପର-ଅହନ୍-ଅ) ଅପରାହ୍ଣ, ଉପର ଓଳି, ଦିବସର ଶେଷଭାଗ ।

ପରି, ଅଂ. ( ପୃ-ଇନ୍ ) ସର୍ବତୋଭାବେ ; ତୁଲ୍ୟ, ସଦୃଶ ।

ପରିକର, ବି. ପୁଂ. (ପରି-କୃ-ଅ) ଶଯ୍ୟା; ପରିଚର; ଚାକର; ଆରମ୍ଭ; ନିଷ୍ପତ୍ତି । ବିଂ. ସାହାଯ୍ୟକାରୀ ।

ପରିକର୍ମ, ବି. ପୁଂ. ( ପରି-କର୍ମନ୍ ) ପରିକର, ଚାକର, ପରିଚାରକ ।

ପରିକଳ୍ପିତ, ବିଂ. ( ପରି-କ୍ଳପ୍-ତ ) ଅନୁଷ୍ଠିତ, ନିର୍ଦ୍ଦିଷ୍ଟ; ରଚିତ; ସ୍ଥିରୀକୃତ ।

ପରିକୀର୍ଣ୍ଣ, ବିଂ. (ପରି-କୄ-ତ) ବିସ୍ତୃତ; ସମର୍ପିତ; ପ୍ରସାରିତ; ପ୍ରଚାରିତ ।

ପରିକୀର୍ତ୍ତିତ, ବିଂ. ( ପରି-କୀର୍ତ୍ତିତ ) ପ୍ରଶଂସିତ; ଉଚ୍ଚାରିତ; ବିଖ୍ୟାତ ।

ପରିକ୍ରମ, ବି. ପୁଂ. (ପରି-କ୍ରମ) ଗମନ; ପ୍ରଦକ୍ଷିଣ କରିବା; ବିହାର ।

ପରିକ୍ରୟ, ବି. ପୁଂ. ବିକ୍ରୀତବସ୍ତୁର ପୁନଃ କ୍ରୟ ।

ପରିକ୍ରିୟା, ବି. ସ୍ତ୍ରୀ. (ପରି-କ୍ରିୟା) ପରିଖାଦିଦ୍ୱାରା ବେଷ୍ଟନ; ସଂସ୍ତରଣ ।

ପରିକ୍ଲିଷ୍ଟ, ବିଂ. ( ପରି-କ୍ଲିଶ୍-ତ ) ପରିକ୍ଷତ; ଅତିକ୍ଲିଷ୍ଟ; ବିରକ୍ତ ।

ପରିକ୍ଷୟ, ବି. ପୁଂ. (ପରି-କ୍ଷୟ) ବିନାଶ, ଧ୍ୱଂସ; ପତନ ।

ପରିକ୍ଷିତ୍, ବି. ପୁଂ. (ପରି-କ୍ଷି-୦) ଚନ୍ଦ୍ରବଂଶୀୟ ନୃପବିଶେଷ, ଅର୍ଜୁନର ପୌତ୍ର; ଅଭିମନ୍ୟୁର ପୁତ୍ର, ଜନ୍ମେଜୟର ପିତା ।

ପରିଖା, ବି. ସ୍ତ୍ରୀ. (ପରି-ଖନ୍-ଅ-ଆ) ଚତୁର୍ଦ୍ଦିଗରେ ଖାଲ, ଖାତଦ୍ୱାରା ବେଷ୍ଟନ, ଗଡ଼ଖାଇ ।

ପରିଗଣିତ, ବିଂ. ( ପରି-ଗଣିତ ) ସଂଖ୍ୟାତ, ଯାହା ଗଣନା କରା ହୋଇଅଛି ।

ପରିଗୃହୀତ, ବିଂ. ( ପରି-ଗ୍ରହ୍-ତ ) ସ୍ୱୀକୃତ; ଯାହା ଗ୍ରହଣ କରା ହୋଇଅଛି; ପ୍ରାପ୍ତ; ଲବ୍ଧ; ସମ୍ମତ; ଅନୁଷ୍ଠିତ; ସଂଯତ ।

ପରିଗ୍ରହ, ବି. ପୁଂ. (ପରି-ଗ୍ରହ-ଅ) ପତ୍ନୀ; ପରିଜନ; ସ୍ୱୀକାର; ଦାନଗ୍ରହଣ । ଯଥା—

ଏ ସର୍ବ ଗୁଣ ବହେ ଦେହ, ଜୀବର ନୋହେ ପରିଗ୍ରହ ।

ପରିଗ୍ରାହକ, ବି. ପୁଂ. (ପରି-ଗ୍ରହ୍-ଅକ) ସ୍ୱୀକାରକର୍ତ୍ତା, ସ୍ୱୀକାରକ ।

ପରିଘ, ବି, ପୁଂ. (ପରି-ହନ୍-ଅ) ଲୌହମୁଖ ମୁଦ୍ଗର; ଅର୍ଗଳ; ଶୂଳ ।

ପରିଘାତ, ବି. ପୁଂ. (ପରି-ହନ୍-ଅ) ଲୌହମୁଖ ମୁଦ୍ଗର; ବ୍ୟାଘାତ; ପ୍ରତିବନ୍ଧ ।

ପରିଚୟ, ବି. ପୁଂ. (ପରି-ଚି-ଅ) ପ୍ରଣୟ; ଅଭ୍ୟାସ; ଜଣାଶୁଣା; ଜ୍ଞାନ; ଚିହ୍ନିବା ।

ପରିଚର, ବି. ପୁଂ. (ପରି-ଚୃ-ଅ) ପରିଚାରକ, ଅନୁଚର; ସେନାପତି ।

ପରିଚର୍ଯ୍ୟା, ବ. ସ୍ତ୍ରୀ. (ପରି-ଚର୍‌-ଯ-ଆ) ସେବା; ଉପାସନା ।

ପରିଚାରକ, ବ. ପୁଂ. (ପରି-ଚର୍‌-ଅକ) ଦାସ, ସେବକ ।

ପରିଚାରିକା, ବ. ସ୍ତ୍ରୀ. (ପରି-ଚର୍‌-ଅକ-ଆ) ଦାସୀ, ପରିଚାରିଣୀ ।

ପରିଚାର୍ଯ୍ୟ, ବଂ. (ପରି-ଚର୍‌-ଯ) ସେବ୍ୟ, ଶୁଶ୍ରୂଷଣୀୟ ।

ପରିଚିତ, ବଂ. (ପରି-ଚି-ତ) ଜ୍ଞାତ, ଚିହ୍ନିତ ।

ପରିଚ୍ୟୁତ, ବଂ. (ପରି-ଚ୍ୟୁ-ତ) ସ୍ଖଳିତ; ପତିତ; ଭ୍ରଷ୍ଟ ।

ପରିଚ୍ଛଦ, ବ. ପୁଂ. (ପରି-ଛଦ୍‌-ଅ) ବେଶ, ପୋଷାକ; ଅନୁଚର; ପରିଜନ, ପରିବାର; ଆଚ୍ଛାଦନ; ହସ୍ତ୍ୟଶ୍ୱାଦି ଉପକରଣ ।

ପରିଚ୍ଛନ୍ଦ, ବ. ପୁଂ. ପରିଚ୍ଛଦ, ପୋଷାକ; ସଙ୍ଗି-ସମୂହ ।

ପରିଚ୍ଛନ୍ନ, ବଂ. (ପରି-ଛଦ୍‌-ତ) ପରିଷ୍କୃତ; ଆଚ୍ଛାଦିତ, ଆଚ୍ଛନ୍ନ; ଅଭିଭୂତ, ସଜ୍ଜିତ; ପରିଶୁଦ୍ଧ; ପରିଚ୍ଛଦଯୁକ୍ତ ।

ପରିଚ୍ଛା, ବ. (ପରୀକ୍ଷକ ଶବ୍ଦଜ) ଅଧ୍ୟକ୍ଷ, ତତ୍ତ୍ୱାବ-ଧାରକ ।

ପରିଚ୍ଛିନ୍ନ, ବଂ. (ପରି-ଛିଦ୍‌-ତ) ସୀମାବଦ୍ଧ; ନିର୍ଣ୍ଣୀତ; ଉତ୍କୃଷ୍ଟ; ପରିଷ୍କୃତ, ସ୍ୱଚ୍ଛ; ଲୁପ୍ତ ।

ପରିଚ୍ଛେଦ, ବ. ପୁଂ. (ପରି-ଛିଦ୍‌-ଅ) ସୀମାନିର୍ଣ୍ଣୟ; ବିଭାଗ; ଗ୍ରନ୍ଥାଦିର ଅଧ୍ୟାୟ; ଅଂଶ, ଭାଗ ।

ପରିଚ୍ଛେଦ୍ୟ, ବଂ. (ପରି-ଛିଦ୍‌-ଯ) ଇୟତ୍ତାରୂପେ ଅବଧାର୍ଯ୍ୟ; ବିଭାଜ୍ୟ; ପରିମେୟ ।

ପରିଜନ, ବ. ପୁଂ. (ପରି-ଜନ) ପରିଚାରକ; ପରିବାର, କୁଟୁମ୍ବ ।

ପରିଜ୍ଞାନ, ବ. ନ. (ପରି-ଜ୍ଞା-ଅନ) ସର୍ବତୋ-ଭାବରେ ଅବଗତ ହେବାର ।

ପରିଡ଼ା, (ଦେଶଜ) ଶୂଦ୍ରଜାତିବିଶେଷର ଉପାଧି-ବିଶେଷ ।

ପରିଣତ, ବଂ. (ପରି-ନମ୍‌-ତ) ପକ୍ୱ; ଅବସ୍ଥାନ୍ତର ପ୍ରାପ୍ତ; ନତ ।

ପରିଣତି, ବ. ସ୍ତ୍ରୀ. (ପରି-ନମ୍‌-ତି) ପରିପାକ; ଅବସ୍ଥାନ୍ତରପ୍ରାପ୍ତି; ଶେଷ; ବାର୍ଦ୍ଧକ୍ୟ ।

ପରିଣୟ, ବ. ପୁଂ. (ପରି-ନୀ-ଅ) ବିବାହ, ଦାରପରିଗ୍ରହ, ପାଣିଗ୍ରହଣ ।

ପରିଣାମ, ବ. ପୁଂ. (ପରି-ନମ୍‌-ଅ) ପରିପାକତା; ଅବସ୍ଥାନ୍ତରପ୍ରାପ୍ତି; ବାର୍ଦ୍ଧକ୍ୟ, ଚରମଦଶା, ଶେଷ ।

ପରିଣାମଦର୍ଶୀ, ବଂ. (ପରିଣାମ-ଦୃଶ୍‌-ଇନ୍‌) ଦୂରଦର୍ଶୀ, ବିଜ୍ଞ, ବିଚକ୍ଷଣ, ଯେ ଉତ୍ତର-କାଳକୁ ବିବେଚନା କରି କାର୍ଯ୍ୟ କରେ ।

ପରିଣାହ, ପରୀଣାହ, ବ. ପୁଂ. (ପରି-ନହ୍‌-ଅ) ବିଶାଳତା, ବିସ୍ତାର, ଓସାର ।

ପରିଣୀତ, ବଂ. (ପରି-ନୀ-ତ) ବିବାହିତ ।

ପରିଣେତା, ବ. ପୁଂ. (ପରି-ନୀ-ତୃ) ବିବାହକର୍ତ୍ତା, ପତି ।

ପରିଣେୟ, ବଂ. (ପରି-ନୀ-ଯ) ବିବାହଯୋଗ୍ୟ ।

ପରିତଃ, କ୍ରି. ବିଂ. ଅଂ. (ପରି-ତସ୍‌) ସର୍ବତୋ-ଭାବରେ, ସମ୍ପୂର୍ଣ୍ଣରୂପରେ; ଚତୁର୍ଦ୍ଦିଗରେ ।

ପରିତାପ, ବ. ପୁଂ. (ପରି-ତପ୍‌-ଅ) ଦୁଃଖ, ଶୋକ, ସନ୍ତାପ, ମାନସିକ କ୍ଲେଶ, ମନସ୍ତାପ; ଉତ୍ତାପ; ନରକବିଶେଷ; ଭୟ; କମ୍ପ ।

ପରିତୁଷ୍ଟ, ବଂ. (ପରି-ତୁଷ୍‌-ତ) ଆହ୍ଲାଦିତ, ସନ୍ତୁଷ୍ଟ, ପରିତୃପ୍ତ, ପରିତୋଷପ୍ରାପ୍ତ ।

ପରିତୋଷ, ବ. ପୁଂ. (ପରି-ତୁଷ୍‌-ଅ) ସନ୍ତୋଷ, ତୃପ୍ତି ।

ପରିତ୍ୟକ୍ତ, ବଂ. (ପରି-ତ୍ୟଜ୍‌-ତ) ଯାହା ପରିତ୍ୟାଗ କରି ଯାଇଅଛି ଅବା ପରିତ୍ୟାଗ କରିବାର ଯୋଗ୍ୟ ।

ପରିତ୍ୟାଗ, ବ. ପୁଂ. (ପରି-ତ୍ୟଜ୍‌-ଅ) ବିସର୍ଜନ, ବର୍ଜନ, ତ୍ୟାଗ ।

ପରିତ୍ରାଣ, ବ. ନ. (ପରି-ତ୍ରୈ-ଅନ) ରକ୍ଷା, ଉଦ୍ଧାର ।

ପରିତ୍ରାତା, ବିଂ. (ପରି-ତ୍ରୈ-ତୃ) ପରିତ୍ରାଣକାରକ, ରକ୍ଷାକର୍ତ୍ତା, ରକ୍ଷକ ।

ପରିଦାନ, ବି. ନ. (ପରି-ଦାନ) ବିନିମୟ, ବଦଳ ।

ପରିଦାୟୀ, ବିଂ. (ପରି-ଦା-ଇନ୍) ଯେ ବ୍ୟକ୍ତି ଶାସ୍ତ୍ରଦୋଷ ଲଙ୍ଘନ କରି ଦାନ କରେ, ଜ୍ୟେଷ୍ଠ ଅବିବାହିତ ଥାଉଁ ଥାଉଁ କନିଷ୍ଠକୁ ଯେ କନ୍ୟାଦାନ କରେ ।

ପରିଦେବନ, ନ. } ବି. (ପରିଦେବ-ଅନ,ଆ)
ପରିଦେବନା, ସ୍ତ୍ରୀ. } ବିଳାପ, ଅନୁତାପ ।

ପରିଧାନ, ବି. ନ. (ପରି-ଧା-ଅନ) ପରିଧେୟ-ବସ୍ତ୍ର; ଆଚ୍ଛାଦନ ।

ପରିଧାପନ, ବି. ନ. (ପରି-ଧାପି-ଅନ) ପରିଧେୟ-ବସ୍ତ୍ର, ପିନ୍ଧିବା ।

ପରିଧାବନ, ବି. ନ. ପଶ୍ଚାଦ୍ଧାବନ, ଅନୁଗମନ; ଅନୁଶୀଳନ; ପର୍ଯ୍ୟାଲୋଚନା ।

ପରିଧି, ବି. ପୁଂ. (ପରି-ଧା-ଇ) ଚନ୍ଦ୍ର ସୂର୍ଯ୍ୟଙ୍କର ମଣ୍ଡଳ; ପରିବେଷ୍ଟନ, ପରିବେଶ; ବୃତ୍ତର ସୀମା ।

ପରିଧିସ୍ଥ, ବିଂ. (ପରିଧି-ସ୍ଥ) ପରିଚାରକ, ଅନୁଚର; ଚତୁଃପାର୍ଶ୍ୱସ୍ଥ; ଯୁଦ୍ଧକାଳରେ ଶତ୍ରୁ-ଘାତରୁ ରଥ ରକ୍ଷାକାରକ; ସୈନ୍ୟମାନଙ୍କ ପ୍ରତି ରାଜାର ଦଣ୍ଡବିଧାୟକ ।

ପରିଧେୟ, ବିଂ. (ପରି-ଧା-ଯ) ପିନ୍ଧିବାର ଉପଯୁକ୍ତ, ପିନ୍ଧିବାର ଯୋଗ୍ୟ ।

ପରିପକ୍ୱ, ବିଂ. (ପରି-ପକ୍ୱ) ସୁଜୀର୍ଣ୍ଣ, ପାଚିଲା, ପରିଣତ; ବହୁଦର୍ଶୀ; ସଂସ୍କୃତ; ପକ୍ୱ; ଚତୁର; ପଟୁ, ନିପୁଣ ।

ପରିପନ୍ଥକ, ପରିପନ୍ଥୀ, ବିଂ. (ପରି-ପନ୍ଥକ, ପନ୍ଥିନ୍) ଶତ୍ରୁ, ବିପକ୍ଷ, ଦସ୍ୟୁ ।

ପରିପାକ, ବି. ପୁଂ. (ପରି-ପଚ୍-ଅ) ପରିଣାମ, ଶେଷାବସ୍ଥା; ପକ୍ୱତା; ଉତ୍ତମ ପାକ ।

ପରିପାଟି, ପରିପାଟୀ, ବି. ସ୍ତ୍ରୀ. (ପରି-ପଟ୍-ଇନ୍) ସୁଶୃଙ୍ଖଳା, ସୁନ୍ଦର; ଉତ୍ତମ; ଅନୁକ୍ରମ; ଆନୁପୂର୍ବୀ ।

ପରିପାଳନ, ବି. ନ. (ପରି-ପାଳ-ଅନ) ପାଳନ-କରିବା, ରକ୍ଷା କରିବା ।

ପରିପାଳିତ, ବିଂ. (ପରି-ପାଳ-ତ) ରକ୍ଷିତ, ପୋଷିତ ।

ପରିପୂତ, ବିଂ. (ପରି-ପୂତ) ପବିତ୍ର, ଶୁଦ୍ଧ; ପରିଷ୍କୃତ ।

ପରିପୂର୍ଣ୍ଣ, ବିଂ. (ପରି-ପୃ-ତ) ସମ୍ପୂର୍ଣ୍ଣ; ବ୍ୟାପ୍ତ; ପରିତୃପ୍ତ; ପ୍ରଚୁର, ଯଥେଷ୍ଟ ।

ପରିପୂର୍ଣ୍ଣତା, ବି. ସ୍ତ୍ରୀ. (ପରି-ପୂର୍ଣ୍ଣ-ତା) ସମ୍ପୂର୍ଣ୍ଣତା; ପରିତୃପ୍ତି ।

ପରିପ୍ଲବ, ବିଂ. (ପରି-ପ୍ଲୁ-ଅ) କମ୍ପମାନ, ଚପଳ, ଚଞ୍ଚଳ,ଅସ୍ଥିର । ବି. ପୁଂ. ମଜ୍ଜନ; ପରିପ୍ଲାବନ; ପୀଡ଼ନ ।

ପରିପ୍ଲୁତ, ବିଂ. (ପରି-ପ୍ଲୁ-ତ) ସିକ୍ତ, ଜଳାଦିଦ୍ୱାରା ପ୍ଲାବିତ ।

ପରିଭବ, ବି. ପୁଂ. (ପରି-ଭୂ-ଅ) ପରାଭବ, ପରା-ଜୟ, ଅବଜ୍ଞା, ଅନାଦର, ତିରସ୍କାର ।

ପରିଭାଷଣ, ବି. ନ. (ପରି=ଦୋଷକୀର୍ତ୍ତନ-ଭାଷଣ =କଥନ) ନିନ୍ଦାପୂର୍ବକ ତିରସ୍କାର, ନିନ୍ଦା-ବାକ୍ୟ; ଆଳାପ, କଥୋପକଥନ ।

ପରିଭାଷା, ବି. ସ୍ତ୍ରୀ. (ପରି-ଭାଷା) ସଂକ୍ଷେପାର୍ଥ; ସଙ୍କେତବିଶେଷ; ଗ୍ରନ୍ଥ ସଂକ୍ଷେପ କରିବାପାଇଁ ସାଙ୍କେତିକ ନିୟମସମୂହ ।

ପରିଭାଷିତ, ବିଂ. (ପରି-ଭାଷ୍-ତ) ଅବଧାରିତ; ଉକ୍ତ, କଥିତ ।

ପରିଭୂତ, ବିଂ. (ପରି-ଭୂ-ତ) ଅଭିଭୂତ, ତିର-ସ୍କୃତ, ଅବଜ୍ଞାତ, ଅନାଦୃତ ।

ପରିଭୋଗ, ବି. ପୁଂ. (ପରି-ଭୁଜ୍-ଅ) ଉପଭୋଗ, ସମ୍ଭୋଗ; ଆସ୍ୱାଦନ; ସମ୍ଭୋଗ ଚିହ୍ନ ।

ପରିଭ୍ରମ, ବି. ପୁଂ. (ପରି-ଭ୍ରମ) ପରିଭ୍ରମଣ, ପର୍ଯ୍ୟଟନ, ବୁଲିବାର ।

ପରିଭ୍ରଷ୍ଟ, ବିଂ. (ପରି-ଭ୍ରଷ୍ଟ) ପତିତ, ଚ୍ୟୁତ, ନଷ୍ଟ; ଧ୍ୱସ୍ତ ।

ପରିମର୍ଷ, ବି. ପୁଂ. (ପରି-ମୃଷ୍=ସହ୍ୟ କରିବା-ଅ) ଈର୍ଷା, ଅସୂୟା, ଦ୍ୱେଷ ।

ପରିମଳ, ବି. ପୁଂ. (ପରି-ମଳ) ମର୍ଦ୍ଦନଜନିତ ଗନ୍ଧ; ସୁଗନ୍ଧ; ସର୍ବତୋଭାବରେ ସମ୍ବନ୍ଧ; ପଣ୍ଡିତସମୂହ ।

ପରିମାଣ, ବି. ନ. (ପରି-ମା-ଅନ) ମାପ, ଓଜନ, ସଂଖ୍ୟାକରଣ ।

ପରିମାଣଫଳ, ବି. ଭୂମିର ସୀମାନ୍ତର୍ଗତ ସ୍ଥାନର ପରିମାଣ, କ୍ଷେତ୍ରଫଳ ।

ପରିମିତ, ବିଂ. ( ପରି-ମା-ତ ) ଯଥାଯୋଗ୍ୟ ପରିମାଣଯୁକ୍ତ; ଅଳ୍ପ ।

ପରିମିତି, ବି. ସ୍ତ୍ରୀ. (ପରି-ମା-ତି) ପରିମାଣ ।

ପରିମେୟ, ବିଂ. (ପରି-ମା-ଯ) ପରିମାଣର ଯୋଗ୍ୟ, ପରିମିତ ।

ପରିମୋକ୍ଷ, ବି. ପୁଂ. (ପରି-ମୋକ୍ଷ୍-ଅ) ମୋଚନ, ଭଙ୍ଗ ।

ପରିରମ୍ଭ, ପରୀରମ୍ଭ, ବି. ପୁଂ. ( ପରି-ରଭ୍-ଅ ) ଆଲିଙ୍ଗନ । ଯଥା—

ପଲକଜନିତ ଦୃଷ୍ଟିବାଧା ହେଲା ସମ୍ଭ୍ରମର ପ୍ରାପ୍ତେ ସତେ ।
ପୁଲକ ଅନ୍ତର ପରିରମ୍ଭେ ପୁଣି ଯୋଜନ ବେନିଙ୍କ ମତେ ।
ଯ. ବେ

ପରିବର୍ଜନ, ବି. ନ. ( ପରି-ବୃଜ୍-ଅନ ) ପରିତ୍ୟାଗ, ବିସର୍ଜନ; ହତ୍ୟା, ବଧ ।

ପରିବର୍ତ୍ତ, ପୁଂ. } ପରିବର୍ତ୍ତନ, ନ. } ବି. ( ପରି-ବୃତ୍-ଅ, ଅନ ) ବିନିମୟ; ବଦଳ; ନିବୃତ୍ତି ।

ପରିବର୍ତ୍ତିତ, ବିଂ. ( ପରି-ବର୍ତ୍ତି-ତ ) ଯାହା ବଦଳ କରା ହୋଇଅଛି ।

ପରିବର୍ଦ୍ଧିତ, ବିଂ. ( ପରି-ବୃଧ୍-ତ ) ଯାହା ବଢ଼ାଯାଇଅଛି ।

ପରିବା, ବି. (ଦେଶଜ) କଞ୍ଚା ତରକାରି ।

ପରିବାଦ, ପରୀବାଦ, ବି. ପୁଂ. ( ପରି-ବାଦ ) ଅପବାଦ, ନିନ୍ଦା ।

ପରିବାଦକ, ବିଂ. ( ପରି-ବଦ୍-ଅକ ) ନିନ୍ଦାକାରୀ, ଅପବାଦକ, ଦୋଷକୀର୍ତ୍ତକ ।

ପରିବାଦିନୀ, ବି. ସ୍ତ୍ରୀ. (ପରି-ବଦ୍-ଇନ୍-ଈ) ସପ୍ତତନ୍ତ୍ରବିଶିଷ୍ଟ ବୀଣା ।

ପରିବାଦୀ, ବି. ପୁଂ. ( ପରିବାଦ-ଇନ୍ ) ନିନ୍ଦୁକ, ଅପବାଦକ ।

ପରିବାପନ, ବି. ନ. (ପରି-ବାପି-ଅନ ) ମୁଣ୍ଡନ; ବପନ; ପରିଚ୍ଛେଦ ।

ପରିବାପିତ, ବିଂ. (ପରିବାପ-ଇତ) ମୁଣ୍ଡିତ; ରୋପିତ ।

ପରିବାର, ପରୀବାର, ବି. ପୁଂ. (ପରି-ବୃ-ଅ) ପରିଜନ; ପୋଷ୍ୟ; କୁଟୁମ୍ବ; ପ୍ରଚଳିତ କଥାରେ ଭାର୍ଯ୍ୟା ।

ପରିବାରିତ, ବିଂ. (ପରିବାର-ତ) ବେଷ୍ଟିତ ।

ପରିବାହ, ପରୀବାହ, ବି. ପୁଂ. ( ପରି-ବହ-ଅ ) ଜଳୋଚ୍ଛ୍ୱାସ; ଜଳପ୍ରବାହ; ମୁହାଣ ।

ପରିବୀକ୍ଷଣ, ବି. ନ. (ପରି-ବି-ଈକ୍ଷ୍-ଅନ) ମନଃସଂଯୋଗପୂର୍ବକ ଦର୍ଶନ ।

ପରିବେଦନ, ବି. ନ. (ପରି-ବିଦ୍-ଅନ) ବଡ଼ଭାଇ ଅବିବାହିତ ଥାଉଁ ଥାଉଁ ସାନ ଭାଇର ବିବାହ; କ୍ଲେଶ, ଯନ୍ତ୍ରଣା; ବିବେଚନା ।

ପରିବେଦନା, ବି. ସ୍ତ୍ରୀ. ( ପରି-ବିଦ୍-ଅନ-ଆ ) ବୁଦ୍ଧି; ବିବେଚନା; ବ୍ୟଥା, ଯାତନା, ପରିତାପ ।

ପରିବେଦିନୀ, ବି. ସ୍ତ୍ରୀ. ( ପରି-ବିଦ୍-ଇନ୍-ଈ ) ଜ୍ୟେଷ୍ଠାର ବିଦ୍ୟମାନରେ ବିବାହିତା କନିଷ୍ଠା ।

ପରିବେଶ, ବି. ପୁଂ. (ପରି-ବିଶ୍-ଅ) ପରିଧି; ଚନ୍ଦ୍ର-ସୂର୍ଯ୍ୟର ମଣ୍ଡଳ; ପରିବେଷଣ । ଯଥା—

ସହସା ଅପୂର୍ବ ଜ୍ୟୋତିରେ ଦ୍ୟୋତିତ ହେଲା ପ୍ରାଚୀ ନଭୋଦେଶ,
ନବୋଦିତ ରବି ଉପରେ ଦିଶିଲା ଇନ୍ଦ୍ରଧନୁ ପରିବେଶ ।
ଯ. ବେ.

ପରିବେଷଣ, ବି. ନ. ( ପରି-ବିଷ୍-ଅନ ) ଭକ୍ଷ୍ୟ ବସ୍ତୁର ବିଭାଗପୂର୍ବକ ଅର୍ପଣ ।

ପରିବେଷ୍ଟନ, ବି. ନ. ( ପରି-ବେଷ୍ଟ୍-ଅନ ) ଚାରିଦିଗରେ ଘେରିବା, ବେଷ୍ଟନ କରିବା ।

ପରିବେଷ୍ଟିତ, ବିଂ. (ପରି-ବେଷ୍ଟ୍-ତ) ଚାରିଦିଗରେ ବେଷ୍ଟିତ, ପରିବୃତ ।

ପରିବ୍ରଜ୍ୟା, ବି. ସ୍ତ୍ରୀ. (ପରି-ବ୍ରଜ୍ୟା) ସନ୍ନ୍ୟାସଧର୍ମ; ତପସ୍ୟା; ଭିକ୍ଷୁକତା ।

ପରିବ୍ରାଜ, ପରିବ୍ରାଜକ, ବ. ପୁଂ. (ପରି-ବ୍ରଜ୍-ଅ,-ଅକ ) ଭିକ୍ଷୁ; ଚତୁର୍ଥାଶ୍ରମୀ; ଭ୍ରମଣକାରୀ ।

ପରିବ୍ରାଜକା, ବ. ସ୍ତ୍ରୀ. ( ପରି-ବ୍ରଜ୍-ଅକ-ଆ ) ଭିକ୍ଷୁକୀ ।

ପରିଶିଷ୍ଟ, ବି. (ପରି-ଶିଷ୍-ତ) ଅବଶିଷ୍ଟ । ବ. ନ. ଗ୍ରନ୍ଥର ସମାପ୍ତି ଉତ୍ତାରେ ଯେଉଁ ଅବଶିଷ୍ଟ ଭାଗ ତହିଁରେ ଯୁକ୍ତ କରାଯାଏ ।

ପରିଶୀଳନ, ବ. ନ. ( ପରି-ଶୀଲ୍-ଅନ ) ଅନୁଶୀଳନ; ଅବଗାହନ; ଅନୁଷ୍ଠାନ; ଆଲିଙ୍ଗନ ।

ପରିଶୁଦ୍ଧ, ବି. ( ପରି-ଶୁଧ୍-ତ ) ପରିଷ୍କୃତ, ସଂଶୋଧିତ ।

ପରିଶୁଷ୍କ, ବି. ( ପରି-ଶୁଷ୍-ତ ) ଅତିଶୟ ଶୁଷ୍କ, ନୀରସ । ବ. ନ. ପରିପକ୍ୱ ମାଂସବିଶେଷ ।

ପରିଶେଷ, ବ. ପୁଂ. ( ପରି-ଶେଷ ) ଅବଶେଷ, ସମାପନ, ଅନ୍ତ । ବି. ଅବଶିଷ୍ଟ ।

ପରିଶୋଧ, ବ. ପୁଂ. ( ପରି-ଶୁଧ୍-ଅ ) ଋଣ ଶୁଝି ଦେବା, ପ୍ରତିଶୋଧ ।

ପରିଶ୍ରମ, ବ. ପୁଂ. (ପରି-ଶ୍ରମ୍-ଅ) ଆୟାସ, କ୍ଳେଶ; ଉଦ୍‌ଯୋଗ, ଚେଷ୍ଟା ।

ପରିଶ୍ରମୀ, ବି. ( ପରିଶ୍ରମ-ଇନ୍ ) ଯତ୍ନଶୀଳ; ଉଦ୍‌ଯୋଗୀ; ପରିଶ୍ରମକାରୀ ।

ପରିଶ୍ରାନ୍ତ, ବି. (ପରି-ଶ୍ରମ୍-ତ) କ୍ଳାନ୍ତ, ଶ୍ରାନ୍ତିଯୁକ୍ତ ।

ପରିଷଦ୍, ବ. ସ୍ତ୍ରୀ. (ପରି-ସଦ୍-୦) ସଭା, ସମାଜ, ବହୁଜନ ସମାଗମ ସ୍ଥାନ ।

ପରିଷଦ, ବ. ପୁଂ. ( ପରି-ସଦ୍-ଅ ) ସଭାସଦ; ଅନୁଚର; ସଭ୍ୟ ।

ପରିଷ୍କାର, ପରିସ୍କାର, ବ. ପୁଂ. ( ପରି-କୃ-ଅ ) ସ୍ୱଚ୍ଛତା, ନିର୍ମଳତା, ଶୁଦ୍ଧ କରିବା । ବି. ନିର୍ମଳ; ସ୍ପଷ୍ଟ; ସ୍ୱଚ୍ଛ ।

ପରିଷ୍କୃତ, ବି. (ପରି-କୃତ) ନିର୍ମଳ; ଶୋଧିତ; ସ୍ୱଚ୍ଛ; ଅଳଙ୍କୃତ; ଭୂଷିତ ।

ପରିଷ୍ୱଙ୍ଗ, ବ. ପୁଂ. (ପରି-ସ୍ୱଞ୍ଜ୍-ଅ) ଆଲିଙ୍ଗନ ।

ପରିସର, ବ. ପୁଂ. (ପରି-ସୃ-ଅ) ପ୍ରଦେଶ; ପର୍ଯ୍ୟନ୍ତ ଭୂମି; ଓସାର; ବିସ୍ତାର; ନଦୀ ନଗର ପର୍ବତ ପ୍ରଭୃତିର ନିକଟବର୍ତ୍ତୀ ଭୂମି ।

ପରିସରଣ, ବ. ନ. ( ପରି-ସୃ-ଅନ ) ପରିଭ୍ରମ; ମୃତ୍ୟୁ ।

ପରିସୀମା, ବ. ସ୍ତ୍ରୀ. (ପରି-ସୀମନ୍) ଇୟତ୍ତା, ସୀମା, ପର୍ଯ୍ୟନ୍ତ ।

ପରିହାର, ପରୀହାର, ବ. ପୁଂ. ( ପରି-ହୃ-ଅ ) ପରିତ୍ୟାଗ; ଅବଜ୍ଞା; ଆକ୍ରମଣ; ମୋଚନ; ଛାଡ଼ିଦେବା; ଉପେକ୍ଷା ।

ପରିହାର୍ଯ୍ୟ, ପରିହର୍ତ୍ତବ୍ୟ, ବି. (ପରି-ହୃ-ଯ, ତବ୍ୟ) ପରିହାର ଯୋଗ୍ୟ, ପରିତ୍ୟଜ୍ୟ ।

ପରିହାସ, ପରୀହାସ, ବ. ପୁଂ. (ପରି-ହସ୍-ଅ) କୌତୁକ, ଥଟ୍ଟା, ଉପହାସ ।

ପରିହାସ୍ୟ, ବି. (ପରିହାସ-ଯ) ଉପହାସାସ୍ପଦ, ପରିହାସ କରିବାର ଯୋଗ୍ୟ ।

ପରିହିତ, ବି. (ପରି-ଧା-ତ) ଆଚ୍ଛାଦିତ; ସ୍ଥାପିତ ।

ପରିହୀନ, ବି. (ପରି-ହୀନ) ପ୍ରତାରିତ; ହ୍ରାସ-ପ୍ରାପ୍ତ, କ୍ଷୀଣ; ପରିତ୍ୟକ୍ତ ।

ପରୀକ୍ଷକ, ବି. (ପରି-ଈକ୍ଷ୍-ଅକ) ପରୀକ୍ଷାକାରକ; ଗୁଣଦୋଷବିଚାରକ ।

ପରୀକ୍ଷଣ, ବ. ନ. (ପରି-ଈକ୍ଷ୍-ଅନ) ଦୋଷଗୁଣ-ବିଚାର, ଶପଥ ।

ପରୀକ୍ଷା, ବ. ( ପରି-ଈକ୍ଷ୍-ଆ ) ଗୁଣ ଦୋଷ ବିଚାର ।

ପରୀକ୍ଷିତ୍, ପରୀକ୍ଷିତ, ବି. (ପରି-କ୍ଷି-୦, ତ) ଯାହା ପରୀକ୍ଷା କରାହୋଇଅଛି । ବ.ପୁଂ. ଅର୍ଜୁନଙ୍କର ନାତି, ଅଭିମନ୍ୟୁଙ୍କର ପୁତ୍ର; ଏ ମାତା ଗର୍ଭରେ ବିନାଶିତ ହୋଇ କୃଷ୍ଣଙ୍କଦ୍ୱାରା ପୁନର୍ଜୀବିତ ହୋଇଥିଲେ ।

ପରୁଷ, ବି. (ପୃ-ଉଷନ୍) କର୍କଶ; ନିଷ୍ଠୁର; କଠିନ; ଉଦ୍ଧତ । ବ. ନ. କର୍କଶତା, କାଠିନ୍ୟ ।

ପରୁ, } ବ. ପୁଂ. } ( ପୃ-ଉ, ଉସ୍ ) ଗ୍ରନ୍ଥି,
ପରୁସ୍, } ନ. } ପର୍ବ ।

ପରେ, ଅଂ. ଉତ୍ତରେ, ଶେଷରେ ।

ପରେତ, ବଂ. ( ପର-ଇ-ତ ) ମୃତ, ପ୍ରେତ, ମଡ଼ା ।

ପରେତରାଟ୍, ବି. ପୁଂ. (ପରେତ-ରାଜ୍-୦) ଯମ, ପ୍ରେତଶ୍ରେଷ୍ଠ, ପ୍ରେତପତି ।

ପରେଷ୍ଟି, ବି. ପୁଂ. (ପର-ଇଷ୍ଟି) ବ୍ରହ୍ମା ।

ପରୋକ୍ଷ, ବଂ. (ପରସ୍-ଅକ୍ଷି-ଅ) କମ୍ୱା (ପର-ଅକ୍ଷ, ସ ଆଗମ ) ଅପ୍ରତ୍ୟକ୍ଷ, ଚକ୍ଷୁର ଅନ୍ତରାଳ, ଅସାକ୍ଷାତ୍ । ବି. ପୁଂ. ତପସ୍ୱୀ, ଋଷି; ବ୍ୟାକରଣରେ ଅତୀତକାଳ ।

ପରୋପକାର, ବି. ପୁଂ. (ପର-ଉପକାର) ପରହିତ ସାଧନ ବ୍ୟାପାର ।

ପରୋଷ୍ଣୀ, ବି. ସ୍ତ୍ରୀ. (ପର-ଉଷ୍ଣ-ଈ) ତୈଳପାୟିକା, ଝିପିପୋକ, ତେଲୁଣିପୋକ ।

ପର୍କଟୀ, ବି. ସ୍ତ୍ରୀ. (ପୃଚ୍-ଅଟ୍-ଇନ୍) ଅଶ୍ୱତ୍ଥବୃକ୍ଷ ।

ପର୍ଜନ୍ୟ, ବି. ପୁଂ. (ପୃଷ୍=ଜଳସେଚନ କରିବା-ଅନ୍ୟ) ଇନ୍ଦ୍ର, ଶବ୍ଦକାରୀ ମେଘ ।

ପର୍ଣ୍ଣ, ବି. ନ. (ପର୍ଣ୍ଣ-ଅ) ପତ୍ର; ତାମ୍ବୂଳ; ପକ୍ଷ । ପୁଂ. ପଲାଶବୃକ୍ଷ ।

ପର୍ଣ୍ଣକାର, ବି.ପୁଂ. (ପର୍ଣ୍ଣ-କାର) ପାନବିକ୍ରେତା, ତାମ୍ବୂଳୀ ।

ପର୍ଣ୍ଣକୁଟୀର, ବି. ପୁଂ. (ପର୍ଣ୍ଣ-କୁଟୀର) ପତ୍ରକୁଡ଼ିଆ ।

ପର୍ଣ୍ଣଲତା, ବି. ସ୍ତ୍ରୀ. (ପର୍ଣ୍ଣ-ଲତା) ତାମ୍ବୂଳଲତା, ପାନଲତା ।

ପର୍ଣ୍ଣଶାଳା, ବି. ସ୍ତ୍ରୀ. (ପର୍ଣ୍ଣ-ଶାଳା) ପର୍ଣ୍ଣକୁଟୀର, ପତ୍ରକୁଡିଆ ।

ପର୍ଣ୍ଣାଶନ, ବି. ପୁଂ. (ପର୍ଣ୍ଣ-ଅଶନ) ମେଘ । ବଂ. ପତ୍ରଭୋଜୀ । ବି. ନ. ପତ୍ରଭକ୍ଷଣ ।

ପର୍ଣ୍ଣୀ, ବି. ପୁଂ. (ପର୍ଣ୍ଣ-ଇନ୍) ବୃକ୍ଷ । ବଂ. ପତ୍ରଯୁକ୍ତ ।

ପର୍ଦା, ବି. (ଯାବନିକ) ଯବନିକା, ବସ୍ତ୍ରାଦିନିର୍ମିତ ବ୍ୟବଧାନ ।

ପର୍ଯ୍ୟଙ୍କ, ବି. ପୁଂ. ( ପରି-ଅନ୍କ୍-ଅ ) ପଲଙ୍କ, ଖଟ; ଧ୍ୟାନ ସମୟରେ ଉପବେଶନବିଶେଷ ।

ପର୍ଯ୍ୟଟକ, ବି. ପୁଂ. (ପରି-ଅଟ୍-ଅକ) ପରିବ୍ରାଜକ, ଇତସ୍ତତଃ ଭ୍ରମଣକାରୀ ।

ପର୍ଯ୍ୟଟନ, ବି. ନ. (ପରି-ଅଟ୍-ଅନ) ଭ୍ରମଣ, ପରିଭ୍ରମଣ, ଇତସ୍ତତଃ ଭ୍ରମଣ ।

ପର୍ଯ୍ୟନ୍ତ, ବି. ପୁଂ. (ପରି-ଅନ୍ତ) ପ୍ରାନ୍ତ, ସୀମା, ଅବଧି; ନିକଟ; ଅବସାନ । ବଂ. ଶେଷସୀମା ପ୍ରାପ୍ତ ।

ପର୍ଯ୍ୟନ୍ତଭୂ, ବି. ସ୍ତ୍ରୀ. (ପର୍ଯ୍ୟନ୍ତ-ଭୂ) ପରିସର; ନଦୀ ନଗର ପର୍ବତାଦିର ନିକଟ ଭୂମି ।

ପର୍ଯ୍ୟବସାନ, ବି. ନ. (ପରି-ଅବସାନ) ସମାପନ, ସମାପ୍ତି, ଶେଷ ।

ପର୍ଯ୍ୟବସିତ, ବଂ. ( ପରି-ଅବସିତ ) ସମାପ୍ତ, ନିଃଶେଷିତ ।

ପର୍ଯ୍ୟବସ୍ଥା, ବି. ସ୍ତ୍ରୀ. (ପରି-ଅବସ୍ଥା) ଅବରୋଧ, ଅଟକ; ବିରୋଧ ।

ପର୍ଯ୍ୟବେକ୍ଷଣ, ବି. ନ. ( ପରି-ଅବ-ଈକ୍ଷ-ଅନ ) ମନୋନିବେଶପୂର୍ବକ ଦର୍ଶନ; ତତ୍ତ୍ୱାବଧାନ ।

ପର୍ଯ୍ୟବେକ୍ଷଣିକା, ବି. ସ୍ତ୍ରୀ. (ପର୍ଯ୍ୟବେକ୍ଷଣ-ଇକ-ଆ) ଗ୍ରହନକ୍ଷତ୍ରାଦି ଦେଖିବାର ଘର ।

ପର୍ଯ୍ୟସ୍ତ, ବଂ. (ପରି-ଅସ୍ତ) ବିକ୍ଷିପ୍ତ, ପ୍ରସାରିତ; ପତିତ; ଆହତ ।

ପର୍ଯ୍ୟାକୁଳ, ବଂ. ( ପରି-ଆକୁଳ ) ବ୍ୟାକୁଳ, ବ୍ୟତିବ୍ୟସ୍ତ; ବିକ୍ଷିପ୍ତ ।

ପର୍ଯ୍ୟାପ୍ତ, ବଂ. (ପରି-ଆପ୍-ତ) ପରିମିତ; ପ୍ରଚୁର, ଯଥେଷ୍ଟ । ବି. ନ. ସାମର୍ଥ୍ୟ; ପ୍ରାଚୁର୍ଯ୍ୟ; ତୃପ୍ତି; ଶକ୍ତି ।

ପର୍ଯ୍ୟାପ୍ତି, ବି. ସ୍ତ୍ରୀ. (ପରି-ଆପ୍-ତି) ପ୍ରାଚୁର୍ଯ୍ୟ; ପ୍ରାପ୍ତି; ସାମର୍ଥ୍ୟ; ପରିଚ୍ଛେଦ ।

ପର୍ଯ୍ୟାୟ, ବି. ପୁଂ. (ପରି-ଇ-ଅ) ଅନୁକ୍ରମ, ପାଳି; ସୁବିଧା; ସମ୍ପର୍କବିଶେଷ ।

ପର୍ଯ୍ୟାଲୋଚନା, ବି. ସ୍ତ୍ରୀ. (ପରି-ଆ-ଲୋଚ୍-ଅନ-ଆ) ଅନୁଶୀଳନ, ସମାଲୋଚନା; ବିତର୍କ; ସର୍ବଦା ଅଭ୍ୟାସ ।

ପର୍ଯ୍ୟାସ, ବି. ପୁଂ. (ପରି-ଅସ୍-ଅ) ପରିବର୍ତ୍ତନ; ବିସ୍ତାର; ବିନାଶ; ପତନ ।

ପର୍ଯ୍ୟୁତ୍ସୁକ, ବଂ. ( ପରି-ଉତ୍ସୁକ ) ଅନୁରକ୍ତ; ଉତ୍କଣ୍ଠିତ ।

ପର୍ଯ୍ୟୁଦସ୍ତ, ବଂ. (ପରି-ଉତ୍-ଅସ୍-ତ) ନିଷିଦ୍ଧ; ନିବାରିତ; ପରିଭୂତ ।

ପର୍ଯ୍ୟୁଷିତ, ବଂ. (ପରି-ବସ୍-ତ) ପୂର୍ବଦିବସୀୟ, ବାସି । ଯଥା—

> ଭଗବାନେ ଶୋଭିତ ଦୁଃଖିଣୀ ନନ୍ଦନୀ,
> ପର୍ଯ୍ୟୁଷିତ ପଦ୍ମ ପ୍ରାୟେ ତନୁ ଫିକା । ନ. କେ.

ପର୍ବ, ବ. ନ. (ପୃ-ବନ୍) ଗ୍ରନ୍ଥି, ସନ୍ଧି; ଉତ୍ସବ; ଅଧ୍ୟାୟ; ଅଷ୍ଟମୀ, ପୂର୍ଣ୍ଣିମା, ଚତୁର୍ଦ୍ଦଶୀ, ଅମାବାସ୍ୟା ଓ ସଂକ୍ରାନ୍ତି ଏହି ପାଞ୍ଚ ପର୍ବ; ଅମାବାସ୍ୟା ଓ ପ୍ରତିପଦର ସନ୍ଧି ।

ପର୍ବତ, ବ. ପୁଂ. (ପର୍ବନ୍-ତ) ପାହାଡ଼, ଗିରି; ମତ୍ସ୍ୟବିଶେଷ; ଦେବବିଶେଷ ।

ପର୍ବତଜା, ବ. ସ୍ତ୍ରୀ. (ପର୍ବତ-ଜନ୍-ଅ-ଆ) ନଦୀ; ପାର୍ବତୀ, ଦୁର୍ଗା ।

ପର୍ବତାରି, ବ. ପୁଂ. (ପର୍ବତ-ଅରି) ଦେବରାଜ, ଇନ୍ଦ୍ର ।

ପର୍ବତାଶୟ, ବ. ପୁଂ. (ପର୍ବତ-ଆଶୟ) ଜଳଧର, ମେଘ ।

ପର୍ବଯୋନି, ବ. ପୁଂ. ( ପର୍ବ=ଗ୍ରନ୍ଥି-ଯୋନି= ଉତ୍ପତ୍ତିସ୍ଥାନ) ଅଖୁ ପ୍ରଭୃତି ।

ପର୍ବସନ୍ଧି, ବ. ପୁଂ. ( ପର୍ବନ୍-ସନ୍ଧି ) ପ୍ରତିପଦ୍ ଓ ପଞ୍ଚଦଶୀର ମଧ୍ୟକାଳ ।

ପର୍ଶୁ, ବ. ପୁଂ. (ପର୍-ଶୃ-ଉ) କୁଠାର, କୁରାଢ଼ୀ ।

ପର୍ଶୁପାଣି, ବ. ପୁଂ. (ପର୍ଶୁ-ପାଣି) ଗଣେଶ, ଗଜାନନ; ପରଶୁରାମ ।

ପର୍ଶୁରାମ, ବ. ପୁଂ. ( ପର୍ଶୁ-ରାମ ) ଯାମଦଗ୍ନ୍ୟ; ପରଶୁରାମ ।

ପଳ, ବ.ନ. (ପଲ୍-ଅ) ୬ ତୋଳା; ସୂକ୍ଷ୍ମକାଳବିଶେଷ; ମାଂସ । ଯଥା—

> ବାଣ୍ଟ ପଳ ପଳ କରି ଏହା ପଳ,
> ଶିରେ ଉପଳ ପାତ ପଡ଼ିବ । ବୈ. ବ.

ପଲ, ବଂ. (ଦେଶଜ) ସମୂହ । ଯଥା—

> ଯାଉଛନ୍ତି ଗୋରୁପଲ ଗୋଠରୁ ବାହୁଡ଼ି । ସ. ମା.

ପଲକ, (ଯାବନିକ) ଚକ୍ଷୁର ପତା ।

ପଲଟନ, (ଯାବନିକ) ସେନାଦଳ ।

ପଲମ, ବ. ନ. (ଦେଶଜ) ମାଟିନିର୍ମିତ କରେଇ ବା ପାତ୍ରବିଶେଷ ।

ପଲବ, ବ. ପୁଂ. (ପଲ୍-ବା-ଅ) ମତ୍ସ୍ୟଧାରଣ ଯନ୍ତ୍ରବିଶେଷ, ପେଲଣା ।

ପଲା, ବ. ( ଦେଶଜ ) ତୈଳାଦି ବ୍ୟବହାର କରିବାର ଲୌହନିର୍ମିତ ପାତ୍ରବିଶେଷ ।

ପଲାଇବା, କ୍ରି. ବ. (ପଲାୟନ ଶବ୍ଦଜ) ପଲାୟନ କରିବା । ଯଥା—

> କାହିଁ ପଲାଉଛୁ ସ୍ୱଦର ହୋଇ ଏଡ଼େ କାତର । ଚ. ଷ.

ପଲାଣ, ବ. (ଦେଶଜ) ଘୋଡାବଳଦ ପିଠିରେ ଦିଆ ଯାଉଥିବା ଅଗାର ଗଦିବିଶେଷ । ଯଥା—

> ଘୋଡ଼ାଅ ବଳଦ ଉପରେ, ପଲଣ ଥୋଇବ ସବୁରେ ।

ପଲାଣ୍ଡୁ, ବ. ପୁଂ. (ପଲ-ଅଣ୍ଡୁ) ପିଆଜ, ପିଅଜ ।

ପଲାନ୍ନ, ବ. ନ. (ପଲ-ଅନ୍ନ) ମାଂସାନ୍ନ, ପଲଉ ।

ପଲାୟନ, ବ.ନ.(ପରା-ଅୟ୍-ଅନ) ପଲାଇବାର, ଭୟାଦି ହେତୁ ପ୍ରସ୍ଥାନ ।

ପଲାୟିତ, ବଂ. (ପରା-ଅୟ୍-ତ) ପ୍ରସ୍ଥିତ, ଯେ ପଳାଇଅଛି ।

ପଲାଶ, ବ. ପୁଂ. (ପଲ-ଅଶ) କିଂଶୁକବୃକ୍ଷ । ବଂ. ଶ୍ୟାମବର୍ଣ୍ଣବିଶିଷ୍ଟ । ବ. ପୁଂ. ସ୍ତ୍ରୀ. ରାକ୍ଷସ; ପ୍ରେତ ।

ପଲାଶୀ, ବ. ପୁଂ. (ପଲ-ଅଶ୍-ଇନ୍) ବୃକ୍ଷ; ରାକ୍ଷସ; (ପଳାଶ-ଈ) କ୍ଷିରିବୃକ୍ଷ; ସ୍ୱନାମବିଖ୍ୟାତ ଯୁଦ୍ଧକ୍ଷେତ୍ରବିଶେଷ । ସ୍ତ୍ରୀ. ଲାକ୍ଷା, ଲତାବିଶେଷ ।

ପଲିତ, ବଂ. (ପଲ୍-ତ) ବୃଦ୍ଧ । ବ. ନ. ବାର୍ଦ୍ଧକ୍ୟ ହେତୁ କେଶର ଶୁକ୍ଳତା; ତାପ; କର୍ଦ୍ଦମ ।

ପଲ୍ୟଙ୍କ, ବ. ପୁଂ. (ପରି-ଅଙ୍କ) ପଲଙ୍କ, ଖଟ ।

ପଲ୍ଲବ, ବ. ପୁଂ. (ପଦ୍-ଲୂ-ଅ) ନୂତନ ପତ୍ର, କିଶଳୟ; ଛୋଟ ଡାଳ; ବିସ୍ତାର; ଅଳତା ।

ପଲ୍ଲବାସ୍ତ୍ର, ବି. ପୁଂ. (ପଲ୍ଲବ-ଅସ୍ତ୍ର) କାମଦେବ, ରତିପତି ।

ପଲ୍ଲବିକ, ବିଂ. (ପଲ୍ଲବ-ଇକ) କାମୁକ, ଲମ୍ପଟ ।

ପଲ୍ଲବିତ, ବିଂ. (ପଲ୍ଲବ-ଇତ) ପଲ୍ଲବଯୁକ୍ତ, ପଲ୍ଲବବିଶିଷ୍ଟ ।

ପଲ୍ଲି, ପଲ୍ଲୀ ବି. ସ୍ତ୍ରୀ. (ପଲ୍ଲ୍-ଇ, ଈ) ଗ୍ରାମ; ଖଣ୍ଡ; ପଡ଼ା ।

ପଲ୍ୱଲ, ବି.ପୁଂ.ନ. (ପଲ-ଵଲ) କ୍ଷୁଦ୍ର ଜଳାଶୟ, ଗାଡ଼ିଆ ।

ପବ, ବି. ପୁଂ. (ପୂ-ଅ) ଶୋଧନ; ବାୟୁ । ବିଂ. ପରିଷ୍କୃତ, ପବିତ୍ର, ବିଶୁଦ୍ଧ; ପ୍ରଚଳିତ କଥାରେ ଏକ ଅଂଶ ବା ଖଣ୍ଡ ।

ପବନ, ବି. ପୁଂ. (ପୂ-ଅନ) ବାୟୁ । ନ. କୁମ୍ଭକାରର ଉହ୍ୱାପର; ଶୋଧନ । ବିଂ. ପରିଷ୍କୃତ-ବିଶୁଦ୍ଧ ।

ପବନନନ୍ଦନ, ବି. ପୁଂ. (ପବନ-ନନ୍ଦନ) ଭୀମ; ହନୁମାନ୍ ।

ପବନପଥ, ବି. ପୁଂ. (ପବନ-ପଥ) ଆକାଶ ।

ପବନାଶ, ପବନାଶନ, ବି. ପୁଂ. (ପବନ-ଅଶ, ଅଶନ) ସର୍ପ । ବିଂ. ବାୟୁଭକ୍ଷକ ।

ପବମାନ, ବି. ପୁଂ. (ପୂ-ଆନ) ବାୟୁ, ପବନ; ଅଗ୍ନି । ବିଂ. ପବିତ୍ରକାରକ ।

ପବି, ବି. ପୁଂ. (ପୂ-ଇ) ଅଶନି, ବଜ୍ର ।

ପବିତ, ବିଂ. (ପୂ-ତ) ପୂତ, ପବିତ୍ର । ବି. ନ. ମରୀଚ; ସୂତ୍ର ।

ପବିତ୍ର, ବିଂ. (ପୂ-ଇତ୍ର) ନିର୍ମଳ । ବି. ସ୍ତ୍ରୀ. କୁଶ । ନ. ଘୃତ; ମଧୁ ।

ପବିତ୍ରା, ବି. ସ୍ତ୍ରୀ. (ପବିତ୍ର-ଆ) ନଦୀବିଶେଷ; ତୁଳସୀ; ହରିଦ୍ରା ।

ପବିତ୍ରିତ; ବିଂ. (ପବିତ୍ର-ଇତ) ପରିଶୋଧିତ, ପରିଷ୍କୃତ ।

ପଶମ, ବି. (ଯାବନିକ) ଉର୍ଣ୍ଣା; ଲୋମ ।

ପଶବ୍ୟ, ବି. (ପଶୁ-ଯ) ପଶୁର ଯୋଗ୍ୟ, ପଶୁସମ୍ବନ୍ଧୀୟ ।

ପଶା, ବି. (ପାରସ୍ୟ ଶବ୍ଦଜ) ଅକ୍ଷ; ଚଉପାର ।
ଯଥା—
ଦିନେ ହୋଇଥିଲା ଘୋର ବରଷା ।
ବୋଇଲେ ବାବନ ଖେଳିବା ପଶା ।

ପଶୁ, ବି. ପୁଂ. (ପଶ୍-ଉ) ଲୋମଯୁକ୍ତ ଲାଙ୍ଗୁଳବିଶିଷ୍ଟ ଚତୁଷ୍ପଦଜନ୍ତୁ ।

ପଶୁକ୍ରିୟା, ବି. ସ୍ତ୍ରୀ. (ପଶୁ-କ୍ରିୟା) ମୈଥୁନ, ରମଣ ।

ପଶୁପତି, ବି. ପୁଂ. (ପଶୁ-ପତି) ଦେବେଶ, ଶିବ ।

ପଶୁପାଳ, ବି. ପୁଂ. (ପଶୁ-ପାଳ) ପଶୁରକ୍ଷକ, ରଖୁଆଳ ।

ପଶୁରାଜ, ବି. ପୁଂ. (ପଶୁ-ରାଜା) ସିଂହ, ମୃଗେନ୍ଦ୍ର ।

ପଶ୍ଚାତ୍, ଅଂ. (ଅପର-ଅସ୍ତାତ୍) ପଶ୍ଚିମେ, ପରେ, ପଛରେ ।

ପଶ୍ଚାତ୍ତାପ, ବି. ପୁଂ. (ପଶ୍ଚାତ୍-ତାପ) ଅନୁତାପ ।
ଯଥା—
ପଶ୍ଚାତ୍ତାପ ହେଲା ମୋର,
ଏବେ କଲହାନ୍ତରିତା ନାମ ଧରିବାର । ପ୍ରେ. ସୁ.

ପଶ୍ଚାର୍ଦ୍ଧ, ବି.ପୁଂ. (ଅପର=ପଶ୍ଚ-ଅର୍ଦ୍ଧ) ପାଦଠାରୁ ନାଭି ପର୍ଯ୍ୟନ୍ତ, ଅପରାର୍ଦ୍ଧ ।

ପଶ୍ଚିମ, ବି. ପୁଂ. (ପଶ୍ଚାତ୍-ଇମ) ଚରମ, ଶେଷ; ଅନନ୍ତର । ନ. ପୃଷ୍ଠଦେଶ । ସ୍ତ୍ରୀ. ସୂର୍ଯ୍ୟାଦିର ଅସ୍ତଗମନ ଦିଗ ।

ପଶ୍ୟତୋହର, ବି.ପୁଂ. (ପଶ୍ୟତଃ-ହର) ଚୋର, ତସ୍କର; ସ୍ୱର୍ଣ୍ଣକାର ।

ପଶ୍ୟନ୍, ବିଂ. (ଦୃଶ୍-ଅତ୍) ଦର୍ଶକ, ଦର୍ଶନକାରୀ ।

ପସରା, ବି. (ଦେଶଜ) ବିକ୍ରୟଦ୍ରବ୍ୟପୂର୍ଣ୍ଣପାତ୍ର ।
ଯଥା—
ଗ୍ରେର ହାଟେ ଦେଲ ପ୍ରଣୟପସରା ।

ପସାରୀ, ବି. ଦୋକାନୀ, ବିକ୍ରୟକାରୀ ।

ପସାରୁଣି, ବି. (ଦେଶଜ) ସ୍ୱନାମପ୍ରସିଦ୍ଧ ବୃକ୍ଷବିଶେଷ ।

ପସୁରି, ବି. (ପ=ପଞ୍ଚନ୍ ଶବ୍ଦଜ-ସୁରି=ସେର ଶବ୍ଦଜ) ୫ ସେର ।

ପଢ଼ଣ୍ଡି, ବ. (ଦେଶଜ) ଧୀରଗମନ । ଯଥା—

ପୂର୍ବକରେ ପୂର୍ବଗଜ ଭବ ଉପୁଜାଇ
ପଢ଼ଣ୍ଡି ବନସ୍ୱ ଢଳେ ଝୁଲଇ ଝୁଲଇ । ବୋ. ଚ. ସୁ.

ପଢ଼ାଲ, ବ. (ଦେଶଜ) ଡଗ ।

ପଢ଼ି, ବ. (ଯାବନକ) କ୍ଷେତର ସୀମାବନ୍ଧ ମାଟି-ବାଡ଼; ହିଡ଼; ବଗିଚ୍ଛର ସୀମା ।

ପଢ଼ୁଆ, ବ. (ଦେଶଜ) ଶଗଡ଼ ଚକ ।

ପଢ଼ିଲା, ବ. (ଯାବନକ) ପ୍ରଥମ, ଆଦ୍ୟ ।

ପହିଁରା, ବ. (ଦେଶଜ) ମାର୍ଜନୀ, ଝାଡ଼ୁଣୀ; ସନ୍ତରଣ ।

ପହିଁରିବା, କ୍ରି. ବ. ପରିଷ୍କାର କରିବା; ହସ୍ତ-ପଦାଦି ସଞ୍ଚାଳନଦ୍ୱାରା ଜଳରେ ଭାସିବା, ସନ୍ତରଣ କରିବା ।

ପହୁଡ଼, ବ. (ଦେଶଜ) ଶୋଇବା । ଯଥା—

ଚେତନ ବେଗେ ପହୁଡ଼ ଶୋଅନ୍ତ ଯେଣୁ ଗରୁଡ଼
ବଜାଇ ବଜାଇ ବଂଶୀ ସୁଲଳିତସ୍ୱନେ । ଚ. ବ.

ପହା, ବ. (ଦେଶଜ) ଗବାଦି ପଶୁର ଦୁଗ୍ଧା-ଧାର ।

ପାଇକ, ବ. (ପଦାତିକ ଶବ୍ଦଜ) ଗ୍ରାମରକ୍ଷକ, ପିଆଦା ।

ପାଇଖାନା, (ଯାବନକ) ମଳ ତ୍ୟାଗ କରିବାର ସ୍ଥାନ ।

ପାଇଟି, ବ. (ଦେଶଜ) ଗୃହାଦିର କାର୍ଯ୍ୟ ।

ପାଉଣା, ବ. ପ୍ରାପ୍ୟ, ଆଦାୟଯୋଗ୍ୟ ।

ପାଉତି, ବ. (ଯାବନକ) ପ୍ରାପ୍ତିସ୍ୱୀକାରପତ୍ର, ରସିଦ ।

ପାଉଁଶ, ବ. (ପାଂଶୁ ଶବ୍ଦଜ) ପାଂଶୁ, ଭସ୍ମ ।

ପାଂଶୁ, ପାଂସୁ, ବ. ପୁଂ. (ପନସ୍-ଉ) ରଜଃ, ଧୂଳି; ସାର; ପାପ ।

ପାଂଶୁଳ, ବଂ. (ପାଂଶୁ-ଲ) ଧୂଳିଯୁକ୍ତ; ପାପିଷ୍ଠ । ବ. ପୁଂ. ଶିବ ।

ପାଂଶୁଳା, ବ. ସ୍ତ୍ରୀ. (ପାଂଶୁ-ଳ, ସ୍ତ୍ରୀଲିଙ୍ଗେ ଆ) ଅସତୀ ସ୍ତ୍ରୀ; ରଜଃସ୍ୱଳା; (ପାଂଶୁ=ଧୂଳି-ଳ) ପୃଥିବୀ ।

ପାଂସନ, ବଂ. (ପନ୍ସ-ଅନ) ଦୂଷକ; ପାପିଷ୍ଠ ।

ପାକ, ବ. ପୁଂ. (ପଚ୍-ଅ) ରନ୍ଧନ, ପକ୍ୱପାକ; ପରିଣତି; କେଶର ଶୁକ୍ଳତା; ଫଳ; ପେଚକ ।

ପାକଳ, ବ. ପୁଂ. (ପାକ-ଲା-ଅ) ହସ୍ତିର ଜ୍ୱର; ବାୟୁ; ଅଗ୍ନି । ନ. ଔଷଧବିଶେଷ, କୁଡ଼ । ବଂ. ଦୃଢ଼; ଅବସ୍ଥାନ୍ତରପ୍ରାପ୍ତ; ପକ୍ୱ ।

ପାକଲା, ବଂ. (ପକ୍ୱ ଶବ୍ଦଜ) ପାଚିଲା, ପରିପକ୍ୱ ।

ପାକଶାଳା, ବ. ସ୍ତ୍ରୀ. (ପାକ-ଶାଳା) ରନ୍ଧନାଳୟ, ରାନ୍ଧିବା ଘର ।

ପାକଶାସନ, ବ. ପୁଂ. (ପାକ-ଶାସନ) ଇନ୍ଦ୍ର, ପାକ ନାମକ ଅସୁରର ଶାସନକର୍ତ୍ତା ।

ପାକଶାସନି, ବ. ପୁଂ. (ପାକ-ଶାସନ-ଇ) ଇନ୍ଦ୍ର-ପୁତ୍ର, ଜୟନ୍ତ; ଅର୍ଜୁନ; ବାଲି ବାନର ।

ପାକସ୍ଥଳୀ, ବ. ସ୍ତ୍ରୀ. ( Stomach ) ଉଦରର ଯେଉଁ ଅଂଶରେ ଖାଦ୍ୟପଦାର୍ଥ ଜୀର୍ଣ୍ଣ ହୁଏ; ପାକ କରିବାର ପାତ୍ର ।

ପାକସ୍ଥାନ, ବ. ନ. (ପାକ-ସ୍ଥାନ) ରନ୍ଧନାଳୟ, ରୋଷେଇଘର ।

ପାକୁଆ, ବଂ. (ଦେଶଜ) ଦନ୍ତହୀନ ।

ପାକୁଳ, ବ. (ଦେଶଜ) ରୋମନ୍ଥ, ପଶୁର ପେଟରେ ଯାହା ଥାଏ ତାହାର ପୁନର୍ବାର ଚର୍ବଣ ।

ପାଖ, ବ. (ପାର୍ଶ୍ୱ ଶବ୍ଦଜ) ନିକଟ, ସମୀପ ।

ପାଖଡ଼ା, ବ. (ଦେଶଜ) ଖଇରବିଶେଷ ।

ପାଖଣ୍ଡା, ବଂ. (ଦେଶଜ) ନିର୍ଲଜ୍ଜ, କଳକଳା ।

ପାକ୍ଷିକ, ବଂ. (ପକ୍ଷ-ଇକ) ପକ୍ଷସମ୍ବନ୍ଧୀୟ, ପ୍ରତି ପକ୍ଷରେ ଯାହା ଘଟଇ; ପକ୍ଷପାତୀ । ବ. ପୁଂ. ବ୍ୟାଧ, ବାଣୁଆ, ଯେ ପକ୍ଷୀ ମାରେ ।

ପାଗ, ବ. (ଦେଶଜ) ପଗଡ଼ ।

ପାଗଲ, ବଂ. ବାତୁଳ, ଉନ୍ମତ୍ତ ।

ପାଚକ, ବଂ. (ପଚ୍-ଅକ) ଜୀର୍ଣ୍ଣକାରକ; ପାକ-କର୍ତ୍ତା । ବ. ପୁଂ. ଅଗ୍ନି । ନ. ଉଦରର ରସ-ବିଶେଷ । ସ୍ତ୍ରୀ. ରନ୍ଧନକାରିଣୀ; ଯେ ସ୍ତ୍ରୀଲୋକ ପାକ କରେ ।

ପାଚନ, ବି. ନ. ( ପାଚ-ଅନ ) ଔଷଧବିଶେଷ, କ୍ୱାଥ । ପୁଂ. ଅଗ୍ନି; ପ୍ରାୟଶ୍ଚିତ୍ତ । ବିଂ. ଶାଣ୍ଡି-କାରକ ।

ପାଚେରି, ବି. (ପ୍ରାଚୀର ଶବ୍ଦଜ) ବେଢ଼ା; କାନ୍ଥ, ଭିତ୍ତି ।

ପାଛୁଡା, ବି. (ଦେଶଜ) ଗୃହର, ଉତ୍ତରୀୟ ବସ୍ତ୍ର । ଯଥା—

ବାଟେ ଫର ଫର ରୂପା ଜରିର ପାଛୁଡା
ପଚ୍ଛେ ଯା ଶୋହେ ପର୍ଣ୍ଣଶ୍ୟାମ ଶୈଳ ବେଢ଼େ । ମ. ଯା.

ପାଛେଟି, ଅଗବଢି ଅଣିବାର । ଯଥା—

ତୁମ୍ଭକୁ ପାଛେଟି ଅଯୁତ୍ତ ଜ ଅଦରେ । କ. ବ.

ପାଞ୍ଚଜନ୍ୟ, ବି. ପୁଂ. ( ପଞ୍ଚଜନ-ଯ ) ବିଷ୍ଣୁଙ୍କର ଶଙ୍ଖ; ଅଗ୍ନି ।

ପାଞ୍ଚଭୌତିକ, ବିଂ. (ପଞ୍ଚଭୂତ-ଇକ) ପୃଥିବ୍ୟାଦି ପଞ୍ଚଭୂତଜାତ ।

ପାଞ୍ଚାଳ, ବି. ପୁଂ. (ପାଞ୍ଚାଳ-ଅ) ପଞ୍ଜାବ ଦେଶ-ବିଶେଷ; ତକ୍ଷକ, ଭଣ୍ଡାରି, ତନ୍ତୁବାୟ, ରଜକ, କଂସେଇ ଏହି ପାଞ୍ଚଜାତି । ବିଂ. ପାଞ୍ଚାଳ-ଦେଶୋଦ୍ଭବ, ପଞ୍ଚାଳଦେଶୀୟ ।

ପାଞ୍ଚାଳୀ, ବି. ସ୍ତ୍ରୀ. ( ପାଞ୍ଚାଳ-ଈ ) ଦ୍ରୌପଦୀ; କାଷ୍ଠାଦି ପୁତ୍ତଳ ।

ପାଞ୍ଜି, ବି. (ପଞ୍ଜିକା ଶବ୍ଦଜ) ଦିନାଦି ନିର୍ଦ୍ଧାରଣ ପୁସ୍ତକ; ହିସାବ ଖାତା ।

ପାଟ, ବି. (ଦେଶଜ) ପ୍ରଶସ୍ତ ଭୂମି, ବଡ଼ ଭୂମିଖଣ୍ଡ; ଲାଲସୂତା ।

ପାଟକ, ବି. ପୁଂ. (ପଟ୍-ଅକ), ଗ୍ରାମର ଅଂଶବିଶେଷ, ଘର, ତଟ; (ଦେଶଜରେ) ଜାତିର ଦଳକୁ ପାଟକ କହନ୍ତି । ଯଥା; କଢ଼େଇ ପାଟକ ।

ପାଟନ, ବି. ନ. ( ପଟ୍-ଇ-ଅନ ) କର୍ତ୍ତନ, ଛେଦନ; ବିଦାରଣ ।

ପାଟମହାଦେଈ, ବି. ସ୍ତ୍ରୀ. (ପଟ୍ଟମହାଦେବୀ ଶବ୍ଦଜ) ପ୍ରଧାନ ରାଣୀ ।

ପାଟରି, ବି. ପୁଂ. ( ଦେଶଜ ) ଜାତିବିଶେଷ, ସୂତବ୍ୟବସାୟୀ, ତାନ୍ତୁଡ ।

ପାଟରାଣୀ, ବି. ସ୍ତ୍ରୀ. ପାଟରିର ଭାର୍ଯ୍ୟା; ରାଜାର ଭାର୍ଯ୍ୟା ।

ପାଟଳ, ବି. ପୁଂ. (ପାଟଲା-ଅ) ଶ୍ୱେତରକ୍ତବର୍ଣ୍ଣ । ବିଂ. ତଦ୍‌ବର୍ଣ୍ଣଯୁକ୍ତ । ବି. ନ. ପୁଷ୍ପବିଶେଷ ।

ପାଟଳ, ବି. ସ୍ତ୍ରୀ. (ପାଟଳା-ଇ) ବୃକ୍ଷବିଶେଷ, ପାଟଳବୃକ୍ଷ; ତତ୍‌ପୁଷ୍ପ ।

ପାଟଳିତ, ବିଂ. (ପାଟଳ-ଇତ) ପାଟଳବର୍ଣ୍ଣଯୁକ୍ତ ।

ପାଟଳିପୁତ୍ର, ବି. ନ. (ପାଟଳି-ପୁତ୍ର) ପାଟନା-ନଗର, ମଗଧର ରାଜଧାନୀ ।

ପାଟବ, ବି. ନ. (ପଟୁ-ଅ) ପଟୁତା, ନୈପୁଣ୍ୟ; ଆରୋଗ୍ୟ ।

ପାଟି, ବି. (ଦେଶଜ) ତୁଣ୍ଡ ।

ପାଟିତ, ବିଂ. (ପାଟ-ତ) ଭଗ୍ନ; ବିଦୀର୍ଣ୍ଣ; ହୃତ ।

ପାଟୀ, ବି. ସ୍ତ୍ରୀ. (ପାଟି-ଈ) ଶୃଙ୍ଖଳା; ଧାରା; ପ୍ରଣାଳୀ; ଏକ ଜାତୀୟ; ଶ୍ରେଣୀ ।

ପାଟୀଗଣିତ, ବି. ନ. ଯହିଁରେ ଗଣିତ ବିଷୟ ଧାରାନୁଯାୟୀ ଲିଖିତ ଥାଏ; ଅଙ୍କବିଦ୍ୟା ।

ପାଠ, ବି. ପୁଂ. (ପଠ୍-ଅ) ଆବୃତ୍ତି, ଅଧ୍ୟୟନ; ପାଠ୍ୟ ଅଂଶ ।

ପାଠକ, ବି. ପୁଂ. (ପଠ୍-ଅକ) ପାଠକର୍ତ୍ତା, ଛାତ୍ର; (ପାଠି-ଅକ) ଅଧ୍ୟକ୍ଷ, ଶିକ୍ଷକ ।

ପାଠଶାଳା, ବି. ସ୍ତ୍ରୀ. (ପାଠ-ଶାଳା) ବିଦ୍ୟାଳୟ, ଚଟଶାଳୀ ।

ପାଠୀ, ବିଂ. ( ପଠ୍-ଇନ୍ ) ପାଠକାରକ, ପାଠକ ।

ପାଠ୍ୟ, ବିଂ. (ପଠ୍-ଯ) ପଠନୀୟ, ପାଠର ଉପ-ଯୁକ୍ତ ।

ପାଢ଼ୁଆ, ବିଂ. (ଦେଶଜ) ଯେ ଧାର ନେଇ ଅଦାୟ ଦିଅଇ ନାହିଁ; ଠକ ।

ପାଣ, ବି. (ଦେଶଜ) ଜାତିବିଶେଷ ।

ପାଣି, ବି. ପୁଂ. (ପଣ୍-ଇ) ହସ୍ତ; ( ପାନୀୟର ଅପଭ୍ରଂଶ) ଜଳ; ବ୍ରାହ୍ମଣମାନଙ୍କ ମଧ୍ୟରୁ ଏକ ସମ୍ପ୍ରଦାୟର ଉପାଧି ।

ପାଣିଗ୍ରହଣ, ପାଣିପୀଡ଼ନ, ବି. ନ. (ପାଣି-ଗ୍ରହଣ, ପୀଡ଼ନ) ବିବାହ ।

ପାଣିଚଖା, ବିଂ. (ଦେଶଜ) ସୁସ୍ୱାଦୁ ଦ୍ରବ୍ୟର ଜଳ ପରି ଆସ୍ୱାଦନ ।

ପାଣିଜ, ବି. ପୁଂ. (ପାଣି-ଜ) କରରୁହ, ନଖ ।

ପାଣିନି, ବି. ପୁଂ. (ପାଣିନ-ଇ) ବ୍ୟାକରଣସୂତ୍ର-କାରକ ମୁନିବିଶେଷ ।

ପାଣିପାଚିଆ, ବି. (ଦେଶଜ) ତୁଣ୍ଡାଚ, ଘରଓଳିର ମୁହିଁପଟା ।

ପାଣ୍ଡର, ବି. ପୁଂ. (ପଣ୍ଡ-ଅର) ପୀତଶୁକ୍ଳବର୍ଣ୍ଣ; ଶୁଭ୍ରବର୍ଣ୍ଣ; ପାଣ୍ଡୁବର୍ଣ୍ଣ; ବୃକ୍ଷବିଶେଷ । ନ. ଗିରି-ମାଟି; କୁନ୍ଦପୁଷ୍ପ । ବିଂ. ପାଣ୍ଡୁବର୍ଣ୍ଣବିଶିଷ୍ଟ ।

ପାଣ୍ଡବ, ପାଣ୍ଡବେୟ, ବି. ପୁଂ. (ପାଣ୍ଡୁ-ଅ, ଏୟ) ପାଣ୍ଡୁ ରାଜାର ପୁତ୍ର, ଯୁଧିଷ୍ଠିରାଦି ପାଞ୍ଚଭାଇ ।

ପାଣ୍ଡିତ୍ୟ, ବି. ନ. (ପଣ୍ଡିତ-ଯ) ପଣ୍ଡିତର ଭାବ ବା ଧର୍ମ, ପଣ୍ଡିତପଣିଆ, ବିଚକ୍ଷଣତା ।

ପାଣ୍ଡୁ, ବି. ପୁଂ. (ପନଡ୍-ଉ) ଚନ୍ଦ୍ରବଂଶୀୟ ନୃପ-ବିଶେଷ; ରୋଗବିଶେଷ; ଶ୍ୱେତପୀତ ବର୍ଣ୍ଣ । ବିଂ. ତଦ୍‌ବର୍ଣ୍ଣଯୁକ୍ତ ।

ପାଣ୍ଡୁଫଳ, ବି. ନ. ପଟୋଳ ।

ପାଣ୍ଡୁର, ବିଂ. (ପଣ୍ଡୁ-ଉର) ଶ୍ୱେତବର୍ଣ୍ଣ; ଶ୍ୱେତ-ପୀତବର୍ଣ୍ଣ; ତଦ୍‌ବର୍ଣ୍ଣବିଶିଷ୍ଟ ।

ପାଣ୍ଡୁଲିପି, ପାଣ୍ଡୁଲେଖ୍ୟ, ବି. ନ. (ପାଣ୍ଡୁ-ଲିପି, ଲେଖ୍ୟ) ଖସଡ଼ା ଅଥବା ଚଠା ।

ପାଣ୍ଡୋଇ, ବି. (ଦେଶଜ) ଜୋତା ।

ପାତ, ବି. ପୁଂ. (ପତ୍-ଅ) ପତନ; ଭ୍ରଂଶ; ପଡ଼ିବା; ରାହୁଗ୍ରହ । ବିଂ. ରକ୍ଷିତ, ପାଳିତ ।

ପାତକ, ବି. ନ. (ପତ୍-ଅକ) ପତନସାଧନ, ପାପ, ଦୁଷ୍କାର୍ଯ୍ୟ ।

ପାତକୀ, ବି. ପୁଂ. (ପାତକ-ଇନ୍) ପାପୀ ।

ପାତଞ୍ଜଳ, ବିଂ. (ପତଞ୍ଜଳି-ଅ) ପତଞ୍ଜଳି ମୁନି-ପ୍ରଣୀତ ଦର୍ଶନଶାସ୍ତ୍ର ।

ପାତନ, ବି. ନ. (ପାତ-ଅନ) ଅଧଃକ୍ଷେପଣ; ବିନ୍ୟାସ; ବିସ୍ତାରଣ ।

ପାତଳ, ବିଂ. (ଦେଶଜ) ସରୁ, ଝିନ; କ୍ଷୀଣ ।

ପାତା, ବିଂ. (ପା-ତୃ) ରକ୍ଷାକର୍ତ୍ତା, ରକ୍ଷକ, ପାଳନକର୍ତ୍ତା ।

ପାତାଳ, ବି. ନ. (ପତ-ଆଳ) ଅଧୋଭୁବନ; ତଳ, ଅତଳ, ବିତଳ, ନିତଳ, ତଳାତଳ, ମହାତଳ, ସୁତଳ ଏହି ସପ୍ତ ପାତାଳ ।

ପାତି, ବି. ପୁଂ. (ପା-ଅତି) ପ୍ରଭୁ, ଅଧିପତି, ସ୍ୱାମୀ; (ଦେଶଜ) ବାନରବିଶେଷ ।

ପାତିତ, ବିଂ. ( ପାତି-ତ ) ଅଧୋଦେଶେ ନିକ୍ଷେପିତ ।

ପାତିବ୍ରତ୍ୟ, ବି. ନ. (ପତିବ୍ରତା-ଯ) ପତିବ୍ରତାର ଧର୍ମ, ସତୀତ୍ୱ ।

ପାତୀ, ବିଂ. (ପତ୍-ଇନ୍) ପତନଶୀଳ ।

ପାତ୍ର, ବି. ପୁଂ. (ପା-ତ୍ର) ଭାଜନ । ନ. ବିଷୟ; ବର; ଯୋଗ୍ୟବ୍ୟକ୍ତି; ସ୍ରୁବାଦି ଯଜ୍ଞପାତ୍ର; ଆଧାର; ମନ୍ତ୍ରୀ ।

ପାତ୍ରୀ, ବି. ସ୍ତ୍ରୀ. (ପାତ୍ର-ଈ) କନ୍ୟା, ଯୋଗ୍ୟା ସ୍ତ୍ରୀ ।

ପାଥ, ବି. ପୁଂ. (ପା-ଥ) ଅଗ୍ନି; ସୂର୍ଯ୍ୟ । ନ. ଜଳ, ବାୟୁ ।

ପାଥେୟ, ବି. ନ. (ପଥିନ୍-ଏୟ) ପଥର ସମ୍ବଳ, ବାଟଖରଚ ।

ପାଦ, ବି. ପୁଂ. (ପଦ୍-ଅ) ଚରଣ; ବୃକ୍ଷମୂଳ; ଶ୍ଳୋକର ଚତୁର୍ଥାଂଶ ।

ପାଦକଣ୍ଟକ, ବି. ପୁଂ. (ପାଦ-କଣ୍ଟକ) ନୂପୁର ।

ପାଦଚାରୀ, ବିଂ. (ପାଦ-ଚର-ଇନ୍) ପଦବ୍ରଜରେ ଗମନକାରୀ । ବି. ପୁଂ. ପଦାତିକ ।

ପାଦଜ, ବି. ପୁଂ. (ପାଦ-ଜ) ଶୂଦ୍ର ।

ପାଦପ, ବି. ପୁଂ. (ପାଦ-ପା-ଅ) ବୃକ୍ଷ; ପାଦପୀଠ । ସ୍ତ୍ରୀ. ପାଦୁକା । ଯଥା—

> ଅର୍କପାଦପ ହେଲା ପତ୍ରବିହୀନ,
> ଶୌରିକ୍ଷୋଭେ କ୍ଷୋଭେ ଯଥା ବୃଅନ୍ତ ବାଳ । ଭୂ. ସ୍ତୁ.

ପାଦପୀଠ, ବି. ନ. (ପାଦ-ପୀଠ) ପାଦ ରଖିବାର ସ୍ଥାନ ।

ପାଦବିକ, ବି. ପୁଂ. (ପଦବୀ-ଇକ) ପାନ୍ଥ, ପଥିକ; ପର୍ଯ୍ୟଟକ ।

ପାଦାତ, ପାଦାତିକ, ବି. ପୁଂ. (ପାଦ-ଅତ୍-ଇ,କ) ପଦାତିକ ସୈନ୍ୟ ।

ପାଦୁକ, ବି. (ପାଦୋଦକ ଶବ୍ଦଜ) ପାଦୋଦକ; ଯଥା—ଶମ୍ଭୁପାଦୁକ ।

ପାଦୁକା, ବି. ସ୍ତ୍ରୀ. କଠଉ, ଜୋତା ।

ପାଦ୍ୟ, ବି. କ୍ଲୀ. (ପାଦ-ଯ) ପାଦପ୍ରକ୍ଷାଳନାର୍ଥ ଜଳ; ପୂଜୋପଚାର ।

ପାନ, ବି. ନ. (ପା-ଅନ) ପିଇବା; (ପ୍ରା) ଲତାବିଶେଷ ।

ପାନପାତ୍ର, ବି. ନ. (ପାନ-ପାତ୍ର) ଚଷକ, ମଦ୍ୟପାନ କରିବାର ପାତ୍ର ।

ପାନିଅ, ବି. (ଦେଶଜ) କଙ୍କତିକା; ଚିରଣୀ ।

ପାନୀୟ, ବି. ନ. (ପା-ଅନୀୟ) ଜଳ । ବିଂ. ପାନର ଯୋଗ୍ୟ; ରକ୍ଷଣୀୟ ।

ପାନ୍ଥ, ବି. ପୁଂ. (ପଥିନ୍-ଅ) ପଥିକ, ସର୍ବଦା ଭ୍ରମଣକାରୀ; ପର୍ଯ୍ୟଟକ ।

ପାନ୍ଥନିବାସ, ବି. ପୁଂ. ପଥିକମାନଙ୍କ ରହିବା ସ୍ଥାନ ।

ପାନ୍ଥଶାଳା, ବି. ସ୍ତ୍ରୀ. ( ପାନ୍ଥ-ଶାଳା ) ପଥିକମାନଙ୍କର ଅବସ୍ଥାନ କରିବା ଘର ।

ପାପ, ବି. ନ. (ପା-ପ) ଅଧର୍ମ, ଦୁଷ୍କୃତ; ଅନିଷ୍ଟ । ବିଂ. ପାପଜନକ; କ୍ଷତିକାରକ । ବି. ପୁଂ. ଲମ୍ପଟ ।

ପାପଗ୍ରହ, ବି. ପୁଂ. ଅର୍ଦ୍ଧଚନ୍ଦ୍ର; ମଙ୍ଗଳଗ୍ରହ; ରାହୁ; ଶନି; ରବି; ବୁଧ; ଅନିଷ୍ଟକର ଗ୍ରହ ।

ପାପଘ୍ନ, ବିଂ. (ପାପ-ହନ୍-ଅ) ପାପନାଶକ ।

ପାପରୋଗ, ବି. ପୁଂ. (ପାପ-ରୋଗ) ବସନ୍ତରୋଗ ।

ପାପାତ୍ମା, ପାପାଶୟ, ବିଂ. (ପାପ-ଆତ୍ମା, ଆଶୟ) ଅଧାର୍ମିକ, ପାପିଷ୍ଠ, ଦୁରାଶୟ ।

ପାପିଷ୍ଠ, ବିଂ. (ପାପ-ଇଷ୍ଠ) ଅତି ପାପୀ, ଅଧାର୍ମିକ ।

ପାପୀ, ବିଂ. (ପାପ-ଇନ୍) ପାପଯୁକ୍ତ, ପାପକାରୀ; ପାତକୀ; ଅପରାଧୀ ।

ପାପୀୟସୀ, ବି. (ପାପ-ଈୟସ୍-ଈ) ଅତି ପାପିନୀ ।

ପାପୁଲି, ବି. (ଦେଶଜ) ହାତତଳ ।

ପାମର, ବିଂ. (ପାମନ୍-ର-ଅ) ମୂର୍ଖ; ନୀଚ; ଦୁଷ୍ଟ, ଖଳ; ପାପୀ, ଅଧମ ।

ପାମରୀ, ବି. ସ୍ତ୍ରୀ. (ପାମର-ଈ) ପାପିଷ୍ଠା ।

ପାୟ, ବି. ନ. (ପା-ଅଲ୍ , ଯ ଆଗମ) ଜଳ ।

ପାୟସ, ବି. ପୁଂ. ନ. (ପୟସ୍-ଅ) ପରମାନ୍ନ; ଦୁଗ୍ଧ ଶର୍କରାଯୁକ୍ତ ଅନ୍ନ, କ୍ଷିରି । ବିଂ. ପୟଃସମ୍ବନ୍ଧୀୟ; ଦୁଗ୍ଧବିକାର ।

ପାୟୁ, ବି. ପୁଂ. (ପା-ଉ) ମଳଦ୍ୱାର ।

ପାର, ବି. ନ. ( ପର-ଅ ) ନଦୀର ପରତୀର; ଉଦ୍ଧାର । ପୁଂ. ନ. ପ୍ରାନ୍ତ, ଚରମସୀମା ।

ପାରକ, ବି. ପୁଂ. ସ୍ୱର୍ଣ୍ଣ, ସୁନା । (ପୃ-ଅକ) ବିଂ. ସମର୍ଥ, ନିପୁଣ, ପଟୁ, ଦକ୍ଷ, କୁଶଳ, ପାଳନକାରୀ ।

ପାରଗ, ବିଂ. (ପାର-ଗମ୍-ଅ) ପାରଗାମୀ, ସମର୍ଥ ।

ପାରଗତ, ବିଂ. (ପାର-ଗତ) ଅତିକ୍ରାନ୍ତ; ପଣ୍ଡିତ ।

ପାରଣା, ବି. ସ୍ତ୍ରୀ. ( ପାର-ଅନ ) ବ୍ରତାନନ୍ତର ଭୋଜନ; ତୃପ୍ତି; ଉପବାସର ପରଦିନ ବିହିତ ଭୋଜନ । ଯଥା—

ବୁଧବାର ହେଲେ ଦ୍ୱାଦଶୀର ପାରଣା ।

ପାରତନ୍ତ୍ର୍ୟ, ବି. ନ. (ପରତନ୍ତ୍ର-ଯ) ପରାଧୀନତା, ପରତନ୍ତ୍ରତା ।

ପାରତ୍ରିକ, ବିଂ. ( ପରତ୍ର-ଇକ ) ପାରଲୌକିକ, ପରଲୋକସମ୍ବନ୍ଧୀୟ ।

ପାରଦ, ବି. ପୁଂ. ( ପାର-ଦା-ଅ ) ପାରା, ଧାତୁବିଶେଷ ।

ପାରଦର୍ଶୀ, ବିଂ. ( ପାର-ଦୃଶ୍-ଇନ୍ ) ପରିଣାମଦର୍ଶୀ, ବିଜ୍ଞ; ନିପୁଣ, ପଟୁ , ତତ୍ପର; ସମର୍ଥ ।

ପାରଦାରିକ, ବି. ପୁଂ. (ପରଦାର-ଇକ) ଯେ ପରସ୍ତ୍ରୀ ଗମନ କରେ ।

ପାରଦାର୍ଯ୍ୟ, ବି.ନ. (ପରଦାର-ଯ) ପରସ୍ତ୍ରୀଗମନ, ବ୍ୟଭିଚାର ।

ପାରମାର୍ଥିକ, ବିଂ. (ପରମାର୍ଥ-ଇକ) ପରମାର୍ଥବିଷୟକ; ପରମାତ୍ମାସମ୍ବନ୍ଧୀୟ; ଜ୍ଞାନମାର୍ଗସମ୍ବନ୍ଧୀୟ ।

ପାରମ୍ପର୍ଯ୍ୟ, ବ. ନ. (ପରମ୍ପରା-ଯ) ପରମ୍ପରାଗତ; ଅନୁକ୍ରମ; ପୁରାତନ କଥା ।

ପାରଲୌକିକ, ବଂ. ( ପରଲୋକ-ଇକ ) ପରଲୋକସମ୍ବନ୍ଧୀୟ, ପାରତ୍ରିକ ।

ପାରଶୀକ, ପାରସୀକ, ବ. ପୁଂ. ପାରସ୍ୟ ଦେଶ-ସମ୍ବନ୍ଧୀୟ; ପାରସ୍ୟଦେଶୀୟ ଲୋକ ।

ପାରସୀ, ବ. ସ୍ତ୍ରୀ. ପାରସ୍ୟ ଭାଷା, ପାରସ୍ୟ ଦେଶର ଦ୍ରବ୍ୟାଦି ।

ପାରା, ବ. ସ୍ତ୍ରୀ. ପାରାବତ, ପକ୍ଷିବିଶେଷ । ପୁଂ. ପାରଦ ଧାତୁ ।

ପାରାପତ, ପାରାବତ, ବ. ପୁଂ. (ପାର-ଆ-ପତ-ଅ) କପୋତ, ପାରା ।

ପାରାପାର, ପାରାବାର, } ବ. ପୁଂ. (ପାର-ଅପାର,ଅବାର) ସାଗର, ସମୁଦ୍ର, ଅର୍ଣ୍ଣବ । ନ. ଉଭୟପାର୍ଶ୍ୱ ।

ପାରାୟଣ, ବ. ନ. (ପାର-ଅୟନ) ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ କୌଣସି ଗ୍ରନ୍ଥର ସମୁଦାୟ ପାଠ; ପୁରାଣ ପାଠ; ସମାପ୍ତି; ସାକଲ୍ୟ ।

ପାରିଜାତ, ପାରିଜାତକ, ବ. ପୁଂ. (ପାରି-ଜାତ, ଅକ) ମନ୍ଦାର, ଦେବତରୁବିଶେଷ ।

ପାରିତୋଷିକ, ବ. ନ. ( ପରିତୋଷ-ଇକ ) ପରିତୋଷ ହେତୁ ପୁରସ୍କାର ।

ପାରିଧି, ବ. ମୃଗୟା, ଶିକାର ।

ପାରିପାଟ୍ୟ, ବ. ନ. ( ପରିପାଟୀ-ଯ ) ପରିପାଟୀ, ସୁଶୃଙ୍ଖଳା ।

ପାରିପାର୍ଶ୍ୱିକ, ବ. ପୁଂ. (ପରି-ପାର୍ଶ୍ୱ-ଇକ) ପାରିଷଦ; ଉପଗ୍ରହ, କୌଣସି ବୃହତ୍ ଗ୍ରହର ଚତୁ-ର୍ଦ୍ଦିଗରେ ପରିଭ୍ରମଣକାରୀ କ୍ଷୁଦ୍ରଗ୍ରହ । ବଂ. ପାର୍ଶ୍ୱବର୍ତ୍ତୀ, ପାର୍ଶ୍ୱଚର ।

ପାରିଭାଷିକ, ବଂ. ( ପରିଭାଷା-ଇକ ) ପରିଭାଷା-ସମ୍ବନ୍ଧୀୟ ।

ପାରିଷଦ, ବ. ପୁଂ. (ପରିଷଦ୍-ଅ) ସଭାସଦ,ସଭ୍ୟ । ବଂ. ସଭାସମ୍ବନ୍ଧୀୟ ।

ପାରିହାର୍ଯ୍ୟ, ବ. ପୁଂ. ( ପରିହାର-ଯ ) ବଳୟ, କରଭୂଷଣ ।

ପାରୀନ୍ଦ୍ର, ବ. ପୁଂ. ( ପର=ଅନ୍ୟପ୍ରାଣୀ-ଇନ୍ଦ୍ର ) ସିଂହ; ଅଜଗର ସର୍ପ ।

ପାରୁ, ବ. ପୁଂ. (ପା-ରୁ) ଅଗ୍ନି, ସୂର୍ଯ୍ୟ ।

ପାରୁଷ୍ୟ, ବ. ନ. (ପରୁଷ-ଯ) କର୍କଶତା; ନିନ୍ଦା, ତିରସ୍କାର; ଇନ୍ଦ୍ରଙ୍କର ଉପବନ; ଅଗୁରୁ-ଚନ୍ଦନ । ପୁଂ. ବୃହସ୍ପତିର ନାମାନ୍ତର ।

ପାର୍ଥ, ବ. ପୁଂ. (ପୃଥା-ଅ) ପୃଥାପୁତ୍ର, ଯୁଧିଷ୍ଠିରାଦି; ଗନ୍ଧର୍ବବିଶେଷ; ଅର୍ଜୁନବୃକ୍ଷ ।

ପାର୍ଥକ୍ୟ, ବ. ନ. ( ପୃଥକ୍-ଯ ) ପୃଥକତ୍ୱ, ବିଭିନ୍ନତ୍ୱ ।

ପାର୍ଥିବ, ବ.ପୁଂ. (ପୃଥିବୀ-ଅ) ରାଜା । ବଂ. ପୃଥିବୀ-ସମ୍ବନ୍ଧୀୟ । ସ୍ତ୍ରୀ. ପୃଥିବୀର କନ୍ୟା ଅର୍ଥାତ୍ ସୀତା ।

ପାର୍ବଣ, ବ. ପୁଂ. ( ପର୍ବନ୍-ଅ ) ଅମାବାସ୍ୟାଦି ପର୍ବରେ କର୍ତ୍ତବ୍ୟ ଶ୍ରାଦ୍ଧ; ଉତ୍ସବ । ବଂ. ପର୍ବ-ସମ୍ବନ୍ଧୀୟ; (ଗ୍ରା) ଦଶହରାପର୍ବ, ଦୁର୍ଗାପୂଜାପର୍ବ ।

ପାର୍ବତୀ, ବ. ସ୍ତ୍ରୀ. (ପର୍ବତ-ଅ, ଈ) ଗିରିଜା,ଉମା, ଦୁର୍ଗା ।

ପାର୍ବତୀନନ୍ଦନ, ବ. ପୁଂ. ( ପାର୍ବତୀ-ନନ୍ଦନ ) କୁମାର, କାର୍ତ୍ତିକେୟ ।

ପାର୍ବତୀୟ, ବଂ. (ପର୍ବତ-ଈୟ) ପର୍ବତସମ୍ବନ୍ଧୀୟ; ପାହାଡ଼ିଆ ।

ପାର୍ଶ୍ୱ, ବ. ପୁଂ. ନ. (ପର୍ଶୁ-ଅ) ପ୍ରାନ୍ତ; ଏକଦେଶ; କକ୍ଷର ଅଧଃପ୍ରଦେଶ; ପାଶ । ବଂ. ସମୀପ, ନିକଟ ।

ପାର୍ଶ୍ୱପରିବର୍ତ୍ତନ, ବ. ନ. (ପାର୍ଶ୍ୱ-ପରିବର୍ତ୍ତନ) ପାଶ ଲେଉଟାଇବା, କର ଲେଉଟାଇବା; ଭାଦ୍ର ଶୁକ୍ଳ ଦ୍ୱାଦଶୀରେ ବିଷ୍ଣୁଙ୍କର ପାର୍ଶ୍ୱ ପରିବର୍ତ୍ତନ ହେତୁ ଉତ୍ସବବିଶେଷ ।

ପାର୍ଷଦ, ବ. ପୁଂ. ( ପର୍ଷଦ୍=ସଭା-ଅ ) ପାରିଷଦ, ସଭାସଦ୍ ।

ପାଳ, ବଂ. ପୁଂ. ( ପାଳ-ଅ ) ରକ୍ଷକ । ବ. ପୁଂ. ପଲ, ସମୂହ, ଦଳ; (ଗ୍ରା) କୁଟା, ତୃଣ; ନାଆ-ଟରେ ଥିବା ଲୁଗା ଭୂମି ।

ପାଳକ, ବିଂ. (ପାଳ-ଅକ) ପ୍ରତିପାଳକ, ରକ୍ଷକ ।

ପାଳକପୁତ୍ର, ବି. ପୁଂ. ପୋଷ୍ୟପୁତ୍ର, ଦତ୍ତକପୁତ୍ର ।

ପାଳଙ୍ଗ, ବି. (ଦେଶଜ) ଶାକବିଶେଷ ।

ପାଲଟ, କ୍ରି. (ଦେଶଜ) ପରିବର୍ତ୍ତନ, ବଦଳାଇବା ।

ପାଳନ, ବି. ନ. (ପାଳ-ଅନ) ରକ୍ଷଣ, ପୋଷଣ ।

ପାଲା, ବି. (ଦେଶଜ) ସତ୍ୟନାରାୟଣ ପୂଜା ।

ପାଳି, ପାଳୀ, ବି. ସ୍ତ୍ରୀ. ( ପାଳ-ଇ , ଈ) ପଂକ୍ତି, ଶ୍ରେଣୀ, କ୍ରୋଡ଼; ଖଡ୍ଗର ତୀକ୍ଷ୍ଣଧାର; କୋଣ; ପ୍ରାନ୍ତଭାଗ; ସେତୁ; (ଦେଶଜ) ନିର୍ଦ୍ଦିଷ୍ଟ ସମୟ, ବାର ।

ପାଲି, ବି. (ଦେଶଜ) ପଶାଖେଳ ଘର ।

ପାଳିତ, ବିଂ. ( ପାଳ-ତ ) ରକ୍ଷିତ; ପୋଷିତ; ବର୍ଦ୍ଧିତ; ଲାଳିତ ।

ପାଳୁଅ, ବି. ( ଦେଶଜ ) ସ୍ୱନାମପ୍ରସିଦ୍ଧ ଚୂର୍ଣ୍ଣ-ବିଶେଷ, ଯହିଁରେ ପାୟସ ହୁଏ ।

ପାବକ, ବି. ପୁଂ. (ପୂ-ଅକ) ଅଗ୍ନି; ସଦାଚାର-ଶୋଧକ । ବିଂ. ପବିତ୍ରକାରକ ।

ପାବନ, ବିଂ. (ପୂ-ଅନ) ପବିତ୍ର, ଶୋଧନ; ପବିତ୍ର-କାରକ । ବି. ନ. ଗୋମୟ; ପବିତ୍ରକରଣ; ଜଳ; ପ୍ରାୟଶ୍ଚିତ୍ତ; ରୁଦ୍ରାକ୍ଷ । ପୁଂ. ବ୍ୟାସଦେବ; ଅଗ୍ନି ।

ପାବଛ, ବି. ପାହାଚ, ସୋପାନ ।

ପାବନି, ବି. ପୁଂ. ( ପବନ-ଇ, ଅପତ୍ୟାର୍ଥେ ) ପବନପୁତ୍ର, ହନୂମାନ୍ ।

ପାବନୀ, ବିଂ. (ପାବନ-ଈ) ପବିତ୍ରକାରିଣୀ । ବି. ସ୍ତ୍ରୀ. ଗଙ୍ଗା; ତୁଳସୀ; ହରିତକୀ; ଗାଭୀ ।

ପାଶ, ବି. ପୁଂ. (ପାଶି-ଅ) ଫାନ୍ଦ, ରଜ୍ଜୁ; କେଶ-ବାଚକ ଶବ୍ଦ ପରେ ଥିଲେ (ଗୁଚ୍ଛ) ।

ପାଶକ, ବିଂ. (ପାଶି-ଅକ) ପାଶକର୍ତ୍ତା । ବି. ପୁଂ. ପଶା, ଚଉପାର ।

ପାଶବ, ବି. ନ. (ପଶୁ-ଅ) ପଶୁପଲ, ପଶୁସମୂହ । ବିଂ. ପଶୁସମ୍ବନ୍ଧୀୟ ।

ପାଶୀ, ବି. ପୁଂ. (ପାଶ-ଇନ୍) ଯମ; ବରୁଣ; ବ୍ୟାଧ । ବିଂ. ଯାହାର ପାଶ ଅସ୍ତ୍ର; ପାଶଧାରୀ ।

ପାଶୁପତ, ବି. ପୁଂ. (ପଶୁପତି-ଅ) ସୁପ୍ରସିଦ୍ଧ ଅସ୍ତ୍ର । ଯଥା—

> ପାଶୁପତ ଅସ୍ତ୍ର ଦିବ ଶଙ୍କର ତୋହର । ଲ. ବ.

ଶୈବ । ବିଂ. ଶିବସମ୍ବନ୍ଧୀୟ ।

ପାଶ୍ଚାତ୍ୟ, ବିଂ. (ପଶ୍ଚାତ୍-ଯ) ପଶ୍ଚିମଦେଶୀୟ; ପଶ୍ଚିମ-ଦେଶସ୍ଥ । ବି. ପୁଂ. ଯବନ ।

ପାଷଣ୍ଡ, ବି. ପୁଂ. (ପାପ-ସନ୍-ଡ, ନିପାତନେ) ନାସ୍ତିକ; ସଦାଚାରଭ୍ରଷ୍ଟ; ପାମର; ବିଧର୍ମୀ ।

ପାଷାଣ, ବି. ପୁଂ. (ପିଷ୍-ଅନ) ପ୍ରସ୍ତର, ପଥର । ଯଥା—

> ଏ ବେଶ ହୋଇଲେ ପାଷାଣ ତରଲେ
> ପୁଣି ବଞ୍ଚିବେ କେହି । ସ. ସା.

ପାସୋର, କ୍ରି. (ଦେଶଜ) ଭୁଲିଯିବାର, ବିସ୍ମରଣ ହେବାର । ଯଥା—

> ପାସୋର ନଜନୁ ତନ୍ତ୍ରା ଯଶୋରୂପ ଧନେ । ଲ. ବ.

ପାହାଚ, ବି. (ପାବଛ ଶବ୍ଦଜ) ସୋପାନ ।

ପାହାଡ଼, ବି. (ଦେଶଜ) ଛୋଟ ପର୍ବତ, ଅତ୍ୟୁଚ୍ଚ ନୋହିଥିବା ପର୍ବତ ।

ପାହାର, ବି. (ପ୍ରହାର ଶବ୍ଦଜ) ମାଡ଼, ଆଘାତ ।

ପାହୁଡ଼, ବି. (ଦେଶଜ) ପାଦର ଅଳଙ୍କାର । ଯଥା—

> ଅହୋ ସେ ଅବନୀରମ୍ୟାର ଉଲଟ କନକରମ୍ଭା ଚରଣ—
> ପାହୁଡ଼େ ଯାହାର ଘର୍ଷା ବହି, ଦହି ହୁଅଇ ରସିକମନ ।
> ଯ ଦେ.

ପାହୁଲ, (ଦେଶଜ) ପଦଚିହ୍ନ । ଯଥା—

> ବ୍ୟଗ୍ରେ ଶୈଳେ ଅସୁଁ ମାର୍ଗରେ କେଦାର
> ଦେଖିଲ ବ୍ୟାଘ୍ର ପାହୁଲ । କେ. ଗୌ.

ପାହୁଲା, ବି. (ଦେଶଜ) ପଇସାର ଅଂଶ, ପାହୁ ।

ପିଅର, ବି. ପୁଂ. (ଦେଶଜ) ପିତା, ଜନକ, ବାପ, ତାତ ।

ପିଆଜ, ବି. (ଦେଶଜ) ପଲାଣ୍ଡୁ ।

ପିଅଶାଳ, ବି. ( ଦେଶଜ ) ସ୍ୱନାମପ୍ରସିଦ୍ଧ ବୃକ୍ଷ-ବିଶେଷ ।

ପିଇବା, କ୍ରି. (ପା-ଧାତୁଜ) ପାନ କରିବା ।

ପିଉସା, ବି. (ପିତୃସ୍ୱସୃ ଶବ୍ଦଜ) ପିତାର ଭଉଣୀଭ । ସ୍ତ୍ରୀ. ସୀ, ପିତାର ଭଗିନୀ ।

ପିକ, ବ. ପୁଂ. (ପି-କୈ-ଅ) କୋକିଳ; (ଦେଶଜ) ପାନ ଖାଇଲେ ଯେଉଁ ଛେପ ବାହାରେ ତାହାକୁ ପିକ କହନ୍ତି ।

ପିକଦାନୀ, ବ. (ଯାବନିକ) ପିକ ପକାଇବା ନିମିତ୍ତ ବ୍ୟବହୃତ ପାତ୍ରବିଶେଷ ।

ପିଙ୍ଗ, ବ. ପୁଂ. (ପିନ୍ଜ-ଅ) ପିଙ୍ଗଳବର୍ଣ୍ଣ, ନୀଳ-ପୀତମିଶ୍ରିତ ବର୍ଣ୍ଣ; ତଦ୍‌ବର୍ଣ୍ଣଯୁକ୍ତ; ମୂଷିକ । ନ. ବାଳକ; ହରିତାଳ ।

ପିଙ୍ଗଚକ୍ଷୁ, ବ. ପୁଂ. କୁମ୍ଭୀର, ନକ୍ର ।

ପିଙ୍ଗଜଟ, (ପିଙ୍ଗ-ଜଟା) ମହାଦେବ ।

ପିଙ୍ଗଳ, ବ. ପୁଂ. (ପିନ୍‌ଜ୍-ଅଳ) ନୀଳପୀତମିଶ୍ରିତ ବର୍ଣ୍ଣ; ରୁଦ୍ର; ମଙ୍ଗଳଗ୍ରହ; ବାନର । ନ. ପିତ୍ତଳ ।

ପିଙ୍ଗଳା, ବ. ସ୍ତ୍ରୀ. (ପିନ୍‌ଜ୍-ଅଳ-ଆ) କୁମୁଦ ହସ୍ତିର ସ୍ତ୍ରୀ. ବେଶ୍ୟାବିଶେଷ; ଶିଶପାବୃକ୍ଷ ।

ପିଙ୍ଗା, ବ. ସ୍ତ୍ରୀ. (ପିନ୍‌ଜ୍-ଆ) ଗୋରଚନା; ଦୁର୍ବା; ହରିଦ୍ରା ।

ପିଚ, ବ. (ଦେଶଜ) ବୃକ୍ଷବିଶେଷ; ଫଳବିଶେଷ ।

ପିଚଣ୍ଡ, ପିଚଣ୍ଡ, ବ. ପୁଂ. (ଅପି-ଚମ୍-ଡ଼) ପଶୁର ଅବୟବ; ଉଦର, ପେଟ ।

ପିଚଣ୍ଡିଳ, ପିଚଣ୍ଡିଳ, ବଂ. (ପିଚଣ୍ଡ, ପିଚଣ୍ଡ-ଇଲ) ବୃହତ୍ ଉଦରବିଶିଷ୍ଟ ।

ପିଚୁମର୍ଦ୍ଦ, ବ. ପୁଂ. (ପିଚୁ-ମର୍ଦ୍ଦ) ନିମ୍ବବୃକ୍ଷ ।

ପିଚ୍ଛ, ବ.ନ. (ପିଚ୍ଛ୍-ଅ) ମୟୂର ପୁଚ୍ଛ; ଚୂଡ଼ା । ପୁଂ. ଲାଙ୍ଗୁଳ ।

ପିଚ୍ଛା, ବ. ସ୍ତ୍ରୀ. (ପିଚ୍ଛ-ଆ) ପଶ୍ଚାଦ୍‌ଭାଗ; ଭାତର ମଣ୍ଡ; ସର୍ପର ଲାଳ; ପଂକ୍ତି, ଶ୍ରେଣୀ ।

ପିଚ୍ଛିଳ, ବଂ. (ପିଚ୍ଛା-ଇଳ, ଅସ୍ତ୍ୟର୍ଥେ) ଖସଡ଼ା । ଯଥା—

> ଅବରତ ଦାନବାର-ପିଚ୍ଛିଳ ପ୍ରାଙ୍ଗଣ । ମ. ପା.

ପିଚ୍ଛିଳା, ବ. ସ୍ତ୍ରୀ. (ପିଚ୍ଛା-ଇଳ-ଅ) ପୂତିକା; ଶିମୂଳ ଗଛ ।

ପିଞ୍ଜଟ, ବ. ପୁଂ. (ପିନଜ୍-ଅଟ) ଚକ୍ଷୁମଳ, ନେଙ୍ଗବ ।

ପିଞ୍ଜର, ବ. ନ. (ପିନ୍‌ଜ୍-ଅର) ପିଞ୍ଜରା, ପକ୍ଷ୍ୟାଦି ବନ୍ଧ କରି ରଖିବାର ସ୍ଥାନ; ହରିତାଳ; ସ୍ୱର୍ଣ୍ଣ । ଯଥା—

> ଦଭୂଷା ସୁବର୍ଣ୍ଣ ଯେ ସହସ୍ରବାନ ପିଞ୍ଜର ପଦ୍ମ ରେ,
> କର୍ଣ୍ଣକୁ ନଇନ ବଶେ ଏତେ ବାନ ଥାଇ ତା ଶରୀରେ । ବୈ. ବ.

ପିଟକ, ବ. ପୁଂ. (ପିଟ୍-କ) ପେଟରା । ନ. ଗୃହ; କୁଠୀର । ବଂ. ବିସ୍ଫୋଟକ ।

ପିଟା, ବଂ. (ଦେଶଜ) ମାଡ଼ୁଆ ।

ପିଠା, ବ. (ପିଷ୍ଟକ ଶବ୍ଦଜ) ପୂପ ।

ପିଠି, (ପୃଷ୍ଠ ଶବ୍ଦଜ) ପୃଷ୍ଠ ।

ପିଟିବା, କ୍ରି. ବ. (ଦେଶଜ) ମାରିବା ।

ପିଠୋଉ, ବ. (ଦେଶଜ) ପିଠା କରିବା ନିମନ୍ତେ ବଟା ବ୍ରୀହି ଓ ତଣ୍ଡୁଳ ଆଦି ।

ପିଢ଼, ବ. (ପୀଠ ଶବ୍ଦଜ) ଚଉତରା ।

ପିଢ଼ା, ବ. (ପୀଠ ଶବ୍ଦଜ) ଗୃହ ତଳର ଉପର ଭାଗ; କାଷ୍ଠାସନ । ଯଥା—

> ପିଢ଼ା ଉପରେ ପିଢ଼ାମାନ ଥୋଇ
> ତହି ଉପରେ ଉଠିଲେ ମାଧୋଇ । ଗୋ. ଭା.

ପିଣ୍ଡ, ବ. ପୁଂ. ନ. (ପିନ୍‌ଡ୍-ଅ) ପିତୃଲୋକ-ମାନଙ୍କୁ ପ୍ରଦେୟ ବର୍ତ୍ତୁଳାକାର ଭକ୍ଷ୍ୟବସ୍ତୁ; ଶରୀର । ଯଥା—

> ପିଣ୍ଡକୁ ମୋର କେହି ଦହନ କରିବ ନାହିଁ
> ଅଇଲେ ପ୍ରାଣମାଧୋଇ ତାଙ୍କୁ ବାଟରେ ଦେବ ଦେଖାଇ । ଘ. ସା.

ଗୋଲାକୃତି ବସ୍ତୁ ।

ପିଣ୍ଡପୁଷ୍ପ, ବ. ନ. (ପିଣ୍ଡ-ପୁଷ୍ପ) ଅଶୋକପୁଷ୍ପ, ଜବାଫୁଲ, ତଗରଫୁଲ ।

ପିଣ୍ଡା, ବ. (ଦେଶଜ) ପାରୁଗ, ଦଲାଣ ।

ପିଣ୍ଡିତ, ବଂ. (ପିଣ୍ଡ୍-ତ) ଗଣିତ; ଗୁଣିତ; ଘନ, ସାନ୍ଦ୍ର; ସଂହତ ।

ପିଣ୍ୟାକ, ବ. ପୁଂ. ନ. (ପିଷ୍-ଚୂର୍ଣ୍ଣ କରିବା-ଆକ) କଲ୍କ, ହିଙ୍ଗୁ, କୁଙ୍କୁମ ।

ପିତା, ବ. ପୁଂ. (ପା-ତୃ) ଜନକ, ବାପ । ବଂ. (ପିତ୍ତ ଶବ୍ଦଜ) ତିକ୍ତ ।

ପିତାମହ, ବ. ପୁଂ. (ପିତୃ-ଆମହ) ବ୍ରହ୍ମା; ପିତୃ-ପିତା; ଗ୍ରଜା ।

ପିତାମହୀ, ବ. ସ୍ତ୍ରୀ. (ପିତାମହ-ଈ) ପିତାର ମାତା ।

ପିତାଶୁଣୀ, ପିତୃଶୁଣୀ ବ. ସ୍ତ୍ରୀ. (ପିଶାଚନୀ ଶବ୍ଦଜ) ଡାହାଣୀବିଶେଷ ।

ପିତୁଳା, ବ. ସ୍ତ୍ରୀ. (ପୁତ୍ତଳିକା ଶବ୍ଦଜ) ମୂର୍ତ୍ତି ।

ପିତୃକର୍ମ, ବ. ନ. (ପିତୃ-କର୍ମନ୍) ପିତୃଶ୍ରାଦ୍ଧ ।

ପିତୃତୀର୍ଥ, ବ. ନ. (ପିତୃ=ପୂର୍ବପୁରୁଷ-ତୀର୍ଥ) ଗୟାଧାମ ।

ପିତୃପକ୍ଷ, ବ. ପୁଂ. (ପିତୃ=ପିତୃପ୍ରିୟ-ପକ୍ଷ) ପୌରାଣିକ କୃଷ୍ଣପକ୍ଷ, ପ୍ରେତପକ୍ଷ । ବିଂ. ପିତୃକୁଳଜାତ ।

ପିତୃପତି, ବ. ପୁଂ. (ପିତୃ-ପତି) ଯମ ।

ପିତୃବ୍ୟ, ବ. ପୁଂ. (ପିତୃ-ବ୍ୟ) ପିତାର ଭ୍ରାତା ।

ପିତୃଷ୍ୱସା, ବ. ସ୍ତ୍ରୀ. (ପିତୃ-ସ୍ୱସା) ପିଉସୀ, ପିତାର ଭଗିନୀ ।

ପିତ୍ତ, ବ. ନ. (ଅପି-ଦୋ=ଛେଦନ କରି କମ୍ବା ଦେ=ପାଳନ କରି-ତ) ଶରୀରସ୍ଥ ଧାତୁବିଶେଷ ।

ପିତ୍ତଳ, ବ. ନ. (ପିତ୍ତ-ଲା-ଅ) ତାମ୍ର ଓ ସୀସକ-ମିଶ୍ରିତ ଧାତୁବିଶେଷ; ଭୂର୍ଜପତ୍ର । ପିତ୍ତଯୁକ୍ତ, ପୈତ୍ତିକ ।

ପିତ୍ର୍ୟ, ବିଂ. (ପିତୃ-ଯ) ପିତୃସମ୍ବନ୍ଧୀୟ; ପିତାଙ୍କଠାରୁ ଲବ୍ଧ । ବ. ନ. ପିତୃତୀର୍ଥ; ଅଙ୍ଗୁଷ୍ଠ ଓ ତର୍ଜନୀର ମଧ୍ୟଭାଗ; ମଧୁ । ପୁଂ. ପିତାର ଜ୍ୟେଷ୍ଠଭ୍ରାତା ।

ପିଦ୍ଧଡ଼ି, ବ. (ଦେଶଜ) ଗୁଡ଼ୁଲଥ, ପିକୁଳି ।

ପିଧାନ, ବ. ନ. (ଅପି-ଧା-ଅନ) ଆଚ୍ଛାଦନ, ଆବରଣ ।

ପିନଦ୍ଧ, ବିଂ. (ଅପି-ନହ୍-ତ) ବଦ୍ଧ, ପରିହିତ, ଆବୃତ । ଯଥା—

ଉଠା ହୋଇ ଉଚ୍ଚ ସଞ୍ଚ ସ୍ତନଯୁଗ୍ମ କାଞ୍ଚନେ କଞ୍ଚୁକ ବଦ୍ଧ,
ବକଚ କୁସୁମ ଶାଢ଼ୀରେ ବପଦ୍ମ ପାଣ୍ଡୁର ପର୍ଯ୍ୟେ ପିନଦ୍ଧ । ଯ. କେ.

ପିନାକ, ବ. ପୁଂ. ନ. (ପା-ଅକ) ମହାଦେବଙ୍କର ଧନୁ ।

ପିନାକୀ, ବ. ପୁଂ. (ପିନାକ-ଇନ୍) ଶିବ, ମହାଦେବ ।

ପିନ୍ଧିବା, କ୍ରି. (ପରିଧାନ ଶବ୍ଦଜ) ପରିଧାନ କରିବା ।

ପିପାସା, ବ. ସ୍ତ୍ରୀ. (ପା-ସନ୍-ଅ) ପିଇବାର ଇଚ୍ଛା, ତୃଷ୍ଣା, ପାନେଚ୍ଛା ।

ପିପାସିତ, ବିଂ. (ପା-ସନ୍-ତ) ପାନେଚ୍ଛୁ, ତୃଷିତ ।

ପିପାସୁ, ବିଂ. (ପା-ସନ୍-ଉ) ତୃଷାର୍ତ୍ତ, ପାନେଚ୍ଛୁ ।

ପିପୀଲକ, ପିପୀଲିକା, ବ. ସ୍ତ୍ରୀ. (ପିଲ-ଅକ) ପିମ୍ପୁଡ଼ି ।

ପିପ୍ପଳ, ବ. ପୁଂ. (ପା-ଅଳ) ଅଶ୍ୱତ୍ଥବୃକ୍ଷ; ବନ୍ଧନଶୂନ୍ୟ ପକ୍ଷୀ; ହାରଂଶୁକ । ନ. ଜଳ; ବସ୍ତ୍ରଖଣ୍ଡବିଶେଷ ।

ପିପ୍ପଳ, ପିପ୍ପଳୀ, ବ. ସ୍ତ୍ରୀ. (ପିପ୍ପଳ-ଇ, ଈ) ପିପଳୀଗଛ ।

ପିପ୍ପିଳୀ, ବ. ସ୍ତ୍ରୀ. ପୁରୀକକ୍ଷାର ଅନ୍ତର୍ଗତ ସ୍ଥାନବିଶେଷ ।

ପିଲା, ବ. (ଦେଶଜ) ବାଳକ ।

ପିଲସଜ, ବ. (ଦେଶଜ) ପିତ୍ତଳାଦିର ଉଚ୍ଚ ପ୍ରଦୀପ ବା ଦୀପାଧାର ।

ପିଶଙ୍ଗ, ବ. ପୁଂ. (ପିଶ୍-ଅଙ୍ଗ) ପିଙ୍ଗଳବର୍ଣ୍ଣ । ବିଂ. ପିଙ୍ଗଳବର୍ଣ୍ଣଯୁକ୍ତ । ଯଥା—

କୃଷ୍ଣପଥନାଦୃପ୍ତସପଦଗପିଶଙ୍ଗ ଏକମାତ୍ର କାଉଳଙ୍ଗ । ଯ. କେ.

ପିଶାଚ, ବ. ପୁଂ. (ପିଶିତ-ଅଶ୍-ଅ) ଭୂତ, ଦେବଯୋନିବିଶେଷ ।

ପିଶିତ, ବ. ନ. (ପିଶ୍-ତ) ମାଂସ ।

ପିଶୁନ, ବିଂ. (ପିଶ୍-ଉନ) ଖଳ, କ୍ରୂର; ଗୁପ୍ତଚର । ବ. ପୁଂ. କାକ; ନାରଦ । ନ. କୁଙ୍କୁମ ।

ପିଷ୍ଟ, ବିଂ. (ପିଷ୍-ତ) ମର୍ଦ୍ଦିତ; ଚୂର୍ଣ୍ଣିତ । ବ. ନ. ସୀସକ ।

ପିଷ୍ଟକ, ବ. ପୁଂ. ନ. (ପିଷ୍ଟ-ଅକ) ପିଠା, ରୁଟି ପ୍ରଭୃତି । ନ. ତିଳଚୂର୍ଣ୍ଣ ।

ପିପ୍ପଲ, (ପର୍ତ୍ତୁଗୀଜଭାଷା) ଆଗ୍ନେୟ ଅସ୍ତ୍ରବିଶେଷ ।
ପିହିତ, ବିଂ. (ଅପି-ଧା-ତ) ଆଚ୍ଛାଦିତ; ଅବରୁଦ୍ଧ; ତିରୋହିତ ।
ପୀଠ, ବି. କ୍ଳି. ( ପଠ୍-ଅ ) ବସିବାର ଚୌକି ବା ପିଢ଼ା, ସ୍ଥାନବିଶେଷ; ୫୧ ମହାପୀଠ, ଯେଉଁ ଯେଉଁ ସ୍ଥାନରେ ସତୀଙ୍କ ଶରୀରବୟବ ପତିତ ହୋଇଥାଏ, ଯଥା—ଯାଜପୁରରେ ବିରଜାପୀଠ, ଇତ୍ୟାଦି ।
ପୀଡ଼ନ, ବି. ନ. ( ପୀଡ୍-ଅନ ) ଦୁଃଖ ଦେବା, ଯାତନା ଦେବା; ପରାଜୟ ।
ପୀଡ଼ା, ବି. ସ୍ତ୍ରୀ. (ପୀଡ୍-ଆ) ବ୍ୟଥା, ଦୁଃଖ; ରୋଗ; ଯନ୍ତ୍ରଣା ।
ପୀଡିତ, ବିଂ. (ପୀଡ଼ା-ଇତ) ବ୍ୟଥିତ, ଦୁଃଖିତ; ରୋଗୀ ।
ପୀତ, ବି. ପୁଂ. (ପା-ତ) ପୁଷ୍ପରାଗ; ହରିଦ୍ରାବର୍ଣ୍ଣ । ବିଂ, ହଳଦିଆବର୍ଣ୍ଣଯୁକ୍ତ; ଯାହା ପାନ କରି ଯାଇଅଛି ।
ପୀତସାର, ବି. ପୁଂ. (ପୀତ-ସାର) ଚନ୍ଦନ, ହରିଚନ୍ଦନ; ଗୋମେଦମଣି ।
ପୀତା, ବି. ସ୍ତ୍ରୀ. (ପୀତ-ଆ) ହରିଦ୍ରା; ଗୋରଚନା ।
ପୀତାମ୍ବର, ବି. ପୁଂ. (ପୀତ-ଅମ୍ବର) କୃଷ୍ଣ, ବିଷ୍ଣୁ ।
ପୀନ, ବିଂ. (ପ୍ୟାୟ୍-ତ) ସ୍ଥୂଳ; ପ୍ରବୃଦ୍ଧ; ପୃଥୁଳ; ସମ୍ପନ୍ନ ।
ପୀନସ, ବି. ପୁଂ. (ପୀନ-ସୋ-ଅ) ନାସିକାର ରୋଗବିଶେଷ, ପିନସ ରୋଗ ।
ପୀନୋଧ୍ନୀ, ବି. ସ୍ତ୍ରୀ. (ପୀନ-ଉଧସ୍-ଈ) ସ୍ଥୂଳସ୍ତନୀ ଧେନୁ, ସ୍ଥୂଳପହ୍ଲାଯୁକ୍ତ ଗାଭୀ ।
ପୀୟୂଷ, ବି. ନ. (ପୀୟ୍-ଊଷ) ଅମୃତ । ଯଥା—

ବିଷ ପୀୟୂଷ ବୋଲି ମୁଁ ଦେଲି ଭଖି, ରେ ପ୍ରାଣସଖି ।

ପୁଂ. ନ. ଅଭିନବ ଗୋଦୁଗ୍ଧ ।
ପୀବର, ବିଂ. (ପ୍ୟାୟ୍-ବର) ସ୍ଥୂଳ; ବଳିଷ୍ଠ ।
ପୁଂଲିଙ୍ଗ, ବି. ପୁଂ. (ପୁମସ୍-ଲିଙ୍ଗ୍-ଅ) ପୁରୁଷ-ବାଚକ ଶବ୍ଦ । ନ. ପୁରୁଷ ଚିହ୍ନ; ପୁରୁଷାଙ୍ଗ ।
ପୁଂଶ୍ଚଳୀ, ବି. ସ୍ତ୍ରୀ. (ପୁମସ୍-ଚଲ୍-ଈ) ଭ୍ରଷ୍ଟା, ଅସତୀ ସ୍ତ୍ରୀ, ବେଶ୍ୟା, କୁଳଟା; ଜଣାଚରୀ ।
ପୁଂସବନ, ବି. ନ. (ପୁମସ୍-ସୂ-ଅନ) ଗର୍ଭିଣୀର ସଂସ୍କାର । ସ୍ତ୍ରୀ. କର୍ତ୍ତବ୍ୟବ୍ରତବିଶେଷ ।
ପୁଂସ୍ତ୍ୱ, ବି. ନ. (ପୁମସ୍-ତ୍ୱ) ପୁରୁଷତ୍ୱ; ଶୁକ୍ର; ପୁରୁଷର ଅସାଧାରଣ ଚିହ୍ନ ।
ପୁଅ, ବି. (ପୁତ୍ର ଶବ୍ଦଜ) ନନ୍ଦନ, ତନୟ ।
ପୁଆ, ବି. (ଦେଶଜ) କ୍ଷୁଦ୍ର ବୃକ୍ଷ, ଯଥା—କଦଳୀ-ପୁଆ; ମିଷ୍ଟାନ୍ନବିଶେଷ ।
ପୁଙ୍ଖ, ବି. ପୁଂ. (ପୁମସ୍-ଖନ୍-ଅ) ବାଣର ପକ୍ଷଯୁକ୍ତ ସ୍ଥାନ; ମୂଳ ।
ପୁଙ୍ଖାନୁପୁଙ୍ଖ, ବିଂ. ସୂକ୍ଷ୍ମାନୁସୂକ୍ଷ୍ମ ବିଚାର; ସବିଶେଷ ବିବେଚନା ।
ପୁଙ୍ଗ, ବି. ପୁଂ. ନ. ( ପୁମସ୍-ଗମ୍-ଅ ) ରାଶି, ସମୂହ ।
ପୁଙ୍ଗବ, ବି. ପୁଂ. (ପୁମସ୍-ଗୋ-ଅ) ବୃଷ, ଷଣ୍ଢ । ବିଂ. (ଶବ୍ଦର ପରେ ଥିଲେ ) ଶ୍ରେଷ୍ଠ । ଯଥା—

ଗର୍ଭ ଲକ୍ଷଣ ଦେଖି ମୁନିପୁଙ୍ଗବ । ଭ. ବ.

ପୁଚ୍ଛ, ବି. ପୁଂ. ନ. (ପିଚ୍ଛ୍-ଅ) ଲାଙ୍ଗୁଳ; ପଶ୍ଚାଦ୍-ଭାଗ ।
ପୁଚ୍ଛକଣ୍ଟକ, ବି. ପୁଂ. (ପୁଚ୍ଛ-କଣ୍ଟକ) ବୃଶ୍ଚିକ, ବିଛା ।
ପୁଚ୍ଛୀ, ବି. ପୁଂ. ( ପୁଚ୍ଛ-ଇନ୍ ) ମୟୂର; କୁକ୍କୁଟ; ଅର୍କବୃକ୍ଷ । ବିଂ. ଲାଙ୍ଗୁଳବିଶିଷ୍ଟ ।
ପୁଞ୍ଜ, ବି. ପୁଂ. (ପୁମସ୍-ଜି) ରାଶି, ସ୍ତୂପ, ସମୂହ ।
ପୁଞ୍ଜିତ, ବିଂ. (ପୁଞ୍ଜ-ଇତ) ରାଶୀକୃତ; ରାଶୀଭୂତ ।
ପୁଞ୍ଜୀ, ବି. ନ. (ପୁମସ୍-ଜନ୍-ଈ) ରାଶି; ପାଣ୍ଠି, ମୂଳଧନ ।
ପୁଟ, ବି. କ୍ଳି. (ପୁଟ୍-ଅ) ଆବରଣ; ଅଞ୍ଜଳି; ଡବା; ଯୁଗ୍ମ; ଦୋନା । ପୁଂ. ନ. ଅଶ୍ୱର ଖୁରା ।
ପୁଟକ, ବି. ନ. (ପୁଟ-କୈ-ଅ) ପଦ୍ମ ପତ୍ରାଦି-ନିର୍ମିତ ପାତ୍ର; ପୁଡ଼ା ।
ପୁଟକିତ, ବିଂ. (ପୁଟକ-ଇତ) ଆବଦ୍ଧ; ଆବୃତ ।

ପୁଟକିନୀ, ବି. ସ୍ତ୍ରୀ. (ପୁଟକ-ଇନ୍-ଈ) ପଦ୍ମିନୀ; ପଦ୍ମସମୂହ; ପଦ୍ମଲତା ।

ପୁଟପାକ, ବି. ପୁଂ. (ପୁଟ-ପାକ) ଶୁଷ୍କ ଗୋମୟରେ ଔଷଧ ପାକ ।

ପୁଟଭେଦନ, ବି. ନ. ପତ୍ତନ, ନଗର, ପୁର ।

ପୁଟଲ, ବି. (ଦେଶଜ) ପୁଡ଼ିଆ ।

ପୁଟିତ, ବି. ନ. (ପୁଟ-ଇତ) ଯୁକ୍ତକରଯୁଗଳ, ଅଞ୍ଜଳି । ବିଂ. ଚିରିତ; ପାଟିତ; ଆବୃତ ।

ପୁଟୁଳା, ବି. (ଦେଶଜ) ପୋଟଳା; ପୁସ୍ତକର ପତ୍ର ।

ପୁଣି, ଅଂ. ପୁନର୍ବାର ।

ପୁଣ୍ଡରୀକ, ବି. ନ. (ପୁଣ୍ଡ୍-ଅରୀକ) ଅଗ୍ନିକୋଣର ହସ୍ତୀ; ଶ୍ୱେତପଦ୍ମ । ଯଥା—

> ଧବଳ ପୁଣ୍ଡରୀକମାଳା ପତ୍ରଦ୍ୱୟେ
> ଦର୍ଶିବେ ଅଦ୍ଭୁତ ତୋ ଶ୍ୟାମ କାୟେ । ମେ. ଦୂ.

କମଣ୍ଡଳୁ; ନୃପବିଶେଷ; ଶୁଭ୍ରବର୍ଣ୍ଣ; ସହକାର ।

ପୁଣ୍ଡରୀକାକ୍ଷ, ବି. ପୁଂ. (ପୁଣ୍ଡରୀକ-ଅକ୍ଷି-ଅ) କୃଷ୍ଣ, ବିଷ୍ଣୁ । ଯଥା—

> ବକ୍ଷାସେ ପୁଣ୍ଡରୀକାକ୍ଷ ନେଲେ କପିଧ୍ୱଜ । ବ. ବ.

ପୁଣ୍ଡ୍ର, ପୁଣ୍ଡ୍ରକ, ବି. ପୁଂ. (ପୁଣ୍ଡ୍-ର, କ) ତିଳ, ଇକ୍ଷୁ; କ୍ରିମି; ମାଧବୀଲତା; ଦେଶବିଶେଷ ।

ପୁଣ୍ୟ, ବି. ନ. (ପୁଣ୍-ଯ) ଧର୍ମ, ସୁକୃତ । ବିଂ. ପବିତ୍ର; ନିଷ୍ପାପ; ନିର୍ମଳ । ସ୍ତ୍ରୀ. ତୁଳସୀ ।

ପୁଣ୍ୟଜନ, ବି. ପୁଂ. (ପୁନ-ଅଜନ) ରାକ୍ଷସ; ଯକ୍ଷ; (ପୁଣ୍ୟ-ଜନ) ଧାର୍ମିକ; ସଜ୍ଜନ ।

ପୁଣ୍ୟଜନେଶ୍ୱର, ବି. ପୁଂ. (ପୁଣ୍ୟ-ଜନ-ଈଶ୍ୱର) ଯକ୍ଷରାଜ, କୁବେର ।

ପୁଣ୍ୟବାନ୍, ବିଂ. (ପୁଣ୍ୟ-ବତ୍) ଧାର୍ମିକ, ପୁଣ୍ୟଯୁକ୍ତ; ଭାଗ୍ୟବାନ୍, ସୌଭାଗ୍ୟଶାଳୀ ।

ପୁଣ୍ୟଶ୍ଳୋକ, ବିଂ. (ପୁଣ୍ୟ-ଶ୍ଳୋକ=ଯଶଃ) ପବିତ୍ର ଚରିତ୍ର । ଯଥା—

> ତିନିବେଳେ ପୁଣ୍ୟଶ୍ଳୋକ ସେହି ବୃକ୍ଷମଣି
> ସିବେ କି ଅନ୍ୟକୁ ଛଡ଼ି? ଅହୋ ରେ ଦଇବ ! ନ. ଯା.

ବି. ପୁଂ. ବିଷ୍ଣୁ, ଯୁଧିଷ୍ଠିର, ନଳରାଜା । ସ୍ତ୍ରୀ. ଦ୍ରୌପଦୀ, ସୀତା ।

ପୁତ୍, ବିଂ. (ପୂ-ଟ) କୁତ୍ସିତ । ବି. ନ. ନରକବିଶେଷ ।

ପୁତ, ବି. (ପୁତ୍ର ଶବ୍ଦଜ) ପୁଅ, ସନ୍ତାନ ।

ପୁତୁରା, ବି. (ଦେଶଜ) ଭାଇର ପୁଅ ।

ପୁତ୍ତଳ, ପୁତ୍ତଳକ, ପୁତ୍ତଳୀ, ବି. ସ୍ତ୍ରୀ. (ପୁତ୍ର-ଲ, କ, ଅ, ଲୀ) ପିତୁଳା, ପ୍ରତିମା, କୁଣ୍ଢେଇ ।

ପୁତ୍ତିକା, ବି. ସ୍ତ୍ରୀ. (ପୁତ୍=ଅବ୍ୟକ୍ତ ଶବ୍ଦ-ତନ=ବିସ୍ତାର କରିବା-ଅ-କ) ପତଙ୍ଗବିଶେଷ; ଉଈ; ମଧୁମକ୍ଷିକା ।

ପୁତ୍ର, ପୁତ୍ର, ବି. ପୁଂ. (ପୁତ୍-ତ୍ରୈ-ଅ) (ପୂ-ତ୍ର) ତନୟ, ନନ୍ଦନ, ସୁତ, ସନ୍ତାନ । ସ୍ତ୍ରୀ. କନ୍ୟା ।

ପୁତ୍ରକ, ବି. ପୁଂ. (ପୁତ୍ର-କ) ପୁତ୍ର; ସ୍ନେହପାତ୍ର; ସରଭ ।

ପୁତ୍ରକାମ, ବିଂ. (ପୁତ୍ର-କାମ-ଅ) ପୁତ୍ରାଭିଳାଷୀ, ଯେ ପୁତ୍ରକାମନା କରେ ।

ପୁତ୍ରବାନ୍, ବିଂ.(ପୁତ୍ର-ବତ୍) ପୁତ୍ରବିଶିଷ୍ଟ, ଯାହାର ପୁତ୍ର ଅଛି ।

ପୁତ୍ରିକା, ବି. ସ୍ତ୍ରୀ. (ପୁତ୍ର-କ-ଆ) କନ୍ୟା; ପିତୁଳା ।

ପୁତ୍ରୀ, ପୁତ୍ରୀ, ବି. ସ୍ତ୍ରୀ. (ପୁତ୍ର-ଈ) କନ୍ୟା; ପୁତ୍ରବତୀ । ବିଂ. (ପୁତ୍ର-ଇନ୍) ପୁତ୍ରବାନ୍ ।

ପୁତ୍ରୀୟ, ବିଂ. (ପୁତ୍ର-ଈୟ) ପୁତ୍ରସମ୍ବନ୍ଧୀୟ; ପୁତ୍ର-ନିମିତ୍ତକ ।

ପୁତ୍ରେଷ୍ଟି, ବି. ସ୍ତ୍ରୀ. (ପୁତ୍ର-ଯଜ୍-ତି) ପୁତ୍ରଜନନାର୍ଥ ଯଜ୍ଞବିଶେଷ ।

ପୁନଃପୁନଃ, ଅଂ. (ପୁନର୍-ପୁନର୍) ବାରମ୍ବାର, ମୁହୁର୍ମୁହୁଃ ।

ପୁନରାଗତ, ବିଂ. (ପୁନଃ-ଆଗତ) ପ୍ରତ୍ୟାଗତ, ଯେ ପୁନର୍ବାର ଆସିଅଛି ।

ପୁନରାଗମନ, ବି. ନ. (ପୁନଃ-ଆଗମନ) ପ୍ରତ୍ୟାଗମନ ।

ପୁନରସ୍ତୁ, (ପ୍ରା) ପୁନର୍ବାର, ପୁନଶ୍ଚ

ପୁନରାବୃର୍ତ୍ତ, ବ. ପୁଂ. (ପୁନର୍-ଆବର୍ତ୍ତ) ପୁନରା-
ଗମନ; ଘୂର୍ଣ୍ଣନ; ପୁନର୍ଜନ୍ମ ।

ପୁନରୁକ୍ତି, ବ. ସ୍ତ୍ରୀ. ( ପୁନଃ-ଉକ୍ତି ) ଉକ୍ତିର
ପୁନଃକଥନ; କହିବା କଥାକୁ ପୁଣି କହିବା ।

ପୁନର୍ଜନ୍ମ, ବ. ସ୍ତ୍ରୀ. ( ପୁନର୍-ଜନ୍ମନ୍ ) ପୁନର୍ବାର
ସଂସାରରେ ଜନ୍ମଗ୍ରହଣ ।

ପୁନର୍ନବ, ବ. ପୁଂ. (ପୁନର୍-ନବ) ନଖ, ନଖର;
ଏହା ଛେଦନ କଲେ ପୁନର୍ବାର ଜନ୍ମ ହୁଏ ।

ପୁନର୍ଭବ, ବ. ପୁଂ. (ପୁନର୍-ଭବ) ନଖ, କରରୁହ;
ପୁନର୍ଜନ୍ମ ।

ପୁନର୍ଭବୀ, ବ. ପୁଂ. (ପୁନଃ-ଭବ-ଇନ୍) ଆତ୍ମା,
ଏହା ଦେହ ଅନ୍ତରରେ ବିଦ୍ୟମାନ ଥାଏ ।

ପୁନର୍ଭୂ, ବ. ସ୍ତ୍ରୀ. (ପୁନର୍-ଭୂ-୦) ବିଧବା ହୋଇ
ଦ୍ୱିତୀୟବାର ବିବାହ ହୋଇଥିବା ସ୍ତ୍ରୀ । ବିଂ.
ପୁନର୍ବାର ଜାତ ।

ପୁନର୍ବସୁ, ବ. ପୁଂ. (ପୁନର୍-ବସୁ) ବିଷ୍ଣୁ; ଶିବ,
ସପ୍ତମ ନକ୍ଷତ୍ର; କାତ୍ୟାୟନ ମୁନି ।

ପୁନର୍ବିବାହ, ବ. ନ. (ପୁନର୍-ବିବାହ) ପ୍ରଥମ ବିରୁ-
କାଳର ସଂସ୍କାରବିଶେଷ; ଦ୍ୱିତୀୟ ବିବାହ ।

ପୁନଶ୍ଚ, ଅ. ପୁଣି, ପୁନର୍ବାର ।

ପୁନ୍ନାଗ, ବ. ପୁଂ. (ପୁମସ୍-ନାଗ) ପୁନାଙ୍ଗଗଛ;
ଶ୍ୱେତହସ୍ତୀ; ନାଗେଶ୍ୱର ବୃକ୍ଷ; ଶ୍ୱେତୋତ୍ପଳ ।

ପୁମାନ୍, ବ. ପୁଂ. (ପା-ଡୁମସ୍) ପୁରୁଷ; ମନୁଷ୍ୟ;
ପୁଂଲିଙ୍ଗ ।

ପୁମ୍ବତ୍, ଅ. (ପୁମସ୍-ବତ୍) ପୁରୁଷ ପରି; ମନୁଷ୍ୟ
ସଦୃଶ ।

ପୁର, ବ. ନ. (ପୃ-ଅ) ଗୃହ; ଦେହ । ନ. ସ୍ତ୍ରୀ.
ନଗର; ନଗରୀ । ନ. ପାଟଳୀପୁତ୍ର । ବିଂ.
ପୂର୍ଣ୍ଣ; ପୂର୍ବେ ।

ପୁରଃ, ଅ. (ପୁର୍-ଅସ୍) ଅଗ୍ରେ; ସମ୍ମୁଖେ ।

ପୁରଃସର, ବିଂ. (ପୁରସ୍-ସର) ପୂର୍ବକ; ଅଗ୍ରସର;
ଯେ ଅଗ୍ରରେ ଗମନ କରେ, ପରଚର ।

ପୁରଞ୍ଜନ, ବ. ପୁଂ. (ପୁର=ଦେହ-ଜନ) ଆତ୍ମା,
ଜୀବ ।

ପୁରଟ, ବ. ନ. ସୁବର୍ଣ୍ଣ ।

ପୁରତଟୀ, ବ. ସ୍ତ୍ରୀ. ( ପୁର-ତଟୀ ) ହାଟ; କ୍ଷୁଦ୍ର
ଗ୍ରାମ ।

ପୁରତଃ, ଅ. (ପୁର-ତସ୍) ଅଗ୍ରେ, ସମ୍ମୁଖରେ,
ଅଭିମୁଖରେ ।

ପୁରଦ୍ୱାର, ବ. ନ. ( ପୁର-ଦ୍ୱାର ) ନଗରଦ୍ୱାର;
ଘରଦ୍ୱାର, ସଦରଦରଜା ।

ପୁରଦ୍ୱିଟ୍, ବ. ପୁଂ. (ପୁର-ଦ୍ୱିଷ୍-୦) ଶିବ, ମହା-
ଦେବ, ତ୍ରିପୁରାରି ।

ପୁରନ୍ଦର, ବ. ପୁଂ. (ପୁର-ଦୃ-ଅ) ଇନ୍ଦ୍ର; ଚୋର;
ବିଷ୍ଣୁ ।

ପୁରନ୍ଦରା, ବ. ସ୍ତ୍ରୀ. (ପୁର-ଦୃ-ଅ, ସ୍ତ୍ରୀଲିଙ୍ଗେ ଆ )
ଗଙ୍ଗା ।

ପୁରନ୍ଧ୍ରି, ପୁରନ୍ଧ୍ରୀ, ବ. ସ୍ତ୍ରୀ. ( ପୁର-ଧୃ-ଅ-ଈ )
ପତିପୁତ୍ରବତୀ ସ୍ତ୍ରୀ, ଗୃହିଣୀ; ସଚରିତ୍ରା ।

ପୁରପାଳ, ବ. ପୁଂ. ( ପୁର-ପାଳ ) ଦେହପାଳକ
ଜୀବ; ନଗରପାଳ ।

ପୁରଶାସନ, ବ. ପୁଂ. ( ପୁର-ଶାସ୍-ଅନ )
ମହାଦେବ ।

ପୁରଶ୍ଚରଣ, ବ. ନ. ( ପୁରସ୍-ଚର୍-ଅନ ) ସ୍ୱୀୟ
ଇଷ୍ଟଦେବତାର ମନ୍ତ୍ର ସିଦ୍ଧ ହେବା ନିମନ୍ତେ
ତାହାଙ୍କୁ ପୂଜା କରି ତଦୀୟ ମନ୍ତ୍ର ଜପ, ହୋମ,
ତର୍ପଣ, ଅଭିଷେକ ଓ ବ୍ରାହ୍ମଣଭୋଜନ ଏହି
ପଞ୍ଚାଙ୍ଗ ସାଧନଦ୍ୱାରା ପୂଜା ।

ପୁରଶ୍ଛଦ, ବ. ପୁଂ. ତୃଣବିଶେଷ, ଓଲୁଅଗଛ ।

ପୁରସ୍କାର, ପୁଂ. } ବ. (ପୁରସ୍-କୃ-ଅ, କ୍ରିୟା )
ପୁରସ୍କ୍ରିୟା, ସ୍ତ୍ରୀ } ପୂଜା, ସମ୍ମାନ; ପାରି-
ତୋଷିକ, ଦାନ ।

ପୁରସ୍କୃତ, ବିଂ. (ପୁରସ୍-କୃ-ତ) ପୂଜିତ, ସମ୍ମା-
ନିତ; ସମ୍ମୁଖରେ ସ୍ଥାପିତ; ପାରିତୋଷିକପ୍ରାପ୍ତ ।

ପୁରସ୍ତ୍ରୀ, ବ. ସ୍ତ୍ରୀ. ନଗରବାସିନୀ ସ୍ତ୍ରୀଲୋକ; ଗୃହ-
କାର୍ଯ୍ୟଦକ୍ଷା ସ୍ତ୍ରୀ ।

ପୁରା, ଅ. (ପୃ-ଆ) ପୂର୍ବକାଳରେ, ପ୍ରଥମରେ;
ପୁରାବୃତ୍ତ, ନିକଟରେ, ଭବିଷ୍ୟତ୍ ବା ଅତୀତ
କାଳରେ; ପଶ୍ଚାତ୍; ପୁରାଣ ।

ପୁରାକୃତ, ବି°. ( ପୁରା-କୃତ ) ପ୍ରାରବ୍ଧକର୍ମ; ପୂର୍ବକାଳକୃତ (ପୁଣ୍ୟାଦି) ।

ପୁରାଣ, ବି. ନ. (ପୁରା-ନ ଅଥବା ପୁରା-ଣୀ-ଅ ) ସର୍ଗ, ପ୍ରତିସର୍ଗ, ବଂଶ, ମନ୍ୱନ୍ତର, ବଂଶାନୁଚରିତ ଏହି ଲକ୍ଷଣାନ୍ୱିତ ବ୍ୟାସାଦି ମୁନିପ୍ରଣୀତ ବେଦାର୍ଥବର୍ଣ୍ଣିତ ଗ୍ରନ୍ଥବିଶେଷ, ଅଷ୍ଟାଦଶ ପୁରାଣ । ଯଥା—ବ୍ରାହ୍ମ୍ୟ, ପାଦ୍ମ୍ୟ, ବୈଷ୍ଣବ, ଶୈବ, ଭାଗବତ, ନାରଦୀୟ, ମାର୍କଣ୍ଡେୟ, ଆଗ୍ନେୟ, ଭବିଷ୍ୟ, ବ୍ରହ୍ମବୈବର୍ତ୍ତ, ଲୈଙ୍ଗ, ବରାହ, ସ୍କାନ୍ଦ, ବାମନ, କୌର୍ମ, ମାତ୍ସ୍ୟ, ଗାରୁଡ଼, ବ୍ରହ୍ମାଣ୍ଡ । ବି°. ପ୍ରାଚୀନ, ପୁରାତନ ।

ପୁରାଣପୁରୁଷ, ବି. ପୁଂ. ( ପୁରାଣ-ପୁରୁଷ ) ବିଷ୍ଣୁ, ଆଦି ପୁରୁଷ; ବୃଦ୍ଧ ।

ପୁରାତନ, ବି°. (ପୁରା-ତନ) ପ୍ରାଚୀନ, ଅନାଦି ।

ପୁରାରି, ବି. ପୁଂ. (ପୁର-ଅରି) ଶିବ, ମହାଦେବ ।

ପୁରାବସୁ, ବି. ପୁଂ. (ପୁରା-ବସୁ) ଭୀଷ୍ମ ।

ପୁରାବିତ୍, ବି.ପୁଂ. (ପୁରା-ବିଦ୍-କ୍ୱିପ୍) ପୂର୍ବଜ୍ଞ; ପଣ୍ଡିତ; ଇତିହାସବେତ୍ତା, ପୁରାବୃତ୍ତଜ୍ଞ ।

ପୁରାବୃତ୍ତ, ବି. ନ. ( ପୁରା-ବୃତ୍ତ ) ପୂର୍ବବୃତ୍ତାନ୍ତ, ଇତିହାସ, ପୁରୁଣା କଥା, ଆଖ୍ୟାୟିକା ।

ପୁରାସାହ, ବି. ପୁଂ. (ପୁରା-ସହ-ଅ) ଇନ୍ଦ୍ର ।

ପୁରାସୁହୃଦ, ବି. ପୁଂ. (ପୁରା-ସୁହୃଦ୍) ଶିବ ।

ପୁରି, ବି. (ଦେଶଜ) ଗହମ ଅଟା ଏବଂ ଘୃତରେ ପ୍ରସ୍ତୁତ ପିଷ୍ଟକବିଶେଷ ।

ପୁରୀ, ବି. ସ୍ତ୍ରୀ. ( ପୁର-ଈ ) ନଗରୀ; ଭବନ; କଟକର ଦକ୍ଷିଣସ୍ଥ ଜିଲ୍ଲା; ପ୍ରସିଦ୍ଧ ତୀର୍ଥସ୍ଥାନ; ସନ୍ନ୍ୟାସିମାନଙ୍କର ଉପାଧିବିଶେଷ ।

ପୁରୀଷ, ବି. ନ. (ପ=ପାଳନ କରିବା-ଈଷ) ଯେ ବୃକ୍ଷାଦିର ମୂଳ ପାଳନ କରେ, ବିଷ୍ଠା, ମଳ ।

ପୁରୁ, ବି°. (ପୃ-ଉ) ପ୍ରଚୁର, ଅଧିକ । ବି. ପୁଂ. ଯଯାତି ରାଜାର କନିଷ୍ଠପୁତ୍ର; ଦୈତ୍ୟବିଶେଷ; ଦେବଲୋକ; ପରାଗ ।

ପୁରୁଖା, ବି°. (ଦେଶଜ) ପ୍ରବୀଣ ।

ପୁରୁଣା, ବି°. ( ପୁରାତନ ଶବ୍ଦଜ ) ପ୍ରାଚୀନ, ପୁରାତନ ।

ପୁରୁଣି, ବି. (ଦେଶଜ) ଶାକବିଶେଷ ।

ପୁରୁଦଂଶା, ବି. ପୁଂ. ( ପୁରୁ-ଦନ୍ଶ୍-ଅସ୍ ) ଇନ୍ଦ୍ର, ଯେ ପୁରୁଙ୍କୁ ଦଂଶନ ଅର୍ଥାତ୍ ବିନାଶ କରିଥିଲେ ।

ପୁରୁଷ, ବି. ପୁଂ. (ପୃ-ଉଷ) ନର, ମନୁଷ୍ୟ; ଆତ୍ମା; ଈଶ୍ୱର ।

ପୁରୁଷକାର, ବି. ପୁଂ. (ପୁରୁଷ-କାର) ପୌରୁଷ; ଉତ୍ସାହ; ଚେଷ୍ଟା ।

ପୁରୁଷଗ୍ରହ, ସୂର୍ଯ୍ୟ; ମଙ୍ଗଳ ଓ ବୃହସ୍ପତି ।

ପୁରୁଷତ୍ୱ, ବି.ନ.(ପୁରୁଷ-ତ୍ୱ) ମନୁଷ୍ୟତ୍ୱ; ପୌରୁଷ; ବୀର୍ଯ୍ୟ; ଉତ୍ସାହ ।

ପୁରୁଷତ୍ୱହୀନ, ବି°. ପୁଂସ୍ତ୍ୱହୀନ, ନପୁଂସକ ।

ପୁରୁଷନକ୍ଷତ୍ର, ହସ୍ତା, ମୂଳା, ଶ୍ରବଣା, ପୁନର୍ବସୁ, ମୃଗଶିରା ଓ ପୁଷ୍ୟା ।

ପୁରୁଷରାଶି, ମେଷ, ମିଥୁନ, ସିଂହ, ତୁଳା, ଧନୁ ଓ କୁମ୍ଭ ।

ପୁରୁଷବ୍ୟାଘ୍ର, ପୁରୁଷସିଂହ, ବି. ପୁଂ. (ପୁରୁଷ-ବ୍ୟାଘ୍ର, ସିଂହ) ନରଶ୍ରେଷ୍ଠ ।

ପୁରୁଷାଙ୍ଗ, ବି. ପୁଂ. (ପୁରୁଷ-ଅଙ୍ଗ) ପୁଂଚିହ୍ନ ।

ପୁରୁଷାଦ୍ୟ, ବି. ପୁଂ. (ପୁରୁଷ-ଆଦ୍ୟ) ବିଷ୍ଣୁ ।

ପୁରୁଷାୟୁଷ, ବି. ନ. (ପୁରୁଷ-ଆୟୁସ୍-ଅ) ପୁରୁଷର ଜୀବିତ କାଳ, ଶତବର୍ଷ ।

ପୁରୁଷାର୍ଥ, ବି. ପୁଂ. ଧର୍ମ, ଅର୍ଥ, କାମ, ମୋକ୍ଷରୂପ ପୁରୁଷର ପ୍ରୟୋଜନ ସମୂହ ।

ପୁରୁଷୋତ୍ତମ, ବି. ପୁଂ. (ପୁରୁଷ-ଉତ୍ତମ) ବିଷ୍ଣୁ; ପୁରୁଷଶ୍ରେଷ୍ଠ; ଓଡ଼ିଶାର ଗଙ୍ଗାବଂଶୀୟ ଏକ ରାଜା; ପୁରୀ ତୀର୍ଥ ।

ପୁରୁହୂତ, ବି. ପୁଂ. (ପୁରୁ-ହୂତ) ଇନ୍ଦ୍ର ।

ପୁରୂରବାଃ, ବି. ପୁଂ. (ପୁରୁ-ରୁ-ଅସ୍) ଚନ୍ଦ୍ରବଂଶୀୟ ନୃପବିଶେଷ, ବୁଧଙ୍କର ପୁତ୍ର ।

ପୁରୋଗ, ପୁରୋଗମ, ପୁରୋଗାମିନ୍, ବି°. ( ପୁରସ୍=ଅଗ୍ରେ-ଗ, ଗମ, ଗାମିନ୍ ) ଅଗ୍ରଗାମୀ, ପ୍ରଧାନ ।

ପୁରୋଗତ, ବିଂ. ( ପୁରସ୍-ଗତ ) ଯେ ଅଗ୍ରେ ଗମନ କରିଅଛି, ପୂର୍ବଗତ ।

ପୁରୋଗବ, ବି. ପୁଂ. (ପୁରସ୍-ଗବ) କୁକ୍କୁର । ସ୍ତ୍ରୀ. ଅଗ୍ରେ ଗମନ । ବିଂ. ଅଗ୍ରଗ ।

ପୁରୋଚନ, ବି. ପୁଂ. ପାଣ୍ଡବମାନଙ୍କ ଦହନାର୍ଥ ଜତୁଗୃହରେ ନିଯୋଜିତ ଦୁର୍ଯ୍ୟୋଧନର ମନ୍ତ୍ରୀ ।

ପୁରୋଡାଶ୍, ପୁରୋଡାଶ, ବି. ପୁଂ (ପୁରସ୍-ଦାଶ୍-ଂ,ଅ) ଯଜ୍ଞୀୟ ଘୃତ ।

ପୁରୋଧାଃ, ବି. ପୁଂ. ( ପୁରସ୍-ଧା-ଅସ୍ ) ପୁରୋହିତ ।

ପୁରୋହିତ, ବି. ପୁଂ. (ପୁରସ୍-ଧା-ତ) ଶ୍ରାଦ୍ଧାଦି କର୍ମ କରିବା ବ୍ରାହ୍ମଣ ।

ପୁଲ, ବି. ପୁଂ. (ପୁଲ୍-ଅ) ପୁଲକ, ରୋମାଞ୍ଚ । ବିଂ. ବିପୁଳ, ବୃହତ୍ ।

ପୁଲକ, ବି. ପୁଂ. (ପୁଲ୍-ଅକ) ରୋମାଞ୍ଚ; ଆନନ୍ଦ; ହରିତାଳ ।

ପୁଲକାଙ୍ଗ, ବି. ପୁଂ. ବରୁଣର ପାଶ ।

ପୁଲକାଲୟ, ବି. ପୁଂ. କୁବେର ।

ପୁଲକିତ, ବିଂ. (ପୁଲକ-ଇତ) ହୃଷ୍ଟ, ରୋମାଞ୍ଚିତ; ଆହ୍ଲାଦିତ; ଉଲ୍ଲସିତ ।

ପୁଲକୀ, ବିଂ. (ପୁଲକ-ଇନ୍)ପୁଲକିତ, ରୋମାଞ୍ଚିତ; ପୁଲକଯୁକ୍ତ । ବି. ପୁଂ. କଦମ୍ବବୃକ୍ଷ ।

ପୁଲସ୍ତ୍ୟ, ବି. ପୁଂ. (ପୁଲ-ସ୍ତ୍ୟୈ-ଅ) ସପ୍ତର୍ଷିମାନଙ୍କ ମଧ୍ୟରୁ ଏକ ଋଷି ।

ପୁଲହ, ବି. ପୁଂ. ( ପୁଲ-ହା-ଅ ) ଋଷିବିଶେଷ, ସପ୍ତର୍ଷି ଅନ୍ତର୍ଗତ ଏକ ଋଷି ।

ପୁଳାଏ, କ୍ରି. ବି. (ଦେଶଜ) ମେଞ୍ଚାଏ, ଗୁଚ୍ଛାଏ ।

ପୁଳିନ, ବି. ନ. (ପୁଲ-ଇନ) ତଟ; ଦ୍ୱୀପ ।

ପୁଳିନ୍ଦ, ବି. ପୁଂ. ଶବର, ବନ୍ୟଜାତି । ଯଥା—

> ଝୁଣା ଲାଗି ହିତ ହୋଇ ପୁଳିନ୍ଦବୃନ୍ଦାରେ । ମ. ଯା,

ପୁଳିନ୍ଦା, ବି. ( ଦେଶଜ ) ଲଫାପା, କାଗଜର ଖୋଳ ।

ପୁଲୋମଜା, ବି. ସ୍ତ୍ରୀ. ( ପୁଲୋମନ୍-ଜନ୍-ଅ ) ଶଚୀ, ଇନ୍ଦ୍ରାଣୀ, ଇନ୍ଦ୍ରପତ୍ନୀ ।

ପୁଲୋମା, ବି. ପୁଂ. (ପୁଲୋମନ୍) ଅସୁରବିଶେଷ; ଇନ୍ଦ୍ରଙ୍କ ଶ୍ୱଶୁର; ଶଚୀଙ୍କ ଜନକ ।

ପୁଷ୍କର, ବି. ନ. (ପୁଷ୍-କର ) ପଦ୍ମ; ପଦ୍ମକୋଷ; ଜଳ; ଆକାଶ; ତୀର୍ଥ; କାଣ୍ଡ, ବାଣ; ଯୁଦ୍ଧ । ପୁଂ. ବରୁଣର ପୁତ୍ର; ନଳ ରାଜାର ଭ୍ରାତା; ମେଘବିଶେଷ । ଯଥା—

> ପୁଷ୍କର ଆବର୍ତ୍ତ ବିଶେ ସମ୍ଭୂତ ।
> ବର୍ଷାଧାର ଧରାତଳେ ଅଟ ଜାତ । ମେ. ଦୂ.

ପର୍ବତବିଶେଷ; ରୋଗବିଶେଷ; ସାରସପକ୍ଷୀ ।

ପୁଷ୍କରାକ୍ଷ, ବି. ପୁଂ. ( ପୁଷ୍କର-ଅକ୍ଷି-ଅ ) ବିଷ୍ଣୁ, ପୁଣ୍ଡରୀକାକ୍ଷ ।

ପୁଷ୍କରାହ୍ୱ. ବି. ପୁଂ. (ପୁଷ୍କର-ଆହ୍ୱା) ସାରସପକ୍ଷୀ ।

ପୁଷ୍କରିଣୀ, ବି. ସ୍ତ୍ରୀ. ( ପୁଷ୍କର-ଇନ୍-ଈ ) ସରସୀ; ହସ୍ତିନୀ; ପଦ୍ମିନୀ; ପୋଖରୀ ।

ପୁଷ୍କରୀ, ବି. ପୁଂ. ( ପୁଷ୍କର-ଇନ୍ ) ହସ୍ତୀ, ଗଜ ।

ପୁଷ୍କଳ, ବିଂ. (ପୁଷ୍-କଳ) ଶ୍ରେଷ୍ଠ; ଅଧିକ; ପୂର୍ଣ୍ଣ ।

ପୁଷ୍ଟ, ବିଂ. (ପୁଷ୍-ତ) ପ୍ରତିପାଳିତ; ବୃଦ୍ଧିପ୍ରାପ୍ତ ।

ପୁଷ୍ଟି, ବି. ସ୍ତ୍ରୀ. (ପୁଷ୍-ତି) ପୋଷଣ; ବୃଦ୍ଧି, ପ୍ରତିପାଳନ ।

ପୁଷ୍ଟିକର, ବିଂ. (ପୁଷ୍ଟି-କର) ବୃଦ୍ଧିକାରକ, ସ୍ଥୂଳତାସମ୍ପାଦକ ।

ପୁଷ୍ଟିକା, ବି. ସ୍ତ୍ରୀ. (ପୁଷ୍ଟି-କ) ଶୁକ୍ତି, ଶାମୁକା ।

ପୁଷ୍ଟିକାନ୍ତ, ବି. ପୁଂ. ( ପୁଷ୍ଟି-କାନ୍ତ ) ଗଣେଶ, ଲମ୍ବୋଦର ।

ପୁଷ୍ପ, ବି. ନ. (ପୁଷ୍ପ୍-ଅ) କୁସୁମ, ଫୁଲ; ସ୍ତ୍ରୀରଜଃ; ବିକାଶ; ନେତ୍ରରୋଗବିଶେଷ ।

ପୁଷ୍ପକ, ବି.ନ.(ପୁଷ୍ପ-କ) କୁବେର ରଥ; ରସାଞ୍ଜନ; ନେତ୍ରରୋଗବିଶେଷ; ରତ୍ନନିର୍ମିତ କଙ୍କଣ ।

ପୁଷ୍ପକରଣ୍ଡକ, ବି. ନ. ( ପୁଷ୍ପ-କରଣ୍ଡକ ) ଫୁଲଡୋଲା ଚଙ୍ଗୁଡ଼ି ।

ପୁଷ୍ପକୀଟ, ବି. ପୁଂ. ( ପୁଷ୍ପ-କୀଟ ) ଭ୍ରମର; ପୁଷ୍ପର କୀଟ ।

ପୁଷ୍ପକେତନ, ପୁଷ୍ପକେତୁ, ପୁଷ୍ପଧ୍ୱଜ । ବି. ପୁଂ. ( ପୁଷ୍ପ-କେତନ, କେତୁ, ଧ୍ୱଜ ) କନ୍ଦର୍ପ, କାମଦେବ, ମଦନ, ମନ୍ମଥ ।

ପୁଷ୍ପଘାତକ, ବ. ପୁଂ. (ପୁଷ୍ପ-ଘାତକ) ବାଉଁଶ, ପୁଷ୍ପ ହେଲେ ବାଉଁଶ ମରଯାଏ, ଏହେତୁ ତାକୁ ପୁଷ୍ପଘାତକ କହନ୍ତି ।

ପୁଷ୍ପଦନ୍ତ, ବ. ପୁଂ. (ପୁଷ୍ପ-ଦନ୍ତ) ବାୟୁକୋଣର ହସ୍ତୀ; ନାଗବିଶେଷ; ଗନ୍ଧର୍ବରାଜବିଶେଷ; ବିଦ୍ୟାଧରବିଶେଷ ।

ପୁଷ୍ପଦ୍ରବ, ବ. ପୁଂ. (ପୁଷ୍ପ-ଦ୍ରବ) ପୁଷ୍ପରସ,ମକରନ୍ଦ, ମଧୁ ।

ପୁଷ୍ପଧନ୍ୱା, ବ. ପୁଂ. (ପୁଷ୍ପ-ଧନୁସ୍) ମଦନ, କାମ-ଦେବ, କନ୍ଦର୍ପ ।

ପୁଷ୍ପନ୍ଧୟ, ବ. ପୁଂ. (ପୁଷ୍ପ-ଧେ-ଅ) ଅଳି,ଭ୍ରମର ।

ପୁଷ୍ପପଥ, ବ. ପୁଂ (ପୁଷ୍ପ-ପଥ) ଯୋନି, ସ୍ତ୍ରୀଚିହ୍ନ ।

ପୁଷ୍ପପୁର, ବ. ନ. (ପୁଷ୍ପ-ପୁର) ପାଟନା,ପାଟଳିପୁତ୍ର, ନଗରବିଶେଷ ।

ପୁଷ୍ପଫଳ, ବ. ପୁଂ. (ପୁଷ୍ପ-ଫଳ) କପିତ୍ଥ; କୁଷ୍ମାଣ୍ଡ, ପାଣିକଖାରୁ ।

ପୁଷ୍ପମାସ ବ. ପୁଂ. (ପୁଷ୍ପ-ମାସ) ବସନ୍ତକାଳ ।

ପୁଷ୍ପରଥ, ବ. ପୁଂ. (ପୁଷ୍ପ-ରଥ) ଭ୍ରମଣାର୍ଥ ରଥ, କ୍ରୀଡ଼ାରଥ ।

ପୁଷ୍ପରସ, ବ. ପୁଂ. (ପୁଷ୍ପ-ରସ) ମକରନ୍ଦ, ଫୁଲର ମଧୁ ।

ପୁଷ୍ପରାଗ, ବ. ପୁଂ. (ପୁଷ୍ପ-ରାଗ) ପଦ୍ମରାଗମଣି,ମଣି-ବିଶେଷ ।

ପୁଷ୍ପରେଣୁ ବ. ପୁଂ. (ପୁଷ୍ପ-ରେଣୁ) ପରାଗ,ପୁଷ୍ପରଜ, ପୁଷ୍ପଧୂଳି ।

ପୁଷ୍ପଲିହ, ବ. ପୁଂ. (ପୁଷ୍ପ-ଲିହ-ଅ) ଭ୍ରମର, ମଧୁକର ।

ପୁଷ୍ପବାଟିକା, ପୁଷ୍ପବାଟୀ, ବ. ସ୍ତ୍ରୀ. (ପୁଷ୍ପ-ବାଟିକା, ବାଟୀ) କୁସୁମୋଦ୍ୟାନ, ଫୁଲବଗିଚ୍ଚ ।

ପୁଷ୍ପବାଣ, ପୁଷ୍ପଶର, ବ. ପୁଂ. (ପୁଷ୍ପ-ବାଣ, ଶର) କନ୍ଦର୍ପ ।

ପୁଷ୍ପସମୟ, ବ. ପୁଂ. (ପୁଷ୍ପ-ସମୟ) ବସନ୍ତସମୟ; ଋତୁସମୟ ।

ପୁଷ୍ପସାର, ପୁଷ୍ପସ୍ୱେଦ, ବ. ପୁଂ. (ପୁଷ୍ପ-ସାର,ସ୍ୱେଦ) ଫୁଲର ମଧୁ ମକରନ୍ଦ; ତୁଳସୀ ।

ପୁଷ୍ପହାସା, ବ. ସ୍ତ୍ରୀ. (ପୁଷ୍ପ-ହାସ) ରଜସ୍ୱଳା; ଋତୁମତୀ ।

ପୁଷ୍ପହୀନା, ବ. ସ୍ତ୍ରୀ. (ପୁଷ୍ପ-ହୀନା) ବନ୍ଧ୍ୟା ସ୍ତ୍ରୀ, ଯାହାର ପୁଷ୍ପ ଅର୍ଥାତ୍ ରଜଃ ନିବୃତ୍ତି ହୋଇଅଛି; ଉମ୍ବିରଗଛ ।

ପୁଷ୍ପାଜୀବ, ବ. ପୁଂ. (ପୁଷ୍ପ-ଆଜୀବ) ମାଳାକାର, ମାଳୀ ।

ପୁଷ୍ପାଞ୍ଜଳି, ବ. ପୁଂ. (ପୁଷ୍ପ-ଅଞ୍ଜଳି) ଏକ ଅଞ୍ଜୁଳା ଫୁଲ ।

ପୁଷ୍ପାୟୁଧ, ବ. ପୁଂ. (ପୁଷ୍ପ-ଆୟୁଧ) ମଦନ, କନ୍ଦର୍ପ ।

ପୁଷ୍ପିତ, ବ. (ପୁଷ୍ପ-ଇତ) କୁସୁମିତ, ପ୍ରକାଶିତ । ସ୍ତ୍ରୀ. ଋତୁମତୀ ।

ପୁଷ୍ପେଷୁ, ବ. ପୁଂ. (ପୁଷ୍ପ-ଇଷୁ) କନ୍ଦର୍ପ ।

ପୁଷ୍ପୋତ୍ସବ, ବ. ପୁଂ. (ପୁଷ୍ପ-ଉତ୍ସବ) ସ୍ତ୍ରୀମାନଙ୍କର ପ୍ରଥମ ରଜୋଦର୍ଶନରେ କରଣୀୟ ଉତ୍ସବ-ବିଶେଷ, କୁସୁମକ୍ରୀଡ଼ା, ରଜୋତ୍ସବ ।

ପୁଷ୍ୟା, ବ. ସ୍ତ୍ରୀ. (ପୁଷ୍-ଯ-ଅ) ୮ମ ନକ୍ଷତ୍ର; ପୌଷ ମାସ ।

ପୁସ୍ତକ, ନ. } ବ. ଗ୍ରନ୍ଥ, କିତାପ,ବହି,ପୋଥି ।
ପୁସ୍ତକା, ସ୍ତ୍ରୀ. }

ପୁସ୍ତକର୍ମ, ବ. ନ. (ପୁସ୍ତ-କର୍ମ) ଲେପନ, ଶିଳ୍ପ-କର୍ମ ।

ପୁସ୍ତକାଗାର, ବ.ନ. (ପୁସ୍ତକ-ଅଗାର) ପୁସ୍ତକାଳୟ ।

ପୁହାଇବା, କ୍ରି. (ଦେଶଜ) ପ୍ରଭାତ କରାଇବା ।

ପୂଗ, ବ. ପୁଂ. (ପୂ-ଗ) ଗୁବାକବୃକ୍ଷ । ଯଥା—

ପୂଗମାଳେ ଯହିଁ ଜଡ଼େ ନାଗବଲ୍ଲୀ ।

ପଣଗଛ; ପୁଞ୍ଜ, ରାଶି, ସମୂହ । ନ. ଗୁବାକ ।

ପୂଜକ, ବ. (ପୂଜ୍-ଅକ) ପୂଜାକର୍ତ୍ତା, ଉପାସକ, ସେବକ, ଅର୍ଚ୍ଚକ ।

ପୂଜନ, ବ. ନ. (ପୂଜ୍-ଅନ) ପୂଜା, ଉପାସନା, ଅର୍ଚ୍ଚନା, ଆରାଧନା ।

ପୂଜନୀୟ, ବ. (ପୂଜ୍-ଅନୀୟ) ପୂଜାର ଯୋଗ୍ୟ, ପୂଜ୍ୟ, ଆରାଧ୍ୟ,ଉପାସ୍ୟ,ନମସ୍ୟ,ଆଦରଣୀୟ ।

ପୂଜୟିତା, ବିଂ. (ପୂଜ୍-ତୃ) ଉପାସକ, ଅର୍ଚ୍ଚକ ।
ପୂଜୟିତ୍ରୀ, ବିଂ. (ପୂଜ୍-ତୃ-ଈ) ପୂଜାକାରିଣୀ ।
ପୂଜା, ବି. ସ୍ତ୍ରୀ. (ପୂଜ୍-ଆ) ଅର୍ଚ୍ଚନା, ଉପାସନା; ପ୍ରଶଂସା; ସେବା; ସ୍ତୁତି ।
ପୂଜାର୍ହ, ବିଂ. (ପୂଜା-ଅର୍ହ) ପୂଜାର ଯୋଗ୍ୟ ।
ପୂଜାହାରୀ, ବି. ପୁଂ. ( ପୂଜା-ଆହାରୀ ) ଦେବ-ପୂଜକ ବ୍ରାହ୍ମଣ । ବିଂ. ପୂଜାଜୀବୀ ।
ପୂଜିତ, ବିଂ. ( ପୂଜ୍-ତ ) ଅର୍ଚ୍ଚିତ, ସେବିତ; ଆଦୃତ ।
ପୂଜ୍ୟ, ବିଂ. ( ପୂଜ୍-ଯ ) ପୂଜନୀୟ, ପୂଜାର ଯୋଗ୍ୟ ।
ପୂଜ୍ୟମାନ, ବିଂ. ( ପୂଜ୍-ଆନ ) ସେବ୍ୟମାନ, ଯାହାକୁ ପୂଜା କରି ଯାଉଅଛି ।
ପୂତ, ବିଂ. (ପୂ-ତ) ନିର୍ମଳ; ପବିତ୍ର; ପରିଷ୍କୃତ; ଅକପଟ; ସତ୍ୟ । ବି. ପୁଂ. ଶଙ୍ଖ; କୁଶ । ସ୍ତ୍ରୀ. ଦୂବ । (ପବିତ୍ର ଅର୍ଥରେ) ଯଥା—

ଶାନ୍ତିପୁର ଯହିଁ ତପୋପୂତା ନାର
ପୂତ ଅଭିଷେକେ ଶ୍ରୀରଘୁବୀର । ନ. ବେ.

ପୂତକ୍ରତୁ, ବି. ପୁଂ. ( ପୂତ-କ୍ରତୁ ) ଇନ୍ଦ୍ର ।
ପୂତଦ୍ରୁ, ବି. ପୁଂ. ( ପୂତ-ଦ୍ରୁ ) ପଲାଶବୃକ୍ଷ, କିଂଶୁକ ।
ପୂତଧାନ୍ୟ, ବି. ନ. (ପୂତ-ଧାନ୍ୟ) ତିଳ ।
ପୂତନା, ବି. ସ୍ତ୍ରୀ. (ପୂତ-ଅନ-ଆ) ହରିତକୀ; ବକାସୁରର ଭଗିନୀ; ଦାନବୀବିଶେଷ ।
ପୂତନାରି, ବି. ପୁଂ. (ପୂତନା-ଅରି) ଶ୍ରୀକୃଷ୍ଣ, ନାରାୟଣ । ବିଂ. ପୂତନାର ବଧକାରୀ ।
ପୂତା, ବି. ସ୍ତ୍ରୀ. (ପୂତ-ଆ) ଦୂବ ।
ପୂତି, ବି. ସ୍ତ୍ରୀ. (ପୂ-ତି) ପବିତ୍ରତା; (ପୂୟ-ତି) ଦୁର୍ଗନ୍ଧ । ବିଂ. ଦୁର୍ଗନ୍ଧବିଶିଷ୍ଟ ।
ପୂତିକ, ବି. ନ. (ପୂତି-କ) ବିଷ୍ଠା, ମଳ, ପୁରୀଷ ।
ପୂତିକରଞ୍ଜ, ବି. ପୁଂ. ( ପୂତିକ-ରନ୍ଜ୍-ଅ ) କରଞ୍ଜବିଶେଷ ।
ପୂତିକା, ବି. ସ୍ତ୍ରୀ. (ପୂୟ-ତି-କ) ପୋଇଶାଗ; ମାର୍ଜ୍ଜାରୀ, ବିରାଡ଼ୀ ।
ପୂତିକାଷ୍ଠ, ବି. ନ. (ପୂତି-କାଷ୍ଠ) ଦେବଦାରୁ, ସରଳବୃକ୍ଷ; ପବିତ୍ରଦାରୁ ।
ପୂତିଗନ୍ଧ, ବି. (ପୂତି-ଗନ୍ଧ) ଦୁର୍ଗନ୍ଧ, ପଚାଗନ୍ଧ । ବି. ପୁଂ. ଗନ୍ଧକ; ଇଙ୍ଗୁଦୀବୃକ୍ଷ । ବି. ନ. ରଙ୍ଗ ।
ପୂତିନସ୍ୟ, ବି. ପୁଂ. (ପୂତି-ନସ୍-ଯ) ନାସିକା-ରୋଗବିଶେଷ; ନାସିକାରୁ ଦୁର୍ଗନ୍ଧ ନିଃସୃତ ହେବା ।
ପୂତିବାତ, ବି. ପୁଂ. (ପୂତି-ବାତ) ବିଲ୍ବବୃକ୍ଷ; ଦୁର୍ଗନ୍ଧବାୟୁ ।
ପୂତ୍ୟଣ୍ଡ, ବି. ପୁଂ. (ପୂତି-ଅଣ୍ଡ) ଗନ୍ଧକୀଟ; କସ୍ତୂରୀମୃଗ ।
ପୂନ, ବିଂ. (ପୂ=ପବିତ୍ର କରିବା-ତ) ପବିତ୍ର; ନଷ୍ଟ, ନାଶପ୍ରାପ୍ତ ।
ପୂପ, ବି. ପୁଂ. (ପୂ-ପକ୍ ) ପିଷ୍ଟକ, ପିଠା ।
ପୂରି, ବି. ପୁଂ. (ପୂର୍-ଅ) ଜଳରାଶି; ପ୍ରବାହ ସମୂହ; ଖାଦ୍ୟବିଶେଷ; ପରିପୂରଣ; ବ୍ରଣ-ସଂଶୁଦ୍ଧି । ବିଂ. ପୂର୍ଣ୍ଣ ।
ପୂରକ, ବିଂ. (ପୂର୍-ଅକ) ଗୁଣକ; ପୂର୍ଣ୍ଣ-କାରକ ।
ପୂରଠ, ବିଂ. ମୁଦ୍ରିତ; ପୂର୍ଣ୍ଣ ।
ପୂରଣ, ବି. ନ. (ପୂର୍-ଅନ) ପୂର୍ଣ୍ଣ ହେବା; ବୃଦ୍ଧି; ପୂର୍ଣ୍ଣ କରିବା ।
ପୂରୟିତା, ବିଂ. (ପୂର୍-ତୃ) ପୂରକ, ପୂର୍ଣ୍ଣକାରକ । ବି. ପୁଂ. ବିଷ୍ଣୁ ।
ପୂରିକା, ବି. ସ୍ତ୍ରୀ. (ପୂର୍-କ) ପୁରୀ, କଚୁରୀ ପ୍ରଭୃତି ।
ପୂରିତ, ବିଂ. (ପର୍-ତ) ଗୁଣିତ; ପୂର୍ଣ୍ଣ ।
ପୂରୁଷ, ବି. ପୁଂ. (ପୂର୍-ଉଷ) ପୁରୁଷ, ପୁଂଜାତୀୟ ମନୁଷ୍ୟ ।
ପୂର୍ଣ୍ଣ, ବିଂ. (ପୃ-ତ) ସମ୍ପୂର୍ଣ୍ଣ; ସମର୍ଥ; ସକଳ । ବି. ପୁଂ. ପକ୍ଷିବିଶେଷର ସ୍ୱର; ଦେବବିଶେଷ; ନାଗବିଶେଷ । ନ. ଜଳ ।
ପୂର୍ଣ୍ଣକାମ, ବିଂ. ( ପୂର୍ଣ୍ଣ-କାମ ) ପୂର୍ଣ୍ଣମନୋରଥ, ଯାହାର ଅଭୀଷ୍ଟ ସିଦ୍ଧ ହୋଇଅଛି ।

ପୂର୍ଣ୍ଣକୁମ୍ଭ, ବ. ପୁଂ. ( ପୂର୍ଣ୍ଣ-କୁମ୍ଭ ) ଜଳପୂରିତ କଳସ ।

ପୂର୍ଣ୍ଣପାତ୍ର, ବ. ନ. ( ପୂର୍ଣ୍ଣ-ପାତ୍ର ) ପୁତ୍ରଜନ୍ମାଦି ଉତ୍ସବ ସମୟରେ ଦେୟ ବସ୍ତ୍ରାଳଙ୍କାରାଦି; ପୂର୍ଣ୍ଣପାତ୍ର; ଜଳପୂର୍ଣ୍ଣ ପାତ୍ର ।

ପୂର୍ଣ୍ଣମା, ପୂର୍ଣ୍ଣମାସୀ, ବ. ସ୍ତ୍ରୀ. (ପୂର୍ଣ୍ଣ-ମା, ମାସୀ) ପୂର୍ଣ୍ଣିମା ତିଥି ।

ପୂର୍ଣ୍ଣା, ବ. ସ୍ତ୍ରୀ. (ପୂର୍ଣ୍ଣ-ଆ) ପଞ୍ଚମୀ, ଦଶମୀ, ପୂର୍ଣ୍ଣିମା, ଅମାବାସ୍ୟା ତିଥି ।

ପୂର୍ଣ୍ଣାନକ, ବ. ନ. (ପୂର୍ଣ୍ଣ-ଅନ୍-ଅକ) ପୁତ୍ରଜନ୍ମାଦି ଉତ୍ସବ ସମୟରେ ଦେୟ ବସ୍ତ୍ରାଦିପରିପୂର୍ଣ୍ଣ ପାତ୍ରବିଶେଷ; ଚନ୍ଦ୍ରାଲୋକ; ପଟହ ଶବ୍ଦ, ଢକ୍କାର ଶବ୍ଦ ।

ପୂର୍ଣ୍ଣି, ବ. ସ୍ତ୍ରୀ. (ପୂ-ତି) ପୂରଣ, ପୂର୍ତ୍ତି ।

ପୂର୍ଣ୍ଣିମା, ବ. ସ୍ତ୍ରୀ. (ପୂର୍ଣ୍ଣ-ଇମ-ଆ) ଶୁକ୍ଳ ପକ୍ଷର ପଞ୍ଚଦଶୀ ତିଥି ।

ପୂର୍ତ୍ତ, ବ. ସ୍ତ୍ରୀ. (ପୃ-ତ) ସାଧାରଣର ଉପକାରାର୍ଥ ଜଳାଶୟାଦି ଖନନ; ପୂରଣ । ବିଂ. ପୂରିତ; ଆଚ୍ଛାଦିତ, ଆଚ୍ଛନ୍ନ ।

ପୂର୍ତ୍ତି, ବ. ସ୍ତ୍ରୀ. (ପୂର୍-ତି) ପୂର୍ଣ୍ଣତା, ପରିପୂରଣ; ବ୍ୟାପ୍ତି; ସମ୍ଭାର ।

ପୂର୍ବ, ସ. (ପୂର୍ବ୍-ଅ) ଆଦି, ପ୍ରଥମ; ସମଗ୍ର; ଜ୍ୟେଷ୍ଠ; ପୁରାକାଳୀନ; ପ୍ରାଚ୍ୟଦେଶୀୟ; ପଶ୍ଚାଦ୍ବର୍ତ୍ତୀ । ବ. ପୁଂ. ପୂର୍ବପୁରୁଷ । ନ. କାରଣ; ଇତିବୃତ୍ତ । ସ୍ତ୍ରୀ. ପୂର୍ବଦିକ୍ ।

ପୂର୍ବକାୟ, ବ. ପୁଂ. ( ପୂର୍ବ-କାୟ ) ନାଭିର ଉପରଭାଗସ୍ଥ ଦେହର ଅର୍ଦ୍ଧାଂଶ ।

ପୂର୍ବକାଷ୍ଠା, ବ. ସ୍ତ୍ରୀ. (ପୂର୍ବ-କାଷ୍ଠା) ପୂର୍ବଦିକ୍ ।

ପୂର୍ବଜ, ପୂର୍ବଜନ୍ମା, ବ. ପୁଂ. ( ପୂର୍ବ-ଜନ୍-ଅ, ଜନ୍ମନ୍-ଅ) ଜ୍ୟେଷ୍ଠଭ୍ରାତା; ପୂର୍ବପୁରୁଷ ।

ପୂର୍ବତନ, ବିଂ. (ପୂର୍ବ-ତନ) ପୂର୍ବକାଳୀନ, ପୂର୍ବ ସମୟର; ଆଦ୍ୟ ।

ପୂର୍ବଦେବ, ବ. ପୁଂ. ( ପୂର୍ବ-ଦେବ ) ଅସୁର, ଦୈତ୍ୟ ।

ପୂର୍ବପକ୍ଷ, ବ. ପୁଂ. (ପୂର୍ବ-ପକ୍ଷ) ଶାସ୍ତ୍ରୀୟ ପ୍ରଶ୍ନ; ଶୁକ୍ଳପକ୍ଷ; ଅଭିଯୋଗ ।

ପୂର୍ବପର୍ବତ, ବ. ପୁଂ. (ପୂର୍ବ-ପର୍ବତ) ଉଦୟ-ଗିରି, ଉଦୟ ପର୍ବତ ।

ପୂର୍ବପୁରୁଷ, ବ. ପୁଂ. (ପୂର୍ବ-ପୁରୁଷ) ପିତୃ ପିତା-ମହାଦି ।

ପୂର୍ବଫାଲ୍‌ଗୁନୀ, ବ. ସ୍ତ୍ରୀ. (ପୂର୍ବ-ଫାଲ୍‌ଗୁନୀ ) ସପ୍ତବିଂଶ ନକ୍ଷତ୍ରାନ୍ତର୍ଗତ ନକ୍ଷତ୍ରବିଶେଷ ।

ପୂର୍ବଭାଦ୍ରପଦା, ବ. ସ୍ତ୍ରୀ. ( ପୂର୍ବ-ଭାଦ୍ରପଦ-ଆ ) ନକ୍ଷତ୍ରବିଶେଷ ।

ପୂର୍ବରଙ୍ଗ, ବ. ପୁଂ. (ପୂର୍ବ-ରଙ୍ଗ) ନାଟ୍ୟୋପକ୍ରମ, ପ୍ରାକ୍‌ସଙ୍ଗୀତ; ପ୍ରସ୍ତାବନା; ନାଟ୍ୟଶାଳା ।

ପୂର୍ବରାଗ, ବ. ପୁଂ. ପ୍ରଥମାନୁରାଗ, ପରସ୍ପର ଦର୍ଶନ ବା ଶୋଭା ଗୁଣାଦି ଶ୍ରବଣଦ୍ୱାରା ଅନୁରକ୍ତ ନାୟକ ନାୟିକାର ବିରହ ଜନକ ଶୋଚ-ନୀୟ ଅବସ୍ଥାବିଶେଷ, ସେହି ଅବସ୍ଥା ଦଶବିଧ, ଯଥା—ଅଭିଲାଷ, ଚିନ୍ତା, ସ୍ମୃତି, ଗୁଣକଥନ, ଉଦ୍ବେଗ, ପ୍ରଳାପ, ଉନ୍ମାଦ, ବ୍ୟାଧି, ମୂର୍ଚ୍ଛା, ମରଣ ।

ପୂର୍ବରାତ୍ର, ବ. ପୁଂ. ( ପୂର୍ବ-ରାତ୍ରି ) ରାତ୍ରିର ପ୍ରଥମଭାଗ, ବିଗତ ଦିବସର ରାତ୍ରି ।

ପୂର୍ବରୂପ, ବ. ନ. (ପୂର୍ବ-ରୂପ) ପୂର୍ବ ଲକ୍ଷଣ; ଭାବୀ ବ୍ୟାଧିର ପୂର୍ବ ଲକ୍ଷଣ ।

ପୂର୍ବଲକ୍ଷଣ, ବ. ନ. (ପୂର୍ବ-ଲକ୍ଷଣ) ଭାବୀ ପଦା-ର୍ଥର ପ୍ରଥମ ଚିହ୍ନ ।

ପୂର୍ବଶୈଳ, ବ. ପୁଂ. ( ପୂର୍ବ-ଶୈଳ ) ଉଦୟ ପର୍ବତ ।

ପୂର୍ବସର, ବିଂ. (ପୂର୍ବ-ସର) ଅଗ୍ରଗାମୀ, ଅଗ୍ରସର ।

ପୂର୍ବାଦ୍ରି, ବ. ପୁଂ. (ପୂର୍ବ-ଅଦ୍ରି) ଉଦୟାଚଳ ।

ପୂର୍ବାଷାଢ଼ା, ବ. ସ୍ତ୍ରୀ. (ପୂର୍ବ-ଅଷାଢ଼ା) ନକ୍ଷତ୍ର-ବିଶେଷ ।

ପୂର୍ବାହ୍ଣ, ବ. ପୁଂ. (ପୂର୍ବ-ଅହନ୍-ଅ) ଦିବସର ପ୍ରଥମଭାଗ, ସୂର୍ଯ୍ୟୋଦୟଠାରୁ ଦଶଦଣ୍ଡ କାଳ ।

ପୂର୍ବୋକ୍ତ, ବଂ. (ପୂର୍ବ-ଉକ୍ତ) ପୂର୍ବକଥିତ, ଯାହା ପ୍ରଥମରେ ବୋଲା ଯାଇଅଛି ।

ପୂଷା, ବ. ପୁଂ. (ପୂଷ୍=ପୋଷଣକରିବା-ଅ) ସୂର୍ଯ୍ୟ । ସ୍ତ୍ରୀ. ପୃଥିବୀ ।

ପୂଷାତ୍ମଜ, ବ. ପୁଂ. (ପୂଷା-ଆତ୍ମଜ) ମେଘ, ଇନ୍ଦ୍ର ।

ପୃକ୍ତ, ବଂ. (ପୃଚ୍-ତ) ମିଶ୍ରିତ; ଯୁକ୍ତ; ସଲଗ୍ନ । ବ. ନ. ଧନ ।

ପୃକ୍ତି, ବ. ସ୍ତ୍ରୀ. (ପୃଚ୍-ତି) ସ୍ପର୍ଶ; ସମ୍ପର୍କ; ମିଶ୍ରଣ ।

ପୃଚ୍ଛା, ବ. ସ୍ତ୍ରୀ. (ପୃଚ୍ଛ୍-ଆ) ପ୍ରଶ୍ନ, ପଚାରିବା ।

ପୃତନା, ବ. ସ୍ତ୍ରୀ. ସେନା, ୧୨୧୫ ପଦାତି, ୭୨୯ ଅଶ୍ୱ, ୨୪୩ ହସ୍ତୀ ୨୪୩ ରଥଯୁକ୍ତ ସେନାଦଳ ।

ପୃଥକ୍, ଅଂ. (ପୃଥ୍-ଅକ୍) ଭିନ୍ନ, ଇତର; ବିନା; ବର୍ଜନ ।

ପୃଥଗ୍‌ଜନ, ବ. ପୁଂ. (ପୃଥକ୍-ଜନ) ମୂର୍ଖ, ନୀଚଲୋକ; ପାପୀ; ଇତରଲୋକ ।

ପୃଥା, ବ. ସ୍ତ୍ରୀ. (ପ୍ରଥ୍-ଅ-ଆ) କୁନ୍ତୀ, ପାଣ୍ଡୁରାଜାଙ୍କ ପତ୍ନୀ ।

ପୃଥାଜ, ପୃଥାସୁତ, ବ. ପୁଂ. (ପୃଥା-ଜ-ସୁତ) କୁନ୍ତୀର ପୁତ୍ର, ଯୁଧିଷ୍ଠିରାଦି; ଅର୍ଜୁନବୃକ୍ଷ ।

ପୃଥିବୀ, ବ. ସ୍ତ୍ରୀ. (ପ୍ରଥ୍-ଇବ) ଭୂମି, ଧରା ।

ପୃଥିବୀପତି, ପୃଥିବୀପାଳ, ପୃଥିବୀକ୍ଷିତ୍, } ବ. ପୁଂ. (ପୃଥିବୀ-ପତି, ପାଳ, କ୍ଷିତ୍) ଭୂପତି, ରାଜା; ଯମ ।

ପୃଥିବୀରୁହ, ବ.ପୁଂ. (ପୃଥିବୀ-ରୁହ) ବୃକ୍ଷ,ଗଛ ।

ପୃଥୁ, ବ.ପୁଂ. (ପ୍ରଥ୍-ଉ) ଅଗ୍ନି; ତ୍ରେତାଯୁଗରେ ସୂର୍ଯ୍ୟବଂଶୀୟ ପଞ୍ଚମ ରାଜା, ବେଣୁରାଜପୁତ୍ର । ସ୍ତ୍ରୀ. କୃଷ୍ଣଜୀରକ; ଅହିଫେନ । ବଂ. ବିସ୍ତୃତ; ବିଶାଳ; ବୃହତ୍; ସ୍ଥୂଳ ।

ପୃଥୁରୋମା, ବ. ପୁଂ. (ପୃଥୁ-ରୋମନ୍) ମାଛ । ଯଥା—

ପୃଥୁରୋମାଳସ୍ୱନୀ ଉଦର ପୃଥୁତର । ଲା. ବ.

ବଂ. ବୃହଲ୍ଲୋମଯୁକ୍ତ ।

ପୃଥୁଳ, ବଂ. (ପୃଥୁ-ଳ) ବୃହତ୍, ବଡ଼; ମହତ୍; ବିସ୍ତୃତ; ସ୍ଥୂଳ । ଯଥା—

ମଧ୍ୟ ମୁଷ୍ଟିରେ ହେଉ ସେ ପୃଥୁଳ । ବ. ବ.

ପୃଥୁଶେଖର, ବ. ପୁଂ. (ପୃଥୁ=ବୃହତ୍-ଶେଖର =ଚୂଡ଼ା) ପର୍ବତ ।

ପୃଥୁସ୍କନ୍ଧ, ବ. ପୁଂ. (ପୃଥୁ-ସ୍କନ୍ଧ) ଶୂକର, ବରାହ ।

ପୃଥୂଦର, ବ. ପୁଂ. (ପୃଥୁ-ଉଦର) ମେଷ । ବଂ. ସ୍ଥୂଳୋଦର ।

ପୃଥ୍ୱୀ, ବ. ସ୍ତ୍ରୀ. (ପୃଥୁ-ଈ) ପୃଥୁସ୍ୱୀକାର ରାଜ୍ୟ; ପୃଥିବୀ, ଧରିତ୍ରୀ ।

ପୃଶ୍ନି, ବଂ. (ପୃଶ୍-ନି) ଖର୍ବ,ବାମନ; କ୍ଷୁଦ୍ର; ପାତଳ; ଦୁର୍ବଳ । ବ.ସ୍ତ୍ରୀ. ରଶ୍ମି, କିରଣ; ପୃଥିବୀ; ଲତା ।

ପୃଷତ୍, ବ. ନ. (ପୃଷ୍-ଅତ୍) ଜଳାଦିର ବିନ୍ଦୁ; ମୃଗବିଶେଷ । ବଂ. ସିକ୍ତ ।

ପୃଷତ, ବ. ପୁଂ. (ପୃଷ୍-ଅତ) ଜଳାଦିର ବିନ୍ଦୁ, ଜଳକଣା; ଶ୍ୱେତବିନ୍ଦୁଯୁକ୍ତ ମୃଗ ।

ପୃଷତାମ୍ପତି, ବ. ପୁଂ. (ପୃଷତାଂ-ପତି) ବାୟୁ ।

ପୃଷତୀ, ବ. ସ୍ତ୍ରୀ. (ପୃଷତ୍-ଈ) ଶ୍ୱେତବିନ୍ଦୁଯୁକ୍ତା ମୃଗୀ, ହରିଣୀବିଶେଷ ।

ପୃଷଦଶ୍ୱ, ବ. ପୁଂ. (ପୃଷତ୍-ଅଶ୍ୱ) ବାୟୁ,ଅନିଳ ।

ପୃଷଦାଜ୍ୟ, ବ. ନ. (ପୃଷତ୍=ଦ୍ରବ ବସ୍ତୁର ବିନ୍ଦୁ-ଆଜ୍ୟ=ଘୃତ) ଦଧିମିଶ୍ରିତ ଘୃତ ।

ପୃଷନ୍ତି, ବ. ନ. (ପୃଷ୍-ଅନ୍ତି) ଜଳବିନ୍ଦୁ, ଜଳକଣା ।

ପୃଷୋଦର, ବଂ. (ପୃଷତ୍-ଉଦର) ଯାହାର ଉଦରରେ ଗୋଲାକାର ଚିହ୍ନ ଅଛି ।

ପୃଷୋଦ୍ୟାନ, ବ. ନ. (ପୃଷତ୍-ଉଦ୍ୟାନ) କ୍ଷୁଦ୍ରୋପବନ, ଛୋଟ ବଗିଚା ।

ପୃଷ୍ଟ, ବଂ. (ପ୍ରଚ୍ଛ୍-ତ) ଜିଜ୍ଞାସିତ ।

ପୃଷ୍ଠ, ବ. ନ. (ପୃଷ୍-ଥ) ପଶ୍ଚାଦ୍‌ଭାଗ, ପିଠି; ବହିର୍ଭାଗ, ପୃଷ୍ଠା; ଚରମମାବ ।

ପୃଷ୍ଠଚର, ବଂ. (ପୃଷ୍ଠ-ଚର୍-ଅ) ପଶ୍ଚାଦ୍‌ଭାଗସ୍ଥିତ, ପଛରେ ଥିବା ।

ପୃଷ୍ଠଚକ୍ଷୁଃ, ବ. ପୁଂ. (ପୃଷ୍ଠ-ଚକ୍ଷୁସ୍) କଙ୍କଡ଼ା ।

ପୃଷ୍ଠତଃ, ଅଂ. (ପୃଷ୍ଠ-ତସ୍) ପଶ୍ଚାଦ୍‌ଭାଗରେ, ପଛଆଡ଼େ, ପଛରେ ।

ପୃଷ୍ଠଦଣ୍ଡ, ବ.ନ. ମେରୁଦଣ୍ଡ, ପିଠିର ମଝି ଶିରା ।

ପୃଷ୍ଠଦୃଷ୍ଟି, ବ. ପୁଂ. (ପୃଷ୍ଠ-ଦୃଷ୍ଟି) ଭାଲ୍ଲୁ, ଯିବା ସମୟରେ ଏମାନେ ପଛଆଡ଼କୁ ଦୃଷ୍ଟି ନିକ୍ଷେପ କରନ୍ତି ।

ପୃଷ୍ଠଭଙ୍ଗ, ବ. ପୁଂ. (ପୃଷ୍ଠ-ଭନ୍ଜ୍-ଅ) ପରାଜୟ; ପଳାୟନ; ଯୁଦ୍ଧରେ ହାରି ପଳାଇବା ।

ପୃଷ୍ଠଶୃଙ୍ଗ, ବ. ପୁଂ. ( ପୃଷ୍ଠ-ଶୃଙ୍ଗ ) ବନ୍ୟଛାଗ, ବଣଛେଳି ।

ପୃଷ୍ଠଶୃଙ୍ଗୀ,ବ. ପୁଂ. (ପୃଷ୍ଠ-ଶୃଙ୍ଗ-ଇନ୍) ଭୀମସେନ; ନପୁଂସକ; ମହିଷ ।

ପୃଷ୍ଠ୍ୟ, ବ. ପୁଂ. (ପୃଷ୍ଠ-ଯ) ପୃଷ୍ଠଦ୍ୱାରା ଭାରବାହୀ ଅଶ୍ୱ, ଟାଙ୍ଗୁଘୋଡ଼ା । ଯଥା—

ମହାନବ ପୃଷ୍ଠ୍ୟପୃଷ୍ଠେ ଅସେ ଅଶ୍ୱବନ୍ତେ । ମ. ଯା.

ପୃଷ୍ଣି, ବ. (ପୃଷ୍-ନି) କ୍ଷୁଦ୍ର ।

ପେଖନା, ବ. ପେଖିଣି, ବାହାନା ।

ପେଚକ, ବ. ପୁଂ. ( ପେଚ୍-ଅକ, ନିପାତନ ) ପେଚ୍, ଉଲ୍ଲୁକ; ମଧୁମକ୍ଷିକା; ହସ୍ତିର ପୁଚ୍ଛମୂଳ । ମେଘ; ପର୍ଯ୍ୟଙ୍କ; ସ୍ତ୍ରୀଯୋନି ଆଚ୍ଛାଦକ ମାଂସ-ପିଣ୍ଡବିଶେଷ ।

ପେଚକୀ, } ବ. ପୁଂ. ( ପେଚକ-ଇନ୍, ଇଲ )
ପେଚିଲ, } ହସ୍ତୀ, କରୀ, ଗଜ ।

ପେଚ୍, ବ. (ପେଚକ ଶବ୍ଦଜ) ପେଚକପକ୍ଷୀ ।

ପେରୁ, } ବ. ପୁଂ. (ପିର୍-ଉ, ଉଲ) ଶାକ-
ପେରୁଲ, } ବିଶେଷ; ଶାରୁସବ ।

ପେଜ, ବ. (ଦେଶଜ) ରନ୍ଧନାନ୍ନ ନିର୍ଗତ ଜଳ ।

ପେଟ, ପୁଂ. } ●ବ. ( ପିଟ୍-ଅ, ଅକ )
ପେଟକ, ପୁଂ. ନ. } ବାଉଁଶ ଓ ବେତାଦି-ନିର୍ମିତ ସମୁଦ୍ଗକ ପ୍ରାୟ; ପେଟରା, ଝାମ୍ପି; ପ୍ରକୃତି; ସମୂହ ।

ପେଟ, ବ. ପୁଂ. (ଦେଶଜ) (ପିଟ୍-ଅ ) ଉଦର-ଗର୍ଭ ।

ପେଟରା, ବ. ପୁଂ. (ଦେଶଜ) ପେଡ଼ି ।

ପେଟୁକ, ବଂ. (ପ୍ରାକୃତଜ) ଉଦରମ୍ଭରି, ଉଦର-ସର୍ବସ୍ୱ ।

ପେଟୁଲି, ବ. ସ୍ତ୍ରୀ. ଗର୍ଭବତୀ ସ୍ତ୍ରୀ ।

ପେଟେଇବା, କ୍ରି. (ଦେଶଜ) ପେଟତଳକୁ କରି ଶୋଇବା ।

ପେଠୀ. ବ. (ଦେଶଜ) ବାଗଭୀ ସ୍ତ୍ରୀ । ଯଥା—

କରରେ ଦେଇ କରପଲ୍ଲବ,
କହୁଛନ୍ତି ବାହୁ ବେଢ଼ି ପେଠୀକି । ବି. ଚ.

ପେଡ଼ା, ବ. (ଦେଶଜ) ମିଷ୍ଟାନ୍ନବିଶେଷ; ପେଟରା ।

ପେଡ଼ି, ବ. (ପେଟୀ ଶବ୍ଦଜ) ପେଟରାବିଶେଷ ।

ପେଡ଼ିବା, କ୍ରି. ( ପେଷଣ ଶବ୍ଦଜ ) ରସ ବାହାର କରିବା, ପେଷଣ କରିବା ।

ପେଣ୍ଠ, ବ. ପୁଂ. (ଦେଶଜ) ଗଞ୍ଜ, ହାଟ ।

ପେଣ୍ଡା, ବ. (ଦେଶଜ) ଗୁଚ୍ଛ, କାନ୍ଦି; ଅନେକ-ଗୁଡ଼ିଏ ଫୁଲ ବା ଫଳ ଏକତ୍ରିତ ହୋଇ ବୃକ୍ଷ-ଶାଖାରେ ଥିଲେ ତାହାକୁ ପେଣ୍ଡା କହନ୍ତି, ଯଥା—ପେଣ୍ଡାଏ ଫୁଲ; ପେଣ୍ଡାଏ କଦଳୀ ।

ପେୟ, ବ. ନ. (ପା-ଯ) ଜଳ; ଦୁଗ୍ଧ । ବଂ. ପାନୀୟ, ପାନର ଯୋଗ୍ୟ ।

ପେୟୂଷ, ବ. ନ. ପୁଂ. (ପୀୟ୍-ଉଷ) ନବପ୍ରସୂତା ଗାଭୀର ଦୁଗ୍ଧ; ଅମୃତ,ପୀୟୂଷ; ଅଭିନବଘୃତ ।

ପେଲ, ବ. ନ. ( ପିଲ୍-ଅ ) ଅଣ୍ଡକୋଷ । ପୁଂ. କ୍ଷୁଦ୍ରାଂଶ; ଗମନ ।

ପେଲବ, ବଂ. ( ପେଲ-ବା-ଅ ) କୃଶ, କ୍ଷୀଣ; ମୃଦୁ, କୋମଳ, ନରମ; ବିରଳ; ସୂକ୍ଷ୍ମ ।

ପେଲିବା, କ୍ରି. (ଦେଶଜ) ଠେଲିବା । ଯଥା—

ପୁଷ୍କରର-ସିନ୍ଧୁ ବେଳ-ତରୀ କ ସେ ପଛକୁ ପେଲିବା ନାହ ।

ପେଶଲ, } ବଂ. (ପିଶ୍-ଅଲ, ପିଷ୍-ଅଲ) ସୁନ୍ଦର;
ପେଷଲ, } ମୃଦୁ, କୋମଳ; ଦକ୍ଷ; ଧୂର୍ତ୍ତ;
ପେସଲ, } ଚତୁର, ନିପୁଣ ।

ପେଶୀ, ବ. ସ୍ତ୍ରୀ. ( ପେଶି-ଈ ) ଡିମ୍ବ; ମାଂସପିଣ୍ଡ; ଖଡ୍ଗାଦିର କୋଷ; ମୁକୁଳ ।

ପେଷଣ, ବ. ନ. (ପିଷ୍-ଅନ) ଚୂର୍ଣ୍ଣନ, ମର୍ଦ୍ଦନ; ପେଷଣପାତ୍ର; ଖଳଦ ।

ପେଷଣି, } ବ.ସ୍ତ୍ରୀ. (ପିଷ୍-ଅନ-ଈ) ପେଷଣଯନ୍ତ୍ର;
ପେଷଣୀ, } ଗୃହକଚ୍ଛପ ।

ପେଷିବା, କ୍ରି. (ପିଷ୍-ଧାତୁଜ) ଚୂର୍ଣ୍ଣ କରିବା; ପ୍ରେରଣ କରିବା, ପଠାଇବା ଯଥା—

ଜାଣିପାରିଲେ କଂସ ପେଷି କରିବ ଧ୍ୱଂସ,
କଟିଲାବୃତ ସରିବୁହାକୁ ଗୋ ।

ପୈଠ, ବି. (ଯାବନିକ) ଦାଖଲ ।

ପୈଣ୍ଡିନ୍ୟ, ବି. ସ୍ତ୍ରୀ. (ପିଣ୍ଡ-ଇନ୍-ଯ) ଭିକ୍ଷାବୃତ୍ତି, ଯାଚ୍ଞା କରିବା, ଭିକ୍ଷୁକତା ।

ପୈତା, ବି. (ଉପବୀତ ଶବ୍ଦଜ) ଯଜ୍ଞୋପବୀତ ।

ପୈତାମହ, ବିଂ. (ପିତାମହ-ଅ) ପିତାମହ-ସମ୍ବନ୍ଧୀୟ ।

ପୈତୃକ, ବିଂ. (ପିତୃ-କ) ପିତୃ ପିତାମହାଦି-ସମ୍ବନ୍ଧୀୟ ।

ପୈତୃଷ୍ୱସ୍ରୀୟ, } ବି.ପୁଂ. (ପିତୃସ୍ୱସୃ-ଈୟ, ଏୟ)
ପୈତୃଷ୍ୱସ୍ରେୟ, } ପିତାର ଭଗିନେୟ ବା ଭଗିନେୟୀ ।

ପୈତ୍ର, } ବି. (ପିତୃ-ଅ, ଇକ) ପିତୃ-
ପୈତ୍ରିକ, } ସମ୍ବନ୍ଧୀୟ, ପିତୃଜନ୍ୟ ରୋଗ ।

ପୈବ, } ବିଂ. (ପିତୃ-ଅ, ଯ, ଇକ) ପୈତୃକ,
ପୈବ୍ୟ, } ପିତୃସମ୍ବନ୍ଧୀୟ । ବି. ନ. ପିତୃତୀର୍ଥ;
ପୈବିକ, } ଅଙ୍ଗୁଷ୍ଠ ଓ ତର୍ଜନୀର ମଧ୍ୟଭାଗ ।

ପୈଶାଚ, ବିଂ. (ପିଶାଚ-ଅ) ପିଶାଚସମ୍ବନ୍ଧୀୟ; ଅସୁରକ । ବି. ପୁଂ. ଅଷ୍ଟପ୍ରକାର ବିବାହ ଅନ୍ତର୍ଗତ ବିବାହବିଶେଷ, ବଳପୂର୍ବକ ବିବାହ, କପଟପୂର୍ବକ କନ୍ୟାର ପାଣିଗ୍ରହଣ ।

ପୈଶୁନ୍ୟ, ବି. ନ. (ପିଶୁନ-ଯ) ପିଶୁନତା, ଖଳତା, ଧୂର୍ତ୍ତତା; ସୂଚନା ।

ପୋଇଲୀ, ବି. ସ୍ତ୍ରୀ. (ଦେଶଜ) ଗୃହକର୍ମୀ, ଦାସୀ ।

ପୋକ, ବି. ପୁଂ. (ଦେଶଜ) କୀଟ, କ୍ରିମି ।

ପୋକସା, ବିଂ. (ଦେଶଜ) ପୋକଖିଆ ।

ପୋକ୍ତ, ବିଂ. (ଯାବନିକ) ପରିପକ୍ୱ; କଠିନ; ଶକ୍ତ, ଦୃଢ଼ ।

ପୋଖରୀ, ବି. ସ୍ତ୍ରୀ. (ପୁଷ୍କରଣୀ ଶବ୍ଦଜ) ପୁଷ୍କରଣୀ ।

ପୋଖରୀପାଣି, (ଦେଶଜ) ଝାଡ଼ାଫେରି ଯିବା, ମଳତ୍ୟାଗ ଯିବା, ବାହାରକୁ ଯିବା ।

ପୋଗଣ୍ଡ, ବିଂ. ବିକଳାଙ୍ଗ; ଅପୋଗଣ୍ଡ; ସ୍ୱଭାବତଃ ନ୍ୟୂନାଧିକାଙ୍ଗ । ବି. ପୁଂ. ୫ ବର୍ଷଠାରୁ ୧୫ ବର୍ଷର ଶିଶୁକୁ ପୋଗଣ୍ଡ କହନ୍ତି ।

ପୋଚ୍ଛିବା, କ୍ରି. ପରିଷ୍କାର କରିବା ।

ପୋଟା, ବି. ସ୍ତ୍ରୀ. (ପୁଟ୍-ଅ) ସ୍ତ୍ରୀ-ପୁଂସଲକ୍ଷଣା ଶ୍ମଶ୍ରୁବିଶିଷ୍ଟା ସ୍ତ୍ରୀ ।

ପୋଟିକ, ବି. ପୁଂ. (ପୋଟ-ଇକ) ବିସ୍ଫୋଟକ, ବଥ; ପୋଟକା ।

ପୋଡ଼, କ୍ରି. (ଦେଶଜ) ଦାହକର ।

ପୋଡ଼ା, ବି. (ଦେଶଜ) ଦଗ୍ଧ, କ୍ଷତଦାହ ।

ପୋତ, ବି. ପୁଂ. (ପୂ-ତ) ଶିଶୁ, ଶାବକ; ବହିତ୍ର, ଜାହାଜ; ବସ୍ତ୍ର । କ୍ରି. ପୋତିବାର । ବି. କାଚନିର୍ମିତ କ୍ଷୁଦ୍ର ମାଳ ।

ପୋତକ, ବି. (ଦେଶଜ) କୀଟବିଶେଷ ।

ପୋତକୀ, ପୋତକା, ବି. ନ. (ପୂତ-ଅକ) ପୋଇଶାକ; ଶ୍ୟାମାପକ୍ଷୀ ।

ପୋତାଧ୍ୟକ୍ଷ, ବି. ପୁଂ. ଜାହାଜାଦିର କାପ୍ତାନ, ଜାହାଜରକ୍ଷକ ବ୍ୟକ୍ତି ।

ପୋତରକ୍ଷ, ବି. ପୁଂ. (ପୋତ-ରକ୍ଷ୍-ଅ) ନୌକା ପ୍ରଭୃତିର ଅହୁଲା, ଡଙ୍ଗାର ଅହୁଲା ।

ପୋତବାହ, ବି. ପୁଂ. (ପୋତ-ବହ୍-ଅ) ନାବିକ; ନିର୍ଯ୍ୟାମକ ।

ପୋତାଶ୍ରୟ, ବି. ଯେଉଁ ସ୍ଥାନରେ ଜାହାଜାଦି ନିରାପଦରେ ନଙ୍ଗର କରାଯାଏ (Harbour) ।

ପୋଥି, ବି. ନ. (ପୁସ୍ତକର ଅପଭ୍ରଂଶ) ପୁସ୍ତକ, ବହି । ଯଥା—

ହର୍ଷେ ଶିଶୁଗଣ ପୋଥି ଧରି ହାତେ,
ଗୃହଶାଳୀ ଯାନ୍ତି ଅନନ୍ଦ ପ୍ରଭାତେ ।

ପୋପରା, ବିଂ. (ଦେଶଜ) ପୋକରା, ଘୁଣଖିଆ ।

ପୋରଅ, ବିଂ. (ଦେଶଜ) ଅତିଶୟ ପୁରୁଣା, ଅମଳଭୂତ; ଜୀର୍ଣ୍ଣ ।

ପୋଲ, ବି. (ଦେଶଜ) ଫମ୍ପା; ମେଲା; ମୁକୁଳା; ପାଣିନିର୍ଗମ ହେବାର ପଥ, ନଳା ।

ପୋଲ୍ଲ, ବିଂ. (ଦେଶଜ) ମାଗଣା, ବିନାମୂଲ୍ୟ; ଯଥା—ପୋଲ୍ଲଖିଆ । ଫମ୍ପା; ପୋଲ୍ଲ ବାଉଁଶ ।

ପୋଶାକ, ବ. ( ହିନ୍ଦୀ ) ପିନ୍ଧିବାର ଉତ୍ତମବସ୍ତ୍ର ।

ପୋଷ, ଅଧଅଞ୍ଜୁଳା ।

ପୋଷଣ, ବ. ନ. (ପୁଷ୍-ଅନ) ପାଳନ; ବର୍ଦ୍ଧନ ।

ପୋଷା, ବଂ. (ଦେଶଜ) ବଶୀଭୂତ; ପାଳିତ ।

ପୋଷ୍ଟା, ବଂ. (ପୁଷ୍-ତୃ) ପ୍ରତିପାଳକ, ପାଳନକର୍ତ୍ତା ।

ପୋଷ୍ୟ, ବଂ. (ପୁଷ୍-ଯ) ପୋଷଣୀୟ, ପ୍ରତିପାଳନୀୟ; ଭୃତ୍ୟ ।

ପୋଷ୍ୟପୁତ୍ର, ବ. ପୁଂ. (ପୋଷ୍ୟ-ପୁତ୍ର) ଦତ୍ତକ-ପୁତ୍ର, ପାଳକପୁତ୍ର ।

ପୋହଳା, ବ. ( ପ୍ରବାଳ ଶବ୍ଦଜ ) ପ୍ରବାଳ, ବଦ୍ରୁମ ।

ପୌଂସବନ, ବ. ନ. (ପୁଂସବନ-ଅ) ପୁଂସବନ ସଂସ୍କାର ।

ପୌଗଣ୍ଡ, ବ. ନ. (ପୋଗଣ୍ଡ-ଅ) ୫ ବର୍ଷଠାରୁ ୧୫ ବର୍ଷ ପର୍ଯ୍ୟନ୍ତ ଅବସ୍ଥାବିଶେଷ ।

ପୌଣ୍ଡ୍ର, ବ. ପୁଂ. (ପୁଣ୍ଡ୍ର-ଅ) ପୁଣ୍ଡ୍ର ଦେଶ ଲୋକ; ଭୀମର ଶଙ୍ଖ ।

ପୌତ୍ତଳିକ, ବଂ. (ପୁତ୍ତଳ-ଇକ) ପିତୁଳାପୂଜକ, ସାକାରୋପାସକ ।

ପୌତ୍ର, ବ. ପୁଂ. (ପୁତ୍ର-ଅ) ପୁତ୍ରର ପୁତ୍ର, ନାତି ।

ପୌତ୍ରୀ, ବ. ସ୍ତ୍ରୀ. (ପୁତ୍ର-ଅ-ଈ) ପୁତ୍ରର କନ୍ୟା, ନାତୁଣୀ ।

ପୌନଃପୌନିକ, ବଂ. (ପୁନଃପୁନଃ-ଇକ) ପୁନଃ ପୁନଃ ଜାତ, ଆବର୍ତ୍ତନଶୀଳ; ଯାହା ଏକ-ରୂପରେ ଉତ୍ପନ୍ନ ହୁଏ ।

ପୌନଃପୁଣ୍ୟ, ବ. ନ. (ପୁନର୍-ଯ, ଦ୍ୱିତ୍ୱ) ପୁନଃ-ପୁନଃ, ବାରମ୍ବାର ।

ପୌନରୁକ୍ତ, ବ. ନ. ( ପୁନରୁକ୍ତ-ଅ ) ପୁନଃ କଥନ, ଦ୍ୱିରୁକ୍ତି, ପୁନରୁଚ୍ଚାରଣ ।

ପୌନର୍ଭବ, ବ. ପୁଂ. (ପୁନର୍ଭୂ-ଅ) ଦ୍ୱାଦଶବିଧ-ପୁତ୍ରାନ୍ତର୍ଗତ ପୁତ୍ରବିଶେଷ, ଦ୍ୱିରୂଢ଼ାପୁତ୍ର, ଦୁଇ ଥର ବିବାହିତା ସ୍ତ୍ରୀର ପୁତ୍ର ।

ପୌର, ବଂ. (ପୁର-ଅ) ପୁରବାସୀ, ନାଗରିକ, ନାଗରିକଜନ; ଗନ୍ଧକର୍ପୂର ।

ପୌରକ, ବ. ପୁଂ. (ପୌର-କ) ଗୃହର ବାହାରେ ଥିବା ଉଦ୍ୟାନ ।

ପୌରବ, ବଂ. (ପୁରୁ-ଅ) ପୁରୁବଂଶୀୟ, ପୁରୁ-ବଂଶଜାତ ।

ପୌରସ୍ତ୍ୟ, ବଂ. (ପୁରସ୍-ତ୍ୟ) ପ୍ରାଚ୍ୟ, ପୂର୍ବ-ଦେଶୀୟ; ଅଗ୍ରେଭବ, ପ୍ରଥମ ।

ପୌରାଣ, ବଂ. (ପୁରାଣ-ଅ) ପୁରାଣସମ୍ବନ୍ଧୀୟ ।

ପୌରାଣିକ, ବ. ପୁଂ. (ପୁରାଣ-ଇକ) ଅଖ୍ୟାନ, ଅଖ୍ୟାୟିକା, ପୁରାଣ ଶାସ୍ତ୍ରରେ ପଣ୍ଡିତ । ବଂ. ପୁରାଣସମ୍ବନ୍ଧୀୟ; ପୂର୍ବତନକାଳୀନ ।

ପୌରିକ, ବଂ. (ପୁର-ଇକ) ପୁରଜାତ; ପୁରସମ୍ବନ୍ଧୀୟ । ବ. ପୁଂ. ଦାକ୍ଷିଣାତ୍ୟଦେଶବିଶେଷ ।

ପୌରୁଷ, ବ. ନ. (ପୁରୁଷ-ଅ ) ପୁରୁଷତ୍ୱ, ପରାକ୍ରମ; ତେଜଃ; ରେତଃ; ସାହସ; ଉଦ୍ୟମ; ଉଦ୍ୟୋଗ । ବଂ. ପୁରୁଷସମ୍ବନ୍ଧୀୟ; ପୁରୁଷ-ପରିମିତ ।

ପୌରୁଷେୟ, ବଂ. (ପୁରୁଷ-ଏୟ) ପୁରୁଷକୃତ, ମନୁଷ୍ୟରଚିତ, ମାନୁଷିକ । ବ. ପୁଂ. ମନୁଷ୍ୟ-ସମୂହ; ହତ୍ୟା ।

ପୌରୋଭାଗ୍ୟ, ବ. ନ. (ପୁରୋଭାଗିନ୍-ଯ) କେବଳ ଦୋଷମାତ୍ର ଦର୍ଶନ ।

ପୌରୋହିତ୍ୟ, ବ. ନ. (ପୁରୋହିତ-ଯ) ଯାଜ-କତା, ପୁରୋହିତର କର୍ମ ।

ପୌର୍ଣ୍ଣମାସ, ବ. ପୁଂ. (ପୌର୍ଣ୍ଣମାସୀ-ଅ) ପୂର୍ଣ୍ଣିମା ତିଥିରେ କର୍ତ୍ତବ୍ୟ ଯାଗବିଶେଷ ।

ପୌର୍ଣ୍ଣମାସୀ, ବ. ସ୍ତ୍ରୀ. (ପୂର୍ଣ୍ଣମାସ-ଅ-ଈ) ପୂର୍ଣ୍ଣିମା ତିଥି ।

ପୌର୍ବାପର୍ଯ୍ୟ, ବ. ନ. (ପୂର୍ବାପର-ଯ) ପୂର୍ବା-ପରତ୍ୱ; ଅନୁକ୍ରମ; କାରଣ; ଫଳ ।

ପୌର୍ବାର୍ହ୍ଣ୍ୟ, ବଂ. (ପୂର୍ବାର୍ହ୍ଣ-ଯ) ପୂର୍ବାର୍ହ୍ଣଜାତ ।

ପୌର୍ବାହ୍ଣିକ, ବଂ. (ପୂର୍ବାହ୍ଣ-ଇକ) ପୂର୍ବାହ୍ଣ-ସମ୍ବନ୍ଧୀୟ, ପ୍ରାତଃକାଳୀନ ।

ପୌର୍ବିକ, ବଂ. (ପୂର୍ବ-ଇକ) ପୂର୍ବକାଳଜାତ ।

ପୌଲସ୍ତ୍ୟ, ବ. ପୁଂ. (ପୁଲସ୍ତ୍ୟ-ଅ) କୁବେର; ରାବଣ; କୁମ୍ଭକର୍ଣ୍ଣ; ବିଭୀଷଣ ।

ପୌଲସ୍ତ୍ୟୀ, ବ. ସ୍ତ୍ରୀ. (ପୁଲସ୍ତ୍ୟ-ଯ, ଈ) ସୂର୍ପଣଖା, ରାବଣଭଗିନୀ ।

ପୌଲୋମୀ, ବ. ସ୍ତ୍ରୀ. (ପୁଲୋମନ୍-ଅ, ଈ) ଶଚୀ, ଇନ୍ଦ୍ରାଣୀ ।

ପୌଷ, ବ. ପୁଂ. (ପୁଷ୍-ଅ) ଯେ ମାସର ପୂର୍ଣ୍ଣିମାରେ ପୁଷ୍ୟା ନକ୍ଷତ୍ର ହୁଏ, ଦ୍ୱାଦଶ ମାସାନ୍ତର୍ଗତ ନବମ ମାସ ।

ପୌଷ୍କର, ବ. ନ. (ପୁଷ୍କର-ଅ) ପୁଷ୍କରର ମୂଳ ।

ପୌଷ୍ପ, ବି. (ପୁଷ୍ପ-ଅ) ପୁଷ୍ପରଚିତ; ପୁଷ୍ପସମ୍ବନ୍ଧୀୟ ।

ପ୍ର, ଉପସର୍ଗ, ଅବ୍ୟୟ, ଆରମ୍ଭ; ଉତ୍କର୍ଷ; ଖ୍ୟାତି; ଉତ୍ପତ୍ତି; ବ୍ୟବହାର; ସର୍ବତୋଭାବ; ପ୍ରାଥମ୍ୟ; ଗତି ।

ପ୍ରକଟ, ବି. (ପ୍ର-କଟ) ସ୍ପଷ୍ଟ; ପ୍ରତ୍ୟକ୍ଷ; ପ୍ରକାଶିତ ।

ପ୍ରକଟିତ, ବି. (ପ୍ର-କଟ୍-ଇତ) ପ୍ରକାଶିତ, ସ୍ପଷ୍ଟ; ବ୍ୟକ୍ତ ।

ପ୍ରକମ୍ପନ, ବ. ପୁଂ. (ପ୍ର-କମ୍ପ-ଅନ) ବାୟୁ; ନରକବିଶେଷ; ଅତିଶୟ କମ୍ପନ; ବେପଥୁ ।

ପ୍ରକର, ବ. ନ. (ପ୍ର-କୃ-ଅ) ସମୂହ; ପୁଷ୍ପାଦିର ସ୍ତବକ; ସହାୟତା । ନ. ଅଗୁରୁ । ବି. କର୍ମପଟୁ ।

ପ୍ରକରଣ, ବ. ନ. ( ପ୍ର-କୃ-ଅନ ) ପ୍ରସ୍ତାବ; ଗ୍ରନ୍ଥାଂଶ; ଅଧ୍ୟାୟ, ପ୍ରସଙ୍ଗ ; ପରିଚ୍ଛେଦ ।

ପ୍ରକର୍ଷ, ବ. ପୁଂ. (ପ୍ର-କୃଷ୍-ଅ) ଉତ୍କର୍ଷ; ଆଧିକ୍ୟ; ସମଗ୍ର; ପ୍ରାଧାନ୍ୟ ।

ପ୍ରକଶ, ବି. ପୁଂ. (ପ୍ର-କଶ୍-ଅ) ମାରଣ; ପୀଡ଼ନ ।

ପ୍ରକାଣ୍ଡ, ବ. ( ପ୍ର-କାଣ୍ଡ ) ଉତ୍କୃଷ୍ଟ; ବୃହତ୍; ବ. ପୁଂ. ନ. ବୃକ୍ଷର ମୂଳଠାରୁ ସ୍କନ୍ଧ ପର୍ଯ୍ୟନ୍ତ ଗଛର ଗଣ୍ଡି; ଶାଖା, ଡାଳ । ନ. ଶବ୍ଦର ପରେ ପ୍ରଯୁକ୍ତ ହେଲେ ଶବ୍ଦାର୍ଥ-ବୋଧକ ।

ପ୍ରକାମ, ବ. (ପ୍ର-କମ୍-ଅ) ଯଥେଷ୍ଟ; ପର୍ଯ୍ୟାପ୍ତ ।

ପ୍ରକାର, ବ. ପୁଂ. (ପ୍ର-କୃ-ଅ) ପ୍ରଭେଦ; ଶ୍ରେଣୀ-ଭେଦ; ନିୟମ, ବିଧି; ସାଦୃଶ୍ୟ; ଭଳି ।

ପ୍ରକାରାନ୍ତର, ବ. ନ. (ପ୍ରକାର-ଅନ୍ତର) ଅନ୍ୟ ପ୍ରକାର, ଭିନ୍ନ ନିୟମ ।

ପ୍ରକାଶ, ବ. ପୁଂ. (ପ୍ର-କାଶ୍-ଅ) ଦୀପ୍ତି, ଆଲୋକ; ବିକାଶ, ସ୍ପଷ୍ଟତା, ସାଦୃଶ୍ୟ । ବି. ସ୍ପଷ୍ଟ; ବ୍ୟକ୍ତ ।

ପ୍ରକାଶକ, ବି. (ପ୍ର-କାଶ୍-ଅକ) ପ୍ରକାଶକାରୀ; ଯେ ପ୍ରକାଶ କରେ ।

ପ୍ରକାଶନ, ବ. ନ. (ପ୍ର-କାଶ୍-ଅନ) ପ୍ରକାଶକରଣ ।

ପ୍ରକାଶାତ୍ମା, ବ. ପୁଂ (ପ୍ରକାଶ-ଆତ୍ମନ୍) ସୂର୍ଯ୍ୟ; ଈଶ୍ୱର । ବି. ବ୍ୟକ୍ତସ୍ୱଭାବ ।

ପ୍ରକାଶିତ, ବି. (ପ୍ର -କାଶ୍-ତ) ଦୀପ୍ତ; ଶୋଭିତ; ପ୍ରକଟିତ; ପ୍ରସ୍ଫୁଟିତ; ପ୍ରତ୍ୟକ୍ଷର ଉପଯୁକ୍ତ, ଆବିଷ୍କୃତ । ବ. ନ. ପ୍ରକାଶ ।

ପ୍ରକାଶ୍ୟ, ବି. (ପ୍ରକାଶ-ଯ) ପ୍ରକାଶର ଯୋଗ୍ୟ ।

ପ୍ରକୀର୍ଣ୍ଣ, ବି. (ପ୍ର-କୃ-ତ) ବିକ୍ଷିପ୍ତ, ପ୍ରସାରିତ; ପ୍ରଗ୍ରଥିତ; ପ୍ରକଟିତ; ଅସମ୍ବଦ୍ଧ । ବ. ନ. ଗ୍ରନ୍ଥ ପରିଚ୍ଛେଦ; ନାନାବିଷୟିଣୀ ସୂତ୍ରମାଳା ।

ପ୍ରକୀର୍ଣ୍ଣକ, ବ. ନ. (ପ୍ରକୀର୍ଣ୍ଣ-କ) ଚାମର, ଗ୍ରନ୍ଥ-ବିଚ୍ଛେଦ; ବିସ୍ତାର । ପୁଂ. ଘୋଟକ ।

ପ୍ରକୀର୍ତ୍ତିତ, ବି. (ପ୍ର-କୃତ୍-ତ) ବର୍ଣ୍ଣିତ; କଥିତ; ବିଖ୍ୟାତ, ପ୍ରସିଦ୍ଧ ।

ପ୍ରକୁପିତ, ବି. (ପ୍ର-କୁପ୍-ତ) ଅତିଶୟ କ୍ରୁଦ୍ଧ ।

ପ୍ରକୁଳ, ବ. ନ. (ପ୍ର-କୁଳ) ମନୋହର ଦେହ; ପ୍ରଶସ୍ତଶରୀର ।

ପ୍ରକୃତ, ବି. (ପ୍ର-କୃ-ତ) ନିର୍ମିତ; ବାସ୍ତବିକ; ସ୍ୱାଭାବିକ; ରଚିତ ।

ପ୍ରକୃତି, ବ. ସ୍ତ୍ରୀ. (ପ୍ର-କୃ-ତି) ସ୍ୱଭାବ; ଶକ୍ତି । ସ୍ତ୍ରୀ. ସ୍ତ୍ରୀଲିଙ୍ଗ, ଯୋନି, ଜୀବାତ୍ମା; ପରମାତ୍ମା; ପଞ୍ଚଭୂତ; ମାୟାଶକ୍ତି; ଚୈତନ୍ୟ, ସ୍ୱାମୀ, ମନ୍ତ୍ରୀ; ସହାୟ, ଧନ, ଦେଶ, ଦୁର୍ଗ, ସୈନ୍ୟ ଏହି ସାତ ପ୍ରକାର ରାଜ୍ୟାଙ୍ଗ; ବ୍ୟାକରଣରେ ଶବ୍ଦ ଓ ଧାତୁ; ସତ୍ତ୍ୱରଜସ୍ତମୋଗୁଣର ସାମ୍ୟାବସ୍ଥା; ଈଶ୍ୱରସୃଷ୍ଟ ଯାବତୀୟ ପଦାର୍ଥମାନଙ୍କର ସାଧାରଣ ନାମ । ଯଥା—

> ହେମନ୍ତ ଶିଶିରକାଳେ ଭୂମ୍ବର ଅଦେଶେ,
> ପ୍ରକୃତି ସାଜର ଅତି ସାନପାନ ବେଶେ । ଢ. ବ.

ପ୍ରକୃଷ୍ଟ, ବି°. (ପ୍ର-କୃଷ୍-ତ) ଶ୍ରେଷ୍ଠ; ପ୍ରଶସ୍ତ; ଉତ୍କୃଷ୍ଟ ।

ପ୍ରକୃଷ୍ୟ, ବି°. (ପ୍ର-କୃଷ୍-ଯ) ଯାହାକୁ ଭୂମି ସଲଗ୍ନ କରି ଆକର୍ଷଣ କରାଯାଏ ।

ପ୍ରକୋପ, ବି. ପୁଂ. ( ପ୍ର-କୁପ୍-ଅ ) ଅତିଶୟ କୋପ; ଜ୍ୱରାଦିର ଉତ୍କଟତା ।

ପ୍ରକୋଷ୍ଠ, ବି. ପୁଂ. ( ପ୍ରକୃଷ-ଠ ) ଦ୍ୱାରପାର୍ଶ୍ୱସ୍ଥ ମହଲ; କୋଠରି; କହୁଣୀର ନିମ୍ନଭାଗରୁ ମଣିବନ୍ଧ ପର୍ଯ୍ୟନ୍ତ ବାହୁଭାଗ । ଯଥା—

ପକାଇଲ ଇନ୍ଦ୍ରନୀଳମଣି ଚୂଡ଼ି ପ୍ରକୋଷ୍ଠୁଁ ବାଡ଼ି ବସ୍ତଲ ।
ଯ. କେ.

ପ୍ରକ୍ରମ, ବି. ପୁଂ. (ପ୍ର-କ୍ରମ୍-ଅ) ପ୍ରଥମାରମ୍ଭ; ଉପକ୍ରମ; ଅନୁଷ୍ଠାନ ; ଗମନ ; ଅବସର ; ଅତିକ୍ରମ ।

ପ୍ରକ୍ରାନ୍ତ, ବି°. (ପ୍ର-କ୍ରମ୍-ତ) ଆରବ୍ଧ; ଉତ୍କ୍ରାନ୍ତ; ଅତିକ୍ରାନ୍ତ; ପ୍ରକରଣସ୍ଥ; ଗତ; ଅବସୃତ ।

ପ୍ରକ୍ରିୟା, ବି. ସ୍ତ୍ରୀ. (ପ୍ର-କୃ-ଯ-ଆ) ପ୍ରକରଣ; ଅନୁଷ୍ଠାନ; ପ୍ରୟୋଗ ।

ପ୍ରକ୍ୱଣ, ପ୍ରକ୍ୱାଣ, ବି. ପୁଂ. ( ପ୍ର-କ୍ୱଣ୍-ଅ ) ବୀଣାଧ୍ୱନି; ଶବ୍ଦ ।

ପ୍ରକ୍ଷାଳନ, ବି. ନ. (ପ୍ର-କ୍ଷାଳ-ଅନ) ଧୌତକରଣ, ମାର୍ଜନ, ପରିଷ୍କରଣ ।

ପ୍ରକ୍ଷାଳିତ, ବି°. (ପ୍ର-କ୍ଷାଳ-ତ) ଧୌତ, ମାର୍ଜିତ, ପରିଷ୍କୃତ ।

ପ୍ରକ୍ଷିପ୍ତ, ବି°. ( ପ୍ର-କ୍ଷିପ୍-ତ ) ବିନ୍ୟସ୍ତ; ନିକ୍ଷିପ୍ତ; ଅନ୍ତର୍ନିବେଶିତ ।

ପ୍ରକ୍ଷେପ, ପୁଂ. } ବି. ( ପ୍ର-କ୍ଷିପ୍-ଅ, ଅନ )
ପ୍ରକ୍ଷେପଣ, ନ. } ବିନ୍ୟାସ; ପକାଇବା, ଫିଙ୍ଗିବା ।

ପ୍ରକ୍ଷେପିକା, ବି. ସ୍ତ୍ରୀ. ( ପ୍ର-କ୍ଷିପ୍-ଅକ-ଆ ) ଯେଉଁ ଶକ୍ତିଦ୍ୱାରା କୌଣସି ପଦାର୍ଥ ନିକ୍ଷିପ୍ତ ହୁଏ ।

ପ୍ରକ୍ଷ୍ୱେଡ଼ନ, ବି. ନ. (ପ୍ରକ୍ଷ୍ୱିଡ଼୍-ଅନ) ଲୌହମୟ ଶର, ନାରାଚ, ଅସ୍ତ୍ର ।

ପ୍ରଖର, ବି°. (ପ୍ର-ଖର) ଅତ୍ୟୁଷ୍ଣ; ତୀକ୍ଷ୍ଣ; ତୀବ୍ର ।

ପ୍ରଖ୍ୟ, ବି°. (ପ୍ର-ଖ୍ୟା-ଅ) ତୁଲ୍ୟ, ସଦୃଶ, ପ୍ରକାର ।

ପ୍ରଖ୍ୟା, ବି. ସ୍ତ୍ରୀ. ( ପ୍ର-ଖ୍ୟା-ଅ ) ପ୍ରକାର; ତୁଲ୍ୟ, ସାଦୃଶ୍ୟ; ଖ୍ୟାତି ।

ପ୍ରଖ୍ୟାତ, ବି°. (ପ୍ର-ଖ୍ୟା-ତ) ପ୍ରସିଦ୍ଧ, ବିଖ୍ୟାତ, ଯଶସ୍ୱୀ ।

ପ୍ରଖ୍ୟାତବପ୍ତୃକ, ବି. ପୁଂ. (ପ୍ରଖ୍ୟାତ-ବପ୍ତୃ-କ) ଭଦ୍ରଲୋକ, ସଦ୍‌ବଂଶସମ୍ଭୂତ ।

ପ୍ରଗଣ୍ଡ, ବି. ପୁଂ. ( ପ୍ର-ଗଣ୍ଡ ) କହୁଣୀଠାରୁ ସ୍କନ୍ଧପର୍ଯ୍ୟନ୍ତ ବାହୁଭାଗ । ଶ୍ରୀ, ସ୍ତ୍ରୀ. ଦୁର୍ଗଭିତ୍ତି ; ଶିବିର ।

ପ୍ରଗତ, ବି°. (ପ୍ର-ଗତ) ପ୍ରସ୍ଥିତ; ପୃଥଗ୍‌ଭୂତ ।

ପ୍ରଗତଜାନୁ, ପ୍ରଗତଜାନୁକ, ବି°. ( ପ୍ରଗତ-ଜାନୁ, କ ) ବକ୍ରପାଦବିଶିଷ୍ଟ, ଲେଙ୍ଗଡ଼ାଗୋଡ଼ ।

ପ୍ରଗମନ, ବି. ନ. (ପ୍ର ଗମ୍-ଅନ) ଦୂରକୁ ଗମନ; ବିବାଦ, କଳହ ।

ପ୍ରଗଲ୍‌ଭ, ବି°. (ପ୍ର-ଗଲ୍‌ଭ୍-ଅ) ଉଦ୍ଧତ; ନିର୍ଲଜ୍ଜ; ଦାମ୍ଭିକ ; ଅକ୍ଷୁବ୍ଧ ; ସମର୍ଥ ; ଦୃଢ଼ ; ପ୍ରଧାନ ; ନିର୍ଭୀକ; ସାହସୀ; ଉତ୍ସାହୀ; ପ୍ରତ୍ୟୁତ୍ପନ୍ନମତି; ଅବମାନିତ; ପ୍ରତିଭାନ୍ୱିତ । ବି. ପୁଂ. ଗର୍ବ । ସ୍ତ୍ରୀ. ନାୟିକାବିଶେଷ ।

ପ୍ରଗଲ୍‌ଭତା, ବି. ସ୍ତ୍ରୀ. (ପ୍ର-ଗଲ୍‌ଭ୍-ତା) ଔଦ୍ଧତ୍ୟ; ନିର୍ଲଜ୍ଜତା; ପ୍ରତିଭା; ଅଧ୍ୟବସାୟ; ଅକ୍ଷୋଭ; ଦମ୍ଭ; ଅହଙ୍କାର; ସାମର୍ଥ୍ୟ; ପ୍ରାଧାନ୍ୟ; ସାହସ; ନିର୍ଭୀକତା ।

ପ୍ରଗାଢ଼, ବି°. ( ପ୍ର-ଗାଢ଼ ) ଅଧିକ, ଅତିଶୟ, ଦୃଢ଼; କଠିନ; ନିବିଡ଼ ।

ପ୍ରଗୁଣ, ବି°. (ପ୍ର-ଗୁଣ) ପ୍ରକୃଷ୍ଟଗୁଣଶାଳୀ; ଦକ୍ଷ; ସରଳ; ସିଧା, ଅନୁକୂଳ ।

ପ୍ରଗେ, ଅ°. ( ପ୍ର-ଗୈ-ଏ ) ପ୍ରତ୍ୟୁଷ, ପ୍ରାତଃକାଳ ।

ପ୍ରଗେତନ, ବି°. (ପ୍ରଗେ-ତନ) ପ୍ରାତଃକାଳୀନ । ପ୍ରାଭାତିକ ।

ପ୍ରଗ୍ରହ, ପ୍ରଗାହ, ବି. ପୁଂ. (ପ୍ର-ଗ୍ରହ-ଅ) ଅଶ୍ୱାଦିର ଲଗାମ, ବାଗ; ବନ୍ଧନ; ବନ୍ଦୀ, କୟେଦୀ; ନକ୍ତିପ୍ରଭୃତିର ଦଉଡ଼ି, ତୁଳାସୂତ୍ର; କିରଣ; ଗ୍ରହଣ ।

ପ୍ରଗ୍ଲ, ବିଂ. (ପ୍ର-ଗ୍ଲୈ-ଅ) ଶ୍ରାନ୍ତ, ପରିଶ୍ରମଯୁକ୍ତ ।

ପ୍ରଗ୍ରୀବ, ବି. ପୁଂ. ନ. ( ପ୍ର-ଗ୍ରୀବା ) ବାତାୟନ, ଗବାକ୍ଷ; ବିଶ୍ରାମାର୍ଥ ଗୃହ । ବିଂ. ପ୍ରଶସ୍ତ ଗ୍ରୀବା-ବିଶିଷ୍ଟ ।

ପ୍ରଘଣ, ପ୍ରଘାଣ, ବି. ପୁଂ. (ପ୍ର-ହନ୍-ଅ) ବହିର୍ଦ୍ୱାର; ପ୍ରକୋଷ୍ଠ, ତାମ୍ରକୁଣ୍ଡ; ଲୌହମୁଦ୍ଗର ।

ପ୍ରଘାତ, ବି. ପୁଂ. (ପ୍ର-ଘାତ) ଯୁଦ୍ଧ, ସଂଗ୍ରାମ ।

ପ୍ରଘୋଷକ, ବି. ପୁଂ. (ପ୍ର-ଘୋଷ-କ) ଧ୍ୱନି, ଶବ୍ଦ ।

ପ୍ରଚକ୍ଷଃ, ବି. ପୁଂ. ( ପ୍ର-ଚକ୍ଷ୍-ଅସ୍ ) ବୃହସ୍ପତି ।

ପ୍ରଚଣ୍ଡ, ବିଂ. ( ପ୍ର-ଚଣ୍ଡ ) ଅତ୍ୟୁଷ୍ଣ; ପ୍ରଖର; ଅସହ୍ୟ, ଦୁଃସହ; ଭୀଷଣ, ଭୟାନକ; ଅତିକୋପନ; ଦୁର୍ଦ୍ଦମ; ପ୍ରବଳ; ଦୁର୍ଦ୍ଧର୍ଷ; ପ୍ରତାପଶାଳୀ ।

ପ୍ରଚଣ୍ଡା, ବି. ସ୍ତ୍ରୀ. ଭଗବତୀର ସହଚରୀବିଶେଷ; ଶ୍ୱେତଦୂର୍ବା ।

ପ୍ରଚୟ, ବି. ପୁଂ. ( ପ୍ର-ଚି-ଅ ) ରାଶି; ବୃଦ୍ଧି, ଉପଚୟ; ଚୟନ ।

ପ୍ରଚର, ବି. ପୁଂ. ( ପ୍ର-ଚର୍-ଅ ) ବର୍ତ୍ମ, ପଥ; ଗମନ; ପ୍ରକାର; ପ୍ରସିଦ୍ଧି ।

ପ୍ରଚଳନ, ବି. ନ. (ପ୍ର-ଚଳ୍-ଅନ) ପ୍ରଚାର, ଚଳନ ।

ପ୍ରଚଳାକ, ବି. ପୁଂ. (ପ୍ର-ଚଲ୍-ଅକ) ମୟୂରପୁଚ୍ଛ; ସର୍ପଫଣା; ଭୁଜଙ୍ଗମ ।

ପ୍ରଚଳାକୀ, ବି. ପୁଂ. (ପ୍ରଚଳାକ-ଇନ୍) ମୟୂର; ସର୍ପ ।

ପ୍ରଚଳିତ, ବିଂ. ( ପ୍ର-ଚଲ୍-ତ ) ଯାହା ଚଳନ ହୋଇଅଛି; ପ୍ରସ୍ଥିତ; ପ୍ରସିଦ୍ଧ; ପ୍ରବର୍ତ୍ତିତ ।

ପ୍ରଚାର, ବି. ପୁଂ. (ପ୍ର-ଚର୍-ଅ) ଚଳନ; ପ୍ରସିଦ୍ଧି; ପ୍ରକାଶ ।

ପ୍ରଚାରକ, ପ୍ରଚାରୟିତା, ବିଂ. (ପ୍ର-ଚାର-ଅକ,ତୃ ) ପ୍ରକାଶକ, ଯେ ପ୍ରଚାର କରେ ।

ପ୍ରଚାରଣ, ବି. ନ. (ପ୍ରଚାର-ଅନ) ପ୍ରକାଶକରଣ; ଚଳନ ।

ପ୍ରଚାରିତ, ବିଂ. ( ପ୍ରଚାର-ତ ) ଯାହା ପ୍ରଚାର ହୋଇଅଛି, ବିଜ୍ଞାପିତ, ପ୍ରକାଶିତ ।

ପ୍ରଚାଳିତ, ବିଂ. (ପ୍ର-ଚାଲ-ତ) ଯାହା ପ୍ରଚଳିତ କରା ହୋଇଅଛି; ଚଳେଇବା ।

ପ୍ରଚୀୟମାନ, ବିଂ. ( ପ୍ର-ଚି-ଆନ ) ପୁଷ୍ୟମାଣ, ବୃଦ୍ଧିଶୀଳ ।

ପ୍ରଚୁର, ବିଂ. (ପ୍ର-ଚୁର୍-ଅ) ପ୍ରଭୂତ,ବହୁଳ,ଅଧିକ ।

ପ୍ରଚେତାଃ, ବି. ପୁଂ. ( ପ୍ର-ଚେତସ୍ ) ବରୁଣ; ମୁନିବିଶେଷ । ବିଂ. ହୃଷ୍ଟଚିତ୍ତ, ଆହ୍ଲାଦିତ ।

ପ୍ରଚେତା, ବି. ପୁଂ. (ପ୍ର-ଚି-ତୃ) ସାରଥି ।

ପ୍ରଚେୟ, ବିଂ. (ପ୍ର-ଚି-ଯ) ବର୍ଦ୍ଧନୀୟ; ଚୟନୀୟ; ଗ୍ରହଣଯୋଗ୍ୟ, ଗ୍ରାହ୍ୟ ।

ପ୍ରଚେଳକ, ବି. ପୁଂ. (ପ୍ର-ଚେଲ୍-ଅକ) ଘୋଟକ, ଅଶ୍ୱ । ବିଂ. ପ୍ରକୃଷ୍ଟଗତିଯୁକ୍ତ ।

ପ୍ରଚୋଦନ, ବି. ନ. (ପ୍ର-ଚୁଦ୍-ଅନ) ପ୍ରେରଣ । ନୀ, ସ୍ତ୍ରୀ. କଣ୍ଟକାରି ।

ପ୍ରଚୋଦିତ, ବି. ( ପ୍ର-ଚୋଦ-ତ ) ପ୍ରେରିତ; ନିୟୋଜିତ ।

ପ୍ରଚ୍ଛଦ, ବି. ପୁଂ. ( ପ୍ର-ଛଦ୍-ଅ ) ଆଚ୍ଛାଦନ; ଆବରଣବସ୍ତ୍ର; ଆସ୍ତରଣବସ୍ତ୍ର ଚାଦର ।

ପ୍ରଚ୍ଛନ୍ନ, ବିଂ. ( ପ୍ର-ଛଦ୍-ତ ) ଆଚ୍ଛାଦିତ, ଗୁପ୍ତ; ଅଚ୍ଛନ୍ନ । ବି. ନ. ଗବାକ୍ଷ, ବାତାୟନ; ଗୁପ୍ତଦ୍ୱାର ।

ପ୍ରଚ୍ଛଦପଟ, ବି. ପୁଂ. ( ପ୍ରଚ୍ଛଦ-ପଟ ) ଆଚ୍ଛାଦନ; ଆବରଣବସ୍ତ୍ର ।

ପ୍ରଚ୍ଛାଦନ, ବି. ନ. ( ପ୍ର-ଛଦ-ଅନ ) ଆଚ୍ଛାଦନ; ଆବରଣବସ୍ତ୍ର, ଉତ୍ତରୀୟବସ୍ତ୍ର, ଆସ୍ତରଣବସ୍ତ୍ର ।

ପ୍ରଚ୍ଛାଦିତ, ବିଂ. (ପ୍ର-ଛଦ-କ୍ତ) ଆବୃତ,ଆଚ୍ଛାଦିତ ।

ପ୍ରଚ୍ଛିଲ, ବିଂ. (ପ୍ରଚ୍ଛ-ଇଲ) ଜଳଶୂନ୍ୟ, ନିର୍ଜଳ ।

ପ୍ରଜନନ, ବି. ନ. (ପ୍ର-ଜନ୍-ଅନ) ଯୋନି; ଜନ୍ମ; ପ୍ରଗମ ।

ପ୍ରଜନିକା,ବି. ସ୍ତ୍ରୀ. (ପ୍ର-ଜନ-ଅକ) ଜନନୀ,ମାତା ।

ପ୍ରଜଳ୍ପନ, ବି. ନ. ( ପ୍ର-ଜଳ୍ପ୍-ଅନ ) ଆଳାପ, କଥନ ।

ପ୍ରଜବ, ବି. ପୁଂ. ( ପ୍ର-ଜୁ-ଅ ) ପ୍ରକୃଷ୍ଟ ବେଗ, ଅତିଶୟ ବେଗ ।

ପ୍ରଜବୀ, ବିଂ. (ପ୍ରଜବ-ଇନ୍) ଅତିଶୟ ବେଗବାନ୍, ଦ୍ରୁତଗାମୀ ।

ପ୍ରଜା, ବିଂ. ସ୍ତ୍ରୀ. ( ପ୍ର-ଜନ୍-ଅ, ଆ ) ଅଧିକାରସ୍ଥ ଜନ; ସନ୍ତାନ, ସନ୍ତତି ।

ପ୍ରଜାଗର, ବି. ପୁଂ. (ପ୍ର-ଜାଗର) ଜାଗରଣ । ବିଂ. ଜାଗରୁକ ।

ପ୍ରଜାତ, ବିଂ. (ପ୍ର-ଜାତ) ଉତ୍ପନ୍ନ ।

ପ୍ରଜାତନ୍ତ୍ର, ବି. ନ. ( ପ୍ରଜା-ତନ୍ତ୍ର ) ପ୍ରଜାମାନଙ୍କର ହସ୍ତଗତ ରାଜ୍ୟଶାସନ ।

ପ୍ରଜାତା, ବି. ସ୍ତ୍ରୀ. ( ପ୍ର-ଜାତ-ଅ, ଆ ) ପ୍ରସୂତା, ଯେଉଁ ସ୍ତ୍ରୀର ସନ୍ତାନ ହୋଇଅଛି ।

ପ୍ରଜାଦ, ବିଂ. ( ପ୍ରଜା-ଦ ) ସନ୍ତାନପ୍ରଦ, ଯେ ସନ୍ତାନ ଦାନ କରନ୍ତି; ଯେଉଁ ଔଷଧ ସେବନ କଲେ ସନ୍ତାନ ହୁଏ ।

ପ୍ରଜାଦାନ, ବି. ନ. ରଜତ, ରୌପ୍ୟ ।

ପ୍ରଜାନ୍ତକ, ବି. ପୁଂ. ( ପ୍ରଜା-ଅନ୍ତକ ) କାଳ, ଯମ । ବିଂ. ପ୍ରଜାପୀଡ଼କ ।

ପ୍ରଜାପ, ବି. ପୁଂ. ( ପ୍ରଜା-ପା-ଅ ) ରାଜା, ପ୍ରଜାରକ୍ଷକ ।

ପ୍ରଜାପତି, ବି. ପୁଂ. (ପ୍ରଜା-ପତି) ବ୍ରହ୍ମା; ବିଶ୍ୱକର୍ମା; ଜାମାତା; ସୂର୍ଯ୍ୟ; ଅଗ୍ନି; ପିତା; ରାଜା; ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ଦକ୍ଷ, ବଶିଷ୍ଠ, ଭୃଗୁ, ନାରଦ, ବ୍ରହ୍ମାଙ୍କ ସୃଷ୍ଟ ଏହି ଦଶବ୍ୟକ୍ତି ।

ପ୍ରଜାପାଳ, ବି. ପୁଂ. ( ପ୍ରଜା-ପାଳ ) ରାଜା, ପ୍ରଜାପତି ।

ପ୍ରଜାବତୀ ବି. ସ୍ତ୍ରୀ. ( ପ୍ରଜା-ବତ୍-ଈ ) ଜ୍ୟେଷ୍ଠ ଭ୍ରାତାର ଭାର୍ଯ୍ୟା; ଭ୍ରାତୃଜାୟା; ସନ୍ତାନବତୀ, ମାତା ।

ପ୍ରଜାହିତ, ବି. ନ. (ପ୍ରଜା-ହିତ) ଜଳ । ବିଂ. ପ୍ରଜାର ଉପକାରୀ ।

ପ୍ରଜନ, ପ୍ରଜୀନ, ବି. ପୁଂ. (ପ୍ର-ଜ-ତ) ବାୟୁ ।

ପ୍ରଜୁଷ୍ଟ, ବିଂ. ( ପ୍ର-ଜୁଷ୍-ତ ) ଅତ୍ୟନ୍ତ ଆସକ୍ତ, ଅନୁରକ୍ତ

ପ୍ରଜେଶ, ପ୍ରଜେଶ୍ୱର, ବି. ପୁଂ. ( ପ୍ରଜା-ଈଶ, ଈଶ୍ୱର) ରାଜା ।

ପ୍ରଜ୍ଞ, ବିଂ. (ପ୍ର-ଜ୍ଞା-ଅ) ଜ୍ଞାନୀ, ବିଚକ୍ଷଣ, ପଣ୍ଡିତ ।

ପ୍ରଜ୍ଞପ୍ତି, ବି. ସ୍ତ୍ରୀ. (ପ୍ର-ଜ୍ଞପି-ତି) ସଙ୍କେତ; ଜଣାଇବା; ସମ୍ବାଦ; ସମୟ ।

ପ୍ରଜ୍ଞା, ବି. ସ୍ତ୍ରୀ. ( ପ୍ର-ଜ୍ଞା-ଅ ) ବୁଦ୍ଧି, ଜ୍ଞାନ; ସରସ୍ୱତୀ; ମନ୍ତ୍ରଣା ।

ପ୍ରଜ୍ଞାଚକ୍ଷୁ, ବି. ପୁଂ. ( ପ୍ରଜ୍ଞା-ଚକ୍ଷୁସ୍ ) ଧୃତରାଷ୍ଟ୍ର । ବିଂ. ଜ୍ଞାନନେତ୍ର ।

ପ୍ରଜ୍ଞାନ, ବି. ନ. (ପ୍ର-ଜ୍ଞାନ) ବୁଦ୍ଧି, ଜ୍ଞାନ, ଚିହ୍ନ; ସଙ୍କେତ । ବିଂ. ପଣ୍ଡିତ ।

ପ୍ରଜ୍ଞାବାନ୍, ବିଂ. (ପ୍ରଜ୍ଞା-ବତ୍) ବୁଦ୍ଧିମାନ୍, ଜ୍ଞାନୀ ।

ପ୍ରଜ୍ଞୁ, ବି. ( ପ୍ର-ଜାନୁ-ଜ୍ଞୁ ) ଯାହାର ଗୋଡ଼ ନେଙ୍ଗଡ଼ା ହୋଇଅଛି ।

ପ୍ରଜ୍ୱଳିତ, ବିଂ. ( ପ୍ର-ଜ୍ୱଲ୍-ତ ) ଜ୍ୱଳନଯୁକ୍ତ ।

ପ୍ରଜ୍ୱାଳିତ, ବିଂ. (ପ୍ର-ଜ୍ୱାଲ-ତ) ପ୍ରଦୀପିତ; ସନ୍ତପ୍ତ ।

ପ୍ରଡୀନ, ବି. ନ. ( ପ୍ର-ଡୀନ ) ପକ୍ଷିର ଗତିବିଶେଷ; ଊର୍ଦ୍ଧ୍ୱଗମନ ।

ପ୍ରଣ, ବିଂ. ( ପ୍ର-ଣ) ପ୍ରାଚୀନ, ପୁରାତନ ।

ପ୍ରଣତ, ବିଂ. (ପ୍ର-ନମ୍-ତ) ନମ୍ର; କୃତପ୍ରଣାମ; ବକ୍ର; ପଡ଼ୁ ।

ପ୍ରଣତି, ବି. ସ୍ତ୍ରୀ. (ପ୍ର-ନମ୍-ତି) ପ୍ରଣାମ; ନମ୍ରଭାବ, ନମ୍ରତା, ବିନୟ । ଯଥା—

> ଜାନକୀ ପଦ୍ମର ପଦେ ଥଟି,
> ନ ଯେବଣ ଲଙ୍କାପତି ପ୍ରଣତି । ବ. ବ.

ପ୍ରଣୟ, ବି. ପୁଂ. ( ପ୍ର-ନୀ-ଅ ) ପ୍ରେମ, ଭଲ ପାଇବା; ପ୍ରାର୍ଥନା; ଶ୍ରଦ୍ଧା; ପରିଚୟ; ବିଶ୍ୱାସ; ପ୍ରସବ; ଯାଚ୍ଞା; ନିର୍ବାଣ ।

ପ୍ରଣୟନ, ବି. ନ. ( ପ୍ର-ନୀ-ଅନ ) ନିର୍ମାଣ, ରଚନା; ଅଗ୍ନିସମିନ୍ଧନ ମନ୍ତ୍ରାଦି ।

ପ୍ରଣୟିନୀ, ବି. ସ୍ତ୍ରୀ. (ପ୍ରଣୟ-ଇନ୍-ଈ) ଅନୁରକ୍ତା ଭାର୍ଯ୍ୟା ବା ନାୟିକା ।

ପ୍ରଣୟୀ, ବି. ପୁଂ. ( ପ୍ରଣୟ-ଇନ୍ ) ଅନୁରକ୍ତ ପତି ବା ନାୟକ । ବିଂ. ପ୍ରେମାସ୍ପଦ, ଅନୁରକ୍ତ ।

ପ୍ରଣବ, ବ. ପୁଂ. ( ପ୍ର-ନୁ-ଅ ) ଈଶ୍ୱରଙ୍କର ଗୂଢ଼-ନାମ, ବେଦର ଆଦବୀଜ, ଓଁକାର ।

ପ୍ରଣାଦ, ବ. ପୁଂ. ( ପ୍ର-ନାଦ ) ପ୍ରଣୟଜନକ ଜନ ମୁଖାଦର ଶବ୍ଦ; ତାର ଧ୍ୱନି; ଉଚ୍ଚଶବ୍ଦ; କର୍ଣ୍ଣ-ରୋଗବିଶେଷ ।

ପ୍ରଣାମ, ବ. ପୁଂ. (ପ୍ର-ନମ୍-ଅ) ପ୍ରଣତି, ନମସ୍କାର, ଭକ୍ତି ଓ ଶ୍ରଦ୍ଧାତିଶୟ୍ୟଯୁକ୍ତ ନମସ୍କାର; ଏହା ଦୁଇ ପ୍ରକାର । ଯଥା—ଅଷ୍ଟାଙ୍ଗ, ଅଭିବାଦନ, ପଞ୍ଚାଙ୍ଗ, କରଶିରଃସଂଯୋଗ ।

ପ୍ରଣାଯ୍ୟ, ବଂ. (ପ୍ର-ନୀ-ଯ) ଅସମ୍ମତ; ନିଷ୍ପୃହ; ପ୍ରିୟ; ସାଧୁ ।

ପ୍ରଣାଳୀ, ବ. ସ୍ତ୍ରୀ. (ପ୍ର-ନଲ-ଈ) ଜଳନିର୍ଗମପଥ, ନର୍ଦ୍ଦମା; ଶ୍ରେଣୀ, ଗାଡ଼, ଧାର; ଯେଉଁ ସଙ୍କୀର୍ଣ୍ଣ ଜଳଭାଗ ଦୁଇ ବୃହତ୍ ଜଳଭାଗକୁ ପରସ୍ପର ସଂଯୁକ୍ତ କରେ ।

ପ୍ରଣାଶ, ବ. ପୁଂ. (ପ୍ର-ନଶ୍-ଅ) ମୃତ୍ୟୁ, ମରଣ; ପଳାୟନ ।

ପ୍ରଣିଧାନ, ବ. ନ. (ପ୍ର-ନି-ଧା-ଅନ) ମନୋନିବେଶ, ମନର ଏକାଗ୍ରତା; ଧ୍ୟାନ; ଯତ୍ନ; ସମାଧିଦ୍ୱାରା ଦୃଷ୍ଟି; ଯୋଗ; ସମାଧି ।

ପ୍ରଣିଧି, ବ. ପୁଂ. ( ପ୍ର-ନି-ଧା-ଇ ) ଦୂତ, ଚର; ପ୍ରାର୍ଥନା; ଅବଧାନ, ମନୋଯୋଗ; ଅନୁଚର ।

ପ୍ରଣିପାତ, ବ. ପୁଂ. ( ପ୍ର-ନି-ପତ୍-ଅ ) ପ୍ରଣାମ, ନମସ୍କାର ।

ପ୍ରଣିହିତ, ବଂ. (ପ୍ର-ନି-ଧା-ତ) ଅର୍ପିତ; ଶ୍ଳିଷ୍ଟୀକୃତ; ସମାଧିସ୍ଥ; ସମାହିତ; ପ୍ରସାରିତ; ପ୍ରାପ୍ତ ।

ପ୍ରଣୀତ, ବଂ. (ପ୍ର-ନୀ-ତ) ରଚିତ, ନିର୍ମିତ, କୃତ; ଉକ୍ତ, କଥିତ; ପ୍ରେରିତ; ପ୍ରବେଶିତ; ନିକ୍ଷିପ୍ତ । ବ. ପୁଂ. ମନ୍ତ୍ରାଦିଦ୍ୱାରା ସଂସ୍କୃତ ଯଜ୍ଞୀୟ ଅଗ୍ନି ।

ପ୍ରଣୁତ, ବଂ. (ପ୍ର-ନୁ-ତ) ସ୍ତୁତ, ପ୍ରଶଂସିତ ।

ପ୍ରଣେତା, ବଂ. (ପ୍ର-ନୀ-ତୃ) ରଚୟିତା, ରଚନାକାରୀ, ନିର୍ମାତା ।

ପ୍ରଣେୟ, ବଂ. ( ପ୍ର-ନୀ-ଯ ) ବଶ୍ୟ, ବଶତାପନ୍ନ; କୃତଲୌକିକ ସଂସ୍କାର; ପ୍ରାପଣୀୟ ।

ପ୍ରଣୋଦିତ, ବଂ. ( ପ୍ର-ନୋଦ-ତ ) ପ୍ରେରିତ; ନିୟୋଜିତ ।

ପ୍ରତତି, ବ. ସ୍ତ୍ରୀ. (ପ୍ର-ତନ୍-ତି) ବିସ୍ତାର; ବିସ୍ତାରିତ ଲତା ।

ପ୍ରତନ, ବଂ. (ପ୍ର-ତନ) ପୁରାତନ, ପୁରୁଣା ।

ପ୍ରତନୁ, ବଂ. (ପ୍ର-ତନୁ) ସୂକ୍ଷ୍ମ, ସରୁ, ପତଳା ।

ପ୍ରତପ୍ତ, ବଂ. (ପ୍ର-ତପ୍-ତ) ତାପିତ, ଉତ୍ତପ୍ତ ।

ପ୍ରତର୍କ, ବ. ପୁଂ. (ପ୍ର-ତର୍କ-ଅ) ସଂଶୟ ।

ପ୍ରତର୍କଣ, ବ. ନ. ( ପ୍ର-ତର୍କ-ଅନ ) ବିତର୍କ, ବାଦାନୁବାଦ ।

ପ୍ରତାନ, ବ. ପୁଂ. (ପ୍ର-ତନ୍-ଅ) ବିସ୍ତାର; ଲତାର ତନ୍ତୁ ।

ପ୍ରତାନିନୀ, ବ. ସ୍ତ୍ରୀ. ( ପ୍ର-ତନ୍-ଇନ୍-ଈ ) ବଲ୍ଲୀ, ଲତା ।

ପ୍ରତାପ, ବ. ପୁଂ. ( ପ୍ର-ତପ୍-ଅ ) ପ୍ରଭାବ; ଧନ; ସୈନ୍ୟାଦିଜନିତ ତେଜଃ; ଆତପ; ଉଷ୍ଣତା; ସନ୍ତାପ ।

ପ୍ରତାପନ, ବଂ. (ପ୍ର-ତାପି-ଅନ) ତାପଜନକ । ବ. ନ. ପୀଡ଼ନ । ପୁଂ. କୁମ୍ଭୀପାକନାମକ ନରକ ।

ପ୍ରତାରକ, ବ. ପୁଂ. (ପ୍ର-ତୃ-ଅକ) ବଞ୍ଚକ, ଧୂର୍ତ୍ତ, ଶଠ ।

ପ୍ରତାରଣ, ନ. } ବ. { ପ୍ର-ତୃ-ଅନ-ଅ }<br>ପ୍ରତାରଣା, ସ୍ତ୍ରୀ. } ବ. { ପ୍ର-ତୃ-ଅନ-ଆ } ବଞ୍ଚନା, ଠକାଇବାର; ପାରଗମନ, ଉତ୍ତୀର୍ଣ୍ଣ ହେବା ।

ପ୍ରତାରିତ, ବଂ. (ପ୍ର-ତୃ-ତ) ବଞ୍ଚିତ, ଯାହାକୁ ଠକାଯାଏ ।

ପ୍ରତି, ଅଂ. ଉପ. (ପ୍ର-ଅତି) ପ୍ରତିନିଧି; ବିପରୀତ; ପ୍ରତିକୂଳ; ପରିବର୍ତ୍ତ; ପ୍ରତ୍ୟେକ; ପୁନର୍ବାର; ଲକ୍ଷ୍ୟ; ଉପରି; ଲକ୍ଷଣ, ଚିହ୍ନ; ଆଭିମୁଖ୍ୟ, ବୀପ୍ସା; ବ୍ୟାବୃତ୍ତି, ପ୍ରଶସ୍ତି; ବିରୋଧ; ଅଳ୍ପ; ମାତ୍ରା; ଅଂଶ, ଭାଗ; ପ୍ରତିଦାନ; ସାଦୃଶ୍ୟ; ନିଶ୍ଚୟ; ନିନ୍ଦା; ସ୍ୱଭାବ; ବ୍ୟାପ୍ତି; ସମାଧି; (ଦେଶଜ) ଓସାର ।

ପ୍ରତିକର, ବି. ପୁଂ. ( ପ୍ରତି-କୃ-ଅ ) ବୈରନିର୍ଯ୍ୟାତନ; ନିକ୍ଷେପ ।

ପ୍ରତିକର୍ତ୍ତା, ବିଂ. ( ପ୍ରତି-କୃ-ତୃ ) ଅପକାରର ଅପକାରକ, ପ୍ରତିକାରକାରକ ।

ପ୍ରତିକର୍ମ, ବି. ନ. ( ପ୍ରତି-କର୍ମନ୍ ) ପ୍ରସାଧନ, ବେଶଭୂଷା; ପ୍ରତିକାର ।

ପ୍ରତିକଣ, ବିଂ. ( ପ୍ରତି-କଣ୍-ଅ ) ପ୍ରତିବେଶୀ; ସହାୟ; ବାର୍ତ୍ତାବାହକ । ବି. ପୁଂ. କଶାଘାତ-ପ୍ରାପ୍ତ ଅଶ୍ୱ ।

ପ୍ରତିକଷ୍ଟ,ବି. ନ. (ପ୍ରତି-କଷ୍ଟ) କର୍ମାନୁରୂପ କଷ୍ଟ ।

ପ୍ରତିକାୟ, ବି. ପୁଂ. (ପ୍ରତି-କାୟ) ଲକ୍ଷ୍ୟ; ପ୍ରତିରୂପ, ପ୍ରତିମୂର୍ତ୍ତି ।

ପ୍ରତିକାର, ପ୍ରତୀକାର, ବି. ପୁଂ. ( ପ୍ରତି-କୃ-ଅ ) ବୈରନିର୍ଯ୍ୟାତନ; ପ୍ରତିଫଳ; ପ୍ରତିଦ୍ୱେଷ; ଉପଶମ; ପରିଶୋଧ; ଉପାୟ; ଚିକିତ୍ସା ।

ପ୍ରତିକାର୍ଯ୍ୟ, ପ୍ରତୀକାର୍ଯ୍ୟ, ବିଂ. ( ପ୍ରତି-କୃ-ଯ ) ପ୍ରତିକାର କରିବାର ଯୋଗ୍ୟ ।

ପ୍ରତିକାଶ, ପ୍ରତୀକାଶ, ବିଂ. (ପ୍ରତି-କାଶ) ସଦୃଶ, ତୁଲ୍ୟ ।

ପ୍ରତିକୂପ,ବି. ପୁଂ. (ପ୍ରତି-କୂପ) ପରିଖା,ଗଡ଼ଖାଇ ।

ପ୍ରତିକୂଳ, ବିଂ. ( ପ୍ରତି-କୂଳ ) ପ୍ରତିପକ୍ଷ; ବାମ; ବିରୁଦ୍ଧ । ଯଥା—

ତୁମ୍ଭ ପ୍ରତିକୂଳେ ତୁମ୍ଭଙ୍କ ସାକ୍ଷୀ କହିବ ବନେ । ଚ. ଭ.

ପ୍ରତିକୃତ, ବିଂ. ( ପ୍ରତି-କୃତ ) ପ୍ରତିଦତ୍ତ; ପ୍ରତିଶୋଧିତ; ଉପଶମିତ ।

ପ୍ରତିକୃତି, ବି. ସ୍ତ୍ରୀ. ( ପ୍ରତି-କୃ-ତି ) ପ୍ରତିମୂର୍ତ୍ତି; ପ୍ରତୀକାର; ପ୍ରତିନିଧି; ସାଦୃଶ୍ୟ ।

ପ୍ରତିକୃଷ୍ଟ, ବିଂ. (ପ୍ରତି-କୃଷ୍ଟ) ନିକୃଷ୍ଟ; ଦୁଇଥର କୃଷ୍ଟ ।

ପ୍ରତିକ୍ରିୟା, ବି. ସ୍ତ୍ରୀ. (ପ୍ରତି-କ୍ରିୟା) ପ୍ରତିକାର ।

ପ୍ରତିକ୍ଷଣ, କ୍ରି. ବିଂ. ( ପ୍ରତି-କ୍ଷଣ ) କ୍ଷଣେ କ୍ଷଣେ, ପ୍ରତିମୁହୂର୍ତ୍ତ ।

ପ୍ରତିକ୍ଷିପ୍ତ, ବିଂ. (ପ୍ରତି-କ୍ଷିପ୍-ତ) ପ୍ରେରିତ; ନିନ୍ଦିତ; ତିରସ୍କୃତ; ବାଧିତ; ନିକ୍ଷିପ୍ତ, ନିବାରିତ ।

ପ୍ରତିଗତ, ବି. ନ. (ପ୍ରତି-ଗତ) ପକ୍ଷିର ଗତି-ବିଶେଷ । ବିଂ. ପରାବୃତ୍ତ ।

ପ୍ରତିଗିରି, ବି. ପୁଂ. ( ପ୍ରତି-ଗିରି ) ପର୍ବତସଦୃଶ; କ୍ଷୁଦ୍ର ପର୍ବତ, ପାହାଡ଼ ।

ପ୍ରତିଗ୍ରହ, ବି. ପୁଂ. ( ପ୍ରତି-ଗ୍ରହ୍-ଅ ) ସ୍ୱୀକାର; ଗ୍ରହଣ; ଅନୁଗ୍ରହ; ସୈନ୍ୟପୃଷ୍ଠ; ସୈନ୍ୟରକ୍ଷା; ପ୍ରତିକୂଳଗ୍ରହ; ପ୍ରତ୍ୟୁଦ୍‌ଯୋଗ; ଦେୟବସ୍ତୁ; ପିକଦାନୀ ।

ପ୍ରତିଗ୍ରହଣ, ବି. ନ. ( ପ୍ରତି-ଗ୍ରହ୍-ଅନ ) ସ୍ୱୀକାର; ଦାନ ନେବାର ।

ପ୍ରତିଗ୍ରାହ, ବି. ପୁଂ. ( ପ୍ରତି-ଗ୍ରହ-ଅ ) ସ୍ୱୀକାର; ନିଷ୍ଠୀବନପାତ୍ର, ପିକଦାନୀ ।

ପ୍ରତିଘ, ବି. ପୁଂ. ( ପ୍ରତି-ହନ୍-ଅ ) ପ୍ରତିବନ୍ଧକ, ବ୍ୟାଘାତ; କୋପ, କ୍ରୋଧ; ମୂର୍ଚ୍ଛା । ବିଂ. ପ୍ରତିକୂଳ ।

ପ୍ରତିଘାତ, ପ୍ରତୀଘାତ, ବି. ପୁଂ. (ପ୍ରତି-ହନ୍-ଅ) ଗୋଟିଏ ପଦାର୍ଥ ଅନ୍ୟ ଗୋଟିଏ ପଦାର୍ଥକୁ ଆଘାତ କଲେ ଆହତ ପଦାର୍ଥ ଯେ ପୁନର୍ବାର ତାହାକୁ ଆଘାତ କରେ, ଅଘାତ, ପ୍ରତିବନ୍ଧ; ବ୍ୟାଘାତ; ନିକ୍ଷେପ ।

ପ୍ରତିଘାତନ, ବି. ନ. (ପ୍ରତି-ହନ୍-ଅନ) ମାରଣ, ହତ୍ୟା, ବଧ; ବାଧା ।

ପ୍ରତିଘ୍ନ, ବି. ନ. (ପ୍ରତି-ଘ୍ନ) ଅଙ୍ଗ, ଶରୀର ।

ପ୍ରତିଛନ୍ଦଃ, ବି. ପୁଂ. (ପ୍ରତି-ଛନ୍ଦ୍-ଅସ୍) ପ୍ରତିରୂପ; ଅଭିପ୍ରାୟାନୁରୂପ ।

ପ୍ରତିଛାୟା,ବି. ସ୍ତ୍ରୀ. (ପ୍ରତି-ଛାୟା) ପ୍ରତିମୂର୍ତ୍ତି,ପ୍ରତିକୃତି, ଚିତ୍ର, ଛବି; ସାଦୃଶ୍ୟ ।

ପ୍ରତିଚ୍ଛେଦ, ବି. ପୁଂ. ( ପ୍ରତି-ଛେଦ ) ବାଧା, ପ୍ରତିବନ୍ଧ; ବୈପରୀତ୍ୟ ।

ପ୍ରତିଜଙ୍ଘା, ବି. ସ୍ତ୍ରୀ. (ପ୍ରତି-ଜଙ୍ଘା) ପଣ୍ଡିକା ।

ପ୍ରତିଜ୍ଞା, ବି. ସ୍ତ୍ରୀ. (ପ୍ରତି-ଜ୍ଞା-ଅ) କର୍ତ୍ତବ୍ୟରୂପରେ ଅବଧାରଣ, ଅଙ୍ଗୀକାର । ପକ୍ଷର ସାଧ୍ୟବତ୍ତ୍ୱ-ରୂପରେ ନିର୍ଦ୍ଦେଶ, ସାଧ୍ୟ ଦୁଇପ୍ରକାର, କେଉଁଠାରେ କେଉଁ କ୍ରିୟା ସାଧ୍ୟ ଆଉ କେଉଁଠାରେ କେଉଁ ଯାଥାର୍ଥ୍ୟ ନିରୂପଣ କରି ସାଧ୍ୟ ହୁଏ; ଯେଉଁ ବିଷୟର ବ୍ୟବସ୍ଥାପନ କରିବାକୁ ହେବ ତାହାର ଉପନ୍ୟାସ; ଅଭିଯୋଗ; ପଣ ।

ପ୍ରତିଜ୍ଞାତ, ବିଂ. ( ପ୍ରତି-ଜ୍ଞା-ତ ) ଅଙ୍ଗୀକୃତ, କର୍ତ୍ତବ୍ୟରୂପରେ ଅବଧାରିତ; ଅଭିଯୋଗର ବିଷୟ।

ପ୍ରତିଜ୍ଞେୟ, ବି. ପୁଂ. (ପ୍ରତି-ଜ୍ଞା-ଯ) ସ୍ତୁତିପାଠକ। ବିଂ. ପ୍ରତିଜ୍ଞାର ବିଷୟ, ଅଙ୍ଗୀକାର୍ଯ୍ୟ।

ପ୍ରତିତାଳ, ବି. ପୁଂ. (ପ୍ରତି-ତାଳ) ସ୍ୱରବିଶେଷ, ସ୍ତ୍ରୀ. ଗୃହକାଠି, କୁଞ୍ଚି।

ପ୍ରତିଦାନ, ବି. ନ. (ପ୍ରତି-ଦାନ) ପରିବର୍ତ୍ତ, ବିନିମୟ, ବଦଳ; ଗଚ୍ଛିତ ବା ଗୃହୀତ ଦ୍ରବ୍ୟର ପ୍ରତ୍ୟର୍ପଣ।

ପ୍ରତିଦାରଣ, ବି. ନ. ( ପ୍ରତି-ଦାରଣ ) ସଂଗ୍ରାମ, ଯୁଦ୍ଧ।

ପ୍ରତିଦିନ, କ୍ରି. ବିଂ. (ପ୍ରତି-ଦିନ) ପ୍ରତ୍ୟହ, ଦିନ ଦିନ।

ପ୍ରତିଦିଶ, ବି. ନ. (ପ୍ରତି-ଦିଶ୍) ପ୍ରତ୍ୟେକ ଦିଗ୍।

ପ୍ରତିଦେୟ, ବିଂ. (ପ୍ରତି-ଦେୟ) ପ୍ରତିଦାନ କରିବାର ଯୋଗ୍ୟ, ଫେରି ଦେବାର ଉପଯୁକ୍ତ।

ପ୍ରତିଦ୍ୱନ୍ଦ୍ୱୀ, ବିଂ. ( ପ୍ରତି-ଦ୍ୱନ୍ଦ୍ୱ-ଇନ୍ ) ପ୍ରତିପକ୍ଷ, ଶତ୍ରୁ।

ପ୍ରତିଧା, ବି. ସ୍ତ୍ରୀ. (ପ୍ରତି-ଧା-୦) ପ୍ରତିବିଧାନ।

ପ୍ରତିଧ୍ୱନି, ପ୍ରତିଧ୍ୱାନ, ବି. ପୁଂ. (ପ୍ରତି-ଧ୍ୱନ,ଧ୍ୱାନ) ପ୍ରତିଶବ୍ଦ।

ପ୍ରତିଧ୍ୱନିତ, ପ୍ରତିଧ୍ୱାନିତ, ବିଂ. (ପ୍ରତି-ଧ୍ୱନିତ,ଧ୍ୱାନିତ) ପ୍ରତିଶବ୍ଦିତ।

ପ୍ରତିନନ୍ଦନ, ବି. ନ. (ପ୍ରତି-ନନ୍ଦ-ଅନ) ଅଭିନନ୍ଦନ, ପ୍ରଶଂସା; ଆଶୀର୍ବାଦଦ୍ୱାରା ସମ୍ଭାଷଣ।

ପ୍ରତିନପ୍ତା, ବି. ପୁଂ. (ପ୍ରତି-ନପ୍ତୃ) ପ୍ରପୌତ୍ର।

ପ୍ରତିନାଦ, ବି. ପୁଂ. (ପ୍ରତି-ନାଦ) ପ୍ରତିଶବ୍ଦ।

ପ୍ରତିନିଧି, ବି. ପୁଂ. (ପ୍ରତିନି-ଧା-ଇ) ତୁଲ୍ୟ; ସଦୃଶ; ପ୍ରତିରୂପ; ବଦଳ; ପ୍ରତିଭୂ।

ପ୍ରତିନିନାଦ, ବି. ପୁଂ. (ପ୍ରତି-ନିନାଦ) ପ୍ରତିଧ୍ୱନି; ପ୍ରତିଶବ୍ଦ

ପ୍ରତିନିବୃତ୍ତ, ବିଂ. (ପ୍ରତି-ନିବୃତ୍ତ) ପ୍ରତ୍ୟାଗତ, ଫେରି ଆସିବା।

ପ୍ରତିପ, ପ୍ରତୀପ, ବି. ପୁଂ. ( ପ୍ରତି-ପ ) ଚନ୍ଦ୍ରବଂଶୀୟ ନୃପବିଶେଷ, ଶାନ୍ତନୁଙ୍କ ପିତା, ଭୀଷ୍ମଙ୍କ ପିତାମହ।

ପ୍ରତିପକ୍ଷ, ବି. ପୁଂ. (ପ୍ରତି-ପକ୍ଷ) ବିପକ୍ଷ, ଶତ୍ରୁ; ପ୍ରତିବାଦୀ; ଆସାମୀ।

ପ୍ରତିପତ୍ତି, ବି. ସ୍ତ୍ରୀ. (ପ୍ରତି-ପଦ୍-ତି) ପ୍ରାପ୍ତି; ପଦପ୍ରାପ୍ତି; ମାନ, ସମ୍ମାନ; ସୁଖ୍ୟାତି, ଗୌରବ; ପ୍ରବୃତ୍ତି; ଅଭିମାନ; ନିଶ୍ଚୟ; କର୍ତ୍ତବ୍ୟଜ୍ଞାନ; ଅଙ୍ଗୀକାର।

ପ୍ରତିପଦ୍, ବି. ସ୍ତ୍ରୀ. (ପ୍ରତି-ପଦ୍) ଶୁକ୍ଳ ବା କୃଷ୍ଣ-ପକ୍ଷର ପ୍ରଥମ ତିଥି; ବୁଦ୍ଧି।

ପ୍ରତିପନ୍ନ, ବିଂ. (ପ୍ରତି-ପଦ୍-ତ) ସମ୍ମାନିତ; ଜ୍ଞାତ; ଅବଧାରିତ, ନିଶ୍ଚିତ; ପ୍ରମାଣସିଦ୍ଧ, ଯୁକ୍ତିବାଦ-ଦ୍ୱାରା ସମର୍ଥିତ; ଅଙ୍ଗୀକୃତ, ଗୃହୀତ; ପ୍ରାପ୍ତ।

ପ୍ରତିପାଦକ, ବିଂ. (ପ୍ରତି-ପଦ୍-ଅକ) ନିଷ୍ପାଦକ; ନିର୍ଣ୍ଣାୟକ; ବୋଧକ; ଜ୍ଞାପକ; ଉତ୍ପାଦକ।

ପ୍ରତିପାଦନ, ବି. ନ. (ପ୍ରତି-ପାଦି-ଅନ) ଦାନ; ସମ୍ପାଦନ; ନିଷ୍ପାଦନ; ଜ୍ଞାପନ; ବୋଧନ; ପ୍ରତିପତ୍ତି; ଉତ୍ପାଦନ, ସ୍ଥିରୀକରଣ।

ପ୍ରତିପାଦିତ, ବିଂ. (ପ୍ରତି-ପାଦି-ତ) ନିଷ୍ପାଦିତ, ସମ୍ପାଦିତ; ଦତ୍ତ; ସ୍ଥିରୀକୃତ; ଜ୍ଞାପିତ, ବୋଧିତ।

ପ୍ରତିପାଦ୍ୟ, ବିଂ. (ପ୍ରତି-ପଦ୍-ଯ) ଅଭିଧେୟ; ବୋଧ୍ୟ; ବର୍ଣ୍ଣନୀୟ ବିଷୟ।

ପ୍ରତିପାଳକ, ବିଂ. (ପ୍ରତି-ପାଲ୍-ଅକ) ରକ୍ଷକ, ଯେ ପ୍ରତିପାଳନ କରେ।

ପ୍ରତିପାଳନ, ବି. ନ. (ପ୍ରତି-ପାଲ୍-ଅନ) ରକ୍ଷଣ, ପୋଷଣ।

ପ୍ରତିପାଳିତ, ବିଂ. (ପ୍ରତି-ପାଲ୍-ତ) ଯାହାକୁ ପ୍ରତିପାଳନ କରି ଯାଇଅଛି।

ପ୍ରତିପୋଷକ, ବିଂ. (ପ୍ରତି-ପୁଷ୍-ଅକ) ସହାୟକାରୀ, ଅନୁକୂଳକାରୀ।

ପ୍ରତିପ୍ରିୟ, ବି. ନ. (ପ୍ରତି-ପ୍ରିୟ) ପ୍ରତ୍ୟୁପକାର, ଉପକାରର ଉପକାର।

ପ୍ରତିଫଳ, ବି. ନ. (ପ୍ରତି-ଫଳ) ପ୍ରତିବିମ୍ବ; ପ୍ରତ୍ୟୁପକାର; ପ୍ରତିଶୋଧ । ଯଥା—

ପ୍ରତିଫଳ ଦେବେ ରବଙ୍କି ମନେ ହେଲା ସାହସ । ଚ. ଭା.

ପ୍ରତିଫଳିତ, ବିଂ. (ପ୍ରତି-ଫଳ-ତ) ପ୍ରତିବିମ୍ବିତ ।

ପ୍ରତିବଦ୍ଧ, ବିଂ- (ପ୍ରତି-ବଦ୍ଧ) ବ୍ୟାହତ; ବ୍ୟାଧିତ ।

ପ୍ରତିବନ୍ଧ, ବି. ପୁଂ. (ପ୍ରତି-ବନ୍ଧ୍-ଅ) ବାଧା, ବିଘ୍ନ, ବ୍ୟାଘାତ ।

ପ୍ରତିବନ୍ଧକ, ବିଂ. (ପ୍ରତି-ବନ୍ଧ୍-ଅକ) ବାଧାଜନକ, ବ୍ୟାଘାତକାରକ । ବି. ପୁଂ. ବିଟପ, ଶାଖା ।

ପ୍ରତିବୋଧ, ବି. ପୁଂ. (ପ୍ରତି-ବୋଧ) ଜାଗରଣ; ଚୈତନ; ପ୍ରବୋଧ ।

ପ୍ରତିଭା, ବି. ସ୍ତ୍ରୀ. (ପ୍ରତି-ଭା-ଆ) ଅସାଧାରଣ ବୁଦ୍ଧିଶକ୍ତି, ପ୍ରତ୍ୟୁତ୍ପନ୍ନମତି; ବୁଦ୍ଧି, ପ୍ରଭା, ଦୀପ୍ତି; ସାଦୃଶ୍ୟ ।

ପ୍ରତିଭାତ, ବିଂ. (ପ୍ରତି-ଭା-ତ) ପ୍ରାପ୍ତ; ଉଦିତ ।

ପ୍ରତିଭାନ୍ୱିତ, ପ୍ରତିଭାବାନ, ପ୍ରତିଭାମୁଖ, ବିଂ. (ପ୍ରତିଭା-ଅନ୍ୱିତ, ବତ୍, ମୁଖ,) ଅସାଧାରଣ ବୁଦ୍ଧି ଶକ୍ତିଶାଳୀ ।

ପ୍ରତିଭାସିତ, ବିଂ. (ପ୍ରତି-ଭାସ୍-ତ) ପ୍ରାପ୍ତ; ଶୋଭିତ ।

ପ୍ରତିଭୂ, ବି. ପୁଂ. (ପ୍ରତି-ଭୂ-୦) ଦାୟିତ୍ୱଶାଳୀ; ଜାମିନ ।

ପ୍ରତିମ, ବିଂ. (ପ୍ରତି-ମା-ଅ) ଶବ୍ଦର ପରବର୍ତ୍ତୀ ହେଲେ ସଦୃଶାର୍ଥବୋଧକ । ମା, ସ୍ତ୍ରୀ. ସାଦୃଶ୍ୟ; ପ୍ରତିମୂର୍ତ୍ତି, ପ୍ରତିକୃତି, ଛବି । ଯଥା—

ପ୍ରତିକୋଠିରେ କଳା ଚହଟେରେ ପ୍ରତିମାମାନ ନବାଢ଼ ।

ପ୍ରତିବିମ୍ବ; ଗଜଦନ୍ତବନ୍ଧ ।

ପ୍ରତିମାନନା, ବି. ସ୍ତ୍ରୀ. (ପ୍ରତି-ମାନ୍-ଅନ) ପୂଜା, ସମ୍ମାନ ।

ପ୍ରତିମୁକ୍ତ, ବିଂ. (ପ୍ରତି-ମୁଚ୍-ତ) ପରିହୃତ; ପରିତ୍ୟକ୍ତ ।

ପ୍ରତିମୁଖ, ବିଂ. (ପ୍ରତି-ମୁଖ) ଅଭିମୁଖ, ସମ୍ମୁଖ । ବି. ନ. ନାଟ୍ୟର ସନ୍ଧିବିଶେଷ ।

ପ୍ରତିମୂର୍ତ୍ତି, ବିଂ. ସ୍ତ୍ରୀ. (ପ୍ରତି-ମୂର୍ତ୍ତି) ପ୍ରତିକୃତି, ଅନୁକୃତି, ଛବି ।

ପ୍ରତିମୋଚନ, ବି. ନ. (ପ୍ରତିମୁଚ୍-ଅନ) ବିମୋଚନ, ବନ୍ଧନମୋଚନ; ନିର୍ଯ୍ୟାତନ; ପରିଧାନ ।

ପ୍ରତିଯୋଗ, ବି. ପୁଂ. (ପ୍ରତି-ଯୁଜ୍-ଅ) ବିପକ୍ଷତା, ବିରୋଧ ।

ପ୍ରତିଯୋଗୀ, ବି. ପୁଂ. (ପ୍ରତି-ଯୁଜ୍-ଇନ୍) ପ୍ରତିଦ୍ୱନ୍ଦ୍ୱୀ, ବିରୋଧୀ; ସଦୃଶ; ସମକକ୍ଷ, ତୁଲ୍ୟବଳ; ପ୍ରତିକୂଳ ।

ପ୍ରତିଯୋଧ, ବି. ପୁଂ. (ପ୍ରତି-ଯୁଧ୍-ଅ) ପ୍ରତିପକ୍ଷ, ଯୋଦ୍ଧା ।

ପ୍ରତିରବ, ବି. ପୁଂ. (ପ୍ରତି-ରବ) ପ୍ରତିଧ୍ୱନି ।

ପ୍ରତିରୁଦ୍ଧ, ବିଂ. (ପ୍ରତି-ରୁଧ୍-ତ) ଅବରୁଦ୍ଧ, ଅଟକ କରବା; ନିବାରିତ ।

ପ୍ରତିରୂପ, ବି. ନ. (ପ୍ରତି-ରୂପ) ସାଦୃଶ୍ୟ, ପ୍ରତିମୂର୍ତ୍ତି; ପ୍ରତିବିମ୍ବ । ବିଂ. ସଦୃଶ ।

ପ୍ରତିରୋଧ, ବି. ପୁଂ. (ପ୍ରତି-ରୁଧ୍-ଅ) ନିବାରଣ; ଚୌର୍ଯ୍ୟ; ପ୍ରତିବନ୍ଧ; ଅବରୋଧ, ଅଟକ; ତିରସ୍କାର ।

ପ୍ରତିରୋଧକ, ପ୍ରତିରୋଧୀ, ବି. ପୁଂ. (ପ୍ରତି-ରୁଧ୍-ଅକ, ଇନ୍) ଚୋର । ବିଂ. ଯେ ପ୍ରତିରୋଧ କରେ, ନିରୋଧକ, ବ୍ୟାଘାତକ ।

ପ୍ରତିରୋଧିତ, ବିଂ. (ପ୍ରତି-ରୋଧ-ତ) ନିବାରିତ, ବ୍ୟାହତ ।

ପ୍ରତିଲୋମ, ବିଂ. (ପ୍ରତି-ଲୋମ-ଅ) ବାମ, ପ୍ରତିକୂଳ; ବ୍ୟୁତ୍କ୍ରମ; ଉଲ୍ଟା ।

ପ୍ରତିଲୋମଜ, ବିଂ. ( ପ୍ରତି-ଲୋମ-ଜ ) କ୍ଷତ୍ରିୟର ଔରସରେ ବ୍ରାହ୍ମଣୀର ଗର୍ଭଜାତ, ବୈଶ୍ୟର ଔରସରେ କ୍ଷତ୍ରିୟାର ଗର୍ଭଜାତ ଇତ୍ୟାଦି କ୍ରମରେ ଉତ୍ପନ୍ନ ।

ପ୍ରତିବସଥ, ବି. ପୁଂ. (ପ୍ରତି-ବସ୍-ଅଥ) ଗ୍ରାମ ।

ପ୍ରତିବାଦ, ପ୍ରତୀବାଦ, ବି. ପୁଂ. ( ପ୍ରତି-ବଦ୍-ଅ ) ପ୍ରତିକୂଳ ଉକ୍ତି,ବିରୁଦ୍ଧରେ କହିବା,ଆପତ୍ତି ।

ପ୍ରତିବାଦୀ, ବିଂ. ( ପ୍ରତି-ବଦ୍-ଇନ୍ ) ପ୍ରତିପକ୍ଷ, ଆସାମୀ, ପ୍ରତ୍ୟର୍ଥୀ ।

ପ୍ରତିବାପ, ବି. ପୁଂ. (ପ୍ରତି-ବପ୍-ଅ) ମିଶ୍ରଔଷଧ, ବୃକ୍ଷମୂଳାଦିର କ୍ୱାଥ ନିଷ୍କାଶନର ପରେ ଏହି କ୍ୱାଥ ସଙ୍ଗେ ଯେଉଁ ଦ୍ରବ୍ୟ ମିଶ୍ରିତ କରାହୁଏ ।

ପ୍ରତିବାସର, ବି. ନ. ( ପ୍ରତି-ବାସର ) ପ୍ରତିଦିନ, ପ୍ରତ୍ୟହ ।

ପ୍ରତିବାସୀ, ବିଂ. ( ପ୍ରତି-ବାସୀ ) ନିକଟସ୍ଥ ଗୃହସ୍ଥ, ପଡ଼ୋଶୀ ।

ପ୍ରତିବିଧାନ,ବି. ନ. (ପ୍ରତି-ବି-ଧା-ଅନ) ପ୍ରତିକାର; ସଙ୍କା ।

ପ୍ରତିବିମ୍ବ, ବି. ନ. ( ପ୍ରତି-ବିମ୍ବ ) ପ୍ରତିଚ୍ଛାୟା, ଦର୍ପଣାଦିରେ ପଡିତ ଅନୁରୂପ ଆକୃତି ।

ପ୍ରତିବିମ୍ବନ,ବି. ନ.(ପ୍ରତିବିମ୍ବ-ଅନ)ସ୍ୱଚ୍ଛ ପଦାର୍ଥରେ ଅନୁରୂପ ଆକୃତି ପତନ ।

ପ୍ରତିବିମ୍ବିତ, ବିଂ.(ପ୍ରତିବିମ୍ବ-ଇତ) ପ୍ରତିବିମ୍ବ ପ୍ରାପ୍ତ, ଯାହାର ପ୍ରତିବିମ୍ବ ପଡିଅଛି ।

ପ୍ରତିବେଶ, ପ୍ରତୀବେଶ, ବି. ପୁଂ. (ପ୍ରତି-ବିଶ୍-ଅ) ସମୀପବର୍ତ୍ତୀ ବାସସ୍ଥାନ ।

ପ୍ରତିବେଶୀ, ପ୍ରତୀବେଶୀ, ବି. ( ପ୍ରତିବେଶ-ଇନ୍ ) ପ୍ରତିବାସୀ, ସମୀପବର୍ତ୍ତୀ ଗୃହସ୍ଥ ।

ପ୍ରତିଶବ୍ଦ, ବି.ପୁଂ. (ପ୍ରତି-ଶବ୍ଦ) ପ୍ରତିଧ୍ୱନି; ଏକାର୍ଥ ବୋଧକ ଶବ୍ଦ ।

ପ୍ରତିଶାସନ, ବି. ନ. (ପ୍ରତି-ଶାସନ) ଭୃତ୍ୟାଦିଙ୍କୁ ଆହ୍ୱାନ କରି କୌଣସି କାର୍ଯ୍ୟରେ ପଠାଇବା ।

ପ୍ରତିଶିଷ୍ଟ, ବିଂ. ( ପ୍ରତି-ଶାସ୍-ତ ) ପ୍ରେରିତ; ପ୍ରତ୍ୟାଖ୍ୟାତ, ନିରାକୃତ ।

ପ୍ରତିଶୀର୍ଷ, ବି. ପୁଂ. ପ୍ରତିନିଧି ।

ପ୍ରତିଶ୍ରୟ, ବି. ପୁଂ. (ପ୍ରତି-ଶ୍ରି-ଅ) ସଭା; ଆଶ୍ରୟସ୍ଥାନ; ଗୃହ; ଯଜ୍ଞଶାଳା; ଅତିଥିଶାଳା ।

ପ୍ରତିଶ୍ରବ, ବି. ପୁଂ. ( ପ୍ରତି-ଶ୍ରୁ-ଅ ) ସ୍ୱୀକାର; ଅଙ୍ଗୀକାର ।

ପ୍ରତିଶ୍ରୁତ୍, ବି. ସ୍ତ୍ରୀ. (ପ୍ରତି-ଶ୍ରୁ-ୱ) ପ୍ରତିଧ୍ୱନି ।

ପ୍ରତିଶ୍ରୁତ,ବିଂ. (ପ୍ରତି-ଶ୍ରୁ-ତ) ସ୍ୱୀକୃତ,ଅଙ୍ଗୀକୃତ ।

ପ୍ରତିଷିଦ୍ଧ, ବିଂ. (ପ୍ରତି-ସିଧ୍-ତ) ନିବାରିତ,ନିଷିଦ୍ଧ ।

ପ୍ରତିଷେଧ, ବି. ପୁଂ. ( ପ୍ରତି-ସିଧ୍-ଅ ) ନିଷେଧ, ନିବାରଣ; ପରିହାର, ତ୍ୟାଗ ।

ପ୍ରତିଷ୍କଣ, ବି. ପୁଂ. (ପ୍ରତି-କଣ୍-ଅ) ସହାୟ; ଦୂତ; ଅଗ୍ରଗାମୀ ।

ପ୍ରତିଷ୍କଷ, ବି. ପୁଂ. (ପ୍ରତି-କଷ୍-ଅ) ଚର୍ମରଜ୍ଜୁ,ଚମ ଦଉଡ଼ି ।

ପ୍ରତିଷ୍ଟମ୍ଭ, ବି. ପୁଂ. (ପ୍ରତି-ସ୍ତନ୍ଭ୍-ଅ) ପ୍ରତିବନ୍ଧ, ବାଧା, ରୋଧ ।

ପ୍ରତିଷ୍ଠ, ବିଂ. ( ପ୍ରତି-ସ୍ଥା-ଅ ) ଗୌରବାନ୍ୱିତ, ପ୍ରତିଷ୍ଠାଯୁକ୍ତ ।

ପ୍ରତିଷ୍ଠା,ବି.ସ୍ତ୍ରୀ. (ପ୍ରତି-ସ୍ଥା-ଅ) ସୁଖ୍ୟାତି; ଗୌରବ, ମର୍ଯ୍ୟାଦା; ବ୍ରତାଦିର ଉଦ୍‌ଯାପନ; ସଂସ୍କାର-ବିଶେଷ; ପୁଷ୍କରିଣ୍ୟାଦି ଉତ୍ସର୍ଗ; ଅଲମ୍ବନ, ଆଶ୍ରୟ; ଆସ୍ପଦ, ସ୍ଥାନ; ପୃଥିବୀ; ସମାପ୍ତି; ସ୍ଥିତି; ଛନ୍ଦୋବିଶେଷ ।

ପ୍ରତିଷ୍ଠାନ, ବି. ନ. (ପ୍ରତି-ସ୍ଥାନ) ଗୋଦାବରୀ ନଦୀ ତୀରସ୍ଥ ନଗରବିଶେଷ, ଏହାର ବର୍ତ୍ତମାନ ନାମ ମଙ୍ଗଲୀପଟ୍ଟନ ।

ପ୍ରତିଷ୍ଠାପିତ, ବିଂ.(ପ୍ରତି-ସ୍ଥାପି-ତ) ସ୍ଥାପିତ; ଅର୍ପିତ; ଉତ୍ସୃଷ୍ଟ ।

ପ୍ରତିଷ୍ଠିତ, ବିଂ. ( ପ୍ରତିଷ୍ଠା-ଇତ ) ବିଖ୍ୟାତ ; ପ୍ରଶଂସିତ, ସମ୍ମାନିତ ; ସମାପିତ; ସଂସ୍କୃତ; ବଦ୍ଧମୂଳ; ସ୍ଥାପିତ; ସ୍ଥିତ ।

ପ୍ରତିସ୍ନାତ, ବିଂ. (ପ୍ରତି-ସ୍ନା-ତ) ବିଶୁଦ୍ଧ, ପବିତ୍ର, ପୂତ ।

ପ୍ରତିସଂହାର, ବି. ପୁଂ. (ପ୍ରତି-ସମ୍-ହୃ-ଅ) ନିବର୍ତ୍ତନ; ପ୍ରତ୍ୟାକର୍ଷଣ, ସଙ୍କୋଚ ।

ପ୍ରତିସଂହୃତ, ବିଂ. (ପ୍ରତି-ସମ୍-ହୃ-ତ) ସଙ୍କୁଚିତ, ପ୍ରତ୍ୟାକୃଷ୍ଟ; ପ୍ରତ୍ୟାନୀତ; ନିବର୍ତ୍ତିତ; ଅନୁରୁଦ୍ଧ ।

ପ୍ରତିସମାଧାନ, ବି. ନ. ( ପ୍ରତି-ସମ୍-ଆ-ଧା-ଅନ ) ପ୍ରତୀକାର ।

ପ୍ରତିସର, ବି. ପୁଂ. (ପ୍ରତି-ସୃ-ଅ) ହାରଯଷ୍ଟି; ନର; ସୈନ୍ୟପୃଷ୍ଠ; କଙ୍କଣ; ପ୍ରାତଃକାଳ; ହସ୍ତସୂତ୍ର; ମଣ୍ଡବିଶେଷ; ବ୍ରଣଶୋଧନ; କ୍ଷତାଦି ଆରୋଗ୍ୟକରଣ । ପୁଂ. ନ. ଭୂଷଣ । ବିଂ. ନିଯୋଜ୍ୟ, ଅଧୀନ ।

ପ୍ରତିସର୍ଗ, ବି. ପୁଂ. (ପ୍ରତି-ସର୍ଗ) ବ୍ରହ୍ମାର ସୃଷ୍ଟିର ପରେ ଦକ୍ଷାଦିର ସୃଷ୍ଟି, ମରୀଚ୍ୟାଦି କର୍ତ୍ତୃକ ସୃଷ୍ଟି ।

ପ୍ରତିସବ୍ୟ, ବିଂ.(ପ୍ରତି-ସବ୍ୟ) ପ୍ରତିକୂଳ, ବିପରୀତ ।

ପ୍ରତିସନ୍ଧାନକ, ବି. ପୁଂ. ( ପ୍ରତିସନ୍ଧାନ-ଇକ ) ସ୍ତୁତିପାଠକ ।

ପ୍ରତିସାରିତ, ବିଂ. ( ପ୍ରତି-ସାରି-ତ ) ପରିତ୍ୟକ୍ତ; ଅପସାରିତ, ଘୁଞ୍ଚାଇ ଦେବାର; ପ୍ରବର୍ତ୍ତିତ ।

ପ୍ରତିସୀରା, ବି. ସ୍ତ୍ରୀ. (ପ୍ରତି-ସି-ର-ଆ) ତିରସ୍କରଣୀ, ଯବନିକା, ପର୍ଦ୍ଦା ।

ପ୍ରତିସୂର୍ଯ୍ୟ, ବି. ପୁଂ. (ପ୍ରତି-ସୂର୍ଯ୍ୟ) ସୂର୍ଯ୍ୟପରିବେଶ; କୃକଳାସ ।

ପ୍ରତିସୃଷ୍ଟ, ବିଂ. (ପ୍ରତି-ସୃଜ୍-ତ) ପ୍ରେରିତ; ଦତ୍ତ; ବିସୃଷ୍ଟ; ପ୍ରତ୍ୟାଖ୍ୟାତ ।

ପ୍ରତିହତ, ବିଂ.(ପ୍ରତି-ହନ୍-ତ) ନିରସ୍ତ; ବ୍ୟାହତ, ଆହତ; ପ୍ରେରିତ; ପ୍ରତିବଦ୍ଧ; ରୁଦ୍ଧ; ପ୍ରତିସ୍ଖଳିତ ।

ପ୍ରତିହନ୍ତା, ପ୍ରତିହର୍ତ୍ତା, ବିଂ (ପ୍ରତି-ହନ୍, ହୃ, ତୃ) ନିବାରକ; ନାଶକ ।

ପ୍ରତିହସ୍ତ, ପ୍ରତିହସ୍ତକ, ବି. ପୁଂ. (ପ୍ରତି-ହସ୍ତ-କ) ପ୍ରତିନିଧି, ଅନ୍ୟର ପରିବର୍ତ୍ତରେ ଯେ କାର୍ଯ୍ୟ କରେ ।

ପ୍ରତିହାର, ପ୍ରତୀହାର,ବି. ପୁଂ. (ପ୍ରତି-ହୃ-ଅ) ଦ୍ୱାର; ଦ୍ୱାରପାଳ, ଦୌବାରିକ; ପରିହାର, ତ୍ୟାଗ; ବାଜୀକର; ମାୟା, କପଟତା ।

ପ୍ରତିହାରୀ, ପ୍ରତୀହାରୀ, ବି. ସ୍ତ୍ରୀ. (ପ୍ରତିହାର-ଇନ୍) ଦ୍ୱାରପାଳ । ରଣୀ, ସ୍ତ୍ରୀ. ଦ୍ୱାରପାଳିକା ।

ପ୍ରତିହାର୍ଯ୍ୟ,ବିଂ. (ପ୍ରତି-ହୃ-ଯ) ପରିହାର୍ଯ୍ୟ, ତ୍ୟାଜ୍ୟ ।

ପ୍ରତିହାସ, ପ୍ରତୀହାସ, ବି. ପୁଂ. ( ପ୍ରତି-ହସ୍-ଅ ) ଉପହାସକାରୀ ପ୍ରତି ହାସ୍ୟ ।

ପ୍ରତିହିଂସା, ବି. ସ୍ତ୍ରୀ. (ପ୍ରତି-ହିଂସା) ବୈରଶୁଦ୍ଧି, ବୈରନିର୍ଯ୍ୟାତନ ।

ପ୍ରତୀକ, ବିଂ. (ପ୍ରତି-ଇକ) ପ୍ରତିକୂଳ, ବିପରୀତ । ବି. ପୁଂ. ଅଙ୍ଗ, ଅବୟବ ।

ପ୍ରତୀକାର ବି. ପୁଂ. (ପ୍ରତି-କୃ-ଅ) ପ୍ରତିଫଳ, ବୈର ନିର୍ଯ୍ୟାତନ; ପରିଶୋଧ; ଉପାୟ; ଚିକିତ୍ସା ।

ପ୍ରତୀକାର୍ଯ୍ୟ, ବିଂ. (ପ୍ରତି-କୃ-ଯ) ପ୍ରତିକାର କରିବାର ଯୋଗ୍ୟ ।

ପ୍ରତୀକାଶ, ବିଂ. (ପ୍ରତି-କାଶ୍-ଅ) ତୁଲ୍ୟ, ସଦୃଶ ।

ପ୍ରତୀକ୍ଷଣ, ନ. ପ୍ରତୀକ୍ଷା, ସ୍ତ୍ରୀ. ବି. ( ପ୍ରତି-ଈକ୍ଷ-ଅନ୍-ଅ, ଆ ) ଅପେକ୍ଷା; ପ୍ରତିପାଳନ; ପୂଜା ।

ପ୍ରତୀକ୍ଷ୍ୟ, ବିଂ. (ପ୍ରତି-ଈକ୍ଷ୍-ଯ) ପୂଜ୍ୟ, ଆରାଧ୍ୟ; ଅପେକ୍ଷଣୀୟ ।

ପ୍ରତୀଚୀ, ବି. ସ୍ତ୍ରୀ. ପଶ୍ଚିମଦିକ୍ ।

ପ୍ରତୀଚୀନ, ପ୍ରତୀଚ୍ୟ, ବିଂ. ( ପ୍ରତୀଚୀ-ଇନ,ଯ ) ପଶ୍ଚିମଦିଗ-ଜାତ; ପଶ୍ଚିମଦିଗସ୍ଥ; ପଶ୍ଚିମଦେଶୀୟ ।

ପ୍ରତୀତ, ବିଂ. ( ପ୍ରତି-ଇ-ତ ) ଖ୍ୟାତ, ପ୍ରସିଦ୍ଧ, ସମ୍ମାନିତ; ଜ୍ଞାତ; ପ୍ରୀତ, ହୃଷ୍ଟ; ଜ୍ଞାନବାନ୍; ଅଗତ; ବିଶ୍ୱସ୍ତ ।

ପ୍ରତୀତି, ବି. ସ୍ତ୍ରୀ. (ପ୍ରତି-ଇ-ତି) ଖ୍ୟାତି; ପ୍ରସିଦ୍ଧି; ଜ୍ଞାନ; ସମ୍ମାନ; ଆଦର; ହର୍ଷ; ପ୍ରୀତି; ବିଶ୍ୱାସ ।

ପ୍ରତୀପ, ବି. ପୁଂ. ( ପ୍ରତି-ଅପ୍-ଅ, ଅପ=ଈପ ) ଶାନ୍ତନୁରାଜାର ପିତା । ବିଂ .ପ୍ରତିକୂଳ,ବିପରୀତ; ପରାଙ୍ମୁଖ, ପଶ୍ଚିମ ।

ପ୍ରତୀପଦର୍ଶିନୀ, ବି. ସ୍ତ୍ରୀ. (ପ୍ରତୀପ-ଦର୍ଶିନୀ) ନାରୀ, ସ୍ତ୍ରୀ, ଯୋଷିତ୍ ।

ପ୍ରତୀମାନ, ବି. ନ. (ପ୍ରତି-ମା-ଅନ) ପରିମାଣ ।

ପ୍ରତୀୟମାନ, ବିଂ. (ପ୍ରତି-ଇ-ଅନ) ଜ୍ଞାୟମାନ, ଯାହା ଜଣା ହୋଇଅଛି ।

ପ୍ରତୀଷ୍ଟ, ବିଂ. (ପ୍ରତି-ଇଷ୍ଟ) ଗୃହୀତ, ଅଙ୍ଗୀକୃତ ।

ପ୍ରରୁଦ, ବି. ପୁଂ. ( ପ୍ର-ରୁଦ୍-ଅ ) ଗୃଧ୍ର, କାକ, ମୟୂର, ପେଚକ ପ୍ରଭୃତି ।

ପ୍ରତେ, ବ. ବିଶ୍ୱାସ । ଯଥା—
ମୀନାଲଚାରେ କରଛ ଝନ,
ପ୍ରତେ ବନେ କ କରନ୍ତ କେଳ । ଲ. ବ.

ପ୍ରତୋଦ, ବ. ପୁଂ. (ପ୍ର-ତୁଦ୍-ଅ) ଅଶ୍ୱାଦର ତାଡ଼ନ ଦଣ୍ଡ, ଚାବୁକ ।

ପ୍ରତ୍ନ, ବଂ. (ପ୍ର-ତ୍ନ) ପୁରାତନ, ପୁରୁଣା ।

ପ୍ରତ୍ନତତ୍ତ୍ୱ, ବ. ପୁଂ. (ପ୍ରତ୍ନ-ତତ୍ତ୍ୱ) ପୁରାଣ,ଇତହାସ ।

ପ୍ରତ୍ୟକ୍, ଅଂ. (ପ୍ରତ-ଅନ୍ଚ୍-ଂ) ପଶ୍ଚାତ୍, ପୂର୍ବ, ପଶ୍ଚିମଦକ୍ । ବଂ. ପଶ୍ଚାଦ୍ବର୍ତ୍ତୀ, ପଶ୍ଚିମଦେଶୀୟ ।

ପ୍ରତ୍ୟକ୍ଷ, ବଂ. ( ପ୍ରତ-ଅକ୍ଷ ) ଦୃଶ୍ୟ, ସାକ୍ଷାତ୍, ଇନ୍ଦ୍ରିୟଗ୍ରାହ୍ୟ, ଇନ୍ଦ୍ରିୟ ବଷୟ । ବ. ନ. ଇନ୍ଦ୍ରିୟଜନ୍ୟ ଜ୍ଞାନ ।

ପ୍ରତ୍ୟକ୍ଷଦର୍ଶନ, ବ. ପୁଂ. ( ପ୍ରତ୍ୟକ୍ଷ-ଦୃଶ୍-ଅନ ) ସାକ୍ଷୀ, ଯେ ସ୍ୱୟଂ ଦେଖେ ।

ପ୍ରତ୍ୟକ୍ଷବାଦୀ, ବ. ପୁଂ. (ପ୍ରତ୍ୟକ୍ଷ-ବାଦନ୍) ବୌଦ୍ଧ ।

ପ୍ରତ୍ୟକ୍ଷୀକୃତ, ବଂ. (ପ୍ରତ୍ୟକ୍ଷ-କୃତ) ଯାହା ପ୍ରତ୍ୟକ୍ଷ କଗ ହୋଇଅଛି ।

ପ୍ରତ୍ୟଗ୍ର, ବଂ. ( ପ୍ରତ-ଅଗ୍ର ) ନୂତନ, ଟଟକା; ଅମ୍ଳାନ, ଶୋଧତ ।

ପ୍ରତ୍ୟଙ୍ଗ, ବ. ନ. ( ପ୍ରତ-ଅଙ୍ଗ ) ଅଙ୍ଗାବୟବ, ଅଙ୍ଗର ଅଙ୍ଗ, ହସ୍ତ ପଦ କର୍ଣ୍ଣ ନାସିକା ପ୍ରଭୃତ ଅବୟବ; ଉପକରଣ ।

ପ୍ରତ୍ୟନ୍ତ, ବ. ପୁଂ. (ପ୍ରତ-ଅନ୍ତ) ମ୍ଳେଚ୍ଛଦେଶ । ବଂ. ପ୍ରାନ୍ତବର୍ତ୍ତୀ; ସନ୍ନିହତ, ନକଟବର୍ତ୍ତୀ ।

ପ୍ରତ୍ୟଭିଜ୍ଞା, ବ. ସ୍ତ୍ରୀ. ( ପ୍ରତ-ଅଭି-ଜ୍ଞା-ଅ ) ସ୍ମରଣ-ବଶେଷ । "ଏହା ସେହି" ଇତ୍ୟାକାର ଜ୍ଞାନ ।

ପ୍ରତ୍ୟଭିଯୋଗ, ବ. ପୁଂ. ( ପ୍ରତ-ଅଭି-ଯୋଗ ) ଅଭିଯୋକ୍ତାର ପ୍ରତ ଅଭିଯୋଗ, ଅଭିଯୁକ୍ତ ବ୍ୟକ୍ତିର ଆତ୍ମଦୋଷ ଖଣ୍ଡନପୂର୍ବକ ଅଭିଯୋକ୍ତାର ପ୍ରତକୂଳରେ ଅଭିଯୋଗ, ଆପିଲ ।

ପ୍ରତ୍ୟଭିବାଦ, ପୁଂ.
ପ୍ରତ୍ୟଭିବାଦନ,ନ. } ବ. ( ପ୍ରତ-ଅଭିବାଦ, ଅଭିବାଦନ ) ପୂଜ୍ୟ ବ୍ୟକ୍ତିକୁ ପ୍ରଣାମ କଲେ ସେ ଯେଉଁ ଆଶୀର୍ବାଦ କରନ୍ତି ।

ପ୍ରତ୍ୟୟ,ବ.ପୁଂ. (ପ୍ରତ-ଇ-ଅ) ନଶ୍ଚୟଜ୍ଞାନ; ବଶ୍ୱାସ, ଶପଥ; ହେତୁ; ଖ୍ୟାତ, ପ୍ରସିଦ୍ଧି; ରନ୍ଧ୍ର, ଛିଦ୍ର; ଅଧୀନ; ବ୍ୟାକରଣରେ ଶବ୍ଦ ବା ଧାତୁର ଉତ୍ତର ବଭକ୍ତ୍ୟାଦ କ୍ରିୟମାଣ ଯାହା ପ୍ରକୃତର ପରେ ପ୍ରଯୁକ୍ତ ହୋଇଥାଏ ।

ପ୍ରତ୍ୟୟିତ, ବଂ. (ପ୍ରତ୍ୟୟ-ଇତ) ବଶ୍ୱସ୍ତ, ବଶ୍ୱାସ-ପାତ୍ର; ପ୍ରତଗତ ।

ପ୍ରତ୍ୟୟୀ, ବଂ. (ପ୍ରତ୍ୟୟ-ଇନ୍) ବଶ୍ୱାସୀ ।

ପ୍ରତ୍ୟର୍ଥୀ, ବଂ. (ପ୍ରତ-ଅର୍ଥ-ଇନ୍) ବପକ୍ଷ, ଶତ୍ରୁ; ପ୍ରତକୂଳ; ପ୍ରତବାଦୀ, ଆସାମୀ ।

ପ୍ରତ୍ୟର୍ପଣ, ବ. ନ. ( ପ୍ରତ-ଅର୍ପଣ ) ପ୍ରତଦାନ, ଫେରେଇ ଦେବାର ।

ପ୍ରତ୍ୟର୍ପିତ, ବଂ. ( ପ୍ରତ-ଅର୍ପିତ ) ପ୍ରତଦତ୍ତ, ଯାହା ଫେରାଇ ଦଆ ହୋଇଅଛି ।

ପ୍ରତ୍ୟବସାନ, ବ. ନ. ( ପ୍ରତ-ଅବ-ସୋ-ଅନ ) ଭୋଜନ, ଭକ୍ଷଣ ।

ପ୍ରତ୍ୟବସିତ, ବଂ. (ପ୍ରତ-ଅବ-ସୋ-ତ) ଭୁକ୍ତ, ଭକ୍ଷିତ ।

ପ୍ରତ୍ୟବହାର, ବ. ପୁଂ. (ପ୍ରତ-ଅବ-ହୃ-ଅ) ପ୍ରଳୟ, ଧ୍ୱଂସ, ନାଶ ।

ପ୍ରତ୍ୟବାୟ, ବ. ପୁଂ. ( ପ୍ରତ-ଅବ-ଇ-ଅ ) ପାପ; ଅନଷ୍ଟ; କ୍ଷତ; ବପରୀତ ଆଚରଣ ।

ପ୍ରତ୍ୟବେକ୍ଷଣ, ନ.
ପ୍ରତ୍ୟବେକ୍ଷା, ସ୍ତ୍ରୀ } ବ.(ପ୍ରତ-ଅବ-ଈକ୍ଷ-ଅନ, ଅ ) ବଶେଷରୂପେ ଦର୍ଶନ, ତତ୍ତ୍ୱାବଧାନ; ଅନୁସନ୍ଧାନ; ବଗ୍ଭର ।

ପ୍ରତ୍ୟବେକ୍ଷ୍ୟ, ବଂ. (ପ୍ରତ-ଅବ-ଈକ୍ଷ-ଯ ) ପ୍ରତ୍ୟ-ବେକ୍ଷଣ ଯୋଗ୍ୟ; ଅନୁସନ୍ଧେୟ; ବଗ୍ଭର୍ଯ୍ୟ ।

ପ୍ରତ୍ୟଶ୍ମ, ବ. ନ. ( ପ୍ରତ-ଅଶ୍ମନ୍ ) ଗୈରକ, ଗିରମାଟି ।

ପ୍ରତ୍ୟହ, ଅଂ. (ପ୍ରତ-ଅହନ୍ ) ପ୍ରତଦନ ।

ପ୍ରତ୍ୟାଖ୍ୟାତ, ବଂ. (ପ୍ରତ-ଆ-ଖ୍ୟା-ତ ) ନଗକୃତ, ନରସ୍ତ; ଦୂରୀକୃତ; ଅଙ୍ଗୀକୃତ ।

ପ୍ରତ୍ୟାଖ୍ୟାନ, ବ. ନ. ( ପ୍ରତ-ଆ-ଖ୍ୟା-ଅନ ) ନରସନ,ନଗକରଣ, ଦୂରୀକରଣ; ଅଙ୍ଗୀକାର ।

ପ୍ରତ୍ୟାଗତ, ବି°. ( ପ୍ରତି-ଆଗତ ) ପ୍ରତ୍ୟାବୃତ୍ତ, ଫେରି ଆସିବା ।

ପ୍ରତ୍ୟାଦିଷ୍ଟ, ବି°. ( ପ୍ରତି-ଆ-ଦିଶ୍-ତ ) ପ୍ରତ୍ୟାଖ୍ୟାତ, ନିରାକୃତ; କ୍ଷିପିତ; ତ୍ୟକ୍ତ ।

ପ୍ରତ୍ୟାଦେଶ, ବି. ପୁ°. (ପ୍ରତି-ଆ-ଦିଶ୍-ଅ) ନିରାକରଣ, ପ୍ରତ୍ୟାଖ୍ୟାନ; ପ୍ରତିବନ୍ଧ; ପରିତ୍ୟାଗ; ଜ୍ଞାପନ; ଦୈବବାଣୀ ।

ପ୍ରତ୍ୟାବୃତ୍ତ, ବି°. (ପ୍ରତି-ଆ-ବୃତ୍-ତ) ପ୍ରତ୍ୟାଗତ, ପୁନରାଗତ ।

ପ୍ରତ୍ୟାଶା, ବି. ସ୍ତ୍ରୀ. (ପ୍ରତି-ଆଶା) ଆକାଙ୍କ୍ଷା, ଭରସା; ପ୍ରତ୍ୟୟ ।

ପ୍ରତ୍ୟାଶୀ, ବି°. (ପ୍ରତ୍ୟାଶା-ଇନ୍ ) ଯେ ପ୍ରତ୍ୟାଶା କରେ ।

ପ୍ରତ୍ୟାହତ, ବି°. ( ପ୍ରତି-ଆ-ହନ୍-ତ ) ପ୍ରତିବନ୍ଧ; ବ୍ୟାହତ; ସଙ୍କୁଚିତ; କୁଣ୍ଠିତ ।

ପ୍ରତ୍ୟୁତ, ଅ°. (ପ୍ରତି-ଉତ) ଉକ୍ତିର ବୈପରୀତ୍ୟ; ବରଂ; ଅନ୍ୟପକ୍ଷେ ।

ପ୍ରତ୍ୟୁତ୍ତର, ବି. ନ. ( ପ୍ରତି-ଉତ୍ତର ) ଉତ୍ତରର ଉତ୍ତର ।

ପ୍ରତ୍ୟୁତ୍ପନ୍ନ, ବି°. ( ପ୍ରତି-ଉତ୍ପନ୍ନ ) ପୁନରୁତ୍ପନ୍ନ, ପୁନର୍ବାର ଜାତ, ସତ୍ୱର; ହଠାତ୍ ।

ପ୍ରତ୍ୟୁତ୍ପନ୍ନମତି, ବି°. ( ପ୍ରତ୍ୟୁତ୍ପନ୍ନ-ମତି) ପ୍ରତିଭାନ୍ୱିତ, ଅସାଧାରଣ ବୁଦ୍ଧିଶକ୍ତିବିଶିଷ୍ଟ; ହଠାତ୍ କୌଣସି ବିଷୟର ନିର୍ଦ୍ଦେଶ; ଉପସ୍ଥିତ ବିଷୟରେ ଯାହାର ବୁଦ୍ଧି ସ୍ଫୂର୍ତ୍ତି ପାଏ ; ବିପଦ ସମୟରେ ଯେ ହିତବୁଦ୍ଧି ନ ହୁଏ । ବି. ନ. ଉପସ୍ଥିତ ବୁଦ୍ଧି ।

ପ୍ରତ୍ୟୁପକାର, ବି. ପୁ°. (ପ୍ରତି-ଉପକାର) କୌଣସି ବ୍ୟକ୍ତିର ଉପକାର କଲେ ସେ ଉପକର୍ତ୍ତାର ଯେ ଉପକାର କରେ ।

ପ୍ରତ୍ୟୁପ୍ତ, ବି°. (ପ୍ରତି-ବପ୍-ତ) ଖଚିତ, ଗ୍ରଥିତ, ପ୍ରୋତ; ଉପ୍ତ ।

ପ୍ରତ୍ୟୁଷ, ପ୍ରତ୍ୟୂଷ, ବି. ନ. ( ପ୍ରତି-ଉଷ, ଉଷ ) ପ୍ରାତଃ, ପ୍ରାତଃକାଳ ।

ପ୍ରତ୍ୟୂହ, ବି. ପୁ°. ( ପ୍ରତି-ଉହ ) ବିଘ୍ନ, ବାଧା, ବ୍ୟାଘାତ ।

ପ୍ରତ୍ୟେକ, କ୍ରି. ବି°. (ପ୍ରତି-ଏକ) ଏକବଚନାନ୍ତ, ଏକଏକ ସମୁଦାୟ, ପୃଥକ୍ ପୃଥକ୍ ।

ପ୍ରତ୍ୟେତା, ବି°.(ପ୍ରତି-ଇ-ତୃ) ବିଶ୍ୱାସୀ, ପ୍ରତ୍ୟୟକାରୀ ।

ପ୍ରଥମ, ବି°. ( ପ୍ରଥ୍-ଅମ) ଆଦିମ, ଆଦ୍ୟ; ମୁଖ୍ୟ, ପ୍ରଧାନ, ଶ୍ରେଷ୍ଠ ।

ପ୍ରଥମତଃ, ଅ°. (ପ୍ରଥମ-ତସ୍) ପ୍ରଥମେ, ଅଗ୍ରେ ।

ପ୍ରଥା, ବି. ନ. (ପ୍ରଥ୍-ଅ-ଆ) ରୀତି, ଧାରା; ଖ୍ୟାତି, ପ୍ରସିଦ୍ଧି; ବିସ୍ତାର ।

ପ୍ରଥିତ, ବି°. (ପ୍ରଥ୍-ତ) ପ୍ରସିଦ୍ଧ, ଖ୍ୟାତ; ପ୍ରକୃଷ୍ଟ; ବିସ୍ତୃତ ।

ପ୍ରଥିଷ୍ଠ, ପ୍ରଥୀୟାନ୍, ବି°. ( ପୃଥୁ-ଇଷ୍ଠ,ଈୟସ୍ ) ଅତିବୃହତ୍ ।

ପ୍ରଦ, ବି°. (ପ୍ର-ଦା-ଅ) ଦାତା, ଦାନକାରୀ, ଯେ ପ୍ରଦାନ କରେ ।

ପ୍ରଦକ୍ଷିଣ, ବି. ନ. (ପ୍ର-ଦକ୍ଷିଣ) ପୂଜନୀୟ ବା ପ୍ରିୟ ବ୍ୟକ୍ତିର ଚତୁର୍ଦ୍ଦିଗରେ ବେଷ୍ଟନ; ବନ୍ଦନା; ଆରାଧନା ।

ପ୍ରଦତ୍ତ, ବି°. (ପ୍ର-ଦା-ତ) ସମର୍ପିତ, ଯାହା ଦିଆ ହୋଇଅଛି ।

ପ୍ରଦର, ବି. ପୁ°. (ପ୍ର-ଦୃ-ଅ) ଭଙ୍ଗ; ବିଦାରଣ; ବାଣ; ସ୍ତ୍ରୀଲୋକର ରୋଗବିଶେଷ, ଋତୁ ସମୟରେ ଅଧିକ ପରିମାଣରେ ରକ୍ତ କ୍ଷରଣ ।

ପ୍ରଦର୍ଶକ, ବି°. (ପ୍ର-ଦୃଶ୍-ଅକ ) ଯେ ଦେଖାଏ, ପ୍ରଦର୍ଶନକାରୀ ।

ପ୍ରଦର୍ଶନ, ବି. ନ. ( ପ୍ର-ଦୃଶ୍-ଅନ ) ଉଲ୍ଲେଖ; ଦେଖାଇବାର ।

ପ୍ରଦର୍ଶିତ, ବି°. (ପ୍ର-ଦର୍ଶି-ତ) ଉଲ୍ଲିଖିତ; ଯାହା ଦେଖାଇ ଦିଆ ହୋଇଅଛି ।

ପ୍ରଦାନ, ବି. ନ. (ପ୍ର-ଦା-ଅନ) ଦାନ, ବିତରଣ, ଅର୍ପଣ, ଦେବାର ।

ପ୍ରଦୀପ, ବ. ପୁଂ. (ପ୍ର-ଦୀପ୍-ଅ) ଦୀପ । ଯଥା—
ଅନ୍ଧାର ହୋଇବାରୁ ପ୍ରଦୀପ ଲେଡା,
ତକ୍ଷଣେ ଫେଇ ଦେଲ ଗବାକ୍ଷ ଯୁଡ଼ା ସେ ।
ବଳିଷ୍ଠ ଜ୍ୱଳନ୍ତ ଅଗ୍ନିଶିଖା; ପ୍ରକାଶକ ।

ପ୍ରଦୀପ୍ତ, ବଂ. (ପ୍ର-ଦୀପ୍-ତ) ପ୍ରକାଶିତ; ଉଜ୍ଜ୍ୱଳ ।

ପ୍ରଦେୟ, ବଂ. (ପ୍ର-ଦେୟ) ପ୍ରଦାନର ଯୋଗ୍ୟ ।

ପ୍ରଦେଶ, ବ. ପୁଂ. (ପ୍ର-ଦେଶ) ସ୍ଥାନ; ଦେଶ; ଏକଦେଶ; କଲ୍ପ; ବୃଦ୍ଧାଙ୍ଗୁଷ୍ଠର ଅଗ୍ରଠାରୁ ତର୍ଜନୀର ଅଗ୍ର ପର୍ଯ୍ୟନ୍ତ ପରିମାଣ ଭିତ୍ତି, କାନ୍ଥ ।

ପ୍ରଦୋଷ, ବ. ପୁଂ. (ପ୍ର-ଦୋଷା) ରଜନୀମୁଖ, ସାୟଂକାଳ । ଯଥା—
ହେଳହେଳେ ଅସ୍ତ ପ୍ରଦୋଷ କରଣେ ।
(ପ୍ର-ଦୋଷ) ବଂ. ଦୁଷ୍ଟ, ଦୋଷଯୁକ୍ତ ।

ପ୍ରଦ୍ୟୁମ୍ନ, ବ.ପୁଂ. (ପ୍ର-ଦ୍ୟୁମ୍ନ) କନ୍ଦର୍ପ, କାମଦେବ ।

ପ୍ରଦ୍ୟୋତ, ବ. ପୁଂ. (ପ୍ର-ଦ୍ୟୋତ) କିରଣ, ଆଲୋକ, ଦୀପ୍ତି ।

ପ୍ରଦ୍ରବ, ପ୍ରଦ୍ରାବ, ବ. ପୁଂ. (ପ୍ର-ଦ୍ରୁ-ଅ) ପ୍ରସ୍ଥାନ, ପଳାୟନ, ଧାବନ ।

ପ୍ରଧାନ, ବ. ନ. (ପ୍ର-ଧା-ଅନ) ପରମେଶ୍ୱର, ପରମାତ୍ମା; ସାଙ୍ଖ୍ୟର ଜଗତର ପ୍ରଥମ କାରଣ; ବୁଦ୍ଧି । ବଂ. ଶ୍ରେଷ୍ଠ ।

ପ୍ରପଞ୍ଚ, ବ. ପୁଂ. (ପ୍ର-ପଞ୍ଚ୍-ଅ) ବିସ୍ତାର; ବିସ୍ତୃତ ବସ୍ତୁ; ସମୂହ; ଭ୍ରମ, ଭ୍ରାନ୍ତି; ଅଜ୍ଞାନ, ମାୟା; ବଞ୍ଚନା; ବୈପରୀତ୍ୟ; ସଂସାର । ଯଥା—
ଦେଜ ପ୍ରପଞ୍ଚର ମାୟା ତହିଁ ପାଞ୍ଚଭର
ପାହାଲୀ ସହୁଛେ ଅଗେ ଗଲେ ପୂର୍ବାଞ୍ଚଳେ । ମ. ଯା.

ପ୍ରପଥ, ବଂ. (ପ୍ର-ପଥ୍-ଅ) ଶିଥିଳ, ଅଲଗା ।

ପ୍ରପଦ, ବ. ନ. (ପ୍ର-ପଦ) ପାଦାଗ୍ର, ଗୋଡର ଅଗ୍ରଭାଗ । ଯଥା—
ପ୍ରପଦରେ କଂସାମନ୍ତ୍ର, ଶବଦେ ଧର୍ମର ଭେଦ । ସ୍ୱ. ବ.

ପ୍ରପନ୍ନ, ବଂ. (ପ୍ର-ପଦ୍-ତ) ପ୍ରାପ୍ତ; ଶରଣାଗତ, ଆଶ୍ରିତ । ଯଥା—
ପ୍ରପନ୍ନ ହେବା ଶଙ୍କାରେ କହିଲେ କର୍ଣ୍ଣିଷ ।
ସ୍ୱୀକୃତ; ଦରିଦ୍ର; ଅନ୍ୱେଷୀ ।

ପ୍ରପା, ବ. ସ୍ତ୍ରୀ. (ପ୍ର-ପା) ପାନୀୟଶାଳା, ଜଳଛତ୍ର ।

ପ୍ରପାତ, ବ. ପୁଂ. (ପ୍ର-ପତ୍-ଅ) ପର୍ବତାଦିର ନିରବଲମ୍ବ ଅତ୍ୟୁଚ୍ଚ ସ୍ଥାନ, ଭୃଗୁଦେଶ; ପତନ; ନିର୍ଝର; ଅତ୍ୟୁଚ୍ଚ ତଟ; କୂଳ ।

ପ୍ରପିତାମହ, ବ. ପୁଂ. (ପ୍ର-ପିତାମହ) ପିତାମହଙ୍କ ପିତା ।

ପ୍ରପିତାମହୀ, ବ. ସ୍ତ୍ରୀ. (ପ୍ର-ପିତାମହୀ) ପିତାମହଙ୍କ ମାତା ।

ପ୍ରପୌତ୍ର, ବ. ପୁଂ. ସ୍ତ୍ରୀ. (ପ୍ର-ପୌତ୍ର) ପୌତ୍ରର ସନ୍ତାନ, ଅଣନାତି ।

ପ୍ରଫୁଲ୍ଲ, ବଂ. (ପ୍ର-ଫୁଲ୍ଲ-ତ) ପ୍ରସ୍ଫୁଟିତ, ବିକସିତ; ସହାସ୍ୟ; ପ୍ରସନ୍ନ ।

ପ୍ରବନ୍ଧ, ବ. ପୁଂ. (ପ୍ର-ବନ୍ଧ୍-ଅ) କାବ୍ୟାଦି ରଚନା; ସନ୍ଦର୍ଭ; ଅବଚ୍ଛେଦ; ପୂର୍ବାପର ସଙ୍ଗତି; ବନ୍ଧନ; ପରସ୍ପରାନ୍ୱିତ ବାକ୍ୟସମୂହ ।

ପ୍ରବଳ, ବଂ. (ପ୍ର-ବଳ) ଅତିଶୟ ବଳବାନ୍ । ଯଥା—
ଶୀତ ଅଚ୍ଛୁତ ନିତ ହେଲ ପ୍ରବଳ ।

ପ୍ରବାଳ, ବ. ପୁଂ. ନ. (ପ୍ର-ବଳ-ଅ) ସମୁଦ୍ରସମ୍ଭୂତ ଲୋହିତବର୍ଣ୍ଣ ରତ୍ନବିଶେଷ, ବିଦ୍ରୁମ, ପୋହଳା । ଯଥା—
ବବ ଅଛେ ମୁକ୍ତା ତାର ପ୍ରବାଳ ଅଙ୍କୁରେ । ବ. ବ.
କିଶଳୟ, ନୂତନ ପଲ୍ଲବ; ବୀଣାଦଣ୍ଡ ।

ପ୍ରବାଳକୀଟ, ବ. ପୁଂ. ସମୁଦ୍ରଜାତ ରକ୍ତବର୍ଣ୍ଣ କୀଟବିଶେଷ ।

ପ୍ରବାଳଫଳ, ବ. ନ. ରକ୍ତଚନ୍ଦନ ।

ପ୍ରବୁଦ୍ଧ, ବଂ. (ପ୍ର-ବୁଧ୍-ତ) ଜ୍ଞାନୀ; ଜାଗରିତ; ପ୍ରଫୁଲ୍ଲ ।

ପ୍ରବୋଧ, ବ. ପୁଂ. (ପ୍ର-ବୁଧ୍-ଅ) ଜାଗରଣ; ବିକାଶ; ଜ୍ଞାନ ।

ପ୍ରବୋଧନ, ବ. ନ. (ପ୍ର-ବୋଧି-ଅନ) ଜାଗରିତ-କରଣ; ଜ୍ଞାପନ; ସାନ୍ତ୍ୱନା, ବୁଝାଇବା; ଉତ୍ତେଜନା; ଉପଦେଶ; ମର୍ଦ୍ଦନଦ୍ୱାରା ସୁଗନ୍ଧ-ଦ୍ରବ୍ୟର ପୂର୍ବଗନ୍ଧ ପୁନରୁତ୍ପାଦନ ।

ପ୍ରବୋଧିତ, ବିଂ. ( ପ୍ର-ବୁଧ-ତ ) ଜାଗରିତ; ଜ୍ଞାପିତ; ଉଦ୍ରେକିତ; ଯାହାକୁ ପ୍ରବୋଧ ଦିଆ ହୋଇଅଛି ।

ପ୍ରଭଞ୍ଜନ, ବି. ପୁଂ. (ପ୍ର-ଭନ୍‌ଜ୍-ଅନ) ବାୟୁ । ବିଂ. ଭଞ୍ଜନକାରୀ ।

ପ୍ରଭବ, ବି. ପୁଂ. (ପ୍ର-ଭୂ-ଅ) ଉତ୍ପତ୍ତି, ଜନ୍ମ; ଉତ୍ପତ୍ତିସ୍ଥାନ; କାରଣ; ପ୍ରଭାବ; ପରାକ୍ରମ; ବିଷ୍ଣୁରବିଶେଷ । ବିଂ. ଉତ୍ପାଦକ ।

ପ୍ରଭା, ବି. ସ୍ତ୍ରୀ. (ପ୍ର-ଭା-ଅ) ଦୀପ୍ତି, ତେଜଃ; ପ୍ରକାଶ; କୁବେର ପୁରୀ; ଦୁର୍ଗା; ସୂର୍ଯ୍ୟପତ୍ନୀ ।

ପ୍ରଭାକର, ବି. ପୁଂ. (ପ୍ରଭା-କର) ସୂର୍ଯ୍ୟ; ଚନ୍ଦ୍ର; ସମୁଦ୍ର; ଅଗ୍ନି; ମୀମାଂସାଙ୍କ ପଣ୍ଡିତବିଶେଷ । ବିଂ. ତେଜସ୍ୱର ।

ପ୍ରଭାତ, ବି. ନ. ( ପ୍ର-ଭା-ତ ) ପ୍ରାତଃକାଳ, ପ୍ରତ୍ୟୂଷ । ବିଂ. ପ୍ରଭାଯୁକ୍ତ ।

ପ୍ରଭାବ, ବି. ପୁଂ. (ପ୍ର-ଭୂ-ଅ) ପ୍ରତାପ, ଧନ ଓ ରଣଜନିତ ତେଜଃ; ପ୍ରଭୁଶକ୍ତି; ମହିମା; ସାମର୍ଥ୍ୟ; ଉଦ୍ଭବ; ଶାନ୍ତ ।

ପ୍ରଭାସ, ବି. ପୁଂ. (ପ୍ର-ଭାସ୍-ଅ) ଭାରତବର୍ଷର ପଶ୍ଚିମସ୍ଥ ତୀର୍ଥବିଶେଷ, ସୋମତୀର୍ଥ; ବସୁବିଶେଷ ।

ପ୍ରଭୁ, ପ୍ରଭବିଷ୍ଣୁ, ବି. ପୁଂ. ( ପ୍ର-ଭୂ-ଉ, ଇଷ୍ଣୁ ) ନିଗ୍ରହାନୁଗ୍ରହସମର୍ଥ; ସ୍ୱାମୀ; ରାଜା; ବିଷ୍ଣୁ; ପାରଦ । ବିଂ. ସମର୍ଥ; ଶକ୍ତ; ଶ୍ରେଷ୍ଠ ।

ପ୍ରଭୁତା, ସ୍ତ୍ରୀ. } ବି. ପୁଂ. ( ପ୍ରଭୁ-ତା, ତ୍ୱ )
ପ୍ରଭୁତ୍ୱ, ନ. } ଆଧିପତ୍ୟ, କର୍ତ୍ତୃତ୍ୱ; ପ୍ରାଧାନ୍ୟ; ପ୍ରଭାବ; ସ୍ୱାମିତ୍ୱ; ସାମର୍ଥ୍ୟ ।

ପ୍ରଭୁଭକ୍ତ, ବିଂ. (ପ୍ରଭୁ-ଭକ୍ତ) ପ୍ରଭୁ ପ୍ରତି ଅନୁରକ୍ତ, ଆଜ୍ଞାବହ ।

ପ୍ରଭୂତ, ବିଂ. (ପ୍ର-ଭୂ-ତ) ପ୍ରଚୁର, ବହୁ; ଉତ୍ପନ୍ନ; ଉନ୍ନତ; ଅଗତ; ଶାସିତ ।

ପ୍ରଭୃତି, ବିଂ. (ପ୍ର-ଭୃ-ତି) (ଶବ୍ଦ ପରେ ଥିଲେ) ଇତ୍ୟାଦି, ତଦାଦି, ଆଦି । ଅଂ. ଅବଧି ।

ପ୍ରଭେଦ, ବି. ପୁଂ. ( ପ୍ର-ଭିଦ୍-ଅ ) ପ୍ରକାର; ବିଭିନ୍ନତା, ବୈଲକ୍ଷଣ୍ୟ; ଭେଦ, ବିଶେଷ; ବିକାଶ, ପ୍ରସ୍ଫୁଟନ ।

ପ୍ରମତ୍ତ, ବିଂ. (ପ୍ର-ମତ୍ତ) ପ୍ରମାଦଯୁକ୍ତ, ପାଗଳ, ଅନବହିତ, ଅସାବଧାନ; ଅତ୍ୟାସକ୍ତ; ଅତି-ମତ୍ତ ।

ପ୍ରମଥ, ବି. ପୁଂ. (ପ୍ର-ମଥ୍-ଅ) ଶିବଙ୍କ ପାରିଷଦ; ଘୋଟକ । ଥା, ସ୍ତ୍ରୀ. ହରୀତକୀ ।

ପ୍ରମଥନ, ବି. ନ. ( ପ୍ର-ମଥ୍-ଅନ ) ହତ୍ୟା, ବଧ, ବିନାଶ, ମର୍ଦ୍ଦନ; ତ୍ୟାଗ ।

ପ୍ରମଥାଧିପ, ବି. ପୁଂ. ( ପ୍ରମଥ-ଅଧିପ ) ଶିବ, ମହାଦେବ ।

ପ୍ରମଦ, ବିଂ. (ପ୍ର-ମଦ୍-ଅ) ମତ୍ତ, ପ୍ରମତ୍ତ, ଉନ୍ମତ୍ତ । ବି. ପୁଂ. ଆନନ୍ଦ, ହର୍ଷ ।

ପ୍ରମଦକାନନ, ପ୍ରମଦବନ ବି. ନ. (ପ୍ରମଦ-କାନନ, ବନ) ରାଜକୀୟ ଅନ୍ତଃପୁରୋଦ୍ୟାନ, ଆନନ୍ଦ-କାନନ ।

ପ୍ରମଦା, ବି. ସ୍ତ୍ରୀ. (ପ୍ର-ମଦ) ସୁନ୍ଦରୀ ନାରୀ । ଯଥା—

> ପ୍ରମଦା ସେହି ହିଁ ଭବ ଦେଇଛି,
> ପଥର ଗାର ପରି ହୃଦେ ଅଛି ।

ପ୍ରମାଣ, ବି. ନ. ( ପ୍ର-ମା-ଅନ ) ନିଶ୍ଚୟ ହେତୁ; ପ୍ରତ୍ୟକ୍ଷ, ଅନୁମାନ, ଉପମାନ, ଶବ୍ଦ ଏହି ଚାରି; ଏତଦ୍ଭିନ୍ନ ବେଦାନ୍ତ ମତରେ ଅର୍ଥାପତ୍ତି ଓ ଅନୁପଲବ୍ଧି ନାମରେ ଦୁଇଟି ଅତିରିକ୍ତ ପ୍ରମାଣ ଅଛି; ନିତ୍ୟ; ମର୍ଯ୍ୟାଦା; ସାକ୍ଷୀ; ଲେଖ୍ୟ; ଶାସ୍ତ୍ର; ପ୍ରଧାନ; ପରିମାଣ; ପ୍ରମାତା; ଯଥାର୍ଥ ଜ୍ଞାନ; ନିଶ୍ଚୟ; ଜ୍ଞାନସାଧନ ଇନ୍ଦ୍ରିୟ ।

ପ୍ରମାଥୀ, ବିଂ. ( ପ୍ର-ମଥ୍-ଇନ୍ ) ପୀଡ଼ାଦାୟକ, କ୍ଲେଶକର । ଯଥା—

> ଅରାତିପ୍ରମାଥୀ ପୃଥୁ ଦକ୍ଷୀ ଅଧିପତି । ମ. ଯା

ପ୍ରମାଦ, ବି. ପୁଂ. ( ପ୍ର-ମଦ୍-ଅ ) ଅନବଧାନତା; ଅସାବଧାନତା; ଭ୍ରମ; ଅନ୍ତଃକରଣ ଦୌର୍ବଲ୍ୟ ।

ପ୍ରମିତ, ବିଂ. (ପ୍ର-ମା-ତ) ଜ୍ଞାତ, ବିଦିତ, ଅବଗତ; ନିଶ୍ଚିତ; ପରିମିତ ।

ପ୍ରମିତି, ବି. ସ୍ତ୍ରୀ. (ପ୍ର-ମା-ତି) ନିଶ୍ଚୟଜ୍ଞାନ; ପ୍ରମାଣ, ପରିମାଣ ।

ପ୍ରମୀତ, ବିଂ. (ପ୍ର-ମୀ-ତ) ମୃତ, ହତ; ନିହତ; ଯଜ୍ଞାର୍ଥ ହତ ।

ପ୍ରମୀଳା, ବି. ସ୍ତ୍ରୀ. (ପ୍ର-ମୀଲ୍-ଅ, ଆ) ତନ୍ଦ୍ରା; ଅବସାଦ; ମୁଦ୍ରଣ; ମେଘନାଦ ପତ୍ନୀ ।

ପ୍ରମୁଖ, ବିଂ. (ପ୍ର-ମୁଖ) ପ୍ରଥମ; ପ୍ରଧାନ, ଶ୍ରେଷ୍ଠ; ପ୍ରଭୃତି । ବି. ନ. ଆରମ୍ଭ । ପୁଂ. ସମୂହ ।

ପ୍ରମୁଖାତ୍, ମୁଖରୁ ।

ପ୍ରମୁଦିତ, ବିଂ. (ପ୍ର-ମୁଦ୍-ତ) ହୃଷ୍ଟ, ଆହ୍ଲାଦିତ; ପ୍ରଫୁଲ୍ଲ, ବିକଶିତ ।

ପ୍ରମେହ, ବିଂ. (ପ୍ର-ମିହ୍-ଅ) ମୂତ୍ରଦୋଷ ରୋଗ-ବିଶେଷ ।

ପ୍ରମୋଦ, ବି. ପୁଂ. (ପ୍ର-ମୁଦ୍-ଅ) ଆମୋଦ,ଆନନ୍ଦ, ହର୍ଷ ।

ପ୍ରମୋଦିତ, ବିଂ. (ପ୍ର-ମୁଦ୍-ତ) ଆମୋଦିତ, ଆନନ୍ଦିତ । ବି. ପୁଂ. କୁବେର ।

ପ୍ରଯତ୍ନ, ବି. ପୁଂ. (ପ୍ର-ଯତ୍ନ) ଅଧ୍ୟବସାୟ; ପ୍ରୟାସ; ପ୍ରକୃଷ୍ଟ ଯତ୍ନ ।

ପ୍ରୟାଗ, ବି. ପୁଂ. (ପ୍ର-ଯଜ୍-ଅ) ଗଙ୍ଗା, ଯମୁନା, ସରସ୍ୱତୀ ଏହି ତିନି ନଦୀର ସଙ୍ଗମସ୍ଥାନ, ଏଲାହାବାଦ; ଯଜ୍ଞ; ଶତକ୍ରତୁ, ଇନ୍ଦ୍ର; ଅଶ୍ୱ ।

ପ୍ରୟାଣ, ବି. ନ. ( ପ୍ର-ଯା-ଅନ ) ଯୁଦ୍ଧଯାତ୍ରା; ପ୍ରସ୍ଥାନ; ଗମନ । ଯଥା—

ମାଲଶେଣିକୁ ଘନ କର ପ୍ରୟାଣ । ମେ. ଦୂ.

ପ୍ରୟାସ, ବି. ପୁଂ. ( ପ୍ର-ଯସ୍-ଅ ) ଆୟାସ, ଶ୍ରମ; ଯତ୍ନ ।

ପ୍ରୟୁକ୍ତ, ବିଂ. (ପ୍ର-ଯୁଜ୍-ତ) ରଚିତ; ଅନୁଷ୍ଠିତ; ଉତ୍ପନ୍ନ; ଅର୍ପିତ; ଯାହା ପ୍ରୟୋଗ କରା ହୋଇ ଅଛି; ନିଯୁକ୍ତ; ପ୍ରେରିତ; ଉତ୍କ୍ଷିପ୍ତ; ଉଚ୍ଚରିତ; ଉଦାହୃତ; ଯାହା ଧାର ଦିଆ ଯାଇଅଛି । ବି. ହେତୁ, କାରଣ ।

ପ୍ରୟୁକ୍ତି, ବି. ସ୍ତ୍ରୀ. ( ପ୍ର-ଯୁଜ୍-ତି ) ପ୍ରୟୋଗ; ପ୍ରୟୋଜନ ।

ପ୍ରଯୋକ୍ତା, ବିଂ. ( ପ୍ର-ଯୁଜ୍-ତୃ ) ପ୍ରୟୋଗକର୍ତ୍ତା, ପ୍ରବର୍ତ୍ତକ; ଅନୁଷ୍ଠାତା; ଋଣଦାତା, ଉତ୍ତମର୍ଣ୍ଣ ।

ପ୍ରୟୋଜକ, ବିଂ. ( ପ୍ର-ଯୁଜ୍-ଅକ ) ପ୍ରବର୍ତ୍ତକ, ଅନୁଷ୍ଠାନକାରୀ; ପ୍ରେରକ; କର୍ତ୍ତା ।

ପ୍ରୟୋଗ, ବି. ପୁଂ. ( ପ୍ର-ଯୁଜ୍-ଅ ) ଉଦାହରଣ; ଫଳ; ପ୍ରବର୍ତ୍ତନ; ଅନୁଷ୍ଠାନ; ଅଭିନୟ; ଯତ୍ନ; ଅର୍ପଣ; ଋଣଦାନ; ନିଦର୍ଶନ; ଉତ୍କ୍ଷେପ ।

ପ୍ରୟୋଜନ, ବି. ନ. ( ପ୍ର-ଯୁଜ୍-ଅନ ) ହେତୁ; ଉଦ୍ଦେଶ୍ୟ; ପ୍ରୟୋଗକରଣ; କାର୍ଯ୍ୟ; ଫଳ ।

ପ୍ରୟୋଜନୀୟ, ବିଂ. (ପ୍ର-ଯୁଜ୍-ଅନୀୟ) କାର୍ଯ୍ୟୋପଯୋଗୀ, ଅବଶ୍ୟକ ।

ପ୍ରଯୋଜ୍ୟ, ବିଂ. (ପ୍ର-ଯୁଜ୍-ଯ) ଯାହାକୁ ପ୍ରୟୋଗ କରାଯାଏ, କର୍ତ୍ତବ୍ୟ । ବି. ପୁଂ. ପ୍ରେଷ୍ୟ, ଭୃତ୍ୟ । ନ. ମୂଳଧନ ।

ପ୍ରରୋଚନ, ବି. ନ. (ପ୍ର-ରୁଚ୍-ଅନ) ଉତ୍ତେଜନା, ରୁଚିଉତ୍ପାଦନ ।

ପ୍ରରୋହ, ବି. ପୁଂ. (ପ୍ର-ରୁହ୍-ଅ) ଅଙ୍କୁର, ଗଜା । ଯଥା—

ହେବ ଏ ଅବନୀ ଯଯାତିରୁ ପଣବାନର ପ୍ରରୋହସ୍ଥଳୀ ।

ପ୍ରଲପିତ, ବିଂ. (ପ୍ର-ଲପ୍-ତ) କଥିତ; ବୃଥା ଉକ୍ତ । ବି. ନ. ପ୍ରଳାପ ।

ପ୍ରଲମ୍ବ, ବି.ପୁଂ. (ପ୍ର-ଲମ୍ବ୍-ଅ) ଦୈତ୍ୟବିଶେଷ; ଉଦ୍ଭିଦର ଅଙ୍କୁର; ହାରବିଶେଷ; ମେଘ; ଅତିଶୟ ଲମ୍ବ । ଯଥା—

ବିଳମ୍ବରୁ କାରଣ କି ପ୍ରଲମ୍ବହନ୍ତା । ସା. ବ.

ବିଂ. ଲମ୍ବବାନ୍ ।

ପ୍ରଲମ୍ବଘ୍ନ, ବି. ପୁଂ. (ପ୍ରଲମ୍ବ-ଘ୍ନ) ବଳରାମ ।

ପ୍ରଲମ୍ବିତ,ବିଂ. ( ପ୍ର-ଲମ୍ବ୍-ତ ) ଯାହା ଝୁଲି ପଡ଼ିଅଛି ।

ପ୍ରଳୟ, ବି.ପୁଂ. (ପ୍ର-ଲୀ-ଅ) କଳ୍ପାନ୍ତ; ବ୍ରହ୍ମାଣ୍ଡର ବିନାଶ; ପ୍ରଳୟ ଚାରିପ୍ରକାର; ଯଥା—ନିତ୍ୟ, ପ୍ରାକୃତ, ନୈମିତ୍ତିକ ଓ ଆତ୍ୟନ୍ତିକ; ମୃତ୍ୟୁ; ଧ୍ୱଂସ, ନାଶ; କ୍ଷୟ; ମୂର୍ଚ୍ଛା ।

ପ୍ରଳାପ, ବି.ପୁଂ. (ପ୍ର-ଲପ୍-ଅ) ଅନର୍ଥକ ବାକ୍ୟ, ଉନ୍ମତ୍ତ ଲୋକମାନଙ୍କ ପରି କଥା କହିବା ।

ପ୍ରଲେପ, ବି. ପୁଂ. ( ପ୍ର-ଲିପ୍-ଅ ) ଲେପନ, ବୋଳିବା; ଲେପନ ଦ୍ରବ୍ୟ ।

ପ୍ରଲୋଭ, ବି. ପୁଂ. ( ପ୍ର-ଲୋଭ ) ଅତିଲୋଭ, ଅତିଶୟ ଲାଳସା; ଲାଳେଚ୍ଛା ।

ପ୍ରଲୋଭନ, ବି. ନ. ( ପ୍ର-ଲୋଭ-ଅନ ) ଲୋଭ ଦେଖାଇବା । ବିଂ. ଲୋଭପ୍ରଦର୍ଶକ ।

ପ୍ରବକ୍ତା, ବିଂ. ( ପ୍ର-ବଚ୍-ତୃ ) ସଦ୍‌ବକ୍ତା; ନବସତ୍ୟ-ପ୍ରବର୍ତ୍ତକ ।

ପ୍ରବଚନ, ବି. ନ. ( ପ୍ର-ବଚନ ) ବେଦ; ବେଦାର୍ଥ-ଜ୍ଞାନ; ଉତ୍ତମ ଜ୍ଞାନ ।

ପ୍ରବଞ୍ଚକ, ବି. ପୁଂ. ( ପ୍ର-ବଞ୍ଚ-ଅକ ) ପ୍ରତାରକ, ଧୂର୍ତ୍ତ ।

ପ୍ରବଞ୍ଚନ, ବି. ନ. ( ପ୍ର-ବଞ୍ଚନ ) ପ୍ରତାରଣା, ଠକାଇବା ।

ପ୍ରବଞ୍ଚିତ, ବିଂ. ( ପ୍ର-ବଞ୍ଚିତ ) ପ୍ରତାରିତ, ଯେ ଠକି ଥାଏ ।

ପ୍ରବଣ, ବିଂ. ( ପ୍ର-ବନ୍-ଅ ) ନତ; କ୍ରମନିମ୍ନ, ଗଡ଼ାଣିଆ, ଢାଲୁ; ତନ୍ମୁଖ; ଅଭିମୁଖ; ଅନୁକୂଳ; କ୍ଷୀଣ; ଆଯୁତ; ତତ୍ପର; ବିନୀତ; ସିଦ୍ଧ । ବି. ପୁଂ. ଚତୁଷ୍ପଥ; ଉଦର ।

ପ୍ରବର, ବି.ନ. ( ପ୍ର-ବର ) ଗୋତ୍ର; ସନ୍ତତି । ବିଂ. ଅତ୍ୟୁତ୍ତମ । ବି. ପୁଂ. ଗୋତ୍ରପ୍ରବର୍ତ୍ତକ ମୁନି ।

ପ୍ରବର୍ତ୍ତକ, ବିଂ. ( ପ୍ରବୃତ୍-ଅକ ) ପ୍ରବୃତ୍ତିଦାୟକ; ପ୍ରଦର୍ଶକ; ଅନବର୍ତ୍ତକ, ଅବଚ୍ଛେଦକାରୀ; ପ୍ରଣେତା ।

ପ୍ରବର୍ତ୍ତନ, ବି. ନ. ( ପ୍ର-ବୃତ୍-ଅନ ) ପ୍ରବୃତ୍ତି; ଆରମ୍ଭ । ବିଂ. ପ୍ରବୃତ୍ତିଜନକ; ଉଦ୍ରେକକ ।

ପ୍ରବର୍ତ୍ତିତ, ବିଂ. ( ପ୍ର-ବୃତ୍-ତ ) ଚାଳିତ; ଉତ୍ପାଦିତ; ଆରବ୍ଧ; ପ୍ରତ୍ୟାବର୍ତ୍ତିତ, ଫେରେଇବାର; ଉଦ୍ରେକିତ; ପ୍ରେରିତ ।

ପ୍ରବର୍ହ, ବିଂ. ( ପ୍ର-ବୃହ୍-ଅ ) ପ୍ରଧାନ, ଶ୍ରେଷ୍ଠ ।

ପ୍ରବାଦ, ବି. ପୁଂ. ( ପ୍ର-ବାଦ ) ଜନଶ୍ରୁତି, ଜନ-ରବ; ଅପବାଦ; ପରମ୍ପରାଗତ ବାକ୍ୟ ।

ପ୍ରବାସ, ବି. ପୁଂ. ( ପ୍ର-ବସ୍-ଅ ) ବିଦେଶରେ ସ୍ଥିତି, ଭିନ୍ନ ଦେଶରେ ବାସ ।

ପ୍ରବାସୀ, ବିଂ. ( ପ୍ରବାସ-ଇନ୍ ) ବିଦେଶସ୍ଥ, ବିଦେଶ-ବାସୀ ।

ପ୍ରବାହ, ବି. ପୁଂ. ( ପ୍ର-ବହ୍-ଅ ) ସ୍ରୋତଃ; କ୍ରମାଗତ ଚଳନ, ଅବିଚ୍ଛେଦ; ପ୍ରସାର; ବିସ୍ତାର; ଉତ୍ତମ ଘୋଟକ ।

ପ୍ରବାହକ, ବି. ପୁଂ. ( ପ୍ର-ବହ-ଅକ ) ରାକ୍ଷସ । ବିଂ. ବହନକାରୀ ।

ପ୍ରବାହିତ, ପ୍ରବାହୀ, ବିଂ. ( ପ୍ରବାହ-ଇତ, ଇନ୍ ) ପ୍ରବାହବିଶିଷ୍ଟ ।

ପ୍ରବିଷ୍ଟ, ବିଂ. ( ପ୍ର-ବିଶ୍-ତ ) ଯାହା ପ୍ରବେଶ କରି-ଅଛି ।

ପ୍ରବୀଣ, ବିଂ. ( ପ୍ର-ବୀଣ-ଅ ) ବିଜ୍ଞ । ଯଥା—

ପ୍ରବୀଣ ଜନଠାରୁ ସଦୁପଦେଶ
ଲଭି ତୁଅନ୍ତି ମନୁଁ ବିଜ୍ଞ ବିଶେଷ । ଭ. ବ.

ବହୁଦର୍ଶୀ, ନିପୁଣ, ଦକ୍ଷ ।

ପ୍ରବୀର, ବି. ପୁଂ. ( ପ୍ର-ବୀର ) ଉତ୍ତମ ଯୋଦ୍ଧା । ବିଂ. ପ୍ରଧାନ, ଶ୍ରେଷ୍ଠ । ଯଥା—

ପାତ୍ର ମିତ୍ର ସଙ୍ଗେ କେଶରୀ ପ୍ରବୀର
ବାହୁଡ଼ିଲେ ଅଦ୍ୟ-ଯାମେ ଯାମିନୀର । ନ. କେ.

ପ୍ରବୃତ୍ତ, ବିଂ ( ପ୍ର-ବୃତ୍-ତ ) ରତ, ପ୍ରବୃତ୍ତିବିଶିଷ୍ଟ; ଉତ୍ପନ୍ନ; ଚଳିତ; ଆରବ୍ଧ; ନିଯୁକ୍ତ ।

ପ୍ରବୃତ୍ତି, ବି. ସ୍ତ୍ରୀ. ( ପ୍ର-ବୃତ୍-ତି ) ଇଚ୍ଛା; ଯତ୍ନ; ବାର୍ତ୍ତା, ସମ୍ବାଦ; ପ୍ରବାହ, ସ୍ରୋତଃ; ଗତି; ବ୍ୟାପାର; ଉତ୍ପତ୍ତି ।

ପ୍ରବୃତ୍ତିଜ୍ଞ, ବି. ପୁଂ. ( ପ୍ରବୃତ୍ତି-ଜ୍ଞ ) ବାର୍ତ୍ତାବହ, ଚର ।

ପ୍ରବୃଦ୍ଧ, ବିଂ. ( ପ୍ର-ବୃଧ୍-ତ ) ପ୍ରସାରିତ; ଅତି ବୃଦ୍ଧି-ଯୁକ୍ତ; ଅଗାଧ; ସ୍ଫୀତ ।

ପ୍ରବେଣି, ପ୍ରବେଣୀ, ବି. ସ୍ତ୍ରୀ. ( ପ୍ର-ବେଣ-ଇ, ସ୍ତ୍ରୀ ) କେଶବିନ୍ୟାସ, ହସ୍ତିର ପୃଷ୍ଠସ୍ଥିତ ଚିତ୍ରିତ ବସ୍ତ୍ର ବା କମ୍ବଳ । ଯଥା—

ଶଙ୍ଖସୂତ୍ରବର୍ଣ୍ଣ ଶୋଭି ପ୍ରବେଣି ଅବୃତ । ମ. ଯା.

ପ୍ରବେଶ, ବି. ପୁଂ. ( ପ୍ର-ବିଶ୍-ଅ ) ଅନ୍ତର୍ନିବେଶ, ଭିତରକୁ ଯିବାର ।

**ପ୍ରବେଶନ**, ବି. ନ. ( ପ୍ର-ବିଶ୍-ଅନ ) ସିଂହଦ୍ୱାର, ପ୍ରଧାନ ଦ୍ୱାର; ପ୍ରବେଶକରଣ ।

**ପ୍ରବେଶିକା**, ବି. ସ୍ତ୍ରୀ. ( ପ୍ର-ବିଶ୍-ଅକ ) ଯାହା ଦେଖାଇଲେ ପ୍ରବେଶ କରି ହୁଏ, ଟିକଟ୍ ।

**ପ୍ରବେଶିତ**, ବିଂ. (ପ୍ର-ବେଶି-ତ) ଯାହାକୁ ପ୍ରବେଶ କରା ହୋଇଅଛି ।

**ପ୍ରବେଷ୍ଟା, ପ୍ରବେଶକ**, ବିଂ. (ପ୍ର-ବିଶ୍-ତୃ , ଅକ) ପ୍ରବେଶକାରୀ, ଯେ ପ୍ରବେଶ କରେ ।

**ପ୍ରବେଶ୍ୟ**, ବିଂ. (ପ୍ର-ବିଶ୍-ଯ) ପ୍ରବେଶଯୋଗ୍ୟ ।

**ପ୍ରବ୍ରଜ୍ୟା**, ବି.(ପ୍ର-ବ୍ରଜ୍-ଯ-ଆ) ସନ୍ନ୍ୟାସ,ଭିକ୍ଷୁବ୍ରତ ।

**ପ୍ରଶଂସନ**, ନ. } **ପ୍ରଶଂସା**, ସ୍ତ୍ରୀ. } ବି. (ପ୍ର-ଶନ୍ସ୍-ଅନ, ଆ) ସ୍ତୁତି, ସ୍ତବ; ଧନ୍ୟବାଦ,ଗୁଣକୀର୍ତ୍ତନ ।

**ପ୍ରଶଂସନୀୟ**, ବିଂ. ( ପ୍ର-ଶନ୍ସ୍-ଅନୀୟ ) ପ୍ରଶଂସା-ଯୋଗ୍ୟ; ଶ୍ଳାଘ୍ୟାଭିଭାଜନ ।

**ପ୍ରଶଂସିତ**, ବିଂ. (ପ୍ର-ଶନ୍ସ୍-ତ) ଯାହାକୁ ପ୍ରଶଂସା କରା ହୋଇଅଛି ।

**ପ୍ରଶମନ**, ବି. ନ. ( ପ୍ର-ଶମ୍-ଅନ ) ହନନ, ବଧ; ଶାନ୍ତି;ନିବାରଣ;ସାନ୍ତ୍ୱନାଦିଦ୍ୱାରା ସ୍ଥିରୀକରଣ ।

**ପ୍ରଶମିତ**, ବିଂ. ( ପ୍ର-ଶମି-ତ ) ନିବାରିତ; ନିବୃତ୍ତ; ସୁସ୍ଥ; ପ୍ରଶାନ୍ତ ।

**ପ୍ରଶସ୍ତ**, ବିଂ. (ପ୍ର-ଶନ୍ସ୍-ତ) ଶ୍ରେଷ୍ଠ; ପ୍ରଶଂସନୀୟ ।

**ପ୍ରଶସ୍ତି**, ବି. ସ୍ତ୍ରୀ. (ପ୍ର-ଶସ୍-ତି) ପ୍ରଶଂସା; ଉତ୍କୃଷ୍ଟତା, ଶ୍ରେଷ୍ଠତା ।

**ପ୍ରଶାନ୍ତ**, ବିଂ. (ପ୍ର-ଶମ୍-ତ) ଶମତାପ୍ରାପ୍ତ, ନିବୃତ୍ତ ।

**ପ୍ରଶ୍ନ**, ବି. ପୁଂ. (ପ୍ରଚ୍ଛ-ନ) ପଚାରିବା, ଜିଜ୍ଞାସା ।

**ପ୍ରଶ୍ରୟ**, ବି. ପୁଂ. (ପ୍ର-ଶ୍ରି-ଅ) ସ୍ନେହ; ସ୍ନେହଯୁକ୍ତ ସମ୍ମାନ; ବିନୟ ।

**ପ୍ରଶ୍ୱାସ**, ବି. ପୁଂ. (ପ୍ର-ଶ୍ୱସ୍-ଅ) ନାସିକାଗତବାୟୁର ନିର୍ଗମନ ।

**ପ୍ରଷ୍ଟବ୍ୟ**, ବିଂ. ( ପ୍ରଚ୍ଛ୍-ତବ୍ୟ ) ପ୍ରଶ୍ନଯୋଗ୍ୟ, ଜିଜ୍ଞାସ୍ୟ ।

**ପ୍ରଷ୍ଟା**, ବିଂ. (ପ୍ରଚ୍ଛ୍-ତୃ ) ପ୍ରଶ୍ନକାରକ, ଜିଜ୍ଞାସୁ ।

**ପ୍ରସକ୍ତ**, ବିଂ. ( ପ୍ର-ସନ୍ଜ୍-ତ ) ଅନବରତ, ଅବିରତ, ଆସକ୍ତ ।

**ପ୍ରସକ୍ତି**, ବି. ସ୍ତ୍ରୀ. (ପ୍ର-ସନ୍ଜ୍-ତି) ଆସକ୍ତି, ପ୍ରଣୟ, ପ୍ରବୃତ୍ତି, ପ୍ରସଙ୍ଗ ।

**ପ୍ରସଙ୍ଗ**, ବି. ପୁଂ. (ପ୍ର-ସନ୍ଜ୍-ଅ) ସମ୍ପର୍କ, ସମ୍ବନ୍ଧ; ସଙ୍ଗବିଶେଷ; ଆପତ୍ତି; ଆସକ୍ତି; ପ୍ରସ୍ତାବ ।

**ପ୍ରସନ୍ନ**, ବିଂ. ( ପ୍ର-ସଦ୍-ତ ) ସନ୍ତୁଷ୍ଟ; ପ୍ରଫୁଲ୍ଲ; ଅନୁକୂଳ; ସ୍ୱଚ୍ଛ, ନିର୍ମଳ ।

**ପ୍ରସନ୍ନତା**, ବି. ସ୍ତ୍ରୀ. ( ପ୍ରସନ୍ନ-ତା ) ଅନୁଗ୍ରହ, ପ୍ରସାଦ; ହର୍ଷ; ସନ୍ତୋଷ; ପ୍ରଫୁଲ୍ଲତା; ସ୍ୱଚ୍ଛତା, ନିର୍ମଳତା; ଉଜ୍ଜ୍ୱଳତା ।

**ପ୍ରସର**, ବି. ପୁଂ. ( ପ୍ର-ସୃ-ଅ ) ବିସ୍ତାର, ବ୍ୟାପ୍ତି, ଗମନ ।

**ପ୍ରସରଣ**, ବି. ନ. (ପ୍ର-ସୃ-ଅନ) ଶତ୍ରୁପକ୍ଷର ଚତୁର୍ଦ୍ଦିଗରେ ବେଷ୍ଟନ; ଇତସ୍ତତୋଗମନ,ବ୍ୟାପ୍ତି; ଉତ୍ପତ୍ତି; ବିସ୍ତାର; ସ୍ୱାର୍ଥ ପ୍ରବୃତ୍ତି ।

**ପ୍ରସର୍ପଣ**, ବି. ନ. (ପ୍ର-ସୃପ୍-ଅନ) ପ୍ରସରଣ,ଗମନ, ବ୍ୟାପ୍ତି ।

**ପ୍ରସବ**, ବି. ପୁଂ. (ପ୍ର-ସୂ-ଅ) ଉତ୍ପାଦନ, ସନ୍ତାନ ଜନ୍ମ କରିବା, ଗର୍ଭମୋଚନ; ଉତ୍ପତ୍ତି; ଜନ୍ମ; ସନ୍ତାନ; ବିସ୍ତାର; ଫଳ; ପୁଷ୍ପ ।

**ପ୍ରସବିତା**, ବିଂ. (ପ୍ର-ସୂ-ତୃ) ଜନକ, ପିତା ।

**ପ୍ରସହନ**, ବି. ନ. (ପ୍ର-ସହ୍-ଅନ) ଅଭିଭବ; କ୍ଷମା; ସହିଷ୍ଣୁତା; ଆଲିଙ୍ଗନ । ବି.ପୁଂ. ଶିକାରୀ ଜନ୍ତୁ, ସିଂହ ବ୍ୟାଘ୍ର ପ୍ରଭୃତି ।

**ପ୍ରସହ୍ୟ**, ଅଂ. (ପ୍ର-ସହ-ଯ) ବଳାତ୍କାର; ହଠାତ୍ ।

**ପ୍ରସାଦ**, ବି. ପୁଂ. ( ପ୍ର-ସଦ୍-ଅ ) ପ୍ରସନ୍ନତା; ଅନୁଗ୍ରହ । ଯଥା—

ବିପ୍ରଙ୍କ ପ୍ରସାଦ ବୋଲି କରେ ବିଚରଣ । ଜ. ବି.

ସ୍ୱଚ୍ଛତା, ନିର୍ମଳତା; କାବ୍ୟର ଗୁଣବିଶେଷ; ସ୍ୱାସ୍ଥ୍ୟ; ସୌମ୍ୟତା; ଦେବନିବେଦିତ ଦ୍ରବ୍ୟ ଓ ଗୁରୁଜନଙ୍କ ଭୁକ୍ତାବଶିଷ୍ଟ ।

**ପ୍ରସାଧକ**, ବି. ପୁଂ. (ପ୍ର-ସାଧ୍-ଅକ) ଅଳଂକର୍ତ୍ତା; ପ୍ରସାଧନକାରୀ; ସମ୍ପାଦକ, ନିର୍ବାହକ ।

**ପ୍ରସାଧନ**, ବି. ନ. (ପ୍ର-ସାଧ୍-ଅନ) ଅଳଂକରଣ, ସଜାଇବା; ସଜ୍ଜାବସ୍ତୁ; ସାଧନ, ସମ୍ପାଦନ; କଣ୍ଟକ ଶୋଧନ ।

ପ୍ରସାଧନୀ, ବି. ସ୍ତ୍ରୀ. ପାନିଆ, କଙ୍କତିକା । ଯଥା—
ବାରଣ ଦନ୍ତ ପ୍ରସାଧନୀ ଗୃହ । ବୈ.ବି.

ପ୍ରସାଧିତ, ଣଂ. (ପ୍ର-ସାଧ୍-ତ) ଅଳଂକୃତ, ସଜ୍ଜିତ; ସମ୍ପାଦିତ ।

ପ୍ରସାରଣ, ବି. ନ. (ପ୍ର-ସୃ-ଅନ) ବିସ୍ତାରକରଣ ।

ପ୍ରସାରିତ, ଣଂ. (ପ୍ର-ସାର-ତ) ବ୍ୟାପ୍ତ,ବିସ୍ତାରିତ; ନିର୍ଗତ ।

ପ୍ରସିଦ୍ଧ, ଣଂ. ( ପ୍ର-ସିଧ୍-ତ ) ବିଖ୍ୟାତ, ଉନ୍ନତ; ଭୂଷିତ ।

ପ୍ରସିଦ୍ଧି, ବି.ସ୍ତ୍ରୀ. (ପ୍ର-ସିଧ୍-ତି) ଖ୍ୟାତି, ପ୍ରତିପତ୍ତି; ଭୂଷା ।

ପ୍ରସୁପ୍ତ, ଣଂ. (ପ୍ର-ସୁପ୍ତ) ନିଦ୍ରିତ ।

ପ୍ରସୂ, ବି. ସ୍ତ୍ରୀ. ( ପ୍ର-ସୂ-୦ ) ମାତା; ଘୋଟକୀ; ଲତା; କଦଳୀବୃକ୍ଷ ।

ପ୍ରସୂତ, ଣଂ. (ପ୍ର-ସୂ-ତ) ଉତ୍ପାଦିତ;ଉତ୍ପନ୍ନ,ଜାତ ।

ପ୍ରସୂତା, ପ୍ରସୂତି, ପ୍ରସୂତିକା, ବି. ସ୍ତ୍ରୀ. ( ପ୍ର-ସୂ-ତ, ତି, କ) ଜାତାପତ୍ୟା, ଯେଉଁ ସ୍ତ୍ରୀର ସନ୍ତାନ ହୋଇଅଛି ।

ପ୍ରସୂତିଜ, ବି. ନ. (ପ୍ରସୂତି-ଜ) ପ୍ରସବଜନ୍ୟ ଦୁଃଖ; ଦୁଃଖ, କ୍ଳେଶ ।

ପ୍ରସୂନ, ବି. ନ. (ପ୍ର-ସୂ-ତ) ପୁଷ୍ପ, ମୁକୁଳ । ଣଂ. ଜାତ ।

ପ୍ରସେକ, ବି. ପୁଂ. (ପ୍ର-ସିଚ୍-ଅ) ନିଷେକ,କ୍ଷରଣ, ସିଞ୍ଚନ ।

ପ୍ରସ୍କନ୍ଦନ, ବି. ନ. ( ପ୍ର-ସ୍କନ୍ଦ୍-ଅନ ) ବିରେଚନ, ଉଦରଭଙ୍ଗ ।

ପ୍ରସ୍ତର, ବି. ପୁଂ. (ପ୍ର-ସ୍ତୃ-ଅ) ପାଷାଣ, ପଥର; ମଣି; ପଲ୍ଲବାଦି ରଚିତ ଶଯ୍ୟା ।

ପ୍ରସ୍ତାବ, ବି. ପୁଂ. (ପ୍ର-ସ୍ତୁ-ଅ) ପ୍ରସଙ୍ଗ; କଥାନୁଷ୍ଠାନ; ପ୍ରକରଣ; ଅବସର; ସୁଯୋଗ ।

ପ୍ରସ୍ତାବନା, ବି. ସ୍ତ୍ରୀ. (ପ୍ର-ସ୍ତୁ-ଣିଚ୍-ଅନ-ଆ, ଭାବେ) ଆରମ୍ଭ, ନାଟକ ପ୍ରଭୃତି ଗ୍ରନ୍ଥମାନଙ୍କରେ ଅଭିନୟାରମ୍ଭ ବିଷୟ କଥା ।

ପ୍ରସ୍ତାବିତ, ଣଂ. (ପ୍ରସ୍ତାବ-ଇତ) ଯାହାର ପ୍ରସ୍ତାବ କରା ହୋଇଅଛି ।

ପ୍ରସ୍ତୁତ, ଣଂ. (ପ୍ର-ସ୍ତୁ-ତ) ପ୍ରକୃତ, ପ୍ରକ୍ରାନ୍ତ; ଉତ୍କର୍ଷିତ; ନିଷ୍ପନ୍ନ; ଉପସ୍ଥିତ; ପ୍ରଶଂସିତ; ପ୍ରାସଙ୍ଗିକ ।

ପ୍ରସ୍ଥ, ବି. ପୁଂ. ( ପ୍ର-ସ୍ଥା-ଅ ) ପରିମାଣବିଶେଷ; ପର୍ବତର ଉପରିସ୍ଥ ସମାନ ଭୂମି ; ପରିସର ; ବିସ୍ତାର ।

ପ୍ରସ୍ଥାନ, ବି. ନ. (ପ୍ର-ସ୍ଥା-ଅନ) ଗମନ, ଯାତ୍ରା, ପ୍ରୟାଣ; ଶତ୍ରୁର ଅଭିମୁଖରେ ବିଜିଗୀଷୁର ଯାତ୍ରା ।

ପ୍ରସ୍ଥିତ, ଣଂ. (ପ୍ର-ସ୍ଥା-ତ) ଗମନୋଦ୍ୟୁକ୍ତ; ଗତ, ଯେ ପ୍ରସ୍ଥାନ କରିଅଛି ।

ପ୍ରସ୍ଫୁଟ, ପ୍ରସ୍ଫୁଟିତ, ଣଂ. (ପ୍ର-ସ୍ଫୁଟ-ଅ, ତ) ପ୍ରକାଶିତ; ବିକସିତ, ପ୍ରଫୁଲ୍ଲ ।

ପ୍ରସ୍ରବ, ବି. ପୁଂ. (ପ୍ର-ସ୍ରୁ-ଅ) କ୍ଷରଣ, ଗଳନ, ଝରଣ ।

ପ୍ରସ୍ରବଣ, ବି. ନ. (ପ୍ର-ସ୍ରୁ-ଅନ) ଉତ୍ସ; ନିର୍ଝର, ଝରଣା; କ୍ଷରଣ; ସ୍ୱେଦନ । ପୁଂ. ମାଲ୍ୟବାନ ପର୍ବତ; ସ୍ୱେଦ, ଘର୍ମ ।

ପ୍ରସ୍ରାବ, ବି. ପୁଂ. (ପ୍ର-ସ୍ରୁ-ଅ) ମୂତ୍ର, ମୂତ ।

ପ୍ରସ୍ରୁତ, ଣଂ. (ପ୍ର-ସ୍ରୁ-ତ) କ୍ଷରିତ, ଗଳିତ ।

ପ୍ରହର, ବି. ପୁଂ. (ପ୍ର-ହୃ-ଅ) ଦିବାରାତ୍ରିର ଅଷ୍ଟମଭାଗ, ଯାମ ।

ପ୍ରହରଣ, ବି. ନ. (ପ୍ର-ହୃ-ଅନ) ଅସ୍ତ୍ର; ଯୁଦ୍ଧ; ପ୍ରହାର; କର୍ଣ୍ଣୀରଥ, ସ୍ତ୍ରୀଲୋକାଦିଙ୍କର ବାହନାର୍ଥ ଆଚ୍ଛାଦିତ ଶକଟ ।

ପ୍ରହରୀ, ବି. ପୁଂ. (ପ୍ରହର-ଇନ୍) ଯାମିକ, ଚୌକିଦାର ।

ପ୍ରହସ୍ତ, ବି. ପୁଂ. (ପ୍ର-ହସ୍ତ) ଚପେଟ, ଚାପୁଡ଼ା; ରାବଣର ସେନାପତି ରାକ୍ଷସବିଶେଷ ।

ପ୍ରହସନ, ବି. ନ. (ପ୍ର-ହସ୍-ଅନ) ଅତିହାସ୍ୟ; ବ୍ୟଙ୍ଗୋକ୍ତି, ପରିହାସ, ଥଟ୍ଟା; ହାସ୍ୟରସପ୍ରଧାନ ନାଟ୍ୟଗ୍ରନ୍ଥବିଶେଷ ।

ପ୍ରହାର, ବି. ପୁଂ. (ପ୍ର-ହୃ-ଅ) ଆଘାତ; ନିଗ୍ରହ; ଯୁଦ୍ଧ ।

ପ୍ରହେଳିକା, ପ୍ରହେଳୀ, ବି. ସ୍ତ୍ରୀ. (ପ୍ର-ହେଲ୍-ଅକ-ଆ) କୂଟପ୍ରଶ୍ନ ।

ପ୍ରହ୍ଲାଦ, ବ. ପୁଂ. (ପ୍ର-ହ୍ଲାଦ୍-ଅ) ହିରଣ୍ୟକଶିପୁ ରାଜାର ପୁତ୍ର; ଆହ୍ଲାଦ, ଆନନ୍ଦ ।

ପ୍ରହ୍ଲାଦନ, ବ. ନ. (ପ୍ରହ୍ଲାଦ-ଅନ) ଆହ୍ଲାଦକରଣ, ଆନନ୍ଦଜନନ ।

ପ୍ରାଂଶୁ, ବଂ. (ପ୍ର-ଅଂଶୁ) ଉଚ୍ଚ, ଉନ୍ନତ, ଡେଙ୍ଗା ।

ପ୍ରାକ୍, ଅଂ. (ପ୍ର-ଅନ୍‌ଚ୍-ଂ) ପୂର୍ବ, ପ୍ରଥମ; ପୂର୍ବଦେଶ ।

ପ୍ରାକାର, ବ. ପୁଂ. (ପ୍ର-ଆ-କୃ-ଅ) ପ୍ରାଚୀର; ବେଷ୍ଟନ; ବେଢ଼ା ।

ପ୍ରାକୃତ, ବଂ. (ପ୍ର-ଅକୃତ) ନୀଚ, ଅଧମ; ଭାଷାବିଶେଷ, ଚଳିତଭାଷା; ସ୍ୱାଭାବିକ, ନୈସର୍ଗିକ; ସାଧାରଣ, ସାମାନ୍ୟ; ପ୍ରଜାସମ୍ବନ୍ଧୀୟ ।

ପ୍ରାକୃତ ତନ୍ତ୍ର, ପ୍ରଜାମାନଙ୍କ ହସ୍ତଗତ ରାଜ୍ୟଶାସନ, (Democracy) ।

ପ୍ରାକୃତଭୂଗୋଳ, (Physical Geography) ଯେଉଁ ଭୂଗୋଳବୃତ୍ତାନ୍ତଦ୍ୱାରା ପୃଥିବୀର ଜଳ ସ୍ଥଳ ବିଭାଗ, ପର୍ବତାଦିର ବିବରଣ, ଭିନ୍ନ ପ୍ରଦେଶର ଜଳବାୟୁ ଓ ତଦୁତ୍ପନ୍ନ ଦ୍ରବ୍ୟାଦିର ବିଷୟ ଜଣାଯାଏ ।

ପ୍ରାକୃତିକ, ବଂ. (ପ୍ରକୃତି-ଇକ) ସ୍ୱାଭାବିକ, ପ୍ରକୃତିସମ୍ବନ୍ଧୀୟ ।

ପ୍ରାକୃତିକ ଇତିବୃତ୍ତ, (Nature History) ଯେଉଁ ଶାସ୍ତ୍ରଦ୍ୱାରା ସୃଷ୍ଟପଦାର୍ଥର ସ୍ୱରୂପ ଓ ଅବସ୍ଥାର ବିଷୟ ଜଣାଯାଏ ।

ପ୍ରାକୃତିକବିଜ୍ଞାନ, ବ. ନ. ଯେଉଁ ଶାସ୍ତ୍ରରେ ପ୍ରାକୃତିକ କାର୍ଯ୍ୟବିଷୟକ ଜ୍ଞାନ ଜନ୍ମେ ।

ପ୍ରାକ୍ତନ, ବଂ. (ପ୍ରାକ୍-ତନ) ପୂର୍ବକାଳୀନ, ପୂର୍ବଜନ୍ମାର୍ଜିତ, ଜନ୍ମାନ୍ତରୀଣ ।

ପ୍ରାଖର୍ଯ୍ୟ, ବ. ନ. (ପ୍ରଖର-ଯ) ପ୍ରଖରତା, ତୀକ୍ଷ୍ଣତା ।

ପ୍ରାଗଲ୍‌ଭ୍ୟ, ବ. ନ. (ପ୍ରଗଲ୍‌ଭ-ଯ) ପ୍ରଗଲ୍‌ଭତା, ଔଦ୍ଧତ୍ୟ ।

ପ୍ରାଗୁକ୍ତ, ବଂ. (ପ୍ରାକ୍-ଉକ୍ତ) ପୂର୍ବୋକ୍ତ, ପୂର୍ବୋଲ୍ଲିଖିତ ।

ପ୍ରାଗ୍‌ଜ୍ୟୋତିଷ, ବ. ପୁଂ. (ପ୍ରାକ୍-ଜ୍ୟୋତିଷ) ଆସାମର ଅନ୍ତର୍ଗତ କାମରୂପ ।

ପ୍ରାଙ୍, ବଂ. (ପ୍ର-ଅନ୍‌ଚ୍-ଂ) ପୂର୍ବଦେଶ; ପୂର୍ବଦିକ୍; ପୂର୍ବକାଳ ।

ପ୍ରାଙ୍ଗଣ, ବ. ନ. (ପ୍ର-ଅନ୍‌ଗ୍-ଅନ) ଅଙ୍ଗନ, ଅଗଣା; ଗୃହଭୂମି; ପଣବବାଦ୍ୟ ।

ପ୍ରାଙ୍ମୁଖ, ବଂ. (ପ୍ରାକ୍-ମୁଖ) ପୂର୍ବମୁଖ ।

ପ୍ରାଚୀ, ବ. ସ୍ତ୍ରୀ. (ପ୍ରାଚ୍-ଈ) ପୂର୍ବଦିଗ । ଯଥା—

> ପ୍ରାଚୀ ନଭେ ଏବେ ରାଜହଂସ ବନ
> ଭେଦ ଉଚ୍ଛଳଇ ପ୍ରଭା ପ୍ରସ୍ରବଣ । ନ. ଦେ.

ପ୍ରାଚୀନ, ବଂ. (ପ୍ରାଚ୍-ଈନ) ପୂର୍ବ; ପୂର୍ବକାଳୀନ, ପୁରାତନ; ବୃଦ୍ଧ; ପ୍ରାଚ୍ୟ, ପୂର୍ବଦେଶୀୟ ।

ପ୍ରାଚୀପତି, ବ. ପୁଂ. (ପ୍ରାଚୀ-ପତି) ପୂର୍ବଦିକ୍‌ପତି, ଇନ୍ଦ୍ର ।

ପ୍ରାଚୀର, ବ. ନ. (ପ୍ର-ଆ-ଚୀ-ର) ଭିତ୍ତି, କାନ୍ଥ, ପାଚେରି ।

ପ୍ରାଚୁର୍ଯ୍ୟ, ବ. ନ. (ପ୍ରଚୁର-ଯ) ପ୍ରଚୁରତା, ବାହୁଲ୍ୟ, ଆଧିକ୍ୟ ।

ପ୍ରାଚେତସ, ବ. ପୁଂ. (ପ୍ରଚେତସ୍-ଅ) ବରୁଣପୁତ୍ର; ବାଲ୍ମୀକି ।

ପ୍ରାଚ୍ୟ, ବଂ. (ପ୍ରାଚ୍-ଯ) ପୂର୍ବଦେଶୀୟ; ପୂର୍ବଦିକ୍‌ସ୍ଥ । ବ. ପୁଂ. ପୂର୍ବଦେଶ ।

ପ୍ରାଜକ, ବ. ପୁଂ. (ପ୍ର-ଅଜ୍-ଣିଚ୍-ଅକ) ସାରଥି । ବଂ. ଚାଳକ ।

ପ୍ରାଜନ, ବ. ନ. (ପ୍ର-ଅଜ-ଅନ) ଚାଳନଦଣ୍ଡ, ପାଞ୍ଚଣବାଡ଼ି; ଚାଳନ ।

ପ୍ରାଜାପତ୍ୟ, ବ. ପୁଂ. (ପ୍ରଜାପତି-ଯ) ବିବାହବିଶେଷ; ପ୍ରୟାଗ । ନ. ଦ୍ୱାଦଶ-ଦିବସ-ସାଧ୍ୟ ବ୍ରତବିଶେଷ; ରୋହିଣୀନକ୍ଷତ୍ର । ବଂ ପ୍ରଜାପତିସମ୍ବନ୍ଧୀୟ ।

ପ୍ରାଜ୍ଞ, ବଂ. (ପ୍ର-ଆ-ଜ୍ଞା-ଅ) ପଣ୍ଡିତ, ବିଜ୍ଞ; ଦକ୍ଷ, ନିପୁଣ ।

ପ୍ରାଞ୍ଜଳ, ବଂ. (ପ୍ର-ଅନ୍‌ଜ୍-ଅଲ) ସରଳ, ସହଜ, ନିର୍ମଳ, ଉଜ୍ଜ୍ୱଳ ।

ପ୍ରାଞ୍ଜଳ, ବଂ. (ପ୍ର-ଅଞ୍ଜଳ) ବଦ୍ଧାଞ୍ଜଳ, କୃତାଞ୍ଜଳ ।

ପ୍ରାଣ, ବ. ପୁଂ. ହୃଦୟସ୍ଥ ବାୟୁ; ବାୟୁ; ବଳ; ଜୀବନ ।

ପ୍ରାଣଚ୍ଛିଦ୍, ବଂ. (ପ୍ରାଣ-ଛିଦ୍-୦) ପ୍ରାଣନାଶକ ।

ପ୍ରାଣନାଥ, ବ. ପୁଂ. (ପ୍ରାଣ-ନାଥ) ସ୍ୱାମୀ, ପତି, ଭର୍ତ୍ତା ।

ପ୍ରାଣଭୃତ୍, ବ. ପୁଂ. (ପ୍ରାଣ-ଭୃତ୍) ପ୍ରାଣୀ, ଜୀବ ।

ପ୍ରାଣସଂଯମ, ବ. ପୁଂ. ( ପ୍ରାଣ-ସଂଯମ ) ପ୍ରାଣାୟାମ; ପ୍ରାଣବାୟୁର ନିରୋଧ ।

ପ୍ରାଣସଦ୍ମ, ବ. ନ. (ପ୍ରାଣ-ସଦ୍ମ) ଶରୀର, ଦେହ ।

ପ୍ରାଣାନ୍ତ, ବ. ପୁଂ. ( ପ୍ରାଣ-ଅନ୍ତ ) ପ୍ରାଣାବସାନ, ମୃତ୍ୟୁ ।

ପ୍ରାଣିତତ୍ତ୍ୱ, ପ୍ରାଣିବିଦ୍ୟା, ( Zoology ) ପ୍ରାଣିଗଣର ଆକାର ଓ ସ୍ୱଭାବାଦି ପରିଜ୍ଞାନାର୍ଥକ ବିଦ୍ୟା ।

ପ୍ରାଣୀ, ବ.ପୁଂ. (ପ୍ରାଣ-ଇନ୍) ପ୍ରାଣବିଶିଷ୍ଟ, ଜୀବ, ଜନ୍ତୁ ।

ପ୍ରାଣେଶ, ପ୍ରାଣେଶ୍ୱର, ବ. ପୁଂ. (ପ୍ରାଣ-ଈଶ, ଈଶ୍ୱର) ପତି, ଭର୍ତ୍ତା ।

ପ୍ରାତଃକୃତ୍ୟ, ବ. ନ. (ପ୍ରାତର୍-କୃତ୍ୟ) ପ୍ରାତଃକାଳୀନ କର୍ତ୍ତବ୍ୟ ।

ପ୍ରାତର୍, ଅଂ. (ପ୍ର-ଅତ୍-ଅର୍) ପ୍ରଭାତ ।

ପ୍ରାତରାଶ, ବ. ପୁଂ. (ପ୍ରାତର୍-ଆଶ) ପ୍ରାତଃକାଳୀନ ଭୋଜନ ।

ପ୍ରାତିକୂଲ୍ୟ, ବ. ନ. (ପ୍ରତିକୂଳ-ଯ) ପ୍ରତିକୂଳତା, ବୈପରୀତ୍ୟ ।

ପ୍ରାତାପ, ବ. ପୁଂ. ( ପ୍ରତାପ-ଅ ) ପ୍ରତାପପୂର୍ବ, ଶାନ୍ତନୁ ।

ପ୍ରାଥମିକ, ବଂ. (ପ୍ରଥମ-ଇକ) ଆଦ୍ୟ, ପ୍ରଥମକୃତ, ଯାହା ପ୍ରଥମେ ହୁଏ ।

ପ୍ରାଦୁର୍ଭାବ, ବ. ପୁଂ. ( ପ୍ରାଦୁସ୍-ଭୂ-ଅ ) ପ୍ରକଟିତ ହେବା, ଉଦ୍ଭବ ।

ପ୍ରାଦୁର୍ଭୂତ, ବଂ. (ପ୍ରାଦୁସ୍-ଭୂ-ତ) ପ୍ରକାଶିତ, ଆବିର୍ଭୂତ ।

ପ୍ରାଦେଶ, ବ.ପୁଂ. (ପ୍ର-ଆ-ଦିଶ୍-ଅ) ବୃଦ୍ଧାଙ୍ଗୁଳି ଓ ତର୍ଜ୍ଜନୀ ବିସ୍ତାର କଲେ ଏକରୁ ଅଗ୍ରଠାରୁ ଅପରର ଅଗ୍ରପର୍ଯ୍ୟନ୍ତ ପରିମାଣ; (ପ୍ରଦେଶ-ଅ) ଦେଶ ।

ପ୍ରାଧାନ୍ୟ, ବ. ନ. ( ପ୍ରଧାନ-ଯ ) ଶ୍ରେଷ୍ଠତ୍ୱ, ଉତ୍କର୍ଷ, ପ୍ରଧାନତ୍ୱ, ପ୍ରଭୁତ୍ୱ; ପ୍ରାବଲ୍ୟ; ଆଧିକ୍ୟ ।

ପ୍ରାନ୍ତ, ବ. ପୁଂ. (ପ୍ର-ଅନ୍ତ) ପ୍ରାନ୍ତଭାଗ, ଶେଷସୀମା ।

ପ୍ରାନ୍ତର, ବ. ନ. (ପ୍ର-ଅନ୍ତର) ଅତିଦୂର ଓ ଛାୟା ଜଳାଦିଶୂନ୍ୟ ପଥ; ଜନଶୂନ୍ୟ ପ୍ରଦେଶ, ପଡ଼ିଆ, ବନ, ଜଙ୍ଗଲ; କୋଠର ।

ପ୍ରାପଣ, ବ. ନ. (ପ୍ର-ଅପ୍-ଅନ) ପ୍ରାପ୍ତି । (ପ୍ର-ଆପି-ଅନ) ନେବା, ପାଇବା ।

ପ୍ରାପଣିକ, ବ. ( ପ୍ର-ଆପଣ-ଇକ ) ବଣିକ, ବାଣିଜ୍ୟକାରୀ ।

ପ୍ରାପିତ, ବଂ. (ପ୍ର-ଆପି-ତ) ନୀତ, ପାଇବା ।

ପ୍ରାପ୍ତ, ବଂ. ( ପ୍ର-ଆପ୍-ତ ) ଲବ୍ଧ; ଉପସ୍ଥିତ; ଅଧିଗତ ।

ପ୍ରାପ୍ତି, ବ. ସ୍ତ୍ରୀ. ( ପ୍ର-ଆପ୍-ତି ) ଲାଭ, ଅଧିଗମ, ଅର୍ଜ୍ଜନ, ଉନ୍ନତି, ବୃଦ୍ଧି, ଉପସ୍ଥିତି, ଅନୁମତି, ଅଷ୍ଟବିଧ ଐଶ୍ୱର୍ଯ୍ୟାନ୍ତର୍ଗତ ଐଶ୍ୱର୍ଯ୍ୟବିଶେଷ ।

ପ୍ରାପ୍ୟ, ବଂ. ( ପ୍ର-ଆପ୍-ଯ ) ପ୍ରାପ୍ତିର ଯୋଗ୍ୟ, ଲଭ୍ୟ; ଗମ୍ୟ; ବ୍ୟାକରଣର କର୍ମବିଶେଷ ।

ପ୍ରାବଲ୍ୟ, ବ.ନ. (ପ୍ରବଳ-ଯ) ପ୍ରବଳତା, ପ୍ରାଧାନ୍ୟ ।

ପ୍ରାବୋଧିକ, ବ. ପୁଂ. ( ପ୍ରବୋଧ-ଇକ ) ପ୍ରାତଃକାଳ, ପ୍ରତ୍ୟୁଷ ।

ପ୍ରାଭାତିକ, ବଂ. ( ପ୍ରଭାତ-ଇକ ) ପ୍ରାତଃକାଳୀନ, ପ୍ରଭାତକାଳୀନ ।

ପ୍ରାଭୃତ, ବ. ନ. ( ପ୍ର-ଆ-ଭୃ-ତ) ଉପଢୌକନ, ଭେଟି; ନୈବେଦ୍ୟ ।

ପ୍ରାହୃତ, ବ. ନ. ( ପ୍ର-ଆ-ହୃ-ତ) ଉପଢୌକନ, ଭେଟି, ନୈବେଦ୍ୟ ।

ପ୍ରାମାଣିକ, ବ. ପୁଂ. ( ପ୍ରମାଣ-ଇକ ) ଅଧ୍ୟକ୍ଷ; ପଣ୍ଡିତ । ବଂ. ପ୍ରମାଣସିଦ୍ଧ; ବିଶ୍ୱାସ୍ୟ ।

ପ୍ରାମାଣ୍ୟ, ବ. ନ. ( ପ୍ରମାଣ-ଯ ) ପ୍ରମାଣତ୍ୱ; ବଶ୍ୱାସ୍ୟତା ।

ପ୍ରାମାଦିକ, ବଂ. ( ପ୍ରମାଦ-ଇକ) ଅନବଧାନତାଜନତ ।

ପ୍ରାମାଦ୍ୟ, ବ. ନ. ( ପ୍ରମାଦ-ଯ) ଅନବଧାନତା, ପ୍ରମାଦ; ପାଗଳାମି ।

ପ୍ରାୟ, ବ. ପୁଂ. ( ପ୍ର-ଇ-ଅ ) ଅଭିସନ୍ଧିପୂର୍ବକ ଅନଶନ ମୃତ୍ୟୁ, ମୃତ୍ୟୁ; ମରଣ; ବାହୁଲ୍ୟ; ବୟସ । ନ. ପାପ । ବଂ. ତୁଲ୍ୟ, ସଦୃଶ ।

ପ୍ରାୟଶଃ, ଅଂ. ( ପ୍ରାୟ-ଶସ୍ ) ବାହୁଲ୍ୟରୂପେ; ପସ୍ତ୍ର ।

ପ୍ରାୟଶ୍ଚିତ୍ତ, ନ. } ପ୍ରାୟଶ୍ଚିତ୍ତି, ସ୍ତ୍ରୀ. } ବ.( ପ୍ରାୟସ୍-ଚତ୍ତ, ଚତ୍ତି) ଶୁଦ୍ଧିଲାଭ; ପାପକ୍ଷୟସାଧନ କର୍ମ ।

ପ୍ରାୟଶ୍ଚିତ୍ତୀ, ବଂ. ( ପ୍ରାୟଶ୍ଚିତ୍ତ-ଇନ୍ ) ପ୍ରାୟଶ୍ଚିତ୍ତକରଣାର୍ହ ବ୍ୟକ୍ତି ।

ପ୍ରାୟସ୍, ଅଂ.( ପ୍ର-ଅୟ୍-ଅସ୍ ) ବାହୁଲ୍ୟରୂପେ; ତପସ୍ୟା ।

ପ୍ରାୟିକ, ବଂ. ( ପ୍ରାୟ-ଇକ) ଯାହା ବାହୁଲ୍ୟରୂପେ ହୋଇଥାଏ ।

ପ୍ରାୟୋଦ୍ୱୀପ,ବ. ପୁଂ. ( ପ୍ରାୟସ୍-ଦ୍ୱୀପ) ଯେ ଭୂମିର ପ୍ରାୟ ଚତୁର୍ଦ୍ଦିଗରେ ଜଳ ।

ପ୍ରାୟୋପବିଷ୍ଟ, ବଂ. ( ପ୍ରାୟ-ଉପବିଷ୍ଟ) ପ୍ରାୟୋପବେଶବଶିଷ୍ଟ, ପ୍ରାୟୋପବେଶନଯୁକ୍ତ ।

ପ୍ରାୟୋପବେଶ, ପୁଂ. } ପ୍ରାୟୋପବେଶନ, ନ. } ବ. ( ପ୍ରାୟ-ଉପବେଶ, ଉପବେଶନ) ଅଭିସନ୍ଧିପୂର୍ବକ ଅନଶନମରଣାର୍ଥ ଉପବେଶନ ।

ପ୍ରାରବ୍ଧ, ବଂ. ( ପ୍ର-ଆରବ୍ଧ ) ଯାହା ଆରବ୍ଧ ହୋଇଅଛି । ବ. ନ. ଅଦୃଷ୍ଟ; ପୂର୍ବାନୁଷ୍ଠିତ । ଯଥା—

> ନୁହେ ମୋର ଯେବେ କ ଫଳ ଭଅଇ
> ପ୍ରାରବ୍ଧ ସଙ୍ଗେ ବସେଧ । ଯ. ବେ.

ପ୍ରାରବ୍ଧକର୍ମ, ବ. ନ. ( ପ୍ରାରବ୍ଧ-କର୍ମନ୍ ) ଯେ କର୍ମଦ୍ୱାରା ଶରୀର ହୁଏ, ଭୋଗ ନୋହିଲେ କୌଣସିରୂପେ ପ୍ରାରବ୍ଧ କର୍ମ କ୍ଷୟ ହୁଏ ନାହିଁ, ଏହି କାରଣରୁ ଜୀବନ୍ମୁକ୍ତ ବ୍ୟକ୍ତିଙ୍କୁ ପ୍ରାରବ୍ଧକର୍ମ ଭୋଗ କରିବା ନିମିତ୍ତ ଶରୀର ଧାରଣ କରିବାକୁ ହୁଏ ।

ପ୍ରାରବ୍ଧି,ବ. ସ୍ତ୍ରୀ. ( ପ୍ର-ଆ-ରଭ୍-ତି) ଗଜବନ୍ଧନ ରଜ୍ଜୁ; ଆରମ୍ଭ, ଉପକ୍ରମ ।

ପ୍ରାରମ୍ଭ, ବ. ପୁଂ. (ପ୍ର-ଆରମ୍ଭ) ଉପକ୍ରମ, ପ୍ରଥମୋଦ୍ୟୋଗ, ଆରମ୍ଭ ।

ପ୍ରାର୍ଥନ, ପ୍ରାର୍ଥନା, ବ. ( ପ୍ର-ଅର୍ଥ-ଅନ, ଆ ) ଯାଚ୍ଞା, ମାଗିବାର; ଆକ୍ରମଣ; ହିଂସା; ନିବେଦନ ।

ପ୍ରାର୍ଥନୀୟ, } ପ୍ରାର୍ଥୟିତବ୍ୟ, } ବଂ. (ପ୍ର-ଅର୍ଥ-ଅନୀୟ, ତବ୍ୟ) ପ୍ରାର୍ଥନା କରିବାର ଯୋଗ୍ୟ, ଯାଚିତବ୍ୟ । ନ. ଦ୍ୱାପର ଯୁଗ ।

ପ୍ରାର୍ଥୟିତା, ବଂ. ( ପ୍ର-ଅର୍ଥି-ତୃ ) ଯାଚକ, ପ୍ରାର୍ଥନାକାରୀ ।

ପ୍ରାର୍ଥିତ, ବଂ. ( ପ୍ର-ଅର୍ଥି-ତ) ଅଭିଲଷିତ; ଯାହା ନିକଟରେ ପ୍ରାର୍ଥନା କରିଯାଏ, ଯାଚିତ; ଅଭିଯାତ; ଆକ୍ରାନ୍ତ; ହତ ।

ପ୍ରାଲମ୍ବ, ବ. ନ. ( ପ୍ର-ଆ-ଲମ୍ବ୍-ଅ ) ହାରବିଶେଷ; ବକ୍ଷଃଲମ୍ବିନୀ ମାଳା ।

ପ୍ରାଲମ୍ବିକା, ବ. ସ୍ତ୍ରୀ. ( ପ୍ର-ଲମ୍ବ-ଅକ-ଆ) ସୁବର୍ଣ୍ଣହାର; ସୁନାର ହାର; କଣ୍ଠମାଳା ।

ପ୍ରାଲେୟ, ବ. ନ. ( ପ୍ରଳୟ-ଅ ) ହିମ, ଶିଶିର, ବରଫ ।

ପ୍ରାଲେୟାଂଶୁ, ବ. ପୁଂ. (ପ୍ରାଲେୟ-ଅଂଶୁ) ହିମାଂଶୁ, ଚନ୍ଦ୍ର ।

ପ୍ରାବଟ, ବ. ପୁଂ. (ପ୍ର-ଆ-ବଟ୍-ଅ) ଯବ ।

ପ୍ରାବର, ବ. ପୁଂ. (ପ୍ର-ଆ-ବୃ-ଅ) ପ୍ରାଚୀର,ବେଢ଼ା, ବେଷ୍ଟନ, ବେଢ଼ଣ, ଉତ୍ତରୀୟ ବସ୍ତ୍ର ।

ପ୍ରାବରଣ, ବ.ନ. (ପ୍ର-ଆ-ବୃ-ଅନ) ଉତ୍ତରୀୟବସ୍ତ୍ର, ଚଦର; ଆବରଣବସ୍ତ୍ର ।

ପ୍ରାବୀଣ୍ୟ, ବ. ନ. (ପ୍ରବୀଣ-ଯ) ନୈପୁଣ୍ୟ,ଦକ୍ଷତା, ପ୍ରବୀଣତ୍ୱ, ବିଚକ୍ଷଣତା, ଚତୁରତା ।

ପ୍ରାବୃଟ୍, ବ. ପୁଂ. (ପ୍ର-ଆ-ବୃଷ୍-୦) ବର୍ଷାକାଳ ।

ପ୍ରାବୃତ, ବି°. (ପ୍ର-ଆ-ବୃ-ତ) ଆଚ୍ଛାଦିତ,ବେଷ୍ଟିତ ।

ପ୍ରାବୃତ, ବି. ସ୍ତ୍ରୀ. (ପ୍ର-ଆ-ବୃ-ତ) ପ୍ରାଚୀର, ବେଢ଼ା ।

ପ୍ରାବୃଷ୍, ପ୍ରାବୃଷ, ବି. ସ୍ତ୍ରୀ. ( ପ୍ର-ଆ-ବୃଷ-°, ଅ ) ବର୍ଷାକାଳ ।

ପ୍ରାବୃଷିକ, ବି°. (ପ୍ରାବୃଷ୍-ଇକ) ବର୍ଷାକାଳୀନ । ବି. ପୁଂ. ମୟୂର ।

ପ୍ରାବୃଷେଣ୍ୟ, ବି°. (ପ୍ରାବୃଷ୍-ଏଣ୍ୟ) ପ୍ରଚୁର ବର୍ଷାକାଳୀନ । ବି. ପୁଂ. କଦମ୍ବବୃକ୍ଷ ।

ପ୍ରାବୃଷ୍ୟ, ବି°. (ପ୍ରାବୃଷ-ଯ) ବର୍ଷାକାଳୀନ । ବି. ନ. ବୈଦୁର୍ଯ୍ୟମଣି ।

ପ୍ରାବେଶନ, ବି. ନ. (ପ୍ର-ଆବେଶନ) ଶିଳ୍ପଶାଳା ।

ପ୍ରାଶନ, ବି.ନ.(ପ୍ର-ଅଶ୍-ଅନ) ଭୋଜନ,ଆହାର ।

ପ୍ରାଶସ୍ତ୍ୟ, ବି. ନ. (ପ୍ରଶସ୍ତ-ଯ) ପ୍ରଶସ୍ତତା,ବିସ୍ତାର, ପରସର; ଉତ୍କର୍ଷ ।

ପ୍ରାଶିତ, ବି°. (ପ୍ର-ଅଶ୍-ତ) ଭକ୍ଷିତ, ଭୁକ୍ତ,ଗ୍ରସ୍ତ । ବି. ନ. ପିତୃଯଜ୍ଞ ।

ପ୍ରାଶ୍ନିକ, ବି°. (ପ୍ରଶ୍ନ-ଇକ) ପ୍ରଶ୍ନକାରୀ । ବି. ପୁଂ. ସଭ୍ୟ ।

ପ୍ରାସ, ବି. ପୁଂ. (ପ୍ର-ଅସ୍-ଅ) କ୍ଷେପଣୀୟ ଅସ୍ତ୍ରବିଶେଷ; (ପ୍ରା) ବେଦନା, ଦରଦ ।

ପ୍ରାସକ, ବି. ପୁଂ. (ପ୍ରାସ-କ) ପ୍ରାସ; ପାଶକ, ଅକ୍ଷ ।

ପ୍ରାସଙ୍ଗ, ବି. ପୁଂ. ( ପ୍ର-ଆ-ସନ୍‌ଜ୍-ଅ ) ଶିକ୍ଷଣୀୟ ବତ୍ସାଦିର ସ୍କନ୍ଧସ୍ଥ ଯୁଗକାଷ୍ଠବିଶେଷ, ଯୁଆଳି ।

ପ୍ରାସଙ୍ଗିକ, ବି°. ( ପ୍ରସଙ୍ଗ-ଇକ ) ପ୍ରସଙ୍ଗକ୍ରମେ ଉତ୍ଥିତ; ଆନୁଷଙ୍ଗିକ ।

ପ୍ରାସଙ୍ଗ୍ୟ, ବି. ପୁଂ. ( ପ୍ରସଙ୍ଗ-ଯ ) ଯୁଗବାହକ; ବୃଷାଦି ।

ପ୍ରାସାଦ, ବି. ପୁଂ. ( ପ୍ର-ଆ-ସଦ୍-ଅ ) ବୃହତ୍ ଅଟ୍ଟାଳିକା । ଯଥା—

ମହୋଦଧି ତଟରେ ରମ୍ୟ ପ୍ରାସାଦେ ସେ ଥିଲେ । ଭୁ. ବି.

ଇଷ୍ଟକମୟ ଦେବାଳୟ ।

ପ୍ରାସାଦକୁକ୍କୁଟ, ବି. ପୁଂ. ( ପ୍ରାସାଦ-କୁକ୍କୁଟ ) ପାରାବତ, ପାରା ।

ପ୍ରାସିକ, ବି. ପୁଂ. (ପ୍ରାସ-ଇକ) ପ୍ରାସ ଅସ୍ତ୍ରଧାରୀ ।

ପ୍ରାସ୍ତ, ବି°. (ପ୍ର-ଅସ-ତ) ପ୍ରକ୍ଷିପ୍ତ; ନିରସ୍ତ; ପାତିତ; ଅସ୍ତ ।

ପ୍ରାସ୍ଥାନିକ, ବି°. (ପ୍ରସ୍ଥାନ-ଇକ) ପ୍ରସ୍ଥାନ କାଳୋଚିତ ।

ପ୍ରାହଃ, ବି. ପୁଂ. ନୃତ୍ୟବିଷୟକ ଉପଦେଶ ।

ପ୍ରାହ୍ନ, ବି.ପୁଂ.(ପ୍ର-ଅହନ୍) ପୂର୍ବାହ୍ଣ, ଦିନର ପ୍ରଥମ ଭାଗ ।

ପ୍ରାହ୍ଣେ, ଅ°. ( ପ୍ରାହ୍ଣ-ଇ ) ପ୍ରଭାତେ, ପ୍ରାତଃକାଳେ, ପ୍ରତ୍ୟୂଷରେ ।

ପ୍ରିୟ, ବି. ପୁଂ. (ପ୍ରୀ-ଅ) ସ୍ୱାମୀ; ମୃଗବିଶେଷ । ବି°. ପ୍ରୀତିପାତ୍ର; ରମ୍ୟ; ସ୍ନେହପାତ୍ର ।

ପ୍ରିୟକ, ବି. ପୁଂ. (ପ୍ରିୟ-କ) ମୃଦୁ ଉଚ୍ଚ ମସୃଣ ଓ ଘନ ଲୋମବିଶିଷ୍ଟ ମୃଗ; ପ୍ରିୟଙ୍ଗୁବୃକ୍ଷ; ଅଳି, ଭ୍ରମର; କୁଙ୍କୁମ; କଦମ୍ବବୃକ୍ଷ; ଅଶନବୃକ୍ଷ ।

ପ୍ରିୟଙ୍କର, ବି°. (ପ୍ରିୟଂ-କର) ପ୍ରିୟକାରକ ।

ପ୍ରିୟଙ୍ଗୁ, ବି. ସ୍ତ୍ରୀ. (ପ୍ରିୟ-ଅନ୍‌ଗ-ଉ) ଲତାବିଶେଷ, ଶ୍ୟାମଲତା; ରାଇସୋରିଷ; ପିପ୍ପଳୀ ।

ପ୍ରିୟତର, ପ୍ରିୟତମ, ବି°. (ପ୍ରିୟ-ତର; ତମ) ଅଧିକ-ପ୍ରିୟ । ବି°. ପୁଂ. ବୃକ୍ଷବିଶେଷ; ମୟୂରପୁଚ୍ଛ ।

ପ୍ରିୟତମା. ବି. ସ୍ତ୍ରୀ. (ପ୍ରିୟ-ତମା) ଭାର୍ଯ୍ୟା । ବି°. ଅତିଶୟ ପ୍ରିୟା ।

ପ୍ରିୟତା, ବି. ସ୍ତ୍ରୀ. (ପ୍ରିୟ-ତା) ସ୍ନେହ ।

ପ୍ରିୟଦର୍ଶନ, ବି°. (ପ୍ରିୟ-ଦର୍ଶନ) ଯାହା ଦେଖିବାକୁ ଅତ୍ୟନ୍ତ ସୁନ୍ଦର, ସୁଦୃଶ୍ୟ । ବି. ପୁଂ. ଶୁକପକ୍ଷୀ ।

ପ୍ରିୟଭାଷଣ, ବି. ନ. (ପ୍ରିୟ-ଭାଷଣ) ପ୍ରିୟ କଥା କହିବାର ।

ପ୍ରିୟମ୍ବଦ, ବି°. (ପ୍ରିୟମ୍-ବଦ) ପ୍ରିୟବାଦୀ । ବି.ପୁଂ. ଗନ୍ଧର୍ବବିଶେଷ; ଖେଚର ।

ପ୍ରିୟମ୍ବଦା, ବି.ସ୍ତ୍ରୀ. (ପ୍ରିୟଂ-ବଦ୍-ଆ) ଶକୁନ୍ତଳାର ସଖୀ । ବି°. ପ୍ରିୟଭାଷିଣୀ ।

ପ୍ରିୟବାଦୀ,ବି°. (ପ୍ରିୟ-ବଦ୍-ଇନ୍) ଯେ ପ୍ରିୟ କଥାକୁ କହେ, ମଧୁରକଥକ ।

ପ୍ରିୟସଖ, ବି. ପୁଂ. ( ପ୍ରିୟ-ସଖି-ଅ ) ସ୍ୱସ୍ତିବନ୍ଧୁ; ଖଦିରବୃକ୍ଷ, ଖଇରଗଛ ।

ପ୍ରିୟସାଳକ, ବି. ପୁଂ. ପିଆସାଳଗଛ; ଅଶନଗଛ ।

ପ୍ରିୟା, ବି. ସ୍ତ୍ରୀ. ( ପ୍ରୀ-ଅ-ଆ ) ଭାର୍ଯ୍ୟା; ମଲ୍ଲିକା; ମଦିରା; ବାର୍ତ୍ତା; ଅଳାଇଚ । (ଭାର୍ଯ୍ୟା ଅର୍ଥରେ) ଯଥା—

ଏହା କହି ଦେବ କୁସୁମ-ଧନୁ ପ୍ରିୟା ସଙ୍ଗତେ,
ଅନ୍ତରିତେ ଲୁଚି ରହିଲେ ମୀନକେତନ ରଥେ । ଚ. ଚ.

ପ୍ରିୟାଳ, ବି. ସ୍ତ୍ରୀ. (ପ୍ରୁ-ଆଳ) ଦ୍ରାକ୍ଷା ।

ପ୍ରୀଣ, ବିଂ. (ପ୍ରୀ-ତ) ପୁରାତନ; ପ୍ରୀତ; ସନ୍ତୃପ୍ତ ।

ପ୍ରୀଣନ, ବି. ନ. (ପ୍ରୀ-ଅନ) ତର୍ପଣ, ତୃପ୍ତିଜନନ, ପ୍ରୀତିବିଧାନ ।

ପ୍ରୀତ, ବିଂ. (ପ୍ରୀ-ତ) ତୃପ୍ତ, ସନ୍ତୁଷ୍ଟ, ଆହ୍ଲାଦିତ । ନ. ହର୍ଷ, ଆନନ୍ଦ, ଆହ୍ଲାଦ ।

ପ୍ରୀତି, ବି. ସ୍ତ୍ରୀ. (ପ୍ରୀ-ତି) ତୃପ୍ତି; ହର୍ଷ; ସନ୍ତୋଷ; ପ୍ରେମ; ଅନୁରାଗ; କନ୍ଦର୍ପପତ୍ନୀ ।

ପ୍ରୀତିଦ, ବି. ପୁଂ. (ପ୍ରୀତି-ଦ) ବିଦୂଷକ, ଭଣ୍ଡ । ବିଂ. ଯେ ପ୍ରୀତିଦାନ କରେ; ସୁଖଦ, ହର୍ଷଦାତା ।

ପ୍ରୀତିମାନ୍, ବିଂ. ( ପ୍ରୀତି-ମତ୍ ) ପ୍ରୀତିଯୁକ୍ତ; ପ୍ରଣୟୀ; ବତ୍ସଳ ।

ପ୍ରୀୟମାଣ, ବିଂ. ( ପ୍ରୀ-ଆନ ) ତୃପ୍ୟମାନ, ସନ୍ତୁଷ୍ଟ; ହୃଷ୍ଟଚିତ୍ତ; ପ୍ରୀତାତ୍ମା ।

ପ୍ରୁଷ୍ଟ, ବିଂ. (ପ୍ରୁଷ୍-ତ) ଦଗ୍ଧ, ପୋଡ଼ା ।

ପ୍ରୁଷ୍ବ, ବି. ପୁଂ. (ପ୍ରୁଷ୍-ବ) ଗ୍ରୀଷ୍ମଋତୁ; ସୂର୍ଯ୍ୟ ।

ପ୍ରୁଷ୍ୱା, ବି. ସ୍ତ୍ରୀ. ଜଳବିନ୍ଦୁ ।

ପ୍ରେକ୍ଷଣ, ବି. ନ. (ପ୍ର-ଈକ୍ଷ୍-ଅନ) ଚକ୍ଷୁଃ; ଦର୍ଶନ, ଦେଖିବାର ।

ପ୍ରେକ୍ଷଣୀୟ, ବିଂ. ( ପ୍ର-ଈକ୍ଷ୍-ଅନୀୟ ) ଦ୍ରଷ୍ଟବ୍ୟ, ଦର୍ଶନୀୟ ।

ପ୍ରେକ୍ଷା, ବି. ସ୍ତ୍ରୀ. (ପ୍ର-ଈକ୍ଷ୍-ଅ, ଆ) ପ୍ରଜ୍ଞା, ବୁଦ୍ଧି; ଦର୍ଶନ, ଦୃଷ୍ଟି; ପର୍ଯ୍ୟାଲୋଚନା; ନୃତ୍ୟ ବା ନୃତ୍ୟଦର୍ଶନ; ଶାଖା ।

ପ୍ରେକ୍ଷାଗୃହ, ବି. ନ. ( ପ୍ରେକ୍ଷା-ଗୃହ ) ଦର୍ଶନଗୃହ, ଦର୍ଶନାର୍ଥ ଉପର୍ଯ୍ୟୁପରି ରଚିତ କାଷ୍ଠାସନ-ବିଶେଷ, ଗୋଲାଘର ।

ପ୍ରେକ୍ଷାବାନ୍, ବିଂ. ( ପ୍ରେକ୍ଷା-ବତ୍ ) ବୁଦ୍ଧିମାନ୍, ବିବେଚକ ।

ପ୍ରେକ୍ଷିତ, ବିଂ. (ପ୍ରେକ୍ଷ-ତ) ଦୃଷ୍ଟ; ଆଲୋଚିତ ।

ପ୍ରେତ, ବି. ପୁଂ. (ପ୍ର-ଇତ) ପିଶାଚ; ମୃତବ୍ୟକ୍ତିର ଆତ୍ମା । ବିଂ. ମୃତ ।

ପ୍ରେତକାର୍ଯ୍ୟ, ପ୍ରେତକୃତ୍ୟ, ପ୍ରେତକର୍ମନ୍, ବି. ନ. (ପ୍ରେତ-କାର୍ଯ୍ୟ,କୃତ୍ୟ,କର୍ମନ୍ ) ମୃତର କାର୍ଯ୍ୟ, ଦାହନ ସପିଣ୍ଡୀକରଣାଦି, ଅନ୍ତ୍ୟେଷ୍ଟି କ୍ରିୟା ।

ପ୍ରେତଗୃହ, ପ୍ରେତବନ, ବି. ନ. ( ପ୍ରେତ-ଗୃହ, ବନ) ଶ୍ମଶାନ, ଶବଦାହସ୍ଥାନ ।

ପ୍ରେତନଦୀ, ବି. ସ୍ତ୍ରୀ. ( ପ୍ରେତ-ନଦୀ ) ବୈତରଣୀ ନଦୀ ।

ପ୍ରେତପକ୍ଷ, ବି. ପୁଂ. ଗୌଣ ଚାନ୍ଦ୍ରାଶ୍ୱିନ କୃଷ୍ଣପକ୍ଷ ।

ପ୍ରେତପଟହ, ବି. ପୁଂ. ( ପ୍ରେତ-ପଟହ ) ମୃତ୍ୟୁ-କାଳରେ ବାଦନୀୟ ବାଦ୍ୟବିଶେଷ ।

ପ୍ରେତପତି, ପ୍ରେତରାଜ, ବି. ପୁଂ. ( ପ୍ରେତ-ପତି, ରାଜା) ଯମ ।

ପ୍ରେତପିଣ୍ଡ, ବି. ପୁଂ. ( ପ୍ରେତ-ପିଣ୍ଡ ) ମରଣାବଧି ସପିଣ୍ଡୀକରଣ ପର୍ଯ୍ୟନ୍ତ ମୃତ ବ୍ୟକ୍ତିର ଉଦ୍ଦେଶ୍ୟରେ ପ୍ରଦତ୍ତ ପିଣ୍ଡ ।

ପ୍ରେତପୁର, ବି. ନ. ଯମାଳୟ । ଯଥା—

ବଣିକ୍ କୁ ଭେଟିବ ପ୍ରେରଇ ପ୍ରେତପୁର । କ. କ.

ପ୍ରେତବାହିତ, ବିଂ. (ପ୍ରେତ-ବାହିତ) ଭୂତାବିଷ୍ଟ, ଯାହାକୁ ଭୂତ ଲାଗିଥାଏ ।

ପ୍ରେତରାକ୍ଷସୀ, ବି. ସ୍ତ୍ରୀ. ଯାହାର ଦର୍ଶନରେ ପ୍ରେତ-ଗଣ ଭୟରେ ପଳାୟନ କରନ୍ତି, ତୁଳସୀ ।

ପ୍ରେତଲୋକ, ବି. ପୁଂ. ଯମଲୋକ ।

ପ୍ରେତବନ, ବି. ନ. ଶ୍ମଶାନ ।

ପ୍ରେତଶିଳା, ବି. ସ୍ତ୍ରୀ. ପିଣ୍ଡଦାନାର୍ଥ ଗୟାସ୍ଥିତ ପ୍ରସ୍ତରବିଶେଷ ।

ପ୍ରେତଶୌଚ, ବି. ନ. ମୃତବ୍ୟକ୍ତିର ଅସ୍ପାରାଦି ।

ପ୍ରେପ୍ସୁ, ବିଂ. (ପ୍ର-ଆପ୍-ସ-ଉ) ପାଇବାକୁ ଇଚ୍ଛୁକ ।

ପ୍ରେମ, ବି. ପୁଂ. ନ. ( ପ୍ରିୟ-ଇମନ୍ ) ଅନୁରାଗ, ପ୍ରଣୟ, ପ୍ରୀତି, ସ୍ନେହ । ଯଥା—

ବାରୁରେବ କ୍ଷମ ଭ୍ରମର ପଣି କମଳ କୋଳେ,
ପାଶୋରେ ଅପଣା ବଳମ ପ୍ରେମ ମୋହନ ବୋଲେ । ଚ. ଲ୍ଭ.

ପରହାସ । ପୁଂ. ଇନ୍ଦ୍ର; ବାୟୁ ।

ପ୍ରେମପାତନ, ବି. ନ. ( ପ୍ରେମ-ପାତନ ) ଅଶ୍ରୁବିସର୍ଜନ, ରୋଦନ, କ୍ରନ୍ଦନ ।

ପ୍ରେମିକ, ବିଂ. (ପ୍ରେମନ୍-ଇକ) ପ୍ରଣୟୀ, ସ୍ନେହୀ ।

ପ୍ରେମୀ, ବିଂ. (ପ୍ରେମନ୍-ଇନ୍) ପ୍ରଣୟୀ,ଅନୁରକ୍ତ, ସ୍ନେହବିଶିଷ୍ଟ ।

ପ୍ରେୟାନ୍, ବିଂ. (ପ୍ରିୟ-ଇୟସ୍) ପ୍ରିୟତମ ।

ପ୍ରେୟସୀ, ବି. ସ୍ତ୍ରୀ. ପ୍ରିୟା, ପ୍ରିୟତମା । ଯଥା—

ରଚଲ ପ୍ରେୟସୀ ରୂପ ଶ୍ରବଣଭୂଷଣ । କ. ବ.

ପ୍ରେରଣ, ପ୍ରେଷଣ, ବି. ନ. (ପ୍ର-ଈର୍, ଇଷ୍-ଅନ) ପଠାଇବାର; ଆଜ୍ଞାକରଣ; ନିଯୋଗ ।

ପ୍ରେରଣା,ବି.ସ୍ତ୍ରୀ. (ପ୍ର-ଈର-ଅନ୍-ଆ) ପଠାଇବାର; ଆଜ୍ଞା କରିବାର; ନିଯୋଗ କରିବାର ।

ପ୍ରେରିତ, ପ୍ରେଷିତ, ବିଂ. ( ପ୍ର-ଈର, ଇଷ୍-ତ ) ଆଜ୍ଞପ୍ତ, ଆଦିଷ୍ଟ, ନିୟୋଜିତ; ଯାହାକୁ ପଠା ଯାଇଅଛି; ବିସର୍ଜିତ ।

ପ୍ରେଷ, ବି. ପୁଂ. ( ପ୍ର-ଇଷ୍-ଅ ) ପ୍ରେରଣ; ପୀଡ଼ା, କ୍ଲେଶ ।

ପ୍ରେଷ୍ଠ, ବିଂ. (ପ୍ରିୟ-ଇଷ୍ଠ) ପ୍ରିୟତମ, ଅତିପ୍ରିୟ, ସ୍ନେହପାତ୍ର ।

ପ୍ରେଷ୍ୟ, ପ୍ରୈଷ୍ୟ, ବି. ପୁଂ. ( ପ୍ର-ଇଷ୍-ଯ ) ଦାସ, ଭୃତ୍ୟ; ଦୂତ । ବିଂ. ପ୍ରେରଣୀୟ ।

ପ୍ରେଷ୍ୟା, ବି. ସ୍ତ୍ରୀ. (ପ୍ରେଷ୍ୟ-ଆ) ଦାସୀ; କନ୍ଧା ।

ପ୍ରୋକ୍ତ, ବିଂ. (ପ୍ର-ଉକ୍ତ) ପ୍ରକୃଷ୍ଟରୂପେ କଥିତ । ବି. ନ. କଥନ ।

ପ୍ରୋକ୍ଷଣ, ବି. ନ. (ପ୍ର-ଉକ୍ଷ୍-ଅନ ) ଶୁଦ୍ଧି ନିମିତ୍ତ ଜଳସେଚନ; ଯଜ୍ଞାର୍ଥ ପଶୁବଧ; ହତ୍ୟା, ବଧ; ସେଚନ; ଜଳସେଚନ ।

ପ୍ରୋକ୍ଷିତ, ବିଂ. (ପ୍ର-ଉକ୍ଷ-ତ) ଅଭିଷିକ୍ତ; ସିକ୍ତ; ହତ; ଯଜ୍ଞାଦିରେ ହତ; ଯଜ୍ଞରେ ସଂସ୍କୃତ; ଯଜ୍ଞାର୍ଥ ମନ୍ତ୍ରଦ୍ୱାରା ସଂସ୍କୃତ (ମାଂସାଦି) ।

ପ୍ରୋଜ୍ଝିତ, ବିଂ. (ପ୍ର-ଉଜ୍ଝ୍-ତ) ପରିତ୍ୟକ୍ତ, ବର୍ଜିତ ।

ପ୍ରୋଞ୍ଛନ, ବି. ନ. (ପ୍ର-ଉନ୍ଛ୍-ଅନ) ମାର୍ଜନ, ପୋଛିବା, ମାଜିବା ।

ପ୍ରୋଣ୍ଡ, ବି. ପୁଂ. ନିଷ୍ଠୀବନପାତ୍ର, ପିକଦାନ ।

ପ୍ରୋତ୍ତୋଳନ, ବି. ନ. ( ପ୍ରୋତ-ଉତ୍-ପାଦନ) ଆତପତ୍ର, ଛତ୍ର, ଛତା ।

ପ୍ରୋତ୍ଫୁଲ୍ଲ, ବିଂ. ( ପ୍ର-ଉତ୍-ଫୁଲ୍ଲ ) ବିକସିତ, ପ୍ରସ୍ଫୁଟିତ ।

ପ୍ରୋତ୍ସାହ, ବି. ପୁଂ. (ପ୍ର-ଉତ୍ସାହ) ସାତିଶୟ ଯତ୍ନ, ଅଧ୍ୟବସାୟ; ଉତ୍ତେଜନା ।

ପ୍ରୋତ୍ସାହିତ, ବିଂ. ( ପ୍ରୋତ୍ସାହ-ଇତ ) ପ୍ରବର୍ତ୍ତିତ; ଉତ୍ସାହଯୁକ୍ତ; ପ୍ରେରିତ ।

ପ୍ରୋଥ, ବି. ପୁଂ. ନ. ( ପ୍ରୁ-ଥ ) ଅଶ୍ୱ ନାସିକାର ଅଗ୍ର । ପୁଂ. କଟିଦେଶ; ଶାଢ଼ୀ; ଭ୍ରୂଣ, ଗର୍ଭସ୍ଥ ଜୀବ । ବିଂ. ପ୍ରଥିତ ।

ପ୍ରୋଥିତ, ବିଂ. (ପ୍ରୋଥ-ତ)ଭୂଗର୍ଭନିହିତ,ପୋତା ।

ପ୍ରୋଷ, ବି. ପୁଂ. ( ପ୍ରୁଷ୍-ଅ ) ସନ୍ତାପ; କ୍ଲେଶ; ଦହନ ।

ପ୍ରୋଷିତ, ବିଂ. (ପ୍ର-ବସ୍-ତ) ବିଦେଶସ୍ଥ;ନିବୃତ୍ତ; ଅବଗତ; ପ୍ରବାସଗତ ।

ପ୍ରୋଷିତଭର୍ତ୍ତୃକା, ବି. ସ୍ତ୍ରୀ. ( ପ୍ରୋଷିତ-ଭର୍ତ୍ତୃ ) ଯେ ନାୟିକାର ସ୍ୱାମୀ ବିଦେଶସ୍ଥ ।

ପ୍ରୋଷ୍ଠପଦ, ବି. ପୁଂ. (ପ୍ରୋଷ୍ଠପଦୀ-ଅ) ଭାଦ୍ରମାସ; ଯାହାର ପାଦ ଗୋରୁ ଖୁର ପରି ହୋଇଥାଏ ।

ପ୍ରୋଷ୍ଠପଦା, ବି. ସ୍ତ୍ରୀ. ପୂର୍ବ ଉତ୍ତର ଭାଦ୍ରପଦ ନକ୍ଷତ୍ର ।

ପ୍ରୋଷ୍ଠପଦୀ, ବି. ସ୍ତ୍ରୀ. ଭାଦ୍ରମାସର ପୂର୍ଣ୍ଣିମା ।

ପ୍ରୋଷ୍ଠୀ, ବି. ସ୍ତ୍ରୀ. ( ପ୍ର-ଉଷ୍-ଠ ) ଶଫରୀ, କେରାଣ୍ଡୀ ମାଛ ।

ପ୍ରୋହ, ବି. ପୁଂ. ( ପ୍ର-ଉହ୍-ଅ ) ହସ୍ତିର ପଦ; ହସ୍ତିର ପାଦଗ୍ରନ୍ଥି; ପର୍ବ; ତର୍କ । ବିଂ.ପଟୁ,ଦକ୍ଷ, ନିପୁଣ ।

ପ୍ରୋଢ, ବଂ. (ପ୍ର-ବଢ଼-ତ) ପ୍ରବୃଦ୍ଧ;ପ୍ରବୀଣ; ପ୍ରଗୃଭ; ପ୍ରଗଲ୍ଭ ; ଶବାହ୍ରତ; ଦକ୍ଷ, ନିପୁଣ; ଯୌବନର ପର ବାର୍ଦ୍ଧକ୍ୟର ପୂର୍ବାବସ୍ଥା; ଯୁବା ।

ପ୍ରୋଢ଼ା, ପ୍ରୌଢ଼ା, ବ. ସ୍ତ୍ରୀ. ୩୦ ଠାରୁ ୫୫ ବର୍ଷ ପର୍ଯ୍ୟନ୍ତ ବୟସ୍କା ନାୟିକା ।

ପ୍ରୌଢ଼ି, ବ. ସ୍ତ୍ରୀ. ( ପ୍ର-ବହ୍-ତି ) ଔଦ୍ଧତ୍ୟ; ଅଧ୍ୟବସାୟ, ଉତ୍ସାହ ; ସାମର୍ଥ୍ୟ; ଉଦ୍ୟମ, ଉଦ୍ଯୋଗ; ଅଭିଯୋଗ ।

ପ୍ରୌଢ଼ିବାଦ, ବ. ପୁଂ. ବାଦାନୁବାଦ ।

ପ୍ରୌଷ୍ଠପଦ, ବ. ପୁଂ. (ପ୍ରୌଷ୍ଠପଦ-ଅ) ଭାଦ୍ରମାସ ।

ପ୍ରୌଷ୍ଠପଦୀ, ବ. ସ୍ତ୍ରୀ. ଭାଦ୍ରମାସର ପୂର୍ଣ୍ଣିମା ।

ପ୍ଲକ୍ଷ, ବ. ପୁଂ. ଅଶ୍ୱତ୍ଥବୃକ୍ଷ । ସ୍ତ୍ରୀ. ସପ୍ତଦ୍ୱୀପା ପୃଥିବୀର ଏକଗୋଟି ଦ୍ୱୀପ; ଖିଡ଼କୀ ଦ୍ୱାର ।

ପ୍ଲବ, ବ. ପୁଂ. ( ପ୍ଲୁ-ଅ ) କୁଦ କୁଦ ଚାଲିବାର; ସନ୍ତରଣ; ଭେଲ; ଭେକ ; ମାଙ୍କଡ଼ ; ମେଷ; ଜଳଚରାଦି ପକ୍ଷୀ; ଚଣ୍ଡାଳ; ମାଛ ଧରିବାର ପୋଳୁହ; ପ୍ଲକ୍ଷ ।

ପ୍ଲବକ, ବ. ପୁଂ. ( ପ୍ଲବ-କ ) ନର୍ତ୍ତକ; ଚଣ୍ଡାଳ; ଭେକ ।

ପ୍ଲବଗ, ପ୍ଲବଙ୍ଗ, ପ୍ଲବଙ୍ଗମ, ବ. ପୁଂ. (ପ୍ଲବ-ଗ, ଗମ) ବାନର; ଭେକ; ହରିଣ; ସୂର୍ଯ୍ୟଙ୍କ ସାରଥି ।

ପ୍ଲବଗତି, ବ. ପୁଂ. ( ପ୍ଲବ-ଗତି ) ଯେ କୁଦ କୁଦ ଚାଲେ; ମଣ୍ଡୁକ, ବେଙ୍ଗ, ଭେକ ।

ପ୍ଲବନ, ବ. ନ. ( ପ୍ଲୁ-ଅନ ) ଲମ୍ଫନ; ସନ୍ତରଣ; ଅବଗାହନ, ଜଳପ୍ଲାବନ ।

ପ୍ଲବମାନ, ବଂ. (ପ୍ଲୁ-ଶାନ ) ଭାସମାନ,ଭାସିଯିବା ।

ପ୍ଲାଟିନ୍ , ବ. ରୌପ୍ୟବତ୍ ଧାତୁବିଶେଷ ।

ପ୍ଲାବକା, ବ. ସ୍ତ୍ରୀ. ନୌକା, ଭେଳା ।

ପ୍ଲାବନ, ବ. ନ. (ପ୍ଲୁ-ଅନ) ଅଭିଷେକ, ସେକ; ଜଳାଦିଦ୍ୱାରା ବ୍ୟାପ୍ତି, ଜଳରେ ଭାସି ଯିବା ।

ପ୍ଲାବିତ, ବଂ. (ପ୍ଲାବ-ତ ) ଜଳାଦିଦ୍ୱାରା ବ୍ୟାପ୍ତ, ଯାହା ଜଳରେ ମଗ୍ନ ହୋଇଅଛି,ଯାହା ଜଳରେ ଭାସି ଯାଇଅଛି; ସିକ୍ତ; ପରିପ୍ଲୁତ, ଜଳମଗ୍ନ ।

ପ୍ଲିହା, ପ୍ଲୀହା, ବ. ପୁଂ. ଯେ ଅନ୍ତରେ ଅର୍ଥାତ୍ ହୃଦୟ ମଧ୍ୟରେ ବଢ଼େ, କୁକ୍ଷି ବାମପାର୍ଶ୍ୱସ୍ଥ ମାଂସପିଣ୍ଡବିଶେଷ ।

ପ୍ଲୁତ, ବ. ନ. ( ପ୍ଲୁ-ତ ) ଲମ୍ଫ; ଅଶ୍ୱର ଗତିବିଶେଷ; ବଙ୍କା ଚାଲି । ପୁଂ. ତ୍ରିମାତ୍ର ସ୍ୱର, ତ୍ରିମାତ୍ର ସ୍ୱର; ତ୍ରିମାତ୍ର ବର୍ଣ୍ଣ ।

ପ୍ଲୁଷ୍ଟ, ବଂ. (ପ୍ଲୁଷ୍-ତ) ପ୍ଲୁଷ୍ଟ; ଦଗ୍ଧ, ପୋଡ଼ା ।

ପ୍ଲୋଷ, ବ. ପୁଂ. (ପ୍ଲୁଷ୍-ଅ) ଦହନ, ପୋଡ଼ା ।

# ଫ

ଫ, ବ୍ୟଞ୍ଜନ ବର୍ଣ୍ଣର ଦ୍ୱାବିଂଶ ବର୍ଣ୍ଣ । ବ. ନ. କର୍କଶ ବାକ୍ୟ; ନିଷ୍ଫଳ ବାକ୍ୟ; ଫୁତ୍କାର । ପୁଂ. ଝଞ୍ଜାବାତ; ସ୍ଫୀତ; ଯଜ୍ଞସାଧନବିଶେଷ; ଫଙ୍କା-ବିଶେଷ, ବ୍ୟଞ୍ଜନବର୍ଣ୍ଣ ଓ ବର୍ଣ୍ଣାଭାବ ।

ଫଙ୍କା, ଫକ୍କା, ଫିକା, ବଂ. (ଦେଶଜ) ରକ୍ତହୀନ; ପାଣ୍ଡୁରବର୍ଣ୍ଣବିଶିଷ୍ଟ । ଯଥା—

ପର୍ଣ୍ଣ ଚକ୍ଷିତ ପଦ୍ମ, ପ୍ରାୟେ ଦନ୍ତ ଫିକା । ନ. କେ.

ଫକାରୀ, ବ. ଦମ୍ , ନିଶ୍ୱାସପ୍ରଶ୍ୱାସର ଶକ୍ତି ।

ଫକୀର, ବ. (ଯାବନିକ) ଦରିଦ୍ର ; ଯବନଭିକ୍ଷୁକ । ଯଥା—

ଅଳ୍ପ ଯେ ସନ୍ନ୍ୟାସୀରେ କାଇ ଯେ ଫକୀର । ଭ. ବ.

ଫଗୁ, ବ. ( ଫଲ୍ଗୁ ଶବ୍ଦର ଅପଭ୍ରଂଶ ) ଅବିର, ଲାଲବର୍ଣ୍ଣ ଚୂର୍ଣ୍ଣ । ଯଥା—

ମୂଠାଏ ଫିଙ୍ଗି ଯିବାରେ ଏ ପ୍ରଗାଢ଼ ଫଗୁ ଖେଳିବାରେ ଲଳନା, ବସନ୍ତସଖା ବଶକୁ କରନ୍ତି ରଙ୍ଗପାଶେ ଖେଳ ଘଳନା । ଲ. ବ.

ଫଗୁଣ, ବ. (ଫାଲ୍ଗୁନର ଅପଭ୍ରଂଶ) ଯେଉଁ ମାସରେ ଉତ୍ତରଫାଲ୍ଗୁନୀ ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା ହୁଏ, କୁମ୍ଭ ମାସ । ଯଥା—

ଗୁଣମଣିକ ଗୁଣେ, ସଜ୍ଜୀବିତ ବିଗୁଣେ,
ନ ଷ୍ଟଦ୍ୟ ଅର୍ପିବେ ଫଗୁଣେ, ରେ ସହଚର । ଲ. ବ.

ଫକଯୃତ୍, ବି. (ଯାବନିକ) ଗାଲି, ତିରସ୍କାର ।

ଫଟ, ବି. ପୁଂ. ସ୍ତ୍ରୀ. (ସ୍ଫୁଟ୍=ବିକଶିତ ହେବା, ଭେଦ କରିବା-ଅ, ନିପାତନରେ) ସର୍ପର ଫଣା । ଟା. ସ୍ତ୍ରୀ. ଦନ୍ତ; ଧୂର୍ତ୍ତ; ପ୍ରତାରଣା, ଶଠତା ।

ଫଟକା, ବି. (ଦେଶଜ) ଶବ୍ଦ ଅବା ଅଗ୍ନିବାଣ ବା ଚବବିଶେଷ ।

ଫଟ୍ଫଟ୍, ଅଂ. (ଦେଶଜ) ଅନୁକରଣ ଶବ୍ଦ-ବିଶେଷ ।

ଫଟା, ବିଂ. (ଦେଶଜ) ଫାଟିଯାଇଥିବା,ଭଙ୍ଗା । ଯଥା—

ଫଟା କପାଳେ ତ ଅଛି ଲେଖା,
ଫେରି ଯାଇ ନୋହିବାକୁ ଦେଖା ।

ଫଟାଇବା, କ୍ରି. (ଦେଶଜ) ବିଦୀର୍ଣ୍ଣ କରିବା ।

ଫଡ଼କା, ବି. (ଦେଶଜ) ପତାକା । ଯଥା—

ପକାଇ ଉଡ଼ା ବହୁ୍ୟ ଫଡ଼କା ଅଛି ବହି । ଲା. ବ.

ଫଡ଼ଫଡ଼, ଅଂ. (ଦେଶଜ) ଅନୁକରଣ ଶବ୍ଦ, ଶବ୍ଦବିଶେଷ ।

ଫଡ଼ା, ବି. (ଦେଶଜ) କାଷ୍ଠ ପ୍ରଭୃତିର ଖଣ୍ଡ । ବିଂ. ଚିରା ।

ଫତ, ବି. (ଫଳକ ଶବ୍ଦଜ) ଫର, ପାଇକମାନଙ୍କର ଅସ୍ତ୍ରବାରଣ ।

ଫତଆ, ଫରିଆ, ବି. (ଦେଶଜ) ପଶ୍ୱାଦିର କଟି-ଠାରୁ ସମସ୍ତ ଚରଣ;ଗୋଡ଼ର ସମୁଦାୟ ଅଂଶ ।

ଫଣଫଣା, ବି.(ଦେଶଜ)ଗୁଳ୍ମଜାତୀୟ ବୃକ୍ଷବିଶେଷ ।

ଫଣା, ବି. ସ୍ତ୍ରୀ. (ଫଣ୍-ଅ-ଆ) ସର୍ପର ବିସ୍ତାରିତ ମସ୍ତକ ।

ଫଣାକର, ଫଣାଧର, ଫଣାଭୃତ୍, ବି. ପୁଂ. (ଫଣା-କର, ଧର, ଭୃତ୍) ସର୍ପ, ଭୁଜଙ୍ଗ ।

ଫଣାବାନ୍, ଫଣୀ, ଫଣବାନ୍, ବି. ପୁଂ (ଫଣା-ବତ୍, ଇନ୍) ସର୍ପ, ଫଣାଧର । ଯଥା—

ଉସାଟିଲୁ କବା ଭେଦଣ ଅବନୀ,
ଊର୍ଦ୍ଧ୍ୱେ ଉଠେ ଫଣି ଫଡି ଫଣାମଣି । କ. କେ.

ଫଣିପ୍ରିୟ, ବି. ପୁଂ. (ଫଣିନ୍-ପ୍ରିୟ) ବାୟୁ ।

ଫଣିଫେନ, ବି. ପୁଂ. ଅହିଫେନ, ଅଫିମ ।

ଫଣୀନ୍ଦ୍ର ବି. ପୁଂ. (ଫଣିନ୍-ଇନ୍ଦ୍ର) ସର୍ପରାଜ, ଅନନ୍ତଦେବ । ଯଥା—

ଗର୍ଜିଲ କି ନିଜ ବିଷନ୍ଜ୍ୱାଳା ଅସମ୍ଭାଳେ ଫଣୀନ୍ଦ୍ର ବାସୁକି ।

ଫଣୀଶ୍ୱର, ବିଂ ପୁଂ. (ଫଣିନ୍-ଈଶ୍ୱର) ସର୍ପରାଜ ।

ଫଣ୍ଡ, ବି. ପୁଂ. (ଫଣ୍-ଡ) ଜଠର, ଉଦର ।

ଫତୁର, ବିଂ. (ଯାବନିକ) ନିର୍ଧନ, ଦରିଦ୍ର ।

ଫତେ, ବି. (ଯାବନିକ) ଜୟ ।

ଫନ୍ଦ, ବି. ପାଦାଦିର ପ୍ରାନ୍ତଭାଗ ।

ଫନ୍ଦା, ବି. (ଦେଶଜ) ଆଶ୍ରୟ, ଅବଲମ୍ବନ, ଜୀବିକା । ଯଥା—

ଫନ୍ଦାଧନ ମୁଁ ପିଙ୍ଗିଦେଲି ପାଣିକି ।
ପୂରୁଣା ହେବ କାହା ସେନ ଏଣିକି ।

ଫନ୍ଦୀ, ବି. (ଦେଶଜ) ଫିକର, ଉପାୟ । ବିଂ. କୌଶଳୀ, ଉପାୟବନ୍ତ; ବ୍ୟବସାୟୀ ।

ଫମ୍ପା, ବି. (ଦେଶଜ) ଅନ୍ତଃସାରଶୂନ୍ୟ, ପୋଲା

ଫୟସଲା, ବିଂ. (ଯାବନିକ) ମୋକଦ୍ଦମାର ନିଷ୍ପତ୍ତି-ପତ୍ର ।

ଫର, ବି. କ. (ଫଲ୍-ର) ଫଳକ, ଢାଲ ।

ଫରଫର, ଅଂ. ଅନୁକରଣ ଶବ୍ଦ; ଅତ୍ୟନ୍ତ ।

ଫରମାଶ୍, ବି. (ଯାବନିକ) ଆଦେଶ, ଅନୁଜ୍ଞା ।

ଫରମାଣ ପାଇ ସୈନ୍ୟ ସକଳ,
ଫରହର ଉଡ଼େ କେତେତଳ ।

ଫରି, ବି. ଫଳକ; ଚର୍ମଆବରଣି । ଯଥା—

ଫରି ଖଣ୍ଡା ଥାନ୍ତା କରେ,
ବଡ଼ ସାହେବ କି ପଶନ୍ତା ଘରେ ।

ଫରୁଆ, ବି. (ଦେଶଜ) ସମ୍ପୁଟକ, ସିନ୍ଦୂର ପ୍ରଭୃତି ପଦାର୍ଥ ରଖିବା ନିମିତ୍ତ କାଷ୍ଠନିର୍ମିତ ପାତ୍ର-ବିଶେଷ । ଯଥା—

ଫରୁଆ ଗର୍ଭ ପେଇ ନିର୍ଦୋଷ ମଣି,
ପିଙ୍ଗି ଯା ଦେଲି ବେଶେ ସଦୋଷ ମଣି ।

ଫର୍ଚ୍ଚା, ବି. (ଯାବନିକ) ପ୍ରସାର । ବିଂ. ପ୍ରଶସ୍ତ; ନିର୍ମଳ ।

ଫଳ, ବି. ନ. (ଫଲ୍-ଅ) ବୃକ୍ଷ ଲତାଦିରୁ ଉତ୍ପନ୍ନ ଶସ୍ୟ; ଉତ୍ପନ୍ନ ବସ୍ତୁ; କାର୍ଯ୍ୟସିଦ୍ଧି; ଧନ; ଲାଭ; ପ୍ରୟୋଜନ; ନିଷ୍ପତ୍ତି; ସ୍ୱର୍ଗାଦି ସୁଖ; ସୁଖ; ଦୁଃଖ; ଫଳକ; ପଟା; ଢାଲ; ଖଡ୍ଗାଦିର ପତ୍ର; ବାଣର ଅଗ୍ରଭାଗସ୍ଥ ଲୌହ; ଲଙ୍ଗଳଲୁହା; ଉତ୍ତର । ପୁଂ. କୂଟଜବୃକ୍ଷ ।

ଫଳକ, ବି. ପୁଂ. ନ. (ଫଲ୍-ଅକ) ଢାଲ; ପଟା; କପାଳର ଅସ୍ଥି ।

ଫଳକପାଣି, ବି. ପୁଂ. (ଫଳକ-ପାଣି) ଫଳକଧାରୀ ।

ଫଳକୀ, ବି. ପୁଂ. ( ଫଳକ-ଇନ୍ ) ଢାଲଧାରୀ; ମତ୍ସ୍ୟବିଶେଷ ।

ଫଳକେଶର, ବି. ପୁଂ. (ଫଳ-କେଶର) ନାରିକେଳବୃକ୍ଷ ।

ଫଳକୋଷକ, ବି. ପୁଂ. ମୁଷ୍କ, ଅଣ୍ଡକୋଷ ।

ଫଳତଃ, ଅଂ (ଫଳ-ତସ୍) ବାସ୍ତବିକ, ବସ୍ତୁତଃ; ଅର୍ଥାତ୍ ।

ଫଳତ୍ରୟ, ଫଳତ୍ରିକ, ବି. ନ. (ଫଳ-ତ୍ରୟ,ତ୍ରିକ) ତ୍ରିଫଳା, ଶୁଣ୍ଠି ପିପ୍ପଳୀ ଓ ମରିଚ ।

ଫଳଦ, ବିଂ. ( ଫଳ-ଦା-ଅ ) ଫଳଦାତା । ବି. ପୁଂ. ବୃକ୍ଷ ।

ଫଳନ୍ତା, ବିଂ. (ପ୍ରା) ଫଳବିଶିଷ୍ଟ, ଯାହା ଫଳୁଅଛି ବା ଫଳୁଅଛି ।

ଫଳପାକାନ୍ତା, ବି ସ୍ତ୍ରୀ. (ଫଳ-ପାକ-ଅନ୍ତ) ଫଳ ପକ୍ୱ ହେଲେ ଯେଉଁ ବୃକ୍ଷ ଲତାଦିମାନେ ନାଶ-ପ୍ରାପ୍ତ ହୁଅନ୍ତି; ଔଷଧି ।

ଫଳପୂର, ବି. ପୁଂ. (ଫଳ-ପୂର୍-ଅ) ଦାଡିମ୍ବ ।

ଫଳପ୍ରଦ, ବିଂ. (ଫଳ-ପ୍ରଦ) ଯେ ଫଳ ଦାନ କରେ ।

ଫଳାବାନ୍, ଫଳତ, ଫଳନ, ଫଳୀ, } ବିଂ. (ଫଳ-ବତ୍, ଇତ, ଇନ,ଇନ୍) ଫଳବିଶିଷ୍ଟ । ବି. ପୁଂ. ଫଳବାନ୍ ବୃକ୍ଷ ।

ଫଳଶାଳୀ, ବିଂ. (ଫଳ-ଶାଲିନ୍) ଫଳଯୁକ୍ତ ।

ଫଳଶ୍ରୁତି, ବି. ସ୍ତ୍ରୀ. ( ଫଳ-ଶ୍ରୁତି ) କର୍ମର ଫଳଶ୍ରବଣ ।

ଫଳାନ୍ତ, ବି. ପୁଂ. (ଫଳ-ଅନ୍ତ) ବଂଶ, ବାଉଁଶ ।

ଫଳାଫଳ, ବି. (ଫଳ-ଅଫଳ) ହାନି ଲାଭ ।

ଫଳାଶନ, ବି. ପୁଂ. (ଫଳ-ଅଶନ) ଶୁକପକ୍ଷୀ । ବିଂ. ଫଳଭକ୍ଷକ ।

ଫଳିନୀ, ଫଳୀ, ବି. ସ୍ତ୍ରୀ. (ଫଳିନ୍-ଈ, ଫଳ-ଈ) ପ୍ରିୟଙ୍ଗୁ ଲତା ।

ଫଳୋଦୟ, ବି. ପୁଂ. (ଫଳ-ଉଦୟ) ଫଳୋତ୍ପତ୍ତି; ଲାଭ; ସ୍ୱର୍ଗ; ଆନନ୍ଦ ।

ଫଲ୍ଗୁ, ବି. ସ୍ତ୍ରୀ. ( ଫଲ୍-ଗୁ ) ଗୟାତୀର୍ଥର ନଦୀ-ବିଶେଷ; ବୃଥାବାକ୍ୟ; ଲୋହିତବର୍ଣ୍ଣ ଚୂର୍ଣ୍ଣ, ଅବିର; ବସନ୍ତକାଳ । ବିଂ. ତୁଚ୍ଛ, ଅସାର; ମନୋହର ।

ଫଲ୍ଗୁନ, ଫାଲ୍ଗୁନ, ବି. ପୁଂ. ( ଫଲ୍-ଉନ, ଗ ଆଗମ ) ଅର୍ଜୁନ; ଫାଲ୍ଗୁନ ମାସ । ନୀ-ସ୍ତ୍ରୀ. ନକ୍ଷତ୍ରବିଶେଷ ।

ଫଳ୍ୟ, ବି. ନ. (ଫଳ-ଯ) ପୁଷ୍ପ; ମୁକୁଳ ।

ଫକ୍କିଫଳ, ବି. ପୁଂ. ପୂର୍ବବାତ, କୁଲପବନ ।

ଫସ୍କା, ବିଂ. (ଦେଶଜ) ହାଲୁକା; ଭଙ୍ଗପ୍ରବଣ; ଯେ ଟାଣ ବା ଶକ୍ତ ନୁହେ ।

ଫସଲ୍, ବି. (ଯାବନିକ) କୃଷି, କୃଷିଜାତ ଶସ୍ୟାଦି ।

ଫାଉ, ବି. (ସ୍ଥାୟୀଧାତୁଜ) ପରିମାଣର କିଛିତ୍ ଅଧିକ; ଲାଭ; ମୁନଫା; ଠିକା ନେବା ।

ଫାଙ୍କ, ବି. (ଦେଶଜ) ଛିଦ୍ର, ଅନ୍ତର । ଯଥା—

ନଇକେ ବାଙ୍କ, ଦେଶକେ ଫାଙ୍କ ।

ଫାଜିଲ, ଫାଜିଲ୍, ବିଂ. (ଯାବନିକ) ଅତିରିକ୍ତ, ବେଶୀ; ଯେ ବ୍ୟକ୍ତି ଆପଣାର ଜାଣିବା ଅପେକ୍ଷା ବେଶି କହେ ।

ଫାଟ, ବି. (ପ୍ରା, ସ୍ଫୁଟ ଧାତୁଜ) ଗର୍ତ୍ତ, ଛିଦ୍ର ।

ଫାଟକ, ବି. (ଯାବନିକ) ସଦରଦ୍ୱାର; ଦୁର୍ଗାଦିର ପ୍ରବେଶଦ୍ୱାର ।

ଫାଟିବା, କ୍ରି. (ପ୍ରା) ବିଦୀର୍ଣ୍ଣ ହେବା । ଯଥା—

ଫାଟ ନ ଗଲା ହୃଦୟ ପୁଣି ରେ ବିଧିଣ୍ଡି । ବି. ଚି.

ଫାଟୁଆ, ବି. (ଦେଶଜ) ଗୋମେଷାଦିର ରୋଗ-ବିଶେଷ ।

ଫାଡବା, କ୍ରି. (ଫାଟନ ଶବ୍ଦଜ) ଚିରିବା, ଛିନ୍ନ କରିବା, ଅଂଶ କରିବା ।

ଫାଣ୍ଟ, ବିଂ. (ଫଣ୍-ତ) ଅକ୍ଳେଶରେ ପ୍ରସ୍ତୁତ । ବି. ନ. କ୍ୱାଥବିଶେଷ ।

ଫାଣ୍ଟିବା, କ୍ରି. ( ପ୍ରା, ଫାଣ୍ଟ ଶବ୍ଦଜ ) ମିଶ୍ରିତ କରିବା, ଫେଣେଇବା ।

ଫାଣ୍ଡି, ବି. (ଯାବନିକ) ଶାନ୍ତିରକ୍ଷା ନିମିତ୍ତ ପୁଲିଶ କର୍ମଚାରୀମାନଙ୍କର ରହିବା ସ୍ଥାନ (Outpost)

ଫାନସ, ବି. (ଯାବନିକ) କାଗଜାଦିଦ୍ୱାରା ନିର୍ମିତ ଦୀପ ଜାଳିବାର ପାତ୍ରବିଶେଷ ।

ଫାନ୍ଦ, ବି. (ଦେଶଜ) ପାଶ; କୌଶଳ । ଯଥା—

ବଳିପ୍ରିବା ମୋହଫାନ୍ଦ ଯେ,
ବଳେଇନ ଜନ ଅନନ୍ଦସାଗର ବୃଦ୍ଧି କ ଶାମୂଳ ଗୃନ୍ଦ ସେ । ବ. ଚ.

ଫାଳ, ବି. (ଦେଶଜ) ଲଙ୍ଗଳଲୁହା ।

ଫାଳଆ, ବିଂ. (ଦେଶଜ) ବିସ୍ତୃତ । ବି. ଖଣ୍ଡ, ଯଥା—କାଠଫାଳଆ ।

ଫାଲ୍ଗୁନ, ବି. ପୁଂ. (ଫଲ୍ଗୁନ-ଅ) ଫଗୁଣ ମାସ । ନୀ, ସ୍ତ୍ରୀ. ଫାଲ୍ଗୁନ ମାସର ପୂର୍ଣ୍ଣିମା ।

ଫାଶ, ବି. (ପାଶ ଶବ୍ଦର ଅପଭ୍ରଂଶ) ପାଶ । ଯଥା--

ଧନର ନିର୍ଧନ ଅବା ପ୍ରବଳ ଦୁର୍ବଳ,
ସେ ଗ୍ରାଠ ଫାଶୁଁ କେହ ନୁହନ୍ତି ମୁକତ । ମ. ଯା.

ଫାଶୀ, ବି. (ପ୍ରା; ପାଶ ଶବ୍ଦଜ) ଉଦ୍‌ବନ୍ଧନ, ଦଉଡି ଦେଇ ମରିବା ।

ଫାସିଆ, ବି. ( ଦେଶଜ ) କର୍ଣ୍ଣ ଓ ନାସାର ଅଳଙ୍କାରବିଶେଷ ।

ଫିକା, ବିଂ. (ଫକ୍କା ଦେଖ)

ଫିକର, ବି. (ଯାବନିକ) ଉପାୟ, କୌଶଳ ।

ଫିଙ୍ଗକ, ବି. ପୁଂ. ( ଫିଙ୍ଗ-କ ) କଜଳପାତିଆ ଚଢେ଼ଇ ।

ଫିଙ୍ଗାଳ, ବିଂ. ଶିବିକାବାହକମାନଙ୍କ ମଧ୍ୟରୁ ଯେ ଡାକେ ।

ଫିଙ୍ଗିବା, କ୍ରି. ବି. (ଯାବନିକ) ନିକ୍ଷେପ କରିବା, ପକାଇବା । ଯଥା---

ଧି ଯାମା ରମା ଶ୍ୟାମା ଅଠଶପ୍ୱରେ, ବନ୍ଧୁରକା ଦଣ୍ଡ ଫିଙ୍ଗନ୍ତେ ।

ଫିଟାଇବା, କ୍ରି. (ଦେଶଜ) ମୁକ୍ତ କରିବା । ଯଥା—

ବସି ରମାବର ଫିଟାଇ କବଚ,
ଦେଖୁଥାଇ ଥୋଇ ହୃଦେ ଧାର ।

ଫିତା, ବି. (ଦେଶଜ) ବନ୍ଧନରଜ୍ଜୁ, ସୂତ୍ରନିର୍ମିତ ରଜ୍ଜୁ ।

ଫିରଙ୍ଗ, ବି. ସ୍ୱନାମ ପ୍ରସିଦ୍ଧ ଦେଶବିଶେଷ ।

ଫିରଙ୍ଗୀ, ବି. ଫିରଙ୍ଗ ଦେଶୋଦ୍ଭବ ପୁରୁଷ, ଦେଶୀୟ ସ୍ତ୍ରୀଲୋକ ଗର୍ଭରେ ଇୟୁରୋପ ଦେଶୀୟ ପୁରୁଷର ଔରସଜାତ ସନ୍ତାନ ।

ଫିରିଫିରି, ବି. (ଦେଶଜ) କର୍ଣ୍ଣାଳଙ୍କାରବିଶେଷ ।

ଫୁଙ୍କିବା, କ୍ରି. (ଫୁତ୍‌କାର ଶବ୍ଦଜ) ମୁଖରୁ ସବଳରେ ବାୟୁ ନିର୍ଗତ କରିବା ।

ଫୁଟ, ବିଂ. (ସ୍ଫୁଟ୍-ଅ) ବିଦୀର୍ଣ୍ଣ; ପ୍ରସ୍ଫୁଟିତ । ବି. ପୁଂ. ସର୍ପର ଫଣା; (ଇଂରାଜୀ) (Foot) ରୈଖିକ ପରିମାଣବିଶେଷ, ୧୨ ଅଙ୍ଗୁଳ ପରିମାଣ ।

ଫୁଟା, ବିଂ. (ପ୍ରା) ବିଦୀର୍ଣ୍ଣ; ସଚ୍ଛିଦ୍ର; କଣା ।

ଫୁଟି, ବି. (ଦେଶଜ) ଫଳବିଶେଷ ।

ଫୁଟିଫୁଟିକା, ବି. (ଦେଶଜ) ଲତାବିଶେଷ ।

ଫୁଟିବା, କ୍ରି. (ସ୍ଫୁଟ୍‌ଧାତୁଜ) ବିଦୀର୍ଣ୍ଣ ହେବା । ଯଥା—

ପ୍ରାଣ ନ ଗଲା ତ ଏହା ଦେଖିଲି ତ ଦଇବ ବଳାତ ଏତେସବୁ ।
ନେତ୍ର ଫୁଟିଯାଉ ହୃଦ ଫାଟିଯାଉ ପ୍ରାଣ ହଟିଯାଉ ବେଗକରୁ ।
ବ. ଚ.

ଶବ୍ଦର ସହିତ ବିଦୀର୍ଣ୍ଣ ହେବା; ପ୍ରସ୍ଫୁଟିତ ହେବା, ଥକିଯିବା ।

ଫୁଟୁକି, ବି. (ଛୋଟିକା ଶବ୍ଦଜ) ହସ୍ତର ମଧ୍ୟମା ଓ ଅଙ୍ଗୁଷ୍ଠଦ୍ୱାରା କୃତ ଶବ୍ଦବିଶେଷ ।

ଫୁର୍, ଅଂ. (ସ୍ଫୁର୍-ଂ. ନିପାତନରେ) ଅନୁକରଣ ଶବ୍ଦ ।

ଫୁତ୍କର, ବି. ପୁଂ. (ଫୁତ୍-କର) ଅଗ୍ନି ।

ଫୁତ୍କାର, ପୁଂ. ଫୁତ୍କୃତ, ସ୍ତ୍ରୀ. ବି.(ଫୁତ୍-କାର, କୃତ) ଫୁଙ୍କି ଦେବାର; ଫୁପ୍‌ଫୁପ୍‌ଶବ୍ଦ । ଯଥା—

ମତ୍ତ ହୋଇ କେହ ଗନ୍ଧାମୋଦେ
ଫୁତ୍କାରେ ଉଡ଼ାଏ କେତେ ରଜା ମହାରଜା । ମ, ଯା.

ଫୁସ୍‌ଫୁସ୍; ବି. ପୁଂ. (ସ୍ଫୁର-ଂ, ଦ୍ୱିତ୍ୱ) ଶରୀରସ୍ଥ ମାଂସ-
ପେଶୀବିଶେଷ, ଫୁସ୍‌ଫୁସ୍ ।

ଫୁରସତ୍, ଫୁରୁସତ୍, ବି. (ଯାବନିକ) ଅବସର, ଅବକାଶ ।

ଫୁରୁଣା, ବି. (ଦେଶଜ) ଆନନ୍ଦ; ଗର୍ବ । ଯଥା—

ସାରଙ୍ଗେ କପିଁ ଗଣିବ ଶାରଦା ବାଣୀକୁ
ମନ ଫୁରୁଣାକୁ ପାଣି କପିଁ ଅଣିବ । ବି. ଚି.

ଫୁଲ, ବି. (ଫୁଲ୍ଲ ଶବ୍ଦଜ) ପୁଷ୍ପ, କୁସୁମ ।

ଫୁଲଖଡି, ବି. (ଦେଶଜ) ଦୁଧଖଡ଼ୀ ।

ଫୁଲଗୁଣା, ବି. (ଦେଶଜ) ନାକର ଅଳଂକାର-
ବିଶେଷ । ଯଥା—

ଫୁଲଗୁଣା ମାଠଗୁଣୀ, ବେକ କରଇ ବଣା ।
ନାସା ପୁଟକେ ପୁଟକେ ଥାଇ ଝଟକେ ସେ । ଲ. ବ.

ଫୁଲଧନୁ, ବି. ପୁଂ, (ଫୁଲ-ଧନୁ) ମଦନ, କନ୍ଦର୍ପ ।

ଫୁଲା, ବି. (ଦେଶଜ) ଚକ୍ଷୁରୋଗବିଶେଷ; ଶୋଥ-
ରୋଗ ।

ଫୁଲାଇବା, କ୍ରି. (ଦେଶଜ) ସଗର୍ବରେ ସ୍ଫୀତ
ହେବା । ଯଥା—

. କି କହୁଛ କାହିଁ ଛାତି ଫୁଲାଇ ।

ଫୁଲ୍ଲ, ବିଂ. (ଫୁଲ-ତ) ବିକସିତ, ପ୍ରସ୍ଫୁଟିତ । ବି. ନ.
ପୁଷ୍ପ, ଫୁଲ ।

ଫୁଲ୍ଲୀ, ବି. (ଫୁଲ୍ଲ ଶବ୍ଦଜ) ସୂତ୍ରନିର୍ମିତ ପୁଷ୍ପାକାର
ଗୁଚ୍ଛବିଶେଷ; କେଶବନ୍ଧନୀର ପ୍ରାନ୍ତସ୍ଥ ଗୁଚ୍ଛ ।
ଯଥା—

ପଛକୁ ଝୁଲଇ ଫୁଲା, ମାନସ ଭୁଲ ଯେ ।

ଫୁସ୍‌ଫୁସ୍, ବି. ଶରୀରସ୍ଥ ଯନ୍ତ୍ରବିଶେଷ । ଅଂ. ଅନୁ-
କରଣ ଶବ୍ଦବିଶେଷ ।

ଫୁସ୍‌ଲାଇବା, କ୍ରି. (ଯାବନିକ) ଭୁଲାଇବା, ଲୋକଙ୍କୁ
ପ୍ରଲୋଭନାଦିଦ୍ୱାରା ସ୍ୱପକ୍ଷୀୟ କରିବା ।

ଫେଟା, ବି. (ଦେଶଜ) ପରିଧେୟ ବସ୍ତ୍ରବିଶେଷ ।

ଫେଡ଼ାଙ୍କ, ବି. (ଦେଶଜ) ବ୍ୟବକଳନ; ବିୟୋଗ,
ବ୍ୟବକଳନର ପ୍ରଚଳିତ ପ୍ରଣାଳୀବିଶେଷ ।

ଫେଡିବା, ଫେଇବା, କ୍ରି. (ଦେଶଜ) ଫିଟାଇବା,
ବନ୍ଧନ ମୁକ୍ତ କରିବା, ମୋଚନ କରିବା ।
ଯଥା—

ଫେଡ଼ି ପଡ଼ି ଅରମ୍ଭିଲ ବଗିର ବଗିର । ପ୍ରେ. ସୁ.

ଫେଣ, ଫେନ, ବି. ପୁଂ. (ସ୍ଫାୟ୍-ନ) ତରଳ
ପଦାର୍ଥ ଉପରେ ଭାସୁଥିବା ବୁଦ୍‌ବୁଦ୍ ବା
ଫୋଟକ ସମୂହ । ଯଥା--

ଦଗୁଛି କପୋଳେ ଫେନପୁଞ୍ଜ ଲାଗିବାରୁ,
କର୍ପୂର ଯେହ୍ନେ ବଣ୍ଟଇ ଗ୍ଭମର ସୁଗନ୍ଧରୁ । କ. କ.

ଫେଣା, ବି. (ପ୍ରା; ଫାଣି ଶବ୍ଦଜ) ଗୁଡ଼ଜାତ
ମିଷ୍ଟାନ୍ନବିଶେଷ ।

ଫେନିଳ, ବିଂ. (ଫେନ-ଇଳ) ଫେନଯୁକ୍ତ ।

ଫେର, ବି. (ଦେଶଜ) ବସ୍ତ୍ରର ବେଷ୍ଟନ; ପ୍ରତ୍ୟା-
ବର୍ତ୍ତନ ।

ଫେରଣ, ବି. (ଦେଶଜ) ବସ୍ତ୍ରର ଭାଗବିଶେଷ ।

ଫେରୁ, ଫେରଣ୍ଡ, ଫେରୁ, ବି. ପୁଂ. (ଫେ = ଅନୁ-
କରଣ ଶବ୍ଦ-ରୁ-ଅ, ଅଣ୍ଡ, ରୁ-ଉ) ଶୃଗାଳ,
ଭେରଣ୍ଡା ।

ଫେରଫାର, ବି. (ଦେଶଜ) ଜୀବିକା, ଉପାୟ;
କାରବାର; ଆଦାନ ପ୍ରଦାନ ।

ଫେରବ, ବି. ପୁଂ. (ଫେ-ରୁ-ଅ) ଶୃଗାଳ;
ଭେରଣ୍ଡା; ରାକ୍ଷସ । ବିଂ. ଧୂର୍ତ୍ତ; ହିଂସ୍ର ।

ଫେର୍‌ଫେର, ବି. (ଦେଶଜ) ଲେଉଟା ଲେଉଟି,
ବଦଳାବଦଳ; ବୁଲାବୁଲି ।

ଫେରାଦ, ବି. (ଯାବନିକ) ଅଭିଯୋଗ; ଗୁହାରି ।

ଫୋଟକା, ବି. (ପ୍ରା; ସ୍ଫୋଟକ ଶବ୍ଦଜ) ଅଗ୍ନିଦା-
ହାଦିଜନିତ ସଦ୍ୟ ଅଥଚ ଅବିଦୀର୍ଣ୍ଣ ଜଳଯୁକ୍ତ
ବ୍ରଣ, ଆଘାତାଦିଜନିତ ବାୟୁପୂର୍ଣ୍ଣ ଜଳ
ବୁଦ୍‌ବୁଦ୍ । ଯଥା—

ପାଣି ଫୋଟକା ପରି କ୍ଷଣିକେ ଯିବ ସବୁ
ବଧି ନକର ଛିଲେ ମେଘେ ନା ରେ ।

ଫୋଡିବା, କ୍ରି. (ସ୍ଫୁଟ୍ ଧାତୁଜ) ବିଦୀର୍ଣ୍ଣ କରିବା;
ଛିଦ୍ର କରିବା ।

ଫୋପଡ଼, ବି. (ଦେଶଜ) ନିକ୍ଷେପ ଯୋଗ୍ୟ କାଷ୍ଠ-
ଖଣ୍ଡ । ଯଥା—

ଅମ୍ବ ଗଛରେ ଅମ୍ବ ନାହିଁ ଫୋପଡ଼ କପାଁଇ ମାରୁ ।

ଫୋପାଡ଼ବା, କ୍ରି. (ଦେଶଜ) ନକ୍ଷେପ କରବା ।

ଫୌଜ, ଫଉଜ, ବ. (ଯାବନକ) ସେନା, ଚମୂ ।
ଯଥା--
ଫଉଜ ଗୁଳେ କୁଞ୍ଜଦ୍ୱାରେ ରଖାଅ କହ
ବଂଶୀଧାରଣୀକ ରେ କଣୋର ।

ଫୌଜଦାରୀ, ବ. (ଯାବନକ) ଦଳବଦ୍ଧ ହୋଇ ମରାମର କରବା; ଶାନ୍ତିଭଙ୍ଗ ।

ଫୌଜଦାରୀ ଆଇନ, ବ. (ଯାବନକ) ଶାନ୍ତିଭଙ୍ଗର ଦଣ୍ଡବଧାୟକ ବ୍ୟବସ୍ଥା ।

———o———

# ବ

**ବ**, ବ୍ୟଞ୍ଜନର ତ୍ରୟୋବଂଶ ବର୍ଣ୍ଣ; ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ । ବଲ୍ = ଶବ୍ଦ କରବା-ଅ) ବ. ପୁଂ. ବରୁଣ; ବିନ୍ଦୁ; ତୋୟ; ଯୋନ; ବପନ; ବନ୍ଧନ; ଗମନ ।

ବଂହଷ୍ଠ, ବଂହୀୟାନ୍, ବଂ. (ବହୁଳ-ଇଷ୍ଠ, ଈୟସ୍) ଅତ ବହୁଳ ।

ବଡ଼ବା, ବ. ସ୍ତ୍ରୀ. ( ବଲ-ବା-ଅ-ଆ, ଲ = ଡ଼ ) ଘୋଟକୀ; କୁମ୍ଭଦାସୀ; ଦ୍ୱିଜଯୋଷିତ୍; ଅଶ୍ୱିନୀ-ନକ୍ଷତ୍ର; ଅଶ୍ୱମୁଖୀ, ସମୁଦ୍ରସ୍ଥା ଦେବୀବଶେଷ, ସ୍ୱର୍ବୈଦ୍ୟ ଦ୍ୱୟର ମାତା; ଦାସୀ ।

ବଡ଼ବାଗ୍ନି, ବ. ପୁଂ. (ବଡ଼ବା-ଅଗ୍ନି) ସମୁଦ୍ରର ଜଳମଧ୍ୟସ୍ଥ ଅଗ୍ନି, ବଡ଼ବାନଳ ।

ବଡ଼ବାସୁତ, ବ. ପୁଂ. (ବଡ଼ବା-ସୁତ) ଅଶ୍ୱିନୀ-କୁମାର ଦ୍ୱୟ ।

ବଣିକ୍, ବ. ପୁଂ. (ପଣ୍-ଇକ୍, ପ = ବ) କ୍ରୟ-ବକ୍ରୟକାରୀ, ବଣିଆ, ବୈଶ୍ୟଜାତ ।

ବଣିକ୍‌ପଥ, ବ. ପୁଂ. (ବଣିଜ୍-ପଥ) ବଜାର, ହାଟ ।

ବଣିଗ୍ୱହ, ବ. ପୁଂ. ( ବଣିଜ୍-ବହ୍ ) ଉଷ୍ଟ୍ର, ଉଟ ବା ଓଟ ।

ବଣିଜ୍ୟ, ବ. ନ. (ବଣିଜ୍-ଯ) କ୍ରୟବକ୍ରୟ ।

ବଦର, ପୁଂ. ବଦର, ବଦରକା, } ବ. (ବଦ୍-
ବଦରୀ, ସ୍ତ୍ରୀ. } ଅର, ଈ, ଇକ-ଆ, ଈ)
ବରକୋଳି ଗଛ । ନ. ବରକୋଳି ଫଳ ।
ଯଥା--
ମାଘ ମାସେ ନ ଭକ୍ଷିବ ବଦରୀ ମୂଳାକୁ ଯେ ।
କାର୍ପାସଫଳ, କପା ବକ୍ଷଡ଼ା ।

ବଦରକାଶ୍ରମ, ବ. ପୁଂ. ( ବଦରକା-ଆଶ୍ରମ ) ବ୍ୟାସଦେବଙ୍କର ଆଶ୍ରମ, ତୀର୍ଥବଶେଷ, ଏହ ତୀର୍ଥ କାଶ୍ମୀରର ଅନ୍ତର୍ଗତ ଶ୍ରୀନଗର ନାମକ ନଗରର ଅଳକନନ୍ଦା ନଦୀର ପଶ୍ଚିମ ତୀରରେ ଅଛି ।

ବଦରୀଶୈଳ, ବ. ନ. ( ବଦରୀ-ଶୈଳ ) ହମାଳୟର ପର୍ବତୈକଦେଶ, ବଦରୀକାଶ୍ରମ, ଆଜକାଲି ଏହାକୁ ବଦ୍ରୀନାଥ ବୋଲୁଯାଏ ।

ବଦ୍ଧ, ବଂ. (ବନ୍ଧ୍-ତ) ସଂଯତ, ବନ୍ଧା; ଗ୍ରଥିତ; ଉପ୍ରୁନ୍ନ; ବହୃତ ।

ବଦ୍ଧପରକର, ବଂ. ( ବଦ୍ଧ-ପରକର=କଟିବନ୍ଧ ) ଯେଉଁ ବ୍ୟକ୍ତି ଦୃଢ଼ରୂପେ ଅଣ୍ଟା ବାନ୍ଧିଅଛି, ଲାକ୍ଷଣିକ ଅର୍ଥ=ଦୃଢପ୍ରତଜ୍ଞ ।

ବଦ୍ଧମୁଷ୍ଟି, ବଂ. (ବଦ୍ଧ-ମୁଷ୍ଟି) ଦୃଢମୁଷ୍ଟି; କୃପଣ ।

ବଦ୍ଧମୂଳ, ବଂ. (ବଦ୍ଧ-ମୂଳ) ଦୃଢମୂଳ, ଯାହାର ମୂଳ ଉପାଡ଼ିବା କଠିନ ।

ବଦ୍ଧଶିଖ, ବ. ପୁଂ. (ବଦ୍ଧ-ଶିଖା) ଶିଶୁ । ବଂ. ଯେ ଶିଖା ବନ୍ଧନ କରିଅଛି; ଶିଷ୍ୟ ।

ବଦ୍ଧାଞ୍ଜଳି, ବଂ. (ବଦ୍ଧ-ଅଞ୍ଜଳି) କୃତାଞ୍ଜଳି ।

ବଧ, ବ. ପୁଂ. ( ହନ୍-ଅ, ହନ ସ୍ଥାନରେ ବଧ ) ବନାଶ କରବା, ହନନ, ହତ୍ୟା ।

ବଧକ, ବଂ. ( ହନ୍-ଅକ ) ହତ୍ୟାକାରୀ, ଯେ ବଧ କରଇ ।

ବଧତ୍ର, ବ. ନ. (ବଧ୍-ଅତ୍ର) ଆୟୁଧ; ଅସ୍ତ୍ର ।

ବଧସ୍ଥଳୀ, ବ. ସ୍ତ୍ରୀ. (ବଧ-ସ୍ଥଳୀ) ପ୍ରାଣବଧର ସ୍ଥାନ, ବଧ୍ୟଭୂମି ।

ବଧାର୍ହ, ବଂ. (ବଧ+ଅର୍ହ ) ବିନାଶଯୋଗ୍ୟ, ବଧର ଉପଯୁକ୍ତ ।

ବଧିର, ବଂ. ( ବନ୍ଧ୍-ଇର ) ଶ୍ରବଣଶକ୍ତି-ହୀନ, କାଲ ।

ବଧୂ, ବ. ସ୍ତ୍ରୀ. ( ବନ୍ଧ୍-ଉ ) ନାରୀ, ଯୋଷିତ୍; ନବୋଢା, ନବବିବାହିତା ସ୍ତ୍ରୀ; ପତ୍ନୀ, ଭାର୍ଯ୍ୟା; ପୁତ୍ରବଧୂ, ବୋହୂ । ଯଥା—

ବଧୂ ଯାଉଛି ସଙ୍ଗେ, ବଡ ମାୟାବୀ ରକ୍ଷବପୁଶେ । ବୈ. ବ.

ବଧୂଜନ, ବ. ପୁଂ. ( ବଧୂ-ଜନ ) ଯୁବତୀ ସ୍ତ୍ରୀ, ବୋହୂ ।

ବଧୂଟୀ, ବ. ସ୍ତ୍ରୀ. (ବଧୂ-ଟୀ) କ୍ଷୁଦ୍ରବଧୂ, ପିଲାବୋହୂ ।

ବଧୋଦ୍ୟତ, ବଂ. ( ବଧ-ଉଦ୍ୟତ ) ବଧନିମିତ୍ତ ଉଦ୍ୟୁକ୍ତ, ଆତତାୟୀ ।

ବଧ୍ୟ, ବଂ. (ହନ୍-ଯ) ବଧର ଯୋଗ୍ୟ, ହନନୀୟ ।

ବଧପାଳ, ବ. ପୁଂ. ( ବଧ-ପାଳ୍-ଅ ) କାରାଗୃହ-ରକ୍ଷକ ।

ବଧଭୂମି, ବ. ସ୍ତ୍ରୀ. (ବଧ୍ୟ-ଭୂମି) ବଧସ୍ଥାନ, ଯେଉଁଠାରେ ସର୍ବସମକ୍ଷରେ କୌଣସି ବ୍ୟକ୍ତିର ପ୍ରାଣଦଣ୍ଡ ଦିଆଯାଏ ।

ବନ୍ଧ, ବ. ପୁଂ. ( ବନ୍ଧ୍-ଅ ) ଗଚ୍ଛିତଦ୍ରବ୍ୟ; ବୃନ୍ତ, ଫୁଲର ଡେମ୍ଫ; ବନ୍ଧନ; ବାନ୍ଧିବା; ଗ୍ରନ୍ଥି, ଗଣ୍ଠି, ଉତ୍ପତ୍ତି; ଧାରା; ଯୋଗ; ଶରୀର; ରୋଧ; ବଡ଼ ହିଡ଼ ।

ବନ୍ଧକ, ବ. ନ. ( ବନ୍ଧ୍-ଅକ ) ଋଣନିମିତ୍ତ ଋଣଦାତାଙ୍କ ନିକଟରେ ଗଚ୍ଛିତ ବସ୍ତୁ; ବିନିମୟ ।

ବନ୍ଧକୀ, ବ. ସ୍ତ୍ରୀ. ( ବନ୍ଧ୍-ଅକ-ଈ ) ପୁଂଶ୍ଚଳୀ, ଅସତୀ ।

ବନ୍ଧତନ୍ତ୍ର, ବ. ନ. (ବନ୍ଧ-ତନ୍ତ୍ର) ଚତୁରଙ୍ଗ ସୈନ୍ୟ ।

ବନ୍ଧନ, ବ. ନ. ( ବନ୍ଧ୍-ଅନ ) ସଂଯମନ; ରୁଦ୍ଧ କରିବା, ଅବରୋଧ, ଅଟକ; ବଧ; ବନ୍ଧ; ଉତ୍ପାଦନ; ବୃନ୍ତ; ବାଣର ପୁଙ୍ଖ; ବନ୍ଧନ ନିମିତ୍ତ ରଜ୍ଜୁ; ଶୃଙ୍ଖଳ ପ୍ରଭୃତି ।

ବନ୍ଧନୀ, ବ. ସ୍ତ୍ରୀ. ( ବନ୍ଧ୍-ଅନ-ଈ ) ଶରୀର ଅସ୍ଥି ସବୁ ପରସ୍ପର ସଂଶ୍ଲିଷ୍ଟ ରଖିବା ନିମିତ୍ତ ସୂତ୍ରବତ୍ ପଦାର୍ଥ; ଅନେକ ରାଶିକୁ ଏକରାଶିରେ ପ୍ରକାଶ କରିବାର ଚିହ୍ନବିଶେଷ । ଯଥା ( ) [ ]

ବନ୍ଧୁ, ବ. ପୁଂ. ( ବନ୍ଧ୍-ଉ ) ଜ୍ଞାତି, କୁଟୁମ୍ବ, ସ୍ୱଜନ; ଭ୍ରାତା; ମିତ୍ର; ବନ୍ଧୁକବୃକ୍ଷ ।

ବନ୍ଧୁକ, ବନ୍ଧୂକ, ବନ୍ଧୁଜୀବ, ବନ୍ଧୁଜୀବକ, } ବ.ପୁଂ. (ବନ୍ଧ୍ ଉକ, ଊକ, ବନ୍ଧୁ-ଜୀବ-ଅ, କ) ସ୍ୱନାମପ୍ରସିଦ୍ଧ ରକ୍ତବର୍ଣ୍ଣ ପୁଷ୍ପବୃକ୍ଷ ଓ ତାହାର ଫୁଲ, ବନ୍ଧୁଲି ଫୁଲ, ରଙ୍ଗଣୀ ଫୁଲ । ଯଥା —

ବନ୍ଧୁକ ଅଧର କନ୍ଦୁକ ପିଙ୍ଗି କର ପଚାଇ । ଚ. ଚ.

ବନ୍ଧୁତା, ବ. ସ୍ତ୍ରୀ. (ବନ୍ଧୁ-ତା) ମିତ୍ରତା; ମିତ୍ର-ସମୂହ । ମିତ୍ରତା ଅର୍ଥରେ ଯଥା—

କାହିଁ ବନ୍ଧୁତା କାହିଁ ପ୍ରେମ ସୁନ୍ଦର,
ଯାର ପ୍ରାପତ ଯୋଗୁଁ ଦେବତା ନର । କ. ବ.

ବନ୍ଧୁର, ବନ୍ଧୂର, ବଂ. (ବନ୍ଧ୍-ଉର, ଊର) ରମ୍ୟ, ସୁନ୍ଦର, ମନୋହର, ଉନ୍ନତାନତ, ଖାଲଢିପ । ଯଥା—

ସେନାଦରୀମଦ୍ରହାରଅଙ୍କିତ
ବନ୍ଧୁର ସେ ଉରେଦେଖେ । କ. ବ.

ବଧିର; ଖଳଜନକ; ନମ୍ର । ବ. ପୁଂ. ବିହଙ୍ଗ; ହଂସ; ବକ । ନ. ମୁକୁଟ ।

ବନ୍ଧୁରା, ବନ୍ଧୂରା, ବଂ. ଅସତୀ । ବ. ସ୍ତ୍ରୀ. ବେଶ୍ୟା ।

ବନ୍ଧୁଳ, ବ. ପୁଂ. (ବନ୍ଧ-ଉଳ)ଅସତୀପୁତ୍ର, ଜାରଜ ସନ୍ତାନ; ବନ୍ଧୁକବୃକ୍ଷ । ବଂ. ନମ୍ର; ସୁନ୍ଦର ।

ବନ୍ଧୂଲ, ବ. (ବନ୍ଧ-ଉଲ) ରଙ୍ଗଣୀଫୁଲ ଗଛ ।

ବନ୍ଧ୍ୟ, ବଂ. (ବନ୍ଧ୍-ଯ) ନିଷ୍ଫଳ; ବନ୍ଧନଯୋଗ୍ୟ ।

ବନ୍ଧ୍ୟା, ବଂ. (ବନ୍ଧ୍ୟ-ଆ) ସନ୍ତାନୋତ୍ପାଦନ ଶକ୍ତି-ହୀନା, ବାଞ୍ଝ; ବନ୍ଧନଯୋଗ୍ୟ ।

ବନ୍ଧ୍ର, ବ. ପୁଂ. (ବନ୍ଧ୍-ର) କୁକ୍ଷି, ଉଦର ।

ବଭ୍ରୀ, ବ. ସ୍ତ୍ରୀ. (ବଭ୍ରୁ=ଶିବ-ଈ) ଦୁର୍ଗା ।

ବଭ୍ରୁ, ବ. ପୁଂ. (ଭୃ=ପାଳନ କରିବା-ଉ) ବିଷ୍ଣୁ; ଶିବ; ଅଗ୍ନି; ନେଉଳ; ଯଦୁବଂଶୀୟ ବ୍ୟକ୍ତିବିଶେଷ; ଦେଶବିଶେଷ; ମୁନିବିଶେଷ । ବଂ. ବିଶାଳ, ବିପୁଳ, ବଡ଼, ପିଙ୍ଗଳବର୍ଣ୍ଣ ।

ବମ୍ବର, ବ. ପୁଂ. (ବମ୍ବ-ର-ଅ) ମଧୁମକ୍ଷିକା ।

ବମ୍ବଲୀ, ବ. ସ୍ତ୍ରୀ. (ବମ୍ବ-ଲ-ଲ-ଈ) ମକ୍ଷିକା ।

ବର୍ବଟ, ବ. ପୁଂ. (ବର୍ବ୍-ଅଟ) ବ୍ରୀହିବିଶେଷ । ବି. ଲମ୍ପଟ ।

ବର୍ବଟୀ, ବ. ସ୍ତ୍ରୀ. (ବର୍ବ୍-ଅଟ-ଈ) ବେଶ୍ୟା, ବାରାଙ୍ଗନା; ବ୍ରୀହିବିଶେଷ ।

ବର୍ବର, ବି. (ବର୍ବ୍-ଅର) ନୀଚ, ମୂର୍ଖ, ଅତି ଅସଭ୍ୟ ।

ବର୍ହ, ବ. ନ. (ବର୍ହ୍-ଅ) ମୟୂରପୁଚ୍ଛ । ପୁଂ. ନ. ପତ୍ର । ପୁଂ. ପକ୍ଷୀ ।

ବର୍ହୀ, ବ. ପୁଂ. (ବର୍ହ-ଇନ୍) ମୟୂର ।

ବଳ, ବ. ପୁଂ. (ବଲ୍-ଅ) ବଳରାମ, କୃଷ୍ଣାଗ୍ରଜ; ବାସୁକି, ଅନନ୍ତ; ଦୈତ୍ୟବିଶେଷ; କାକ; ବରୁଣଗଛ; ସାମର୍ଥ୍ୟ, ପରାକ୍ରମ; ସାର, ଶକ୍ତି; ଭାର; ସ୍ଥୂଳତା; ଦୃଢ଼ତା; ଦେହ; ରୂପ; ଶୁକ୍ର; ରକ୍ତ; ଭୃତ୍ୟ, ସୁହୃତ, ଶ୍ରେଣୀ, ଦ୍ୱିଷତ୍, ଆଟବିକ, ମୌଳ ଏହି ଛପ୍ରକାର ସୈନ୍ୟ । ବି. ବଳବାନ୍; ବଳିଷ୍ଠ ।

ବଳା, ସ୍ତ୍ରୀ. ଅସ୍ତ୍ରବିଦ୍ୟାବିଶେଷ, ବିଶ୍ୱାମିତ୍ର ତାଡ଼କା ବଧ ସମୟରେ ରାମଚନ୍ଦ୍ରଙ୍କୁ ଏହି ବିଦ୍ୟା ପ୍ରଦାନ କରିଥିବାର ରାମାୟଣରେ ଉକ୍ତ ଅଛି ।

ବଳକ୍ଷ, ବ. ପୁଂ. (ବଳ-କ୍ଷୈ-ଅ) ଶ୍ୱେତବର୍ଣ୍ଣ । ବି. ଶ୍ୱେତବର୍ଣ୍ଣବିଶିଷ୍ଟ, । ଯଥା—

> ବଳକ୍ଷପକ୍ଷକୁ ଅଙ୍ଗରେ ବହି ।
> ବହନ ସେ ଦମନାଶନ ବହି । ବୈ, ବ.

ବଳଜ, ବ. ପୁଂ. (ବଳ-ଜନ୍-ଅ) ଧାନ୍ୟରାଶି । ନ. ଶସ୍ୟ; କ୍ଷେତ୍ର; ପୁରଦ୍ୱାର; ଯୁଦ୍ଧ । ବି. ଶକ୍ତିସମ୍ଭୂତ ।

ବଳଜା, ବ. ସ୍ତ୍ରୀ. (ବଳ-ଜା) ଉତ୍ତମା ସ୍ତ୍ରୀ; ଜୁଇ-ଫୁଲ ।

ବଳଦ, ବ. ନ. (ବଳୀବର୍ଦ୍ଦ ଶବ୍ଦଜ) ଯେଉଁମାନେ ଗାଡ଼ି ଓ ହଳପ୍ରଭୃତି ବହନ କରନ୍ତି, ବଳୀବର୍ଦ୍ଦ ।

ବଳଦେବ, ବ. ପୁଂ. (ବଳ-ଦେବ) କୃଷ୍ଣଙ୍କ ବଡ଼ ଭାଇ, ରୋହିଣୀ ପୁତ୍ର; ବାୟୁ ।

ବଳଦ୍ୱିଟ୍, ବ. ପୁଂ. (ବଳ-ଦ୍ୱିଷ୍-୦) ଇନ୍ଦ୍ର, ବଳାରାତି ।

ବଳନସୂଦନ, ବଳଭିଦ୍, ବଳାରାତି, ବ. ପୁଂ. (ବଳ-ନିସୂଦନ, ଭିଦ୍, ଅରାତି) ଇନ୍ଦ୍ର, ଶଚୀପତି ।

ବଳପ୍ରସୂ, ବ. ସ୍ତ୍ରୀ. (ବଳ-ପ୍ରସୂ) ରୋହିଣୀ, ବଳ-ଦେବଙ୍କ ମାତା ।

ବଳଭଦ୍ର, ବ. ପୁଂ. (ବଳ-ଭଦ୍ର) ବଳରାମ; ଅନନ୍ତ; ବଳବାନ୍ ବ୍ୟକ୍ତି ।

ବଳଭଦ୍ରା, ବ. ସ୍ତ୍ରୀ. (ବଳଭଦ୍ର-ଆ) କୁମାରୀ ।

ବଳରାମ, ବ. ପୁଂ. (ବଳ-ରମ୍-ଅ) କୃଷ୍ଣଙ୍କ ବଡ଼ ଭାଇ ।

ବଳବାନ, ବି. (ବଳ-ବତ୍) ବଳୁଆ, ବଳିଷ୍ଠ । ଅ. ଅତିଶୟ ।

ବଳବିନ୍ୟାସ, ବ. ପୁଂ. (ବଳ-ବିନ୍ୟାସ) ସୈନ୍ୟ-ମାନଙ୍କୁ ଶ୍ରେଣୀବଦ୍ଧ କରିବା, ବ୍ୟୂହରଚନା ।

ବଳଶାଳୀ, ବି. (ବଳ-ଶାଲିନ୍) ବଳବାନ୍, ବଳିଷ୍ଠ ।

ବଳସ୍ଥିତି, ବ. ସ୍ତ୍ରୀ. (ବଳ-ସ୍ଥିତି) ଶିବିର, ସୈନ୍ୟା-ବାସ, ସେନାନିବେଶ, ଛାଉଣୀ ।

ବଳହା, ବ. ପୁଂ. (ବଳ-ହନ୍-୦) ଇନ୍ଦ୍ର; ଶ୍ଳେଷ୍ମା, ସର୍ଦ୍ଦି ।

ବଳାକା, ବ. ସ୍ତ୍ରୀ. (ବଳ-ଅକ୍-ଅ, ଆ) କ୍ଷୁଦ୍ର-କାୟସ୍ଥ ବକଶ୍ରେଣୀ, କୁଜିବଗ ।

ବଳାତ୍, ଅ. ବଳପୂର୍ବକ, ହଠାତ୍ ।

ବଳାତ୍କାର, ବ. ପୁଂ. (ବଳ-ଅତ୍-୦ = ବଳାତ୍-କାର) ଜୋର କରିବା । ଯଥା--

> କେଦାରେଶ୍ୱର ଦର୍ଶନେ କଲ ବଳାତ୍କାର ।

ବଳପୂର୍ବକ କରିବା; ଦଣ୍ଡଦାନ ।

ବଳାନୁଜ, ବ. ପୁଂ. (ବଳ-ଅନୁ-ଜ) କୃଷ୍ଣ ।

ବଳାରାତି, ବ. ପୁଂ. (ବଳ-ଅରାତି) ଇନ୍ଦ୍ର ।

ବଳାଶ, ବ. ପୁଂ. (ବଳ-ଅଶ୍-ଅ) ଶ୍ଳେଷ୍ମା, ସର୍ଦ୍ଦି ।

ବଳାହକ, ବ. ପୁଂ. (ବଳ = ଶକ୍ତି-ଆ=ନିଷେ-ଧାର୍ଥ,-ହା=ତ୍ୟାଗ କରିବା-ଅକ) ମେଘ; ପର୍ବତ; ଦୈତ୍ୟବିଶେଷ; ସର୍ପବିଶେଷ; ମୁଥା । (ମେଘ ଅର୍ଥରେ) । ଯଥା—

> ବଳୁଛ ସେହେ ବଳାହକେ ।

ବଲ, ବ. ପୁଂ. (ବଲ୍-ଇ) ବଶ୍ୱେଚନପୂର୍ବଦୈତ୍ୟ; ରାଜସ୍ୱ, କର; ପୂଜାସାମଗ୍ରୀ; ପୂଜା; ଭୂତଯଜ୍ଞ, ଜୀବଗଣଙ୍କୁ ଖାଦ୍ୟଦାନ; ଗୃହରଦଣ୍ଡ । ଲୀ, ସ୍ତ୍ରୀ. ଉଦଖାଦ ସ୍ଥାନରେ ତରଙ୍ଗାୟିତ ମାଂସ, ଜରାବଶ୍ଳଥଚର୍ମ; ଭଙ୍ଗୀ; ଗୁହ୍ୟଦ୍ୱାରର ଅଭ୍ୟ-ନ୍ତରସ୍ଥ ମାଂସପିଣ୍ଡ; ଶରୀରମଧ୍ୟ ରେଖା; ଗୃହ-ଦାରୁବଶେଷ, ଭୁଲଅଖୁଆ; ଓଳ ବା ଛପରର ଶେଷଭାଗ ।

ବଲଚ, ବଂ. (ବଲ-ଇତ) ବଲଯୁକ୍ତ ।

ବଲଦାନ, ବ. ନ. ( ବଲ-ଦାନ ) ଦେବୋ-ଦେଶରେ ପୂଜାର ଉପହାର ଦାନ, ଦେବତା ଉଦ୍ଦେଶରେ ବଧପୂର୍ବକ ପଶୁବଧ ।

ବଲଧ୍ୱଂସୀ, ବ. ପୁଂ. (ବଲ-ଧ୍ୱଂସିନ୍) ବଷ୍ଣୁ, ନାରାୟଣ ।

ବଲନନ୍ଦନ, ବ. ପୁଂ. (ବଲ-ନନ୍ଦନ) ବାଣାସୁର, ବାଣରାଜା ।

ବଲନ୍ଦମ,ବ.ପୁଂ. (ବଲମ୍-ଦମ) ବଲଧ୍ୱଂସୀ, ବଷ୍ଣୁ ।

ବଲପୁଷ୍ଟ, ବ. ପୁଂ. (ବଲ-ପୁଷ୍ଟ) କାକ ।

ବଲଭ, ବଂ. (ବଲ-ଭ) ବଲଯୁକ୍ତ ।

ବଲଭୁକ୍, ବ. ପୁଂ. (ବଲ-ଭୁଜ୍-ଂ) କାକ, ବାୟସ । ଯଥା—

ବଲଭୁକ ଯେସନ, ବନଗ୍ରିସ୍ ମଧ୍ୟେ ବରେ ସ୍ୱନ । ବୈ. ଦ.

ବଲିମନ୍ଦର, ବ. ନ. (ବଲି-ମନ୍ଦର) ଅଧୋଭୁବନ, ପାତାଳପୁର ।

ବଲମାନ୍,ବଂ. (ବଲ-ମତ୍)ବଲବଶିଷ୍ଟ, ବଳନ ।

ବଲମୁଖ, ବଲୀମୁଖ, ବ. ପୁଂ. (ବଲ, ବଲୀ-ମୁଖ) ବାନର, କପି ।

ବଲସଦ୍ମ, ବଲମନ୍ଦର, ବ. ନ. ( ବଲ-ସଦ୍ମନ୍, ମନ୍ଦର ) ପାତାଳ, ରସାତଳ ।

ବଲହା, ବ. ପୁଂ. ( ବଲ-ହନ୍-ଂ ) ବଷ୍ଣୁ, ବଲଧ୍ୱଂସୀ ।

ବଲଷ୍ଠ, ବଳୀୟାନ୍, ବଂ. ( ବଳବତ୍-ଇଷ୍ଠ, ଇୟସ୍ ) ଅତଶୟ ବଳବାନ୍ ।

ବଲୀ, ବଂ. ( ବଳ-ଇନ୍ ) ବଳବାନ୍ । ବ. ପୁଂ. ବଳରାମ; ଉଷ୍ଟ୍ର; ମହଷ; ଶୂକର; ବୃଷଭ ।

ବଲୀକ, ବ. ନ. (ବଲ-ଈକ ) ପଟଳର ପ୍ରାନ୍ତ; ଛାଞ୍ଚ ।

ବଲୀବର୍ଦ୍ଦ, ବ. ପୁଂ. (ବଲ=ଶକ୍ତି-ବର୍ଦ୍ଧ=ବର୍ଦ୍ଧନ, ଲ=ଲୀ, ଧ ସ୍ଥାନରେ ଦ ) ବଳଦ; ଷଣ୍ଢ ।

ବଲ୍ୟ, ବ. ନ. (ବଲ୍-ଯ) ପ୍ରଧାନ ଧାତୁ, ଶୁକ୍ର । ବଂ. ବଲକାରକ ।

ବହଳ, ବଂ. ( ବନ୍ହ୍-ଅଳ ) ଅନେକ, ଅଧିକ; ଦୃଢ଼, କଠିନ । ବ. ପୁଂ. ପୋତ, ନୌକା; (ଦେଶଜ) ମୋଟା ।

ବହର, ବ. (ଦେଶଜ) କାଲ ।

ବହୁ, ବଂ. ( ବନ୍ହ୍-ଉ ) ଅନେକ, ଅଧିକ; ପ୍ରଚୁର । ଯଥା—

କାନ୍ଦସ ବହୁ ପ୍ରକାମ୍ନେ ଛଳର । ବ. ବ.

ବହୁକ, ବ. ପୁଂ. ( ବହୁ-କ ) କଙ୍କଡ଼ା । ବଂ. ଖନନକାରୀ ।

ବହୁକର, ବ. ପୁଂ. (ବହୁ-କୃ-ଅ) ମାର୍ଜ୍ଜନକାରୀ ।

ବହୁକରୀ, ବ. ସ୍ତ୍ରୀ. ( ବହୁ-କୃ-ଅ-ଈ ) ସମାର୍ଜ୍ଜନୀ, ଝାଡ଼ୁ ।

ବହୁକ୍ଷମ, ବଂ. ( ବହୁ-କ୍ଷମ୍-ଅ ) ସହଷ୍ଣୁ, ସହନଶୀଳ । ବ. ପୁଂ. ଜୈନମାନଙ୍କର ଉପାସ୍ୟ ମୁନିବଶେଷ ।

ବହୁଜ୍ଞ, ବଂ. ( ବହୁ-ଜ୍ଞା-ଅ ) ବହୁଦର୍ଶୀ, ଯେ ଅନେକ ବଷୟ ଜାଣେ ।

ବହୁଧା, ଅଂ. (ବହୁ-ଧା) ଅନେକ ପ୍ରକାର ।

ବହୁତୃଣ, ବ. ନ. ( ବହୁ ତୃଣ ) ତୃଣବତ୍, ତୃଣତୁଲ୍ୟ । ବଂ. ତୃଣବହୁଳ ପ୍ରଦେଶ ।

ବହୁତ୍ର, ଅଂ. (ବହୁ-ତ୍ର) ଅନେକ ସ୍ଥଳରେ ।

ବହୁତ୍ୱକ୍କ, ବହୁତ୍ୱକ୍, ( ବହୁ-ତ୍ୱଚ୍-କ, ବହୁ-ତ୍ୱଚ୍-ଂ ) ଭୂର୍ଜ୍ଜପତ୍ରଗଛ ।

ବହୁଦର୍ଶୀ, ବଂ. ( ବହୁ-ଦୃଶ-ଇନ୍ ) ବହୁଜ୍ଞ, ବଜ୍ଞ ।

ବହୁଧା, ଅଂ. ( ବହୁ-ଧା ) ବହୁ ପ୍ରକାରେ; ବହୁବାର; ବହୁବିଧ ।

ବହୁଧାର, ବି. ନ. (ବହୁ-ଧାର) ଅଶନି, ବଜ୍ର ।

ବହୁନାଦ, ବି. ପୁଂ. (ବହୁ-ନାଦ) ଶଙ୍ଖ ।

ବହୁପଟୁ, ବିଂ. (ବହୁ-ପଟୁ) ଈଷଦୂନପଟୁ, ପଟୁକଳ୍ପ, ଅନେକ କାର୍ଯ୍ୟରେ ଦକ୍ଷ ।

ବହୁପତ୍ର, ବି. ପୁଂ. (ବହୁ-ପତ୍ର) ପଲାଣ୍ଡୁ, ପିଆଜ । ବିଂ. ଅନେକ ପତ୍ରବିଶିଷ୍ଟ ।

ବହୁପର୍ଣ୍ଣୀ, ବି. ସ୍ତ୍ରୀ. ( ବହୁ-ପର୍ଣ୍ଣ-ଈ ) ସପ୍ତଚ୍ଛଦବୃକ୍ଷ, ଛତିଅନାଗଛ । ବିଂ. ଅନେକ ପତ୍ରବିଶିଷ୍ଟ ।

ବହୁପାତ୍, ବହୁପାଦ, ବି.ପୁଂ. (ବହୁ-ପାତ୍,ପାଦ) ବଟବୃକ୍ଷ, କାରଣ ଏହି ବୃକ୍ଷର ଶାଖାରୁ ଓହଳ ସବୁ ଓହ୍ଲାଇ ନଜେ ନଜେ ଗୋଟିଏ ଗୋଟିଏ ପୃଥକ୍ ବୃକ୍ଷ ହୁଅନ୍ତି ।

ବହୁପ୍ରଜ, ବି. ପୁଂ. ( ବହୁ-ପ୍ରଜା-ଅ ) ଶୂକର; ତୃଣବିଶେଷ ।

ବହୁପ୍ରଦ, ବିଂ. (ବହୁ-ପ୍ରଦ) ବଦାନ୍ୟ, ଅତିଶୟ ଦାତା ।

ବହୁପ୍ରସୂ, ବିଂ. (ବହୁ-ପ୍ରସୂ) ଯେଉଁ ସ୍ତ୍ରୀ ଅନେକ ସନ୍ତାନ ପ୍ରସବ କରିଅଛି ।

ବହୁଫଳ, ବି. ପୁଂ. ( ବହୁ-ଫଳ ) କଦମ୍ବବୃକ୍ଷ । ବିଂ. ବହୁଫଳବିଶିଷ୍ଟ, ଉର୍ବର ।

ବହୁଫଳୀ, ବି. ସ୍ତ୍ରୀ. ଅଁଳାବୃକ୍ଷ ।

ବହୁଭାଷୀ, ବିଂ. ( ବହୁ-ଭାଷୀ ) ବାଚାଳ, ଯେଉଁ ବ୍ୟକ୍ତି ଅନେକ କଥା କହେ ।

ବହୁମତ, ବିଂ. (ବହୁ-ମନ୍-ତ) ଅତିଶୟ ଆଦୃତ ।

ବହୁମଳ, ବି. ପୁଂ. (ବହୁ-ମଳ) ସୀସକ, ସୀସା । ବିଂ. ଅନେକ ମଳଯୁକ୍ତ ।

ବହୁମାନ, ବି. ପୁଂ. (ବହୁ-ମାନ) ଅତିଶୟ ଆଦର; ଅତିପତ୍ର ।

ବହୁମୂର୍ଦ୍ଧା, ବିଂ. (ବହୁ-ମୂର୍ଦ୍ଧନ୍) ଯାହାର ଅନେକ ମସ୍ତକ । ବି. ପୁଂ. ବିଷ୍ଣୁ ।

ବହୁମୂଲ୍ୟ, ବିଂ. ( ବହୁ-ମୂଲ୍ୟ ) ମହାର୍ଘ, ଯାହାର ମୂଲ୍ୟ ଅଧିକ ।

ବହୁରୂପ, ବି. ପୁଂ. ( ବହୁ-ରୂପ ) ଝୁଣା; ବ୍ରହ୍ମା; ବିଷ୍ଣୁ; ଶିବ; କାମଦେବ; କୃକଳାସ; କେଶ । ବିଂ. ନାନାରୂପଧାରୀ ।

ବହୁରେତାଃ, ବି. ପୁଂ. (ବହୁ-ରେତସ୍) ବ୍ରହ୍ମା ।

ବହୁରୋମା, ବି. ପୁଂ. ( ବହୁ-ରୋମନ୍ ) ମେଷ, ମେଣ୍ଢା । ବିଂ. ବହୁଲୋମଯୁକ୍ତ ।

ବହୁଳ, ବିଂ. (ବହୁ-ଲା-ଅ) ଅନେକ, ଅଧିକ; କୃଷ୍ଣବର୍ଣ୍ଣବିଶିଷ୍ଟ । ବି. ପୁଂ. କୃଷ୍ଣପକ୍ଷ; କୃଷ୍ଣବର୍ଣ୍ଣ । ନ. ଆକାଶ ।

ବହୁଳା, ବି. ସ୍ତ୍ରୀ. (ବହୁ-ଲା-ଅ-ଆ) ଗାଈ; ଏଲାଇଚ; ନୀଳଗଛ ।

ବହୁଳୀକୃତ, ବିଂ. (ବହୁଳ-କୃତ, ଈ ଆଗମ) ବିସ୍ତାରିତ; ଧାନ୍ୟାଦି ନିସ୍ତୁଷ କରିବା ।

ବହୁବଚନ, ବି. ନ. ( ବହୁ-ବଚନ ) ଯାହାଦ୍ୱାରା ଅନେକ ବସ୍ତୁ ବୁଝାଯାଏ ।

ବହୁବଳ, ବି. ପୁଂ. (ବହୁ--ବଳ) ସିଂହ । ବିଂ. ଅତିଶୟ ବଳବାନ୍ ।

ବହୁବିଧ, ବିଂ. (ବହୁ-ବିଧ) ନାନାପ୍ରକାର, ବିବିଧ ।

ବହୁବୀଜ, ବି. ନ. (ବହୁ-ବୀଜ) ଆତଫଳ । ବିଂ. ବହୁବୀଜବିଶିଷ୍ଟ ।

ବହୁବ୍ରୀହି, ବି. ପୁଂ. (ବହୁ-ବ୍ରୀହି) ସମାସବିଶେଷ, ଯେଉଁ ଦୁଇ ପଦରେ ସମାସ କରାଯାଏ ସମସ୍ତ ପଦ ଯେବେ ତାହାକୁ ନ ବୁଝାଇ ଅନ୍ୟ ପଦର ବିଶେଷଣ ହୁଏ । ବିଂ. ବହୁଧାନ୍ୟବିଶିଷ୍ଟ ।

ବହୁଶଃ, କ୍ରି. ବିଂ. ଅଂ. (ବହୁ-ଶସ୍) ବାହୁଲ୍ୟରୂପେ; ଅନେକ ଥର ।

ବହୁଶ୍ରୁତ, ବିଂ. (ବହୁ-ଶ୍ରୁତ) ସୁଶିକ୍ଷିତ, ସୁପଣ୍ଡିତ; ବେଦାଦି ଶାସ୍ତ୍ରଜ୍ଞ ।

ବହୁସାର, ବି. ପୁଂ. (ବହୁ-ସାର) ଖଦିରବୃକ୍ଷ ।

ବହୁସୂ, ବି. ସ୍ତ୍ରୀ. (ବହୁ-ସୂ) ଶୂକରୀ; ବହୁପ୍ରସୂ ।

ବହୁସୂତି, ବି. ସ୍ତ୍ରୀ. ( ବହୁ-ସୂ-ତି ) ବହୁ ବତ୍ସ ପ୍ରସବିନୀ ଗାଈ ।

ବହ୍ବସ୍ଵନ, ବ. ପୁଂ. (ବହୁ-ସ୍ଵନ) ପେଚକ, ପେଚ୍ଚ ।

ବହ୍ବପତ୍ୟ, ବ. ପୁଂ. (ବହୁ-ଅପତ୍ୟ) ଶୂକର; ମୂଷିକ । ବିଂ. ବହୁସନ୍ତାନବିଶିଷ୍ଟ ।

ବହ୍ବାଶୀ, ବିଂ. (ବହୁ-ଅଶିନ) ବହୁଭୋଜନଶୀଳ; ବହୁ ଇଚ୍ଛାବିଶିଷ୍ଟ ।

ବାଡ଼ବ, ବ. ପୁଂ. (ବଡ଼ବା-ଅ) ବଡ଼ବାର ମୁଖାଗ୍ନି, ସାମୁଦ୍ରିକଅଗ୍ନି; ବ୍ରାହ୍ମଣ; ବଡ଼ବାସମୂହ; ଜାତିବିଶେଷ । ପୁଂ. ନ. ପାତାଳ । ବିଂ. ବଡ଼ବା-ସମ୍ବନ୍ଧୀୟ, (ସାମୁଦ୍ରିକ ଅଗ୍ନି ଅର୍ଥରେ) । ଯଥା—

ବାଡ଼ବ ଅନଳ ଏହା କରଇ ଧାରଣ । ବ. ବ.

ବାଡ଼ବାଗ୍ନି, ବାଡ଼ବାନଳ, ବ. ପୁଂ. (ବଡ଼ବାଗ୍ନି, ବଡ଼ବାନଳ-ଅ ) ସମୁଦ୍ରସ୍ଥ ଅଗ୍ନି; ନରକବିଶେଷ ।

ବାଡ଼ବେୟ, ବ. ପୁଂ. (ବଡ଼ବା-ଏୟ) ଅଶ୍ୱିନୀକୁମାରଦ୍ୱୟ । ପୁଂ. ସମୁଦ୍ରସ୍ଥଅଗ୍ନି । ବିଂ.ବଡ଼ବା-ସମ୍ବନ୍ଧୀୟ ।

ବାଡ଼ବ୍ୟ, ବିଂ. (ବଡ଼ବା=ବ୍ରାହ୍ମଣ-ଯ) ବଡ଼ବା-ସମ୍ବନ୍ଧୀୟ । ବ. ନ. ବ୍ରାହ୍ମଣସମୂହ ।

ବାଣ, ବ. ପୁଂ. (ବଣ୍=ଶବ୍ଦ କରିବା-ଅ) ଶର, ଶର । ଯଥା—

ବାଣୀ ବାଣ ମୋହର ହୋଇବ । ବୈ. ବ.

ଅଗ୍ନି; ବଳିରାଜାର ଜ୍ୟେଷ୍ଠ ପୁତ୍ର, ବାଣରାଜା; ଶବ୍ଦ; କବଚବିଶେଷ; ଗୋସ୍ତନ ।

ବାଣିଜ, ବ. ପୁଂ. (ବଣିଜ୍-ଅ) ବଣିକ, କ୍ରୟ-ବିକ୍ରୟକାରୀ; ବାଡ଼ବାଗ୍ନି ।

ବାଣିଜକ, ବ. ପୁଂ. (ବଣିଜ୍-ଇକ) ବଣିକ, କ୍ରୟ-ବିକ୍ରୟକାରୀ ।

ବାଣିଜ୍ୟ, ବ. ନ. (ବଣିଜ୍-ଯ) ବଣିଗ୍‌ବୃତ୍ତି, କ୍ରୟ-ବିକ୍ରୟ । ଯଥା —

ଗ୍ରାହକ ପ୍ରେମ ବାଣିଜ୍ୟପସରା,
କାମୀ କାମଦା ଚିନ୍ତାମଣି ପସ । ବ. ଚ.

ବାଣିଜ୍ୟବାୟୁ, ବ. (ବାଣିଜ୍ୟ-ବାୟୁ) ଈଶାନକୋଣ ଓ ଅଗ୍ନିକୋଣରୁ ଯେଉଁ ବାୟୁ ନିୟତ ବହଇ, ଏହାଦ୍ଵାରା ବାଣିଜ୍ୟର ସୁବିଧା ହୁଅଇ, କାରଣ ଏହି ବାୟୁ ଜାହାଜାଦି ଗମନାଗମନ ପକ୍ଷରେ ଅତ୍ୟନ୍ତ ସାହାଯ୍ୟ କରଇ ।

ବାଦର, ବିଂ. (ବଦର-ଅ) କାର୍ପାସନିର୍ମିତ ବସ୍ତ୍ରାଦି । ବ. ପୁଂ. କୋଳିଗଛ ।

ବାଦରା, ବ. ସ୍ତ୍ରୀ. (ବଦର-ଅ-ଆ) କପାଗଛ ।

ବାଦରାୟଣ, ବ. ପୁଂ. (ବାଦର-ଅୟନ) ବେଦବ୍ୟାସ, ବ୍ୟାସଦେବ ।

ବାଦରାୟଣି, ବ. ପୁଂ. (ବାଦରାୟଣ-ଇ) ବ୍ୟାସଦେବପୁତ୍ର ଶୁକଦେବ ।

ବାଦାମ, (ଯାବନିକ, ସଂସ୍କୃତ=ବାତାମ୍ର) ସ୍ୱନାମଖ୍ୟାତ ଫଳବିଶେଷ ।

ବାଧ, ବ. ପୁଂ. (ବାଧ୍-ଅ) ବ୍ୟାଘାତ, ପ୍ରତିବନ୍ଧ, ବାରଣ, ରୋଧ; ଉପଦ୍ରବ; ପୀଡ଼ା ।

ବାଧକ, ବିଂ. (ବାଧ୍-ଅକ) ପ୍ରତିବନ୍ଧକ,ନିବାରକ; ବାଧାଦାୟକ । ବ. ପୁଂ. ସ୍ତ୍ରୀଲୋକମାନଙ୍କର ସନ୍ତାନ ପ୍ରସବ ପ୍ରତିବନ୍ଧକ ରୋଗବିଶେଷ ।

ବାଧନ, ବ. ନ. (ବାଧ୍-ଅନ) ଦୁଃଖ, କଷ୍ଟ, ପୀଡ଼ା; ପ୍ରତିବନ୍ଧ; ଉପଦ୍ରବ ।

ବାଧା, ବ. ସ୍ତ୍ରୀ. (ବାଧ୍-ଆ) କ୍ଳେଶ, ଦୁଃଖ; ପ୍ରତିବନ୍ଧ; ଉପଦ୍ରବ ।

ବାଧିତ, ବିଂ. (ବାଧ୍-ତ) ପୀଡ଼ିତ, ବ୍ୟଥିତ; ନିବାରିତ; ବ୍ୟାହତ; ବଶୀଭୂତ, ଆୟତ୍ତ,ବଶ ।

ବାଧ୍ୟ, ବିଂ. (ବାଧ୍-ଯ) ବାରଣଯୋଗ୍ୟ, ନିଷିଦ୍ଧ; ପୀଡ଼ନୀୟ; ବଶୀଭୂତ ।

ବାଧ୍ୟତା, ବ. ସ୍ତ୍ରୀ. ( ବାଧ୍ୟ-ତା ) ବଶ୍ୟତା, ନିଷିଦ୍ଧତା ।

ବାନ୍ଧକିନେୟ, ବ. ପୁଂ. (ବନ୍ଧକୀ =ଅସତୀ-ଏୟ) ଅସତୀ ପୁତ୍ର, ଜାରଜ ।

ବାନ୍ଧବ, ବ. ପୁଂ. (ବନ୍ଧୁ-ଅ) ବନ୍ଧୁ; ମିତ୍ର; ଆତ୍ମୀୟ, ସ୍ୱଜନ; ଭ୍ରାତା ।

ବାଭ୍ରବୀ, ବ. ସ୍ତ୍ରୀ. (ବଭ୍ରୁ=ଶିବ-ଅ-ଈ) ଦୁର୍ଗା ।

ବାର୍ବଟୀର, ବ. ପୁଂ. ( ବର୍ବଟୀ=ବେଶ୍ୟା-ର ) ଅସତୀପୁତ୍ର; ଆମ୍ରପଲ୍ଲବ; ଦସ୍ତା, ଟିନ ।

ବାଳ, ବ. ପୁଂ. (ବଲ୍-ଅ) ବାଳକ; ଲାଙ୍ଗୁଳ; କେଶ; ଗନ୍ଧଦ୍ରବ୍ୟବିଶେଷ । ବି. ଅଜ୍ଞାନ, ମୂର୍ଖ; ନୂତନ । ଳା-ସ୍ତ୍ରୀ. ନୂତନା ସ୍ତ୍ରୀ ।

ବାଳକ, ବ. ପୁଂ. (ବାଳ-କ) ଶିଶୁପୁତ୍ର; ବଳୟ, ବଳା; ଅଙ୍ଗୁରୀୟକ, ମୁଦି; ଲାଙ୍ଗୁଳ; ଗନ୍ଧଦ୍ରବ୍ୟବିଶେଷ ।

ବାଳକୃମି, ବ. ପୁଂ. (ବାଳ-କୃମି) କେଶକୀଟ, ଉକୁଣୀ ।

ବାଳଖିଲ୍ୟ,ବାଳଖିଲ୍ୟ, ବ. ପୁଂ. ବୃଦ୍ଧାଙ୍ଗୁଷ୍ଠ ପରିମାଣ ମୁନିବିଶେଷ; ବ୍ରହ୍ମାଙ୍କର ଶରୀରସ୍ଥ ଲୋମରୁ ଷାଠିଏ ହଜାର ବାଳଖିଲ୍ୟ ଜନ୍ମିଥିଲେ ।

ବାଳଗ୍ରହ, ବ. ପୁଂ. (ବାଳ-ଗ୍ରହ) ବାଳକର ପୀଡ଼ାଦାୟକ ଗ୍ରହବିଶେଷ ।

ବାଳଚର୍ଯ୍ୟ, ବ. ପୁଂ. (ବାଳ-ଚର୍ଯ୍ୟ=ଚରିତ) କାର୍ତ୍ତିକେୟ । ନ. ବାଳକର ଚରିତ ।

ବାଳତନ୍ତ୍ର, ବ. ନ. (ବାଳ-ତନ୍ତ୍ର) ବାଳଚିକିତ୍ସା ।

ବାଳଧନ, ବ. ନ. (ବାଳ-ଧନ) ନାବାଳକର ଧନ, ଅପ୍ରାପ୍ତବୟସ୍କ ବାଳକର ସମ୍ପତ୍ତି ।

ବାଳଧି, ବ. ପୁଂ. (ବାଳ-ଧା-ଇ) ସଲୋମ ଲାଙ୍ଗୁଳ, ପୁଚ୍ଛ; ଚାମର ।

ବାଳପତ୍ର, ବ. ପୁଂ. (ବାଳ-ପତ୍ର) ଖଦିର, ଖଇର ।

ବାଳପାଶ୍ୟା, ବ. ସ୍ତ୍ରୀ. (ବାଳ-ପାଶ-ଯ) ଲଲାଟଭୂଷଣ ।

ବାଳପୁଷ୍ପୀ, ବ. ସ୍ତ୍ରୀ. (ବାଳ=କେଶ-ପୁଷ୍ପ=ଫୁଲ-ଈ) ଯୂଥିକା, ଯୁଇଗଛ ।

ବାଳଭଦ୍ରକ, ବ. ପୁଂ. ବିଷବିଶେଷ ।

ବାଳମୂଷିକା, ବ. ସ୍ତ୍ରୀ. (ବାଳ=କ୍ଷୁଦ୍ର-ମୂଷିକା) କ୍ଷୁଦ୍ରମୂଷିକ, ଛୁଞ୍ଚିଅମୂଷା ।

ବାଳରାଜ, ବ. ନ. (ବାଳ-ରାଜ) ବୈଦୂର୍ଯ୍ୟମଣି ।

ବାଳବତ୍ସ, ବ. ପୁଂ. (ବାଳ-ବତ୍ସ) କପୋତ, ପାରା ।

ବାଳବାୟଜ, ବ. ନ. (ବାଳବାୟ=ଦେଶବିଶେଷ-ଜ) ବୈଦୂର୍ଯ୍ୟମଣି ।

ବାଳବାହ୍ୟ, ବ. ପୁଂ. (ବାଳ=କେଶ-ବହ=ଚେଷ୍ଟା କରିବା-ଯ) ବନ୍ୟ ଛାଗଳ ।

ବାଳବ୍ୟଜନ, ବ. ନ. (ବାଳ-ବ୍ୟଜନ) ଚାମର, ପ୍ରକୀର୍ଣ୍ଣକ ।

ବାଳସୂର୍ଯ୍ୟ, ବ. ନ. ବୈଦୂର୍ଯ୍ୟମଣି । ପୁଂ. ପ୍ରାତଃକାଳୀନ ସୂର୍ଯ୍ୟ ।

ବାଳହସ୍ତ, ବ. ପୁଂ. (ବାଳ-ହସ୍ତ) କେଶଗୁଚ୍ଛ; ସଲୋମ ଲାଙ୍ଗୁଳ, ବାଳଧି ।

ବାଳାର୍କ, ବ. ପୁଂ. (ବାଳ-ଅର୍କ) ନବୋଦିତ ସୂର୍ଯ୍ୟ, ପ୍ରାତଃକାଳୀନ ସୂର୍ଯ୍ୟ ।

ବାଳି, ବାଳୀ, ବ. ପୁଂ. (ବାଳ-ଇ, ଇନ୍) ବାନରରାଜବିଶେଷ, କିଷ୍କିନ୍ଧ୍ୟାପତି, ଇନ୍ଦ୍ରପୁତ୍ର, କପି ।

ବାଳିନୀ, ବ. ସ୍ତ୍ରୀ. (ବାଳ-ଇନ୍-ଈ) ଅଶ୍ୱିନୀ ନକ୍ଷତ୍ର ।

ବାଳିଶ, ବି. ଅଜ୍ଞାନ । ଯଥା—

> ମୂର୍ଖ ହୋଇଲ ଏହୁମନେ ବାଳିଶ ।

ଶିଶୁ । ଲ. ଉପାଧାନ, ତକିଆ । ଯଥା—

> ବେଣ ଫେରାଇ ଥିଲି ମୁଁ ଦୁଇ ଦେଖି,
> ବଡ ବାଲିଶ ପଛେ ରହିଲି ସଖି ।

ବାଳିହନ୍ତା, ବାଳିହା, ବ. ପୁଂ. (ବାଳି-ହନ୍ତୃ, ହନ୍) ରାମଚନ୍ଦ୍ର ।

ବାଲୀଶ, ବ. ପୁଂ. ମୂତ୍ରକୃଚ୍ଛ୍ରରୋଗ ।

ବାଲୁକା, ବ. ସ୍ତ୍ରୀ. (ବଲ୍-ଉ-କ-ଆ) ସିକତା, ବାଲି । ଯଥା—

> ପୂଜନ୍ତି ଦେବ ଶଙ୍କରେ ବାଲୁକା ମନ୍ଦିରେ । ବ. ବ.

କର୍ପୂର ।

ବାଲେୟ, ବ. ପୁଂ. (ବାଳ-ଏୟ) ଗର୍ଦ୍ଦଭ; ଦୈତ୍ୟବିଶେଷ । ବି. ବଳିକାର ଉପଯୁକ୍ତ; ମୃଦୁ, କୋମଳ; ବାଳକର ଉପଯୁକ୍ତ; ବାଳକର ହିତକର ।

ବାଲ୍ୟ, ବ. ନ. (ବାଳ-ଯ) ଶୈଶବ, ବାଲ୍ୟାବସ୍ଥା, ୧୬ ବର୍ଷ ପର୍ଯ୍ୟନ୍ତ । ଯଥା—

> ବାଲ୍ୟେ ଲଭିଥିଲେ ସ୍ୱାମୀ ଶତଶୃଙ୍ଗ ଶାପ । ବ. ବ.

ବାଷ୍ପ,ବାଷ୍ପ, ବି. ପୁଂ. ( ବାଧ୍-ପ, ଧ୍ = ଷ୍ ) ଅଶ୍ରୁ, ନେତ୍ରଜଳ; ଉଷ୍ମା; ସୂକ୍ଷ୍ମ ଜଳକଣା; କଣ୍ଠବାଷ୍ପ ।

ବାଷ୍ପପୋତ, ବାଷ୍ପୀୟପୋତ, ବି. କଳ ଜାହାଜ ।

ବାଷ୍ପମାନଯନ୍ତ୍ର, ବି. ଯେଉଁ ଯନ୍ତ୍ରରେ ବାୟୁସ୍ଥ ବାଷ୍ପର ପରିମାଣ ନିରୂପିତ ହୁଏ ।

ବାଷ୍ପଶକଟ, ବାଷ୍ପୀୟରଥ, ବି. କଳଗାଡି ।

ବାହୁ, ବି. ପୁଂ. (ବାଧ୍-ଉ, ଧ=ହ) ଭୁଜ କକ୍ଷଠାରୁ ଅଙ୍ଗୁଳିର ଅଗ୍ରଭାଗ ପର୍ଯ୍ୟନ୍ତ ଅବୟବ ।

ବାହୁକ, ବି. ପୁଂ. (ବାହୁ-କ) ସାରଥି-ବେଶଧାରୀ ନଳରାଜା; କପି । ବିଂ. ଦାସ, ଅଧୀନ ।

ବାହୁକୁନ୍ଥ, ବି. ପୁଂ. (ବାହୁ-କୁନ୍ଥ) ପକ୍ଷ, ଡେଣା ।

ବାହୁଜ, ବି. ପୁଂ. (ବାହୁ-ଜ) କ୍ଷତ୍ରିୟ, କାରଣ ଏମାନେ ବ୍ରହ୍ମାଙ୍କର ବାହୁରୁ ଉତ୍ପନ୍ନ ହୋଇଥିଲେ; ଶୁକପକ୍ଷୀ ।

ବାହୁଡ଼ା, ବିଂ. (ଦେଶଜ) ଜଗନ୍ନାଥଙ୍କର ଯାତ୍ରାବିଶେଷ; ଫେରିବା ।

ବାହୁଡିବା, କ୍ରି. (ଦେଶଜ) ଫେରି ଆସିବା । ଯଥା—

ଅସିଲେଣି ବୀର ଶିବିରେ ବାହୁଡ଼ି ।

ବାହୁତ୍ରାଣ, ବି. ନ. (ବାହୁ-ତ୍ରୈ-ଅନ) ଅସ୍ତ୍ରାଘାତ ନିବାରଣ ନିମିତ୍ତ ବାହୁରେ ବଦ୍ଧ ଲୌହମୟ ଆବରଣ ।

ବାହୁଦନ୍ତୀ, ବି. ପୁଂ. (ବାହୁ-ଦନ୍ତ-ଇନ୍) ଇନ୍ଦ୍ର ।

ବାହୁଦା, ବି. ସ୍ତ୍ରୀ. ( ବାହୁ-ଦା ) ନଦୀବିଶେଷ, ଏହା ହିମାଳୟଠାରୁ ନିର୍ଗତ ହୋଇଅଛି; କଥିତ ଅଛି ଯେ ବାହୁଦା ନାମରେ ଜଣେ ମୁନି ଏହି ନଦୀରେ ଅବଗାହନ କରି ତାହାଙ୍କର ଛିନ୍ନ ହସ୍ତ ପୁନଃପ୍ରାପ୍ତ ହୋଇଥିଲେ ବୋଲି ଏହାର ନାମ ବାହୁଦା ହୋଇଅଛି ।

ବାହୁମୂଳ, ବି. ନ. ( ବାହୁ-ମୂଳ ) ଦୋର୍ମୂଳ, କକ୍ଷ, କାଖ ।

ବାହୁଯୁଦ୍ଧ, ବି. ନ. (ବାହୁ-ଯୁଦ୍ଧ) ମଲ୍ଲଯୁଦ୍ଧ ।

ବାହୁଲ, ବି. ପୁଂ. ( ବାହୁଲୀ-ଅ ) କାର୍ତ୍ତିକମାସ; (ବହୁଳ=ଅଗ୍ନି-ଅ) ଅଗ୍ନି; (ବାହୁ-ଲ) ବାହୁତ୍ରାଣ; (ବହୁଳ=ଅନେକ-ଅ) ବହୁଳତ୍ୱ, ଅନେକତ୍ୱ ।

ବାହୁଲେୟ, ବି.ପୁଂ. (ବହୁଳା-ଏୟ) କାର୍ତ୍ତିକେୟ, ଷଡ଼ାନନ । ଯଥା—

ବାହୁଲେୟ ରଭୂ-ଅନନେ ଗାୟନ କରୁଛନ୍ତି ପ୍ରତାପନ । ବ, ତ,

ବାହୁଲ୍ୟ, ବି. ନ. (ବହୁଳ-ଯ) ଆଧିକ୍ୟ, ପ୍ରାଚୁର୍ଯ୍ୟ ।

ବିନ୍ଦୁ, ବି. ପୁଂ. (ବିନ୍ଦ୍-ଉ) ଦ୍ରବଦ୍ରବ୍ୟର କଣା; ଛିଦ୍ରଚିହ୍ନ; ଅନୁସ୍ୱାର; ଭ୍ରୂମଧ୍ୟ; ଯାହାର ଅବସ୍ଥିତି ଅଛି କିନ୍ତୁ ବିସ୍ତୃତି ନାହିଁ ।

ବିବି, (ହିନ୍ଦୀ) ମାନ୍ୟା ସ୍ତ୍ରୀଲୋକ, ସ୍ତ୍ରୀ ।

ବିଭ୍ରତ୍, ବିଂ. (ଭୃ-ଅତ୍ ) ଧାରଣକାରୀ; ପୋଷଣକର୍ତ୍ତା ।

ବୀଭତ୍ସ, ବୀଭତ୍ସା, ବିଂ. (ବଧ୍=ନିନ୍ଦା କରିବା-ସ, ଦ୍ୱିତ୍ୱ) ଅତ୍ୟନ୍ତ ଘୃଣାକର, ଅତି କଦର୍ଯ୍ୟ; କ୍ରୂର; ପାପୀ । ବି. ପୁଂ. ରସବିଶେଷ, ଜୁଗୁପ୍ସା ଯେଉଁ ରସର ସ୍ଥାୟିଭାବ ।

ବୀଭତ୍ସୁ, ବି. ପୁଂ. ( ବୀଭତ୍ସ ଦେଖ-ଉ ) ଅର୍ଜ୍ଜୁନ, ପାଣ୍ଡୁ ରାଜାଙ୍କର ତୃତୀୟ ପୁତ୍ର ।

ବୁକ୍କ, ବି. କ୍ଲି. (ବୁକ୍କ୍-ଅ) ବକ୍ଷସ୍ଥଳ, ଛାତି । ପୁଂ. ଛାଗ ।

ବୁଦ୍ଧ, ବି. ପୁଂ. (ବୁଧ୍-ତ) ବିଷ୍ଣୁଙ୍କର ଅବତାରବିଶେଷ, ବୌଦ୍ଧମତପ୍ରଣେତା । ବିଂ. ବିଦିତ, ଜ୍ଞାତ; ଜାଗରିତ ।

ବୁଦ୍ଧି, ବି. ସ୍ତ୍ରୀ. (ବୁଧ୍-ତି) ଜ୍ଞାନ, ବୋଧ, ନିଶ୍ଚୟାତ୍ମିକା ମନୋବୃତ୍ତିବିଶେଷ; ଅନ୍ତଃକରଣ ।

ବୁଦ୍ଧିଜୀବୀ, ବିଂ. ( ବୁଦ୍ଧି-ଜୀବ୍-ଇନ୍ ) ବୁଦ୍ଧିମାନ୍, ଜ୍ଞାନୀ ।

ବୁଦ୍ଧିମାନ୍, ବିଂ. (ବୁଦ୍ଧି-ମତ୍) ବୁଦ୍ଧିବିଶିଷ୍ଟ, ଜ୍ଞାନୀ ।

ବୁଦ୍ଧିବୃତ୍ତି, ବି. ସ୍ତ୍ରୀ. ବୁଦ୍ଧିର ଧର୍ମ ।

ବୁଦ୍ଧିସହାୟ, ବି. ପୁଂ. ( ବୁଦ୍ଧି-ସହାୟ ) ମନ୍ତ୍ରୀ, ପରାମର୍ଶଦାତା ।

ବୁଦ୍ଧୀନ୍ଦ୍ରିୟ, ବି. ନ. ( ବୁଦ୍ଧି-ଇନ୍ଦ୍ରିୟ ) ମନଃ, ଚକ୍ଷୁଃ, ଶ୍ରୋତ୍ର, ନାସିକା, ଜିହ୍ୱା, ତ୍ୱକ୍ ।

ବୁଲ୍‌ବୁଦ୍, ବ.ପୁଂ.(ବୁଦ୍-ବୁଦ୍)ଜଳବିନ୍ଦୁ । ଯଥା—

କ୍ଷଣକେ ବୁଝିଲି ସ୍ୱାନ ଗର୍ବ ଦମ୍ଭ ଅଭିମାନ,
ହସ ରସ ଅଡମ୍ବର ବୁଦ୍‌ବୁଦ୍ ଆକାରେ । କ. ବ,

ବୁଧ, ବ. ପୁଂ. (ବୁଧ୍-ଅ) ଚନ୍ଦ୍ରଙ୍କର ପୁତ୍ର, ବୁଧ-ଗ୍ରହ; ପଣ୍ଡିତ; ସୂର୍ଯ୍ୟବଂଶୀୟ ନୃପତିବିଶେଷ ।

ବୁଧରତ୍ନ, ବ. ନ. (ବୁଧ-ରତ୍ନ) ମରକତମଣି ।

ବୁଧସୁତ, ବ.ପୁଂ. (ବୁଧ-ସୁତ) ପୁରୂରବା ରାଜା ।

ବୁଧାନ, ବ. ପୁଂ. (ବୁଧ-ଆନ) ଗୁରୁ; ଜ୍ଞାନୀବ୍ୟକ୍ତି; କବି ।

ବୁଧିତ, ବିଂ. (ବୁଧ-ତ) ଅବଗତ, ଜ୍ଞାତ ।

ବୁଧ୍ନ, ବ. ପୁଂ. (ବୁଧ୍-ନ ) ଶିବ; ବୃକ୍ଷମୂଳ ।

ବୁବୁଧାନ, ବ. ପୁଂ. (ବୁଧ୍-ଆନ) ଆଚାର୍ଯ୍ୟ;ପଣ୍ଡିତ; ଦେବତା ।

ବୁଭୁକ୍ଷା, ବ. ସ୍ତ୍ରୀ. (ଭୁଜ୍-ସ-ଆ) ଭୋଜନେଚ୍ଛା, କ୍ଷୁଧା ।

ବୁଭୁକ୍ଷିତ, ବିଂ. (ବୁଭୁକ୍ଷା-ଇତ) କ୍ଷୁଧିତ ।

ବୁଭୁତ୍ସା, ବ. ସ୍ତ୍ରୀ. ( ବୁଧ୍-ସ-ଆ ) ଜାଣିବାର ଇଚ୍ଛା; ଜିଜ୍ଞାସା ।

ବୁଭୂଷା, ବ ସ୍ତ୍ରୀ. (ଭୂ-ସ-ଅ-ଆ) ସମ୍ଭବେଚ୍ଛା ।

ବୁଲି, ବ, ସ୍ତ୍ରୀ. ( ବୁଲ୍=ମଗ୍ନ ହେବା-ଇ ) ଭଗ, ସ୍ତ୍ରୀଚିହ୍ନ ।

ବୁଷ, ବୁସ, ବ. ନ. ( ବୁସ୍=ତ୍ୟାଗ କରିବା-ଅ ) କୁଣ୍ଡା, ଭୁଷି; ତୁଚ୍ଛଧାନ୍ୟ, ଅଗାଡ଼ି ।

ବୁସା, ବ. ସ୍ତ୍ରୀ. ( ବୁସ୍-ଅ-ଆ ) ନାଟ୍ୟୋକ୍ତିରେ କନିଷ୍ଠା ଭଗିନୀ ।

ବୁସ୍ତ, ବ. ନ. (ବୁସ୍ତ-ଅ) ପଣସାଦି ଫଳର ଅସାର ଭାଗ; ଭ୍ରାଜୀଭୂଷ୍ଟ ମାଂସ ।

ବେହୁର, ବ. ( ଦେଶଜ ) ଦୁଧ ଆଉଟିବା ନିମିତ୍ତ ବୃହତ୍ ମୃତ୍‌ପାତ୍ର ।

ବୋଦ୍ଧା, ବିଂ. (ବୁଧ୍-ତୃ ) ଜ୍ଞାତା, ଯେ ଜାଣେ ।

ବୋଧ, ବ. ପୁଂ. (ବୁଧ୍-ଅ ) ଜ୍ଞାନ; ବୁଦ୍ଧି; ଜାଗ-ରଣ; ଉପଲବ୍ଧି; ପ୍ରବୋଧନ ।

ବୋଧକ, ବିଂ. (ବୋଧ-ଅକ) ଜ୍ଞାପକ, ସୂଚକ ।

ବୋଧକର, ବ. ପୁଂ. (ବୋଧ-କର) ବୈତାଳିକ, ସ୍ତୁତିପାଠକ ।

ବୋଧନ, ବ. ନ. ( ବୁଧ-ଅନ ) ଜ୍ଞାନ; ଜ୍ଞାପନ; ଜଣାଇବା; ଜାଗରଣ; ସନ୍ଦୀପନ; ଉଦ୍ଦୀପନ ।

ବୋଧନୀ, ବ. ସ୍ତ୍ରୀ. (ବୁଧ-ଅନ-ଈ) କାର୍ତ୍ତିକ ଶୁକ୍ଳ ଏକାଦଶୀ, ଉତ୍ଥାନୈକାଦଶୀ, ପିପ୍ପଳୀ ।

ବୋଧନୀୟ, ବୋଦ୍ଧ, ବିଂ. ( ବୁଧ୍-ଅନୀୟ, ଯ ) ଜ୍ଞାତବ୍ୟ, ଜାଣିବାର ଯୋଗ୍ୟ ।

ବୋଧପ୍ରବାହ, ବ. ଯେଉଁ ଶକ୍ତିଦ୍ୱାରା ଦର୍ଶନ, ଶ୍ରବଣ, ଚଳନ ପ୍ରଭୃତି କାର୍ଯ୍ୟ କରାଯାଏ ସେହି ଶକ୍ତିକୁ ବୋଧପ୍ରବାହ ବୋଲାଯାଏ ।

ବୋଧବାସର, ବ. ପୁଂ. ଭଗବାନଙ୍କର ପ୍ରବୋଧ ଦିନ, ଉତ୍ଥାନୈକାଦଶୀ ।

ବୋଧି, ବ. ପୁଂ. (ବୁଧ୍-ଇ) ଅଶ୍ୱତ୍ଥବୃକ୍ଷ; ସମାଧି-ବିଶେଷ । ବିଂ. ଜ୍ଞାତା ।

ବୋଧିତ, ବିଂ. (ବୋଧି-ତ) ଜ୍ଞାପିତ; ଜାଗରିତ ।

ବୋଧିତରୁ, ବୋଧିଦ୍ରୁମ, ବ. ପୁଂ. (ବୋଧି-ତରୁ, ଦ୍ରୁମ) ଅଶ୍ୱତ୍ଥବୃକ୍ଷ ।

ବୋଧିତବ୍ୟ, ବିଂ. ( ବୋଧି-ତବ୍ୟ ) ଜ୍ଞାପନୀୟ, ଜଣାଇବାର ଯୋଗ୍ୟ ।

ବୋଧିସତ୍ତ୍ୱ, ବ. ପୁଂ. (ବୋଧି-ସତ୍ତ୍ୱ) ବୁଦ୍ଧବିଶେଷ ।

ବୌଦ୍ଧ, ବ. ପୁଂ. (ବୁଦ୍ଧ-ଅ) ବୁଦ୍ଧମତାବଲମ୍ବୀ, ନାସ୍ତିକ । ନ. ବୁଦ୍ଧକୃତ ନିରୀଶ୍ୱର ଶାସ୍ତ୍ର ।

ବୌଧ, ବ. ପୁଂ. ( ବୁଧ-ଅ ) ବୁଧଙ୍କର ପୁତ୍ର, ପୁରୂରବା ।

ବୌଧାୟନ, ବ. ପୁଂ. ଋଷିବିଶେଷ ।

ବ୍ରତତି, ବ୍ରତତୀ, ବ.ସ୍ତ୍ରୀ. (ପ୍ର-ତନ-ତି, ଈ, ପ=ବ) ବଲ୍ଲୀ, ଲତା; ବିସ୍ତାର ।

ବ୍ରଧ୍ନ, ବ. ପୁଂ. (ବନ୍ଧ୍-ନ, ବନ୍ଧ=ବ୍ରଧ୍) ବୃକ୍ଷମୂଳ, ଘୋଡ଼ା; ଶିବ; ସୂର୍ଯ୍ୟ; ବ୍ରହ୍ମା; ପ୍ରଭୁ; ଶରୀର; ରୋଗବିଶେଷ ।

ବ୍ରହ୍ମ, ବ.ପୁଂ. (ବୃହ୍=[ମନୁଷ୍ୟଜାତି]ବୃଦ୍ଧିପାଇବା-ମନ୍) ବ୍ରହ୍ମା, ବିଧାତା; ବ୍ରାହ୍ମଣ; ପୁରୋହିତ-ବିଶେଷ; ଯୋଗବିଶେଷ । ନ. ପରମେଶ୍ୱର; ବେଦମନ୍ତ୍ର; ବେଦ; ବ୍ରହ୍ମତେଜଃ; ତପସ୍ୟା ।

ବ୍ରହ୍ମକନ୍ୟକା, ବ. ସ୍ତ୍ରୀ. (ବ୍ରହ୍ମ-କନ୍ୟକା) ବାଗ୍‌ଦେବୀ, ସରସ୍ୱତୀ ।

ବ୍ରହ୍ମକୂଟ, ବ୍ରହ୍ମଗିରି, ବି. ପୁଂ. (ବ୍ରହ୍ମ-କୂଟ) ପର୍ବତ-ବିଶେଷ ।

ବ୍ରହ୍ମକୂର୍ଚ୍ଚ, ବି. ନ. ବ୍ରତବିଶେଷ, ଅହୋରାତ୍ର ଉପ-ବାସ ଉତ୍ତାରୁ ପଞ୍ଚଗବ୍ୟ ପାନରୂପ ବ୍ରତ ।

ବ୍ରହ୍ମଗ୍ରନ୍ଥି, ବି. ପୁଂ. ଯଜ୍ଞୋପବୀତର ଗ୍ରନ୍ଥିବିଶେଷ ।

ବ୍ରହ୍ମଘ୍ନ, ବିଂ.(ବ୍ରହ୍ମ-ହନ୍-ଅ) ବ୍ରହ୍ମହତ୍ୟାକାରକ ।

ବ୍ରହ୍ମଚର୍ଯ୍ୟ, ବି. ନ. (ବ୍ରହ୍ମ-ଚର୍ଯ୍ୟ) ବ୍ରହ୍ମଚାରୀର ଧର୍ମ; ସ୍ତ୍ରୀ ପୁରୁଷର ସ୍ମରଣ କୀର୍ତ୍ତନ ପ୍ରଭୃତି ଅଷ୍ଟବିଧ ମୈଥୁନାଭାବ; ବ୍ରତବିଶେଷ ।

ବ୍ରହ୍ମଚାରିଣୀ, ବି. ସ୍ତ୍ରୀ. ( ବ୍ରହ୍ମଚାରିନ୍-ଈ ) ବ୍ରହ୍ମଚର୍ଯ୍ୟ ବ୍ରତଚାରିଣୀ ସ୍ତ୍ରୀ ।

ବ୍ରହ୍ମଚାରୀ, ବି. ପୁଂ. ( ବ୍ରହ୍ମ-ଚର-ଇନ୍ ) ପ୍ରଥମ ଆଶ୍ରମୀ, ଉପନୟନାନ୍ତର ଯେଉଁ ବ୍ରାହ୍ମଣତନୟ ଗୁରୁ ଗୃହରେ ବାସ କରି ବେଦାଧ୍ୟୟନ କରନ୍ତି ।

ବ୍ରହ୍ମଜୀବୀ, ବି. ପୁଂ. (ବ୍ରହ୍ମ-ଜୀବୀ) ଅପବିତ୍ର ବ୍ରାହ୍ମଣ, ମୂଲ୍ୟଗ୍ରହଣ ପୂର୍ବକ ବେଦାଧ୍ୟାପକ; ବେଦଜୀବୀ ।

ବ୍ରହ୍ମଜ୍ଞ, ବିଂ. (ବ୍ରହ୍ମନ୍-ଜ୍ଞ) ବେଦଜ୍ଞ; ତତ୍ତ୍ୱଜ୍ଞାନୀ ।

ବ୍ରହ୍ମଜ୍ଞାନ, ବି. ନ. ବ୍ରହ୍ମବିଷୟକ ଜ୍ଞାନ, ଆତ୍ମତତ୍ତ୍ୱ-ବୋଧ ।

ବ୍ରହ୍ମଣ୍ୟ, ବିଂ. (ବ୍ରହ୍ମନ୍-ଯ) ବ୍ରହ୍ମ ବା ବ୍ରାହ୍ମଣ-ସମ୍ବନ୍ଧୀୟ । ବି. ନ. ବ୍ରହ୍ମତେଜଃ; ବ୍ରହ୍ମତ୍ୱ; ବିଷ୍ଣୁ; ଶନୈଶ୍ଚର; ବ୍ରହ୍ମଦାରୁ ବୃକ୍ଷ ।

ବ୍ରହ୍ମତୀର୍ଥ, ବି. ନ. ପୁଷ୍କରତୀର୍ଥ; ଅଙ୍ଗୁଷ୍ଠ ମୂଳଭାଗ ।

ବ୍ରହ୍ମତ୍ୱ, ବି. ନ. (ବ୍ରହ୍ମନ୍-ତ୍ୱ) ବ୍ରହ୍ମଭାବ, ବ୍ରହ୍ମ-ସାଯୁଜ୍ୟ, ବ୍ରହ୍ମପଦ ।

ବ୍ରହ୍ମଦଣ୍ଡ, ବି. ପୁଂ. ( ବ୍ରହ୍ମ-ଦଣ୍ଡ ) ବ୍ରାହ୍ମଣର ଅଭିଶାପ; ବ୍ରାହ୍ମଣର ଯଷ୍ଟି ।

ବ୍ରହ୍ମଦତ୍ତ, ବି. ପୁଂ. (ବ୍ରହ୍ମ-ଦତ୍ତ) ଇକ୍ଷ୍ୱାକୁବଂଶୀୟ ନୃପତିବିଶେଷ ।

ବ୍ରହ୍ମଦାୟ. ବି. ପୁଂ. ବେଦାଧ୍ୟୟନାନନ୍ତର ପ୍ରାପ୍ତ ବ୍ରାହ୍ମଣଧନ ।

ବ୍ରହ୍ମଦୈତ୍ୟ, ବି. ପୁଂ. ପ୍ରେତଯୋନିପ୍ରାପ୍ତ ବ୍ରାହ୍ମଣ ।

ବ୍ରହ୍ମନାଭ, ବି. ପୁଂ. (ବ୍ରହ୍ମନ୍-ନାଭି-ଅ) ବିଷ୍ଣୁ ।

ବ୍ରହ୍ମପାଦପ, ବି.ପୁଂ.(ବ୍ରହ୍ମନ୍-ପାଦପ) ପଳାଶବୃକ୍ଷ ।

ବ୍ରହ୍ମପୁତ୍ର, ବି. ପୁଂ. (ବ୍ରହ୍ମନ୍-ପୁତ୍ର) ବିଷବିଶେଷ; ସ୍ୱନାମଖ୍ୟାତ ନଦ; କ୍ଷେତ୍ରବିଶେଷ ।

ବ୍ରହ୍ମପୁତ୍ରୀ, ବି. ସ୍ତ୍ରୀ. (ବ୍ରହ୍ମନ୍-ପୁତ୍ର-ଈ)ସରସ୍ୱତୀନଦୀ ।

ବ୍ରହ୍ମବନ୍ଧୁ, ବି. ପୁଂ. ( ବ୍ରହ୍ମନ୍-ବନ୍ଧୁ ) ଅପକୃଷ୍ଟ ବ୍ରାହ୍ମଣ, ନିନ୍ଦିତ ବ୍ରାହ୍ମଣ ।

ବ୍ରହ୍ମଭୂତି, ବି. ସ୍ତ୍ରୀ. (ବ୍ରହ୍ମ-ଭୂତି) ସନ୍ଧ୍ୟାକାଳ ।

ବ୍ରହ୍ମଭୂୟ, ବି. ନ. (ବ୍ରହ୍ମନ୍-ଭୂୟ) ବ୍ରହ୍ମତ୍ୱ, ବ୍ରହ୍ମ-ସାଯୁଜ୍ୟ, ଈଶ୍ୱରସ୍ୱରୂପ ।

ବ୍ରହ୍ମଯଜ୍ଞ, ବି. ପୁଂ. (ବ୍ରହ୍ମନ୍-ଯଜ୍ଞ) ବେଦାଧ୍ୟୟନ ।

ବ୍ରହ୍ମଯୋନି, ବି. ପୁଂ. ( ବ୍ରହ୍ମନ୍-ଯୋନି ) ପର୍ବତ-ବିଶେଷ, ବ୍ରହ୍ମଗିରି; କୁରୁକ୍ଷେତ୍ର ସରସ୍ୱତୀ ନଦୀ ତୀରରେ ପୃଥୂଦକ ନିକଟସ୍ଥ ତୀର୍ଥବିଶେଷ ।

ବ୍ରହ୍ମରନ୍ଧ୍ର, ବି. ନ. ମସ୍ତକର ମଧ୍ୟସ୍ଥାନ, ବ୍ରହ୍ମତାଳୁ ।

ବ୍ରହ୍ମରାକ୍ଷସ, ବି. ପୁଂ. ଭୂତବିଶେଷ, ବ୍ରହ୍ମଦୈତ୍ୟ, ମହାଦେବଙ୍କର ଗଣବିଶେଷ ।

ବ୍ରହ୍ମର୍ଷି, ବି. ପୁଂ. (ବ୍ରହ୍ମନ୍-ଋଷି) ବଶିଷ୍ଠାଦି ବ୍ରାହ୍ମଣ-ଋଷି ।

ବ୍ରହ୍ମର୍ଷିଦେଶ, ବି. ପୁଂ. ( ବ୍ରହ୍ମର୍ଷି-ଦେଶ ) କୁରୁ-କ୍ଷେତ୍ର, ମତ୍ସ୍ୟ, ପଞ୍ଚାଳ, ଶୂରସେନ—ଏହି ଚାରିଦେଶ ।

ବ୍ରହ୍ମଲୋକ, ବି. ପୁଂ. ( ବ୍ରହ୍ମନ୍-ଲୋକ ) ବ୍ରହ୍ମାଙ୍କ ଭୁବନ ।

ବ୍ରହ୍ମବଦ୍ୟ, ବି. ନ. (ବ୍ରହ୍ମନ୍-ବଦ-ଯ) ବ୍ରହ୍ମବାକ୍ୟ ।

ବ୍ରହ୍ମବର୍ଚ୍ଚସ, ବି.ନ. (ବ୍ରହ୍ମନ୍-ବର୍ଚ୍ଚସ୍-ଅ) ବ୍ରାହ୍ମଣର ବ୍ରତାନୁଷ୍ଠାନ ଓ ବେଦାଧ୍ୟୟନଜନିତ ସମ୍ପତ୍ତି, ବ୍ରହ୍ମତେଜଃ ।

ବ୍ରହ୍ମବର୍ତ୍ତ, ବି. ପୁଂ. ( ବ୍ରହ୍ମନ୍-ବର୍ତ୍ତ ) ବ୍ରହ୍ମାବର୍ତ୍ତ ଦେଶ ।

ବ୍ରହ୍ମବର୍ଦ୍ଧନ, ବି. ନ. (ବ୍ରହ୍ମନ୍-ବର୍ଦ୍ଧନ ) ତାମ୍ର, ତମ୍ବା ।

ବ୍ରହ୍ମବାଦ, ବି. ପୁଂ. (ବ୍ରହ୍ମ-ବାଦ) ବେଦାଧ୍ୟୟନ, ବେଦପାଠ ।

ବ୍ରହ୍ମବାଦିନୀ, ବି. ସ୍ତ୍ରୀ. ( ବ୍ରହ୍ମନ୍-ବଦ୍-ଇନ୍-ଈ ) ବେଦମାତା, ଗାୟତ୍ରୀ ।

ବ୍ରହ୍ମବାଦୀ, ବିଂ. ( ବ୍ରହ୍ମ-ବଦ୍-ଇନ୍ ) ବେଦାନ୍ତ ମତାବଲମ୍ବୀ; ବେଦାଧ୍ୟାୟୀ; ବ୍ରାହ୍ମ ।

ବ୍ରହ୍ମବଦ୍, ବ. ପୁଂ, (ବ୍ରହ୍ମ-ବିଦ୍-୦) ବ୍ରହ୍ମଜ୍ଞାନୀ ।

ବ୍ରହ୍ମବିଦ୍ୟା, ସ୍ତ୍ରୀ. } ବ. (ବ୍ରହ୍ମନ୍-ବିଦ୍ୟା, ବେଦ)
ବ୍ରହ୍ମବେଦ, ପୁଂ. } ବ୍ରହ୍ମଜ୍ଞାନ, ବେଦାନ୍ତ ଶାସ୍ତ୍ର ।

ବ୍ରହ୍ମବୃତ୍ତି, ବ. ସ୍ତ୍ରୀ. ( ବ୍ରହ୍ମନ୍-ବୃତ୍ତି ) ବ୍ରାହ୍ମଣର ଜୀବନୋପାୟ, ବ୍ରହ୍ମସ୍ୱ ।

ବ୍ରହ୍ମବେଦ, ବ. ସ୍ତ୍ରୀ. (ବ୍ରହ୍ମନ୍-ବେଦ) କୁରୁକ୍ଷେତ୍ରର ଅନ୍ତର୍ବର୍ତ୍ତୀ ଦେଶବିଶେଷ ।

ବ୍ରହ୍ମବୈବର୍ତ୍ତ, ବ. ନ. (ବ୍ରହ୍ମନ୍-ବିବର୍ତ୍ତ-ଅ) ଅଷ୍ଟାଦଶ ପୁରାଣର ଅନ୍ତର୍ଗତ ପୁରାଣବିଶେଷ ।

ବ୍ରହ୍ମଶଲ୍ୟ, ବ. ପୁଂ. (ବ୍ରହ୍ମନ୍-ଶଲ୍ୟ) ବବୁର ଗଛ ।

ବ୍ରହ୍ମଶାସନ, ବ. ପୁଂ. ( ବ୍ରହ୍ମନ୍-ଶାସନ ) ବ୍ରହ୍ମାଙ୍କ ବିଚାର ଗୃହ; ବ୍ରହ୍ମାଙ୍କ ଆଜ୍ଞା; ନବଦ୍ୱୀପର ସନ୍ନିହିତ ଗ୍ରାମବିଶେଷ; ବ୍ରାହ୍ମଣଶାସନ ।

ବ୍ରହ୍ମଶିରଃ ବ. ନ. (ବ୍ରହ୍ମନ୍-ଶିରଃ) ବ୍ରହ୍ମତେଜୋମୟ ମହା-ପ୍ରଭାବ ଅସ୍ତ୍ରବିଶେଷ ।

ବ୍ରହ୍ମସୂତ୍ର, ବ. ନ. ( ବ୍ରହ୍ମନ୍-ସୂତ୍ର ) ବ୍ରହ୍ମଯଜ୍ଞ, ବେଦାଧ୍ୟୟନ ।

ବ୍ରହ୍ମସାବର୍ଣ୍ଣି, ବ. ସ୍ତ୍ରୀ. ମନୁବିଶେଷ, ଦଶମ ମନୁ ।

ବ୍ରହ୍ମସୂ, ବ. ପୁଂ. (ବ୍ରହ୍ମନ୍-ସୂ) ଅନିରୁଦ୍ଧ; କାମଦେବ ।

ବ୍ରହ୍ମସୂତ୍ର ବ. ନ. ( ବ୍ରହ୍ମନ୍-ସୂତ୍ର) ଯଜ୍ଞୋପବୀତ, ପୈତା, ଶାରୀରକ ସୂତ୍ର ।

ବ୍ରହ୍ମସ୍ୱ, ବ. (ବ୍ରହ୍ମନ୍-ସ୍ୱ) ବ୍ରାହ୍ମଣ ଧନ ।

ବ୍ରହ୍ମହତ୍ୟା, ବ.ସ୍ତ୍ରୀ. ( ବ୍ରହ୍ମନ୍-ହତ୍ୟା ) ବ୍ରାହ୍ମଣବଧ ।

ବ୍ରହ୍ମହା, ବିଂ. ( ବ୍ରହ୍ମନ୍-ହନ୍-୦) ବ୍ରାହ୍ମଣ ବିନାଶକାରୀ, ବ୍ରହ୍ମହତ୍ୟାକାରୀ; ଶୂଦ୍ରାପତି ବ୍ରାହ୍ମଣ ।

ବ୍ରହ୍ମହୃତ, ବ. ନ. ( ବ୍ରହ୍ମନ୍-ହୃତ ) ନୃଯଜ୍ଞ, ଅତିଥିସେବା ।

ବ୍ରହ୍ମା, ବ. ପୁଂ. (ବ୍ରହ୍ମନ୍) ବିଧାତା, ସୃଷ୍ଟିକର୍ତ୍ତା, ଋତ୍ୱିକ୍‌ବିଶେଷ ।

ବ୍ରହ୍ମାଗ୍ରଭୂ, ବ. ପୁଂ, ଅଶ୍ୱ, ଘୋଟକ ।

ବ୍ରହ୍ମାଞ୍ଜଳି, ବ. ପୁଂ. ( ବ୍ରହ୍ମ-ଅଞ୍ଜଳି ) ସାମବେଦ ପାଠକାଳୀନ ସ୍ୱରବିଭାଗାର୍ଥ ଅଞ୍ଜଳି କରିବା; ଅଧ୍ୟୟନର ଆଦିରେ ଓ ଅନ୍ତରେ ପ୍ରଣିବୋଚାରଣପୂର୍ବକ ଗୁରୁର ନିକଟରେ କୃତାଞ୍ଜଳି ।

ବ୍ରହ୍ମାଣୀ, ବ. ସ୍ତ୍ରୀ. (ବ୍ରହ୍ମନ୍-ଈ) ବ୍ରହ୍ମାଙ୍କ ଶକ୍ତି, ଦେବୀବିଶେଷ; ବ୍ରହ୍ମାଙ୍କ ପତ୍ନୀ ।

ବ୍ରହ୍ମାଣ୍ଡ ,ବ. ପୁଂ. ( ବ୍ରହ୍ମନ୍-ଅଣ୍ଡ ) ଜଗତ, ବିଶ୍ୱଗୋଲକ ।

ବ୍ରହ୍ମାତ୍ମଭୂ, ବ. ପୁଂ. ଅଶ୍ୱ, ଘୋଟକ ।

ବ୍ରହ୍ମାଭ୍ୟାସ, ବ. ପୁଂ. (ବ୍ରହ୍ମ-ଅଭ୍ୟାସ)ବେଦପାଠ, ବେଦାଧ୍ୟୟନ; ପୁନଃପୁନଃ ବେଦାବୃତ୍ତିକରଣ ।

ବ୍ରହ୍ମାମ୍ବୁଃ, ବ. ନ. (ବ୍ରହ୍ମନ୍-ଅମ୍ବୁସ) ଗୋମୂତ୍ର ।

ବ୍ରହ୍ମାରଣ୍ୟ, ବ. ନ. (ବ୍ରହ୍ମନ୍-ଅରଣ୍ୟ) ବେଦପାଠର ସ୍ଥାନ ।

ବ୍ରହ୍ମାବର୍ତ୍ତ, ବ. ପୁଂ. ( ବ୍ରହ୍ମନ୍-ଆବର୍ତ୍ତ ) କୁରୁକ୍ଷେତ୍ରର ନିକଟସ୍ଥ ଏବଂ ସରସ୍ୱତୀ ଓ ଦୃଷଦ୍ୱତୀ ଏହି ଉଭୟ ନଦୀର ମଧ୍ୟବର୍ତ୍ତୀ ଦେଶ ।

ବ୍ରହ୍ମାସନ, ବ. ନ. (ବ୍ରହ୍ମନ୍-ଆସନ) ଯୋଗାସନ, ଧ୍ୟାନାସନ ।

ବ୍ରହ୍ମାସ୍ତ୍ର, ବ. ନ. (ବ୍ରହ୍ମ-ଅସ୍ତ୍ର) ବ୍ରହ୍ମଦୈବତାସ୍ତ୍ର, ବ୍ରହ୍ମଶାପ ।

ବ୍ରହ୍ମିଷ୍ଠ, ବିଂ. (ବ୍ରହ୍ମନ୍-ସ୍ଥା-ଅ) ବ୍ରହ୍ମଜ୍ଞାନୀ, ବ୍ରହ୍ମନିଷ୍ଠ । ବ. ସ୍ତ୍ରୀ. ଦୁର୍ଗା ।

ବ୍ରହ୍ମୋତ୍ତର, ବିଂ. ( ବ୍ରହ୍ମନ୍-ଉତ୍ତର ) ବ୍ରାହ୍ମଣମାନଙ୍କୁ ଦତ୍ତ ଭୂମ୍ୟାଦି ।

ବ୍ରାହ୍ମ, ବ. ନ. ( ବ୍ରହ୍ମନ୍-ଅ ) ବ୍ରହ୍ମପୁରାଣ । ପୁଂ. ବିବାହବିଶେଷ; ବ୍ରହ୍ମୋପାସକ । ସ୍ତ୍ରୀ. ବ୍ରହ୍ମାଙ୍କ ଶକ୍ତିବିଶେଷ; ସରସ୍ୱତୀ; ରୋହିଣୀ ନକ୍ଷତ୍ର । ବିଂ. ବ୍ରହ୍ମସମ୍ବନ୍ଧୀୟ ।

ବ୍ରାହ୍ମଣ, ବ. ପୁଂ. ( ବ୍ରହ୍ମନ୍-ଅ ) ଶ୍ରେଷ୍ଠବର୍ଣ୍ଣ, ଦ୍ୱିଜୋତ୍ତମ । ନ. ବେଦର ଅଂଶବିଶେଷ । ଣୀ-ସ୍ତ୍ରୀ. ବ୍ରାହ୍ମଣର ପତ୍ନୀ । ବିଂ. ବ୍ରହ୍ମଜ୍ଞ ।

ବ୍ରାହ୍ମଣାୟନ, ବ. ପୁଂ. (ବ୍ରାହ୍ମଣ-ଅୟନ) ବିଶୁଦ୍ଧବଂଶୋଦ୍ଭବ ବ୍ରାହ୍ମଣ ।

ବ୍ରାହ୍ମଣ୍ୟ, ବି. ନ. ( ବ୍ରାହ୍ମଣ-ଯ ) ବ୍ରାହ୍ମଣସମୂହ; ବ୍ରାହ୍ମଣତ୍ୱ । ପୁଂ. ଶନିଗ୍ରହ ।

ବ୍ରାହ୍ମମୁହୂର୍ତ୍ତ, ବି. ପୁଂ. (ବ୍ରାହ୍ମ-ମୁହୂର୍ତ୍ତ) ଅରୁଣୋଦୟର ପ୍ରଥମ ଦୁଇ ଦଣ୍ଡ, ସୂର୍ଯ୍ୟୋଦୟର ପ୍ରାକ୍କାଳ ।

ବ୍ରାହ୍ମ୍ୟ, ବିଂ. (ବ୍ରହ୍ମ-ଯ) ବ୍ରହ୍ମସମ୍ବନ୍ଧୀୟ । ବି. ନ. ବିସ୍ମୟ ।

ବ୍ରୁବାଣ, ବିଂ. (ବ୍ରୂ-ଆନ) ଯେ କହୁଅଛି, ବକ୍ତା ।

———o———

# ଭ

ଭ, ବ୍ୟଞ୍ଜନର ଚତୁର୍ବିଂଶ ବର୍ଣ୍ଣ । ବି. ନ. (ଭା=ଦୀପ୍ତି ପାଇବା-ଅ) ନକ୍ଷତ୍ର; ଗ୍ରହ । ପୁଂ. ଶୁକ୍ରାଚାର୍ଯ୍ୟ; ଶନି; ଭ୍ରାନ୍ତି; ( ଭଣ୍=ଶବ୍ଦ କରିବା-ଅ) ଭ୍ରମର ।

ଭଅଁର, ବି. ( ଭ୍ରମର ଶବ୍ଦଜ ) ଭ୍ରମର, ମଧୁକର, ଭୃଙ୍ଗ ।

ଭଉଁରି, ବି. (ଭ୍ରମରି ଶବ୍ଦଜ) ଜଳଭଉଁରି । ଯଥା--

ସିନ୍ଧୁ ଜଳ ପିଇବାକୁ ପ୍ରବର୍ତ୍ତ ଘନ
ଭଉଁରିବେଗରେ ଦେଖ ଭ୍ରମନ୍ତି କେସନ । କ. ବ,

ଯାନ୍ତ୍ରବିଶେଷ ।

ଭଉଁରିଆ, ବି. (ଦେଶଜ) ଭୂମିସଂକ୍ରାନ୍ତ କାଗଜବିଶେଷ ।

ଭଉଣୀ, ବି. (ପ୍ରା) (ଭଗିନୀ ଶବ୍ଦଜ) ଭଗିନୀ,ସ୍ୱସା ।

ଭକୁଆ, ବି. (ଦେଶଜ) ଓଲୁ ।

ଭକ୍‌ଭକ୍, ଅଂ ( ଅନୁକରଣ ଅବ୍ୟୟ ) ଶବ୍ଦବିଶେଷ, ବେଙ୍ଗମାନଙ୍କର ଶବ୍ଦ ।

ଭକ୍ତ, ବି. ନ. ( ଭଜ୍-ତ ) ଓଦନ, ଭାତ । ବିଂ. ଅନୁରକ୍ତ, ଯାହାର ଭକ୍ତି ଅଛି; ଅନୁଗତ, ସେବକ; ବିଭକ୍ତ ।

ଭକ୍ତକର, ବି. ପୁଂ. ( ଭକ୍ତ-କର )କୃତ୍ରିମ ଧୂପ । ବିଂ. ପାଚକ ।

ଭକ୍ତକାର, ବି. ପୁଂ. (ଭକ୍ତ-କାର) ପାଚକ, ଯେ ଅନ୍ନ ପାକ କରେ, ରୋଷେଇଆ ।

ଭକ୍ତତୂର୍ଯ୍ୟ, ବି. ନ. ( ଭକ୍ତ-ତୂର୍ଯ୍ୟ ) ଭୋଜନକାଳରେ ବାଦନୀୟ ବାଦ୍ୟ ।

ଭକ୍ତି, ବି. ସ୍ତ୍ରୀ. (ଭଜ୍-ବା-ଭନ୍‌ଜ୍-ତି) ପୂଜ୍ୟବ୍ୟକ୍ତି ପ୍ରତି ଅନୁରାଗ, ପ୍ରେମ; ସେବା, ଉପଚାର; ରଚନା; ଭଙ୍ଗୀ ।

ଭକ୍ତିମାନ୍, ବିଂ. (ଭକ୍ତି-ମତ୍ ) ଭକ୍ତିବିଶିଷ୍ଟ,ଯାହାର ଭକ୍ତି ଅଛି ।

ଭକ୍ଷକ, ବିଂ. (ଭକ୍ଷ୍-ଅକ) ଭୋକ୍ତା, ଭକ୍ଷଣକାରୀ ।

ଭକ୍ଷଣ, ବି. ନ. (ଭକ୍ଷ୍-ଅନ) ଭୋଜନ, ଖାଇବା ।

ଭକ୍ଷଣୀୟ, ବିଂ. ( ଭକ୍ଷ୍-ଅନୀୟ ) ଭୋଜନୀୟ, ଭକ୍ଷଣଯୋଗ୍ୟ ।

ଭକ୍ଷିତ, ବିଂ. (ଭକ୍ଷ୍-ତ) ଭୁକ୍ତ, ଖାଦିତ ।

ଭକ୍ଷ୍ୟ, ବିଂ. (ଭକ୍ଷ୍-ଯ) ଭକ୍ଷଣୀୟ, ଭକ୍ଷଣଯୋଗ୍ୟ । ବି. ଖାଦ୍ୟଦ୍ରବ୍ୟ ।

ଭକ୍ଷ୍ୟପତ୍ରୀ, ବି. ସ୍ତ୍ରୀ. ତାମ୍ବୂଲଲତା, ପାନ ।

ଭଗ, ବି. ନ. (ଭଜ୍-ଅ) ଯୋନି,ସ୍ତ୍ରୀଚିହ୍ନ, ଉତ୍ପତ୍ତିସ୍ଥାନ; ସୌନ୍ଦର୍ଯ୍ୟ; ଉତ୍କର୍ଷ; ଇଚ୍ଛା; ଶକ୍ତି; ପୂର୍ବାଫାଲ୍ଗୁନୀ ନକ୍ଷତ୍ର । ପୁଂ. ରବି; ଚନ୍ଦ୍ର; ମାହାତ୍ମ୍ୟ; ଧର୍ମ ।

ଭଗଦତ୍ତ, ବି. ପୁଂ. କାମରୂପେଶ୍ୱର ନୃପବିଶେଷ, ନରକ ରାଜାର ଜ୍ୟେଷ୍ଠପୁତ୍ର ।

ଭଗନ୍ଦର, ବି. ପୁଂ. (ଭଗ-ଦୃ-ଅ) ଗୁହ୍ୟବ୍ରଣ ।

ଭଗବତୀ, ବି. ସ୍ତ୍ରୀ. (ଭଗ-ବତ୍-ଈ) ଦୁର୍ଗା । ବିଂ. ପୂଜ୍ୟା ।

ଭଗବଦ୍‌ଗୀତା, ବି. ସ୍ତ୍ରୀ. ଭୀଷ୍ମପର୍ବାନ୍ତର୍ଗତ କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗପୂରକ ଗ୍ରନ୍ଥବିଶେଷ ।

ଭଗବାନ୍, ବିଂ. (ଭଗ-ବତ୍) ଉପଯୁକ୍ତ, ଐଶ୍ୱର୍ଯ୍ୟାଦି ଷଡ଼୍‌ଗୁଣଯୁକ୍ତ; ପୂଜ୍ୟ, ମାନ୍ୟ । ବି. ପୁଂ. ପରମେଶ୍ୱର, ଈଶ୍ୱର; ବୁଦ୍ଧ ।

ଭଗାଙ୍କୁର, ବ. ପୁଂ. (ଭଗ-ଅଙ୍କୁର) ଯୋନିଦ୍ୱାରର ଉପରିସ୍ଥ ସୂକ୍ଷ୍ମାଗ୍ର କ୍ଷୁଦ୍ର ମାଂସପିଣ୍ଡବିଶେଷ ।

ଭଗାରି, ବ. (ଭଗହାରୀ ଶବ୍ଦଜ) ଶତ୍ରୁ, ବୈରୀ, ବିପକ୍ଷ । ଯଥା—

କାହିଁପାଇଁ କରଇବ ଭଗାରିହସାକୁ । ବ. ଚ.

ଭଗାଲ, ବ. ନ. (ଭଗ-ଅଲ୍-ଅ) ମନୁଷ୍ୟ ମୁଣ୍ଡର ଖପୁରି ।

ଭଗାଲୀ, ବ. ପୁଂ. ( ଭଗ-ଅଲ୍-ଇନ୍ ) ଶିବ; ମହାଦେବ ।

ଭଗିନୀ, ଭଗ୍ନୀ, ବ. ସ୍ତ୍ରୀ. (ଭଗ-ଇନ୍-ଈ) ସହୋଦରା, ଭଉଣୀ, ସ୍ୱସା ।

ଭଗୀରଥ, ବ. ପୁଂ. ସୂର୍ଯ୍ୟବଂଶୀୟ ନୃପବିଶେଷ, ଦିଲୀପ ରାଜାଙ୍କର ପୁତ୍ର, ଏ ପୃଥିବୀକୁ ଗଙ୍ଗା ଆଣିଥିଲେ ।

ଭଗ୍ନ, ବିଂ. (ଭନ୍ଜ୍-ତ) ପରାଜିତ; ହାରିଯାଇ; ଅପମାନିତ; ଖଣ୍ଡିତ, ଭଙ୍ଗା; ବିନଷ୍ଟ ।

ଭଗ୍ନପୃଷ୍ଠ, ବିଂ. ( ଭଗ୍ନ-ପୃଷ୍ଠ ) ପଶ୍ଚାଦ୍‌ବର୍ତ୍ତୀ; ଯାହାର ପୃଷ୍ଠଦେଶ ଭାଙ୍ଗି ଯାଇଅଛି । ବ. ପୁଂ. ପଶ୍ଚାଦ୍‌ଭାଗ ।

ଭଗ୍ନ-ପ୍ରକ୍ରମତା, ବ. ସ୍ତ୍ରୀ. କାବ୍ୟର ଦୋଷବିଶେଷ; କ୍ରମଭଙ୍ଗ ।

ଭଗ୍ନାଂଶ, ବ. ( ଭଗ୍ନ-ଅଂଶ ) ଯେଉଁ ରାଶିଦ୍ୱାରା ଏକର ଅଂଶ ବ୍ୟକ୍ତ କରାଯାଏ ।

ଭଗ୍ନାତ୍ମା, ବ. ପୁଂ. (ଭଗ୍ନ-ଆତ୍ମନ୍) ଚନ୍ଦ୍ର; ଚନ୍ଦ୍ର ବୃହସ୍ପତି ପତ୍ନୀଙ୍କର ସତୀତ୍ୱ ହରଣ କରିବାରୁ ଶିବ ଏହାଙ୍କୁ ତ୍ରିଶୂଳଦ୍ୱାରା ଦ୍ୱିଖଣ୍ଡିତ କରିଥିଲେ, ଏହି ହେତୁରୁ ଏହାଙ୍କର ନାମ ଭଗ୍ନାତ୍ମା ହୋଇଅଛି ।

ଭଙ୍ଗ, ବ. ପୁଂ. (ଭନ୍ଜ୍-ଅ) ତରଙ୍ଗ; ପରାଜୟ; ଭେଦ, ପ୍ରତାରଣା; ନାଶ; ଗମନ; ଭଗ୍ନ ହେବା; ଖଣ୍ଡ; ବ୍ୟସନ; ରୋଗ; ଭଙ୍ଗୀ; ଭୟ; କୌଟିଲ୍ୟ । ଯଥା—

ଭଣେ ଭଙ୍ଗ ଦେଖି ଦେଖି ଉଷଦୂରେଶ୍ୱର ।

ଭଙ୍ଗପ୍ରବଣ, ବିଂ. ଭଙ୍ଗୁର, ଯାହା ସହଜରେ ଭାଙ୍ଗିଯାଏ, ଯଥା—କାଚ ପ୍ରଭୃତି ।

ଭଙ୍ଗା, ବିଂ. (ଭଙ୍ଗ ଶବ୍ଦଜ) ଭଗ୍ନ, ତୁଟା ।

ଭଙ୍ଗି, ଭଙ୍ଗୀ, ବ. ସ୍ତ୍ରୀ. (ଭନ୍ଜ୍-ଇ, ଈ) ଭଙ୍ଗ; ବେଶଭୂଷା; ବ୍ୟଙ୍ଗ; ତରଙ୍ଗ; ଶୋଭା; ରଚନା; ଭଙ୍ଗିମା ।

ଭଙ୍ଗିମା, ବ. ପୁଂ. (ଭଙ୍ଗ-ଇମନ୍) ଭଙ୍ଗୀ; ଶୋଭା । ଯଥା—

ଘଟାଇଲ ପର ବଂଶ କେଶରଭଙ୍ଗିମା ଯେ ।

ଭଙ୍ଗୁର, ବିଂ. (ଭନ୍ଜ୍-ଉର) ବକ୍ର, ବଙ୍କା; କୁର; ଭଙ୍ଗଶୀଳ; ଭଙ୍ଗପ୍ରବଣ; ବିନଶ୍ୱର; ନଦୀବାଙ୍କ ।

ଭଜନ, ନ. ଭଜନା, ସ୍ତ୍ରୀ. (ଭଜ୍-ଅନ, ଆ) ଉପାସନା, ଆରାଧନା; ସେବା; ଆଶ୍ରୟ ଗ୍ରହଣ; ଭାଗ ।

ଭଜମାନ, ବିଂ. ( ଭଜ୍-ଅନ ) ଉପାସନାକାରୀ; ବିଭାଜକ; ନ୍ୟାଯ୍ୟ, ଉପଯୁକ୍ତ ।

ଭଞ୍ଜକ, ବିଂ. ( ଭନ୍ଜ୍-ଅକ ) ଭଞ୍ଜନକାରକ, ଭଗ୍ନକାରକ ।

ଭଞ୍ଜନ, ବ. ନ. (ଭନ୍ଜ୍-ଅନ) ଭଙ୍ଗ, କୈମ୍ବଶ୍ୟ ଭଗ୍ନ କରିବା । ବିଂ. ଭଞ୍ଜକ ।

ଭଞ୍ଜନକ, ବ. ପୁଂ. ମୁଖରୋଗବିଶେଷ ।

ଭଟ, ବ. ପୁଂ. (ଭଟ୍-ଅ) ଯୋଦ୍ଧା, ବୀର; ବର୍ଣ୍ଣସଙ୍କର ଜାତିବିଶେଷ ।

ଭଟଭଟ, ବ. ଗୋଳମାଳ; କଳହ ।

ଭଟା, ବ. କୁଅର ଖଡଯିବାର ନାମ ଭଟା, ଶୁଖିଲା ।

ଭଟିତ୍ର, ବିଂ. (ଭଟ-ଇତ୍ର) ଶୂଳ୍ୟ ମାଂସାଦି, ଶଲାକାବିଦ୍ଧ ପକ୍ୱମାଂସାଦି ।

ଭଟ୍ଟ, ବ. ପୁଂ. ପଣ୍ଡିତ; ଦର୍ଶନଶାସ୍ତ୍ରଜ୍ଞ; ଭାଟ, ସ୍ତୁତିପାଠକ; ସ୍ୱାମିତ୍ୱ; ଶତ୍ରୁ ।

ଭଟ୍ଟାଗ୍ରର୍ଯ୍ୟ, ବ. ପୁଂ. ( ଭଟ୍ଟ-ଅଗ୍ରର୍ଯ୍ୟ ) ଦର୍ଶନଶାସ୍ତ୍ରଜ୍ଞ, ଅଧ୍ୟାପକ ।

ଭଟ୍ଟାର, ବିଂ. ( ଭଟ୍ଟ-ଋ-ଅ ) ମାନ୍ୟ, ପୂଜ୍ୟ ।

ଭଟ୍ଟାରକ, ବ. ପୁଂ. (ଭଟ୍ଟ-ଋ-ଅ-କ ଯୋଗ) ମୁନି; ଦେବତା; ସୂର୍ଯ୍ୟ; ନାଟ୍ୟୋକ୍ତିରେ ରାଜା । ବିଂ. ପୂଜ୍ୟ ।

ଭଟ୍ଟି, ବ. ପୁଂ. ଭଟ୍ଟିହରିପ୍ରଣୀତ ସ୍ୱନାମପ୍ରସିଦ୍ଧ ରାମକଥାଶ୍ରିତ ମହାକାବ୍ୟ ।

ଭଟ୍ଟିନୀ, ବ. ସ୍ତ୍ରୀ. (ଭଟ୍ଟ-ଇନ୍-ଈ) କୃତାଭିଷେକା ମହିଷୀ; ବ୍ରାହ୍ମଣଭାର୍ଯ୍ୟା ।

ଭଡ଼, ବଂ. (ଦେଶଜ) ବଡ଼, ବୃହତ୍, ଯଥା— ଭଡ଼ପାନ, ଭଡ଼ ଧୂଆଁପତ୍ର ।

ଭଡ଼ା, ବ. ଗୃହାଦିର କେରାୟା, ମାସୂଲ ।

ଭଡୁଆ, ବ. ( ଦେଶଜ ) ଭାଡୁଆ, ଯେଉଁମାନେ ବେଶ୍ୟା ନଚାନ୍ତି, ଜାତିବିଶେଷ ।

ଭଣଜା, ବ. ( ଭାଗିନେୟ ଶବ୍ଦଜ ) ଭଉଣୀପୁତ୍ର, ଭଣଜା ।

ଭଣଭଣ, ଅଂ. ମାଛି ଆଦିର ଶବ୍ଦବିଶେଷ, ଗଣ-ଗଣ ଶବ୍ଦ ।

ଭଣିତ, ବଂ. (ଭଣ୍-ତ) କଥିତ, ଉଚ୍ଚାରିତ । ବ. ନ. କଥନ ।

ଭଣିତା, ବ. (ଭଣ୍-ତ-ଆ) ଗ୍ରନ୍ଥ ମଧ୍ୟରେ ପରି-ଚ୍ଛେଦ ଶେଷରେ ଗ୍ରନ୍ଥକର୍ତ୍ତାର ନାମ ପ୍ରକାଶ-କରଣ ।

ଭଣିତି, ବ.ସ୍ତ୍ରୀ. (ଭଣ୍-ତି) ବାକ୍ୟ, କଥା, କଥନ ।

ଭଣ୍ଟାକୀ, ବ. ସ୍ତ୍ରୀ. ( ଭଟ୍-ଅକ-ଈ, ମ ଆଗମ ) ବାର୍ତ୍ତାକୀ, ବାଇଗଣ ।

ଭଣ୍ଡ, ବ. ପୁଂ. (ଭନ୍ଡ୍-ଅ) କୌତୁକୀ, ମସ୍କରା, ଭାଣ୍ଡ ।

ଭଣ୍ଡକ, ବ. ପୁଂ. (ଭଣ୍ଡ-କ) ଖଞ୍ଜନ ପକ୍ଷୀ ।

ଭଣ୍ଡତପସ୍ୱୀ, ବ. ପୁଂ. (ଭଣ୍ଡ-ତପସ୍ୱୀ) କପଟତପସ୍ୱୀ, ବକଧର୍ମୀ ।

ଭଣ୍ଡନ, ବ. ନ. ( ଭନ୍ଡ୍-ଅନ ) ପ୍ରତାରଣା, ଭଣ୍ଡାଇବାର; କବଚ; ଯୁଦ୍ଧ ।

ଭଣ୍ଡହାସିନୀ, ବ. ସ୍ତ୍ରୀ. ( ଭଣ୍ଡ-ହାସିନୀ ) ଗଣିକା, ବେଶ୍ୟା ।

ଭଣ୍ଡାଇବା, କ୍ରି. (ଦେଶଜ) ଠକାଇବା ।

ଭଣ୍ଡାମୀ, ବ. (ଦେଶଜ) ଧୂର୍ତ୍ତତା, ଛଳ, ଭଣ୍ଡତା ।

ଭଣ୍ଡାର, ବ. (ଦେଶଜ) କୋଷ, କୋଠ ।

ଭଣ୍ଡାରି, ବ. ( ଦେଶଜ ) ବାରିକ, ନରସୁନ୍ଦର, ନାପିତ, ଜାତିବିଶେଷ; କୋଷାଧ୍ୟକ୍ଷ ।

ଭଣ୍ଡି, ବ.ସ୍ତ୍ରୀ.(ଭନ୍ଡ୍-ଇ) ବୀଚି, ତରଙ୍ଗ, ଢେଉ ।

ଭଣ୍ଡିକା, ଭଣ୍ଡୀ, ଭଣ୍ଡୀତକୀ, ଭଣ୍ଡୀରୀ, } ବ. ସ୍ତ୍ରୀ. ମଞ୍ଜିଷ୍ଠାଲତା ।

ଭଣ୍ଡିର, ଭଣ୍ଡୀର, ଭଣ୍ଡିଲ, ଭଣ୍ଡୀଲ, } ବ. ପୁଂ. ( ଭନ୍ଡ୍-ଇର; ଈର, ର=ଲ) ଶିରୀଷ-ବୃକ୍ଷ ।

ଭଣ୍ଡୁର, ଭଣ୍ଡୋର, ବ. (ଦେଶଜ) ଖରାପ; ନାଶ ।

ଭଦ୍ର, ବ. ନ. ( ଭଦ୍-ର ) ସୌଭାଗ୍ୟ; ମଙ୍ଗଳ; ମୁଥା; ସୁବର୍ଣ୍ଣ । ବ. ପୁଂ. ଶିବ; ବୃଷଭ; ଗଜବିଶେଷ; ସମୁଦ୍ର; ଖଞ୍ଜନପକ୍ଷୀ; କଦମ୍ବ-ବୃକ୍ଷ; ରାମଙ୍କର ଦୂତବିଶେଷ; ବଳଭଦ୍ର । ବଂ. ଭାଗ୍ୟବନ୍ତ, କୁଶଳୀ; ଶ୍ରେଷ୍ଠ; ସାଧୁ, ଉତ୍ତମ ।

ଭଦ୍ରକ, ବ. ନ. (ଭଦ୍ର-କ) ମୁଥାବିଶେଷ, ଭଦ୍ରମୁଥା । ପୁଂ. ଦେବଦାରୁବୃକ୍ଷ । ବଂ. ମନୋଜ୍ଞ, ସୁନ୍ଦର ।

ଭଦ୍ରକାଳୀ, ବ. ସ୍ତ୍ରୀ. (ଭଦ୍ର-କଲ୍-ଅ, ଈ ) ଦୁର୍ଗା, କାତ୍ୟାୟନୀ ।

ଭଦ୍ରକୁମ୍ଭ, ବ. ପୁଂ. (ଭଦ୍ର-କୁମ୍ଭ) ମଙ୍ଗଳାର୍ଥ ପୂର୍ଣ୍ଣ-କୁମ୍ଭ, ଜଳପୂର୍ଣ୍ଣ ଘଟ ।

ଭଦ୍ରଖ, ଭଦ୍ରକ, ବ. ଓଡ଼ିଶାର ବାଲେଶ୍ୱର ଜିଲାସ୍ଥ ସ୍ଥାନବିଶେଷ ।

ଭଦ୍ରଗନ୍ଧିକା, ବ. ସ୍ତ୍ରୀ. (ଭଦ୍ର-ଗନ୍ଧ-କ-ଆ) ମୁସ୍ତକ, ମୁଥା ।

ଭଦ୍ରଙ୍କର, ବଂ. (ଭଦ୍ର-କୃ-ଅ) କ୍ଷେମଙ୍କର, ମଙ୍ଗଳ-କାରକ ।

ଭଦ୍ରତୁରଗ, ବଂ. ନ. ଜମ୍ବୁଦ୍ୱୀପର ନବବର୍ଷାନ୍ତର୍ଗତ ବର୍ଷବିଶେଷ ।

ଭଦ୍ରଦାରୁ, ବ. ପୁଂ. ନ. (ଭଦ୍ର-ଦାରୁ) ଦେବଦାରୁ ।

ଭଦ୍ରନାମା, ବ. ପୁଂ. (ଭଦ୍ର-ନାମନ୍) କାଠକଟା ପକ୍ଷୀ ।

ଭଦ୍ରବଳନ, ବ. ପୁଂ. (ଭଦ୍ର-ବଲ୍-ଅନ) ବଳରାମ ।

ଭଦ୍ରମୁଖ, ବଂ. ଭଦ୍ରତାସୂଚକ ମୁଖଯୁକ୍ତ, ସୌମ୍ୟ-ଦର୍ଶନ ।

ଭଦ୍ରମୁସ୍ତା, ବ. ସ୍ତ୍ରୀ. (ଭଦ୍ର-ମୁସ୍ତା) ନାଗରମୁସ୍ତକ, ନାଗରମୁଥା ।
ଭଦ୍ରଯବ, ବ. ନ. (ଭଦ୍ର-ଯବ) ଇନ୍ଦ୍ରଯବ ।
ଭଦ୍ରରେଣୁ, ବ. ପୁଂ. ( ଭଦ୍ର-ରେଣୁ ) ଇନ୍ଦ୍ରହସ୍ତୀ, ଐରାବତ ।
ଭଦ୍ରବର୍ମା, ବ. ପୁଂ. (ଭଦ୍ର-ବର୍ମନ୍) ନବମଲ୍ଲିକା ଲତା ।
ଭଦ୍ରଶ୍ରୟ, ବ. ନ. (ଭଦ୍ର-ଶ୍ରୟ) ଚନ୍ଦନ ।
ଭଦ୍ରଶ୍ରୀ, ବ. ପୁଂ. (ଭଦ୍ର-ଶ୍ରୀ) ଚନ୍ଦନ ବୃକ୍ଷ ।
ଭଦ୍ରସୋମା, ବ. ସ୍ତ୍ରୀ. (ଭଦ୍ର-ସ-ଉମା) ଗଙ୍ଗା ।
ଭଦ୍ରା, ବ. ନ. ତିଥିବିଶେଷ, ଦ୍ୱିତୀୟା, ସପ୍ତମୀ ଓ ଦ୍ୱାଦଶୀ ତିଥି; ଶ୍ରୀକୃଷ୍ଣଙ୍କର ପତ୍ନୀବିଶେଷ, କୃଷ୍ଣ-ଭଗ୍ନୀ ସୁଭଦ୍ରା; ବଷ୍ଟିର ଶେଷ ତିନଦଣ୍ଡ ।
ଭଦ୍ରାତ୍ମଜ, ବ. ପୁଂ. (ଭଦ୍ର-ଆତ୍ମଜ) ଅସି, ଖଡ୍ଗ ।
ଭଦ୍ରାରକ, ବ. ପୁଂ. ( ଭଦ୍ର-ଋ-ଅକ ) ପୃଥିବୀର ଅନ୍ତର୍ଗତ ଅଷ୍ଟାଦଶ କ୍ଷୁଦ୍ରାନ୍ତର୍ଗତ ଦ୍ୱୀପରୁ ଏକ ଦ୍ୱୀପ ।
ଭଦ୍ରାଶ୍ୱ, ବ. ପୁଂ. ( ଭଦ୍ର-ଅଶ୍ୱ ) ପୃଥିବୀର ନବ-ବର୍ଷାନ୍ତର୍ଗତ ବର୍ଷବିଶେଷ ।
ଭଦ୍ରାଶ୍ରୟ, ବ. ପୁଂ. (ଭଦ୍ର-ଆଶ୍ରୟ) ଚନ୍ଦନବୃକ୍ଷ ।
ଭଦ୍ରାସନ, ବ. ନ. ( ଭଦ୍ର-ଆସନ ) ସିଂହାସନ; ଯୋଗାସନ; ବସନ୍ତବୃକ୍ଷ ।
ଭଦ୍ରେଶ୍ୱର, ବ. ପୁଂ. (ଭଦ୍ର-ଈଶ୍ୱର) କଲ୍ପଗ୍ରାମସ୍ଥ ଶିବ; ସ୍ୱନାମପ୍ରସିଦ୍ଧ ଗ୍ରାମ ।
ଭଦ୍ରୈଳା, ବ. ସ୍ତ୍ରୀ. (ଭଦ୍ର-ଏଳା) ବଡଅଳାଇଚ ।
ଭନ୍ଦଲ, ବ. ପୁଂ. (ଭନ୍ଦ୍-ଇଲ) ଶୁଭ, ମଙ୍ଗଳ ।
ଭପତି, ବ. ପୁଂ. (ଭ-ପତି) ନକ୍ଷତ୍ରନାଥ, ଚନ୍ଦ୍ର ।
ଭପଞ୍ଜର, ବ. ନ. (ଭ-ପଞ୍ଜର) ନକ୍ଷତ୍ରଚକ୍ର ।
ଭମ୍ଭ, ବ. ପୁଂ. (ଭମ୍-ଭା-ଅ) ଧୂମ, ଧୂଁଆ; ମକ୍ଷିକା, ମାଛି ।
ଭମ୍ଭରାଳିକା, ବ. ସ୍ତ୍ରୀ. (ଭମ୍ଭରାଳୀ-କ) ଦଂଶ, ଡାଁଶ ।
ଭମ୍ଭରାଳୀ, ବ. ସ୍ତ୍ରୀ. (ଭମ୍ଭ-ରା-ଲ) ବୃହତ୍ ମକ୍ଷିକା ।
ଭମ୍ଭାସାର, ବ. ପୁଂ. ମଗଧଦେଶର ନୃପବିଶେଷ ।
ଭୟ, ବ. ନ. (ଭୀ-ଅ) ତ୍ରାସ, ଶଙ୍କା, ଆତଙ୍କ ।
ଭୟଙ୍କର, ବି°. (ଭୟ-କୃ-ଅ) ଭୟଜନକ, ଭୀଷଣ, ଘୋର । ଯଥା----

ବାଘର ରୂପକ ସୁନ୍ଦ ଅତି ଭୟଙ୍କର ।

ଭୟାନକ, ବ. ପୁଂ. ( ଭୀ-ଅନକ ) ରସବିଶେଷ, ଭୟ ଯେଉଁ ରସର ସ୍ଥାୟୀଭାବ; ବ୍ୟାଘ୍ର; ରାହୁ । ବି°. ଭୟଙ୍କର ।
ଭୟାପହ, ବ. ପୁଂ. ( ଭୟ-ଅପ-ହା-ଅ ) ରାଜା । ବି°. ଭୟନାଶକ ।
ଭୟାଳୁ, ବି°. (ଭୟ-ଆଳୁ) ଭୀରୁ, ହୀନସାହସୀ ।
ଭୟୋବହ, ବି°. ( ଭୟ-ଆ-ବହ-ଅ ) ଭୟଜନକ, ଭୟଙ୍କର ।
ଭର, ବ. ପୁଂ. (ଭୃ-ଅ) ଅଧିକ୍ୟ; ସମୂହ; ଭାର; ଭରଣ; ଗୌରବ । ବି°. ଭରଣକର୍ତ୍ତା ।
ଭରଟ, ବ. ପୁଂ. (ଭୃ-ଅଟ) କୁମ୍ଭକାର, କୁମ୍ଭାର ।
ଭରଣ, ବ. ନ. ( ଭୃ-ଅନ ) ପୂରଣ; ପୋଷଣ, ପ୍ରତିପାଳନ; ବେତନ; ଧାରଣ; (ପ୍ରା) ଅଶୀ ଗୌଣି ପରିମାଣ । ଣୀ, ସ୍ତ୍ରୀ. ଦ୍ୱିତୀୟ ନକ୍ଷତ୍ର ।
ଭରଣୀୟ, ବି°. ( ଭୃ-ଅନୀୟ ) ଭରଣଯୋଗ୍ୟ, ପୋଷ୍ୟ ।
ଭରଣ୍ଡ, ବ. ପୁଂ. (ଭୃ-ଅଣ୍ଡ) ପ୍ରଭୁ, ସ୍ୱାମୀ; ରାଜା; ବୃଷ; କୃମି ।
ଭରଣ୍ୟ, ବି°. (ଭରଣ-ଯ) ଭରଣୀୟ ।
ଭରଣ୍ୟଭୁକ୍, ବି°. (ଭରଣ୍ୟ-ଭୁକ୍) ବେତନଗ୍ରାହୀ କର୍ମକାର, ଯେଉଁ ବ୍ୟକ୍ତି ବେତନ ନେଇ କର୍ମ କରେ ।
ଭରତ, ବ. ପୁଂ. ( ଭୃ-ଅତ ) ଦଶରଥ ରାଜାଙ୍କ ମଧ୍ୟମପୁତ୍ର; ଶକୁନ୍ତଳାଗର୍ଭଜାତ ଦୁଷ୍ମନ୍ତରାଜ-ପୁତ୍ର; ନାଟ୍ୟଶାସ୍ତ୍ରପ୍ରଣେତା ମୁନି; ନଟ; ନାୟକ; ନାଟ୍ୟଶାସ୍ତ୍ର; ଶବର, ବ୍ୟାଧ; ତନ୍ତୁବାୟ ।
ଭରତଖଣ୍ଡ, ବ. ନ. ଭାରତବର୍ଷାନ୍ତର୍ଗତ କୁମାରିକା-ଖଣ୍ଡ ।
ଭରତପୁତ୍ରକ, ବ. ପୁଂ. (ଭରତ-ପୁତ୍ର-କ) ନଟ, ଅଭିନୟକାରକ ।
ଭରତଥ, ବ. ପକ୍ଷିବିଶେଷ ।

ଭରଦ୍ୱାଜ, ବି. ପୁଂ. (ଭର-ଦ୍ୱାଜ) ମୁନିବିଶେଷ; ପକ୍ଷିବିଶେଷ, ଭଦଭଦଳିଆ ଚଢ଼େଇ ।

ଭରଯା, ବି. ସ୍ତ୍ରୀ. ଆଶା; ପ୍ରତ୍ୟୟ; ସାହସ ।

ଭରା,ବିଂ. (ଭୃଧାତୁଜ) ପୂର୍ଣ୍ଣ । ବି. ବୋଝ; ଠେସ ।

ଭରାଣ୍ଡି, ବି. (ଦେଶଜ) ଧାନ୍ୟାଦି କୁଟିବାର ଗର୍ତ୍ତ, ଢିଙ୍କି ପାହାର ପଡ଼ିବାର ଗର୍ତ୍ତାକାର ସ୍ଥାନ ।

ଭରି,ବି. (ଭୃଧାତୁଜ) ଦଶମସା ଓଜନ । ବିଂ.ପୂର୍ଣ୍ଣ ।

ଭରିଣୀ,ବି. ସ୍ତ୍ରୀ. (ଭରିତ୍=ହରିଦ୍ବର୍ଣ୍ଣ-ଈ) ହରିଦ୍ବର୍ଣ୍ଣ, ସବୁଜରଙ୍ଗ ।

ଭରିତ, ବିଂ. (ଭୃ-ଇତ) ପାଳିତ; ପୂରିତ; ଭାର-ଯୁକ୍ତ । ବି. ହରିଦ୍ବର୍ଣ୍ଣ ।

ଭରିମା,ବି. ପୁଂ. (ଭୃ-ଇମନ୍) ଭରଣ,ପ୍ରତିପାଳନ ।

ଭରିବା, କ୍ରି. ବି. (ଭର ଶବ୍ଦଜ) ପୂର୍ଣ୍ଣ କରିବା ।

ଭରୁ, ବି. ପୁଂ. ( ଭୃ-ଉ ) ବିଷ୍ଣୁ; ଶିବ; ସମୁଦ୍ର; ସ୍ୱାମୀ; ସ୍ୱର୍ଣ୍ଣ ।

ଭର୍ଗ, ବି. ପୁଂ. ( ଭ୍ରସ୍ଜ୍-ଅ ) ଶିବ; ବ୍ରହ୍ମା; ସୂର୍ଯ୍ୟସ୍ଥ ଐଶତେଜଃ; ଭର୍ଜନ, ଭାଜିବା ।

ଭର୍ଜନ, ବି. ନ. (ଭ୍ରସ୍ଜ୍-ଅନ) ଭାଜିବା, ଭଜା ।

ଭର୍ତ୍ତବ୍ୟ, ବିଂ. ( ଭୃ-ତବ୍ୟ ) ପୋଷଣଯୋଗ୍ୟ, ପ୍ରତିପାଳ୍ୟ ।

ଭର୍ତ୍ତା, ବି. ପୁଂ. (ଭୃ-ତୃ) ପତି, ସ୍ୱାମୀ; ଅଧିପତି, ରାଜା । ବିଂ. ପାଳନକର୍ତ୍ତା; ଧାରଣକର୍ତ୍ତା ।

ଭର୍ତ୍ତୃଦାରକ, ବି. ପୁଂ. (ଭର୍ତ୍ତୃ-ଦାରକ) ନାଟ୍ୟରେ ରାଜପୁତ୍ର । ରିକା, ସ୍ତ୍ରୀ. ନାଟ୍ୟୋକ୍ତିରେ ରାଜ-କନ୍ୟା ।

ଭର୍ତ୍ତି, ବି. (ଭୃଧାତୁଜ) ପ୍ରବିଷ୍ଟ; ପୂର୍ଣ୍ଣ ।

ଭର୍ତ୍ତୃହରି, ବି. ପୁଂ. (ଭର୍ତ୍ତୃ-ହରି) ବିକ୍ରମାଦିତ୍ୟଙ୍କର ଜ୍ୟେଷ୍ଠଭ୍ରାତା, ଭଟ୍ଟିକାବ୍ୟପ୍ରଣେତା ।

ଭର୍ତ୍ସନ, ନ. } ବି. ( ଭର୍ତ୍ସ-ଅନ, ଆ ) କୁତ୍ସା,
ଭର୍ତ୍ସନା, ସ୍ତ୍ରୀ. } ନିନ୍ଦା; ତର୍ଜନ; ତିରସ୍କାର ।

ଭର୍ତ୍ସିତ, ବିଂ. (ଭର୍ତ୍ସ-ତ) ନିନ୍ଦିତ; ତିରସ୍କୃତ ।

ଭର୍ମ, ଭର୍ମନ୍, ବି. ନ. ( ଭୃ-ମ, ମନ୍ ) ଭୃତି, ବେତନ; ସ୍ୱର୍ଣ୍ଣ । ଯଥା—

ଭର୍ମଦେହା ସରସିଜ ଚୂଳ, ଭ୍ରମରବର ମୋହନସ୍ୱନ ।

ଭରଣ; ପୋଷଣ; ନାଭି ।

ଭର୍ମଣ୍ୟା,ବି. ସ୍ତ୍ରୀ. (ଭର୍ମନ୍-ଯ-ଆ) ଭୃତି,ବେତନ ।

ଭଲା, ବି. ( ଦେଶଜ ) ଉତ୍ତମ, ଅଚ୍ଛା, ବେଶ୍ । ଯଥା—

ଭଲ କରି ଦେଖ ମୋର ଭ୍ରାତାଙ୍କ ବଦନ । କ. ବ.

ଭଲି, କ୍ରି, ବିଂ. (ଦେଶଜ) ଅଚ୍ଛା । ଯଥା—

ମନକଳ୍ପିତ ସମ୍ପତ୍ତି ସାକ୍ଷାତ ହୋଇବ,
ମୁହିଁ ଭଲି ଭାଗ୍ୟବନ୍ତ ଭଲ ରେ ଦଇବ । କୋ. ଚ.

ଭଲି, ବି. (ଦେଶଜ) ପ୍ରକାର, ପରି । ଯଥା—

ଦୂମ ଭଲି ଯେବେ କୋଟିସ ପାତର ।

ଭଲେ, ବି. (ଦେଶଜ) ସହଜେ । ଯଥା—

ଏ ମନ ପ୍ରଭୁ ପାଦେ ଦେଲେ
ମାୟା ଯେ ନ ଲାଗଇ ଭଲେ । ଭାଗବତ ।

ଭଲ୍ଲ, ବି. ପୁଂ. ( ଭଲ୍ଲ୍=ବଧ କରିବା-ଅ ) ଭାଲୁ । ପୁଂ. ନ. ଶସ୍ତ୍ରବିଶେଷ; ଫଳକ ଅସ୍ତ୍ର, ଭାଲ ।

ଭଲ୍ଲକ, ଭଲ୍ଲୁକ, ଭଲ୍ଲୂକ, ବି. ପୁଂ. (ଭଲ୍ଲ-କ,ଭଲ୍ଲ-ଉକ, ଊକ) ରିକ୍ଷ, ଭାଲୁ ।

ଭଲ୍ଲାତ, ଭଲ୍ଲାତକ, ବି. ପୁଂ. ( ଭଲ୍ଲ-ଅତ୍-ଅ — ଭଲ୍ଲାତ, କ ଯୋଗେ ଭଲ୍ଲାତକ) ବୃକ୍ଷବିଶେଷ, ଭାଲିଆଗଛ ଓ ତାହାର ଫଳ ।

ଭଲ୍ଲିକା, ବି. ସ୍ତ୍ରୀ. (ଭଲ୍ଲୀ-କ-ଆ) ଭାଲିଆଗଛ ।

ଭବ, ବି. ପୁଂ. ( ଭୂ-ଅ ) ସ୍ଥିତି; ଉତ୍ପତ୍ତି; ପ୍ରାପ୍ତି, ଲାଭ; ଜଗତ୍; ସଂସାର; ଶିବ, ଈଶ୍ୱର; ପ୍ରାଧାନ୍ୟ; ମଙ୍ଗଳ; ଓଅଉ ଫଳ । ସଂସାର ଅର୍ଥରେ; ଯଥା—

ସହସା ହେଲ ଈଶ୍ୱର୍ଯ୍ୟ ଏ ଭବ ଭବନ ।

ବିଂ. ଉତ୍ପନ୍ନ; ( ଶବ୍ଦର ପରବର୍ତ୍ତୀ ହେଲେ ) ଉତ୍ପତ୍ତିଜନକ ।

ଭବଧସ୍ମର,ବି. (ଭବ ଘସ୍ମର) ଦାବାନଳ,ଦାବାଗ୍ନି, ବନାଗ୍ନି ।

ଭବତ୍, ବିଂ. (ଭା-ବତ୍) ଯୁଷ୍ମଦର୍ଥ, ତୁମ୍ଭେ,ଆପଣ; ମାନ୍ୟ ।

ଭବତ୍, ବିଂ. (ଭୂ-ଅତ୍) ଉତ୍ପଦ୍ୟମାନ; ବର୍ତ୍ତମାନ ।

ଭବତୀ, ବି. (ଭୂ-ଅତ୍-ଈ) ମାନ୍ୟା ସ୍ତ୍ରୀ; ବିଷାକ୍ତ ଶର; ଦୀପ୍ତିମତୀ ।

ଭବଦାରୁ, ବ. ପୁଂ. ( ଭବ-ଦାରୁ ) ଦେବଦାରୁ ବୃକ୍ଷ ।

ଭବଦୀୟ, ବିଂ. (ଭବତ୍-ଈୟ) ଯୁଷ୍ମତ୍‌ସମ୍ବନ୍ଧୀୟ, ତୁମ୍ଭର ।

ଭବନ, ବ. ନ. (ଭୂ-ଅନ) ଆଳୟ, ଗୃହ, ବାସସ୍ଥାନ । ଯଥା--

ସହସା ହେଲ କି ସ୍ୱର୍ଗ ଏ ଭବଭବନ ।

ଉତ୍ପତ୍ତି; କ୍ଷେତ୍ର ।

ଭବନାଶିନୀ, ବ. ସ୍ତ୍ରୀ. (ଭବ-ନାଶିନୀ) ସରଯୂ ନଦୀ ।

ଭବନ୍ତ, ବ. ପୁଂ. ( ଭୂ-ଅନ୍ତ ) କାଳ, ସମୟ; ବର୍ତ୍ତମାନ କାଳ । ନ୍ତୀ, ସ୍ତ୍ରୀ. ପତିବ୍ରତା ସ୍ତ୍ରୀ ।

ଭବଭୂତି, ବ. ପୁଂ. ( ଭବ-ଭୂତି ) ଶ୍ରୀକଣ୍ଠ,ପଦ୍ମନଗରନିବାସୀ କଶ୍ୟପବଂଶୀୟ ଭଟ୍ଟଗୋପାଳ ନାମକ ଶ୍ରୋତ୍ରିୟ ବ୍ରାହ୍ମଣର ପୌତ୍ର, ନୀଳକଣ୍ଠଙ୍କ ପୁତ୍ର,ମାଳତୀମାଧବ,ଉତ୍ତରଚରିତ,ବୀରଚରିତ ତ୍ରୟାତ୍ମକ ନାଟକପ୍ରଣେତା ସ୍ୱନାମପ୍ରସିଦ୍ଧ କବିବିଶେଷ, ଭୋଜରାଜାଙ୍କ ପଣ୍ଡିତ; ଶିବଙ୍କର ଐଶ୍ୱର୍ଯ୍ୟ ।

ଭବରୁଦ୍, ବ. ସ୍ତ୍ରୀ. ( ଭବ-ରୁଦ୍ ) ପ୍ରେତପଟହ, ଅନ୍ତ୍ୟେଷ୍ଟିକ୍ରିୟା କାଳରେ ବାଦନୀୟ ବାଦ୍ୟବିଶେଷ ।

ଭବାଚଳ, ବ. ପୁଂ. ମନ୍ଦରଗିରିର ପୂର୍ବବର୍ତ୍ତୀ ପର୍ବତ, କୈଳାସ ପର୍ବତ ।

ଭବାତ୍ମଜା, ବ. ସ୍ତ୍ରୀ. ମନସାଦେବୀ ।

ଭବାଦୃଶ୍, ଭବାଦୃଶ, ବିଂ. ( ଭବତ୍-ଦୃଶ୍-ଦୃଶ ) ତୁମ୍ଭ ତୁଲ୍ୟ, ଆପଣଙ୍କ ପରି ।

ଭବାନୀ, ବ. ସ୍ତ୍ରୀ. (ଭବ-ଆନୀ) ଶିବପତ୍ନୀ ।

ଭବାନୀଗୁରୁ, ବ. ପୁଂ. ( ଭବାନୀ-ଗୁରୁ ) ହିମାଳୟ ପର୍ବତ ।

ଭବାୟନା, ବ. ସ୍ତ୍ରୀ. (ଭବ-ଅୟନ-ଆ) ଜାହ୍ନବୀ, ଗଙ୍ଗା ।

ଭବିକ, ବିଂ. (ଭବ-ଇକ) ଶୁଭଜନକ, କୁଶଳୀ । ବି. ନ, ଶୁଭ, କଲ୍ୟାଣ, ମଙ୍ଗଳ ।

ଭବିତବ୍ୟ, ବିଂ. (ଭୂ-ତବ୍ୟ) ଭାବୀ, ଅବଶ୍ୟମ୍ଭାବୀ, ଯାହା ଅବଶ୍ୟ ହେବ । ଯଥା--

କଏ ଦେଖିଅଛି ପେଣ୍ଠ ଭବିତବ୍ୟ । ନ. କେ.

ଭବିତା, ଭବିଷ୍ଣୁ, ବିଂ. (ଭୂ-ତୃ, ଇଷ୍ଣୁ) ଭବିଷ୍ୟତ୍, ଭାବୀ; ଉନ୍ନତିଶୀଳ ।

ଭବିଲ, ବ. ପୁଂ. ( ଭୂ-ଇଲ ) କାମୁକ, ଲମ୍ପଟ । ବିଂ. ଭାବୀ, ଭବିଷ୍ୟତ୍ ।

ଭବିଷ୍ୟତ୍, ବିଂ. ( ଭୂ-ସ୍ୟତ୍ ) ଅନାଗତ, ଯାହା ପରେ ହେବ । ବ. ନ. ପୁରାଣବିଶେଷ ।

ଭବିଷ୍ୟଦ୍ବାଣୀ, ବ. ସ୍ତ୍ରୀ. ଯାହା ପରେ ଘଟିବ ତାହା ଆଗରୁ ବୋଲିବା ।

ଭବିଷ୍ୟସୂଚନା, ବ. ସ୍ତ୍ରୀ. ଭାବୀ ବିଷୟର ପ୍ରସ୍ତାବ, ପରେ ଯାହା ଘଟିବ ଆଗରୁ ତାହାର ପ୍ରସ୍ତାବ କରିବା ।

ଭବ୍ୟ, ବିଂ. (ଭୂ-ଯ) ଶୁଭଜନକ; ଶୁଭଯୁକ୍ତ;ଶିଷ୍ଟ; ଶାନ୍ତ; ସାଧୁ; ଭାଗ୍ୟବାନ୍; ସମୀଚୀନ; ଯୋଗ୍ୟ; ସତ୍ୟ; ଭାବୀ । ବ. ନ. ଶୁଭ; ଅସ୍ଥି; କରମଙ୍ଗା ଗଛ; ରସବିଶେଷ । ବ୍ୟା, ସ୍ତ୍ରୀ. ଦୁର୍ଗା ।

ଭଷ, ବ. ପୁଂ. (ଭଷ୍-ଅ) କୁକ୍କୁର ।

ଭସଦ୍, ବ. ସ୍ତ୍ରୀ. (ଭସ୍-ଅଦ୍) ସୂର୍ଯ୍ୟ;ଯୋନି;ସମୟ ।

ଭସନ, ବ. ପୁଂ. ( ଭସ୍-ଅନ ) ଭ୍ରମର ।

ଭସିତ, ବ. ନ. (ଭସ୍-ତ) ଭସ୍ମ, ପାଉଁଶ ।

ଭସୂଚକ, ବ. ପୁଂ. (ଭ-ସୂଚକ) ଗଣକ, ଦୈବଜ୍ଞ ।

ଭସ୍ମ, ବ. ନ. (ଭସ୍-ମନ୍) ପାଉଁଶ । ଯଥା—

ଭସ୍ମବସ୍ତି ତଥାକଲେ ବଙ୍କଟ ବିଶେଷ । କ. ବ.

ଭସ୍ମକ, ବ. ନ. (ଭସ୍ମନ୍-କ) ରୋଗବିଶେଷ,ଯେଉଁ ରୋଗରେ ବାୟୁ ପିତ୍ତର ଆଧିକ୍ୟ ଓ କଫର ହ୍ରାସ ହୁଏ ଏବଂ ଭୁକ୍ତବସ୍ତୁ ଉଦରସାତ୍ ହେବାମାତ୍ର ଭସ୍ମ ହୋଇଯାଏ; ସୁବର୍ଣ୍ଣ; ରୌପ୍ୟ ।

ଭସ୍ମକାର, ବ. ପୁଂ. ( ଭସ୍ମନ୍-କାର ) ରଜକ, ଧୋବା ।

ଭସ୍ମବେଧକ, ଭସ୍ମାହ୍ୱୟ, ବ. ପୁଂ. (ଭସ୍ମନ୍-ବେଧକ, ଆହ୍ୱୟ) କର୍ପୂର ।

ଭସ୍ମସାତ୍, ଅଂ. ( ଭସ୍ମନ୍-ସାତ୍ ) କର୍ପୂର; ଭସ୍ମରୂପରେ ପରିଣତ ।

ଭସ୍ମୀଭୂତ, ବଂ. (ଭସ୍ମ-ଈ ( ଚ୍ୱି ) ଅଭୂତ ତଦ୍ଭାବାର୍ଥେ-ଭୂତ) ଭସ୍ମପ୍ରାପ୍ତ, ବିନାଶିତ ।

ଭା, ଭାଃ, ବ. ସ୍ତ୍ରୀ. ( ଭା-ଅ-ଆ, ଭାସ୍-୦ ) ପ୍ରଭା, ଆଲୋକ; କାନ୍ତି; କିରଣ; ଶୋଭା । ପୁଂ.ସୂର୍ଯ୍ୟ ।

ଭାଇ, ବ. (ଭ୍ରାତୃ ଶବ୍ଦଜ) ଭ୍ରାତା, ସହୋଦର । ଯଥା—

ସାଙ୍ଗ ସାଙ୍ଗ ଭଣସାନେ ଘର ଦୁଇ ଭାଇ । ବ.ବ.

ଭାଉ, ବ. (ଦେଶଜ) ଦର, ମୂଲ୍ୟ ।

ଭାଉଜ, ବ (ଭ୍ରାତୃଜାୟାର ଅପଭ୍ରଂଶ) ଭାଇର ସ୍ତ୍ରୀ ।

ଭାକ୍, ବଂ. (ଭାଜ୍-୦) ଅଂଶୀ, ଭାଗୀ । ଯଥା— ଧନଭାକ୍ ଇତ୍ୟାଦ ।

ଭାକୁର, ବ. ମତ୍ସ୍ୟବିଶେଷ ।

ଭାକୋଷ, ବ. ପୁଂ. (ଭା-କୋଷ) ସୂର୍ଯ୍ୟ ।

ଭାକ୍ତିକ, ବଂ. (ଭକ୍ତ-ଇକ) ଅନ୍ନଦ୍ୱାରା ପ୍ରତିପାଳିତ ।

ଭାଗ, ବ. ପୁଂ. ( ଭଜ୍-ଅ ) ଅଂଶ, ଖଣ୍ଡ; ଏକଦେଶ; ପ୍ରଦେଶ, ସ୍ଥାନ; ଅଦୃଷ୍ଟ, ଭାଗ୍ୟ ।

ଭାଗଧେୟ, ବ. ପୁଂ. (ଭାଗ-ଧେୟ) ରାଜସ୍ୱ, ଅଂଶ, ଭାଗ । ନ. ଭାଗ୍ୟ । ବଂ. ଦାୟାଦ ।

ଭାଗବତ, ବ. ନ. ( ଭଗବତ୍-ଅ ) ବ୍ୟାସପ୍ରଣୀତ ଭଗବଦ୍ବିଷୟକ ଗ୍ରନ୍ଥବିଶେଷ । ପୁଂ.ଭଗବଭକ୍ତ, ବୈଷ୍ଣବ ।

ଭାଗହର, ବଂ. (ଭାଗ-ହର) ଅଂଶଗ୍ରାହୀ ।

ଭାଗହାର, ବ. ପୁଂ. (ଭାଗ-ହାର) ଯେଉଁ ଉପାୟରେ କୌଣସି ନିର୍ଦ୍ଦିଷ୍ଟ ରାଶିକୁ କୌଣସି ନିର୍ଦ୍ଦିଷ୍ଟ ସଂଖ୍ୟାଦ୍ୱାରା ସମାନ ଅଂଶରେ ବିଭାଗ କରିବାକୁ ହୁଏ ।

ଭାଟିକ, ବଂ. (ଭାଗ-ଇକ) ବୃଦ୍ଧି ସହିତ ମୁଦ୍ରାଦି, ଅସଲ ସୁଦ ଟଙ୍କା ।

ଭାଗିନେୟ, ବ. ପୁଂ. ( ଭଗିନୀ-ଏୟ ) ଭଗିନୀର ସନ୍ତାନ ।

ଭାଗୀ, ବଂ. (ଭାଗ-ଇନ୍ ) ଅଂଶୀ, ଗ୍ରହଣକାରୀ ।

ଭାଗୀରଥୀ, ବ. ସ୍ତ୍ରୀ. ( ଭଗୀରଥ-ଅ-ଈ ) ଗଙ୍ଗା, ଭଗୀରଥାନୀତା ।

ଭାଗ୍ୟ, ବ. ନ. (ଭଜ୍-ଯ, ଅବା ଭାଗ-ଯ)ଅଦୃଷ୍ଟ, ଦୈବ; ଭାଗଯୋଗ୍ୟ; ଭାଗବିଶିଷ୍ଟ; ଭାଟିକ ।

ଭାଗ୍ୟଧର, ବଂ. ( ଭାଗ୍ୟ-ଧୃ-ଅ ) ଭାଗ୍ୟବନ୍ତ, ସୌଭାଗ୍ୟଶାଳୀ, କପାଳଆ । ଯଥା—

ଭାଗ୍ୟଧର ଭାଗ୍ୟଅଛା ଯେ ଫୁଟିବ ତା ଛବ୍ରିପେ ଏ ନବାନା । ଉ.ବେ.

ଭାଗ୍ୟବାନ୍, ବଂ. ( ଭାଗ୍ୟ-ବତ୍ ) ଭାଗ୍ୟବନ୍ତ, ଅଦୃଷ୍ଟବାନ୍;ସୌଭାଗ୍ୟଶାଳୀ,ଶୁଭାଦୃଷ୍ଟବିଶିଷ୍ଟ ।

ଭାଗ୍ୟବିପର୍ଯ୍ୟୟ, ବ. ପୁଂ. ଭାଗ୍ୟର ବୈପରୀତ୍ୟ, ଦୁର୍ଭାଗ୍ୟ ।

ଭାଙ୍ଗ, ବ. (ଦେଶଜ) କୁସୁମ୍ଭା, ବିଜୟା, ସିଦ୍ଧି, ମାଦକଦ୍ରବ୍ୟବିଶେଷ ।

ଭାଙ୍ଗିବା, କ୍ରି. ବ. (ଭନ୍ଜ ଧାତୁଜ) ଭଗ୍ନ କରିବା ।

ଭାଜକ, ବଂ. (ଭଜ୍-ଅକ) ଅଂକକାରକ, ଯାହାଦ୍ୱାରା ଭାଗ କରାଯାଏ ।

ଭାଜକାଂଶ, ବ. ପୁଂ. (ଭାଜକ-ଅଂଶ) ଗୁଣନୀୟକ ।

ଭାଜନ, ବ. ନ. (ଭଜ୍-ଅନ) ପାତ୍ର, ଆଧାର; ଉପଯୁକ୍ତ ।

ଭାଜିତ, ବଂ. (ଭାଜ୍-ତ) ପୃଥକ୍କୃତ, ବିଭକ୍ତ । ବ. ନ. ଭାଗ, ଅଂଶ ।

ଭାଜିବା, କ୍ରି. ( ଭଙ୍ଗ ଶବ୍ଦଜ ) ଭାଙ୍ଗିବାର ଓ ପଳାୟନ କରିବାର । ଯଥା—

ଦୁର୍ଗମ ପଥ ଏ ଭଜନ, ଭଯେ ଭାଜିଲେ ଯୋଗୀଜନ ।

(ଭର୍ଜନ ଶବ୍ଦଜ) ଭୃଷ୍ଟ କରିବା,ଭର୍ଜନ କରିବା

ଭାଜ୍ୟ, ବଂ. (ଭଜ୍-ଯ) ଭାଗାର୍ହ, ଯାହା ଭାଗ କରାଯାଏ ।

ଭାଟ, ବ. (ଭଟ୍ଟ ଶବ୍ଦଜ) ବର୍ଣ୍ଣସଙ୍କର, ଜାତିବିଶେଷ; ସ୍ତୁତିପାଠକ; ରାଜଦୂତ ।

ଭାଟୀ, ବ. ମଦ ପ୍ରସ୍ତୁତ କରିବାର ଚୂଲି ଥିବା ସ୍ଥାନ ।

ଭାଡ, ବ. (ଦେଶଜ) ଢାଷ୍ଟାଦି ରଖିବାର ମଞ୍ଚ ।

ଭଣିଜା, ବ. ( ଭାଗିନେୟୀ ଶବ୍ଦଜ ) ଭଣଜାର ଭଉଣୀ, ଭଗିନୀର କନ୍ୟା ।

ଭାଣ୍ଡ, ବ. ନ. (ଭଣ୍-ଡ, କିମ୍ବା ଭଣ୍ଡ୍-ଅ) ପାତ୍ର; ମୂଳଧନ, ପୁଞ୍ଜି; ଅଳଙ୍କାର; ଭୂଷଣ; ଅଶ୍ୱ-ଭୂଷଣ; ଭଣ୍ଡାମି ।

ଭାଣ୍ଡପୁଟ, ବ. ପୁଂ. ( ଭାଣ୍ଡ-ପୁଟ୍-ଅ ) ନାପିତ, ଭଣ୍ଡାରି ।

ଭାଣ୍ଡାଗାର, ବ. ପୁଂ. (ଭାଣ୍ଡ-ଆଗାର) ଧନାଗାର, ଭଣ୍ଡାର ।

ଭାଣ୍ଡିକ, ବ. ପୁଂ. (ଭାଣ୍ଡ-ଇକ) ଗାୟକ ।

ଭାଣ୍ଡୀର, ବ. ପୁଂ. (ଭାଣ୍ଡ-ଈର୍-ଅ) ବଟବୃକ୍ଷ ।

ଭାତ, ବଂ. (ଭା-ତ) ଦୀପ୍ତିମାନ୍ । ବ. ନ. ପ୍ରଭାତ, ପ୍ରାତଃକାଳ; (ଭକ୍ତ ଶବ୍ଦଜ) ବ. ଅନ୍ନ ।

ଭାତି, ବ. ସ୍ତ୍ରୀ. (ଭା-ତି) ଶୋଭା, ଦୀପ୍ତି ।

ଭାନୁ, ବ. ପୁଂ. (ଭା-ନୁ) ସୂର୍ଯ୍ୟ ।

ଭାତୁଆ, ବଂ. (ଦେଶଜ) ଅନ୍ନଦାସ, ପିଣ୍ଡାଦ ।

ଭାତୁଡ଼ୀ, ବ. ( ଦେଶଜ ) ଦେହଜାତ ବ୍ରଣାକାର କ୍ଷୁଦ୍ର ମାଂସପିଣ୍ଡବିଶେଷ ।

ଭାଦ୍ର, ବ. ପୁଂ. ( ଭଦ୍ର-ଅ ) ବୈଶାଖାଦି ମାସର ପଞ୍ଚମ ମାସ ।

ଭାଦ୍ରପଦ, ବ. ପୁଂ. (ଭାଦ୍ର-ପଦ) ଭାଦ୍ରମାସ । ଦା, ସ୍ତ୍ରୀ. ପୂର୍ବଭାଦ୍ରପଦ ଓ ଉତ୍ତରଭାଦ୍ରପଦ ନକ୍ଷତ୍ର ।

ଭାଦ୍ରମାତୁର, ବ. ପୁଂ. (ଭଦ୍ରମାତୃ-ଅ) ସାଧ୍ୱୀ ସ୍ତ୍ରୀର ପୁତ୍ର, ସତୀତନୟ ।

ଭାନ, ବ. ନ. (ଭା-ଅନ) ପ୍ରକାଶ; ଶୋଭା ।

ଭାନୁ, ବ. ପୁଂ. (ଭା-ନୁ) ସୂର୍ଯ୍ୟ; କିରଣ; କାନ୍ତି; ଶିବ; ପ୍ରଭୁ; ରାଜା । (ସୂର୍ଯ୍ୟଅର୍ଥରେ) ଯଥା—

ଉଦିତ ଜଳଦ ମଣ୍ଡଳୁଁ ଯେବେ ଅବତରି
ବୁଡ଼ଇ ପଶ୍ଚିମେ ଭାନୁ ଜୋଳରେ ତୋହର । କ. ବ.

ଭାନୁଜା, ଭାନୁସୁତା, ବ. ସ୍ତ୍ରୀ. ଯମୁନା ।

ଭାନୁଫଳା, ବ. ସ୍ତ୍ରୀ. (ଭାନୁ-ଫଳା) କଦଳୀଫଳ, କଦଳୀ ।

ଭାନୁମାନ୍, ବ. ପୁଂ. ( ଭାନୁ-ମତ୍ ) ସୂର୍ଯ୍ୟ । ବଂ. କାନ୍ତିମାନ୍; ଦୀପ୍ତିମାନ୍ ।

ଭାନେମି, ବ. ପୁଂ. (ଭା-ନେମି) ସୂର୍ଯ୍ୟ, ଦିବାକର ।

ଭାମ, ବ. ପୁଂ. ( ଭାମ୍-ଅ ) କ୍ରୋଧ; ସୂର୍ଯ୍ୟ; ଦୀପ୍ତି; ଭଗିନୀପତି । ମା, ସ୍ତ୍ରୀ. କୋପନା ସ୍ତ୍ରୀ; ନାରୀ ।

ଭାମକ, ବ. ପୁଂ. (ଭାମ୍-କ) ଭଗିନୀପତି ।

ଭାମିନୀ, ବ. ସ୍ତ୍ରୀ. (ଭାମ୍-ଇନ୍, ଈ) ଅତି କୋପନା ସ୍ତ୍ରୀ; ନାରୀ ।

ଭାମିନୀବିଳାସ, ବ. ପୁଂ. ଜଗନ୍ନାଥମିଶ୍ରକୃତ କାବ୍ୟ-ଗ୍ରନ୍ଥବିଶେଷ ।

ଭାମୀ, ବଂ. (ଭାମ୍-ଇନ୍) କ୍ରୁଦ୍ଧ, କୋପାନ୍ୱିତ ।

ଭାର, ବ. ପୁଂ. ( ଭୃ-ଅ ) ଗୁରୁତ୍ୱ; ରାଶି, ସମୂହ; ବୋଝ; ପରିମାଣବିଶେଷ ।

ଭାରକେନ୍ଦ୍ର, ବ. ପଦାର୍ଥ ମଧ୍ୟରେ ନିର୍ଦ୍ଦିଷ୍ଟବିନ୍ଦୁ, ଯେଉଁଠାରେ ଭାରର ସମତା ହୁଏ ।

ଭାରତ, ବ. ନ. (ଭରତ-ଅ) ଭାରତବର୍ଷ; ଗ୍ରନ୍ଥ-ବିଶେଷ, ମହାଭାରତ । ପୁଂ. ନଟ; ଅଗ୍ନି; ଭରତଙ୍କ ସନ୍ତାନ । ବଂ. ଭରତବଂଶୀୟ ।

ଭାରତୀ, ବ. ସ୍ତ୍ରୀ. ବାକ୍ୟ, ବଚନ; ବୃତ୍ତିବିଶେଷ; ପକ୍ଷିବିଶେଷ; ସରସ୍ୱତୀ । ଯଥା—

ଅଧ ମା ଭରତେ ଭାରତୀ ରାଣୀ । କ. ବ.

ଭାରତବର୍ଷ, ବ. ନ. (ଭାରତ-ବର୍ଷ) ଜମ୍ବୁଦ୍ୱୀପର ନବବର୍ଷାନ୍ତର୍ଗତ ବର୍ଷବିଶେଷ, ସମୁଦ୍ରର ଉତ୍ତର ହିମାଳୟର ଦକ୍ଷିଣସ୍ଥ ଦେଶ ।

ଭାରଦ୍ୱାଜ, ବ. ପୁଂ. (ଭରଦ୍ୱାଜ-ଅ) ଭରଦ୍ୱାଜ; ଦ୍ରୋଣାଚାର୍ଯ୍ୟ; ଅଗସ୍ତ୍ୟମୁନି; ପକ୍ଷିବିଶେଷ । ନ. ଅସ୍ଥି, ହାଡ଼ ।

ଭାରମଧ୍ୟ, ବ. ବସ୍ତୁର ଯେଉଁ ସ୍ଥାନରେ ଭାରର ସମତା ହୁଏ ।

ଭାରଯଷ୍ଟି, ବ. ସ୍ତ୍ରୀ. ( ଭାର-ଯଷ୍ଟି ) ଭାରବହନ-ଦଣ୍ଡ, ବାଉଁଶ ।

ଭାରବ, ବ. ନ. (ଭାର-ବା-ଅ) ଧନୁର୍ଗୁଣ ।

ଭାରବାହ୍, ଭାରବାହ, ଭାରବାହକ, ଭାରବାହୀ, ଭାରହର, ଭାରହାର, ଭାରୀ, } ବଂ. (ଭାର-ବାହ୍, ବାହ,ବାହକ ବାହିନ୍,ହର, ହାର, ଇନ୍) ଭାରବହନକାରୀ, ବୋଝିଆ ।

ଭାରସହ, ବଂ. (ଭାର-ସହ) ଯାହା ଭାରରେ ଛିଣ୍ଡି ପଡ଼େ ନାହିଁ, ଭାରସହନ ସମର୍ଥ ।
ଭାରବି, ବି. ପୁଂ. କିରାତାର୍ଜୁନୀୟ ଗ୍ରନ୍ଥକର୍ତ୍ତା ।
ଭାରି, ବଂ. (ଭାର ଶବ୍ଦଜ) ଭାରୀ, ଗୁରୁ ।
ଭାରି, ବି. ପୁଂ. (ଭୃ-ଇ) ସିଂହ ।
ଭାରିକ, ବଂ. ( ଭାର-ଇକ ) ଭାରବାହକ; ଭାରୀ, ଭାରଯୁକ୍ତ ।
ଭାରୀ,ବଂ. (ଭାର ଶବ୍ଦଜ) ଗୁରୁ; ଭାରି; ବହୁତ ।
ଭାରୁଆ, ବଂ. ( ଭାରବାହ ଶବ୍ଦଜ ) ଯେ ଭାର ବହନ କରେ ।
ଭାର୍ଗବ,ବି. ପୁଂ. (ଭୃଗୁ-ଅ) ଶୁକ୍ରାଚାର୍ଯ୍ୟ; ପରଶୁରାମ; ଧନ୍ୱୀ, ଧନୁର୍ଦ୍ଧାରୀ; ଗଜ, ହସ୍ତୀ ।
ଭାର୍ଗବପ୍ରିୟ, ବି. ପୁଂ. (ଭାର୍ଗବ-ପ୍ରିୟ) ହୀରକ ।
ଭାର୍ଗବୀ, ବି. ସ୍ତ୍ରୀ. (ଭୃଗୁ-ଈ) ପାର୍ବତୀ; ଶ୍ରୀ, ଲକ୍ଷ୍ମୀ; ଦୂର୍ବା ।
ଭର୍ଜିତ, ବଂ. (ଭ୍ରଜ୍-ତ) ଯାହା ଭଙ୍ଗା ହୋଇ-ଅଛି, ଭଙ୍ଗା ।
ଭାର୍ଯ୍ୟା, ବି. ସ୍ତ୍ରୀ. (ଭୃ-ଯ-ଆ) ପତ୍ନୀ, ଜାୟା ।
ଭାର୍ଯ୍ୟାଟ, ବି. ପୁଂ. (ଭାର୍ଯ୍ୟା-ଅଟ୍-ଅ) ଯେଉଁ ବ୍ୟକ୍ତି ସ୍ୱସ୍ତ୍ରୀକୁ ପରପୁରୁଷର ପାଖକୁ ଯିବାପାଇଁ ଅନୁମତି ଦିଏ ।
ଭାଟିକ, ବି. ପୁଂ. ( ଭାର୍ଯ୍ୟାଟ-ଇକ ) ସ୍ତ୍ରୀକର୍ତ୍ତୃକ ପରାଜିତ ବ୍ୟକ୍ତି; ହରିଣବିଶେଷ ।
ଭାର୍ଯ୍ୟାପତି, ବି. ପୁଂ. (ଭାର୍ଯ୍ୟା-ପତି) ଜାୟାପତି, ସ୍ତ୍ରୀପୁରୁଷ ।
ଭାର୍ଯ୍ୟାରୁ,ବି. ପୁଂ. (ଭାର୍ଯ୍ୟା-ଋ-ଉ) ପର୍ବତବିଶେଷ; ମୃଗବିଶେଷ; ପରସ୍ତ୍ରୀଠାରୁ ପୁତ୍ର ଉତ୍ପାଦନ-କାରୀ ।
ଭାଲ,ବି. ପୁଂ. (ଭା-ଲ)କପାଳ,ଲଲାଟ; ତେଜଃ ।
ଭାଲଦର୍ଶନ, ବି. ପୁଂ. ସିନ୍ଦୂର ।
ଭାଲଦୃକ୍, ଭାଲଲୋଚନ, ବି. ପୁଂ. (ଭାଲ-ଦୃଶ୍, ଲୋଚନ) ତ୍ରିନେତ୍ର, ଶିବ ।
ଭାଲାଙ୍କ, ବି. ପୁଂ. (ଭାଲ-ଅଙ୍କ) ରୋହିତମତ୍ସ୍ୟ; ଲକ୍ଷଣାକ୍ରାନ୍ତ ପୁରୁଷ; କଚ୍ଛପ; ଶିବ ।

ଭାଲିବା, କ୍ରି. ( ଦେଶଜ ) ଭାବିବା, ଭାବନା କରିବା । ଯଥା—

> ତୋହେ ଶରଣମୁହିଁ କେବଳ ଗୁଣେ ମୁହିଁ
> ଯୋଗାଇବା ଏହା ଭାଲେ ନାହିଁ ।

ଭାଲୁ, ବି. ( ଭଲ୍ଲୂକ ଶବ୍ଦଜ ) ଋକ୍ଷ, ହିଂସ୍ରପଶୁ-ବିଶେଷ ।
ଭାଲୁକ, ଭାଲୂକ, ଭାଲ୍ଲୁକ, ଭାଲ୍ଲୂକ, ବି. ପୁଂ. (ଭଲ୍, ଭଲ୍ଲ—ଉକ, ଊକ) ଋକ୍ଷ, ଭାଲୁ ।
ଭାବ, ବି. ପୁଂ. (ଭୂ-ଅ) ଉତ୍ପତ୍ତି, ଜନ୍ମ; ସ୍ଥିତି; ବିଭୂତି; ସ୍ୱଭାବ; ଅଭିପ୍ରାୟ; ଚିତ୍ତ; ମନଃ; ଆତ୍ମା; ମନୋବିକାରବିଶେଷ, ଇତ୍ୟାଦି ଏବଂ ନିର୍ବେଦାଦି; କ୍ରିୟା; ଧାତ୍ୱର୍ଥ; ବିଳାସ; ଶରୀରଭଙ୍ଗୀ; ପଦାର୍ଥ, ବସ୍ତୁ; ଚେତନ ପଦାର୍ଥ; ବାକ୍ୟର ମର୍ମ; ଉପଦେଶ; ବିଦ୍ୱାନ୍; ବନ୍ଧୁ; ବୋଦ୍ଧା; ଅଭିପ୍ରାୟ; ଚେଷ୍ଟା; ଜଗତ୍; ସଂସାର; ସୃଷ୍ଟି; ସମ୍ଭାବନା; ନାଟ୍ୟୋକ୍ତିରେ ମାନ୍ୟ; ପୂଜ୍ୟ ।
ଭାବକ, ବଂ. (ଭାବ-କ) ଉତ୍ପାଦକ; ଚିନ୍ତାକାରୀ ।
ଭାବନ, ନ. } ବି ( ଭାବ-ଅନ-ଆ ) ଧ୍ୟାନ,
ଭାବନା, ସ୍ତ୍ରୀ.} ଚିନ୍ତା । ଯଥା—

> ବୃଥା ଭାବନା ଅତ କରିବ ନାହିଁ,
> ଭାବନାରେ ଅନନ୍ଦ ମିଳଇ କାହିଁ । ବ. ବା

ମନେ ମନେ କଳ୍ପନା; ଅନୁଧ୍ୟାନ ବିବେଚନା; ଅଭିଷେକ; ମିଶ୍ରଣ;ସଜାଇବା; ପର୍ଯ୍ୟାଲୋଚନା; ଅଧିବାସନ; ଔଷଧସଂସ୍କାରବିଶେଷ ।
ଭାବମିଶ୍ର, ବି. ପୁଂ. ପଣ୍ଡିତଶ୍ରେଷ୍ଠ ।
ଭାବାଟ, [illegible] (ଭାବ-ଅଟ୍-ଅ) ସାଧୁ, ସଜ୍ଜନ; କାମୁକ; ନଟ ।
ଭାବାର୍ଥ,ବି.ପୁଂ. (ଭାବ-ଅର୍ଥ) ଅଭିପ୍ରାୟ, ତାତ୍ପର୍ଯ୍ୟ ।
ଭାବିକ, ବଂ. (ଭାବ-ଇକ) ସ୍ୱାଭାବିକ; ରସାତ୍ମକ; ଭବିଷ୍ୟତ୍କାଳିକ । ବି. ନ. ଅଲଙ୍କାରବିଶେଷ ।
ଭାବିତ, ବଂ. ( ଭାବି-ତ ) ଚିନ୍ତିତ; ମିଶ୍ରିତ; ଅଙ୍ଗୀକୃତ; ଆର୍ଦ୍ରୀକୃତ; ବାସିତ; ଶୁଦ୍ଧ, ପବିତ୍ରୀକୃତ; ପ୍ରାପ୍ତ; ପ୍ରାପିତ; ସଂସୃତ; ପ୍ରମାଣୀକୃତ ।

ଭାବନ, ବ. ନ. (ଭାବ-ଅନ) ତ୍ରୈଲୋକ୍ୟ, ସ୍ୱର୍ଗ ମର୍ତ୍ତ୍ୟ ପାତାଳ।

ଭାବିନୀ, ବ. ସ୍ତ୍ରୀ. (ଭାବ-ଇନ୍-ଈ) କାମିନୀ, ପ୍ରିୟା। ଯଥା—

ଭାବିନୀ ଭାବନାରେ ହୋଇ କାତର,
ସର୍ବଦା ସ୍ମରୁଥିବ ତା ନେତ୍ରଁ ଶର।

ଭାବୀ, ବିଂ. (ଭୂ-ଇନ୍) ଭବିଷ୍ୟତ୍, ଆଗାମୀ।

ଭାବୁକ, ବ. ନ. (ଭୂ-ଉକ) ମଙ୍ଗଳ, ଶୁଭ। ପୁଂ. ଭଗିନୀପତି। ବିଂ. ଭାବଗ୍ରାହକ। ଯଥା—

ପ୍ରକୃତସ୍ୱଭାବ ହରେ ଭାବୁକ ହୃଦୟ। କ. ବ.

ଭାବନାଶୀଳ।

ଭାବ୍ୟ, ବିଂ. (ଭୂ-ଯ) ଭବିତବ୍ୟ, ଯାହା ଅବଶ୍ୟ ହେବ; ସାଧ୍ୟ, ନିଷ୍ପାଦ୍ୟ।

ଭାଷଣ, ବ. ନ. (ଭାଷ୍-ଅନ) କଥନ, କହିବା।

ଭାଷା, ବ. ସ୍ତ୍ରୀ. (ଭାଷ୍-ଅ, ଆ) ଅର୍ଥଯୁକ୍ତ ଉଚ୍ଚାରିତ ଶବ୍ଦ; କଥା; କଥନ; ଯାହାଦ୍ୱାରା ଲୋକେ କଥାବାର୍ତ୍ତା କହନ୍ତି; ସଂସ୍କୃତ ବଙ୍ଗଳା ଇତ୍ୟାଦି; ରାଗିଣୀବିଶେଷ; ବାଗ୍‌ଦେବତା।

ଭାଷାନ୍ତରିତ, ବିଂ. (ଭାଷା-ଅନ୍ତରିତ) ଏକ ଭାଷାରୁ ଅନ୍ୟ ଭାଷାରେ ଅନୁବାଦିତ।

ଭାଷାପାଦ, ବ. ନ. (ଭାଷା-ପାଦ) ପୂର୍ବପକ୍ଷପାଦ, ଅଭିଯୋଗ, ପୂର୍ବପାଦ।

ଭାଷିତ, ବିଂ. (ଭାଷ୍-ତ) କଥିତ, ଉକ୍ତ। ବ. ନ. ଭାଷା, ବଚନ।

ଭାଷୀ, ବିଂ. (ଭାଷ୍-ଇନ୍) କଥକ, ଯେ କହେ।

ଭାଷ୍ୟ, ବ. ନ. (ଭାଷ୍-ଯ) ବ୍ୟାଖ୍ୟାନ, ବିବରଣ ଗ୍ରନ୍ଥ; ଗୃହବିଶେଷ; ସୂତ୍ର। ବିଂ. କଥନୀୟ।

ଭାଷ୍ୟକର, ବ. ପୁଂ. (ଭାଷ୍ୟ-କର) ଟୀକାଲେଖକ; ପତଞ୍ଜଳି ମୁନି।

ଭାସ୍, ଭାସା, ସ୍ତ୍ରୀ. ଭାସ, ପୁଂ. ଭାସସ୍, ନ. } ବ. (ଭାସ୍-ଂ, ଅ, ଅସ୍) ଦୀପ୍ତି, କାନ୍ତି, ଆଲୋକ।

ଭାସ, ବ. ପୁଂ. (ଭାସ୍-ଅ) ଗୃଧ୍ର; କୁକ୍କୁଟ; ଗୋଷ୍ଠ; ଶକୁନ୍ତପକ୍ଷୀ।

ଭାସନ୍ତ, ବ. ପୁଂ. (ଭାସ୍-ଅନ୍ତ) ସୂର୍ଯ୍ୟ; ଚନ୍ଦ୍ର; ଭାସପକ୍ଷୀ। ବିଂ. ସୁନ୍ଦର, ମନୋହର। ନ୍ତୀ, ସ୍ତ୍ରୀ. ନକ୍ଷତ୍ର।

ଭାସନ୍ତା, ବିଂ. (ଭାସ୍ ଧାତୁଜ) ଜଳ ଉପରେ ଭାସମାନ।

ଭାସମାନ୍, ଭାସୀ, ବିଂ. (ଭାସ୍-ଆନ, ଇନ୍) ଶୋଭମାନ, ଦୀପ୍ୟମାନ, ଜଳରେ ସନ୍ତରଣକାରୀ; ଯାହା ଜଳରେ ଭାସୁଅଛି।

ଭାସିବା, କ୍ରି. ବ. (ଭାସ ଧାତୁଜ) ଲଘୁପଦାର୍ଥ ତରଳ ପଦାର୍ଥ ଉପରେ ସଞ୍ଚାଳିତ ହେବା। ଯଥା—

ଭାସିବ କି ଭାସୁ ସ୍ୱପନରେ।

ଭାସୁ, ବ. ପୁଂ. (ଭାସ୍-ଉ) ସୂର୍ଯ୍ୟ।

ଭାସୁର, ବିଂ. (ଭାସ୍-ଉର) ଦୀପ୍ୟମାନ, ଦୀପ୍ତିଯୁକ୍ତ। ବିଂ. ପୁଂ. ସ୍ଫଟିକ; ବୀର।

ଭାସୁରତାପାଦନ, ଯେଉଁ ପ୍ରକ୍ରିୟାଦ୍ୱାରା ଜଳ ଦ୍ରବ-ଲୌହ ପ୍ରଭୃତି ଶୀତଳ ହୋଇ କଠିନ ହେବାବେଳେ ଏକ ପ୍ରକାର ମନୋହର ଆକାର ଧାରଣ କରେ।

ଭାସ୍କର, ବ. ପୁଂ. (ଭାସ୍-କର) ସୂର୍ଯ୍ୟ; ଅଗ୍ନି; ପଣ୍ଡିତବିଶେଷ, ଭାସ୍କରାଚାର୍ଯ୍ୟ, ସିଦ୍ଧାନ୍ତଶିରୋମଣି ଇତ୍ୟାଦି ଜ୍ୟୋତିଷ ଗ୍ରନ୍ଥକର୍ତ୍ତା; ବୀର; ପ୍ରସ୍ତରାଦିରେ ଯେଉଁମାନେ ମୂର୍ତ୍ତି ଓ ଅକ୍ଷରାଦି ଖୋଦିତ କରନ୍ତି। ନ. ସୁବର୍ଣ୍ଣ।

ଭାସ୍ୱର, ବିଂ. (ଭାସ୍-ବର) ଦୀପ୍ୟମାନ, ଦୀପ୍ତିଯୁକ୍ତ, ଦୀପ୍ତିଶୀଳ। ଯଥା—

ପ୍ରଚଣ୍ଡ ପାଣ୍ଡବ ଯୋଧେ ଅପୂର୍ବ ଭାସ୍ୱର
ଧରି କ୍ରୋଧେ ମହାଯୁଦ୍ଧେ ଧାଇଁଲେ ସତ୍ୱର। କ. ବ.

ଭାସ୍ୱାନ୍, ବ. ପୁଂ. (ଭାସ୍-ବତ୍) ସୂର୍ଯ୍ୟ; ଦୀପ୍ତି। ବିଂ. ଦୀପ୍ତି ବିଶିଷ୍ଟ, ଦୀପ୍ତିଶାଳୀ।

ଭିଆଣ, ବ. (ଦେଶଜ) ରଚନା, ନିର୍ମାଣ। ଯଥା—

କଲେ ନାନା ଉତ୍ସବ ଅନନ୍ଦ ଭିଆଣ।

ଜମିଦାରୀ ବନ୍ଦୋବସ୍ତବିଶେଷ; ଉପାୟ। ଯଥା—

ପ୍ରତିକ୍ଷଣ ଦେବ ପାଇଲେ ପ୍ରତିଶୋଧ ଭିଆଣ।

ଭିକ୍ଷା, ବ. ସ୍ତ୍ରୀ. (ଭିକ୍ଷ୍-ଅ) ଯାଚ୍ଞା, ପ୍ରାର୍ଥନା; ସେବା; ଯାଚିତ ବସ୍ତୁ।

ଭିକ୍ଷାଚର, ବି°. (ଭିକ୍ଷା-ଚର୍-ଅ) ଯାଚକ, ଭିକ୍ଷୁକ।
ଭିକ୍ଷାଶୀ, ବି°. ( ଭିକ୍ଷା-ଅଶିନ୍ ) ଭୈକ୍ଷ୍ୟଜୀବୀ, ଭିକ୍ଷୁକ।
ଭିକ୍ଷୁ, ବି. ପୁଂ. ( ଭିକ୍ଷା-ଉ ) ପରିବ୍ରାଜକ, ଭିକ୍ଷୋପଜୀବୀ, ଚତୁର୍ଥାଶ୍ରମୀ।
ଭିକ୍ଷୁକ, ବି°. (ଭିକ୍ଷୁ-କ) ଯାଚକ, ଭିକ୍ଷାଜୀବୀ।
ଭିଜେଇବା, କ୍ରି. ବି. (ଦେଶଜ) ଆର୍ଦ୍ର କରିବା, ଜଳଯୁକ୍ତ କରିବା।
ଭିଡ଼, ବି. (ଦେଶଜ) ଲୋକସମୂହ, ଜନତା।
ଭିଡିବା, କ୍ରି. ( ଦେଶଜ ) କୁଣ୍ଢାଇବା, ଆକର୍ଷଣ କରିବା।
ଭିଣିବା, କ୍ରି. (ଦେଶଜ) ପିଙ୍ଗିବାର; ବିଦାରିବାର।
ଭିଣୋଇ, ବି. (ଭଗିନୀପତି ଶବ୍ଦଜ) ଭଗିନୀପତି। ଯଥା—

> କୋମଳ ମଧୁର ବାଣୀ ଅକାଶମଣ୍ଡଳୁ ଶୁଣି
> ଭଗ୍ନୀ ଭିଣୋଇଙ୍କ ନେଇ ଶାଙ୍କୁଳୀ ଦେଲ। ର. କ.

ଭିତର, ବି. ( ଦେଶଜ ) ମଧ୍ୟସ୍ଥ, ଅଭ୍ୟନ୍ତର; ଅନ୍ତଃପୁର।
ଭିତ୍ତ, ବି. ନ. (ଭିଦ୍-ତ) ଖଣ୍ଡ।
ଭିତ୍ତି, ବି. ସ୍ତ୍ରୀ. (ଭିଦ୍-ତି) ଅବୃତି; କାନ୍ଥ। ଯଥା—

> ଭିତ୍ତି ଅନ୍ତରେ ଥିବେ ପଦ୍ମ ସଖି। ଲ° ବି.

ପ୍ରଭେଦ; ବିଭାଗ; ପ୍ରଦେଶ; ଅବସର।
ଭିତ୍ତିକା, ବି. ସ୍ତ୍ରୀ. (ଭିତ୍ତି-କ) ଭିତ୍ତି; କାନ୍ଥ।
ଭିତ୍ତିଚୌର, ବି. ପୁଂ. ( ଭିତ୍ତି-ଚୌର ) ଚୋର-ବିଶେଷ, ସିନ୍ଧଚୋର।
ଭିଦ୍, ବି. ( ଭିଦ୍-° ) ବିଦାରଣ; ଛେଦକରଣ; ଛେଦନ; ପ୍ରଭେଦ। ବି°. ଭେଦକର୍ତ୍ତା। ଯଥା—ଗୋତ୍ରଭିଦ୍ ଇତ୍ୟାଦି।
ଭିଦକ, ବି. ନ. (ଭିଦ୍-ଅକ) ଅଶନି, ବଜ୍ର; ଖଡ୍ଗ।
ଭିଦା, ବି. ସ୍ତ୍ରୀ. ( ଭିଦ୍-ଅ ) ବିଦାରଣ; ଚିର; ପ୍ରଭେଦ, ଭିନ୍ନତା।
ଭିଦାବବୋଧକତା, ବି. ସ୍ତ୍ରୀ. ( ଭିଦା-ଅବବୋଧ-କତା) ଯେ ବସ୍ତୁର ଯୋଗାକର୍ଷଣ ସହଜରେ ଭେଦ କରି ଯାଇ ନ ପାରେ।
ଭିଦୁର, ବି°. ( ଭିଦ୍-ଉର ) ମିଶ୍ର, ଏକତ୍ରିତ, ଭେଦଶୀଳ, ଭଙ୍ଗୁର, ଯାହା ସହଜରେ ଭାଙ୍ଗି-ଯାଏ। ବି. ନ. ବଜ୍ର, ଅଶନି।
ଭିଦ୍ୟ, ବି. ପୁଂ. (ଭିଦ୍-ଯ) କୂଳଭେଦକାରୀ ନଦୀ।
ଭିଦ୍ର, ବି. ପୁଂ. ନ. (ଭିଦ୍-ର) ଅଶନି, ବଜ୍ର।
ଭିନ୍ଦିପାଲ, ବି. ପୁଂ. ( ଭିନ୍ଦି-ପାଲ୍-ଅ ) କ୍ଷେପଣୀୟ ଅସ୍ତ୍ରବିଶେଷ।
ଭିନ୍ନ, ବି°. (ଭିଦ୍-ତ) ଅନ୍ୟ; ବିଦାର୍ଣ୍ଣ; ବିଶୀର୍ଣ୍ଣ; ଶିଥିଳିତ; ବିଫଳିତ; ମର୍ଦ୍ଦିତ; ଛିନ୍ନ; ଭଗ୍ନ; ଖଣ୍ଡିତ; ନିରସ୍ତ; ପ୍ରତିଫଳିତ; ବିଭକ୍ତ; ବିକସିତ; ମିଶ୍ରିତ; ତ୍ୟକ୍ତ; ମଦସ୍ରାବୀ; ସ୍ଖଳିତ; ଲୁଣ୍ଠିତ; ବିଦଳିତ; ବିଚୂର୍ଣ୍ଣୀଭୂତ; ସ୍ପଷ୍ଟ।
ଭିନ୍ନକ, ବି. ପୁଂ. (ଭିନ୍ନ-କ) କ୍ଷପଣକ, ବୌଦ୍ଧ।
ଭିନ୍ନଗୁଣନ, ବି. ନ. (ଭିନ୍ନ-ଗୁଣନ) ଭଗ୍ନାଂଶର ଗୁଣୀକରଣ।
ଭିନ୍ନଘନ, ବି. ନ. ( ଭିନ୍ନ-ଘନ ) ଭଗ୍ନାଂଶର ଗୁଣୀକରଣ।
ଭିୟା, ବି. ସ୍ତ୍ରୀ. (ଭୀ-ଅ) ଭୟ, ଶଙ୍କା।
ଭିଲ୍ଲ, ବି. ପୁଂ. ଅସଭ୍ୟ ଜାତିବିଶେଷ, ଭୀଲ।
ଭିଲ୍ଲୀ, ବି. ସ୍ତ୍ରୀ. ଲୋଧ୍ରବୃକ୍ଷ।
ଭିଷକ୍, ବି. ପୁଂ. (ଭିଷ୍-ଅକ୍) ବୈଦ୍ୟ, ଚିକିତ୍ସକ।
ଭୀ, ଭୀତି, ବି. ସ୍ତ୍ରୀ. ( ଭୀ-°, ତି ) ଭୟ, ତ୍ରାସ, ଶଙ୍କା; ଭୟକମ୍ପ।
ଭୀତ, ବି°. (ଭୀ-ତ) ଭୟଯୁକ୍ତ, ତ୍ରସ୍ତ, ଶଙ୍କିତ। ବି. ଭୟ।
ଭୀମ, ବି. ପୁଂ. (ଭୀ-ମ) ମଧ୍ୟମପାଣ୍ଡବ, ବୃକୋଦର; ଶିବ; ଦମୟନ୍ତୀଙ୍କ ପିତା, ନୃପବିଶେଷ; ଭୟାନକ ରସ। ବି°. ଘୋର, ଭୀଷଣ, ଭୟାନକ। ମା, ସ୍ତ୍ରୀ. ଦୁର୍ଗା।
ଭୀମନାଦ, ବି. ପୁଂ. (ଭୀମ-ନାଦ) ସିଂହ, ଭୟାନକ ଶବ୍ଦ। ଯଥା—

> ଭୀମନାଦେ ଚଉପାଶେ ବେଢ଼ି ଶିବାଗଣ
> କୁରଙ୍ଗହର୍ଷେ ଶବସନ୍ନି କରନ୍ତି ଭକ୍ଷଣ। ଲ. ବି.

ଭ୍ରମରକାନ୍ତ, ବି. ପୁଂ. ( ଭ୍ରମ-ବକାନ୍ତ ) ସିଂହ । ବଂ. ଭୟାନକ ପରାକ୍ରମଶାଳୀ ।

ଭୀମଶାସନ, ବି. ପୁଂ. ( ଭୀମ-ଶାସନ ) କୃତାନ୍ତ, ଯମ ।

ଭୀମସେନ, ବି. ପୁଂ. (ଭୀମ-ସେନା) ମଧ୍ୟମପାଣ୍ଡବ, ବୃକୋଦର; କର୍ପୂରବିଶେଷ ।

ଭୀମୈକାଦଶୀ, ବି. ସ୍ତ୍ରୀ. ମାଘ ମାସର ଶୁକ୍ଳ ଏକାଦଶୀ ।

ଭୀରୁ, ବଂ. (ଭୀ-ରୁ) ଏସ୍ତ, ଭୀତସ୍ୱଭାବ । ବି. ପୁଂ. ଶୃଗାଳ; ବ୍ୟାଘ୍ର । ସ୍ତ୍ରୀ. ସ୍ତ୍ରୀବିଶେଷ ।

ଭୀରୁକ, ବଂ. (ଭୀ-ରୁକ) ଭୟଯୁକ୍ତ, କାତର । ବି. ପୁଂ. ପେଚକ; ଶୃଗାଳ; ଭଲ୍ଲୁକ । ନ. ବନ ।

ଭୀରୁରନ୍ଧ୍ର, ବି. ପୁଂ. (ଭୀରୁ-ରନ୍ଧ୍ର) ଅଗ୍ନିକୁଣ୍ଡ ।

ଭୀରୁହୃଦୟ, ବି. ପୁଂ. (ଭୀରୁ-ହୃଦୟ) ମୃଗ, ହରଣ ।

ଭୀଲୁ, ବଂ. (ଭୀ-ଲୁ) ଭୀରୁ, ଭୟଶୀଳ । ବି. ପୁଂ. ଶୃଗାଳ; ଭଲ୍ଲୁକ ।

ଭୀଷଣ, ବଂ. (ଭୀ-ଅନ) ଭୟଙ୍କର ଦାରୁଣ; ଗାଢ଼, ଦୃଢ଼ । ବି. ପୁଂ. ଶିବ; ଭୟାନକରସ; ଭୟ ।

ଭୀଷ୍ମ, ବି. ପୁଂ. (ଭୀ-ମ) ପାଣ୍ଡୁରାଜାଙ୍କ ପିତାମହର ଭ୍ରାତା, ଶାନ୍ତନୁ ରାଜାଙ୍କ ପୁତ୍ର, ଗାଙ୍ଗେୟ,ସେ ଦାରପରିଗ୍ରହ ଓ ରାଜ୍ୟଭୋଗ କରି ନାହାନ୍ତି; ଶିବ; ରାକ୍ଷସ । ବଂ. ଭୟାନକ, ଭୟଙ୍କର ।

ଭୀଷ୍ମକ, ବି. ପୁଂ. ବିଦର୍ଭରାଜ, ରୁକ୍ମିଣୀର ପିତା ।

ଭୀଷ୍ମପଞ୍ଚକ, ବି. ନ. କାର୍ତ୍ତିକ ଶୁକ୍ଳ ଏକାଦଶୀ ଅବଧି ପୂର୍ଣ୍ଣିମା ପର୍ଯ୍ୟନ୍ତ ଏହି ପାଞ୍ଚ ତିଥିର କର୍ତ୍ତବ୍ୟ ବ୍ରତବିଶେଷ; ପଞ୍ଚ ତିଥି ।

ଭୀଷ୍ମସୂ, ଭୀଷ୍ମଜନନୀ, ବି.ସ୍ତ୍ରୀ. (ଭୀଷ୍ମ-ସୂ, ଜନନୀ) ଭୀଷ୍ମଙ୍କ ମାତା, ଗଙ୍ଗା ।

ଭୀଷ୍ମାଷ୍ଟମୀ, ବି. ସ୍ତ୍ରୀ. ମାଘମାସର ଶୁକ୍ଳ ଅଷ୍ଟମୀ ।

ଭୁଅ, ବି. (ଦେଶଜ) ଅଣ୍ଡିରା ବିରାଡ଼ି ।

ଭୁଅସୁଣୀ, ବି. (ଦେଶଜ) କୁଳବଧୂ, କୁଳସ୍ତ୍ରୀ ।

ଭୁକ୍, ବଂ. (ଭୁଜ୍-୦) ଭୋକ୍ତା, ଯେ ଭୋଜନ କରେ । ଯଥା—ବଳିଭୁକ୍ ଇତ୍ୟାଦି ।

ଭୁକ୍ତ, ବଂ.(ଭୁଜ୍-ତ) ଭକ୍ଷିତ; ଉପଭୁକ୍ତ; ଅନ୍ତର୍ଗତ ।

ଭୁକ୍ତଭୋଗୀ, ବଂ. ପୁନଃପୁନଃ ଭୋଗକର୍ତ୍ତା ।

ଭୁକ୍ତାବଶିଷ୍ଟ, ବଂ. (ଭୁକ୍ତ-ଅବଶିଷ୍ଟ) ଅଇଁଠା ।

ଭୁକ୍ତି, ବି. ସ୍ତ୍ରୀ. (ଭୁଜ୍-ତି) ଭୋଜନ; ଭୋଗ ।

ଭୁଗ୍ନ, ବଂ. (ଭୁଜ୍-ତ) ବକ୍ର, ବଙ୍କା; ରୋଗାଦିଦ୍ୱାରା କୁଞ୍ଚିତ; ନତ ।

ଭୁଜ, ବି. ପୁଂ. (ଭୁଜ୍-ଅ) ବାହୁ; ହସ୍ତ; ଭୂର୍ଜପତ୍ର; ଧନୁକର ଅଗ୍ରଭାଗ; ଗୋଲାକାର ବସ୍ତୁ; ତ୍ରିକୋଣାଦି କ୍ଷେତ୍ରର ରେଖାବିଶେଷ; କୌଟିଲ୍ୟ ।

ଭୁଜକୋଟର, ବି. ପୁଂ. (ଭୁଜ-କୋଟର) କକ୍ଷ, କାଖ ।

ଭୁଜଗ, ବି. ପୁଂ. (ଭୁଜ-ଗ) ସର୍ପ, ଫଣୀ ।

ଭୁଜଗଦାରଣ, ବି. ପୁଂ. ( ଭୁଜଗ-ଦାରଣ ) ଗରୁଡ଼ ।

ଭୁଜଗାନ୍ତକ, ଭୁଜଗାଶନ, ବି. ପୁଂ. ( ଭୁଜଗ-ଅନ୍ତକ, ଅଶନ ) ଗରୁଡ଼; ମୟୂର ।

ଭୁଜଙ୍ଗ, ଭୁଜଙ୍ଗମ, ବି. ପୁଂ. (ଭୁଜ-ଗ, ଗମ୍-ଅ) ସର୍ପ; ଶଠ ।

ଭୁଜଙ୍ଗଭୁକ୍, ବି. ପୁଂ. (ଭୁଜଙ୍ଗ-ଭୁକ୍) ଗରୁଡ଼; ମୟୂର ।

ଭୁଜଶିରଃ, ବି. ନ. ( ଭୁଜ-ଶିରସ୍ ) ସ୍କନ୍ଧ, କାନ୍ଧ ।

ଭୁଜା, ବି. ( ଦେଶଜ ) ଚୂଡ଼ା, ମୁଢି ପ୍ରଭୃତି ଖାଦ୍ୟଦ୍ରବ୍ୟବିଶେଷ ।

ଭୁଜାନ୍ତର, ବି. ନ. (ଭୁଜ-ଅନ୍ତର) ବକ୍ଷଃସ୍ଥଳ; ଅନ୍ୟ ଭୁଜ ।

ଭୁଜି, ବି. ପୁଂ. (ଭୁଜ୍-ଇ) ଅଗ୍ନି, ବହ୍ନି ।

ଭୁଜିଷ୍ୟ, ବି. ପୁଂ. (ଭୁଜ୍-ଇଷ୍ୟ) ଦାସ, ଭୃତ୍ୟ; ହସ୍ତସୂତ୍ର ।

ଭୁଞ୍ଜିବା, କ୍ରି. (ଦେଶଜ) ଭୋଗ କରିବା; ଭୋଜନ କରିବା । ଯଥା—

> ନନ୍ଦପୁର ସୁଖ ଭୁଞ୍ଜିବାକୁ ପରେ
> ଇଚ୍ଛ ଯେବେ କର ଯତନ ଦୂର । ଦ. ବ.

ଭୁଜୁଙ୍ଗ, ବି. (ଦେଶଜ) ଭୁସ୍ତି ।

ଭୁଣ୍ଡି, ବି. (ଦେଶଜ) ଭଣ୍ଡି; ଅଗ୍ରଭାଗ । ଯଥା—ଫରୁଆଭୁଣ୍ଡି ।

ଭୁନ, ବି. (ଦେଶଜ) ବାଧିବାର ବସ୍ତ୍ରବିଶେଷ ।

ଭୁବି, ବି. (ଦେଶଜ) ଗୁଡ଼ବିକାର ।

ଭୁରିକ୍, ବି. ସ୍ତ୍ରୀ. (ଭୁ-ଇକ୍) ପୃଥିବୀ ।

ଭୁଲ, ବି. (ଦେଶଜ) ବିସ୍ମୃତ, ଭ୍ରମ, ଭ୍ରାନ୍ତ ।

ଭୁଲାଇବା, କ୍ରି. (ଦେଶଜ) ଭ୍ରମ କରାଇବା ।

ଭୁବନ, ବି. ନ. (ଭୁ-ବନ) ଜଗତ୍, ସପ୍ତ-ପାତାଳ ଓ ସପ୍ତ ସ୍ୱର୍ଗ ଏହି ଚତୁର୍ଦ୍ଦଶ; ଜଳ; ଆକାଶ ।

ଭୁବନେଶ୍ୱର, ବି. (ଭୁବନ-ଈଶ୍ୱର) ପୁରୀଜିଲାସ୍ଥ ଶିବକ୍ଷେତ୍ରବିଶେଷ, ମହାଦେବବିଶେଷ, ଲିଙ୍ଗ-ରାଜ ।

ଭୁବନେଶ୍ୱରୀ, ବି. ସ୍ତ୍ରୀ. ଦଶମହାବିଦ୍ୟାନ୍ତର୍ଗତା ଦେବୀବିଶେଷ ।

ଭୁବନ୍ୟୁ, ବି. ପୁଂ. (ଭୁ-ଉନ୍ୟୁ-କ, ନିପାତନରେ) ସୂର୍ଯ୍ୟ; ଚନ୍ଦ୍ର; ଅଗ୍ନି; ପ୍ରଭୁ ।

ଭୁବନ୍ତି, ଭୁବିଧର, ବି. ପର୍ବତ ।

ଭୁବଃ, ବି. (ଭୁ-ବର୍, ଭୁ-ବସ୍) ଆକାଶ; ସୂର୍ଯ୍ୟ ଓ ପୃଥିବୀର ମଧ୍ୟବର୍ତ୍ତୀ ପ୍ରଦେଶ; ସପ୍ତ ଲୋକ ମଧ୍ୟରୁ ଦ୍ୱିତୀୟ ଲୋକ ।

ଭୁବର୍ଲୋକ, ବି. ପୁଂ. (ଭୁବସ୍-ଲୋକ) ପୃଥିବୀ ଓ ସୂର୍ଯ୍ୟର ମଧ୍ୟପ୍ରଦେଶ ।

ଭୁବଃ, ବି. ନ. ( ଭୂ-ଇସ୍ ) ସମୁଦ୍ର ।

ଭୁଶୁଣ୍ଡି, ବି. ସ୍ତ୍ରୀ. ଆଗ୍ନେୟାସ୍ତ୍ରବିଶେଷ; (ଦେଶଜ) ଅପରିଷ୍କୃତା ପୃଥୁଳା ସ୍ତ୍ରୀ । ଯଥା—

ରନ୍ଧନ ଗୃହରେ ପଶି ଭୁଶୁଣ୍ଡି
ଗୋଡ଼ା ଗୋଡ଼ା କରି ଖୋଜଇ ହାଣ୍ଡି ।

ଭୁଷୀ, ଭୁଷି, ବି. (ଦେଶଜ) ଯବ ଗୋଧୂମାଦିର ତ୍ୱକ୍, ଧାନ୍ୟାଦିର ଚୋପା ବା ତୁଷ ।

ଭୁଷିବା, କ୍ରି. (ଦେଶଜ) ବାଜିବା; କେଞ୍ଚିବା ।

ଭୁଷୁଲିବା, ଭୁଷୁଡ଼ିବା, କ୍ରି. (ଦେଶଜ) ହଠାତ୍ ବିଦୀର୍ଣ୍ଣ ହେବା । ଯଥା—

ଭୁଷୁଡ଼ିବ ସତେକି ନୟନ ଯୁଗ ।

ଭୂ, ବି. ସ୍ତ୍ରୀ. (ଭୂ-୦) ପୃଥିବୀ; ସ୍ଥାନ; ଆଧାର; ଯଜ୍ଞାଗ୍ନି । ଅଂ. ପାତାଳ ।

ଭୂଇଁ, ବି. (ଭୂମି ଶବ୍ଦଜ) କ୍ଷେତ୍ର, କ୍ଷେତ ।

ଭୂଇଁଦଅଣ, ( ଭୂମିଦଳନ ଶବ୍ଦଜ ) ପୃଥିବୀ ରଜସ୍ୱଳାର ପରଦିନ ।

ଭୂକ, ବି. ନ. (ଭୂ-କକ୍) ଛିଦ୍ର, ଗର୍ତ୍ତ; କାଳ, ସମୟ । ପୁଂ. ଅନ୍ଧକାର ।

ଭୂକନ୍ଧରା, ବି. ସ୍ତ୍ରୀ. ଯେ ଗ୍ରୀବାକୃତି ଭୂମିଖଣ୍ଡ ଅନ୍ୟ ଅପ୍ରଶସ୍ତ ଭୂମିଖଣ୍ଡଦ୍ୱୟକୁ ସଂଯୋଜିତ କରଇ ।

ଭୂକମ୍ପ, ବି. ପୁଂ. (ଭୂମି-କମ୍ପ) ଭୁଇଁକମ୍ପ, ପୃଥିବୀର କମ୍ପନ ।

ଭୂକର୍ଣ୍ଣ, ବି. ପୁଂ. (ଭୂ-କର୍ଣ୍ଣ) ଜ୍ୟୋତିଃ ଶାସ୍ତ୍ରରେ ନିରକ୍ଷମଣ୍ଡଳର ବ୍ୟାସାର୍ଦ୍ଧ ।

ଭୂକଶ୍ୟପ, ବି. ପୁଂ. (ଭୂ-କଶ୍ୟପ) ବସୁଦେବ, କୃଷ୍ଣଙ୍କର ପିତା ।

ଭୂକାକ, ବି. ପୁଂ. ନୀଳବର୍ଣ୍ଣ କପୋତ ।

ଭୂକେଶ, ବି. ପୁଂ. (ଭୂ-କେଶ) ଶୈବାଳ; ବଟ-ବୃକ୍ଷ । ଶୀ, ସ୍ତ୍ରୀ. ରାକ୍ଷସୀ ।

ଭୂକ୍ଷିତ୍, ବି. ପୁଂ. (ଭୂ-କ୍ଷି-୦) ଶୂକର ।

ଭୂଗର, ବି. ନ. (ଭୂ-ଗର) ଗରଳ, ବିଷ ।

ଭୂଗର୍ଭ, ବି. ପୁଂ. ( ଭୂ-ଗର୍ଭ ) ଭବଭୂତି କବି; ଭୂମିର ଅଭ୍ୟନ୍ତର ଭାଗ ।

ଭୂଗୋଳ, ବି. ପୁଂ. (ଭୂ-ଗୋଳ) ଭୂମଣ୍ଡଳ; ଯେଉଁ ଶାସ୍ତ୍ରଦ୍ୱାରା ପୃଥିବୀର ଉପରିଭାଗର ସବିଶେଷ ବୃତ୍ତାନ୍ତ ଜଣାଯାଏ ।

ଭୂଗୋଳବିଦ୍ୟା, ବି. ଯେଉଁ ବିଦ୍ୟାଦ୍ୱାରା ପୃଥିବୀର ଅବସ୍ଥିତି, ବିଭାଗ, ଗତି ଓ ସମ୍ବନ୍ଧ ଜଣାଯାଏ ତାହାକୁ ଭୂଗୋଳବିଦ୍ୟା କହି ।

ଭୂଚର, ବିଂ. (ଭୂ-ଚର) ଯେଉଁମାନେ ଭୂମିରେ ବାସ କରନ୍ତି, ମନୁଷ୍ୟ ଗୋ ଅଶ୍ୱ ପ୍ରଭୃତି ।

ଭୂଚିତ୍ର, ବି. ନ. (ଭୂ-ଚିତ୍ର) ପୃଥିବୀର ମାନଚିତ୍ର, ମ୍ୟାପ ।

ଭୂଛାୟା, ବ. ସ୍ତ୍ରୀ. (ଭୂ-ଛାୟା) ଅନ୍ଧକାର ।
ଭୂଜମ୍ବୂ, ବ. ସ୍ତ୍ରୀ. (ଭୂ-ଜମ୍ବୂ) ଗୋଧୂମ, ଗହମ ।
ଭୂତ, ବ. ପୁଂ. କ୍ଲ. (ଭୂ-ତ) ପିଶାଚ । ପୁଂ. ଶିବଙ୍କ ଅନୁଚର । କ୍ଲ. ପୃଥିବୀ ଜଳ ଅଗ୍ନି ବାୟୁ ଆକାଶ ଏହି ପାଞ୍ଚ; ଜନ୍ତୁ; ଚେତନ ପଦାର୍ଥ; ପ୍ରାଣୀ; ସତ୍ୟ; ତତ୍ତ୍ୱାନୁସନ୍ଧାନ । ବିଂ. ଉତ୍ପନ୍ନ; ଅତୀତ; ଲବ୍ଧ; ଜ୍ଞାତ; ସତ୍ୟ; ତୁଲ୍ୟ; ସଦୃଶ; ସ୍ୱରୂପ; ଉଚିତ ।
ଭୂତକାଳ, ଅତୀତକାଳ ।
ଭୂତଘ୍ନ, ବ.ପୁଂ. (ଭୂତ-ଘ୍ନ)ଉଷ୍ଟ୍ର, ଓଟ; ଭୂର୍ଜବୃକ୍ଷ । ବିଂ. ଭୂତନାଶକ ।
ଭୂତଚତୁର୍ଦ୍ଦଶୀ, ବ. ସ୍ତ୍ରୀ. କାର୍ତ୍ତିକ କୃଷ୍ଣଚତୁର୍ଦ୍ଦଶୀ, ଏହାକୁ ଯମଚତୁର୍ଦ୍ଦଶୀ କହନ୍ତି ।
ଭୂତଜଟା, ବ. ସ୍ତ୍ରୀ. ଜଟାମାଂସୀ ।
ଭୂତତ୍ତ୍ୱବିଦ୍ୟା, ବ. କ୍ଲ. ପୃଥିବୀର ଅଭ୍ୟନ୍ତରସ୍ଥ ପଦାର୍ଥ ସମୁଦାୟର ନିର୍ଣ୍ଣୟାତ୍ମକ ଶାସ୍ତ୍ର ।
ଭୂତଧାତ୍ରୀ, ବ. ସ୍ତ୍ରୀ. ( ଭୂତ-ଧାତ୍ରୀ ) ଧରିତ୍ରୀ, ପୃଥିବୀ । ଯଥା—

ଭୂତଧାତ୍ରୀ ମାତ ବସୁଧେ ହିଁ ଧା ହୃଥ ର ଲବେ ।

ଭୂତନାଥ, ଭୂତେଶ, ବ. ପୁଂ. (ଭୂତ-ନାଥ,ଈଶ) ଶିବ ।
ଭୂତନାୟିକା, ବ. ସ୍ତ୍ରୀ. ( ଭୂତ-ନାୟିକା ) ଦୁର୍ଗା; ପାର୍ବତୀ ।
ଭୂତନାଶନ, ବ. କ୍ଲ. ( ଭୂତ-ନଶ୍-ଣିଚ୍-ଅନ ) ସର୍ଷପ; ରୁଦ୍ରାକ୍ଷ ।
ଭୂତପୂର୍ଣ୍ଣିମା, ବ. ସ୍ତ୍ରୀ. ( ଭୂତ-ପୂର୍ଣ୍ଣିମା ) ଆଶ୍ୱିନୀ ପୂର୍ଣ୍ଣିମା, କୋଜାଗର ପୂର୍ଣ୍ଣିମା ।
ଭୂତପୂର୍ବ, ବିଂ. ଯାହା ପୂର୍ବରେ ଥିଲା, ପୂର୍ବ ।
ଭୂତଭାବନ,ବ. ପୁଂ. (ଭୂତ-ଭାବ-ଅନ) ସୃଷ୍ଟିକର୍ତ୍ତା ।
ଭୂତଭୃତ୍, ବ. ପୁଂ. (ଭୂତ-ଭୃ-୦) ପାଳନକର୍ତ୍ତା ।
ଭୂତଯଜ୍ଞ, ବ. ପୁଂ. ଜୀବମାନଙ୍କୁ ଖାଦ୍ୟଦାନ ।
ଭୂତଳ, ବ. କ୍ଲ. (ଭୂ-ତଳ) ପାତାଳ; ଧରାତଳ; ପୃଥିବୀର ଉପରଭାଗ ।
ଭୂତବକ୍ରିୟା, ବ. ସ୍ତ୍ରୀ. (ଭୂତ-ବକ୍ରିୟା) ଅପସ୍ମାର ରୋଗ ।
ଭୂତଶୁଦ୍ଧି, ବ. ସ୍ତ୍ରୀ. (ଭୂତ-ଶୁଦ୍ଧି) ଶରୀରସ୍ଥ ପାପ-ପୁରୁଷ ଦହନପୂର୍ବକ ଶରୀର ଶୋଧନ ।
ଭୂତସଞ୍ଚାର, ବ. ପୁଂ. ( ଭୂତ-ସମ୍-ଚର୍-ଅ ) ଭୂତାବେଶ । ସ୍ତ୍ରୀ, ସ୍ତ୍ରୀ. ଦାବାନଳ ।
ଭୂତସର୍ଗ, ବ. କ୍ଲ. (ଭୂତ-ସର୍ଗ) ଭୂତସୃଷ୍ଟି; ଏହା ଚତୁର୍ଦ୍ଦଶବିଧ--ବ୍ରାହ୍ମ, ପ୍ରଜାପତୀୟ, ସୌମ୍ୟ, ଐନ୍ଦ୍ର, ଗାନ୍ଧର୍ବ, କୌବେର, ରାକ୍ଷସ, ପୈଶାଚ, ମାନୁଷ, ସ୍ଥାବର, ପାଶବ, ମାର୍ଗ, ଶାକୁନକ, ସାର୍ପ ।
ଭୂତାତ୍ମା, ବ. ପୁଂ. (ଭୂତ-ଆତ୍ମନ୍) ଦେହ; ଶିବ; ବ୍ରହ୍ମା; ବିଷ୍ଣୁ; ପରବ୍ରହ୍ମ; ଯୁଦ୍ଧ ।
ଭୂତାବିଷ୍ଟ, ବିଂ. ( ଭୂତ-ଆବିଷ୍ଟ ) ଭୂତଗ୍ରସ୍ତ, ଭୂତାଶ୍ରିତ ।
ଭୂତାରି, ବ. କ୍ଲ. (ଭୂତ-ଅରି) ହେଙ୍ଗୁ ।
ଭୂତାର୍ତ୍ତ, ବିଂ. (ଭୂତ-ଆର୍ତ୍ତ) ଭୂତାବିଷ୍ଟ,ଭୂତଗ୍ରସ୍ତ ।
ଭୂତାର୍ଥ, ବିଂ. ( ଭୂତ-ଅର୍ଥ ) ଯଥାର୍ଥ, ସତ୍ୟ; ଅକୃତ୍ରିମ ।
ଭୂତାବାସ, ବ. ପୁଂ. ( ଭୂତ-ଆବାସ ) ଶରୀର, ଦେହ; ବିଷ୍ଣୁ; ବୃକ୍ଷବିଶେଷ ।
ଭୂତାବେଶ,ବ. ପୁଂ. (ଭୂତ-ଆବେଶ) ଭୂତସଞ୍ଚାର ।
ଭୂତି, ବ. ସ୍ତ୍ରୀ. ( ଭୂ-ତି ) ଶିବଙ୍କର ଅଣିମାଦି ଅଷ୍ଟବିଧ ଐଶ୍ୱର୍ଯ୍ୟ, ଭସ୍ମ, ମହିମା, ସମ୍ପତ୍ତି,ସିଦ୍ଧି, ଉତ୍ପତ୍ତି,ଅଭ୍ୟୁଦୟ, ମଙ୍ଗଳ,ଉତ୍କର୍ଷ; ମାତଙ୍ଗର ସିନ୍ଦୂରାଦି ସଜ୍ଜା; ହସ୍ତିଶୃଙ୍ଗାର ।
ଭୂତିଖାଲ, ବ. ପୁଂ. ଭୂଖାତ; ଖାଲ ।
ଭୂତିଗର୍ଭ, ବ. ପୁଂ. (ଭୂତି-ଗର୍ଭ) ଭବଭୂତି ।
ଭୂତିନିଧାନ, ବ. କ୍ଲ. ( ଭୂତି-ନିଧାନ ) ଧନିଷ୍ଠା ନକ୍ଷତ୍ର ।
ଭୂତେଶ, ବ. ପୁଂ. (ଭୂତ-ଈଶ) ଶିବ ।
ଭୂତ୍ତମ, ବ. କ୍ଲ. (ଭୂ-ଉତ୍ତମ) କାଞ୍ଚନ, ସୁବର୍ଣ୍ଣ ।
ଭୂଦାର, ବ. ପୁଂ. (ଭୂ-ଦୃ-ଅ) ବରାହ, ଶୂକର ।

ଭୂଦେବ, ଭୂସୁର, ବ. ପୁଂ. ( ଭୂ-ଦେବ, ସୁର ) ବ୍ରାହ୍ମଣ ।

ଭୂଦୋଷ,ଣ.ପୁଂ. ହିଂସା ମିଥ୍ୟା ପ୍ରତାରଣା ଦୁଷ୍ଟଭି ।

ଭୂଧର, ବ. ପୁଂ. (ଭୂ-ଧର) ଅନନ୍ତଦେବ; ଯନ୍ତ୍ର-ବିଶେଷ; ପର୍ବତ ।

ଭୂନମ୍ବ, ବ. ପୁଂ. (ଭୂ-ନମ୍ବ) ଚିରେଇତା ।

ଭୂପ, ଭୂପତି, ଭୂପାଳ, ଭୂଭୁଜ୍, ବ.ପୁଂ. (ଭୂ-ପ, ପତି, ପାଳ, ଭୁଜ୍) ରାଜା, ନୃପ ।

ଭୂପଦ, ବ. ପୁଂ. (ଭୂ-ପଦ) ତରୁ, ବୃକ୍ଷ । ଦୀ, ସ୍ତ୍ରୀ. ମଲ୍ଲିକା ।

ଭୂପୁତ୍ରୀ, ବ. ସ୍ତ୍ରୀ. (ଭୂ-ପୁତ୍ରୀ) ସୀତା, ଜାନକୀ ।

ଭୂଭୃତ୍, ଭୂମିଭୃତ୍, ବ. ପୁଂ. (ଭୂ-ଭୃ-୦) ପର୍ବତ; ନୃପତି ।

ଭୂମଣ୍ଡଳ, ବ. (ଭୂ-ମଣ୍ଡଳ) ପୃଥିବୀ ।

ଭୂମୟ, ବିଂ. (ଭୂ-ମୟ) ମୃଦାତ୍ମକ, ମୃଣ୍ମୟ । ୟୀ, ସ୍ତ୍ରୀ. ଛାୟା, ସୂର୍ଯ୍ୟପତ୍ନୀ ।

ଭୂମା, ବିଂ. (ଭୂ-ମନ୍) ଭୂୟିଷ୍ଠ, ବହୁଳ, ଅଧିକ । ବ. ପୁଂ. ସର୍ବବ୍ୟାପୀ ପୁରୁଷ ।

ଭୂମି, ବ. ପୁଂ. ସ୍ତ୍ରୀ. ( ଭୂ-ମି ) ପୃଥିବୀ; ସ୍ଥାନ; କ୍ଷେତ୍ର; ଆଧାର; ଆକାର; ଜିହ୍ୱା ।

ଭୂମିକା, ବ. ସ୍ତ୍ରୀ. ( ଭୂମି-କ-ଅ ) ବେଶ ଧାରଣ, ରୂପାନ୍ତର ପରିଗ୍ରହ; ସଜାଇବାର; ରଚନା; ଗ୍ରନ୍ଥର ଅଭିପ୍ରାୟ ବକ୍ତବ୍ୟ ବିଷୟର ସୂଚନା; କକ୍ଷା ।

ଭୂମିଚମ୍ପକ, ବ. ପୁଂ. ( ଭୂମି-ଚମ୍ପକ ) ପୁଷ୍ପବୃକ୍ଷ-ବିଶେଷ, ଭୂଇଁଚମ୍ପାଗଛ ।

ଭୂମିଜ, ବ. ପୁଂ. (ଭୂମି-ଜ) ମଙ୍ଗଳଗ୍ରହ; ନରକ ରାଜା, ନରକାସୁର । ବିଂ. ପୃଥିବୀଜାତ; କ୍ଷେତ୍ରୋତ୍ପନ୍ନ ।

ଭୂମିଜା, ବ. ସ୍ତ୍ରୀ. (ଭୂମି-ଜା) ସୀତା, ଜାନକୀ ।

ଭୂମିଜୀବୀ, ବ. ପୁଂ. ( ଭୂମି-ଜୀବନ୍ ) ବୈଶ୍ୟ; କୃଷିଜୀବୀ ।

ଭୂମିଦେବ, ବ. ପୁଂ. ( ଭୂମି-ଦେବ ) ଭୂଦେବ, ବ୍ରାହ୍ମଣ ।

ଭୂମିପ, ଭୂମିପତି, ବ. ପୁଂ. (ଭୂମି-ପ, ପତି) ଭୂପତି, ରାଜା ।

ଭୂମିପାଳ, ବ. ପୁଂ. (ଭୂମି-ପାଳ) ଭୂପତି, ରାଜା ।

ଭୂମିଭୁଜ, ବ. ପୁଂ. (ଭୂମି-ଭୁଜ) ରାଜା,ଭୂପତି ।

ଭୂମିରୁହ, ବ. ପୁଂ. (ଭୂମି-ରୁହ) ବୃକ୍ଷ, ଗଛ ।

ଭୂମିଲେପନ, ବ. ନ. (ଭୂମି-ଲେପନ) ଗୋମୟ, ଗୋବର ।

ଭୂମିବର୍ଦ୍ଧନ, ବ. ପୁଂ. ନ. ( ଭୂମି-ବର୍ଦ୍ଧନ ) ମୃତ-ଦେହ, ଶବ, ମଡ଼ା ।

ଭୂମିଷ୍ଠ, ବିଂ. (ଭୂମି-ଷ୍ଠ) ପ୍ରଣତ; ଭୂମିରେ ପତିତ; ଭୂମିରେ ସ୍ଥିତ; ଜାତ, ଉତ୍ପନ୍ନ । ଯଥା—

ଭୂମିଷ୍ଠ ହୁଅଇ ଜୀବ ଜନନୀ ଜଠରୁ । ମ. ଯା.

ଭୂମିସମ୍ଭବା, ବ. ସ୍ତ୍ରୀ. ( ଭୂମି-ସମ୍ଭବା ) ସୀତା, ଜାନକୀ ।

ଭୂମିସ୍ପୃକ୍, ବ. ପୁଂ. (ଭୂମି-ସ୍ପୃଶ୍-୦) ମନୁଷ୍ୟ; ବୈଶ୍ୟ; ଚୌରବିଶେଷ; ଅନ୍ଧ; ଲେଙ୍ଗଡା । ବିଂ. ଭୂମି-ସ୍ପର୍ଶକାରୀ ।

ଭୂମୀନ୍ଦ୍ର, ବ. ପୁଂ. (ଭୂମି-ଇନ୍ଦ୍ର) ଭୂପତି, ରାଜା ।

ଭୂୟଃ, ବିଂ. ( ବହୁ-ଈୟସ୍ ) ବହୁତର, ଅଧିକ । ବ. ନ. ବାହୁଲ୍ୟ, ଅଧିକ୍ୟ । ଅଂ. ପୁନଃପୁନଃ, ବାରମ୍ବାର ।

ଭୂୟିଷ୍ଠ, ବିଂ. ( ବହୁ-ଇଷ୍ଠ ) ପ୍ରଚୁର, ବହୁଳ, ଅଧିକ ।

ଭୂରି, ବିଂ. ଅଂ. (ଭୂ-ରି) ଅଧିକ, ଅନେକ,ବହୁ । ବ. ନ. ସୁବର୍ଣ୍ଣ । ପୁଂ. ବ୍ରହ୍ମା; ବିଷ୍ଣୁ; ଶିବ ।

ଭୂରିଗମ, ବ. ପୁଂ. (ଭୂରି-ଗମ୍-ଅ) ଗର୍ଦ୍ଦଭ,ଗର୍ଦ୍ଦଭ ।

ଭୂରିପ୍ରେମା, ବ. ପୁଂ. (ଭୂରି-ପ୍ରେମନ୍) ଚକ୍ରବାକ-ପକ୍ଷୀ ।

ଭୂରିମାୟୁ, ବ. ପୁଂ. (ଭୂରି-ମାୟୁ) ଶୃଗାଳ ।

ଭୂରିଶଃ, ବିଂ. ( ଭୂରି-ଶସ୍ ) ଭୂରି ଭୂରି; ବହୁ ବହୁ; ବହୁବାର ।

ଭୂରିଶ୍ରବାଃ, ବ. ପୁଂ. ( ଭୂରି-ଶ୍ରବସ୍ ) ଚନ୍ଦ୍ରବଂଶୀୟ ସୋମଦତ୍ତ ରାଜପୁତ୍ର, ଅର୍ଜୁନ ତାହାଙ୍କ ବଧ କରିଥିଲେ ।

ଭୂରୁଣ୍ଡ, ବ. ପୁଂ. ଜନ୍ତୁବିଶେଷ ।

ଭୂରୁହ, ବ. ପୁଂ. (ଭୂ-ରୁହ) ବୃକ୍ଷ, ଗଛ ।

ଭୂର୍ଜ, ଭୂର୍ଜପତ୍ର, ବ. ପୁଂ. (ଭୂ-ଉର୍ଜ-ଅ) ଭୂର୍ଜପତ୍ରର ଗଛ; ମୃଦୁତ୍ୱକ୍ ।

ଭୂର୍ଜକଣ୍ଟକ, ବ. ପୁଂ. (ଭୂର୍ଜ-କଣ୍ଟ-କ) ବର୍ଣ୍ଣସଙ୍କର ଜାତିବିଶେଷ ।

ଭୂର୍ଣ୍ଣି, ବ. ସ୍ତ୍ରୀ. (ଭୃ-ନ) ପୃଥିବୀ; ମରୁଭୂମି ।

ଭୂର୍, ଅଂ. (ଭୂ-ର୍) ପୃଥିବୀ ।

ଭୂର୍ଲୋକ, ବ. ପୁଂ. (ଭୂର୍-ଲୋକ) ମର୍ତ୍ତ୍ୟଲୋକ, ପୃଥିବୀ ।

ଭୂଲତା, ବ. ସ୍ତ୍ରୀ. (ଭୂ-ଲତା) କଣ୍ଠୂତ୍ୱକ, କଅଁ ।

ଭୂଲ୍ଲେଖୀ, ବଂ. (ଭୂ-ଉତ୍-ଲଖ-ଇନ୍) ଯେଉଁ ପକ୍ଷିମାନେ ଭୂମି ଖନନ କରି ଆହାର ଅନ୍ୱେଷଣ କରନ୍ତି ।

ଭୂଶକ୍ର, ବ. ପୁଂ. (ଭୂ-ଶକ୍ର) ଭୂମୀନ୍ଦ୍ର, ରାଜା ।

ଭୂଷଣ, ନ. } ବ. (ଭୂଷ୍-ଅନ, ଆ) ଅଳଙ୍କାର,
ଭୂଷା, ସ୍ତ୍ରୀ. } ଆଭରଣ; ସଜ୍ଜା; ଶୋଭା; ଅଳଂକୃତକରଣ ।

ଭୂଷିତ, ବଂ. (ଭୂଷ୍-ତ) ଅଳଂକୃତ; ଶୋଭିତ; ସଜ୍ଜିତ । ଯଥା—

ଭୂଷିବା, କ୍ରି. (ଦେଶଜ) କେଷ୍ଟିବା । ଯଥା—

ରଣି ଗୀତେ ଏତେ ଅନାଦରେ ମୋତେ
ଭୂଷି ଦେଲ ହଲେ ଝସଧ୍ୱଜ ।

ଭୂଷ୍ଣୁ, ବଂ. (ଭୂ-ଷ୍ଣୁ) ଭବିଷ୍ୟତ୍; ଉତ୍ପତ୍ତିଶୀଳ ।

ଭୂଷ୍ୟ, ବଂ. (ଭୂଷ-ଯ) ଅଳଙ୍କାର୍ଯ୍ୟ, ଭୂଷଣଯୋଗ୍ୟ ।

ଭୂସୁତ, ବ. ପୁଂ. ( ଭୂ-ସୁତ ) ମଙ୍ଗଳଗ୍ରହ; ନରକାସୁର ।

ଭୂସୁତା, ବ. ସ୍ତ୍ରୀ. (ଭୂ-ସୁତା) ସୀତା, ଜାନକୀ ।

ଭୂସ୍ପୃକ୍, ଭୂସ୍ପୃଶ୍, ବ. ପୁଂ. ( ଭୂ-ସ୍ପୃଶ୍ ) ମନୁଷ୍ୟ । ବଂ. ଭୂମିସ୍ପର୍ଶକାରୀ ।

ଭୂସ୍ୱର୍ଗ, ବ. ପୁଂ. (ଭୂ-ସ୍ୱର୍ଗ) ସୁମେରୁ ପର୍ବତ ।

ଭୂସ୍ୱାମୀ, ବ. ପୁଂ. ( ଭୂ-ସ୍ୱାମିନ୍ ) ରାଜା; ଭୂପତି; ଜମିଦାର ।

ଭୃକୁଂସ, ଭୃକୁଂଶ, ବ. ପୁଂ. (ଭ୍ରୂ-କୁନ୍ସ୍ (ଶ୍) ଅ) ସ୍ତ୍ରୀବେଶଧାରୀ ନଟ ।

ଭୃକୁଟି, ବ. ସ୍ତ୍ରୀ. (ଭ୍ରୂ-କୁଟ୍-ଇ) ଭ୍ରୂଭଙ୍ଗି, ଭ୍ରୂକୁଟି ।

ଭୃଗୁ, ବ. ପୁଂ. (ଭ୍ରସ୍ଜ୍-ଉ) ମୁନିବିଶେଷ; ବଂଶବିଶେଷ; ଶିବ; ଶୁକ୍ରାଚାର୍ଯ୍ୟ; ଅତ୍ୟୁଚ୍ଚସ୍ଥାନ; ପର୍ବତାଦିର ତାଳୁପ୍ରଦେଶ । ଯଥା—

ଝର୍ଝର ଶବଦେ ଚକମ୍ପା ନର୍ଝର ଯହିଁ ଗଡ଼ଇ,
ଭୃଗୁରୁ ଭୃଗୁକୁ ଡେଇଁ ପଡଇ ।

ଭୃଗୁପତି, ବ. ପୁଂ. (ଭୃଗୁ-ପତି) ପରଶୁରାମ ।

ଭୃଗୁସୁତ, ବ. ପୁଂ. ( ଭୃଗୁ-ସୁତ ) ଶୁକ୍ରାଚାର୍ଯ୍ୟ; ପରଶୁରାମ ।

ଭୃଙ୍ଗ, ବ. ପୁଂ. (ଭୃ-ଗ) ଭ୍ରମର । ଯଥା—

କମଳ ସୁବାସ ଅଙ୍ଗ ବଉଦାଣ ବେଢ଼ି ଉଡ଼ୁଛନ୍ତି ଭୃଙ୍ଗେ । ର. ବ.

ଲମ୍ପଟ; ବୃକ୍ଷବିଶେଷ ।

ଭୃଙ୍ଗଜ, ବ. ପୁଂ. ଅଗୁରୁ, ସୁଗନ୍ଧକାଷ୍ଠବିଶେଷ ।

ଭୃଙ୍ଗରାଜ, ବ. ପୁଂ. ( ଭୃଙ୍ଗ-ରାଜ୍-ଅ ) ଭ୍ରମର; ପକ୍ଷିବିଶେଷ; ଯନ୍ତ୍ରବିଶେଷ; ବୃକ୍ଷବିଶେଷ ।

ଭୃଙ୍ଗରିଟ, ଭୃଙ୍ଗରୀଟ, } ବ. ପୁଂ. (ଭୃଙ୍ଗ-ରିଟ୍-ଅ,
ଭୃଙ୍ଗରିଟି, ଭୃଙ୍ଗରୀଟି, } ଅ=ଇ ବା, ଈ )
ଶିବାନୁଚର, ଭୃଙ୍ଗୀ ।

ଭୃଙ୍ଗାର, ବ. ପୁଂ. (ଭୃ-ଆର) ଜଳପାତ୍ରବିଶେଷ । ନ. ଲବଙ୍ଗ; ସୁବର୍ଣ୍ଣ ।

ଭୃଙ୍ଗାରିକା, ଭୃଙ୍ଗାରୀ, ବ. ସ୍ତ୍ରୀ (ଭୃଙ୍ଗ-ଅର-କ) ଝିଞ୍ଝିପୋକ; ଝିଲ୍ଲୀ ।

ଭୃଙ୍ଗୀ, ବ. ପୁଂ. (ଭୃଙ୍ଗ-ଇନ୍ ) ଶିବଙ୍କର ଜଣେ ଅନୁଚର ।

ଭୃଙ୍ଗୀଶ, ବ. ପୁଂ. ( ଭୃଙ୍ଗୀ-ଈଶ ) ଶିବ, ମହାଦେବ ।

ଭୃତ୍, ବଂ. (ଭୃ-୦) ପାଳନକର୍ତ୍ତା, ଧାରଣକର୍ତ୍ତା ।

ଭୃତ, ବଂ. (ଭୃ-ତ) ପାଳିତ, ପୁଷ୍ଟ; ପୂର୍ଣ୍ଣ ।

ଭୃତକ, ବଂ. (ଭୃ-ତ-କ) ବେତନଗ୍ରାହୀ, ଭୃତ୍ୟ । ବ. ନ. ବେତନ । ପୁଂ. ମାସ ।

ଭୃତଭୂତି, ବଂ. ( ଭୃତ-ଭୂତି ) କ୍ଷମତାଶାଳୀ; ଉନ୍ନତ, ବର୍ଦ୍ଧମାନ; ଭସ୍ମଲେପିତ ।

ଭୃତି, ବ. ନ. (ଭୃ-ତି) ବେତନ, ପୁଞ୍ଜି, ମୂଳଧନ; ଭରଣ, ପାଳନ; ମୂଲ୍ୟ; ପୂରଣ ।

ଭୃତଜୀବୀ, ବିଂ. ( ଭୃତ-ଜୀବ-ଇନ୍ ) ବେତନ-ଭୋଗୀ, ବେତନଗ୍ରାହୀ ।

ଭୃତଭୁକ୍, ବିଂ.(ଭୃତ-ଭୁକ୍-୦) ବେତନଭୋଗୀ, ବେତନଗ୍ରାହୀ ।

ଭୃତ୍ୟ, ବି. ପୁଂ. (ଭୃ-ଯ) ଦାସ, ଚାକର । ବିଂ. ପାଲ୍ୟ ।

ଭୃତ୍ୟାଧ୍ୟାପନ, ବି. ନ. ( ଭୃତି-ଅଧ୍ୟାପନ) ଅର୍ଥାଦି ଗ୍ରହଣପୂର୍ବକ ବେଦାଦି ଶିକ୍ଷା ଦେବା ।

ଭୃମି, ବି. ପୁଂ. ( ଭ୍ରମ୍-ଇ ) ଘୂର୍ଣ୍ଣିବାୟୁ; ଅବର୍ତ୍ତ, ଜଳର ଭଉଁରି; ଭ୍ରମଣ ।

ଭୃଶ, ବିଂ. ( ଭୃଶ-ଅ ) ବହୁ, ଅନେକ । ଅଂ. ଅତ୍ୟର୍ଥ, ସାତିଶୟ; ବାରମ୍ବାର, ପୁନଃପୁନଃ ।

ଭୃଷଦ୍, ବି. ପୁଂ. ପାଷାଣ, ପ୍ରସ୍ତର ।

ଭୃଷ୍ଟ, ବିଂ. (ଭ୍ରସ୍ଜ୍-ତ) ଭର୍ଜ୍ଜିତ; ଭଜା ।

ଭୃଷ୍ଟାନ୍ନ, ବି. ନ. (ଭୃଷ୍ଟ-ଅନ୍ନ) ଚାଉଳ ସିଦ୍ଧ କରି ଭାଜିବା, ମୁଢ଼ି ।

ଭୃଷ୍ଟି. ବି. ସ୍ତ୍ରୀ. ( ଭ୍ରସ୍ଜ୍-ତି ) ଭର୍ଜ୍ଜନ; ଜନଶୂନ୍ୟ ଉଦ୍ୟାନ ।

ଭେକ. ବି. ପୁଂ. ( ଭୀ-କ ) କୀ-ସ୍ତ୍ରୀ. ମଣ୍ଡୂକ, ବେଙ୍ଗ । ଯଥା—

> ପଦଭ୍ରଷ୍ଟ ଏବେ ସରୋବର ଜଳ ନଦୀ ଦେହ କୃଶ ଅତି ।
> ଭେକ ମୀନ ଆଦି ଜଳଚର ପ୍ରାଣୀ ମରନ୍ତି ଲଭି ଦୁର୍ଗତି ।
>
> ଛ. ମା.

ମେଘ ।

ଭେକଭୁକ୍, ବି. ପୁଂ. ( ଭେକ-ଭୁଜ୍ ) ସର୍ପ, ଭୁଜଙ୍ଗମ ।

ଭେଳ, ବି. (ଦେଶଜ) ବୃକ୍ଷବିଶେଷ; ଫଳବିଶେଷ ।

ଭେଟ, (ଦେଶଜ) ସାକ୍ଷାତ୍, ଦେଖା, ମୁଲାକାତ୍ ।

ଭେଟିବା, କ୍ରି. ( ଦେଶଜ ) ସାକ୍ଷାତ୍ କରିବା । ଯଥା—

> ଭେଟିବାକୁ ମୁଁ ମୁନିଙ୍କ କପଟ ନହଇ । କ. ବ.

ଭେଟୀ, ବି. (ଦେଶଜ) ଉପଢୌକନ ।

ଭେଡ଼ା, ବି. (ଦେଶଜ) ମେଷ, ମେଣ୍ଢା, ଗାରଡ଼ି; ଶସ୍ୟକ୍ଷେତ୍ରର ମଧ୍ୟବର୍ତ୍ତୀ ପଡ଼ିଆ ଓ ଜଙ୍ଗଲ-ମୟ ଭୂମି ।

ଭେଣ୍ଡା, ବି. (ଦେଶଜ) ଯୁବା ପୁରୁଷ । ଯଥା—

> ଗଣ୍ଡା ଗଣ୍ଡା ଲଡ଼ୁ ସମେ ଖଣ୍ଡ ପାଟେ ସଜାଡ଼ି ।
> ଭେଣ୍ଡା ଭେଣ୍ଡା ଦିଜ ପରଶିଲେ ପୂର୍ଣ୍ଣ ପର୍ଣ୍ଣେ ଅଜାଡ଼ି ।
>
> ଗୋ, ବ, ନା.

ଭେଣ୍ଡି, ବି. (ଦେଶଜ) ଖାଦ୍ୟଫଳବିଶେଷ ।

ଭେଣ୍ଡୀ, ବି. (ଦେଶଜ) ଯୁବତୀ ।

ଭେଦ, ବି. ପୁଂ. (ଭିଦ୍-ଅ) ବିଚ୍ଛେଦ; ଅନୈକ୍ୟ; ବୈଲକ୍ଷଣ୍ୟ; ବିଭାଗ; ଛେଦନ; ବିଦାରଣ; ବେଧନ; ଭଙ୍ଗ; ଉପାଧି; ବିଶେଷ, ଭିନ୍ନତା; ପ୍ରକାଶ; ରେଚନ; ଉଦରଭଙ୍ଗ; ମନୋଭଙ୍ଗ; ଉଦ୍ଭେଦ; ଅନ୍ୟୋନ୍ୟଭାବ ।

ଭେଦକ, ବିଂ. (ଭିଦ୍-ଅକ) ବିଦାରକ; ବିଶେଷ-କାରକ; ବିରେଚକ ଔଷଧାଦି ।

ଭେଦନ, ବି. ନ. (ଭିଦ୍-ଅନ) ବିଦାରଣ; ଭଙ୍ଗ-କରଣ, ବେଧନ; ବ୍ୟାଘାତକରଣ; ଅନୈକ୍ୟ-କରଣ, ବିଚ୍ଛେଦକରଣ; ବିରେଚନ ।

ଭେଦପ୍ରତ୍ୟୟ, ବି. ପୁଂ. (ଭେଦ-ପ୍ରତ୍ୟୟ) ଜଗତର ସକଳ ପଦାର୍ଥକୁ ଈଶ୍ୱରଙ୍କଠାରୁ ଭିନ୍ନ ଜ୍ଞାନ-କରଣ ।

ଭେଦା, ବି. (ଦେଶଜ) ଗନ୍ଧା ।

ଭେଦିତ, ବିଂ. (ଭେଦ-ଇତ) ବିଦାରିତ; ପୃଥକ୍-କୃତ, ଛେଦିତ ।

ଭେଦୀ, ବିଂ. (ଭେଦ-ଇନ୍) ଭେଦକାରୀ, ଭେଦ-ବିଶିଷ୍ଟ ।

ଭେଦୁର, ଭେଦିର, ବି. ନ. (ଭିଦ୍-ଉର, ଇର) ଭଙ୍ଗୁର, [illegible]

ଭେଦ୍ୟ, ବିଂ. ( ଭିଦ୍-ଯ) ଭେଦନୀୟ; ବିଦାର୍ଯ୍ୟ; ବିଶେଷ୍ୟ; ବିଭାଜ୍ୟ ।

ଭେନ, ବି. ପୁଂ. (ଭ=ଗ୍ରହନକ୍ଷତ୍ରାଦି-ଇନ= ଅଧିପତି) ସୂର୍ଯ୍ୟ ।

ଭେରି, ପୁଂ. } ବି.(ଭୀ-ରି) ଢକ୍କା,ବାଦ୍ୟଯନ୍ତ୍ର-
ଭେରୀ, ସ୍ତ୍ରୀ. } ବିଶେଷ ।

ଭେରେଣ୍ଡା, ବି. ପୁଂ. (ଏରଣ୍ଡ ଶବ୍ଦଜ) ଗବଗଛ; (ଦେଶଜ) ଅଣ୍ଡିରା ବଳଦ ।

ଭେଲ, ବ. ପୁଂ. (ଭ୍ମ-ର) ଉଡୁପ, ଭେଳା; ମୃନିବଶେଷ । ବିଂ. ଭୀରୁ; ମୂର୍ଖ; ଚଞ୍ଚଳ ।

ଭେଳକ, ବ. ନ. (ଭେଳ-କ) ଉଡୁପ, ଭେଳା ।

ଭେଲ୍କି, ବିଂ. କୁହୁକ ।

ଭେଳା, ବ. ଭାସିବାଯନ୍ତ୍ରବଶେଷ । ଯଥା—

ସଂସାର ସାଗରୁଁ ପାର ହେବାପାଇଁ ବାନ୍ଧଅଛ ଅଶା-ଭେଳା ।

ଭେଷଜ, ବ. ନ. ( ଭେଷ-ଜ-ଅ ) ଭୈଷଜ୍ୟ, ଔଷଧ ।

ଭେଷଜାଙ୍ଗ, ବ. ନ. (ଭେଷଜ-ଅଙ୍ଗ) ଅନୁପାନ, ଔଷଧର ସହିତ ପାନୀୟ ଦ୍ରବ୍ୟ ।

ଭେଷଣ୍ଡା, ବ. (ଦେଶଜ) କଦର୍ଯ୍ୟ ।

ଭୈକ୍ଷ, ବ.ନ.(ଭିକ୍ଷା-ଅ) ଭିକ୍ଷାଲବ୍ଧ ବସ୍ତୁ ;ଭିକ୍ଷା ।

ଭୈକ୍ଷଜୀବୀ, ଭୈକ୍ଷଭୁକ୍, ଭୈକ୍ଷାଶୀ, ବିଂ. (ଭୈକ୍ଷ-ଜୀବିନ୍,ଭୁଜ୍, ଅଶିନ୍) ଭିକ୍ଷାଜୀବୀ, ଯେ ଭିକ୍ଷାଲବ୍ଧ ବସ୍ତୁଦ୍ୱାରା ଜୀବିକା ନିର୍ବାହ କରେ ।

ଭୈମୀ, ବ. ସ୍ତ୍ରୀ. (ଭୀମ-ଅ-ଈ) ଦମୟନ୍ତୀ; ଭୀମ ଏକାଦଶୀ, ମାଘ ଶୁକ୍ଳୈକାଦଶୀ ।

ଭୈରବ, ବ. ପୁଂ. (ଭୀରୁ-ଅ) ଶିବ, ମହାଦେବ; ମହାଦେବଙ୍କର ଭୟଙ୍କର ମୂର୍ତ୍ତି—ଅସିତାଙ୍ଗ, ରୁରୁ, ଚଣ୍ଡ, କ୍ରୋଧ, ଉନ୍ମତ୍ତ, କୁପିତ, ଭୀଷଣ, ସଂହାର ଏହି ଆଠ; ରାଗବଶେଷ; ନଦବଶେଷ; ଭୟଙ୍କର ରୂପ । ଯଥା—

ଉପାଡ଼ ମହାଦ୍ରୁମ ଗର୍ଜ୍ଜେ ଭୈରବେ ।

ଭୈରବୀ, ବ. ସ୍ତ୍ରୀ. ରାଗିଣୀବଶେଷ; ଶୈବସ୍ତ୍ରୀବଶେଷ । ବିଂ.ଭୟଙ୍କର ।

ଭୈଷଜ, ଭୈଷଜ୍ୟ, ବ. ନ. (ଭେଷଜ-ଅ, ଯ) ଭେଷଜ, ଔଷଧ ।

ଭୈଷ୍ମକୀ, ବ. ସ୍ତ୍ରୀ ( ଭୀଷ୍ମକ-ଅ, ଅପତ୍ୟାର୍ଥେ-ଈ, ସ୍ତ୍ରୀ) ଭୀଷ୍ମକ ରାଜକନ୍ୟା, ରୁକ୍ମିଣୀ ।

ଭୋ, ଭୋଃ, ଅଂ. (ଭା-ଓ, ଓସ) ସମ୍ବୋଧନସୂଚକ ଶବ୍ଦ ।

ଭୋଇ, ବ. (ଦେଶଜ) ବାଉରି, ମାଟିଜାତିବଶେଷ ।

ଭୋକ, ବ. (ଦେଶଜ) କ୍ଷୁଧା ।

ଭୋକୀ, ଭୋକଲା, ବିଂ. ( ଦେଶଜ ) କ୍ଷୁଧାର୍ତ୍ତ । ଯଥା—

ଭୋକବ ପରଷି ସୁଧା ଦୃଷ୍ଟ ଭସି ଶିରେ ଠବ ବଇଟିଲୁ ରେ ।

ଭୋକ୍ତବ୍ୟ, ବିଂ. (ଭୁଜ୍-ତବ୍ୟ) ଭୋଜନଯୋଗ୍ୟ, ଉପଭୋଗ୍ୟ ।

ଭୋକ୍ତା, ବିଂ. (ଭୁଜ୍-ତୃ) ଭୋଜନକର୍ତ୍ତା ,ଭୋଗୀ ।

ଭୋଗ, ବ. ପୁଂ. ( ଭୁଜ୍-ଅ ) ସୁଖ; ସୁଖଦୁଃଖାନୁଭବ; ଉପଭୋଗ; ଧନ; ଭୋଜନ; ସର୍ପ; ସର୍ପର ଦେହ, ସର୍ପଫଣା; ପଣ୍ୟସ୍ତ୍ରୀର ବେତନ; ପାଳନ; ଦେହ ।

ଭୋଗଗୃଚ୍ଛ, ବ. ନ. ସମ୍ଭୋଗ ନିମିତ୍ତ ବେଶ୍ୟାକୁ ଦେବାଯୋଗ୍ୟ ଧନ ।

ଭୋଗଗୃହ, ବ. ନ. ( ଭୋଗ-ଗୃହ ) ବାସଗୃହ, ଅନ୍ତଃପୁର ।

ଭୋଗଦେହ, ବ. ପୁଂ. ସୂକ୍ଷ୍ମଶରୀର, ଯେ ଶରୀରରେ ସୁଖଦୁଃଖ ଭୋଗ ହୁଏ ।

ଭୋଗପାଳ, ବ. ପୁଂ. (ଭୋଗ-ପାଳ) ଅଶ୍ୱରକ୍ଷକ, ସହିସ ।

ଭୋଗପିଶାଚିକା, ବ. ସ୍ତ୍ରୀ. ( ଭୋଗ-ପିଶାଚିକା ) ବୁଭୁକ୍ଷା, କ୍ଷୁଧା ।

ଭୋଗଭୂମି, ବ. ସ୍ତ୍ରୀ. (ଭୋଗ-ଭୂମି) ସୁଖଭୋଗର ସ୍ଥାନ, ସ୍ୱର୍ଗ ।

ଭୋଗବାନ୍, ବ. ପୁଂ. (ଭୋଗ-ବତ୍) ସର୍ପ; ନୃତ୍ୟ; ଗୀତ । ବିଂ. ଭୋଗବିଶିଷ୍ଟ ।

ଭୋଗବତୀ, ବ. ସ୍ତ୍ରୀ. (ଭୋଗ-ବତ୍-ଈ) ପାତାଳଗଙ୍ଗା; ନାଗପୁରୀ । ବିଂ. ଭୋଗବିଶିଷ୍ଟ ।

ଭୋଗସଦ୍ମ, ବ. ନ. (ଭୋଗ-ସଦ୍ମନ୍) ବାସଗୃହ ।

ଭୋଗାବଳୀ, ବ. ସ୍ତ୍ରୀ. (ଭୋଗ-ଆବଳୀ) ସ୍ତୁତି, ପ୍ରଶଂସା; ନାଗପୁରୀ ।

ଭୋଗାର୍ହ, ବ. ନ. (ଭୋଗ-ଅର୍ହ) ଧନ, ସମ୍ପତ୍ତି ।

ଭୋଗିକ, ବ. ପୁଂ. (ଭୋଗ-ଇକ) ଅଶ୍ୱପାଳକ, ସହିସ ।

ଭୋଗିକାନ୍ତ, ବ. ପୁଂ. (ଭୋଗିନ୍-କାନ୍ତ) ଅନଳ, ବାୟୁ ।

ଭୋଗୀ, ବ. ପୁଂ. ( ଭୋଗ-ଇନ୍ ) ସର୍ପ; ରାଜା; ଗ୍ରାମାଧ୍ୟକ୍ଷ; ଭଣ୍ଡାର । ବିଂ. ଭୋଗବିଶିଷ୍ଟ, ଭୋଗକାରୀ; ସୁଖୀ । ଗିନୀ, ସ୍ତ୍ରୀ. ମହିଷୀ ବ୍ୟତୀତ ରାଜାର ଅନ୍ୟାନ୍ୟ ସ୍ତ୍ରୀ ।

ଭୋଗୀନ୍ଦ୍ର, ଭୋଗୀଶ, ବ. ପୁଂ. ( ଭୋଗିନ୍-ଇନ୍ଦ୍ର, ଈଶ) ସର୍ପରାଜ, ଅନନ୍ତଦେବ, ବାସୁକି ।

ଭୋଗେଇ, ବ. (ଦେଶଜ) ପାଚିଆ ।

ଭୋଗ୍ୟ, ବିଂ. (ଭୁଜ୍-ଯ) ଭୋଗର ଯୋଗ୍ୟବସ୍ତୁ, ଭୋଗାର୍ହ । ବ. ନ. ଧନ; ଧାନ୍ୟ ।

ଭୋଗ୍ୟା, ବ. ସ୍ତ୍ରୀ. (ଭୋଗ୍ୟ-ଆ) ଗଣିକା,ବେଶ୍ୟା ।

ଭୋଜ, ବ. ପୁଂ. ( ଭୁଜ୍-ଅ ) ଭୋଜପୁର; ଧାରା ନଗରର ରାଜାବିଶେଷ; ଯଦୁବଂଶ ।

ଭୋଜନ,ବ. ନ. (ଭୁଜ୍-ଅନ) ଭକ୍ଷଣ; ଭକ୍ଷ୍ୟଦ୍ରବ୍ୟ ।

ଭୋଜବିଦ୍ୟା, ବ. ସ୍ତ୍ରୀ. ଐନ୍ଦ୍ରଜାଲିକ ବିଦ୍ୟା, ଭେଲ୍କି ।

ଭୋଜ୍ୟ,ବିଂ.(ଭୁଜ୍-ଯ) ଭକ୍ଷ୍ୟବସ୍ତୁ; ଭୋଜବଂଶୀୟ; ମହାଦେବ ।

ଭୋଜ୍ୟସମ୍ଭବ, ବ. ପୁଂ. (ଭୋଜ୍ୟ-ସମ୍ଭବ) ଶରୀରସ୍ଥ ରସ, ଧାତୁ ପ୍ରଭୃତି ।

ଭୋଟାଙ୍ଗ, ବ. ପୁଂ. ଦେଶବିଶେଷ, ଭୂଟାନ ।

ଭୋପା, ବ. ( ଦେଶଜ ) ଦେଉଳର ପୂଜକବିଶେଷ ।

ଭୋର, ବ. (ଦେଶଜ) ପ୍ରଭାତ, ନିଶାବସାନ ।

ଭୋଳ, ବ. ( ଭ୍ରମ ଶବ୍ଦଜ ) ଭ୍ରମ, ବିସ୍ମରଣ । ଯଥା—

ପାସୋରେ ଅପଣା ବଜମ ପ୍ରେମ ମୋହନ ଭୋଳେ । ଚ. ଚ.

ଭୌତ, ବିଂ. (ଭୂତ-ଅ) ଭୂତସମ୍ବନ୍ଧୀୟ । ବ. ପୁଂ. ଭୂତଯଜ୍ଞ । ତୀ-ସ୍ତ୍ରୀ. ରଜନୀ, ରାତ୍ରି ।

ଭୌତିକ, ବିଂ. ( ଭୂତ-ଇକ ) ଭୂତସମ୍ବନ୍ଧୀୟ; ଭୂତକୃତ । ବ. ପୁଂ. ମହାଦେବ ।

ଭୌତିକନିୟମ, ବ. ଯେଉଁ ନିୟମରେ ଭୌତିକ ପଦାର୍ଥର କାର୍ଯ୍ୟ ନିର୍ବାହ ହୁଏ, ଯେପରି ଅଗ୍ନିରେ ଅନ୍ନ ପାକ ହୁଏ, ଜଳରେ ନୌକା ମଗ୍ନ ହୁଏ, ବୃକ୍ଷାଦିରୁ ପତିତ ହେଲେ ହସ୍ତପଦାଦି, ଭଗ୍ନ ହୋଇଯାଏ ଇତ୍ୟାଦି ।

ଭୌତିକପଦାର୍ଥ, ବ. ଜଳ ବାୟୁ ସ୍ୱର୍ଣ୍ଣ ରୌପ୍ୟ ମୃତ୍ତିକା ପ୍ରଭୃତି ଅଚେତନ ପଦାର୍ଥ ଯେଉଁ ସକଳ ବସ୍ତୁ ଏକ ପ୍ରାକୃତିକ ପରମାଣୁର ଯୋଗରେ ଉତ୍ପନ୍ନ ହୁଏ ।

ଭୌମ, ବ. ପୁଂ. (ଭୂମି-ଅ) ମଙ୍ଗଳଗ୍ରହ; ନରକାସୁର । ବିଂ. ଭୂମିସମ୍ବନ୍ଧୀୟ, ଭୂମିଜାତ । ମୀ,ସ୍ତ୍ରୀ. ସୀତା, ଜାନକୀ ।

ଭୌମନ, ବ. ପୁଂ. ବିଶ୍ୱକର୍ମା ।

ଭୌମରତ୍ନ, ବ. ନ. ( ଭୌମ-ରତ୍ନ ) ପ୍ରବାଳ, ପୋହଳା ।

ଭୌମିକ, ବିଂ. (ଭୂମି-ଇକ) ଭୂମ୍ୟଧିକାରୀ,ଭୂସ୍ୱାମୀ ।

ଭ୍ରଂଶ, ବ. ପୁଂ. ( ଭ୍ରନ୍ଶ୍-ଅ ) ପତନ, ଚ୍ୟୁତ ହେବାର; ପଳାୟନ ।

ଭ୍ରକୁଂସ, ଭ୍ରକୁଂଶ, ବ. ପୁଂ. (ଭ୍ରୂ-କୁନସ୍-(ଶ) ଅ) ସ୍ତ୍ରୀବେଶଧାରୀ ନଟ ।

ଭ୍ରକୁଟି, ବ. ପୁଂ. (ଭ୍ରୂ-କୁଟ-ଅ) ଭ୍ରୂକୁଟୀ,କ୍ରୋଧାଦିଦ୍ୱାରା ଭ୍ରୂର ବକ୍ରତା ।

ଭ୍ରମ, ବ. ପୁଂ. ( ଭ୍ରମ୍-ଅ ) ମିଥ୍ୟାଜ୍ଞାନ; ଭ୍ରାନ୍ତି; ଭ୍ରମଣ; ଜଳଭ୍ରମ,ଜଳାବର୍ତ୍ତ;ଜଳନିର୍ଗମ ସ୍ଥାନ, ନିର୍ଦ୍ଦମା; କୁମ୍ଭକାରର ଚକ୍ର; କୁନ୍ଦଯନ୍ତ୍ର,କୁନ୍ଦ ।

ଭ୍ରମଣ, ବ. ନ. (ଭ୍ରମ୍-ଅନ) ପର୍ଯ୍ୟଟନ,ବୁଲିବାର ।

ଭ୍ରମରକୁଟୀ, ବ. ସ୍ତ୍ରୀ. (ଭ୍ରମତ୍-କୁଟୀ) ତୃଣାଦିନିର୍ମିତ ଛତ୍ର; ଝୋପୁର ।

ଭ୍ରମର, ବ. ପୁଂ. (ଭ୍ରମ୍-ଅର) ମଧୁକର, ଭୃଙ୍ଗ, ଅଳି । ଯଥା—

କଳା ଭ୍ରମରକୁ ଜଣି ମାଳମାରେ ବସେ ମୃଗନେତ୍ରା ତଳ । ଛ. ମା.

କାମୁକ । ସ୍ତ୍ରୀ. ଭ୍ରମରୀ ।

ଭ୍ରମରକ, ବ. ପୁଂ. ( ଭ୍ରମର-କ ) ଭୃଙ୍ଗ; ବାଳମୁଷ୍ଟିକ, ମୂଷା; ଶୃଙ୍ଗ; ଜଳଭ୍ରମ; ଲଲାଟଲମ୍ବିତ ଚୂର୍ଣ୍ଣକୁନ୍ତଳ ।

ଭ୍ରମରାଳକ, ବି. ପୁଂ. (ଭ୍ରମର-ଅଳକ) ଲଲାଟସ୍ଥିତ ଘୂର୍ଣ୍ଣକୁନ୍ତଳ ।

ଭ୍ରମି, ବି. ସ୍ତ୍ରୀ. ( ଭ୍ରମ-ଇ ) ଘୂର୍ଣ୍ଣଜଳ, ଆବର୍ତ୍ତ; ଭ୍ରମଣ; ଭ୍ରାନ୍ତି; ଘୂର୍ଣନ ।

ଭ୍ରଷ୍ଟ, ବି°. (ଭ୍ରନ୍‌ଶ୍-ତ) ଚଳିତ; ଚ୍ୟୁତ, ପତିତ; ଅଧାର୍ମିକ; ଦୋଷଯୁକ୍ତ; ନଷ୍ଟ । ଷ୍ଟା-ସ୍ତ୍ରୀ. ବ୍ୟଭିଚାରିଣୀ ସ୍ତ୍ରୀ ।

ଭ୍ରାଜକ, ବି. ସ୍ତ୍ରୀ. (ଭ୍ରାଜ୍-ଅକ) ଶରୀରସ୍ଥ ଧାତୁ-ବିଶେଷ, ପିତ୍ତ । ବି°. ଦୀପ୍ତିକାରକ ।

ଭ୍ରାଜଥୁ, ବି. ପୁଂ. (ଭ୍ରାଜ୍-ଅଥୁ) ଦୀପ୍ତି, ଶୋଭା ।

ଭ୍ରାଜିଷ୍ଣୁ, ବି°. ( ଭ୍ରାଜ୍-ଇଷ୍ଣୁ ) ଦୀପ୍ତିଶୀଳ; ଶୋଭାଯୁକ୍ତ; ଉଜ୍ଜ୍ୱଳ ।

ଭ୍ରାଜୀ, ବି°. (ଭ୍ରାଜ୍-ଇନ୍) ଦୀପ୍ତିଶୀଳ; ଶୋଭାଯୁକ୍ତ ।

ଭ୍ରାତା, ବି. ପୁଂ. (ଭ୍ରାଜ୍-ତୃ) ସହୋଦର,ଭାଇ ।

ଭ୍ରାତୁଷ୍ପୁତ୍ର, ବି. ପୁଂ. ( ଭ୍ରାତୁଃ-ପୁତ୍ର ) ଭ୍ରାତାର ସନ୍ତାନ ।

ଭ୍ରାତୃଜ, ବି. ପୁଂ. (ଭ୍ରାତୃ-ଜ) ଭ୍ରାତୃପୁତ୍ର, ପୁତୁରା ।

ଭ୍ରାତୃଜା,ବି. ସ୍ତ୍ରୀ. (ଭ୍ରାତୃ-ଜା) ଭ୍ରାତୁଷ୍କନ୍ୟା,ଝିଅରା ।

ଭ୍ରାତୃଦ୍ୱିତୀୟା, ବି. ସ୍ତ୍ରୀ. ଭାଇଦ୍ୱିତୀୟା; କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା ।

ଭ୍ରାତୃବ୍ୟ, ବି. ପୁଂ. ( ଭ୍ରାତୃ-ବ୍ୟ ) ଭ୍ରାତୁଷ୍ପୁତ୍ର, ପୁତୁରା; ଶତ୍ରୁ ।

ଭ୍ରାତୃଶ୍ୱଶୁର, ବି. ପୁଂ. ସ୍ୱାମିର ଜ୍ୟେଷ୍ଠଭ୍ରାତା, ଦେଢ଼ଶୁର ।

ଭ୍ରାତ୍ରୀୟ, ବି°. (ଭ୍ରାତୃ-ଈୟ) ଭ୍ରାତୃସମ୍ବନ୍ଧୀୟ । ବି. ପୁଂ. ଭ୍ରାତୃପୁତ୍ର ।

ଭ୍ରାନ୍ତ, ବି°. (ଭ୍ରମ୍-ତ) ଘୂର୍ଣ୍ଣାୟମାନ; ଭ୍ରମଣଯୁକ୍ତ; ଭ୍ରାନ୍ତିଯୁକ୍ତ । ବି. ନ. ଭ୍ରମଣ ।

ଭ୍ରାନ୍ତି, ବି. ସ୍ତ୍ରୀ. (ଭ୍ରମ୍-ତି) ଭ୍ରମଣ; ଭ୍ରମ, ଭୁଲ । ଯଥା—

ହରି କରେ ପଣା ମଣି ପରଶର ଭ୍ରାନ୍ତି । ବ. ବ.

ଭ୍ରାନ୍ତିମାନ୍, ବି°. (ଭ୍ରାନ୍ତି-ମତ୍) ଭ୍ରାନ୍ତିଯୁକ୍ତ । ବି. ପୁଂ. କାବ୍ୟାଲଙ୍କାରବିଶେଷ, ସାଦୃଶ୍ୟ ହେତୁ ଦୃଷ୍ଟତ ବିଷୟରେ କବିକଳ୍ପନାକୃତ ଅନ୍ୟ ବସ୍ତୁର ଭ୍ରମ ।

ଭ୍ରାନ୍ତିହର, ବି°. (ଭ୍ରାନ୍ତି-ହର) ଭ୍ରମନାଶକ । ବି. ପୁଂ. ମନ୍ତ୍ରୀ ।

ଭ୍ରାମକ, ବି. ପୁଂ. ( ଭ୍ରମ୍-ଅକ ) ଶୃଗାଳ; ଧୂର୍ତ୍ତ; ଚୁମ୍ବକପଥର । ବି°. ଭ୍ରମଜନକ ।

ଭ୍ରାମର, ବି. ନ. (ଭ୍ରମର-ଅ) ମଧୁ; ନୃତ୍ୟବିଶେଷ; ଚୁମ୍ବକପଥର । ବି°. ଭ୍ରମରସମ୍ବନ୍ଧୀୟ ।

ଭ୍ରାମରୀ, ବି. ସ୍ତ୍ରୀ. (ଭ୍ରମର-ଅ, ଈ) ପାର୍ବତୀ,ଦୁର୍ଗା। (ମହାସୁରକୁ ଛଳନା କରିବା ନିମନ୍ତେ ପାର୍ବତୀ ଭ୍ରମରରୂପ ଧରିଥିଲେ)

ଭ୍ରାଷ୍ଟ୍ର, ବି. ପୁଂ. ନ. (ଭ୍ରସ୍‌ଜ୍-ତ୍ର) ଭର୍ଜ୍ଜନପାତ୍ର । ବି. ଆକାଶ ।

ଭ୍ରୂ, ବି. ସ୍ତ୍ରୀ. (ଭ୍ରମ୍-ଉ) ଚକ୍ଷୁର ଉର୍ଦ୍ଧ୍ୱ ଓ ଲଲାଟର ନିମ୍ନସ୍ଥିତ ରୋମରାଜୀ ।

ଭ୍ରୂକୁଟି, ଭ୍ରୂକୁଟି, ବି. ସ୍ତ୍ରୀ. ( ଭ୍ରୂ-କୁଟ୍-ଇ ) କ୍ରୋଧାଦିଦ୍ୱାରା ଭ୍ରୂର ବକ୍ରତା, ଭ୍ରୂଭଙ୍ଗ ।

ଭ୍ରୂକ୍ଷେପ, ବି. ପୁଂ ( ଭ୍ରୂ-କ୍ଷେପ ) ଭ୍ରୂଭଙ୍ଗ, ଭ୍ରୂଚାଳନ; ଭ୍ରୂବିଳାସ ।

ଭ୍ରୂକୁଂସ, ଭ୍ରୂକୁଂସ, ବି. ପୁଂ. ( ଭ୍ରୂ-କୁଂସ୍-ଅ ) ସ୍ତ୍ରୀବେଶଧାରୀ ନଟ ।

ଭ୍ରୂଣ,ବି. ପୁଂ. (ଭ୍ରୂଣ୍-ଅ) ବାଳକ,ଗର୍ଭସ୍ଥ ସନ୍ତାନ ।

ଭ୍ରୂଣଘ୍ନ, ବି°. (ଭ୍ରୂଣ-ହନ୍-ଅ) ଭ୍ରୂଣହତ୍ୟାକାରୀ ।

ଭ୍ରୂଣହତ୍ୟା, ବି. ସ୍ତ୍ରୀ. ଗର୍ଭସ୍ଥ ଜୀବର ପ୍ରାଣବଧ ।

ଭ୍ରୂଣହା, ବି°. (ଭ୍ରୂଣ-ହନ୍) ଭ୍ରୂଣହତ୍ୟାକାରକ ।

ଭ୍ରୂଭଙ୍ଗ, ଭ୍ରୂଭଙ୍ଗି, ଭ୍ରୂଭଙ୍ଗୀ, ବି. ପୁଂ. ଭ୍ରୂକୁଟି, ଭ୍ରୂବିଳାସ । ଯଥା—

ଭ୍ରୂଭଙ୍ଗ ମାତ୍ରକେ ଯାର କମ୍ପଇ ନୃପତି
ଭ୍ରଷ୍ଟ ହୋଇ ରହୁଥିବେ ଲଭିଲେ ଦୁର୍ଗତି । ବ. ବ.

ଭ୍ରୂଲତା, ବି. ପୁଂ. ଚକ୍ଷୁର ଉପରିଭାଗସ୍ଥିତ ଲୋମ-ଶ୍ରେଣୀ, ଭୁଲତା ।

ଭ୍ରେଷଣ, ବି. ନ. (ଭ୍ରେଷ୍-ଅନ) ଚଳନ, ଗମନ ।

——:o:——

# ମ

ମ, ବ୍ୟଞ୍ଜନବର୍ଣ୍ଣର ପଞ୍ଚବିଂଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ । ବି. ପୁଂ. ( ମା — ପରିମାଣକରିବା-ଅ) ବିଷ୍ଣୁ; ଶିବ; ଯମ; ସମୟ; ଚନ୍ଦ୍ର; ବିଷ; ମନୁଷ୍ୟ; ବ୍ରହ୍ମା ।

ମଅଳ ବିଂ. (ମଳମପ୍ ଶବ୍ଦଜ) ମଣିଆ ।

ମଇ, ବି. (ଦେଶଜ) କ୍ଷେତର ଢେଳା ଭାଙ୍ଗିବା ନିମିତ୍ତ ବ୍ୟବହୃତ କାଷ୍ଠ ଅବା ବାଉଁଶନିର୍ମିତ ଦିଣ୍ଡ ।

ମଇଳା, ବିଂ. (ମ୍ଳାନଶବ୍ଦଜ) ଅପରିଷ୍କୃତ ।

ମଇଁଷି, ବି. ସ୍ତ୍ରୀ. (ମହିଷ ଶବ୍ଦର ଅପଭ୍ରଂଶ) ପଶୁବିଶେଷ ।

ମଉଡ, ବି. (ମୁକୁଟଶବ୍ଦଜ) ଟୋପି, ମୁକୁଟ ।

ମଉନ, ବିଂ. (ମୌନଶବ୍ଦଜ) ତୁନି । ଯଥା—

> ଭୂମି ପଦ୍ମର ନୂପୁର ପଦ୍ମରତ୍ନ ଛବି,
> ମଉନରେ ପଡ଼ିଅଛ ଏଠାରେ ପ୍ରେମ୍ବବି । କ. ବ.

ମଉଳା, ବି. (ମାତୁଳଶବ୍ଦଜ) ମାତୁଳ, ମାମୁ ।

ମଉଳିବା, କ୍ରି. ( ମ୍ଳାନଶବ୍ଦଜ ) ଝାଉଁଳିବା । ଯଥା — ଫୁଲଟି ମଉଳି ଯାଇଅଛି ।

ମଉସା, ବି. ପୁଂ. ( ମାତୃସ୍ୱସାଶବ୍ଦଜ ) ମାତାର ଭଗିନୀପତି ।

ମକର, ବି. ପୁଂ. (ମ-କୃ-ଅ) ମକରରାଶି; ମତ୍ସ୍ୟବିଶେଷ; କାମଦେବଙ୍କ ଧ୍ୱଜ; ଦଶମରାଶି; କୁବେରଙ୍କ ନିଧିବିଶେଷ; ଗଙ୍ଗାଙ୍କ ବାହନ ।

ମକରକେତନ, ବି. ପୁଂ. ( ମକର-କେତନ ) ସମୁଦ୍ର; କନ୍ଦର୍ପ, ମୀନକେତନ; ମକରମତ୍ସ୍ୟର ଗୃହ ।

ମକରକେତୁ, ବି. ପୁଂ. (ମକର-କେତୁ) କନ୍ଦର୍ପ ।

ମକରକ୍ରାନ୍ତି, (Tropic Capricorn) ନିରକ୍ଷ ରେଖାରେ ୨୩ ½-ଅଂଶ ଦକ୍ଷିଣରେ ଅବସ୍ଥିତ ରେଖା ।

ମକରଧ୍ୱଜ, ବି. ପୁଂ. ( ମକର-ଧ୍ୱଜ ) ମଦନ, କନ୍ଦର୍ପ; ଔଷଧବିଶେଷ ।

ମକଚ୍ଚୁ, କ୍ରି. ବି. (ଦେଶଜ) ଦଳା । ବିଂ. ଦଳିତ ।

ମକଦମା, ବି. ( ଯାବନିକ ) ରାଜଦ୍ୱାରେ ବିଚାରାର୍ଥ ପ୍ରାର୍ଥନା ।

ମକଦମ, ବି. ପୁଂ. (ଯାବନିକ) ଭୂସ୍ୱାମିବିଶେଷ ।

ମକଦମୀ, ବି. (ଯାବନିକ) ଜମିଦାରୀବିଶେଷ ।

ମକରନ୍ଦ, ବି. ପୁଂ. ( ମକର-ଦୋ-ଅ ) ପୁଷ୍ପର ମଧୁ, ପୁଷ୍ପରସ; କୁନ୍ଦ ଫୁଲର ଗଛ; ପୁଷ୍ପରେଣୁ ।

ମକରବ୍ୟୂହ, ବି. ପୁଂ. ମକରାକାର ସୈନ୍ୟବିନ୍ୟାସ ।

ମକରାକର, ମକରାଳୟ, ବି. ପୁଂ. (ମକର-ଆକର, ଆଳୟ) ସମୁଦ୍ର ।

ମକରାଙ୍କ, ବି. ପୁଂ. ( ମକର-ଅଙ୍କ ) ମକରଧ୍ୱଜ, ମଦନ; ସମୁଦ୍ର ।

ମକରାଶ୍ୱ, ବି. ପୁଂ. (ମକର-ଅଶ୍ୱ) ବରୁଣ ।

ମକରିକା, ବି. ସ୍ତ୍ରୀ. ( ମକର-ଇକ-ଆ ) ମକରାକାର ପତ୍ରାବଳୀ ।

ମକରୀ, ବି.ପୁଂ.(ମକର-ଇନ୍ ) ସମୁଦ୍ର, ଗଣ୍ଡଚିହ୍ନବିଶେଷ ।

ମକା, ବି. ( ଦେଶଜ ) ବୃକ୍ଷମୂଳ ମନ୍ଦା । କ୍ରି. ମକଚ୍ଚୁ ।

ମକାର, ବି. ପୁଂ. ( ମ-କାର ) ମ ଅକ୍ଷର; ମତ୍ସ୍ୟ ମାଂସ ମଦ୍ୟ ମୁଦ୍ରା ମୈଥୁନ ଏହି ପାଞ୍ଚ ।

ମକୁଟ, ବି. ନ. (ମକ୍-ଉଟ) ମୁକୁଟ, ଶିରୋଭୂଷଣ ।

ମକୁଟା, ବି. (ଦେଶଜ) ରେସମୀ ବସ୍ତ୍ରବିଶେଷ ।

ମକୁର, ବି. ପୁଂ. ( ମକ୍-ଉର ) କୁମ୍ଭକାରର ଦଣ୍ଡ; ଅଦର୍ଶ, ଦର୍ପଣ; ମୁକୁଳ; ବକୁଳବୃକ୍ଷ ।

ମକୁଳ, ବି. ପୁଂ. (ମକ୍-ଉଳ) ମୁକୁଳ, କଳିକା; ବକୁଳ ।

ମକ୍କା, ବି. ( ଯାବନିକ ) ଦେଶବିଶେଷ, ଆରବ ଦେଶର ରାଜଧାନୀ, ମୁସଲମାନମାନଙ୍କର ପ୍ରଧାନ ତୀର୍ଥ ।

ମକ୍ରୋଳ, ବ. ପୁଂ. (ମକ୍କ୍-ଓଳ) କଠିମା, ଖଡ଼ୀ ।
ମକ୍ଷ, ବ. ପୁଂ. ( ମକ୍ଷ୍-ଅ ) ସମୂହ; କ୍ରୋଧ; ସ୍ୱୀୟ ଦୋଷ ଗୋପନ କରିବାର ।
ମକ୍ଷିକା, ମକ୍ଷୀକା, ବ. ସ୍ତ୍ରୀ. (ମକ୍ଷ୍-ଅକ-ଆ) କୀଟ-ବିଶେଷ, ମାଛି ।
ମକ୍ଷିକାମଳ, ବ. ନ. (ମକ୍ଷିକା-ମଳ) ମହମ ।
ମଖ, ବ. ପୁଂ. (ମଖ୍-ଅ) ଯାଗ, ଯଜ୍ଞ, କତୁ ।
ମଖନ, ବ. (ଦେଶଜ) ନବ୍ୟଣୀ, ନବନୀତ ।
ମଖମଲ, ବ. (ଯାବନିକ) ବସ୍ତ୍ରବିଶେଷ ।
ମଖଶାଳା, ବ. ସ୍ତ୍ରୀ. ( ମଖ-ଶାଳା ) ଯଜ୍ଞଶାଳା ।
ମଖାସୁହୃଦ୍, ବ. ଶିବ, କତୁଧ୍ୱଂସୀ ।
ମଗଜ, ବ. ପୁଂ. (ଯାବନିକ) ମସ୍ତିଷ୍କ, ମଜ୍ଜା ।
ମଗଦୁର, ବ. (ଯାବନିକ) କ୍ଷମତା, ଯୋଗ୍ୟତା ।
ମଗଧ, ବ. ପୁଂ. (ମଗ-ଧା-ଅ) ଦକ୍ଷିଣ ବେହାର ଦେଶ; ସ୍ତୁତିପାଠକ ।
ମଗଧେଶ୍ୱର, ବ. ପୁଂ. (ମଗଧ-ଈଶ୍ୱର) ଜରାସନ୍ଧ ରାଜା; ମଗଧ ଦେଶର ଅଧିପତି ।
ମଗର, ବ. (ମକର ଶବ୍ଦଜ) ମକର, ଜଳଜନ୍ତୁ-ବିଶେଷ ।
ମଗସ୍ତ, ବିଂ. (ଦେଶଜ ) ଏକବୁଦ୍ଧା, ଅବାଧ୍ୟ, ଯଥା—

ହେଉଥ ଯେ ବଡ ମଗସ୍ତ ରଜକ ଶୁଣିଲେ ହେବ ପ୍ରଚଣ୍ଡ ।

ମଗ୍ନ, ବିଂ. ( ମସ୍ଜ୍-ତ ) ଅନ୍ତଃପ୍ରବିଷ୍ଟ, ଡୁବିତ ।
ମଘ, ବ. ପୁଂ. (ମଢ଼-ଅ) ଦ୍ୱୀପବିଶେଷ; ମଗନାମକ ମ୍ଲେଚ୍ଛମାନଙ୍କର ଦେଶ; ସୁଖ; ପୂଜା । ନ. ପୁଷ୍ପବିଶେଷ ।
ମଘବା, ବ. ପୁଂ. (ମହ-ଅନ୍; ବ ଅଗମ) ଇନ୍ଦ୍ର, ଦେବରାଜ ।
ମଘା, ବ. ସ୍ତ୍ରୀ. (ମହ୍-ଅ) ନକ୍ଷତ୍ରବିଶେଷ; ଦଶମ-ନକ୍ଷତ୍ର; ଔଷଧବିଶେଷ ।
ମଘାଭୂ, ବ. ପୁଂ. (ମଘା-ଭୂ) ଶୁକ୍ରଗ୍ରହ ।
ମଘୀ, ବ. ସ୍ତ୍ରୀ. ଧାନ୍ୟବିଶେଷ; ଅଣୁଧାନ୍ୟ ।
ମଙ୍କୁର, ବ. ପୁଂ. (ମନ୍କ୍-ଉର) ମୁକୁର, ଦର୍ପଣ ।
ମଙ୍କ୍ଷୁ, ମଙ୍କ୍ଷୁ, ଅ. (ମନ୍ଜ୍ ବା ମସ୍ଜ୍-ଉ ) ଦ୍ରୁତ, ଶୀଘ୍ର; ସାତିଶୟ ।
ମଙ୍ଗ, ବ. ପୁଂ. (ମନ୍ଗ୍-ଅ) ନୌକାର ଶିରୋଭାଗ ।
ମଙ୍ଗନ, (ମଙ୍ଗଳ ଶବ୍ଦଜ) ବିବାହର ପୂର୍ବ ଦିବସ ।
ମଙ୍ଗଳ, ବ. ନ. (ମନ୍ଗ୍-ଅଳ) କ୍ଷେମ, କୁଶଳ, ଶୁଭ । ପୁଂ. କୁଜଗ୍ରହ । ସ୍ତ୍ରୀ. ଉମା, ପାର୍ବତୀ, ଦୁର୍ଗା; ପତିବ୍ରତା ସ୍ତ୍ରୀ; ହରିଦ୍ରା । ବିଂ. ଶୁଭ-ଦାୟକ ।
ମଙ୍ଗଳଚଣ୍ଡିକା, ମଙ୍ଗଳଚଣ୍ଡୀ, ବ. ସ୍ତ୍ରୀ. ଦୁର୍ଗା, ଭଗବତୀ ।
ମଙ୍ଗଳପାଠକ, ବ. ପୁଂ. ( ମଙ୍ଗଳ-ପାଠକ ) ବନ୍ଦୀ, ସ୍ତୁତିପାଠକ ।
ମଙ୍ଗଳବାର, ବ. ଭୌମବାର ।
ମଙ୍ଗଳସନ୍ନିଧାନ, ବ. ସ୍ୱସ୍ତିକ ଶ୍ରୀ ପ୍ରଭୃତି, ଯାହା ବରଣ ଡାଲାରେ ଦିଆଯାଏ ।
ମଙ୍ଗଳା, ବ. ସ୍ତ୍ରୀ. ପାର୍ବତୀ, ଦୁର୍ଗା । ଯଥା—

ଭକ୍ତବତ୍ସଳ କାଳେଶ୍ୱର ମହାମଙ୍ଗଳା । ଚ, ଗ୍ର,

ପତିବ୍ରତା ସ୍ତ୍ରୀ ।
ମଙ୍ଗଳାଚରଣ, ବ. ନ. (ମଙ୍ଗଳ-ଆଚରଣ) କର୍ମା-ରମ୍ଭରେ ଶୁଭଜନକ କ୍ରିୟା ।
ମଙ୍ଗଲ୍ୟ, ବିଂ. (ମଙ୍ଗଳ-ଯ) ଶୁଭଜନକ, ଶୁଭକର, ସୁନ୍ଦର; ସୁଖଦ । ବ. ନ. ଦଧି; ଚନ୍ଦନ; ସ୍ୱର୍ଣ୍ଣ; ସିନ୍ଦୂର । ପୁଂ. ଅଶ୍ୱତ୍ଥବୃକ୍ଷ; ବେଲଗଛ; ନାରି-କେଳଗଛ ।
ମଙ୍ଗାଇବା, କ୍ରି. ବ. ( ଦେଶଜ ) ମନାଇବା, ପ୍ରବର୍ତ୍ତାଇବା ।
ମଙ୍ଗିନୀ, ବ. ସ୍ତ୍ରୀ. (ମଙ୍ଗ-ଇନ୍-ଈ) ତରୀ, ନୌକା ।
ମଙ୍ଗିବା, କ୍ରି. ବ. (ଦେଶଜ) ସମ୍ମତ ହେବା ।
ମଚକିବା, କ୍ରି. ବ. (ଦେଶଜ) ମୋଡ ହୋଇଯିବା, ଈଷତ୍ ଭାଙ୍ଗିବା ।
ମଚମଚ, ଅ. (ଦେଶଜ) ଅନୁକରଣ ଶବ୍ଦ ।
ମଚଳା, ବ. (ଦେଶଜ) କଣ୍ଠରୋଗବିଶେଷ ।
ମଚ୍ଛ, ବ. ପୁଂ. (ମଦ୍-ଶ) ମତ୍ସ୍ୟ, ମାଛ ।

ମଜର୍‌, ବ. (ଯାବନିକ) ଅଳସ୍ୟ, ଶ୍ରାନ୍ତ ।

ମଜଲିସ, ବ. (ଯାବନିକ) ସମାରୋହ, ସଭା ।

ମଜା, ବଂ. (ମସ୍‌ଜ୍‌ ଧାତୁଜ) ମଗ୍ନ; ଗଳିତ । ବ. ସୁଖ; (ଯାବନିକ) ତାମସା, ବିଦ୍ରୂପ । ବଂ. ପରିଷ୍କୃତ ।

ମଜୁମଦାର, ବ. ( ପାରସ୍ୟ-ମଜୁମାଦାର ଶବ୍ଦଜ ) ଉପାଧିବିଶେଷ ।

ମଜୁରି, ବ. (ଯାବନିକ) ପରିଶୋଧ ।

ମଜୁରୀ, ବ. (ଯାବନିକ) ଦୈନିକ ବେତନ ।

ମଜ୍ଜଥୁ, ବ. ପୁଂ. (ମସ୍‌ଜ୍‌-ଅଥୁ) ମଜ୍ଜନ ।

ମଜ୍ଜନ, ବ. ନ. (ମସ୍‌ଜ୍‌-ଅନ) ସ୍ନାନ, ଅବଗାହନ; ମଗ୍ନ ହେବାର, ମଜ୍ଜା; ଅସ୍ଥିସାର ।

ମଜ୍ଜସମ୍ଭବ, ବ. ନ. ( ମଜ୍ଜା-ସମ୍ଭବ ) ଶୁକ୍ର, ରେତଃ ।

ମଜ୍ଜା, ବ. ପୁଂ. (ମସ୍‌ଜ୍‌-ଅ) ଅସ୍ଥି ଓ ମାଂସର ମଧ୍ୟସ୍ଥ ସ୍ନେହବିଶେଷ; ବୃକ୍ଷସାର ।

ମଜ୍ଜାରସ, ବ. ପୁଂ. (ମଜ୍ଜା-ରସ) ଶୁକ୍ର, ରେତଃ ।

ମଝାଲ, ବଂ. ( ମଧ ଶବ୍ଦଜ ) ମଧ୍ୟବର୍ତ୍ତୀ । ବ. ମଝିସ୍ଥାନ ।

ମଝି, ବ. (ମଧ୍ୟ ଶବ୍ଦଜ) ମଧ୍ୟଭାଗ ।

ମଞ୍ଚ, ମଞ୍ଚକ, ବ. ପୁଂ. (ମନ୍‌ଚ-ଅ, କ) ପର୍ଯ୍ୟଙ୍କ, ଖଟ; ଉନ୍ନତ ସ୍ଥାନ; ବେଦି; ମଞ୍ଚା; ଉଚ୍ଚ ମଣ୍ଡପବିଶେଷ ।

ମଞ୍ଜ, ବ. (ମଜ୍ଜା ଶବ୍ଦଜ) ବୃକ୍ଷାଦିର ଓ କାଷ୍ଠାଦିର ସାରଭାଗ ।

ମଞ୍ଜରି, ମଞ୍ଜରୀ, ବ. ସ୍ତ୍ରୀ. ( ମଞ୍ଜ-ଋ-ଇ ) ଅଙ୍କୁର; ମୁକୁଳ; ଡଙ୍କ; ଝାଡ଼; ମୁକ୍ତା; ତିଳକ ବୃକ୍ଷ; ଲତା ।

ମଞ୍ଜରିତ, ବଂ. ( ମଞ୍ଜରି-ଇତ ) ଅଙ୍କୁରିତ; ମୁକୁଳିତ ।

ମଞ୍ଜା, ବ. ସ୍ତ୍ରୀ. ( ମନ୍‌ଜ୍‌-ଅ ) ଛାଗୀ; ମଞ୍ଜରୀ; (ଦେଶଜ) କଦଳୀ ବୃକ୍ଷର ଅସ୍ଥିବିଶେଷ ।

ମଞ୍ଜାରି, ବ. ପୁଂ. ( ମାର୍ଜାର ଶବ୍ଦଜ ) ବିରାଡ଼ି, ବିଲୁଇ । ଯଥା—

ଯେତେବେ ମଞ୍ଜାରି ଦେଖନ୍ତି ଅଟେ,
ତାଙ୍କ ଧର ବୁଡ଼ା ପିଠର ତଟେ ।

ମଞ୍ଜି, ମଞ୍ଜୀ, ବ. ସ୍ତ୍ରୀ. (ମନ୍‌ଜ୍‌-ଇ) ମଞ୍ଜରୀ; ବୀଜ ।

ମଞ୍ଜିଷ୍ଠା, ବ. ସ୍ତ୍ରୀ. (ମଞ୍ଜୁ-ସ୍ଥା-ଅ-ଆ) ରକ୍ତବର୍ଣ୍ଣ ଲତାବିଶେଷ; ଅଳତା ।

ମଞ୍ଜୀର, ବ. ପୁଂ. ନ. ( ମନ୍‌ଜ-ଈର ) ଚରଣାଭରଣ, ନୂପୁର । ପୁଂ. ମନ୍ଥନଦଣ୍ଡ-ବନ୍ଧନସ୍ତମ୍ଭ ।

ମଞ୍ଜୁ, ବଂ. ( ମନ୍‌ଜ୍‌-ଉ ) ମନୋଜ୍ଞ, ସୁନ୍ଦର; ମଧୁର । ଯଥା—

ପ୍ରଦୋଷେ ଯୋ କୋଳେ ଶିର ଦେଇ ପ୍ରେମଭରେ,
ଶୋଉଥିଲ ପ୍ରିୟେ ! ମଞ୍ଜୁ ବଞ୍ଜୁଳ କୁଞ୍ଜରେ । କ. କ.

ମଞ୍ଜୁଆଡ଼, ବ. (ଦେଶଜ) ବୃକ୍ଷବିଶେଷ । ଯଥା—

ଦିଶେ ମଞ୍ଜୁ ମଞ୍ଜୁଆଡ଼ ।

ମଞ୍ଜୁକେଶୀ, ବ. ପୁଂ. (ମଞ୍ଜୁ-କେଶ-ଇନ୍‌) କୃଷ୍ଣ । ବଂ. ମନୋହରକେଶବିଶିଷ୍ଟ ।

ମଞ୍ଜୁଗମନା, ବ. ସ୍ତ୍ରୀ. (ମଞ୍ଜୁ ଗମନ-ଆ) ହଂସୀ ।

ମଞ୍ଜୁପ୍ରାଣ, ବ. ପୁଂ. (ମଞ୍ଜୁ-ପ୍ରାଣ) ବ୍ରହ୍ମା ।

ମଞ୍ଜୁର, ବ. ( ଯାବନିକ ) ସମ୍ମତ, ଅଙ୍ଗୀକାର, ସ୍ୱୀକାର ।

ମଞ୍ଜୁଳ, ବଂ. ( ମଞ୍ଜୁ-ଳ ) ମନୋହର, ସୁନ୍ଦର; ମଧୁର । ଯଥା—

କୁଞ୍ଜେ କୁଞ୍ଜେ ରବ ଧରି ସୁମଞ୍ଜୁଳ ।

ସମୀଚୀନ । ବ. ନ. ନିକୁଞ୍ଜ । ପୁଂ. ଶୈବାଳ ।

ମଞ୍ଜୁଷା, ମଞ୍ଜୂଷା, ବ. ସ୍ତ୍ରୀ. ( ମନ୍‌ଜ୍‌-ଉଷ୍‌, ଊଷ ) ପେଟିକ; ପାଷାଣ, ମଞ୍ଜୁ; ପେଡ଼ା; ମଞ୍ଜିଷ୍ଠା ।

ମଠର, ବ. (ଦେଶଜ) ଫଳବିଶେଷ ।

ମଠାମ, ବ. ( ଦେଶଜ ) ସମକୋଣବିଶିଷ୍ଟ ଯନ୍ତ୍ର, ବଢ଼ାଇ ଏବଂ ରାଜମିସ୍ତ୍ରୀମାନେ ଏହା ବ୍ୟବହାର କରନ୍ତି ।

ମଠକା, ମସକା, ବ. ( ଦେଶଜ ) ଯେଉଁ ବୃକ୍ଷାଦି ଅତି ସହଜରେ ଭାଙ୍ଗିଯାଏ । ଯଥା—ସଜନା, ଆମ୍ବଡ଼ା ଇତ୍ୟାଦି ।

ମଠାଳ, ବଂ. (ଦେଶଜ) କଠିନ ।

ମଠ, ବ. ପୁଂ. ( ମଠ୍-ଅ ) ମନ୍ଦିର, ଦେବାଳୟ, ଋଷି ବା ସନ୍ନ୍ୟାସିଙ୍କ ଆଶ୍ରମ । ଯଥା—

ଋଷିମାନଙ୍କ ମଠ ଦେଖାଇବା,
ତୁମ୍ଭର ମନୋରଥ ପୂରଇବା ।

(ଦେଶଜ) ବ. ଅଳସ, ଶିଥିଳ, ମୃଦୁ । ଯଥା—

ମଠେ ଟେଳ ପହୁଁ କୃଶବଚ୍ଚା କରେ । ନ. କେ.

ମଠା, ବ. (ଦେଶଜ) ରେଶମୀବସ୍ତ୍ରବିଶେଷ ।

ମଠୁଆ, ବଂ. (ଦେଶଜ) ଅଳସୁଆ ।

ମଡ଼କ, ବ. ( ମରକ ଶବ୍ଦଜ ) ମାରୀଭୟ, ବହୁ ମନୁଷ୍ୟଙ୍କର ମୃତ୍ୟୁ ସମୟ ।

ମଡ଼ା, ବ. (ମଡ଼ା ଶବ୍ଦଜ) ମୃତଦେହ, ଶବ ।

ମଢ଼, ବ. (ଦେଶଜ) ମୃତଦେହ ।

ମଢ଼ୁଆଣାଙ୍କୋଳ, ବ. ( ଦେଶଜ ) ଗ୍ରନ୍ଥଶାଳୀରେ ଅବାଧ ଛନ୍ଦଙ୍କ ନିମନ୍ତେ ତାଳପତ୍ର ଶିଳ୍ପନିର୍ମିତ ବିଞ୍ଚନବିଶେଷ । ଯଥା—

ଚରଣେ ବଖନ୍ତି ମା ଗୋ ମଢ଼ୁଆଣାଙ୍କୋଳ ।

ମଣ, ବ. ( ମଣ୍ ଧାତୁଜ ) ଆଦୃତ କରିବା, ମନେଇବା ।

ମଣାଇବା, କି. (ମଣ୍ ଧାତୁଜ) ବୁଝେଇବା ।

ମଣାଣ, ବ. (ମଣ୍ ଧାତୁଜ) ମନାଇବା । ଯଥା—

ସନ୍ନିଧିରେ ଧୀରେ କଣାଣ ମଣାଣ ନ କଲ ବହୁ ବଶରେ ।

ମଣି, ପୁଂ. } ବ. ( ମନ୍-ଇନ୍-ଈ ) ରତ୍ନବିଶେଷ,
ମଣୀ; ସ୍ତ୍ରୀ. } ବହୁମୂଲ୍ୟ ପ୍ରସ୍ତରବିଶେଷ, ମୁକ୍ତା-ଚୁଡ଼ିତ; ମଣିବନ୍ଧ...ନା । ପୁଂ. ନାଗବିଶେଷ; (ଦେଶଜ) କି. ଜ୍ଞାନ କରି । ଯଥା—

ସଜାବ ମଣି ଛଡ ଢଥା ପ୍ରକାଶେ ।

ମଣିକର୍ଣ୍ଣିକା, ବ. ସ୍ତ୍ରୀ. କାଶୀସ୍ଥ ତୀର୍ଥବିଶେଷ; ମଣିମୟ କର୍ଣ୍ଣଭୂଷଣ ।

ମଣିକାନନ, ବ. ନ. (ମଣି-କାନନ) କଣ୍ଠ, ଗଳା ।

ମଣିକାର, ବ. ପୁଂ. (ମଣି-କୃ-ଅ) ମଣିପରିଷ୍କାରକ, ମଣିପରୀକ୍ଷକ, ଜହରୀ; ଗ୍ରନ୍ଥକାରବିଶେଷ ।

ମଣିକୂଟ, ବ. ପୁଂ. (ମଣି-କୂଟ) ପର୍ବତବିଶେଷ ।

ମଣିଗ୍ରୀବ, ବ. ପୁଂ. (ମଣି-ଗ୍ରୀବା) କୁବେର ପୁତ୍ର । ବଂ. ରତ୍ନକଣ୍ଠର ।

ମଣିତ, ବ. ନ. (ମଣି-ତ) ଟୁମ୍ଫନାଦ ଧ୍ୱନି; ରତି-କୂଜିତ ।

ମଣିପୂର, ବ. ପୁଂ. (ମଣି-ପୂର) ନାଭିସ୍ଥଳ । ନ. ଷଟ୍‌ଚକ୍ରର ଅନ୍ତର୍ଗତ ନାଭିମଧ୍ୟସ୍ଥ ତୃତୀୟ ଚକ୍ର, ନାଭିପଦ୍ମ ।

ମଣିବନ୍ଧ, ବ. ପୁଂ. (ମଣି-ବନ୍ଧ) କରଗ୍ରନ୍ଥି, ହାତର କବ୍ଜା । ଯଥା—

ଗୌର ମଣିବନ୍ଧେ ପିନ୍ଧାଇ ଥିବର ଦେଖ ଇନ୍ଦ୍ରମଣି ବଳା ।
ଯ. କେ.

ମଣିବା, କି. (ମଣ୍ ଧାତୁଜ) ଅଙ୍ଗୀକାର କରିବା, ବୋଧ କରିବା । ଯଥା—

ଭର ମଣଇ ହୃଦୟ ହାରା

ମଣିଭଦ୍ର, ବ. ପୁଂ. ଯକ୍ଷବିଶେଷ ।

ମଣିମା, ବ. (ଦେଶଜ) ରାଜସମ୍ବୋଧନସୂଚକ ଶବ୍ଦ । ଯଥା—

ମଣିମା ମଣିମା ଡାକ ଅନୁକ୍ଷଣ ଶୁଭେ ।

ମଣିମାନ୍, ବଂ. (ମଣି-ମତ୍) ମଣିବିଶିଷ୍ଟ, ମଣିଭୂଷିତ । ବ. ପୁଂ. ସୂର୍ଯ୍ୟ ।

ମଣିମାଳା, ବ. ସ୍ତ୍ରୀ. ( ମଣି-ମାଳା ) ମଣିମୟହାର; ଛନ୍ଦଃବିଶେଷ; ଲକ୍ଷ୍ମୀ; ଦୀପ୍ତି ।

ମଣିବୀଜ, ବ. ପୁଂ. (ମଣି-ବୀଜ) ଦାଡ଼ିମ୍ବବୃକ୍ଷ ।

ମଣିସର, ବ. ପୁଂ. (ମଣି-ସର) ମଣିମୟହାର, ମୁକ୍ତାହାର, ମୁକ୍ତାମାଳା ।

ମଣିଚକ, ବ. ନ. ଚନ୍ଦ୍ରକାନ୍ତମଣି । ପୁଂ. ମାଛରଙ୍କା ପକ୍ଷୀ ।

ମଣିବକ, ବ. ନ. ପୁଷ୍ପ, ଫୁଲ ।

ମଣୋହି, ବ. ( ଦେଶଜ ) ନୈବେଦ୍ୟ; ରାଜା-ମାନଙ୍କର ଭୋଜନ ।

ମଣ୍ଡ, ବ. ପୁଂ. ନ. (ମଣ୍ଡ-ଅ) ସାର । ପୁଂ. ଏରଣ୍ଡ-ବୃକ୍ଷ; ଭୂଷଣ । ସ୍ତ୍ରୀ. ସୁରା, ମଦିରା ।

ମଣ୍ଡଣି, ବ. (ମଣ୍ଡ୍-ଧାତୁଜ) ସଜ୍ଜା, ଭୂଷଣ ।

ମଣ୍ଡନ, ବ. ନ. (ମଣ୍ଡ-ଅନ) ଭୂଷଣ; ଅଳଙ୍କରଣ । ବଂ. ଅଳଙ୍କାରକ । ବ. ପୁଂ. ପଣ୍ଡିତବିଶେଷ ।

ମଣ୍ଡପ, ବ. ପୁଂ. ନ. (ମଣ୍ଡ-ପା-ଅ) ଗୃହ; ଦେବଗୃହ; ବିବାହଗୃହ । ଯଥା—

ବନ୍ୟାସ କଲେ ସେ ବାଣୀ ସନ୍ଧ୍ୟାବସନେ,
ବସାଇବା ମଣ୍ଡପରେ କନ୍ୟା ସୁମନେ । ବୈ. ବ.

ବ୍ୟ. ମଣ୍ଡପାସ୍ଥୀ ।

ମଣ୍ଡଳ, ବ. ନ. ( ମଣ୍ଡ୍-ଅଲ ) ଚନ୍ଦ୍ର ସୂର୍ଯ୍ୟାଦିଙ୍କ ପରିଧି, ବେଷ୍ଟନ । ନ. ଗୋଲ; ଚକ୍ର; ଦେଶ; ବିଭାଗ; ସ୍ଥାନ; ପ୍ରଦେଶ, ରାଜ୍ୟ; ଅରି ମିତ୍ରାଦି ଦ୍ୱାଦଶବିଧ ରାଜ୍ୟ; ଧନୁର୍ଦ୍ଧରମାନଙ୍କର ସ୍ଥାନବିଶେଷ; କୃତ୍ରିମ ରେଖାଦିଦ୍ୱାରା ରଚିତ ଆସନବିଶେଷ । ପୁଂ. କୁକୁର; ସର୍ପବିଶେଷ ।

ମଣ୍ଡଳାଗ୍ର, ବ. ପୁଂ. (ମଣ୍ଡଳ-ଅଗ୍ର) ଅସି, ଖଡ୍ଗ ।

ମଣ୍ଡଳାଧୀଶ, ବ. ପୁଂ. (ମଣ୍ଡଳ-ଅଧୀଶ) ମଣ୍ଡଳେଶ୍ୱର, ଚତୁଃଶତଯୋଜନ ଦେଶାଧିପ ।

ମଣ୍ଡଳାୟିତ, ବ୍ୟ. ( ମଣ୍ଡଳ-ଯ-ତ ) ବର୍ତ୍ତୁଳ, ଗୋଲାକାର ।

ମଣ୍ଡଳୀ, ବ. ପୁଂ. ( ମଣ୍ଡଳ-ଇନ୍ ) ସର୍ପ; ସୂର୍ଯ୍ୟ; ବିଲେଇ; କଟାଶ; ବଟବୃକ୍ଷ । ବ୍ୟ. ଚକ୍ରାକାରରେ ସଙ୍କୁଚିତ; ମଣ୍ଡଳବିଶିଷ୍ଟ ।

ମଣ୍ଡଳେଶ, ମଣ୍ଡଳେଶ୍ୱର, ବ. ପୁଂ. (ମଣ୍ଡଳ-ଈଶ, ଈଶ୍ୱର) ରାଜା; ସମ୍ରାଟ୍ ।

ମଣ୍ଡହାରକ, ବ. ପୁଂ. (ମଣ୍ଡ-ହୃ-ଅକ) ଶୌଣ୍ଡିକ, ଶୁଣ୍ଡି ।

ମଣ୍ଡା, ବ. (ଦେଶଜ) ପିଷ୍ଟକବିଶେଷ, ମିଷ୍ଟାନ୍ନବିଶେଷ ।

ମଣ୍ଡିତ, ବ୍ୟ. (ମଣ୍ଡ୍-ତ) ଭୂଷିତ, ସଜ୍ଜିତ; ବେଷ୍ଟିତ ।

ମଣ୍ଡିବା, କ୍ରି. (ମଣ୍ଡ୍ ଧାତୁଜ) ଭୂଷିତକରିବା । ଯଥା—

ଗୃହ ଦ୍ୱୋତପମାନ ଦେଇ ମଣ୍ଡିଲେ ।

ମଣ୍ଡୂକ, ପୁଂ. } ବ. ( ମଣ୍ଡ୍-ଉକ-ଈ ) ଭେକ,
ମଣ୍ଡୂକୀ, ସ୍ତ୍ରୀ. } ବେଙ୍ଗ । ପୁଂ. ମୁନିବିଶେଷ ।

ମତ, ବ୍ୟ. (ମନ୍-ତ) ଜ୍ଞାତ; ଅଭିପ୍ରେତ, ସମ୍ମତ; ସମ୍ମାନିତ । ବ. ନ. ଅଭିପ୍ରାୟ, ସମ୍ମତି ।

ମତଙ୍ଗ, ବ. ପୁଂ. (ମଦ-ଅଙ୍ଗ) ମୁନିବିଶେଷ; ହସ୍ତୀ; ମେଘ ।

ମତଙ୍ଗଜ, ବ. ପୁଂ. (ମତଙ୍ଗ-ଜ) ହସ୍ତୀ, ମାତଙ୍ଗ, କୁଞ୍ଜର, କରୀ ।

ମତଲ୍ଲିକା, ବ. ସ୍ତ୍ରୀ. (ମତ୍-ଅଲ-ଅକ) ପ୍ରଶସ୍ତ, ଉତ୍ତମ ।

ମତି, ବ. ସ୍ତ୍ରୀ. (ମନ୍-ତି) ବୁଦ୍ଧି, ଜ୍ଞାନ; ଅନ୍ତଃକରଣ, ମନଃ; ସ୍ମୃତି; ଇଚ୍ଛା; ପ୍ରବୃତ୍ତି ।

ମତିଭ୍ରଂଶ, ପୁଂ. } ବ. (ମତି-ଭ୍ରଂଶ, ଭ୍ରମ, ଭ୍ରାନ୍ତି)
ମତିଭ୍ରମ, ପୁଂ. } ବୁଦ୍ଧିଭ୍ରଂଶ, ଭୁଲ ।
ମତିଭ୍ରାନ୍ତି, ସ୍ତ୍ରୀ. }

ମତିମାନ୍, ବ୍ୟ. (ମତି-ମତ୍) ସୁଧୀ, ବୁଦ୍ଧିମାନ୍ ।

ମତୁଆଲା, ବ୍ୟ. (ମତ୍ତ ଶବ୍ଦଜ) ପାଗଲ ।

ମତ୍, ଅଂ. ମଦୀୟ, ମତ୍ସମ୍ବନ୍ଧୀୟ ।

ମତ୍କୁଣ, ବ. ପୁଂ. (ମଦ୍-କୁଣ୍-ଅ) ଛାରପୋକ; ଶ୍ମଶ୍ରୁଶୂନ୍ୟ ପୁରୁଷ; ନାରକେଳ ।

ମତ୍ତ, ବ. ପୁଂ. (ମଦ୍-ତ) କ୍ରୋଧାନ୍ଧ ହସ୍ତୀ; ଧୁସ୍ତୁର; କୋକିଳ; ମହିଷ । ବ୍ୟ. ଆନନ୍ଦିତ; ବିହ୍ୱଳ, ମତୁଆଲା; କ୍ଷୁବ୍ଧ; ଉନ୍ମତ୍ତ ।

ମତ୍ତକାଶିନୀ, ମତ୍ତକାସିନୀ, ବ. ସ୍ତ୍ରୀ. (ମତ୍ତ-କାଶ୍-କାସ୍-ଇନ୍-ଈ) ଉତ୍ତମା ସ୍ତ୍ରୀ ।

ମତ୍ତକାଶ, ବ. ପୁଂ. (ମତ୍ତକ-ଈଶ) ହସ୍ତୀ, ଗଜ ।

ମତ୍ତମୟୂର, ବ. ପୁଂ. (ମତ୍ତ-ମୟୂର) ଉନ୍ମତ୍ତମୟୂର; ମେଘ; ତ୍ରୟୋଦଶାକ୍ଷର ପାଦ ଛନ୍ଦୋବିଶେଷ; ଯାହାର ଷଷ୍ଠ ସପ୍ତମ ଦଶମ ଏକାଦଶ ବର୍ଣ୍ଣ ଲଘୁ, ଅବଶିଷ୍ଟ ଗୁରୁ ।

ମତ୍ତବାରଣ, ବ. ପୁଂ. (ମତ୍ତ-ବାରଣ) ମତ୍ତହସ୍ତୀ । ନ. କୋଠାର ବରଣ୍ଡା; ଘେରାଯାଗା; ପୂଗଚୂର୍ଣ୍ଣ ।

ମତ୍ତାଲମ୍ବ, ବ. ପୁଂ. ( ମତ୍ତ-ଆଲମ୍ବ ) ଅପାଶ୍ରୟ; ବରଣ୍ଡା ।

ମତ୍ୟ, ବ. ନ. (ମତି-ଯ) ଫଳକବିଶେଷ; ମଇ; ଜ୍ଞାନାନୁଶୀଳନ ।

ମତ୍ସ, ବ. ପୁଂ. (ମଦ୍-ସ) ମତ୍ସ୍ୟ, ମାଛ ।

ମତ୍ସର, ବ. ପୁଂ. ( ମଦ୍-ସର ) ବୈର, ଦ୍ୱେଷ; କ୍ରୋଧ; ପରଶ୍ରୀକାତରତା । ବ୍ୟ. କ୍ଷୁବ୍ଧ; କୃପଣ; ପରଶ୍ରୀକାତର । ଯଥା—

ତାହୋର ମତ୍ସରଭବ ତରବାଳପାଇଁ ।

ମତ୍ସରୀ, ବି. ( ମତ୍ସର-ଇନ୍ ) ପରଶ୍ରୀକାତର; ଦୁର୍ଜନ, ଖଳ; ଦ୍ୱେଷକାରୀ; କ୍ରୋଧୀ; କ୍ରୂର ।

ମତ୍ସ୍ୟ, ବି. ପୁଂ. (ମଦ୍-ସ୍ୟ) ମୀନ, ମାଛ; ବିଷ୍ଣୁଙ୍କ ପ୍ରଥମ ଅବତାର; ପୁଷ୍କରଣୀବିଶେଷ; ଦେଶ-ବିଶେଷ; ବର୍ତ୍ତମାନ ଜୟପୁର, ରଙ୍ଗପୁର, ଦିନାଜପୁର ଏବଂ କୁଚବେହାରକୁ ମତ୍ସ୍ୟଦେଶ ବୋଲଯାଏ ।

ମତ୍ସ୍ୟକରଣ୍ଡିକା, ବି. ସ୍ତ୍ରୀ. ( ମତ୍ସ୍ୟ-କରଣ୍ଡ-କ ) ମତ୍ସ୍ୟଧାନୀ, ମାଛ ରଖିବାର ଖାଲୋଇ ।

ମତ୍ସ୍ୟଗନ୍ଧା, ବି. ସ୍ତ୍ରୀ. (ମତ୍ସ୍ୟ-ଗନ୍ଧ) ବ୍ୟାସଦେବଙ୍କ ମାତା; ଜଳପିପ୍ପଳ ।

ମତ୍ସ୍ୟଜୀବୀ, ବି. ପୁଂ. ( ମତ୍ସ୍ୟ-ଜୀବୀ ) ଧୀବର, କେଉଟ ।

ମତ୍ସ୍ୟଧାନୀ, ବି. ସ୍ତ୍ରୀ. ( ମତ୍ସ୍ୟ-ଧା-ଅନ-ଈ ) ମାଛ ରଖିବାର ଖାଲୋଇ ।

ମତ୍ସ୍ୟରଙ୍ଗ, ବି.ପୁଂ. (ମତ୍ସ୍ୟ-ରଙ୍ଗ) ମାଛରଙ୍କା ପକ୍ଷୀ ।

ମତ୍ସ୍ୟରାଜ, ବି. ପୁଂ. (ମତ୍ସ୍ୟ-ରାଜ) ରୋହିତମତ୍ସ୍ୟ, ରୋହିମାଛ; ବିରାଟରାଜା; ବର୍ତ୍ତରାଜ ।

ମତ୍ସ୍ୟବେଧନ, ନ. } ବି. (ମତ୍ସ୍ୟ-ବିଧ୍-ଅନ, ନୀ)
ମତ୍ସ୍ୟବେଧନୀ, ସ୍ତ୍ରୀ. } ବଡ଼ିଶ, ବନଶୀ ।

ମତ୍ସ୍ୟାଶନ, ବି. ପୁଂ. (ମତ୍ସ୍ୟ-ଅଶନ) ମାଛରଙ୍କ ପକ୍ଷୀ । ବିଂ. ମତ୍ସ୍ୟଭକ୍ଷକ ।

ମତ୍ସ୍ୟୋଦରୀ, ବି. ସ୍ତ୍ରୀ. (ମତ୍ସ୍ୟ-ଉଦର-ଇନ୍-ଈ) ସତ୍ୟବତୀ, ବ୍ୟାସଦେବଙ୍କ ମାତା; କାଶୀସ୍ଥ ତୀର୍ଥବିଶେଷ ।

ମଥନ, ବି.ନ. (ମନ୍ଥ-ଅନ) ମନ୍ଥନ, ବିଲୋଡ଼ନ, ମୋହିଁବା; ବିନାଶ; କ୍ଲେଶ ।

ମଥା, ବି. ( ମସ୍ତକ ଶବ୍ଦଜ ) ମସ୍ତକ, ମୁଣ୍ଡ । ଯଥା—

ନାରୀ ହୋଇ ଯୁଦ୍ଧେ ଦେଖି ନନ ମଥା । କ. ବ.

ମଥିତ, ବିଂ. (ମଥ୍-ତ) ବିଲୋଡ଼ିତ, ମୋହିଁବାର; ବିନାଶିତ; ପୀଡ଼ିତ; ହତ ।

ମଥୀ, ବି. ପୁଂ. (ମନ୍ଥ-ଇନ୍) ମନ୍ଥନଦଣ୍ଡ ।

ମଥୁରା, ମଥୂରା, ମଧୁରା, ବି. ସ୍ତ୍ରୀ. ( ମଥ୍-ଉର, ଉର-ଆ) ଆଗ୍ରା ପ୍ରଦେଶର ଅନ୍ତର୍ଗତ ପ୍ରସିଦ୍ଧ ନଗରୀ; ମଧୁପୁରୀ ।

ମଥୁରେଶ, ବି. ପୁଂ. (ମଥୁରା-ଈଶ) କୃଷ୍ଣ ।

ମଦ, ବି. ପୁଂ. (ମଦ୍-ଅ) ଆନନ୍ଦ; ଆନନ୍ଦଜନିତ ସମ୍ମୋହ; ମଦଗ୍ରହଣକୃତ ମନୋବିକାର, ମତ୍ତତା; ମଦରାଗ, ଉନ୍ମାଦ; ରେତଃ; ଅହଂକାର, ଗର୍ବ; ହସ୍ତିର ଗଣ୍ଡସ୍ଥଳାଦିରୁ କ୍ଷରିତ ଧର୍ମବିଶେଷ ।

ମଦକଟ, ବି. ପୁଂ. ( ମଦ-କଟ୍-ଅ ) ବୃଷ, ଷଣ୍ଢ; ମତ୍ତହସ୍ତୀ ।

ମଦକଳ, ବିଂ. ( ମଦ-କଲ୍-ଅ ) ମତ୍ତତାଜନ୍ୟ ମଧୁର ଅସ୍ଫୁଟବାଣୀ । ବି. ପୁଂ. ମତ୍ତହସ୍ତୀ ।

ମଦଗନ୍ଧ, ବି. ପୁଂ. ( ମଦ-ଗନ୍ଧ ) ଛତିଅନାଗଛ, ସପ୍ତଚ୍ଛଦବୃକ୍ଷ । ସ୍ତ୍ରୀ. ସୁରା, ମଦିରା ।

ମଦତ୍, ବି. (ଦେଶଜ) ମାଦକଦ୍ରବ୍ୟବିଶେଷ ।

ମଦନ, ବି. ପୁଂ. (ମଦ୍-ଅନ) କାମଦେବ; ବସନ୍ତ କାଳ; ବୃକ୍ଷବିଶେଷ; ଧୂତୁରାଗଛ; ଭ୍ରମର । ବିଂ. ମତ୍ତତାଜନକ ।

ମଦନପାଠକ, ବି. ପୁଂ.(ମଦନ-ପାଠକ)କୋକିଳ ।

ମଦନମୋହନ, ବି. ପୁଂ. ( ମଦନ-ମୋହନ ) ଶ୍ରୀକୃଷ୍ଣ । ବିଂ. ଅତି ସୁନ୍ଦର ।

ମଦନଲେଖକ, ବି. ପୁଂ. ପ୍ରଣୟସୂଚକ ପତ୍ରିକା ।

ମଦନଶଲାକା, ବି. ସ୍ତ୍ରୀ. (ମଦନ-ଶଲାକା)କାମୋ-ଦ୍ଦୀପକ ଔଷଧ;କୋକିଳ; ସାରିକା ପକ୍ଷିଣୀ ।

ମଦନାଙ୍କୁଶ, ବି. ପୁଂ. ( ମଦନ-ଅଙ୍କୁଶ ) ଲିଙ୍ଗ, ପୁଂଚିହ୍ନ ।

ମଦନାୟୁଧ, ବି. ପୁଂ. ( ମଦନ-ଆୟୁଧ ) ଯୋନି, ସ୍ତ୍ରୀଚିହ୍ନ ।

ମଦନାଳୟ, ବି. ପୁଂ. ( ମଦନ-ଆଳୟ ) ରାଜା; ପଦ୍ମ; ଯୋନି, ସ୍ତ୍ରୀଚିହ୍ନ ।

ମଦନାବସ୍ଥା, ବି. ସ୍ତ୍ରୀ. (ମଦନ-ଅବସ୍ଥା) କାମଦଶା ।

ମଦନୋତ୍ସବ, ବି. ପୁଂ. ( ମଦନ-ଉତ୍ସବ ) ବସନ୍ତୋତ୍ସବ ।

ମଦନୋଦ୍ଭବା, ବ. ସ୍ତ୍ରୀ. (ମଦନ-ଉଦ୍ଭବା) ସ୍ୱର୍ଗ-ବେଶ୍ୟା ।

ମଦପ୍ରୟୋଗ, ବ. ପୁଂ. (ମଦ-ପ୍ରୟୋଗ) ହସ୍ତି-ମାନଙ୍କର ମଦକ୍ଷରଣ ।

ମଦୟିତା, ବଂ. (ମଦ-ତୃ) ମଦଜନକ, ମାଦକ

ମଦାତଙ୍କ, ବ. ପୁଂ. (ମଦ-ଆତଙ୍କ) ମଦ୍ୟପାନ-ଜନିତ ରୋଗବିଶେଷ ।

ମଦାତ୍ୟୟ, ବ. ପୁଂ. (ମଦ-ଅତ୍ୟୟ) ମଦ୍ୟପାନ-ଜନିତ ପୀଡ଼ାବିଶେଷ ।

ମଦାମ୍ବର, ବ. ପୁଂ. (ମଦ-ଅମ୍ବର) ମତ୍ତହସ୍ତୀ ।

ମଦାର, ବ. ପୁଂ. (ମଦ୍-ଆର) ହସ୍ତୀ, ମତ୍ତହସ୍ତୀ, ଶୂକର । ବଂ. କାମୁକ; ଧୂର୍ତ୍ତ, ଶଠ ।

ମଦାଲସା, ବ. ସ୍ତ୍ରୀ. କାମୁକୀ । ଯଥା—

ମଦାଲସା ଓଷ୍ଠ ଗୋଳ କରୁଥାଇ ଭୂମନଯଲସୀ ହୋଇ ।

ମଦାଲାପୀ, ବ. ପୁଂ. (ମଦ୍-ଆ-ଲପ୍-ଇନ୍) କୋକିଳ ।

ମଦାହ୍ୱ, ବ. ପୁଂ. (ମଦ-ଆହ୍ୱା) ମୃଗନାଭି, କସ୍ତୁରୀ ।

ମଦିର, ବ. ପୁଂ. ସ୍ତ୍ରୀ. (ମଦ୍-ଇର) ରକ୍ତଖଦିର । ବଂ. ମତ୍ତତାଜନକ ।

ମଦିରା, ବ. ସ୍ତ୍ରୀ. ସୁରା; ଖଞ୍ଜନପକ୍ଷୀ ।

ମଦିଷ୍ଠା, ବ. ସ୍ତ୍ରୀ. (ମଦ୍-ଇଷ୍ଠ-ଆ) ସୁରା, ମଦିରା ।

ମଦୀୟ, ବଂ. (ଅସ୍ମଦ୍-ଈୟ) ମତ୍‌ସମ୍ବନ୍ଧୀୟ, ମୋହର ।

ମଦୋତ୍କଟ, ବ. ପୁଂ. (ମଦ-ଉତ୍କଟ) ମତ୍ତହସ୍ତୀ । ବଂ. ମତ୍ତ; ଗର୍ବିତ ।

ମଦ୍ଗୁ, ବ. ପୁଂ. (ମଦ୍-ଗୁ) ଜଳଚର ପକ୍ଷି-ବିଶେଷ, ପାଣିକୁଆ; ଯୁଦ୍ଧଜାହାଜସମୂହ ।

ମଦ୍ଗୁର, ମଦ୍ଗୁରକ, ବ. ପୁଂ. (ମଦ୍-ଉର, ଗ ଆଗମ, ମଦ୍ଗୁର-ଅକ) ମାଗୁରମାଛ; ସଙ୍କୀର୍ଣ୍ଣଜାତିବିଶେଷ ।

ମଦ୍ଗୁରସୀ, ବ. ସ୍ତ୍ରୀ. ଶୃଙ୍ଗମତ୍ସ୍ୟ, ଶିଙ୍ଗିମାଛ ।

ମଦ୍ୟ, ବ. ନ. (ମଦ୍-ଯ) ସୁରା, ମଦିରା ।

ମଦ୍ୟପ, ବଂ. (ମଦ୍ୟ-ପା-ଅ) ସୁରାପାୟୀ, ଯେ ମଦ୍ୟ ପାନ କରେ । ଯଥା—

ମଦ୍ୟପ ଯେଣ୍ହେ ମଦ୍ୟ ପିଇ, ଧର୍ମ ଅଧର୍ମ ନ ଜାଣଇ ।

ମଦ୍ର, ବ. ପୁଂ. (ମଦ୍-ର) ପଞ୍ଜାବର ଅନ୍ତର୍ଗତ ଦେଶବିଶେଷ; ଆହ୍ଲାଦ, ହର୍ଷ; ମଙ୍ଗଳ, ଭଦ୍ର ।

ମଦ୍ରକ, ବଂ. (ମଦ୍ର-କ) ମଦ୍ରଦେଶୋତ୍ପନ୍ନ ।

ମଦ୍ରସୁତା, ବ. ସ୍ତ୍ରୀ. (ମଦ୍ର-ସୁତା) ମାଦ୍ରୀ, ପାଣ୍ଡୁପତ୍ନୀ ।

ମଧୁ, ବ. ପୁଂ.ନ. (ମଦ୍-ଉ) ସୁରା; ମକ୍ଷ; ପୁଷ୍ପ-ରସ; ମଧୁରରସ । ନ. ଜଳ । ପୁଂ. ଚୈତ୍ରମାସ; ବସନ୍ତକାଳ; ଦୈତ୍ୟବିଶେଷ, ବିଷ୍ଣୁଙ୍କ କର୍ଣ୍ଣ-ମୂଳରୁ ଏହି ଦୈତ୍ୟର ଜନ୍ମ ଅଟେ । ବଂ. ସ୍ୱାଦୁ, ମିଷ୍ଟ ।

ମଧୁକଣ୍ଠ, ବ. ପୁଂ. (ମଧୁ-କଣ୍ଠ) କୋକିଳ ।

ମଧୁକର, ବ. ପୁଂ. (ମଧୁ-କର) ଭ୍ରମର; ଶୁଣ୍ଡି; ପ୍ରଣୟୀ, ବଲ୍ଲଭ । ସ୍ତ୍ରୀ. ଭ୍ରମରୀ ।

ମଧୁକୃତ୍, ବ. ପୁଂ. (ମଧୁ-କୃତ୍) ଭ୍ରମର; ଶୁଣ୍ଡି ।

ମଧୁକୋଷ, ବ. ପୁଂ. (ମଧୁ-କୋଷ) ମଧୁଚକ୍ର ।

ମଧୁକ୍ରମ, ବ. ପୁଂ. (ମଧୁ-କ୍ରମ) ମହୁଚକ, ମହୁ-ଭଣ୍ଡାର ।

ମଧୁଗାୟନ, ମଧୁଘୋଷ, ବ. ପୁଂ. (ମଧୁ-ଗାୟନ, ଘୋଷ) କୋକିଳ ।

ମଧୁଜା, ବ. ସ୍ତ୍ରୀ. (ମଧୁ-ଜା) ପୃଥିବୀ ।

ମଧୁଜିତ୍, ମଧୁଭିଦ୍, ମଧୁଦ୍ୱିଷ, ମଧୁମଥନ, ବ. ପୁଂ. (ମଧୁଜିତ୍, ଭିଦ୍, ଦ୍ୱିଷ୍, ମଥନ) ବିଷ୍ଣୁ, ନାରାୟଣ ।

ମଧୁତୃଣ, ବ. ନ. (ମଧୁ-ତୃଣ) ଇକ୍ଷୁ, ଆଖୁ ।

ମଧୁତ୍ରୟ, ବ. ନ. (ମଧୁ-ତ୍ରୟ) ଘୃତ ମଧୁ ଶର୍କରା ।

ମଧୁଦୀପ, ବ. ପୁଂ. (ମଧୁ-ଦୀପ) ମଦନ, କାମଦେବ ।

ମଧୁଦୂତ, ବ. ପୁଂ. (ମଧୁ-ଦୂତ) ଆମ୍ରବୃକ୍ଷ ।

ମଧୁଦ୍ର, ବ. ପୁଂ. (ମଧୁ-ଧ୍ରୁ-ଅ) ମଧୁକର, ଭ୍ରମର ।

ମଧୁଦ୍ରୁମ, ବ. ପୁଂ. (ମଧୁ-ଦ୍ରୁମ) ମହୁଲଗଛ ।

ମଧୁପ, ବ. ପୁଂ. (ମଧୁ-ପ) ଭ୍ରମର, ମଧୁକର । ଯଥା—

ବଣ୍ଡେ ବଣ୍ଡେ ରବ ଉଠୁ ସ୍ୱମଣ୍ଡଳ,

ମଧୁପ ଗୁଞ୍ଜିଲେ ହେଲେ ସେ ପୃଥୁଳ । ବ. ବ.

ବଂ. ମଧୁପାୟୀ ।

ମଧୁପର୍କ, ବ. ପୁଂ. ନ. (ମଧୁ-ପୃଚ୍-ଅ) ଘୃତ ଶର୍କରା ଜଳ ଦଧି ମଧୁଯୁକ୍ତ ଭକ୍ଷ୍ୟବିଶେଷ ।

ମଧୁପର୍ଣ୍ଣୀ, ବ. ସ୍ତ୍ରୀ. ଗୁଳୁଚୀ, ଗମ୍ଭାରୀ, ନୀଳୀବୃକ୍ଷ ।
ମଧୁପାୟୀ, ବିଂ. (ମଧୁ-ପା-ଇନ୍) ମଧୁପାନକାରୀ । ବ. ପୁଂ. ଭ୍ରମର ।
ମଧୁପୁରୀ, ବ. ସ୍ତ୍ରୀ. (ମଧୁ-ପୁରୀ) ମଥୁରାନଗରୀ ।
ମଧୁପୁଷ୍ପ, ବ. ପୁଂ. ମହୁଲବୃକ୍ଷ, ଶିରୀଷବୃକ୍ଷ, ଅଶୋକବୃକ୍ଷ, ବକୁଳବୃକ୍ଷ, ଦନ୍ତୀବୃକ୍ଷ ।
ମଧୁପ୍ରିୟ, ବ. ପୁଂ. (ମଧୁ-ପ୍ରିୟ) ବଳରାମ ।
ମଧୁଭୁଜ୍, ବ. ପୁଂ. (ମଧୁ-ଭୁଜ୍) ଭ୍ରମର ।
ମଧୁମକ୍ଷିକା, ବ. ସ୍ତ୍ରୀ. (ମଧୁ-ମକ୍ଷିକା) ମହୁମାଛି ।
ମଧୁମାନ୍, ବିଂ. (ମଧୁ-ମତ) ମାଧୁର୍ଯ୍ୟଯୁକ୍ତ ।
ମଧୁଯଷ୍ଟି, ବ. ସ୍ତ୍ରୀ. (ମଧୁ-ଯଷ୍ଟି) ଇକ୍ଷୁ, ଆଖୁ ।
ମଧୁଯଷ୍ଟିକ, ବ. ସ୍ତ୍ରୀ. (ମଧୁଯଷ୍ଟି-କ) ଯଷ୍ଟିମଧୁ ।
ମଧୁର, ବ. ପୁଂ. (ମଧୁ-ରା-ଅ) ମିଷ୍ଟରସ । ବିଂ. ମିଷ୍ଟରସଯୁକ୍ତ; ସୌମ୍ୟ, ଶାନ୍ତ; ପ୍ରୀତିଜନକ; ମନୋହର । ଯଥା—

ମଧୁର ବଚନ କହନ୍ତି ମୋହନ ତହିଁ କଲବାକୁ ବୋଧ ।

ମଧୁରିପୁ, ବ. ପୁଂ. (ମଧୁ-ରିପୁ) ବିଷ୍ଣୁ ।
ମଧୁଲିଟ୍, ମଧୁଲେହୀ, ବ. ପୁଂ. (ମଧୁ-ଲିଟ୍, ଲେହୀ) ମଧୁକର, ଭ୍ରମର ।
ମଧୁବନ, ବ. ପୁଂ. (ମଧୁ-ବନ) କୋକିଳ । ନ. ବୃନ୍ଦାବନସ୍ଥ ବନବିଶେଷ; ଲଙ୍କାସ୍ଥ ବନବିଶେଷ; କିଷ୍କିନ୍ଧ୍ୟାସ୍ଥ ବନବିଶେଷ; ମଥୁରା ଅନ୍ତର୍ଗତ ବନବିଶେଷ ।
ମଧୁବୀଜ, ବ. ପୁ. (ମଧୁ-ବୀଜ) ଦାଡ଼ିମ୍ବବୃକ୍ଷ ।
ମଧୁବ୍ରତ, ବ. ପୁଂ. (ମଧୁ-ବ୍ରତ) ଭ୍ରମର । ଯଥା—

ଦର୍ଶେ [illegible] ଇମୁ ଗୁଞ୍ଜରେ,
ଜାତି ଫୁଲେ ଜଡ଼ ମଧୁ[illegible]ରେ ।

ମଧୁସଖ, ମଧୁସହାୟ, ମଧୁସାରଥି, ମଧୁସୁହୃଦ୍, ବ. ପୁଂ. (ମଧୁ-ସଖା, ସହାୟ, ସାରଥି, ସୁହୃଦ) କାମଦେବ, ମଦନ; କୋକିଳ ।
ମଧୁସୂଦନ, ମଧୁହା, ବ. ପୁଂ. (ମଧୁ-ସୂଦନ, ହନ୍) ବିଷ୍ଣୁ ।
ମଧୂଚ୍ଛିବର୍ତ୍ତିକା, ବ. ସ୍ତ୍ରୀ. (ମଧୂଚ୍ଛି-ବର୍ତ୍ତିକା) ମହମବତୀ ।

ମଧ୍ୟ, ବିଂ. (ମ-ଧା-ଅ) ମଧ୍ୟବର୍ତ୍ତୀ; ମଧ୍ୟମ; ଉପଯୁକ୍ତ । ବ. ପୁଂ. ନ. ପଶ୍ଚିମଦିଗ୍; ମଧ୍ୟସ୍ଥାନ; କଟିଦେଶ; ଅଭ୍ୟନ୍ତର । ନ. ସଂଖ୍ୟାବିଶେଷ; ନୃତ୍ୟବିଶେଷ; ଅବସାନ, ବିରାମ । ସ୍ତ୍ରୀ. କଟିଦେଶ; ନବଯୌବନା ନାୟିକାବିଶେଷ; ମଧ୍ୟବର୍ତ୍ତୀ ଅଙ୍ଗୁଳି ।
ମଧ୍ୟଦେଶ, ବ. ପୁଂ. (ମଧ୍ୟ-ଦେଶ) ଦେଶବିଶେଷ; ଏହାର ଉତ୍ତରରେ ହିମାଳୟ, ଦକ୍ଷିଣରେ ବିନ୍ଧ୍ୟ ପର୍ବତ, ପଶ୍ଚିମରେ କୁରୁକ୍ଷେତ୍ର ଏବଂ ପୂର୍ବ ଦିଗରେ ପ୍ରୟାଗ; କଟିଦେଶ ।
ମଧ୍ୟନ୍ଦିନ, ବ. ନ. (ମଧ୍ୟ-ଦିନ) ଦିନର ମଧ୍ୟଭାଗ, ମଧ୍ୟାହ୍ନ, ଦୁଇପ୍ରହର ବେଳା ।
ମଧ୍ୟମ, ବ. ପୁଂ. ନ. (ମଧ୍ୟ-ମ) ଶରୀରର ମଧ୍ୟଭାଗ, କଟିଦେଶ; ଷଡ୍‌ଜ ଋଷଭ ପ୍ରଭୃତି ସପ୍ତସ୍ୱରର ଅନ୍ତର୍ଗତ ସ୍ୱରବିଶେଷ; ରାଗବିଶେଷ; ମୃଗବିଶେଷ ।
ମଧ୍ୟମପାଣ୍ଡବ, ବ.ପୁଂ. (ମଧ୍ୟମ-ପାଣ୍ଡବ) ଅର୍ଜ୍ଜୁନ ।
ମଧ୍ୟମଲୋକ, ମଧ୍ୟଲୋକ, ବ. ପୁଂ. (ମଧ୍ୟମ, ମଧ୍ୟ-ଲୋକ) ପୃଥିବୀ, ମର୍ତ୍ତ୍ୟଲୋକ ।
ମଧ୍ୟମସଂଗ୍ରହ, ବ. ପୁଂ. (ମଧ୍ୟମ-ସଂଗ୍ରହ) ଅନ୍ୟ ସ୍ତ୍ରୀ ସହିତରେ ଗୋପନରେ ପ୍ରଣୟ କରିବା, ଏବଂ ଗନ୍ଧମାଲ୍ୟ ଅଳଙ୍କାର ପ୍ରଭୃତିଦ୍ୱାରା ତାହାକୁ ପ୍ରଲୋଭିତ କରିବା ।
ମଧ୍ୟମା, ବ. ସ୍ତ୍ରୀ. (ମଧ୍ୟ-ମା) ନବଯୁବତୀ; ମଧ୍ୟବର୍ତ୍ତୀ ଅଙ୍ଗୁଳି; ଛନ୍ଦୋବିଶେଷ । ବିଂ. ମଧ୍ୟସ୍ଥିତ ।
ମଧ୍ୟମିକା, ବ.ସ୍ତ୍ରୀ.(ମଧ୍ୟମା-କ) ନବଯୌବନା ସ୍ତ୍ରୀ ।
ମଧ୍ୟମେଶ୍ୱର, ବ. ପୁଂ. (ମଧ୍ୟମ-ଈଶ୍ୱର) କାଶୀସ୍ଥ ଶିବଲିଙ୍ଗବିଶେଷ ।
ମଧ୍ୟରାତ୍ର, ବ. ପୁଂ. (ମଧ୍ୟ-ରାତ୍ରି-ଅ) ଅର୍ଦ୍ଧରାତ୍ର; ନିଶୀଥ ।
ମଧ୍ୟଲୋକେଶ, ବ. ପୁଂ. (ମଧ୍ୟଲୋକ-ଈଶ) ରାଜା, ଭୂପତି ।
ମଧ୍ୟବର୍ତ୍ତୀ, ବିଂ. (ମଧ୍ୟ-ବର୍ତ୍ତିନ୍) ମଧ୍ୟରେ ସ୍ଥିତ ।

ମଧ୍ୟସ୍ଥ, ବିଂ. (ମଧ୍ୟ-ସ୍ଥା-ଅ) ମଧ୍ୟବର୍ତ୍ତୀ । ଯଥା —

ମଧ୍ୟସ୍ଥ ଭୂପାଳଠାରେ ପଶର ଶରଣ ।

ମଧ୍ୟରେ ସ୍ଥିତ; ଉଦାସୀନ, ଯେ କୌଣସି ପକ୍ଷରେ ଲିପ୍ତ ନୁହେ ।

ମଧ୍ୟାହ୍ନ, ବି. ପୁଂ. (ମଧ୍ୟ-ଅହ୍ନ) ଦିନର ମଧ୍ୟଭାଗ ।

ମଧ୍ୱାସବ, ବି. ପୁଂ. ( ମଧୁ-ଆସବ ) ମଧୁଜନିତ ମଦ୍ୟ ।

ମନଃ, ବି. ନ. (ମନ୍-ଅସ୍) ଚିତ୍ତ, ଅନ୍ତଃକରଣ ।

ମନଃଶିଳା, ମନଃସିଳା, ବି. ସ୍ତ୍ରୀ. ( ମନଃ-ଶିଳ, ସିଳ-ଆ) ରକ୍ତବର୍ଣ୍ଣ ପାଷାଣସ୍ଥ ଧାତୁବିଶେଷ ।

ମନନ, ବି. ନ. (ମନ୍-ଅନ) ଚିନ୍ତା; ଅନୁମାନ । ।

ମନସା, ବି. ସ୍ତ୍ରୀ. (ମନସ୍-ଆ) ସର୍ପବଂଶୀୟ ଦେବୀ-ବିଶେଷ, ଜରତ୍କାରୁ ମୁନିଙ୍କ ପତ୍ନୀ ।

ମନସିଜ, ବି. ପୁଂ. ( ମନସି-ଜ ) କାମଦେବ ।

ମନସିଶୟ୍ନ, ବି. ପୁଂ. (ମନସି-ଶୟ୍ନ) ମନୋଭବ, କନ୍ଦର୍ପ ।

ମନସ୍କାମ, ବି.ପୁଂ. (ମନସ୍-କାମ) ମନର ଅଭିଳାଷ ।

ମନସ୍ତାପ, ବି. ପୁଂ. (ମନସ୍-ତାପ) ମନଃପୀଡ଼ା; ଅନୁତାପ । ଯଥା—

ଶୀକରଶୀତଳବାୟୁ ମନସ୍ତାପ ହରେ ।

ମନସ୍ଥ, ବିଂ. (ମନସ୍-ସ୍ଥା) ମନଃସ୍ଥିତ, ଅନ୍ତଃକରଣସ୍ଥ ।

ମନସ୍ୱିତା, ବି. ସ୍ତ୍ରୀ. (ମନସ୍ୱିନ୍-ତା) ଆଶା, ଭରସା; ଅଧୀନତା; ସମ୍ପଦ; ସମ୍ମାନ; ପ୍ରଶସ୍ତ ମନ ।

ମନସ୍ୱୀ, ବିଂ. (ମନସ୍-ବିନ୍) ପ୍ରଶସ୍ତ ଅନ୍ତଃକରଣ-ବିଶିଷ୍ଟ, ମହାମନା, ଉଦାରଚରିତ; ମାନୀ; ବୀର; ଧୀର, ସ୍ଥିରଚିତ୍ତ ।

ମନାଇବା, କ୍ରି. (ଦେଶଜ) ସେନାଇବା । ଯଥା—

ସେହୁ ସମୟେ ସାବଧାନ କସର କବଚ ମନ ମନାଇସ ।

ମନାସ, ବି. (ମାନସ ଶବ୍ଦଜ) ବାଞ୍ଛା, ଇଚ୍ଛା, ମନୋରଥ । ଯଥା—

ମନାସନ୍ତ ମହାରୁଦ୍ର ଯାହା ମନେ ।

ମନୀଷା, ବି. ସ୍ତ୍ରୀ. (ମନସ୍-ଈଷା) ବୁଦ୍ଧି, ପ୍ରଜ୍ଞା ।

ମନୀଷିତ, ବିଂ. (ମନୀଷା-ଇତ) ମନୋଭିଳଷିତ, ବାଞ୍ଛିତ ।

ମନୀଷୀ, ବିଂ. (ମନୀଷା-ଇନ୍) ଧୀର, ବୁଦ୍ଧିମାନ୍ । ପୁଂ. ପଣ୍ଡିତ, ବିଦ୍ୱାନ୍ ।

ମନୁ, ବି. ପୁଂ. (ମନ୍-ଉ) ବ୍ରହ୍ମାଙ୍କ ପୁତ୍ର, ମନୁଷ୍ୟ-ଜାତିର ଆଦିପୁରୁଷ, ଧର୍ମଶାସ୍ତ୍ରପ୍ରଣେତା ମୁନି-ବିଶେଷ; ପ୍ରତିକଳ୍ପରେ ସ୍ୱାୟମ୍ଭୁବ, ସ୍ୱାରୋଚିଷ, ଉତ୍ତମ, ତାମସ, ରୈବତ, ଚାକ୍ଷୁଷ, ବୈବସ୍ୱତ, ସାବର୍ଣ୍ଣି, ଦକ୍ଷସାବର୍ଣ୍ଣି, ବ୍ରହ୍ମସାବର୍ଣ୍ଣି, ଧର୍ମ-ସାବର୍ଣ୍ଣି, ରୁଦ୍ରସାବର୍ଣ୍ଣି, ଦେବସାବର୍ଣ୍ଣି ଓ ଇନ୍ଦ୍ର-ସାବର୍ଣ୍ଣି ଏହି ଚତୁର୍ଦ୍ଦଶ ମନୁ ହୁଅନ୍ତି, ବର୍ତ୍ତମାନ ବୈବସ୍ୱତମନୁଙ୍କ ସମୟ; ମନ୍ତ୍ର; ସୂର୍ଯ୍ୟପୁତ୍ର, ପୃଥିବୀର ପ୍ରଥମରାଜା ।

ମନୁଜ, ମନୁଷ୍ୟ, ବି. ପୁଂ. (ମନୁ-ଜ,ଷ୍ୟ) ମନୁଙ୍କ ଅପତ୍ୟ, ମନୁଷ୍ୟ, ମାନବ ।

ମନୁଷ୍ୟତ୍ୱ, ନ. } ବି. (ମନୁଷ୍ୟ-ତ୍ୱ, ତା) ମନୁ-
ମନୁଷ୍ୟତା, ସ୍ତ୍ରୀ. } ଷ୍ୟର ଭାବ ବା ଅବସ୍ଥା; ଦୟା, ବଦାନ୍ୟତା ।

ମନୁଜେନ୍ଦ୍ର, ବି. ପୁଂ. (ମନୁଜ-ଇନ୍ଦ୍ର) ନରପତି, ରାଜା ।

ମନୁଭୂ, ବି. ପୁଂ. (ମନୁ-ଭୂ ) ମନୁଷ୍ୟ, ମାନବ ।

ମନୁଷୀ, ବି. ସ୍ତ୍ରୀ. (ମନୁଷ-ଈ) ନାରୀ; ମାନୁଷୀ ।

ମନୁଷ୍ୟଯଜ୍ଞ, ବି. ପୁଂ. (ମନୁଷ୍ୟ-ଯଜ୍ଞ) ନୃଯଜ୍ଞ, ଅତିଥିପୂଜନ ।

ମନୋଗତ, ବିଂ. (ମନସ୍-ଗତ) ମନସ୍ଥ, ଯାହା ମନରେ ରହିଥାଏ । [illegible] ନ. ଚିନ୍ତା, ଅନୁଭବ ।

ମନୋଗବୀ, ବି. ସ୍ତ୍ରୀ. ( ମନସ୍-ଗବୀ ) ଇଚ୍ଛା, ଅଭିଳାଷ ।

ମନୋଗୁପ୍ତା, ବି. ସ୍ତ୍ରୀ. (ମନସ୍-ଗୁପ୍ତ) ମନଃଶିଳା ।

ମନୋଜ, ବି. ପୁଂ. (ମନସ୍-ଜ) କନ୍ଦର୍ପ, ମଦନ ଯଥା—

ଶ୍ୱେତ ପାଶେ ଥିଲି କନକଗୋଷକ,
ସ୍ୱକାର୍ଯ୍ୟେ ମନୋଜ ଗଲ ପାଶୋର କି । ନ. ଚେ.

ବିଂ. ମନୋଜାତ ।

**ମନୋଜନ୍ମା, ମନୋଭବ, ମନୋଭୂ, ମନୋଯୋନି** ବି. ପୁଂ. (ମନସ୍-ଜନ୍ମନ୍, ଭବ, ଭୂ, ଯୋନି) କାମଦେବ ।

**ମନୋଜ୍ଞ, ମନୋରମ, ମନୋହର, ମନୋହାରୀ,** ବିଂ. (ମନସ୍-ଜ୍ଞ, ରମ, ହର, ହାରିନ୍) ସୁନ୍ଦର, ରମଣୀୟ ।

**ମନୋନୀତ,** ବିଂ. (ମନସ୍-ନୀତ) ମନୋମତ, ମନର ଅଭିଳଷିତ, ପସନ୍ଦ ।

**ମନୋବୃତ୍ତି,** ବି. ସ୍ତ୍ରୀ. (ମନସ୍-ବୃତ୍ତି) ଚିତ୍ତବୃତ୍ତି, ଇଚ୍ଛା ।

**ମନୋରଞ୍ଜନ,** ବି. ନ. (ମନସ୍-ରଞ୍ଜନ) ମନର ପ୍ରଫୁଲ୍ଲତାକରଣ, ମନସ୍ତୁଷ୍ଟି ।

**ମନୋରଥ,** ବି. ପୁଂ. (ମନସ୍-ରଥ) ଇଚ୍ଛା, ମନର ବାସନା । ଯଥା—

ବୋଲେ ଦଶରଥ ମୋର ମନୋରଥ ମଣ୍ଡାଇବ ରଘୁଧାମ ।

**ମନୋରମ,** ବିଂ. (ମନସ୍-ରମ) ସୁନ୍ଦର, ସନ୍ତୋଷଦାୟକ । ଯଥା—

ଦେଖ ଦେଖ ରୂପବତି ! ଦିଶେ ମନୋରମ
ସମସ୍ତଲୋକପାବନ ଅଗସ୍ତ୍ୟ ଆଶ୍ରମ । ଭ. ବ.

**ମନୋରମା,** ବି. ସ୍ତ୍ରୀ. ବୌଦ୍ଧମାନଙ୍କର ଉପାସ୍ୟ ଦେବତାବିଶେଷ; ପଂକ୍ତି ଛନ୍ଦୋ ବିଶେଷ; ଗୋରଚନା ।

**ମନୋହତ,** ବିଂ (ମନସ୍-ହତ) ପ୍ରତିହତ, ଭଗ୍ନମନା ।

**ମନୋହର, ମନୋହାରୀ,** ବିଂ. (ମନସ୍-ହୃ-ଅ, ଇନ୍) ସୁନ୍ଦର, ରମଣୀୟ ।

**ମନ୍ତବ୍ୟ,** ବିଂ. (ମନ୍-ତବ୍ୟ) ଚିନ୍ତନୀୟ, ମନନୀୟ, ବିଚାର୍ଯ୍ୟ, ବିବେଚନୀୟ ।

**ମନ୍ତା,** ବି. ପୁଂ. (ମନ୍-ତୃ) ପରାମର୍ଶଦାତା, ମନ୍ତ୍ରୀ, ମନନକର୍ତ୍ତା ।

**ମନ୍ତ୍ର,** ବି. ପୁଂ. (ମନ୍ତ୍ର-ଅ) ବେଦର ଅଂଶବିଶେଷ, ଋକ୍ ଅଥର୍ବାଦି; ଦେବତାବିଶେଷର ଉପାସନାର ଉପଯୋଗୀ ବାକ୍ୟ ବା ଶ୍ଳୋକ ବା ପଦ; ଯେ କୌଣସି ଜୀବର ବଶୀକରଣସାଧନ ବାକ୍ୟ, କୁହୁକ । ଯଥା—

କହ ଦୂ କି ମନ୍ତ୍ର କଲୁ, ମୋହନକୁ ମୋହି ନେଲୁ ।

ମନ୍ତ୍ରଣା, ପରାମର୍ଶ; ବିଚାର; ସନ୍ଧି ବିଗ୍ରହାଦି ଷଡ଼୍‌ଗୁଣ୍ୟ ଚିନ୍ତା ।

**ମନ୍ତ୍ରଗୂଢ଼,** ବି. ପୁଂ. (ମନ୍ତ୍ର-ଗୂଢ଼) ଚର, ଗୁପ୍ତ ଦୂତ ।

**ମନ୍ତ୍ରଗୃହ, ମନ୍ତ୍ରଭବନ,** ବି. ନ. (ମନ୍ତ୍ର-ଗୃହ, ଭବନ) ପରାମର୍ଶ କରିବାର ଗୃହ ।

**ମନ୍ତ୍ରଜିହ୍ୱ,** ବି. ପୁଂ. (ମନ୍ତ୍ର-ଜିହ୍ୱା) ଅଗ୍ନି ।

**ମନ୍ତ୍ରଜ୍ଞ,** ବି. ପୁଂ. (ମନ୍ତ୍ର-ଜ୍ଞ) ଚର, ଗୁପ୍ତଦୂତ; ମନ୍ତ୍ରୀ; ମନ୍ତ୍ରଜ୍ଞାତା ।

**ମନ୍ତ୍ରଣା,** ବି. ସ୍ତ୍ରୀ. (ମନ୍ତ୍ର-ଅନ୍-ଆ) ଗୋପନରେ ପରାମର୍ଶ; ମନ୍ତ୍ର; ବିଚାର; ଯୁକ୍ତି ।

**ମନ୍ତ୍ରଦାତା,** ବିଂ. (ମନ୍ତ୍ର-ଦାତୃ) ମନ୍ତ୍ରଦାନକର୍ତ୍ତା, ଗୁରୁ; ପରାମର୍ଶଦାୟକ ।

**ମନ୍ତ୍ରପୂତାତ୍ମା,** ବି. ପୁଂ. (ମନ୍ତ୍ର-ପୂତାତ୍ମନ୍) ଗରୁଡ଼ ।

**ମନ୍ତ୍ରବିତ୍,** ବି. ପୁଂ. (ମନ୍ତ୍ର-ବିଦ୍) ଚର; ମନ୍ତ୍ରୀ । ବିଂ. ମନ୍ତ୍ରଜ୍ଞ ।

**ମନ୍ତ୍ରିତ,** ବିଂ. (ମନ୍ତ୍ର୍-ତ) ଯାହା ମନ୍ତ୍ରଣା କରି ହୋଇଅଛି, ପରାମୃଷ୍ଟ; ମନ୍ତ୍ରଦ୍ୱାରା ସଂସ୍କୃତ ।

**ମନ୍ତ୍ରୀ,** ବି. ପୁଂ. (ମନ୍ତ୍ର-ଇନ୍) ଅମାତ୍ୟ, ସଚିବ । ବିଂ. ପରାମର୍ଶଦାତା ।

**ମନ୍ଥ,** ବି. ପୁଂ. (ମନ୍ଥ୍-ଅ) ମନ୍ଥନଦଣ୍ଡ; ବିନାଶ; ମନ୍ଥନ, ବିଲୋଡ଼ନ; ସୂର୍ଯ୍ୟ; ନେତ୍ରମଳ; ନେତ୍ରରୋଗ ।

**ମନ୍ଥଜ,** ବି. ନ. (ମନ୍ଥ-ଜ) ନବନୀତ, ଲହୁଣୀ ।

**ମନ୍ଥନ,** ବି. ନ. (ମନ୍ଥ୍-ଅନ) ବିଲୋଡ଼ନ, ମୋହିବା । ବିନାଶ । ପୁଂ. ମନ୍ଥନଦଣ୍ଡ ।

**ମନ୍ଥର,** ବିଂ. (ମନ୍ଥ୍-ଅର) ମନ୍ଦଗାମୀ; ଅଳସ, ଜଡ଼; ଅଶୀଘ୍ର; ପ୍ରକାଣ୍ଡ, ବୃହତ୍; ଭାରି; ନତ; ବକ୍ର; ନୀଚ, ନମ୍ର । ବି. ପୁଂ. ମନ୍ଦଗାମୀ ଘୋଡ଼ା ।

**ମନ୍ଥରା,** ବି. ସ୍ତ୍ରୀ. କୈକେୟୀର ଦାସୀ ।

**ମନ୍ଥରୁ,** ବି. ପୁଂ. (ମନ୍ଥ-ଅରୁ) ଚାମରର ପବନ ।

**ମନ୍ଥଶୈଳ,** ବି. ପୁଂ. (ମନ୍ଥ-ଶୈଳ) ମନ୍ଦରପର୍ବତ ।

ମନ୍ଥନୀ, ବ. ସ୍ତ୍ରୀ. ଦଧିମନ୍ଥନ ପାତ୍ର ।

ମନ୍ଦ, ବିଂ. (ମନ୍ଦ୍-ଅ) ଜଡ଼, ଅଳସ, ମୃଦୁ । ଯଥା—

ମନ୍ଦ ମନ୍ଦ ବହେ ଗନ୍ଧବହ ସମୀରଣ ।

ମୂର୍ଖ; ଅସ୍ପଷ୍ଟ; ଅଳ୍ପ; ମତ୍ତ; ଉନ୍ମତ୍ତ; ଆସନ୍ନମୃତ୍ୟୁ; ନୀଚ; ହତଭାଗ୍ୟ, ଅଭାଗ୍ୟ । ଯଥା—

ଜାଣିଲି କପାଳ ମନ୍ଦ ଯାହାର ହୁଅଇ,
ଗୃହେ ଧନ ଥିଲେ ସୁଖ ଅଳ୍ପ ନ ମିଳଇ ।

ଅଶାନ୍ତ; ଖଳ; ଅପଟୁ; କ୍ଷୀଣ; ଅପକୃଷ୍ଟ; ସ୍ୱାଧୀନ । ବ. ପୁଂ. ଶନିଗ୍ରହ; ଯମ; ପ୍ରଳୟ; କାକ; ଗଜବିଶେଷ ।

ମନ୍ଦଗ, ମନ୍ଦଗାମୀ, (ମନ୍ଦ-ଗ, ଗାମୀ) ମୃଦୁଗାମୀ, ମୃଦୁଗମନଶୀଳ ।

ମନ୍ଦଜନନୀ, ବ. ସ୍ତ୍ରୀ. (ମନ୍ଦ-ଜନନୀ) ସୂର୍ଯ୍ୟପତ୍ନୀ ।

ମନ୍ଦନ, ବ. ନ. (ମନ୍ଦ-ଅନ) ସ୍ତୋତ୍ର, ସ୍ତବ ।

ମନ୍ଦତା, ସ୍ତ୍ରୀ. } ବ. (ମନ୍ଦ-ତା, ତ୍ୱ) ମାନ୍ଦ୍ୟ;
ମନ୍ଦତ୍ୱ, ନ. } ମୂର୍ଖତା ।

ମନ୍ଦର, ବ. ପୁଂ. ( ମନ୍ଦ୍-ଅର ) ପର୍ବତବିଶେଷ, ଏହି ପର୍ବତକୁ ମନ୍ଥନଦଣ୍ଡ କରି ଦେବାସୁରମାନେ ସମୁଦ୍ର ମନ୍ଥନ କରିଥିଲେ । ଯଥା—

ଏ ଛବି ଦେଖି ମନକୁ ଏମନ୍ତ ଅସୂତ,
ସିନ୍ଧୁକୁ ମନ୍ଦର ଗିରି ଅଥବା ମନ୍ଥନ୍ତି । କ. ବ.

ମନ୍ଦାରବୃକ୍ଷ; ମୁକୁର, ଅର୍ଶି । ବିଂ. ବହୁଳ; ମନ୍ଦ, ଅଳସ

ମନ୍ଦା, ବ. ସ୍ତ୍ରୀ. ସଂକ୍ରାନ୍ତିବିଶେଷ; ଗ୍ରହ ଗତିବିଶେଷ; (ଦେଶଜ) ମଳା । ଯଥା—

ଘଷିତ୍ରକ, ବେଢ଼ି ଶାଣନ୍ତ ମନକୁ ଦଣାପୁଞ୍ଜ,
କନ୍ଦାମନ୍ଦା ପାଠକ ହିବାର ହେଜ ଗୋ । ବ. ଚ.

ମନ୍ଦାକିନୀ, ବ. ସ୍ତ୍ରୀ. ( ମନ୍ଦ-ଅକ୍-ଇନ୍ ଈ ) ସ୍ୱର୍ଗଗଙ୍ଗା । ସଂକ୍ରାନ୍ତିବିଶେଷ ।

ମନ୍ଦାକ୍ଷ, ବ. ନ. (ମନ୍ଦ-ଅକ୍ଷ) ଲଜ୍ଜା, ତ୍ରପା । ବିଂ. ସଙ୍କୁଚିତନେତ୍ର ।

ମନ୍ଦାଗ୍ନି, ବ. ପୁଂ. (ମନ୍ଦ-ଅଗ୍ନି) ଜଠରାଗ୍ନି ମାନ୍ଦ୍ୟ, କ୍ଷୁଧା ଦୁର୍ବଳତାର ଅଳ୍ପତା ।

ମନ୍ଦାର, ବ. ପୁଂ. (ମନ୍ଦ-ଆର) ସ୍ୱର୍ଗୀୟ ଦେବତରୁବିଶେଷ; ଅର୍କବୃକ୍ଷ; ଜବାବୃକ୍ଷ ।

ମନ୍ଦାସ୍ୟ, ବ. ନ. (ମନ୍ଦ-ଆସ୍ୟ=ମୁଖ) ଲଜ୍ଜା, ତ୍ରପା । ବ. ସଙ୍କୁଚିତ ମୁଖ ।

ମନ୍ଦିର, ବ. ନ. ( ମନ୍ଦ୍-ଇର ) ଗୃହ, ଭବନ; ଦେବଗୃହ; ନଗର; ପୁର । ପୁଂ. ସମୁଦ୍ର; ଜାନୁର ପଶ୍ଚାଦ୍ଭାଗ ।

ମନ୍ଦିରା, ବ. କାଂସ୍ୟନିର୍ମିତ ବାଦ୍ୟଯନ୍ତ୍ରବିଶେଷ ।

ମନ୍ଦୀଭୂତ, ବିଂ. (ମନ୍ଦ-ଭୂ-ତ) ଅଳ୍ପୀଭୂତ, କମ ହୋଇଯିବା; ଜଡୀଭୂତ ।

ମନ୍ଦୁରା, ବ. ସ୍ତ୍ରୀ. ( ମନ୍ଦ-ଉର-ଆ ) ଅଶ୍ୱଶାଳା; (ଦେଶଜରେ) ବୈଦ୍ୟ ।

ମନ୍ଦୋଦରୀ, ବ. ସ୍ତ୍ରୀ. (ମନ୍ଦ-ଉଦର-ଈ) ରାବଣର ସ୍ତ୍ରୀ, ମୟଦାନବର କନ୍ୟା; କ୍ଷୀଣୋଦରୀ ସ୍ତ୍ରୀ ।

ମନ୍ଦ୍ର, ବିଂ. (ମନ୍ଦ୍-ର) ଗମ୍ଭୀର । ଯଥା—

ଜଳଦର ଝଙ୍କାର ମନ୍ଦ୍ର, ଘନ ଗର୍ଜନ । କ. ବ.

ବ. ବାଦ୍ୟଯନ୍ତ୍ରବିଶେଷ; ଗମ୍ଭୀର ଧ୍ୱନି ।

ମନ୍ମଥ, ବ. ପୁଂ. ( ମନସ୍-ମଥ୍-ଅ ) କାମଦେବ, କନ୍ଦର୍ପ, ମଦନ ।

ମନ୍ମଥାଳୟ, ବ. ପୁଂ. (ମନ୍ମଥ-ଆଳୟ) ଆମ୍ରବୃକ୍ଷ; ସ୍ତ୍ରୀଚିହ୍ନବିଶେଷ ।

ମନ୍ମନ, ବ. ପୁଂ. (ମନସ୍-ମନ୍-ଅ) ଗଦ୍ଗଦ ଧ୍ୱନି, ଅସ୍ପଷ୍ଟ ଶବ୍ଦ ।

ମନା, ବ. (ଦେଶଜ) ନିଷେଧ । ଯଥା—

ମନା ମୁଁ କରୁଥିଲି ଏହାକୁ ଗୋ,
ଅନା ନା ବୋଲି ବନସହାକୁ ଗୋ ।

ମନ୍ୟା, ମନ୍ୟାକା, ବ. ସ୍ତ୍ରୀ. (ମନ-ଯ-ଆ) (ମନ୍ୟାକ) ସ୍ନାୟୁ; ଗ୍ରୀବାର ପଶ୍ଚାଦ୍ଭାଗସ୍ଥିତ ଶିରା; ଶରୀରର ଶିରା ।

ମନ୍ୟୁ, ବ. ପୁଂ. (ମନ-ଯୁ) ଶୋକ; କ୍ରୋଧ; ଯଜ୍ଞ; ଦୈନ୍ୟ; ଅହଂକାର ।

ମନ୍ୱନ୍ତର, ବ. ନ. (ମନୁ-ଅନ୍ତର) ମନୁଙ୍କ ରାଜ୍ୟଶାସନ କାଳ, ଦେବତାମାନଙ୍କର ୭୧ ଯୁଗ ।

ମମ, ସ. ( ଅସ୍ମଦ୍ ଶବ୍ଦଜ ) ଆମ୍ଭର, ମୋହର; ମମତା, ମାୟା ।

ମମତା, ସ୍ତ୍ରୀ. ମମତ୍ୱ, ନ. ବ. (ମମ-ତା, ତ୍ୱ) ମାୟା, ମୋହର ବୋଲି ଜ୍ଞାନ; ଅହଙ୍କାର; ସ୍ନେହ ।

**ମମତାଯୁକ୍ତ**, ବିଂ. (ମମତା-ଯୁକ୍ତ) ଆତ୍ମମୃଢ଼; ଅଭିମାନାଦିବିଶିଷ୍ଟ । ବି. ପୁଂ. କୃପଣ ।

ମୟ, ବି. ପୁଂ. (ମୟ୍-ଅ) ଦୈତ୍ୟବିଶେଷ, ଦାନବମାନଙ୍କର ଶିଳ୍ପୀ; ଉଷ୍ଟ୍ରୀ; ଅଶ୍ୱତର; ବ୍ୟାକରଣରେ ପ୍ରତ୍ୟୟବିଶେଷ ।

ମୟୂଠ, ବି. ପୁଂ. (ମୟ୍-ଅଠ) ତୃଣନିର୍ମିତ କୁଟୀର ।

ମୟଦା, ବି. (ଯାବନିକ) ଗୋଧୂମଚୂର୍ଣ୍ଣ, ଅଟା ।

ମୟଦାନ, ବି. (ଯାବନିକ) କ୍ଷେତ୍ର, ପଡ଼ିଆ ।

ମୟନା, ବି. (ଦେଶଜ) ପକ୍ଷିବିଶେଷ, ସାରି ।

ମୟଲା, ବିଂ. (ମଳ ଶବ୍ଦଜ) ଅପରିଷ୍କୃତ ।

ମୟୂରାଜ, ବି. ପୁଂ. (ମୟୁ-ରାଜ) କୁବେର, ଧନାଧିପ ।

ମୟୂଖ, ବି. ପୁଂ. (ମା-ଉଖ) କିରଣ, ଦୀପ୍ତି, ଜ୍ୟୋତିଃ; ଜ୍ୱାଳା, ଶୋଭା ।

ମୟୂର, ପୁଂ. } ବି. (ମହୀ-ରୁ, ନିପାତ) ପକ୍ଷି-
ମୟୂରୀ, ସ୍ତ୍ରୀ. } ବିଶେଷ, ଶିଖୀ ।

ମୟୂରଚଟକ, ବି. ପୁଂ. ଗୃହକୁକ୍କୁଟ ।

ମୟୂରପଦକ, ବି. ନ. (ମୟୂର-ପଦ-କ) ନଖାଘାତ ।

ମର, ବି. ପୁଂ. (ମୃ-ଅ) ମରଣ । ବିଂ. ମରଣାଧୀନ । ଯଥା—

ଧୂଳିର ଏ ମର କଳେବର । କ. ବ.

ମରକ, ବି. ପୁଂ. (ମୃ-ଅକ) ମାରି, ମଡ଼କ ।

ମରକତ, ମରକ୍ତ. ବି. ପୁଂ. (ମରକ-ତୃ-ଅ) ହରିଦ୍‌ବର୍ଣ୍ଣ ମଣିବିଶେଷ ।

ମରଜି, ବି. (ହିନ୍ଦୀ) ଇଚ୍ଛା । ଯଥା—

ବୁଝିବା ମରଜି ଯେବେ ଅଛି ... ବୁଝାଇ ନେଉଁ ।

ମରଣ, ବି. ନ. (ମୃ-ଅନ) ମୃତ୍ୟୁ, ଦେହନାଶ ।

ମରନ୍ଦ, ମରନ୍ଦକ, ବି. ପୁଂ. ମକରନ୍ଦ, ପୁଷ୍ପରସ ।

ମରା, ବିଂ. (ମରଣାର୍ଥ ମୃତ୍ୟୁ ଶବ୍ଦଜ) ମୃତ, ଗତାସୁ, ମଡ଼ା ।

ମରାମର, (ମର-ଅମର) ମନୁଷ୍ୟ ଓ ଦେବତାଦି । ଯଥା—

ଶୁଣି ମରାମର ଜୀବେ ଗଣିଲେ ପ୍ରମାଦ । କ. ବ.

ମରାଳ, ବି. ପୁଂ. (ମୃ-ଆଳ) ରକ୍ତବର୍ଣ୍ଣ ଚଞ୍ଚୁ ଚରଣବିଶିଷ୍ଟ ରାଜହଂସ; ପାତିହଂସ; ଅଶ୍ୱ; ମେଘ । ବିଂ. ମସୃଣ, ସ୍ନିଗ୍ଧ ।

ମରିଚ, ମରୀଚ, ବି. ନ. (ମୃ-ଇଚ, ଈଚ) ବର୍ତ୍ତୁଳାକାର କଟୁଦ୍ରବ୍ୟବିଶେଷ, ଗୋଲମରିଚ ।

ମରିଚ୍‌ପଡ଼ିବା, କ୍ରି. (ଦେଶଜ) ଅସ୍ତ୍ର ବା ଧାତୁନିର୍ମିତ ବାସନରେ କଳଙ୍କି ଲାଗିବା ।

ମରୀଚି, ବି. ପୁଂ. ସ୍ତ୍ରୀ. (ମୃ-ଈଚି) କିରଣ, ରଶ୍ମି । ପୁଂ. ବ୍ରହ୍ମାର ମାନସପୁତ୍ର ସୃଷ୍ଟିକର୍ତ୍ତା ମୁନିବିଶେଷ ।

ମରୀଚିକା, ବି. ସ୍ତ୍ରୀ. (ମରୀଚି-କ-ଆ) ମୃଗତୃଷ୍ଣା, ସୂର୍ଯ୍ୟ କିରଣରେ ଜଳଭ୍ରମ ।

ମରୀଚିମାଳୀ, ବି. ପୁଂ. (ମରୀଚିମାଳା-ଇନ) ସୂର୍ଯ୍ୟ । ବିଂ. କିରଣମାଳାବିଶିଷ୍ଟ ।

ମରୁ, ବି. ପୁଂ. (ମୃ-ଉ) ଜଳ ଓ ତୃଣାଦିଶୂନ୍ୟ ପ୍ରଦେଶ; ପର୍ବତ; ମାଡ଼ୁଆରି ଦେଶ ।

ମରୁଣ୍ଟା, ମରୁଣ୍ଡା, ବି. ସ୍ତ୍ରୀ. (ମୃ-ଉଣ୍ଟ-ଉଣ୍ଡ) ଉଚ୍ଚ ଲଲାଟଯୁକ୍ତା ସ୍ତ୍ରୀ, ଯେ ସ୍ତ୍ରୀର କପାଳ ଉଚ୍ଚ ।

ମରୁତ୍, ମରୁତ, ବି. ପୁଂ. (ମୃ-ଉତ୍; ମରୁତ୍-ଅ) ବାୟୁ; ଦେବତା ।

ମରୁତ୍ତ, ବି. ପୁଂ. (ମରୁତ୍-ତ) ବାୟୁ; ଚନ୍ଦ୍ରବଂଶୀୟ ନୃପବିଶେଷ ।

ମରୁତ୍‌ପଥ, ବି. ପୁଂ. (ମରୁତ୍-ପଥ) ଆକାଶ ।

ମରୁତ୍‌ପୁତ୍ର, ବି. ପୁଂ. (ମରୁତ୍-ପୁତ୍ର) ଭୀମସେନ, ପାଣ୍ଡୁରାଜାର ଦ୍ୱିତୀୟ ପୁତ୍ର; ହନୁମାନ୍ ।

ମରୁତ୍‌ପ୍ଳବ, ବି. ପୁଂ. (ମରୁତ୍-ପ୍ଳୁ-ଅ) ସିଂହ ।

ମରୁତ୍‌ଫଳ, ବି. ନ. (ମରୁତ୍-ଫଳ) କରକା, କୁଅପଥର, ଶିଳା ।

ମରୁତ୍ୱାନ୍, ବି. ପୁଂ. (ମରୁତ୍-ବତ୍) ଇନ୍ଦ୍ର; ହନୁମାନ୍; ମେଘ; ସମୁଦ୍ର ।

ମରୁତ୍‌ସଖ, ବି. ପୁଂ. (ମରୁତ୍-ସଖି) ବାୟୁସଖା, ଅଗ୍ନି; ଇନ୍ଦ୍ର ।

ମରୁଦାନ୍ଦୋଳ, ବ. ପୁଂ. (ମରୁତ୍-ଆନ୍ଦୋଳ) ତାଳବୃନ୍ତ, ପଙ୍ଖା ।

ମରୁଦ୍ରଥ, ବ. ପୁଂ. (ମରୁତ୍-ରଥ) ଅଶ୍ୱ; ଦେବରଥ, ବିମାନ ।

ମରୁଦ୍ବର୍ତ୍ମ, ବ. ପୁଂ. ( ମରୁତ୍-ବର୍ତ୍ମନ୍ ) ଆକାଶ, ଅନ୍ତରୀକ୍ଷ ।

ମରୁଦ୍ବାହ, ବ. ପୁଂ. (ମରୁତ୍-ବାହ) ଧୂମ, ଧୂଆଁ; ଅଗ୍ନି ।

ମରୁଦ୍ୱିପ, ମରୁପ୍ରିୟ, ବ. ପୁଂ. (ମରୁ-ଦ୍ୱିପ, ପ୍ରିୟ) ଉଷ୍ଟ୍ର, ଓଟ ।

ମରୁଭୂ, ମରୁଭୂମି, ବ. ସ୍ତ୍ରୀ. (ମରୁ-ଭୂ, ଭୂମି) ଜଳ ଓ ତୃଣାଦିବିହୀନ ବାଲୁକାପୂର୍ଣ୍ଣ ଭୂମି ।

ମରୂକ, ବ. ପୁଂ. ( ମୃ-ଊକ ) ମୃଗବିଶେଷ; ମୟୂର ।

ମରେଇ, ବ. (ଦେଶଜ) ଧାନ ରଖିବାର ସ୍ଥାନ ।

ମର୍କ, ବ. ପୁଂ. ( ମର୍କ୍-ଅ ) ବାନର; ଦେହ; ଶରୀରସ୍ଥ ବାୟୁ ।

ମର୍କକ, ବ. ପୁଂ. (ମର୍କ-କ) ଗଳଗଣ୍ଡ ପକ୍ଷୀ, ହାଡ଼ଗିଲା ।

ମର୍କଟ, ବ. ପୁଂ. (ମର୍କ୍-ଅଟ) ବାନର; ମାକଡ଼ସା; ହାଡ଼ଗିଲା ପକ୍ଷୀ; ବିଷବିଶେଷ ।

ମର୍କଟବାସ, ମର୍କଟବାସାଃ, ବ. ପୁଂ. (ମର୍କଟ=ମାକଡସା—ବାସ, ବାସସ୍=ବାସସ୍ଥାନ) ଲୂତାତନ୍ତୁ, ମାକଡ଼ସା ଜାଲ ।

ମର୍କଟଶୀର୍ଷ, ବ. ନ. ହିଙ୍ଗୁଳ ।

ମର୍କଟାସ୍ୟ, ବ. ନ. (ମର୍କଟ-ଆସ୍ୟ) ତାମ୍ର, ତମ୍ବା । ବିଂ. ବାନର ମୁଖ ପରି ।

ମର୍କଟୀ, ବ. ସ୍ତ୍ରୀ. ବଣି, ଗୁହାଳ; ଛିଣ୍ଡ, ପାଦ; ବନ୍ଧ୍ୟା ସ୍ତ୍ରୀ ।

ମର୍ତ୍ତ୍ୟ, ମର୍ତ୍ତ, ବ. ପୁଂ. (ମୃ-ତ, ଯ) ମନୁଷ୍ୟ; ମଧ୍ୟମଲୋକ, ପୃଥିବୀ ।

ମର୍ତ୍ତ୍ୟପୁର ବ. ପୁଂ. ( ମର୍ତ୍ତ୍ୟ-ପୁର ) ମନୁଷ୍ୟପୁର, ପୃଥିବୀ ।

ମର୍ତ୍ତ୍ୟଲୋକ, ବ. ପୁଂ. (ମର୍ତ୍ତ୍ୟ-ଲୋକ) ମନୁଷ୍ୟଲୋକ ପୃଥିବୀ ।

ମର୍ଦ୍ଦନ, ବ. ନ. (ମୃଦ୍-ଅନ) ପେଷଣ, ଦଳନ, ଚୂର୍ଣ୍ଣନ; ଅଙ୍ଗମର୍ଦ୍ଦନ, ଶରୀର ଘଷିଦେବା; ସମ୍ବାହନ ।

ମର୍ଦ୍ଦଳ, ବ.ପୁଂ. (ମର୍ଦ୍ଦ-ଲା-ଅ) ବାଦ୍ୟଯନ୍ତ୍ରବିଶେଷ, ଢୋଲ; ମାଦଳ ।

ମର୍ଦ୍ଦିତ, ବିଂ.(ମୃଦ୍-ଅ-ତ) ଦଳିତ; ଦଳିତ; ଚୂର୍ଣ୍ଣିତ ।

ମର୍ମ, ବ. ନ. ( ମୃ-ମନ୍ ) ଶରୀରର ସନ୍ଧିସ୍ଥାନ; ହୃଦୟାଦି ଜୀବସ୍ଥାନ; ସ୍ୱରୂପ, ତାତ୍ପର୍ଯ୍ୟ, ଅଭିପ୍ରାୟ; ରହସ୍ୟ; ଅନ୍ତର; ଗୂଢ଼କଥା ।

ମର୍ମଜ୍ଞ, ମର୍ମବିଦ୍, ମର୍ମବେଦୀ, ବିଂ. (ମର୍ମନ୍-ଜ୍ଞ, ବିଦ୍, ବେଦିନ୍ ) ତାତ୍ପର୍ଯ୍ୟଗ୍ରାହକ, ପଣ୍ଡିତ ।

ମର୍ମଭେଦୀ, ( ମର୍ମନ୍-ଭେଦିନ୍ ) ମର୍ମପୀଡ଼କ, ଆନ୍ତରିକ ବ୍ୟଥାଦାୟକ ।

ମର୍ମର, ବ. ପୁଂ. (ମୃ-ଅର) ଶୁଷ୍କ ପତ୍ରାଦିର ଅବ୍ୟକ୍ତ ଧ୍ୱନି, ମଡ୍‌ମଡ୍; ଶ୍ୱେତ ପ୍ରସ୍ତରବିଶେଷ । ବିଂ. ମର୍ମର ଧ୍ୱନିକାରକ । ଯଥା —

ନବୀ କଳକଳେ ପୁଣି ପର୍ଣ ମରମରେ ।

ମର୍ମସ୍ପୃକ୍, ବିଂ. ( ମର୍ମନ୍-ସ୍ପୃଶ୍-୦ ) ଆନ୍ତରିକ ବ୍ୟଥାଦାୟକ ।

ମର୍ମାନ୍ତକ, ବିଂ. ( ମର୍ମନ୍-ଅନ୍ତକ ) ମର୍ମପୀଡ଼କ; ଆନ୍ତରିକ ।

ମର୍ମାବିଧ୍, ବିଂ. (ମର୍ମନ୍-ବିଧ୍) ମର୍ମଭେଦୀ, ମର୍ମବ୍ୟଥାଦାୟକ ।

ମର୍ଯ୍ୟା, ବ. ସ୍ତ୍ରୀ. [illegible] ।

ମର୍ଯ୍ୟାଦକ, ବିଂ. (ମର୍ଯ୍ୟାଦା-କ) ମର୍ଯ୍ୟାଦାକର୍ତ୍ତା, ସମ୍ମାନକାରୀ ।

ମର୍ଯ୍ୟାଦା, ବ. ସ୍ତ୍ରୀ. (ପର୍-ଆ-ଦା-ଅ,ପ=ମ)ନ୍ୟାୟ୍ୟପଥରେ ସ୍ଥିତି; ନିୟମ; ସୀମା; କୂଳ, ତଟ; ମାନ; ସମ୍ଭ୍ରମ; ଗୌରବ, ସମ୍ମାନ ।

ମର୍ଶ, ବ. ପୁଂ. (ମୃଶ୍-ଅ) ପରାମର୍ଶ, ଶକ୍ତି, ମନ୍ତ୍ରଣା; ଉପଦେଶ ଦେବା ।

ମର୍ଷ, ବ. ପୁଂ. (ମୃଷ୍-ଅ) କ୍ଷମା, ସହନ; ନାଶନ ।

ମର୍ଷିତ, ବିଂ. ( ମୃଷ୍-ତ ) କ୍ଷାନ୍ତ ; କ୍ଷମାଶୀଳ ; ନାଶିତ । ବି. ନ. କ୍ଷମା ।

ମର୍ଷିତବାନ୍, ବିଂ. (ମର୍ଷ-ତବତ୍) ସହିଷ୍ଣୁ, ସହନଶୀଳ, ଯେ କ୍ଷମା କରିଅଛି ।

ମଳ, ବି. ପୁଂ. ନ. (ମଳ୍-ଅ) ବିଷ୍ଠା, ମୂତ୍ର, ଶ୍ଳେଷ୍ମ, ରକ୍ତ, ପୂଯ ପ୍ରଭୃତି ଶରୀରର ମଇଳା; ବାତ ପିତ୍ତ କଫ; ପାପ;କଳଙ୍କ । ବିଂ. ମଳଯୁକ୍ତ; କୃପଣ ।

ମଳଘ୍ନ, ବି. ପୁଂ. (ମଳ-ହନ୍-ଅ) ଶିମିଳୀକନ୍ଦ । ବିଂ. ମଳନାଶକ ।

ମଳା, ବି. ମନ୍ଦା ।

ମଳନ, ବି. ନ. (ମଳ୍-ଅନ) ପେଷଣ, ମର୍ଦ୍ଦନ । ପୁଂ. ପଟବାସ, ତାମ୍ବୁ ।

ମଳଭୁକ୍, ବି. ପୁଂ. (ମଳ-ଭୁକ୍) ବାୟସ, କାକ ।

ମଲମ, ବି. ( ଯାବନିକ ) ପ୍ରଲେପନୀୟ ଔଷଧବିଶେଷ ।

ମଳମାସ, ବି. ପୁଂ. (ମଳ-ମାସ) ଅଧିମାସ, ମାସବୃଦ୍ଧି, ଅମାବସ୍ୟାଦ୍ୱୟଯୁକ୍ତ ରବିସଂକ୍ରାନ୍ତିରହିତ ମାସ ।

ମଳୟ, ବି. ପୁଂ. ( ମଳ୍-ଇ-ଅ ) ପର୍ବତବିଶେଷ, ଚନ୍ଦନାଦ୍ରି, ପଶ୍ଚିମଘାଟ ପର୍ବତ; ଦେଶବିଶେଷ, ମଲବାର; ଦ୍ୱୀପବିଶେଷ; ଆରାମ, ଉପବନ; ନନ୍ଦନବନ ।

ମଳୟଜ, ବି. ପୁଂ. ନ. (ମଳୟ-ଜ) ଗନ୍ଧସାର, ଚନ୍ଦନ । ବିଂ ଉକ୍ତାର୍ଥଜାତ ।

ମଳୟାନିଳ, ବି. ପୁଂ. (ମଳୟ-ଅନିଳ) ବସନ୍ତକାଳୀନ ବାୟୁ ।

ମଳୟୋଦ୍ଭବ, ବି. ନ. (ମଳୟ-ଉଦ୍ଭବ) ଗନ୍ଧସାର, ଚନ୍ଦନ ।

ମଳାକର୍ଷୀ, ବି. ପୁଂ. (ମଳ-ଆ-କୃଷ୍-ଇନ୍) ହାଡ଼ି, ମେହେନ୍ତର ।

ମଳାକା, ବି. ସ୍ତ୍ରୀ. କାମିନୀ; ବେଶ୍ୟା; ଅଧମା ସ୍ତ୍ରୀ; ହସ୍ତିନୀ; ଦୂତୀ ।

ମଳିନ, ବିଂ. (ମଳ-ଇନ) ମଳଯୁକ୍ତ, ମଳଦୂଷିତ; କୃଷ୍ଣବର୍ଣ୍ଣ, ମଇଳା । ଯଥା—

> ମଳିନ ବସନ ଛଡ଼ା ଉଲ ପରିଧାନ,
> ସକାଳ ଉଠ ଚ କର କଦାପି ଶୟନ ।

ପାପଯୁକ୍ତ, ପାପିଷ୍ଠ ; ମ୍ଳାନ, ବିଷଣ୍ଣ ।

ମଳିନତା, ସ୍ତ୍ରୀ. } ବି. ( ମଳିନ-ତା, ତ୍ୱ )
ମଳିନତ୍ୱ, ନ. } ମାଳିନ୍ୟ ।

ମଳିନିମା, ବି. ପୁଂ. (ମଳିନ-ଇମନ୍) ମଳିନତା, ମାଳିନ୍ୟ ।

ମଳିନୀ, ମଳିଷ୍ଠା, ବି. ସ୍ତ୍ରୀ. ( ମଳ-ଇନ୍-ଈ, ଇଷ୍ଠ-ଆ ) ରଜସ୍ୱଳା ନାରୀ, ଋତୁମତୀ ସ୍ତ୍ରୀ ।

ମଳୀ, ବିଂ. (ମଳ-ଇନ୍) ମଳଯୁକ୍ତ ।

ମଳୀମସ, ବିଂ. (ମଳ-ଈମସ) ମଳିନ,ଅପରିଷ୍କାର, ମଳଦୂଷିତ । ବି. ପୁଂ. ନ. ଲୌହ, ଲୁହା । ପୁଂ. ମଳମାସ ।

ମଲ୍ଲ,ବି. ପୁଂ. (ମଲ୍ଲ-ଅ) ବାହୁଯୋଦ୍ଧା, ମାଲ; ପାତ୍ରବିଶେଷ; ମାଳା; କପୋଳ,ଗଣ୍ଡସ୍ଥଳ; ଦେଶବିଶେଷ । ବିଂ. ବଳିଷ୍ଠ, ଅତିଶୟ ବଳବାନ୍ ।

ମଲ୍ଲା, ବି. ସ୍ତ୍ରୀ. ସ୍ତ୍ରୀ, ନାରୀ; ମଲ୍ଲିକା ।

ମଲ୍ଲଜ ବି. ପୁଂ. (ମଲ୍ଲ-ଜ) ଗୋଲମରିଚ । ବିଂ. ମଲ୍ଲଦେଶଜାତ ।

ମଲ୍ଲନାଗ, ବି. ପୁଂ. (ମଲ୍ଲ-ନାଗ) ଐରାବତ ହସ୍ତୀ; ବାତ୍ସ୍ୟାୟନମୁନି; ପଣ୍ଡବାହକ ।

ମଲ୍ଲଭୂ, ମଲ୍ଲଭୂମି, ବି. ସ୍ତ୍ରୀ. ( ମଲ୍ଲ-ଭୂ-ଭୂମି ) ମଲ୍ଲମାନଙ୍କର କ୍ରୀଡ଼ାସ୍ଥାନ, କୁସ୍ତିର ଅଖଡ଼ା; ରଣସ୍ଥଳ ।

ମଲ୍ଲଯୁଦ୍ଧ, ବି. ନ. (ମଲ୍ଲ-ଯୁଦ୍ଧ) ବାହୁଯୁଦ୍ଧ, ହସ୍ତଯୁଦ୍ଧ ।

ମଲ୍ଲାର, ବି. ପୁଂ. (ମଲ୍ଲ-ଋ-ଅ) ରାଗବିଶେଷ ।

ମଲ୍ଲି, ମଲ୍ଲୀ, ବି. ସ୍ତ୍ରୀ. (ମଲ୍ଲ-ଇ) ମଲ୍ଲିକା,ମଲ୍ଲିଫୁଲ ।

ମଲ୍ଲିକ, ବି. ପୁଂ. ( ମଲ୍ଲ-ଇ-କ ) ହଂସବିଶେଷ, ଈଷତ୍ ଧୂସରବର୍ଣ୍ଣ ଏବଂ ଅଳ୍ପ ଲୋହିତ-ଚଞ୍ଚୁଚରଣବିଶିଷ୍ଟ ହଂସ; ଉପାଧିବିଶେଷ । କା-ସ୍ତ୍ରୀ. ପୁଷ୍ପବିଶେଷ ।

ମକ୍ଷିଗନ୍ଧ, ବ. ନ. (ମକ୍ଷି-ଗନ୍ଧ) ଅଗୁରୁ, ସୁଗନ୍ଧ-
କାଷ୍ଠବିଶେଷ ।

ମକ୍ଷୁ, ବ. ପୁଂ. (ମକ୍ଷ-ଉ) ଭଲ୍ଲୁକ, ଭାଲୁ ।

ମଶ, ମଶକ, ବ. ପୁଂ. (ମଶ୍-ଅ, ଅକ) ମଶା ।

ମଶଲା, ବ. ସୁଗନ୍ଧଦ୍ରବ୍ୟବିଶେଷ ।

ମଶହରୀ,ବ. ସ୍ତ୍ରୀ. (ମଶ-ହୃ-ଅ-ଈ) ମଶାରି,ମଶକ-
ବାରଣୀ ।

ମଶା, ବ. (ମଶକ ଶବ୍ଦଜ) ଦଂଶକ କୀଟବିଶେଷ ।

ମଶାଣି, ମଶାନ, ବ. ( ଶ୍ମଶାନ ଶବ୍ଦଜ ) ସମାଧି-
ସ୍ଥାନ, ପ୍ରେତଭୂମି ।

ମଶାରି, ବ. (ମଶହରୀ ଶବ୍ଦଜ) ମଶକ ନିବାରକ
ପ୍ରାବରଣବିଶେଷ ।

ମଶାଲ, ବ. (ଯାବନିକ) ଦୀପ୍ତଦଣ୍ଡ ।

ମସକା, ବଂ. ମଟକା, ଯାହା ଅଳ୍ପ ଆଘାତରେ
ଭଗ୍ନ ହୁଏ ।

ମସାର, ବ. ପୁଂ. (ମସ-ଋ-ଅ) ଇନ୍ଦ୍ରନୀଳମଣି ।

ମସି, ମସୀ, ମଶି, ମଶୀ, ବଂ ପୁଂ. ସ୍ତ୍ରୀ. (ମସ୍, ମଶ୍ ,
ଇ) ଲେଖିବାର କାଳୀ; ଶେଫାଳିକା ବୃନ୍ତ ।

ମସିପଣ୍ୟ,ବ. ପୁଂ. (ମସି-ପଣ୍ୟ) ଲେଖନୋପଜୀବୀ।

ମସିପ୍ରସୂ, ମସିମଣି, ବ. ସ୍ତ୍ରୀ. ( ମସି-ପ୍ରସୂ, ମଣି )
ମସ୍ୟାଧାର, ଦୁଆତ; ଲେଖନୀ, ପେନ୍‌ସିଲ ।

ମସୀଜୀବୀ, ବ. ପୁଂ. ( ମସୀ-ଜୀବୀ ) ଲେଖକ,
ଲିପିକର ।

ମସିଣା, ବ. ( ଦେଶଜ ) ଚଟାଇ, ବିଛଣା ।

ମସୁର,ମସୂର, ବ. ପୁଂ. (ମସ୍-ଉର; ଊର) ମସୁର,
ଶସ୍ୟବିଶେଷ ।

ମସୂରକ, ବ. ପୁଂ. (ମସୂର-କ) ଗୋଲବାଲିଶ ।

ମସୃଣ, ବଂ. (ମସ୍-ଋଣ) କୋମଳ, ନରମ; ସ୍ନିଗ୍ଧ,
ଚକଚକିଆ; ଯାହାର ଉପରଭାଗ ଏପରି ସମାନ
ଯେ ସ୍ପର୍ଶ କଲେ ଉଚ୍ଚ ନୀଚ ବୋଧ ହୁଏ ନାହିଁ ।

ମସ୍କର, ବ. ପୁଂ. ( ମସ୍କ-ଅର ) ବଂଶ, ବାଉଁଶ;
ବାଉଁଶବାଡ଼; ଗତି; ଜ୍ଞାନ ।

ମସ୍କରା, ବ. (ଦେଶଜ) ଗଳ୍ପକାରକ; ପରିହାସକ;
ଭଣ୍ଡ ।

ମସ୍କରୀ, ବ. ପୁଂ. (ମସ୍କର-ଇନ୍) ଭିକ୍ଷୁ, ଚତୁର୍ଥ-
ଆଶ୍ରମୀ; ଚନ୍ଦ୍ର । ( ଭିକ୍ଷୁ ଅର୍ଥରେ ) ଯଥା—

ମିଳେ ଅଦ୍ଭୁତ ପୁରୁଷ, ମସ୍କରୀ ବେଶ ଯେ ।

ମସ୍ତ, ବ. ନ. (ମସ୍-ତ) ଅଗ୍ରଭାଗ; ଶିରଃ । ବଂ.
ଉଚ୍ଚ; ଉନ୍ନତ ।

ମସ୍ତକ, ବ. ପୁଂ. ନ. ( ମସ୍ତ-କ ) ଶିରଃ, ମୁଣ୍ଡ;
ଅଗ୍ରଭାଗ । ବଂ ଉଚ୍ଚ ।

ମସ୍ତକାଖ୍ୟ, ବ. ପୁଂ. (ମସ୍ତକ-ଆଖ୍ୟା) ବୃକ୍ଷଶିରଃ,
ଗଛର ଅଗ ।

ମସ୍ତମୂଳକ,ବ. ନ. (ମସ୍ତ-ମୂଳ-କ) ଗ୍ରୀବା,କଣ୍ଠ ।

ମସ୍ତିଷ୍କ, ବ. ନ. (ମସ୍-ତି-ଅ, ନିପାତନ) ମସ୍ତକ
ଭିତରେ ଘୃତ ପରି ଯେ କୋମଳ ବସ୍ତୁ ଅଛି,
ମସ୍ତକର ଘିଅ ; ମଗଜ ; ଇଦାନୀନ୍ତନ
ଇଉରୋପୀୟ ପଣ୍ଡିତମାନେ ମସ୍ତିଷ୍କକୁ ମନ ଓ
ବୁଦ୍ଧିର ସ୍ଥାନ ବୋଲନ୍ତି ।

ମସ୍ୟାଧାର, ବ. ନ. (ମସୀ-ଆଧାର) ଦୁଆତ ।

ମହ, ବ. ପୁଂ. (ମହ୍-ଅ) ଉତ୍ସବ; ଯଜ୍ଞ; ତେଜଃ;
ମହିଷ । ବଂ. ପୂଜନୀୟ ।

ମହକ, ବ. ପୁଂ. (ମହ୍-କ) ମହତ୍ ବ୍ୟକ୍ତି; କଚ୍ଛପ;
ବିଷ୍ଣୁ । (ଦେଶଜ) ବଂ. ସୁବାସଯୁକ୍ତ ।

ମହକୁମା (Sub-division) ଉପବିଭାଗ ।

ମହଣ, ବ. (ଦେଶଜ) ଓଜନର ପରିମାଣବିଶେଷ,
ଚାଳିଶ ସେର ।

ମହତ୍, ବଂ. (ମହ୍-ଅତ୍) ବୃହତ୍, ବଡ଼; ପ୍ରବଳ;
ଅଧିକ, ଅନେକ; ପ୍ରଧାନ, ଶ୍ରେଷ୍ଠ; ଉଦାର ।
ବ. ନ. ରାଜ୍ୟ । ପୁଂ. ମହତ୍ତ୍ୱ ।

ମହତୀ, ବ. ସ୍ତ୍ରୀ. ନାରଦଙ୍କର ବୀଣାଯନ୍ତ୍ର ।

ମହତତ୍ତ୍ୱ, ବ. ନ. ସାଙ୍ଖ୍ୟମତୋକ୍ତ ଚତୁର୍ବିଂଶତି
ତତ୍ତ୍ୱାନ୍ତର୍ଗତ ଦ୍ୱିତୀୟ ତତ୍ତ୍ୱ, ବୁଦ୍ଧିସ୍ୱରୂପ ।

ମହତ୍ତ୍ୱ, ବ. ନ. (ମହତ୍-ତ୍ୱ) ବୃହତ୍ତ୍ୱ, ପ୍ରାଧାନ୍ୟ,
ପ୍ରକର୍ଷ, ଆଧିକ୍ୟ ।

ମହନୀୟ, ବଂ. (ମହ-ଅନୀୟ) ପୂଜନୀୟ,ମାନ୍ୟ ।

ମହର୍ଲୋକ, ବ. ପୁଂ. (ମହସ୍-ଲୋକ) ଭୂଲୋକାଦି
ସପ୍ତଲୋକ ମଧ୍ୟରେ ଚତୁର୍ଥ ଲୋକ ।

ମହର୍ଷି, ବ. ପୁଂ. (ମହା-ଋଷି) ପ୍ରଧାନ ଋଷି, ବ୍ୟାସ ପ୍ରଭୃତି ।

ମହଲତ, ବ. (ଯାବନିକ) ଅବକାଶ ।

ମହଲ୍ଲ, ବ. ( ଯାବନିକ ) ଘର, ପୁର; ଛାମ୍ଭ, ଛକ । ଯଥା—ଦୋମହଲ୍ଲ କୋଠା ।

ମହଲ୍ଲକ, ମହଲ୍ଲିକ, ବ. ପୁଂ. (ମହଲ୍ଲ-କ, ଇକ) କଞ୍ଚୁକୀ, ଅନ୍ତଃପୁରରକ୍ଷକ ।

ମହସ୍,ବ.ନ. (ମହ୍-ଅସ୍) ତେଜଃ; ଉତ୍ସବ; ଯଜ୍ଞ ।

ମହସ, ବ. ନ. ( ମହ୍-ଅସ ) ଜ୍ଞାନ; ପ୍ରକାର; ପ୍ରଭେଦ ।

ମହା, ବ. ସ୍ତ୍ରୀ. (ମହ୍-ଅ-ଆ) ସ୍ତ୍ରୀଗବୀ, ଗାଭୀ ।

ମହାକଚ୍ଛ, ବ. ପୁଂ. (ମହତ୍-କଚ୍ଛ) ସମୁଦ୍ର; ବରୁଣ; ପର୍ବତ ।

ମହାକପିତ୍ଥ,ବ. ପୁଂ. (ମହତ୍-କପିତ୍ଥ) ବିଲ୍ୱବୃକ୍ଷ, ବେଲଗଛ ।

ମହାକାୟ, ବ. ପୁଂ. ( ମହତ୍-କାୟ ) ନନ୍ଦୀ, ଶିବଙ୍କ ଦ୍ୱାରପାଳ; ହସ୍ତୀ । ବିଂ. ବୃହତ୍ ଶରୀରବିଶିଷ୍ଟ ।

ମହାକାଳ, ବ. ପୁଂ. (ମହତ୍-କାଳ) ରୁଦ୍ର, ଶିବ; ପ୍ରମଥଗଣବିଶେଷ; ଅନବଚ୍ଛିନ୍ନକାଳ; ଅନନ୍ତ କାଳ ।

ମହାକାଳୀ, ବ. ସ୍ତ୍ରୀ. (ମହତ୍-କାଳୀ) ମହାକାଳ-ପତ୍ନୀ, ରୁଦ୍ରାଣୀ ।

ମହାକାବ୍ୟ, ବ. ନ. ( ମହତ୍-କାବ୍ୟ ) କୌଣସି ଦେବତାର ଅଥବା ସଦ୍‌ବଂଶଜାତ ଅଶେଷ ଗୁଣ-ସମ୍ପନ୍ନ କ୍ଷତ୍ରି[illegible]ବା ଏକବଂଶୋଦ୍ଭବ ବହୁ ଭୂପତିମାନଙ୍କର ବୃତ୍ତାନ୍ତ ନେଇ ଯେ କାବ୍ୟ ରଚିତ ହୁଏ; ମହାକାବ୍ୟ ନାନା ସର୍ଗରେ ବିଭକ୍ତ, ସେଥିରେ ଅଷ୍ଟାଧିକ ସର୍ଗ ଥିବା ଆବଶ୍ୟକ; ମହାକାବ୍ୟରେ ଆଦିରସ ବା ବୀରରସ ପ୍ରଧାନ; କେବେ କେବେ ଅନ୍ୟାନ୍ୟ ପ୍ରସଙ୍ଗ ମଧ୍ୟ ପ୍ରଧାନ ଥାଏ । ଯଥା—କୁମାର-ସମ୍ଭବ, ରଘୁବଂଶ, ଭଟ୍ଟି, କିରାତାର୍ଜୁନୀୟ, ନୈଷଧୀୟ ଚରିତ, ଶିଶୁପାଳବଧ ପ୍ରଭୃତି ।

ମହାକୁଳ, ବିଂ. ( ମହତ-କୁଳ ) କୁଳୀନ, ସତ୍-କୁଳଜାତ । ବ. ନ. ପ୍ରସିଦ୍ଧ ବଂଶ ।

ମହାଗୁରୁ, ବ. ପୁଂ. (ମହତ୍-ଗୁରୁ) ପିତା; ମାତା; ଆଚାର୍ଯ୍ୟ; ପତି ।

ମହାଗ୍ରୀବ, ବ. ପୁଂ. (ମହତ୍-ଗ୍ରୀବା) ଉଷ୍ଟ୍ର, ଓଟ ।

ମହାଘୂର୍ଣ୍ଣା, ବ. ସ୍ତ୍ରୀ. (ମହତ୍-ଘୂର୍ଣ୍ଣ-ଅ) ସୁରା, ମଦ ।

ମହାଙ୍ଗ, ବ. ପୁଂ. ( ମହତ୍-ଅଙ୍ଗ ) ଉଷ୍ଟ୍ର, ଓଟ; ଗୋକ୍ଷୁରକ; ରକ୍ତଚନ୍ଦନ । ବିଂ. ବିପୁଳା-ବୟବଯୁକ୍ତ ।

ମହାଚଣ୍ଡ, ବ. ପୁଂ. ( ମହତ୍-ଚଣ୍ଡ ) ଯମଭୃତ୍ୟ, ଯମଦୂତ । ବିଂ. ପ୍ରଚଣ୍ଡ ।

ମହାଛାୟ, ବ. ପୁଂ. ( ମହତ୍-ଛାୟା ) ବଟବୃକ୍ଷ । ବିଂ. ବୃହଚ୍ଛାୟାଯୁକ୍ତ ।

ମହାଜନ, ବ. ପୁଂ. (ମହତ୍-ଜନ) ସାଧୁ, ଧାର୍ମିକ ଓ ଖ୍ୟାତ୍ୟାପନ୍ନ ବ୍ୟକ୍ତି; ବାଣିଜ୍ୟକାରୀ; ଉତ୍ତମର୍ଣ୍ଣ ।

ମହାଜ୍ୱାଳ, ବ. ପୁଂ. (ମହତ୍-ଜ୍ୱାଳା) ହୋମାଗ୍ନି, ଯଜ୍ଞାଗ୍ନି ।

ମହାଜ୍ୟୈଷ୍ଠୀ, ବ.ସ୍ତ୍ରୀ. ରବିବାରଯୁକ୍ତ ଜ୍ୟୈଷ୍ଠୀ ପୂର୍ଣ୍ଣିମା ।

ମହାତଳ, ବ. ନ. ( ମହତ୍-ତଳ ) ସପ୍ତପାତାଳ ମଧ୍ୟରେ ପଞ୍ଚମ ପାତାଳ ।

ମହାତିକ୍ତ, ବ. ପୁଂ. ନିମ୍ବବୃକ୍ଷ । ବିଂ. ଅତିଶୟ ତିକ୍ତ ରସଯୁକ୍ତ ।

ମହାତେଜାଃ, ବ. ପୁଂ. (ମହତ୍-ତେଜସ୍) କାର୍ତ୍ତି-କେୟ; ଅଗ୍ନି । ନ. ପାରଦ, ପାରା । ବିଂ. ଅତିଶୟ ତେଜସ୍ୱୀ ।

ମହାତ୍ମା, ବିଂ. ( ମହତ୍-ଆତ୍ମନ୍ ) ମହାମନାଃ, ମହାଶୟ; ବଦାନ୍ୟ; ଉଦାର ।

ମହାଦେବ, ବ. ପୁଂ. (ମହତ୍-ଦେବ) ଶିବ, ଶମ୍ଭୁ ।

ମହାଦେବୀ, ବ. ସ୍ତ୍ରୀ. ( ମହାଦେବ-ଈ ) ଦୁର୍ଗା; ପ୍ରଧାନା ମହିଷୀ, ପାଟରାଣୀ ।

ମହାଦେଶ, ବ. ପୁଂ. ଅନେକ ରାଜ୍ୟାଦିବିଶିଷ୍ଟ ନାନାଜାତି ଲୋକର ବାସସ୍ଥାନ ଅତି ବିସ୍ତୀର୍ଣ୍ଣ ଭୂଭାଗ ।

ମହାଦ୍ୱନ୍ଦ୍ୱ, ବି. ପୁଂ. ରଣବାଦ୍ୟ, ସଂଗ୍ରାମପଟହ; ଅତିଶୟ କଳହ ।

ମହାଦ୍ରୁମ, ବି. ପୁଂ. (ମହତ୍-ଦ୍ରୁମ) ଅଶ୍ୱତ୍ଥ ବୃକ୍ଷ; ବୃହତ୍ ବୃକ୍ଷ; ବରଗଛ ।

ମହାଧନ, ବିଂ. (ମହତ୍-ଧନ) ଧନାଢ୍ୟ, ଅତିଶୟ ଧନଶାଳୀ; ବହୁମୂଲ୍ୟ । ବି. ନ. ସୁବର୍ଣ୍ଣ; କୃଷିକାର୍ଯ୍ୟ ।

ମହାଧାତୁ, ବି. ପୁଂ. (ମହତ୍-ଧାତୁ) ସୁବର୍ଣ୍ଣ, କାଞ୍ଚନ ।

ମହାନଟ, ବି. ପୁଂ. ( ମହତ୍-ନଟ ) ଶିବ, ମହାଦେବ ।

ମହାନଦୀ, ବି. ସ୍ତ୍ରୀ. ଯେଉଁ ନଦୀ ଓଡ଼ିଶାଦେଶର ମଧ୍ୟ ଦେଇ ପ୍ରବାହିତ ହୋଇଅଛି । ଯଥା—

ମହାନଦୀ କୂଳେ ଯାହାଙ୍କ ଅଧିଷ୍ଠାନବିଶେଷ । ଡ. ଭା.

ବୃହତ୍ ନଦୀ ।

ମହାନନ୍ଦ, ବି. ପୁଂ. ( ମହତ୍-ଆନନ୍ଦ ) ମୁକ୍ତି, ମୋକ୍ଷ; ଅତିଶୟ ଆନନ୍ଦ । ବିଂ. ଅତି ଆନନ୍ଦଯୁକ୍ତ ।

ମହାନନ୍ଦା, ବି. ସ୍ତ୍ରୀ. ସୁରା, ମଦ୍ୟ; ନଦୀବିଶେଷ; ମାଘମାସର ଶୁକ୍ଳନବମୀ ।

ମହାନବମୀ, ବି. ସ୍ତ୍ରୀ. ଆଶ୍ୱିନ ଶୁକ୍ଳ ନବମୀ ।

ମହାନସ, ବି. ପୁଂ. ନ. ( ମହତ୍-ଅନସ୍-ଅ ) ରନ୍ଧନଗୃହ ।

ମହାନାଟକ, ବି. ନ. ଦଶଅଙ୍କଯୁକ୍ତ ନାଟକବିଶେଷ; ସ୍ୱନାମପ୍ରସିଦ୍ଧ ନାଟକବିଶେଷ ।

ମହାନାଦ, ବି. ପୁଂ. (ମହତ୍-ନାଦ) ବୃହତ୍ ଶବ୍ଦ; ହସ୍ତୀ; ବର୍ଷଣକାରୀ ମେଘ; ସିଂହ; ଉଷ୍ଟ୍ର; ଶଙ୍ଖ; କାଷ୍ଠବାଦ୍ୟ । ବିଂ. ମହାଶବ୍ଦବିଶିଷ୍ଟ ।

ମହାନିଦ୍ରା, ବି. ସ୍ତ୍ରୀ. (ମହତ୍-ନିଦ୍ରା) ମୃତ୍ୟୁ, ମରଣ; ନିମୀଳନ ।

ମହାନିଶା, ବି. ସ୍ତ୍ରୀ. ( ମହତ୍-ନିଶା ) ମଧ୍ୟରାତ୍ର, ନିଶୀଥ ।

ମହାନୀଚ, ବି. ପୁଂ. ( ମହତ୍-ନୀଚ ) ରଜକ, ଧୋବା ।

ମହାନୀଳ, ବି. ପୁଂ. (ମହତ୍-ନୀଳ) ନାଗବିଶେଷ; ସିଂହଳଦ୍ୱୀପସମ୍ଭୂତ ନୀଳକାନ୍ତମଣି ।

ମହାନୀଳୀ, ବି. ସ୍ତ୍ରୀ. ନୀଳାପରାଜିତା ।

ମହାନୁଭବ, ମହାନୁଭାବ, ବିଂ. (ମହତ୍-ଅନୁଭବ, ଅନୁଭାବ) ଉଦାରସ୍ୱଭାବ, ମହାପ୍ରଭାବ ।

ମହାପକ୍ଷ, ବି. ପୁଂ. ( ମହତ୍-ପକ୍ଷ ) ରାଜହଂସବିଶେଷ ।

ମହାପଥ, ବିଂ. ପୁଂ. ( ମହତ୍-ପଥ ) ପ୍ରଧାନ ପଥ, ରାଜବର୍ତ୍ମ; ମରଣ; ହିମାଳୟୋତ୍ତରସ୍ଥ ସ୍ୱର୍ଗାରୋହଣ ପଥ ।

ମହାପଦ୍ମ, ବି. ପୁଂ. (ମହତ୍-ପଦ୍ମ) ନାଗବିଶେଷ; କୁବେରଙ୍କ ନିଧିବିଶେଷ; ସଂଖ୍ୟାବିଶେଷ । ନ. ଶୁକ୍ଳପଦ୍ମ ।

ମହାପାତକ, ମହାପାପ, ବି. ନ. (ମହତ୍-ପାତକ, ପାପ) ମହତ୍ପାପ; ବ୍ରହ୍ମହତ୍ୟା, ବ୍ରାହ୍ମଣର ସ୍ୱର୍ଣ୍ଣଚୋରୀ, ସୁରାପାନ ଏବଂ ଗୁରୁଭାର୍ଯ୍ୟା ହରଣ ଏହି ଚତୁର୍ବିଧ ପାପର ଅନ୍ୟତମ ପାପାସକ୍ତ ବ୍ୟକ୍ତି ସହିତ ସହବାସ, ଏହି ପଞ୍ଚବିଧ ପାପ ।

ମହାପାତକୀ, ବିଂ. (ମହାପାତକ-ଇନ୍) ମହାପାପୀ, ପତିତ ବ୍ୟକ୍ତି ।

ମହାପାସକ, ବି. ପୁଂ. ବୁଦ୍ଧଭିକ୍ଷୁ, ବୌଦ୍ଧଧର୍ମାବଲମ୍ବୀ ଭିକ୍ଷୁ ।

ମହାପୁରୁଷ, ବି. ପୁଂ. (ମହତ୍-ପୁରୁଷ) ଶ୍ରେଷ୍ଠପୁରୁଷ, ସାଧୁବ୍ୟକ୍ତି; ନାରାୟଣ; ପୁରୁଷୋତ୍ତମ ।

ମହାପ୍ରଭୁ, ବି. ପୁଂ. ( ମହତ୍-ପ୍ରଭୁ ) ପରମେଶ୍ୱର; ଶିବ, ଇନ୍ଦ୍ର; ରାଜା; ମୁନି ।

ମହାପ୍ରଳୟ, ବି. ପୁଂ. (ମହତ୍-ପ୍ରଳୟ ) ସମସ୍ତ ବ୍ରହ୍ମାଣ୍ଡର ବିନାଶ ଏବଂ ବ୍ରହ୍ମାର ବିନାଶ; ସର୍ବଭୂତ କ୍ଷୟକାଳ, କଳ୍ପାନ୍ତ ।

ମହାପ୍ରସାଦ, ବି. ପୁଂ. (ମହତ୍-ପ୍ରସାଦ) ଦେବୋଦ୍ଦେଶରେ ନିବେଦିତ ଦ୍ରବ୍ୟ; ଅତି ପ୍ରସନ୍ନତା; ପାଦୋଦକ, ନିର୍ମାଲ୍ୟ, ନୈବେଦ୍ୟ ଏହି ତ୍ରିବିଧ । ଯଥା—

ସେ ମହାପ୍ରସାଦ ଶବଦ ପଦ ସଙ୍ଗ ଘୋଷ,
ଭକ୍ଷଣେ ଶ୍ରବଣେ ଯେ କଳ୍ମିଷ ବିଷ ନାଶ । ହୋ. ଚ. ]

ମହାଫିଜ୍, (ଫାର୍ସୀ) ମୋକଦ୍ଦମାର ଦଲିଲ ଓ କାଗଜପତ୍ର ଯାହା ପାଖରେ ଥାଏ ।

ମହାବଳ, ବିଂ. (ମହତ୍-ବଳ) ଅତିଶୟ ବଳବାନ୍ । ବି. ପୁଂ. ବାୟୁ; ବୁଦ୍ଧ । ନ. ସୀସକ, ସୀସା; ବୃହତ୍ ବ୍ୟାଘ୍ର । ଯଥା—

ଭେଟଣୀବୃନ୍ଦର ବହୁଁ ବଦ ମହାବଳ ଅସିଲେ ଚଳକ ଖସି,
ପଳାନ୍ତ ଚମ୍ପେ ଦ୍ରୁତପଦେ କୃଷ୍ଣସାର ସଙ୍ଗେ ମୃଗବଧୂ । ମ. ଯା.

ମହାବୋଧ, ବି. ପୁଂ. (ମହତ୍-ବୋଧ) ବୁଦ୍ଧ ।

ମହାବ୍ରାହ୍ମଣ, ବି. ପୁଂ. ( ମହତ୍-ବ୍ରାହ୍ମଣ ) ନୀଚ ବ୍ରାହ୍ମଣ, ଅନ୍ତ୍ୟେଷ୍ଟି କ୍ରିୟାକାରୀ ନିନ୍ଦିତ ବ୍ରାହ୍ମଣ; ବେଦବିଦ୍ ବ୍ରାହ୍ମଣ ।

ମହାଭଦ୍ରା, ବି. ସ୍ତ୍ରୀ. ( ମହତ୍-ଭଦ୍ରା ) ଗଙ୍ଗା, ଭାଗୀରଥୀ ।

ମହାଭାଗ, ବି. ପୁଂ. ( ମହତ୍-ଭାଗ ) ଅତିଶୟ ସୌଭାଗ୍ୟଶାଳୀ; ମହାଶୟ । ବିଂ. ଦୟାଦି ଅଷ୍ଟଗୁଣଯୁକ୍ତ ।

ମହାଭାରତ, ବି. ପୁଂ. ନ. ( ମହତ୍-ଭାରତ ) ବେଦବ୍ୟାସପ୍ରଣୀତ ଇତିହାସ ଶାସ୍ତ୍ରବିଶେଷ ।

ମହାଭୀମ, ବି. ପୁଂ. (ମହତ୍-ଭୀମ) ଶାନ୍ତନୁରାଜା; ଭୃଙ୍ଗି ନାମକ ଶିବଙ୍କ ଦ୍ୱାରପାଳ । ବିଂ. ଅତିଶୟ ଭୟାନକ ।

ମହାଭୀଷ୍ମ, ବି. ପୁଂ. (ମହତ୍-ଭୀଷ୍ମ) ଶାନ୍ତନୁରାଜା ।

ମହାଭୂତ, ବି. ନ. (ମହତ୍-ଭୂତ) ପ୍ରଧାନ ଭୂତ, କ୍ଷିତି ଅପ୍ ତେଜଃ ମରୁତ୍ ବ୍ୟୋମ ଏହି ପାଞ୍ଚ; ଶ୍ରେଷ୍ଠ ଜୀବ; ପରମେଶ୍ୱର ।

ମହାମତି, ବିଂ. (ମହତ୍-[illegible]) ଅତି ବୁଦ୍ଧିମାନ୍ ।

ମହାମନାଃ, ବିଂ. (ମହତ୍-ମନସ୍ ) ମହାତ୍ମା, ମନସ୍ୱୀ, ଉଦାରଚିତ୍ତ ।

ମହାମହିମ, ବିଂ. ( ମହତ୍-ମହିମନ୍ ) ଅତିଶୟ ମହିମାନ୍ୱିତ; ଅତି ମହତ୍ତ୍ୱବାନ୍ ।

ମହାମାଂସ, ବି. ନ. ମନୁଷ୍ୟ ମାଂସ ।

ମହାମାୟା, ବି. ସ୍ତ୍ରୀ. ( ମହତ୍-ମାୟା ) ଦୁର୍ଗା, ଅବିଦ୍ୟା, ସଂସାରଭ୍ରମ ।

ମହାମାରୀ, ବି. ସ୍ତ୍ରୀ. ( ମହତ୍-ମାରୀ ) ମହାକାଳୀ; ଅତିଶୟ ମଡ଼କ ।

ମହାମୁଖ, ବି. ପୁଂ. (ମହତ୍-ମୁଖ) କୁମ୍ଭୀର ।

ମହାମୁନି, ବି. ପୁଂ. (ମହତ୍-ମୁନି) ମହର୍ଷି, ଅଗସ୍ତ୍ୟ ପ୍ରଭୃତି; ବୁଦ୍ଧଦେବ; କୃପାଚାର୍ଯ୍ୟ ।

ମହାମୃଗ, ବି. ପୁଂ. (ମହତ୍-ମୃଗ) ହସ୍ତୀ, ଗଜ ।

ମହାମୃତ୍ୟୁଞ୍ଜୟ, ବି. ପୁଂ. ଶିବମନ୍ତ୍ରବିଶେଷ ।

ମହାମୋହ, ବି. ପୁଂ. ବିଷୟ ବାସନାରୂପ ଅଜ୍ଞାନ, ସଂସାରର ମୂଳକାରଣ ରାଗରୂପ ମୋହ ।

ମହାଯଜ୍ଞ, ବି. ପୁଂ. ବେଦାଧ୍ୟୟନ, ହୋମ, ଅତିଥି-ପୂଜା, ତର୍ପଣ ଓ ଜୀବମାନଙ୍କୁ ଖାଦ୍ୟଦାନ ଏହି ପାଞ୍ଚ ପ୍ରକାର ଯଜ୍ଞ ।

ମହାଯାତ୍ରା, ବି. ସ୍ତ୍ରୀ. ( ମହତ୍-ଯାତ୍ରା ) ଯେଉଁ ଯାତ୍ରା କଲେ ପୁନର୍ବାର ପ୍ରାଣିକୁ ପ୍ରତ୍ୟାବର୍ତ୍ତନ କରିବାକୁ ହୁଏ ନାହିଁ, ମୃତ୍ୟୁ ।

ମହାରଜତ, ବି. ପୁଂ. ନ. ( ମହତ୍-ରଜତ ) କାଞ୍ଚନ, ଧୁସ୍ତୁରା, ଧୁତୁରା ।

ମହାରଜନ, ବି. ନ. ( ମହତ୍-ରଜନ ) ସ୍ୱର୍ଣ୍ଣ; କୁସୁମଫୁଲ ।

ମହାରଥ, ବି. ପୁଂ. ( ମହତ୍-ରଥ ) ଦଶ ସହସ୍ର ଧନୁର୍ଦ୍ଧାରିମାନଙ୍କ ସହିତ ସକ୍ଷମ ଯୋଦ୍ଧା; ବୃହଦ୍ରଥ ।

ମହାରସ, ବି. ପୁଂ. ଖର୍ଜ୍ଜୁର; ଇକ୍ଷୁ; ପାରଦ; କାଞ୍ଜିକ ।

ମହାରାଜ, ବି. ପୁଂ. ( ମହତ୍-ରାଜନ୍ ) ସମ୍ରାଟ୍, ପ୍ରଧାନ ରାଜା ।

ମହାରାଷ୍ଟ୍ର, ବି. ପୁଂ. ( ମହତ୍-ରାଷ୍ଟ୍ର ) ମରହଟ୍ଟା ଦେଶ । ସ୍ତ୍ରୀ-ସ୍ତ୍ରୀ, ମରହଟ୍ଟୀ ଭାଷା ।

ମହାରୋଗ, ବି. ପୁଂ. ( ମହତ୍-ରୋଗ ) ରାଜଯକ୍ଷ୍ମା ପ୍ରଭୃତି ଅସାଧ୍ୟ ରୋଗ ।

ମହାରୌରବ, ବି. ପୁଂ. (ମହତ୍-ରୁରୁ-ଅ)ନରକ-ବିଶେଷ ।

ମହାର୍ଘ, ମହାର୍ଦ୍ଧ, ବିଂ. (ମହତ୍-ଅର୍ଘ, ଅର୍ଦ୍ଧ) ମହା-ମୂଲ୍ୟ, ଅତିଶୟ ମୂଲ୍ୟବାନ୍ ।

ମହାର୍ଣ୍ଣବ, ବି. ପୁଂ. ମହାସମୁଦ୍ର ।
ମହାଲକ୍ଷ୍ମୀ, ବି. ସ୍ତ୍ରୀ. (ମହତ୍-ଲକ୍ଷ୍ମୀ)ଦେବୀବିଶେଷ ।
ମହାଳୟ, ବି. ପୁଂ. (ମହତ୍-ଆଳୟ) ତୀର୍ଥ; ପରମାତ୍ମା; ଆଶ୍ୱିନମାସର କୃଷ୍ଣପକ୍ଷ; ବୃହଦାଳୟ ।
ମହାଳୟା, ବି. ସ୍ତ୍ରୀ. ଆଶ୍ୱିନ କୃଷ୍ଣପକ୍ଷର ଅମାବାସ୍ୟା ।
ମହାଲିଙ୍ଗ, ବି. ପୁଂ. ଶିବ । ବିଂ. ବୃହଲ୍ଲିଙ୍ଗଯୁକ୍ତ ।
ମହାଲୋଲ, ବି. ପୁଂ. (ମହତ୍-ଲୋଲ) କାକ । ବିଂ. ଅତିଶୟ ଚଞ୍ଚଳ ।
ମହାଲୋହ, ବି. ନ. (ମହତ୍-ଲୋହ) ଅୟସ୍କାନ୍ତମଣି, ଚୁମ୍ବକ ପଥର ।
ମହାବନ, ବି. ନ. ବୃହତ୍ ବନ; ବୃନ୍ଦାବନସ୍ଥ ଚତୁରଶୀତି ବନାନ୍ତର୍ଗତ ବନବିଶେଷ ।
ମହାବରାହ, ବି. ପୁଂ. (ମହତ୍-ବରାହ) ବିଷ୍ଣୁଙ୍କର ଅବତାରବିଶେଷ ।
ମହାବାରୁଣୀ, ବି. ସ୍ତ୍ରୀ. ଗଙ୍ଗାସ୍ନାନର ଯୋଗବିଶେଷ ।
ମହାବିଦ୍ୟା, ବି. ସ୍ତ୍ରୀ. ( ମହତ୍-ବିଦ୍ୟା ) ଦେବୀବିଶେଷ । କାଳୀ, ତାରା, ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ,ବଗଳା, ମାତଙ୍ଗୀ ଏବଂ କମଳା ଏହି ଦଶ ।
ମହାବିଷୁବ, ବି. ନ. ( ମହତ୍-ବିଷୁବ ) ମେଷସଂକ୍ରାନ୍ତି ।
ମହାବୀର, ବି. ପୁଂ. (ମହତ୍-ବୀର) ଗରୁଡ଼;ସିଂହ; ହନୁମାନ୍; ଯଜ୍ଞାଗ୍ନି ; ବଜ୍ର ; ଶ୍ୱେତାଶ୍ୱ; ପକ୍ଷିବିଶେଷ । ବିଂ. ଅତିଶୟ ପରାକ୍ରମଶାଳୀ ବ୍ୟକ୍ତି ।
ମହାବୀର୍ଯ୍ୟ, ବିଂ. (ମହତ୍-ବୀର୍ଯ୍ୟ) ଅତିଶୟ ବଳବାନ୍ ।
ମହାବୀର୍ଯ୍ୟା, ବି. ସ୍ତ୍ରୀ. ସଂଜ୍ଞା, ସୂର୍ଯ୍ୟପତ୍ନୀ; ମହାଶତାବରୀ ।
ମହାବ୍ୟାଧି, ବିଂ. ପୁଂ. ( ମହତ୍-ବ୍ୟାଧି ) କୁଷ୍ଠ ପ୍ରଭୃତି ରୋଗ ।
ମହାବ୍ୟାହୃତି, ବି. ସ୍ତ୍ରୀ. ( ମହତ୍-ବ୍ୟାହୃତି ) ଓଁ ଭୂଃ ସ୍ୱାହା, ଓଁ ଭୁବଃ ସ୍ୱାହା, ଓଁ ସ୍ୱଃ ସ୍ୱାହା ଏହି ତିନୋଟି ବାକ୍ୟ ।
ମହାବ୍ରତୀ, ବି. ପୁଂ. (ମହତ୍-ବ୍ରତ-ଇନ୍) ଶିବ । ବିଂ. ମହତ୍ ବ୍ରତବିଶିଷ୍ଟ ।
ମହାଶକ୍ତି, ବିଂ. (ମହତ୍-ଶକ୍ତି ) ଅତିଶୟ ପରାକ୍ରମଶାଳୀ । ବି. ପୁଂ. କାର୍ତ୍ତିକେୟ ।
ମହାଶଙ୍ଖ, ବି. ପୁଂ. ( ମହତ୍-ଶଙ୍ଖ ) ମନୁଷ୍ୟାସ୍ଥି, ମନୁଷ୍ୟର ହାଡ଼ ; ଲଲାଟ ; ସଂଖ୍ୟାବିଶେଷ; କୁବେରଙ୍କ ନିଧିବିଶେଷ; ବୃହତ୍ ଶଙ୍ଖ ।
ମହାଶୟ, ବିଂ. ( ମହତ୍-ଆଶୟ ) ମହାମନାଃ, ମହାତ୍ମା । ବି. ପୁଂ. ସମୁଦ୍ର ।
ମହାଶଯ୍ୟା, ବି. ପୁଂ. (ମହତ୍-ଶଯ୍ୟା) ସିଂହାସନ; ବୃହତ୍ ଶଯ୍ୟା ।
ମହାଶଲ୍କ, ବି. ପୁଂ. (ମହତ୍-ଶଲ୍କ) ଚିଙ୍ଗୁଡ଼ିମାଛ ।
ମହାଶୁକ୍ତି, ବି. ସ୍ତ୍ରୀ. (ମହତ୍-ଶୁକ୍ତି ) ମୁକ୍ତାପ୍ରସିବିନୀ ଶୁକ୍ତି ।
ମହାଶୁକ୍ଳ, ବିଂ. (ମହତ୍-ଶୁକ୍ଳ ) ଅତିଶୟ ଶୁଭ୍ରବର୍ଣ୍ଣ । ବି. ସ୍ତ୍ରୀ. ସରସ୍ୱତୀ ।
ମହାଶୁଭ୍ର, ବି. ନ. (ମହତ୍-ଶୁଭ୍ର) ରଜତ,ରୌପ୍ୟ । ବିଂ. ଅତି ଶୁଭ୍ରବର୍ଣ୍ଣ ।
ମହାଶୂଦ୍ର, ବି. ପୁଂ. ( ମହତ୍-ଶୂଦ୍ର ) ଆଭୀର; ରକ୍ତବର୍ଣ୍ଣ; ଗୂର୍ଣ୍ଣ ।
ମହାଶ୍ୱେତା, ବି. ସ୍ତ୍ରୀ. (ମହତ୍-ଶ୍ୱେତ) ସରସ୍ୱତୀ; ସ୍ତ୍ରୀ-ବିଶେଷ; ଦୁର୍ଗା; ଶ୍ୱେତାପରାଜିତା ।
ମହାଶ୍ମଶାନ, ବି. ନ. (ମହତ୍-ଶ୍ମଶାନ) ବାରାଣସୀ, କାଶୀ ।
ମହାଶ୍ରମଣ, ବି. ପୁଂ. (ମହତ୍-ଶ୍ରମଣ) ବୁଦ୍ଧବିଶେଷ, ଶାକ୍ୟ, ଶାକ୍ୟମୁନି ।
ମହାଷ୍ଟମୀ, ବି. ସ୍ତ୍ରୀ. ( ମହତ୍-ଅଷ୍ଟମୀ ) ଆଶ୍ୱିନ ଶୁକ୍ଳାଷ୍ଟମୀ ।
ମହାସତ୍ତ୍ୱ, ବି. ପୁଂ. କୁବେର ।
ମହାସାଗର, ବିଂ. ଅତି ବିସ୍ତୀର୍ଣ୍ଣ ଲବଣମୟ ଯେ ଜଳଭାଗ ପୃଥିବୀକୁ ବେଷ୍ଟନ କରିଅଛି ।
ମହାସାନ୍ତପନ, ବି. ନ. (ମହତ୍-ସାନ୍ତପନ ) ଛଅ ଦିନ କଷ୍ଟସାଧ୍ୟ ବ୍ରତବିଶେଷ ।

ମହାସୁଖ, ବ. ନ. (ମହତ୍-ସୁଖ) ଅତିଶୟ ଆନନ୍ଦ; ମୈଥୁନ । ପୁଂ. ବୁଦ୍ଧ ।

ମହାସୂକ୍ଷ୍ମା, ବ. ସ୍ତ୍ରୀ. ( ମହତ୍-ସୂକ୍ଷ୍ମ ) ବାଲୁକା, ବାଲି । ବିଂ. ଅତି ସୂକ୍ଷ୍ମ ।

ମହାସେନ, ବ. ପୁଂ.(ମହତ୍-ସେନା)କାର୍ତ୍ତିକେୟ । ବିଂ. ବୃହତ୍ ସେନାପତି ।

ମହାସ୍ଥଳୀ, ବ. ସ୍ତ୍ରୀ. ( ମହତ୍-ସ୍ଥଳୀ ) ପୃଥିବୀ; ଶ୍ରେଷ୍ଠସ୍ଥାନ ।

ମହାସ୍ଥାନ, ବ. ବଗୁଡ଼ାର ତିନ କୋଶ ଉତ୍ତରରେ ସ୍ଥିତ ପ୍ରଦେଶ, ଯେଉଁଠାରେ ପରଶୁରାମଙ୍କର ବାସସ୍ଥାନ ଥିଲା ।

ମହାସ୍ୱନ, ବ. ପୁଂ. ( ମହତ୍-ସ୍ୱନ ) ରଣବାଦ୍ୟ; ମହାଶବ୍ଦ । ବିଂ. ବୃହତ୍ ଶବ୍ଦଯୁକ୍ତ ।

ମହିକା, ବ. ସ୍ତ୍ରୀ. (ମହ୍-ଅକ) ତୁଷାର, ହିମ ।

ମହିତ, ବିଂ. (ମହ-ତ) ପୂଜିତ, ସମ୍ମାନିତ,ଅର୍ଚ୍ଚିତ ।

ମହିନ, ବ. ନ. (ମହ୍-ଇନ) ରାଜ୍ୟ ।

ମହିମା, ବ. ପୁଂ. ( ମହତ୍-ଇମନ୍ ) ମାହାତ୍ମ୍ୟ, ଗୌରବ । ଯଥା—

ବର୍ଣ୍ଣି ନୋହେ ତାଙ୍କ ମହିମା ସେତେକ ।

ଐଶ୍ୱର୍ଯ୍ୟ; ଉତ୍କର୍ଷ, ଶିବଙ୍କର ବିଭୂତିବିଶେଷ ।

ମହିର, ବ. ପୁଂ. (ମହ୍-ଇର) ସୂର୍ଯ୍ୟ, ଅର୍କବୃକ୍ଷ ।

ମହିଳା, ବ.ସ୍ତ୍ରୀ. (ମହ୍-ଇଲ-ଆ) ନାରୀ; ଯୋଷିତ୍ ।

ମହିଷ, ବ. ପୁଂ. (ମହ୍-ଇଷ) ପଶୁବିଶେଷ; ଯମର ବାହନ; ଅସୁରବିଶେଷ, ମହିଷାସୁର ।

ମହିଷଧ୍ୱଜ, ମହିଷବାହନ, ବ. ପୁଂ. (ମହିଷ ଧ୍ୱଜ, ବାହନ) ଯମ ।

ମହିଷମର୍ଦ୍ଦିନୀ, ବ. ସ୍ତ୍ରୀ. (ମହିଷ-ମର୍ଦ୍ଦିନ୍) ମହିଷାସୁର-ବିନାଶିନୀ, ଦୁର୍ଗା ।

ମହିଷୀ, ବ. ସ୍ତ୍ରୀ. ( ମହିଷ-ଈ ) ସ୍ତ୍ରୀ ମହିଷ; କୃତା-ଭିଷେକା ରାଜ୍ଞୀ; ବ୍ୟଭିଚାରିଣୀ ସ୍ତ୍ରୀ ।

ମହିଷ୍ଠ, ବିଂ. (ମହତ୍-ଇଷ୍ଠ) ଅତି ମହତ୍ ।

ମହୀ, ମହି, ବ. ସ୍ତ୍ରୀ. (ମହ୍-ଈ) ପୃଥିବୀ । ଯଥା—

ମହୀ କି ସହିଲେ ଏ ଘୋର ପାତକ ? ନ. କେ.

ମହୀପତି, ବ. ପୁଂ. (ମହୀ-ପତି) ରାଜା, ନୃପ ।

ମହୀକ୍ଷିତ୍, ବ. ପୁଂ. (ମହୀ-କ୍ଷି-୦) ଭୂପତି, ରାଜା ।

ମହୀଜ, ବ. ପୁଂ. (ମହୀ-ଜ) ଭୌମ, ମଙ୍ଗଳଗ୍ରହ; ନରକାସୁର । ବିଂ. ଭୂମିଜାତ ।

ମହୀଧର, ବ. ପୁଂ. (ମହୀ-ଧୃ-ଅ) ପର୍ବତ । ଯଥା—

ମେଘ ମହୀଧରେ ଯେସନ୍ତେ ଶୋହେ ହେମବୃନ୍ତ । କ. ବ.

ମହୀପ, ମହୀପାଳ, ବ. ପୁଂ. ( ମହୀ-ପ, ପାଳ ) ଭୂପତି, ରାଜା ।

ମହୀପ୍ରାଚୀର, ବ. ପୁଂ. (ମହୀ-ପ୍ରାଚୀର) ସମୁଦ୍ର ।

ମହୀଭୃକ୍, ମହୀଭୁଜ୍, ବ. ପୁଂ. ( ମହୀ-ଭୁଜ୍ ) ଭୂଭୁକ୍, ରାଜା ।

ମହୀଭୃତ୍, ବ. ପୁଂ. (ମହୀ-ଭୃ-୨) ରାଜା; ପର୍ବତ ।

ମହୀମୟ, ବିଂ. (ମହୀ-ମୟ) ମୃଣ୍ମୟ,ମୃତ୍ତିକାନିର୍ମିତ ।

ମହୀୟାନ୍, ବିଂ. (ମହତ୍-ଈୟସ୍ ) ଅତି ମହତ୍; ମହାତ୍ମା; ଉତ୍ତମ ।

ମହୀୟସୀ, ସ୍ତ୍ରୀଂ. ଅତି ମହତୀ ।

ମହୀୟମାନ, ବିଂ. (ମହ୍-ଆନ) ପୂଜ୍ୟମାନ ।

ମହୀରୁହ, ମହୀରୁଟ୍, ବ. ପୁଂ. (ମହୀ-ରୁହ,ରୁହ୍) ବୃକ୍ଷ, ଗଛ । ଯଥା—

ମହୀରୁହନବହ ପୁଷ୍ପଭୂଷଣ
ଫିଙ୍ଗିଲେ ଅଙ୍ଗ ମହୀତଳେ ତକ୍ଷଣ । କ. ବ.

ମହୀଲତା,ବ. ସ୍ତ୍ରୀ. (ମହୀ-ଲତା) କିଞ୍ଚୁଲକ,ଜିଆ ।

ମହୀସୁତ, ବ. ପୁଂ. ( ମହୀ-ସୁତ ) ମଙ୍ଗଳଗ୍ରହ; ନରକାସୁର ।

ମହୁଡ଼, ବ. (ମୁକୁଟ ଶବ୍ଦଜ) ମୁକୁଟ, ଚୂଡ଼ା, ଶିଖରଦେଶ । ଯଥା—

ଗଙ୍ଗା ବାକ୍ୟେ ତାଙ୍କୁ ଦେବ ଚନ୍ଦ୍ରଚୂଡ଼,
ବାଞ୍ଛିଲ୍ଲ ଦେବାକୁ ଉଚ୍ଚଳେ ମହୁଡ଼ । ନ. କେ.

ମହୁର, ବ. ତରକାରିବିଶେଷ ।

ମହୁରି, ବ. ପେଁକାଳି, ତୁରୀ; ନଳୀ ।

ମହେଚ୍ଛ, ବିଂ. ( ମହତ୍-ଇଚ୍ଛା ) ମହାଶୟ, ଉନ୍ନତେଚ୍ଛ, ଉଦାରସ୍ୱଭାବ ।

ମହେନ୍ଦ୍ର, ବ. ପୁଂ. (ମହତ୍-ଇନ୍ଦ୍ର, ସ୍ୱର୍ଗର ରାଜା; ପର୍ବତବିଶେଷ, ଓଡ଼ିଶା ଓ ଉତ୍ତର ସରକାର ପର୍ଯ୍ୟନ୍ତ ପରିବ୍ୟାପ୍ତ ପର୍ବତଶ୍ରେଣୀ ।

ମହେନ୍ଦ୍ରାଣୀ, ବ. ସ୍ତ୍ରୀ. (ମହେନ୍ଦ୍ର-ଆନୀ) ଇନ୍ଦ୍ରପତ୍ନୀ, ଶଚୀ ।

ମହେଳା, ମହେଳିକା, ବ. ସ୍ତ୍ରୀ. (ମହ-ଇଲା, ଇଲ, କ) ନାରୀ, ଯୋଷିତ୍ ।

ମହେଶ,ମହେଶ୍ୱର, ବ.ପୁଂ. (ମହତ୍-ଈଶ,ଈଶ୍ୱର) ମହାଦେବ, ଶିବ ।

ମହେଶ୍ୱରୀ, ବ. ସ୍ତ୍ରୀ. ( ମହେଶ୍ୱର-ଈ ) ପାର୍ବତୀ; କାଂସ୍ୟ, କଂସା ।।

ମହେଷ୍ୱାସ, ବିଂ. ( ମହତ୍-ଇଷୁ-ଅସ ) ମହା– ଧନୁର୍ଦ୍ଧର । ବ. ପୁଂ. ବୃହତ୍ ଧନୁକ ।

ମହୋକ୍ଷ, ବ. ପୁଂ. (ମହତ୍-ଉକ୍ଷନ୍) ବୃହତ୍ ବୃଷ, ମହାବୃଷଭ ।

ମହୋତ୍ପଳ,ବ. ନ. (ମହତ୍-ଉତ୍ପଳ) ବୃହତ୍ ପଦ୍ମ; ସାରସପକ୍ଷୀ ।

ମହୋତ୍ସବ, ବ. ପୁଂ. ( ମହତ୍-ଉତ୍ସବ ) ମହା ଆନନ୍ଦଜନକ ବ୍ୟାପାର ।

ମହୋଦଧି, ମହୋଦଧୀ, ବ. ପୁଂ. ( ମହତ୍- ଉଦଧି) ସମୁଦ୍ର, ମହାସମୁଦ୍ର ।

ମହୋଦୟ, ବ. ନ. ( ମହତ୍-ଉଦୟ ) କାନ୍ୟକୁବ୍ଜ ଦେଶ । ପୁଂ. ଆଧିପତ୍ୟ, କର୍ତ୍ତୃତ୍ୱ; ମୁକ୍ତି; ମୋକ୍ଷ । ବିଂ. ଅତିସମୃଦ୍ଧ; ଅଭ୍ୟୁନ୍ନତ ।

ମହୋନ୍ନତ, ବିଂ. ( ମହତ୍-ଉନ୍ନତ ) ଅତିଶୟ ଉନ୍ନତ । ବ. ପୁଂ. ମତ୍ସ୍ୟବିଶେଷ ।

ମହୋରଗ, ବ. ପୁଂ. ( ମହତ୍-ଉରଗ ) ବୃହତ୍ ସର୍ପ, ଅଜଗର । ନ. ତଗରମୂଳ ।

ମହୋଲ୍କା, ବ. ସ୍ତ୍ରୀ. (ମହତ୍-ଉଲ୍କା) ବିଦ୍ୟୁତ୍, ବୃହତ୍ ଉଲ୍କା ।

ମହୌଷଧ, ବ. ପୁଂ. ( ମହତ୍-ଔଷଧ ) ଉତ୍ତମ ଔଷଧ; ଶୁଣ୍ଠି, ପିପ୍ପଳୀ; ଲସୁନ ।

ମହୌଷଧି, ବ. ସ୍ତ୍ରୀ. ( ମହତ୍-ଔଷଧି ) ଦୂର୍ବା; ରାତିରେ ଦୀପ୍ତିଶୀଳ ତୃଣଲତାଦି ।

ମା, ଅଂ. (ମା-୦) ନିନ୍ଦା; ବିକଳ୍ପ; ନିଷେଧ । ବ. ସ୍ତ୍ରୀ. ଲକ୍ଷ୍ମୀ; ମାତା; ପରିମାଣ; ଜ୍ଞାନ; ଦୀପ୍ତି ।

ମାଇପ, ବ. ସ୍ତ୍ରୀ. (ଦେଶଜ) ଭାର୍ଯ୍ୟା, ସ୍ତ୍ରୀ, ପତ୍ନୀ ।

ମାଇଁ, ବ. ସ୍ତ୍ରୀ. ( ମାତୁଲାନୀ ଶବ୍ଦଜ ) ମାତୁଳର ସ୍ତ୍ରୀ. ମାମୁର ଭାର୍ଯ୍ୟା ।

ମାଈ, ବ. ସ୍ତ୍ରୀ. ( ଦେଶଜ ) ମାଈକିନିଆ, ସ୍ତ୍ରୀ, ମାଦୀ ।

ମାଉସୀ, ବ. ସ୍ତ୍ରୀ. ( ମାତୃସ୍ୱସୃ ଶବ୍ଦଜ ) ମାତାର ଭଗିନୀ ।

ମାଂସ, ବ. ନ. ( ମନ୍-ସ ) ପିଶିତ, ଶରୀରାଂଶ- ବିଶେଷ । ପୁଂ. କାଳ, କୀଟ ।

ମାଂସପେଶୀ, ବ. ସ୍ତ୍ରୀ. ଯେଉଁ ଯନ୍ତ୍ରଦ୍ୱାରା ଇଚ୍ଛା- ମାତ୍ରକେ ଶରୀରର ଭିନ୍ନ ଭିନ୍ନ ସ୍ଥାନରେ ସଞ୍ଚାଳନକ୍ରିୟା ସମ୍ପନ୍ନ ହୁଏ, ମାଂସପେଶୀ କେବଳ ମାଂସଗ୍ରନ୍ଥିମାତ୍ର, ମାଂସପିଣ୍ଡୀ ।

ମାଂସଭକ୍ଷ, ବିଂ. (ମାଂସ-ଭକ୍ଷ) ମାଂସାଶୀ, ମାଂସ– ଭକ୍ଷଣକାରୀ ।

ମାଂସଳ, ବିଂ. ( ମାଂସ-ଳ ) ବଳବାନ୍; ସ୍ଥୂଳ, ମୋଟା ।

ମାଂସସାର, ମାଂସସ୍ନେହ, ବ. ପୁଂ. ( ମାଂସ-ସାର, ସ୍ନେହ) ମେଦ ।

ମାଂସାଦ. ବିଂ. ( ମାଂସ-ଅଦ୍-ଅ ) ମାଂସଭୋଜୀ, ମାଂସାଶୀ ।

ମାଂସାଶୀ, ବିଂ. (ମାଂସ-ଅଶୀ) ମାଂସଭକ୍ଷକ, ଯେ ମାଂସ ଭକ୍ଷଣ କରେ ।

ମାଂସିକ, ବିଂ. ( ମାଂସ-ଇକ ) ମାଂସବିକ୍ରୟୀ, କଂସେଇ ।

ମାକଡ଼, ବ. ପୁଂ. (ମର୍କଟ ଶବ୍ଦଜ) ବାନର, କପି ।

ମାକଡ଼ସା, ବ. ଲୂତା, [illegible] ।

ମାକରୀ, ବ. ସ୍ତ୍ରୀ. ( ମକର-ଅ-ଈ ) ମାଘ ମାସର ଶୁକ୍ଳ ସପ୍ତମୀ । ବିଂ. ମକରରାଶିସମ୍ବନ୍ଧୀୟ ।

ମାକ୍ଷିକାଶ୍ରୟ, ବ. ନ. (ମାକ୍ଷିକ-ଆଶ୍ରୟ) ମଧୁଚକ୍ର, ମହମ ।

ମାଖରା, ବିଂ. ନିଖୁରା, ଶୁଖିଲା ।

ମାଖୁନ୍ଦା, ବ. ମୁଖରେ ବାଳ ନ ଥିବା ଲୋକ ।

ମାଗଣ, ବ. (ଦେଶଜ) ଭେଦା, ଗୁନ୍ଦା ।

ମାଗଣା, ବିଂ. ବିନାମୂଲ୍ୟ, ପୋଲା ।

ମାଗଧ, ବ. ପୁଂ. (ମଗଧ-ଅ) କିମ୍ବା (ମଗଧ୍-ଅ) ରାଜାମାନଙ୍କର ଓ ସୈନ୍ୟସମୂହଙ୍କର ଅଗ୍ରେ ସ୍ତୁତିପାଠକ, ବନ୍ଦୀ; ବୈଶ୍ୟର ଔରସରେ କ୍ଷତ୍ରିୟାଗର୍ଭଜାତ ଜାତିବିଶେଷ, ଭାଟ । ବିଂ. ମଗଧ ଦେଶୋତ୍ପନ୍ନ, ରାଜପୁତ୍ରୀ ।

ମାଗଧୀ, ବ. ସ୍ତ୍ରୀ. ମଗଧଦେଶଜାତ ଗଣିକା; ଯୂଥିକାପୁଷ୍ପ, ଯୁଈଫୁଲ; ଭାଷାବିଶେଷ, ମାଗଧ-ଦେଶୀୟ ଭାଷା; ରାଜପୁତ୍ରୀ ଅଲାଇଚ ।

ମାଗନ୍ତା, ବିଂ. ( ଦେଶଜ ) ମାଗୁଣିଆ, ଯାଚକ, ପ୍ରାର୍ଥକ ।

ମାଗିଖିଆ, ବିଂ. ( ଦେଶଜ ) ପୋଲାଖିଆ, ବାର-ଭୁଲା, ଉଜାଡ଼ ।

ମାଗିବା, କ୍ରି. (ଦେଶଜ) ଭିକ୍ଷା କରିବା ।

ମାଗୁଣି, ବ. (ଦେଶଜ) ପ୍ରାର୍ଥନା ।

ମାଗୁର, ବ. (ଦେଶଜ) ମତ୍ସ୍ୟବିଶେଷ ।

ମାଘ, ବ.ପୁଂ. (ମାଘୀ-ଅ) ଦଶମମାସ; ଶିଶୁପାଳବଧ କାବ୍ୟ; ନୃପବିଶେଷ; ଶିଶୁପାଳବଧ କାବ୍ୟର ରଚୟିତା କବି ।

ମାଘବତ, ମାଘୋନୀ, ବ. ସ୍ତ୍ରୀ. ( ମଘବତ୍, ମଘ ବନ୍-ଅ-ଈ, ବ=ଉ) ପୂର୍ବଦିକ୍ ।

ମାଘବନ, ବିଂ. (ମଘବନ୍-ଅ) ଇନ୍ଦ୍ରସମ୍ବନ୍ଧୀୟ ।

ମାଘ୍ୟ, ବ. ନ. (ମାଘ-ଯ) କୁନ୍ଦପୁଷ୍ପ, କୁନ୍ଦଫୁଲ । ବିଂ. ମାଘମାସଜାତ ।

ମାଙ୍କଡ଼, ବ. ( ମର୍କଟ ଶବ୍ଦଜ ) ବାନର, ମର୍କଟ, ଶାଖାମୃଗ ।

ମାଙ୍ଗ, ବ. (ଦେଶଜ) ସୀମନ୍ତ । ଯଥା—

ଏଥିରୁ ବେଶ କିହରଙ୍ଗେ, ଧାଡ଼ି ଦେଖାଇଛି ମାଙ୍ଗେ ।

ମାଙ୍ଗଳିକ, ମାଙ୍ଗଲ, ମାଙ୍ଗଲ୍ୟ, ବିଂ. ( ମଙ୍ଗଳ-ଇକ, ଅ, ଯ ) ମଙ୍ଗଳକର, ଶୁଭଜନକ ।

ମାଚିଆ, ବ. (ଦେଶଜ) ମୋଢ଼ା, ଛୋଟ ଚୌକି ।

ମାଚିର, ଅଂ. (ମା-ଚିର) ଅବିଳମ୍ବ, ଶୀଘ୍ର ।

ମାଛ, ବ. (ମତ୍ସ୍ୟ ଶବ୍ଦଜ) ମୀନ; ମଚ୍ଛ ।

ମାଛରଙ୍କା, ବ. ପୁଂ. ( ମତ୍ସ୍ୟରଙ୍କ ଶବ୍ଦଜ ) ପକ୍ଷି-ବିଶେଷ ।

ମାଛି, ବ. (ମକ୍ଷିକା ଶବ୍ଦଜ) ପତଙ୍ଗବିଶେଷ ।

ମାଛୁଆ, ବ. ( ଦେଶଜ ) କେଉଟ, ଧୀବର, ମତ୍ସ୍ୟବ୍ୟବସାୟୀ ।

ମାଜଣା, ବ.(ମାର୍ଜନା ଶବ୍ଦଜ)ମାର୍ଜନା,ଘଷିବାର ।

ମାଜିବା, କ୍ରି. (ମାର୍ଜନା ଶବ୍ଦଜ) ପରିଷ୍କାରକରିବା ।

ଯଥା—

କ୍ଷଣେ ଯଥା ଦର୍ପଣ ଦର୍ପଣେ ଥିଲେ ମାଜି ।

ମାଝି, ବ. (ଯାବନିକ) ନାଉରିଆ, ନାବିକ ।

ମାଞ୍ଜିଷ୍ଠ, ବିଂ. (ମଞ୍ଜିଷ୍ଠା-ଅ) ରକ୍ତବର୍ଣ୍ଣ, ଲୋହିତ ।

ମାଟି, ବ. (ମୃତ୍ତିକା ଶବ୍ଦଜ) ଭୂମି ।

ମାଟିଆ, ବିଂ. (ମୃତ୍ତିକା ଶବ୍ଦଜ) ମୃତ୍ତିକାଯୁକ୍ତ ବା ମୃତ୍ତିକାବର୍ଣ୍ଣ ।

ମାଟେଇବା, କ୍ରି. (ଦେଶଜ) ସ୍ଥଗିତ ହେବା, ବନ୍ଦ ହେବା ।

ମାଠ, ବ. (ଦେଶଜ) ମୋଟଲୁଗା ।

ମାଠଗୁଣା, ବ. (ଦେଶଜ) ନାସାଭରଣବିଶେଷ ।

ଯଥା—

ନାସିକାରେ ମାଠଗୁଣା, କରଇ ବଦେଇ ବଣା ।

ମାଠିଆ,ବ. (ଦେଶଜ) ଘଟ, ମୃତ୍ତିକାପାତ୍ରବିଶେଷ ।

ମାଠିବା, କ୍ରି. (ଦେଶଜ) ଚକ୍କଣ କରିବା । ଯଥା—

ଯେତେ ମାଠିରୁ ମାଠ, ମୁଁ ସେହି ଦରପୋଡ଼ା କାଠ ।

ମାଡ, ବ. (ହିନ୍ଦୀ) ପ୍ରହାର । ଯଥା—

ମାଡ଼ ମାରି ହାଡ଼ କରିବ ଚୂନା ।

ମାଡ଼ିବା, କ୍ରି. ( ଦେଶଜ ) ଚାପିବା, ଦାବିବା; ଲଚେଇବା । ଦୋଷି ଅସିବା । ଯଥା—

ଧୂମାକାରେ ଦୂରେ ପର୍ବତର ଘଇ,
ମାଡ ଅଛନ୍ତି ଜଳଚର ଘଇ ।

ଅବେଶ ହେବା । ଯଥା—

ଭବ ବଲୋଚ ହେ, କୃଷ୍ଣବର୍ଣ୍ଣ ଶେଯେ ମାଡ଼େ ଜଡ ।

ମାଢ଼, ବ. (ଦେଶଜ) ପରିମାଣବିଶେଷ, ଦଶଚନ୍ଦା ।

ମାଣ, ବ. (ପରିମାଣ ଶବ୍ଦଜ) କୁଣ୍ଡା; ୨୫ ଗୁଣ୍ଠ ଭୂମି ।

ମାଣବ, ମାଣବକ, ବ. ପୁଂ. (ମନୁ-ଅ, କ) ବାଳକ; ବ୍ରାହ୍ମଣକୁମାର; ମନୁଷ୍ୟ ।

ମାଣବ୍ୟ, ବ. ନ. (ମାଣବ-ଯ) ବାଳକସମୂହ; ଶୈଶବକାଳ ।

ମାଣିକା, ବ. ସ୍ତ୍ରୀ. ଅଷ୍ଟପଳ ପରିମାଣ ।

ମାଣିକ୍ୟ, ବ. ନ. (ମଣି-କୈ-ଯ) ରତ୍ନବିଶେଷ, ମଣି, ମାଣିକ ।

ମାଣିଗୁଣ୍ଠି, ବ. (ଦେଶଜ) ଚକ୍ରପିଣ୍ଡାଣି ଉପରେ ପଡିବା କାଠ ।

ମାଣିବନ୍ଧ, ବ. ନ. (ମଣିବନ୍ଧ-ଅ) ସୈନ୍ଧବଲବଣ ।

ମାଣିମନ୍ଥ, ବ. ନ. (ମଣି-ମନ୍ଥ୍-ଅ) ସୈନ୍ଧବଲବଣ, ସିନ୍ଧୁଜାତ ଲବଣ ।

ମାଣ୍ଡବୀ, ବ. ସ୍ତ୍ରୀ. କୁଶଧ୍ୱଜଙ୍କ କନ୍ୟା, ଭରତଙ୍କର ସ୍ତ୍ରୀ ।

ମାଣ୍ଡି, ବ. (ଦେଶଜ) ଢକଣି, ମୃଦୁଳା, ଉପାଧାନ ।

ମାଣ୍ଡିଅ, ବ. (ଦେଶଜ) ଶସ୍ୟବିଶେଷ ।

ମାଣ୍ଡୁ, ବ. (ଦେଶଜ) ହସ୍ତରେ ଧରି ନୃତ୍ୟ କରିବାର ଉପଯୋଗୀ ବାଦ୍ୟ ।

ମାଣ୍ଡୁଅ, ବ. (ଦେଶଜ) ପିଷ୍ଟକବିଶେଷ ।

ମାତଙ୍ଗ, ବ. ପୁଂ. (ମତଙ୍ଗ-ଅ) ହସ୍ତୀ । ଯଥା—

ମାତଙ୍ଗେ ମାତ୍ରନ୍ତ ପଡ଼େ, ଭୁଜଙ୍ଗେ ଘଷଇ । ଇ. ବ

ଚଣ୍ଡାଳ; ଅଶ୍ୱତ୍ଥବୃକ୍ଷ ।

ମାତଙ୍ଗୀ, ବ. ସ୍ତ୍ରୀ. ହସ୍ତିନୀ; ଦଶମହାବିଦ୍ୟାର ଅନ୍ତର୍ଗତ ନବମ ମହାବିଦ୍ୟା ।

ମାତରପିତୃ, ବ. ପୁଂ. (ମାତୃ-ପିତୃ) ମାତାପିତାଦ୍ୱୟ ।

ମାତରିଶ୍ୱା, ବ. ପୁଂ. ( ମାତରି-ଶ୍ୱି-ଅନ୍ ) ବାୟୁ, ପବନ ।

ମାତଲି; ମାତୁଲି, ବ. ପୁଂ. (ମତଲ-ଇ) ଇନ୍ଦ୍ରଙ୍କ ସାରଥି ।

ମାତବର, (ଯାବନିକ) ପ୍ରଧାନ,ମାନ୍ୟଗଣ୍ୟ ବ୍ୟକ୍ତି ।

ମାତା, ବ. ସ୍ତ୍ରୀ. (ମାନ୍-ତୃ) ଜନନୀ, ମା; ସପ୍ତମାତା, ଯଥା—ଜନନୀ, ଗୁରୁପତ୍ନୀ, ବ୍ରାହ୍ମଣୀ, ରାଜପତ୍ନୀ, ଗାଭୀ, ଧାତ୍ରୀ, ପୃଥିବୀ; ବ୍ରାହ୍ମୀ, ମାହେଶ୍ୱରୀ, ଐନ୍ଦ୍ରୀ, ବାରାହୀ, ବୈଷ୍ଣବୀ କୌମାରୀ, ଚାମୁଣ୍ଡା, ଚର୍ଚ୍ଚିକା,—ଏହି ଅଷ୍ଟଶକ୍ତି; ପୃଥିବୀ; ଗୋ; ଲକ୍ଷ୍ମୀ; ଧାତ୍ରୀ । ପୁଂ. ଜୀବ; ଆକାଶ । ବିଂ. ପ୍ରମାଣକର୍ତ୍ତା; ପରିମାଣକର୍ତ୍ତା ।

ମାତାମହ, ବ. ପୁଂ. (ମାତୃ-ଅମହ) ମାତାର ପିତା, ଅଜା ।

ମାତାମହୀ, ବ. ସ୍ତ୍ରୀ. (ମାତୃ-ଅମହୀ) ମାତାର ମାତା

ମାତିବା, କ୍ରି. (ମତ୍ତ ଶବ୍ଦଜ) ଉନ୍ମତ୍ତ ହେବା ।

ମାତୁଲ, ବ. ପୁଂ. (ମାତୃ-ଉଲ) ମାତାର ଭ୍ରାତା, ମାମୁ ।

ମାତୁଲାନୀ, ମାତୁଲୀ; ମାତୁଲା, ବ. ସ୍ତ୍ରୀ. (ମାତୁଲ-ଆନ, ଈ; ଆ) ମାତୁଳର ଭାର୍ଯ୍ୟା, ମାଇଁ ।

ମାତୁଲାହି, ବ. ପୁଂ. (ମାତୁଲ-ଅହି) ସର୍ପବିଶେଷ ।

ମାତୃକ, ବିଂ. (ମାତୃ-କ) ମାତୃସମ୍ବନ୍ଧୀୟ, ମାତୃଠାରୁ ଆଗତ ।

ମାତୃକା, ବ. ସ୍ତ୍ରୀ. (ମାତୃ-କ-ଆ) ମାତା; ଧାତ୍ରୀ; ଅ ଆ କ ଖ ପ୍ରଭୃତି ବର୍ଣ୍ଣ; ଗୌରୀ, ପଦ୍ମା, ଶଚୀ, ମେଧା, ସାବିତ୍ରୀ, ବିଜୟା, ଜୟା, ଦେବସେନା, ସ୍ୱଧା, ସ୍ୱାହା, ଶାନ୍ତି, ପୁଷ୍ଟି, ଧୃତି, ତୁଷ୍ଟି, ଆତ୍ମଦେବତା, କୁଳଦେବତା ଏହି ଷୋଡ଼ଶ ଦେବୀ; ସ୍ୱର; କରଣ ।

ମାତୃକେଶଟ, ବ. ପୁଂ. (ମାତୃ-କେଶଟ=ଭ୍ରାତା) ମାତୁଳ, ମାମୁ ।

ମାତୃନନ୍ଦନ, ବ. ପୁଂ. କାର୍ତ୍ତିକେୟ ।

ମାତୃମଣ୍ଡଳ, ବ. ନ. ନେତ୍ରଦ୍ୱୟର ମଧ୍ୟଭାଗ ।

ମାତୃମୁଖ, ମାତୃଶାସିତ, ବ. ପୁଂ. (ମାତୃ-ମୁଖ, ଶାସିତ) ମୂର୍ଖ, ଅଜ୍ଞ ।

ମାତୃଷ୍ୱସା, ମାତୃଷ୍ୱସୃ, ମାତୃସ୍ୱସା, ମାତୃସ୍ୱସୃ, ବ. ସ୍ତ୍ରୀ. (ମାତୃ-ସ୍ୱସୃ) ମାତାର ଭଗିନୀ, ମାଉସୀ ।

ମାତୃସ୍ୱସ୍ରୀୟ, ମାତୃସ୍ୱସ୍ରେୟ } ପୁଂ. ମାତୃସ୍ୱସ୍ରେୟୀ, ସ୍ତ୍ରୀ } ବ. (ମାତୃସ୍ୱସୃ-ଈୟ,ଏୟ) ମାତାର ଭଗିନୀର ପୁତ୍ର ବା କନ୍ୟା ।

ମାତ୍ର, ବ. ନ. (ମା-ତ୍ର) କେବଳ; ଅବଧାରଣ; ସାକଲ୍ୟ ।

ମାତ୍ରା, ବ. ସ୍ତ୍ରୀ. (ମାତ୍ର-ଆ) ଅଂଶ; ଅଳ୍ପ ପରିମାଣ; ଧନ; ପରିଚ୍ଛଦ; ଅଣଚାଳନାଦି; ଅକ୍ଷରାବୟବ; ବର୍ଣ୍ଣର ଉଚ୍ଚାରଣ କାଳ; ପରିମାଣ; କର୍ଣ୍ଣଭୂଷଣ; ଅବଚ୍ଛେଦ; ଇନ୍ଦ୍ରିୟବୃତ୍ତି।

ମାତ୍ରାସମକ, ବ. ନ. ଛନ୍ଦର ଉପଲକ୍ଷଣ।

ମାତ୍ରିକ, ବି. (ମାତ୍ର-ଇକ) ପ୍ରାକୃତିକ, ଭୂତାତ୍ମକ।

ମାତ୍ସର୍ଯ୍ୟ, ବ. ନ. (ମତ୍ସର-ଯ) ଅନ୍ୟଶୁଭଦ୍ୱେଷ; ପରଶ୍ରୀକାତରତା।

ମାତ୍ସ୍ୟିକ, ବି. (ମତ୍ସ୍ୟ-ଇକ) ଜାଲିକ, ମତ୍ସ୍ୟୋପଜୀବୀ।

ମାଥ, ବ. ପୁଂ. (ମଥ-ଅ) ବର୍ତ୍ମ, ପଥ; ମନ୍ଥନ; ବଧ, ହତ୍ୟା; ବିଲୋଡ଼ନ; (ମସ୍ତକ ଶବ୍ଦଜ) ମୁଣ୍ଡ। ଯଥା—

> ହସଇ ଘସଇ ସ୍ୱଚଣ ନନ୍ଦନ,
> ହା ଚୂର୍ଣ୍ଣ ସ୍ୱରେ ପୋଡଇ ମାଥ।

ମାଥୁର, ବି. (ମଥୁରା-ଅ) ମଥୁରାସମ୍ବନ୍ଧୀୟ; ମଥୁରାରୁ ଆଗତ; ମଥୁରା ଦେଶଜାତ।

ମାଦ, ବ. ପୁଂ. ( ମଦ୍-ଅ ) ହର୍ଷ; ଅହଂକାର; ମତ୍ତତା।

ମାଦକ, ବି. (ମଦ୍-ଅକ) ମତ୍ତତାଜନକ। ବ. ନିଶାଦ୍ରବ୍ୟ। ଯଥା—

> ମାଦକ ଖାଇ କାଥ ହୋଇଲେ ଭୋଳ।

ମାଦଳ; ବ. ( ମର୍ଦ୍ଦଳ ଶବ୍ଦଜ ) ମୃଦଙ୍ଗବିଶେଷ; ପଖୁ।

ମାଦୃକ, ମାଦୃଶ, ବିଂ (ଅସ୍ମଦ୍-ଦୃଶ୍-ଂ) ମତ୍ସଦୃଶ, ମତୁଲ୍ୟ।

ମାଦ୍ରୀ, ବ. ସ୍ତ୍ରୀ. ( ମଦ୍ର-ଅ-ଈ ) ପାଣ୍ଡୁରାଜାଙ୍କ କନିଷ୍ଠା ସ୍ତ୍ରୀ, ନକୁଳ ଓ ସହଦେବଙ୍କର ମାତା।

ମାଧବ, ବ. ପୁଂ. (ମା-ଧବ) ବିଷ୍ଣୁ; (ମଧୁ-ଅ) ବୈଶାଖ ମାସ; ବସନ୍ତକାଳ। ବି. ମଧୁସମ୍ବନ୍ଧୀୟ।

ମାଧବୀ, ମାଧବିକା, ବ. ସ୍ତ୍ରୀ. ଲତାବିଶେଷ; ମଧୁଶର୍କରା; କୁଟ୍ଟ; ମଦିରା; ତୁଳସୀ; ଦୁର୍ଗା; ମାଧବଙ୍କ ପତ୍ନୀ।

ମାଧୁର, ବ. ନ. ( ମଧୁ-ର-ଅ ) ମଲ୍ଲିକାପୁଷ୍ପ; (ମଧୁର-ଅ) ବି. ମଧୁରଜାତ।

ମାଧୁରୀ, ବ. ସ୍ତ୍ରୀ. (ମଧୁର-ଅ-ଈ) ମଧୁରତା, ମିଷ୍ଟତା; ଶୋଭା, ସୌନ୍ଦର୍ଯ୍ୟ। ଯଥା—

> ସ୍ୱର୍ଗୀୟ ମାଧୁରୀରେ ସଦା ସୁନ୍ଦର,
> ମହୀମଣ୍ଡଳେ କାହିଁ ତା ସମାନର। ବ. ବ.

ଉତ୍ତମତା; ଧୀରତା; ମଦ୍ୟ; ହୃଦୟଗ୍ରାହିତା।

ମାଧୁର୍ଯ୍ୟ, ବ. ନ. (ମଧୁର-ଯ) ମଧୁରତା, ମିଷ୍ଟତା; ସୌନ୍ଦର୍ଯ୍ୟ; କାବ୍ୟର ଗୁଣବିଶେଷ, ଯେଉଁ ଗୁଣ ଥିଲେ କାବ୍ୟ ଶୁଣିବାମାତ୍ରକେ ଚିତ୍ତକୁ ଦ୍ରବୀଭୂତ କରେ।

ମାଧ୍ୟନ୍ଦିନ, ବ. ନ. (ମଧ୍ୟନ୍ଦିନ-ଅ) ମଧ୍ୟାହ୍ନ; ଶୁକ୍ଳଯଜୁର୍ବେଦୀୟ ଶାଖାବିଶେଷ।

ମାଧ୍ୟସ୍ଥ୍ୟ, ବ. ନ. (ମଧ୍ୟସ୍ଥ-ଯ) ମଧ୍ୟରେ ସ୍ଥିତି, ମଧ୍ୟସ୍ଥତା; ଔଦାସୀନ୍ୟ।

ମାଧ୍ୟାକର୍ଷଣ, ବ. ପୃଥିବୀର ଯେଉଁ ଆକର୍ଷଣଯୋଗୁଁ ବାୟୁରେ ଉତ୍କ୍ଷିପ୍ତ ବସ୍ତୁ ଭୂମିରେ ପଡ଼େ, ବସ୍ତୁମାତ୍ରକେ ଏ ଗୁଣ ଅଛି ଏବଂ ତାହାଦ୍ୱାରା ସକଳ ପଦାର୍ଥ ପରସ୍ପରକୁ ଆକର୍ଷଣ କରୁଅଛି; ଏହି ଆକର୍ଷଣ ମଧ୍ୟବିନ୍ଦୁକୁ ହୁଏ ବୋଲି ଏହାର ନାମ ମାଧ୍ୟାକର୍ଷଣ। ( Gravitation )

ମାଧ୍ୟାହ୍ନିକ, ବି. (ମଧ୍ୟାହ୍ନ-ଇକ) ମଧ୍ୟାହ୍ନକାଳସମ୍ବନ୍ଧୀୟ, ମଧ୍ୟାହ୍ନକାଳୀନ ବ୍ୟାପାର।

ମାଧ୍ୱୀ, ବ. ସ୍ତ୍ରୀ. (ମଧୁ-ଅ-ଈ) ମଧୁଦ୍ୱାରା ପ୍ରସ୍ତୁତ ସୁରା; ମଦ୍ୟବିଶେଷ; ଦ୍ରାକ୍ଷା।

ମାଧ୍ୱୀକ, ବ. ନ. (ମାଧ୍ୱୀ-କ) ମଧୁ; ମଧୁଜାତ ସୁରା।

ମାନ, ବ. ନ. (ମା-ଅନ) ପରିମାଣ, ହସ୍ତାଦିଦ୍ୱାରା ପରିଚ୍ଛେଦ, ମାପ; ପରିମାଣସାଧନ ପାତ୍ର ଦଣ୍ଡାଦି; (ମନ୍-ଅ) ପୁଂ. ଅହଙ୍କାର; କୋପ; ଅଭିମାନ; ସମ୍ଭ୍ରମ; ସମ୍ମାନ, ପୂଜା।

ମାନଦଣ୍ଡ, ବ. ପୁଂ. (ମାନ-ଦଣ୍ଡ) ପରିମାଣଦଣ୍ଡ, ମାପବାଡ଼ି।

ମାନନା, ବ. ସ୍ତ୍ରୀ. ( ମାନ-ଅନ-ଆ ) ସମ୍ମାନକରଣ, ପୂଜ୍ୟକରଣ, ଆଦରକରଣ।

ମାନନୀୟ, ବିଂ. (ମାନ୍-ଅନୀୟ) ପୂଜନୀୟ, ମାନ୍ୟ ।
ମାନନୀୟା, ବିଂ. (ମାନ୍-ଅନୀୟ-ଆ) ପୂଜନୀୟା ।
ମାନବ, ବି. ପୁଂ. (ମନୁ-ଅ) ମନୁଷ୍ୟ, ପୁରୁଷ ।
ମାନବୀ, ବି. ସ୍ତ୍ରୀ. (ମନୁ-ଈ) ନାରୀ; ସ୍ୱାୟମ୍ଭୁବ ମନୁଙ୍କ କନ୍ୟା । ବିଂ. ମନୁସମ୍ବନ୍ଧୀୟ ।
ମାନବ୍ୟ, ବି. ନ. ( ମାନବ-ଯ ) ବାଳକସମୂହ; ମାନଭଞ୍ଜନ ।
ମାନମନ୍ଦିର, ବି. ଯେଉଁ ସ୍ଥାନରୁ ଗ୍ରହ ନକ୍ଷତ୍ରାଦିର ପର୍ଯ୍ୟବେକ୍ଷଣ କରାଯାଏ ( Observatory )
ମାନଯନ୍ତ୍ରୀ, ବି. ସ୍ତ୍ରୀ. (ମାନ-ଯନ୍ତ୍ର)ସମୟ ନିରୂପଣାର୍ଥ ଯନ୍ତ୍ରବିଶେଷ, ଘାମ୍ରୀ ।
ମାନସ, ବି. ନ. (ମନସ୍-ଅ) ଚିତ୍ତ, ମନଃ, ଚିତ୍ତ-ବୋଧ, ଇଚ୍ଛା, ଅଭିପ୍ରାୟ । ଯଥା—

ଯେଝା ପୁର ଯିବା ମାନସେ ନିଜ ଯାନେ ଚଢ଼ିଲେ । ଚି. ଭ.

ହିମାଳୟସ୍ଥ ସରୋବର ବିଶେଷ ।

ଗମ୍ଭୀର ଭାବସଙ୍କୁଳ ହୋଇଲା ମାନସ,
ବର୍ଷାଗମେ ହଂସେ ଯଥା ବେଢନ୍ତି ମାନସ । କ. କ.

ମାନସଜନ୍ମା, ବି. ପୁଂ. (ମାନସ-ଜନ୍ମନ୍) କନ୍ଦର୍ପ; ହଂସ । ବିଂ. ମାନସରୋବରଜାତ; ମନୋ-ଜାତ ।
ମାନସବ୍ରତ, ବି. ନ. ଅହିଂସା, ଦାନ, ସତ୍ୟ, ବ୍ରହ୍ମଚର୍ଯ୍ୟ ପ୍ରଭୃତି ।
ମାନସାଳୟ, ବି. ପୁଂ. (ମାନସ-ଆଳୟ) ହଂସ ।
ମାନସିକ, ବିଂ. (ମନସ୍-ଇକ) ଆନ୍ତରିକ, ମନୋ-ବର୍ତ୍ତୀ, ମନୋଗତ ।
ମାନସୂତ୍ର, ବି. ନ. ( ମାନ-ସୂତ୍ର ) ସ୍ୱର୍ଣ୍ଣାଦି-ନିର୍ମିତ କଟୀସୂତ୍ର, ଗୋଠ ଚନ୍ଦ୍ରହାର ପ୍ରଭୃତି ।
ମାନସୌକାଃ, ବି. ପୁଂ. (ମାନସ-ଓକସ୍ ) ହଂସ
ମାନହୀନ, ବିଂ.(ମାନ-ହୀନ) ଅସମ୍ମାନ, ମର୍ଯ୍ୟାଦା ରହିତ ।
ମାନିକା, ବି. ସ୍ତ୍ରୀ. ମଦ୍ୟ; ଏକସେର ପରିମାଣ ।
ମାନିତ, ବିଂ. (ମାନ୍-ତ) ପୂଜିତ, ସମ୍ମାନିତ ।
ମାନିନୀ, ବିଂ. (ମାନ-ଇନ୍-ଈ) ମାନବତୀ, ଅଭି ମାନଯୁକ୍ତ ।
ମାନିବା, କ୍ରି. ( ମନ୍‌ଧାତୁଜ ) ସ୍ୱୀକୃତ ହେବା; ଶୋଭା ପାଇବା । ଯଥା—

ପାଦ ଗଢିବା ବେଳକୁ, କି ମାନିଲ ସେ କାଳକୁ,
କଣ କରେ ଯାର ଗଢନ କି କରି ଦେଲା ଅଢଙ୍ଗକୁ । ବ. ଚ.

ମାନୀ, ବିଂ. ( ମାନ-ଇନ୍ ) ଅଭିମାନୀ; ମନସ୍ୱୀ, ପ୍ରଶସ୍ତମନାଃ; ମାନ୍ୟ । ପୁଂ. ସିଂହ । ନୀ=ସ୍ତ୍ରୀ, ଅଭିମାନବତୀ ।
ମାନୁଷ, ବି. ପୁଂ. (ମନୁ-ଅ, ଷ ଆଗମ) ମନୁଷ୍ୟ, ନର ।
ମାନୁଷିକ, ବିଂ. (ମନୁଷ୍ୟ-ଇକ) ମନୁଷ୍ୟକୃତ; ମନୁଷ୍ୟସମ୍ବନ୍ଧୀୟ ।
ମାନୁଷ୍ୟ, ବି. ନ. (ମାନୁଷ-ଯ) ମନୁଷ୍ୟତ୍ୱ, ମନୁଷ୍ୟର ଧର୍ମ; ମନୁଷ୍ୟ ଶରୀର ।
ମାନ୍ତ୍ରିକ, ବିଂ. (ମନ୍ତ୍ର-ଇକ) ମନ୍ତ୍ରବେତ୍ତା; ମନ୍ତ୍ରକାରକ ।
ମାନ୍ଦ୍ୟ, ବି. ନ. (ମନ୍ଦ-ଯ) ଆଳସ୍ୟ, ଜଡ଼ତା; ହାନି; ଅଳ୍ପତା; ରୋଗ, ପୀଡ଼ା; ମନ୍ଦତ୍ୱ; ବିଷାଦ ।
ମାନ୍ଧାତା, ବି. ପୁଂ. (ମାମ୍-ଧେ-ତୃ) ପ୍ରାଚୀନ ରାଜା-ବିଶେଷ, ଯୁବନାଶ୍ୱ ରାଜାର ପୁତ୍ର; ଉପାଧି-ବିଶେଷ ।
ମାନ୍ୟ, ବିଂ. (ମାନ-ଯ) ପୂଜ୍ୟ, ମାନନୀୟ; ଆଦର-ଣୀୟ ।
ମାପ, ବି. (ମା ଧାତୁଜ) ପରିମାଣ, ତୌଲ ।
ମାପତ୍ୟ, ବି. ପୁଂ. ମଦନ, କନ୍ଦର୍ପ ।
ମାପୁଣି, ବିଂ. (ଦେଶଜ)ପରିମାପକ, ପରିମାଣକାରୀ ।
ମାଫି, ବି. (ଯାବନିକ) ଛାଡ଼, ଛୁଟି ।
ମାମକୀନ, ବିଂ. (ମମ-ଈନ) ମତ୍‌ସମ୍ବନ୍ଧୀୟ, ମଦୀୟ ।
ମାମଲତ, ବି. (ଯାବନିକ) ମୋକଦ୍ଦମା ।
ମାମୁ, ବି. ପୁଂ. (ମାତୁଳ ଶବ୍ଦଜ) ମାତୁଳ, ମାତାର ଭ୍ରାତା ।
ମାୟା, ବି. ସ୍ତ୍ରୀ. (ମା-ଯ) ଶଠତା, ଚତୁରତା । ଯଥା—

ମାୟା ବିପ୍ରରୂପେ ପଶ୍ଚାତେ ଅନୁସରନ୍ତି ହରି । ଚି. ଭ.

ଇନ୍ଦ୍ରଜାଲ, କୁହକ; ମମତା, ମୋହ; ପ୍ରକୃତି, ଅବିଦ୍ୟା; ଅଜ୍ଞାନବିଶେଷ; ଭ୍ରାନ୍ତି; ଲକ୍ଷ୍ମୀ; କୃପା; ବୁଦ୍ଧମାତା ।

ମାୟାକର, ମାୟାକୃତ୍, ବିଂ. (ମାୟା-କର, କୃତ୍) ଐନ୍ଦ୍ରଜାଲିକ, ବାଜିକର; ମାୟାକାରୀ ।

ମାୟାଜାଲ, ବି. (ମାୟା-ଜାଲ) ମୋହପାଶ; ଭ୍ରମଜନକ ବ୍ୟାପାର ।

ମାୟାଦ, ବି. ପୁଂ. (ମାୟା-ଦ) କୁମ୍ଭୀର ।

ମାୟାଦେବୀସୁତ, ବି. ପୁଂ. ( ମାୟାଦେବୀ-ସୁତ ) ବୁଦ୍ଧ ।

ମାୟାପଟୁ, ବିଂ. ( ମାୟା-ପଟୁ ) ଐନ୍ଦ୍ରଜାଲିକ, କୁହକୀ; ଭ୍ରାନ୍ତିକର, ଭ୍ରାନ୍ତିଜନକ ।

ମାୟାମୋହ, ବି. ପୁଂ. ବିଷ୍ଣୁଙ୍କର ଦେହନିର୍ଗତ ଅସୁର, ମୋହକପୁରୁଷବିଶେଷ ।

ମାୟାବତୀ, ବି. ସ୍ତ୍ରୀ. କାମପତ୍ନୀ, ରତି ।

ମାୟାବିସିକ, ବିଂ. (ମାୟା-ବସ୍-ଇକ) ପ୍ରତାରକ, ପ୍ରବଞ୍ଚକ ।

ମାୟାବାନ୍, ବିଂ. (ମାୟା-ବତ୍ ) କୁହକୀ, ଐନ୍ଦ୍ରଜାଲିକ; କପଟାଚାରୀ ।

ମାୟାବୀ, ମାୟୀ, ମାୟିକ, ବିଂ. ଐନ୍ଦ୍ରଜାଲିକ, କୁହକୀ; କପଟାଚାରୀ; ମାୟାବିଶିଷ୍ଟ । ପୁଂ. ବିଡ଼ାଳ ।

ମାୟୁ, ବି. ପୁଂ. (ମି-ଉ) ଶରୀରସ୍ଥ ଧାତୁବିଶେଷ, ପିତ୍ତ ।

ମାୟୂରାଜ, ବି. ପୁଂ. କୁବେରଙ୍କ ପୁତ୍ର ।

ମାୟୂର, ବି. ନ. (ମୟୂର-ଅ) ମୟୂରସମୂହ । ବିଂ. ମୟୂରସମ୍ବନ୍ଧୀୟ ।

ମାର, ବି. ପୁଂ. (ମୃ-ଅ) ମୃତ୍ୟୁ, ମରଣ; ମାରଣ; ବଧ; କାମଦେବ; ବିଘ୍ନ ।

ମାରକ, ବି. ପୁଂ. ( ମାରି-ଅକ ) ମାରୀ; ମଡ଼କ; ବାଜପକ୍ଷୀ । ବିଂ. ହତ୍ୟାକାରୀ ।

ମାରକତ, ବିଂ. (ମରକତ-ଅ)ମରକତସମ୍ବନ୍ଧୀୟ ।

ମାରାଗ, ବି. ( ମରକ୍ତ ଶବ୍ଦଜ) ମରକତମଣି । ଯଥା—

> ଜାଳଚିର ଯହିଁ ମାରଗ ମହତ,
> ଟେକନ୍ତ ଅମ୍ବରେ ଶୈଳ ସ୍ୱର୍ଣ୍ଣଚୂଡ଼ । ବ. ବୈ.

ମାରଜାଡକ, ବି. ପୁଂ. ବଲେଇ ।

ମାରଜିତ୍, ବି. ପୁଂ. ( ମାର-ଜିତ୍ ) ବୁଦ୍ଧଦେବ; ଶିବ ।

ମାରଣ, ବି. ନ. ( ମାରି-ଅନ ) ହନନ, ବଧ, ହତ୍ୟା, ବିନାଶ ।

ମାରଣା, ବି. ( ଦେଶଜ ) ଖଣ୍ଡା, ବିଘ୍ନାପଘାତକ, ଉତ୍କାଇତ । ଯଥା—

> ହବେ ସୁନାଶୀର ଅନୁଗ୍ରହ ହେଲ ମାରଣା ଛୁଆମଣର ।

ମାରଫତ୍, ବି. (ଯାବନିକ) ଜମା, ସଙ୍ଗେ, ନିକଟ ।

ମାରାତ୍ମକ, ବିଂ. ( ମାର-ଆତ୍ମନ୍-କ ) ସାଂଘାତିକ, ପ୍ରାଣନାଶକ ।

ମାରି, ମାରୀ, ବି. ସ୍ତ୍ରୀ. ( ମାରି-ଇ ) ମଡ଼କ, ଜନକ୍ଷୟ ।

ମାରିବା, କ୍ରି. ( ମୃ ଧାତୁଜ ) ପ୍ରହାର କରିବା, ଅଘାତ କରିବା ।

ମାରିଷ, ବି. ପୁଂ. (ମୃଷ୍-ଅ) ନାଟ୍ୟୋକ୍ତିରେ ମାନ୍ୟବ୍ୟକ୍ତି; ଶାକବିଶେଷ ।

ମାରୀଚ, ବି. ପୁଂ. (ମରୀଚ-ଅ) କଶ୍ୟପ; ତାଡ଼କାରାକ୍ଷସୀର ପୁତ୍ର; ମରୀଚ ବନ, ଗୋଲମରିଚର ଗଛ; ରାଜହସ୍ତୀ । ବିଂ. ମରୀଚସମ୍ବନ୍ଧୀୟ ।

ମାରୁ, ବିଂ. (ଦେଶଜ) ଅଗ୍ରାହ୍ୟ ।

ମାରୁତ, ବି. ପୁଂ. ( ମରୁତ୍-ଅ ) ପବନ, ୪୯ଶ ପ୍ରକାର ବାୟୁ ।

ମାରୁତାତ୍ମଜ,ବି.ପୁଂ.(ମାରୁତ-ଆତ୍ମଜ) ହନୁମାନ୍; ଭୀମ ।

ମାରୁତାଶନ, ବି. ପୁଂ. ( ମାରୁତ-ଅଶନ ) ସର୍ପ, ପବନାଶନ । ବିଂ. ବାୟୁମାତ୍ରଭୋଜୀ ।

ମାରୁତି, ବି. ପୁଂ. (ମାରୁତ-ଇ) ହନୁମାନ୍; ଭୀମ ।

ମାର୍କଣ୍ଡ, ମାର୍କଣ୍ଡେୟ, ବି. ପୁଂ. (ମୃକଣ୍ଡୁ-ଅ,ଏୟ) କଳ୍ପାନ୍ତଜୀବୀ ମୁନିବିଶେଷ ।

ମାର୍ଗ, ବି. ପୁଂ. (ମାର୍ଗ୍-ଅ) ପଥ, ରାସ୍ତା; ଗୁହ୍ୟ; (ମାର୍ଗ-ଅ) ଅନ୍ୱେଷଣ; (ମାର୍ଗି-ଅ) ଅଗ୍ରହାୟଣ ମାସ; ମୃଗଶିରା ନକ୍ଷତ୍ର; (ମୃଗ୍-ଅ) ମୃଗମଦ, କସ୍ତୂରୀ । ବିଂ. ମୃଗସମ୍ବନ୍ଧୀୟ ।

ମାର୍ଗଣ, ବି. ନ. (ମାର୍ଗ୍-ଅନ) ପ୍ରାର୍ଥନା, ଯାଚ୍ଞା; ଅନ୍ୱେଷଣ, ଅନୁସନ୍ଧାନ; ପ୍ରଣୟ । ପୁଂ. ବାଣ, ଶର । ବିଂ. ଯାଚକ; ପ୍ରାର୍ଥିତ; ଯାଚକ । ଯଥା--

କୃପଣ ମାର୍ଗଣଠାରେ ଅଚରଣ ବଳ ପ୍ରାପ୍ତେ ବୋଧ ପ୍ରବଳ । ବି. ଚି.

ମାର୍ଗଧେନୁ, ବି. ପୁଂ. ଯୋଜନ ପରିମାଣ, ଚାରି କ୍ରୋଶ ।

ମାର୍ଗବିଦ୍ୟା, ବି. ସ୍ତ୍ରୀ. ସଙ୍ଗୀତବିଦ୍ୟା; ପଥନିର୍ମାଣାଦି ଅଭିଜ୍ଞତା ବିଦ୍ୟା ।

ମାର୍ଗଶିର, ମାର୍ଗଶୀର୍ଷ, ବି. ପୁଂ. (ମାର୍ଗଶିରା, ମାର୍ଗଶୀର୍ଷୀ-ଅ) ଅଗ୍ରହାୟଣ ମାସ; ପ୍ରଥମ ମାସ ।

ମାର୍ଗିକ, ବିଂ. ( ମୃଗ-ଇକ ) ମୃଗହତ୍ୟାକାରୀ; (ମାର୍ଗ-ଇକ) ପଥିକ, ପାନ୍ଥ ।

ମାର୍ଗିତ, ବିଂ. (ମାର୍ଗ୍-ତ) ଅନ୍ୱିଷ୍ଟ; ଗବେଷିତ, ଅନ୍ୱେଷିତ, ଯାହା ଅନୁସନ୍ଧାନ କରି ଯାଇଅଛି ।

ମାର୍ଗ୍ୟ, ବିଂ. (ମୃଜ୍-ଯ) ମାର୍ଜନୀୟ; ( ମାର୍ଗ୍-ଯ ) ଅନ୍ୱେଷଣୀୟ, ଗବେଷଣୀୟ ।

ମାର୍ଜ, ବି. ପୁଂ. ( ମୃଜ୍-ଅ ) ମାର୍ଜକ; ରଜକ, ଧୋବା; ବିଷ୍ଣୁ ।

ମାର୍ଜନ, ବି. ନ. ( ମୃଜ୍-ଅନ ) ପରିଷ୍କରଣ, ପ୍ରକ୍ଷାଳନ, ମାଜିବା, ପୋଛିବା; ଦୋଷ କ୍ଷାଳନ; ଧ୍ୱନି ।

ମାର୍ଜନୀ, ବି. ସ୍ତ୍ରୀ. (ମୃଜ୍-ଅନ-ଈ) ବ୍ରୁସ୍; ଝାଡ଼ୁଣୀ ।

ମାର୍ଜନୀୟ, ବିଂ. (ମୃଜ୍-ଅନୀୟ) ମାର୍ଜନର ଯୋଗ୍ୟ ।

ମାର୍ଜାର, ବି. ପୁଂ. (ମୃଜ୍-ଆର) ବିଲେଇ; ରକ୍ତଚନ୍ଦନ ।

ମାର୍ଜାରକ, ମାର୍ଜାରକଣ୍ଠ, ବି. ପୁଂ. ମୟୂର, ଶିଖୀ ।

ମାର୍ଜାରକର୍ଣ୍ଣୀ, ମାର୍ଜାରକର୍ଣ୍ଣିକା, ବି. ସ୍ତ୍ରୀ (ମାର୍ଜାରକର୍ଣ୍ଣ-ଈ, କ-ଆ) ଦେବୀବିଶେଷ, ଚାମୁଣ୍ଡାଦେବୀ ।

ମାର୍ଜାରୀୟ, ବି. ପୁଂ. ( ମାର୍ଜାର-ଈୟ ) ବିଲେଇ; ଶୂଦ୍ର; କାୟଶୋଧନ, ଶରୀରପରିଷ୍କରଣ ।

ମାର୍ଜିତ, ବିଂ. ( ମୃଜ୍-ତ ) ପ୍ରକ୍ଷାଳିତ, ପରିଷ୍କୃତ, ମାଜିତ, ନିର୍ଦ୍ଦୋଷୀକୃତ ।

ମାର୍ତ୍ତଣ୍ଡ, ବି. ପୁଂ. (ମୃତଣ୍ଡ-ଅ) ସୂର୍ଯ୍ୟ; ଶୂକର, ଅର୍କବୃକ୍ଷ ।

ମାର୍ତ୍ତିକ, ବିଂ. (ମୃତ୍ତିକା-ଅ) ମୃତ୍ତିକାନିର୍ମିତ । ବି. ପୁଂ. ଶରାବ, ଶରା ।

ମାର୍ଦ୍ଦଙ୍ଗ, ବି. ନ. (ମୃଦଙ୍ଗ-ଅ) ପତ୍ତନ, ନଗର, ସହର । ବିଂ. ମୃଦଙ୍ଗବାଦକ ।

ମାର୍ଦ୍ଦଙ୍ଗିକ, ବିଂ. (ମୃଦଙ୍ଗ-ଇକ) ମୃଦଙ୍ଗବାଦକ ।

ମାର୍ଦ୍ଦବ, ବି. ନ. (ମୃଦୁ-ଅ) ପରର ଦୁଃଖ ଦେଖି ଯାହାର ମାନସିକ ପୀଡ଼ା ଜନ୍ମେ; ମୃଦୁତ୍ୱ, କୋମଳତ୍ୱ । ପୁଂ. ବର୍ଣ୍ଣସଙ୍କର ଜାତିବିଶେଷ ।

ମାର୍ଷ, ବି. ପୁଂ. (ମୃଷ୍-ଅ) ମାରିଷ; ମାନ୍ୟବ୍ୟକ୍ତି ।

ମାଲ, ବି. ପୁଂ. ( ମା-ଲା-ଅ ) ବିଷ୍ଣୁ; ମନୁଷ୍ୟ; ଅସଭ୍ୟଜାତିବିଶେଷ; ମେଦିନୀପୁର ପ୍ରଦେଶରେ ମାଲଭୂମି । ପୁଂ. ନ. ଉନ୍ନତକ୍ଷେତ୍ର । ନ. କାପଟ୍ୟ, ଛଳନା; ବନ; ସମୂହ । ଯଥା—

ବାରଜାମଣ୍ଡଳେ ଯେତେ ବାରପତ୍ନୀ,
ପୂଗମାଳେ ସନ୍ଧି ଜଡ଼େ ନାଗବଲ୍ଲୀ । ଲ. ଦେ.

ମାଲ, ବି. (ମଲ୍ଲଶବ୍ଦଜ) ଧନ; ବୀର, ବାହୁଯୋଦ୍ଧା ।

ମାଲକ, ବି. ପୁଂ. (ମାଳା-କ) ନିମ୍ବବୃକ୍ଷ, ନିମଗଛ । ନ. ସ୍ଥଳପଦ୍ମ; ନାରିକେଳର ମାଳ । କା, ଲିକା=ସ୍ତ୍ରୀ. ମାଳ୍ୟ ।

ମାଲଖାନା, ବି. (ଯାବନିକ) ଖଜଣାଖାନା ।

ମାଲଗୁଜାରି, ବି. (ଯାବନିକ) ଖଜଣା, ସରକାରୀ, କର ।

ମାଲତୀ, ବି. ସ୍ତ୍ରୀ (ମାଲ-ଅତ୍-ଅ-ଈ) ମାଲତୀପୁଷ୍ପ, ଜାତୀଲତା; ଛନ୍ଦୋବିଶେଷ; ନଦୀବିଶେଷ; ଚନ୍ଦ୍ରିକା; ଯୁବତୀ; ଜଣା, ରାତ୍ରି ।

ମାଲତୀମାଧବ, ବି. ପୁଂ. ଭବଭୂତିପ୍ରଣୀତ ନାଟକବିଶେଷ ।

ମାଲପା, ବି. (ଦେଶଜ) ତୈଳ, ତେଲ, ମଅଦିତ୍ୱ ।

ମାଲପାପଡ଼, ବି. (ଦେଶଜ) ତେଲଭଣ୍ଡ ।

ମାଲୟ୍ୟ, ବ. ପୁଂ. (ମଳୟ୍ୟ-ଅ) ଚନ୍ଦନବୃକ୍ଷ । ବିଂ. ମଳୟ୍ୟସମ୍ବନ୍ଧୀୟ; ଦେଶବିଶେଷ ।

ମାଳବ, ବ. (ମାଲ-ବା-ଅ) ରାଜ୍ୟବିଶେଷ,ଅବନ୍ତୀ ଦେଶ । ଯଥା—

ମାଳବେ ଭ୍ରମରରୁ ସେବନ କର,
ଏଢାଳେ ବଦେଶ ର ସେବନ କର । ପ୍ରେ. ସୁ.

ମାଲସ, ବ. (ଯାବନିକ) ଘର୍ଷଣ, ଲେପନ ।

ମାଳା, ମାଳିକା, ବ. ସ୍ତ୍ରୀ. ( ମା-ଲା-ଅ, ଅ, କ ଯୋଗରେ ମାଳିକା) ଶ୍ରେଣୀ, ଧାଡ଼ି । ଯଥା—

ତରକା ଲହରୀ-ମାଳକା ଭେଦ ଗିରି ଭର୍ତୃଁର ।

ମାଲ୍ୟ; ସମୂହ; ଛନ୍ଦୋବିଶେଷ ।

ମାଲାକାର,ବ. ପୁଂ. (ମାଲା-କାର) ଜାତିବିଶେଷ, ମାଳି । ବିଂ. ମାଲ୍ୟନିର୍ମାଣକାରୀ ।

ମାଲି,ବ. ପୁଂ. ରାକ୍ଷସବିଶେଷ,ସୁକେଶ ରାକ୍ଷସ ପୁତ୍ର ।

ମାଲିକ, ବ. ପୁଂ. ପ୍ରଭୁ, ସ୍ୱାମୀ; ମାଲାକାର ଜାତି, ମାଳି; ରଜକ; ପକ୍ଷିବିଶେଷ । ବିଂ. ମାଲ୍ୟକାର ।

ମାଲିକାନା, ବିଂ.(ଯାବନିକ) କର୍ତ୍ତୃତ୍ୱ ଧନବିଶେଷ ।

ମାଲିନୀ, ବ. ସ୍ତ୍ରୀ. ଦୁର୍ଗା; ମନ୍ଦାକିନୀ, ସ୍ୱର୍ଗଗଙ୍ଗା; ନଦୀବିଶେଷ; ଚମ୍ପାନଗରୀ, ମାଲାକାର ପତ୍ନୀ; ଛନ୍ଦୋବିଶେଷ; ମାତୃକାଭେଦ; ଅଗ୍ନିଶିଖାବୃକ୍ଷ ।

ମାଲିନ୍ୟ, ବ.ନ. (ମଳିନ-ଯ) ମଳିନତା,ମଇଳା ।

ମାଳୀ,ବ.ପୁଂ. ( ମାଲା-ଇନ୍ ) ମାଲାକାର, ପୁଷ୍ପାଜୀବ; କଣ୍ଠାଭରଣବିଶେଷ । ଯଥା—

କଣ୍ଠେ ସୁନାକଣ୍ଠି ମାଳୀ, ପ୍ରବାଳେ ହୋଇଛି ଝଳ ଯେ ।

ବିଂ. ମାଲାଯୁକ୍ତ, ମାଲ୍ୟଧାର ।

ମାଲୁଅ, ବ. (ଦେଶଜ) କନ୍ଦଜାତି ।

ମାଲୁଣୀ, ବ. ସ୍ତ୍ରୀ. ମାଲାକାରର ସ୍ତ୍ରୀ ।

ମାଲୁମ, ବ. (ଯାବନିକ) ଗୋଚର,ଜଣା,ଜ୍ଞାତ ।

ମାଲୂର, ବ. ପୁଂ. ( ମା-ଲା-ଉର ) ବିଲ୍ୱବୃକ୍ଷ; କପିତ୍ଥ ଗଛ । ନ. ଶ୍ରୀଫଳ ।

ମାଲେୟ, ବିଂ. (ମାଳା-ଏୟ) ମାଳାସମ୍ବନ୍ଧୀୟ ।

ମାଲୋପମା,ବ. ସ୍ତ୍ରୀ. (ମାଲା-ଉପମା) ଯେଉଁଠାରେ ଏକ ଉପମେୟର ବହୁତ ଉପମାନ ଦେଖାଯାଏ ।

ମାଲ୍ୟ,ବ. ନ. (ମାଲା-ଯ) ପୁଷ୍ପ; ଫୁଲମାଳ; ମାଳା, ଶିରୋମାଳା ।

ମାଲ୍ୟବାନ୍, ବ. ପୁଂ. (ମାଲ୍ୟ-ବତ୍) ପର୍ବତବିଶେଷ । ରାକ୍ଷସବିଶେଷ । ବିଂ. ମାଲାବିଶିଷ୍ଟ,ହାରଯୁକ୍ତ ।

ମାଶବ୍ଦିକ, ବିଂ. (ମା-ଶବ୍ଦ-ଇକ) ନିଷେଧକର୍ତ୍ତା, ପ୍ରତିଷେଧକ, ନିବାରକ ।

ମାଶୁଲ, ବ. (ଆରବୀ ମହସୂଲ ଶବ୍ଦଜ) କୌଣସି ଚିଠି ବା ଦ୍ରବ୍ୟାଦିର ବହନ ନିମିତ୍ତ ଯେ ଶୁଳ୍କ ଦିଆଯାଏ ।

ମାସ୍, ବ. ପୁଂ. (ମା-ଅସ୍-୦) ଚନ୍ଦ୍ର; ମାସ ।

ମାସ, ବ. ପୁଂ. ( ମାସ୍-ଅ ) ଶୁକ୍ଳ କୃଷ୍ଣ ଉଭୟ ପକ୍ଷାତ୍ମକ କାଳ, ବୈଶାଖାଦି ଦ୍ୱାଦଶ ।

ମାସଜ୍ଞ, ବିଂ. (ମାସ-ଜ୍ଞ) ମାସଜ୍ଞାତା ।

ମାସବୃଦ୍ଧି, ବ. ସ୍ତ୍ରୀ. ( ମାସ-ବୃଦ୍ଧି ) ଅଧିମାସ, ମଳମାସ ।

ମାସମାନ, ବ. ପୁଂ. (ମାସ-ମାନ) ସମ୍ବତ୍ସର,ବର୍ଷ ।

ମାସାନ୍ତ, ବ. ପୁଂ. ( ମାସ-ଅନ୍ତ ) ସଙ୍କ୍ରାନ୍ତିର ପୂର୍ବ ଦିବସ ।

ମାସୁଲ, ବ. (ଯାବନିକ) ଶୁଳ୍କସ୍ୱ, କର ।

ମାସ୍ତୁଲ, ବ. ଜାହାଜର ଉପରିସ୍ଥ ଉଚ୍ଚସ୍ତମ୍ଭ ।

ମାହାତ୍ମ୍ୟ, ବ. ନ. ( ମହାତ୍ମନ୍-ଯ ) ପ୍ରଭାବ, ଗୌରବ, କ୍ଷମତା, କୀର୍ତ୍ତି ।

ମାହାଲି, ବ. ଗୋହିରି, ପାଣିନାଳ ।

ମାହାରୀ, ବ. ଦେବତା ସ୍ଥାନର ନର୍ତ୍ତକୀବିଶେଷ

ମାହାଲ, ବ. (ଦେଶଜ) ବୃକ୍ଷବିଶେଷ ।

ମାହାଲିଆ, ବିଂ. ଅକାରଣ, ବୃଥା, ମିଥ୍ୟା ।

ମାହିଷିକ, ବ. ପୁଂ. ( ମହିଷୀ-ଇକ ) ମହିଷୀପତି, ବ୍ୟଭିଚାରିଣୀର ସ୍ୱାମୀ ।

ମାହିଷ୍ମତୀ, ବ. ସ୍ତ୍ରୀ. ଶିଶୁପାଳ ପୁରୀ, ନର୍ମଦାନଦୀତୀରସ୍ଥ ନଗରବିଶେଷ ।

ମାହିଷ୍ୟ, ବ. ପୁଂ. (ମହିଷୀ-ଯ) ବୈଶ୍ୟା ଗର୍ଭରେ କ୍ଷତ୍ରିୟଔରସଜାତ ଜାତି ।

ମାହୁନ୍ତ,ବ. ପୁଂ. (ମହାମାତ୍ର ଶବ୍ଦଜ) ହସ୍ତିଚାଳକ । ଯଥା—

ମାତଙ୍ଗେ ମାହୁନ୍ତ ପଡ଼େ ତୁରଙ୍ଗେ ରାଉତ । ବ ବ

ମାହେନ୍ଦ୍ର, ବ. ପୁଂ. (ମହେନ୍ଦ୍ର-ଅ) ଶୁଭଯୋଗ । ସ୍ତ୍ରୀ. ଇନ୍ଦ୍ରାଣୀ । ବଂ. ଇନ୍ଦ୍ରସମ୍ବନ୍ଧୀୟ ।

ମାହେଶ୍ୱର, ବ. ପୁଂ. ( ମହେଶ୍ୱର-ଅ ) ଶିବୋପାସକ । ସ୍ତ୍ରୀ. ଦୁର୍ଗା ।

ମିଛ, ବ.ନ. ( ମିଥ୍ୟା ଶବ୍ଦଜ) ଅସତ୍ୟ,ଅନୃତ । ଯଥା—

ସଣ ଦେଉଛୁଁ କହୁ ନାହୁଁ ତ ସଙ୍ଗେ,
ପଞ୍ଚଣସଙ୍ଗୀ କହୁଥାଉ କ ମିଛେ ।

ମିଛୁଆ, ବଂ. ( ମିଥ୍ୟା ଶବ୍ଦଜ ) ମିଥ୍ୟାବାଦୀ, ଅସତ୍ୟବାଦୀ ।

ମିଣ୍ଟାଇବାର, ବ. ( ଦେଶଜ ) ନଷ୍ଟାଦନ । କ୍ରି. ଦୂର କରିବା । ଯଥା—

ବଣାମେ ମିଣ୍ଟାଉ ଶ୍ରମ ଚଳୁଚଲେ ।

ମିଠା, ବ. ( ମିଷ୍ଟ ଶବ୍ଦଜ) ମିଷ୍ଟ, ସୁସ୍ୱାଦୁ, ମଧୁର, ସୁରସ ।

ମିଠାଇ, ବ. ( ମିଷ୍ଟାନ୍ନ ଶବ୍ଦଜ ) ମିଷ୍ଟାନ୍ନ, ମିଷ୍ଟଦ୍ରବ୍ୟ ।

ମିଣିପ, ବ. (ଦେଶଜ) ପୁରୁଷ ।

ମିତ, ବଂ. (ମା-ତ) ଅଳ୍ପ, ପରିଚ୍ଛିନ୍ନ; ପରମିତ; ଜ୍ଞାତ; ଅନୁମିତ; ସଂସ୍ଥିତ; ଶବ୍ଦିତ; କ୍ଷିପ୍ତ; (ଦେଶଜରେ ମିତ ଶବ୍ଦଜ) ମିତ ।

ମିତଙ୍ଗମ, ବ.ପୁଂ. ( ମିତ-ଗମ୍-ଅ) ମା-ସ୍ତ୍ରୀ.ହସ୍ତୀ, ହସ୍ତିନୀ । ବଂ. ପରମିତଗାମୀ, ମୃଦୁଗାମୀ ।

ମିତଭାଷୀ, ବଂ. (ମିତ-ଭାଷୀ) ଯେଉଁ ବ୍ୟକ୍ତି ଅଳ୍ପ କଥା କହନ୍ତି ।

ମିତମ୍ପଚ, ବଂ. ( ମିତ-ପଚ-ଅ ) ପରମିତ ପାକକର୍ତ୍ତା; ବ୍ୟୟକୁଣ୍ଠ, କୃପଣ ।

ମିତବ୍ୟୟୀ, ବଂ. ( ମିତ-ବ୍ୟୟିନ୍ ) ଅଳ୍ପବ୍ୟୟୀ, ଯେ ପରମିତରୂପେ ବ୍ୟୟ କରେ ।

ମିତାର୍ଥ, ବ. ପୁଂ. ( ମିତ-ଅର୍ଥ ) ପରମିତଭାଷୀ କାର୍ଯ୍ୟନର୍ବାହକ ଦୂତ ।

ମିତାଶନ, ବଂ. (ମିତ-ଅଶନ) ପରମିତଭୋଜୀ ।

ମିତାକ୍ଷରା, ବ. ସ୍ତ୍ରୀ. ସ୍ୱନାମପ୍ରସିଦ୍ଧ ସ୍ମୃତିଗ୍ରନ୍ଥବିଶେଷ ।

ମିତି,ବ.ସ୍ତ୍ରୀ. (ମା-ତି) ପରମାଣ; ଜ୍ଞାନ; ଅବଚ୍ଛେଦ; ପରିଚ୍ଛେଦ; (ମି=କ୍ଷେପଣକରିବା-ତି) କ୍ଷେପଣ ।

ମିତ୍ର, ବ. ନ. ( ମିଦ୍-ତ୍ର ) ବନ୍ଧୁ, ସଖା, ସୁହୃତ୍ (ମି=କ୍ଷେପଣ କରିବା-ତ୍ର) ବ. ପୁଂ. ସୂର୍ଯ୍ୟ । ବଂ. ସ୍ନିଗ୍ଧ ।

ମିତ୍ରତା, ସ୍ତ୍ରୀ. } ବ. (ମିତ୍ର-ତା, ତ୍ୱ) ସୌହାର୍ଦ୍ଦ,
ମିତ୍ରତ୍ୱ, ନ. } ବନ୍ଧୁତ୍ୱ; ସଙ୍ଗ ।

ମିତ୍ରୟୁ,ବଂ.(ମିତ୍ର-ଯା-ଉ) ମିତ୍ରବତ୍ସଳ, ମିତ୍ରପ୍ରିୟ ।

ମିତ୍ରାକ୍ଷର, ପଦ୍ୟର ପ୍ରତ୍ୟେକ ଚରଣର ଯେଉଁ ସାମଞ୍ଜସ୍ୟ ଥାଏ ।

ମିଥଃ, ଅଂ (ମିଥସ୍, ମିଥ-ଅସ୍) ଅନ୍ୟୋନ୍ୟ, ପରସ୍ପର; ଗୋପନରେ ।

ମିଥି, ବ. ପୁଂ. ନିମିରାଜପୁତ୍ର, ଜନକରାଜ ।

ମିଥିଳା, ବ. ସ୍ତ୍ରୀ. (ମିଥ-ଇଲ-ଆ) ଜନକରାଜାର ପୁରୀ, ତିହୁତ ।

ମିଥୁନ, ବ. ନ. (ମିଥ-ଉନ୍) ସ୍ତ୍ରୀପୁରୁଷ ଯୁଗଳ, ଯୁଗଳ; ତୃତୀୟରାଶି; ସ୍ତ୍ରୀ ସଂସର୍ଗ; ମିଳନ, ସଂଯୋଗ ।

ମିଥ୍ୟା, ଅଂ (ମିଥ୍-ଯ-ଆ) ଅସତ୍ୟ, ଅନୃତ, ମିଛ, ବୃଥା, ନିରର୍ଥକ; କାଳ୍ପନିକ ।

ମିଥ୍ୟାଦୃଷ୍ଟି, ବ. ସ୍ତ୍ରୀ. ( ମିଥ୍ୟା-ଦୃଷ୍ଟି ) ଯଜ୍ଞାଦି ସତ୍କର୍ମାନୁଷ୍ଠାନଜନିତ ସୁଖଭୋଗ ଅସ୍ୱୀକରଣ; ନାସ୍ତିକତା; ଅସତ୍ୟ ଦର୍ଶନ ।

ମିଥ୍ୟାନିରଧନ, ବ. ନ. ଶପଥ, ଋଣ, ଦ୍ରବ୍ୟ ।

ମିଥ୍ୟାଭିଶଂସନ, ବ. ନ. ( ମିଥ୍ୟା-ଅଭିଶଂସନ ) ଅଭିଶାପ, ମିଥ୍ୟା ଦୋଷାରୋପ ।

ମିଥ୍ୟାମତି, ବ. ସ୍ତ୍ରୀ. (ମିଥ୍ୟା-ମତି) ଅସତ୍ୟରୁଚି, ମିଥ୍ୟାଜ୍ଞାନ, ଭ୍ରାନ୍ତି ।

ମିଥ୍ୟାବାଦୀ, ବଂ. ( ମିଥ୍ୟା-ବଦ୍-ଇନ୍ ) ଯେ ବାରମ୍ବାର ମିଥ୍ୟା କହେ ।

ମିଥ୍ୟୋତ୍ତର,ବ. ନ. (ମିଥ୍ୟା-ଉତ୍ତର) ଚତୁଷ୍ପ୍ରକାର ଉତ୍ତର ଅନ୍ତର୍ଗତ ଉତ୍ତରବିଶେଷ ।

ମିଦ୍ଧ,ବ. ନ. ଆଳସ୍ୟ; ତନ୍ଦ୍ରା, ନିଦ୍ରାଳୁତା; ଜଡ଼ତା ।

ମିନତି, ବଂ. ବିନତି, ବିନୟବଚନ । ଯଥା—

ବୃଥା ହେଉ ଏତେ ମିନତି ଏତେ ଚାଟୁବଚନ ।

ମିମନ୍ତିଷା, ବ. ସ୍ତ୍ରୀ. (ମିମନ୍ତ୍ରଷ-ଆ) ମନ୍ତ୍ରନା କରିବାପାଇଁ ଇଚ୍ଛା; ହନନେଚ୍ଛା ।

ମିମିକ୍ଷା, ବ. ସ୍ତ୍ରୀ. (ମିହ୍-ସନ୍-ଆ) ପ୍ରସ୍ରାବକରଣେଚ୍ଛା, ମୂତ୍ରତ୍ୟାଗେଚ୍ଛା ।

ମିଳନ, ବ. ନ. (ମିଲ୍-ଅନ) ମିଶ୍ରଣ, ସଂଯୋଗ, ଐକ୍ୟ; ସିକ୍ତିକରଣ; ସ୍ପର୍ଶନ; ଘଟନ; ସାଦୃଶ; ଔପମ୍ୟ; ମିତ୍ରାକ୍ଷର; ସାକ୍ଷାତ୍ ।

ମିଳିମିଳା, ବ. ରୋଗବିଶେଷ ।

ମିଳାଇବା, କ୍ରି. ମିଶାଇବା, ଯୋଡ଼ିବା ।

ମିଳିତ, ବଂ. ( ମିଲ୍-ତ ) ଏକତ୍ରିତ, ସଂଯୁକ୍ତ, ମିଶ୍ରିତ; ସମ୍ବନ୍ଧବିଶିଷ୍ଟ; ପ୍ରାପ୍ତ ।

ମିଳିନ୍ଦ, ବ. ପୁଂ. ଭ୍ରମର । ଯଥା—

ପଦ୍ମାବନ୍ଧୁ ଉଦ ମିଳିନ୍ଦେ ଯେସନେ ମୁକୁଳିତ ବୃନ୍ତଶାଖେ ।
ଯ. କେ.

ମିଶାଣ, ବ. (ମିଶ୍ର ଶବ୍ଦଜ) ମିଳନ, ଏକତ୍ରୀକରଣ ।

ମିଶିବା, କ୍ରି. ( ମିଶ୍ର ଶବ୍ଦଜ ) ଏକତ୍ରିତ ହେବା; କଡ଼ିତ ।

ମିଶ୍ର, ବଂ. (ମିଶ୍ର୍-ଅ) ମିଳିତ, ସଂଯୁକ୍ତ; ଉପାଧିବିଶେଷ; ଗଜଜାତିବିଶେଷ; ମାନ୍ୟ, ପୂଜ୍ୟ ।

ମିଶ୍ରକ, ବ. ନ. ( ମିଶ୍ର-କ ) ଦେବୋଦ୍ୟାନ, ଦେବତାମାନଙ୍କର ଉପବନ; ସଙ୍ଗୀତବିଶେଷ । ବଂ. ମିଶ୍ରକାରୀ ।

ମିଶ୍ରକବନ, ବ. ନ. ( ମିଶ୍ରକ-ବନ ) ଇନ୍ଦ୍ରଙ୍କ ଉପବନ, ନନ୍ଦନକାନନ ।

ମିଶ୍ରଣ, ବ. ନ. ( ମିଶ୍ର-ଅନ ) ମିଳନ, ଯୋଗ, ଐକ୍ୟ, ମିଶାଣ, ସଙ୍କଳନ ।

ମିଶ୍ରପଦାର୍ଥ, ବ. ଯେଉଁ ମୂଳ ପଦାର୍ଥ ଭିନ୍ନ ଭିନ୍ନ ପ୍ରକୃତିର ପରମାଣୁ ଯୋଗେ ଉତ୍ପନ୍ନ ହୁଏ ।

ମିଶ୍ରିତ, ବଂ. (ମିଶ୍ର-ତ) ମିଳିତ, ଯୁକ୍ତ, ଏକତ୍ରିତ ।

ମିଶ୍ରିତା, ବ. ସ୍ତ୍ରୀ. କୃତ୍ତିକା ଏବଂ ବିଶାଖାନକ୍ଷତ୍ରଯୁକ୍ତ ସଙ୍କ୍ରାନ୍ତିବିଶେଷ ।

ମିଶ୍ରେୟା, ବ. ସ୍ତ୍ରୀ. ( ମିଶ୍ର-ଇ-ୟ-ଆ ) ମଧୁରିକା; ଶତପୁଷ୍ପା ।

ମିଷ, ବ. ନ. (ମିଷ୍-ଅ) ଛଳ, କପଟତା; ଈର୍ଷା; ଦର୍ଶନ । ପୁଂ. ସ୍ପର୍ଦ୍ଧନ, ପ୍ରତିଯୋଗିତା; ସେଚନ ।

ମିଷ୍ଟ, ବଂ. (ମିଷ୍-ତ) ମଧୁର, ସୁସ୍ୱାଦ; ସୁମଧୁର; ସିକ୍ତ; ସ୍ପର୍ଦ୍ଧାଯୁକ୍ତ; ସମ୍ପ୍ରୋକ୍ଷିତ । ବ. ପୁଂ. ମଧୁରରସ । ନ. ମିଷ୍ଟାନ୍ନ ।

ମିଷ୍ଟତା, ବ. ସ୍ତ୍ରୀ. (ମିଷ୍ଟ-ତା) ମାଧୁର୍ଯ୍ୟ, ମଧୁରତା ।

ମିଷ୍ଟାନ୍ନ, ବ. ନ. ( ମିଷ୍ଟ-ଅନ୍ନ ) ମଧୁରଦ୍ରବ୍ୟ, ସୁସ୍ୱାଦୁ ବସ୍ତୁ, ମିଠେଇ ।

ମିଶରଦେଶ, ବ. ଅଫ୍ରିକା ମହାଦେଶର ଅନ୍ତର୍ଗତ ଦେଶବିଶେଷ ।

ମିସଲ, ବ. (ଯାବନିକ) ରାଜଦରବାର ।

ମିସି, ମେଶି, ମିଷି, ବ. ସ୍ତ୍ରୀ. ( ମସ୍=ପରିମାଣ କରିବା-ଇ, ଅ=ଇ) ଜଟାମାଂସୀ; ଜଗୁଣ୍ଠି; ଶତପୁଷ୍ପା ।

ମିହିକା, ବ. ସ୍ତ୍ରୀ. ( ମିହ-ଅକ-ଆ) ନୀହାର, ହିମ, ତୁଷାର ।

ମିହିର, ବ. ପୁଂ. ( ମିହ୍-ଇର) ସୂର୍ଯ୍ୟ, ଅର୍କବୃକ୍ଷ; ମେଘ; ବାୟୁ, ଚନ୍ଦ୍ର; ମୁନିବିଶେଷ; ବରରୁଚିପୁତ୍ର; ବିକ୍ରମାଦିତ୍ୟଙ୍କ ନବରତ୍ନାନ୍ତର୍ଗତ ରତ୍ନବିଶେଷ; ବରାହମିହିର ।

ମିହିରାଣ, ବ. ପୁଂ. ( ମିହିର-ଅନ୍-ଅ) ଶିବ, ମହାଦେବ ।

ମୀଢ଼, ବଂ. (ମିହ-ତ ) ମୂତ୍ରିତ, କୃତପ୍ରସ୍ରାବ ।

ମୀଢ୍ୱାନ୍, ବ. ପୁଂ. ( ମିହ-ବସ୍ ) ଶିବ ।

ମୀନ, ବ. ପୁଂ. ( ମୀ-ନ ) ମତ୍ସ୍ୟ; ରାଶିବିଶେଷ; ବିଷ୍ଣୁଙ୍କର ଅବତାରବିଶେଷ ।

ମୀନକେତନ, ବ. ପୁଂ. (ମୀନ-କେତନ) ସମୁଦ୍ର; କନ୍ଦର୍ପ; ଯେଉଁ ପତାକାରେ ମୀନଚିହ୍ନ ଥାଏ ।

ମୀନଘାତୀ, ବ. ପୁଂ. (ମୀନ-ହନ୍-ଇନ୍ ) ବକପକ୍ଷୀ । ବଂ. ମତ୍ସ୍ୟଘାତକ ।

ମୀନଧ୍ୱଜ, ବ. ପୁଂ. (ମୀନ-ଧ୍ୱଜା) କନ୍ଦର୍ପ; ସମୁଦ୍ର ।

ମୀନର, ବ. ପୁଂ. ( ମୀନ-ର-ଅ ) ଜଳଜନ୍ତୁବିଶେଷ; ମଗର ।

ମୀନରଙ୍କ, ବ. ପୁଂ. (ମୀନ-ରଙ୍କ୍-ଅ) ମାଛରଙ୍କା ପକ୍ଷୀ ।

ମୀନାକ୍ଷୀ, ବ. ସ୍ତ୍ରୀ. (ମୀନ-ଅକ୍ଷି) କୁବେରଙ୍କ କନ୍ୟା; ଗଣ୍ଡଦୂର୍ବା; ମତ୍ସ୍ୟାକ୍ଷୀ ।

ମୀନାଘାତ, ବ. ପୁଂ. ବକପକ୍ଷୀ; କାଲିଆ ।
ମୀନାଳୟ, ବ. ପୁଂ. ( ମୀନ-ଆଳୟ ) ସମୁଦ୍ର; ଜଳାଶୟ ।
ମୀମାଂସକ, ବ. ପୁଂ. (ମାନ୍-ସନ୍-ଅକ) ମୀମାଂସା-ଶାସ୍ତ୍ରବେତ୍ତା । ବଂ. ନିଷ୍ପତ୍ତିକାରୀ ।
ମୀମାଂସା, ବ. ସ୍ତ୍ରୀ. ( ମାନ୍-ସନ୍-ଆ ) ଷଡ଼୍‌ଦର୍ଶନର ଅନ୍ତର୍ଗତ ଜୈମିନି ମୁନିପ୍ରଣୀତ ଦର୍ଶନଶାସ୍ତ୍ର; ବେଦାନ୍ତ ଶାସ୍ତ୍ର; ସିଦ୍ଧାନ୍ତ, ନିଷ୍ପତ୍ତି, ପୂର୍ବାପର ବିରୋଧ ପରିହାର ।
ମୀୟାଦ, ବ. ( ଯାବନିକ ) କାଳ, ନିରୂପିତଦିନ; କଏଦ ।
ମୀଳନ, ବ. ସ୍ତ୍ରୀ. (ମୀଲ୍-ଅନ) ଚକ୍ଷୁଃମୁଦ୍ରିତକରଣ, ବୁଜିବା; ସଙ୍କୋଚନ ।
ମୀଳିତ, ବଂ. ( ମୀଲ୍-ତ ) ଅପ୍ରଫୁଲ୍ଲ, ମୁଦିତ, ଅବିକସିତ; ସଙ୍କୁଚିତ ।
ମୀବର, ବଂ. (ମୀ-ବର) ହିଂସ୍ର, ହିଂସ୍ରକ; ପୂଜ୍ୟ; ସେନାନୀ ।
ମୁଁ, ସ. (ଅସ୍ମଦ୍ ଶବ୍ଦଜ) ଅମ୍ଭେ, ମୁହିଁ ।
ମୁଁଆ, ବ. ଖଇ କମ୍ପୀ ମୁଡ଼ିର ଲଡ଼ୁବିଶେଷ ।
ମୁ, ବ. ପୁଂ. (ମୁ-୦) ବନ୍ଧନ କରିବା; ମହେଶ୍ୱର; ପିଙ୍ଗଳବର୍ଣ୍ଣ; ପିଣ୍ଡ; ମୁକ୍ତି ।
ମୁକ, ବ. କଡ଼, କବୋଧ ।
ମୁକୁଟ, ବ. ନ. (ମନ୍କ୍-ଉଟ) କିରୀଟ, ଶିରୋ-ଭୂଷଣ ।
ମୁକୁନ୍ଦ, ବ. ପୁଂ. (ମୁକୁମ୍-ଦ) ମୁକ୍ତିଦାତା, ବିଷ୍ଣୁ, କୁବେରଙ୍କ ନିଧିବିଶେଷ; ପାରଦ, ପାରା ।
ମୁକୁନ୍ଦକ, ବ. ପୁଂ. ପଳାଣ୍ଡୁ, ପିଆଜ ।
ମୁକୁମ୍, ଅଂ. (ମନ୍କ୍-ଉମ୍ ) ନିର୍ବାଣମୁକ୍ତି; ଭକ୍ତି-ରସ, ପ୍ରେମ ।
ମୁକୁର, ବ. ପୁଂ. ( ମନ୍କ୍-ଉର ) ଦର୍ପଣ, ଆର୍ଶି; ବକୁଳବୃକ୍ଷ; କୁଲାଲଦଣ୍ଡ; ମୁକୁଳ; ମଲ୍ଲିକା ପୁଷ୍ପବୃକ୍ଷ; କୋଳଗଛ ।
ମୁକୁଳ, ବ. ପୁଂ. ନ. (ମୁଚ୍-ଉଳ) କଳିକା, କଡ଼ି; ଶରୀର; ଆତ୍ମା ।
ମୁକୁଳା, ବଂ.(ମୁକୁଳିତ ଶବ୍ଦଜ) ମେଲା, ଖୋଲା ।
ମୁକୁଳିତ, ବଂ. (ମୁକୁଳ-ଇତ) କଳିକାସମ୍ପନ୍ନ, ମୁକୁଳଯୁକ୍ତ; ମୁଦିତ, ଅବିକାଶିତ; ଈଷତ୍-ବିକଶିତ ।
ମୁକ୍ତ, ବଂ. (ମୁଚ୍-ତ) ମୋକ୍ଷପ୍ରାପ୍ତ; ବିମୁକ୍ତ; ତ୍ୟକ୍ତ, ଉନ୍ମୁକ୍ତ; ଉଦ୍ଧୃତ; ବିରତ; ଅନାବୃତ; ନିର୍ମଳ ।
ମୁକ୍ତକ, ବ. ନ. ( ମୁଚ୍‌-କ ) କ୍ଷେପଣୀୟ ଅସ୍ତ୍ର-ବିଶେଷ, ବର୍ଚ୍ଛା, ବଲମ ଇତ୍ୟାଦି ।
ମୁକ୍ତକଞ୍ଚୁକ, ବ. ପୁଂ. ( ମୁକ୍ତ-କଞ୍ଚୁକ ) ନିର୍ମୁକ୍ତ, କାତିଛଡ଼ା ସାପ ।
ମୁକ୍ତକଚ୍ଛ, ବ. ପୁଂ. ବୁଦ୍ଧମତାବଲମ୍ବୀ ।
ମୁକ୍ତକଣ୍ଠ, କ୍ରି. ବଂ. ଉଚ୍ଚୈଃସ୍ୱରରେ, ଗଳା ଛାଡ଼ି ଦେଇ ।
ମୁକ୍ତଚକ୍ଷୁଃ, ବଂ. (ମୁକ୍ତ-ଚକ୍ଷୁସ୍ ) ଉନ୍ମୀଲିତ-ନୟନ । ବ. ପୁଂ. ସିଂହ ।
ମୁକ୍ତସଙ୍ଗ, ବଂ. (ମୁକ୍ତ-ସଙ୍ଗ) ବିଷୟାସକ୍ତିରହିତ, ବିଷୟସଙ୍ଗତ୍ୟାଗୀ । ବ. ପୁଂ. ପରିବ୍ରାଜକ ।
ମୁକ୍ତହସ୍ତ, ବଂ. ( ମୁକ୍ତ-ହସ୍ତ ) ଦାନଶୀଳ, ବଦାନ୍ୟ ।
ମୁକ୍ତା, ବ. ସ୍ତ୍ରୀ. ( ମୁକ୍ତ-ଆ ) ମୌକ୍ତିକ, ମୋତି; ଗଣିକା, ବେଶ୍ୟା ।
ମୁକ୍ତାକଳାପ, ମୁକ୍ତାପ୍ରାଲମ୍ବ, ବ. ପୁଂ. ( ମୁକ୍ତା-କଳାପ, ପ୍ରାଲମ୍ବ) ମୁକ୍ତାମାଳା ।
ମୁକ୍ତାଗାର ନ. } ବ. (ମୁକ୍ତା-ଅଗାର; ପ୍ରସୂ )
ମୁକ୍ତାପ୍ରସୂ, ସ୍ତ୍ରୀ } ଶୁକ୍ତି, ଯହିଁରୁ ମୁକ୍ତା ଜନ୍ମେ ।
ମୁକ୍ତାଫଳ, ବ. ନ. ( ମୁକ୍ତା-ଫଳ ) ମୌକ୍ତିକ, ମୁକ୍ତା; କର୍ପୂର ।
ମୁକ୍ତାଲତା, } ବ. ସ୍ତ୍ରୀ. ( ମୁକ୍ତା-ଲତା;
ମୁକ୍ତାବଳୀ, } ଅବଳୀ ) ମୁକ୍ତାମାଳା; ମୁକ୍ତାହାର ।
ମୁକ୍ତାସ୍ଫୋଟ, ବ. ପୁଂ. ( ମୁକ୍ତା-ସ୍ଫୁଟ୍-ଅ) ଶୁକ୍ତି, ଶାମୁକା ।

ମୁକ୍ତି, ବି. ସ୍ତ୍ରୀ. ( ମୁଚ୍-ତି ) ନିତ୍ୟସୁଖପ୍ରାପ୍ତି, ଅତ୍ୟନ୍ତ ଦୁଃଖନିବୃତ୍ତି, ଅପବର୍ଗ; ମୋଚନ; ପରିତ୍ରାଣ ।

ମୁକ୍ତିଦ, ବିଂ. ( ମୁକ୍ତି-ଦା-ଅ ) ମୋକ୍ଷଦାତା । ବି. ପୁଂ. ବିଷ୍ଣୁ ।

ମୁକ୍ତିମଣ୍ଡପ, ବି.ପୁଂ. (ମୁକ୍ତି-ମଣ୍ଡପ) ବିଶ୍ୱେଶ୍ୱରଙ୍କ ଦକ୍ଷିଣପାର୍ଶ୍ୱସ୍ଥ ମଣ୍ଡପ, ଜଗନ୍ନାଥ ମନ୍ଦିରର ଦକ୍ଷିଣପାର୍ଶ୍ୱସ୍ଥ ମଣ୍ଡପ ।

ମୁଖ, ବି. ନ. (ଖନ୍-ଅ) ଆନନ, ବଦନ; ଗୃହାଦିର ଦ୍ୱାର; ଆରମ୍ଭ; ଅଗ୍ରଭାଗ; ଉପାୟ; ଶବ୍ଦ; ନାଟକାଦିର ସନ୍ଧିବିଶେଷ । ବିଂ. ଆଦ୍ୟ; ପ୍ରଧାନ ।

ମୁଖଗନ୍ଧକ, } ବି. ପୁଂ. (ମୁଖ-ଗନ୍ଧକ, ଦୂଷଣ)
ମୁଖଦୂଷଣ, } ପଲାଣ୍ଡୁ, ପିଆଜ ।

ମୁଖଘଣ୍ଟା, ବି. ସ୍ତ୍ରୀ. ବିବାହାଦି ମଙ୍ଗଳ ସମୟରେ ହୁଳହୁଳି ଧ୍ୱନି ।

ମୁଖଚୀର୍ଣ୍ଣ, ବି. ସ୍ତ୍ରୀ. (ମୁଖ-ଚୀର୍ଣ୍ଣ) ରସନା, ଜିହ୍ୱା ।

ମୁଖଜ, ବି.ପୁଂ. (ମୁଖ-ଜ) ବ୍ରାହ୍ମଣ, ବ୍ରହ୍ମାଙ୍କ ମୁଖଜାତ ବର୍ଣ୍ଣ; ଦନ୍ତ । ବିଂ. ବଦନୋଦ୍ଭୂତ ।

ମୁଖନିରୀକ୍ଷକ, ବିଂ. (ମୁଖ-ନିରୀକ୍ଷକ) ଅଳସବ୍ୟକ୍ତି; ମୁଖଦର୍ଶୀ; ପକ୍ଷପାତୀ; ଅଯଥାର୍ଥଦର୍ଶୀ ।

ମୁଖପୂରଣ, ବି. ନ. ( ମୁଖ-ପୂରଣ ) ଗଣ୍ଡୂଷ, ଏକକୋଷ । ବିଂ. ଗ୍ରାସ ।

ମୁଖବନ୍ଧ, ବି. ପୁଂ. କୌଣସି ଗ୍ରନ୍ଥ ବା ଗଳ୍ପ ରଚନାର ପ୍ରାରମ୍ଭରେ ପ୍ରକୃତ ବିଷୟ ଉଲ୍ଲେଖ କରିବା ପୂର୍ବରୁ ଲିଖିତ ତତ୍ସମ୍ବନ୍ଧରେ ନାନା କଥା ପ୍ରସଙ୍ଗ, ପ୍ରସ୍ତାବନା ।

ମୁଖଭୂଷଣ, ବି. ନ. ( ମୁଖ-ଭୂଷଣ ) ତାମ୍ବୂଳ, ପାନ ।

ମୁଖଯନ୍ତ୍ରଣ, ବି. ନ. ( ମୁଖ-ଯନ୍ତ୍ରଣ ) କଵିକା, ଲଗାମ ।

ମୁଖର, ବିଂ.(ମୁଖ-ର) ନିରନ୍ତରଭାଷୀ, ଅତିଶୟବକ୍ତା, ବାଚାଳ; ଅପ୍ରିୟଭାଷୀ; ଅଗ୍ରଭାଷୀ, ଯେ ଆଗେ କହେ; ଶବ୍ଦାୟମାନ । ବି. ପୁଂ. କାକ; ଶଙ୍ଖ ।

ମୁଖରିତ, ବିଂ. ( ମୁଖର-ଇତ ) ଶବ୍ଦାୟମାନ, ଧ୍ୱନିତ ।

ମୁଖଲାଙ୍ଗଳ, ବି. ପୁଂ ( ମୁଖ-ଲାଙ୍ଗଳ ) ବରାହ, ଶୂକର ।

ମୁଖବାସନ, ବି. ପୁଂ. ( ମୁଖ-ବାସନ ) ମୁଖର ସୁଗନ୍ଧକାରକ ଦ୍ରବ୍ୟ, କର୍ପୂରାଦି ।

ମୁଖବଲ୍ଲଣ୍ଟିକା, ବି. ସ୍ତ୍ରୀ. ଅଜା, ଛାଗୀ, ଛେଳି । )

ମୁଖଶଫ, ମୁଖଶ୍ଳୀଳ, ବିଂ. ( ମୁଖ-ଶଫ,ଶ୍ଳୀଳ ଦୁର୍ମୁଖ, କଟୁଭାଷୀ ।

ମୁଖସମ୍ଭବ, ବି. ପୁଂ. ( ମୁଖ-ସମ୍ଭବ ) ବ୍ରାହ୍ମଣ, ବ୍ରହ୍ମାର ମୁଖଜାତ ବର୍ଣ୍ଣ ।

ମୁଖସ୍ରାବ, ବି. ପୁଂ. (ମୁଖ-ସ୍ରୁ-ଅ) ନାଳ, ଛେପ ।

ମୁଖାଗ୍ନି, ବି. ପୁଂ. (ମୁଖ-ଅଗ୍ନି) ଦାବାନଳ; ବ୍ରାହ୍ମଣ; ଶବମୁଖରେ ପ୍ରଦତ୍ତ ଅଗ୍ନି, ଶବାଗ୍ନି ।

ମୁଖାସ୍ତ୍ର, ବି. ପୁଂ. (ମୁଖ-ଅସ୍ତ୍ର) କର୍କଟ, କଙ୍କଡ଼ା ।

ମୁଖୋଲ୍କା, ବି. ପୁଂ. (ମୁଖ-ଉଲ୍କା) ଦାବାନଳ ।

ମୁଖ୍ୟ, ବିଂ. (ମୁଖ-ଯ) ପ୍ରଧାନ, ଶ୍ରେଷ୍ଠ; ପ୍ରଥମ; ଆଦିମ ।

ମୁଗ, ବି. (ମୁଦ୍ଗ-ଶବ୍ଦଜ) ମୁଗଡାଲି ।

ମୁଗୁନି, ବି. (ଦେଶଜ) କୃଷ୍ଣବର୍ଣ୍ଣ ପ୍ରସ୍ତରବିଶେଷ ।

ମୁଗୁର, ବି. (ମୁଦ୍ଗର ଶବ୍ଦଜ) ବଢ଼ାଇଙ୍କ ପିଟଣାବିଶେଷ; ଗଦା; ଯଷ୍ଟି; ବ୍ୟାୟାମାର୍ଥ ବ୍ୟବହୃତ କାଷ୍ଠନିର୍ମିତ ଦ୍ରବ୍ୟବିଶେଷ ।

ମୁଗ୍ଧ, ବିଂ. ( ମୁହ୍-ତ ) ମୂଢ଼, ମୂର୍ଖ; ସୁନ୍ଦର, ମନୋହର; ନୂତନ; ମୋହିତ ।

ମୁଗ୍ଧା, ବିଂ. ସରଳସ୍ୱଭାବା ନାୟିକା; ନବୋଢ଼ା; ମୋହିତା ।

ମୁଗ୍ଧବୋଧ, ବି. ନ. (ମୁଗ୍ଧ-ବୋଧି-ଅ) ବୋପଦେବପ୍ରଣୀତ ବ୍ୟାକରଣବିଶେଷ ।

ମୁଚ୍ଲକା, ବି. ( ଯାବନିକ ) ଏକରାରବିଶେଷ, ପ୍ରତିଜ୍ଞାପତ୍ର ।

ମୁଚିର, ବିଂ. (ମୁଚ୍-ଇର) ଦାନଶୀଳ, ବଦାନ୍ୟ । ବି. ପୁଂ. ଧର୍ମ; ବାୟୁ; ଦେବତା ।

ମୁଚୁକୁନ୍ଦ, ବି. ପୁଂ. (ମୁଚ୍-କୁନ୍ଦ) ପୁଷ୍ପବୃକ୍ଷବିଶେଷ; ମାନ୍ଧାତା ରାଜାର ପୁତ୍ର; ମୁନିବିଶେଷ; ଦୈତ୍ୟବିଶେଷ ।

ମୁଚୁଲା, ବି. (ଦେଶଜ) ମାଣ୍ଡି, ଛେଚିତକଣ୍ଡୁ ।

ମୁଞ୍ଜ, ବି. (ଦେଶଜ) ମାଣ୍ଡି, ଛେଚିତକଣ୍ଡୁ ।

ମୁଞ୍ଜ, ବି. ପୁଂ. (ମୁଞ୍ଜ୍-ଅ) ତୃଣବିଶେଷ, ଶର ।

ମୁଞ୍ଜକେଶୀ, ବି. ପୁଂ. (ମୁଞ୍ଜ-କେଶ-ଇନ୍) ବିଷ୍ଣୁ, ନାରାୟଣ ।

ମୁଞ୍ଜରିତ, ବିଂ. (ମୁଞ୍ଜରି-ଇତ) ନବପଲ୍ଲବୋଦ୍ଗମ ।

ମୁଠା, ବି. (ମୁଷ୍ଟି ଶବ୍ଦଜ) କୁଞ୍ଚିତ କରତଳ । ଯଥା—

ବାଡ ହାତମୁଠାରେ କ ଢୁଏ ଧର ।

ମୁଠି, ବି. (ମୁଷ୍ଟି ଶବ୍ଦଜ) ବାଳକମାନଙ୍କର ଖୁଦ୍ରାଦ ରଖିବାର ଥଳୀ ।

ମୁଠୁଣି, ବି. (ଦେଶଜ) କହୁଣୀଠାରୁ କୁଞ୍ଚିତ କରତଳ ପର୍ଯ୍ୟନ୍ତ ।

ମୁଢ଼ି, ବି. (ଦେଶଜ) ଭୃଷ୍ଟତଣ୍ଡୁଳ, ଭଜାଚାଉଳ ।

ମୁଣି, ବି. (ଦେଶଜ) ମୁଣା, ଥଳି, ଝୋଲ ।

ମୁଣୁକୁ, ଅଂ (ଦେଶଜ) ଠୁଳେ, ଅବୌ ।

ମୁଣ୍ଡ, ବି. ପୁଂ. କ୍ଲ. (ମୁଣ୍ଡ-ଅ) ଶିରଃ ମସ୍ତକ । ଯଥା—

ବଜ୍ର ପଡ଼ଉ ସେହେ ମୁଣ୍ଡେ ।

ପୁଂ. ରାହୁଗ୍ରହ; ଭଣ୍ଡାର ।

ମୁଣ୍ଡକ, ବି. କ୍ଲ. ( ମଣ୍ଡ-ଅକ ) ମସ୍ତକ । ପୁଂ. ଭଣ୍ଡାର ।

ମୁଣ୍ଡନ, ବି. କ୍ଲ. (ମୁଣ୍ଡ-ଅନ) କ୍ଷୌର, ବପନ ।

ମୁଣ୍ଡା, ବି. ( ମୁଣ୍ଡ ଶବ୍ଦଜ ) କାଷ୍ଠଖଣ୍ଡ; ଖଣ୍ଡ; ଗୋଲାକୃତ ମୂଳ ।

ମୁଣ୍ଡାୟସ, ବି. କ୍ଲ. (ମୁଣ୍ଡ-ଅୟସ) ଲୌହ, ଲୁହା ।

ମୁଣ୍ଡୀ, ବି. ପୁଂ. ( ମୁଣ୍ଡ-ଇନ୍ ) ମୁଣ୍ଡନକାରୀ, ନାପିତ; (ଦେଶଜରେ) କାଷ୍ଠଗଣ୍ଡି ।

ମୁଥ, ବି. (ମୁଷ୍ଟି ଶବ୍ଦଜ) ମୁଷ୍ଟି, ଖୁନ୍ଦା । ଯଥା—

ବ୍ୟୋମ ବ୍ୟୋମ ପଥେ ନେଇ ମୁଥରେ ମାର ।

ଥର ।

ମଥା, ବି. (ମୁସ୍ତା ଶବ୍ଦଜ) ଘାସମୂଳବିଶେଷ ।

ମଦ୍, ମୁଦା, ବି. ସ୍ତ୍ରୀ. (ମୁଦ୍-୦,ଆ) ପ୍ରୀତି, ହର୍ଷ; ସନ୍ତୋଷ; ଚିତ୍ତାଭ । ଯଥା—

ପବନ ଭୁବନୀ ଭେଷ ବହୁ ମୁଦ
ବସନନ୍ତ ସହି ପ୍ରଦ ହକାସୁଧ । ଲ. ବେ ।
ମୁଦ ଲଭି ମୁଦକୁ ଦେନେଷ କାନ୍ତ କରେ ।

ଭାର୍ଯ୍ୟା ।

ମୁଦିତ, ବିଂ. (ମୁଦ୍-ତ) ପ୍ରୀତ, ହୃଷ୍ଟ, ଆହ୍ଲାଦିତ ।

ମୁଦିବା, କ୍ରି. (ଦେଶଜ) ବନ୍ଦ କରିବା । ଯଥା—

ହେମ ମରକତ ଯୋଷି ଅଣକତ ପର ନେତ୍ର ମୁଦ ଭଟେ କ୍ଷଣେ ।

ମୁଦିର, ବି. ପୁଂ. (ମୁଦ୍-ଇର) ମେଘ; ଭେକ ବିଂ. କାମୁକ, ଲମ୍ପଟ ।

ମୁଦୀ, ବି. (ଦେଶଜ) ଦୋକାନୀ, ନାନା ଦ୍ରବ୍ୟ ବ୍ୟବସାୟୀ; ପାଦାଙ୍ଗୁଳିର ଅଳଙ୍କାରବିଶେଷ । ଯଥା—

ପ୍ରପଦରେ ବଂଶା ମୁଦୀ, ଶବଦେ ଧର୍ଷର୍ଯ୍ୟ ଶେଷ ।

ମୁଦ୍ଗ, ବି. ପୁଂ. (ମୁଦ୍-ଗ) ଶସ୍ୟବିଶେଷ, ମୁଗ; ଜଳବାୟସ, ପାଣିକୁଆ ।

ମୁଦ୍ଗଭୁକ୍, ମୁଦ୍ଗଭୋଜୀ } ବି. ପୁଂ. ଅଶ୍ବ, ଘୋଡ଼ା ।

ମୁଦ୍ଗର, ବି. ପୁଂ. ( ମୁଦ୍-ଗୃ-ଅ ) ଯଷ୍ଟିବିଶେଷ, ଗଦା, ମୁଗୁର । କ୍ଲ. କାଠମଲ୍ଲୀଫୁଲ ।

ମୁଦ୍ଗଲ, ବି. ପୁଂ. ( ମୁଦ୍-ଗୃ-ଲ ) ମୁନିବିଶେଷ; ନୃପବିଶେଷ; ହର୍ଯ୍ୟଶ୍ବ ରାଜାର ପୁତ୍ର । କ୍ଲ. ତୃଣବିଶେଷ ।

ମୁଦ୍ରଣ, ବି. କ୍ଲ. ( ମୁଦ୍ରା-ଅନ ) . ମୁଦ୍ରା କରିବା; ଅଙ୍ଗୁଳି ମୁଦ୍

ମୁଦ୍ରା, ବି. ସ୍ତ୍ରୀ. ( ମୁଦ୍-ର ) ମୋହର, ଛପା; ମୋହର ଟଙ୍କା ପଇସା ପ୍ରଭୃତି; ମୋହର କରିବା; ଛପାର ଅକ୍ଷର; ଖୋଦିତ ଲିପି; ଦେବାରାଧନା କାଳରେ ଅଙ୍ଗୁଳ୍ୟାଦ ସନ୍ନିବେଶ; ଗାନାଦ ସମୟରେ ହସ୍ତ ମୁଖାଦ ଭଙ୍ଗୀ ।

ମୁଦ୍ରାଙ୍କିତ, ବିଂ. ( ମୁଦ୍ରା-ଅଙ୍କିତ ) ମୁଦ୍ରାଚିହ୍ନିତ, ଛପା; ମୋହର କରିବା ।

ମୁଦ୍ରାଯନ୍ତ୍ର, ବି. କ୍ଲ. ମୁଦ୍ରାକରଣ ଯନ୍ତ୍ର, ଛପାକଳ ।

ମୁଦ୍ରିକା, ବି. ସ୍ତ୍ରୀ. (ମୁଦ୍ରା-କ-ଅ) ସ୍ୱର୍ଣ୍ଣ ରୌପ୍ୟାଦି ନିର୍ମିତ ମୁଦ୍ରା, ଟଙ୍କା ପଇସା ମୋହର ପ୍ରଭୃତି।

ମୁଦ୍ରିତ, ବିଂ. (ମୁଦ୍ରା-ଇତ) ସଙ୍କୁଚିତ, ନିମୀଳିତ; ମୁଦ୍ରାଚିହ୍ନିତ।

ମୁନି, ବି. ଅସ୍ତ୍ରର ଅଗ୍ରଭାଗ।

ମୁନି, ବି. ପୁଂ. (ମୁନ୍-ଇ) ଋଷି, ତପସ୍ୱୀ; ଜ୍ଞାନୀ।

ମୁନିଦ୍ରୁମ, ବି. ପୁଂ. (ମୁନି-ଦ୍ରୁମ) ବକପୁଷ୍ପ ବୃକ୍ଷ।

ମୁନିପିତ୍ତଳ, ବି. ନ. ତମ୍ବା, ତାମ୍ର।

ମୁନିପୁଙ୍ଗବ, ବି. ପୁଂ. (ମୁନି-ପୁଙ୍ଗବ) ମୁନିଶ୍ରେଷ୍ଠ,

ମୁନିଭେଷଜ, ବି. ନ. (ମୁନି-ଭେଷଜ) ହରୀତକୀ; ଲଙ୍ଘନ; ଅଗସ୍ତ୍ୟ।

ମୁନୀନ୍ଦ୍ର, ବି. ପୁଂ. (ମୁନି-ଇନ୍ଦ୍ର) ବୁଦ୍ଧଦେବ; ଋଷିଶ୍ରେଷ୍ଠ।

ମୁମୁକ୍ଷୁ, ବିଂ. (ମୁଚ୍-ସ-ଉ) ମୋକ୍ଷେଚ୍ଛୁ। ବି. ପୁଂ. ଯତି; ଭିକ୍ଷୁ।

ମୁମୂର୍ଷୁ, ବିଂ. (ମୃ-ସ-ଉ) ଆସନ୍ନମୃତ୍ୟୁ, ମୃତପ୍ରାୟ; ମରିବାକୁ ଇଚ୍ଛୁକ।

ମୁର, ବି. ପୁଂ. (ମୁର୍-ଅ) ଦୈତ୍ୟବିଶେଷ।

ମୁରଜ, ପୁଂ. } ବି. (ମୁର-ଜ, ଆ) ମୃଦଙ୍ଗ;
ମୁରଜା, ସ୍ତ୍ରୀ. } କୁବେରର ଭାର୍ଯ୍ୟା।

ମୁରମର୍ଦ୍ଦନ, ବି. ପୁଂ. (ମୁର-ମର୍ଦ୍ଦନ) କୃଷ୍ଣ, ବିଷ୍ଣୁ।

ମୁରରିପୁ, ବି. ପୁଂ. (ମୁର-ରିପୁ) କୃଷ୍ଣ, ବିଷ୍ଣୁ।

ମୁରଳା, ବି. ସ୍ତ୍ରୀ. କେରଳଦେଶର ନଦୀବିଶେଷ।

ମୁରଳୀ, ବି. ସ୍ତ୍ରୀ. (ମୁର-ଲା-ଅ, ଈ) ବଂଶୀ, ବଇଁଶୀ; କେରଳଦେଶର ନଦୀବିଶେଷ।

ମୁରଳୀଧର, ବି. ପୁଂ. (ମୁରଳୀ-ଧର) କୃଷ୍ଣ, ବଂଶୀଧାରୀ।

ମୁରହା, ବି. ପୁଂ. (ମୁର-ହନ୍-ଅ) କୃଷ୍ଣ।

ମୁରା, ବି. ସ୍ତ୍ରୀ. (ମୁର-ଅ) ଗନ୍ଧଦ୍ରବ୍ୟବିଶେଷ; ନନ୍ଦରାଜାର ଦାସୀବିଶେଷ।

ମୁରାରି, ବି. ପୁଂ. (ମୁର-ଅରି) କୃଷ୍ଣ।

ମୁରୁକି, ବି. (ଦେଶଜ) ମୁଢ଼ି, ଗୁଡ଼ ଓ ଖଡ଼ମିଶ୍ରିତ ଚୂର୍ଣ୍ଣ।

ମୁର୍ମୁର, ବି. ପୁଂ. ତୁଷାନଳ, ଚହୂଳିଆ; ସୂର୍ଯ୍ୟର ଅଶ୍ୱ; କାମଦେବ।

ମୁଲତାନ, ବି. ଦେଶବିଶେଷ; ରାଗିଣୀବିଶେଷ।

ମୁଲାଇବା, କ୍ରି. (ଦେଶଜ) ଭାଙ୍ଗି କରିବା, ଦର କରିବା। ଯଥା—

ଜୀବ ଥିଲେ ଦେଖ ଯିବ ଗୋପୀ ପାଦ ମୁଲ ନେବା ମୁଣର।

ମୁଷଳ, ବି. ପୁଂ. ନ. ଅୟୋଗ୍ରକାଷ୍ଠଖଣ୍ଡ, ଢିଙ୍କି ପାହାର; ମୁଦର; ଯେ ଯନ୍ତ୍ରଦ୍ୱାରା ଇକ୍ଷୁ କର୍ମ୍ମା ତଇଳ ପ୍ରଭୃତିକୁ ନିଷ୍ପୀଡ଼ନ କରି ରସ ନିର୍ଗତ ହୁଏ।

ମୁଷଳୀ, ବି. ପୁଂ. (ମୁଷଳ-ଇନ୍) ବଳରାମ, ବଳରାମଙ୍କର ମୁଷଳ ଅସ୍ତ୍ର ବୋଲି ଏହାଙ୍କର ନାମ ମୁଷଳୀ ହୋଇଅଛି।

ମୁଷଲ୍ୟ, ବିଂ. (ମୁଷଲ୍-ଯ) ମୁଷଳଦ୍ୱାରା ବଧ୍ୟ।

ମୁଷିତ, ମୁଷ୍ଟ, ବିଂ. (ମୁଷ୍-ତ) ଚୋରିତ, ଅପହୃତ, ବଞ୍ଚିତ।

ମୁଷ୍କ, ବି. ପୁଂ. (ମୁଷ୍-କ) ଅଣ୍ଡକୋଷ; ତସ୍କର; ମୋକ୍ଷକବୃକ୍ଷ; ମାଂସଳ; ସମୂହ।

ମୁଷ୍କର, ବି. ପୁଂ. (ମୁଷ୍କ-ର) ପ୍ରଲମ୍ବାଣ୍ଡ, ଲମ୍ବମାନ ଅଣ୍ଡକୋଷ।

ମୁଷ୍ଟି, ବି. ପୁଂ. ସ୍ତ୍ରୀ. (ମୁଷ୍-ତି) କୁଞ୍ଚିତପାଣି, ମୁଠା; ଖଡ୍ଗାଦିର ବେଣ୍ଟ; ପରିମାଣବିଶେଷ।

ମୁଷ୍ଟିକ, ବି. ପୁଂ. (ମୁଷ୍ଟି-କୃ-ଅ) ସ୍ୱର୍ଣ୍ଣକାର, ସୁନାରି; କଂସରାଜାର ମଲ୍ଲବିଶେଷ।

ମୁଷ୍ଟିକାନ୍ତକ, ବି. ପୁଂ. (ମୁଷ୍ଟିକ-ଅନ୍ତକ) ବଳରାମ; କଥିତ ଅଛି କି ବଳରାମ କଂସରାଜାର ମଲ୍ଲ ମୁଷ୍ଟିକକୁ ବିନାଶ କରିଥିଲେ।

ମୁଷ୍ଟିମେୟ, ବିଂ. (ମୁଷ୍ଟି-ମେୟ) ମୁଷ୍ଟିଦ୍ୱାରା ପରିମେୟ, ଅଳ୍ପପରିମାଣ, ଅଳ୍ପସଂଖ୍ୟକ।

ମୁସଲମାନ, ବି. (ଆରବୀ ସଲମ୍ ଶବ୍ଦଜ) ମହମ୍ମଦୀୟ ଧର୍ମାବଲମ୍ବୀ ଜାତିବିଶେଷ।

ମୁସାଫେର, ବି. (ଯାବନିକ) ପଥିକ, ଭ୍ରମଣକାରୀ, ବିଦେଶୀୟ।

ମୁସ୍କିଲ, (ଯାବନିକ) କଠିନ, ଦୁରଷ୍ଟ, କଷ୍ଟଜନକ।

ମୁସ୍ତ, ପୁଂ. }
ମୁସ୍ତକ, ପୁଂ. ନ. } ବି. (ମୁସ୍ତ-ଅକ, ଅ) ମୂଳବିଶେଷ, ମୁଥା।
ମୁସ୍ତା, ସ୍ତ୍ରୀ. }

ମୁଷ୍ଟୁ, ବ. ପୁଂ. (ମୁଷ୍-ଟୁ) ମୁଷ୍ଟି, ମୁଠା ।
ମୁଷ୍ଟ, ବ. ନ. (ମୁଷ୍-ର) ମୁଷଳ ।
ମହିଁ, ବ. (ମୁଖ ଶବ୍ଦଜ) ମୁଖ ।
ମୁହିଁ, ପ. (ଅସ୍ମଦ୍ ଶବ୍ଦଜ) ମୁଁ ।
ମୁହିର, ବ. ପୁଂ. (ମୁହ୍-ଇର) କାମଦେବ; ମୂର୍ଖ ।
ମୁହୁଃ, ବଂ. (ମୁହ୍-ଉସ୍) ପୁନଃପୁନଃ, ବାର-ମ୍ବାର; ଅତ୍ୟନ୍ତ; ସଦ୍ୟଃ, ତତ୍କ୍ଷଣାତ୍ ।
ମୁହ୍ୟମାନ, ବଂ. (ମୁହ୍-ଆନ) ଯାହାର ଚିତ୍ତ ବକ୍ଷତ ହୋଇଅଛି ।
ମୁହୂର୍ତ୍ତ, ବ. ପୁଂ. ନ. (ମୁହୂର୍ଚ୍ଛ୍-ତ) ଦବାରାତ୍ରର ୩୦ ଭାଗର ଏକ ଭାଗ, ପ୍ରାୟ ଦୁଇ ଦଣ୍ଡ; ଜ୍ୟୋତିଃଶାସ୍ତ୍ରବେତ୍ତା, ଜ୍ୟୋତିଃଶାସ୍ତ୍ରଜ୍ଞ ।
ମୂ, ବ. ସ୍ତ୍ରୀ. (ମୂ-୦) ବନ୍ଧନ ।
ମୂକ, ବଂ. (ମୂ-କ) ବାକ୍‌ଶକ୍ତିରହିତ, ବୋବା; ଦୀନ, ଦରିଦ୍ର ।
ମୂଢ଼, ବଂ. (ମୁହ୍-ତ) ମୂର୍ଖ, ନର୍ବିବେକ, ଅନଭିଜ୍ଞ; ଅସଭ୍ୟ; ଭ୍ରାନ୍ତ; ଅବ୍ୟାପୃତ; ଜଡ଼; ବାଳକ ।
ମୂଢ଼ଗର୍ଭ, ବ. ପୁଂ. (ମୂଢ଼-ଗର୍ଭ) ମୃତଭ୍ରୂଣ, ମୃତ-ଗର୍ଭସ୍ଥ ଶିଶୁ; ଅଲକ୍ଷଣ ଶିଶୁସନ୍ତାନର ଜନ୍ମ ।
ମୂତ, ବଂ. (ମୂ-ତ) ବଦ୍ଧ । ବ. ପୁଂ. ପୁଟବନ୍ଧ; ପଟବନ୍ଧ; (ମୂତ୍ର ଶବ୍ଦଜ) ପ୍ରସ୍ରାବ ।
ମୂତ୍ର, ବ. ନ. (ମୂତ୍ର୍-ଅ) ପ୍ରସ୍ରାବ, ମୂତ ।
ମୂତ୍ରକୃଚ୍ଛ୍ର, ବ. ନ. (ମୂତ୍ର-କୃଚ୍ଛ୍ର) ରୋଗବିଶେଷ, ମୂତ୍ରରୋଧ ।
ମୂତ୍ରଗ୍ରନ୍ଥି, ବ. ପୁଂ. (ମୂତ୍ର-ଗ୍ରନ୍ଥି) ମୂତ୍ରାଶୟର ମୁଖ-ପ୍ରଦେଶରେ ମୂତ୍ରନିରୋଧ, କ୍ଳୋମ ।
ମୂତ୍ରଦୋଷ, ବ. ପୁଂ. (Gonorrhea) (ମୂତ୍ର-ଦୋଷ) ମେହ, ମୂତ୍ରସହିତ ରେତଃକ୍ଷରଣ ।
ମୂତ୍ରପଥ, ବ. ନ. (Urethra) (ମୂତ୍ର-ପଥ) ପ୍ରଣାଳୀ ।
ମୂତ୍ରପୁଟ, ନ. } ବ. (ମୂତ୍ର-ପୁଟ, ଆଶୟ) ତଳ-
ମୂତ୍ରାଶୟ, ପୁଂ. } ପେଟ, ନାଭିର ତଳଭାଗ, ମୂତ୍ରସ୍ଥାନ ।
ମୂର୍ଖ, ବଂ. (ମୁହ୍-ଅ) ଅଜ୍ଞ, ମୂଢ଼, ଅବୋଧ, ନିର୍ବୋଧ ।
ମୂର୍ଖତା, ବ. ସ୍ତ୍ରୀ. (ମୂର୍ଖ-ତା) ମୂଢ଼ତ୍ୱ, ଅବବେ-କତା, ନିର୍ବୁଦ୍ଧିତା ।
ମୂର୍ଚ୍ଛନ, ବ. ନ. (ମୂର୍ଚ୍ଛ୍-ଅନ) ନା-ସ୍ତ୍ରୀ. ମୂର୍ଚ୍ଛା, ଅଚୈତନ୍ୟ; ସ୍ୱରର ଆରୋହ ଅବରୋହର କ୍ରମ; ପ୍ରତିଫଳନ; ପକ୍ୱତୈଳର ସଂସ୍କାରବିଶେଷ; ମିଶ୍ରଣ; ସାକ୍ଷାତ୍କରଣ ।
ମୂର୍ଚ୍ଛା, ବ. ସ୍ତ୍ରୀ. (ମୂର୍ଚ୍ଛ୍-ଅ) ମୋହ, ଅଚୈତନ୍ୟ; ବୃଦ୍ଧି; ପ୍ରସାର; ବ୍ୟାପ୍ତି, ବସ୍ତାର, ପ୍ରତିଫଳନ ।
ମୂର୍ଚ୍ଛାଳ, ମୂର୍ଚ୍ଛାବାନ୍, ବଂ. (ମୂର୍ଚ୍ଛା-ଲ, ବତ୍) ମୂର୍ଚ୍ଛାବିଶିଷ୍ଟ, ମୋହପ୍ରାପ୍ତ ।
ମୂର୍ଚ୍ଛିତ, ବଂ. (ମୂର୍ଚ୍ଛା-ଇତ) ମୂର୍ଚ୍ଛାଗତ; ବର୍ଦ୍ଧିତ; ଉନ୍ନତ, ବ୍ୟାପ୍ତ; ମୂର୍ଖ; ପ୍ରତିଫଳିତ; ଦୀର୍ଘ ।
ମୂର୍ଚ୍ଛିବା କ୍ରି. (ମୂର୍ଚ୍ଛଧାତୁଜ) ମୈହ କମ୍ବା ମାସ୍ଥା ଘଟିବା । ଯଥା—

ହେ ବୋଲେ ନନ୍ଦଗୃହେ ଗୋ, ମୂର୍ଚ୍ଛିଲେ ଏ ଗୋପେ
କେହି ଗୋପୀ ପ୍ରତି ରଖି ପାରବ ପରେ ଗୋ । ଦ ଚ.

ମୂର୍ତ୍ତ, ବଂ. (ମୂର୍ଚ୍ଛ୍-ତ) ସାକାର, ମୂର୍ତ୍ତିମାନ୍; କଠିନ; ମୂର୍ଚ୍ଛିତ; ଭୂତପଞ୍ଚକ; କାନନ; ପଞ୍ଚଭୂତାତ୍ମକ ଦ୍ରବ୍ୟ ।
ମୂର୍ତ୍ତି, ବ. ସ୍ତ୍ରୀ. (ମୂର୍ଚ୍ଛ୍-ତି) ଆକୃତି; ଅଙ୍ଗ, ଅବ-ୟବ; ପ୍ରତିମା; ଶରୀର; ସ୍ୱରୂପ; କାଠିନ୍ୟ; ଦ୍ରବ୍ୟ; ପଞ୍ଚଭୂତ ।
ମୂର୍ତ୍ତିମାନ୍, ବ. (ମୂର୍ତ୍ତି-ବତ୍) ମୂର୍ତ୍ତ, ମୂର୍ତ୍ତିବିଶିଷ୍ଟ, ଶରୀରୀ; କଠିନ । ବ. ନ. ଶରୀର ।
ମୂର୍ଦ୍ଧକ, ବ. ପୁଂ. (ମୂର୍ଦ୍ଧନ୍-କ) କ୍ଷତ୍ରିୟ, ଦ୍ୱିଜସ୍ୱବର୍ଣ୍ଣ ।
ମୂର୍ଦ୍ଧକର୍ପରୀ, ସ୍ତ୍ରୀ. } (ମୂର୍ଦ୍ଧନ୍-କର୍ପର,ଖୋଳ)
ମୂର୍ଦ୍ଧଖୋଳ, ନ. } ପରିଚ୍ଛଦ, ଛତ୍ର ।
ମୂର୍ଦ୍ଧଜ, ବ. ପୁଂ. (ମୂର୍ଦ୍ଧନ୍-ଜ) ଶିରୋରୁହ, କେଶ, ବାଳ । ବଂ. ମସ୍ତକଜାତ ।
ମୂର୍ଦ୍ଧପୁଷ୍ପ, ବ. ପୁଂ. (ମୂର୍ଦ୍ଧନ୍-ପୁଷ୍ପ) ଶିରୀଷବୃକ୍ଷ ।
ମୂର୍ଦ୍ଧନ୍ୟ, ବଂ. (ମୂର୍ଦ୍ଧନ୍-ଯ) ମୂର୍ଦ୍ଧାରୁ ଉଚ୍ଚାରିତ; ମସ୍ତକରୁ ଉଚ୍ଚାର୍ଯ୍ୟମାଣ ବର୍ଣ୍ଣ, ଯଥା— ଋ ଋ ଟ ଠ ଡ ଢ ଣ ର ଷ; ମୂର୍ଦ୍ଧଜ, ମସ୍ତକୋତ୍ପନ୍ନ ।
ମୂର୍ଦ୍ଧବେଷ୍ଟନ, ବ. ନ. (ମୂର୍ଦ୍ଧନ୍-ବେଷ୍ଟନ) ଶିରୋ-ବେଷ୍ଟନ, ଉଷ୍ଣୀଷ ।

ମୂର୍ଦ୍ଧା, ମୂର୍ଦ୍ଧ୍ୱା, ବ. ପୁଂ. ( ମୂର୍ଚ୍ଛ୍-ଅନ, ର୍=ଧ୍ ) ମସ୍ତକ; କ୍ୟାମିତିଗ୍ରନ୍ଥରେ କୌଣସି କ୍ଷେତ୍ରର ଭୂମି ।

ମୂର୍ଦ୍ଧାଭିଷିକ୍ତ, ବ. ପୁଂ. (ମୂର୍ଦ୍ଧନ୍-ଅଭିଷିକ୍ତ)ପୂର୍ବରେ କ୍ଷତ୍ରିୟମାନଙ୍କର ଏହିପରି ପ୍ରଥା ଥିଲା ଯେ ରାଜ-ସିଂହାସନରେ ଉପବେଶନ କରିବା ପୂର୍ବରେ ମନ୍ତ୍ରପୂତ ସପ୍ତନଦୀର ଜଳ, ମଧୁ, ନବନୀତ, ମନ୍ତ୍ରଦ୍ୱାରା ସ୍ନାତ ହେବାକୁ ହୁଏ; କ୍ଷତ୍ରିୟ; ମନ୍ତ୍ରୀ; ରାଜା; ବ୍ରାହ୍ମଣ ଓ କ୍ଷତ୍ରିୟାଜାତ ଜାତିବିଶେଷ ।

ମୂର୍ଚ୍ଛିତ, ବିଂ. ଘନୀଭୂତ, ଗାଢ଼ିତ ।

ମୂର୍ବା, ବ. ସ୍ତ୍ରୀ. (ମୂର୍ବ୍-ଅ-ଆ) ମୁରଗାଗଛ,ଯାହାର ସୂତ୍ରରେ ଧନୁକର ଗୁଣ ହୁଏ ।

ମୂଳ, ବ. ନ. ( ମୂଳ୍-ଅ ) ଗଛର ଚେର; ମୂଳ; ମୂଳା ଆଳୁ ପିଆଜ ପ୍ରଭୃତି; ନିଦାନ, ଆଦି-କାରଣ; ଆଦ୍ୟ, ପ୍ରଥମ; ପୁଞ୍ଜି, ଅସଲ; ପ୍ରଧାନ; ନିବାସଗୃହ; ମୂଳନଗର; ନିକଟ; ପ୍ରଥମ ଗ୍ରନ୍ଥ, ଯେ ଗ୍ରନ୍ଥ ଅବଲମ୍ବନ କରି ଟୀକାଦି ପ୍ରସ୍ତୁତ ହୁଏ; କୌଣସି ରାଶି ଆପଣାଦ୍ୱାରା ଏକବାର ବା ବହୁବାର ଗୁଣିତ ହେଲେ ଯେଉଁ ଗୋଟିଏ ରାଶି ଉତ୍ପନ୍ନ ହୁଏ, ପ୍ରଥମୋକ୍ତ ରାଶିଟି ସେହି ଉତ୍ପା-ଦିତ ରାଶିର ମୂଳ । ବିଂ. ନକ୍ଷତ୍ରବିଶେଷ ।

ମୂଳକ, ବ. ପୁଂ. ନ. ( ମୂଳ୍-କ ) କନ୍ଦବିଶେଷ, ମୂଳା । ବ. ପୁଂ. ସ୍ଥାବର ବିଷବିଶେଷ ।

ମୂଳକାର, ବ. ପୁଂ. (ମୂଳ-କାର) ମୂଳଗ୍ରନ୍ଥକର୍ତ୍ତା ।

ମୂଳକାରିକା, ବ. ସ୍ତ୍ରୀ. (ମୂଳ-କାରିକା) ମୂଳଗ୍ରନ୍ଥର ଅର୍ଥପ୍ରକାଶ ।

ମୂଳଜ, ବିଂ. (ମୂଳ-ଜ) ମୂଳରୁ ଉତ୍ପନ୍ନ, ପଦ୍ମ ପ୍ରଭୃତି; ଆର୍ଦ୍ରକ, ଅଦା ।

ମୂଳଦେବ, ମୂଳଭଦ୍ର, ବ. ପୁଂ. ( ମୂଳ-ଦେବ, ଭଦ୍ର) କଂସରାଜ, କଂସାସୁର ।

ମୂଳଦ୍ରବ୍ୟ, ମୂଳଧନ, ବ. ନ. (ମୂଳ-ଦ୍ରବ୍ୟ,ଧନ) ଅସଲ ଧନ, ପୁଞ୍ଜି ।

ମୂଳପ୍ରକୃତି, ବ. ସ୍ତ୍ରୀ. ତ୍ରିଗୁଣାତ୍ମିକା ଆଦ୍ୟାଶକ୍ତି, ଯାହାଠାରୁ ମହତତ୍ତ୍ୱ ପ୍ରଭୃତି ସମ୍ପ୍ରଦାୟ ଜଗତ୍ ଉତ୍ପନ୍ନ ହୋଇଅଛି ।

ମୂଳାଧାର, ବ. ପୁଂ. ( ମୂଳ-ଆଧାର ) ଗୁହ୍ୟ ଓ ଲିଙ୍ଗର ମଧ୍ୟବର୍ତ୍ତୀ ଅଙ୍ଗୁଳିଦ୍ୱୟ ପରିମିତ ସ୍ଥାନ ।

ମୂଳିକ, ବିଂ. (ମୂଳ-ଇକ) ମୂଳଭୋଜୀ ।

ମୂଳୀ, ବିଂ. (ମୂଳ-ଇନ୍) ମୂଳବିଶିଷ୍ଟ । ବ. ପୁଂ. ବୃକ୍ଷ, ଗଛ ।

ମୂଳୀଭୂତ, ବିଂ. ( ମୂଳ-ଭୂତ ) ହେତୁଭୂତ; ନିଦାନସ୍ୱରୂପ ।

ମୂଳେୟ, ବ. ପୁଂ. (ମୂଳ-ଏୟ) ଛତା ।

ମୂଲ୍ୟ, ବ. ନ. (ମୂଳ-ଯ) ଦାମ୍; ଭଡ଼ା; ବେତନ । ବିଂ. ରୋପଣଯୋଗ୍ୟ; ପ୍ରତିଷ୍ଠାଯୋଗ୍ୟ ।

ମୂଷ, ମୂଷକ, ମୂଷିକ, ମୂଷୀକ, ବ. ପୁଂ. ( ମୂଷ୍-ଅ, ଅକ, ଇକ, ଈକ) ଇନ୍ଦୁର ।

ମୂଷକାରାତି, ମୂଷିକାରାତି, ବ. ପୁଂ. ( ମୂଷକ, ମୂଷିକ-ଅରାତି) ବିଲେଇ ।

ମୂଷା, ବ. ସ୍ତ୍ରୀ.(ମୂଷ୍-ଅଲ୍ ) ସ୍ୱର୍ଣ୍ଣାଦି ତରଳାଇବାର ପାତ୍ର; ( ମୂଷ ଶବ୍ଦଜ ) ମୂଷିକ ।

ମୂଷିକାଙ୍କ, ମୂଷିକାଞ୍ଚନ, ବ. ପୁଂ. (ମୂଷିକ-ଅଙ୍କ, ଅଞ୍ଚନ) ଗଣେଶ ।

ମୂଷ୍ୟାୟନ, ବ. ପୁଂ. ( ଅମୂଷ୍ୟାୟନ=କୌଣସି ବ୍ୟକ୍ତିର ପୁତ୍ର,ଅଲୋପ) ଅଜ୍ଞାତପିତୃକ ବ୍ୟକ୍ତି, ଯାହାର ଜନ୍ମ ବିଷୟ ଜଣାଯାଏ ନାହିଁ ।

ମୃକଣ୍ଡୁ, ବ. ପୁଂ. ମାର୍କଣ୍ଡେୟ ମୁନିର ପିତା ।

ମୃଗ, ବ. ପୁଂ. (ମୃଗ୍-ଅ) ହରିଣ; ପଶୁ; କପୋଳ ଦେଶରେ ଶ୍ୱେତଚିହ୍ନଯୁକ୍ତ ଗଜବିଶେଷ;ଅନ୍ୱେ-ଷଣ; ଯାଚ୍ଞା; ନକ୍ଷତ୍ରବିଶେଷ; ମୃଗନାଭି; ଶିକାର; ଯଜ୍ଞବିଶେଷ; ମାର୍ଗଶିରମାସ; ମକର ରାଶି । ଗୀ-ସ୍ତ୍ରୀ. ହରିଣୀ ।

ମୃଗଜୀବନ, ବ. ପୁଂ. ( ମୃଗ-ଜୀବନ ) ବ୍ୟାଧ-ଶିକାରୀ ।

ମୃଗତୃଟ୍, ମୃଗତୃଷ୍, ମୃଗତୃଷା, ମୃଗତୃଷ୍ଣା, ମୃଗତୃଷ୍ଣିକା, ବ. ସ୍ତ୍ରୀ. ( ମୃଗ-ତୃଷ୍, ତୃଷା, ତୃଷ୍ଣା, ତୃଷ୍ଣିକା ) ମରୀଚିକା, ସୂର୍ଯ୍ୟ କିରଣରେ ଜଳଭ୍ରମ ।

ମୃଗଦଂଶକ, ବ. ପୁଂ. ( ମୃଗ-ଦଂଶକ ) କୁକୁର, ଶ୍ୱାନ ।

ମୃଗଧୂର୍ତ୍ତ, ମୃଗଧୂର୍ତ୍ତକ, ବ. ପୁଂ. ( ମୃଗ-ଧୂର୍ତ୍ତ, ଧୂର୍ତ୍ତକ ) ଶୃଗାଳ ।

ମୃଗନାଭି, ବ. ସ୍ତ୍ରୀ. (ମୃଗ-ନାଭି) ମୃଗମଦ, କସ୍ତୂରୀ ।

ମୃଗନାଭିଜ, ନ. } ବ. (ମୃଗ-ନାଭି-ଜ, ଜା)
ମୃଗନାଭିଜା, ସ୍ତ୍ରୀ. } ମୃଗନାଭି କସ୍ତୂରୀ ।

ମୃଗନେତ୍ର, ବଂ. ( ମୃଗ-ନୀ-ତ-ଅ ) ମୃଗଶିରା ନକ୍ଷତ୍ରଯୁକ୍ତ ସମୟ ।

ମୃଗପତି, ବ. ପୁଂ. (ମୃଗ-ପତି) ସିଂହ ।

ମୃଗବଧାଜୀବ, ବ. ପୁଂ. ( ମୃଗ-ବଧ-ଆଜୀବ ) ମୃଗୟାଜୀବୀ, ବ୍ୟାଧ ।

ମୃଗବନ୍ଧନୀ, ବ. ସ୍ତ୍ରୀ. (ମୃଗ-ବନ୍ଧନୀ) ମୃଗବନ୍ଧନାର୍ଥ ଜାଲ ।

ମୃଗମଦ, ବ. ପୁଂ. (ମୃଗ-ମଦ) ମୃଗନାଭି, ମୃଗର ନାଭିରୁ ଉତ୍ପନ୍ନ ସୁଗନ୍ଧଦ୍ରବ୍ୟବିଶେଷ । ଯଥା—

ମୃଗମଦବଦନ୍ଧ୍ୱନିର ଶୋଭେ ଶ୍ରଦ୍ଧ ତରୁବେ । ଚ. ଭା.

ମୃଗୟା, ବ. ସ୍ତ୍ରୀ. (ମୃଗ୍-ଯ) ବନପର୍ଯ୍ୟଟନପୂର୍ବକ ମୃଗବଧ, ଶିକାର ।

ମୃଗୟୁ, ବ. ପୁଂ. ( ମୃଗ-ଯା-ଉ ) ବ୍ୟାଧ; ବ୍ରହ୍ମା; ଶୃଗାଳ ।

ମୃଗରାଜ, ମୃଗରାଟ୍, ବ. ପୁଂ. (ମୃଗ-ରାଜ, ରାଜ୍) ମୃଗେନ୍ଦ୍ର, ସିଂହ ।

ମୃଗଲାଞ୍ଛନ, ବ. ପୁଂ. (ମୃଗ-ଲାଞ୍ଛନ) ମୃଗାଙ୍କ, ଚନ୍ଦ୍ର ।

ମୃଗଲେଖା, ବ. ସ୍ତ୍ରୀ. ( ମୃଗ-ଲେଖା ) ମୃଗାଙ୍କିତ ଚନ୍ଦ୍ର ।

ମୃଗବାହନ, ବ. ପୁଂ. (ମୃଗ-ବାହନ) ବାୟୁ ।

ମୃଗବ୍ୟ, ବ. ନ. (ମୃଗ-ବ୍ୟ) ମୃଗୟା, ଶିକାର ।

ମୃଗଶିରଃ, ବି. } ବ. ( ମୃଗ-ଶିରସ୍, ଶୀର୍ଷ )
ମୃଗଶୀର୍ଷ, ନ. } ନକ୍ଷ[illegible]ଷ ।

ମୃଗହା, ବ. ପୁଂ. (ମୃଗ-ହ[illegible]) ବ୍ୟାଧ ।

ମୃଗାକ୍ଷୀ, ବ. ସ୍ତ୍ରୀ. (ମୃଗ-ଅ[illegible]) [illegible]ନୟନା ସ୍ତ୍ରୀ ।

ମୃଗାଙ୍କ, ବ. ପୁଂ. ( ମୃ[illegible] ) ଚନ୍ଦ୍ର; ବାୟୁ; କର୍ପୂର; ମୃଗଚିହ୍ନ ।

ମୃଗାଜୀବ, ମୃଗାବଧ୍, ବ. ପୁଂ. ( ମୃଗ-ଆଜୀବ, ଆ-ବ୍ୟଧ୍-୦) ମୃଗୟାଜୀବୀ [illegible] ।

ମୃଗାଣ୍ଡଜା, ବ. ସ୍ତ୍ରୀ. (ମୃଗ-ଅଣ୍ଡ-ଜ) କସ୍ତୂରୀ ।

ମୃଗାଦ୍, ବ. ପୁଂ. (ମୃଗ-ଅଦ୍-୦) ବ୍ୟାଘ୍ର ।

ମୃଗାଦନ, ବ. ପୁଂ. ( ମୃଗ-ଅଦନ ) ତରକ୍ଷୁ, ଚିତାବାଘ ।

ମୃଗାନ୍ତକ, ବ. ପୁ. ( ମୃଗ-ଅନ୍ତକ ) ଚିତ୍ରବ୍ୟାଘ୍ର, ଚିତାବାଘ ।

ମୃଗାରାତି, ମୃଗାରି, ବ. ପୁଂ. (ମୃଗ-ଅରାତି, ଅରି) ସିଂହ; ବ୍ୟାଘ୍ର; କୁକ୍କୁର ।

ମୃଗିତ, ବ. (ମୃଗ୍-ତ) ଅନ୍ୱେଷିତ; ଯାଚିତ ।

ମୃଗେନ୍ଦ୍ର, ବ. ପୁଂ. (ମୃଗ-ଇନ୍ଦ୍ର) ପଶୁରାଜ, ସିଂହ ।

ମୃଗୈର୍ବାରୁ, ବ. ପୁଂ. ଶ୍ୱେତହରଣ ।

ମୃଗ୍ୟ, ବଂ. (ମୃଗ୍-ଯ) ଅନୁସନ୍ଧେୟ, ଅନ୍ୱେଷଣୀୟ ।

ମୃଜ, ବ. ପୁଂ. ( ମୃଜ୍-ଅ ) ବାଦ୍ୟଯନ୍ତ୍ରବିଶେଷ, ମାଦଳ ।

ମୃଜା, ବ. ସ୍ତ୍ରୀ. (ମୃଜ୍-ଅ) ମାର୍ଜ୍ଜନା, ପରିଷ୍କାର, ଶୁଦ୍ଧି ।

ମୃଡ, ବ. ପୁଂ. (ମୃଡ୍-ଅ) ଶିବ, ମହାଦେବ ।

ମୃଡଙ୍କଣ, ବ. ପୁଂ. (ମୃଡ୍-ଅଙ୍କଣ) ବାଳକ, ଶିଶୁ ।

ମୃଡାନୀ, ବ. ସ୍ତ୍ରୀ. (ମୃଡ୍-ଆନୀ) ଦୁର୍ଗା, ଶିବପତ୍ନୀ ।

ମୃଡୀକ, ବ. ପୁଂ. (ମୃଡ୍-ଈକ) ମୃଗ, ହରିଣ ।

ମୃଣାଳ, ବ. ବି. ( ମୃଣ୍-ଅଲ ) ପଦ୍ମ ପ୍ରଭୃତିର ନାଡ଼ । ନ. ବେଣାମୂଳ ।

ମୃଣାଳିନୀ, ବ. ସ୍ତ୍ରୀ. ପଦ୍ମିନୀ ।

ମୃଣାଳୀ, ବ[illegible]ଳ-ଇନ୍ ) ପଦ୍ମ[illegible]

ମୃଣ୍ମୟ, ବ[illegible]କାର, ମୃତ୍ତିକା-ନିର୍ମିତ ।

ମୃତ, ବଂ. ( ମୃ-ତ ) ମୃତ୍ୟୁପ୍ରାପ୍ତ, ଗତପ୍ରାଣ; ଯାଚିତ । ବ. ନ. ମରଣ; ଯାଚ୍ଞାବୃତ୍ତି ।

ମୃତକ, ବ. ନ. (ମୃତ-କ) ଶବ, ମୃତଶରୀର; ମରଣାଶୌଚ ।

ମୃତକଳ୍ପ, ବଂ. ( ମୃତ-କଳ୍ପ ) ମୃତପ୍ରାୟ, ମୃତତୁଲ୍ୟ ।

ମୃତକାନ୍ତକ, ମଡମଡ଼, ବ. ପୁଂ. (ମୃତ-କାନ୍ତକ, ମଡ଼) ଶୃଗାଳ ।

ମୃତଣ୍ଡ, ବ. ପୁଂ. ସୂର୍ଯ୍ୟ ।
ମୃତବତ୍ସା, ବ. ସ୍ତ୍ରୀ. ( ମୃତ-ବତ୍ସ ) ମୃତାପତ୍ୟା, ଯେଉଁ ସ୍ତ୍ରୀର ସନ୍ତାନ ଜୀବିତ ନ ଥାନ୍ତି ।
ମୃତସଞ୍ଜୀବନୀ, ବ. ସ୍ତ୍ରୀ. ( ମୃତ-ସଞ୍ଜୀବନୀ ) ଯେ ବିଦ୍ୟାବଳରେ ମୃତବ୍ୟକ୍ତି ଜୀବନ ପ୍ରାପ୍ତ ହୁଅନ୍ତି ।
ମୃତାଣ୍ଡ, ବ. ପୁଂ. (ମୃତ-ଅଣ୍ଡ) ସୂର୍ଯ୍ୟ ।
ମୃତ୍କର, ବ. ପୁଂ. (ମୃଦ୍-କର) କୁମ୍ଭକାର, କୁମ୍ଭାର ।
ମୃତ୍କାଂସ୍ୟ, ବ. ନ. (ମୃଦ୍-କାଂସ୍ୟ) ଶରା ।
ମୃତ୍କିରି, ବ. ସ୍ତ୍ରୀ. (ମୃଦ୍-କର) କଳକଳା, କୀଟବିଶେଷ ।
ମୃତ୍ତିକା, ବ. ସ୍ତ୍ରୀ. (ମୃଦ୍-ତିକ-ଆ) ମାଟି; ଗନ୍ଧମାଟି; ଭୂମି ।
ମୃତ୍ୟୁ, ବ. ( ମୃ-ତ୍ୟୁ ) ପ୍ରାଣବିୟୋଗ, ମରଣ । ପୁଂ. ଯମ ।
ମୃତ୍ୟୁଞ୍ଜୟ, ବ. ପୁଂ. ( ମୃତ୍ୟୁମ୍-ଜୟ ) ଶିବ, ମହାଦେବ ।
ମୃତ୍ୟୁନାଶକ, ବ. ପୁଂ. (ମୃତ୍ୟୁ-ନାଶକ) ପାରଦ, ପାରା ।
ମୃତ୍ୟୁପୁଷ୍ପ, ବ. ପୁଂ. (ମୃତ୍ୟୁ-ପୁଷ୍ପ) ଇକ୍ଷୁ, ଅଖୁ ।
ମୃତ୍ୟୁଭଙ୍ଗୁରକ, ବ. ପୁଂ. (ମୃତ୍ୟୁ-ଭଙ୍ଗୁର-କ) ପ୍ରେତପଟହ, ମୃତ୍ୟୁକାଳରେ ବାଦନୀୟ ବାଦ୍ୟବିଶେଷ ।
ମୃ... ତ୍ୟୁ, ବ. ପୁଂ. (ମୃତ ... ରୋଗ, ପୀଡ଼ା ।
ମୃତ୍ୟୁବଞ୍ଚନ, ବ. ପୁଂ ... ) ଶିବ; ବିଲ୍ବବୃକ୍ଷ, ବେଲଗଛ; ଡାମରକୁଆ ।
ମୃତ୍ସା, ମୃତ୍ସ୍ନା, ବ. ସ୍ତ୍ରୀ. ( ମୃଦ୍-ସ-ସ୍ନ ) ପ୍ରଶସ୍ତ ମୃତ୍ତିକା, ଉତ୍ତମ ମାଟି ।
ମୃଦ୍, ମୃଦା, ବ. ସ୍ତ୍ରୀ. (ମୃଦ୍-୦, ଅ, ଆ) ମୃତ୍ତିକା, ମାଟି ।
ମୃଦଙ୍ଗ, ବ. ପୁଂ. (ମୃଦ୍-ଅଙ୍ଗ) ମୁରଜ, ପଖାଉଜ; ପଟହ; ଶବ୍ଦ, ଗୋଳମାଳ; ବଂଶ, ବାଉଁଶ ।
ମୃଦଙ୍ଗଫଳ, ବ. ପୁଂ. (ମୃଦଙ୍ଗ-ଫଳ) ପଣସଗଛ ।
ମୃଦାକର, ବ. ପୁଂ. (ମୃଦା-କାର) ଅଶନି, ବଜ୍ର ।
ମୃଦିତ, ବିଂ. (ମୃଦ୍-ତ) ମର୍ଦ୍ଦିତ, ଚୂର୍ଣ୍ଣିତ, ଗୁଣ୍ଡା କରାଯାଇଥିବା ।
ମୃଦିନୀ, ବ. ସ୍ତ୍ରୀ. (ମୃଦା-ଇନ୍) ପ୍ରଶସ୍ତ ମୃତ୍ତିକା, ଉତ୍ତମ ମାଟି ।
ମୃଦୁ, ବିଂ. (ମୃଦ୍-ଉ) କୋମଳ, ନରମ; ଅର୍ଦ୍ର; ଅତୀକ୍ଷ୍ଣ, ମନ୍ଦ; ନକ୍ଷତ୍ରବିଶେଷ ।
ମୃଦୁଗଣ, ବ. ପୁଂ. ଚିତ୍ରା ଅନୁରାଧା ମୃଗଶିରା ଏବଂ ରେବତୀ ନକ୍ଷତ୍ର ।
ମୃଦୁଗମନା, ବ. ସ୍ତ୍ରୀ. ( ମୃଦୁ-ଗମନ ) ହଂସୀ; ମନ୍ଦଗାମିନୀ ସ୍ତ୍ରୀ ।
ମୃଦୁଚର୍ମୀ, ମୃଦୁଚ୍ଛଦ, ମୃଦୁତ୍ୱକ୍, ମୃଦୁତ୍ୱଚ, } ବ. ପୁଂ. (ମୃଦୁ-ଚର୍ମ-ଇନ୍, ମୃଦୁ-ଛଦ, ତ୍ୱକ୍, ତ୍ୱଚ, ) ଭୂର୍ଜ୍ଜବୃକ୍ଷ, ଭୋଜପତ୍ରର ଗଛ ।
ମୃଦୁଲକ, ବ. ନ. ସୁବର୍ଣ୍ଣ, ସୁନା ।
ମୃଦୁଳ, ବିଂ. (ମୃଦୁ-ଳ) କୋମଳ, ନରମ । ବ. ନ. ଜଳ ।
ମୃଦୁଲୋମକ, ବ. ପୁଂ. ( ମୃଦୁ-ଲୋମନ୍-କ ) ଶଶକ, ଠେକୁଆ ।
ମୃଦୂତ୍ପଳ, ବ. ନ. (ମୃଦୁ-ଉତ୍ପଳ) ନୀଳପଦ୍ମ ।
ମୃଦ୍ୱୀ, ବ. ସ୍ତ୍ରୀ. ( ମୃଦୁ-ଈ ) କୋମଳାଙ୍ଗୀ ସ୍ତ୍ରୀ; ଦ୍ରାକ୍ଷାବିଶେଷ ।
ମୃଦ୍ୱୀକା, ବ. ସ୍ତ୍ରୀ. (ମୃଦୁ-ଈକ) ଦ୍ରାକ୍ଷା, ଅଙ୍ଗୁର ।
ମୃଷା, ଅଂ. (ମୃଷ୍-ଆ) ମିଥ୍ୟା, ଅସତ୍ୟ; ବୃଥା, ବିଫଳ, ଅନର୍ଥକ ।
ମୃଷାବାଦୀ, ବିଂ. (ମୃଷା-ବାଦୀ) ମିଥ୍ୟାବାଦୀ ।
ମୃଷୋଦ୍ୟ, ବ. ନ. (ମୃଷା-ବଦ୍-ଯ) ମିଥ୍ୟାକଥନ । ବିଂ. ମିଥ୍ୟାବା...
ମୃଷ୍ଟ, ବିଂ. ( ... ) ମାର୍ଜ୍ଜିତ, ନିର୍ମଳୀକୃତ; ଶୋଧିତ, ପ...

ମେକଳକନ୍ୟକା, ମେଖଳକନ୍ୟକା, ମେକଳାଦ୍ରିଜା, } ବ. ସ୍ତ୍ରୀ { ମେକଳ-କନ୍ୟକା, ମେଖଳ-କନ୍ୟକା, ମେକଳାଦ୍ରି-ଜ } ନର୍ମଦାନଦୀ ।

ମେକାପ, ବ. (ଦେଶଜ) ରାଜଗୃହରେ ବସ୍ତ୍ରରକ୍ଷା-କାରୀ, ଭଣ୍ଡାରରକ୍ଷକ । ଯଥା—

ଅସ୍ତ୍ର ଯାଉଥିଲେ କଟିଲାସ ଦ୍ୱଙ୍ଗେ ଏକାଲେ ଦେବ ଚପଳ, ବସ୍ତ୍ରଜ ଚେଳଭଣ୍ଡାର ମେକାପ ପଦ୍ମନାଭ ମୂଡ଼କରଣ । ଯ. କେ.

ମେକ୍ଷଣ, ବ. ନ. ଯଜ୍ଞୀୟ ପାତ୍ରବିଶେଷ ।

ମେଖଳା, ବ. ସ୍ତ୍ରୀ. ( ମି-ଖଲ-ଅ ) କଟିସୂତ୍ର, କଟିଭୂଷଣ, ଚନ୍ଦ୍ରହାର ଗୋଠ ପ୍ରଭୃତି; ହସ୍ତି-ବନ୍ଧନ; ଖଡ଼ଗବାନ୍ଧ—ନର୍ମଦା ଉପତ୍ୟକା; ପର୍ବତର ନିତମ୍ବଦେଶ; ହସ୍ତଦ୍ୱାରା ଦୃଢ଼ରୂପେ ଧରିବା ନିମିତ୍ତ ଖଡ୍ଗାଦିର ମୁଷ୍ଟିସ୍ଥିତ ଚର୍ମାଦି-ବନ୍ଧନ, ଖଡ୍ଗବନ୍ଧ; ନର୍ମଦାନଦୀ ।

ମେଘ, ବ. ପୁଂ. (ମିହ୍-ଅ) ଜଳଧର, ବାରିବାହ; ଦୈତ୍ୟବିଶେଷ; ରାକ୍ଷସବିଶେଷ; ରାଗବିଶେଷ; ମୁସ୍ତକ, ମୁଥା ।

ମେଘକଫ, ବ. ପୁଂ. କରକା, ଶିଳା ।

ମେଘଚନ୍ଦ୍ରକ, ମେଘଜୀବନ, ବ. ପୁଂ. ମେଘ-ଚନ୍ଦ୍ରକ, ଜୀବନ) ଚାତକପକ୍ଷୀ ।

ମେଘଜ୍ୟୋତିଃ, ବ. ପୁଂ. ( ମେଘ-ଜ୍ୟୋତିସ୍ ) ବଜ୍ରାଗ୍ନି ।

ମେଘଡମ୍ବର, ବ. ପୁଂ. ( ମେଘ-ଡମ୍ବର ) ମେଘ-ଡମ୍ବର; ମେଘଗର୍ଜ୍ଜନ ।

ମେଘଦୀପ, ବ. ପୁଂ. ( ମେଘ-ଦୀପ ) ତଡିତ୍, ବିଦ୍ୟୁତ୍ ।

ମେଘନାଦ, ବ. ପୁଂ. (ମେଘ-ନାଦ) ଇନ୍ଦ୍ରଜିତ୍, ରାବଣର ପୁତ୍ର; ବରୁଣଦେବ; ମେଘଧ୍ୱନି; ପଲାଶବୃକ୍ଷ ।

ମେଘନାମା, ବ. ପୁଂ. ( ମେଘ-ନାମନ୍ ) ମୁସ୍ତକ, ମୁଥା ।

ମେଘପୁଷ୍ପ, ନ. } ବ. [illegible]-ପୁଷ୍ପ, ପ୍ରସବ)
ମେଘପ୍ରସବ, ପୁଂ. } [illegible], ଜଳ ।

ମେଘଭୂତି, ବ. ପୁଂ. ([illegible]) ଅଶନି, ବଜ୍ର ।

ମେଘଯୋନି, ବ. ପୁଂ. (ମେଘ[illegible]ୋନି) ଧୂମ, ଧୂଆଁ ।

ମେଘବର୍ତ୍ମ, ମେଘବେଶ୍ମ, ବ. [illegible] ( ମେଘ-ବର୍ତ୍ମ, ବେଶ୍ମନ୍ ) ଆକାଶ, ଅନ୍ତ[illegible]

ମେଘବାହନ, ବ. ପୁଂ. ( ମେଘ-ବାହନ ) ଇନ୍ଦ୍ର, ଦେବରାଜ ।

ମେଘସୁହୃଦ୍, ମେଘାନନ୍ଦୀ, ବ. ପୁଂ. ( ମେଘ-ସୁହୃଦ୍, ଆନନ୍ଦିନ୍ ) ମୟୂର ।

ମେଘାଗମ, ବ. ପୁଂ. (ମେଘ-ଆଗମ) ବର୍ଷାକାଳ ।

ମେଘାତ୍ୟୟ, ମେଘାନ୍ତ, ବ. ପୁଂ. (ମେଘ-ଅତ୍ୟୟ, ଅନ୍ତ) ଶରତ୍କାଳ ।

ମେଘାସ୍ଥି, ବ. ନ. (ମେଘ-ଅସ୍ଥି) କରକା, ଶିଳା ।

ମେଘାସ୍ପଦ, ବ. ନ. ( ମେଘ-ଆସ୍ପଦ ) ଆକାଶ, ଗଗନ ।

ମେଘୁଆ, ବିଂ. (ଦେଶଜ) ମେଘାଚ୍ଛନ୍ନ ।

ମେଚକ, ବ. ପୁଂ. ( ମେଚ୍-ଅକ ) ମୟୂରପୁଚ୍ଛସ୍ଥ ଚନ୍ଦ୍ରକ; ଧୂମ; ମେଘ; ଶ୍ୟାମବର୍ଣ୍ଣ । ନ. ଅନ୍ଧ-କାର; ଅଞ୍ଜନ; ନୀଳାଞ୍ଜନ । ବିଂ. କୃଷ୍ଣବର୍ଣ୍ଣ, କାଳିଆ ।

ମେଜ, ବ. (ଯାବନିକ) (Table) ଦ୍ରବ୍ୟ ରଖି-ବାର ପାଦ୍ୟଯୁକ୍ତ ମଞ୍ଚବିଶେଷ ।

ମେଞ୍ଚା, ବ. (ଦେଶଜ) ପୁଞ୍ଜ ।

ମେଢ, ବ. (ଦେଶଜ) ବେଢ, ପ୍ରତିମା ଅବସ୍ଥିତିର ଚିତ୍ରିତ ସ୍ଥାନ, ପରଦା ।

ମେଢ୍ର, ବ. ପୁଂ. (ମିହ୍-ତ୍ର ) ଶିଶ୍ନ, ପୁରୁଷୋପସ୍ଥ; ମେଷ, ଭେଡ଼ା ।

ମେଣ୍ଟ, ବ. [illegible]) ଫଲ, ଖେଦା ।

ମେଣ୍ଟା, ବ[illegible]ମାଗୁର ବଡ଼ା, ଏକାଳିତ ଧାନ୍ୟ[illegible]

ମେଣ୍ଟିବା, କ୍ରି. ( ଦେଶଜ ) ଚଳିବା, ନିବାହ ହେବା ।

ମେଣ୍ଢା, ବ. (ମେଢ୍ର ଶବ୍ଦଜ) ମେଷ, ପଶୁବିଶେଷ ।

ମେଥି, ମେଥିକା, ବ. ସ୍ତ୍ରୀ. ଶସ୍ୟବିଶେଷ, ମେଥି-ଶାକ ।

ମେଦ, ପୁଂ. } ବ. (ମିଦ୍-ଅ, ଅସ୍ ) ଅସ୍ଥିର
ମେଦସ୍, ନ. } ମଜ୍ଜା, ବସା, ଚର୍ବି ।

ମେଦସ୍କୃତ୍, ବ. ନ. (ମେଦସ୍-କୃତ୍) ମାଂସ ।

ମେଦା, ବଂ.(ମେଦସ୍ ଶବ୍ଦଜ) ମୋଟାବୁଦ୍ଧି, ଜଡ଼, ଅବୋଧ ।

ମେଦନୀ, ବ. ସ୍ତ୍ରୀ. (ମେଦ-ଇନ୍-ଈ) ପୃଥିବୀ ।

ମେଦନୀଦ୍ରବ, ବ. ପୁଂ. (ମେଦନୀ-ଦ୍ରୁ-ଅ) ଧୂଳି ।

ମେଦୁର, ବଂ. ( ମିଦ-ଉର ) ସ୍ନିଗ୍ଧ; ଚିକ୍କଣ; କୋମଳ, ମୃଦୁ ।

ମେଦୋଜ, ବ. ନ. (ମେଦସ୍-ଜ) ଅସ୍ଥି, ହାଡ଼ ।

ମେଧ, ବ. ପୁଂ. (ମେଧ୍-ଅ) ଯଜ୍ଞ, ଯାଗ ।

ମେଧା, ବ. ସ୍ତ୍ରୀ. (ମେଧ୍-ଆ) ଧାରଣାବତୀ ବୁଦ୍ଧି, ସ୍ମୃତିଶକ୍ତି; ବୁଦ୍ଧି; ମେଧାର ଔଷଧ ।

ମେଧାଃ ବ. ପୁଂ. (ମେଧ୍-ଅସ୍) ସ୍ୱାୟମ୍ଭୁବ ମନୁପୁତ୍ର।

ମେଧାକର୍, ବ. ପୁଂ. (ମେଧା-କର୍) କାତ୍ୟାୟନ ମୁନି ।

ମେଧାବାନ୍, ବଂ. ( ମେଧା—ବତ୍ ) ମେଧାବିଶିଷ୍ଟ; ଜ୍ଞାନୀ, ବୁଦ୍ଧିମାନ୍; ସ୍ମରଣଶକ୍ତିବିଶିଷ୍ଟ ।

ମେଧାବୀ, ବଂ. (ମେଧା-ବିନ୍) ମେଧାବିଶିଷ୍ଟ, ଜ୍ଞାନୀ; ପଣ୍ଡିତ । ବ. ପୁଂ. ଶୁକପକ୍ଷୀ; ମଦିରା । ବିନୀ-ସ୍ତ୍ରୀ. ଶାରିକା ।

ମେଧ୍ୟ, ବଂ. (ମେଧ୍-ଯ) ଶୁଦ୍ଧ, ପବିତ୍ର; ଯଜ୍ଞୀୟ । ଯଥା—

> ଅରଣ୍ଟିଲେ ଯଜ୍ଞ ମେଧ୍ୟ ତୁରଙ୍ଗ ତାଙ୍କର
> ପାତାଳେ ବାନ୍ଧିଲେ ଇନ୍ଦ୍ର କପିଳ ପାଶର । ବ. ବ

ବ. ପୁଂ. ଛାଗ; ଖଦିର; ଯବ ।

ମେ[illegible] ବ. ସ୍ତ୍ରୀ. (ମେଧ[illegible] [illegible]ଧାତ୍ରୀବିଶେଷ; କେତକୀ; ମଧ[illegible]

ମେନକା,ମେନା, ବ. ସ୍ତ୍ରୀ. (ମେ-ନ-କା, ମି-ନ-ଆ) ହିମାଳୟପତ୍ନୀ; ସ୍ୱର୍ବେଶ୍ୟାବିଶେଷ ।

ମେନାଦ, ବ.ପୁଂ. (ମେ-ନାଦ ) ବିରାଡ଼ୀ; ଛାଗ; ମୟୂର ।

ମେନ୍ଧୀ, ବ. ସ୍ତ୍ରୀ. ( ମୀ-ଇନ୍ଧ୍-ଅ-ଈ ) ମେଧ୍ୟବୃକ୍ଷ, ମଞ୍ଜୁଆତିଗଛ ।

ମେୟ, ବଂ. (ମା-ଯ) ପରିମେୟ, ପରିମାଣଯୋଗ୍ୟ; ଜ୍ଞେୟ; ଅନୁମେୟ ।

ମେରଆ, ବ. (ଦେଶଜ) ବଳିଯୋଗ୍ୟ ନର ।

ମେରୁ, ବ. ପୁଂ. ( ମି-ରୁ ) ହେମାଦ୍ରି, ସୁମେରୁ ପର୍ବତ; ପୃଥିବୀର ଉତ୍ତର ଦକ୍ଷିଣ ପ୍ରାନ୍ତ; ଉତ୍ତର ପ୍ରାନ୍ତ ଉତ୍ତର ମେରୁ ଆଉ ଦକ୍ଷିଣ ପ୍ରାନ୍ତ ଦକ୍ଷିଣ ମେରୁ; ଖଡ୍ଗାଦିର ମୁଷ୍ଟିପ୍ରଦେଶ; ଜପମାଳାର ଉପରସ୍ଥ ପ୍ରଧାନ ଗୋଟି ।

ମେରୁକ, ବ. ପୁଂ. (ମେରୁ-କ) ଯକ୍ଷଧୂପ, ଝୁଣା ।

ମେରୁଦଣ୍ଡ (Axis) ଭୂଗୋଳର ଅନ୍ତର୍ଗତ ଉଭୟ କେନ୍ଦ୍ରଭେଦୀ କାଳ୍ପନିକ ସରଳରେଖା, ଏହି ରେଖା ଅବଲମ୍ବନ କରି ପୃଥିବୀ ପଶ୍ଚିମରୁ ପୂର୍ବାଭିମୁଖରେ ଦୈନନ୍ଦିନ ପରିଭ୍ରମଣ କରେ; ପିଠିର ମଝି ହାଡ଼ ।

ମେରୁହାଡ଼, ବ. ପିଠିର ମଧ୍ୟସ୍ଥିତ ଅସ୍ଥି ।

ମେଲ, ପୁଂ. } ବ. ( ମିଲ୍-ଅ, ଆ ) ଜନତା,
ମେଳା, ସ୍ତ୍ରୀ. } ଉତ୍ସବ ସ୍ଥାନରେ ବା ବଜାରରେ ଲୋକାରଣ୍ୟ; ଐକ୍ୟ, ଯୁକ୍ତି . ଯଥା—

> କୃଷ୍ଣ ମୁଖେ ମେଳ ମୋହନ ବେଣୁ ।

ମସୀ; ଅଞ୍ଜନ ।

ମେଲକ, ବ. ପୁଂ. (ମେଲ-କ) ସଙ୍ଗ, ସହବାସ; (ମିଲ୍-ଇ-ଅକ) ଯେ ବ୍ୟକ୍ତି ମିଳି ପାରନ୍ତି, ଐକ୍ୟକାରକ ।

ମେଲନ,ବ. ନ. (ମିଲ୍-ଅନ) ଏକତ୍ରିତ ହେବା, ମିଶିବା ।

ମେଲା, ବ. (ଦେଶଜ) ପ୍ରଶସ୍ତ ସ୍ଥାନ, ଦାଣ୍ଡଘର, କାନ୍ଥ ନ ଥିବା ଘର । ବଂ. ଖୋଲା, ଫିଟା ।

ମେଲାଣି, ବ. (ଦେଶଜ) ବିଦାୟ । ଯଥା—

> ଶ୍ରୀପଦପଙ୍କଜ ଏବେ ହେଉଛି ମେଲାଣି ।

ମେଳିଆ, ବଂ. (ଦେ[illegible]) ଯେ ଅନେକ ଲୋକଙ୍କୁ ଏକତ୍ର ମେ[illegible] ପାରେ ବା ଆପଣା ମତରେ ଚଳାଇ [illegible] ଯଥା—

> ମରବତ ପି[illegible] ମେଳିଆ ଯେ ।

ମେଲଦ୍ବା, କ୍ରି. ( [illegible]ଶଜ) ପ୍ରକାଶ କରିବା, ବିସ୍ତୃତ କରିବା । ଯଥା—

> ଭବେ [illegible] ପ୍ରସିଦ୍ଧେ ମୁଁ ମେଲଇ ପସରା ।

ମେଲାନନ୍ଦା, ସ୍ତ୍ରୀ. } ବି. ( ମେଳା-ଆନନ୍ଦ,
ମେଲାନ୍ଧୁ, ସ୍ତ୍ରୀ. } ଅନ୍ଧୁ, ଅମ୍ବୁ ) ମସୀଧାର,
ମେଲାମ୍ବୁ, ପୁଂ. } ଦୁଆତ ।

ମେଷ, ବି. ପୁଂ. ( ମିଷ୍-ଅ ) ମେଣ୍ଢା, ଭେଡ଼ା; ପ୍ରଥମ ରାଶି; ଲଗ୍ନବିଶେଷ; ଔଷଧବିଶେଷ ।

ମେଷା, ବି. ସ୍ତ୍ରୀ. ଗୁଜରାଟୀ ଅଳାଇଚ;(ଦେଶଜ) ଅଳସୁଆ ।

ମେଷାଣ୍ଡ, ବି. ପୁଂ. (ମେଷ-ଅଣ୍ଡ) ଇନ୍ଦ୍ର ।

ମେହିକା, ମେହୀ, ବି. ପୁଂ. (ମେହୀ-କ, ମେହ-ଈ) ମୂତ୍ରରୋଗବିଶେଷ, ଧାତୁପଡ଼ିବା, ପ୍ରସ୍ରାବରୋଗ ବା ପ୍ରସ୍ରାବଦୋଷ, ମୂତ୍ର; ମେଷ ।

ମେହ, ବି. ପୁଂ.(ମିହ୍-ଅ)ଶୁକ୍ରକ୍ଷୟମୂତ୍ରରୋଗବିଶେଷ।

ମେହନ, ବି. ନ. ( ମିହ୍-ଅନ ) ଶିଶ୍ନ; ମୂତ୍ର; ମୂତ୍ରତ୍ୟାଗ ।

ନତ୍, ବି. (ଯାବନିକ) ଅଭ୍ୟାସ, ପରିଶ୍ରମ ।

ମେହନ୍ତର, ବି. (ଯାବନିକ) ମାହାର, ଯେ ମଇଲା ସଫା କରେ ।

ମେହରବାନୀ, ବି. (ଯାବନିକ) ଦୟା, ଅନୁଗ୍ରହ ।

ମୈତ୍ର, ବି. ନ. (ମିତ୍ର-ଅ) ମିତ୍ରତା, ସୌହାର୍ଦ୍ଦ, ସଂସର୍ଗ; ଅନୁରାଧାନକ୍ଷତ୍ର; ପୁରୀଷୋତ୍ସର୍ଗ, ମଳତ୍ୟାଗ । ପୁଂ. ବ୍ରାହ୍ମଣ; ମିତ୍ର; ବାରେନ୍ଦ୍ର ବ୍ରାହ୍ମଣର ଉପାଧିବିଶେଷ । ବିଂ. ମିତ୍ରସମ୍ବନ୍ଧୀୟ ।

ମୈତ୍ରାବରୁଣ, ମୈତ୍ରାବରୁଣି,ବି.ପୁଂ. (ମିତ୍ର-ବରୁଣ-ଅ, ଇ) ଅଗସ୍ତ୍ୟ, କୁମ୍ଭସମ୍ଭବ; ବଶିଷ୍ଠମୁନି ।

ମୈତ୍ରୀ, ସ୍ତ୍ରୀ. } ବି. ( ମିତ୍ର-ଅ, ଯ ) ମିତ୍ରତା,
ମୈତ୍ର୍ୟ, ନ. } ସୌହାର୍ଦ୍ଦ; ସଂସର୍ଗ, ସହଯୋଗ ।

ମୈତ୍ରେୟ, ବି. ପୁଂ. ( ମିତ୍ର-ଏୟ ) ମୁନିବିଶେଷ; ବୁଦ୍ଧଦେବ । ବିଂ. ମିତ୍ର[illegible]ୀୟ ।

ମୈତ୍ରେୟିକା, ବି. ସ୍ତ୍ରୀ. (ମୈତ୍ରେ[illegible]-ଇକ) ମିତ୍ର-ଯୁଦ୍ଧ, ବନ୍ଧୁମାନଙ୍କର [illegible]ସଂଗ୍ରାମ ।

ମୈଥିଲ, ବି. ପୁଂ. (ମିଥିଲ[illegible]) ଜନକରାଜା । ବିଂ. ମିଥିଲାସମ୍ବନ୍ଧୀୟ ।

ମୈଥିଲୀ, ବି. ସ୍ତ୍ରୀ. (ମିଥିଲା-ଷ୍ଣ) ସୀତା ।

ମୈଥୁନ, ବି. ନ. ( ମିଥୁନ[illegible] ) ବିବାହ; ସ୍ତ୍ରୀ ପୁରୁଷର ସ୍ମରଣ କୀର୍ତ୍ତନ କେଳି ପ୍ରେକ୍ଷଣ ଗୁହ୍ୟଭାଷଣ ସଂକଳ୍ପ ଅଧ୍ୟବସାୟ କ୍ରିୟା ନିଷ୍ପତ୍ତି —ଏହି ଅଷ୍ଟାଙ୍ଗଯୁକ୍ତ ବ୍ୟାପାର; ସୁରତ, ରତିକ୍ରିୟା ।

ମୈଦା, ବି.(ଯାବନିକ) ଗୋଧୂମାଦି ଚୂର୍ଣ୍ଣବିଶେଷ ।

ମୈଦାନ, ବି. (ଯାବନିକ) ପଡ଼ିଆ, ବିଲ; ମଳତ୍ୟାଗ ।

ମୈନା, ବି. (ଯାବନିକ) ଶାରୀ; ବଣିରଚଢ଼େଇ ।

ମୈନାକ,ବି. ପୁଂ. (ମେନକା-ଅ) ପର୍ବତବିଶେଷ; ମେନକାପୁତ୍ର ।

ମୈନିକ, ବି. ପୁଂ. ( ମୀନ-ଇକ ) ଜାଲିକ, ଧୀବର, କେଉଟ ।

ମୈରଗିରସ୍ତା, ବି. (ଯାବନିକ) ଭୁଖିଆ ।

ମୈରେୟ, ବି. ନ. (ମିରା-ଏୟ) ମଦ୍ୟବିଶେଷ ।

ମୈଲା, ବି. ( ମଳମସ୍ ଶବ୍ଦଜ ) ବିଷ୍ଠା । ବିଂ. ମଳଆ, ମଇଳା ।

ମୋକ୍ତା,ବିଂ. (ମୁଚ୍-ତୃ) ମୋଚନକର୍ତ୍ତା,ତ୍ରାଣକର୍ତ୍ତା।

ମୋକ୍ତାର, (ଯାବନିକ) ଅଦାଲତର କୌଣସି କାର୍ଯ୍ୟ ସମ୍ପନ୍ନ କରିବା ନିମିତ୍ତ ଯେ ବ୍ୟକ୍ତି କ୍ଷମତା ପ୍ରାପ୍ତ ହୋଇଥାନ୍ତି ।

ମୋକ୍ଷ, ବି. ପୁଂ. ( ମୋକ୍ଷ୍-ଅ ) ମୁକ୍ତି, ନିତ୍ୟସୁଖ-ପ୍ରାପ୍ତି, ଅପବର୍ଗ, ନିର୍ବାଣ; ମୋଚନ; ମୃତ୍ୟୁ, ମରଣ; ପାଟଳିବୃକ୍ଷ ।

ମୋକ୍ଷଣ, ବି[illegible] [illegible]କ୍ଷ୍-ଅନ ) [illegible]; ଉଦ୍ଧାର[illegible] ।

ମୋଗଲ, ବି. (ଯାବନିକ) ଜାତିବିଶେଷ ।

ମୋଘ, ବିଂ. (ମୁହ-ଅ) ବନ୍ଧ୍ୟ, ବ୍ୟର୍ଥ, ନିଷ୍ଫଳ । ବିଂ. ପୁଂ. ପ୍ରାଚୀର ।

ମୋଘୋଲି, ବି. ପୁଂ. ପ୍ରାଚୀର, ବେଷ୍ଟନ ।

ମୋଚ, ବି. ନ. (ମୁଚ୍-ଅ) କଦଳୀଫଳ । ପୁଂ. ଶୋଭାଞ୍ଜନବୃକ୍ଷ । ସ୍ତ୍ରୀ. କଦଳୀବୃକ୍ଷ ।

ମୋଚକ, ବି. ପୁଂ. ( ମୁଚ୍-ଅକ ) କଦଳୀଗଛ; ଶୋଭାଞ୍ଜନବୃକ୍ଷ; ମୋଚିଚ । ବିଂ. ମୁକ୍ତ; ବୈରାଗ୍ୟଯୁକ୍ତ; ମୁକ୍ତିକାରକ ।

ମୋଚନ, ବ. ନ. (ମୁଚ୍-ଅନ) ମୁକ୍ତିକରଣ; ପରିତ୍ରାଣକରଣ; ତ୍ୟାଗକରଣ; ମୁକ୍ତି ।
ମୋଚ, ବ. (ଯାବନିକ) କାଷ୍ଠବିଶେଷ ।
ମୋଜା, (ଯାବନିକ) ଚରଣାବରଣ ।
ମୋଟ, ବ. (ଦେଶଜ) ସମୁଦାୟ । ବିଂ. ସ୍ଥୂଳ । ଟୀ, ସ୍ତ୍ରୀ. ମାଂସଳଦେହା ସ୍ତ୍ରୀ ।
ମୋଟକ, ବ. ନ. (ମୁଟ୍-ଅକ) ଶ୍ରାଦ୍ଧାଦିକାଳରେ ପ୍ରୟୋଜନୀୟ ଭଗ୍ନ କୁଶପତ୍ରଦ୍ୱୟ ।
ମୋଟକୀ, ବ. ସ୍ତ୍ରୀ. ରାଗିଣୀବିଶେଷ ।
ମୋଟା, ବିଂ. (ଦେଶଜ) ସ୍ଥୂଳ, ମାଂସଳ, ପୀବର ।
ମୋଟ୍ଟାୟିତ, ବ. ନ. ନାୟିକାର ଭାବବିଶେଷ, ନାୟକବିଷୟକ କଥାଦି ଶୁଣିଲେ ଚିତ୍ତରେ ଅବହିତଚିତ୍ତରେ ଦତ୍ତକର୍ଣ୍ଣ ହୋଇ ନାୟିକାର କର୍ଣ୍ଣକଣ୍ଡୁୟନ ଓ ଅଙ୍ଗଭଙ୍ଗୀ ପ୍ରଭୃତିକରଣ ।
ମୋଚନ, ବ. (ଦେଶଜ) ଆଚ୍ଛାଦନ,ବନ୍ଧକରଣ ।
ମୋଡ଼, ବିଂ. (ଦେଶଜ) ବାଙ୍କ ।
ମୋଡ଼ା, ବ. (ଦେଶଜ) ବଂଶ ଓ ବେତ୍ରନିର୍ମିତ ଆସନବିଶେଷ । କ୍ରି. ଘଷା, ଦଳା ।
ମୋଡ଼ିବା, କ୍ରି. (ଦେଶଜ) ବକ୍ରକରିବା । ଯଥା—
ମୋଡ଼ିଲ ବଦନ ଅତନୁ ବରି ବାସ ପଣନ୍ତ ।
ମୋଦ,ବ.ପୁଂ. (ମୁଦ୍-ଅ)ଆମୋଦ,ହର୍ଷ,ଆହ୍ଲାଦ ।
ମୋଦକ, ବ. ପୁଂ. ନ. (ମୋଦ-ଅକ) ମିଷ୍ଟ ଔଷଧବିଶେଷ; କ୍ଷତ୍ରିୟୌରସରେ ଶୂଦ୍ରାଗର୍ଭ-ଜାତ ସନ୍ତାନ । ବି[illegible]ଦକ ।
ମୋଦନ, ବ. ନ. [illegible] ,ଆହ୍ଲାଦ ।
ମୋଦୟନ୍ତୀ, [illegible]ସ୍ତ୍ରୀ. (ମୋଦ-ଅନ୍ତ-ଈ) ବନ-ମଲ୍ଲିକା ।
ମୋଦିତ, ବିଂ. (ମୁଦ୍-ଇ-ତ) ଆମୋଦିତ, ଆହ୍ଲାଦିତ ।
ମୋଦୀ, ବିଂ. (ମୋଦ-ଇନ୍) ହର୍ଷଯୁକ୍ତ, ଆମୋଦକାରୀ ।
ମୋଷ, ବ. ପୁଂ. ମୋଷଣ, ବ. ନ. (ମୁଷ୍-ଅ, ଅନ) ପରଦ୍ରବ୍ୟାହରଣ; ସ୍ତେୟ, ଚୌର୍ଯ୍ୟ; ଲୁଣ୍ଠନ; ଛେଦନ; ବଧ; ନାଶ; ଅଚ୍ଛେଦ; ପ୍ରତାରଣା ।
ମୋଷକ, ମୋଷ୍ଟା, ବ. ପୁଂ. (ମୁଷ୍-ଅକ; ତୃ) ତସ୍କର, ଚୋର ।
ମୋହ, ବ. ପୁଂ. (ମୁହ୍-ଅ) ମୂର୍ଚ୍ଛା, ଅଚୈତନ୍ୟ; ଅଜ୍ଞାନ; ମୂର୍ଖତା; ଅଜ୍ଞତା, ଅବିଦ୍ୟା; ଦୁଃଖ ।
ମୋହନ, ବ. ପୁଂ. (ମୁହ୍-ଇ-ଅନ) କନ୍ଦର୍ପର ବାଣବିଶେଷ । ନ. ମୁଗ୍ଧୀକରଣ; ସୁରତ । ବିଂ. ମୋହଜନକ ।
ମୋହନଭୋଗ, ବ. (ମୋହନ-ଭୋଗ) ମିଷ୍ଟ ଖାଦ୍ୟଦ୍ରବ୍ୟବିଶେଷ ।
ମୋହର, ବ. ସ୍ୱର୍ଣ୍ଣମୁଦ୍ରା, ନିଦର୍ଶନବିଶେଷ;(ଅପ୍ରଭ୍ରଂଶଜ) ମଦ୍‌ସମ୍ବନ୍ଧୀୟ; (ଦେଶଜ) ବ୍ୟଞ୍ଜନ-ବିଶେଷ ।
ମୋହରାତ୍ରି, ବ. ସ୍ତ୍ରୀ. ପ୍ରଳୟରାତ୍ରି ।
ମୋହିତ, ବିଂ. (ମୋହ-ଇତ) ମୋହପ୍ରାପ୍ତ[illegible]
ମୋହିନୀ, ବ. ସ୍ତ୍ରୀ. (ମୋହ-ଇନ୍) ସମୁଦ୍ରମନ୍ଥନ-କାଳରେ ଅସୁରଗଣଙ୍କୁ ବିମୋହିତ କରିବା-ପାଇଁ ନାରାୟଣଙ୍କର ଅବତାରବିଶେଷ; ସ୍ୱବେଶ୍ୟାବିଶେଷ; ମୋହକାରିଣୀ, ଯେ ମନକୁ ମୁଗ୍ଧ କରଇ ।
ମୌକଲ, ବ. (ଯାବନିକ) ବିଚାରାଳୟରେ ଯେଉଁ-ମାନେ ନିଜ ବକ୍ତବ୍ୟ ପ୍ରକାଶ କରିବା ନିମିତ୍ତ ଆପଣା ପରିବର୍ତ୍ତରେ ଅନ୍ୟକୁ ନିଯୁକ୍ତ କରନ୍ତି ।
ମୌକୁଲ, ବ.ପୁଂ. (ମୁକୁଲ-ଇ) ବାୟସ, କାକ ।
ମୌକ୍ତିକ, ବ.ନ. (ମୁକ୍ତା-ଇକ) ମୁକ୍ତା, ମୋତି ।
ମୌକ୍ତିକସର,ବ.ପୁଂ. ମୁକ୍ତାହାର, ମୁକ୍ତାମାଳା ।
ମୌଖର୍ଯ୍ୟ, ବ. ନ. (ମୁଖର-ଯ) ମୁଖରତା, ବାଚାଳତା ।
ମୌଖିକ, ବ[illegible] (ମୁଖ-ଇକ) ମୁଖସମ୍ବନ୍ଧୀୟ; କାଳ୍ପନି[illegible]ୟ, ଯାହା ଆନ୍ତରିକ ନୁହେ ।
ମୌଜ, ବ. ([illegible]କ) ମାହାଲ; ଆମୋଦ-ପ୍ରମୋଦ ।
ମୌଜା, ବ. (ଯାବନିକ) ମାହାଲ; ପୃଥାନିର୍ମିତ ପଦବୀ ।

ମୌଦ୍ଗଲ୍ୟ, ବ. ପୁଂ. (ମୁଦ୍ଗଲ-ଯ) ମୁଦ୍ଗଲ ମୁନିପୁତ୍ର, ଗୋବକାରିଙ୍କ ଋଷିବିଶେଷ ।

ମୌନ, ବ. ନ. (ମୁନି-ଅ) ଅଭାଷଣ, ତୁଷ୍ଣୀମ୍ଭାବ, ଚୁପ୍, ନୀରବ ।

ମୌନବ୍ରତ, ବ. ପୁଂ. ( ମୌନ-ବ୍ରତ ) ନୀରବ ରହିବାର ନିୟମ ।

ମୌନୀ, ବ. ପୁଂ. (ମୌନ-ଇନ୍) ତପସ୍ୱୀ, ମୁନି । ବିଂ. ମୌନବ୍ରତଧାରୀ ।

ମୌରଜକ, ବ. ପୁଂ. (ମୁରଜ-ଇକ ) ମୁରଜ-ବାଦ୍ୟ-କାରୀ, ମୃଦଙ୍ଗବାଦକ ।

ମୌରସୀ, ବିଂ. ( ଯାବନିକ ) ପୁରୁଷାନୁକ୍ରମେ ଦଖଲୀ ।

ମୌର୍ଯ୍ୟ, ବ. ପୁଂ. (ମୁରା-ଯ) ଚନ୍ଦ୍ରଗୁପ୍ତ ରାଜା । , ବ. ସ୍ତ୍ରୀ. (ମୂର୍ବା-ଅ-ଈ) ଧନୁର୍ଗୁଣ ।

ମୌଳ, ବିଂ. (ମୂଳ-ଅ) ଆଦ୍ୟ; ଭୂମ୍ୟାଦିର ମୂଳ-ଜାତ; ମୂଳାଗତ । ବ. ପୁଂ. ସଚିବ ।

ମୌଳା, ବ. (ମାତୁଳ ଶବ୍ଦଜ) ମାମୁଁ ।

ମୌଳାପକ୍ଷ, ବ. (ଦେଶଜ) ଅପରପକ୍ଷ ।

ମୌଳି, ବ. ପୁଂ. ସ୍ତ୍ରୀ. ( ମୂ-ଲି ) ଶିଖା, ଚୂଡ଼ା; କିରୀଟ, ମୁକୁଟ; ମସ୍ତକ; ସଂଯତ କେଶ; ଅଗ୍ର-ଭାଗ । ପୁଂ. ଅଶୋକବୃକ୍ଷ । ସ୍ତ୍ରୀ. ଭୂମି, ପୃଥିବୀ ।

ମୌଳିକ, ବିଂ. (ମୂଳ-ଇକ) ମୂଳୀଭୂତ, ପ୍ରଧାନ-ସ୍ୱରୂପ; ମୂଳସମ୍ବନ୍ଧୀୟ । ବ. ପୁଂ. ବଂଶଜ ।

ମୌଷଳ, ବିଂ. ( ମୁଷଳ-ଅ ) ମୁଷଳସଦୃଶ; ମୁଷଳସମ୍ବନ୍ଧୀୟ ।

ମୌଷ୍ଟା, ବ. ସ୍ତ୍ରୀ. (ମୁଷ୍ଟି-ଅ, ଆ) ମୁଷ୍ଟିପ୍ରହରଣ-କ୍ରୀଡ଼ା, କୁତୁକୁତୁଖେଳ .

ମୌହୂର୍ତ୍ତ, ମୌହୂର୍ତ୍ତିକ, ବ. ( ମୁହୂର୍ତ୍ତ-ଅ, ଇକ) ଜ୍ୟୋତିର୍ବେତ୍ତା, ଦୈ

ମ୍ରକ୍ଷ, ବ. ପୁଂ. (ମ୍ରକ୍ଷ୍-ଅ) ... ଷ ଗୋପନ; ମ୍ରକ୍ଷଣ ।

ମ୍ରକ୍ଷଣ, ବ. ନ. (ମ୍ରକ୍ଷ୍-ଅନ) ... ବୋଳିବା; ସଂଯୋଜନ; ମିଶ୍ରଣ, ମିଶାଣ; ... ।

ମ୍ରଦିମା, ବ. ପୁଂ. (ମୃଦୁ-ଇମନ୍) କୋମଳତା, ମୃଦୁତ୍ୱ; ନମ୍ରତା ।

ମ୍ରଦିଷ୍ଠ, ମ୍ରଦୀୟାନ୍ ବିଂ. ( ମୃଦୁ-ଇଷ୍ଠ,ଈୟସ୍ ) ଅତି ମୃଦୁ ।

ମ୍ରିୟମାଣ, ବିଂ. (ମୃ-ଆନ) ମୃତକଳ୍ପ, ମୃତପ୍ରାୟ; ଅବସନ୍ନ, ଦୁଃଖିତ ।

ମ୍ଲାନ, ବିଂ. (ମ୍ଲୈ-ତ) କାନ୍ତିହୀନ, ମଳିନ, ବିଷଣ୍ଣ, ଅପ୍ରସନ୍ନ; ବିଶୀର୍ଣ୍ଣ; ଶ୍ରାନ୍ତ, କ୍ଳାନ୍ତ; ଦୁର୍ବଳ; ନିର୍ଲଜ୍ଜ; ଲଜ୍ଜାଶୂନ୍ୟ ।

ମ୍ଲାନି, ବ. ସ୍ତ୍ରୀ. (ମ୍ଲୈ-ତି) ବିଷାଦ, ମାଳିନ୍ୟ, କାନ୍ତିକ୍ଷୟ; ଗ୍ଲାନି ।

ମ୍ଳେଚ୍ଛ, ବ. ପୁଂ. ( ମ୍ଳେଚ୍ଛ୍-ଅ ) ଅସଭ୍ୟ ଜାତି-ବିଶେଷ, କିରାତ ଶବର ପୁଳିନ୍ଦ ଯବନାଦି; ଅପଶବ୍ଦ । ବିଂ. ପାପିଷ୍ଠ, ପାପରତ ।

ମ୍ଳେଚ୍ଛକନ୍ଦ, ବ. ପୁଂ. ( ମ୍ଳେଚ୍ଛ-କନ୍ଦ ) ଲଶୁନ, ରଶୁଣ ।

ମ୍ଳେଚ୍ଛଦେଶ, ବ. ପୁଂ. (ମ୍ଳେଚ୍ଛ-ଦେଶ) ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥାଦି-ରହିତ ଦେଶ, ମ୍ଳେଚ୍ଛ ବସତିସ୍ଥାନ ।

ମ୍ଳେଚ୍ଛମଣ୍ଡଳ, ବ. ନ. ( ମ୍ଳେଚ୍ଛ-ମଣ୍ଡଳ ) ମ୍ଳେଚ୍ଛ-ଦେଶ ।

ମ୍ଳେଚ୍ଛମୁଖ, ମ୍ଳେଚ୍ଛାସ୍ୟ, ବ. ନ. ( ମ୍ଳେଚ୍ଛ-ମୁଖ, ଆସ୍ୟ) ତାମ୍ର, ତମ୍ବା ।

ମ୍ଳେଚ୍ଛିତ, ବ. ... ମ୍ଳେଚ୍ଛ୍-ଇତ ) ମ୍ଳେଚ୍ଛଭାଷା ଅପଶବ୍ଦ; ... , ଅସାଧୁ ଭାଷଣ

—:o:—

ଯ

ଯ, ବ. ପୁଂ. ବ୍ୟଞ୍ଜନ ବର୍ଣ୍ଣର ଷଡ଼ବିଂଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ; (ଯା-ଅ) ବାୟୁ; ଯଶଃ; ଯାନ; ସଂଯମନ; ଯମ । ସ୍ତ୍ରୀ. ଗତି, ଯାତ୍ରା; ଯୋଗ ।

ଯକୃତ୍, ବି. ନ. (ଯ-କୃ-୦) କୁକ୍ଷିର ଦକ୍ଷିଣଭାଗ ମଧ୍ୟରେ ସ୍ଥିତ ମାଂସପିଣ୍ଡବିଶେଷ, ପିତ୍ତାଶୟ ।

ଯକ୍ଷ, ବି. ପୁଂ. (ଯକ୍ଷ୍-ଅ) ଦେବଯୋନିବିଶେଷ, କୁବେରଙ୍କ ଅନୁଚର, କୁବେର; କୁବେରଙ୍କ ଧନ; ଧନରକ୍ଷକ; ଇନ୍ଦ୍ରଭବନ ।

ଯକ୍ଷକର୍ଦ୍ଦମ, ବି. ପୁଂ. ( ଯକ୍ଷ-କର୍ଦ୍ଦମ ) ସମଭାଗ ମିଶ୍ରିତ କୁଙ୍କୁମ, ଅଗୁରୁ, କସ୍ତୁରୀ, କର୍ପୂର, ଚନ୍ଦନ ଏବଂ କକୋଲ ।

ଯକ୍ଷଧୂପ, ବି. ପୁଂ. (ଯକ୍ଷ-ଧୂପ୍-ଅ) ଝୁଣା; ତାର-ପିନତେଲ ।

ଯକ୍ଷରସ, ବି. ପୁଂ. (ଯକ୍ଷ-ରସ) ମଧ୍ୱାସବ, ପୁଷ୍ପମଦ୍ୟ ।

ଯକ୍ଷରାଟ୍, ଯକ୍ଷରାଜ, ବି. ପୁଂ. ( ଯକ୍ଷ-ରାଜ୍, ରାଜନ୍ ) କୁବେର; ରଙ୍ଗମଣ୍ଡପ ।

ଯକ୍ଷରାଟ୍ପୁରୀ, ବି. ସ୍ତ୍ରୀ. ( ଯକ୍ଷରାଜ-ପୁରୀ ) କୈଳାସ ପର୍ବତୋପରି କୁବେରଙ୍କ ରାଜଧାନୀ, ଅଳକା ।

ଯକ୍ଷରାତ୍ରି, ବି. ସ୍ତ୍ରୀ. (ଯକ୍ଷ-ରାତ୍ରି) କାର୍ତ୍ତିକ ପୂର୍ଣ୍ଣିମାର ରାତ୍ରି ।

ଯକ୍ଷିଣୀ, ବି. ସ୍ତ୍ରୀ. (ଯକ୍ଷିନ୍-ଈ) କୁବେରଙ୍କ ପତ୍ନୀ; ଯକ୍ଷଭାର୍ଯ୍ୟା; ପିଶାଚୀ; ଛାଦ୍ୟାଧସ୍ତି ।

ଯକ୍ଷ୍ମା, ବି. ପୁଂ. (ଯକ୍ଷ୍-ମନ୍ ) କ୍ଷୟରୋଗ, କାଶ-ବିଶେଷ ।

ଯଜତ, ବି. ପୁଂ. (ଯଜ୍-ଅତ) ଋତ୍ୱିକ୍, ପୁରୋ-ହିତ ।

[illegible], ବି. ପୁଂ. (ଯଜ[illegible] )ହୋତ୍ରୀ, ନିତ୍ୟ ହୋମକର୍ତ୍ତା ।

ଯଜନ, ବି. ନ. (ଯଜ୍-ଅନ) ଯଜ୍ଞକରଣ, ଯାଗ-କରଣ; ପୂଜନ ।

ଯଜମାନ, ବି. ପୁଂ. (ଯଜ୍-ଆନ, ମ ଆଗମ) ଯଷ୍ଟା, ଯଜ୍ଞକାରକ; ଯଜ୍ଞାଦିର ଅନୁଷ୍ଠାପକ, ବ୍ରତୀ; ଯେଉଁ ଲୋକ ଦକ୍ଷିଣା ଦେଇ ଦୈବ ଓ ପିତୃ-କର୍ମ କରାଏ ।

ଯଜାକ, ବିଂ. (ଯଜ୍-ଅକ) ଦାତା, ଦାନକାରୀ ।

ଯଜି, ବି. ପୁଂ. ( ଯଜ୍-ଇ ) ଯାଜକ; ଯଜ୍ଞକର୍ତ୍ତା; ଯାଗ ।

ଯଜୁଃ, ବି. ନ. ( ଯଜ୍-ଉସ୍ ) ବେଦବିଶେଷ, ଦ୍ୱିତୀୟ ବେଦ, ଏହି ବେଦ ଦୁଇ ଭାଗରେ ବିଭକ୍ତ—କୃଷ୍ଣଯଜୁଃ ଓ ଶୁକ୍ଳଯଜୁଃ ।

ଯଜୁର୍ବେଦ, ବି. ପୁଂ. (ଯଜୁସ୍-ବେଦ) ଶତଶାଖା-ଯୁକ୍ତ ବେଦବିଶେଷ ।

ଯଜୁର୍ବେଦୀ, ବି. ପୁଂ. (ଯଜୁସ୍-ବିଦ୍-ଇନ୍ ) ଯଜୁ-ର୍ବେଦବେତ୍ତା; ଯଜୁର୍ବେଦାନୁସାରେ କର୍ମକାରୀ ।

ଯଜ୍ଞ, ବି. ପୁଂ. (ଯଜ୍-ନ) ଯାଗ, କ୍ରତୁ; ହୋମ ।

ଯଜ୍ଞକୃତ୍, ବି. ପୁଂ. ( ଯଜ୍ଞ-କୃତ୍ ) ଯାଗକର୍ତ୍ତା, ହୋମକର୍ତ୍ତା ।

ଯଜ୍ଞପୁରୁଷ, ବି. ପୁଂ. ( ଯଜ୍ଞ-ପୁରୁଷ ) ବିଷ୍ଣୁ, ନାରାୟଣ ।

ଯଜ୍ଞସାର, ବି. ପୁଂ. (ଯଜ୍ଞ-ସାର) ଯଜ୍ଞଡୁମ୍ବିରଗଛ ।

ଯଜ୍ଞସୂତ୍ର, ବି.ନ.(ଯଜ୍ଞ-ସୂତ୍ର)ଯଜ୍ଞୋପବୀତ, [illegible]

ଯଜ୍ଞସେନ, ବି. ପୁଂ. (ଯଜ୍ଞ-ସେନା) ଦ୍ରୁପଦ[illegible]

ଯଜ୍ଞାଙ୍ଗ, ବି. ପୁଂ. ( ଯଜ୍ଞ-ଅଙ୍ଗ ) ଯଜ୍ଞସାଧନ ସୋମଲତାଦି; ଉଡ଼ମ୍ବର ବୃକ୍ଷ; ଖଦିର ବୃକ୍ଷ; ବ୍ରାହ୍ମଣଯଷ୍ଟିକ । ନ. ଯଜ୍ଞର ଅବୟବ । ସ୍ତ୍ରୀ. ସୋମବଲ୍ଲୀ ।

ଯଜ୍ଞାରି, ବି. ପୁଂ. (ଯଜ୍ଞ-ଅରି) ଶିବ; ରାକ୍ଷସ ।

ଯଜ୍ଞିୟ, ବିଂ. (ଯଜ୍ଞ-ଇୟ) ଯଜ୍ଞକର୍ମର ଯୋଗ୍ୟ; ଯଜ୍ଞର ହିତକାରୀ; କୃଷ୍ଣସାର ମୃଗମାନଙ୍କର ବିଚରଣଯୋଗ୍ୟ । ବି. ପୁଂ. ଦ୍ୱାପରଯୁଗ ।

ଯଜ୍ଞୀୟ, ବିଂ. ( ଯଜ୍ଞ-ଈୟ ) ଯଜ୍ଞସମ୍ବନ୍ଧୀୟ । ବି. ପୁଂ. ଉଡ଼ମ୍ବର ବୃକ୍ଷ ।

ଯଜ୍ଞେଶ୍ୱର, ବି. ପୁଂ. ( ଯଜ୍ଞ-ଈଶ୍ୱର ) ବିଷ୍ଣୁ, ନାରାୟଣ ।

ଯଜ୍ଞୋପବୀତ, [illegible]. ( ଯଜ୍ଞ-ଉପବୀତ ) ଯଜ୍ଞ-ସୂତ୍ର, [illegible]

ଯଜ୍ୱା, ବି. ( [illegible] ) ଯାଜ୍ଞିକ, ବିଧିପୂର୍ବକ ଯାଗକର୍ତ୍ତା ।

ଯତ୍, ଅଂ. ( [illegible]ମ୍-୦ ) ଯେମନ୍ତ; ଯେହେତୁ; ଯେଉଁ[illegible] ।

ଯତ, ବି. ( ଯମ୍-ତ ) ସଂଯତ, ବଦ୍ଧ; ନିଯୁମିତ; ନିଗୃହୀତ; ଅନୁଷ୍ଠିତ । ବି. ନ. ସଂଯମ; ଗଜ-ତାଡ଼ନ ।

ଯତଃ, ଅଂ. (ଯଦ୍-ତସ୍) ଯେହେତୁ; ଯେତେ-ବେଳେ; ଯେଉଁପ୍ରକାରେ; ଯହିଁରେ; ଯାହା-ଠାରୁ; ଯେଉଁଠାରେ; ଯଥା ।

ଯତନ, ବି. ନ. ( ଯତ୍-ଅନ ) ଯତ୍ନ, ଚେଷ୍ଟା, ଉଦ୍ୟୋଗ; (ପ୍ରା) ସୁନ୍ଦର, ସୁଚଳ । ଯଥା—

ଥଷ୍ଟ ଖେତ ଦଣେ ଯତନ ଅଶ୍ଵଶାଳରେ ବସି
ଗ୍ରାମକଥା ଗ୍ରାମବାସିଏ ଗଳ୍ପ କରନ୍ତି ହସି । ଷ. ମା.

ଯତବ୍ରତ, ବି. ( ଯତ-ବ୍ରତ ) ଦୃଢ଼ବ୍ରତ, ଯଥା-ନିୟମରେ ନିତ୍ୟ ନୈମିତ୍ତିକ ଉପାସନାଦି କର୍ମର ଅନୁଷ୍ଠାନକାରୀ ।

[illegible]।, ବିଂ. ( ଯତ-ଆତ୍ମନ୍ ) ସଂଯତଚିତ୍ତ, ପ୍ରମିତାନ୍ତଃକରଣବିଶିଷ୍ଟ; ଯାହାର ମନୋ-ବୃତ୍ତି ବଶୀଭୂତ ଅଛି ।

ଯତି, ବି. ପୁଂ. (ଯତ୍-ଇ) ତପସ୍ୱୀ, ମୁନି; ଭିକ୍ଷୁ, ପରିବ୍ରାଜକ; (ଯମ୍-ତି) ସ୍ତ୍ରୀ. ଶ୍ଳୋକାଦିର ସ୍ୱର-ବିଚ୍ଛେଦ ସ୍ଥାନ, ଜିହ୍ୱାର ଇଷ୍ଟ ବିଚ୍ଛେଦ-ସ୍ଥାନ; କ୍ରୋଧ; ଅନୁବୃତ୍ତି; ବିଧବା ।

ଯତୀ, ବି. ପୁଂ. ( ଯମ୍-ତ-ଇନ୍ ) ଜିତେନ୍ଦ୍ରିୟ, ମୁନି; ସନ୍ନ୍ୟାସୀ । । ତିନୀ-ସ୍ତ୍ରୀ. ବିଧବା ।

ଯତ୍କିଞ୍ଚିତ୍, ଅଂ. (ଯତ୍-କିଞ୍ଚିତ୍) କିଯୁତ୍‌ପରିମାଣ, କିଛି ।

ଯତ୍ନ, ବି. ପୁଂ. (ଯତ୍-ନ) ପ୍ରବୃତ୍ତି; ରୂପାଦି ଚତୁ-ର୍ବିଂଶତି ଗୁଣାନ୍ତର୍ଗତ ଗୁଣବିଶେଷ; ପରିଶ୍ରମ; ଉଦ୍ୟମ; ଅଧ୍ୟବସାୟ; ଚେଷ୍ଟା, ଉଦ୍ୟୋଗ; ଦୃଷ୍ଟି ।

ଯତ୍ର, ଅଂ. ( ଯଦ୍-ତ୍ର ) [illegible]ାବେ, ଯେଉଁ ସ୍ଥାନରେ; ଯେଉଁ ବିଷୟ[illegible]

ଯଥା, ଅଂ. ( ଯଦ୍-ଥା [illegible] )ରେ; ସାଦୃଶ୍ୟ; ଯୋଗ୍ୟତା; ବୀପ୍ସା; ସତ[illegible]ର୍ଥ; ଅନତିକ୍ରମ; ଯତ୍‌ପରିମାଣ ।

ଯଥାକଥଞ୍ଚିତ୍, ଯେ କୌଣସିରୂ[illegible]

ଯଥାକ୍ରମ, କ୍ରି. ବିଂ. (ଯଥା-କ୍ରମ ) କ୍ରମାନୁରୂପ, କ୍ରମକୁ ଅତିକ୍ରମ ନ କରିବା ।

ଯଥାଗତ, ବିଂ. (ଯଥା-ଆଗତ) ଯେଉଁଠାରୁ ଦେଇ ଆସିଅଛି, ଯେରୂପ ଆଗତ; ଉପୂର୍ଣ୍ଣ ।

ଯଥାଜାତ, ବିଂ. (ଯଥା-ଜାତ) ମୂର୍ଖ; ନୀଚ; ଅସଭ୍ୟ ।

ଯଥାତଥ, ବିଂ. ( ଯଥା-ତଥା ) ଯଥାଯୋଗ୍ୟ, ଯଥାର୍ଥ; ଇତିହାସ, ପୁରାବୃତ୍ତ ।

ଯଥାତଥା, ଯେଠାରେ, ସେଠାରେ ।

ଯଥାଯଥ, ବିଂ. (ଯଥା-ଯଥା) ଯେପରି, ପୂର୍ବାନୁ-ଯାୟୀ, ଯଥାଯୋଗ୍ୟ ।

ଯଥାର୍ଥ, ବିଂ. (ଯଥା-ଅର୍ଥ) ସତ୍ୟ; ଯୋଗ୍ୟ ।

ଯଥାର୍ହ, ବିଂ. (ଯଥା-ଅର୍ହ=ଯୋଗ୍ୟ) ଯଥୋଚିତ, ଯଥାଯୋଗ୍ୟ ।

ଯଥାବତ୍, ଅଂ. ( ଯଥା-ବତ୍ ) ବିଧିବତ୍, ବିଧାନାନୁସାରେ; ଯଥାର୍ଥ, ଠିକ ।

ଯଥାବସ୍ଥିତ, ବିଂ. ( ଯଥା-ଅବସ୍ଥିତ ) ପ୍ରକୃତ, ଯେପରି ଅଛି ।

ଯଥାଶକ୍ତି, କ୍ରି. ବିଂ. ( ଯଥା-ଶକ୍ତି ) ଯଥାସାଧ୍ୟ, ଶକ୍ତି ଅନୁସାରେ ।

ଯଥାସଂସ୍କାରକାରିତା, ବି. ସ୍ତ୍ରୀ. ଯେପ୍ରକାର ସଂସ୍କାର ଅଛି ତଦନୁରୂପ କାର୍ଯ୍ୟ କରିବା ।

ଯଥାସ୍ଥିତ, ବିଂ. ( ଯଥା-ସ୍ଥିତ ) ପ୍ରକୃତ, ସତ୍ୟ, ଯୋଗ୍ୟ, [illegible] । ଅଂ. ଯଥାର୍ଥରୂପରେ ।

ଯଥାସ୍ୱ, ବିଂ, [illegible] ଯଥାର୍ଥ । ଅଂ. [illegible]ଥା-ଯୋଗ୍ୟ

ଯଥେଚ୍ଛାଚାର, ବି. ପୁଂ. ( ଯଥା-ଇଚ୍ଛା-ଆଚାର ) ସ୍ୱେଚ୍ଛାଚାର, ଆପଣାର ଇଚ୍ଛାନୁସାରେ ଆଚରଣ ।

ଯଥେଷ୍ଟ, କ୍ରି. ବିଂ. (ଯଥା-ଇଷ୍ଟ) ଯଥାଭିଲଷିତ, ଇଚ୍ଛାନୁରୂପ, ପ୍ରଚୁର, ବହୁତର, ଅନେକ ।

ଯଥେଷ୍ଟାଚାରୀ, ବି. ପୁଂ. (ଯଥା-ଇଷ୍ଟ-ଆଚାରିନ୍ ) ପକ୍ଷୀ । ବିଂ. ସ୍ୱେଚ୍ଛାଚାରୀ ।

ଯଥୋଚିତ, ନ. ଅଂ. ( ଯଥା-ଉଚିତ ) ଯଥା-ଯୋଗ୍ୟ, ଯଥୋପଯୁକ୍ତ ।

ଯଥୋଦ୍ଧତ, ନ. ଅଂ. (ଯଥା=ଯେପରି-ଉଦ୍ଧତ) ଯଥୋକ୍ତ, ଯେପରି କହା ହୋଇଅଛି ।

ଯଦ୍, ସ. (ଯଜ-ଅଦ୍) ଯେ, ଯାହା । ଅଂ. ଯେହେତୁ ।

ଯଦା, ଅଂ. (ଯଦ୍-ଦା=କାଳାର୍ଥରେ) ଯେତେବେଳେ, ଯତ୍‌କାଳେ, ଯେଉଁ ସମୟରେ; ଯେହେତୁ ।

ଯଦି, ଅଂ. (ଯଦ୍-ଇ) ଗୋଟିଏ କ୍ରିୟାରେ ଅନ୍ୟର ଅପେକ୍ଷାପୂର୍ବକ ସମ୍ଭାବନା, ସଂଶୟ; ପକ୍ଷାନ୍ତର; ଅବଧାରଣ ।

ଯଦିବା, ଅଂ. (ଯଦି-ବା) ଅଥବା, ପକ୍ଷାନ୍ତର ।

ଯଦୁ, ବ. ପୁଂ. ଦେବଯାନୀର ଗର୍ଭଜାତ ଯଯାତି ରାଜାଙ୍କ ଜ୍ୟେଷ୍ଠପୁତ୍ର; ଯଦୁବଂଶ; ଶ୍ରୀକୃଷ୍ଣଙ୍କ ପୂର୍ବପୁରୁଷ; ଦଶାର୍ଦ୍ଧ ଦେଶ ।

ଯଦୁପତି, ବ. ପୁଂ. (ଯଦୁ-ପତି) କୃଷ୍ଣ ।

ଯଦୃଚ୍ଛା, ବ. ସ୍ତ୍ରୀ. (ଯଦ୍-ଋଚ୍ଛ୍-ଅ) ସ୍ୱାତନ୍ତ୍ର୍ୟ; ସ୍ୱେଚ୍ଛା; ଅନାୟାସ; ଦୈବାତ୍ ।

ଯଦ୍ଭବିଷ୍ୟ, ବଂ. (ଯଦ୍-ଭବିଷ୍ୟତ୍) ଦୈବିକ, ଭାଗ୍ୟାପେକ୍ଷୀ ।

ଯଦ୍ୟପି, କ୍ରିଂ ବଂ. (ଯଦି-ଅପି) ଯଦିଚ ।

ଯନ୍ତା, ବ. ପୁଂ. (ଯମ୍-ତୃ) ସାରଥି; ହସ୍ତିପକ, ମାହୁନ୍ତ । ବଂ. ଦମନକାରକ; ନିୟାମକ; ଶିଳ୍ପକାରକ; (ପ୍ରା) ... ବୁଝାଏ ।

ଯନ୍ତ୍ର, ବ. ନ. (ଯନ୍ତ୍ର-... ...ରେ ଯେ କୌଣସି ... ନିମିତ୍ତ ପଦାର୍ଥ; ଚକ; ଅଗ୍ନିଯନ୍ତ୍ର, କମାଣ ବନ୍ଧୁକ ପ୍ରଭୃତି; ଯନ୍ତ୍ରଣ; ନିଯନ୍ତ୍ରଣ; ତନ୍ତ୍ରରେ ଦେବାଦିର ଅଧିଷ୍ଠାନ ଚକ୍ର; ପାତ୍ରବିଶେଷ ।

ଯନ୍ତ୍ରକ, ବ. (ଯନ୍ତ୍ର=କଳ, ଦମନ ଇତ୍ୟାଦି-କ=ଯୋଗ) ଯନ୍ତ୍ରକାଷ୍ଠ, କୁନ୍ଦ, ଚକ ପ୍ରଭୃତି ।

ଯନ୍ତ୍ରଣ, ବ. ନ. (ଯନ୍ତ୍ର=ପୀଡ଼ାଦେବା ଇତ୍ୟାଦି-ଅନ) ବନ୍ଧନ; ଧାରଣ; ରକ୍ଷଣ; ଦମନ, ଶାସନ; ସଙ୍କୋଚନ ।

ଯନ୍ତ୍ରଣା, ବ. ସ୍ତ୍ରୀ. (ଯନ୍ତ୍ର-ଅନ-ଆ) ଯାତନା, କ୍ଲେଶ ।

ଯନ୍ତ୍ରିକା, ବ. ସ୍ତ୍ରୀ. (ଯନ୍ତ୍ର-ଇକ-ଆ) ଶାଳୀ, ପତ୍ନୀର କନିଷ୍ଠା ଭଉଣୀ; ଗୃହଂକାଳ ।

ଯନ୍ତ୍ରିତ, ବଂ. (ଯନ୍ତ୍ର-ଇତ) ବଦ୍ଧ; ପ୍ରତିବଦ୍ଧ; ଶାସିତ, ଦମିତ; ସଂଯମିତ ।

ଯନ୍ତ୍ରୀ, ବଂ. (ଯନ୍ତ୍ର-ଇନ୍) ଯନ୍ତ୍ରବିଶିଷ୍ଟ, ଯନ୍ତ୍ରଯୁକ୍ତ । ବ. ପୁଂ. ଶିଳ୍ପକାର; ବାଦ୍ୟକର; ଗୁଣୀ; ଧୂର୍ତ୍ତ ।

ଯମ, ବ. ପୁଂ. (ଯମ୍-ଅ) ଦକ୍ଷିଣଦିକ୍‌ପାଳ, ଧର୍ମରାଜ, ଶମନ; ମୃତ୍ୟୁ; କାକ; ସଂଯମ; ଅନ୍ତଃକରଣର ବହିର୍ବୃତ୍ତି ନିବୃତ୍ତି କରି କେବଳ ଈଶ୍ୱରରେ ନିୟୋଗ; ଶରୀର ସାଧନାପେକ୍ଷ ନିତ୍ୟକର୍ମ; ଅହିଂସା ସତ୍ୟାଦି; ସହିଷ୍ଣୁତା; ଶନି; ଯୋଗ । ବଂ. ଯମଜ, ଯୁଗ୍ମଜାତ ।

ଯମକ, ବ. ନ. (ଯମ୍-କ) ଶବ୍ଦାଳଙ୍କାର ବିଶେ... ଭିନ୍ନାର୍ଥକ ସ୍ୱର ବ୍ୟଞ୍ଜନସମୂହର ତାଦୃଶ... ପୁନରାବୃତ୍ତି । ପୁଂ. ସଂଯମ; ଏକ ଗର୍ଭରୁ ଏକଦା ଉତ୍ପନ୍ନ ସନ୍ତାନଦ୍ୱୟ, ଯୁଗ୍ମଜାତ ।

ଯମଜ, ବଂ. (ଯମ-ଜ) ଏକ ଗର୍ଭରୁ ଏକ ସମୟରେ ଉତ୍ପନ୍ନ ସନ୍ତାନଦ୍ୱୟ । ବଂ. ସହଜାତ ।

ଯମଦଗ୍ନି, ବ. ପୁଂ. ପରଶୁରାମଙ୍କ ପିତା ।

ଯମଦୂତକ, ବ. ପୁଂ. (ଯମ-ଦୂତ-କ) କାକ; ଯମକିଙ୍କର ।

ଯମଦ୍ରୁମ, ବ. ପୁଂ. (ଯମ-ଦ୍ରୁମ) ଶାଳ୍ମଳୀବୃକ୍ଷ, ଶିମିଳିଗଛ ।

ଯମଦ୍ୱିତୀୟା, ବ. ସ୍ତ୍ରୀ. କାର୍ତ୍ତିକ ଶୁକ୍ଳଦ୍ୱିତୀୟା, ଭ୍ରାତୃଦ୍ୱିତୀୟା ।

ଯମନ, ବ. ନ (ଯମ୍-ଅନ) ସଂଯମନ; ବନ୍ଧନ; ଛେଦନ; ବ... ପୁଂ. ଯମ ।

ଯମରାଟ୍, ଯମ... ପୁଂ. (ଯମ-ରାଜ୍, ରାଜ) ଯମ, ଶମ... ।

ଯମଳାର୍ଜ୍ଜୁନ, ... (ଯମଳ-ଅର୍ଜ୍ଜୁନ) କୁବେରପୁତ୍ର ... କୁବେର ଓ ମଣିଗ୍ରୀବ ଶାପଭ୍ରଷ୍ଟ ହୋଇ ଗୋଷ୍ଠରେ ଯମଳ ଅର୍ଜ୍ଜୁନବୃକ୍ଷରୂପ ଧରିଥିଲେ ।

ଯମଳାର୍ଜୁନହା, ବି. ପୁଂ. (ଯମଳ-ଅର୍ଜୁନ-ହନ୍) କୃଷ୍ଣ ।

ଯମବାନ୍, ବିଂ. (ଯମ-ବତ୍) ସଂଯମବିଶିଷ୍ଟ, ଜିତେ-ନ୍ଦ୍ରିୟ, ସଂଯମୀ ।

ଯମବାହନ, ବି. ପୁଂ. (ଯମ-ବାହନ) ମହିଷ ।

ଯମସ୍ୱସା, ବିଂ ସ୍ତ୍ରୀ. (ଯମ-ସ୍ୱସୃ) ଯମୁନାନଦୀ; ଦୁର୍ଗା ।

ଯମାନୀ, ଯମାନିକା, ବି. ସ୍ତ୍ରୀ. (ଯମ-ଅ-ନୀ, ଯମାନୀ-କ) ଯୁଆଣି ।

ଯମାନ୍ତକ, ବି. ପୁଂ. (ଯମ-ଅନ୍ତକ) ଶିବ, ମହାଦେବ ।

ଯମାଳୟ, ବି. ପୁଂ. (ଯମ-ଆଳୟ) ଯମପୁର ।

ଯମିତ, ବିଂ. (ଯମି-ତ) ବଦ୍ଧ; ଛେଦିତ; ଖଣ୍ଡିତ; ସଂଯମିତ ।

[illegible]ବି. ସ୍ତ୍ରୀ. (ଯମ-ଇ) ଯମୁନାନଦୀ । ବିଂ. [illegible]ତେନ୍ଦ୍ରିୟ, ସଂଯମବିଶିଷ୍ଟ ।

ଯମୁନା, ବି. ସ୍ତ୍ରୀ. (ଯମ-ଉନ୍-ଆ) କାଳିନ୍ଦୀ ନଦୀ; ଯମଭଗ୍ନୀ ।

ଯମୁନାଜନକ, ବି. ପୁଂ. (ଯମୁନା-ଜନକ) ସୂର୍ଯ୍ୟ ।

ଯମୁନାଭିଦ୍, ବିଂ ପୁଂ. (ଯମୁନା-ଭିଦ୍) ବଳରାମ, ଏ ଲଙ୍ଗଳ ଲହାରେ ଯମୁନା ନଦୀକୁ ଦ୍ୱିଖଣ୍ଡ କରିଥିଲେ ।

ଯଯାତି, ବି. ପୁଂ. (ଯ-ଯାତି) ନହୁଷ ରାଜାଙ୍କ ପୁତ୍ର, ଯେ ଶୁକ୍ରଙ୍କର ଅଭିଶାପରେ ଜରାଗ୍ରସ୍ତ ହୋଇ-ଥିଲେ ।

ଯଯୀ, ବି. ପୁଂ. (ଯା-ଈ) ଶିବ, ମହାଦେବ; ପଥ, ରାସ୍ତା ।

ଯଯୁ, ବି. ପୁଂ. (ଯା-[illegible]) ଅଶ୍ୱମେଧୀୟ ଅଶ୍ୱ; ଘୋଟକ ।

ଯବ, ବି. ପୁଂ. (ଯୁ-ଅ) [illegible]ଶେଷ; ବେଗ; ପରିମାଣବିଶେଷ, ଗୃ[illegible]ମାଣ; ଅଙ୍ଗୁଳସ୍ଥ ଯବାକାର ରେଖାବିଶେ[illegible]

ଯବକ, ବି. ପୁଂ. (ଯବ-କ) [illegible]ଶୂକଧାନ୍ୟବିଶେଷ, ଯବଧାନ୍ୟ, ଯଅଧାନ ।

ଯବକ୍ୟ, ବି. ନ. (ଯବକା-ଯ) ଯବ ଶସ୍ୟ ଜନ୍ମିବାର ଉପଯୁକ୍ତ ସ୍ଥାନ ।

ଯବକ୍ଷାର, ବି. ପୁଂ. (ଯବ-କ୍ଷାର) କ୍ଷାରବିଶେଷ, ସୋରା ।

ଯବଗଣ୍ଡ, ବି. ପୁଂ. (ଯବନ୍-ଗଣ୍ଡ) ବୟୁବ୍ରଣ, କାଠବ୍ରଣ ।

ଯବଜ, ବି. ପୁଂ. (ଯବ-ଜ) ଯବକ୍ଷାର ।

ଯବନ, ବି. ପୁଂ. (ଯୁ-ଅନ) ଆରବଦେଶ; ତୁରସ୍କଦେଶ; ମୁସଲମାନ; ବେଗବାନ୍ ଅଶ୍ୱ; ବେଗ; (ଯୋନ—ଷ୍ଟ=ଜାତ୍ୟର୍ଥରେ) ଜାତି ବିଶେଷ; ମୁସଲମାନ ବା ମ୍ଳେଚ୍ଛ ଜାତି । ବିଂ. ବିଧର୍ମୀ, ଅସଦାଗ୍ରସ୍ତ; ପ୍ରସିଦ୍ଧ ଅଛି ଯେ ବଶିଷ୍ଠମିବଙ୍କର ସମସ୍ତ ସୈନ୍ୟ ପରାଭବ କରିବା ମାନସରେ ବଶିଷ୍ଠଙ୍କର ଗାଭୀର ଯୋନିଦ୍ୱାରରୁ କେତେଗୁଡିଏ ଲୋକ ନିର୍ଗତ ହେଲେ, ପରେ ସେମାନେ ଯବନ ନାମରେ ଖ୍ୟାତ ହୋଇ-ଥିଲେ । ବିଷ୍ଣୁ ପୁରାଣରେ ଯବନ ଜାତିର ଉତ୍ପତ୍ତି ବିଷୟ ଅନ୍ୟ ପ୍ରକାର ବର୍ଣ୍ଣିତ ଅଛି । ସଗର ରାଜା ବିଶେଷ ଅପରାଧ ହେତୁ କେତେଗୁଡିଏ ଲୋକଙ୍କୁ ସେମାନଙ୍କର ମସ୍ତକ ଲଣ୍ଡା କରି ଭାରତବର୍ଷରୁ ବହିଷ୍କୃତ କରି ଦେଲେ, ସେମାନେ ଯବନ ନାମରେ ଖ୍ୟାତ ହେଲେ । ଉଇଲସନ ସାହେବ, ଅନୁମାନ କରନ୍ତି [illegible] ସ୍ମାରୁ ଅଧୋନା[illegible] ପର୍ଯ୍ୟ[illegible] [illegible]ଦେଶର ଅଧିବାସୀ ଗ୍ରୀକମାନଙ୍କୁ ହିନ୍ଦୁମାନେ ଯବନ ବୋଲି କହନ୍ତି ।

ଯବନିକା, ବି. (ଯୁ-ଅନ-କ, ଆ) ତିରସ୍କରଣୀ, ପର୍ଦ୍ଦା; ଯବନ ସ୍ତ୍ରୀ ।

ଯବନେଷ୍ଟ, ବି. ନ. (ଯବନ-ଇଷ୍ଟ) ସୀସକ, ସୀସା । ପୁଂ. ନିମ୍ବ; ପଲାଣ୍ଡୁ, ରଶୁଣ ।

ଯବସ, ବି. ପୁଂ. ନ. (ଯୁ-ଅସ) ତୃଣ, ଘାସ । ବିଂ. ଦକ୍ଷ ।

ଯବାଗୂ, ବ. ସ୍ତ୍ରୀ. ( ଯୁ=ମିଶ୍ରିତ କରିବାର-ଅଗୂ ) ଯବମଣ୍ଡ, ଯାଉ ।

ଯବାଗ୍ରଜ, ବ. ପୁଂ. ( ଯବ-ଅଗ୍ର-ଜ ) ଯବକ୍ଷାର, ସୋରା ।

ଯବାନ, ବିଂ. (ଯବ-ଆ-ନୀ--ଅ) ବେଗବାନ୍, ଦ୍ରୁତଗାମୀ; ବଳିଷ୍ଠ ।

ଯବାନୀ, ଯବାନିକା, ବ.ସ୍ତ୍ରୀ. (ଯବ-ଆ-ନୀ-ଅ, ଈ; ଯବନୀ-କ) ଔଷଧବିଶେଷ, ଯୁଆଣି ।

ଯବିଷ୍ଠ, ଯବୀୟାନ୍, ବିଂ. ( ଯୁବନ୍-ଇଷ୍ଠ,ଈୟସ୍ ) ଅତିଯୁବା; କନିଷ୍ଠ ।

ଯବ୍ୟ, ବ. ନ. (ଯବ-ଯ) ଯବଶସ୍ୟ ଜନ୍ମିବାର ଉପଯୁକ୍ତ କ୍ଷେତ୍ର । ପୁଂ. ଚାନ୍ଦ୍ରମାସ ।

ଯଶଃ ବ. ନ. ( ଯଶସ୍, ଅଶ୍-ଅସ୍, ଯ ଆଗମ ) ସୁଖ୍ୟାତି, କୀର୍ତ୍ତି ।

ଯଶଃପଟହ, ବ. ପୁଂ. (ଯଶସ୍-ପଟହ) ଢକ୍କା ।

ଯଶଃଶେଷ, ବ. ପୁଂ. ( ଯଶସ୍-ଶେଷ ) ମୃତ୍ୟୁ, କୀର୍ତ୍ତିବିଶେଷ । ବିଂ. ମୃତ ।

ଯଶଦ, ବ. ନ. ଧାତୁବିଶେଷ, ଦସ୍ତା ।

ଯଶସ୍ୟ ବିଂ. (ଯଶସ୍-ଯ) ଯଶସ୍କର, ସୁଖ୍ୟାତିଜନକ ।

ଯଶସ୍ୱାନ, ବିଂ. (ଯଶସ୍-ବତ୍) କୀର୍ତ୍ତିମାନ୍, ଯାହାର ଯଶଃ ଅଛି ।

ଯଶସ୍ୱୀ, ବିଂ. (ଯଶସ୍-ବିନ୍) କୀର୍ତ୍ତିମାନ୍, ବିଖ୍ୟାତ ।

ଯଶୋଦ, ବିଂ. (ଯଶସ୍-ଦା-ଅ) କୀର୍ତ୍ତିଦାତା । ବ. ପାରଦ, ପାରା ।

ଯଶୋଦା, ବ. [illegible] ( ଯଶସ୍-ଅ[illegible] ) ନନ୍ଦ-ଗୋପପତ୍ନୀ ।

ଯଷ୍ଟା, ବ. ପୁଂ. (ଯଜ୍-ତୃ) ଯାଗକର୍ତ୍ତା, ଯଜମାନ, ଯାଜ୍ଞିକ ।

ଯଷ୍ଟି, ବ. ପୁଂ. ସ୍ତ୍ରୀ. ( ଯକ୍ଷ୍-ତି ) ବାଡ଼ି; ଧ୍ୱଜାଦି ଦଣ୍ଡ; ଶାଖା; ଭୁଜଦଣ୍ଡ ।

ଯଷ୍ଟିକା, ବ. ସ୍ତ୍ରୀ. ( ଯଷ୍ଟି-କ-ଆ ) ବାଡ଼, ଯଷ୍ଟି; ଏକସର ହାର; ପାହିଁଚା, ପଦ୍ମୋଳର; ଯଷ୍ଟି-ମଧୁ ।

ଯଷ୍ଟିଗ୍ରହ, ବ. ପୁଂ. ( ଯଷ୍ଟି-ଗ୍ରହ ) ଲଗୁଡ଼ଧାରୀ, ଯଷ୍ଟିଧାରୀ ।

ଯଷ୍ଟିମଧୁ, ବ. ନ. (ଯଷ୍ଟି-ମଧୁ ) ମିଷ୍ଟମୂଳବିଶେଷ ।

ଯହ୍ୱ, ବ. ପୁଂ. ( ଯା-ବ, ହ୍ ଆଗମ ) ଯଜମାନ, ଯାଜ୍ଞିକ ।

ଯା, ବ. (ଯାତୁ-ଶବ୍ଦଜ) ପତିର ଭ୍ରାତୃଜାୟା; କ୍ରିୟା ହେଲେ "ଗମନ କର" ଏହି ଅର୍ଥ ହୁଏ ।

ଯାଁଅଳା, ବିଂ. ( ଯାମଳ ଶବ୍ଦଜ ) ଯମଜ, ଏକ ଗର୍ଭରୁ ଏକ ସମୟରେ ଉତ୍ପନ୍ନ ସନ୍ତାନ ।

ଯାଉ, ବ. (ଯବାଗୂ ଶବ୍ଦଜ) ଯ ଇତ୍ୟାଦିର ମଣ୍ଡ ।

ଯାଉଁଳ, ବ. (ଯାମଳ ଶବ୍ଦଜ) ଯୁଗ୍ମ ।

ଯାକ, ଶବ୍ଦର ସହିତ ଏ କଥା ବ୍ୟବହାର ହୁଏ, ଏହାର ଅର୍ଥ ସମୁଦାୟ—ପିଲାଯାକ,ଧନଯାକ ଇତ୍ୟାଦି । ବିଂ. ଭିତ । ଯଥା—

ବେ ବୋଲେ ଘର ଯାକ ରେ ଭଯ ମୋ ଘରସା କ[illegible]
ଠାବର ଦରଶନ ପଛେ କରିବା ଅଗ ରୁ ଘର ମ୍ଳା କରେ ।

ଯାକିବା, କ୍ରି. (ଯୁଜ୍ ଧାତୁଜ) ଚିପି ଧରିବା ।

ଯାଗ, ବ. ପୁଂ. (ଯଜ୍-ଅ) ଯଜ୍ଞ, ହୋମ ।

ଯାଚକ, ବିଂ. (ଯାଚ୍-ଅକ) ଭିକ୍ଷୁ, ଯାଚ୍ଞାକାରୀ; ପ୍ରାର୍ଥୀ ।

ଯାଚନା, ବ. ସ୍ତ୍ରୀ. ( ଯାଚ୍-ଅନ-ଆ ) ଯାଚ୍ଞା, ଭିକ୍ଷା, ପ୍ରାର୍ଥନା ।

ଯାଚନୀୟ, ବିଂ. ( ଯାଚ୍-ଅନୀୟ ) ଭିକ୍ଷଣୀୟ, ପ୍ରାର୍ଥନୀୟ ।

ଯାଚମାନ, ବିଂ. ( ଯାଚ୍-ଆନ ) ପ୍ରାର୍ଥ୍ୟମାନ, ଯାଚ୍ଞାକାରୀ, ଯେ ବ୍ୟକ୍ତି ଯାଚ୍ଞା କରୁଅଛି ।

ଯାଚିତ, ବିଂ. ([illegible]-ତ) ପ୍ରାର୍ଥିତ, ଭିକ୍ଷିତ; ମୃତ । ବ. [illegible]ନା ।

ଯାଚିତକ, ବ. [illegible] ( ଯାଚ୍-ତ, କ ) ପ୍ରାର୍ଥିତ ବସ୍ତୁ, ଉଧା[illegible]

ଯାଚ୍ଞା, ବ. ସ୍ତ୍ରୀ. [illegible]-ନ-ଆ) ଭିକ୍ଷା, ପ୍ରାର୍ଥନା ।

ଯାଚ୍ୟ, ବିଂ. (ଯାଚ୍-ଯ) ପ୍ରାର୍ଥନୀୟ, ଯାଚିତବ୍ୟ ।

ଯାଜ, ବ. ପୁଂ. [illegible]ଜ୍-ଅ) ଭକ୍ତ, ଅନ୍ନ, ଭାତ ।

ଯାଜକ, ବ.ପୁଂ.(ଯଜ୍-ଅକ) ଋତ୍ୱିକ, ପୁରୋହିତ; ମନ୍ତ୍ରଦାତା ।

ଯାଜନ, ବ. ନ. (ଯାଜ-ଅନ ) ଯଜ୍ଞକ୍ରିୟା କରାଇବା, ଯାଗ କରାଇବା: ପୌରୋହିତ୍ୟ ।

ଯାଜି, ଯାଜୀ, ବ. ପୁଂ. (ଯଜ୍-ଇ-ଇନ୍) ଯାଗକର୍ତ୍ତା; ଯଜ୍ଞ ।

ଯାଜ୍ଞବଲ୍କ୍ୟ, ବ. ପୁଂ. (ଯଜ୍ଞ-ବଲ୍କ-ଯ) ଧର୍ମଶାସ୍ତ୍ରପ୍ରଣେତା ମୁନିବିଶେଷ ।

ଯାଜ୍ଞସେନୀ, ବ. ସ୍ତ୍ରୀ. ( ଯଜ୍ଞ-ସେନ-ଅ, ଈ ଦ୍ରୌପଦୀ ।

ଯାଜ୍ଞିକ, ବ. ପୁଂ. ( ଯଜ୍ଞ-ଇକ ) ଯାଗକର୍ତ୍ତା; ଯାଜକ, ପୁରୋହିତ; ରକ୍ତଖଦିର; ପଲାଶ । ବିଂ. ଯଜ୍ଞୀୟ ।

... ବିଂ. (ଯଜ୍-ଯ) ଯାଜନଯୋଗ୍ୟ; ଯଜ...ୟ, ଯଜ୍ଞକ୍ରିୟାର ଯୋଗ୍ୟ । ବ. ନ. ଯଜ୍ଞସ୍ଥାନ; ...ବତା ।

ଯାଜ୍ୟା, ବ. ସ୍ତ୍ରୀ. (...ଜ୍-ଯ-ଆ) ଯାଗମନ୍ତ୍ର ।

ଯାତ, ବିଂ. (ଯା=ଗମନକର-ତ) ଗତ, ଅତୀତ; ଲବ୍ଧ; ଜ୍ଞାତ । ବ. ନ. ଗମନ; ପ୍ରାପଣ; ଜ୍ଞାନ; ଅଙ୍କୁଶାଘାତଦ୍ୱାରା ନିବାରଣ; (ଯାତ୍ରା ଶବ୍ଦଜ) ଉତ୍ସବ, ଯାତ୍ରା, ଲୀଳା ।

ଯାତନା, ବ. ସ୍ତ୍ରୀ. (ଯାତି=ଯନ୍ତ୍ରଣା ଦେବା-ଅନ, ଆ) ତୀବ୍ରବେଦନା, ଯନ୍ତ୍ରଣା ।

ଯାତଯାମ, ବିଂ. ( ଯାତ=ଗତ-ଯାମ=ଷାମ୍ଭ, ସତ୍ତ୍ୱନ, ଉଚିତ ସମୟ) ଜୀର୍ଣ୍ଣ; ହ୍ରାସପ୍ରାପ୍ତ; ପରଭୁକ୍ତ; ଉଚ୍ଛିଷ୍ଟ; ପରିତ୍ୟକ୍ତ; ପର୍ଯ୍ୟୁଷିତ; ଶୀର୍ଣ୍ଣ ।

ଯାତବ୍ୟ, ବିଂ. (ଯା-ତବ୍ୟ... ) ଗନ୍ତବ୍ୟ; ଆକ୍ରମଣୀୟ ।

ଯାତା, ବିଂ. (ଯତ୍-ତୃ-ଅ) ... ) ଗମନକର୍ତ୍ତା; ସାରଥି; ମାତଲ ।

ଯାତାୟାତ, ବ. ନ. ( ଯାତ... ...ତ ) ଗମନାଗମନ ।

ଯାତକ, ଯାତୃକ, ବ. ପୁଂ. ଯା... ...ଶ୍ୱ ।

ଯାତ୍ରୁ, ବ. ପୁଂ. (ଯା-ତ୍ରୁ) ପଥିକ; ସମସ୍ତି; ରାକ୍ଷସ । ବିଂ. ଗମନକର୍ତ୍ତା ।

ଯାତୁଧାନ, ବ. ପୁଂ. ( ଯାତୁ-ଧା-ଅନ ) ରାକ୍ଷସ, ନିଶାଚର ।

ଯାତ୍ରା, ବ. ସ୍ତ୍ରୀ. (ଯା-ତ୍ର-ଆ) ପ୍ରସ୍ଥାନ, ଗମନ; ଅଭିନର୍ଯ୍ୟାଣ, ଯୁଦ୍ଧାର୍ଥ ନିର୍ଗମନ; ଯାପନ; ଉତ୍ସବ; ଉପାୟ; ତୀର୍ଥଗମନ ।

ଯାତ୍ରିକ, ବିଂ. ( ଯାତ୍ରା-ଇକ ) ଯାତ୍ରାସମ୍ବନ୍ଧୀୟ; ଯାତ୍ରାଯୋଗ୍ୟ, ଯାତ୍ରାର ଉପଯୁକ୍ତ । ବ. ନ. ପାଥେୟ, ବାଟଖରଚ । ପୁଂ. ଉତ୍ସବ; ଉପାୟ; ପଥିକ ।

ଯାତ୍ରୀ, ବିଂ. (ଯାତ୍ରା-ଇନ୍ ) ଯାତ୍ରାକାରୀ ।

ଯାଥାତଥ୍ୟ, ବ. ନ. (ଯଥା-ତଥା-ଯ) ଯଥାର୍ଥତା, ପ୍ରକୃତତ୍ୱ, ସତ୍ୟତା ।

ଯାଥାର୍ଥିକ, ବିଂ. (ଯଥାର୍ଥ-ଇକ)ବାସ୍ତବିକ, ସତ୍ୟ ।

ଯାଥାର୍ଥ୍ୟ, ବ. ନ. ( ଯଥାର୍ଥ-ଯ ) ଯଥାର୍ଥତା, ସତ୍ୟତା ।

ଯାଦଃ, ବ. ନ. (ଯା=ଗମନ କରିବା-ଅସ୍, ଦ୍= ଆଗମ) ଜଳଚର ଜନ୍ତୁ, ଜଳଚର ଜୀବ ।

ଯାଦଃପତି,ବ. ପୁଂ. (ଯାଦସ୍-ପତି) ସମୁଦ୍ର; ବରୁଣ ।

ଯାଦବ, ବ. ପୁଂ. (ଯଦୁ-ଅ) କୃଷ୍ଣ, ଯଦୁନନ୍ଦନ । ବିଂ. ଯଦୁବଂଶୀୟ; ଯଦୁସମ୍ବନ୍ଧୀୟ । ବ. ନ. ଗୋ-ମହିଷାଦିରୂପ ଧନ । ପୁଂ. ଯଦୁବଂଶୀୟ ବ୍ୟକ୍ତି ।

ଯାଦବୀ, ବ... ...ବ-ଈ) ବାସ... ଦୁର୍ଗା; ... ...ଧନ ।

ଯାଦୁ,ବ.(ଦେଶଜ) ବଶୀକରଣ ବିଦ୍ୟା,ମୋହିନୀ ।

ଯାଦୃକ୍, ଯାଦୃଶ, ( ଯଦ୍-ଦୃଶ୍-୦,ଅ ) ଯେରୂପ, ଯେପରି ।

ଯାଦୁକର, (ଦେଶଜ) ଯେଉଁମାନେ ମାୟାଦ୍ୱାରା ଭୋଜକ୍ରୀଡ଼ା କରନ୍ତି ।

ଯାଦୃଚ୍ଛିକ, ବିଂ. ( ଯଦୃଚ୍ଛା-ଇକ ) ଯଦୃଚ୍ଛାପ୍ରାପ୍ତ, ସ୍ୱେଚ୍ଛାକୃତ, ସ୍ୱେଚ୍ଛାନୁଯାୟୀ ।

ଯାଦୋନାଥ, ବ. ପୁଂ. (ଯାଦସ୍=ଜଳଚର ଜନ୍ତୁ-ନାଥ) ସମୁଦ୍ର, ବରୁଣ ।

ଯାଦୋନାଥାପଃ,ବ. ନ. (ଯାଦସ୍-ନାଥାପଃ) ଜଳ, ବାରି ।

ଯାନ, ବ. ନ. ( ଯା-ଅନ ) ବାହନ, ହସ୍ତ୍ୟଶ୍ୱ ଶକଟାଦି ବାହନ; ଗମନ; ଆକ୍ରମଣ; ଶତ୍ରୁର ପ୍ରତିକୂଳରେ ଯାତ୍ରା ।

ଯାନପାତ୍ର, ବ. ନ. (ଯାନ-ପାତ୍ର) ଅର୍ଣ୍ଣବପୋତ, ଜାହାଜ ।

ଯାପନ, ବ. ନ. ( ଯାପି-ଅନ ) କାଳକ୍ଷେପଣ, ସମୟ କଟେଇବା, କାଳ କ୍ଷେପଣ କରିବା; ଅବସ୍ଥାନ; ନିରସନ; ଅପସାରଣ ।

ଯାପିତ,ବଂ. (ଯାପି-ତ) ଅତିବାହିତ; ଅପସାରିତ ।

ଯାପ୍ୟ, ବଂ. ( ଯାପ-ଯ ) ନିନ୍ଦନୀୟ, ଅଧମ; ଯାପନୀୟ; କ୍ଷେପଣୀୟ;ଗୋପନୀୟ,ଅବରଣୀୟ; ନିଃଶେଷରେ ଅପ୍ରତୀକାର୍ଯ୍ୟ । ପୁଂ. ରୋଗ- ବିଶେଷ ।

ଯାପ୍ୟଯାନ, ବ. ନ. (ଯାପ୍ୟ-ଯାନ) ଶିବିକା ।

ଯାମ, ବ. ପୁଂ. (ଯା-ମ କିମ୍ବା ଯମ୍-ଅ) ଦିବାରାତ୍ରିର ଚତୁର୍ଥ ଭାଗୈକକାଳ; ପ୍ରହରପରିମିତ କାଳ; ସଂଯମ; ସମୟ । ଯଥା--

> ଝଗଡ଼ ମାତ୍ର ହେଲ ହେ ଶ୍ୟାମ,
> ଛିନ୍ନିଃ ହେବାକୁ ସହସ୍ରେ ଯାମ । ବ. ଚ.

ଯାମଘୋଷ, ବ. ପୁଂ. ( ଯାମ-ଘୋଷ ) କୁକ୍କୁଟ, କୁକୁଡ଼ା; ଶୃଗାଳ; ଘଟିକାଯନ୍ତ୍ର; ପଟହବିଶେଷ । [illegible]-ସ୍ତ୍ରୀ. ଘଟିକାଯନ୍ତ୍ର [illegible]

ଯାମଳ, ବ. ନ. [illegible], ଯୋଡ଼ା; ତନ୍ତ୍ରଶାସ୍ତ୍ର[illegible], ଯଥା— ଆଦି, ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଗଣେଶ ଏବଂ ଆଦିତ୍ୟଯାମଳ ।

ଯାମବତୀ,ବ. ସ୍ତ୍ରୀ. (ଯାମ-ବତ୍-ଈ) ଯାମିନୀ, ରାତ୍ରି ।

ଯାମାତା, ବ. ପୁଂ. ( ଜାୟା-ମା-ତୃ ) ଜାମାତା, ଜ୍ୱାଇଁ ।

ଯାମି, ବ. ସ୍ତ୍ରୀ. (ଯା-ମି) ଭଗିନୀ; ଦୁହିତା; କୁଳ- ବଧୂ; ରାତ୍ରି; ଧର୍ମପତ୍ନୀ; ଦକ୍ଷିଣଦିକ୍ ।

ଯାମିକା, ବ. ସ୍ତ୍ରୀ. (ଯାମ-ଇକ-ଆ) ରାତ୍ରି ।

ଯାମିତ୍ର,ବ. ନ. (ଯାମି-ତ୍ର) ଲଗ୍ନଠାରୁ ସପ୍ତମରାଶି।

ଯାମିତ୍ରବେଧ, ବ. ପୁଂ. ଲଗ୍ନର ସପ୍ତମ ସ୍ଥାନରେ ପ୍ରତିକୂଳ ଗ୍ରହସ୍ଥିତି ।

ଯାମିନୀ, ବ. ସ୍ତ୍ରୀ. (ଯାମ-ଇନ୍-ଈ) ରାତ୍ରି,ଯାମବତୀ; ହରିଦ୍ରା ।

ଯାମିନୀପତି, ବ. ପୁଂ. (ଯାମିନୀ-ପତି) ଚନ୍ଦ୍ର, ନିଶା- ପତି ।

ଯାମୀ,ବ. ସ୍ତ୍ରୀ. (ଯମ-ଅ-ଈ) ଦକ୍ଷିଣଦିକ୍; ଯାତନା- ପ୍ରଭୃତି; (ଯାମି-ଈ) କୁଳସ୍ତ୍ରୀ ।

ଯାମୁନ, ବଂ. (ଯମୁନା-ଅ) ଯମୁନାସମ୍ବନ୍ଧୀୟ । ବ. ନ. ରସାଞ୍ଜନ; ସୀସକ ।

ଯାମେୟ, ବ. ପୁଂ. ( ଯାମି-ଏୟ ) ଭାଗିନେୟ, ଭଗିନୀର ପୁତ୍ର ।

ଯାମ୍ୟ, ବ. ପୁଂ. (ଯାମୀ-ଯ) ଚନ୍ଦନବୃକ୍ଷ; ଅଗସ୍ତ୍ୟ- ମୁନି । ବଂ. ଦକ୍ଷିଣଦେଶୀୟ; (ଯମ-ଯ) ସମ୍ବନ୍ଧୀୟ ।

ଯାମ୍ୟା, ବ. ସ୍ତ୍ରୀ. (ଯମ-ଯ-ଆ) ଦକ୍ଷିଣଦିକ୍; ଭରଣୀ ନକ୍ଷତ୍ର ।

ଯାମ୍ୟାୟନ, ବ. ନ. (ଯାମ୍ୟା-ଅୟନ) ଦକ୍ଷିଣାୟନ, ସୂର୍ଯ୍ୟର ଦକ୍ଷିଣଦିଗକୁ ଗମନ ।

ଯାବ, ବ. ପୁଂ. (ଯୁ-ଅ) ଅଲକ୍ତକ, ଅଳତା ।

ଯାବକ, ବ. ପୁଂ. ( ଯୁ-ଅ, କ ) ଅଲକ୍ତକ । ଯଥା—

> ପାଦେ ଯାବକ ଲେଖି ମନାଇବ ।

(ଯବକ-ଅ) କୁଲ୍ମାସ; ଅର୍ଦ୍ଧପକ୍ୱ ଯବ ।

ଯାବଜ୍ଜୀବନ, ବ. ନ. (ଯାବତ୍-ଜୀବନ) ଜୀବିତ- କାଳ ପର୍ଯ୍ୟନ୍ତ,ଯେତେ କାଳ ଜୀବିତ ଥିବାର ।

ଯାବତ୍, ଅଂ. ( ଯଦ୍-ବତ୍ ) ପରିମାଣ; ସାକଲ୍ୟ; ଅବଧି; ପର୍ଯ୍ୟ[illegible] ଯଥା—

> ଏ ତେ[illegible] ଯାବତ ବହିବ,
> ଯାବ[illegible] ହେବ ଶିର । ବ. ବ.

ହେତୁ; [illegible]; ସୀମା; ପ୍ରଶଂସା; ପରିଚ୍ଛେଦ; [illegible]କାର; ସମ୍ଭ୍ରମ; ସମୂହ; ପକ୍ଷାନ୍ତର । [illegible]. ଯେତେ; ଯେତେସଂଖ୍ୟକ; ଯେତେ[illegible] ।

ଯାବତୀୟ, ବିଂ. (ଯାବତ୍-ଈୟ) ସମୁଦାୟ, ଯେତେ ଅଛି ।

ଯାବନ, ବି. ପୁଂ. (ଯବନ-ଅ) ଗନ୍ଧଦ୍ରବ୍ୟବିଶେଷ । ବିଂ. ଯବନସମ୍ବନ୍ଧୀୟ ।

ଯାବଶୂକ, ବି. ପୁଂ. ( ଯବଶୂକ-ଅ ) ଯବକ୍ଷାର, ସୋରା ।

ଯାବ୍ୟ, ବିଂ. ( ଯୁ-ଯ ) ମିଶ୍ରଣୀୟ, ମିଶ୍ରିତ, ଯୋଜନୀୟ ।

ଯାଷ୍ଟିକ, ବି. ପୁଂ. (ଯଷ୍ଟି-ଇକ) ଯଷ୍ଟିଧାରୀ, ଯୋଦ୍ଧା ।

ଯିଯବିଷା, ବି. ସ୍ତ୍ରୀ. (ଯୁ-ସ-ଆ) ମିଶ୍ରିତ କରିବାକୁ ଇଚ୍ଛା ।

ଯିଯବିଷୁ, ବିଂ. (ଯୁ-ସ-ଉ) ମିଶ୍ରିତକରଣେଚ୍ଛୁକ ।

ଯିଯାସୁ, ବିଂ. (ଯା-ସ-ଉ) ଗମନକରଣେଚ୍ଛୁକ ।

[illegible], ବି. (ଯୁଗ ଶବ୍ଦଜ) ଯୁଗ, ରଥ, ଶକଟ ଲାଙ୍ଗଳ ପ୍ରଭୃତିର ଅଙ୍ଗବିଶେଷ ।

ଯୁକ୍ତ, ବିଂ. (ଯୁଜ୍-ତ) ନ୍ୟାଯ୍ୟ, ଉପଯୁକ୍ତ; ମିଳିତ, ସଂଲଗ୍ନ; [illegible] ଅବଶିଷ୍ଟ; ଆସକ୍ତ; ବ୍ୟାପୃତ । ବି. ପୁଂ. [illegible] ଯୋଗିର ଯୋଗାଭ୍ୟାସ ହୋଇଅଛି । ନ. ହସ୍ତଚତୁଷ୍ଟୟ, ଚାରି ହାତ ।

ଯୁକ୍ତି, ବି. ସ୍ତ୍ରୀ. (ଯୁଜ୍-ତି) ନ୍ୟାୟ; ମିଳନ; ସଙ୍ଗତି; ଅନୁମାନ; ଲୋକବ୍ୟବହାର; କାରଣ; ନାଟ୍ୟାଙ୍ଗବିଶେଷ; ମନ୍ତ୍ରଣା; ଉପାୟ; ସିଦ୍ଧାନ୍ତ ।

ଯୁଗ, ବି. ନ. (ଯୁ-ଗ) ଯୁଗ୍ମ, ଯୋଡ଼ା; ସତ୍ୟ, ତ୍ରେତା, ଦ୍ୱାପର, କଳି ଏହି ଚାରି କାଳ; ଚାରି ହାତ ପରିମାଣ । ପୁଂ. ରଥ, ଶକଟ ବା ଲାଙ୍ଗଳପ୍ରଭୃତିର ଅଙ୍ଗବିଶେଷ, ଯୁଆଳି ।

ଯୁଗନ୍ଧର, ବି. ପୁଂ. (ଯୁଗ-ଧୃ-ଅ) କୂବର; ଯୁଗ କାଷ୍ଠରେ ଯେ କାଷ୍ଠ [illegible] ଥାଏ, ଲାଙ୍ଗଳର ଈଷ, ଗାଡ଼ିର ବୋମ୍ ପ୍ର[illegible] [illegible]ବିଶେଷ ।

ଯୁଗପତ୍, ଅଂ. ( ଯୁଗ-ପ[illegible] [illegible] )କଦା, ଏକ ସମୟରେ ।

ଯୁଗପାର୍ଶ୍ୱଗ, ବି. ପୁଂ. (ଯୁ[illegible] [illegible]-ଗ) କର୍ଷଣ ଅଭ୍ୟାସାର୍ଥ ଲାଙ୍ଗଳାଦିର [illegible] ବନ୍ଧା ଗୋରୁ ।

ଯୁଗଳ, ବି. ନ. (ଯୁଗ-ଳ) [illegible] ଯୋଡ଼ା ।

ଯୁଗାଂଶକ, ବି. ପୁଂ. (ଯୁଗ-ଅଂଶକ) ବର୍ଷ; ଯୁଗର ବିଭାଜକ ।

ଯୁଗାନ୍ତ, ବି. ପୁଂ. (ଯୁଗ-ଅନ୍ତ) ପ୍ରଳୟକାଳ, ଚାରି ଯୁଗର ଅବସାନ ।

ଯୁଗ୍ମ, ବି. ନ. (ଯୁଜ୍-ମ) ଯୁଗଳ, ଯୋଡ଼ା; ଦୁଇ ଶ୍ଳୋକର ସମ୍ବନ୍ଧ; ମିଥୁନରାଶି; ମିଳନ ।

ଯୁଗ୍ୟ, ବି. ନ. ( ଯୁଗ-ଯ ) ବାହନ, ଯାନ; ଯୁଗବାହୀ ପଶୁ ।

ଯୁଞ୍ଜାନ, ବି. ପୁଂ. (ଯୁଜ୍-ଆନ) ସାରଥି; ବିପ୍ର । ବିଂ. ଯୋଗାଭ୍ୟାସକାରୀ ।

ଯୁତ, ବିଂ. ( ଯୁ-ତ ) ଯୁକ୍ତ; ସମ୍ପୃକ୍ତ; ମିଳିତ; ଅମିଳିତ । ବି. ପୁଂ. ଚାରିହସ୍ତ ପରିମାଣ ।

ଯୁତକ, ବି. ନ. ( ଯୁତ-କ ) ସନ୍ଦେହ; ଯୁଗ୍ମ; ଯୌତୁକ; ସ୍ତ୍ରୀଲୋକଙ୍କର ବସ୍ତ୍ରାଞ୍ଚଳ; ପୂର୍ବାଞ୍ଚ; ମୈତ୍ରୀକରଣ । ବିଂ. ଯୁକ୍ତ, ମିଳିତ ।

ଯୁତି, ବି. ସ୍ତ୍ରୀ. (ଯୁ-ତି) ଯୋଗ, ମିଳନ ।

ଯୁଦ୍ଧ, ବି. ନ. (ଯୁଧ୍-ତ) ସଂଗ୍ରାମ, ରଣ, ସମର, ଲଢ଼ାଇ, ବିବାଦ; ଗ୍ରହର ଗତିବିଶେଷ ।

ଯୁଦ୍ଧରଙ୍ଗ, ବି. ପୁଂ. (ଯୁଦ୍ଧ-ରଙ୍ଗ) କାର୍ତ୍ତିକେୟ, ଷଡ଼ାନନ, ସେନାନୀ, ସ୍କନ୍ଦ ।

ଯୁଦ୍ଧସାର, ବି. ପୁଂ. (ଯୁଦ୍ଧ-ସୃ-ଅ) ଅଶ୍ୱ, ଘୋଟକ ।

ଯୁଧାଜିତ୍, ବି. ପୁଂ. (ଯୁଧା-ଜି-୦ ) ଭରତ-ମାତୁଳ, କୈକେୟୀଭ୍ରାତା ।

ଯୁଧାନ, ବି. [illegible] (ଯୁଧ୍-ଆନ) କ୍ଷତ୍ରିୟ; ଯୋଦ୍ଧା ।

ଯୁଧିଷ୍ଠିର, [illegible] [illegible]ସ୍ଥିର) ପଞ୍ଚପାଣ୍ଡବଙ୍କର ଜ୍ୟେଷ୍ଠ, [illegible]

ଯୁଯୁ, ବି. ପୁଂ. ଘୋଟକ, ଅଶ୍ୱ ।

ଯୁଯୁକ୍ଷମାଣ, ବିଂ. (ଯୁଜ୍-ସ-ଆନ) ଯୋଗକରଣେଚ୍ଛୁକ, ମୁକ୍ତିକାମୀ ।

ଯୁଯୁତ୍ସୁ, ବିଂ. ( ଯୁଧ୍-ସ-ଉ ) ଯୁଦ୍ଧ କରିବାକୁ ଇଚ୍ଛୁକ । ପୁଂ. ଧୃତରାଷ୍ଟ୍ରଙ୍କ ଔରସରେ ବୈଶ୍ୟା-ଗର୍ଭଜାତ ପୁତ୍ରବିଶେଷ ।

ଯୁଯୁଧାନ, ବି. ପୁଂ. ଯୋଦ୍ଧା, ସାତ୍ୟକି; ଇନ୍ଦ୍ର, କ୍ଷତ୍ରିୟ ।

ଯୁବକ ବି. ପୁଂ. ( ଯୁବନ୍-କ ) ଯୁବା, ତରୁଣ, ପ୍ରାପ୍ତଯୌବନ ।

ଯୁବକାନ, ବି. (ଯୁବତୀ ଜାୟା) ଯୁବତୀର ପତି, ଯାହାର ଜାୟା ଯୁବତୀ ।

ଯୁବତୀ, ଯୁବତି, ବି. ସ୍ତ୍ରୀ. (ଯୁବ-ତି-ଈ) ପ୍ରାପ୍ତ-ଯୌବନା, ତରୁଣୀ, ଷୋଡ଼ଶ ବର୍ଷ ଅବଧି ତିଂଶ ବର୍ଷବୟସ୍କା; ନବଯୌବନା; ହରିଦ୍ରା ।

ଯବନାଶ୍ୱ, ବି. ପୁଂ. ସୂର୍ଯ୍ୟବଂଶୀୟ ନୃପବିଶେଷ; ମାନ୍ଧାତାର ପିତା ।

ଯୁବରାଜ, ବି. ପୁଂ. ( ଯୁବନ୍-ରାଜା ) ରାଜପୁତ୍ର; ରାଜ୍ୟର ଉତ୍ତରାଧିକାରୀ ଏବଂ ରାଜକାର୍ଯ୍ୟର ସାହାଯ୍ୟକାରୀ ରାଜପୁତ୍ର ।

ଯୁବା, ବିଂ. (ଯୁ-ଅନ୍) ତରୁଣ, ୧୬ ଠାରୁ ୩୦ ବର୍ଷ ପର୍ଯ୍ୟନ୍ତ ବୟସ୍କ; ସୁନ୍ଦର; ବଳବାନ ।

ଯୁଷ୍ମଦ୍, ସ. (ଯୁଷ-ମଦ୍) ତୁମ୍ଭେ, ମଧ୍ୟମ ପୁରୁଷ ।

ଯୁଷ୍ମଦୀୟ, ବିଂ. (ଯୁଷ୍ମଦ୍ ଈୟ) ତୁମ୍ଭମାନଙ୍କର ସମ୍ବନ୍ଧୀୟ, ତୁମ୍ଭମାନଙ୍କର ।

ଯୂଇ, ବି. ନ. (ଯୂଥିକା ଶବ୍ଦଜ ) ଫୁଲବିଶେଷ; (ଦେଶଜ) ତଡା ।

ଯୂତ, ବି. ସ୍ତ୍ରୀ. (ଯୁ-ତ) ମିଶ୍ରଣ ।

ଯୂଥ, ବି. ପୁଂ. ନ ( ଯୁ-ଥ ) ପଶୁ ପକ୍ଷିର ଦଳ, ସମୂହ ।

ଯୂଥନାଥ, ଯୂଥପ, ବି. ପୁଂ. (ଯୂଥ-ନାଥ,ପ) ବନ୍ୟ ...ଦଳର ପ୍ରଧାନ ।

ଯୂଥିକା, ଯୂଥୀକ... -ଇକ-ଆ, ଇ-ଈ ) ମାଗଧୀକୁସୁମ; ଯୂଇଫୁଲ ।

ଯୂଥୀକ, ବି. ପୁଂ. (ଯୂଥ-ଈକ) ଯୂଥପ, ବନ୍ୟ-ଗଜସମୂହର ପ୍ରଧାନ ।

ଯୂନୀ, ବି. ସ୍ତ୍ରୀ. (ଯୁବନ୍-ଈ) ତରୁଣୀ, ଯୁବତୀ ।

ଯୂପ, ବି. ପୁଂ. ନ. (ଯୁ-ପ) ଯଜ୍ଞୀୟ ପଶୁବନ୍ଧନାର୍ଥ ସଂସ୍କୃତ କାଷ୍ଠସ୍ତମ୍ଭ; ଯଜ୍ଞସ୍ତମ୍ଭ; ଜୟସ୍ତମ୍ଭ ।

ଯୂପଦ୍ରୁ, ଯୂପଦ୍ରୁମ, ବି. ପୁଂ. ( ଯୂପ-ଦ୍ରୁ , ଦ୍ରୁମ ) ଖଦିର ବୃକ୍ଷ, ରକ୍ତଖଦିର ।

ଯୂପୋଚ୍ଛ୍ରୟ, ବି. ପୁଂ. (ଯୂପ=ଯଜ୍ଞସ୍ତମ୍ଭ-ଉତ୍‌ଛ୍ରୟ= ଉନ୍ନତ, ଉତ୍ତୋଳନ ) ଯଜ୍ଞସ୍ତମ୍ଭ ସ୍ଥାପନ ଉତ୍ସବବିଶେଷ ।

ଯେ, ସ. ( ଯଦ୍ ଶବ୍ଦଜ ) ବିଶେଷ୍ୟ ବ୍ୟକ୍ତି ବା ବସ୍ତୁ ।

ଯେଉଁଚ, ବି. ଫଳବିଶେଷ ।

ଯେତେ, ସ. (ଯଦ୍ ଶବ୍ଦଜ) ଯେଉଁ ପରିମାଣରେ । ଯଥା—

ସେ ଯେତେ ଚେଷ୍ଟାମି ତା ଚେନ ମୋତେ ଅଟଇ କଣା ।
ଚ. ଘ.

ଯେମନ୍ତ, ଯେମନ୍ତ୍ର, ଯେମତି, କ୍ରି. ବିଂ. ( ଯଦ୍-ଶବ୍ଦଜ) ଯେପରି, ଯେପ୍ରକାର ।

ଯୋକ୍ତ୍ର, ବି. ନ. (ଯୁଜ୍-ତ୍ର) ହଳବନ୍ଧନ ରଜ୍ଜୁ, ଯୋତ ଦଉଡ଼ି; ଯୋଆଳ ।

ଯୋଖ, (ଯୁକ୍ ଶବ୍ଦଜ) ତୁଳନୀୟ ।

ଯୋଗ, ବି. ପୁଂ. ( ଯୁଜ୍-ଅ ) ମିଳନ; ଐକ୍ୟ; ଜୀବାତ୍ମା ଓ ପରମାତ୍ମାର ସଂଯୋଗ; ସମ୍ବନ୍ଧ; ସଦ୍ଭାବ; ଦୁର୍ଯୋଗ; ଉପାୟ; ସାମାଦି ଚତୁର୍ବିଧ ଉପାୟ; ଚିତ୍ତବୃତ୍ତି ନିରୋଧ, ମନର ବିଷୟାନ୍ତର ନିବୃତ୍ତି; ଧ୍ୟାନ; ବିଷ୍କୁମ୍ଭ ମାହେନ୍ଦ୍ର ପ୍ରଭୃତି ସମୟାଂଶ; ଯୁକ୍ତି; ଧନସମ୍ପତ୍ତିର ଉପାର୍ଜ୍ଜନ ଓ ବର୍ଦ୍ଧନ; ଲାଭ; ପତଞ୍ଜଳିପ୍ରଣୀତ ଦର୍ଶନଶାସ୍ତ୍ର-ବିଶେଷ; ଛଳ, ପ୍ରତାରଣା; କୌଶଳ; ଦେହ-ସ୍ଥୈର୍ଯ୍ୟ; ଔଷଧ; ବଶୀକରଣୋପାୟ; ଅପୂର୍ବ ଅର୍ଥପ୍ରାପ୍ତି; ଶୁଭକାଳ; ଅଙ୍କଶାସ୍ତ୍ରରେ ଦୁଇ ବା ତତୋଽଧିକ ରାଶିର ସମଷ୍ଟିକରଣ; ଜ୍ୟୋତିଃ-ଶାସ୍ତ୍ରରେ ପ୍ରଧାନ ନକ୍ଷତ୍ର; ପରିଣାମ; ନିୟମ ।

ଯୋଗଚର, ବି... (ଯୋଗ-ଚର) ହନୁମାନ୍; ଉପଯୁକ୍ତ ।

ଯୋଗଜ, ବିଂ... ଜ) ଯୋଗଦ୍ୱାରା ଜାତ ।

ଯୌଗିକ, ବି... ଯୋଗାଭ୍ୟାସଜନିତ ଧର୍ମ-ବିଶେଷ; ଅଲୌକିକ ସନ୍ନିକର୍ଷବିଶେଷ । ନ. ଅଗୁରୁ ।

ଯୋଗଣ, ବ. ( ଦେଶଜ ) ଦେବତା ବା ରଜାମାନଙ୍କର ଭୋଜନ ସ୍ଥଳରେ ଯୋଗଣ ଶବ୍ଦ ପ୍ରୟୋଗ କରାଯାଏ । ଯଥା —

ଯୋଗଣାରେ ସ୍ୱୟେ ରତନପର୍ଯଂକେ ହୋଇ ନଦ୍ରାଅବସ୍ଥିତ ।
ଯ. ବେ.

ଯୋଗନଦ୍ରା, ବ. ସ୍ତ୍ରୀ. ( ଯୋଗ-ନଦ୍ରା ) ଦୁର୍ଗା; ଯୋଗରୂପ ନଦ୍ରା, ଚଉର ବଷୟାନ୍ତରନବୃତ୍ତି-ରୂପ ନଦ୍ରା ।

ଯୋଗପଟ୍ଟିକା, ବ. ସ୍ତ୍ରୀ. (ଯୋଗ-ପଟ୍ଟ-କ, ଆ) ଯୋଗିମାନଙ୍କର ବସ୍ତ୍ରବଶେଷ ।

ଯୋଗପୀଠ, ବ.ନ. (ଯୋଗ-ପୀଠ) ଯୋଗାସନ ।

ଯୋଗମାୟା, ବ. ସ୍ତ୍ରୀ. ଦୁର୍ଗା; ସଂସାରମାୟା ।

ଯୋଗରୂଢ଼, ବ. ପୁଂ. ଅବୟବଶକ୍ତି ଓ ଅର୍ଥଶକ୍ତିଦ୍ୱାରା ବୋଧକ, ଯୌଗିକ ଅଥଚ ରୂଢ଼ଶବ୍ଦ— ର ପଙ୍କଜାଦ ।

ଯୋଗବାହ, ବ. ପୁଂ. (ଯୋଗ-ବହ-ଅ) ଅନୁସ୍ୱାର; ବସର୍ଗ; ଜହ୍ୱା [illegible]; ଉପାଧ୍ମାନୀୟ ।

ଯୋଗବାହୀ, ବଂ. ( [illegible]ଗ-ବାହନ ) ଯୋଗଦ୍ୱାରା ବହନଶୀଳ । ବ. ପୁଂ. ପାରଦ, ପାରା; କ୍ଷାର-ବଶେଷ ।

ଯୋଗବଦ୍, ବ. ପୁଂ. ( ଯୋଗ-ବଦ୍ ) ଯୋଗୀ, ତପସ୍ୱୀ ।

ଯୋଗସାର, ବ. ପୁଂ. ସର୍ବରୋଗାପହାରକ ଉପାୟ ।

ଯୋଗାକର୍ଷଣ,(Cohesion) (ଯୋଗ-ଆକର୍ଷଣ) ଯେ ଗୁଣଦ୍ୱାରା ଏକାଧିକ ପରମାଣୁ ଏକତ୍ରିତ ହୋଇଥାଏ, ପରସ୍ପର ବଚ୍ଛିନ୍ନ ନ ହୁଏ; ପରମାଣୁ ସମସ୍ତର ସମଷ୍ଟୀକରଣ; ବନ୍ଧନ ।

ଯୋଗାଡ଼, ବ. ( ଯୋଗ ଶବ୍ଦ [illegible] କର୍ମନର୍ବାହର ଉପାୟ, କର୍ମର ଉଦ୍ୟୋଗ

ଯୋଗାଚାର, ବ. ପୁଂ. ବୌଦ୍ଧ [illegible] ବଶେଷ ।

ଯୋଗାସନ, ବ. ନ. (ଯୋଗ [illegible]) ଧ୍ୟାନାସନ, ଯୋଗସାଧନାର୍ଥ ଉପବେଶନ [illegible]ଶେଷ ।

ଯୋଗିନୀ, ବ. ସ୍ତ୍ରୀ. ଯୋଗକାରଣୀ କାଶୀ; ୬୪ ସଂଖ୍ୟକ ଦେବୀବଶେଷ; ତଥି [illegible] ।

ଯୋଗୀ, ବ. ପୁଂ. ( ଯୁଜ୍=ଯୋଗ କରବା-ଇନ୍= ଅସ୍ତ୍ୟର୍ଥେ) ତପସ୍ୱୀ; ଦଣ୍ଡୀ,ସନ୍ନ୍ୟାସୀ; ବ୍ରହ୍ମବଦ୍ ।

ଯୋଗୀଶ, ଯୋଗୀଶ୍ୱର, ବ. ପୁଂ. (ଯୋଗିନ୍-ଈଶ, ଈଶ୍ୱର) ବଷ୍ଣୁ; ଶିବ; ଯାଜ୍ଞବଲ୍କ୍ୟ ।

ଯୋଗେଶ, ଯୋଗେଶ୍ୱର, ବ. ପୁଂ. (ଯୋଗ-ଈଶ, ଈଶ୍ୱର) ବଷ୍ଣୁ; ଶିବ; ଯାଜ୍ଞବଲ୍କ୍ୟ ମୁନ ।

ଯୋଗ୍ୟ, ବଂ. ( ଯୁଜ୍-ଯ ବା ଯୋଗ-ଯ ) ଶକ୍ତ, ସମର୍ଥ, ଉପଯୁକ୍ତ; ପବତ୍ର; ନପୁଣ; ପ୍ରତ୍ୟକ୍ଷ; ଯୋଗାର୍ହ । ବ. ପୁଂ. ପୁଷ୍ୟାନକ୍ଷତ୍ର । ଗ୍ୟା-ସ୍ତ୍ରୀ. ଅଭ୍ୟାସ,ଅନୁଶୀଳନ; ସୂର୍ଯ୍ୟପତ୍ନୀ । ନ. ପିଷ୍ଟକ-ବଶେଷ; ଶକଟାଦର ବାହନ; ଚନ୍ଦନ ।

ଯୋଗ୍ୟତା, ବ. ସ୍ତ୍ରୀ. (ଯୋଗ୍ୟ-ତା) କ୍ଷମତା; ପବତ୍ରତା; ଉପଯୁକ୍ତତା; ପଦାର୍ଥସମୂହର ପରସ୍ପର ସମ୍ବନ୍ଧରେ ବାଧା ନ ଥିବା ।

ଯୋଜକ, ବଂ. (ଯୁଜ୍-ଇ-ଅକ) ସଂଯୋଗକାରକ, ମେଳକ, (Isthmus), ଯେଉଁ ସଂକୀର୍ଣ୍ଣ ଭୂଭାଗ ଦୁଇ ବୃହତ୍ ଭୂଭାଗକୁ ପରସ୍ପର ସଂଯୁକ୍ତ କରେ ତାକୁ ଯୋଜକ କହନ୍ତି ।

ଯୋଜନ, ବ. ନ. ( ଯୁଜ୍-ଅନ ) ଚତୁଃକ୍ରୋଶ ପରମାଣ; ପରମାତ୍ମା; ଯୋଗ [illegible]ନା-ସ୍ତ୍ରୀ, ଏକତ୍ର-କରଣ, ମିଳନ; ସଂଘଟ୍ଟ ।

ଯୋଜନଗନ୍ଧା, ବ.ସ୍ତ୍ରୀ. (ଯୋଜନ-ଗନ୍ଧ) କସ୍ତୁରୀ; ସୀତା; ସତ୍[illegible] [illegible]ବ୍ୟାସଦେବଙ୍କର ମାତା ।

ଯୋଜତ, ବ[illegible] [illegible] ସଂଯୁକ୍ତ, [illegible]ତ; ନୟମିତ; ଘଟିତ[illegible] ।

ଯୋଡ଼, ବ. (ଦେଶଜ) ଯୁଗ୍ମ; ମିଳନ ।

ଯୋତ, ( ଯୋକ୍ତ ଶବ୍ଦଜ ) ଲଙ୍ଗଳାଦବାହୀ ବୃଷାଦର ସ୍କନ୍ଧସ୍ଥ କାଷ୍ଠବଶେଷ, ଯୁଆଳ; ଯୁଗାଦ ବନ୍ଧନରଜ୍ଜୁ, ଯୋତ ଦଉଡ ।

ଯୋତା, (ଦେଶଜ) ଚର୍ମପାଦୁକା ।

ଯୋକ୍ତ, ବ. ନ. ( ଯୁ-କ୍ତ ) ଲଙ୍ଗଳାଦବାହୀ ବୃଷାଦର ସ୍କନ୍ଧସ୍ଥ କାଷ୍ଠବଶେଷ, ଯୁଆଳ, ଯୁଗାଦବନ୍ଧନରଜ୍ଜୁ, ଯୋତ ଦଉଡ଼; ସମ୍ପତ୍ତି ।

**ଯୋଦ୍ଧା**, ବି. ପୁଂ. ( ଯୁଧ-ତୃ ) ଯୁଦ୍ଧକାରକ, ବୀର, ପ୍ରହର୍ତ୍ତା ।

**ଯୋଧ**, ବି. ପୁଂ. (ଯୁଧ୍-ଅ) ଯୋଦ୍ଧା ।

ଯୋଧନ, ବି. ନ. ( ଯୁଧ୍-ଅନ ) ଯୁଦ୍ଧ; ଅସ୍ତ୍ର । ପୁଂ. ଯୋଦ୍ଧା ।

ଯୋଧସଂରାବ, ବି.ପୁଂ. ( ଯୋଧ-ସଂରାବ ) ଯୋଦ୍ଧାମାନଙ୍କର ପରସ୍ପର ଯୁଦ୍ଧ ନିମନ୍ତ୍ରେ ଆହ୍ୱାନ; ପରସ୍ପର ସ୍ପର୍ଦ୍ଧା କରିବାର ।

ଯୋଧୀ, ଯୋଧେୟ, ଯୌଧେୟ, ବି. ପୁଂ.(ଯୁଧ୍-ଇନ୍, ଯୋଧ-ଏୟ ) ଯୋଦ୍ଧା, ଯୁଦ୍ଧକାରୀ ।

ଯୋନି, ବି. ପୁଂ. ସ୍ତ୍ରୀ. (ଯୁ-ନି) ଆକର, ଉତ୍ପତ୍ତି ସ୍ଥାନ; କାରଣ; ସ୍ତ୍ରୀଚିହ୍ନ; ଜଳ ।

ଯୋନିଜ, ବିଂ. ( ଯୋନି-ଜ ) ଯୋନିରୁ ଜାତ, ଜରାୟୁଜ ଏବଂ ଅଣ୍ଡଜ ପ୍ରାଣୀସମୂହ ।

ଯୋଷା, ଯୋଷିତ୍, ଯୋଷିତା, ବି. ସ୍ତ୍ରୀ. ( ଯୁଷ୍-ଅ, ଅ, ଇତ) ନାରୀ ।

ଯୌକ୍ତିକ, ବିଂ. ( ଯୁକ୍ତି-ଇକ ) ଯୁକ୍ତିସିଦ୍ଧ; ପ୍ରାମାଣିକ; ଯୁକ୍ତିକାରୀ । ବି.ପୁଂ. ନର୍ମସଚିବ ।

ଯୌଗିକ, ବିଂ. (ଯୋଗ-ଇକ) ଯୋଗଜାତ । ବି. ପୁଂ. ପ୍ରକୃତି ପ୍ରତ୍ୟୟଦ୍ୱାରା ଅର୍ଥବାଚକ ଶବ୍ଦ; ଯଥା—ସୁଖଦ ଇତ୍ୟାଦି ।

ଯୌତକ, ଯୌତୁକ, ବି. ନ. ( ଯୁତକ-ଅ, ଯୁତୁ-କ ) ଉଦ୍ୱାହକ, ବିବାହ କାଳରେ [illegible]ଭର ଲବ୍ଧ ଧନ [illegible]

ଯଉତୁକ ସ[illegible] -୮
ପ୍ରେରିଲେ [illegible] ପାଣକୁ ସେ । ଗ. ବ.

ଯୌତବ, ବି. ନ. (ଯୋତୁ-ଅ) ପରିମାଣ ।

ଯୌବତ, ବି. ନ. (ଯୁବତି-ଅ) ଯୁବତିସମୂହ ।

ଯୌବନ, ବି. ନ. ( ଯୁବନ୍-ଅ ) ତାରୁଣ୍ୟ, ତରୁଣାବସ୍ଥା, ୧୬ ବର୍ଷଠାରୁ ୩୦ ବର୍ଷ ପର୍ଯ୍ୟନ୍ତ ।

ଯୌବନକଣ୍ଟକ, ବି. ପୁଂ. ନ. (ଯୌବନ-କଣ୍ଟକ) ଯୁବଗଣ୍ଡ, ବୟସ ବ୍ରଣ ।

ଯୌବନାଶ୍ୱ, ବି. ପୁଂ. (ଯୁବନାଶ୍ୱ-ଅ) ଯୁବନାଶ୍ୱ-ରାଜପୁତ୍ର, ମାନ୍ଧାତା ।

ଯୌବରାଜ୍ୟ, ବି. ନ. (ଯୁବରାଜ-ଯ) ଯୁବରାଜର ପଦ, ପିତୃ ସତ୍ତ୍ୱେ ପୁତ୍ରର ରାଜପଦ ।

ଯୌଷ୍ମାକ, ଯୌଷ୍ମାକୀଣ, ବିଂ. (ଯୁଷ୍ମାକ-ଅ, ଈନ) ଯୁଷ୍ମତ୍‌ସମ୍ବନ୍ଧୀୟ, ଭବତ୍‌ସମ୍ବନ୍ଧୀୟ ।

—:o:—

## ର

ର, ବ୍ୟଞ୍ଜନ ବର୍ଣ୍ଣର ସପ୍ତବିଂଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା; ( ରା-ଅ ) ବା (ରମ୍-ଅ) ବି. ପୁଂ. ଅଗ୍ନି; କାମାଗ୍ନି; ଉଷ୍ଣ-ବର୍ଣ୍ଣ; ବେଗ; ସ୍ୱର୍ଣ୍ଣ; ଉତ୍ତାପ । ବିଂ. ତୀକ୍ଷ୍ଣ ।

ରଂହଃ, ବି.ନ. (ରମ୍-ହସ୍, ହ ଆଗମ), ଶୀଘ୍ରତା ।

ରକମ, ବି. (ଯାବନିକ) ପ୍ରକାର ।

ରକବା, ବି. (ଯାବନିକ) ଭୂମିସଂକ୍ରାନ୍ତ କାଗଜ ।

ରକା, ବି. ( ଦେଶଜ ) ବାତ ରୋଗବିଶେଷ, ଦେହର କୌଣସି ସ୍ଥାନରେ ବାୟୁ ଅଟକି ଯାଇ ପୀଡ଼ା ଦେବା ।

ରକ୍ତ, ବିଂ. (ରନ୍ଜ୍-ତ) ରଞ୍ଜିତ, ରଙ୍ଗ କରିବା; ଅନୁରକ୍ତ, ଆସକ୍ତ; ମଧୁର, ପ୍ରଶାବ୍ୟ; ଲୋହିତ; କ୍ରୀଡ଼ାସକ୍ତ । ବି. ପୁଂ. କୁସୁମ୍ଭ; ହିଞ୍ଜଳ; ଲୋହିତ ବର୍ଣ୍ଣ । ନ. ଶୋଣିତ, ରୁଧିର; କୁଙ୍କୁମ; ତାମ୍ର, ତମ୍ବା; ପଦ୍ମକ; ସିନ୍ଦୂର; ହିଙ୍ଗୁଳ । କ୍[illegible], ଗୁଞ୍ଜା, ଲାକ୍ଷା ।

ରକ୍ତକ, ବି. [illegible] (ରକ୍ତ-କ) ଅମ୍ଳାନବୃକ୍ଷ । ନ. ରୁଧିର; [illegible] । ବିଂ. ଅନୁରାଗୀ, ଅନୁରକ୍ତ ।

ରକ୍ତକଣ୍ଠ, ବିଂ. [illegible]=ମଧୁର-କଣ୍ଠ=କଣ୍ଠଧ୍ୱନି) ସୁସ୍ୱରକଣ୍ଠ, [illegible]ର କଣ୍ଠସ୍ୱର ଉତ୍କୃଷ୍ଟ ।

ରକ୍ତକନ୍ଦ, ରକ୍ତକନ୍ଦଳ, ବି. ପୁଂ. (ରକ୍ତ-କନ୍ଦ, ରକ୍ତ-କ[illegible]) ବିଦ୍ରୁମ, ପ୍ରବାଳ, ପୋହଳା ।

ରକ୍ତକମଳ, ବ. ନ. (ରକ୍ତ-କମଳ) ରକ୍ତବର୍ଣ୍ଣ ପଦ୍ମ ।

ରକ୍ତକୁମୁଦ, ରକ୍ତକୈରବ, ବ. ନ. (ରକ୍ତ-କୁମୁଦ, କୈରବ) ରକ୍ତବର୍ଣ୍ଣ ପଦ୍ମ, ରକ୍ତକଇଁ ।

ରକ୍ତଚନ୍ଦକ, ବ. ପୁଂ. ରକ୍ତଚନ୍ଦ୍ରନାଗଗଛ ।

ରକ୍ତଚୂର୍ଣ୍ଣ, ବ. ନ. (ରକ୍ତ-ଚୂର୍ଣ୍ଣ) ସିନ୍ଦୂର; ରକ୍ତବର୍ଣ୍ଣ ଗୁଣ୍ଡା ।

ରକ୍ତକଣ୍ଠ, ବ. ପୁଂ. (ରକ୍ତ-କଣ୍ଠା) ଡିଂଭ । ବଂ. ରକ୍ତବର୍ଣ୍ଣ କଣ୍ଠାବଶିଷ୍ଟ ।

ରକ୍ତତୁଣ୍ଡ, ବ. ପୁଂ. (ରକ୍ତ-ତୁଣ୍ଡ) ଶୁକପକ୍ଷୀ । ବଂ. ଲୋହିତମୁଖ ।

ରକ୍ତଦନ୍ତୀ, ରକ୍ତଦନ୍ତିକା, ବ. ସ୍ତ୍ରୀ. (ରକ୍ତ-ଦନ୍ତ-ଈ, ରକ୍ତଦନ୍ତୀ-କ-ଆ) ଭଗବତୀଙ୍କ ରୂପବିଶେଷ ।

ର[illegible] , ବ. ପୁଂ. ସ୍ତ୍ରୀ. (ରକ୍ତ-ଦୃଶ୍) କପୋତ. କପୋ[illegible] ବଂ. ରକ୍ତବର୍ଣ୍ଣ ଚକ୍ଷୁର୍ବିଶିଷ୍ଟ ।

ରକ୍ତଧାତୁ, ବ. [illegible] (ରକ୍ତ-ଧାତୁ) ଗୈରିକ, ଗେରୁମାଟି; ତମ୍ବା; ରକ୍ତବର୍ଣ୍ଣ ଧାତୁ ।

ରକ୍ତନାସିକ, ବ. ପୁଂ. (ରକ୍ତ-ନାସିକା) ପେଚକ, ପେଚ୍ଚ । ବଂ. ରକ୍ତବର୍ଣ୍ଣ ନାସିକାଯୁକ୍ତ ।

ରକ୍ତପ, ବ. ପୁଂ. (ରକ୍ତ-ପା-ଅ) ରାକ୍ଷସ । ବଂ. ରକ୍ତପାନକର୍ତ୍ତା ।

ରକ୍ତପା, ବ. ସ୍ତ୍ରୀ. (ରକ୍ତ-ପ=ପାନକର୍ତ୍ତ-ଅ) ଜୋକ; ଡାକିନୀ, ରାକ୍ଷସୀ ।

ରକ୍ତପାଦ, ବ. ପୁଂ. (ରକ୍ତ-ପାଦ) ଶୁକପକ୍ଷୀ । ବଂ. ଯାହାର ପାଦ ରକ୍ତବର୍ଣ୍ଣ ।

ରକ୍ତପାୟିନୀ, ବ. ସ୍ତ୍ରୀ. [illegible]କ୍ତ-ପାୟିନ୍-ଈ) ଜଳୌକା, ଜୋକ ।

ରକ୍ତପାୟୀ, ବ. ପୁଂ. ( [illegible] ୟିନ୍ ) ଯେଉଁ କୀଟମାନେ ରକ୍ତ ପାନ [illegible]; ମଙ୍କୁଣ; ଘରପୋକ; ମଶା ।

ରକ୍ତପିଣ୍ଡ, ବ. ନ. (ରକ୍ତ-ପିଣ୍ଡ) ଜବାପୁଷ୍ପ,ମନ୍ଦାରଫୁଲ; ରକ୍ତଗୋଲ ।

ରକ୍ତପିତ୍ତ, ବ. ପୁଂ. (ରକ୍ତ-ପିତ୍ତ) ରକ୍ତାଧିକ୍ୟ ରୋଗବିଶେଷ, ମୁଖରୁ ଅକସ୍ମାତ୍ ରକ୍ତ ବମନ ।

ରକ୍ତପୁଷ୍ପ, ବ. ପୁଂ. କରବୀର, ରକ୍ତକା[illegible]ବୃକ୍ଷ, ଡାଳିମ୍ବବୃକ୍ଷ, ବନ୍ଧୁକବୃକ୍ଷ, ପୁନ୍ନାଗବୃକ୍ଷ । ସ୍ତ୍ରୀ. ଶାଳ୍ମଳୀବୃକ୍ଷ, ପାଟଳବୃକ୍ଷ, ଜବା ।

ରକ୍ତଫଳ, ବ, ପୁଂ. (ରକ୍ତ-ଫଳ) ବଟବୃକ୍ଷ ।

ରକ୍ତଫଳା, ବ. ସ୍ତ୍ରୀ. (ରକ୍ତ-ଫଳ-ଆ) ବିମ୍ବିକା, ଗୋରୁଖିଆ ଫଳ, କଇଁଚିକାକୁଡ଼ ।

ରକ୍ତଫେନଜ, ବ. ପୁଂ. (ରକ୍ତ-ଫେନ-ଜ) ବାମ, ପାର୍ଶ୍ୱସ୍ଥ କ୍ଲୋମ, ଫୁସ୍ଫୁସ୍ ।

ରକ୍ତବୀଜ, ବ. ପୁଂ. (ରକ୍ତ-ବୀଜ) ଅସୁରବିଶେଷ-ଶୁମ୍ଭ ନିଶୁମ୍ଭର ସେନାପତି; ଡାଳିମ୍ବ ।

ରକ୍ତମୋକ୍ଷଣ, ବ.ନ. (ରକ୍ତ-ମୋକ୍ଷଣ=ମୋଚନ) ଶୋଣିତସ୍ରାବ ।

ରକ୍ତରେଣୁ, ବ. ପୁଂ. (ରକ୍ତ-ରେଣୁ) ସିନ୍ଦୂର; ପଳାଶପୁଷ୍ପକଳିକା; ପୁନ୍ନାଗବୃକ୍ଷ ।

ରକ୍ତଲୋଚନ, ବ. ପୁଂ. ( ରକ୍ତ-ଲୋଚନ ) କପୋତ, ପାରା । ବଂ. ଯାହାର ଚକ୍ଷୁ ରକ୍ତ, ବର୍ଣ୍ଣ ।

ରକ୍ତବର୍ଗ, ବ. ପୁଂ. ଡାଳିମ୍ବ, କିଂଶୁକ, ଲାକ୍ଷା-ମଞ୍ଜିଷ୍ଠା ।

ରକ୍ତବର୍ଦ୍ଧନ, ବ. ପୁଂ. (ରକ୍ତ-ବର୍ଦ୍ଧନ) ବାର୍ତ୍ତାକୁ, ବାଇଗଣ

ରକ୍ତସଙ୍କ, [illegible] କୁଙ୍କୁମ ।

ରକ୍ତସନ୍ଧ୍ୟକ, ବ. ନ. (ରକ୍ତ[illegible]ନ୍ଧ୍ୟା-କ) ରକ୍ତକହ୍ଲାର ।

ରକ୍ତସାର, ବ. ନ. ରକ୍ତଚନ୍ଦନ, ରକ୍ତଖଦିର ।

ରକ୍ତା, ବଂ ସ୍ତ୍ରୀ.(ରକ୍ତ-ଆ) ଗୁଞ୍ଜା, କାଇଞ୍ଚ; ଲାକ୍ଷା ।

ରକ୍ତାକ୍ତ, ବଂ. (ରକ୍ତ-ଅକ୍ତ) ଶୋଣିତମିଶ୍ରିତ; ରଞ୍ଜିତ । ବ. ନ. ରକ୍ତଚନ୍ଦନ ।

ରକ୍ତାକ୍ଷ, ବ. ପୁଂ. (ରକ୍ତ-ଅକ୍ଷି-ଅ) ମହିଷ; ପାରାବତ; ସାରସ; ଚକୋରପକ୍ଷୀ; କ୍ରୂରବ୍ୟକ୍ତି । ବଂ. ରକ୍ତଚକ୍ଷୁ, ରକ୍ତବର୍ଣ୍ଣ ଚକ୍ଷୁର୍ବିଶିଷ୍ଟ; କ୍ରୂର ।

ରକ୍ତାଙ୍ଗ, ବ. ପୁଂ. (ରକ୍ତ-ଅଙ୍ଗ) ମଙ୍ଗଳଗ୍ରହ; ମତ୍କୁଣ । ନ. ପ୍ରବାଳ; କୁଙ୍କୁମ । ବିଂ. ରକ୍ତଦେହ ।

ରକ୍ତାତିସାର, ବ. ପୁଂ. (ରକ୍ତ-ଅତିସାର) ରୋଗବିଶେଷ ।

ରକ୍ତାଧାର, ବ. ପୁଂ. (ରକ୍ତ-ଆଧାର) ଶରୀରର ଚର୍ମ ।

ରକ୍ତାଶୟ, ବ. (Heart, ରକ୍ତ-ଆଶୟ) ରକ୍ତର ଆଧାର ସ୍ଥାନ, ହୃତ୍ପିଣ୍ଡ ।

ରକ୍ତିମା, ବ. ପୁଂ. (ରକ୍ତ-ଇମନ୍) ଶୋଣିତବର୍ଣ୍ଣ, ଲାଲବର୍ଣ୍ଣ ।

ରକ୍ତୋପଳ, ବ. ନ. (ରକ୍ତ-ଉପଳ) ଗିରିମାଟି, ଗୈରିକ ।

ରକ୍ତୋତ୍ପଳ, ବ.ପୁଂ. (ରକ୍ତ-ଉତ୍ପଳ) କୋକନଦ; ଶାଲ୍ମଳୀବୃକ୍ଷ ।

ରକ୍ଷ, ବ. ପୁଂ. } ( ରକ୍ଷ୍-ଅ, ଆ ) ପାଳନ;
ରକ୍ଷା, ବ. ସ୍ତ୍ରୀ. } ପରିତ୍ରାଣ; ଲକ୍ଷା । ବିଂ. ରକ୍ଷାକର୍ତ୍ତା । ସ୍ତ୍ରୀ. ଭସ୍ମ ।

ରକ୍ଷକ, ବିଂ. (ରକ୍ଷ୍-ଅକ) ରକ୍ଷାକର୍ତ୍ତା, ପାଳନକର୍ତ୍ତା; ତ୍ରାଣକର୍ତ୍ତା ।

ରକ୍ଷଣ, ବ. ନ. (ରକ୍ଷ୍-ଅନ) ପାଳନ, ପରିତ୍ରାଣ । ବିଂ. ରକ୍ଷକ ।

ରକ୍ଷଣୀୟ, ବିଂ. (ରକ୍ଷ୍-ଅନୀୟ) ରକ୍ଷା କରିବାର ଯୋଗ୍ୟ, ରକ୍ଷାର୍ହ, [illegible]

ରକ୍ଷଃ, ବ. ନ. ( [illegible] ।

ରକ୍ଷପତି, ବ. [illegible] (ରକ୍ଷସ୍-ପତି) ରାକ୍ଷସସମୂହ ।

ରକ୍ଷାଗୃହ, ବ. ନ. (ରକ୍ଷା-ଗୃହ) ସୂତିକାଗାର ।

ରକ୍ଷିତ, ବିଂ. (ରକ୍ଷ୍-ତ) ପରିତ୍ରାତ, ପାଳିତ । ବ. ପୁଂ. ଉପାଧିବିଶେଷ; ବୈଦ୍ୟକ ଗ୍ରନ୍ଥବିଶେଷ ।

ରକ୍ଷିସୈନ୍ୟ, (Guards) କୌଣସି ସ୍ଥାନ ଅଥବା କୌଣସି ଲୋକଙ୍କୁ ଶତ୍ରୁ ଆକ୍ରମଣ ଅବା ଅନ୍ୟ ପ୍ରକାର ଅପକାରରୁ ରକ୍ଷା କରିବା ନିମିତ୍ତ ନିୟୋଜିତ ସୈନ୍ୟ ।

ରକ୍ଷୀ, ରକ୍ଷକ, ରକ୍ଷିତା, ବିଂ. (ରକ୍ଷ୍-ଇନ୍; ଅକ; ରକ୍ଷି-ତୃ-) ରକ୍ଷାକର୍ତ୍ତା ।

ରକ୍ଷୋଘ୍ନ, ରକ୍ଷୋହା, ବ. ନ. (ରକ୍ଷସ୍-ଘ୍ନ, ହନ୍) କାଞ୍ଜିକ; ହିଙ୍ଗୁ; ଶ୍ୱେତସର୍ଷପ; ଭଲ୍ଲାତକବୃକ୍ଷ । ବିଂ. ରାକ୍ଷସନାଶକ ।

ରକ୍ଷୋଜନନୀ, ବ. ସ୍ତ୍ରୀ. (ରକ୍ଷସ୍-ଜନନୀ) ରାତ୍ରି; ରାକ୍ଷସମାତା ।

ରକ୍ଷ୍ୟ, ବିଂ. (ରକ୍ଷ୍-ଯ) ରକ୍ଷଣୀୟ, ରକ୍ଷା କରିବାର ଯୋଗ୍ୟ ।

ରଖୁଆଳ, ବ. (ରକ୍ଷକ ଶବ୍ଦଜ) ରକ୍ଷକ, ପାଳକ ।

ରଗ, ବ.(ଦେଶଜ) ରାଗ; (ଯାବନିକ) କପୋଳପାର୍ଶ୍ୱଦ୍ୱୟର ଶିର ।

ରଗଡ଼ିବା, କ୍ରି. ( ଦୃଗଡ ଶବ୍ଦଜ କି ? ) ଶିଳ [illegible] ଚକଦ୍ୱାରା କୌଣସି ପଦାର୍ଥକୁ କ୍ଷୁଦ୍ର ଅଂଶରେ ବିଭକ୍ତ କରିବା ।

ରଘୁ, ବ. ପୁଂ. (ରଙ୍ଘ୍-ଉ) ସୂର୍ଯ୍ୟ[illegible]ୀୟ ଦିଲୀପରାଜାଙ୍କ ପୁତ୍ର, ରାମଚ[illegible] ପ୍ରପିତାମହ; କାଳିଦାସପ୍ରଣୀତ କାବ୍ୟଗ୍ରନ୍ଥ ବିଶେଷ; ରଘୁବଂଶୀୟ ଅଜ [illegible] କ୍ଷତ୍ରିୟ ।

ରଘୁନନ୍ଦନ, ରଘୁନାଥ, ରଘୁପତି, ରଘୁବର, ରଘୂଦ୍ବହ, ରଘୁବଂଶତିଳକ, } ବ. ପୁଂ. (ରଘୁ-ନନ୍ଦନ, ନାଥ, ପତି, ବର, ଉଦ୍ବହ=ଶ୍ରେଷ୍ଠ, ରଘୁବଂଶ-ତିଳକ) ରାମଚନ୍ଦ୍ର ।

ରଘୁବଂଶ, ବ. ପୁଂ. (ରଘୁ-ବଂଶ) ରଘୁରାଜବଂଶ । ନ. ରଘୁଙ୍କ ପିତା ଦିଲୀପ ରାଜାଙ୍କଠାରୁ ଅଗ୍ନିବର୍ଣ୍ଣ ପର୍ଯ୍ୟ[illegible]ର୍ଣ୍ଣନାତ୍ମକ କାଳିଦାସ-ପ୍ରଣୀତ ମହାକାବ୍ୟ

ରଙ୍କ, ବିଂ. [illegible]-ଅ) କୃପଣ; ଦରିଦ୍ର; ନୀଚ; କ୍ଷୁଦ୍ର; ଦୀ[illegible] ଯଥା—

ରଣରଙ୍କ [illegible] ଯା ବିଶେଷର ।

ଦରିଦ୍ର ଅ[illegible]ର । ଯଥା—

ସତ ରଙ୍କ [illegible]ାଇବାର, ଶମ ଅନନ୍ତ ବଢ଼ିଲ ବୃକ୍ଷର ।

ରଙ୍କୁ, ବ. ପୁଂ. (ରମ୍-ଉ) ମୃଗବିଶେଷ, ଯେ ହରିଣର ପୃଷ୍ଠଦେଶ ଚିତ୍ରବିଚିତ୍ର ।

ରଙ୍କୁଣୀ, ବ. ସ୍ତ୍ରୀ. (ରନ୍କ୍-ଉଣୀ) କୃପଣା ସ୍ତ୍ରୀ, ଦରିଦ୍ରାଣୀ ।

ରଙ୍ଗ, ବ. (ରନ୍ଜ୍-ଅ) ରଞ୍ଜକଦ୍ରବ୍ୟ; ବର୍ଣ୍ଣ, ରଙ୍ଗ; ନାଟ୍ୟ ନୃତ୍ୟ ଗୀତ ଅଭିନୟାଦି; ନାଟ୍ୟଶାଳା; ପରିହାସ, ରଣଭୂମି । ନ. ରଙ୍ଗଧାତୁ ।

ରଙ୍ଗଜ, ବ. ନ. (ରଙ୍ଗ-ଜ) ସିନ୍ଦୂର ।

ରଙ୍ଗଜୀବକ, ବ. ପୁଂ. (ରଙ୍ଗ=ନାଟ୍ୟଶାଳା-ଜୀବକ=ଯେ ଜୀବିକା ନିର୍ବାହ କରେ) ନାଟ୍ୟ-କାରକ; ଚିତ୍ରକର; ଅଭିନେତୃବର୍ଗ ।

ରଙ୍ଗଣୀ, ବ. (ପ୍ରା) ପୁଷ୍ପବିଶେଷ । ଯଥା —

ବିଶେଷ ଚିତ୍ରଙ୍ଗ ରଙ୍ଗ ରଙ୍ଗଣୀଶୋଭିତ । ବୈ. ବ.

[illegible]ଲୁବାସ୍ତୁ କାଷ୍ଠବିଶେଷ ।

[illegible]ା, ବ. ପଦ୍ମା ।

ରଙ୍ଗଭୂମି, [illegible] ସ୍ତ୍ରୀ. (ରଙ୍ଗ-ଭୂମି) ନାଟ୍ୟଶାଳା; ରଣସ୍ଥଳ; [illegible], କୁସ୍ତିର ସ୍ଥାନ ।

ରଙ୍ଗମଲ୍ଲୀ, ବ. ସ୍ତ୍ରୀ. (ରଙ୍ଗ-ମଲ୍ଲ୍-ଅ, ଈ) ବାଦ୍ୟ-ଯନ୍ତ୍ରବିଶେଷ, ବୀଣା ।

ରଙ୍ଗମାତା, ବ. ସ୍ତ୍ରୀ. (ରଙ୍ଗ-ମାତୃ) [illegible], କୁଟ୍ଟିନୀ; ଲକ୍ଷା, ଲାହା ।

ରଙ୍ଗବୀଜ, ବ. ନ. (ରଙ୍ଗ-ବୀଜ=ସାରାଂଶ) ରୌପ୍ୟ, ରୂପା ।

ରଙ୍ଗାଜୀବ, ବ. ପୁଂ. (ରଙ୍ଗ-ଆଜୀବ) ଚିତ୍ରକର । ଯଥା—

ପୋଡ଼ ଏ ଦେଶ ରଙ୍ଗାଜୀବ ନ ମିଳେ ହୁର୍ଷ୍ଟର ଚାହାର ଦର୍ଶନେ ।
ପ୍ରେ. ସୁ.

ନଟ, ନାଟ୍ୟକାରକ ।

ରଙ୍ଗାବତାରକ, ରଙ୍ଗାବତା[illegible], ପୁଂ. (ରଙ୍ଗ-ଅବତାରକ, ଅବତାରୀ[illegible]) ନାଟ୍ୟକାରକ ।

ରଙ୍ଗାବତାରିକା, ରଙ୍ଗାବ[illegible], ବ. ସ୍ତ୍ରୀ. ନଟୀ ।

ରଙ୍ଗୀ, ବଂ. (ରଙ୍ଗ-ଇନ୍) [illegible]ବିଶିଷ୍ଟ, ରଞ୍ଜିତ ।

ରଂହଃ, ବ. ନ. (ରଂହ ବେଗ) ବେଗ, ଶୀଘ୍ରତା ।

ରଚକ, ବଂ. (ରଚ୍-ଅକ) ର[illegible]କାରକ ।

ରଚନ, ବ. ନ. (ରଚ୍-ଇ-ଅନ) ନା, ସ୍ତ୍ରୀ. ଶ୍ରେଣୀପୂର୍ବକ ବିନ୍ୟାସ, ସଜାଇବା; ଅର୍ପଣ; କେଶବିନ୍ୟାସ; ମାଲ୍ୟାଦି ଗ୍ରନ୍ଥନ; ଗଦ୍ୟ ବା ପଦ୍ୟମୟ ବାକ୍ୟବିନ୍ୟାସ, ନିର୍ମାଣ, ଗଠନ, ପ୍ରସ୍ତୁତକରଣ ।

ରଚୟିତା, ବଂ. (ରଚ୍-ଇ-ତୃ) ରଚନକର୍ତ୍ତା, ନିର୍ମାତା ।

ରଚିତ, ବଂ. (ରଚ୍-ଇ-ତ) କୃତ; ନିର୍ମିତ, ଗଠିତ; ଗ୍ରଥିତ; ବିନ୍ୟସ୍ତ, ଅର୍ପିତ; ଶୋଭିତ; ପରିଷ୍କୃତ ।

ରଜ, ରଜଃ, ବ. ପୁଂ. ନ. (ରଜସ୍-ଅ, ଅସ୍) ଧୂଳି; ପୁଷ୍ପରେଣୁ । ସ୍ତ୍ରୀ. କୁସୁମ, ଋତୁ; ଇଚ୍ଛା; ଦ୍ୱେଷ ଅହଙ୍କାରାଦି କାରଣ ଗୁଣବିଶେଷ ।

ରଜଃଶୟ୍ୟ, ବ. ପୁଂ. (ରଜସ୍=ଧୂଳି-ଶୟ୍ୟ=ଯେ ଶୟନ କରେ) କୁକ୍କୁର, କୁକୁର ।

ରଜଃସାରଥି, ବ. ପୁଂ. (ରଜସ୍-ସାରଥି) ବାୟୁ ।

ରଜକ, ବ. ପୁଂ. (ରନଜ୍-ଅକ) ଧୋବା; ରଙ୍ଗ-କାରକ ।

ରଜକୀ, ବ. ସ୍ତ୍ରୀ. ଧୋବଣୀ, ରଙ୍ଗକାରିଣୀ ।

ରଜତ, ବ. ନ. (ରନ୍ଜ୍-ଅତ) ରୌପ୍ୟ; ସ୍ୱର୍ଣ୍ଣ; ହସ୍ତିଦନ୍ତ; ହାର; ଶୋଣିତ; ହ୍ରଦ । ବଂ. ଶୁଭ୍ରବର୍ଣ୍ଣ ।

ରଜତଗିରି, ରଜତାଚଳ, ରଜତାଦ୍ରି, ବ. ପୁଂ. (ରଜତ-[illegible], ଅଦ୍ରି) [illegible] ପର୍ବତ

ରଜତଦ୍ୟୁତି, ବ. ପୁଂ. (ରଜତ-ଦ୍ୟୁତି) ହନୁମାନ୍ ।

ରଜତପ୍ରସ୍ଥ, ବ. ପୁଂ. (ରଜତ-ପ୍ରସ୍ଥ) କୈଳାସ ପର୍ବତ ।

ରଜନ, ରଜନୀ, ବ. ସ୍ତ୍ରୀ. (ରନ୍ଜ୍-ଅନ) ନିଶା; ରାତ୍ରି; ହରିଦ୍ରା; ଲକ୍ଷା, ଲାହା ।

ରଜନୀକର, ବ. ପୁଂ. (ରଜନୀ-କର) ନିଶାକର, ଚନ୍ଦ୍ର ।

ରଜନୀଗନ୍ଧା, ବ. ସ୍ତ୍ରୀ. ସ୍ୱନାମଖ୍ୟାତ ଶ୍ୱେତବର୍ଣ୍ଣ ପୁଷ୍ପବିଶେଷ ।

ରଜନୀଚର, ବ. ପୁଂ. (ରଜନୀ-ଚର) ସ୍ୱଚ୍ଛିଚର, ରାକ୍ଷସ; ତସ୍କର; ପ୍ରହରୀ ।

ରଜନୀଜଳ, ବ. ନ. ( ରଜନୀ-ଜଳ ) ନୀହାର, ଶିଶିର ।

ରଜନୀମୁଖ, ବ. ନ. ( ରଜନୀ-ମୁଖ ) ପ୍ରଦୋଷ, ସନ୍ଧ୍ୟାକାଳ, ନଶାମୁଖ ।

ରଜପୁତ, ବ. ପୁଂ. (ରାଜପୁତ୍ର ଶବ୍ଦଜ) କର୍ଣ୍ଣପଟ୍ଟର କାଠବିଶେଷ ।

ରଜସାନୁ, ବ. ପୁଂ. ( ରଞ୍ଜ୍-ସାନୁ ) ମେଘ; ଚିତ୍ତ ।

ରଜସ୍ବଳ, ବ. ପୁଂ. (ରଜସ୍-ବଳ) ମହିଷ । ବିଂ. ରଜୋଯୁକ୍ତ ।

ରଜସ୍ଵଳା, ବ. ସ୍ତ୍ରୀ. ଋତୁମତୀ ନାରୀ ।

ରଜୋବଳ, ରଜୋରସ, ବ. ନ. (ରଜସ୍-ବଳ, ରସ) ଅନ୍ଧକାର ।

ରଜ୍ଜୁ, ବ. ସ୍ତ୍ରୀ. ( ସୃଜ୍-ଉ ) ବନ୍ଧନୀ, ଦଉଡ଼ି; ବେଣୀ, ବାଳର ଗୁଚ୍ଛ ।

ରଞ୍ଜକ, ବ. ପୁଂ. (ରଞ୍ଜ୍-ଅକ) ବସ୍ତ୍ରାଦିର ରଙ୍ଗକାରକ; ଅନୁରାଗଜନକ; ପ୍ରୀତିକାରକ ।

ରଞ୍ଜନ, ବ. ନ. ( ରଞ୍ଜ୍-ଅନ ) ରଙ୍ଗ କରିବା; ଅନ୍ତଃକରଣର ଅନୁରାଗ ଉତ୍ପାଦନ, ସନ୍ତୁଷ୍ଟକରଣ; ରକ୍ତଚନ୍ଦନ । ବିଂ. ପ୍ରୀତି ବା ରାଗଜନକ ।

[illegible] ବ. ସ୍ତ୍ରୀ. ନୀଳ [illegible] ଦାରୁହରିଦ୍ରା ।

ରଞ୍ଜିତ, ବିଂ. [illegible] ତ, ଯାହା ରଙ୍ଗ କରା ହୋଇଅଛି; ସନ୍ତୋଷିତ, ଯାହାର ଅନୁରାଗ ଜନ୍ମାଇ ଦିଆ ଯାଇଅଛି ।

ରଟନ, ବ. ନ. } (ରଟ୍-ଅନ, ଆ) ଘୋଷଣା,
ରଟନା, ବ. ସ୍ତ୍ରୀ. } ପ୍ରଚାର; ବିବରଣ; କଥନ; ଖ୍ୟାତି ।

ରଟନ୍ତୀ, ବ. ସ୍ତ୍ରୀ. ( ରଟ୍-ଅତ୍-ଈ ) ମାଘ ମାସର କୃଷ୍ଣା ଚତୁର୍ଦ୍ଦଶୀ ।

ରଟିତ, ବିଂ. ( ରଟ୍-ତ ) ଘୋଷିତ, ପ୍ରଚାରିତ; ଖ୍ୟାତ; ପ୍ରଥିତ ।

ରଟିବା, କ୍ରି. (ରଟ୍ଧାତୁଜ) ପକ୍ଷ୍ୟାଦି ଶବ୍ଦ କରିବା । ଯଥା—

ଚରଣାମ୍ବୁଧବନ୍ଦ ରଟିଲ ରେ, ଅରବନ୍ଦକୁ ବନ୍ଧୁ ଫୁଟିଲ ରେ ।

ରଡ଼, ବିଂ. (ଦେଶଜ) ଜ୍ୱଳନ୍ତ । ବ. ଅଙ୍ଗାର ।

ରଡ଼ି, କ୍ରି. ବିଂ. (ରଟ ଧାତୁଜ) ଡାକ ।

ରଣ, ବ. ନ. (ରଣ୍-ଅ) ଯୁଦ୍ଧ, ସଂଗ୍ରାମ, ସମର ।

ରଣତ୍, ବିଂ. (ରଣ୍-ଅତ୍) ଶବ୍ଦାୟମାନ ।

ରଣତରୀ, ବ. ସ୍ତ୍ରୀ. (ରଣ-ତରି) ଯୁଦ୍ଧଜାହାଜ ।

ରଣପା, (ଦେଶଜ) ଡେଙ୍ଗା; ଲମ୍ବାକୃତି କାଷ୍ଠ ପାଦୁକାବିଶେଷ ।

ରଣରଣ, ବ. ନ. (ରଣ=ଯୁଦ୍ଧ, ଶବ୍ଦ, ଦ୍ୱିତ୍ୱ) ଅପହୃତ ବା ନଷ୍ଟ ବସ୍ତୁର ନିମିତ୍ତ ଅନୁଶୋଚନା । ପୁଂ. ମଶକ, ମଶା; କନ୍ଦର୍ପ ।

ରଣରଣକ, ବ. ପୁଂ. (ରଣ୍=ଶବ୍ଦକରିବା କ) ଉତ୍କଣ୍ଠା, ଦୁର୍ଭାବନା; ଅତିଶଯ୍ଯ ।

ରଣସଙ୍କୁଳ, ବ. ନ. ( ରଣ-ସଂ[illegible]=ମିଶ୍ରିତ ) ଘୋରତର ଯୁଦ୍ଧ, [illegible] ଯୁଦ୍ଧ ।

ରଣାଙ୍ଗନ, ରଣାଜିର, ବ. ନ. (ରଣ-ଅଙ୍ଗନ, ଅଜିର) ସମରକ୍ଷେତ୍ର, ଯୁଦ୍ଧଭୂମି ।

ରଣ୍ଡ ବିଂ. ( ରମ୍-ଡ ) ଧୂର୍ତ୍ତ; ଅର୍ଦ୍ଧଚର୍ମାବଚ୍ଛିନ୍ନ ଅବୟବ; ଆଶ୍ରମହୀନ; ଧର୍ମବିହୀନ; ବନ୍ଧ୍ୟ, ଯେଉଁ ବ୍ୟକ୍ତିର ସନ୍ତାନ ହୁଏ ନାହିଁ; ବନ୍ଧ୍ୟବୃକ୍ଷାଦି, ଯେଉଁ ବୃକ୍ଷର ବା ଲତାର ଫଳ ବା ପୁଷ୍ପ ହୁଏ ନାହିଁ ।

ରଣ୍ଡକ, ବ. ପୁଂ. (ରଣ୍ଡା-କ) ଫଳହୀନ ବୃକ୍ଷ; ଲତାବିଶେଷ, ମୂଷିକପର୍ଣ୍ଣୀ; ସ୍ୱନାମ ପ୍ରସିଦ୍ଧ ଛନ୍ଦୋବିଶେ

ରଣ୍ଡା, ବ. ([illegible] -ଆ) ବିଧବା, ରାଣ୍ଡ ।

ରତ, ବ. [illegible] ମ୍-ତ) ରତି, ରମଣ । ବିଂ. ଆସକ୍ତ ।

ରତି, ବ. ସ୍ତ୍ରୀ. [illegible]ମ୍=କ୍ରୀଡ଼ା କରିବା-ତି) ସ୍ମରସ୍ତ୍ରୀ, କାମ[illegible]ରୀ; ଅନୁରାଗ, ଆସକ୍ତି; କ୍ରୀଡ଼ା; ରମଣ; [illegible] ନ୍ତାଷ; ପରିମାଣବିଶେଷ, ୪ଧାନ [illegible] ।

ରତିକୁହର, ରତିଗୃହ, ରତିମନ୍ଦିର, ବି. ନ. (ରତି କୁହର, ରତି-ଗୃହ, ରତି-ମନ୍ଦିର) ଯୋନି, ସ୍ତ୍ରୀଚିହ୍ନ।

ରତିପତି, ରତିପ୍ରିୟ, ରତିରମଣ, ବି. ପୁଂ. (ରତି-ପତି, ପ୍ରିୟ, ରମଣ) କନ୍ଦର୍ପ, ମଦନ।

ରତିମଦା, ବି. ସ୍ତ୍ରୀ. (ରତି-ମଦ୍-ଅ) ସ୍ୱର୍ଗବିଦ୍ୟାଧରୀ, ଅପ୍ସରା।

ରତ୍ନ, ବି. ନ. (ରମ୍-ନ, ମ=ତ) ମଣିମୁକ୍ତା ସୁବର୍ଣ୍ଣାଦି ବହୁମୂଲ୍ୟ ଉତ୍କୃଷ୍ଟ ବସ୍ତୁ; ଶ୍ରେଷ୍ଠ ବସ୍ତୁ; ଯେ କୌଣସି ବସ୍ତୁ ମଧ୍ୟରେ ଉତ୍କୃଷ୍ଟ; ଶ୍ରେଷ୍ଠ।

ରତ୍ନକନ୍ଦଳ, ବି. ପୁଂ. (ରତ୍ନ-କନ୍ଦଳ) ପ୍ରବାଳ, ପୋହଳା।

ରତ୍ନଗର୍ଭ, ବି. ପୁଂ. (ରତ୍ନ-ଗର୍ଭ) କୁବେର; ସମୁଦ୍ର। [illegible], ବି. ସ୍ତ୍ରୀ. (ରତ୍ନ-ଗର୍ଭା) ପୃଥିବୀ; [illegible]ବତୀ ନାରୀ।

ରତ୍ନଧି, ବି. [illegible]. ଖଞ୍ଜନପକ୍ଷୀ।

ରତ୍ନଅଙ୍ଗୁରୀ[illegible], ବି. [illegible] ସର୍ବରତ୍ନର ଆଧାର।

ରତ୍ନମୟ, ବି°. (ରତ୍ନ-ମୟ) ମଣିମୟ [illegible]ନିର୍ମିତ।

ରତ୍ନମୁଖ୍ୟ, ବି. ନ. (ରତ୍ନ-ମୁଖ୍ୟ[illegible] , ହୀରା।

ରତ୍ନବତୀ, ବି. ସ୍ତ୍ରୀ. (ରତ୍ନ-ବତ୍-ଈ) ପୃଥିବୀ।

ରତ୍ନବର୍ଷୁକ, ବି. ନ. (ରତ୍ନ-ବର୍ଷୁକ) ପୁଷ୍ପକରଥ। ବି°. ରତ୍ନବର୍ଷଣଶୀଳ।

ରତ୍ନସାନୁ, ବି. ପୁଂ. (ରତ୍ନ-ସାନୁ) ସୁମେରୁ ପର୍ବତ।

ରତ୍ନସୂ, ବି. ସ୍ତ୍ରୀ. (ରତ୍ନ-ସୂ) ପୃଥ୍ୱୀ, ବସୁନ୍ଧରା; ରତ୍ନପ୍ରସବିନୀ।

ରତ୍ନାକର, ବି. ପୁଂ. (ରତ୍ନ-ଆକର) ସମୁଦ୍ର; ରତ୍ନଖଣି।

[illegible]ତ୍ନାଙ୍କ, ବି. ପୁଂ. (ରତ୍ନ-ଅଙ୍କ[illegible] [illegible]ରଥ।

ରତ୍ନାବଳୀ, ବି. ସ୍ତ୍ରୀ. (ରତ୍ନ-ଅ[illegible] ରତ୍ନହାର; ରତ୍ନଶ୍ରେଣୀ; ବସ୍ତ୍ରାକଟପ[illegible] [illegible]ଗ୍ରନ୍ଥବିଶେଷ।

ରତ୍ନି, ବି. ପୁଂ. ସ୍ତ୍ରୀ. (ର-ତି [illegible]) କହୁଣୀଠାରୁ ବଦ୍ଧମୁଷ୍ଟି ହସ୍ତାଗ୍ର ପର୍ଯ୍ୟନ୍ତ ପରି[illegible]ାଣ।

ରତ୍ୟଙ୍ଗ, ବି. ନ. (ରତି-ଅଙ୍ଗ) [illegible]ନି, ସ୍ତ୍ରୀଚିହ୍ନ।

ରଥ, ବି. ପୁଂ. (ରମ୍-ଥ) ଚକ୍ରଯୁକ୍ତ ଯୁଦ୍ଧଯାନ, ସ୍ୟନ୍ଦନ; ଶକଟାଦି ବାହନ; ଚରଣ; ଶରୀର; ବେତସ ବୃକ୍ଷ; ବଞ୍ଜୁଳଲତା।

ରଥକୁଟୁମ୍ବୀ, ବି. ପୁଂ. (ରଥ-କୁଟୁମ୍ବିନ୍) ସାରଥି, ପରିଚାଳକ।

ରଥଗର୍ଭକ, ବି. ପୁଂ. (ରଥ-ଗର୍ଭ-କ) ମନୁଷ୍ୟବାହ୍ୟ ଯାନ, ଶିବିକା, ଡୋଲି ପ୍ରଭୃତି।

ରଥଚରଣ, ରଥପାଦ, ବି. ପୁଂ. ( ରଥ-ଚରଣ, ପାଦ) ଚକ୍ର; ଚକ୍ରବାକ ପକ୍ଷୀ।

ରଥଦ୍ରୁ, ବି. ପୁଂ. (ରଥ-ଦ୍ରୁ) ବୃକ୍ଷବିଶେଷ, ଏହି ବୃକ୍ଷର କାଷ୍ଠରେ ରଥାଦି ନିର୍ମିତ ହୁଏ।

ରଥନ୍ତର, ବି. ନ. (ରଥ-ତୃ-ଅ) ସାମବେଦ; ରଥସାରଥି।

ରଥଯାତ୍ରା, ବି. ସ୍ତ୍ରୀ. ( ରଥ-ଯାତ୍ରା ) ଆଷାଢ଼ ଶୁକ୍ଳଦ୍ୱିତୀୟାରେ ପ୍ରସିଦ୍ଧ ଉତ୍ସବବିଶେଷ।

ରଥଯୁକ୍, ବି. ପୁଂ. (ରଥ-ଯୁଜ୍) ସାରଥି, ରଥଚାଳକ।

ରଥାଙ୍ଗ, ବି. ନ. (ରଥ-ଅଙ୍ଗ) ଚକ୍ର, ଚକ। ପୁଂ. ଚକ୍ରବାକ ପକ୍ଷୀ।

ରଥାଙ୍ଗନାମା, ବି. ପୁଂ. (ରଥାଙ୍ଗ-ନାମନ୍) ଚକ୍ରବାକ ପକ୍ଷୀ।

ରଥାଙ୍ଗପାଣି, ବି. ପୁଂ. (ରଥାଙ୍ଗ-ପାଣି) ଚକ୍ରପାଣି, ବିଷ୍ଣୁ।

ରଥାଙ୍ଗୀ, ବି. ପୁଂ. ([illegible]ଅଙ୍ଗ-ଇନ୍) [illegible], ହର।

ରଥିକ, ରଥିନ, ରଥିର, ରଥୀ, ବି. ପୁଂ. (ରଥ-ଇକ, ଇନ, ଇର, ଇନ୍) ରଥସ୍ୱାମୀ; ରଥାରୂଢ଼ ବ୍ୟକ୍ତି; ରଥସ୍ଥ ଯୋଦ୍ଧା।

ରଥ୍ୟ, ବି. ପୁଂ. (ରଥ-ଯ) ରଥବାହକ ଅଶ୍ୱ। ନ. ଚକ୍ର, ଚକ। ବି°. ରଥସମ୍ବନ୍ଧୀୟ।

ରଥ୍ୟା, ବି. ସ୍ତ୍ରୀ. (ରଥ-ଯ-ଆ) ବର୍ତ୍ମ, ପଥ, ବାଟ; ରଥସମୂହ।

ରଦ, ବି. ପୁଂ. (ରଦ୍-ଅ) ଦନ୍ତ, ଦାନ୍ତ; ଉତ୍ଖାତ, ଖନନ।

ରଦଚ୍ଛଦ, ରଦନଚ୍ଛଦ, ବ. ପୁଂ. (ରଦ-ଛଦ, ରଦନ-ଛଦ) ଦନ୍ତଚ୍ଛଦ, ଓଷ୍ଠ, ଅଧର ।

ରଦନ, ବ. ପୁଂ. (ରଦ୍-ଅନ) ଦନ୍ତ, ଦାନ୍ତ; ଖନନ; ଛେଦନ ।

ରଦ, ବଂ. (ଯାବନିକ) ଅପକୃଷ୍ଟ ଦ୍ରବ୍ୟ ।

ରଦ୍ଧ, ବଂ. (ରଧ୍-ତ) ଆହତ, ଅଘାତପ୍ରାପ୍ତ; କ୍ଷତଗ୍ରସ୍ତ ।

ରନ୍ଥୁ,ବ.ସ୍ତ୍ରୀ. (ରମ୍-ଊ) ବର୍ତ୍ମ, ପଥ, ବାଟ;ନଦୀ ।

ରନ୍ଧା, ବ. (ଦେଶଜ) ବଢ଼ାଇମାନଙ୍କର କାଷ୍ଠକୁ ଚକ୍କଣ କରିବାର ଅସ୍ତ୍ରବିଶେଷ ।

ରନ୍ଧକ, ବଂ. (ରଧ୍-ଅକ) ଅଘାତକାରୀ, କ୍ଷତ-କାରକ ।

ରନ୍ଧନ, ବ. ନ. (ରନ୍ଧ-ଅନ) ପାକ, ରନ୍ଧଣା ।

ରନ୍ଧ୍ର, ବ. ନ. (ରମ୍-ଧୃ-ଅ) ଛିଦ୍ର, ବିବର, ଗର୍ତ୍ତ; କୁକ୍ଷି; ଅନ୍ୟାଯ୍ୟ ଅଲସ୍ୟାଦି ଦୋଷ; ଛଳ ।

ରପ୍ତାନି, (ଯାବନିକ) ଜିନିଷର ଚଲାଣ ।

ରଫା, (ଯାବନିକ) ଶାନ୍ତି; କଳହ ନିଷ୍ପତ୍ତି; ଶେଷ ।

ରଭସ, ବ. ପୁଂ. (ରଭ୍-ଅସ) ବେଗ, ଶୀଘ୍ରତା; ହର୍ଷ; ଔତ୍ସୁକ୍ୟ; ଶୋକ, ପୂର୍ବାପର ବିବେଚନା; ଅଭିଧାନବିଶେଷ; କାର୍ଯ୍ୟକାରଣ ଗବେଷଣା ।

ରମ, ବ. ପୁଂ. (ରମି-ଅ) କାନ୍ତ, ସ୍ୱାମୀ; କାମଦେବ । ବଂ. ଆନନ୍ଦଜନକ; ରମଣୀୟ ।

ରମ[illegible] ପୁଂ. (ରମ୍-[illegible]) [illegible]ମପତି, ଜାର ।

ରମଠ, ବ. ନ [illegible] ହେଙ୍ଗୁ ।

ରମଣ, ବ. ପୁଂ. (ରମି-ଅନ) କନ୍ଦର୍ପ; ପତି; ପ୍ରିୟ; ବୃଷଭ; ଗର୍ଦ୍ଦଭ; (ରମ୍-ଅନ) ନ. ରତି, ସୁରତ, ମୈଥୁନ; ଜଘନ; କ୍ରୀଡ଼ା ।

ରମଣକ, ବ. ନ. (ରମଣ-କ) ଜମ୍ବୁଦ୍ୱୀପାନ୍ତର୍ଗତ ବର୍ଷବିଶେଷ, ରମ୍ୟକ ବର୍ଷ ।

ରମଣୀ, ବ. ସ୍ତ୍ରୀ. (ରମଣ-ଈ) ସୁନ୍ଦରୀ ସ୍ତ୍ରୀ; ପ୍ରିୟା; ପତ୍ନୀ ।

ରମଣୀୟ, ବଂ. (ରମ୍-ଅନୀୟ) ରମ୍ୟ, ସୁନ୍ଦର, ମନୋରମ ।

ରମତି, ବ. ପୁଂ. (ରମ୍-ଅତି) ନାୟକ; ସ୍ୱର୍ଗ; କାକ; କାଳ ।

ରମା, ବ. ସ୍ତ୍ରୀ. (ରମ୍-ଅ, ଆ) ଲକ୍ଷ୍ମୀ; ଉପପତ୍ନୀ ।

ରମାଧବ,ରମାନାଥ, ରମାପତି, ବ.ପୁଂ.(ରମା-ଧବ, ନାଥ, ପତି) ବିଷ୍ଣୁ, ଲକ୍ଷ୍ମୀଶ ।

ରମାପ୍ରିୟ, ବ. ନ. (ରମା-ପ୍ରିୟ) ପଦ୍ମ । ପୁଂ. ବିଷ୍ଣୁ ।

ରମେଶ, ରମେଶ୍ୱର, ବ. ପୁଂ. (ରମା-ଈଶ,ଈଶ୍ୱର) ରମାପତି, ବିଷ୍ଣୁ ।

ରମ୍ଫା, ବ. (ଦେଶଜ) ଅମ୍ଳତ୍ୱକ୍ ଚା । ବ. କଣ୍ଟା ।

ରମ୍ଭ, ବ. ପୁଂ. (ରନ୍ଭ୍-ଅ) ବଂଶ, ବାଉଁଶ; ବାନରବିଶେଷ; ମହିଷାସୁରର ପିତା, ରମ୍ଭାସୁର ।

ରମ୍ଭା, ବ. ସ୍ତ୍ରୀ. (ରନ୍ଭ୍-ଅ, ଆ) କଦଳୀ; ଅପ୍ସରାବିଶେଷ; ବେଶ୍ୟାବିଶେଷ, ଗୌରୀ; ବେଶ୍ୟା; ଗୋଧ୍ୱନି ।

ରମ୍ୟ, ବଂ. (ରମ୍-ଯ) ରମଣୀୟ, ମନୋ[illegible] ସୁନ୍ଦର । ବ. ପୁଂ. ଚମ୍ପକ । ମ୍ୟା-[illegible] ରାତ୍ରି; ସ୍ଥଳପଦ୍ମିନୀ ।

ରମ୍ୟକ, ବ. ନ. (ର[illegible]କ) ଜମ୍ବୁଦ୍ୱୀପର ବର୍ଷବି[illegible] ।

ରୟ, ବ. [illegible]ୟ୍-ଅ) ବେଗ; ନଦୀପ୍ରବାହ, ସ୍ରୋତ[illegible]

ରବ, ବ. ପୁଂ. (ରୁ-ଅ) ଶବ୍ଦ, ଧ୍ୱନି; ଗୋଳମାଳ ।

ରବଣ, ବ. ପୁଂ. (ରୁ-ଅନ) ଉଷ୍ଟ୍ର, ଓଟ; କୋକିଳ; ଗର୍ଦ୍ଦଭ । ନ. କାଂସ୍ୟ; କଂସା । ବଂ. ଶବ୍ଦାୟମାନ; ତୀକ୍ଷ୍ଣ; ଚଞ୍ଚଳ ।

ରବଥ, ବ. ପୁଂ. (ରବ୍-ଅଥ) କୋକିଳ ।

ରବି, ବ. ପୁଂ. (ରୁ-ଇ) ସୂର୍ଯ୍ୟ; ଅର୍କବୃକ୍ଷ; ନାୟକ; ରକ୍ତଅ[illegible]ାକବୃକ୍ଷ; (ଦେଶଜରେ) ମୁଗ ପ୍ରଭୃତି [illegible] ।

ରବିକାନ୍ତ, ବ. (ରବି-କାନ୍ତ) ସୂର୍ଯ୍ୟକାନ୍ତମଣି ।

ରବିଜ, ରବିତ[illegible], ରବିନନ୍ଦନ, ର[illegible] ବ. ପୁଂ. (ର-ବିଜ, ତନୟ, ନନ୍ଦନ, ସୁତ) ସୂର୍ଯ୍ୟପୁ[illegible] ଶନି, ସୁଗ୍ରୀବ, ଯମ; ସାବର୍ଣ୍ଣି ଓ ବୈବସ୍ୱତ [illegible] । ଜା, ଯା, ନନ୍ଦିନୀ, ତା, ସ୍ତ୍ରୀ. ଯମୁନା ।

ରବନାଥ, ବ. ନ. (ରବି-ନାଥ) ପଦ୍ମ । ପୁଂ. ପୁଷ୍ପ ।

ରବନ୍ଦ, ବ. ନ. (ରବି-ଦା-ଅ) ପଦ୍ମ ।

ରବପ୍ରିୟ, ବ. ନ. (ରବି-ପ୍ରିୟ) ରକ୍ତକମଳ; ତାମ୍ର । ପୁଂ. କରବୀର ।

ରବଲୋହ, } ବ. ନ. (ରବି-ଲୋହ, ସଞ୍ଜ୍ଞକ)
ରବସଞ୍ଜ୍ଞକ, } ତାମ୍ର, ତମ୍ବା ।

ରବିବାର, ବ. ଅଦ୍ୟ ବାର ।

ରଶନା, ବ. ସ୍ତ୍ରୀ. (ରଶ୍-ଅନ-ଆ) ସ୍ତ୍ରୀଲୋକଙ୍କର କଟିଭୂଷଣ, ଚନ୍ଦ୍ରହାର, ଗୋଠ ପ୍ରଭୃତି; ଜିହ୍ୱା ।

ରଶ୍ମି, ବ. ପୁଂ. (ଅଶ୍-ମି, ଅ=ର) କିରଣ; ରଜ୍ଜୁ; ଲଗାମ; ପକ୍ଷ୍ମ ।

ରସ, ବ. ପୁଂ. (ରସ୍-ଅ) ରସନେନ୍ଦ୍ରିୟଗ୍ରାହ୍ୟ ବସ୍ତୁ; ...ଦ; କଟୁ, ତିକ୍ତ, କଷାୟ, ଲବଣ, ଅମ୍ଳ, ... ଏହି ଛଅ ପ୍ରକାର; କାବ୍ୟଶାସ୍ତ୍ରର ସାର-ଭୂତ; ...ାଦନ; ମନଃପ୍ରୀତିବିଶେଷ; ସହୃଦୟ ଲୋକମାନଙ୍କ ...ତ୍ତରେ ରତି ପ୍ରଭୃତି ସ୍ଥାୟି-ଭାବ ବିଭାବାଦିଦ୍ୱା...ପରିପୁଷ୍ଟ ହୋଇ ଆନନ୍ଦ-ଜନକ ହେଲେ ତାହା... ...କହନ୍ତି; ଯଥା—ଶୃଙ୍ଗାର, ବୀର, କରୁ... ...ଭୂତ, ହାସ୍ୟ, ଭୟାନକ, ବୀଭତ୍ସ, ରୌଦ୍ର, ଶାନ୍ତ ଏହି ୯ ପ୍ରକାର; କୌଣସି କୌଣସି ଲୋକ ବାତ୍ସଲ୍ୟକୁ ମଧ୍ୟ ରସ କହନ୍ତି, ସେ ମତରେ ରସ ଦଶ ପ୍ରକାର; ଅଭିପ୍ରାୟ; ଅନୁରାଗ; ଭୋଗ୍ୟବସ୍ତୁ; ଯୂଷ; ଦ୍ରବବସ୍ତୁ; ଜଳ; ବିଷ; ସୁବର୍ଣ୍ଣ; ପାରଦ; ମାଧୁର୍ଯ୍ୟାଦି ଗୁଣ; ଦେହସ୍ଥ ଧାତୁବିଶେଷ; ଶୁକ୍ରଧାତୁ ।

ରସକ, ବ. ପୁଂ. (ରସ-କ) ଯୂଷରହିତ ସିଦ୍ଧମାଂସ ।

ରସକେଶର, ବ. ନ. (ରସ-କେଶର) କର୍ପୂର ।

ରସଗର୍ଭ, ବ. ନ. (ରସ-ଗର୍ଭ) ରସାଞ୍ଜନ; ହେଙ୍ଗୁଳ ।

ରସଘ୍ନ, ବ. ପୁଂ. (ରସ-ଘ୍ନ) ଟାଙ୍ଗଣା, ସୋହାଗା । ବିଂ. ରସନାଶକ ।

ରସଜ, ବ. ନ. (ରସ-ଜ) ରକ୍ତ । ପୁଂ. ମଦ୍ୟ-କୀଟ ।

ରସଜ୍ଞ, ବିଂ. (ରସ-ଜ୍ଞ) ସ୍ୱାଦଗ୍ରାହୀ; ରସିକ; ଗୁଣଜ୍ଞ; ଯାମାଜକ । ଜ୍ଞା-ସ୍ତ୍ରୀ. ଜିହ୍ୱା, ରସନା, ରସିକା ।

ରସଜ୍ୟେଷ୍ଠ, ବ. ପୁଂ. (ରସ-ଜ୍ୟେଷ୍ଠ) ମଧୁର-ରସ; ଶୃଙ୍ଗାରରସ ।

ରସତେଜଃ, ବ. ନ. (ରସ-ତେଜସ୍) ରୁଧିର; ରକ୍ତ ।

ରସଦ, (ଯାବନିକ) ସୈନ୍ୟମାନଙ୍କର ଅନ୍ନାଦିସାମଗ୍ରୀ ଦ୍ରବ୍ୟ ।

ରସଧାତୁ, ରସନାଥ, ବ. ପୁଂ. (ରସ-ଧାତୁ-ନାଥ) ପାରଦ, ପାରା ।

ରସନ, ବ. ନ. (ରସ୍-ଅନ) ଆସ୍ୱାଦନ, ରସ, ଗ୍ରହଣ; ଶବ୍ଦ, ଧ୍ୱନି; ଧ୍ୱନନ; ଜିହ୍ୱା । ନା-ସ୍ତ୍ରୀ. ଜିହ୍ୱା; ମେଖଳା; ରଜ୍ଜୁ, ପାଶ ।

ରସନାୟକ, ବ. ପୁଂ. (ରସ-ନାୟକ) ଶିବ, ମହାଦେବ ।

ରସନେନ୍ଦ୍ରିୟ, ବ. ନ. (ରସନା-ଇନ୍ଦ୍ରିୟ) ରସନା, ଜିହ୍ୱା ।

ରସଫଳ, ବ. ପୁଂ. (ରସ-ଫଳ) ନାରିକେଳ ବୃକ୍ଷ ।

ରସଭବ, ବ. ନ. (ରସ-ଭବ) ରକ୍ତ, ରୁଧିର ।

ରସରାଜ, ବ. ପୁଂ. (ରସ-ରାଜନ୍) ପାରଦ; ରସାଞ୍ଜନ; ରସିକଶ୍ରେଷ୍ଠ ।

ରସବାନ୍, ବିଂ. (ରସ-ବତ୍) ରସ...; ସତ୍କାବ୍ୟ; ସରସ; ମଧୁ...

ରସସିନ୍ଦୂର, ବ. ନ. ଔଷଧବିଶେଷ ।

ରସା, ବ. ସ୍ତ୍ରୀ. (ରସ୍-ଅ, ଆ) ପୃଥିବୀ; ରସନା; ଦ୍ରାକ୍ଷା ।

ରସାଞ୍ଜନ, ବ. ନ. (ରସ-ଅଞ୍ଜନ) ରସଜାତ କଜ୍ଜଳ-ବିଶେଷ; ଧାତୁବିଶେଷ ।

ରସାତଳ, ବ. ନ. (ରସା-ତଳ) ପାତାଳ, ସପ୍ତବିଧ ଅଧୋଭୁବନ ମଧ୍ୟରେ ସର୍ବନିମ୍ନସ୍ଥ ଭୁବନ; ଭୂତଳ ।

ରସାଧାର, ବ. ପୁଂ. (ରସ-ଆଧାର) ସୂର୍ଯ୍ୟ ।

ରସାସ୍ୱାଦ, ବ. ପୁଂ. (ରସ-ଆସ୍ୱାଦ) ରସଗ୍ରହଣ, ଅନୁଚିତ ବିଷୟର ରସବର୍ଣ୍ଣନ; ଗୀତରସ, ଗୀତସମ୍ପୃକ୍ତ ରସ

ରସାୟନ, ବ. ନ. (ରସ-ଅୟନ) ବିଷବିଶେଷ; ଜରା ଓ ବ୍ୟାଧିନାଶକ ଔଷଧବିଶେଷ; ପକ୍ଷୀ; ଜରା; ରୋଗବିଶେଷ; ତକ୍ର, ଘୋଳଦହି; ଦୁଇ ବା ବହୁ ପଦାର୍ଥ ପରସ୍ପର ସଂଯୁକ୍ତ ହେଲେ ଏକ ବସ୍ତୁରେ ପରିଣତ ଏବଂ ଗୁଣାନ୍ତର ବା ରସାନ୍ତର ପ୍ରାପ୍ତ ହୁଏ, ଯାହାଦ୍ୱାରା ଏହି ବିଷୟର ଜ୍ଞାନ ଜନ୍ମେ, ତାହାକୁ ରସାୟନ କହନ୍ତି । ପୁଂ. ଗରୁଡ଼; ବିଡ଼ଙ୍ଗ ।

ରସାୟନବିଦ୍ୟା, (Chemistry) ଯେଉଁ ବିଦ୍ୟା ଅଧ୍ୟୟନ କଲେ ଭୂତ ପଦାର୍ଥସମୁଦାୟର ଗୁଣ ଏବଂ ସେମାନଙ୍କର ପରସ୍ପର ସଂଯୋଗ ଓ ବିଯୋଗ ବିଷୟର ଜ୍ଞାନ ହୁଏ ।

ରସାୟନଫଳ, ବ. ନ. ( ରସାୟନ-ଫଳ ) ହରୀତକୀ ।

ରସାଳ, ବ. ପୁଂ. ( ରସ୍-ଆ-ଲା-ଅ ) ଇକ୍ଷୁ; ଆମ୍ରବୃକ୍ଷ; ପଣସବୃକ୍ଷ । ବଂ. ରସଯୁକ୍ତ ।

ରସାଳସା, ବ. ସ୍ତ୍ରୀ. ଧମନୀ, ନାଡ଼ୀ; ରସମୂର୍ଚ୍ଛା ।

ରସାଳା ବ. ସ୍ତ୍ରୀ. ରସନା; ଦୂର୍ବା; ପୁଷ୍ପବିଶେଷ; ଦ୍ରାକ୍ଷା; ପେୟବିଶେଷ ।

ରସା[illegible]ବଂ. (ରସ- ଆସ୍ୱାଦନ) ରସର ଆସ୍ୱାଦନକାରୀ । ବ[illegible] ଭ୍ରମର ।

ରସିକ, ବଂ. (ରସ-ଇକ) ରସଜ୍ଞ, ରସ ବୋଧବିଶିଷ୍ଟ; ସ୍ୱାଦଗ୍ରାହୀ । ବ. ପୁଂ. ଅଶ୍ୱ; ହସ୍ତୀ; ଲମ୍ପଟ, ଇନ୍ଦ୍ରିୟପରାୟଣ ।

ରସିକା, ବ. ସ୍ତ୍ରୀ. ରସନା; କାଞ୍ଚୀ; ଇକ୍ଷୁରସ, ଗୁଡ଼; ରସଜ୍ଞା ।

ରସିତ, ବ. ନ. (ରସ୍-ତ) ମେଘର ଶବ୍ଦ; ଧ୍ୱନି, ଶବ୍ଦ; ଆସ୍ୱାଦ । ବଂ. ସ୍ୱାଦିତ; ସ୍ୱର୍ଣ୍ଣାଦିଦ୍ୱାରା ଖଚିତ ।

ରସୁନ, ରସୋନ, ବ. ପୁଂ. (ରସ୍-ଉନ, ଓନ) ମୂଳବିଶେଷ, ରସୁଣ ।

ରସେନ୍ଦ୍ର, ବ. ପୁଂ. (ରସ-ଇନ୍ଦ୍ର) ପାରଦ, ପାରା ।

ରସୋଦ୍ଭବ, ବ. ନ. ( ରସ-ଉଦ୍ଭବ ) ହିଙ୍ଗୁଳ । ବଂ. ରସଜାତ ।

ରସୋପଳ, ବ. ନ. (ରସ-ଉପଳ) ମୌକ୍ତିକ, ମୁକ୍ତା ।

ରସ୍ୟ, ବ. ନ. (ରସ୍-ଯ) ରୁଧିର, ରକ୍ତ । ବଂ. ଆସ୍ୱାଦ୍ୟ ।

ରହଃ, ବ. ନ. (ରହ୍-ଅସ) ଗୋପନ; ଶୃଙ୍ଗାର; ଗୋପନୀୟ ଧର୍ମତତ୍ତ୍ୱ ।

ରହସ୍ୟ, ବଂ. ( ରହସ୍-ଯ ) ମର୍ମ; ଗୁପ୍ତବିଷୟ, ଗୋପନୀୟ; ନିର୍ଜନଭବ । ବ. ନ. ଗୂଢ଼ତତ୍ତ୍ୱ, ଯାହାର ମର୍ମ ବୁଝା ଯାଇ ପାରେ ନାହିଁ; ଇହାର ଦ୍ୱିବିଧ—ଧର୍ମରହସ୍ୟ, ଅର୍ଥରହସ୍ୟ, ରହସ୍ୟ । ସ୍ୟା, ସ୍ତ୍ରୀ. ସରସ୍ୱତୀ ନଦୀ ।

ରହିତ, ବଂ. (ରହ୍-ତ) ବର୍ଜିତ, [illegible], ବର୍ଜନୀୟ ।

ରା, ବ. ସ୍ତ୍ରୀ. (ରା-୦) ଦାନ; [illegible], ବିଭବ; ସ୍ୱର୍ଣ୍ଣ ।

ରାଇବା, କ୍ରି. (ରାବ ଶବ୍ଦ[illegible]) ଡାକିବା । ଯଥା—[illegible] ରାବ ରଇବ ।

ରାକା, [illegible] (ରା-କ, ଆ) ପୂର୍ଣ୍ଣିମାତିଥି; ନବ ଋତୁମତୀ ସ୍ତ୍ରୀ; ନଦୀବିଶେଷ; କାଛୁରୋଗ ।

ରାକ୍ଷସ, ବ. ପୁଂ. ( ରକ୍ଷ୍-ଅସ କିମ୍ବା ରକ୍ଷସ୍-ଅ ) ନିଶାଚର, ଯାତୁଧାନ; କୁବେରଙ୍କ ଧନରକ୍ଷକ; ବିବାହବିଶେଷ, ବଳପୂର୍ବକ ବିବାହ । ବଂ. ରକ୍ଷଃସମ୍ବନ୍ଧୀୟ । ସୀ, ସ୍ତ୍ରୀ. ରାକ୍ଷସପତ୍ନୀ; ସାୟାହ୍ନବେଳା ।

ରାକ୍ଷସେନ୍ଦ୍ର, ବ. ପୁଂ. (ରାକ୍ଷସ-ଇନ୍ଦ୍ର) ରାବଣ ।

ରାକ୍ଷା, ବ. ସ୍ତ୍ରୀ. (ରକ୍ଷ୍-ଅ-ଆ) ଲାକ୍ଷା, ଲାହା ।

ରାଗ, ବ. ପୁଂ. (ରଞ୍ଜ୍-ଅ) ରକ୍ତବର୍ଣ୍ଣ; ଅନୁରାଗ; ଇଚ୍ଛା; ବିଷୟେଚ୍ଛା; ଉତ୍ସାହ; ସ୍ୱରର ପ୍ରକାରବିଶେଷ, ଭୈରବ ମାଳବ ସାରଙ୍ଗ ହିନ୍ଦୋଳ ଦୀପକ ମେଘ ଏହି ଷଡ଼ବିଧ; ରଞ୍ଜନ, ରଙ୍ଗ କରିବା; ଦ୍ୱେଷ, ମାତ୍ସର୍ଯ୍ୟ; ରଞ୍ଜକଦ୍ରବ୍ୟ; ଚନ୍ଦ୍ର[illegible]ନ୍ଦ୍ର; ନୃପ; (ଗ୍ରା) କ୍ରୋଧ ।

ରାଗଚୂର୍ଣ୍ଣ, ବି. ପୁଂ. ( ରାଗ-ଚୂର୍ଣ୍ଣ ) ରକ୍ତବର୍ଣ୍ଣ ଚୂର୍ଣ୍ଣ, ଫଗୁ; ସ୍ମର, କନ୍ଦର୍ପ; ଖଦିର ବୃକ୍ଷ; ଲକ୍ଷାରସ।

ରାଗଛନ୍ନ, ରାଗରଜ୍ଜୁ, ରାଗବୃନ୍ତ, ବି. ପୁଂ. (ରାଗ-ଛନ୍ନ, ରଜ୍ଜୁ, ବୃନ୍ତ) କାମଦେବ, ମଦନ ।

ରାଗଲତା, ବି. ସ୍ତ୍ରୀ. ( ରାଗ-ଲତା ) ରତି, କାମପତ୍ନୀ ।

ରାଗସୂତ୍ର, ବି. ନ. (ରାଗ-ସୂତ୍ର) ତୁଳାସୂତ୍ର, ନିକ୍ତି ବା ଦଣ୍ଡିର ସୂତା; ପଟ୍ଟସୂତ୍ର; ରଙ୍ଗ କରିଥିବା ସୂତା ।

ରାଗାର୍ଦ୍ଧ, ବିଂ. (ରାଗ-ଅର୍ଦ୍ଧ) ଯେଉଁ ବ୍ୟକ୍ତି ଆଶା ଦେଇ ଆଶା ପୂର୍ଣ୍ଣ କରେ ନାହିଁ ।

ରାଗିଣୀ, ବି. ସ୍ତ୍ରୀ. ( ରାଗ-ଇନ୍-ଈ ) ସ୍ୱରବିଶେଷ, ...ଅ ରାଗର ପତ୍ନୀସ୍ୱରୂପ ୩୬ ସ୍ୱର; ଅନୁରକ୍ତା ... (ପ୍ରା) କୋପନା ସ୍ତ୍ରୀ । ଯଥା—

...ଣୀ ରଣି ଦେ ଝୁଁଲିବ ପୁଣି,
ରହି ... ତାହା ଶିରେ ମଣି । ର. କ.

ରାଗୀ, ବିଂ. ( ରା... ...ଇନ୍) ରାଗଯୁକ୍ତ, ଅନୁରକ୍ତ; କାମୁକ, ରଞ୍ଜନକାରୀ; (ପ୍ରା) କ...ୀ ।

ରାଘବ, ବି. ପୁଂ. ( ରଘୁ-ଅ ) ...; ରଘୁବଂଶୀୟ ନୃପ; ସମୁଦ୍ର; ମତ୍ସ୍ୟବି... । ବିଂ. ରଘୁବଂଶୀୟ ।

ରାଜ୍, ବି. ପୁଂ. (ରାଜ୍-୦) ରାଜା, ପ୍ରଭୁ । ବିଂ. ଶୋଭମାନ ।

ରାଜକ, ବି. ନ. (ରାଜନ୍-କ) ରାଜସମୂହ । ପୁଂ. ରାଜା । ବିଂ. ଶାସନକର୍ତ୍ତା; ଦୀପ୍ତିଶାଳୀ ।

ରାଜକୀୟ, ବିଂ. (ରାଜକ-ଈୟ) ରାଜସମ୍ବନ୍ଧୀୟ ।

ରାଜତ, ବିଂ. ( ରଜତ-ଅ ) ରଜତନିର୍ମିତ, ରୌପ୍ୟମୟ ।

ରାଜତନ୍ତ୍ର, ବି. ନ.-ରାଜାର ହସ୍ତଗତ ରାଜ୍ୟ-ଶାସନ ।

ରାଜତ୍ୱ, ବି. ନ. (ରାଜନ୍-ତ୍ୱ) ରାଜ୍ୟ, ରାଜପଦ ।

ରାଜଦଣ୍ଡ, ବି. ନ. ( ରାଜ-ଦଣ୍ଡ ) ରାଜଦତ୍ତ ଦଣ୍ଡ; ରଜାର ହସ୍ତସ୍ଥିତ ଯଷ୍ଟି...

ରାଜଧାନ, ନ. } ବି. (ରାଜନ୍-ଧା-ଅନ,ଈ)
ରାଜଧାନୀ, ସ୍ତ୍ରୀ. } ପ୍ରଧାନନଗରୀ, ଯେଉଁ ସ୍ଥାନରେ ରାଜା ବାସ କରନ୍ତି ।

ରାଜନୀତି, ବି. ସ୍ତ୍ରୀ. ( ରାଜନ୍-ନୀତି ) ରାଜ୍ୟ-ଶାସନ ନୀତିଶାସ୍ତ୍ର, ଯେଉଁ ନୀତିଶାସ୍ତ୍ରଦ୍ୱାରା ରାଜକାର୍ଯ୍ୟ ନିର୍ବାହ ହୁଏ; ସାମ ଦାନାଦି ଚତୁର୍ବିଧ ଉପାୟ ।

ରାଜନ୍ୟ, ବି. ପୁଂ. (ରାଜ୍-ଅନ୍ୟ) କ୍ଷତ୍ରିୟ; ଅଗ୍ନି; କ୍ଷୀରିକାବୃକ୍ଷ ।

ରାଜନ୍ୟକ, ବି. ନ. (ରାଜନ୍ୟ-କ) କ୍ଷତ୍ରିୟସମୂହ, ରାଜକ ।

ରାଜପଟ୍ଟ, ବି. ପୁଂ. (ରାଜନ୍-ପଟ୍ଟ) ମଣିବିଶେଷ; ମୁକୁଟ; ରାଜସନନ୍ଦ ।

ରାଜପଥ, ବି. ପୁଂ. ( ରାଜନ୍-ପଥ ) ରାଜମାର୍ଗ, ଅତି ପ୍ରଶସ୍ତ ରାସ୍ତା ।

ରାଜପୁତ୍ର, ବି. ପୁଂ. (ରାଜନ୍-ପୁତ୍ର) ଯୁବରାଜ, ରାଜକୁମାର; ବୁଧଗ୍ରହ; ଜାତିବିଶେଷ, ରଜପୁତ ।

ରାଜପୁରୁଷ, ବି.ପୁଂ.(ରାଜନ୍-ପୁରୁଷ) ରାଜକର୍ମଚାରୀ; ଶାନ୍ତିରକ୍ଷକ ।

ରାଜଭୂୟ, ବି. ନ. ( ରାଜନ୍-ଭୂ-ଯ ) ରାଜ୍ୟ, ରାଜତ୍ୱ ।

ରାଜମଣ୍ଡଳ, ବିଂ. (ରାଜନ୍-ମଣ୍ଡଳ) ଦ୍ୱାଦଶବିଧ ରାଜା; ଅରି, ମିତ୍ର, ଅରିର ମିତ୍ର, ମିତ୍ରର ମିତ୍ର, ଅରିମିତ୍ରର ମିତ୍ର ଏହି ପାଞ୍ଚ—ଶ... ପୁରଃସର, ପାର୍ଷ୍ଣିଗ୍ରାହ... ..., ପାର୍ଷ୍ଣିଗ୍ରାହାସାର, ଆକ୍ରନ୍ଦାସାର—ଏହି ...ରି ବିଜିଗୀଷୁର ପଶ୍ଚାଦ୍‌ବର୍ତ୍ତୀ ଏବଂ ବିଜିଗୀଷୁ, ମଧ୍ୟମ ଓ ଉଦାସୀନ ଏହି ତିନ—ସମୁଦାୟରେ ଦ୍ୱାଦଶ ।

ରାଜମାର୍ଗ, ବି. ପୁଂ. (ରାଜନ୍-ମାର୍ଗ) ଅତି ପ୍ରଶସ୍ତ ରାସ୍ତା ।

ରାଜଯକ୍ଷ୍ମା, ବି. ପୁଂ. ( ରାଜନ୍-ଯକ୍ଷ୍ମା ) ଯକ୍ଷ୍ମା, କ୍ଷୟରୋଗ ।

ରାଜରଙ୍ଗ, ବି. ନ. ( ରାଜ-ରଙ୍ଗ ) ରଜତ, ରୌପ୍ୟ ।

ରାଜରାଜ, ବି. ପୁଂ. (ରାଜନ୍-ରାଜା) କୁବେର; ଏକଛତ୍ର ରାଜା; ଚନ୍ଦ୍ର; ସମ୍ରାଟ୍ ।

ରାଜର୍ଷି, ବି. ପୁଂ (ରାଜ-ଋଷି) ରାଜା ଅଥଚ ଋଷି, ଯେଉଁ ରାଜା ଋଷିବତ୍ ଆଚରଣ କରନ୍ତି; ରାଜଶ୍ରେଷ୍ଠ ।

ରାଜଲକ୍ଷ୍ମୀ, ବି. ସ୍ତ୍ରୀ. (ରାଜ-ଲକ୍ଷ୍ମୀ) ରାଜଶୋଭା, ରାଜଶ୍ରୀ ।

ରାଜବଂଶ୍ୟ, ବିଂ. (ରାଜବଂଶ-ଯ) ରାଜବଂଶୋଦ୍ଭବ । ବି. ପୁଂ. ଜାତିବିଶେଷ ।

ରାଜବର୍ତ୍ମ, ବି. ନ. (ରାଜନ୍-ବର୍ତ୍ମନ୍) ରାଜପଥ ।

ରାଜବଲ୍ଲୀ, ବି. ସ୍ତ୍ରୀ. (ରାଜ-ବଲ୍ଲୀ) ଉଚ୍ଛଫଳ-ବିଶେଷ, କଲରା ।

ରାଜବିପ୍ଳବ, (Revolution) ରାଜ୍ୟଶାସନର ପ୍ରଚଳିତ ପ୍ରଣାଳୀର ପରିବର୍ତ୍ତନ; ରାଜଦ୍ରୋହ ।

ରାଜବୃତ୍ତ, ବି.ନ. (ରାଜ-ବୃତ୍ତ) ରାଜାର ଚରିତ୍ର, ନ୍ୟାୟପୂର୍ବକ ଅର୍ଥର ଉପାର୍ଜ୍ଜନ ବୃଦ୍ଧି ରକ୍ଷା ଏବଂ ସତ୍ପାତ୍ରରେ ଅର୍ପଣ ।

ରାଜଶଯ୍ୟା, ବି. ସ୍ତ୍ରୀ. (ରାଜ-ଶଯ୍ୟା) ସିଂହାସନ ।

ରାଜସ, ରାଜସିକ, ବିଂ. ( ରଜସ୍-ଅ, ଇକ ) ରଜୋଗୁଣପ୍ରଧାନ; ମାନ ପୂଜା ସମ୍ଭ୍ରମାର୍ଥ ଦମ୍ଭବଶତଃ ଯେଉଁ କାର୍ଯ୍ୟ କରା ହୁଏ, ଖ୍ୟାତି-ଜନକ କର୍ମ ।

ରାଜସୂୟ, ବି.ନ.(ରାଜ-ସୂ-ଯ) ସମ୍ରାଜର ସମ୍ପାଦ୍ୟ [illegible]ବିଶେଷ, ଅଧୀନ ରାଜଗଣକର୍ତ୍ତୃକ ସମ୍ପାଦ୍ୟ; ପଥ; ପର୍ବ[illegible]; ଧାନ୍ୟବିଶେଷ ।

ରାଜସ୍ୱ, ବି. ନ. (ରାଜନ୍-ସ୍ୱ) ରାଜପ୍ରାପ୍ୟ ଧନ, ରାଜକର ।

ରାଜହଂସ, ବି. ପୁଂ. ( ରାଜନ୍-ହଂସ ) ରକ୍ତବର୍ଣ୍ଣ ଚଞ୍ଚୁ ଓ ଚରଣବିଶିଷ୍ଟ ଶୁକ୍ଳବର୍ଣ୍ଣ ହଂସ; ରାଜ-ଶ୍ରେଷ୍ଠ ।

ରାଜା, ବି. ପୁଂ. (ରଞ୍ଜ୍-ଅ) ପ୍ରକୃତିରଞ୍ଜକ; ଦୀପ୍ତି-ଶୀଳ, ନୃପତି; କ୍ଷତ୍ରିୟ; ପ୍ରଭୁ; ଚନ୍ଦ୍ର; ଇନ୍ଦ୍ର; ଯକ୍ଷ । (ଶବ୍ଦର ପୂର୍ବରେ ବା ପରେ ଥିଲେ) ଶ୍ରେଷ୍ଠ

ରାଜାଧିରାଜ, ବି. ପୁଂ. ( ରାଜନ୍-ଅଧିରାଜ ) ସାର୍ବଭୌମ, ସମ୍ରାଟ୍ ।

ରାଜାର୍ହ, ବି. ନ. (ରାଜନ୍-ଅର୍ହ) ଅଗୁରୁ । ବିଂ. ରାଜଯୋଗ୍ୟ ।

ରାଜାହି, ବି. ପୁଂ. ( ରାଜନ୍-ଅହି ) ଦ୍ୱିମୁଖ ସର୍ପ, ଦୁଇମୁହାଁ ସାପ, ଦୋମୁଣ୍ଡିଆ ସାପ ।

ରାଜି, ରାଜୀ, ବି. ସ୍ତ୍ରୀ. (ରାଜ୍-ଇ) ଶ୍ରେଣୀ, ଧାଡ଼ି; ରେଖା; ଶସ୍ୟବସ୍ତ୍ର କ୍ଷୁଦ୍ର ଆଧାରବିଶେଷ ।

ରାଜିତ, ବିଂ. (ରାଜ୍-ତ) ଶୋଭିତ, ପ୍ରଦୀପିତ ।

ରାଜିଲ, ବି. ପୁଂ. (ରାଜି-ଲ) ଜଳବ୍ୟାଳ, ଧଣ୍ଡ-ସାପ ।

ରାଜୀବ, ବି. ନ. (ରାଜୀ-ବ) ପଦ୍ମ । ଯଥା—

ରାଜୀବମାଳ ମାଳ ବନ୍ଧ ବେ ଲମ୍ବାଇ ଦେଇଛ ଗଳାମଧ୍ୟ

ପୁଂ. ବୃହତ୍ ମତ୍ସ୍ୟ; ହରିଣବିଶେଷ; ପକ୍ଷିବିଶେଷ, ସାରସ ।

ରାଜେନ୍ଦ୍ର, (ରାଜନ୍-ଇନ୍ଦ୍ର) ପ୍ର[illegible] ରାଜା, ଶ୍ରେଷ୍ଠ ରାଜା, ସମ୍ରାଟ୍ ।

ରାଜ୍ଞୀ, ବି[illegible] (ରାଜନ୍-ଈ) ରାଜମହିଷୀ, ରାଣୀ; ସୂର୍ଯ୍ୟ[illegible]

ରାଜ୍ୟ, ବି. ନ. (ରାଜନ୍-ଯ) ରାଜତ୍ୱ; ରାଜକାର୍ଯ୍ୟ; ଦେଶ ।

ରାଜ୍ୟତନ୍ତ୍ର, ବି. ନ. ରାଜ୍ୟଶାସନ ପ୍ରଣାଳୀ ।

ରାଜ୍ୟସଂସ୍ଥିତି, ବି. ନ. ରାଜ୍ୟର ଶୃଙ୍ଖଳା ।

ରାଜ୍ୟାଙ୍ଗ, ବି. ନ. ( ରାଜ୍ୟ-ଅଙ୍ଗ ) ରାଜ୍ୟର ଆବଶ୍ୟକ ଅଙ୍ଗ; ସ୍ୱାମୀ, ମନ୍ତ୍ରୀ, ସୁହୃତ୍, ଧନ, ଦେଶ, ଦୁର୍ଗ, ସୈନ୍ୟ ଏହି ସାତ; ପ୍ରକୃତି ସହିତରେ ଆଠ, ତପସ୍ୱିଙ୍କୁ ମିଶାଇ ନଅ ।

ରାଟ, ବି. ପୁଂ. (ରାଜନ୍ ଶବ୍ଦଜ) ରାଜା । ଯଥା—

ଜାଣି ନାହିଁ କି ସେ ବଂଶରାଟ୍ ।

ରାଢ଼, ବି. ପୁଂ. ( ରଢ଼୍-ଅ ) ଦେଶବିଶେଷ, ବଙ୍ଗଳାର ମଧ୍ୟ ଗଙ୍ଗାର ପଶ୍ଚିମ ଦିଗସ୍ଥ ଦେଶ; ସୌନ୍ଦର୍ଯ୍ୟ; (ଦେଶଜ) କୃପଣ ।

ରାଢ଼ି, ବି. (ଦେଶଜ) ଜାତିବିଶେଷ, କୈବର୍ତ୍ତ ।

ରାଣ, ବ. (ଦେଶଜ) ଶପଥ, ନାସ୍ତମ; (ରାଜନ୍ ଶବ୍ଦଜ) ରାଜା, ଯଥା—ଜଳୁରାଣ, ନରରାଣ, ରଘୁରାଣ । (ଶପଥ ଅର୍ଥରେ) ଯଥା—

ଧନ ମୋହ ରାଣ ରୋତେ,
ମୁଁ ଯାହା ବୋଇବ ତାହା କରବୁ ବ୍ରତେ ।

ରାଣୀ, ଡ. ସ୍ତ୍ରୀ. (ରାଜ୍ଞୀ ଶବ୍ଦଜ) ମହିଷୀ, ରାଜ୍ଞୀ ।

ରାଣ୍ଡ, ବ. (ରଣ୍ଡା ଶବ୍ଦଜ) ବିଧବା ।

ରାତ, ବ. ( ରାତି ଶବ୍ଦଜ ) ବିଭାବରୀ, ରଜନୀ ।

ରାତି, ରାତ୍ରୀ, ବ. ସ୍ତ୍ରୀ. ( ରା=ବଣ୍ଟାମ-ତିପ୍ ) ରଜନୀ, ନିଶା ।

ରାତ୍ରିକ, ବ. ନ. (ରାତ୍ରି-କ) ପଞ୍ଚରାତ୍ର । ପୁଂ. ଏକ ବର୍ଷକାଳ ବେଶ୍ୟାଗୃହବାସୀ ।

ରାତ୍ରିକର, ବ. ପୁଂ. (ରାତ୍ରି-କର) ନିଶାକର, ଚନ୍ଦ୍ର ।

ରାତ୍ରିଚର, ରାତ୍ରିଞ୍ଚର, ବ. ପୁଂ. ( ରାତ୍ରି-ଚର ) ନିଶାଚର, ରାକ୍ଷସ; ଚୌର ।

ରାତ୍ରିଜଳ, ବ. ନ. (ରାତ୍ରି-ଜଳ) କୁହୁଡ଼; ଶିଶିର ।

ରାତ୍ରିମଣି, ବ. ପୁଂ. (ରାତ୍ରି-ମଣି ) ଚନ୍ଦ୍ର, ନିଶାମଣି ।

ରାତ୍ରିବାସଃ, ବ.ନ. (ରାତ୍ରି-ବାସ) ଅନ୍ଧକାର; ରାତ୍ରରେ ପରିଧେୟ ବସ୍ତ୍ର ।

ରାତ୍ରିବେଦ, ରାତ୍ରିବେଦୀ, ବ. ପୁଂ. (ରାତ୍ରି-ବେଦ, ବେଦନ୍) କୁକ୍କୁଟ, କୁକୁଡ଼ା ।

ରାତ୍ରିହାସ, ବ. ପୁଂ. (ରାତ୍ରି-ହାସ) ଶ୍ୱେତୋତ୍ପଳ ।

ରାତ୍ରିହିଣ୍ଡକ, ବ. ପୁଂ. ( ରାତ୍ରି-ହିଣ୍ଡ୍-ଅକ ) ଅନ୍ତଃପୁରରକ୍ଷକ ।

ରାତ୍ର୍ୟନ୍ଧ, ବ. (ରାତ୍ରି-ଅନ୍ଧ) ରାତିକଣା; କାକାଦ ।

ରାଦ୍ଧ, ବଂ. (ରାଧ୍-ତ) ସିଦ୍ଧ, ସମ୍ପନ୍ନ; ପକ୍ୱ; ଫଳିତ ।

ରାଧ, ବ. ପୁଂ. (ରାଧା-ଅ) ବୈଶାଖ ମାସ ।

ରାଧା, ବ. ସ୍ତ୍ରୀ. (ରାଧ୍-ଅ) ନକ୍ଷତ୍ରବିଶେଷ; କୃଷ୍ଣ-ପ୍ରେୟସୀ ଗୋପୀବିଶେଷ; କର୍ଣ୍ଣମାତା; ବିଦ୍ୟୁତ୍; ବାଣ ମୋକ୍ଷଣକାଳୀନ ଭଙ୍ଗୀବିଶେଷ; ଦୁଇ ପଦ ପରସ୍ପର ଏକ ବିତସ୍ତି ଅନ୍ତରରେ ଥିବା ।

ରାଧାକାନ୍ତ, ରାଧାନାଥ, ରାଧାବଲ୍ଲଭ, ବ. ପୁଂ. (ରାଧା-କାନ୍ତ, ନାଥ, ବଲ୍ଲଭ) ଶ୍ରୀକୃଷ୍ଣ ।

ରାଧାତନୟ, ରାଧାପୁତ୍ର, ରାଧାସୁତ, ବ. ପୁଂ. (ରାଧା-ତନୟ, ପୁତ୍ର, ସୁତ) କର୍ଣ୍ଣ, ଅଙ୍ଗରାଜ ।

ରାଧିକା, ବ. ସ୍ତ୍ରୀ. ବୃଷଭାନୁନନ୍ଦିନୀ ଗୋପୀବିଶେଷ ।

ରାଧେୟ, ବ. ପୁଂ. (ରାଧା-ଏୟ) ରାଧାର ପାଳିତ ପୁତ୍ର, କର୍ଣ୍ଣ ।

ରାମ, ବ. ପୁଂ. (ରା-ମ) ବିଷ୍ଣୁଙ୍କ ତିନି ଅବତାର ପରଶୁରାମ, ରାମଚନ୍ଦ୍ର, ବଳରାମ; ବରୁଣ; ଘୋଟକ । ବଂ. କୃଷ୍ଣ ହରିଣବିଶେଷ ରମଣୀୟ, ମନୋହର; ଶୁଭ୍ର ।

ରାମକର୍ପୂର, ବ. ପୁଂ. (ରାମ-କର୍ପୂର) ସୁଗନ୍ଧ-ଯୁକ୍ତ ତୃଣବିଶେଷ ।

ରାମଗିରି, ବ. ପୁଂ. (ରାମ-ଗିରି) ବୁନ୍ଦେଲଖଣ୍ଡର ଚିତ୍ରକୂଟ ପର୍ବତ ।

ରାମଚନ୍ଦ୍ର, ରାମଭଦ୍ର, ବ. ପୁଂ. (ରାମ-ଚନ୍ଦ୍ର,ଭଦ୍ର) ଦଶରଥଙ୍କ ପୁତ୍ର, ଶ୍ରୀରାମ ।

ରାମଜନନୀ, ବ. ସ୍ତ୍ରୀ. (ରାମ-ଜନନୀ) କୌଶଲ୍ୟା; ରେଣୁକା ।

ରାମଣୀୟକ, ବ. ନ. ( ରମଣୀୟ-କ ) ଶୋଭା, ରମଣୀୟତ୍ୱ ।

ରାମନବମୀ, ବ. ସ୍ତ୍ରୀ. ଚୈତ୍ର ମାସର ଶୁକ୍ଳନବମୀ, ଶ୍ରୀରାମଙ୍କର ଜନ୍ମଦିନ ।

ରାମସଖ, ବ. ପୁଂ. (ରାମ-ସଖା) ରାମ ବନ୍ଧୁ, ସୁଗ୍ରୀବ ।

ରାମା, ବ. ସ୍ତ୍ରୀ. (ରା-ମ-ଆ) ସୁନ୍ଦରୀ ନାରୀ; ପ୍ରିୟା; ନଦୀ; ହିଙ୍ଗୁଳ ।

ରାମାୟଣ, ବ. ନ. (ରାମ-ଅୟନ) ବାଲ୍ମୀକିପ୍ରଣୀତ ରାମଚନ୍ଦ୍ରଙ୍କ ଉପାଖ୍ୟାନସହିତ ମହାକାବ୍ୟ ।

ରାୟଣ, ବ. ନ. (ରୈ-ଅନ) ପୀଡ଼ା, କ୍ଳେଶ; ଶବ୍ଦକରଣ ।

ରାଳ, ବ. ପୁଂ. ସର୍ଜ୍ଜରସ, ଧୁନା ।

ରାବ, ବ. ପୁଂ. (ରୁ-ଅ) ଶବ୍ଦ, ଧ୍ୱନି, ରବ ।

ରାବଣ, ବି. ପୁଂ. ( ରାବି-ଅନ ) ଲଙ୍କାଧିପତି, ଦଶାନନ ।

ରାବଣଗଙ୍ଗା, ବି. ସ୍ତ୍ରୀ. ସିଂହଳଦ୍ୱୀପସ୍ଥ ନଦୀବିଶେଷ ।

ରାବଣାରି, ବି. ପୁଂ. (ରାବଣ-ଅରି) ରାମଚନ୍ଦ୍ର ।

ରାବଣି, ବି. ପୁଂ. (ରାବଣ-ଇ) ରାବଣପୁତ୍ର, ଇନ୍ଦ୍ରଜିତ୍, ମେଘନାଦ ।

ରାଶି, ବି. ପୁଂ. (ଅଶ୍-ଇ) ପୁଞ୍ଜ, ସ୍ତୂପ, ଗଦା; ମେଷାଦି ଦ୍ୱାଦଶ; (ଦେଶଜ) ଷଣ୍ଢ ।

ରାଶିଚକ୍ର, ବି. ନ. (ରାଶି-ଚକ୍ର) ମେଷାଦି ଦ୍ୱାଦଶ ରାଶିଯୁକ୍ତ ବୃତ୍ତ, ମେଷାଦି ଦ୍ୱାଦଶ ରାଶିସହିତ କଳ୍ପିତ ଚକ୍ର; ଅଙ୍କଶାସ୍ତ୍ରର ସଂଖ୍ୟା; ଭାଜ୍ୟ ବା ଭାଜକ ।

ରାଶୀକୃତ, ବିଂ. ( ରାଶି-କୃତ ) ପୁଞ୍ଜୀକୃତ, ସ୍ତୂପାକାର କରିବା ।

ରାଷ୍ଟ୍ର, ବି.ପୁଂ.ନ. (ରାଜ୍-ତ୍ର) ରାଜ୍ୟ, ଜନପଦ, ଦେଶ; ଉପଦ୍ରବ, ମଡ଼କ ପ୍ରଭୃତି; ପ୍ରଚାର, ପ୍ରକାଶ ।

ରାଷ୍ଟ୍ରବିପ୍ଳବ, (Revolution) ରାଜ୍ୟଶାସନର ପ୍ରଚଳିତ ପ୍ରଣାଳୀର ପରିବର୍ତ୍ତନ ।

ରାସ, ବି. ପୁଂ. (ରସ୍-ଅ) କାର୍ତ୍ତିକପୂର୍ଣ୍ଣିମାରେ କୃଷ୍ଣଙ୍କର ଲୀଳାବିଶେଷ; କୋଳାହଳ, ଗୋଳମାଳ; ଶବ୍ଦ ।

ରାସକ, ବି. ନ. ନାଟ୍ୟଗ୍ରନ୍ଥବିଶେଷ ।

ରାସନ, ବି. ନ. (ରସନା-ଅ) ରସନେନ୍ଦ୍ରିୟଜନ୍ୟ ଜ୍ଞାନ ନିର୍ଣ୍ଣୟ, ରସନାସମ୍ବନ୍ଧୀୟ ।

ରାସଭ, ବି. ପୁ. (ରାସ୍-ଅଭ) ଗର୍ଦ୍ଦଭ, ଗଧ ।

ରାସମଣ୍ଡପ, ରାସମଣ୍ଡଳ, ବି. ନ. କୃଷ୍ଣଙ୍କର ରାସ-କ୍ରୀଡ଼ା ସ୍ଥାନ ।

ରାସାୟନିକ, ବିଂ. (ରସାୟନ-ଇକ) ରସାୟନ ବିଦ୍ୟାସମ୍ବନ୍ଧୀୟ ।

ରାସାୟନିକ ଆକର୍ଷଣ, ଯେଉଁ ଗୁଣଦ୍ୱାରା ପରସ୍ପର ବିଭିନ୍ନ ପ୍ରକାର ପରମାଣୁ ସବୁ ମିଳିତ ହୋଇ ଗୋଟିଏ ସ୍ୱତନ୍ତ୍ର ଗୁଣବିଶିଷ୍ଟ ପଦାର୍ଥରେ ପରିଣତ ହୁଏ ।

ରାସେରସ, ବି. ପୁଂ. (ରାସ-ରସ) ଗୋଷ୍ଠୀ, ସଙ୍ଘ; ଉତ୍ସବ; ଶୃଙ୍ଗାର; ପରିହାସ; ମଣ୍ଡଳୀ; କ୍ରୀଡ଼ା; ରସାୟନ ବିଦ୍ୟା; ପ୍ରସବ ହିନଠାରୁ ଛଅଦିନ

ରାସେଶ୍ୱରୀ, ବି. ସ୍ତ୍ରୀ. ( ରାସ-ଈଶ୍ୱରୀ ) ରାଧା, ରାଧିକା ।

ରାସ୍ତା, ବି. (ଯାବନିକ) ପଥ, ମାର୍ଗ, ବର୍ତ୍ମ ।

ରାସ୍ନା, ବି. ପୁଂ. ( ରସ୍-ନ-ଆ ) ଔଷଧବିଶେଷ, ଲତାବିଶେଷ; ଗନ୍ଧଦ୍ରବ୍ୟବିଶେଷ; ରାସନା ।

ରାହା, (ଯାବନିକ) ରାସ୍ତା, ପଥ । ଯଥା—

ପଲାଉରେ ଅନୁସର ନଜ ନଜ ରାହା । କ. ବ.

ରାହୁ, ବି. ପୁଂ. ( ରହ୍-ଉ ) ସିଂହିକାର ପୁତ୍ର, ଅଷ୍ଟମ ଗ୍ରହ; ତ୍ୟାଗ ।

ରାହୁଗ୍ରାହ, ବି. ପୁଂ. (ରାହୁ-ଗ୍ରାହ) ଚନ୍ଦ୍ର, ସୂର୍ଯ୍ୟର ଗ୍ରହଣ ।

ରାହୁଭେଦୀ, ବି. ପୁଂ. (ରାହୁ-ଭେଦିନ୍) ବି

ରାହୁସ୍ପର୍ଶ, ବି. ପୁଂ. ( ରାହୁ-ସ୍ପର୍ଶ ) ଉପରାଗ, ଚନ୍ଦ୍ର, ସୂର୍ଯ୍ୟ ଗ୍ରହଣ ।

ରିକ୍ତ, ବିଂ. (ରିଚ୍-ତ) [illegible], ଖାଲି; ନିଷ୍ଫଳ; ଦରି[illegible] ବିନ; ଅବକାଶ; ଶୂନ୍ୟ ।

ରିକ୍ତହସ୍ତ, (ରିକ୍ତ-ହସ୍ତ) ଶୂନ୍ୟହସ୍ତ; ନିର୍ଧନ; ଅକିଞ୍ଚନ ।

ରିକ୍ତା, ବି. ସ୍ତ୍ରୀ. ( ରିଚ୍-ତା ) ଚତୁର୍ଥୀ ନବମୀ ଚତୁର୍ଦ୍ଦଶୀ ତିଥି ।

ରିକ୍ଥ, ବିଂ. (ରିଚ୍-ଥ) ଧନ, ସ୍ଥାବର ଅସ୍ଥାବର ସମ୍ପତ୍ତି ।

ରିକ୍ଥହାରୀ, ବିଂ. ( ରିକ୍ଥ-ହାରିନ୍ ) ଉତ୍ତରାଧିକାରୀ; ମାତୁଳ; ଭଗ୍ନିର ପତି ।

ରିଙ୍ଖଣ, ରିଙ୍ଗଣ, ବି. ନ. (ରିଙ୍ଖ, ରିଙ୍ଗ-ଅନ) ସ୍ଖଳନ, ପତନ, ଗମନ; ଭ୍ରଂଶ; ହାମୁଗୁଡ଼ା ।

ରିଝାଇବା, କ୍ରି. ( ରଞ୍ଜନ ଶବ୍ଦଜ ) ମଣାଇବା, ବୁଝାଇବା । ଯଥା—

ରିଝାଇ ବୁଝାଇ ବୁଝାଇ ଦେଲ ସେ ଗୁପ୍ତ କଥା

ରିଧମ, ବି. ପୁଂ. କନ୍ଦର୍ପ; ବସନ୍ତ ।

ରିପୁ, ବି. ପୁଂ. (ରପ୍-ଉ) ଶତ୍ରୁ, ବିପକ୍ଷ; କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ—ଏହି ଛଅଟି ଶରୀରସ୍ଥ ରିପୁ ।

ରୀ, ବି. ସ୍ତ୍ରୀ. (ରି-ଈ) ପିତ୍ତଳ ।

ରିଣ୍ୟ, ରିଷ୍ୟ, ବି.ପୁଂ.(ରି-ରିଷ୍-ଯ) ମୃଗ, ହରିଣ ।

ରିଷ୍ଟ, ବି. ନ. (ରିଷ୍-ତ) କଲ୍ୟାଣ, ଶୁଭ; ଅଶୁଭ; ପାପ; ନାଶ; ଅଭାବ; ପାରଦ । ପୁଂ. ଖଡ୍ଗ; ବୃକ୍ଷବିଶେଷ । ବିଂ. ପାପଜନକ; ଅଶୁଭଦାୟକ; ଅଶୁଭଯୁକ୍ତ ।

ରିଷ୍ଟି, ବି. ସ୍ତ୍ରୀ. (ରିଷ୍-ତି) ଅଶୁଭ, ଅସୌଭାଗ୍ୟ । ପୁଂ. ଖଡ୍ଗ; ଅମଙ୍ଗଳ ।

ରୀଢ଼ା, ବି. ସ୍ତ୍ରୀ. (ହ୍ରୀ-ନିପାତନ) ଲଜ୍ଜା; ଘୃଣା ।

ରୀଣ, ବିଂ. (ରୀ-ତ) ସ୍ରବିତ; ବିଗତ ।

ରୀତି, ବି. ସ୍ତ୍ରୀ. (ରୀ-ତି) କ୍ରମ; ଧାରା; ପଦ୍ଧତି; ପିତ୍ତଳ; ସ୍ୱଭାବ; କ୍ଷରଣ; ଲୌହମଳ; ଦେଶ; ବିଦେଶୀୟ ଅଗ୍ରର ବ୍ୟବହାର; ସୀମା; ଗମନ, ଗତି; ସ୍ୱାଭାବିକ ଧର୍ମ, ଗୁଣ ବା ପ୍ରବୃତ୍ତି; କାବ୍ୟର ରସାଦିର ଉପକାରୀ ପଦସଂଘଟନାବିଶେଷ, ତାହା ଚାରି ପ୍ରକାର—ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ, ଲାଟିକା ।

ରୁକ, ବିଂ. ବହୁପ୍ରଦ, ଅତିଶୟ ଦାତା ।

ରୁକ୍, ବି. ସ୍ତ୍ରୀ. (ରୁଚ୍-୦) କାନ୍ତି, ଦୀପ୍ତି, ଶୋଭା; ସ୍ପୃହା, ଇଚ୍ଛା; ( ରୁଜ୍-୦ ) ରୋଗ, ପୀଡ଼ା; ବଦ୍ଧ୍ୟତ୍; ରୁଗ୍ବେଦ ।

ରୁକ୍ମ, ବି. ନ. ( ରୁଚ୍-ମକ୍ ) ସ୍ୱର୍ଣ୍ଣ, ଧୁସ୍ତୂର, ଲୌହ ।

ରୁକ୍ମାଙ୍ଗଦ, ବି. ପୁଂ. କଳିଙ୍ଗଦେଶର ନୃପତିବିଶେଷ ।

ରୁକ୍ମିଦର୍ପ, ରୁକ୍ମିଦାରୀ, ରୁକ୍ମିଭିଦ୍, } ବି. ପୁଂ. (ରୁକ୍ମି-ଦର୍ପ, ଦାରିନ୍, ଭିଦ୍ ) ବଳରାମ ।

ରୁକ୍ମୀ, ବି. ପୁଂ. ( ରୁକ୍ମ-ଇନ୍ ) ନୃପତିବିଶେଷ, ଭୀଷ୍ମକ ରାଜାଙ୍କର ଜ୍ୟେଷ୍ଠପୁତ୍ର । ବିଂ. ସ୍ୱର୍ଣ୍ଣସ୍ୱାମୀ, ସ୍ୱର୍ଣ୍ଣଯୁକ୍ତ ।

ରୁକ୍ମିଣୀ, ବି. ସ୍ତ୍ରୀ. (ରୁକ୍ମୀ-ଇନ୍-ଈ) କୃଷ୍ଣପତ୍ନୀ, ଭୀଷ୍ମକଦୁହିତା । ବିଂ. ସ୍ୱର୍ଣ୍ଣସ୍ୱାମୀ ।

ରୁକ୍ଷ, ରୁକ୍ଷ, ବିଂ. ( ରୁହ୍-ସ ) କର୍କଶ; କଠିନ; ଅଚିକ୍କଣ, ଅବଢ଼ାଖାବଡ଼ା; ନିଷ୍ଠୁର; ଉଗ୍ର, ଘୋର ।

ରୁଗ୍ଣ, ବିଂ. (ରୁଜ୍-ତ) ପୀଡ଼ିତ; ଭଗ୍ନ; ବକ୍ର; ଆହତ ।

ରୁଚକ, ବି. ନ. ( ରୁଚ୍-ଅକ ) ଅଙ୍ଗାଭରଣ; ମାଙ୍ଗଲ୍ୟଦ୍ରବ୍ୟ; ଲବଣ; ଗନ୍ଧଦ୍ରବ୍ୟ; ଗୋରଚନା; ବଳକାରକ ଔଷଧ; ବିଡ଼ଙ୍ଗ । ପୁଂ. ଦନ୍ତ; ବୀଜପୂର; କପୋତ; କଣ୍ଠଭୂଷଣ । ବିଂ. ଘୋର, ଉତ୍କଟ ।

ରୁଚ୍, ବି.ସ୍ତ୍ରୀ. (ରୁଚ୍-ଅ) କାନ୍ତି, ଶୋଭା, ଇଚ୍ଛା ।

ରୁଚି, ବି. ସ୍ତ୍ରୀ. ( ରୁଚ୍-ଇ ) ପ୍ରୀତି, ଅନୁରାଗ; ସ୍ପୃହା, ଅଭିଳାଷ; ଶୋଭା, ଦୀପ୍ତି; କିରଣ, ବୁଭୁକ୍ଷା; ଆସ୍ୱାଦ; ଗୋରୋଚନା ।

ରୁଚିତ, ବିଂ. (ରୁଚ୍-ତ) ମିଷ୍ଟ, ସୁସ୍ୱାଦୁ; ଉଜ୍ଜ୍ୱଳ; ପରିପାକ ।

ରୁଚିର, ବିଂ. (ରୁଚ୍-ଇର) ମନୋଜ୍ଞ, ମଧୁର; ମିଷ୍ଟ; ଉଜ୍ଜ୍ୱଳ; ସୁନ୍ଦର । ଯଥା—

ରୁଚିର ଚରଣ ତଳକୁ ଚଳକୁ, ଜବା କଇବା ଅନୁଚିତ

ରୁଚିରା, ବି. ସ୍ତ୍ରୀ. ଗୋରୋଚନା ।

ରୁଚ୍ୟ, ବିଂ. (ରୁଚ୍-ଯ) ରୁଚିର, ସୁନ୍ଦର । ବି.ପୁଂ. କାନ୍ତ, ପତି ।

ରୁଜ, ରୁଜା, ବି. ସ୍ତ୍ରୀ. (ରୁଜ୍-ଅ) ବ୍ୟାଧି; ପୀଡ଼ା, ଭଙ୍ଗ; କ୍ଷତି, ହାନି ।

ରୁଟୀ, ବି. (ହିନ୍ଦୀ ଶବ୍ଦଜ) ପିଷ୍ଟକବିଶେଷ ।

ରୁଣ୍ଡ, ବି. ପୁଂ. (ରୁନ୍ଠ୍-ଅ) କବନ୍ଧ, ଶିରୋହୀନ କଳେବର; (ଦେଶଜ)ଏକତ୍ରିତ । ଯଥା—

ଚଣ୍ଡୀସୁଧ ଚଣ୍ଡପୁରେ ହୋଇ ରୁଣ୍ଡ । ନ. ଢେ. ।

ରୁଣ୍ଡିକା, ବି. ସ୍ତ୍ରୀ. (ରୁଣ୍ଡ-କ-ଆ) ରଣସ୍ଥଳ; ଦ୍ୱାରର ସମ୍ମୁଖ; ବିଭୂତି; ଚୌକାଠ; ଭୂତିଣୀ; ଦୈବୀଶକ୍ତି ।

ରୁତ, ରୁତ୍, ବ. ପୁଂ.ନ. (ରୁ-ତ) ପଶୁ ପକ୍ଷିର ଶବ୍ଦ; ରୋଦନ; ରବ ।

ରୁଦିତ, ବ. ନ. (ରୁଦ୍-ତ) କ୍ରନ୍ଦନ, ରୋଦନ । ବି°. ରୋଦନକାରୀ ।

ରୁଦ୍ଧ, ବି°.(ରୁଧ୍-ତ) ଆବୃତ, ବେଷ୍ଟିତ; ପ୍ରତିବଦ୍ଧ; ବାଧିତ; ବ୍ୟାପ୍ତ; ନିବାରିତ ।

ରୁଦ୍ର, ବ.ପୁଂ. (ରୁଦ୍-ର) ଶିବ; ଅଜ; ଏକପାଦ, ଅହିବ୍ରଧ୍ନ, ପିନାକୀ, ଅପରାଜିତ, ତ୍ର୍ୟମ୍ବକ, ମହେଶ୍ୱର, ବୃଷାକପି, ଶମ୍ଭୁ, ହର, ଈଶ୍ୱର ଏହି ଏକାଦଶବିଧ ଗଣଦେବତାବିଶେଷ ।

ରୁଦ୍ରଜ, ବ. ପୁଂ. (ରୁଦ୍ର-ଜ) ପାରଦ, ପାରା ।

ରୁଦ୍ରପ୍ରିୟା, ବ. ସ୍ତ୍ରୀ. (ରୁଦ୍ର-ପ୍ରିୟା) ପାର୍ବତୀ; ହରୀତକୀ ।

ରୁଦ୍ରସାବର୍ଣ୍ଣି, ବ. ପୁଂ. ଦ୍ୱାଦଶ ମନୁ ।

ରୁଦ୍ରାକ୍ରୀଡ଼, ବ. ପୁଂ. (ରୁଦ୍ର-ଆକ୍ରୀଡ଼) ପ୍ରେତଭୂମି, ଶ୍ମଶାନ ।

ରୁଦ୍ରାକ୍ଷ, ବ. ପୁଂ. (ରୁଦ୍ର-ଅକ୍ଷ) ବୃକ୍ଷବିଶେଷ । ନ. ରୁଦ୍ରାକ୍ଷ ବୃକ୍ଷର ଫଳ, ଏହି ଫଳରେ ଜପମାଳା ପ୍ରସ୍ତୁତ ହୁଏ ।

ରୁଦ୍ରାଣୀ, ବ. ସ୍ତ୍ରୀ. (ରୁଦ୍ର-ଈ) ରୁଦ୍ରପତ୍ନୀ, ଦୁର୍ଗା ।

ରୁଦ୍ରାରି, ବ.ପୁଂ. (ରୁଦ୍ର-ଅରି) ମଦନ, କାମଦେବ ।

ରୁଦ୍ରାବାସ, ବ. ପୁଂ. (ରୁଦ୍ର-ଆବାସ) ବାରାଣସୀ, କାଶୀ; କୈଳାସ; ଶ୍ମଶାନ ।

ରୁଧିର, ବ. ... (ରୁଧ୍-ଇର) ଶୋଣିତ, ରକ୍ତ; କୁଙ୍କୁମ । ... ମଙ୍ଗଳଗ୍ରହ; ରକ୍ତବର୍ଣ୍ଣ । ବି°. ରକ୍ତବର୍ଣ୍ଣବିଶିଷ୍ଟ ।

ରୁମା ବ. ସ୍ତ୍ରୀ. (ରୁ-ମା) ସୁଗ୍ରୀବର ଭାର୍ଯ୍ୟା; ରାଜପୁତାନାର ଅନ୍ତର୍ଗତ ସାମ୍ବର ପ୍ରଦେଶର ଲବଣର ଖଣି ।

ରୁମାଲ, ବ. (ଯାବନିକ) ମୁଖମାର୍ଜ୍ଜନୀ ।

ରୁରୁ, ବ. ପୁଂ. (ରୁ-ରୁ) ମହାକୃଷ୍ଣସାର, ମୃଗବିଶେଷ । ଯଥା—

ରୁରୁକଦମ୍ବନାର ଧରଣର୍ବ ଗାମ୍ଭୀର୍ଯ୍ୟ
ବଂଶଜ ବୋଲି ପୂଣ କାଣିଲା । ବ. ଚ.

ରୁଷ୍, ରୁଷା, ବ. ସ୍ତ୍ରୀ. (ରୁଷ୍-°,ଆ) ରୋଷ, କ୍ରୋଧ ।

ରୁଷିତ, ରୁଷ୍ଟ, ବି°. (ରୁଷ୍-ତ) କୁପିତ, କ୍ରୁଦ୍ଧ ।

ରୂଢ଼, ବି°. (ରୁହ୍-ଅ) ଜାତ; (ଶବ୍ଦର ପରବର୍ତ୍ତୀ ହେଲେ) ଉଦ୍ଭୂତ । ଯଥା—ମହୀରୁହ, କରରୁହ ଇତ୍ୟାଦି ।

ରୂହା, ବ. ପୁଂ. (ରୁହ-ବ) ବୃକ୍ଷ, ଗଛ ।

ରୂକ୍ଷ, ବି°. (ରୂକ୍ଷ୍-ଅ) କର୍କଶ; କଠିନ; ନିର୍ଦ୍ଦୟ; କଠୋର ବ୍ରତଧାରୀ; ବନ୍ଧୁର; ଅନନୁକୂଳ; ଅଚିକ୍କଣ । ବ. ପୁଂ. ବୃକ୍ଷ । ସ୍ତ୍ରୀ. ଦନ୍ତୀବୃକ୍ଷ ।

ରୂଢ଼, ବି°. (ରୁହ୍-ତ) ଉତ୍ପନ୍ନ, ଜାତ; ପ୍ରସିଦ୍ଧ; ବ୍ୟୁତ୍ପତ୍ତିଲବ୍ଧ ଅର୍ଥରେ ଅର୍ଥାତ୍ ପ୍ରକୃତି ପ୍ରତ୍ୟୟର ଅର୍ଥ ଅପେକ୍ଷା ନ କରି ଅନ୍ୟାର୍ଥ ପ୍ରକାଶକ ଶବ୍ଦ । ଯଥା—ଗୋ ବୃଷ...

ରୂଢ଼ପଦାର୍ଥ, (Elements) ଯେଉଁ ପଦାର୍ଥ ... ଅନ୍ୟ ପଦାର୍ଥର ପରମାଣୁ ଯୋଗରେ ଉତ୍ପନ୍ନ ନ ହୁଏ । ଯଥା—ସ୍ୱର୍ଣ୍ଣ ... ଗନ୍ଧକ ପ୍ରଭୃତି ।

ରୂଢ଼ି, ବ. ସ୍ତ୍ରୀ. (ରୁହ-ତି) ଉତ୍ପତ୍ତି; ପ୍ରସିଦ୍ଧି; ପ୍ରକୃତି ପ୍ରତ୍ୟୟ... ଅପେକ୍ଷା ନ କରି ଶବ୍ଦର ଅର୍ଥବୋଧକ ଶକ୍ତି ।

ରୂପ, ବ. ନ. (ରୂପ-ଅ) ସ୍ୱରୂପ; ସ୍ୱଭାବ; ଶରୀର; ଆକୃତି; ପ୍ରକାର, ସୌନ୍ଦର୍ଯ୍ୟ; ବର୍ଣ୍ଣ; ରଙ୍ଗ; ବିଭକ୍ତିଯୁକ୍ତ ଶବ୍ଦ ବା ଧାତୁ; ଗ୍ରନ୍ଥାଦିର ଆବୃତ୍ତି; ନାମ; ପଶୁ; ଶ୍ଳୋକ; ଦୃଶ୍ୟକାବ୍ୟ । ବି°. (ଶବ୍ଦର ପରବର୍ତ୍ତୀ ହେଲେ) ସଦୃଶ, ତୁଲ୍ୟ । ନ. ଏକ ସଂଖ୍ୟାନ୍ୱିତ ।

ରୂପକ, ବ. ନ. (ରୂପ୍-ଅ, କ) ଆକୃତି, ଗଠନ; ନାଟ୍ୟ ଗ୍ରନ୍ଥର ଅଳଙ୍କାରବିଶେଷ; କାବ୍ୟର ଅଳଙ୍କାରବିଶେଷ, ଉପମାନର ସହିତ ଉପମେୟର ଅଭେଦ ଜ୍ଞାନ; ଶୁକ୍ଳାଦି ବର୍ଣ୍ଣ; ସଂଖ୍ୟାବିଶେଷ; ରୌପ୍ୟ ।

ରୂପଣ, ବ. ନ. (ରୂପ-ଅନ) ବର୍ଣ୍ଣନ; ଅଭିନୟ; ନିରୂପଣ ।

ରୂପବାନ୍, ବିଂ. ( ରୂପ-ବତ୍ ) ସୌନ୍ଦର୍ଯ୍ୟଶାଳୀ, ସୁନ୍ଦର; ଆକାରବିଶିଷ୍ଟ, ସାକାର; ଶୁକ୍ଳାଦି ବର୍ଣ୍ଣଯୁକ୍ତ ।

ରୂପସ, ବିଂ. ରୂପବାନ୍ ।

ରୂପାଜୀବା, ବି. ସ୍ତ୍ରୀ. (ରୂପ-ଆଜୀବ) ବେଶ୍ୟା ।

ରୂପାନ୍ତର, ବି.ନ. (ରୂପ-ଅନ୍ତର) ଭିନ୍ନରୂପ, ବିଭିନ୍ନ ଆକାର; ଅବସ୍ଥାନ୍ତର ।

ରୂପାସ୍ତ୍ର, ବି. ପୁଂ. ( ରୂପ-ଅସ୍ତ୍ର ) ମଦନ, କନ୍ଦର୍ପ । ଯଥା—

ରୂପାସ୍ତ୍ରର ହେଲ ରୂପସୀ ଶସ୍ତ୍ର ଅମୋଘ ବାଣ । ଚ. ଲ.

ରୂପୀ ବିଂ. ( ରୂପ-ଇନ୍ ) ରୂପବିଶିଷ୍ଟ, ସାକାର; ସୌନ୍ଦର୍ଯ୍ୟଶାଳୀ ।

ରୂଷିତ, ବିଂ. ( ରୂଷ-ତ ) ଭୂଷିତ; ଚୂର୍ଣ୍ଣିତ; ଅଚକ୍କଣୀକୃତ; ମ୍ରକ୍ଷିତ ।

[illegible]ଂ. ନୀଚ ସମ୍ବୋଧନ ।

[illegible] ବି. ପୁଂ. (ରେକ-ଅ) ସଂଶୟ, ସନ୍ଦେହ । ପୁଂ. ଶଙ୍କ[illegible] ନୀଚ, ଇତର; ଭେକ, ବେଙ୍ଗ; (ରିଚ-ଅ) ବି[illegible]ଚନ, ଭେଦ; (ଦେଶଜ) ବୃଦ୍ଧାଙ୍ଗୁଳି ଏବଂ [illegible]ମାଙ୍ଗୁଳିକୁ ଅର୍ଦ୍ଧ ବୃତ୍ତାକାର କଲେ ତହିଁ ମଧ୍ୟବ[illegible] ପ୍ରମାଣ । ଯଥା—

କ୍ଷୀଣ ଯାଇ ପୀନ ହେଲ ରେକ ସଂଖ୍ୟା କଟି,
ଶସି ନତମ୍ବ ବିମ୍ବକୁ ଅଶେ କଲ ଶାଟୀ ଯେ । ଲ. ବ.

ରେଖା, ବି. ସ୍ତ୍ରୀ. (ଲିଖ୍-ଅ-ଆ) ବିସ୍ତୃତିହୀନ ଦୀର୍ଘ ଦେଶ୍ୟ ତଳ; ଲମ୍ବାକୃତି ଚିହ୍ନ; ରାଜି, ଶ୍ରେଣୀ, ଧାରା; ଅଳ୍ପମାତ୍ର; ସମ୍ପୂର୍ଣ୍ଣତା; ଛଳ, କପଟ ।

ରେଖାଗଣିତ, (Geometry) କ୍ଷେତ୍ରତତ୍ତ୍ୱ ।

ରେଚକ, ବିଂ. ( ରିଚ୍-ଅକ ) ଭେଦକାରକ, ଜୋଲାପ । ପୁଂ. ପ୍ରାଣାୟାମକାଳରେ ଅନ୍ତରରୁ ପ୍ରାଣବାୟୁର ନିଃସାରଣ; ଯବକ୍ଷାର; ଜୟପାଳର ଗଛ; ପିଚକାରୀ ।

ରେଚନ, ବି. ନ. ( ରିଚ୍-ଅନ ) ବିରେଚନ, ଭେଦ ।

ରେଚିତ, ବିଂ. (ରିଚ୍-ତ) ବିବର୍ଜିତ; ବକ୍ରୀକୃତ; ତ୍ୟକ୍ତ ।

ରେଣୁ, ବି. ପୁଂ. ( ରୀ-ନୁ ) ଧୂଳି, ପାଂଶୁ; ପରାଗ, ଗୁଣ୍ଡା ।

ରେଣୁକା, ବି. ସ୍ତ୍ରୀ. (ରେଣୁ-କ-ଆ) ପରଶୁରାମଙ୍କ ମାତା ।

ରେଣୁସାର, ବି. ପୁଂ. (ରେଣୁ-ସାର) କର୍ପୂର ।

ରେତଃ, ବି. ନ. ( ରୀ-ଅସ୍ ) ଶୁକ୍ର, ବୀର୍ଯ୍ୟ; ପାରଦ, ପାରା ।

ରେତକା, ବି. ନ. ବାଲୁକା, ବାଲି

ରେତନ, ବି. ନ. ଶୁକ୍ର, ବୀର୍ଯ୍ୟ ।

ରେତ୍ୟ, ବି. ନ. (ରୀ-ଯ) ପିତ୍ତଳ ।

ରେତ, ବି. ନ. ( ରୀ-ର, ତ ଆଗମ ) ରେତଃ, ଶୁକ୍ର; ପୀୟୂଷ, ଅମୃତ; ପଙ୍କବାସ; ପାରଦ; ସୂତକ ।

ରେପ, ବିଂ. (ରି-ପ) ନିନ୍ଦିତ; ନୀଚ; ନିର୍ଦ୍ଦୟ; କୃପଣ ।

ରେଫ, ବି. ପୁଂ. ( ର-ଇଫ ) ର, ‘ । ବିଂ. (ରିଫ୍-ଅ) କ୍ରୂର; କୃପଣ; ନୀଚ; କୁତ୍ସିତ । ପୁଂ. ରାଗ, ସ୍ନେହ; ସମାଚପଦବିତ୍ୟକ୍ତ ।

ରେବଟ, ବି. ନ. (ରେବ୍-ଅଟ) ଦକ୍ଷିଣାବର୍ତ୍ତଶଙ୍ଖ । ପୁଂ. ଶୂକର; ବାତୁଳ; ବିଷବୈଦ୍ୟ; କଦଳୀ ବୃକ୍ଷ; କଦଳୀ ଫଳ; ଧୂଳି; ବାତ୍ୟା; ଐନ୍ଦ୍ରଜା[illegible]କ୍ରୀଡକ ।

ରେବତ, ବି. ପୁଂ. ( ରେବ-ଅତ ) ରେବତୀର ପିତା, ବଳରାମଙ୍କର ଶ୍ୱଶୁର ।

ରେବତ, ବି. ସ୍ତ୍ରୀ. କାମପତ୍ନୀ, ରତ[illegible]

ରେବତୀ, ବି. ସ୍ତ୍ରୀ. (ରେବତ-[illegible]) ବଳରାମଙ୍କ ପତ୍ନୀ; ନକ୍ଷତ୍ରବିଶେଷ; ଗାଈ; ଦୁର୍ଗା; ମାତୃକାବିଶେଷ; ନଦୀବିଶେଷ; ବାଳଗ୍ରହବିଶେଷ ।

ରେବତୀଭବ, ବି. ପୁଂ. (ରେବତୀ-ଭବ) ଶନୈଶ୍ଚର, ଶନିଗ୍ରହ ।

ରେବତୀରମଣ, ରେବତୀଶ, ବି. ପୁଂ. (ରେବତୀ-ରମଣ, ଈଶ ) ବଳରାମ, ଚନ୍ଦ୍ର ।

ରେବା, ବି. ସ୍ତ୍ରୀ. (ରେବ-ଅ-ଆ ) ନର୍ମଦାନଦୀ; ରତି; କାମପତ୍ନୀ; ନୀଳଗଛ; ଦୁର୍ଗା ।

ରେଶମ, ବି. (ଯାବନକ) ଊର୍ଣ୍ଣା, ପଶମ ।

ରୈ, ବି. ପୁଂ. (ରା-ଐ) ଧନ; ସ୍ୱର୍ଣ୍ଣ; ଶବ୍ଦ ।

ରୈଖିକ, ( Lineal ) (ରେଖା-ଇକ) ବିଂ. ରେଖାସମ୍ବନ୍ଧୀୟ ।

ରୈକ୍ଥ୍ୟ, ବିଂ. ( ରିକ୍ଥ-ଯ ) ରିକ୍ଥରୁ ଉତ୍ପନ୍ନ; ପିତୃଲବ୍ଧନିର୍ମିତ ।

ରୈବତ, ବି. ପୁଂ. (ରେବା-ଅ-ତ) ବିନ୍ଧ୍ୟପର୍ବତର ପଶ୍ଚିମଦିଗସ୍ଥ ପର୍ବତବିଶେଷ; ଦୈତ୍ୟବିଶେଷ; ଶିବ, ପଞ୍ଚମ ମନୁ ।

ରୋଇବାର, କ୍ରି. ( ରୋପଣ ଶବ୍ଦଜ ) ରୋପଣ କରିବାର, ଧାନ୍ୟାଦି ଛୋଟ ଛୋଟ ଗଛ ପୋତିବାର ।

ରୋକ, ବି. (ଯାବନିକ) ଅଟକ ।

ରୋକଡ଼, ବି. (ଯାବନିକ) (Record) ଆୟ ବ୍ୟୟ କିମ୍ବା ଜମା ଖରଚ ଲେଖିବାର ବହି ।

ରୋକା, ବି. (ଯାବନିକ) ହାତଚିଠି, ରସିଦ ।

ରୋଗ, ବି. ପୁଂ. (ରୁଜ୍-ଅ) ବ୍ୟାଧି, ପୀଡ଼ା ।

ରୋଗଘ୍ନ, ରୋଗହ, ବିଂ. ( ରୋଗ-ଘ୍ନ, ହ-ଅ) ରୋଗନାଶକ । ବି. କ୍ଳ. ଔଷଧ । ପୁଂ. ବୈଦ୍ୟ ।

ରୋଗଭୂ, ବି. ସ୍ତ୍ରୀ. (ରୋଗ-ଭୂ) ଶରୀର, ଦେହ ।

ରୋଗଶାନ୍ତକ, ରୋଗହାରୀ, ବିଂ.(ରୋଗ-ଶାନ୍ତକ, ହାରୀ ) ରୋଗନାଶକ । ବି. [illegible] ଚିକିତ୍ସକ ।

ରୋଗୀ, ବିଂ. (ରୁଜ୍ ଧାତୁଜ) ପୀଡ଼ିତ ।

[illegible] ( ରୋଗ-ଇନ୍ ) ରୁଗ୍ଣ, ପୀଡ଼ିତ, ବ୍ୟାଧିତ [illegible]

ରୋଚକ, ବିଂ. (ରୁଚ୍-ଇ-ଅକ) ରୁଚିକାରକ; ଦୀପ୍ତିପ୍ରଦ । ବି. ପୁଂ. କ୍ଷୁଧା; କଦଳୀ; ପଲାଣ୍ଡୁ-ବିଶେଷ; ଚାଟୁଣି ।

ରୋଚନ, ବିଂ. (ରୋଚ-ଅନ) ରୋଚକ, ରୁଚିକାରକ; ଦୀପ୍ତିପ୍ରଦ; ବଳକାରକ । ପୁଂ. କାର୍ପାସ ବୃକ୍ଷବିଶେଷ; ପଲାଣ୍ଡୁ; ବୃକ୍ଷବିଶେଷ; ଡାଳିମ୍ବ; ବାୟୁ; ରେଚକ ଔଷଧ ।

ରୋଚନା, ବି. ସ୍ତ୍ରୀ. (ରୁଚ୍-ଅନ-ଆ) ଗୋରଚନା । ଯଥା—;

ଶୋଭିବ ରୋଚନା ସେକ କପାଳେ,
ଯିବା ଦେଖି ମୋହ ହେବେ ଋଷିଲେ । ବ. ଚ.

ବର୍ଣ୍ଣ ଦ୍ରବ୍ୟବିଶେଷ; ଗନ୍ଧଦ୍ରବ୍ୟ; ଉତ୍ତମା ସ୍ତ୍ରୀ ।

ରୋଚିଃ, ବି. କ୍ଳ. (ରୁଚ-ଇସ୍) ଦୀପ୍ତି, ଛବି, କାନ୍ତି ।

ରୋଚିଷ୍ଣୁ, ରୋଚୀ, ବିଂ. (ରୁଚ୍-ଇଷ୍ଣୁ, ଇନ୍) ଅଳଙ୍କାରାଦିଦ୍ୱାରା ଦୀପ୍ତିଶୀଳ, ଶୋଭିତ, କାନ୍ତିଯୁକ୍ତ ।

ରୋଚ୍ୟ, ବିଂ. (ରୁଚ୍-ଯ) ପ୍ରୀତିକର ବିଷୟ; ଦୀପ୍ତି-ଯୋଗ୍ୟ; ରୁଚିକର ।

ରୋଜ, ବି. (ଯାବନିକ) ତାରିଖ, ଦିବସ, ପ୍ରତ୍ୟହ ।

ରୋଜଗାର, ବି. (ଯାବନିକ) ଆୟ, ଉପାର୍ଜନ ।

ରୋଜନାମଚା, (ଯାବନିକ) ଦୈନିକ ହିସାବର ବହି ।

ରୋଜା, ବି. (ଯାବନିକ) ମୁସଲମାନଙ୍କର [illegible]ବିଶେଷ ।

ରୋଟ, ବି. (ରୁଟ୍ ଧାତୁଜ) ମୋଟା [illegible]

ରୋଟି, ରୋଟିକା, ବି. [illegible] (ରୁଟ୍-ଇ-ଅକ-ଆ) ଗୋ[illegible]ଚୂର୍ଣ୍ଣଦ୍ୱାରା [illegible]ପ୍ରସ୍ତୁତି ପିଷ୍ଟକବିଶେଷ, ରୁଟି ।

ରୋଦଃ [illegible] ( ରୁଦ୍-ଅସ୍ ) ସ୍ୱର୍ଗ; ପୃଥିବୀ; [illegible]

ରୋଦନ, ବି. କ୍ଳ. (ରୁଦ୍-ଅନ) କ୍ରନ୍ଦନ ।

ରୋଦସୀ, ବି. ସ୍ତ୍ରୀ. (ରୋଦସ୍-ଈ) ପୃଥିବୀ; ସ୍ୱର୍ଗ ।

ରୋଧ, ବି. ପୁଂ. (ରୁଧ୍-ଅ) ତୀର, କୂଳ; ବାଧା, ଅବରୋଧ ।

ରୋଧକ, ରୋଦ୍ଧା, ବିଂ. (ରୁଧ୍-ଅକ, ତୃ) ନିବାରଣ-କର୍ତ୍ତା ।

ରୋଧନ, ବି. କ୍ଳ. (ରୁଧ୍-ଅନ) ଅବରୋଧ, ବାଧା, ଅଟକ । ବିଂ. ରୋଧକର୍ତ୍ତା ।

ରୋଧ୍ର, ବି. କ୍ଳ. ( ରୁଧ୍-ର) ଅପରାଧ; ପାପ । ଲୋଧ୍ର ବୃକ୍ଷ ।

ରୋପଣ, ବି. କ୍ଳ. (ରୁହ-ଅନ) ବୀଜାଦି ବପନ, ବୁଣିବା; ଉତ୍ପାଦନ, ଜନନ; ସ୍ଥାପନ; ଅର୍ପଣ; (ରୁପ-ଅନ) ବିମୋହନ, ମୁଗ୍ଧକରଣ ।

ରୋପିତ, ବିଂ. (ରୁହ-ଇ-ତ) ଅର୍ପିତ; ପ୍ରୋଥିତ; ପ୍ରୋତ; ପୋତିବା; ଉପ୍ତ, ବପନ କରିବା; ବିମୋହିତ; ଅରୋପିତ ।

ରୋମ, ବ. ନ. (ରୁ-ମ) ଲୋମ; ଜଳ ।

ରୋମକ, ବ. ନ. ( ରୁମନ୍-କ ) ରୋମ ନଗର; ପାଂଶୁ ଲବଣ, ପଙ୍ଗାଲ୍ଲଣ; ଅସ୍ପୃଷ୍ୟାନ୍ତର୍ମଣି-ବିଶେଷ । ପୁଂ. ରୋମନଗରବାସୀ ।

ରୋମକୂପ, ବ. ପୁଂ. ଲୋମ ବିବର ।

ରୋମକେଶର, ରୋମଗୁଚ୍ଛ, ବ. ନ. (ରୋମନ୍-କେଶର, ଗୁଚ୍ଛ) ଚାମର ।

ରୋମନ୍ଥ, ରୋମନ୍ଥନ, ବ. ପୁଂ. (ରୋମ୍-ମନ୍ଥ୍-ଅ, ଅନ) ପାକୁଳ ।

ରୋମଶ, ବିଂ. (ରୋମନ୍-ଶ) ଅଧିକ ରୋମଯୁକ୍ତ [illegible]. ପୁଂ. ମେଷ, ଶୂକର ।

ରୋମହର୍ଷ, ପୁଂ. | ରୋମହର୍ଷଣ, ନ. | ରୋମାଞ୍ଚ, ପୁଂ. | ରୋମୋଦ୍ଗମ, ପୁଂ. | ରୋମୋଦ୍ଭେଦ, ପୁଂ. } ବ. (ରୋମ-ହର୍ଷ, ହର୍ଷଣ; ଅନ୍‌ଚ୍-ଅ, ଉଦ୍ଗମ, ଉଦ୍ଭେଦ) ଲୋମସ୍ଫୁରଣ, ରୋମ ଠାଙ୍କରିବାର ।

ରୋମହର୍ଷଣ, ବ. ପୁଂ. ([illegible]) ସୂତ, ମୁନିବିଶେଷ ।

ରୋମାଞ୍ଚିତ, ବିଂ. (ରୋମାଞ୍ଚ-ଇତ) ପୁଲକିତ, ରୋମାଞ୍ଚଯୁକ୍ତ ।

ରୋମାବଳି, ରୋମାଳି, | ରୋମାବଳୀ ରୋମାଳୀ, } ବ. ସ୍ତ୍ରୀ. (ରୋମ-ଆବଳି, ଅବଳୀ; ଆଳି, ଅଳୀ) ନାଭିର ଊର୍ଦ୍ଧ୍ୱଭାଗରେ ଉଦର-ମଧ୍ୟସ୍ଥ ରୋମଶ୍ରେଣୀ ।

ରୋରୁଦ୍ୟମାନ, ବିଂ. (ରୁଦ୍-(ଯଙ୍‌ଲୁଗନ୍ତ)-ଆନ) ଅତିଶୟ ରୋଦନଶୀଳ ।

ରୋଳ, ପୁଂ. ଶବ୍ଦ । ଯଥା—

> କାହିଁ ଏବେ ସେ ଚହଳ ଯାଉ ଘୋର ରୋଳ
> କହିଥିଲ ଏତେକାଳ ଶ୍ରବଣ ବଧିର । କ. ବ.

ରୋଳମ୍ବ, ବ. ପୁଂ. ( ରୋଳ୍-ଅମ୍ବ ) ଭ୍ରମର; ଶୁଷ୍କଭୂମି । ବିଂ. ଅବିଶ୍ୱାସୀ ।

ରୋଶନାଇ, ରୋଶନି (ଯାବନିକ) ଆଲୋକ ।

ରୋଷ, ବ. ପୁଂ. (ରୁଷ୍-ଅ) କ୍ରୋଧ, ରାଗ ।

ରୋଷିତ, ବିଂ. (ରୋଷ-ଇତ) କୋପିତ, ରାଗିବା ।

ରୋହଣ, ବ. ନ. (ରୁହ୍-ଅନ) ଉତ୍ପତ୍ତି, ଜନ୍ମ, ଉଦ୍ଭବ; ଆରୋହଣ; ପ୍ରାଦୁର୍ଭାବ; ଶୁକ୍ର, ରେତଃ । ପୁଂ. ସିଦ୍ଧରାଜ; ଶୈଳ ।

ରୋହନ୍ତ, ବ. ପୁଂ. (ରୁହ-ଅନ୍ତ) ବୃକ୍ଷ ।

ରୋହନ୍ତୀ, ବ. ସ୍ତ୍ରୀ. (ରୁହ୍-ଅନ୍ତ-ଈ) ଲତା ।

ରୋହଣ, ବ. ପୁଂ. (ରୋହଣୀ-ଅ) ନ୍ୟଗ୍ରୋଧ, ବଟଗଛ; ରୋହିତବୃକ୍ଷ; ( ରୁହ୍-ଇନ୍ ) ନ. ଦିବସର ନବମ ମୁହୂର୍ତ୍ତ ।

ରୋହଣିକା, | ରୋହିତକା, } ବ. ସ୍ତ୍ରୀ. କ୍ରୋଧାଦି ହେତୁରୁ ଯେଉଁ ସ୍ତ୍ରୀର ଶରୀର ଲୋହିତ-ବର୍ଣ୍ଣ ହୁଏ ।

ରୋହିଣୀ ବ. ସ୍ତ୍ରୀ. (ରୁହ୍-ଇନ୍-ଈ) ନକ୍ଷତ୍ର-ବିଶେଷ; ଚନ୍ଦ୍ରପତ୍ନୀ; ଦକ୍ଷପ୍ରଜାପତିଙ୍କ ଗୋଟିଏ କନ୍ୟା; ବଳରାମଙ୍କର ମାତା; ଔଷଧବିଶେଷ; ନବବର୍ଷବୟସ୍କା କନ୍ୟା; ସ୍ତ୍ରୀଗୋରୁ, ଗାଭୀ; ବିଦ୍ୟୁତ୍; ହରୀତକୀ ।

ରୋହଣୀକୁଣ୍ଡ, ଶ୍ରୀକ୍ଷେତ୍ରସ୍ଥ କୁଣ୍ଡବିଶେଷ, କଳ୍ପ-ବଟର ପଶ୍ଚିମପାର୍ଶ୍ୱସ୍ଥ କୁଣ୍ଡବିଶେଷ ।

ରୋହି[illegible], | ରୋହି[illegible]ଭ, } ବ. ପୁଂ. (ରୋହଣୀ-ପତି, ବଲ୍ଲଭ) ଚନ୍ଦ୍ର; ବସୁଦେବ ।

ରୋହିତ, ବ. ପୁଂ. ( ରୁହ-ଇତ ) ରୋହିମାଛ; ହରିଣବିଶେଷ; ରକ୍ତବର୍ଣ୍ଣ; ପଦ[illegible] ନ. କୁଙ୍କୁମ; ଇନ୍ଦ୍ରଧନୁଃ; [illegible] । ବିଂ. ରକ୍ତବର୍ଣ୍ଣ-ବିଶିଷ୍ଟ ।

ରୋହିତାଶ୍ୱ, ବ. ପୁଂ. (ରୋହିତ-ଅଶ୍ୱ) ଅଗ୍ନି; ହରିଶ୍ଚନ୍ଦ୍ର ପୁତ୍ର ।

ରୋହୀ, ବିଂ. ( ରୁହ୍-ଇନ୍ ) ଉତ୍ପତ୍ତିଶୀଳ; ଆରୋହୀ । ବ. ପୁଂ. ବଟବୃକ୍ଷ ।

ରୌକ୍ଷ୍ୟ, ବ. ନ. (ରୁକ୍ଷ-ଯ୍ୟ) ରୁକ୍ଷତା, କାର୍କଶ୍ୟ; କାଠିନ୍ୟ ।

ରୌଚ୍ୟ, ବ. ପୁଂ. ମନ୍ୱନ୍ତରବିଶେଷ ।

ରୌଦ୍ର, ବ. ପୁଂ. ନ. ( ରୁଦ୍ର-ଅ ) କ୍ରୋଧ; ଶୃଙ୍ଗାରାଦି ନଅ ରସ ମଧ୍ୟରେ ଏକ ରସ; ଏହି ରସରେ କ୍ରୋଧ ସ୍ଥାୟୀ ଭାବ, ଶତ୍ରୁ ଆଲମ୍ବନ ବିଭାବ, ଶତ୍ରୁର ଚେଷ୍ଟା ଏବଂ ପ୍ରହାରାଦି ଉଦ୍ଦୀପନ ବିଭାବ; ସୂର୍ଯ୍ୟରଶ୍ମି । ପୁଂ. କ୍ରୋଧ; ଆତପ, ସୂର୍ଯ୍ୟତେଜଃ; ଉତ୍ତାପ; ଯମ; ହେମନ୍ତଋତୁ । ବିଂ. ଉଗ୍ର, ପ୍ରଚଣ୍ଡ; ଭୟାନକ; ରୁଦ୍ରସମ୍ବନ୍ଧୀୟ ।

ରୌଦ୍ରୀ, ବ. ସ୍ତ୍ରୀ. (ରୁଦ୍ର-ଈ) ଚଣ୍ଡୀ, ଦୁର୍ଗା; ରୁଦ୍ରଜଟା ।

ରୌପ୍ୟ, ବ. ନ. (ରୂପ୍ୟ-ଅ) ରଜତ, ରୂପା ।

ରୌମ, ବ. ନ. (ରୁମ୍-ଅ) ଖଣିଜ ଲବଣବିଶେଷ; ଶମ୍ବର ଲବଣ ।

ରୌରବ, ବ. ପୁଂ. (ରୁରୁ-ଅ) ନରକବିଶେଷ । ବିଂ. ଭୟଙ୍କର; ଚଞ୍ଚଳ; ଧୂର୍ତ୍ତ; (ରୁରୁ-ଅ) ରୁରୁସମ୍ବନ୍ଧୀୟ ।

ରୌହିଣ, ବ. ପୁଂ. (ରୌହିଣ-ଅ) ଚନ୍ଦନଗଛ । ନ. ଦିବସର ନବମ ମୁହୂର୍ତ୍ତ ।

ରୌହିଣେୟ, ବ. ପୁଂ. ( ରୋହିଣୀ-ଏୟ ) ରୋହିଣୀନନ୍ଦନ, ବଳରାମ; ବୁଧଗ୍ରହ । ନ. ମରକତମଣି । ପୁଂ. ସ୍ତ୍ରୀ. ଗୋବତ୍ସ, ବାଛ[illegible]

ରୌହିଷ, ବ. ପୁଂ. ସ୍ତ୍ରୀ. (ରୁହ-ଇଷ୍ [illegible] ହେମାଛ; ମୃଗବିଶେଷ; ତୃଣ ।

—:୦:—

# ଲ

ଲ, ବ୍ୟଞ୍ଜନ ବର୍ଣ୍ଣର ଅଷ୍ଟାବିଂଶ ବର୍ଣ୍ଣ; ଏହାର ଉଚ୍ଚାରଣ ସ୍ଥାନ ଦନ୍ତ । ବ. ପୁଂ. (ଲା-ଅ) ଇନ୍ଦ୍ର । ନ. ପୃଥ୍ୱୀବୀଜ । ଲା-ସ୍ତ୍ରୀ. ଦାନ, ଗ୍ରହଣ । ଲୀ-ସ୍ତ୍ରୀ. ଅଶ୍ଳେଷ ।

ଲଉଡ଼, ବ. (ଲଗୁଡ଼ ଶବ୍ଦଜ) ଯଷ୍ଟି । ଯଥା—

ଅବ ଲଉଡ ବାଡ଼ିରେ ହିଦରହୁଦାର, ବଳାମାଣିକରେ । ବ. ଚ.

ଲକଚ, ଲକୁଚ, ବ. ପୁଂ. ( ଲକ୍-ଅଚ, ଉଚ ) ବୃକ୍ଷବିଶେଷ; ମନ୍ଦାର ବୃକ୍ଷ ।

ଲକ୍ତକ, ବ. ପୁଂ. (ଲକ୍-ତ-କ) ଜୀର୍ଣ୍ଣ ବସ୍ତ୍ରଖଣ୍ଡ; ଅଳତା ।

ଲକ୍ଷ, ବ. ନ. ( ଲକ୍ଷ୍-ଅ ) ଶତସହସ୍ର ସଂଖ୍ୟା; ପ୍ରବଞ୍ଚନା; ଚିହ୍ନ; ଲକ୍ଷ୍ୟ ; ଦୃଷ୍ଟି ।

ଲକ୍ଷକ, ବିଂ. (ଲକ୍ଷ-ଇ-ଅକ) ଲକ୍ଷଣଦ୍ୱାରା ଅର୍ଥବୋଧକ ।

ଲକ୍ଷଣ, ବ. ପୁଂ. (ଲକ୍ଷ୍-ଅନ) ରାମଭ୍ରାତା, ଲକ୍ଷ୍ମଣ; ସାରସପକ୍ଷୀ । ନ. ସ୍ୱରୂପ; ଚିହ୍ନ; ନାମ; ଦର୍ଶନ; ବ୍ୟାକରଣର ସୂତ୍ର । ବିଂ. ଶ୍ରୀମାନ୍ ।

ଲକ୍ଷଣା, ବ. ସ୍ତ୍ରୀ. ( ଲକ୍ଷ୍-ଅନ-ଆ ) [illegible] ହଂସୀ; ଅଧାହାର; ଶବ୍ଦର ଶକ୍ତିବିଶେଷ

ଲକ୍ଷଣୀୟ, ବିଂ. ( ଲକ୍ଷ୍-ଅନୀୟ ) ଦର୍ଶନୀୟ; ଅନୁଭବଯୋଗ୍ୟ, ଅନୁଭବନୀୟ ।

ଲକ୍ଷିତ, ବିଂ. (ଲକ୍ଷ-ତ) [illegible]; ଜ୍ଞାତ; ଉଦ୍ଦିଷ୍ଟ, ଲକ୍ଷ[illegible] ଜ୍ଞାତ; ଅନୁଭୂତ; ଲକ୍ଷୀ-କୃ[illegible]ନାର୍ଥ ଚିହ୍ନ ।

ଲକ୍ଷ୍ମ, ବ. ନ. (ଲକ୍ଷ୍-ମନ୍) ଚିହ୍ନ; ପ୍ରଧାନ ।

ଲକ୍ଷ୍ମଣ, ବ. ପୁଂ. ( ଲକ୍ଷ୍ମୀ-ଅ-ନ ବା ଲକ୍ଷ୍ମନ୍-ଅ ) ରାମଭ୍ରାତା, ସୁମିତ୍ରାପୁତ୍ର; ସାରସ ପକ୍ଷୀ । ନ. ଚିହ୍ନ; ସ୍ୱରୂପ; ନାମ । ଣା-ସ୍ତ୍ରୀ. ସାରସୀ, ହଂସୀ; ଦୁର୍ଯ୍ୟୋଧନର କନ୍ୟା । ବିଂ. ସୌଭାଗ୍ୟଶାଳୀ; ଶ୍ରୀମାନ୍ ।

ଲକ୍ଷ୍ମଣପ୍ରସୂ, ବ. ସ୍ତ୍ରୀ. ( ଲକ୍ଷ୍ମଣ-ପ୍ରସୂ ) ମାତା; ଔଷଧବିଶେଷ ।

ଲକ୍ଷ୍ମୀ, ବ. ସ୍ତ୍ରୀ. ( ଲକ୍ଷ୍-ଈ, ମ ଅଗମ ) ବିଷ୍ଣୁପତ୍ନୀ, କମଳା; ସୀତା; ଦୁର୍ଗା; ଶ୍ୱେତପଦ୍ମ ମୂଳବିଶେଷ; ବୀରପତ୍ନୀ; ହରିଦ୍ରା; ରାଜଶ୍ରୀ; ସମ୍ପତ୍ତି; ଶ୍ରୀ, ଶୋଭା, ସୌନ୍ଦର୍ଯ୍ୟ; ମୁକ୍ତା ।

ଲକ୍ଷ୍ମୀକାନ୍ତ, ବ. ପୁଂ. ( ଲକ୍ଷ୍ମୀ-କାନ୍ତ ) ବିଷ୍ଣୁ; ନାରାୟଣ ; ରାଜା ।

ଲକ୍ଷ୍ମୀଗୃହ, ବି. ନ. ରକ୍ତୋତ୍ପଳ ।

ଲକ୍ଷ୍ମୀପତି, ବି. ପୁଂ. (ଲକ୍ଷ୍ମୀ-ପତି) ବିଷ୍ଣୁ; ନର-ପତି; ଲବଙ୍ଗଲତା; ଗୁବାକ ବୃକ୍ଷ ।

ଲକ୍ଷ୍ମୀପୁତ୍ର, ବି. ପୁଂ. (ଲକ୍ଷ୍ମୀ-ପୁତ୍ର) କାମଦେବ; ରାମ ବା ସୀତାଙ୍କର ପୁତ୍ର କୁଶ ଓ ଲବ; ଅଶ୍ୱ ।

ଲକ୍ଷ୍ମୀପୁଷ୍ପ, ବି. ପୁଂ. (ଲକ୍ଷ୍ମୀ-ପୁଷ୍ପ) ପଦ୍ମରାଗମଣି-ବିଶେଷ ।

ଲକ୍ଷ୍ମୀଫଳ, ବି. ପୁଂ. ବେଲଗଛ ।

ଲକ୍ଷ୍ମୀବାନ୍, ବିଂ. (ଲକ୍ଷ୍ମୀ-ବତ୍) ଶ୍ରୀମାନ୍; ସମ୍ପତ୍ତି-ଶାଳୀ । ବି. ପୁଂ. ପଣସବୃକ୍ଷ ।

ଲକ୍ଷ୍ମୀଶ, ବି. ପୁଂ. (ଲକ୍ଷ୍ମୀ-ଈଶ) ରମାପତି; ବିଷ୍ଣୁ; ଆମ୍ରବୃକ୍ଷ; ସୌଭାଗ୍ୟଶାଳୀ ବ୍ୟକ୍ତି ।

ଲକ୍ଷ୍ମୀସମାହ୍ୱୟା, ବି. ସ୍ତ୍ରୀ. ଜାନକୀ, ସୀତା ।

..., ବି. ନ. ( ଲକ୍ଷ୍-ଯ ) ଶରବ୍ୟ, ବେଧ୍ୟ, ବିଧନାର୍ଥ ଲକ୍ଷିତ; ଚିହ୍ନ; ଚକ୍ରୁସ୍ରା; ଶତ-ସହସ୍ର ସଂଖ୍ୟା । ବିଂ. ଦ୍ରଷ୍ଟବ୍ୟ, ଦର୍ଶନଯୋଗ୍ୟ; ଉଦ୍ଦେଶ୍ୟ; ...କ୍ଷଣା ଶକ୍ତି ଦ୍ୱାରା ବୋଧ୍ୟ; ଜ୍ଞେୟ; ଅନୁମେ...

ଲଗଡ଼, ବିଂ. ସୁନ୍ଦର, ମ...

ଲଗାମ, ବି. (ଯାବନିକ) ଘୋ... ।

ଲଗୀ, ବି. (ହିନ୍ଦୀ) ଅଙ୍କୁଶ ।

ଲଗୁଡ଼, ବି. ପୁଂ. (ଲଗ୍-ଉଲ, ଲ=ଡ) ବଂଶମୟ ଯଷ୍ଟି, ଠେଙ୍ଗା; ଲୌହମୟ ମୁଦ୍ଗର, ଗଦା ।

ଲଗ୍ନ, ବିଂ. (ଲସ୍ଜ-ତ) ଯୁକ୍ତ; ସଂଲଗ୍ନ; ଲଜ୍ଜିତ । ବି. ନ. ମେଷାଦି ରାଶିର ଉଦୟକାଳ; ସୂର୍ଯ୍ୟର ରାଶିସଂକ୍ରମଣ ମୁହୂର୍ତ୍ତ । ପୁଂ. ସ୍ତୁତିପାଠକ ।

ଲଗ୍ନକ, ବି. ପୁଂ. (ଲଗ୍ନ-କ) ପ୍ରତିଭୂ, ଜାମିନ ।

ଲଗ୍ନପତ୍ର, ବିବାହସମୟନିରୂପକ ପତ୍ର, ବିବାହକାଳ ସ୍ଥିର ହେବାର ସ୍ୱୀକୃତ ପତ୍ର ।

ଲଗ୍ନିକା, ବି. ସ୍ତ୍ରୀ. ( ଲଗ୍ନ-କ-ଆ ) ଅପ୍ରାପ୍ତବୟସ୍କା, ନଗ୍ନିକା, ଅଦୃଷ୍ଟରଜସ୍କା ବାଳିକା ।

ଲଘିମା, ବି. ପୁଂ. ( ଲଘୁ-ଇମନ୍ ) ଭାରହୀନତା, ଲଘୁତ୍ୱ; ଅଗୌରବ; ସାରହୀନତା; ଐଶ୍ୱର୍ଯ୍ୟ-ବିଶେଷ; ସ୍ୱୀୟ ଶରୀରକୁ ଲଘୁ କରିବା କ୍ଷମତା ।

ଲଘିଷ୍ଠ, ଲଘୀୟାନ୍, ବିଂ. (ଲଘୁ-ଇଷ୍ଠ, ଈୟସ୍) ଅତି ଲଘୁ; ଅତିକ୍ଷୁଦ୍ର ।

ଲଘୁ, ବିଂ. (ଲଙ୍ଘ୍-ଉ ) ଭାରହୀନ, ହାଲୁକା; ଅସାର; ନିସ୍ତେଜଃ; ନିର୍ଗୌରବ; ଅଳ୍ପ; ଶୁଷ୍କ; ବଶ୍ୟକ; ପରିଷ୍କୃତ; ଶୀଘ୍ର; କ୍ଷୁଦ୍ର; ହ୍ରସ୍ୱ; ଫକ୍ଷିପ୍ତ; ସୁନ୍ଦର; ଇଷ୍ଟ; ବାଞ୍ଛିତ; ସୂକ୍ଷ୍ମ । ବି. ପୁଂ. କୃଷ୍ଣ ଅଗୁରୁ; ପୁଷ୍ୟାଦି ନକ୍ଷତ୍ର; ବ୍ୟାକରଣରେ ହ୍ରସ୍ୱ-ବର୍ଣ୍ଣ ।

ଲଘୁକାୟ, ବି. ପୁଂ. (ଲଘୁ-କାୟ) ଅଜ, ଛାଗଳ । ନ. କ୍ଷୁଦ୍ରଦେହ । ବିଂ. କ୍ଷୁଦ୍ରଦେହବିଶିଷ୍ଟ ।

ଲଘୁତା, ସ୍ତ୍ରୀ. } ବି. ( ଲଘୁ-ତା, ତ୍ୱ) ଭାର-
ଲଘୁତ୍ୱ, ନ. } ହୀନତା, ଲାଘବ ।

ଲଘୁହସ୍ତ, ବିଂ. (ଲଘୁ-ହସ୍ତ) କ୍ଷିପ୍ରହସ୍ତ, ଶୀଘ୍ରକାରୀ; ପଟୁ; ଦକ୍ଷ; ଶୀଘ୍ର ବାଣତ୍ୟାଗୀ ।

ଲଘୂକରଣ, ( Reduction ) ଯେଉଁ ଉପାୟ-ଦ୍ୱାରା ନିମ୍ନଶ୍ରେଣୀସ୍ଥ ରାଶିକୁ ଉଚ୍ଚଶ୍ରେଣୀରେ ଏବଂ ଉଚ୍ଚଶ୍ରେଣୀସ୍ଥ ରାଶିକୁ ନିମ୍ନଶ୍ରେଣୀରେ ପରି-ବର୍ତ୍ତନ କରାଯାଏ; ହ୍ରାସକରଣ ।

ଲଘୂକୃତ, ବିଂ. ( ଲଘୁ-କୃତ ) ଯାହା ଲଘୁ କରା ହୋଇଅଛି, ଯାହା ଊଣା କରା ହୋଇଅଛି ।

ଲଘ୍ୱୀ, ବି. ସ୍ତ୍ରୀ. (ଲଘୁ-ଈ) ଲଘୁବୟସ୍କା; ଅତି ... କୃଶାଙ୍ଗୀ କାମିନୀ; ରଥ-... ବାହନ ଶକଟବିଶେଷ ।

ଲଙ୍କା, ବି. ସ୍ତ୍ରୀ. (ଲକ୍-ଅ, ନିପାତନ-ଆ) ରାବଣ-ପୁରୀ; ସିଂହଳଦ୍ୱୀପ; କୁଳଟା ..., ..., ଡାକିନୀ; (ଦେଶଜ) ମ...

ଲଙ୍କାଧିପତି, ଲଙ୍କାପତି, ବି. ପୁଂ. (ଲଙ୍କା-ଅଧିପତି, ପତି) ରାବଣ, ଦଶାନନ ।

ଲଙ୍କେଶ, ଲଙ୍କେଶ୍ୱର, ବି. ପୁଂ. (ଲଙ୍କା-ଈଶ, ଈଶ୍ୱର) ରାବଣ ।

ଲଙ୍ଗର, ବିଂ. (ଲଙ୍ଗ୍ ଧାତୁଜ) ଜାହାଜ ଆଦି ଅଟକାଇବାର ଲୌହନିର୍ମିତ ଯନ୍ତ୍ରବିଶେଷ ।

ଲଙ୍ଗଳା, ବିଂ. (ଦେଶଜ) ଉଲଗ୍ନ ।

ଲଙ୍ଗୂଳ, ବି. ନ. (ଲଙ୍ଗ୍-ଉଳ) ଲାଙ୍ଗୁଳ ।

ଲଙ୍ଘନ, ବି. ନ. ( ଲଙ୍ଘ୍-ଅନ ) ଉପବାସ; ଅତିକ୍ରମ; ଅତିବାହନ, ଯାପନ; ଅଭିଘାତ; ଅନ୍ତ୍ରମଣ; ଡେଇଁବା ।

ଲଜ୍ଜମାନ,ବିଂ. (ଲସ୍ଜ୍-ଶାନ) ଲଜ୍ଜାଶୀଳ,ଲାଜୁକ ।

ଲଜ୍ଜା, ବି. ସ୍ତ୍ରୀ. ( ଲସ୍ଜ୍-ଅ-ଆ ) ବ୍ରୀଡ଼ା, ଅନ୍ତଃକରଣର ବୃତ୍ତିବିଶେଷ, ଲାଜ, ତ୍ରପା ।

ଲଜ୍ଜାଳୁ, ବିଂ. (ଲଜ୍ଜା-ଆଳୁ) ଲଜ୍ଜାଶୀଳ । ବି. ସ୍ତ୍ରୀ. ଲତାବିଶେଷ, ଲାଜକୁଳୀ ।

ଲଜ୍ଜାବାନ୍, ବି. (ଲଜ୍ଜା-ବତ୍) ଲଜ୍ଜାଶୀଳ, ଲଜ୍ଜାଯୁକ୍ତ ।

ଲଜ୍ଜିତ, ବିଂ. (ଲଜ୍ସ୍-ତ) ଲଜ୍ଜାଯୁକ୍ତ,ଲଜ୍ଜାଶୀଳ ।

ଲଜ୍ଜ୍ୟା, ବି. ସ୍ତ୍ରୀ. (ଲସ୍ଜ୍-ଯତ୍-ଆ) ଲଜ୍ଜା, ତ୍ରପା, ବ୍ରୀଡ଼ା ।

ଲଞ୍ଜ, ବି. ପୁଂ. (ଲନ୍ଜ୍-ଅ) ପାଦ; କଚ୍ଛ; ପୁଚ୍ଛ; ଅନନ୍ତ୍ରୀ; ଲାମ୍ପଟ୍ୟ; ସ୍ରୋତ ।

ଲଞ୍ଜିକା, ବି. ସ୍ତ୍ରୀ. ( ଲନ୍ଜ୍-ଅକ ) ଗଣିକା, ବେଶ୍ୟା ।

ଲଟ, ବି. ପୁଂ. (ଲଟ୍-ଅ) ପ୍ରମାଦ ବଚନ, ଅନବହିତ ହୋଇ ବାକ୍ୟ କହିବା ; ଦୋଷ; ପାଗଳ; ନବୋଧ; ଚୌର; (ପ୍ରା) କୌତୁକ । ଯଥା—

:ସଭିସ ରେ ସବଣେନୟକ ଶ୍ୟା

ଲଟକାଇବା, କ୍ରି. (ଦେଶଜ) ଟଙ୍ଗାଇବା, ଝୁଲାଇବା ।

ଲଟରଧଟ... (ଦେଶଜ) ଗଡ଼ୁଗଡ଼ୁ; ସଂଯୁକ୍ତ

ଲଟାଇବା, କ୍ରି. (ଲତା ଶବ୍ଦଜ) ମାଡିବା ।

ଲଟା, ବି. ସ୍ତ୍ରୀ. (ଲତା ଶବ୍ଦଜ) ଲତା; ବନ ।

ଲଟୁ, ବି. (ଦେଶଜ) ଖେଳନାବିଶେଷ ।

ଲଠି, ବି. ଯଷ୍ଟି, ବାଡ଼ି ।

ଲଡୁ, ବି. (ଲଡ୍ଡୁକ ଶବ୍ଦଜ) ମିଷ୍ଟାନ୍ନବିଶେଷ; ମୋଦକ ।

ଲଡ୍ଡୁ, ଲଡ୍ଡୁକ, ବି. ପୁଂ. ସ୍ତ୍ରୀ. (ଲଡ୍-ଡୁ, କ) ମୋଦକ, ମିଷ୍ଟଦ୍ରବ୍ୟବିଶେଷ ।

ଲଢାଇ, ବି. (ଦେଶଜ) ଯୁଦ୍ଧ, ରଣ, ସଂଗ୍ରାମ ।

ଲଣ୍ଠଣ, ବି. (Lantern ଶବ୍ଦଜ) କାଚନିର୍ମିତ ଦୀପପଞ୍ଜରୀ ।

ଲଣ୍ଡ, ବି. ସ୍ତ୍ରୀ. (ଲନ୍ଡ୍-ଅ) କଠିନ ଲମ୍ବାକୃତି ବସ୍ତୁ ।

ଲଣ୍ଡଭଣ୍ଡ, ବି. (ଦେଶଜ) ଉଚ୍ଛିନ୍ନ, ପ୍ରଚ୍ଛିନ୍ନ; ବ୍ୟତିବ୍ୟସ୍ତ ।

ଲଣ୍ଡା, ବିଂ. (ଦେଶଜ) କେଶହୀନ ମସ୍ତକ ।

ଲଣ୍ଡାବଗୁଲ, ବି. (ଦେଶଜ) ଗୁଳ୍ମବିଶେଷ ।

ଲତା, ଲତିକା, ବି. ସ୍ତ୍ରୀ. (ଲତ୍-ଅ, ଲତା-କ-ଆ) ବ୍ରତତୀ, ଶାଖାରହିତ ମୃଦୁବଲ୍ଲୀ; ସୂକ୍ଷ୍ମ; ଶାଖା; ପ୍ରିୟଙ୍ଗୁ; ଅଶନପର୍ଣ୍ଣୀ; ମାଧବୀ; ଦୂର୍ବା; ନାରୀ; ପାଦୁକା ।

ଲତାକଚ୍ଛ, ଲତାରସନ, ବି. ପୁଂ. (ଲତା-ରସନା) ଭୁଜଗ, ସର୍ପ ।

ଲତାତରୁ, ବି. ପୁଂ. କମଳାଲେମ୍ବୁ ଗଛ; ତାଳବୃକ୍ଷ; ଶାଳବୃକ୍ଷ ।

ଲତାମଣି, ପୁଂ, (ଲତା-ମଣି, ଯାବକ) ପ୍ରବାଳ, ପୋହଳା ।

ଲତ... ସ୍ତ୍ରୀ. (ଲତ୍-ତିକ-ଆ) ଏଣ୍ଡୁଅ, ...

ଲଦନ, ବି. ବୋଝ ।

ଲଦିବା, କ୍ରି. (ଦେଶଜ) ଥୋଇବାର । ଯଥା—

ଉଙ୍କ କମଳରେ ସ୍ନେହ ଧାର ଲଗାଇ ହୃଦଟେ,
ଅତ ଥନଦରେ ଲଦୁଥାଇ ଶିରେ ବାରବାର । ବ. ଚ.

ଲପନ, ବି. ନ. (ଲପ୍-ଅନ) ବଦନ, ମୁଖ; ଭାଷଣ, କଥନ ।

ଲପିତ, ବିଂ. (ଲପ୍-ତ) କଥିତ । ବି. ନ. ବାକ୍ୟ, କଥନ, ବଚନ ।

ଲବ୍ଧ, ବିଂ. (ଲଭ୍-ତ) ଉପାର୍ଜିତ; ପ୍ରାପ୍ତ; ଗୃହୀତ ।

ଲବ୍ଧବର୍ଣ୍ଣ, ବିଂ. (ଲବ୍ଧ-ବର୍ଣ୍ଣ) ବିଚକ୍ଷଣ; ପଣ୍ଡିତ, ଜ୍ଞାନୀ ।

ଲବ୍ଧି, ବି. ସ୍ତ୍ରୀ. (ଲଭ୍-ତି) ଲାଭ; ପ୍ରାପ୍ତି; ଗ୍ରହଣ ।

ଲବ୍ଧୋଦୟ, ବିଂ. (ଲବ୍ଧ-ଉଦୟ) ଜାତ,ଉତ୍ପନ୍ନ ।

ଲଭିବା, କ୍ରି. (ଲଭ୍-ଧାତୁଜ) ପାଇବା, ଲାଭ କରିବା ।

ଲଭ୍ୟ, ବିଂ. (ଲଭ୍-ଯ) ପ୍ରାପ୍ୟ, ଲାଭଯୋଗ୍ୟ, ନ୍ୟାଯ୍ୟ, ଉପଯୁକ୍ତ ।

ଲମ୍ପଟ, ବି. ପୁଂ. (ରମ୍-ଅଟ, ପ ଆଗମ, ର ସ୍ଥାନରେ ଲ) କାମୁକ, ଲୋଚ୍ଚା, ଆସକ୍ତ, ଲୋଲୁପ; ପରସ୍ତ୍ରୀଠାରେ ଆସକ୍ତ ।

ଲମ୍ଫ, ବି. ପୁଂ. (ରନ୍ଫ୍-ଅ, ର ସ୍ଥାନରେ ଲ) ଉଲ୍ଲମ୍ଫନ, ଡେଇଁବା ।

ଲମ୍ବ, ବିଂ. (ଲମ୍ବ୍-ଅ) ଦୋଳାୟମାନ; ଝୁଲଣ; ବିସ୍ତୃତ, ଦୀର୍ଘ, ପ୍ରସାରିତ, ଲମ୍ବା । ବି. ପୁଂ. ଅବଲମ୍ବନ; କାନ୍ତ; ନର୍ତ୍ତକ; ଉତ୍କୋଚ; ଊର୍ଦ୍ଧ୍ୱରେଖା; ବିଭୁଜ କ୍ଷେତ୍ରର ଲମ୍ବମାନ ରେଖା ।

ଲମ୍ବକର୍ଣ୍ଣ, ବି. ପୁଂ. (ଲମ୍ବ-କର୍ଣ୍ଣ) ଛାଗ; ହସ୍ତୀ; ...ଗଧ; ବୃକ୍ଷବିଶେଷ; ଶଶକ; ଗଣେଶ ।

ଲମ୍ବନ, ବି. ନ. (ଲମ୍ବ୍-ଅନ) ଅବଲମ୍ବନ, ଆଶ୍ରୟ; ଦୋଳନ, ଝୁଲଣ; ମାଳ୍ୟବିଶେଷ; ନାଭିଲମ୍ବିତ ହା... ଆଶ୍ରୟ ଗ୍ରହଣ । ବି. ପୁଂ. ସନ୍ଧି, କଫ ।

ଲମ୍ବମାନ, ବିଂ. (ଲମ୍ବ୍-ଶା... ଆଗମ) ଦୋଳାୟମାନ, ଝୁଲଣ ।

ଲମ୍ବା, ବି. ସ୍ତ୍ରୀ. (ଲମ୍ବ-ଅ-ଆ) ଲକ୍ଷ୍ମୀ, ଦୁର୍ଗା, ଗୌରୀ, ଦକ୍ଷକନ୍ୟା; ତିକ୍ତ ଅଲାବୁ ।

ଲମ୍ବିତ, ବିଂ. (ଲମ୍ବ୍-ତ) ଅବଲମ୍ବିତ, ଆଶ୍ରିତ; ଲମ୍ବମାନ; ଦୋଳିତ; ଝୁଲିତ; ପତମାନ ।

ଲମ୍ବୋଦର, ବି. ପୁଂ. (ଲମ୍ବ-ଉଦର) ଗଣେଶ, ଔଦରିକ, ପେଟୁକ । ବିଂ. ଦୀର୍ଘୋଦର ।

ଲମ୍ବୋଷ୍ଠ, ବି. ପୁଂ. (ଲମ୍ବ-ଓଷ୍ଠ) ଉଷ୍ଟ୍ର, ଉଟ, ଦାସେରକ ।

ଲମ୍ଭନ, ବି. ନ. (ଲମ୍ଭ୍-ଅନ) ଧ୍ୱନି; ପ୍ରାପଣ; ଲାଞ୍ଛନା; ତିରସ୍କାର; ନିନ୍ଦା ।

ଲମ୍ଭିତ, ବିଂ. (ଲମ୍ଭ୍-ତ) ପ୍ରାପିତ; ଶବ୍ଦିତ; ନିଯୁକ୍ତ; ବର୍ଦ୍ଧିତ; ତିରସ୍କୃତ; ନିନ୍ଦିତ; ନିଯୋଜିତ; ଉତ୍ଥିତ; ଉକ୍ତ; ପୋଷିତ; ଅପମାନିତ ।

ଲୟ, ବି. ପୁଂ. (ଲୀ-ଅ) ଗୀତ ବାଦ୍ୟାଦିର ତାଳ; ଲୀନ ହେବା, ମିଶି ଯିବା; ପ୍ରଳୟ, ବିନାଶ; ଗୃହ, ଆବାସ; କ୍ରୀଡ଼ା; ଈଶ୍ୱର ।

ଲୟପୁତ୍ରୀ, ବି. ସ୍ତ୍ରୀ. (ଲୟ-ପୁତ୍ରୀ) ନଟୀ, ନର୍ତ୍ତକୀ ।

ଲୟାରମ୍ଭ, ⎫ ବି. ପୁଂ. (ଲୟ-ଆରମ୍ଭ, ଆଲମ୍ବ)
ଲୟାଲମ୍ବ, ⎭ ନଟ, ନର୍ତ୍ତକ ।

ଲଳନ, ବି. ନ. (ଲଳ-ଅନ) କ୍ରୀଡ଼ା, ଖେଳ; ଚାଳନ, କମ୍ପନ ।

ଲଳନା, ବି. ସ୍ତ୍ରୀ. (ଲଳ୍-ଅନ-ଆ) କାନ୍ତା, ସ୍ତ୍ରୀ; କାମିନୀ, ସୁନ୍ଦରୀ ସ୍ତ୍ରୀ; ଜିହ୍ୱା ।

ଲଳନାପ୍ରିୟ, ବି. ପୁଂ. କଦମ୍ବ ।

ଲଲାଟ, ବି.ନ. (ଲଲ-ଅଟ୍-ଅ) କପାଳ, ଭାଲ ।

ଲଲାଟକ, ବି. ନ. (ଲଲାଟ-କ) ପ୍ରଶସ୍ତ ଲଲାଟ; ଲଲାଟ ।

ଲଲାଟନ୍ତପ, ବି. ପୁଂ. (ଲଲାଟ-ତପ୍-ଅ) ସୂର୍ଯ୍ୟ । ବିଂ. ଲଲାଟତାପକାରୀ ।

ଲଲାଟିକା, ବି. ସ୍ତ୍ରୀ. (ଲଲାଟ-ଅ-କ) ଲଲାଟର ଭୂଷଣବିଶେଷ, ଟିକା; ଚନ୍ଦନାଦି-ରଚିତ ତିଲକ ।

ଲଲାମ, ⎫ ବି. (ଲଲ୍-ଅମ୍-ଅ, ଅନ)
ଲଲାମନ୍ ⎭ ନ. ଭୂଷଣ; ଲଲାଟର ଭୂଷଣ; ଚିହ୍ନ; ଶୋଭା; ଲଲାଟସ୍ଥ ଚିହ୍ନ; ଶୃଙ୍ଗ; ପୁଚ୍ଛ; ଶୁଣ୍ଡ; ଶ୍ରେଷ୍ଠ; ଧ୍ୱଜ; ପୁଣ୍ଡ୍ର; ପ୍ରଭାବ; ...ଅଶ୍ୱ-ଭୂଷଣ; ନାମ; ଶ୍ରେଣୀ ।

ଲଳିତ, ବି.ନ. (ଲଲ୍-ତ) ବିଳାସ, ସ୍ତ୍ରୀ ଜାତିର ଶୃଙ୍ଗାରଭାବଜ କ୍ରିୟାବିଶେଷ; ସ୍ତ୍ରୀନୃତ୍ୟ; ଚଳନ; କ୍ରୀଡ଼ା । ପୁଂ. ରାଗବିଶେଷ, ଇଚ୍ଛା । ବିଂ. କୋମଳ; ସୁନ୍ଦର, ପ୍ରିୟ; କ୍ରୀଡ଼ାଶୀଳ; ଚଞ୍ଚଳ; ଅଭିଳଷିତ, ବାଞ୍ଛିତ ।

ଲଳିତା, ବି.ସ୍ତ୍ରୀ. (ଲଲ୍-ତ-ଆ) ଗୋପୀବିଶେଷ; ନଦୀବିଶେଷ; କସ୍ତୁରୀ; ନାରୀ; ଦୁର୍ଗା; (ଦେଶଜରେ) ଗୁଳ୍ମବିଶେଷ, ଯୋଟିଗଛ ।

ଲବ, ବ. ପୁଂ. (ଲୂ-ଅ) ବନାଶ; ରେଣୁ; ପୁଷ୍ପ-ରେଣୁ, ଗୋପୁଚ୍ଛର ଲୋମ; କଣା; ଶୂନ୍ଦ; ଛେଦନ; ଲେଶ, କିଞ୍ଚିତ୍‌ମାତ୍ର; ସମୟର ସୂକ୍ଷ୍ମାଂଶ; ବିଳାସ; ରାମଚନ୍ଦ୍ରଙ୍କର ଦ୍ୱିତୀୟ ପୁତ୍ର; ପକ୍ଷ; ଲବଣ; ବିଭାଜ୍ୟ ଗୁଣ । ନ. ଜାଇଫଳ; ଲବଙ୍ଗ ।

ଲବଙ୍ଗ, ବ. ପୁଂ. (ଲୂ-ଅଙ୍ଗ) ବୃକ୍ଷବିଶେଷ; ଜାର, ଉପପତି । ନ. ଦେବପୁଷ୍ପ ।

ଲବଣ, ବ. ନ. (ଲୂ-ଅନ) କ୍ଷାର ଦ୍ରବ୍ୟବିଶେଷ, ଲୁଣ । ଲୁଣ ପାଞ୍ଚ ପ୍ରକାର; ଯଥା—ସୌବର୍ଚ୍ଚଳ, ସୈନ୍ଧବ, ବିଟ, ଔଦ୍ଭିଦ, ସାମୁଦ୍ର । ପୁଂ. କ୍ଷାର-ରସ; ଲବଣସମୁଦ୍ର । ବିଂ. କ୍ଷାରରସଯୁକ୍ତ, ଲୁଣିଆ ।

ଲବଣୀ, ବ. ସ୍ତ୍ରୀ. (ନବନୀତ ଶବ୍ଦଜ) ଲହୁଣୀ ।

ଲବଣୋଦ, ବ. ପୁଂ. ( ଲବଣ-ଉଦ ) ଲବଣ-ସମୁଦ୍ର, ଲବଣସାଗର ।

ଲବିତ୍ର, ବ. ନ. ( ଲୂ-ଇତ୍ର ) କାଟିବାର ଅସ୍ତ୍ର-ବିଶେଷ, କଟାର, ଦା ।

ଲଶୁନ, ଲଶୂନ, ବ. ପୁଂ. ( ଲଶ୍-ଉନ, ଊନ ) ମୂଳବିଶେଷ, ରସୁଣ ।

ଲଷିତ, ବିଂ. (ଲଷ୍-ତ) ଅଭିଲଷିତ ...

ଲସତ୍, ବିଂ. (ଲସ୍-ଅତ୍) ... ବିକାଶ-ମାନ; ଉଜ୍ଜ୍ୱଳ; ଚେଷ୍ଟମାନ ।

ଲସିତ ... ନ. (ଲସ୍-ତ) ବିଳାସ; ଉଲ୍ଲାସ, ସ୍ଫୂର୍ତ୍ତି; ... ବିଂ. ଶୋଭିତ; ଚେଷ୍ଟିତ ।

ଲସ୍କର, (ଯାବନିକ) ସେନା, ଫୌଜ ।

ଲହକା, ବିଂ. (ଦେଶଜ) ଯାହା ସହଜରେ ନଇଁ ଯାଏ, ଲହଲହିଆ ।

ଲହରି, ଲହରୀ, ବ. ସ୍ତ୍ରୀ. ( ଲ-ହୃ-ଇ ) ଊର୍ମି, ତରଙ୍ଗ, ଢେଉ ।

ଲହୁ, ବ. ନ. (ଦେଶଜ) ରକ୍ତ । ଯଥା—

ବହଇ ଅଧରୁ ଲହୁଧାର, ନକ ଦନ୍ତେ କଲୁ ଜାମୋଡ଼ । ମ. ଯା.

ଲା, ଲାହା, ବ. (ଲାକ୍ଷା ଶବ୍ଦଜ) ଲାକ୍ଷା, ଜତୁ ।

ଲାଉ, ବ. (ଲାବୁ ଶବ୍ଦଜ) ତୁମ୍ବୀ, ସ୍ୱନାମପ୍ରସିଦ୍ଧ ଫଳବିଶେଷ ।

ଲାକ୍ଷଣିକ, ବିଂ. (ଲକ୍ଷଣ-ଇକ) ଲକ୍ଷଣାଦ୍ୱାରା ଅର୍ଥ-ପ୍ରତିପାଦକ ।

ଲାକ୍ଷଣ୍ୟ, ବିଂ. (ଲକ୍ଷଣ-ଯ) ଲକ୍ଷଣଜ୍ଞ; ଲକ୍ଷଣଯୁକ୍ତ; ଲକ୍ଷଣସମ୍ବନ୍ଧୀୟ ।

ଲାକ୍ଷା, ବ. ସ୍ତ୍ରୀ. (ଲକ୍ଷ୍-ଅ-ଆ) ଲୋହିତବର୍ଣ୍ଣକ, ବୃକ୍ଷର ନିର୍ଯ୍ୟାସବିଶେଷ, ଜଉ, ଲା ।

ଲାକ୍ଷାରସ, ବ. ପୁଂ. ଅଲକ୍ତକରସ, ଅଳତା ।

ଲାକ୍ଷିକ, ବିଂ. (ଲକ୍ଷ ବା ଲାକ୍ଷା-ଇକ) ଲକ୍ଷସଂଖ୍ୟା-ପରିମିତ; ଲାକ୍ଷାନିର୍ମିତ ।

ଲାଖ, ବ. (ଲକ୍ଷ ଶବ୍ଦଜ) ଲକ୍ଷ । ଯଥା—

ଲାଖ ବନ୍ଧ ଛନ୍ଦ କାହିଁ ଯୋଧଦଳ । ନା. କେ.

ଲାଖ, ବ. (ଲାକ୍ଷା ଶବ୍ଦଜ) ଜଉ, ଲା ।

ଲାଖେରାଜ, ବ. (ଯାବନିକ) ନିଷ୍କରଭୂମି ।

ଲାଗି, ଅଂ. ହେତୁ, କାରଣ, ନିମିତ୍ତ । ବିଂ.ଯୋଗ୍ୟ । ଯଥା, ଲାଗି ପିଠା ।

ଲାଗିବା, କ୍ରି. (ଲଗ୍ନ ଶବ୍ଦଜ) ମିଶିବା, ଲାଖିବା । ଯଥା—

... ଆଗେ ନରରେ ଲାଗିଛି ।

... ବା । ଯଥା—

ଲାଗୁ ନ ଥିଲା ମୋ କରକୁ ନାହିଁ ।

ଲାଘବ, ବ. ନ. (ଲଘୁ-ଅ) ଲଘୁତ୍ୱ; ଭାରରହିତ, ହାଲୁକା; ଅଗୌରବ; ଆରୋଗ୍ୟ; ସ୍ୱାସ୍ଥ୍ୟ; ଶୀଘ୍ରତା ।

ଲାଙ୍ଗଳ, ବ. ନ. (ଲଗ୍-ଅଳ) ଭୂମିକର୍ଷଣ ଯନ୍ତ୍ର-ବିଶେଷ, ହଳ । ଯଥା—

ବଶେଷେ ମୋ ଦନ୍ତ ଲାଙ୍ଗଳ-ଦଣ୍ଡ,
ବପ୍ର ତୁମ୍ଭେ ହେବ କୃଷକ ଶ୍ରେଷ୍ଠ ।

ପୁଷ୍ପବିଶେଷ; ତାଳ ଗଛ ।

ଲାଙ୍ଗଳଗ୍ରହ, ବ. ପୁଂ. (ଲାଙ୍ଗଳ-ଗ୍ରହ) ଲାଙ୍ଗଳ-ଧାରୀ କୃଷକ ।

ଲାଙ୍ଗଳଦଣ୍ଡ, ବ. ପୁଂ. ଲାଙ୍ଗଳର ମଧ୍ୟସ୍ଥ କାଷ୍ଠ, ଲାଙ୍ଗଳର ଈଶ ।

ଲାଙ୍ଗଲକ, ବି. ପୁଂ. ( ଲାଙ୍ଗଲ-ଇକ ଅବା ଲାଙ୍ଗଲୀ-କ) ବିଷବିଶେଷ; ଲାଙ୍ଗଲଧାରୀ ।

ଲାଙ୍ଗଲୀ, ବି. ପୁଂ. ( ଲାଙ୍ଗଲ-ଇନ୍ ) ବଳରାମ; ସର୍ପ; କୃଷକ; ନାରିକେଳ ବୃକ୍ଷ ।

ଲାଙ୍ଗୂଳ, ଲାଙ୍ଗୂଲ, (ଲନ୍‌ଗ-ଊଲ) ପୁଚ୍ଛ, ଲାଞ୍ଜ ।

ଲାଙ୍ଗୂଳୀ, ବି. ପୁଂ. (ଲାଙ୍ଗୂଳ-ଇନ୍) ବାନର । ବିଂ. ପୁଚ୍ଛବିଶିଷ୍ଟ ।

ଲାଜ, ବି. ପୁଂ. (ଲାଜ୍-ଅ) ଖଇ । ନ. ଉଶୀର, ବେଣାମୂଳ; (ଲଜ୍ଜା ଶବ୍ଦଜ) ଲଜ୍ଜା । ଯଥା—

କ ଲାଜ ପାଉର ଅଜ ରେ ସଜନ ।

ଲାଜୁକ, ବିଂ. ( ଲଜ୍ଜା ଶବ୍ଦଜ ) ଲଜ୍ଜାଶୀଳ, ଲଜ୍ଜାଯୁକ୍ତ ।

ଲାଞ୍ଚ, ବି. (ଦେଶଜ) ଘୁଷ୍, ଉତ୍କୋଚ୍ । ଯଥା—

ନାଠ ଲାଞ୍ଚ ମାଗୁଥାଉ ଲବଣି କେମନ୍ତେ ।

ଲାଞ୍ଛନ, ବି. ନ. (ଲାନ୍‌ଛ୍-ଅନ) ଚିହ୍ନ, ଧ୍ୱଜ; କଳଙ୍କ । ଯଥା—

ଶୂର ତୁମ୍ଭେ ନଳ ନାମେ ଲାଞ୍ଛନା କେମନ୍ତେ ସହିବ । ବୈ. ବି.

ଲାଞ୍ଛିତ, ବିଂ. (ଲାନ୍‌ଛ୍-ତ) ଚିହ୍ନିତ; କଳଙ୍କିତ; ଧ୍ୱଜଯୁକ୍ତ; ନାମଯୁକ୍ତ ।

ଲାଞ୍ଜ, ବିଂ. (ଲାଞ୍ଛ ଧାତୁଜ) ପୁଚ୍ଛ, ।

ଲାଞ୍ଜି, ବି. (ଲାଞ୍ଛ୍ ଧାତୁଜ) ଚିଙ୍ଗିଡ଼ି ପୁଚ୍ଛ; ଧୂମ ରେଖା । ଯଥା—

ଲାଞ୍ଜି ବହିଲେ କଳ୍କୁଳ, ନୟନେ ଦଶେ ଧନୁର । ଲା. ଚ.

ଲାଠି, ଲାଠୀ, (ଲଗୁଡ଼ ଶବ୍ଦଜ) ଯଷ୍ଟି, ଦଣ୍ଡ, ବାଡ଼ି ।

ଲାଭ, ବି. ପୁଂ. ( ଲଭ୍-ଅ ) ପ୍ରାପ୍ତି; ଉପାର୍ଜନ; ଉପସ୍ୱତ୍ୱ; ଧନ ।

ଲାମ୍ପଟ୍ୟ, ବି. ନ. ( ଲମ୍ପଟ-ଯ ) ଲମ୍ପଟତା, କାମୁକତା, ପରସ୍ତ୍ରୀ ପ୍ରବୃତ୍ତି ।

ଲାଳ, ବି. (ଲାଳା ଶବ୍ଦଜ) ମୁଖାମୃତ, ଝେପ ।

ଲାଳନ, ବି. ନ. (ଲାଲ୍-ଅନ) ସ୍ନେହର ସହିତ ପାଳନ, ଅତିଶୟ ଯତ୍ନର ସହିତ ପାଳନ ।

ଲାଳସା, ବି. ସ୍ତ୍ରୀ. (ଲସ୍-ଅ-ଆ) ଲିପ୍ସା; ଆଶା; ଔତ୍ସୁକ୍ୟ; ସ୍ପୃହା; ଚଞ୍ଚଳତା ।

ଲାଳିତ, ବିଂ. (ଲାଳ-ତ) ପ୍ରତିପାଳିତ ।

ଲାଳିତ୍ୟ, ବି. ନ. ( ଲଳିତ-ଯ ) କୋମଳତା, ସୌନ୍ଦର୍ଯ୍ୟ, ମଧୁରତା ।

ଲାବଣ, ବିଂ. ( ଲବଣ-ଅ ) ଲବଣମିଶ୍ରିତ; ଲବଣଯୁକ୍ତ, ଲବଣସମ୍ବନ୍ଧୀୟ ।

ଲାବଣିକ, ବି. ପୁଂ. ( ଲବଣ-ଇକ ) ଲବଣ-ବିକ୍ରେତା । ବିଂ. ଲବଣମିଶ୍ରିତ; ଲବଣସମ୍ବନ୍ଧୀୟ ।

ଲାବଣ୍ୟ, ବି. ନ. (ଲବଣ-ଯ) ଲବଣତ୍ୱ; ଦୀପ୍ତି; ସୌନ୍ଦର୍ଯ୍ୟ, କାନ୍ତି, ଚାକଚକ୍ୟ ।

ଲାସ୍ୟ, ବି. ନ. ( ଲସ୍-ଯ ) ନୃତ୍ୟ, ନାଚ; ସ୍ତ୍ରୀଲୋକର ନୃତ୍ୟ । ଯଥା—

ଘୁଙ୍ଗୁର ତପଳା ଲାସ୍ୟେ ନରତେ ଉର୍ବୀର ।

ଲାହ, ବି. (ଲାକ୍ଷା ଶବ୍ଦଜ) ଲାକ୍ଷା, ଲା, ଜଉ ।

ଲିଆ, ବି. (ଲାଜ୍ ଧାତୁଜ) ଖଇ ।

ଲିଖନ, ବି. ନ. (ଲିଖ୍-ଅନ) ଲେଖନ; ଅକ୍ଷର-ବିନ୍ୟାସ; ଚିତ୍ରକରଣ; ଲିପି, ପତ୍ର, ଚିଠି ।

ଲିଖିତ, ବିଂ. (ଲିଖ୍-ତ) ପଦାର୍ଥ, ଯାହା ଲେଖା ହୋଇଅଛି; ଚିତ୍ରିତ; ଅଙ୍କିତ ।

ଲିଙ୍ଗ, ବି. ନ. ( ଲିନ୍‌ଗ୍-ଅ ) ଚିହ୍ନ; ହେତୁ; କାରଣ; ଉପସ୍ଥ; ସୂଚକ; ଶିବମୂର୍ତ୍ତିବିଶେଷ; ଅନୁ[illegible] ଅନୁମାନସାଧନ; ପ୍ରକୃତି; ସାମର୍ଥ୍ୟ; ଅର୍ଥପ୍ରକାଶ[illegible]ଶକ୍ତି ।

ଲିଙ୍ଗବୃତ୍ତି, ବି. ପୁଂ. ( ଲିଙ୍ଗ-ବୃତ୍ତି ) ଜୀବିକା-ନିମିତ୍ତ ଜଟାଦି ଚିହ୍ନଧାରୀ, [illegible] କପଟ-ସନ୍ନ୍ୟାସୀ ।

ଲିଙ୍ଗରାଜ, ବି. ପୁଂ. ( ଲିଙ୍ଗ-ରାଜ ) ପୁରୀ-କକ୍ଷାନ୍ତର୍ଗତ ପ୍ରସିଦ୍ଧ ଶିବଲିଙ୍ଗବିଶେଷ ।

ଲିପି, ଲିପୀ, ବି. ସ୍ତ୍ରୀ. (ଲିପ୍-ଇ) ଲିଖିତ ପଦାର୍ଥ; ଲେଖନ, ଅକ୍ଷରବିନ୍ୟାସ; ଚିତ୍ରକରଣ; ଚିଠି, ପତ୍ର ।

ଲିପିକର, ଲିପିକାର, ବି. ପୁଂ. (ଲିପି-କର, କାର) ଲେଖକ; ଚିତ୍ରକର ।

ଲିପିବଦ୍ଧ, ବିଂ. (ଲିପି-ବଦ୍ଧ) ଅକ୍ଷରଦ୍ୱାରା ବିନ୍ୟସ୍ତ, ଲିଖିତ ।

ଲିପିବା, କ୍ରି. (ଲିପ୍ ଧାତୁଜ) ଲେପନ କରିବା ।

ଲିପ୍ତ, ବିଂ. (ଲିପ୍-ତ) ଚର୍ଚ୍ଚିତ; ବିଶକ୍ତ; ମିଳିତ; ଭକ୍ଷିତ । ବି. ପୁଂ. ସୂକ୍ଷ୍ମ କାଳାଂଶବିଶେଷ ।

ଲିପ୍ତପାଦ, ବିଂ. ଯେ ସକଳ ଜୀବର ଅଙ୍ଗୁଳି ଚର୍ମଦ୍ୱାରା ଲିପ୍ତ, ଯଥା—ହଂସାଦି ।

ଲିପ୍ସା, ବି. ସ୍ତ୍ରୀ. (ଲଭ୍-ସନ୍-ଅ-ଆ, ଲଭ=ଲିପ) ଲାଭେଚ୍ଛା, ସ୍ପୃହା; ବାଞ୍ଛା; କାମନା, ବାସନା; ଲୋଭ ।

ଲିପ୍ସୁ, ବିଂ. ( ଲଭ୍-ସନ୍-ଉ ) ଲାଭେଚ୍ଛୁ, ଗୃଧ୍ନୁ, ଲୋଭୀ; କାମୀ ।

ଲିଭିବା, କ୍ରି. ( ନିର୍ବାପିତ ଶବ୍ଦଜ ) ନିର୍ବାପିତ ହେବା । ଯଥା—

> ଲିଭିବ ଏଥି ମୋର ଜୀବନ-ଦୀପ,
> ଏ ବାରତା ନ ଯିବ ଜନ ସମୀପ । କ. ବ.

ଲିମ୍ପଟ, ବି. ପୁଂ. (ଲିପ୍-ଅଟ) ଲମ୍ପଟ, କାମୁକ ।

ଲିମ୍ବ, ବି. (ଦେଶଜ) ବୃକ୍ଷବିଶେଷ ।

ଲୀନ, ବିଂ. (ଲୀ-ତ) ନିମଜ୍ଜିତ; ଲୟପ୍ରାପ୍ତ, ମିଳିତ; ମଗ୍ନ; ଆସକ୍ତ ।

ଲୀଳା, ବି. ସ୍ତ୍ରୀ. ( ଲୀ-୦ ) ଭଙ୍ଗୀ, ବିନ[illegible] ଶୋଭା; କ୍ରୀଡ଼ା; କେଳି; [illegible] ଶୃଙ୍ଗାରାର୍ଥ ଚେଷ୍ଟାବିଶେଷ; ଅଙ୍ଗ[illegible]

ଲୀଳାଖେଳ, ବିଂ. ବିଳାସପ୍ରିୟ[illegible]; କ୍ରୀଡ଼ାଶୀଳ ।

ଲୀଳାବ[illegible] (ଲୀଳା-ବତ୍-ଈ) ବିଳାସବତୀ ସ୍ତ୍ରୀ; ଭା[illegible]ଚାର୍ଯ୍ୟଙ୍କ କନ୍ୟା; ଅଙ୍କଶାସ୍ତ୍ରବିଶେଷ; ଏହି ଆଚାର୍ଯ୍ୟଙ୍କ ନ୍ୟାୟଶାସ୍ତ୍ରର ଗ୍ରନ୍ଥବିଶେଷ ।

ଲୁକ୍କାୟିତ, ବିଂ. (ଲୁକ୍-କାୟ୍-ତ) ଗୁପ୍ତ, ଅନ୍ତର୍ହିତ; ଅଦୃଷ୍ଟ; ପ୍ରଚ୍ଛନ୍ନ ।

ଲୁଗା, ବି. (ଲଗ୍ନ ଶବ୍ଦଜ) ବସ୍ତ୍ର, ବାସ ।

ଲୁଙ୍ଗୁର, ବି. (ଦେଶଜ) ବୃକ୍ଷବିଶେଷ; ଲମ୍ପଟବିଶେଷ ।

ଲୁଚାଇବାର, କ୍ରି. ( ଲୁଚ୍ ଧାତୁଜ ) ଘୋଡାଇ ରଖିବା, ଗୁପ୍ତ ରଖିବା ।

ଲୁଚାଏ, ବି. (ଦେଶଜ) ଘୁଡାଏ, କେତେକ ।

ଲୁଚି, ବି. (ଦେଶଜ) ଗୋଧୂମଚୂର୍ଣ୍ଣର ଘୃତପକ୍ୱ ପିଷ୍ଟକବିଶେଷ ।

ଲୁଚିବା, କ୍ରି. (ଲୁକ୍କାୟିତ ଶବ୍ଦଜ) ଛପିରହିବା । ଯଥା—

> ଅନ୍ତରୀକ୍ଷେ ଲୁଚି ରହିଲେ ମାନହେତେ ରଥେ । ଚ. ଘ.

ଲୁଚ୍ଛିତ, ବିଂ. (ଲୁନ୍ଚ୍-ତ) ଛିନ୍ନ; ପରିତ୍ୟକ୍ତ; ଦୂରୀକୃତ; ଭଗ୍ନ ।

ଲୁଟ, ବି. (ଚୌର୍ଯ୍ୟାର୍ଥ ଲୁଟ୍ ଧାତୁଜ) ବଳପୂର୍ବକ ଅପହରଣ ।

ଲୁଟିବା, କ୍ରି. (ଲୁଟ୍ ଧାତୁଜ) ବଳପୂର୍ବକ ହରଣ କରିବା; ଲୁଟ କରିବା । ଯଥା—

> ପତିବ୍ରତାମତିପୁଞ୍ଜିଅଶେଷ ସମୂଳ କରି ଲୁଟିଲା । ବ. ଚ.
> ଲୁଟିଲେ ଯାର କୃପାରେ ମୁକତିଭଣ୍ଡାର ହେ । କୋ. ବ୍ର. ସୁ.

ଲୁଣ, ବି. (ଲବଣ ଶବ୍ଦଜ) ଲବଣ ।

ଲୁଣ୍ଠନ, ବି. ନ. ( ଲୁନ୍ଠ୍-ଅନ ) ଅପହରଣ; ଭୂମିରେ ଲୋଟିବାର ।

ଲୁଣ୍ଡା, ବି. (ଦେଶଜ) [illegible] ଅଣିବା ନିମିତ୍ତ କୁଟା-[illegible]

ଲୁଣ୍ଠି[illegible] (ଲୁନ୍ଠ୍-ତ) ଅପହୃତ; ବଳପୂର୍ବକ ଗୃହୀତ; ଭୂମିରେ ଗଡିବାର ।

ଲୁହ, ବି. (ଲୋତକ ଶବ୍ଦଜ) ଚକ୍ଷୁଜଳ ।

ଲୁହା, ବି. (ଲୌହ ଶବ୍ଦଜ) ଲୌହ, ଧାତୁବିଶେଷ ।

ଲୁପ୍ତ, ବିଂ. (ଲୁପ୍-ତ) ଅନ୍ତର୍ହିତ; ନଷ୍ଟ, ଲୋପପ୍ରାପ୍ତ; ଅଚ୍ଛିନ୍ନ; ଅପହୃତ । ନ. ଅପହୃତ ଧନ, ଚୋର କରିବା ବସ୍ତୁ ।

ଲୁବ୍ଧ, ବି. } ଲୁବ୍ଧକ, ପୁଂ. } ବି. ( ଲୁଭ୍-ତ, କ ) ଲୋଭୀ; କାମୁକ; ବ୍ୟାଧ । ଯଥା—

> ଚିତ୍ତ ଲୁବ୍ଧକ ଲୋଚନ ପ୍ରକାଶି,
> କଟାକ୍ଷରେ କରଣ ବାଣପାଶୀ । ପ୍ରେ. ସୁ.

ଲୁଳିତ, ବିଂ. (ଲୁଲ୍-ତ) ଚଳିତ; ଆନ୍ଦୋଳିତ, କମ୍ପିତ; ଦୋଳିତ; ମର୍ଦ୍ଦିତ; ରମ୍ୟ ।

ଲୂତା, ବି. ସ୍ତ୍ରୀ. (ଲୂ-ତ-ଆ) ମାକଡସା; ପିପୀଲିକା ।

ଲୂନ, ବିଂ. (ଲୂ-ତ) କର୍ତ୍ତିତ, ଛିନ୍ନ । ଯଥା—

ଅନାଘ୍ରାତ ପୁଷ୍ପ ଅନଙ୍ଗୁଳିଲୂନ କଣ୍ଟକସ୍ଥ ପ୍ରାପ୍ତେ ତନୁ ।
ପ. ଲେ.

ଲୂମ, ବି. ପୁଂ. (ଲୂ-ମ) ଲାଙ୍ଗୁଳ, ପୁଚ୍ଛ, ଲାଞ୍ଜ ।

ଲୂମବିଷ, ବି. ପୁଂ. (ଲୂମ-ବିଷ) ଯେଉଁ ପ୍ରାଣୀମାନଙ୍କ ଲାଙ୍ଗୁଳରେ ବିଷ ଅଛି, ବିଛା ପ୍ରଭୃତି ।

ଲେଉଟାଇବା, କ୍ରି. ( ଦେଶଜ ) ଉଲଟାଇବା, ଫେରାଇବା । ଯଥା—

ଲେଉଟାଇଲେ ରଥ ଅଥର୍ବମନେ । ବ. ବ.

ଲେଉ, ବି. ମଣ୍ଡ ।

ଲେଖ, ବି. ପୁଂ. (ଲିଖ୍-ଅ) ଲିପି, ପତ୍ର, ଚିଠି, ଲିଖନ; ଦେବତା । ସ୍ତ୍ରୀ-ସ୍ତ୍ରୀ. ଲେଖା, ଲିଖନ, ଚିତ୍ରକରଣ; ଚିହ୍ନ; ଶ୍ରେଣୀ; ଲିପି; ସ୍ଥଳୀ। ବିଂ. ଲେଖନୀୟ ।

ଲେଖକ, ବି. ପୁଂ. ( ଲିଖ୍-ଅକ ) ଲିପିକର; ଚିତ୍ରକାରକ ।

ଲେଖନ, ବି. ନ. (ଲିଖ୍-ଅନ) ଲିଖନ, ଲେଖା, ଅକ୍ଷରବିନ୍ୟାସ; ଚି[illegible]ରଣ; ତାଳପତ୍ରରେ ଲେଖିବାର ଲୌହକଲମ, [illegible]ନୀ-ସ୍ତ୍ରୀ. କଲମ; ତୂଳି ।

ଲେଖନିକ, ବି. ପୁଂ. (ଲେଖନ-ଇକ) ପତ୍ରବାହକ, ଲେଖହାରକ; ଯେ ସ୍ୱୀୟ ହସ୍ତେ ଲେଖେ; ଯେ ଅନ୍ୟ ହସ୍ତରେ ଲେଖାଇ ସ୍ୱୟଂ କୌଣସି ଚିହ୍ନ-ଦ୍ୱାରା ତାହାର ସ୍ୱାକ୍ଷର କରେ । ବିଂ. ଲିପିକର; ଚିତ୍ରକର ।

ଲେଖନୀୟ, ବିଂ. ( ଲିଖ୍-ଅନୀୟ ) ଲିଖିତବ୍ୟ, ଲିଖନଯୋଗ୍ୟ, ଲେଖିବାର ଉପଯୁକ୍ତ ।

ଲେଖିତ, ବିଂ. ( ଲିଖ୍-ତ ) ଯାହା ଲେଖା ହୋଇଅଛି, ଲିପିବଦ୍ଧ ଚିତ୍ରିତ, ଅଙ୍କିତ ।

ଲେଖ୍ୟ, ବି. ନ. (ଲିଖ୍-ଯ) ଅକ୍ଷର; ଲେଖିତ; ସମ୍ବାଦ ବା ଚିତ୍ରବାଦ; ପଟ୍ଟ; ଦଲିଲ ଦସ୍ତାବିଜ । ବିଂ. ଲେଖନୀୟ, ଲିଖନଯୋଗ୍ୟ ।

ଲେଙ୍ଗଡା, ବିଂ. (ଦେଶଜ) ଛୋଟା ।

ଲେଞ୍ଚଡ଼ା, ବି. (ଦେଶଜ) ଅଳଅ, ଝାଙ୍କୁଅ । ବିଂ. ଅଲୁଅ ।

ଲେଟରା, ବି. (ଦେଶଜ) ଚକ୍ଷୁମଳ, ଅକ୍ଷିମଳ ।

ଲେପ, ବି. ପୁଂ. (ଲିପ୍-ଅ) ଲେପନ; ପ୍ରଲେପ; ଲେପନସାମଗ୍ରୀ, ଭକ୍ଷ୍ୟ ଦ୍ରବ୍ୟ; ବିଲେପନ; ଚୂନ; ଶ୍ଳେଷକ ।

ଲେପକ, ବିଂ. ( ଲିପ୍-ଅକ ) ଲେପକର୍ତ୍ତା, ଲେପନକାରକ । ବି. ପୁଂ. ରାଜମିସ୍ତ୍ରୀ ।

ଲେପନ, ବି. ନ. ( ଲିପ୍-ଅନ ) ବିଲେପନ, ଲେପିବା ।

ଲେପ୍ୟ, ବିଂ. (ଲିପ୍-ଯ) ଲେପନଯୋଗ୍ୟ ।

ଲେମ୍ବୁ, ବି. (ଦେଶଜ) ଅମ୍ଳଫଳବିଶେଷ ।

ଲେଶ, ବି. ପୁଂ. (ଲିଶ୍-ଅ) ବିନ୍ଦୁ; ଅଳ୍ପ, କିଞ୍ଚିତ୍; ଶ୍ଳେଷ ।

ଲେଶିବା, କ୍ରି. (ଦେଶଜ) ଲେପିବା ।

ଲେହ, ବି. ପୁଂ. (ଲିହ୍-ଅ) ଲେହନ, ଆସ୍ୱାଦନ, ଚାଟିବା; ଭକ୍ଷଣ । ବିଂ. ଆସ୍ୱାଦ୍ୟ, ଭକ୍ଷ, ଖାଦ୍ୟ ।

ଲେହନ, ବି. ନ. (ଲିହ୍-ଅନ) ଜିହ୍ୱାଦ୍ୱାରା ରସ ଗ୍ରହଣ, ଆସ୍ୱାଦନ, ଚାଟିବା; ଭକ୍ଷଣ ।

ଲେହୀ, ବିଂ. ( ଲିହ୍-ଇନ୍ ) ଆସ୍ୱାଦନକାରୀ, ଲେହନକାରୀ ।

[illegible] (ଲିହ୍-ଯ) ଲେହନୀୟ, ଆସ୍ୱାଦ୍ୟ । ବି. [illegible] ।

ଲୈଙ୍ଗ, ବି. ନ. [illegible]-ଅ ) [illegible]ଙ୍ଗପୁରାଣ । ବିଂ. ଲିଙ୍ଗସମ୍ପର୍କୀୟ ।

ଲୋକ, ବି. ପୁଂ. (ଲୋକ୍-ଅ) [illegible]; ଭୁବନ, ଜଗତ୍; ସ୍ୱର୍ଗ; ମର୍ତ୍ତ୍ୟ; ପାତାଳ; ଭୂଃ, ଭୁବଃ, ସ୍ୱଃ, ମହଃ, ଜନଃ, ତପଃ, ସତ୍ୟଂ ଏ ସପ୍ତଲୋକ; ଦୃଷ୍ଟି; ସମୂହ ।

ଲୋକଚକ୍ଷୁଃ, ଲୋକଲୋଚନ, ବି. ପୁଂ. (ଲୋକ-ଚକ୍ଷୁସ୍, ଲୋଚନ) ଦିବାକର, ସୂର୍ଯ୍ୟ ।

ଲୋକଜିତ୍, ବି. ପୁଂ. (ଲୋକ-ଜିତ୍) ବୁଦ୍ଧଦେବ ।

ଲୋକନ, ବି. ନ. (ଲୋକ୍-ଅନ) ଅବଲୋକନ, ଦର୍ଶନ, ଦେଖିବା, ଦୃଷ୍ଟି କରିବା ।

ଲୋକନାଥ, ବ. ପୁଂ. (ଲୋକ-ନାଥ) ବ୍ରହ୍ମା; ବିଷ୍ଣୁ; ଶିବ; ରାଜା ।

ଲୋକପାଳ, ବ. ପୁଂ. (ଲୋକ-ପାଳ) ନୃପ, ରାଜା; ଅଷ୍ଟଦିଗପାଳ—ଇନ୍ଦ୍ର, ଅଗ୍ନି, ଯମ, ବରୁଣ, ନୈର୍ଋତ, ବାୟୁ, କୁବେର, ଶିବ ।

ଲୋକପ୍ରବାଦ, ଲୋକବାଦ, ବ. ପୁଂ. (ଲୋକ-ପ୍ରବାଦ, ବାଦ) କିମ୍ବଦନ୍ତୀ; ଜନଶ୍ରୁତି; ଯାହା ସଚରାଚର ଲୋକେ କହନ୍ତି ।

ଲୋକବାନ୍ଧବ, ବ. ପୁଂ. (ଲୋକ-ବାନ୍ଧବ) ସୂର୍ଯ୍ୟ; ଦିବାକର ।

ଲୋକମାତା, ବ. ସ୍ତ୍ରୀ. (ଲୋକ-ମାତୃ) ଲକ୍ଷ୍ମୀ, କମଳା ।

ଲୋକଯାତ୍ରା, ବ. ସ୍ତ୍ରୀ. (ଲୋକ-ଯାତ୍ରା) ସଂସାର । ଯାତ୍ରା; ଜୀବନ ।

ଲୋକରଞ୍ଜନ, ବ. ନ. (ଲୋକ-ରଞ୍ଜନ) ଲୋକର ପ୍ରୀତି ସମ୍ପାଦନ, ଲୋକଙ୍କୁ ସନ୍ତୁଷ୍ଟ କରିବା ।

ଲୋକାନ୍ତର, ବ. ନ. ( ଲୋକ-ଅନ୍ତର ) ପରଲୋକ, ଅନ୍ୟଲୋକ; ସ୍ୱର୍ଗ ।

ଲୋକାନ୍ତରିତ, ବ. (ଲୋକାନ୍ତର-ଇତ) ପରଲୋକଗତ, ମୃତ ।

ଲୋକାରଣ୍ୟ, ବ. ନ. (ଲୋକ-[illegible]) ସମୂହ, ଜନତା ।

ଲୋକାଲୋକ, ବ. [illegible] (ଲୋକ-ଅଲୋକ) [illegible] ପର୍ବତବିଶେଷ ।

ଲୋକେଶ, [illegible] ପୁଂ. (ଲୋକ-ଈଶ) ବ୍ରହ୍ମା ।

ଲୋକୋତ୍ତର, ବଂ. (ଲୋକ-ଉତ୍ତର) ଅଲୌକିକ, ଲୋକାତୀତ, ଅସାମାନ୍ୟ; ଅସାଧାରଣ ।

ଲୋଚ, ବ. ନ. ( ଲୋଚ୍-ଅ ) ଅଶ୍ରୁ, ରୋଦନବାରି ।

ଲୋଚକ, ବ. ପୁଂ. (ଲୋଚ୍-ଅକ) ଚକ୍ଷୁତାରା; କଜ୍ଜଳ; ମାଂସପିଣ୍ଡ; ସ୍ତ୍ରୀମାନଙ୍କର ଲଲାଟଭୂଷଣ; ନିର୍ମୋକ; ଭ୍ରୂଭଙ୍ଗ; ଜରୁକିତା; ନୀଳବସ୍ତ୍ର; କର୍ଣ୍ଣଭୂଷଣ; କଦଳୀ; ଭ୍ରୂ କୃଷ୍ଣଚର୍ମ ।

ଲୋଚନ, ବ. ନ. (ଲୋଚ୍-ଅନ) ନୟନ, ଚକ୍ଷୁ, ଦର୍ଶନ; ଆଲୋଚନା । ପୁଂ. ସୂର୍ଯ୍ୟ । ସ୍ତ୍ରୀ. ବୁଦ୍ଧିଶକ୍ତିଭେଦ ।

ଲୋଚା, ବ. (ଦେଶଜ) ଲମ୍ପଟ, କାମୁକ ।

ଲୋଟା, ବ. (ଦେଶଜ) ଢାଳ, ଜଳପାତ୍ରବିଶେଷ ।

ଲୋଟିବା, କ୍ରି. (ଲୁଣ୍ଠନ ଶବ୍ଦଜ) ଗଡ଼ିବା । ଯଥା–

ମୂର୍ଚ୍ଛେ କର ମାର ବିଧିକ ଧିକାର ଧରରେ ଲୋଟିଲେ ଧନା ।

ଲୋଡ଼ା, ବଂ. (ଦେଶଜ) ପ୍ରୟୋଜନୀୟ । ଯଥା—

ଏବାଳେ ସାହସ ତୋର ଲୋଡ଼ା ଅବଶ୍ୟ ।.ବ. ବ.

ଲୋଡ଼ିବା, କ୍ରି. (ଦେଶଜ) ଖୋଜିବା ।

ଲୋଧ, ଲୋଧ୍ର, ବ. ପୁଂ. ( ରୁଧ୍-ଅ, ର ) ଶ୍ୱେତବର୍ଣ୍ଣ ବୃକ୍ଷବିଶେଷ ।

ଲୋପ, ବ. ପୁଂ. (ଲୁପ୍-ଅ) ଅପଚୟ, ଭ୍ରଂଶ, ନାଶ; ଛେଦନ; ଅଭାବ, ତିରୋଧାନ, ଅନ୍ତର୍ଦ୍ଧାନ; ଅଦର୍ଶନ ।

ଲୋପାମୁଦ୍ରା, ବ. ସ୍ତ୍ରୀ. (ଲୋପ-ଅମୁଦ୍ରା) ଅଗସ୍ତ୍ୟ ପତ୍ନୀ ।

ଲୋଭ, [illegible] ପୁଂ. ([illegible]-ଅ) ସ୍ପୃହା, ଆକାଂକ୍ଷା, [illegible] ଧନର ଅଭିଳାଷ ।

[illegible] ବଂ. (ଲୁଭ୍-ଅନୀୟ) ଲୋଭଜନକ, ସ୍ପୃହଣୀୟ; କାଙ୍କ୍ଷ୍ୟ; ପ୍ରାର୍ଥ୍ୟ ।

ଲୋଭୀ, ବଂ. (ଲୋଭ-ଇନ୍) ଲୋଭବିଶିଷ୍ଟ, ଲୋଲୁପ, ଲୁବ୍ଧ ।

ଲୋଭ୍ୟ, ବଂ. (ଲୁଭ୍-ଯ) ଲୋଭନୀୟ; ଲୋଭିତ ।

ଲୋମ, ବ. ପୁଂ. (ଲୂ-ମନ୍) ଶରୀରଜାତ କେଶ । ନ. ପୁଚ୍ଛ, ଲାଞ୍ଜ ।

ଲୋମକର୍ଣ୍ଣ, ବ. ପୁଂ. (ଲୋମନ୍-କର୍ଣ୍ଣ) ଶଶକ; ଠେକୁଆ । ବଂ. ଲୋମଯୁକ୍ତ କର୍ଣ୍ଣବିଶିଷ୍ଟ ।

ଲୋମକୂପ, ବ. ପୁଂ. (ଲୋମ-କୂପ) ରୋମାଧାର; ରନ୍ଧ୍ର ଆକାର ଗର୍ତ୍ତ ।

ଲୋମଜ, ବଂ. ( ଲୋମନ୍-ଜ ) ପଶମୀ ଲୁଗା ପ୍ରଭୃତି ।

ଲୋମପାଦ, ବ. ପୁଂ. ଅଙ୍ଗଦେଶୀୟ ନରପତିବିଶେଷ, ଋଷ୍ୟଶୃଙ୍ଗ ମୁନିଙ୍କ ଶ୍ୱଶୁର ।

ଲୋମଶ, ବଂ. (ଲୋମନ୍-ଶ) ଲୋମବିଶିଷ୍ଟ । ବ. ପୁଂ. ମୁନିବିଶେଷ; ମେଷ ।

ଲୋମହର୍ଷଣ, ବ. ନ. (ଲୋମ-ହର୍ଷଣ) ରୋମାଞ୍ଚ । ପୁଂ. ପୁରାଣବକ୍ତା ମୁନିବିଶେଷ; ସୂତ ।

ଲୋମାଞ୍ଚ, ବ. ପୁଂ. (ରୋମନ୍-ଅନ୍ଚ-ଅ) ରୋମାଞ୍ଚ, ପୁଲକ, ରୋମୋଦ୍ଗମ ।

ଲୋଲ, ବଂ. (ଲୋଡ୍-ଅ) ଚଞ୍ଚଳ; ଚଳିତ; ଇଚ୍ଛୁକ । ଯଥା—

କାଦମ୍ବିନୀ ଶେଷେ ଗଗନେ ଧୀରସମୀର ଲୋଲା । ଚ. ଚ.

ଲୋଲାୟମାନ, ବଂ. ( ଲୋଲ-ଅୟ-ଶାନ ) ଦୋଳାୟମାନ ।

ଲୋଲିତ, ବଂ. (ଲୁଲ୍-ଇ-ତ) ଚଳିତ,ଚଞ୍ଚଳ, କମ୍ପମାନ; ଶ୍ଲଥ ।

ଲୋଲୁପ, ଲୋଲୁଭ, ବ. ପୁଂ. (ଲୁପ୍,ଲୁଭ୍-ଅ) ଅତିଲୋଭୀ; ଅଭିଳାଷୀ, ଇଚ୍ଛୁକ, ଆସକ୍ତ ।

ଲୋଷ୍ଟ୍ର, ବ. ପୁଂ. ନ. (ଲୋଷ୍ଟ୍-ର) ଟେକା, ଢେଲା ।

ଲୋହ, ବ. ପୁଂ. ନ. (ଲୁ-ହ) ଲୌହ; ଲୁହା; ଅସ୍ତ୍ରବିଶେଷ; ଧାତୁ; ଶୋଣିତ [illegible]ବ୍ତ; ରକ୍ତ-ଚନ୍ଦନ । ନ. ଅଗରୁ ।

ଲୋହକାନ୍ତ, ବ. ନ. (ଲୋହ-କା[illegible] ମଣି, ଚୁମ୍ବକ ପଥର ।

ଲୋହକାର, ବ. ପୁଂ. (ଲୋହ-କାର) କର୍ମକାର, କମାର ।

ଲୋହପୃଷ୍ଠ, ବ. ପୁଂ. (ଲୋହ-ପୃଷ୍ଠ) ପକ୍ଷିବିଶେଷ, କଙ୍କପକ୍ଷୀ ।

ଲୋହମୟ, ବଂ. (ଲୋହ-ମୟ) ଲୌହଦ୍ୱାରା ପ୍ରସ୍ତୁତ, ଲୌହନିର୍ମିତ ।

ଲୋହା, ବ. (ଦେଶଜ) ଲୌହନିର୍ମିତ ବସ୍ତ୍ର-ବିଶେଷ ।

ଲୋହିତ, ବଂ. (ରୁହ୍-ଇତ, ରୁ=ଲୁ) ରକ୍ତବର୍ଣ୍ଣ-ଯୁକ୍ତ । ବ. ପୁଂ. ରକ୍ତବର୍ଣ୍ଣ; ମୟୂର; ରକ୍ତାକ୍ତ; ମଙ୍ଗଳଗ୍ରହ; ରୋହିମାଛ; ମୃଗବିଶେଷ; ସର୍ପ । ନ. ଶୋଣିତ; ଯବ; ରୁଧିର; କୁଙ୍କୁମ; ରକ୍ତ-ଚନ୍ଦନ ।

ଲୋହିତକ, ବ. ପୁଂ. (ଲୋହିତ-କ) ମଙ୍ଗଳଗ୍ରହ; ପଦ୍ମରାଗମଣି । ନ. ପିତ୍ତଳ ।

ଲୋହିତଚନ୍ଦନ, ବ. ନ. (ଲୋହିତ-ଚନ୍ଦନ) ରକ୍ତଚନ୍ଦନ; କୁଙ୍କୁମ ।

ଲୋହିତାକ୍ଷ, ବ. ପୁଂ. (ଲୋହିତ-ଅକ୍ଷି) ବିଷ୍ଣୁ; କୋକିଳ । ବଂ. ଯାହାର ଚକ୍ଷୁ ରକ୍ତବର୍ଣ୍ଣ ।

ଲୋହିତାଙ୍ଗ, ବ. ପୁଂ. ( ଲୋହିତ-ଅଙ୍ଗ ) ମଙ୍ଗଳଗ୍ରହ ।

ଲୌକିକ, ବଂ. (ଲୋକ-ଇକ) ଲୋକସମ୍ବନ୍ଧୀୟ, ମାନୁଷିକ; ପାର୍ଥିବ; ସାଂସାରିକ ।

ଲୌଲ୍ୟ, ବ. ନ. (ଲୋଲ-ଯ) ଚଞ୍ଚଳତା, ସ୍ପୃହା; ଲୋଭ, କାମନା; ଚପଳତା; (ଲାଳିତ୍ୟ ଶବ୍ଦ-ଜରେ) କୋମଳତା; ସୁରସତା; ରମ୍ୟତା । ଯଥା—

ଲଲିତ ଲୌଲ୍ୟରେ ହାର ଶାର ବନେ ଗଲା । ବ. ଚ.

ଲୌହ, ବ. ପୁଂ. ନ. (ଲୋହ-ଅ) ଧାତୁବିଶେଷ, ଲୋହା । ବଂ. ଲୌହନିର୍ମିତ ।

ଲୌହବର୍ତ୍ମ, ବ. ନ. (ଲୌହ-ବର୍ତ୍ମନ) ଲୌହ-ନିର୍ମିତ ପଥ, ରେଲୱେ ।

ଲୌହଭାଣ୍ଡ, ବ. ପୁଂ. (ଲୌହ-ଭାଣ୍ଡ) ହେମାମ-ଦସ୍ତା । ନ. ଲୌହନିର୍ମିତ ଭାଣ୍ଡ ।

ଲୌ[illegible] ନ. (ଲୋହିତ-ଯ) ରକ୍ତବର୍ଣ୍ଣ । ପୁଂ. [illegible] ନଦୀ; ରତ୍ନସମୁଦ୍ର ।

---

# ବ

ବ, ( ଅନ୍ତଃସ୍ଥ-ଦନ୍ତୌଷ୍ଠ୍ୟ ) ବ୍ୟଞ୍ଜନବର୍ଣ୍ଣର ଊନତ୍ରିଂଶ ବର୍ଣ୍ଣ । ବ. ପୁଂ. (ବା=ବଧ କରିବା -ଅ ) ବାୟୁ; ବରୁଣ; ବାହୁ; ବରୁଣାଳୟ; ବକ୍ଷଃସ୍ଥଳ; ସାନ୍ତ୍ୱନା । ନ. ମନ୍ତ୍ରବିଶେଷ;ବସନ । ଅଂ. ସାଦୃଶ୍ୟ ।

ବଂଶ, ବ. ପୁଂ. (ବମ୍-ଶ) କୁଳ, ଗୋତ୍ର; ଏକ ଗୋତ୍ରୋତ୍ପନ୍ନ, ପୂର୍ବପୁରୁଷ ବା ସନ୍ତାନ; (ବନ୍-ଶୀ-ଅ) ବଂଶ; ବାଉଁଶ । ଯଥା—

ବଂଶ ନଳୀରେ ରଖି ଲେଖି ବସନ ଦେଲେ ସୀତାପାଇଁ ଅଣି ।
ବୈ. ଚ.

ସ୍ୱରବିଶେଷ; ପୃଷ୍ଠାସ୍ଥି; ବର୍ଗ; ନାସାବିବର; ଗର୍ବ; ଗୃହର ଊର୍ଦ୍ଧ୍ୱ କାଷ୍ଠ; ପୃଷ୍ଠଦଣ୍ଡ; ଇକ୍ଷୁ; ଶାଳବୃକ୍ଷ ।

ବଂଶକ, ବ. ପୁଂ. ( ବଂଶ-ଝକ ) ମତ୍ସ୍ୟବିଶେଷ; ଇକ୍ଷୁବିଶେଷ । ନ. ଅଗୁରୁଚନ୍ଦନ ।

ବଂଶକ୍ଷୀରୀ, ବ. ସ୍ତ୍ରୀ. (ବଂଶ-କ୍ଷୀର) ବଂଶଲୋଚନା ।

ବଂଶଜ, ବିଂ. ( ବଂଶ-ଜନ୍-ଅ ) ସଦ୍‌ବଂଶଜାତ, ସତ୍‌କୁଳୋତ୍ପନ୍ନ । ପୁଂ. ବେଣୁଯବ । ଜା-ସ୍ତ୍ରୀ- ବଂଶଲୋଚନା ।

ବଂଶଧର, ବିଂ. (ବଂଶ-ଧୃ-ଅ) କୁଳରକ୍ଷକ, ବଂଶ- ପ୍ରବର୍ତ୍ତକ, ବଂଶର ସ୍ଥାପୟିତା; ସନ୍ତାନ ।

ବଂଶନାଳିକା, ବ. ସ୍ତ୍ରୀ. (ବଂଶ-ନାଳ-ଇକ-ଆ) ବଂଶୀ ।

ବଂଶପତ୍ରକ, ବ. ପୁଂ. ( ବଂଶ-ପତ୍ର-କ ) ବାଁଶ- ପତ୍ରୁଆ ମାଛ; ନଳ । ନ. ହରିତାଳ ।

ବଂଶପୁଷ୍ପା, ବ. ସ୍ତ୍ରୀ. ସହଦେବୀ ଲତା ।

ବଂଶପୂରକ, ବ. ନ. ଇକ୍ଷୁମୂଳ ।

ବଂଶମର୍ଯ୍ୟାଦା, ବ. ସ୍ତ୍ରୀ. କୁଳର୍ [illegible] ମର୍ଯ୍ୟାଦା; ଜାତଦର ଉ[illegible] ।

ବଂଶରୋଚନା, ବଂଶଲୋଚନା, ବଂଶଶର୍କରା, ସ୍ତ୍ରୀ. (ବଂଶ-ରୁଚ୍-ଅନ-ଆ) ବାଉଁଶ ପଗର ଅଭ୍ୟନ୍ତ- ରୋତ୍ପନ୍ନ ଶ୍ୱେତବର୍ଣ୍ଣ ଔଷଧ ବିଶେଷ, ବଂଶଲୋଚନ ।

ବଂଶସ୍ଥ, ବ. ନ. (ବଂଶ-ସ୍ଥା-ଅ) ଛନ୍ଦୋବିଶେଷ । ବିଂ. ବଂଶରେ ସ୍ଥିତ ।

ବଂଶାଗ୍ର, ନ. ବଂଶାଙ୍କୁର, ପୁଂ. ବ. ( ବଂଶ-ଅଗ୍ର, ଅଙ୍କୁର ) ବାଉଁଶ ଗଜା ।

ବଂଶାନୁଚରିତ, ବ. ନ. ( ବଂଶ-ଅନୁ-ଚରିତ ) ବଂଶର ଚରିତ ବର୍ଣ୍ଣନ; ପୁରାଣରେ ପଞ୍ଚ- ଲକ୍ଷଣାନ୍ତର୍ଗତ ଲକ୍ଷଣବିଶେଷ ।

ବଂଶାବଳୀ, ବ. ସ୍ତ୍ରୀ. (ବଂଶ-ଅବଳୀ) ପୂର୍ବପୁରୁଷ- ମାନଙ୍କର ନାମାବଳୀ ।

ବଂଶିକ, ବ. ନ. ( ବଂଶ-ଇକ ) ଅଗୁରୁ । ବିଂ. ବଂଶୋତ୍ପନ୍ନ । ଜା-ସ୍ତ୍ରୀ. ମୁରଲୀ, ବେଣୁ, ବଂଶୀ ।

ବଂଶୀ, ବ. ସ୍ତ୍ରୀ. (ବଂଶ-ଈ) ବେଣୁ, ମୁରଲୀ ।

ବଂଶୀଧର, ବ. ପୁଂ. (ବଂଶୀ-ଧୃ-ଅ) କୃଷ୍ଣ, ବଂଶୀଧାରୀ ।

ବଂଶୀୟ, ବଂଶ୍ୟ, ବିଂ. (ବଂଶ-ଈୟ, ଯ) ବଂଶୋଦ୍ଭବ; ସଦ୍‌ବଂଶଜାତ; ସମ୍ଭ୍ରାନ୍ତ; ଛଦ୍ମବେଶୀ ।

ବକ, ବ. ପୁଂ. ( ବଚ୍-ଅ ) ଯେ ମତ୍ସ୍ୟଖାଦକ ବୋଲି କଥିତ ହୁଏ; ( ବନ୍କ୍=କୁଟିଳ ହେବା-ଅନ୍-କ ) ଯେ ବକ୍ରଭାବରେ ଗମନ କରେ; ସ୍ୱନାମପ୍ରସିଦ୍ଧ ଜଳଚର ପକ୍ଷିବିଶେଷ, ପୁଷ୍ପବୃକ୍ଷବିଶେଷ, ଗଇଶବୃକ୍ଷ । ଯଥା—

ବକପୁଷ୍ପମାଳା ମାଧବ, ବକସ୍ୱରୂ ଶୃଙ୍ଗଭାରୁ ଝେଲା ଠୁଳ ।
ବୈ. ଚ.

ବକୁଳବୃକ୍ଷ; ଦୈତ୍ୟବିଶେଷ, ବକାସୁର; କୁବେର; ଯନ୍ତ୍ରବିଶେଷ ।

ବକଜିତ୍, ବକନିସୂଦ[illegible], ବକବୈ[illegible] ବ. ପୁଂ. (ବକ-ଜିତ୍, ନିସୂଦନ; [illegible]ବୈରିନ୍) ଭୀମ; କୃଷ୍ଣ ।

ବକପଞ୍ଚ[illegible] [illegible]. କାର୍ତ୍ତିକ ଶୁକ୍ଳପକ୍ଷର ଏକାଦଶୀ- ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଞ୍ଚ ତିଥି ।

ବକମ, ବ. (ଦେଶଜ) ରକ୍ତବର୍ଣ୍ଣ କାଷ୍ଠବିଶେଷ ।

ବକବୃତ୍ତି, ବକବ୍ରତୀ, ବିଂ. ( ବକ-ବୃତ୍ତି, ବ୍ରତ- ଇନ୍ ) ବଞ୍ଚକ, ଶଠ । ବ. ପୁଂ. ଭଣ୍ଡ, ଧୂର୍ତ୍ତ ଓ ସ୍ୱାର୍ଥପର ବ୍ୟକ୍ତି ।

ବକୟା, ବ. (ଯାବନିକ) ଅବଶେଷ, ବାକି ।

ବକଶ, ବ. (ଦେଶଜ) କପାବୃକ୍ଷର ଫଳ ।

ବକଶି, ବିଂ. (ବର୍କଶ ଶବ୍ଦଜ) ଛଗୀ, ସ୍ତ୍ରୀ ଛାଗ ।

ବକାରି, ବ. ପୁଂ. ଶ୍ରୀକୃଷ୍ଣ ।

ବକୁଳ, ବ. ପୁଂ. (ବଚ୍-ଉଳ) ପୁଷ୍ପବୃକ୍ଷବିଶେଷ, ବକୁଳଗଛ ।

ବକେରୁକା, ବ. ସ୍ତ୍ରୀ. (ବକ-ଈର-ଉକ) ବକ- ପଂକ୍ତି, ବଳାକା ।

ବକ୍ତବ୍ୟ, ବିଂ. (ବଚ୍-ତବ୍ୟ) ବଚନୀୟ,କଥନୀୟ, ବୋଲିବାର ଯୋଗ୍ୟ; ନିନ୍ଦନୀୟ । ବି. ନ. କଥନବାଚ୍ୟ; ନିନ୍ଦା ।

ବକ୍ତା, ବିଂ. (ବଚ୍-ତୃ) ବାକ୍‌ପଟୁ, ବକ୍ତୃତାଶକ୍ତିଯୁକ୍ତ ।

ବକ୍ତୃତା, ବି. ସ୍ତ୍ରୀ. ( ବକ୍ତୃ-ତା ) ବାକ୍‌ପଟୁତା, ବାଗ୍‌ବିନ୍ୟାସ ।

ବକ୍ତ୍ର, ବି. ନ. (ବଚ୍-ତ୍ର) ମୁଖ, ଆନନ, ବଦନ, ଆସ୍ୟ ।

ବକ୍ତ୍ରଖୁର, ବି. ପୁଂ. (ବକ୍ତ୍ର-ଖୁର) ଦନ୍ତ ।

ବକ୍ତ୍ରଜ,ବି. ପୁଂ. (ବକ୍ତ୍ର-ଜନ୍-ଅ) ବ୍ରାହ୍ମଣ । ବିଂ. ମୁଖଜାତ ।

ବକ୍ତ୍ରତାଳ, ବି. ନ. ମୁଖବାଦ୍ୟ ।

ବକ୍ତ୍ରଭେଦୀ, ବି. ପୁଂ. (ବକ୍ତ୍ର-ଭେଦନ୍) ତିକ୍ତରସ । ବିଂ. ମୁଖବିଦାରକ ।

ବକ୍ତ୍ରବାସ, ବି. ପୁଂ. (ବକ୍ତ୍ର-ବାସି-ଅ) ନାରଙ୍ଗ; ମୁଖଗନ୍ଧ ।

ବକ୍ର, ବି. ନ. (ବନ୍‌କ୍-ର) ନଦୀର ବାଙ୍କ । ବିଂ. କୁଟିଳ, ବଙ୍କା; କ୍ରୂର; ଶଠ ... ଶନିଗ୍ରହ; ବକ୍ରଗତିବିଶିଷ୍ଟ ଗ୍ରହ; ... ; ରୁଦ୍ର; ତ୍ରିପୁରାସୁର ।

ବକ୍ରକଣ୍ଟ, ବକ୍ରକଣ୍ଟକ, ବି. ପୁଂ. ବଦରବୃକ୍ଷ; କୁଟିଳକଣ୍ଟକ; ଖଦିରବୃକ୍ଷ ।

ବକ୍ରଗ୍ରୀବ, ବି. ପୁଂ. (ବକ୍ର-ଗ୍ରୀବା) ଉଷ୍ଟ୍ର, ଓଟ । ବିଂ. ଯାହାର ଗଳା ବଙ୍କା ।

ବକ୍ରଚଞ୍ଚୁ, ବକ୍ରତୁଣ୍ଡ, ବି. ପୁଂ. ( ବକ୍ର-ଚଞ୍ଚୁ, ତୁଣ୍ଡ) ଶୁକପକ୍ଷୀ ।

ବକ୍ରଦଂଷ୍ଟ୍ର,ବି. ପୁଂ. (ବକ୍ର-ଦଂଷ୍ଟ୍ରା) ଶୂକର,ବରାହ ।

ବକ୍ରନକ୍ର, ବି. ପୁଂ. (ବକ୍ର-ନକ୍ର) ପିଶୁନ, ଖଳ; ଶୁକପକ୍ଷୀ ।

ବକ୍ରନାସିକ, ବି. ପୁଂ. (ବକ୍ର-ନାସିକା) ପେଚକ । ବିଂ. ଯାହାର ନାସିକା ବଙ୍କା ।

ବକ୍ରପୁଚ୍ଛ, ବି. ପୁଂ. ସ୍ତ୍ରୀ. (ବକ୍ର-ପୁଚ୍ଛ) କୁକ୍କୁର ।

ବକ୍ରପୁଷ୍ପ, ବି. ପୁଂ. ବକବୃକ୍ଷ; ପଳାଶବୃକ୍ଷ ।

ବକ୍ରଲାଙ୍ଗୂଳ,ବି. ପୁଂ. (ବକ୍ର-ଲାଙ୍ଗୂଳ) କୁକ୍କୁର । ନ. ବକ୍ରପୁଚ୍ଛ ।

ବକ୍ରବକ୍ତ୍ର, ବି. ପୁଂ. (ବକ୍ର-ବକ୍ତ୍ର) ଶୂକର । ବିଂ. ଯାହାର ମୁଖ ବଙ୍କା ।

ବକ୍ରାଙ୍ଗ, ବି. ପୁଂ. ( ବକ୍ର-ଅଙ୍ଗ ) ହଂସ । ନ. ବଙ୍କା ଅଙ୍ଗ । ବିଂ. କୁଟିଳ ଅବୟବଯୁକ୍ତ ।

ବକ୍ରି, ବିଂ. (ବ-କ୍ରି) ମିଥ୍ୟାବାଦୀ, ଅନୃତଭାଷୀ ।

ବକ୍ରୋକ୍ତି, ବି. ସ୍ତ୍ରୀ. ( ବକ୍ର-ଉକ୍ତି ) ବ୍ୟଙ୍ଗୋକ୍ତି; ଦ୍ୱ୍ୟର୍ଥଉକ୍ତି; କାବ୍ୟର ଅଳଙ୍କାରବିଶେଷ ।

ବକ୍ଷଃ, ବି. ନ. (ବକ୍ଷ-ଅସ୍) ଉରଃସ୍ଥଳ, ହୃଦୟ ।

ବକ୍ଷୋଜ, ବକ୍ଷୋରୁହ, ବି. ପୁଂ. ସ୍ତ୍ରୀ. (ବକ୍ଷସ୍-ଜ, ରୁହ) ସ୍ତନ, ପୟୋଧର ।

ବକ୍ଷ୍ୟମାଣ, ବିଂ. (ବଚ୍-ଆନ) ଯାହା ବୋଲାଯିବ, ବକ୍ତବ୍ୟ ।

ବକ୍‌ଶିଶ୍, (ଯାବନିକ) ଦାନ, ପାରିତୋଷିକ ।

ବଖଉଆ, ବିଂ. (ଦେଶଜ) ହଇରାଣକାରୀ ।

ବଖରା, ବି. (ଦେଶଜ) ବାଣ୍ଟ, ଭାଗ; ଗୃହର ପ୍ରକୋଷ୍ଠ ।

ବଖାଣିବା, କ୍ରି. (ଦେଶଜ) କହିବା । ଯଥା—

ଅନ୍ୟକ୍ଷଣେ ମୋତେ, ଡୋଳ୍‌ଥିଲେ ମୋର, ମୁଦ୍ରପଣ ବଖାଣି
ପ୍ର.ବଗ ।

ବଗ... (ଦେଶଜ) ଜାରଜ; ଅଶ୍ଳୀଳଭାଷୀ ।

ବଗଡ଼ା, ବି. ...ଦେଶଜ) ଫ୍ୟୋଠା । ଯଥା—

ଯାବୁ ମି... ...ଗାଠ ...,
ତାର ବଗଡ଼ା ଭଳେ ... ...ବ.

ବଗଳାମୁଖୀ, ବଗଳା, ବି.ସ୍ତ୍ରୀ. ଦଶ ମହାବିଦ୍ୟାନ୍ତର୍ଗତ ଦେବୀବିଶେଷ ।

ବଗାହ, ବି. ପୁଂ. (ଅବ-ଗାହ୍-ଅ) ଅବଗାହନ, ମାର୍ଜ୍ଜନ, ସ୍ନାନ ।

ବଗିଚ୍ଛ, ବି. (ଯାବନିକ) ଉଦ୍ୟାନ ।

ବଗୀ, ବି. ( ଦେଶଜ ) ଘୋଟକଦ୍ୱାରା ଚାଳିତ ଯାନବିଶେଷ, ଅଶ୍ୱରଥ ।

ବଘାର, ବି. ( ଦେଶଜ ) ବ୍ୟଞ୍ଜନାଦିକ ଘୃତ ମସଲାଦ୍ୱାରା ସୁସ୍ୱାଦ ଓ ସୁବାସିତକରଣ, ଛୁଙ୍କ ।

ବଙ୍କ, ବ. ପୁଂ. (ବକ୍ତ୍-ଅ) ବକ୍ର, ବଙ୍କା ।
ବଂକ୍ଷଣ, ବ. ନ. (ବାକ୍ଷ୍-ଅନ କମ୍ବା ବଙ୍କ-ଅନ) ଊରୁସନ୍ଧି ।
ବଙ୍ଗ, ବଙ୍ଗଳା, ବ. ପୁଂ. (ବକ୍ତ୍-ଅ, ଅଲ୍) ବଙ୍ଗଳା ଦେଶ । ନ. ରଙ୍ଗ; ସୀସକ, ସୀସା ।
ବଙ୍ଗଜ, ବ. ନ. (ବଙ୍ଗ-ଜନ୍-ଅ) ସିନ୍ଦୂର । ବିଂ. ବଙ୍ଗଦେଶଜାତ, ବଙ୍ଗାଳୀ ।
ବଙ୍ଗାର, ବ. ପୁଂ. (ବଙ୍ଗ=ସୀସକ-ଅରି=ଶତ୍ରୁ) ହରିତାଳ ।
ବଚ, ବ. ପୁଂ. (ବଚ୍-ଅ) ଶୁକପକ୍ଷୀ । ଚ୍ଚ, ସ୍ତ୍ରୀ. ଔଷଧବିଶେଷ, ବଚ ।
ବଚକ୍ନୁ, ବିଂ. (ବଚ୍-ଅକ୍ନୁ) ବାଗ୍ମୀ, ବହୁଭାଷୀ । ବ. ପୁଂ. ବ୍ରାହ୍ମଣ ।
ବଚନ, ବ. ନ. (ବଚ୍-ଅନ) କଥନ, ବାକ୍ୟ; ଋଷିପ୍ରଣୀତ ଧର୍ମଶାସ୍ତ୍ରାଦିର ପଦ୍ୟ ।
ବଚନବଦ୍ଧ, ବି. (ବଚନ-ବଦ୍ଧ) ସତ୍ୟବଦ୍ଧ, ପ୍ରତିଶ୍ରୁତ ।
ବଚମୀୟ୍ତ, ବ. ନ. (ବଚ୍-ଅନୀୟ) ନିନ୍ଦା । ବିଂ. ନିନ୍ଦନୀୟ; କଥନୀୟ; ବାଚ୍ୟ ।
ବଚନୀୟତା, ବ. ସ୍ତ୍ରୀ. ( ବଚନୀୟ-ତା ) ନିନ୍ଦା, ଅପବାଦ ।
ବଚଃ, ବ. ନ. ( ବଚ୍-ଅସ୍ ) ବଚ[illegible] କଥା ।
ବଚସା, ବ. (ବ[illegible] ଶବ୍ଦ[illegible] [illegible]ଯ୍ୟବ୍ୟୟ,ବକା-ବକି, [illegible]ର୍ଚ୍ଚା ।
ବଚସାଂପତି, ବି[illegible]. (ବଚସାଂ-ପତି) ବୃହସ୍ପତି ।
ବଚସ୍କର,ବିଂ. (ବଚସ୍-କୃ-ଅ) ଅଜ୍ଞାବହ । ଯଥା--

> ବଚସ୍କର ସାମନ୍ତେ ନୃପତି ଭୃତ୍ୟ ପରି,
> ବାର ବାଇନାସି ଗଲେ ଅନୁକୂଳ କରି ଯେ । ବୈ. ବ.

ବଛ, (ବତ୍ସ ଶବ୍ଦର ଅପଭ୍ରଂଶ) ବାଛୁରି । ଯଥା--

> ବାଳକମାନେ ବଛ ଧରି, ତରିଜଥାନ୍ତି ନରହରି ।

ବଚ୍ଛୋଗ୍ରହ,ବ. ପୁଂ. (ବଚସ୍-ଗ୍ରହ) କର୍ଣ୍ଣ,ଶ୍ରୋତ୍ର ।
ବଜାର, ବ. ( ଯାବନିକ ) ଶ୍ରେଣୀବଦ୍ଧ ପଣ୍ୟାଦି ବିକ୍ରୟସ୍ଥାନ, ବିପଣୀ ।
ବଜାରି, ବିଂ. ( ଯାବନିକ ) ବଜାରସ୍ଥ ଲୋକ, ଅସମ୍ଭ୍ରାନ୍ତ ଲୋକ । ଢ଼-କ୍ରି. ବକା ହେବା । ଯଥା—

> କେ ବୋଲେ ଏହୁ ବଜାରି, କେତେ ହେଉଛ ବଜାରି ।

ବଜ୍ଜାତ, (ଯାବନିକ) ଜାରଜ, ବେକନ୍ଧା ।
ବଜ୍ର, ବ. ପୁଂ. ନ. (ବଜ୍-ର) କୁଳିଶ, ଇନ୍ଦ୍ରଙ୍କ ଅସ୍ତ୍ରବିଶେଷ, ଯଥା—

> ଇନ୍ଦ୍ର ଝପଟ ଦନ ବୃଷ୍ଟି କଲ,
> ବଜ୍ରଘାତେ ପଥର ବରଷିଲ । ଗୋ. ଲୀ.

ହୀରକ । ଯଥା—

> ଭୁଜର ନାଳ ଜବରେ ପଞ୍ଜର ଥାଳୀ,
> ବଜ୍ର ଧରି ଶତମନ୍ୟୁ ପରଧେ ସେ ଝଳ । ବୈ. ବ.

ବଜ୍ରକେତୁ, ବ. ପୁଂ. ନରକବଜ ।
ବଜ୍ରଚର୍ମା, ବ. ପୁଂ. (ବଜ୍ର-ଚର୍ମନ୍) ଖଡ୍ଗୀ,ଗଣ୍ଡାର ।
ବଜ୍ରଜିତ୍, ବ. ପୁଂ. (ବଜ୍ର-ଜି-୦) ଗରୁଡ ।
ବଜ୍ରତୁଣ୍ଡ, ବ. ପୁଂ.(ବଜ୍ର-ତୁଣ୍ଡ) ଗରୁଡ; ଗଣେଶ; ଗୃଧ୍ର; ମଶକ; ମକ୍ଷୁଣ ।
ବଜ୍ରଦନ୍ତ, ବଜ୍ରଦଶନ, ବ. ପୁଂ. ( ବଜ୍ର-ଦନ୍ତ, ଦଶ[illegible] ) ମୂଷିକ ।
ବଜ୍ର[illegible] [illegible]ପାଣି, (ବଜ୍ର-ଧର, ପାଣି) ଇନ୍ଦ୍ର, ଦେବରାଜ ।
ବଜ୍ରନିର୍ଘୋଷ, ବ. ପୁଂ. (ବଜ୍ର-ନିର୍ଘୋଷ) ବଜ୍ର-ଧ୍ୱନି, ବଜ୍ରୋତ୍ପନ୍ନ ଶବ୍ଦ ।
ବଜ୍ରପୁଷ୍ପ, ବ. ନ. (ବଜ୍ର-ପୁଷ୍ପ) ତିଳପୁଷ୍ପ । ଷ୍ପା-ସ୍ତ୍ରୀ. ଶତପୁଷ୍ପା ।
ବଜ୍ରରଥ, ବ. ପୁଂ. କ୍ଷତ୍ରିୟଜାତି ।
ବଜ୍ରରଦ, ବ. ପୁଂ. (ବଜ୍ର-ରଦ) ଶୂକର ।
ବଜ୍ରବଲ୍ଲୀ, ବ. ସ୍ତ୍ରୀ. (ବଜ୍ର-ବଲ୍ଲୀ) ସୂର୍ଯ୍ୟମୁଖୀଫୁଲ ।
ବଜ୍ରାଙ୍ଗ, ବ. ପୁଂ. (ବଜ୍ର-ଅଙ୍ଗ) ସର୍ପ । ଙ୍ଗୀ-ସ୍ତ୍ରୀ. ଶସ୍ୟବିଶେଷ । ବିଂ. ଯାହାର ଅଙ୍ଗ ବଜ୍ର ତୁଲ୍ୟ କଠିନ ।
ବଜ୍ରାଭ, ବ. ପୁଂ. (ବଜ୍ର-ଆଭା) ଦୁଗ୍ଧପାଷାଣ । ବିଂ. ହୀରକ ତୁଲ୍ୟ ଦୀପ୍ତିଶାଳୀ ।

ବଜ୍ରୀ, ବ. ପୁଂ. ( ବଜ୍ର-ଇନ୍ ) ଇନ୍ଦ୍ର, ପୁରନ୍ଦର; ଜୈନ ମୁନି; ମହର୍ଷ ।

ବଞ୍ଚକ,ବ. ପୁଂ. (ବନ୍ଚ୍-ଅକ) ଶୃଗାଳ; କୁକ୍କୁର; ଗୃହେର । ବିଂ. ପ୍ରତାରକ, ଧୂର୍ତ୍ତ ।

ବଞ୍ଚନ, ନ. } ବ. ନ. (ବନ୍ଚ୍-ଅନ) ପ୍ରତାରଣା,
ବଞ୍ଚନା,ସ୍ତ୍ରୀ. } ଠକାଇବା ।

ବଞ୍ଚିତ, ବିଂ. (ବନ୍ଚ୍-ତ) ପ୍ରତାରିତ; ବର୍ଜିତ ।

ବଞ୍ଚିବା, କ୍ରି. (ବନ୍ଚ୍ ଧାତୁଜ) ଜୀଇଁବା ।

ବଞ୍ଚୁକ, ବିଂ. (ବନ୍ଚ୍-ଉକ) ବଞ୍ଚକ, ପ୍ରତାରକ ।

ବଞ୍ଚ୍ୟ, ବିଂ. (ବନ୍ଚ୍-ଯ) ଗମନୀୟ ।

ବଞ୍ଜୁଳ, ବ. ପୁଂ. (ବନ୍ଚ୍-ଉଳ) ଅଶୋକବୃକ୍ଷ; ବେତସବୃକ୍ଷ; ପକ୍ଷିବିଶେଷ । ଳା-ସ୍ତ୍ରୀ; ପଯସ୍ୱିନୀ, ଦୁଗ୍ଧବତୀ ଗାଭୀ । ବିଂ. ବକ୍ର ।

ବଟ, ବ. ପୁଂ. (ବଟ୍-ଅ) ବୃକ୍ଷବିଶେଷ, ବରଗଛ, କପର୍ଦ୍ଦକ, କଉଡ଼ି ।

ବଟକରି,ବ. (ଦେଶଜ) ତୌଲର ପରିମାଣଜ୍ଞାପକ ପ୍ରସ୍ତରାଦି ।

ବଟବାସୀ, ବ. ପୁଂ. ( ବଟ-ବାସ-ଇନ୍ ) ଯକ୍ଷ । ସିନୀ-ସ୍ତ୍ରୀ. ପକ୍ଷିଣୀ ।

ବଟା, ବ. (ଦେଶଜ) ଠଙ୍କା ଅ[illegible] ଖାଇଲେ ଯାହା ଅଧିକା ଦେବାକୁ [illegible]ଇଙ୍କ; ତାମ୍ବୁଳପାତ୍ର ।

ବଟାବଟି, କ୍ରି. ଠକାଠକି । ଯଥା—

ବଟାବଟି କର ଅଣି ଏଣେ, ହଃହଃ କର ଗଲେ ତେଣେ ।

ବଟିକା, ବଟୀ, ବ. ସ୍ତ୍ରୀ. (ବଟ୍-ଇକ, ଈ) ଗୁଳା; ବଡ଼ୀ ।

ବଟିବା, କ୍ରି. (ଦେଶଜ) ଭଣ୍ଡିବା । ଯଥା—

ଭେଟିଲେ ସଖାଙ୍କୁ ବଟିଲେ ବାହ୍ୟଲେଖେ ବୁଝର ।

ବଟୁ,ବ. ପୁଂ. (ବଟ୍-ଉ) ବାଳକ; ବ୍ରାହ୍ମଣକୁମାର; ବାଳକ ବ୍ରହ୍ମଚାରୀ ।

ବଟୁଆ, ବ. (ଦେଶଜ) ବହୁପ୍ରସ୍ଥଯୁକ୍ତ ବସ୍ତ୍ରନିର୍ମିତ ଥଳୀବିଶେଷ ।

ବଟୂକରଣ,ବ. ନ. (ବଟୁ-କୃ-ଅନ) ଯଜ୍ଞୋପବୀତ, ଉପନୟନସଂସ୍କାର ।

ବଡ, ବିଂ. ବୃହତ୍, ଶ୍ରେଷ୍ଠ; ଅତ୍ୟନ୍ତ । ଯଥା—

ଏ ବଡ ଅବୁଝ ଲାଗଇ ମନକୁ ।

ବଡଭି, ବଡଭୀ, ବ. ସ୍ତ୍ରୀ. (ବଲ୍-ଅଭ-ଇ, ଈ) ଚନ୍ଦ୍ରଶାଳା । ଯଥା—

ବଡ଼ଭି ଲଭିବ କାହିଁ ବଡ଼ଭୀ ଲଭିବ ଗୃହିଁ,
ଜଗତଗଡଦାଦାଙ୍କୁ ଥନଙ୍ଗବଶେ । ବୈ. ଦ.

ବଡବା, ବ. ସ୍ତ୍ରୀ. ( ବଡ-ବା-ଅ ) ଘୋଟକୀ; ସମୁଦ୍ରସ୍ଥ ଘୋଟକୀ; ଅଶ୍ୱିନୀ ।

ବଡା, ବ. ସ୍ତ୍ରୀ. (ବଲ୍-ଅ) ଗୋଲାକାର ପିଷ୍ଟକବିଶେଷ; ବଟବୃକ୍ଷ ।

ବଡ଼ାଇ, ବ. ସ୍ତ୍ରୀ. ( ବଡ ଶବ୍ଦଜ ) ଗୌରବ; ଗର୍ବ । ଯଥା—

ଯିବାବେଳେ ରବ କାମରୁ କୋପଚକ୍ଷୁରେ ଗୃହିଁ,
କହିଲେ ଛଡ଼ାଇ ଦେବଇ ତୋର ଏହି ବଡ଼ାଇ । ଶୀ ସ.

ବଡ଼ି, ବ. ( ଦେଶଜ ବା ବଲ ଶବ୍ଦଜ ) ବ୍ରୀହି-ଆଦିରେ ପ୍ରସ୍ତୁତ ଗୋଲାକୃତ ବଲବିଶେଷ ।

ବଡ଼ିଶ, ନ. } ବ. ( ବଡ-ଇ-ଶୋ-ଅ )
ବଡ଼ିଶା,ବଡିଶୀ,ସ୍ତ୍ରୀ. } ବଡଶୀ, ବନ୍ସୀ ।

ବଡୀ, ବ. (ବଟିକା ଶବ୍ଦଜ) ବଟୀ, ଗୁଳି ।

ବଡ୍ଡୁ, ବ. (ଦେଶଜ) ଜାତିବିଶେଷ; ବ୍ରତକର୍ମ ।

ବଢା, ବିଂ. (ଦେଶଜ) ମୃତ୍ତିକାପାତ୍ରବିଶେଷ ।

[illegible] ବ. ( ବର୍ଦ୍ଧକି ଶବ୍ଦଜ ) ଜାତିବିଶେଷ, କ[illegible]ାରକ ।

ବଢାଇବା, [illegible]ମୃତ କର[illegible] । ଯଥା—

ବଢ଼ାଇ [illegible]ଲେ ବନମାଳୀ ।

ସମ୍ପୂର୍ଣ୍ଣକରିବା । ଯଥା—

କମଳନୟନ ମନ୍ଦ ହସିଲ ହୋଇ,
କହିଲେ ଯିବୁଁ ସଖାଙ୍କ ଭେଟ ବଢାଇ ।

ବଣ, ବ. (ବନ ଶବ୍ଦଜ) ଅରଣ୍ୟ ।

ବଣା, ବ. (ଦେଶଜ) ଗୁଡ଼ ରଖିବାର ମୃତ୍ତିକା-ପାତ୍ରବିଶେଷ । କ୍ରି. ବିଂ. ଭ୍ରମ ହେବା । ଯଥା—

ବଣା ହେଲେ ଜଣା ଥାଏ ଭ୍ରମ ବାରପଣ । ବୈ. ବି.

ବଣି, ବ. (ଦେଶଜ) ପକ୍ଷିବିଶେଷ ।

ବଢ଼ିବା, କ୍ରି. (ବୃଧ୍ ଧାତୁଜ) ବୃଦ୍ଧିପ୍ରାପ୍ତ ହେବା ।

ବଷ୍ଣନ, ବି. ନ. (ବନ୍ଥ୍-ଅନ) ବିଭାଗକରଣ ।
ବଷ୍ଟର୍, ବି. (ବଷ୍ଣନ ଶବ୍ଦଜ) ବିଭାଗକରଣ ।
ବଷ୍ଟର୍, ବି. (ବଷ୍ଣନ ଶବ୍ଦଜ) ବିଭାଗକରଣ ।
ବଣ୍ଡାଳ, ବି. ପୁଂ. ( ବନ୍ଡ୍-ଅଳ ) ଶୂର ଯୁଦ୍ଧ; ନୌକା; ଖନିତ୍ର ।
ବତଂସ, ବି. ପୁଂ. } ( ଅବ-ତନ୍ସ୍-ଅ ) କର୍ଣ୍ଣ-
ବତଂସକ,ବି. ନ. } ଭୂଷଣ, ଶିରୋଭୂଷଣ, ଭୂଷଣ ।
ବତ, ଅଂ. (ବା-ଅତ୍) ସଦୃଶ, ତୁଲ୍ୟ; ଏହା ପ୍ରାୟ ଶବ୍ଦର ଉତ୍ତରରେ ପ୍ରଯୋଗ ହୁଏ । ଯଥା— ପଶୁବତ୍, ସାଧୁବତ୍ ।
ବତକ, ବି. (ଦେଶଜ) କୁକୁହଂସ, କାଦମ୍ବ ।
ବତର, ବି. (ଦେଶଜ) ଗବାଦିର ବୃତ୍ତ । ବିଂ. ଜଳସିକ୍ତ ।
ବତା, ବି. (ଦେଶଜ) ଚିର୍ ବାଉଁଶ । ଯଥା—

ବାକୁ ବତା, ଶବକୁ ଛତା ।

ବତାସ, ବି. ( ବାତ ଶବ୍ଦଜ ) ପବନ, ପ୍ରବଳ ପବନ ।
ବତୁରିବା, କ୍ରି. ଜଳସିକ୍ତ ହେବା ।
ବତିଶ, ବିଂ. (ଦ୍ୱାତ୍ରିଂଶତ୍ ଶବ୍ଦଜ) ସଂଖ୍ୟାବିଶେଷ, ୩୨ ।
ବତ୍ସ, ବି. ନ. (ବଦ୍-ସ) ବକ୍ଷସ୍ଥଳ । ପୁଂ. ସ୍ତ୍ରୀ, ସ୍ତ୍ରୀ. ସ୍ନେହବ୍ୟଞ୍ଜକ ଶବ୍ଦ; ଏହା ସ... ଠାରେ ପ୍ରଯୋଜ୍ୟ; ବାଛୁରି ... ର ଶିଶୁ । ପୁଂ. ଗୋବତ୍ସ... ଧାତ୍ରି... ର ଅନୁଚର ଅସୁରବିଶେଷ ... ।
ବତ୍ସତର,ବି. ପୁଂ. (ବତ୍ସ-ତର) ସ୍ତ୍ରୀ-ସ୍ତ୍ରୀ. ବାଛୁରି ।
ବତ୍ସନାଭ, ବି. ପୁଂ. ( ବତ୍ସ-ନାଭ-ଅ ) ସ୍ଥାବର-ବିଷବିଶେଷ ।
ବତ୍ସର, ବି. ପୁଂ. (ବସ୍-ସର) ୧୨ ମାସ ପରିମିତ-କାଳ, ବର୍ଷ ।
ବତ୍ସରାନ୍ତକ, ବି. ପୁଂ. ଫାଲ୍ଗୁନ ମାସ ।
ବତ୍ସଳ,ବିଂ. (ବତ୍ସ-ଲା-ଅ)ସ୍ନେହଯୁକ୍ତ,ଅନୁରକ୍ତ, ଭକ୍ତ । ବି. ପୁଂ. ବାତ୍ସଲ୍ୟ, ସ୍ନେହ, ଅନୁରାଗ; ରସବିଶେଷ । ଳା-ସ୍ତ୍ରୀ. ବତ୍ସାଭିଳାଷିଣୀ ।
ବତ୍ସଳତା, ବି. ସ୍ତ୍ରୀ. ( ବତ୍ସଳ-ତା ) ବାତ୍ସଲ୍ୟ, ସ୍ନେହ ।
ବଥ, ବି. (ଦେଶଜ) ବ୍ରଣବିଶେଷ ।
ବଥୁଆ, ବି. (ଦେଶଜ) ଶାକବିଶେଷ ।
ବଦ, ବିଂ. (ବଦ୍-ଅ) ବକ୍ତା । କ୍ରି. କହିବା ।
ବଦନ,ବି.ନ. (ବଦ୍-ଅନ) ମୁଖ, ଆନନ,ଆସ୍ୟ ।
ବଦନାମୃତ, ବି. ନ. (ବଦନ-ଅମୃତ) ମୁଖାମୃତ, ଅଧରମଧୁ ।
ବଦଳ, ବି. (ଯାବନିକ) ପ୍ରତିଦାନ, ବିନିମୟ ।
ବଦନ୍ୟ, ବଦାନ୍ୟ, ବିଂ. ( ବଦ୍-ଅନ୍ୟ, ଆନ୍ୟ ) ଦାତା, ଦାନଶୀଳ; ସଦ୍‌ବକ୍ତା, ମଧୁରଭାଷୀ ।
ବଦଳାଇବା, କ୍ରି. ( ଯାବନିକ ) ପାଲଟାଇବା, ପରିବର୍ତ୍ତନ କରାଇବା ।
ବଦ୍, (ଯାବନିକ) ମନ୍ଦ, ନିକୃଷ୍ଟ ।
ବଦ୍‌ଖୋଇ, ବି. ( ଯାବନିକ ) ମନ୍ଦସ୍ୱଭାବ, ଦୁଃସ୍ୱଭାବ ।
ବଦ୍‌ଜାତ୍, ବି. (ଯାବନିକ) ଖରାପ, ଖଚର ।
ବଦ୍‌ନାମ୍, ... (ଯାବନିକ) କୁନାମ, କୁଯଶଃ ।
ବଦ୍‌ମାସ୍, ... (ଯାବନିକ) ଯେ ଅନ୍ୟାୟ ଉପାୟରେ ...ବିକା ନିର୍ବାହ କରେ, ମନ୍ଦଲୋକ ।
ବଧ, ବି. ପୁଂ. (ହନ୍-ଅ) ହନନ, ନାଶ ।
ବଧକ, ବିଂ. ( ବଧ୍-ଅକ ) ଘାତକ, ଯେ ବଧ କରେ ।
ବଧାଇ, ବି. ( ଯାବନିକ ) ବକଶିସ୍, ପାରି-ତୋଷିକ । ଯଥା—

ବଧାଇ ଲଭିଲେ ନୃପେ ନାହିଁ ବହୁ,
ବାର୍ତ୍ତାବହେ ବନ୍ଧ୍ୟାନ୍ତରେ ଗମିଲେ ତହୁଁ । ବୈ. ବି.

ବଧୂ, ବି. ସ୍ତ୍ରୀ. (ବହ୍-ଊ) ନୂତନ ବିବାହିତା ସ୍ତ୍ରୀ, ପତ୍ନୀ, ଭାର୍ଯ୍ୟା ।
ବଧୂଜନ,ବି. ସ୍ତ୍ରୀ. (ବଧୂ-ଜନ) ଯୁବତୀ ସ୍ତ୍ରୀଲୋକ, ବୋହୂ ।
ବଧ୍ୟ, ବିଂ. (ବଧ୍-ଯ) ବଧଯୋଗ୍ୟ ।

ବନ, ବ. ନ. ସ୍ତ୍ରୀ. (ବନ୍-ଅ) ବହୁ ବୃକ୍ଷାଦିଯୁକ୍ତ ସ୍ଥାନ, ଅରଣ୍ୟ । ନ. ଜଳ; ପ୍ରସ୍ରବଣ; ନିବାସ; ଆଳୟ; କାନନ, କୁଞ୍ଜ ।

ବନଗହନ, ବ. ନ. ନିବିଡ଼ବନ ।

ବନଚନ୍ଦନ, ବ. ନ. ଅଗୁରୁ; ଦେବଦାରୁ ।

ବନଚନ୍ଦ୍ରିକା, ବ. ସ୍ତ୍ରୀ. ମଲ୍ଲିକାପୁଷ୍ପ ।

ବନଚର, ବନଚାରୀ, ବଂ. (ବନ-ଚର, ଚ୍ଚରନ୍) ବନବାସୀ, ଯେଉଁମାନେ ବନରେ ବାସ କରନ୍ତି, ବଣୁଆ ।

ବନଜ,ବ. ନ. (ବନ=ଜଳ, ଅରଣ୍ୟ-ଜନ୍-ଅ) ପଦ୍ମ; ଗନ୍ଧତୃଣବିଶେଷ । ପୁଂ. ହସ୍ତୀ । ବଂ. ବନଜାତ ।

ବନଦ୍ଦିପ, ବ. ପୁଂ. ହସ୍ତିଜଙ୍ଗ ।

ବନଦ, ବ. ପୁଂ. (ବନ-ଦା-ଅ) ମେଘ,ଜଳଦ । ବଂ. ବନଦାତା ।

ବନଦେବତା, ବ. ସ୍ତ୍ରୀ. (ବନ-ଦେବତା) ବନର ଅଧିଷ୍ଠାତ୍ରୀ ଦେବତା ।

ବନପ୍ରିୟ, ବ. ପୁଂ. (ବନ-ପ୍ରିୟ) କୋକିଳ । ବଂ. ଅରଣ୍ୟପ୍ରିୟ ।

ବନମକ୍ଷିକା, ବ. ସ୍ତ୍ରୀ. (ବନ-ମକ୍ଷିକା) ଡାଶ ।

ବନମଲ୍ଲିକା, ବ. ସ୍ତ୍ରୀ. (ବନ-ମଲ୍ଲିକା) [illegible] ।

ବନମାଳା, ବ. ନ. (ବନ-ମାଳା) କୃଷ୍ଣଙ୍କ [illegible] ପାଦ ପର୍ଯ୍ୟନ୍ତ ଲମ୍ବିତ ମାଳା ।

ବନମାଳୀ, ବ. ପୁଂ. ( ବନମାଳା-ଇନ୍ ) କୃଷ୍ଣ; ଲକ୍ଷ୍ମୀ-ସ୍ତ୍ରୀ. ଦ୍ୱାରକାପୁରୀ ।

ବନମୁକ୍, ବ. ପୁଂ. ( ବନ-ମୁଚ୍-୦ ) ମେଘ, ଜଳଧର ।

ବନମୃତ, ବ. ପୁଂ. (ବନ-ମୃତ) ମେଘ ।

ବନରାଜ,ବ. ପୁଂ. (ବନ-ରାଜା) ସିଂହ,ମୃଗେନ୍ଦ୍ର।

ବନଲକ୍ଷ୍ମୀ, ବ. ସ୍ତ୍ରୀ. କଦଳୀ ।

ବନବହ୍ନି, ବ. ପୁଂ. ( ବନ-ବହ୍ନି ) ଦାବାନଳ, ଦାବାଗ୍ନି ।

ବନବାସ, ବ. ପୁଂ. ( ବନ-ବସ୍-ଅ ) ଅରଣ୍ୟ ନିବସତି ।

ବନବାସୀ,ବଂ.(ବନ-ବାସ-ଇନ୍) ବନବାସକର୍ତ୍ତା, ଯେ ବନରେ ବାସ କରେ ।

ବନଶୂକର, ବ. ପୁଂ. ଅରଣ୍ୟବରାହ ।

ବନଶ୍ୱା, ବ. ପୁଂ. (ବନ-ଶ୍ୱନ୍) ଶୃଗାଳ; ବ୍ୟାଘ୍ର; ଗନ୍ଧମାର୍ଜାର ।

ବନସ୍ପତି, ବ. ପୁଂ. ( ବନ-ପତି ) ବୃକ୍ଷ; ପୁଷ୍ପ ବ୍ୟତିରେକେ ଫଳଜନକ ବୃକ୍ଷ, ଅଶ୍ୱତ୍ଥାଦି ।

ବନହାସ, ବ. ପୁଂ. କାଶତୃଣ ।

ବନାଇବା, କ୍ରି. (ଯାବନିକ) ନିର୍ମାଣ କରିବା ତିଆର କରିବା ।

ବନାଖୁ, ବ. ପୁଂ. (ବନ-ଆଖୁ) ଶଶକ ।

ବନାତ,ବ. (ହିନ୍ଦୀ)ଊର୍ଣ୍ଣାନିର୍ମିତ ସ୍ଥୂଳବସ୍ତ୍ରବିଶେଷ।

ବନାନ, ବ. (ଦେଶଜ) ବ୍ୟଞ୍ଜନବର୍ଣ୍ଣରେ ସ୍ୱରବର୍ଣ୍ଣ ଯୁକ୍ତ କରି ଉଚ୍ଚାରଣ ।

ବନାନ୍ତ, ବ. ପୁଂ. (ବନ-ଅନ୍ତ) ବନପ୍ରାନ୍ତ; ବନଭୂମି, ବନପ୍ରଦେଶ ।

ବନିତା, ବ. ସ୍ତ୍ରୀ. ( ବନ୍-ତ-ଆ ) ନାରୀ; ପ୍ରିୟା; ଅନୁରକ୍ତା ଭାର୍ଯ୍ୟା ।

ବନିବା, କ୍ରି. (ଦେଶଜ) ବ୍ୟଞ୍ଜନବର୍ଣ୍ଣରେ ସ୍ୱରବର୍ଣ୍ଣ ଯୁକ୍ତ କରିବା; ଉତ୍ତମ ଖାଦ୍ୟ ହେତୁରୁ ହୃଷ୍ଟ-[illegible]ାଙ୍ଗ ହେବା; ଫଳ ଅର୍ଦ୍ଧପରିପକ୍ୱ ହେବା, [illegible] ହେବା ।

ବନେଚର, [illegible] ପୁଂ. (ବ[illegible]-ଚର) ବଣୁଆ । ବଂ. ବନଚର, [illegible] ।

ବନୌକାଃ, ବ. ପୁଂ. [illegible]-ଓକସ୍) କପି, ବାନର । ବଂ. ବନବାସୀ ।

ବନ୍ଦକ, ବଂ. ( ବନ୍ଦ୍-ଅକ ) ବନ୍ଦନାକାରୀ, ସ୍ତୁତିପାଠକ ।

ବନ୍ଦନ, ନ. } ବ. (ବନ୍ଦ-ଅନ) ଅଭିବାଦନ,
ବନ୍ଦନା, ସ୍ତ୍ରୀ. } ପ୍ରଣାମ; ସ୍ତବ, ସ୍ତୁତିଗାନ ।

ବନ୍ଦନମାଳା, ବନ୍ଦନମାଳିକା, ବ. ସ୍ତ୍ରୀ. (ବନ୍ଦନ-ମାଳା, ମାଳିକା) ବହିର୍ଦ୍ୱାରୋପରିସ୍ଥ ମଙ୍ଗଳ-ସୂଚକ ମାଳ୍ୟ ।

ବନ୍ଦନୀୟ, ବଂ. (ବନ୍ଦ୍-ଅନୀୟ) ନମସ୍ୟ, ସ୍ତବନୀୟ । ବ. ପୁଂ. ପୀତଭୃଙ୍ଗରାଜ । ୟା-ସ୍ତ୍ରୀ. ଗୋରୋଚନା ।

ବନ୍ଦର, ବ. ( ଯାବନିକ ) ସମୁଦ୍ରାଦି କୂଳରେ ଜାହାଜାଦିଦ୍ୱାରା ବାଣିଜ୍ୟ କରିବାର ସ୍ଥାନ ।

ବନ୍ଦା, ବ. ସ୍ତ୍ରୀ. ( ବନ୍ଦ୍-ଅ-ଆ ) ବୃକ୍ଷ ଉପରେ ଜାତ ବୃକ୍ଷ; ବରଗଛ; (ଯାବନିକ) ଗୋଲାମ ।

ବନ୍ଦାଇବା, କ୍ରି. (ବନ୍ଦ୍ ଧାତୁଜ) ବନ୍ଦନା କରିବା, ଅର୍ଘ୍ୟ ମାଲ୍ୟ ପୁଷ୍ପାଦିଦ୍ୱାରା ବନ୍ଦନା କରିବା । ଯଥା—

ଯାଇ:ତ ବନ୍ଦାଅ ଶ୍ରୀ ତ ମୋର ଅଟେ ବନ୍ଧାଇ । ବ. ଚ

ବନ୍ଦାପନା, ବ. (ବନ୍ଦ୍ ଧାତୁଜ) ବନ୍ଦନା, ବିବାହାଦି ସମୟରେ ପୁଷ୍ପାଦିଦ୍ୱାରା ବନ୍ଦନା । ଯଥା—

ଶୁଭ ଯୋଗରେ ସରସ ବନ୍ଦାପନା ଦନ । ପ୍ରେ. ସୁ.

ବନ୍ଦି, ବନ୍ଦୀ, ବ. ସ୍ତ୍ରୀ. (ବନ୍ଦ୍-ଇ,,ଈ) ବାନ୍ଦୀକୃତ, କଏଦୀ; ବନ୍ଦନା ।

ବନ୍ଦିଖାନା, ବ. ( ଯାବନିକ ) ଜେଲଖାନା, କାରାଗାର ।

ବନ୍ଦୀ ବ. ପୁଂ. (ବନ୍ଦ୍-ଇନ୍) ସ୍ତୁତିପାଠକ । ବଂ. ବନ୍ଦନାକାରୀ ।

ବନ୍ଦ୍ୟ, ବଂ. (ବନ୍ଦ୍-ଯ) ବନ୍ଦନୀୟ । ସ୍ତ୍ରୀ. ଗୋରୋଚନା ।

ବନ୍ୟ ବଂ. ( ବନ-ଯ ) [illegible]ନୀୟ; ବନୋଦ୍ଭୂତ । [illegible]

ବନ୍ୟା, ବ. ସ୍ତ୍ରୀ. [illegible]-ଯ-ଆ ) ଜଳପ୍ଳାବନ; ଅରଣ୍ୟସମୂହ ।

ବପା, ବ. ସ୍ତ୍ରୀ. (ବପ୍-ଆ) ଛିଦ୍ର, ରନ୍ଧ୍ର; ମେଦଃ, ଚର୍ବି ।

ବପକ୍ରିୟା, } ବ. ସ୍ତ୍ରୀ. ( ବପ୍ର-କ୍ରିୟା, କ୍ରୀଡା )
ବପକ୍ରୀଡା, } ଉଚ୍ଚଖାତକେଳି, ଶୃଙ୍ଗଦନ୍ତାଦିଦ୍ୱାରା ଖନନ ।

ବପୁଃ, ବ. ନ. ( ବପ୍-ଉସ୍ ) ଶରୀର; ପ୍ରଶସ୍ତ ଆକୃତି ।

ବପୁଷ୍ମାନ୍, ବଂ. (ବପୁସ୍-ମତ୍) ପ୍ରଶସ୍ତ ଶରୀରୀ ।

ବପ୍ତା, ବଂ. (ବପ୍-ତୃ) ବପନକାରୀ । ବ. ପୁଂ. ପିତା, ବାପ, ଜନକ ।

ବପ୍ର, ବ. ପୁଂ. ନ. (ବପ୍-ର) କ୍ଷେତ୍ର । ଯଥା—

ବପ୍ରପଙ୍କପରି କଳା ନବଜଳଧର,
ଯୋଃଅଛ ଦେଖ ପ୍ରିୟେ ପଙ୍କତିଶିଖର । ଲ. ବ.

ଗଡ଼, ତଟ; ସାନୁ । ପୁଂ. ପିତା, ବାପ; ପ୍ରଜାପତି । ନ. ସୀସକ ।

ବମ, ବ. ପୁଂ. ( ବମ୍-ଅ ) ବମନ, ଉଦ୍ଗୀରଣ; ନିଃସାରଣ ।

ବମଥୁ, ବ. ପୁଂ. (ବମ୍-ଅଥୁ) ବମନ, ନିଃସାରଣ, ହସ୍ତିଶୁଣ୍ଡନିର୍ଗତ ଜଳକଣା ।

ବମନ, ବ. ନ. (ବମ୍-ଅନ) ଉଦ୍ଗୀରଣ; ପୀଡା; କ୍ଲେଶ; ନିଃସାରଣ ।

ବମନୀୟ, ବଂ. ( ବମ୍-ଅନୀୟ ) ବମନଯୋଗ୍ୟ । ୟା, ସ୍ତ୍ରୀ. ମକ୍ଷିକା, ମାଛି ।

ବମି, ବ. ସ୍ତ୍ରୀ. (ବମ୍-ଇ) ବମନ । ପୁଂ. ଅଗ୍ନି; ଧୂର୍ତ୍ତ ।

ବୟଃ, ବ. ନ. ( ବୟ୍-ଅସ୍ ) ପକ୍ଷୀ; ବାଲ୍ୟାଦି ଜୀବନକ[illegible] ଆୟୁଃ; ଯୌବନ ।

ବୟଃକ୍ରମ [illegible] ( ବୟସ୍-କ୍ରମ ) ଜୀବନକାଳ, ପରମାୟୁ ।

ବୟଃସନ୍ଧି, ବ. ପୁଂ. ଯୌବନାବସ୍ଥା ।

ବୟଃସ୍ଥ, ବୟସ୍ଥ, ବଂ. (ବୟସ୍-ସ୍ଥା-ଅ) ମଧ୍ୟବୟସ୍କ, ଯୁବା ।

ବୟସ୍ୟ, ବ. ପୁଂ. (ବୟସ୍-ଯ) ସମାନବୟସ୍କ, ସଖା । ସ୍ୟା—ସ୍ତ୍ରୀ. ସଖୀ, ସହଚରୀ ।

ବର, ବ. ପୁଂ. ( ବୃ-ଅ ) ପ୍ରାର୍ଥନା; ଇଚ୍ଛା; ଆଶୀର୍ବାଦ; ଆବରଣ; ବିବାହକର୍ତ୍ତା, ଜାମାତା; ପତି । ବଂ. ଜ୍ୟେଷ୍ଠ, ଶ୍ରେଷ୍ଠ; ଉତ୍କୃଷ୍ଟ; ଅଭୀଷ୍ଟ । ନ. ଅପେକ୍ଷାକୃତ ଉତ୍ତମ ।

ବରକତ୍, (ଯାବନିକ) ଶୁଭ, ମଙ୍ଗଳ ।

ବରକନ୍ଦାଜ, (ଯାବନିକ) ଚପରାସି ବା ସିପାହୀ ।

ବରକ୍ରତୁ, ବ. ପୁଂ. (ବର-କ୍ରତୁ) ଇନ୍ଦ୍ର ।

ବରଖାସ୍ତ, ( ପାରସ୍ୟ ବରଖାସତନ୍ ଧାତୁଜ ) ପଦଚ୍ୟୁତ ।

ବରଗା, ବ. (ଦେଶଜ) କୋଠା ଛାତର କଡ଼-କାଷ୍ଠ ଉପରେ ପଡ଼ିତ ସରୁ କାଷ୍ଠ ।

ବରଗିବା, କ୍ରି. (ଦେଶଜ) ପେଷିବା, ପଠାଇବା ।

ବରଜ, ବ. (ଦେଶଜ) ପାନବୃକ୍ଷର କ୍ଷେତ୍ର ।

ବରଜୀ, ବ. (ଦେଶଜ) ପାନସ୍ତ ।

ବରଟ, ବ. ନ. ( ବୃ-ଅଟନ୍ ଅଥବା ବର-ଅଟ ) କୁନ୍ଦପୁଷ୍ପ । ପୁଂ. ରାଜହଂସ । ସ୍ତ୍ରୀ. ବରଟା= ରାଜହଂସୀ ।

ବରଡ଼ା, ବ. (ଦେଶଜ) ନାରିକେଳ ଓ ତାଳ-ପ୍ରଭୃତି ଗଛର ବାହୁଙ୍ଗା ।

ବରଣ, ବ. ନ. ( ବୃ-ଅନ ) ନିଯୁକ୍ତକରଣ; ଆଚ୍ଛାଦନ;ପ୍ରାର୍ଥନା; ବେଷ୍ଟନ; ପୋଷଣକରିବା; ଇଚ୍ଛା; ପ୍ରାଚୀର; ବୃକ୍ଷବିଶେଷ, ବରୁଣବୃକ୍ଷ; ସେତୁ; ଉଷ୍ଟ୍ର ।

ବରଣା, ବ. ( ଦେଶଜ ) ସୂତା କାଟିବା ନିମିତ୍ତ ପ୍ରସ୍ତୁତ ତୁଳାର ବର୍ତ୍ତିକା ।

ବରଣୀୟ, ବଂ. ( ବୃ-ଅନୀୟ ) ବରଣଯୋଗ୍ୟ; ପ୍ରାର୍ଥନୀୟ; ଶ୍ରେଷ୍ଠ ।

ବରଣ୍ଡା, ବ. (ଦେଶଜ) ପାଭାଗ, ପିଣ୍ଡା ।

ବରଦ,ବଂ. (ବର-ଦା-ଅ) ଅଭୀଷ୍ଟଦାତା; ପ୍ରସନ୍ନ । ଦା-ସ୍ତ୍ରୀ. କନ୍ୟା; ଦୁର୍ଗା; ଅଭୀଷ୍ଟଦାବୀ; ଅଶ୍ୱଗନ୍ଧା; ମାସ ଶୁକ୍ଳ ଚତୁର୍ଥୀ ।

ବରଦାସ୍ତ, ବ. (ଯାବନିକ) ସହ୍ୟ, ସହିଷ୍ଣୁତା ।

ବରପ୍ରଦ, ବଂ. (ବର-ପ୍ରଦ) ଅଭୀଷ୍ଟଦାତା । ଦା-ସ୍ତ୍ରୀ. ଲୋପାମୁଦ୍ରା, ଅଗସ୍ତ୍ୟପତ୍ନୀ ।

ବରଫ, ବଂ. (ଯାବନିକ) ତୁଷାର ।

ବରମ୍, ଅଂ. ଅପେକ୍ଷାକୃତ ଉତ୍କୃଷ୍ଟ ।ଯଥା—

> ବରଂ କବାସ ଭଲ ରଣକ୍ଷେତ୍ରରେ,
> ଉପରେ ସଦା ସହି ଛତସ୍ତ ଥରେ । କ. ବ.

ବରଯାତ୍ରୀ, ବ. ପୁଂ. (ବର-ଯାତ୍ରା-ଇନ୍) ବରପକ୍ଷ ଲୋକ ।

ବରରୁଚ, ବ. ପୁଂ. ( ବର-ରୁଚ ) କବିବିଶେଷ, ବିକ୍ରମାଦିତ୍ୟଙ୍କ ନବରତ୍ନ ପଣ୍ଡିତ ମଧ୍ୟରୁ ଏକ ଜଣ ।

ବରବସ୍ତ୍ରଲା, ବ. ସ୍ତ୍ରୀ. (ବର-ବତ୍ସଳ) ଶାଶୁ ।

ବରବର୍ଣ୍ଣିନୀ,ବ. ସ୍ତ୍ରୀ. (ବର-ବର୍ଣ୍ଣ-ଇନ୍) ଅତ୍ୟୁତ୍ତମ ସ୍ତ୍ରୀ; ସାଧ୍ୱୀ ସ୍ତ୍ରୀ; ଶ୍ୟାମା; ଗୌରୀ; ଲକ୍ଷ୍ମୀ; ସରସ୍ୱତୀ; ହରିଦ୍ରା; ଗୋରୋଚନା; ଲାକ୍ଷା ।

ବରାକ, ବ. ପୁଂ. (ବୃ-ଆକ) ସଂଗ୍ରାମ; ଶିବ,ଯଥା—

> ବରାକବରାଙ୍ଗୀ ସୀତା, ବରାକ ବରଇ ଚଲ୍ଲା,
> ଜୀବନ ନାଭ ନୋହିଲେ ହେଲେ ଏ ବର । କୈ. ବ.

ଯୁକ୍ତ । ବଂ. ନୀଚ,ଜଘନ୍ୟ; ଶୋଚନୀୟ ।

ବରାକୀ, ବ. ସ୍ତ୍ରୀ. ଗୌରୀ, ଉତ୍ତମା ସ୍ତ୍ରୀ । ଯଥା—

> ଜାଣି ଦେଖୁଥିଲା ଶୂନ୍ୟକୁ ଅବଟେ ଉଡ଼ନ୍ତ ସିନା ବରାକୀ ।
> ଯ. କେ.

ବରାଙ୍ଗ, ବ. ନ. (ବର-ଅଙ୍ଗ) ମସ୍ତକ; ଉପସ୍ଥ; ଗୁହ୍ୟଦେଶ; ଗୁଡ଼ତ୍ୱକ; ଯୋନି । ନ. ଶ୍ରେଷ୍ଠାବୟବ; ସ୍ତ୍ରୀ ଓ ପୁରୁଷ ଚିହ୍ନ । ପୁଂ. ହସ୍ତୀ; ବିଷ୍ଣୁ; କନ୍ଦର୍ପ । ବଂ. ଉତ୍ତମ ଅଙ୍ଗଯୁକ୍ତ ।

ବରାଙ୍ଗନା, ବ. ସ୍ତ୍ରୀ. (ବର-ଅଙ୍ଗନା) ଉତ୍ତମା ସ୍ତ୍ରୀ ।

ବରାଟକ, ବ. ପୁଂ. ( ବର-ଅଟ୍-ଅକ ) ପଦ୍ମବୀଜ-କୋଷ; ରଜ୍ଜୁ; କଉଡ଼ି ।

ବରାରୋହ, [illegible] ପୁଂ. (ବର-ଆରୋହ) ହସ୍ତ୍ୟାରୋହୀ । ହା-ସ୍ତ୍ରୀ. [illegible]ନ୍ଦରୀ ସ୍ତ୍ରୀ; କଟିଦେଶ ।

ବରାବର, କ୍ରି, ବ[illegible] ବରାବର; ସମ୍ମୁଖ, ସମୀପ; ଏକ ଧାରରେ ।

ବରାହ, ବ. ପୁଂ. ( ବର-ଆ-ହନ୍-ଅ ) ଶୂକର; ବିଷ୍ଣୁଙ୍କର ଅବତାରବିଶେଷ ।

ବରଅ, ବ. (ଦେଶଜ) ନଅଁ ଅଟା ।

ବରୀୟାନ୍, ବଂ. ( ଉରୁ-ଇୟସ୍ ) ଶ୍ରେଷ୍ଠତମ, ବରିଷ୍ଠ; ଅତିଯୁବା । ବ. ପୁଂ. ଯୋଗବିଶେଷ ।

ବରୀବର୍ଦ୍ଦ, ବ. ପୁଂ. ( ବଳ-ବର୍ଦ୍ଦ ) ବଳୀବର୍ଦ୍ଦ, ବୃଷଭ, ବଳଦ ।

ବରୁଣ, ବ. ପୁଂ. ( ବୃ-ଉନନ୍ ) ଜଳାଧିପ, ପଶ୍ଚିମ ଦିକ୍‌ପାଳ; ସୂର୍ଯ୍ୟ; ସମୁଦ୍ର; ଦ୍ୱୀପବିଶେଷ ।

ବିଭକ୍ତି, ବି. ସ୍ତ୍ରୀ. (ବି-ଭଜ୍-ତି) ବିଭାଗ, ବଣ୍ଟନ, ଅଂଶୀକରଣ; ରଚନା; ଭଙ୍ଗୀ; ବ୍ୟାକରଣରେ ଶବ୍ଦ ବା ଧାତୁର ପରେ ଯେ ସବୁ ପ୍ରତ୍ୟୟ ହୁଏ।

ବିଭବ, ବି. ପୁଂ. ( ବି-ଭୂ-ଅ ) ଧନ, ସମ୍ପତ୍ତି। ଯଥା—

ଏ ଦେଶ ବିଭବ ଏ ଭବ ଘରେ ଅଛ କାହିଁ ନାହିଁ। ବ. ବି.

ମୋକ୍ଷ, ମୁକ୍ତି; ଔଦାର୍ଯ୍ୟ; ମହତ୍ତ୍ୱ।

ବିଭା, ବି. ସ୍ତ୍ରୀ. ( ବି-ଭା-ଅ ) ( ବିବାହ ଶବ୍ଦଜ ) ବିବାହ। ଯଥା—

ବଢି ସାକ୍ଷିରେ ବିଭା ହବ ବୋଲି ଯେ। ବୈ. ବି.

ଆଲୋକ; କିରଣ; ଛବି, ଦୀପ୍ତି, ଶୋଭା; ପ୍ରକାଶ। (ଆଲୋକ ଅର୍ଥରେ) ଯଥା—

ଜଳ ବାତ୍ତ ବ୍ୟୋମ ଅନ୍ତରାଳେ ଛଡ଼ି,
ବିରାଜେ ବିଭା ଯେଉଁ ଅଭ୍ରାବଳୀ। କ. ବେ.

ବିଭାକର, ବି. ପୁଂ. (ବିଭା-କର) ସୂର୍ଯ୍ୟ, ପ୍ରଭାକର, ଅଗ୍ନି; ଅର୍କବୃକ୍ଷ।

ବିଭାଗ, ବି. ପୁଂ. (ବି-ଭଗ) ଅଂଶ, ଭାଗ, ଖଣ୍ଡ, ବଣ୍ଟନ। ବିଂ. ବିଭାଗକର୍ତ୍ତା।

ବିଭାଜକ, ବିଂ. (ବି-ଭାଜକ) ବିଭାଗକର୍ତ୍ତା।

ବିଭାଜ୍ୟ, ବିଂ. (ବି-ଭଜ୍-ଯ) ବିଭାଗଯୋଗ୍ୟ।

ବିଭାଜ୍ୟତା, ବି. ସ୍ତ୍ରୀ. (ବିଭାଜ୍ୟ-ତା) ଯେଉଁ ଗୁଣ ଥିବାରୁ ଜଡ଼ପଦାର୍ଥ ସବୁ ନାନା କ୍ଷୁଦ୍ରତମ ଅଂଶରେ ବିଭକ୍ତ ହୋଇ ପାରନ୍ତି, ପଦାର୍ଥର ସେହି ଗୁଣର ନାମ।

ବିଭାଣ୍ଡକ, ବି. ପୁଂ. ମୁନିବିଶେଷ, ଋଷ୍ୟଶୃଙ୍ଗଙ୍କ ପିତା।

ବିଭାତ, ବି. ନ. (ବି-ଭା-ତ) ପ୍ରଭାତ, ପ୍ରାତଃକାଳ।

ବିଭାବ, ବି. ପୁଂ. (ବି-ଭାବ) କାବ୍ୟ ନାଟକାଦିରେ ବର୍ଣ୍ଣିତ ରତି, ହର୍ଷ, କ୍ରୋଧ ପ୍ରଭୃତି ସ୍ଥାୟିଭାବର କାରଣକୁ ବିଭାବ କହନ୍ତି; ପରିଚୟ।

ବିଭାବନ, ନ. } ବିଭାବନା, ସ୍ତ୍ରୀ. } ବି. ( ବି-ଭାବ-ଅନ, ଆ ) ଅବଧାରଣ; ଚିନ୍ତନ; ଦର୍ଶନ; କାବ୍ୟର ଅଳଙ୍କାରବିଶେଷ; ଯେଉଁଠାରେ କାରଣ ବ୍ୟତିରେକେ କାର୍ଯ୍ୟୋତ୍ପତ୍ତି ହୁଏ।

ବିଭାବନୀୟ, ବିଂ. (ବି-ଭାବ-ଅନୀୟ) ଚିନ୍ତନୀୟ; ଅବଧାରଣୀୟ; ଦର୍ଶନୀୟ।

ବିଭାବରୀ, ବି. ସ୍ତ୍ରୀ. (ବି-ଭା-ବରୀ) ରଜନୀ, ରାତ୍ରି, ଯାମିନୀ; ହରିଦ୍ରା।

ବିଭାବସୁ, ବି. ପୁଂ. ( ବିଭା-ବସୁ ) ସୂର୍ଯ୍ୟ; ଅଗ୍ନି; ଚନ୍ଦ୍ର; ଅର୍କବୃକ୍ଷ; ହାରବିଶେଷ।

ବିଭାବିତ, ବିଂ. (ବି-ଭାବି-ତ) ଦୃଷ୍ଟ; ଅନୁଭୂତ; ବିବେଚିତ; ଚିନ୍ତିତ; ପ୍ରତିଷ୍ଠିତ।

ବିଭାଷା, ବି. ସ୍ତ୍ରୀ. (ବି=ବିରୁଦ୍ଧ-ଭାଷା) ଇଚ୍ଛାନୁଯାୟୀ କଳ୍ପନା, ବିକଳ୍ପ।

ବିଭାସିତ, ବିଂ. ( ବି-ଭାସ୍=ଦୀପ୍ତି ପାଇବା-ତ ) ଦୀପିତ, ପ୍ରକାଶିତ। ଯଥା—

ଦୂରେ ବାଲୁକାରାଶି ମିଶିଛି ଗଗନେ,
ବିଭାସିତ ସନ୍ଧ୍ୟା କନକ କିରଣେ। ନ. ବେ.

ବିଭିନ୍ନ, ବିଂ. (ବି-ଭିଦ୍-ତ) ମିଶ୍ରିତ; ସଂସୃଷ୍ଟ; ବିଭକ୍ତ; ପୃଥଗ୍‌ଭୂତ; ବିଦୀର୍ଣ୍ଣ।

ବିଭୀତକ, ବି. ପୁଂ. (ବି-ଭୀତ-କ) ବାହାଡ଼ାଗଛ। ବିଂ. ଭୟାକ୍ରାନ୍ତ।

ବିଭୀଷଣ, ବି. ପୁଂ. (ବି-ଭୀଷ୍-ଅନ) ରାବଣର କନିଷ୍ଠ ଭ୍ରାତା। ବିଂ. ଭୟଙ୍କର।

ବିଭୀଷିକା, ବି. ସ୍ତ୍ରୀ. ( ବି-ଭୀଷ୍-ଅକ ଆ ) ଭୟପ୍ରଦର୍ଶନ; ଭୟ ଦେଖାଇବା।

ବିଭୁ, ବି. ପୁଂ. (ବି-ଭୂ-ଉ) ପ୍ରଭୁ; ସାମନ୍ତ; ବ୍ରହ୍ମା; ବିଷ୍ଣୁ; ଶିବ; ପରମେଶ୍ୱର; ଭୃତ୍ୟ; ବ୍ୟାପକ। ବିଂ. ସର୍ବବ୍ୟାପୀ। (ପ୍ରଭୁ ଅର୍ଥରେ) ଯଥା—

ବିଭୁ ତୁ ମୁଁ ଦାସ ଏହିରୂପେ ଏକା ହୋଇଥିବୁ ଅନୁଗ୍ରହ। ବୈ. ବି.

ବିଭୂତି, ବି. ସ୍ତ୍ରୀ. (ବି-ଭୂ-ତି) ସମ୍ପତ୍ତି, ଐଶ୍ୱର୍ଯ୍ୟ, ସମୃଦ୍ଧି; ଅଣିମା, ଲଘିମା, ବ୍ୟାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ, ବଶିତ୍ୱ, କାମାବସାୟିତ୍ୱ, ଶିବଙ୍କର ଏହି ଅଷ୍ଟବିଧ ଐଶ୍ୱର୍ଯ୍ୟ; ଭସ୍ମ।

ବିଭୂଷଣ, ନ. } ବିଭୂଷା, ସ୍ତ୍ରୀ. } ବି. ( ବି-ଭୂଷ୍-ଅନ, ଅ ) ଆଭରଣ, ଅଳଙ୍କାର, ଶୋଭା। ଯଥା—

ବିଭୂଷଣ ହୋଇ ହେଲ ଏ ବିନା ଦୂଷଣ ଯୋଗ। ବ. ଷ.

ବିଭୂଷିତ, ବିଂ. (ବି-ଭୂଷ୍-ତ) ଅଳଙ୍କୃତ; ଶୋଭିତ ।

ବିଭୃତ, ବିଂ. (ବି-ଭୃ-ତ) ପ୍ରତିପାଳିତ, ପୁଷ୍ଟ; ଧୃତ ।

ବିଭେଦ, ବି. ପୁଂ. ( ବି-ଭିଦ୍-ଅ ) ବିଭିନ୍ନତା, ପ୍ରଭେଦ, ବୈଲକ୍ଷଣ୍ୟ; ଅପଗମ; ବିଭାଗ; ମିଶ୍ରଣ; ବିକାଶ; ବିଦଳନ; ବିଦାରଣ ।

ବିଭ୍ରମ, ବି. ପୁଂ. (ବି-ଭ୍ରମ୍-ଅ) ବିଳାସ; ସଂଶୟ, ଭ୍ରମ । ଯଥା—

ତୃଷ୍ଣା ସମୀପେ ଗଲେ, ବିଭ୍ରମ ସେ କୈକେୟୀଙ୍କି କଲେ । ବୈ. ବି.

ସାଦୃଶ୍ୟ । ମା-ସ୍ତ୍ରୀ. ବାର୍ଦ୍ଧକ୍ୟ, ବୃଦ୍ଧାବସ୍ଥା ।

ବିଭ୍ରାଟ, ବିଂ. (ବି-ଭ୍ରାଜ୍-ତ) ଅଳଙ୍କାରାଦିଦ୍ୱାରା ଦୀପ୍ତିଶୀଳ, ଶୋଭମାନ, ଦୀପ୍ତିମାନ୍ । ବି. ପୁଂ. ଅପଦ୍, ବିପଦ୍, ସଙ୍କଟ ।

ବିଭ୍ରାନ୍ତ, ବିଂ. ( ବି-ଭ୍ରମ୍-ତ ) ଭ୍ରମଯୁକ୍ତ, ଭ୍ରାନ୍ତ; ଭ୍ରମାନ୍ୱିତ ।

ବିଭ୍ରାନ୍ତି, ବି. ସ୍ତ୍ରୀ. (ବି-ଭ୍ରମ୍-ତି) ଭ୍ରମ, ଭୁଲ; ଭ୍ରାନ୍ତି ।

ବିମତ, ବିଂ. (ବି-ମନ୍-ତ) ଅସମ୍ମତ, ଅନଭିମତ, ଅଗ୍ରାହ୍ୟ, ବିରୁଦ୍ଧମତଯୁକ୍ତ; ଅପ୍ରିୟ; ଅନିଷ୍ଟ ।

ବିମତି, ବି. ସ୍ତ୍ରୀ. (ବି-ମନ୍-ତି) ଅନିଚ୍ଛା, ଅସମ୍ମତି ।

ବିମନାଃ, ବିମନସ୍କ, ବିଂ. (ବି-ମନସ୍) ଅନ୍ୟମନସ୍କ, ଉଦ୍‌ବିଗ୍ନ; ଦୁଃଖିତ; ବ୍ୟାକୁଳ । ଯଥା—

ବିମନା ଜାନକୀ ସେ ସପତ୍ନୀ ଭୟ ଗୁଣି । ବୈ. ବି.

ବିମନାୟମାନ, ବିଂ. ( ବି-ମନସ୍-ଙ୍ୟ-ଆନ ) ଦୁଃଖିତ, ବିଷଣ୍ଣ ।

ବିମର୍ଦ୍ଦ, ପୁଂ. } ବି. ( ବି-ମୃଦ୍-ଅ, ଅନ ) ଘର୍ଷଣ;
ବିମର୍ଦ୍ଦନ. } ପେଷଣ; ପରିମଳ; ସଂଘର୍ଷ; ବିନାଶ; ଘାତକ; ମନ୍ଥନ; ଚୂର୍ଣ୍ଣନ; ଗୁଳ୍ମ-ବିଶେଷ ।

ବିମର୍ଦ୍ଦିତ, ବିଂ. ( ବି-ମୃଦ୍-ତ ) ଦଳିତ; ମନ୍ଥିତ, ବିଲୋଡିତ, ଘର୍ଷିତ; ଚୂର୍ଣ୍ଣିତ; ପେଷ୍ଟ ।

ବିମର୍ଦ୍ଦୋଥ, ବି. ପୁଂ. (ବିମର୍ଦ୍ଦ-ଉଥ) ମର୍ଦ୍ଦନଦ୍ୱାରା ଉତ୍ପନ୍ନ ମନୋହର ଗନ୍ଧ ।

ବିମର୍ଶ, ପୁଂ. } ବି. (ବି-ମୃଶ୍-ଅ, ଅନ) ବିତର୍କ;
ବିମର୍ଶନ, ନ. } ତଥ୍ୟାନୁସନ୍ଧାନ; ବିଚାର, ବିବେଚନା; ଅସନ୍ତୋଷ; ଅଧୈର୍ଯ୍ୟ; ତର୍କକରଣ ।

ବିମର୍ଷ, ପୁଂ. } ବି. (ବି-ମୃଷ୍-ଅ, ଅନ) ଅସହନ;
ବିମର୍ଷଣ, ନ. } ଅସନ୍ତୋଷ; ନାଟ୍ୟାଙ୍ଗ ।

ବିମଳ, ବିଂ. (ବି-ମଳ) ଶୁଭ୍ର; ସ୍ୱଚ୍ଛ । ଯଥା—

ବିମଳ କେମନ୍ତ ଚନ୍ଦ୍ର ସେ ନ ମାନ୍ଥ ମର । ବୈ. ବି.

ନିର୍ମଳ; ସୁନ୍ଦର, ମନୋହର; ନିଷ୍କଳଙ୍କ । ଳା-ସ୍ତ୍ରୀ. ଦେବୀବିଶେଷ ।

ବିମାତା, ବି. ସ୍ତ୍ରୀ. ( ବି-ମାତୃ ) ମାତୃସପତ୍ନୀ, ସାବତ ମା ।

ବିମାତୃଜ, ବି. ପୁଂ. ( ବିମାତୃ-ଜ ) ବୈମାତ୍ରେୟ ଭ୍ରାତା, ମାତୃସପତ୍ନୀପୁତ୍ର । ଜା, ସ୍ତ୍ରୀ. ବୈମାତ୍ରେୟ ଭଗିନୀ ।

ବିମାନ, ବି. ପୁଂ. ନ. (ବି-ମାନ-କ୍ବିପ୍ ବା ବି-ମନ୍-ଅ) ଦେବରଥ, ବ୍ୟୋମଯାନ; ସିଂହାସନ; ମଣ୍ଡପ; ଅଶ୍ୱ, ଘୋଟକ । ( ଦେବରଥ ଅର୍ଥରେ ) ଯଥା—

ବିମାନେ ବସାଇ ନେବାରେ ସୁମନ୍ତ
ଯିବାରେ ଦେଖିଲେ ଜନେ । ବୈ. ବି.

ବିମାନନା, ବି. ସ୍ତ୍ରୀ. (ବି-ମାନି-ଅନ-ଆ) ଅବମାନ, ତିରସ୍କାର ।

ବିମାର୍ଗ, ବି. ପୁଂ. (ବି-ମୃଜ୍-ଅ, ଅଥବା ବି-ମାର୍ଗ) କୁପଥ; କଦାଚାର; ସମ୍ମାର୍ଜ୍ଜନୀ ।

ବିମିଶ୍ର, ବିଂ. (ବି-ମିଶ୍ର-ଅ) ମିଶ୍ରିତ, ମିଶାଇବା ।

ବିମୁକ୍ତ, ବିଂ. (ବି-ମୁଚ୍-ତ) ମୁକ୍ତିପ୍ରାପ୍ତ; ପରିତ୍ୟକ୍ତ ।

ବିମୁକ୍ତି, ବି. ସ୍ତ୍ରୀ. ( ବି-ମୁଚ୍-ତି ) ବିମୋଚନ, ବନ୍ଧନରୁ ମୁକ୍ତ ।

ବିମୁଖ, ବିଂ. ( ବି-ମୁଖ ) ପରାଙ୍ମୁଖ; ଅପ୍ରସନ୍ନ; ନିବୃତ୍ତ; ନିଃସ୍ପୃହ ।

ବିମୁଗ୍ଧ, ବିଂ. (ବି-ମୁହ୍-ତ) ବିଶେଷରୂପେ ମୋହିତ; ମୋହପ୍ରାପ୍ତ; ସ୍ୱାଭାବିକ ଜ୍ଞାନଶୂନ୍ୟ ।

ବିମୂଢ଼, ବିଂ. ( ବି-ମୁହ-ତ ) ଅଜ୍ଞାନ, ମୂର୍ଖ; ନିର୍ବୋଧ ।

ବିମୃଶ୍ୟକାରୀ, ବିମୃଷ୍ୟକାରୀ, ବିଂ. ( ବିମୃଶ୍ୟ-କାରିନ୍ ) ଯେ ବ୍ୟକ୍ତି ବିବେଚନା କରି କର୍ମ କରେ ।

ବିମୋକ୍ଷଣ, ବିମୋଚନ, ବି. ନ. ( ବି-ମୋକ୍ଷଣ, ବି-ମୁଚ୍-ଅନ) ବିମୁକ୍ତି; ଉଦ୍ଧାର; ପରିତ୍ରାଣ ।

ବିମୋହନ, ବି. ନ.(ବି-ମୋହ-ଅନ) ମୁଗ୍ଧକରଣ, ମୋହିତକରଣ, ମୋହ ଜନ୍ମାଇବା । ବିଂ. ମୋହଜନକ, ମାୟାଜନକ ।

ବିମୋହିତ, ବିଂ. (ବି-ମୁହ୍-ତ କିମ୍ବା ବି-ମୋହ-ଇତ) ମୋହପ୍ରାପ୍ତ, ମୁଗ୍ଧ; ମୂର୍ଚ୍ଛିତ, ହିତାହିତ ସାମାନ୍ୟ ଜ୍ଞାନଶୂନ୍ୟ, ଅଜ୍ଞାନ ।

ବିମ୍ବ, ବି. ପୁଂ. ନ. (ବୀ=ଗମନ କରିବା, ଦୀପ୍ତି ପାଇବା-ବ, ମ ଆଗମ, ଈ ସ୍ଥାନରେ ଇ ) ସୂର୍ଯ୍ୟ ଓ ଚନ୍ଦ୍ରର ମଣ୍ଡଳ; ମୂର୍ତ୍ତି; ପ୍ରତିମୂର୍ତ୍ତି, ପ୍ରତିବିମ୍ବ, ଛାୟା; ଲୋହିତବର୍ଣ୍ଣ ଫଳବିଶେଷ, କଇଁଚକାକୁଡ ।

ବିମ୍ବିତ, ବିଂ. (ବିମ୍ବ-ଇତ) ପ୍ରତିବିମ୍ବିତ; ପ୍ରତିଫଳିତ; ଅର୍ପିତ ।

ବିମ୍ବୋଷ୍ଠ, ବିମ୍ବୌଷ୍ଠ, ବିଂ. (ବିମ୍ବ-ଓଷ୍ଠ) ରକ୍ତବର୍ଣ୍ଣ ଓଷ୍ଠବିଶିଷ୍ଟ, ଯାହାର ଓଷ୍ଠ ବିମ୍ବଫଳ ପରି ରକ୍ତବର୍ଣ୍ଣ ।

ବିୟତ୍, ବି. ନ. (ବି-ଯମ୍-?) ଆକାଶ, ଗଗନ ।

ବିୟଦ୍ଗଙ୍ଗା, ବି. ସ୍ତ୍ରୀ. (ବିୟତ୍-ଗଙ୍ଗା) ସ୍ୱର୍ଗଗଙ୍ଗା, ମନ୍ଦାକିନୀ ।

ବିୟନ୍ମଣି, ବି. ପୁଂ. (ବିୟତ୍-ମଣି) ସୂର୍ଯ୍ୟ, ସବିତା ।

ବିଯାତ, ବିଂ. (ବି-ଯାତ) ଧୃଷ୍ଟ, ପ୍ରଗଲ୍ଭ, ନିର୍ଲ୍ଲଜ୍ଜ ।

ବିଯୁକ୍ତ, ବିଯୁତ, ବିଂ. (ବି-ଯୁକ୍ତ, ଯୁତ) ବିଚ୍ଛିନ୍ନ, ପୃଥକ୍‌କୃତ, ବିରହିତ, ରହିତ ।

ବିଯୋଗ, ବିୟୋଗ, ବି. ପୁଂ. (ବି-ଯୋଗ) ବିଚ୍ଛେଦ, ବିରହ, ଅଭାବ ।

ବିଯୋଗୀ, ବିଂ. ( ବିଯୋଗ-ଇନ୍ ) ବିରହୀ, ଅସଂଯୁକ୍ତ, ବିଚ୍ଛେଦଯୁକ୍ତ ।

ବିଯୋଜିତ, ବିଂ. ( ବି-ଯୋଜିତ ) ବିରହିତ, ପୃଥକ୍‌କୃତ, ବିଶ୍ଳିଷ୍ଟ ।

ବିଯୋଡ, ବି. (ଦେଶଜ) ଅମିଳନ; ଅଯୁଗଳ ।

ବିରକ୍ତ, ବିଂ. ( ବି-ରଞ୍ଜ୍-ତ ) ବୈରାଗ୍ୟଯୁକ୍ତ; ଅନନୁରକ୍ତ; ବିରତ; ବିମୁଖ ।

ବିରକ୍ତଭାବ, ବି. ପୁଂ. ( ବିରକ୍ତ-ଭାବ ) ବିରାଗ, ବୈରାଗ୍ୟ; ଅନିଚ୍ଛା; ଔଦାସ୍ୟ; ପ୍ରତିକୂଳତା ।

ବିରକ୍ତି, ବି. ସ୍ତ୍ରୀ. ( ବି-ରଞ୍ଜ୍-ତି ) ଅନନୁରାଗ; ଔଦାସ୍ୟ; ବୈରାଗ୍ୟ ।

ବିରଚିତ, ବିଂ (ବି-ରଚ-ତ) ନିର୍ମିତ, ଗଠିତ; ପ୍ରଣୀତ, କୃତ; ବିସ୍ତୃତ; ଲିଖିତ ।

ବିରଜାଃ, ବି. ସ୍ତ୍ରୀ. (ବି-ରଜସ୍ ) ଯେ ସ୍ତ୍ରୀର ଋତୁ ନିବୃତ୍ତି ହୋଇଅଛି । ବିଂ ରଜୋଗୁଣରହିତ ।

ବିରଜା, ବି. ସ୍ତ୍ରୀ. ( ବି-ରଞ୍ଜ୍-ଅ-ଆ ) ଦୁର୍ବା; ରାଧାର ସଖୀବିଶେଷ; ଯଯାତି ରାଜାଙ୍କ ମାତା; ବ୍ରାହ୍ମଣୀନଦୀତୀରସ୍ଥ ତୀର୍ଥସ୍ଥାନବିଶେଷ । ଯଥା--

ବିରଜାମଣ୍ଡଳରେ ତପସ୍ୟା କଲଦୃଷ୍ଟରେ ବହୁ ମନୀଷୀ । ବୈ.ବି.

ବିରଞ୍ଚ, ବିରଞ୍ଚି, ବି. ପୁଂ. ( ବି-ରଚ୍-ଅ, ଇ, ମ୍-ଆଗମ) ବ୍ରହ୍ମା, ପିତାମହ, ଧାତା । ଯଥା—

ବିରଞ୍ଚି ଲେଖିଛି ଭାଳପଟେ ଭ୍ରମର,
ବିରଚିବ ନନ୍ଦନବନରେ ବିହାର । ବୈ. ବି.

ବିରତ, ବିଂ. ( ବି-ରମ୍-ତ ) ନିବୃତ୍ତ, କ୍ଷାନ୍ତ; ବିଶ୍ରାନ୍ତ; ବିମୁଖ ।

ବିରତି, ବି. ସ୍ତ୍ରୀ. ( ବି-ରମ୍-ତି ) ନିବୃତ୍ତି; ଶାନ୍ତି; ବିରାଗ ।

ବିରଳ, ବିଂ ( ବି-ରା-ଅଳ) ଅଳ୍ପ; ସ୍ୱଳ୍ପ; ନିର୍ଜ୍ଜନ; ଛଡ଼ାଛଡ଼ି । ଯଥା—

ବିରଳ ସେଠାରେ ମାନବ ସଞ୍ଚାର,
କରିବ ମୋର ପ୍ରିୟର ସତ୍କାର । ନ. କେ,

ବିରସ, ବିଂ. ( ବି-ରସ ) ରସହୀନ, ବିସ୍ୱାଦୁ; ବିରକ୍ତିଜନକ; ଅତୃପ୍ତିକର ।

ବିରହ, ବି. ପୁଂ. (ବି-ରହ-ଅ) ବିଚ୍ଛେଦ, ବିଯୋଗ; ତ୍ୟାଗ; ଅଭାବ ।

ବିରହିତ, ବିଂ. (ବିରହ-ଇତ) ବିହୀନ; ତ୍ୟକ୍ତ; ରହିତ; ବିଯୁକ୍ତ; ବିଶ୍ଲିଷ୍ଟ ।

ବିରହୀ, ବିଂ. (ବିରହ-ଇନ୍) ବିଯୋଗୀ, ବିଚ୍ଛେଦଯୁକ୍ତ । ହିଣୀ-ସ୍ତ୍ରୀ. ବିଯୋଗିନୀ ।

ବିରାଗ, ବି. ପୁଂ. ( ବି-ରଞ୍ଜ୍-ଅ ) ବୈରାଗ୍ୟ; ବିବେକ; ବିରକ୍ତ; ଅନୁରାଗ । ବିଂ. ରାଗହୀନ । ଯଥା—

ବିରାଗେ ଥାଇଁକି ଲଳନା ସଙ୍ଗ ଲୋକଲୋଚନ । ତ. ଗ.

ବିରାଜମାନ, ବିଂ. (ବି-ରାଜ୍-ଶାନଚ୍) ଦୀପ୍ତିବିଶିଷ୍ଟ, ଶୋଭମାନ ।

ବିରାଜିତ, ବିଂ. (ବି-ରାଜ୍-ତ) ଶୋଭିତ, ପ୍ରକାଶିତ ।

ବିରାଟ୍, ବି. ପୁଂ. ( ବି-ରାଜ୍-୦ ) କ୍ଷତ୍ରିୟ; କାନ୍ତି; ଦୀପ୍ତି; ସୌନ୍ଦର୍ଯ୍ୟ; ବ୍ରହ୍ମ; ସର୍ବବ୍ୟାପୀ ପୁରୁଷ, ପରମେଶ୍ୱର, ସ୍ୱାୟମ୍ଭୁବ ମନୁ; ଛନ୍ଦୋବିଶେଷ । ବିଂ. ବୃହତ୍ ।

ବିରାଟ, ବି. ପୁଂ. (ବି-ରଟ୍-ଅ) ବଗୁଡ଼ାର ଅର୍ଦ୍ଧ-କ୍ରୋଶ ଉତ୍ତରରେ ସ୍ଥିତ ଦେଶବିଶେଷ; ଏହି ଦେଶର ରାଜା ।

ବିରାଧ, ବି. ପୁଂ. (ବି-ରାଧ୍-ଅ) ରାକ୍ଷସବିଶେଷ ।

ବିରାମ, ବି. ପୁଂ. (ବି-ରମ୍-ଅ) ବିଶ୍ରାମ; ନିବୃତ୍ତି; ଉପରମ; ଅବସାନ; ବୈରାଗ୍ୟ; ବିରତି; ବ୍ୟାକରଣରେ ପରବର୍ଣ୍ଣାଭାବ ।

ବିରାବ, ବି. ପୁଂ. ( ବି-ରୁ-ଅ ) ଶବ୍ଦ, ଧ୍ୱନି, ଗୋଳମାଳ । ବିଂ. ରବହୀନ ।

ବିରିଞ୍ଚ, } ବି. ପୁଂ. ( ବି-ରଚ୍-ଅ (ଅନ୍) ଇନ୍ )
ବିରିଞ୍ଚି, } ବ୍ରହ୍ମା; ବିଷ୍ଣୁ; ଶିବ ।

ବିରୁଡ଼ା, ବି. (ଦେଶଜ) ଦଂଶକ କୀଟବିଶେଷ ।

ବିରୁତ, ବି. ନ. (ବି-ରୁ-ତ) ଅବ୍ୟକ୍ତଧ୍ୱନି, ରବ ।

ବିରୁଦ୍ଧ, ବିଂ (ବି-ରୁଧ୍-ତ) ବିପରୀତ, ଓଲଟା; ବନ୍ଦ, ଅଟକ କରିବା; ବିଦ୍ୱେଷ୍ଟା ।

ବିରୂଢ଼, ବିଂ. ( ବି-ରୁହ-ତ ) ଉତ୍ପନ୍ନ, ଜାତ; ଅଙ୍କୁରିତ; ବଦ୍ଧମୂଳ; ଟଙ୍କାରରୂପେ ନିମଗ୍ନ ଅବରୋହଣବିଶିଷ୍ଟ ।

ବିରୂପ, ବିଂ. (ବି-ରୂପ) କୁରୂପ, କୁତ୍ସିତ, ପ୍ରତିକୂଳ । ବି. ନ. ପିପ୍ପଳୀ ମୂଳ । ପୁଂ. ସୁମନୋରାଜ-ପୁତ୍ର । ପା-ସ୍ତ୍ରୀ. ଦୁରାଳଭା ।

ବିରୂପାକ୍ଷ, ବି. ପୁଂ. ( ବିରୂପ-ଅକ୍ଷି ) ଶିବ, ତ୍ରିଲୋଚନ, ମହାଦେବ ।

ବିରେଚନ, ବି. ନ. (ବି-ରିଚ୍-ଅନ) ମଳନିଃସାରଣ, ଉଦରଭଙ୍ଗ, ଭେଦ ।

ବିରେଚକ, ବିଂ.(ବି-ରେଚି-ଅକ) ଭେଦକାରକ, ଭେଦ୍, ଔଷଧବିଶେଷ ।

ବିରୋଚନ, ବି. ପୁଂ. (ବି-ରୁଚ୍-ଅନ) ଅର୍କବୃକ୍ଷ; ସୂର୍ଯ୍ୟ; ଅଗ୍ନି; ଚନ୍ଦ୍ର; ବଳି ରାଜାଙ୍କ ପିତା; ପ୍ରହ୍ଲାଦର ପୁତ୍ର । ବିଂ. ଅରୋଚକ ।

ବିରୋଧ, ପୁଂ. } ବି. ( ବି-ରୁଧ୍-ଅ, ଅନ )
ବିରୋଧନ, ନ. } ବିପକ୍ଷତା, ବୈର; ରୋଧ; ଅବରୋଧ; ବୈପରୀତ୍ୟ; ବାଧା; ଅନୈକ୍ୟ ।

ବିରୋଧୀ, ବିଂ. (ବିରୋଧ-ଇନ୍) ବିରୁଦ୍ଧ, ପ୍ରତିକୂଳ; ବିପରୀତ; ଶତ୍ରୁ, ବିରୋଧକାରୀ ।

ବିରୋଧୋକ୍ତି, ବି. ସ୍ତ୍ରୀ. (ବିରୋଧ-ଉକ୍ତି) ବିପ୍ରଳାପ; କାବ୍ୟାଳଙ୍କାରବିଶେଷ; ବିରୋଧବଚନ ।

ବିଲ, ବି. ନ. ( ବିଲ୍-ଅ ) ବିବର, ଛିଦ୍ର, ଗର୍ତ୍ତ, ଗୁହା । ପୁଂ. ଉଚ୍ଚୈଃଶ୍ରବା ଅଶ୍ୱ; ବେତଗଛ ।

ବିଲ, ବି. (ଦେଶଜ) କ୍ଷେତ, କିଆରୀ । ଯଥା—

> ଟଳେ ପୂରଇ ନବୀ ବିଲ ପୋଖରୀ,
> ଶୁଭଇ କୃଷକର ଗୀତଲହରୀ । ଛ. ମା.

ବିଲକ୍ଷଣ, ବିଂ. (ବି-ଲକ୍ଷଣ) ଅସାଧାରଣ, ଅସାମାନ୍ୟ, ପୃଥକ୍; ପରୀକ୍ଷକ; ଦର୍ଶକ ।

ବିଲଗ, ବି. ଅଲଗା, ଅସଂଯୋଗ । ଯଥା—

> ଲୁଡ ବିଲଗରୁ ଭଜନ୍ତି ଚନ୍ଦ,
> ଭାବଇ ବନ୍ଧୁ ବୋଲି ଲଭି ଖେଦ । ର. ଚ.

ବିଲଗ୍ନ, ବି. ନ. ( ବି-ଲଗ୍-ତ ) କଟିଦେଶ; ଜନ୍ମଲଗ୍ନ । ବିଂ. ସଂଲଗ୍ନ; କୃଶ, କ୍ଷୀଣ; ଦତ୍ତ; ଜନିତ ।

ବିଲଙ୍ଘନ, ବି. ନ. (ବି-ଲଙ୍ଘ୍-ଅନ) ଉଲ୍ଲଙ୍ଘନ, ଅତିକ୍ରମ ।

ବିଲଙ୍ଘିତ, ବିଂ. ( ବି-ଲଙ୍ଘ୍-ତ ) ଅତିକ୍ରାନ୍ତ, ଉଲ୍ଲଙ୍ଘିତ ।

ବିଲପନ, ବିଲପିତ, ବି. ନ. ( ବି-ଲପ-ଅନ, ତ) ବିଳାପ, ଶୋକବାକ୍ୟ ।

ବିଳମ୍ବ, ପୁଂ. } ବି. ( ବି-ଲମ୍ବ-ଅ, ଅନ )
ବିଳମ୍ବନ, ନ. } ଦୋଳନ, ଲମ୍ବନ; ଅଶୀଘ୍ରତା, ଡେରି । ଯଥା—

> ବିଳମ୍ବ କରନ୍ତେ ପ୍ରଳମ୍ବ-ଭୂଜକା ଡାକେ ଲକ୍ଷଣ କୁମାର ।
> ବୈ. ଦ.

ବିଳମ୍ବିତ, ବିଂ. ( ବିଳମ୍ବ-ଇତ ) ଲମ୍ବମାନ; ଅଶୀଘ୍ର, ବିଳମ୍ବଯୁକ୍ତ ।

**ବିଲୟ**, ବି. ପୁଂ. (ବି-ଲୀ-ଅ) ବିନାଶ, ଧ୍ୱଂସ; ଲୟ, ପ୍ରଳୟ । ବିଂ. ଲୟବହିର୍ଭୂତ ।

**ବିଲଶୟ**, ବି. ପୁଂ. (ବିଳ-ଶୟ) ସର୍ପ, ଭୁଜଙ୍ଗ, ଉରଗ, ପନ୍ନଗ ।

**ବିଲସନ, ବିଲସିତ**, ବି.ନ. (ବି-ଲସ୍-ଅନ, ତ) ବିଳାସ; ଲୀଳା; ଦୀପ୍ତି, ଶୋଭା; କ୍ରୀଡ଼ା; ସ୍ଫୁରଣ; ପ୍ରକାଶ; ଅଗ୍ର ।

**ବିଲାଇ, ବିଲେଇ**, (ବିଡ଼ାଳ ଶବ୍ଦଜ) ବିଡ଼ାଳ ।

**ବିଲାପ**, ବି. ପୁଂ. (ବି-ଲପ୍-ଅ) ଖେଦୋକ୍ତି ।

**ବିଲାସ**; ବି. ପୁଂ. (ବି-ଲସ୍-ଅ) ଅଙ୍ଗଭଙ୍ଗୀ-ବିଶେଷ, ଶୃଙ୍ଗାରଚେଷ୍ଟାବିଶେଷ, କ୍ରୀଡ଼ା, ଆମୋଦପ୍ରମୋଦ; ଶୋଭା; ସୁଖଭୋଗ; ସ୍ଫୁରଣ; ପ୍ରାଦୁର୍ଭାବ । ସ୍ତ୍ରୀଲୋକମାନଙ୍କର କ୍ରିୟାବିଶେଷ ।

**ବିଲାସୀ**, ବିଂ. (ବିଲାସ-ଇନ୍) ବିଲାସଯୁକ୍ତ, କ୍ରୀଡ଼ାରତ, ଭୋଗବାନ୍, ବିଲାସପରାୟଣ ।

**ବିଲାସିନୀ**, ବି. ସ୍ତ୍ରୀ. (ବିଳାସ-ଇନ୍-ସ୍ତ୍ରୀଲିଙ୍ଗେ ଈ,) ଭାର୍ଯ୍ୟା; ରମଣୀ; ବେଶ୍ୟା ।

**ବିଲିବିଲେଇବା**, କ୍ରି.(ଦେଶଜ) ନିଦବାଉଳାରେ ବକିବା ।

**ବିଲୀନ**, ବି. (ବି-ଲୀ-ତ) ମଗ୍ନ; ମିଶ୍ରିତ; ଲୟ-ପ୍ରାପ୍ତ, ଲୋପପ୍ରାପ୍ତ, ଅନ୍ତର୍ହିତ, ନିବିଷ୍ଟ; ଦ୍ରବୀ-ଭୂତ; ଗଳିତ, ଝରିତ ।

**ବିଲୁଅ**, ବି. (ଦେଶଜ) ଶୃଗାଳ ।

**ବିଲୁପ୍ତ**, ବିଂ. (ବି-ଲୁପ୍-ତ) ଲୋପପ୍ରାପ୍ତ; ନଷ୍ଟ; ତିରୋଭୂତ; ଲୁଣ୍ଠିତ; ଛିନ୍ନ; ଆକ୍ରାନ୍ତ; ଗୃହୀତ ।

**ବିଲେପ**, ବି. ପୁଂ. (ବି-ଲିପ୍-ଅ) ପ୍ରଲେପ ଦ୍ରବ୍ୟ; ଲେପନ, ଚନ୍ଦନ । ପା, ଭାତମଣ୍ଡ, ପେଜ ।

**ବିଲେପନ**, ବି. ନ. (ବି-ଲିପ୍-ଅନ) ଲେପନ-ବସ୍ତୁ; ଲେପନଯୋଗ୍ୟ ସୁଗନ୍ଧବସ୍ତୁ । ନୀ, ସ୍ତ୍ରୀ. ସୁବେଶା ସ୍ତ୍ରୀ ।

**ବିଲେବାସୀ, ବିଲେଶୟ**, ବି. ପୁଂ. ( ବିଲେ=ଗର୍ତ୍ତରେ-ବାସିନ୍, ଶୟ=ଶୟନ କରିବା) ସର୍ପ, ଉରଗ, ପନ୍ନଗ; ଭୋଗୀ; ମୂଷିକ; ଶଶକ । ବିଂ. ଯେ ଗର୍ତ୍ତରେ ବାସ କରେ ।

**ବିଲୋକନ**, ବି. ନ. (ବି-ଲୋକ୍-ଅନ) ଦୃଷ୍ଟି, ନେତ୍ର, ଚକ୍ଷୁ, ଅବଲୋକନ; ଦର୍ଶନ ।

**ବିଲୋକନୀୟ**, ବିଂ. ( ବି-ଲୋକ୍-ଅନୀୟ ) ଦେଖିବାର ଯୋଗ୍ୟ, ଦର୍ଶନୀୟ; ସୁଦୃଶ୍ୟ ।

**ବିଲୋକିତ**, ବିଂ. (ବି-ଲୋକ୍-ତ) ଅବଲୋକିତ, ଦୃଷ୍ଟ । ବି. ନ. ଦର୍ଶନ, ଦୃଷ୍ଟି ।

**ବିଲୋଡ଼ନ**, ବି. ନ. (ବି-ଲୁଡ୍-ଅନ) ମନ୍ଥନ, ଆଲୋଡ଼ନ=ଘୋଣ୍ଟା ।

**ବିଲୋଡିତ**, ବିଂ. (ବି-ଲୁଡ୍-ଇତ) ଆଲୋଡିତ, ମନ୍ଥିତ । ବି. ନ. ତକ୍ର, ଘୋଳ ।

**ବିଲୋପ**, ପୁଂ. }
**ବିଲୋପନ**, ନ. } ବି. (ବି-ଲୋପି-ଅ, ଅନ) ଲୋପ, ବିନାଶ; ତିରୋଭାବ; ମୃତ୍ୟୁ; ଧ୍ୱଂସ ।

**ବିଲୋଭନ**, ବି. ନ. ( ବି-ଲୋଭ୍-ଅନ ) ଲୋଭ ଦେଖାଇବା, ଲୋଭପ୍ରଦର୍ଶନ; ଶୋଭନୀୟ ବସ୍ତୁ ।

**ବିଲୋମ**, ବିଂ. (ବି-ଲୋମ) ବିପରୀତ; ପ୍ରତିକୂଳ । ବି. ପୁଂ. ସର୍ପ; ବରୁଣ; କୁକ୍କୁର । ନ. ଜଳ କାଢିବାର ଯନ୍ତ୍ରବିଶେଷ ।

**ବିଲୋମଜ**, ବିଂ. (ବିଲୋମ-ଜ) କ୍ଷତ୍ରିୟ ଔରସରେ ବ୍ରାହ୍ମଣୀର ଗର୍ଭଜାତ, ବୈଶ୍ୟର ଔରସରେ କ୍ଷତ୍ରିୟର ଗର୍ଭଜାତ ଇତ୍ୟାଦି ।

**ବିଲୋଳ**, ବିଂ. (ବି-ଲୁଲ୍-ଅ) କମ୍ପମାନ, ଚଞ୍ଚଳ, ଚପଳ ।

**ବିଳୋଉବା**, କ୍ରି. ( ଦେଶଜ ) ଚର୍ଚ୍ଚା କରିବା; ସମ୍ମାନ କରିବା । ଯଥା—

> ବିଦେହ ସ୍ୱଜନ ତେଜି ସମ୍ଭ୍ରାନ୍ତ ରଥରୁ,
> ବିଳୋଉଲେ ଦଶରଥ ବନ୍ଧୁବର୍ଗ ନେଇ । ବୈ. ବି.

**ବିଲ୍ୱ**, ବି. ନ. ( ବିଲ୍-ବନ୍ ) ବେଲ, ଶ୍ରୀଫଳ; ଏକ ପଳ ପରିମାଣ । ପୁଂ. ବେଲଗଛ ।

**ବିବକ୍ଷା**, ବି. ସ୍ତ୍ରୀ. (ବଚ୍-ସନ୍-ଅ-ଆ) ବୋଲିବାର ଇଚ୍ଛା; ଅଭିଳାଷ, ଇଚ୍ଛା ।

**ବିବକ୍ଷିତ**, ବିଂ. (ବଚ୍-ସନ୍-ତ) ଯାହା କହିବାକୁ ଇଚ୍ଛା କରା ଯାଇଅଛି ।

**ବିବକ୍ଷୁ**, ବିଂ. (ବଚ୍-ସନ୍-ଉ) ବୋଲିବାକୁ ଇଚ୍ଛୁକ ।

**ବିବଦମାନ**, ବିଂ. ( ବି-ବଦ୍-ଅନ ) ବିରୋଧୀ, ବିବାଦୀ ।

**ବିବର**, ବି. ନ. (ବି-ବୃ-ଅ) ଗର୍ତ୍ତ, ଛିଦ୍ର, ରନ୍ଧ୍ର; ଦୋଷ; ବିଚ୍ଛେଦ; ପୃଥକ୍‌ଭାବ ।(ରନ୍ଧ୍ର ଅର୍ଥରେ) ଯଥା—

> ଭଙ୍ଗା ନାବ ବୋଲି ଯାଉଛ ପାଇଁ,
> ପାଣି ପଶୁଅଛି ବିବର ଦେଇ । ନାବକେଳି ।

**ବିବରଣ**, ବି. ନ. ( ବି-ବୃ-ଅନ ) ବ୍ୟାଖ୍ୟା, ବର୍ଣ୍ଣନା; ଟୀକା, ଅର୍ଥପ୍ରକାଶ କରା; ପ୍ରକାଶ ।

**ବିବର୍ଣ୍ଣ**, ବିଂ. (ବି-ବର୍ଣ୍ଣ) ବିକୃତବର୍ଣ୍ଣ, ମଳିନ । ବି. ପୁଂ. ନୀଚଜାତି ।

**ବିବର୍ତ୍ତ**, ବି.ପୁଂ. (ବି-ବୃତ୍-ଅ) ଘୂର୍ଣ୍ଣନ;ପରିବର୍ତ୍ତନ; ଭ୍ରମଣ; ପରିଣାମ, ନୃତ୍ୟ; ସମୂହ; ବିଶେଷରୂପେ ସ୍ଥିତ ।

**ବିବର୍ତ୍ତନ**, ବି. ନ. (ବି-ବୃତ୍-ଅନ) ପରିଭ୍ରମଣ; ଘୂର୍ଣ୍ଣନ; ପରିବର୍ତ୍ତନ; ପ୍ରତ୍ୟାବୃତ୍ତି; ଭ୍ରମଣ ।

**ବିବର୍ତ୍ତିତ**, ବିଂ. (ବି-ବୃତ୍-ତ) ପ୍ରତ୍ୟାବର୍ତ୍ତିତ; ଘୂର୍ଣ୍ଣିତ, ଭ୍ରମିତ, ଅପନୀତ ।

**ବିବର୍ଦ୍ଧନ**, ବି. ନ. (ବି-ବର୍ଦ୍ଧି-ଅନ) ବିଶେଷରୂପେ ବଢିବା, ଛେଦନ; ଖଣ୍ଡନ ।

**ବିବଶ**, ବିଂ. (ବି-ବଶ୍-ଅ) ଅବଶ; ଅବଶୀଭୂତ, ଅବାଧ; ଅଚେତନ, ନିଶ୍ଚେଷ୍ଟ; ସ୍ୱାଧୀନ; ପ୍ରଶାନ୍ତଚେତାଃ; ବିହ୍ୱଳ ।

**ବିବସ୍ୱାନ୍**, ବି. ପୁଂ. ( ବି-ବସ୍-ବତ୍ ) ସୂର୍ଯ୍ୟ; ଦେବତା; ଅରୁଣ, ବୈବସ୍ୱତମନୁ; ଅର୍କବୃକ୍ଷ ।

**ବିବାଦ**, ବି. ପୁଂ. (ବି=ବିରୁଦ୍ଧ-ବାଦ=କଥନ) ବିରୋଧ, କଳହ; ବ୍ୟବହାର ।

**ବିବାଦୀ**, ବିଂ. ( ବିବାଦ-ଇନ୍ ) ବିରୋଧ, ବିବାଦକାରୀ ।

**ବିବାସିତ**, ବିଂ. (ବି-ବାସି-ତ) ସ୍ୱଦେଶରୁ ଦୂରୀକୃତ, ନିର୍ବାସିତ ।

**ବିବାହ**, ବି. ପୁଂ. (ବି-ବହ-ଅ) ପରିଣୟ, ଦାରପରିଗ୍ରହ, ବିବାହ ୮ ପ୍ରକାର । ଯଥା—ବ୍ରାହ୍ମ, ଆର୍ଷ, ପ୍ରାଜାପତ୍ୟ, ଦୈବ, ଆସୁର, ଗାନ୍ଧର୍ବ, ରାକ୍ଷସ, ପୈଶାଚ ।

**ବିବାହିତ**, ବିଂ. ( ବିବାହ-ଇତ ) କୃତଦାର, ପରିଣୀତ । ବି.ପୁଂ. ବିବାହକର୍ତ୍ତା, ପରିଣେତା ।

**ବିବିକ୍ତ**, ବିଂ. (ବି-ବିଚ୍-ତ) ବିଜନ, ନିର୍ଜନ; ଶୁଦ୍ଧ, ପବିତ୍ର; ଏକାଗ୍ର; ପୃଥକ୍‌କୃତ ।

**ବିବିକ୍ଷୁ**, ବିଂ. (ବିଶ୍-ସନ୍-ଉ) ପ୍ରବେଶ କରିବାକୁ ଇଚ୍ଛୁକ ।

**ବିବିଧ**, ବିଂ. (ବି-ବିଧା) ବହୁପ୍ରକାର, ନାନାବିଧ, ଅନେକ ପ୍ରକାର ।

**ବିବି**, (ହିନ୍ଦୀ) ମାନ୍ୟା ସ୍ତ୍ରୀଲୋକ, ସ୍ତ୍ରୀ ।

**ବିବୃତ**, ବିଂ. ( ବି-ବୃ-ତ ) ବିସ୍ତୃତ, ପ୍ରସାରିତ; ବର୍ଣ୍ଣିତ; ପ୍ରକାଶିତ; ପ୍ରମାଣୀକୃତ; ପ୍ରକଟିତ; ମହତ୍ ; ଉନ୍ମୁକ୍ତ; ଖୋଲା ।

**ବିବୃତି**, ବି. ସ୍ତ୍ରୀ. ( ବି-ବୃ-ତି ) ବ୍ୟାଖ୍ୟା, ଟୀକା, ବିବରଣ, ବିସ୍ତାର, ପ୍ରକାଶ ।

**ବିବୃତ୍ତ**, ବିଂ. (ବି-ବୃତ-ତ) ଘୂର୍ଣ୍ଣିତ; ପରାବୃତ୍ତ ।

**ବିବୃତ୍ତି**, ବି.ସ୍ତ୍ରୀ. (ବି-ବୃତ୍-ତି) ଘୂର୍ଣ୍ଣନ, ଚକ୍ରବତ୍ ଭ୍ରମଣ; ସ୍ଫୁରଣ ।

**ବିବୃଦ୍ଧ**, ବିଂ. (ବି-ବୃଧ୍-ତ) ବୃଦ୍ଧିପ୍ରାପ୍ତ, ପ୍ରବୃଦ୍ଧ ।

**ବିବେକ**, ବି. ପୁଂ. (ବି-ବିଚ୍-ଅ) ବିଚାର, ବିବେଚନା; ଭେଦ; ବୈରାଗ୍ୟ; ବିଭିନ୍ନତା; ତତ୍ତ୍ୱଜ୍ଞାନ; ସ୍ନାନାଗାର ।

**ବିବେକୀ** ବିଂ. (ବିବେକ-ଇନ୍) ବିବେଚନାକାରୀ, ବିଚାରକ, ବିବେକଯୁକ୍ତ; ବିରାଗୀ । ବି. ପୁଂ. ଦେବସେନରାଜପୁତ୍ର ।

**ବିବେଚକ**, ବିଂ. ( ବି-ବିଚ୍-ଅକ ) ବିଚାରକ୍ଷମ, ବିବେଚନାକାରୀ, ବିଚକ୍ଷଣ ।

**ବିବେଚନ**, ବି. ନ. (ବି-ବିଚ୍-ଅନ)<br>
**ବିବେଚନା**, ବି.ସ୍ତ୍ରୀ. (ବି-ବିଚ୍-ଅନ-ଆ) } ବିଚାର; ବିତର୍କ; ବିଶେଷରୂପେ ଆଲୋଚନା ।

ବବେଚମାୟ, ବ. (ବ-ଚିର୍-ଅମାୟ) ବବେଚ୍ୟ, ବବେଚନାର ଯୋଗ୍ୟ ।

ବବେଚ୍ୟ, ବଂ. ( ବ-ଚର୍-ଯ ) ବବେଚନାର ଯୋଗ୍ୟ ।

ବଶ୍, ବ. ପୁଂ. (ବଶ୍-°) ବୈଶ୍ୟ, ବଣିକ୍‌ଜାତ; ମନୁଷ୍ୟ । ସ୍ତ୍ରୀ. କନ୍ୟା । ବଂ. ବ୍ୟାପକ ।

ବଶ, ବ. ନ. (ବଶ୍-ଅ) ମୃଣାଳ । ପୁଂ. ବୈଶ୍ୟ-ଜାତ; ମନୁଷ୍ୟ । ଶୀ-ସ୍ତ୍ରୀ. କନ୍ୟା । ବଂ. ବ୍ୟାପକ ।

ବଶଦ, ବଂ. ( ବ-ଶଦ୍-ଅ ) ଶୁଭ୍ର, ନର୍ମଳ, ପରଷ୍କୃତ; ପ୍ରସନ୍ନ; ସୁନ୍ଦର; ଅନୁକୂଳ; ସ୍ପଷ୍ଟ; ମନୋହର । ବଂ. ପୁଂ. ଶୁଭ୍ରବର୍ଣ୍ଣ ।

ବଶସ୍ତ, ବ. ପୁଂ. (ବ-ଶୀ-ଅ) ସଂଶୟ, ସନ୍ଦେହ ।

ବଶଲ୍ୟ, ବଂ. (ବ-ଶଲ୍ୟ) ଶଲ୍ୟରହତ; ବ୍ୟଥା-ଶୂନ୍ୟ; ଯାତନାଶୂନ୍ୟ; ଚନ୍ତାଶୂନ୍ୟ ।

ବଶଲ୍ୟକରଣୀ, ବ. ସ୍ତ୍ରୀ, ଔଷଧବଶେଷ ।

ବଶା, ବ. (ଦେଶଜ ) ଅଠର, କୋଡଏ ବା ବାଇଶ ପଲ ପରିମାଣ ଓଜନ ।

ବଶାଖ, ବ. ପୁଂ. ( ବଶାଖା-ଅ ) କାର୍ତ୍ତିକେୟ; ଯାଚକ, ଭକ୍ଷ ।

ବଶାଖା, ବ. ସ୍ତ୍ରୀ. ( ବ-ଶା ଖ୍-ଅ-ଆ ) ଷୋଡଶ ନକ୍ଷତ୍ର ।

ବଶାରଣ, ବ. ନ. ( ବ-ଶାରି-ଅନ ) ମାରଣ, ହତ, ବଧ ।

ବଶାରଦ, ବଂ.(ବଶାଳ-ଦା-ଅ,ଳ ସ୍ଥାନରେ ର) ନପୁଣ, ଦକ୍ଷ, ପଟୁ; ବଦ୍ୱାନ୍, ପଣ୍ଡିତ; ପ୍ରସିଦ୍ଧ, ବଖ୍ୟାତ; ଶ୍ରେଷ୍ଠ । ପୁଂ. ବକୁଳ ।

ବଶାଳ, ବଂ. (ବ-ଶାଳ) ବୃହତ, ବଡ଼, ବସ୍ତୃତ; ବସ୍ତୀର୍ଣ୍ଣ; ବଖ୍ୟାତ ।

ବଶାଳତା, ବ. ସ୍ତ୍ରୀ. ( ବଶାଳ-ତା ) ବୃହତ୍ତ୍ୱ, ପ୍ରକାଣ୍ଡତା; ଓସାର; ବସ୍ତାର ।

ବଶାଳତ୍ୱକ୍, ବ ପୁଂ. (ବଶାଳ-ତ୍ୱକ୍) ଛତଅନା-ଗଛ, ସପ୍ତପର୍ଣ୍ଣ ବୃକ୍ଷ ।

ବଶାଳାକ୍ଷ, ବ. ପୁଂ. ( ବଶାଳ-ଅକ୍ଷି-ଅ ) ଶିବ; ଗରୁଡ଼; ବଷ୍ଣୁ । ବଂ. ଯାହାର ଚକ୍ଷୁ ବଡ଼ । କ୍ଷୀ-ସ୍ତ୍ରୀ. ବରସ୍ତ୍ରୀ; ଦୁର୍ଗା; ସୁଲୋଚନା; ଯେଉଁ ସ୍ତ୍ରୀର ଚକ୍ଷୁ ଉତ୍ତମ ।

ବଶିଖ, ବ. ପୁଂ. (ବ-ଶିଖା) ବାଣ, ଶର । ବଂ. ଶିଖାରହିତ ।

ବଶିଷ୍ଟ, ବଂ. ( ବ-ଶିଷ୍-ତ ) ଯୁକ୍ତ, ମିଳିତ; ସୁଲକ୍ଷଣ; ଖ୍ୟାତ; ସିଦ୍ଧ । ପୁଂ. ବଷ୍ଣୁ ।

ବଶୀର୍ଣ୍ଣ, ବଂ. (ବ-ଶୃ-ତ) ଶୁଷ୍କ; କୃଶ; ଜୀର୍ଣ୍ଣ; ବଶ୍ଳିଷ୍ଟ, ପତିତ; ବଘଟିତ ।

ବଶୁଦ୍ଧ, ବଂ. ( ବ-ଶୁଦ୍ଧ ) ପବତ୍ର; ନର୍ମଳ; ନର୍ଦୋଷ; ଶୁଚ ।

ବଶୁଦ୍ଧି, ବ. ସ୍ତ୍ରୀ. (ବ-ଶୁଦ୍ଧି) ଶୋଧନ; ସଂଶୋ-ଧନ; ନର୍ମଳତା; ପବତ୍ରତା; ନର୍ଦୋଷତା ।

ବଶୃଙ୍ଖଳ, ବଂ. (ବ-ଶୃଙ୍ଖଳ) ନୟମବହିର୍ଭୂତ; ଶୃଙ୍ଖଳାହୀନ; ଅନୟନ୍ତ୍ରିତ; ଅବାଧ; ଦୁର୍ଦାନ୍ତ ।

ବଶେଷ, ବ. ପୁଂ. (ବ-ଶିଷ୍-ଅ) ପ୍ରଭେଦ, ବୈଲ-କ୍ଷଣ୍ୟ; ପ୍ରକାର; ବୈଚତ୍ର୍ୟ; ଆଧିକ୍ୟ; ଅବୟବ; ଦ୍ରବ୍ୟବ୍ୟଦ୍ରବ୍ୟ; ତଲକ । ବଂ. ଅଧିକ; ଉତ୍କୃଷ୍ଟ; ଭନ୍ନ ।

ବଶେଷଜ୍ଞ, ବଂ. (ବିଶେଷ-ଜ୍ଞ) ଯେ ବ୍ୟକ୍ତି ସବି-ଶେଷ ଜାଣେ, ଜ୍ଞାନୀ ।

ବଶେଷଣ, ବ. ନ. ( ବ-ଶିଷ୍-ଅନ ) ପ୍ରଭେଦ-କାରକ ଗୁଣ କ୍ରିୟାଦ, ବଶେଷ୍ୟର ଧର୍ମ, ଯାହା-ଦ୍ୱାରା ବଶେଷ୍ୟର ଗୁଣ ବା ଅବସ୍ଥା ପ୍ରକାଶ ହୁଏ; ଚହ୍ନ; ଭେଦସୂଚକରଣ ।

ବଶେଷିତ, ବଂ. (ବଶେଷ-ଇତ) ଭନ୍ନ, ପୃଥକ୍-କୃତ, ପ୍ରଭେଦତ; ବଶେଷଣଦ୍ୱାରା ନର୍ଣୀତ ।

ବଶେଷୋକ୍ତି, ବ. ସ୍ତ୍ରୀ. ( ବଶେଷ-ଉକ୍ତି ) ବାକ୍ୟର ଅଳଙ୍କାରବଶେଷ, ଯେ ସ୍ଥାନରେ କାର ଥିଲେ ସୁଦ୍ଧା କାର୍ଯ୍ୟର ଅଭାବ ଦେଖାଯାଏ ।

ବଶେଷ୍ୟ, ବ. ପୁଂ. ( ବ-ଶିଷ୍-ଯ ) ଧର୍ମୀ, ଯାହା-ଦ୍ୱାରା କୌଣସି ବସ୍ତୁ ବା ବ୍ୟକ୍ତି ବୋଧ ହୁଏ; ପ୍ରଧାନ, ଶ୍ରେଷ୍ଠ, ଆଦମ ।

ବିଶୋଇବା, କ୍ରି. ( ବିଶ୍ରାମ ଶବ୍ଦଜ ) ବିଶ୍ରାମ କରିବା । ଯଥା—

ବାଟେ ସେ ବନରେ ପଞ୍ଚଅଶ୍ୱ ବିବ୍ୟଶିଲା,
ବିଶୋଇଁ ଶ୍ରମଚରଣ ଲଗି ସେ ଥିଲା । ବୈ. ବି,

ବିଶୋକ, ବିଂ. (ବି-ଶୋକ) ଶୋକରହିତ । ବି. ପୁଂ. ଅଶୋକବୃକ୍ଷ ।

ବିଶୋଧନ, ବି. ନ. ( ବି-ଶୋଧନ ) ବିଶୁଦ୍ଧୀକରଣ; ପବିତ୍ରୀକରଣ; ସଂଶୋଧନ । ଯଥା—

ସର୍ବେ ଜାଣନ୍ତୁ ଯେ ବିଶୋଧନ ମୋ ହେବାର ।

ଜ୍ଞା-ସ୍ତ୍ରୀ. ବ୍ରନ୍ତାର ପୁସ୍ତ ।

ବିଶୋଷଣ, ବି. ନ. (ବି-ଶୁଷ୍-ଅନ) ଶୋଷଣ, ଶୁଷ୍କକରଣ ।

ବିଶ୍ରବ୍ଧ, ବିଂ. ( ବି-ଶ୍ରମ୍ଭ୍-ତ ) ବିଶ୍ୱସ୍ତ, ନିଃଶଙ୍କ, ଗାଢ଼, ଶାନ୍ତ, ଧୈର୍ଯ୍ୟାବଲମ୍ବୀ, ଧୀର, ଦୃଢ଼ ।

ବିଶ୍ରମ୍ଭ, ବି. ପୁଂ. (ବି-ଶ୍ରମ୍ଭ୍-ଅ) ବିଶ୍ୱାସ; ପ୍ରଣୟ । କେଳିକଳହ; ପରିଚୟ; ସ୍ୱଚ୍ଛନ୍ଦ ବିହାର ।

ବିଶ୍ରମ୍ଭୀ, ବିଂ. (ବିଶ୍ରମ୍ଭ-ଇନ୍) ବିଶ୍ୱାସୀ; ପ୍ରଣୟୀ ।

ବିଶ୍ରବାଃ, ବି. ପୁଂ. ( ବି-ଶ୍ରବସ୍=କର୍ଣ୍ଣ ) ରାବଣର ପିତା, ମୁନିବିଶେଷ ।

ବିଶ୍ରାଣନ, ବି. ନ. ( ବି-ଶ୍ରାଣି-ଅନ ) ବି. ନ. ବିତରଣ ।

ବିଶ୍ରାଣିତ, ବିଂ. ( ବି-ଶ୍ରାଣି-ତ ) ଦତ୍ତ, ଯାହା ବିତରଣ କରି ଯାଇଅଛି ।

ବିଶ୍ରାନ୍ତ, ବିଂ. (ବି-ଶ୍ରମ-ତ) ଶ୍ରାନ୍ତିଯୁକ୍ତ; ନିବୃତ୍ତ, କ୍ଷାନ୍ତ; ବିଗତଶ୍ରମ ।

ବିଶ୍ରାନ୍ତି, ସ୍ତ୍ରୀ. }
ବିଶ୍ରାମ, ପୁଂ. } ବି. (ବି-ଶ୍ରମ୍-ତି, ଅ ) ବିରାମ, ନିବୃତ୍ତି, କ୍ଷାନ୍ତି, ଆରାମ କରିବା ।

ବିଶ୍ରାବ, ବି. ପୁଂ. (ବି-ଶ୍ରୁ-ଅ) ଖ୍ୟାତି, ପ୍ରସିଦ୍ଧି, କ୍ଷରଣ, ଧ୍ୱନି ।

ବିଶ୍ରୀ, ବିଂ. (ବି-ଶ୍ରୀ) ଶ୍ରୀଭ୍ରଷ୍ଟ, ଶ୍ରୀହୀନ; କୁତ୍ସିତ, କଦାକାର ।

ବିଶ୍ରୁତ, ବିଂ. ( ବି-ଶ୍ରୁ-ତ ) ବିଖ୍ୟାତ, ପ୍ରସିଦ୍ଧ, ଜ୍ଞାତ; ହୃଷ୍ଟ ।

ବିଶ୍ରୁତି, ବି. ସ୍ତ୍ରୀ. ( ବି-ଶ୍ରୁ-ତି ) ଖ୍ୟାତି, ପ୍ରସିଦ୍ଧି; ସ୍ରୋତ ।

ବିଶ୍ଳିଷ୍ଟ, ବିଂ. (ବି-ଶ୍ଳିଷ୍-ତ) ଅସଂଯୁକ୍ତ, ବିଚ୍ଛିନ୍ନ; ବିଯୁକ୍ତ; ପ୍ରକାଶିତ; ବିମୁକ୍ତ; ଶିଥିଳ; ପ୍ରସ୍ଫୁଟିତ ।

ବିଶ୍ଳେଷ, ବି. ପୁଂ. ( ବି-ଶ୍ଳିଷ୍-ଅ ) ଅସଂଯୋଗ, ବିଚ୍ଛେଦ; ବିରାଗ; ଶୈଥିଲ୍ୟ ।

ବିଶ୍ୱ, ବି. ପୁଂ. ( ବିଶ୍-ବ ) ଗଣଦେବତାବିଶେଷ; ବସୁ, ସତ୍ୟ, କ୍ରତୁ, ଦକ୍ଷ, କାଳ, କାମ, ଧୃତି, କୁରୁ, ପୁରୂରବାଃ, ମଦ୍ରବା ଏହି ଦଶ; ନାଗର; ପରିମାଣବିଶେଷ । ନ. ଜଗତ୍, ବ୍ରହ୍ମାଣ୍ଡ; ମେଳା । ବିଂ. ସକଳ, ସମସ୍ତ ।

ବିଶ୍ୱକର୍ମା, ବି.ପୁଂ. (ବିଶ୍ୱ-କର୍ମନ୍) ଦେବଶିଳ୍ପୀ, ବ୍ରହ୍ମାଙ୍କ ପୁତ୍ର, ସୂର୍ଯ୍ୟ; ମୁନିବିଶେଷ; ଈଶ୍ୱର, ପରମେଶ୍ୱର ।

ବିଶ୍ୱକେତୁ, ବି. ପୁଂ. ( ବିଶ୍ୱ-କେତୁ ) ଅନିରୁଦ୍ଧ, ଉଷାପତି ।

ବିଶ୍ୱକ୍ସେନ, ବିଷ୍ୱକ୍ସେନ, ବି. ପୁଂ. (ବିଶ୍ୱକ୍-ସେନା) ବିଷ୍ଣୁ, ଜନାର୍ଦ୍ଦନ ।

ବିଶ୍ୱଗନ୍ଧ, ବି. ପୁଂ. (ବିଶ୍ୱ-ଗନ୍ଧ) ପଲାଣ୍ଡୁ, ପିଆଜ । ସ୍ତ୍ରୀ. ପୃଥିବୀ ।

ବିଶ୍ୱଜିତ୍, ବି. ପୁଂ. ( ବିଶ୍ୱ-ଜିତ୍ ) ଯଜ୍ଞବିଶେଷ, ଯେ ଯଜ୍ଞରେ ସର୍ବସ୍ୱ ଦକ୍ଷିଣା ଦେବାକୁ ହୁଏ; ବରୁଣର ପାଶ; ନ୍ୟାୟବିଶେଷ । ବିଂ. ଯେ ବିଶ୍ୱକୁ ଜୟ କରିଅଛି ।

ବିଶ୍ୱଦେବ, ବି.ପୁଂ. (ବିଶ୍ୱ-ଦିବ୍-ଅ) ଗଣଦେବତାବିଶେଷ; ଅଗ୍ନି ।

ବିଶ୍ୱଧାରିଣୀ, ବି. ସ୍ତ୍ରୀ. ( ବିଶ୍ୱ-ଧାରିନ୍-ଈ ) ପୃଥିବୀ ।

ବିଶ୍ୱନାଥ, ବି.ପୁଂ. (ବିଶ୍ୱ-ନାଥ) ଶିବ, ମହାଦେବ ।

ବିଶ୍ୱପା, ବି. ପୁଂ. (ବିଶ୍ୱ-ପା=ଯେ ପାଳନ କରେ) ବିଶ୍ୱ ପାଳନକର୍ତ୍ତା, ପରମେଶ୍ୱର; ସୂର୍ଯ୍ୟ; ଚନ୍ଦ୍ର; ଅଗ୍ନି ।

ବିଶ୍ୱମ୍ଭର, ବି. ପୁଂ. (ବିଶ୍ୱମ୍-ଭର) ବିଷ୍ଣୁ, ନାରାୟଣ, କୃଷ୍ଣ; ଇନ୍ଦ୍ର । ବିଂ. ବିଶ୍ୱ ଧାରଣକର୍ତ୍ତା ।

ବିଶ୍ୱମ୍ଭରା, ବି. ସ୍ତ୍ରୀ. (ବିଶ୍ୱମ୍ଭୃ-ଅ) ପୃଥିବୀ ।
ବିଶ୍ୱସ୍ରଜ, ବି. ପୁଂ. (ବିଶ୍ୱ-ସୃଜ୍-ଅ) ପରମେଶ୍ୱର ।
ବିଶ୍ୱରୂପ, ବି. ପୁଂ. (ବିଶ୍ୱ-ରୂପ) ବିଷ୍ଣୁ, ଅନନ୍ତ ।
ବିଶ୍ୱରେତାଃ, ବି. ପୁଂ. (ବିଶ୍ୱ-ରେତସ୍) ବ୍ରହ୍ମା, ପ୍ରଜାପତି, ଚତୁରାନନ ।
ବିଶ୍ୱବିଦ୍ୟାଳୟ, ବି. ଯେଉଁ ବିଦ୍ୟାଳୟରେ ସର୍ବ-ପ୍ରକାର ବିଦ୍ୟାର ଆଲୋଚନା ହୁଏ ।
ବିଶ୍ୱବେଦାଃ, ବି. ପୁଂ. ( ବିଶ୍ୱ-ବିଦ୍-ଅସ୍ ) ସର୍ବଜ୍ଞ, ମୁନି; ଦେବତା ।
ବିଶ୍ୱବ୍ୟାପୀ, ବିଶ୍ୱବ୍ୟାପକ, ବିଂ. ( ବିଶ୍ୱ-ବ୍ୟାପିନ୍, ବ୍ୟାପକ ) ସର୍ବଗାମୀ, ସକଳ ସ୍ଥାନରେ ବିସ୍ତୃତ ।
ବିଶ୍ୱସନ, ବି. ନ. (ବି-ଶ୍ୱସ୍-ଅନ) ବିଶ୍ୱାସ, ପ୍ରତ୍ୟୟ ।
ବିଶ୍ୱସୃକ୍, ବି. ପୁଂ. (ବିଶ୍ୱ-ସୃଜ୍-୦) ସୃଷ୍ଟିକର୍ତ୍ତା, ବ୍ରହ୍ମା ।
ବିଶ୍ୱସିତ, ବିଶ୍ୱସ୍ତ, ବିଂ. (ବି-ଶ୍ୱସ୍-ତ) ବିଶ୍ୱାସୀ, ବିଶ୍ୱାସପାତ୍ର ।
ବିଶ୍ୱସ୍ତ, ବିଂ. (ବି-ଶ୍ୱସ୍-ତ) ବିଶ୍ୱାସପାତ୍ର, ବିଶ୍ୱାସୀ ।
ବିଶ୍ୱା, ବି. (ଦେଶଜ) ଭୂମି ପରିମାଣବିଶେଷ, ଗୁଣ୍ଠର ଷୋଳ ଭାଗର ଏକ ଭାଗ ।
ବିଶ୍ୱାତ୍ମା, ବି. ପୁଂ. ( ବିଶ୍ୱ-ଆତ୍ମନ୍ ) ଶିବ, ଭବ; ବିଷ୍ଣୁ । ଯଥା—

ନିଯୋଗ ଯଥା ଜୀବାତ୍ମା ବିଶ୍ୱଆତ୍ମା ଚରଣେ । ଚ. ଭା.

ବିଶ୍ୱାମିତ୍ର, ବି. ପୁଂ. (ବିଶ୍ୱ-ମିତ୍ର) ମୁନିବିଶେଷ, ଏ କ୍ଷତ୍ରିୟ ହୋଇ ତପୋବଳରେ ବ୍ରାହ୍ମଣ ହୋଇଥିଲେ ।
ବିଶ୍ୱାବସୁ, ବି.ପୁଂ. (ବିଶ୍ୱ-ବସୁ) ଗନ୍ଧର୍ବବିଶେଷ । ସ୍ତ୍ରୀ. ରାତ୍ରି ।
ବିଶ୍ୱାସ, ବି. ପୁଂ. (ବି-ଶ୍ୱସ୍-ଅ) ପ୍ରତ୍ୟୟ, ବିଶ୍ରମ୍ଭ; ଶ୍ରଦ୍ଧା ।
ବିଶ୍ୱାସୀ, ବିଂ. ( ବିଶ୍ୱାସ-ଇନ୍ ) ଯେ ବିଶ୍ୱାସ କରେ, ଯାହାର ବିଶ୍ୱାସ ଅଛି; ବିଶ୍ୱାସପାତ୍ର ।
ବିଶ୍ୱାସ୍ୟ, ବିଂ. ( ବି-ଶ୍ୱସ୍-ଯ ) ବିଶ୍ୱସନୀୟ, ବିଶ୍ୱାସଯୋଗ୍ୟ ।

ବିଶ୍ୱେଶ, ବିଶ୍ୱେଶ୍ୱର, ବି. ପୁଂ. (ବିଶ୍ୱ-ଈଶ-ଈଶ୍ୱର) ଶିବ, ବିଶ୍ୱନାଥ ।
ବିଷ, ବି. ପୁଂ. ନ. (ବିଷ୍-ଅ) ପ୍ରାଣନାଶକ ଦ୍ରବ୍ୟ-ବିଶେଷ, ଗରଳ, କାଳକୂଟ, ହଳାହଳ । ନ. ଜଳ; ପଦ୍ମାଦିର ମୃଣାଳ ।
ବିଷକଣ୍ଠ, ବି. ପୁଂ. ମହାଦେବ, ଶିବ, ଈଶ୍ୱର, ନୀଳକଣ୍ଠ, ବାମଦେବ । ଯଥା—

ବିଷକଣ୍ଠ ତୋଷପାଣି ବେନି ମଧରେ । ବୈ. ବି.

ବିଷଘ୍ନ, ବିଂ. (ବିଷ-ଘ୍ନ) ବିଷନାଶକ । ଘ୍ନୀ, ସ୍ତ୍ରୀ. ହରିଦ୍ରା; ଇନ୍ଦ୍ରବାରୁଣୀ; ମହାକରଞ୍ଜ ଇତ୍ୟାଦି ।
ବିଷଣ୍ଣ, ବିଂ. (ବି-ସଦ୍-ତ) ବିଷାଦଯୁକ୍ତ, ଖିନ୍ନ, ମ୍ଳାନ ।
ବିଷଣ୍ଣତା, ବି. ସ୍ତ୍ରୀ. ( ବିଷଣ୍ଣ-ତା ) ବିଷାଦ, ଗ୍ଳାନି, ଖେଦ; ମନୋଭଙ୍ଗ ।
ବିଷଦ, ବିଂ. (ବି-ସଦ୍-ଅ) ଶୁଭ୍ର; ସ୍ୱଚ୍ଛ, ନିର୍ମଳ । ବି. ପୁଂ. ଶୁକ୍ଳବର୍ଣ୍ଣ । ଯଥା—

ବିଷଦ ଶିଳୀନ୍ଧ୍ର ଛତ୍ର ସଦୃଶେ ଦଶିଲେ । ବୈ. ବି.

ବିଷଦନ୍ତ, ବି. ପୁଂ. (ବିଷ-ଦନ୍ତ) ସର୍ପ, ବିଷଧର ।
ବିଷଧର, ବି. ପୁଂ. (ବିଷ-ଧର) ସର୍ପ, ଉରଗ ।
ବିଷମ, ବି. (ବି-ସମ) ଅସମାନ, ବିଯୋଡ଼; ଦୁର୍ଗମ; କଷ୍ଟଦ, କ୍ଳେଶକର; ଦୁର୍ବୋଧ; ସଙ୍କଟ; ଉନ୍ନତାନତ । ଯଥା—

ଅବଗାହୁଛନ୍ତି ବଗ ଦଳେ ଦଳେ,
ବିଷମ ପରସ୍ପରେ ଦିଶି ସ୍ରୋତଜଳେ । ନ. କେ.

ବିଷମନୟନ, ବିଷମନେତ୍ର, ବିଷମାକ୍ଷ, ବି. ପୁଂ. (ବିଷମ-ନୟନ, ନେତ୍ର, ଅକ୍ଷ) ଶିବ, ମହାଦେବ, ତ୍ରିଲୋଚନ ।
ବିଷମରାଶି, ବି. ଯେ ରାଶି ଦୁଇ ସମାନ ଅଂଶରେ ବିଭକ୍ତ ହୋଇ ନ ପାରେ ।
ବିଷୟ, ବି. ପୁଂ. ( ବି-ସି-ଅ ) ଇନ୍ଦ୍ରିୟଗ୍ରାହ୍ୟ ପଦାର୍ଥ, ରୂପ, ଶବ୍ଦ, ଗନ୍ଧ, ରସ, ସ୍ପର୍ଶ ପ୍ରଭୃତି ଭୋଗ୍ୟବସ୍ତୁ; ଜ୍ଞେୟବସ୍ତୁ; ସ୍ଥାନ; ଜନପଦ, ଦେଶ; ଅଧାର,ପାତ୍ର; ଶୁକ୍ର, ବୀର୍ଯ୍ୟ; ନଦ୍ୟାମଣ୍ଡ; ନୀତି; ସମ୍ପତ୍ତି; ବର୍ତ୍ତନୀୟ ପଦାର୍ଥ; ଭୂତ; ଧର୍ମ-ନୀତି; ସ୍ୱାମୀ, ପ୍ରିୟ ।

**ବିଷୟକର୍ମ**, ବି. ସାଂସାରିକ କାର୍ଯ୍ୟ ।

**ବିଷୟୀ**, ବିଂ. (ବିଷୟ-ଇନ୍) ବିଷୟଯୁକ୍ତ; ବିଷୟାସକ୍ତ । ବି. ପୁଂ. ରାଜା; କାମଦେବ; ଧନୀ । ନ. ଇନ୍ଦ୍ରିୟ ।

**ବିଷବତ୍**, ଅଂ. (ବିଷ-ବତ୍) ବିଷତୁଲ୍ୟ, ବିଷସଦୃଶ ।

**ବିଷବିଦ୍ୟା**, ବି. ସ୍ତ୍ରୀ. ( ବିଷ-ବିଦ୍ୟା ) ବିଷଘ୍ନମନ୍ତ୍ର, ବିଷହାରକ ମନ୍ତ୍ର, ବିଷଚିକିତ୍ସା ଶାସ୍ତ୍ର ।

**ବିଷବୈଦ୍ୟ**, ବି. ପୁଂ. (ବିଷ-ବୈଦ୍ୟ) ବିଷହାରକ ମନ୍ତ୍ରବେତ୍ତା, ସାପୁଆ କେଳା; ଯେ ବ୍ୟକ୍ତି ବିଷବିଦ୍ୟା ଜାଣେ । ଯଥା—

> ବିଷବୈଦ୍ୟ ତେବେ ନ ମାନସ ପ୍ରାୟେ
> ସ୍ୱଭାବେ ଭେଟିଲେ ସେହୁ । ବୈ. ବି.

**ବିଷହର**, ବିଂ. (ବିଷ-ହର) ବିଷନାଶକ, ଗରଳନାଶକ ।

**ବିଷାକ୍ତ**, ବିଂ. (ବିଷ-ଅକ୍ତ) ବିଷଯୁକ୍ତ, ବିଷମିଶ୍ରିତ ।

**ବିଷାଣ**, ବିଂ. (ବି-ଅନ୍-ଶାନର୍) ପଶୁର ଶୃଙ୍ଗ; ବୃହତ୍ ଦନ୍ତ; ହସ୍ତିଦନ୍ତ, ଶୂକରଦନ୍ତ ।

**ବିଷାଣୀ**, ବିଂ. (ବିଷାଣ-ଇନ୍) ଶୃଙ୍ଗୀ, ଶୃଙ୍ଗବିଶିଷ୍ଟ । ବି. ପୁଂ. ହସ୍ତୀ; ଶୂକର, ବରାହ ।

**ବିଷାଦ**, ବି. ପୁଂ. (ବି-ସଦ୍-ଅ) ଖେଦ, ଦୁଃଖ; ନିଶ୍ଚେଷ୍ଟତା ।

**ବିଷାନନ**, ବି. ପୁଂ. (ବିଷ-ଆନନ) ସର୍ପ ।

**ବିଷୁପ, ବିଷୁବ, ବିଷୁବତ୍**, ବି. ନ. (ବିଷୁ-ପା, ବା-ଅ; ବତ୍) ସମରାତ୍ରିଦିବ କାଳ, ଯେ ସମୟରେ ଦିବାମାନ ଓ ରାତ୍ରିମାନ ସମାନ ହୁଏ ।

**ବିଷୁବରେଖା**, ବି. ସ୍ତ୍ରୀ. ଉଭୟ ମେରୁର ସମଦୂରବର୍ତ୍ତୀ ସ୍ଥାନରେ ଯେ ମଣ୍ଡଳାକାର କଳ୍ପିତ ରେଖା, ପୂର୍ବ ପଶ୍ଚିମ ଗୋଲକର ଚତୁର୍ଦ୍ଦିଗରେ ବ୍ୟାପି ରହିଅଛି; ସୂର୍ଯ୍ୟ ଏହି ରେଖାରେ ଉପସ୍ଥିତ ହେଲେ ଦିବାରାତ୍ରି ସମାନ ହୁଏ ।

**ବିଷ୍କିର**, ବି. ପକ୍ଷୀ । ଯଥା—

> ବିଷ୍କିରେ ଗଣ୍ଡଭେରଣ୍ଡେ ଗଜକୁ ଘେନଣ ଉଡ଼େ
> ତାଳେ ବସେ ଭରଗରେ ଭଗ୍ନ ବିହୁତ । ବୈ. ବି.

**ବିଷ୍କମ୍ଭ**, ବି. ପୁଂ. (ବି-ସ୍କନ୍ଭ୍-ଅ) ପ୍ରଥମଯୋଗ; ପ୍ରତିବନ୍ଧ, ବାଧା; ଖିଳକ, ନାଟ୍ୟାଙ୍ଗବିଶେଷ; ଯୋଗିମାନଙ୍କର ଆସନବନ୍ଧବିଶେଷ ।

**ବିଷ୍ଟପ**, ବିଂ. ( ବିଶ୍-ଟପକ୍ ) ଲୋକ, ଭୁବନ, ଜଗତ୍ ।

**ବିଷ୍ଟବ୍ଧ**, ବିଂ. (ବି-ସ୍ତନ୍ଭ୍-ତ) ପ୍ରତିବଦ୍ଧ, ବାଧାଯୁକ୍ତ, ରୁଦ୍ଧ ।

**ବିଷ୍ଟମ୍ଭ**, ବି. ପୁଂ. (ବି-ସ୍ତନ୍ଭ୍-ଅ) ବାଧା, ପ୍ରତିବନ୍ଧ; ଅଟକ; ଅନାହ ରୋଗ, ମୂତ୍ରକୃଚ୍ଛ୍ର, ସ୍ଥିତିରୋଧ; ଆକ୍ରମଣ ।

**ବିଷ୍ଟର**, ବି. ପୁଂ. (ବି-ସ୍ତୃ-ଅ) ଦର୍ଭମୁଷ୍ଟି; କୁଶାସନ; ଉପବେଶନ ବା ଶୟନର ଆସନ ।

**ବିଷ୍ଟରଶ୍ରବାଃ**, ବି.ପୁଂ. (ବିଷ୍ଟର-ଶ୍ରୁ-ଅସ୍) ବିଷ୍ଣୁ, ନାରାୟଣ ।

**ବିଷ୍ଟି**, ବି. ସ୍ତ୍ରୀ. ( ବିଷ୍-ତି ) ଯନ୍ତ୍ରଣାଦାନ, କରଣବିଶେଷ, ଏହି ବିଷ୍ଟିକରଣର ଭୋଗ କାଳ ଜ୍ୟୋତିଷମତରେ ଅଶୁଭ ସମୟ । ଯଥା—

> ବିଷ୍ଟି ଅନୁକୂଳେ ଯୁଦ୍ଧ ଅଶୁଭ ହେବ । ବୈ. ବି.

ବେତନ; ନିକ୍ଷେପକରଣ; ନରକପାତନ ।

**ବିଷ୍ଠା**, ବି. ସ୍ତ୍ରୀ. (ବି-ସ୍ଥା-ଅ) ମଳ, ପୁରୀଷ ।

**ବିଷ୍ଣୁ**, ବି. ପୁଂ. ( ବିଷ୍-ଣୁ ) ହରି, ନାରାୟଣ, ସତ୍ତ୍ୱଗୁଣମୟ ବ୍ୟାପକ ଦେବ ।

**ବିଷ୍ଣୁକ୍ରାନ୍ତା**, ବି. ସ୍ତ୍ରୀ. (ବିଷ୍ଣୁ-କ୍ରାନ୍ତ) ଅପରାଜିତା ପୁଷ୍ପ ।

**ବିଷ୍ଣୁପଦ**, ବି. ନ. (ବିଷ୍ଣୁ-ପଦ) ଆକାଶ, ପଦ୍ମ ।

**ବିଷ୍ଣୁପଦୀ**, ବି. ସ୍ତ୍ରୀ. (ବିଷ୍ଣୁପଦ-ଈ) ଗଙ୍ଗାନଦୀ । ଯଥା—

> ବିଷ୍ଣୁପଦୀ ବିଷ୍ଣୁପଦ ଉଦ୍ଧାର ଭେଦ ଶବଦ
> ତରଣୀର ଛଟାଚଉ ତହିଁ ଘେଟା । ବୈ. ବି.

**ବିଷ୍ଣୁରଥ**, ବି. ପୁଂ. (ବିଷ୍ଣୁ-ରଥ) ଗରୁଡ଼, ବିଷ୍ଣୁଙ୍କ ବାହନ ।

**ବିଷ୍ଣୁବଲ୍ଲଭା**, ବି. ସ୍ତ୍ରୀ. (ବିଷ୍ଣୁ-ବଲ୍ଲଭ-ଆ) ଲକ୍ଷ୍ମୀ, କମଳା, ପଦ୍ମା; ତୁଳସୀ; ଅଗ୍ନିଶିଖା ବୃକ୍ଷ ।

ବିଷ୍ଣୁବାହନ, ବ. ପୁଂ. ( ବିଷ୍ଣୁ-ବାହନ ) ଗରୁଡ଼, ଖଗେଶ୍ୱର ।

ବିସ, ବିଷ, ବିଶ, ବ. ନ. ( ବିସ୍-ଅ ) ପଦ୍ମାବର ମୃଣାଳ ।

ବିସମ୍ବାଦ, ବ. ପୁଂ. (ବି-ସମ୍-ବଦ୍-ଅ) ବିରୋଧ; ମନ୍ଦସମ୍ବାଦ; ପ୍ରତାରଣା; ବୈଲକ୍ଷଣ୍ୟ ।

ବିସକଣ୍ଠିକା, ବ. ସ୍ତ୍ରୀ. (ବିସ-କଣ୍ଠ-ଇକ-ଆ) କ୍ଷୁଦ୍ର କାୟଯୁକ୍ତ ବକ, ବଲାକା ।

ବିସକୁସୁମ, ବ. ସ୍ତ୍ରୀ. କମଳ, ପଦ୍ମ ।

ବିସଙ୍କଟ, ବ. ପୁଂ. ( ବି-ସମ୍-କଟ୍-ଅ ) ସିଂହ, ମୃଗରାଜ; ଇଙ୍ଗୁଦୀବୃକ୍ଷ, ( ବି-ସଙ୍କଟ ) ବିଂ. ବିଶାଳ, ବୃହତ୍ ।

ବିସଙ୍କୁଳ, ବିଂ. ଜଟିଳ; ଗୋଲମାଲ ।

ବିସଦୃଶ, ବିଂ. ବିପରୀତ, ବିରୂପ ।

ବିସନାଭି, ବ. ପୁଂ. (ବିସ-ନାଭି) ପଦ୍ମିନୀ, ପଦ୍ମ-ସମୂହ ।

ବିସପ୍ରସୂନ, ବ. ନ. ( ବିସ-ପ୍ରସୂନ ) ପଦ୍ମ, ତାମରସ, କମଳ ।

ବିସରଣ, ବ. ନ. (ବି-ସୃ-ଅନ) ବିସ୍ତାର, ପ୍ରବାହ; ଉତ୍ପତ୍ତି ।

ବିସର୍ଗ, ବ. ପୁଂ. (ବି-ସୃଜ୍-ଅ) ତ୍ୟାଗ, ବିସର୍ଜନ; ମଳନିର୍ଗମ; ଦାନ; ଦୀପ୍ତି; ମୋକ୍ଷ; ବିଚ୍ଛେଦ; ପ୍ରଳୟ; ଦ୍ୱିବିନ୍ଦୁ ବର୍ଣ୍ଣ; ଦକ୍ଷିଣାୟନ; ତ୍ୟକ୍ତ-ବସ୍ତୁ; ବିଶେଷ ସୃଷ୍ଟି ।

ବିସର୍ଜନ, ବ. ନ. (ବି-ସୃଜ୍-ଅନ) ତ୍ୟାଗ; ଦାନ; ପ୍ରେରଣ; ପ୍ରତିମାଦି ଜଳସାତ୍‌କରଣ ।

ବିସର୍ଜନୀୟ, ବିଂ. ( ବି-ସୃଜ୍-ଅନୀୟ ) ତ୍ୟାଜ୍ୟ । ବ. ପୁଂ. ବିସର୍ଗ ।

ବିସାର, ବ. ପୁଂ. ( ବି-ସ-ଅ ) ମତ୍ସ୍ୟ; ବିସ୍ତାର; ପ୍ରବାହ ।

ବିସାରିତ, ବିଂ. (ବି-ସାର-ତ) ବିସ୍ତାରିତ, ପ୍ରସାରିତ ।

ବିସିନୀ, ବ. ସ୍ତ୍ରୀ. ( ବିସ୍-ଇନ୍-ଈ ) ପଦ୍ମିନୀ, ମୃଣାଳିନୀ । ଯଥା—

> ପିଇବା ହୋଇଗଲା କାନ୍ତ ମନ୍ଦାକାନ୍ତ ବଧୂ ଯଥା ଯବାକରେ,
> ବନା କୁତାଶନେ ଦଗ୍ଧ ହେଲା ଧନୀ ବିସିନୀ ଯେସନ ମାସେ ।
> ସ. ବେ.

(ଦେଶଜ) ଫୁଲବାବୁ, ଲମ୍ପଟ ।

ବିସୂଚିକା, ବିସୂଚି, ବିସୂଚୀ, ବ. ସ୍ତ୍ରୀ. (ବି-ସୂଚ-ଅକ-ଆ) ରୋଗବିଶେଷ, ଝାଡ଼ାବାନ୍ତି, ଓଲାଉଠା ।

ବିସୃତ, ବିଂ. (ବି-ସୃ-ତ) ବ୍ୟାପ୍ତ, ବିସ୍ତୃତ ।

ବିସୃଷ୍ଟ, ବିଂ. (ବି-ସୃଜ୍-ତ) ପ୍ରେରିତ, ତ୍ୟକ୍ତ; ନିକ୍ଷିପ୍ତ ।

ବିସ୍ତର, ବ. ପୁଂ. ( ବି-ସ୍ତୃ-ଅ ) ସମୂହ; ପ୍ରଚୁର; ବିସ୍ତାର; ପ୍ରଣୟ, ଆସନ; ବିଶେଷ କୀର୍ତ୍ତନ; ସଜ୍ୟା; ଶଯ୍ୟା ।

ବିସ୍ତାର, ବ. ପୁଂ. ( ବି-ସ୍ତୃ-ଅ ) ବିସରଣ, ବିସ୍ତୃତ, ବ୍ୟାପ୍ତି; ବିଶାଳତା; ବ୍ୟାସ; ଓସାର, ଚୌଡ଼ା; ସମାସବାକ୍ୟ; ବିଟପ, ଶାଖା; ଗୁଚ୍ଛ ।

ବିସ୍ତାରିତ, ବିଂ. (ବିସ୍ତାର-ଇତ) ପ୍ରସାରିତ ।

ବିସ୍ତାର୍ଯ୍ୟତା, ଯେଉଁ ଗୁଣଦ୍ୱାରା ଜଡ଼ପଦାର୍ଥ ପୂର୍ବାପେକ୍ଷା ଅଧିକ ସ୍ଥାନରେ ବିସ୍ତୃତ ହୁଏ ।

ବିସ୍ତୀର୍ଣ୍ଣ, ବିଂ. (ବି-ସ୍ତୃ-ତ) ବିସ୍ତୃତ, ବ୍ୟାପ୍ତ, ବିଶାଳ ।

ବିସ୍ତୃତ, ବିଂ. (ବି-ସ୍ତୃ-ତ) ବ୍ୟାପ୍ତ; ବିଶାଳ ।

ବିସ୍ତୃତି, ବ. ସ୍ତ୍ରୀ. (ବି-ସ୍ତୃ-ତି) ବିସ୍ତାର, ସ୍ଥାନବ୍ୟାପି ରହିବା; ଦୈର୍ଘ୍ୟ, ପ୍ରସ୍ଥ, ବେଧର ସାଧାରଣ ସଂଜ୍ଞା; ବୃତ୍ତର ବ୍ୟାସ ।

ବିସ୍ପଷ୍ଟ, ବିଂ. (ବି-ସ୍ପଷ୍ଟ) ବ୍ୟକ୍ତ, ପ୍ରକାଶିତ ।

ବିସ୍ଫାର, ବ. ପୁଂ. ( ବି-ସ୍ଫୁର୍-ଅ ) ଟଙ୍କାର ଧ୍ୱନି; ଧନୁର୍ଗୁଣ ।

ବିସ୍ଫାରିତ, ବିଂ. (ବି-ସ୍ଫାର-ତ) କମ୍ପିତ, ଚଳିତ, ବିସ୍ତାରିତ; ପ୍ରକାଶିତ; ଶବ୍ଦିତ ।

ବିସ୍ଫୁରିତ, ବିଂ. ( ବି-ସ୍ଫୁର୍-ତ ) ସ୍ଫୂର୍ତ୍ତିଯୁକ୍ତ; କମ୍ପିତ, ଚଞ୍ଚଳ; ଧୂନିତ; ସ୍ଫୀତ, ବର୍ଦ୍ଧିତ । ନ. ସ୍ଫୁରଣ; ଧୂନନ ।

ବିସ୍ଫୋଟ, ବିସ୍ଫୋଟକ, ବ. ପୁଂ. ( ବି-ସ୍ଫୁଟ୍-ଅ, ଅକ ) ଫୋଟକା, ବ୍ରଣ, ରୋଗବିଶେଷ

ବିସ୍ମୟ, ବି. ପୁଂ. (ବି-ସ୍ମି-ଅ) ଆଶ୍ଚର୍ଯ୍ୟ, ଅଦ୍ଭୁତ; ଅହଂକାର; ଉଦ୍ଭୂତ ସ୍ଥାୟିଭାବ ବା ରସ-ବିଶେଷ; ସଂଶୟ ।

ବିସ୍ମରଣ, ବି. ନ. (ବି-ସ୍ମୃ-ଅନ) ବିସ୍ମୃତି, ଭୁଲ ।

ବିସ୍ମିତ, ବିଂ. (ବି-ସ୍ମିତ) ଆଶ୍ଚର୍ଯ୍ୟାନ୍ୱିତ ।

ବିସ୍ମୃତ, ବିଂ. (ବି-ସ୍ମୃ-ତ) ସ୍ମରଣାଗତ, ବିସ୍ମୃତି-ବିଶିଷ୍ଟ ।

ବିସ୍ମୃତି, ବି. ସ୍ତ୍ରୀ. (ବି-ସ୍ମୃ-ତି) ଭୁଲ, ବିସ୍ମରଣ ।

ବିସ୍ର, ବି. ନ. (ବିସ୍-ରକ୍) କଞ୍ଚାମାଂସର ଗନ୍ଧ, ଚଡାଧୂମର ଗନ୍ଧ । ବିଂ. କଞ୍ଚାଗନ୍ଧବିଶିଷ୍ଟ ।

ବିସ୍ରଂସ, ବି. ପୁଂ. }
ବିସ୍ରଂସନ, ବି. ନ. } (ବି-ସ୍ରନ୍ସ୍-ଅ, ଅନ) ପତନ, କ୍ଷରଣ ।

ବିସ୍ରଂସୀ, ବିଂ. (ବିସ୍ରଂସ-ଇନ୍) ପତନଶୀଳ, କ୍ଷରଣଶୀଳ ।

ବିସ୍ରମ୍ଭ, ବି. ପୁଂ. (ବି-ସ୍ରନ୍ଭ୍-ଅ) ବିଶ୍ୱାସ, ପ୍ରତ୍ୟୟ; ପରିଚୟ ।

ବିସ୍ରମ୍ଭୀ, ବିଂ. (ବିସ୍ରମ୍ଭ-ଇନ୍) ବିଶ୍ୱସ୍ତ, ପରିଚିତ ।

ବିସ୍ରଗନ୍ଧ, ବି. ପୁଂ. (ବିସ୍ର-ଗନ୍ଧ) ହରିତାଳ ।

ବିସ୍ରୁତ, ବିଂ. (ବି-ସ୍ରୁ-ତ) ବିସ୍ତୃତ; ପ୍ରବାହିତ; କ୍ଷରିତ; ଚ୍ୟୁତ, ଭ୍ରଷ୍ଟ ।

ବିସ୍ୱନ, ବିସ୍ୱାନ, ବି. ପୁଂ. (ବି-ସ୍ୱନ୍-ଅ) ଧ୍ୱନି; ଶବ୍ଦ ।

ବିହଗ, ବିହଙ୍ଗ, ବିହଙ୍ଗମ, ବି. ପୁଂ. (ବିହାୟସ୍-ଗମ୍-ଅ, ବିହାୟସ୍=ବିହ) ପକ୍ଷୀ; ମେଘ; ସୂର୍ଯ୍ୟ; ଚନ୍ଦ୍ର ।

ବିହଙ୍ଗରାଜ, ବି. ପୁଂ. (ବିହଙ୍ଗ-ରାଜ) ଗରୁଡ଼ ।

ବିହତ, ବିଂ. (ବି-ହନ-ତ) ବ୍ୟାହତ, ବିଫଳ, ଭଗ୍ନ ।

ବିହର, ବି. ପୁଂ. (ବି-ହୃ-ଅ) ବିହାର; ବିଚ୍ଛେଦ । କ୍ରି. ବିଶେଷରୂପେ ହରଣ କର ।

ବିହରଣ, ବି. ନ. (ବି-ହୃ-ଅନ) ବିହାର, କ୍ରୀଡ଼ା ।

ବିହସିତ, ବି. ନ. (ବି-ହସ୍-ତ) ମଧୁରହାସ୍ୟ, ସ୍ମିତ ।

ବିହସ୍ତିତ, ବିଂ. (ବିହସ୍ତ-ଇତ) ବ୍ୟାକୁଳିତ ।

ବିହାୟସ୍, ବିହାୟସ୍, ବି. ପୁଂ. ନ. (ବି-ହା-ଅସ୍) ଆକାଶ । ପୁଂ- ପକ୍ଷୀ ।

ବିହାର, ବୀହାର, ବି. ପୁଂ. (ବି-ହୃ-ଅ) କ୍ରୀଡ଼ା ଭ୍ରମଣ; ବିହାର ସ୍ଥାନ ।

ବିହାରୀ, ବିଂ. (ବି-ହୃ-ଇନ୍) ଭ୍ରମଣକାରୀ ।

ବିହି, ବି. (ବିଧି-ଶବ୍ଦଜ) ବିଧାତା । ଯଥା—

ବହି ବହିଲ ବନବାସ ବାସରେ ନୃପତି ହେବାର ଯାଇ । ବୈ.ବ.

ବିହିତ, ବିଂ. (ବି-ଧା-ତ) ବିଧିବୋଧିତ; କର୍ତ୍ତବ୍ୟ, ବିଧେୟ, ଅନୁଷ୍ଠିତ, କୃତ, ଦତ୍ତ ।

ବିହୀନ, ବିଂ. (ବି-ହା-ତ) ବିରହିତ, ଅଭାବ-ବିଶିଷ୍ଟ; ବର୍ଜିତ, ତ୍ୟକ୍ତ ।

ବିହୁନେ, ଅଂ. (ବିହୀନ ଶବ୍ଦଜ) ବ୍ୟତୀତ, ଛଡ଼ା । ଯଥା—

ଜଳ ବିହୁନେ ହଂସ ହାନି,
ଯୋଗ ଧାଧିବ କାହା ସେନି । ଭାଗବତ ।

ବିହୃତ, ବି. ନ. (ବି-ହୃ-ତ) ସ୍ତ୍ରୀମାନଙ୍କର ବିହାରବିଶେଷ ।

ବିହ୍ୱଳ, ବିଂ. (ବି-ହ୍ୱଳ୍-ଅ) ଶୋକ ଭୟାଦିଦ୍ୱାରା ଅଭିଭୂତ; ବିବଶ; ଅଚେତନ; ଦ୍ରବୀଭୂତ ।

ବୀକାଶ, ବି. ପୁଂ. (ବି-କାଶ୍-ଅ) ପ୍ରକାଶ; ଗୋପନ; ନିଭୃତ ।

ବୀକ୍ଷଣ, ବି.ନ.(ବି-ଈକ୍ଷ୍-ଅନ) ଦର୍ଶନ, ନିରୀକ୍ଷଣ ।

ବୀକ୍ଷଣୀୟ, ବିଂ. (ବି-ଈକ୍ଷ୍-ଅନୀୟ) ଦେଖିବାର ଯୋଗ୍ୟ, ଦର୍ଶନୀୟ ।

ବୀକ୍ଷିତ, ବିଂ. (ବି-ଈକ୍ଷ୍-ତ) ଅବଲୋକିତ; ଆଲୋଚିତ । ବି. ନ. ଦର୍ଶନ ।

ବୀକ୍ଷ୍ୟ, ବିଂ. (ବି-ଈକ୍ଷ୍-ଯ) ଦର୍ଶନୀୟ । ବି. ନ. ବିସ୍ମୟ । ପୁଂ. ନୃତ୍ୟକାରକ; ଘୋଟକ ।

ବୀଚ, ପୁଂ. }
ବୀଚି, ବୀଚୀ, ସ୍ତ୍ରୀ, } ବି. (ବେ-ଈଚ) ତରଙ୍ଗ, ଢେଉ, ଲହରୀ; ଦୀପ୍ତି; କିରଣ; ଅବକାଶ; ସୁଖ, ଆନନ୍ଦ; ଅଳ୍ପ ।

ବୀଚିମାଳୀ, ବି. ପୁଂ. (ବୀଚିମାଳା-ଇନ୍) ସମୁଦ୍ର; ସୂର୍ଯ୍ୟ ।

ବୀଜ, ବି. ନ. (ବି-ଜନ୍-ଅ) ମଞ୍ଜି; କାରଣ; ଶୁକ୍ର; ତେଜଃ; ଅଙ୍କୁର; ଶସ୍ୟାଦିର ଫଳ; ଅବ୍ୟକ୍ତ ଗଣିତ; ମୂଳ; ଆଧାର; ନିଧି; ତତ୍ତ୍ୱ ।

ବୀଜକୋଶ, ବୀଜକୋଷ, ବ. ପୁଂ. (ବୀଜ-କୋଷ =ଆଧାର) ଯହିଁରେ ପଦ୍ମବୀଜ ଥାଏ, ପଦ୍ମ-ବୀଜାଧାର ପାଦ ।

ବୀଜଗଣିତ, ବ. ନ. ଅଙ୍କଶାସ୍ତ୍ରବିଶେଷ, ଯେ ଶାସ୍ତ୍ରରେ ବର୍ଣ୍ଣମାଳାର ଅକ୍ଷରଗୁଡ଼କୁ ସଂଖ୍ୟା-ସ୍ୱରୂପ ଧରି ଏବଂ କେତେଗୁଡ଼ାଏ ସାଙ୍କେତିକ ଚିହ୍ନ ବ୍ୟବହାର କରି ଗଣିତବିଷୟକ ସିଦ୍ଧାନ୍ତ ସକଳ ଯୁକ୍ତି ସହକାରେ ସଂସ୍ଥାପିତ ହୁଏ ।

ବୀଜନ, ବ. ନ. ( ବି-ଅଜ୍-ଅନ ) ବ୍ୟଜନ, ସଞ୍ଚାଳନ । ପୁଂ. ଚକ୍ରବାକ, ଚକୋରପକ୍ଷୀ ।

ବୀଟିକା, ବୀଟି, ବୀଟୀ, } ବ. ସ୍ତ୍ରୀ. ( ବି-ଇଟ୍-ଅକ, ଆ ) ସଜ୍ଜିତ ତାମ୍ବୂଳ, ପାନବିଡ଼ା ।

ବୀଣା, ବ. ସ୍ତ୍ରୀ. ( ବୀ=କ୍ଷେପଣ କରିବା-ନ-ଅ ) ସପ୍ତତନ୍ତ୍ରୀବିଶିଷ୍ଟ ବାଦ୍ୟଯନ୍ତ୍ର ।

ବୀତ, ବ. (ବି-ଇ-ତ) ପରିତ୍ୟକ୍ତ, ଅପଗତ, ଅତୀତ ମୁକ୍ତ, ବନ୍ଧନମୁକ୍ତ, ବିଗତ; ନିବୃତ୍ତ ।

ବୀତଂସ, ବିତଂସ, ବ. ପୁଂ. (ବି-ତନସ୍-ଅ) ମୃଗ-ପକ୍ଷିବନ୍ଧନାର୍ଥ ଯନ୍ତ୍ର, ଜାଲ, ଫାନ୍ଦ ।

ବୀତିହୋତ୍ର, ବ. ପୁଂ. (ବୀତି-ହୁ-ତ୍ର) ଅଗ୍ନି, ସୂର୍ଯ୍ୟ ।

ବୀଥି, ବୀଥୀ, ବୀଥିକା, } ବ. ସ୍ତ୍ରୀ. (ବିଥ୍-ଇ, ଈ, କ-ଆ) ଶ୍ରେଣୀ, ପଥ; ଉଭୟ ପାର୍ଶ୍ୱରେ ବୃକ୍ଷ ଶ୍ରେଣୀଯୁକ୍ତ ପଥ; ଦୃଶ୍ୟ କାବ୍ୟବିଶେଷ । ଯଥା—

ବୀଥି ବୀଥି ହୋଇ ବୃନ୍ଦେ ନାନାରଙ୍ଗେ ହରଣ । ବ. ଲ.

ବୀଧ୍ର, ବଂ.(ବି-ଇନ୍ଧ୍-ର) ନିର୍ମଳ, ପରିଷ୍କୃତ । ବ. ପୁଂ. ବାୟୁ ।

ବୀନାହ, ବ. ପୁଂ. (ବି-ନହ୍-ଅ) କୂପର ମୁଖ-ବନ୍ଧନ, କୂପର ଆଚ୍ଛାଦନ ।

ବୀପ୍ସା, ବ. ସ୍ତ୍ରୀ. ( ବି-ଆପ୍-ସନ୍-ଅ-ଆ ) ଯୁଗପତ୍ ବ୍ୟାପନେଚ୍ଛା, ଏକ ସମୟରେ ବ୍ୟାପି ରହିବାର ଇଚ୍ଛା ।

ବୀର, ବ. ପୁଂ. (ବୀର୍-ଅ) ଶୃଙ୍ଗାରାଦି ନବରସାନ୍ତ-ର୍ଗତ ଏକରସ; ବିଷ୍ଣୁ; କୁଳାଚାରବିଶେଷ । ନ. ଭାତର ମଣ୍ଡ, ଶୃଙ୍ଗୀ; ମରିଚ । ବଂ. ଶ୍ରେଷ୍ଠ, ପ୍ରଧାନ, ଶୂର, ବିକ୍ରମଶାଳୀ; ବୀରତ୍ୱରବିଶିଷ୍ଟ ।

ବୀରଣ, ବ. ନ, (ବି-ଈର୍-ଅନ) ଉଶୀର ତୃଣ, ବେଣାଗଛ ।

ବୀରତରୁ, ବ. ପୁଂ. (ବୀର-ତରୁ) ଅର୍ଜ୍ଜୁନ ବୃକ୍ଷ, ଭଲ୍ଲାତକ ।

ବୀରପ୍ରସୂ, ବୀରସୂ, ବ. ସ୍ତ୍ରୀ (ବୀର-ପ୍ରସୂ, ସୂ) ବୀର-ପ୍ରସବିନୀ, ବୀରଜନନୀ, ବୀରମାତା ।

ବୀରଭଦ୍ର, ବ. ପୁଂ. ( ବୀର-ଭଦ୍ର ) ଅଶ୍ୱମେଧର ଘୋଡ଼ା; ଶିବଙ୍କ ଅନୁଚରବିଶେଷ; ବୀରଶ୍ରେଷ୍ଠ; ରୁଦ୍ରବିଶେଷ ।

ବୀରବାହୁ, ବ. ପୁଂ. ରାକ୍ଷସବିଶେଷ, ରାବଣର ପୁତ୍ର; ବିଷ୍ଣୁ । ବଂ. ଶୂରଶ୍ରେଷ୍ଠ, ମଲ୍ଲ ।

ବୀରସେନ, ବ.ପୁଂ. (ବୀର-ସେନା) ନଳ ରାଜାଙ୍କ ପିତା ।

ବୀରହା, ବଂ. (ବୀର-ହନ୍-ଆ) ବୀରନାଶକ । ବ. ପୁଂ. ନଷ୍ଟାଗ୍ନି ବ୍ରାହ୍ମଣ; ବିଷ୍ଣୁ ।

ବୀରା, ବ. ସ୍ତ୍ରୀ. ( ବୀର୍-ଅ, ଆ ) ପତିପୁତ୍ରବତୀ ନାରୀ; ମଦିରା; ମହାଶତାବରୀ; ଗୃହକନ୍ୟା; ବ୍ରାହ୍ମୀ; ଶିଂଶପା ।

ବୀରାସନ, ବ. ନ. ( ବୀର-ଆସନ ) ଜୟସାଧନ ଉପବେଶନବିଶେଷ, ଏକ ପାଦ ଉରୁରେ ସ୍ଥାପନ କରି ଅନ୍ୟ ପାଦ ଉରୁରେ ସଂସ୍ଥାପନ ।

ବୀରୁଧ୍, ବୀରୁଧା, ବ. ସ୍ତ୍ରୀ. (ବି-ରୁଧ୍-ଆ) ବିସ୍ତୃତ ବଲ୍ଲୀ, ଲତା ।

ବୀର୍ଯ୍ୟ, ବ. ନ. (ବୀର-ଯ) ବୀରତ୍ୱ; ଶୌର୍ଯ୍ୟ, ବଳ; ଗୌରବ; ପ୍ରତାପ, ତେଜଃ; ପ୍ରଭାବ; ସାର; ଶୁକ୍ର, ରେତଃ; ବୀଜ ।

ବୀର୍ଯ୍ୟବାନ୍, ବଂ. (ବୀର୍ଯ୍ୟ-ବତ୍) ବୀର୍ଯ୍ୟବିଶିଷ୍ଟ, ବଳ-ବାନ୍ ।

ବୀବର, ବ. ସ୍ୱନାମପ୍ରସିଦ୍ଧ ଜନ୍ତୁବିଶେଷ ।

ବୀହାର, ବ. ପୁଂ. ( ବି-ହୃ-ଅ ) ବୌଦ୍ଧମନ୍ଦିର; ବିହାର ।

ବୁକବା, କ୍ରି. (ଦେଶଜ) ମୁଦିବା ।

ବୁଝାଇବା, କ୍ରି. ( ଦେଶଜ ) ମନାଇବା, ସମଝା-
ଇବା ।

ବୁଟ, ବି. ଶସ୍ୟବିଶେଷ ।

ବୁଡିବା, କ୍ରି. (ଦେଶଜ) ନିମଜ୍ଜିତ ହେବା ।

ବୁଢା, ବି°. ( ବୃଦ୍ଧ ଶବ୍ଦଜ ) ବୃଦ୍ଧ, ପ୍ରାଚୀନ ।

ବୁଣିବା, କ୍ରି. ( ଦେଶଜ ) ବପନ କରିବା; ବସ୍ତ୍ର
ନିର୍ମାଣ କରିବା ।

ବୁଦା, ବି. (ଦେଶଜ) କ୍ଷୁଦ୍ର ବୃକ୍ଷର ବନ; ଗୁଳ୍ମ ।

ବୁରୁଳ, ବି. ଯବତ୍ରୟ ପରିମାଣ; ତିନିଯବ ।

ବୁଲିବା, କ୍ରି. (ଦେଶଜ) ଭ୍ରମଣ କରିବା ।

ବୃଂହଣ, ବି°. (ବୃନ୍ହ-ଅନ) ପୁଷ୍ଟିକାରକ ।

ବୃଂହିତ, ବି. ନ. ( ବୃନ୍ହ-ତ ) କରିଗର୍ଜନ,
ହାତୀର ଶବ୍ଦ । ବି°. ପୁଷ୍ଟ; ବର୍ଦ୍ଧିତ ।

ବୃକ, ବୃକୀ, ବି. ପୁଂ. (ବୃକ୍-ଗ୍ରହଣକରିବା-ଅ,ଈ
କିମ୍ବା ବୃ=ଆବରଣ କରିବା-କ) ହେଟାବାଘ,
କାକ; ଜଠରାଗ୍ନି; ବକବୃକ୍ଷ; ଶୃଗାଳ;କ୍ଷତ୍ରିୟ ।
କା-ସ୍ତ୍ରୀ. ଅମ୍ବଷ୍ଠା ।

ବୃକଦଂଶ, ବି. ପୁଂ. (ବୃକ-ଦଂଶ) କୁକ୍କୁର ।

ବୃକଧୂର୍ତ୍ତ, ବି. ପୁଂ. (ବୃକ୍-ଧୂର୍ତ୍ତ)ଶୃଗାଳ, ଶିଆଳ ।

ବୃକାରାତି, ବୃକାରି, ବି. ପୁଂ. (ବୃକ-ଅରାତି,ଅରି)
କୁକୁର ।

ବୃକୋଦର, ବି. ପୁଂ. (ବୃକ-ଉଦର)ଭୀମ, ବୃକ
ନାମକ ଅଗ୍ନି ଉଦରରେ ଅଛି ବୋଲି ଭୀମର
ନାମ ବୃକୋଦର ହୋଇଅଛି; ମଧ୍ୟମ ପାଣ୍ଡବ ।

ବୃକ୍ଷ, ବି. ପୁଂ. (ବୃକ୍ଷ୍-ଅ) ତରୁ, ଗଛ ।

ବୃକ୍ଷଚର, ବି. ପୁଂ. (ବୃକ୍ଷ=ଗଛ-ଚର=ଯେ ଗମନ
କରେ) କପି, ବାନର ।

ବୃକ୍ଷବାଟିକା, ବି. ସ୍ତ୍ରୀ. ( ବୃକ୍ଷ-ବାଟିକା=ଆବୃତ
ସ୍ଥାନ ) ଉପବନ, ବଗିଚା; ନିକୁଞ୍ଜ ।

ବୃକ୍ଷଭେଦୀ, ବି. ପୁଂ. (ବୃକ୍ଷ-ଭିଦ୍-ଇନ୍) ଅସ୍ତ୍ର-
ବିଶେଷ, ଟାଙ୍ଗିଆ ।

ବୃକ୍ଷାମ୍ଳ, ବି. ନ. (ବୃକ୍ଷ-ଅମ୍ଳ) ତେନ୍ତୁଳୀ । ବି. ପୁଂ.
ଅମ୍ବଡାଗଛ ।

ବୃକ୍ଷାଳୟ, ବି. ପୁଂ. (ବୃକ୍ଷ-ଆଳୟ) ପକ୍ଷୀ ।

ବୃଜନ, ବୃଜିନ, ବି. ନ. ( ବୃଜ୍-ଅନ, ଇନ)
ପାପ, ଅପରାଧ; କ୍ଲେଶ; ଆକାଶ । ବି. ପୁଂ.
କେଶ; ନରକକରଣ । ବି°. କୁଟିଳ, ବକ୍ର ।

ବୃତ, ବି°. ( ବୃ-ତ ) କର୍ମକରଣାର୍ଥ ନିଯୁକ୍ତ;
ଆଚ୍ଛାଦିତ; ପ୍ରାର୍ଥିତ ।

ବୃତି, ବି. ସ୍ତ୍ରୀ. ( ବୃ-ତି ) ନିୟୋଗ; ଆବରଣ;
ବେଷ୍ଟନ; ପ୍ରାର୍ଥନାବିଶେଷ; ଗୋପନ; ବରଣ;
କର୍ମ କରଣାର୍ଥ ନିୟୋଗ । ଯଥା—

ସ୍ମୃତି ସେ ରଙ୍ଗଭୂମି ହୋଇଥିବ ବୃତିରେ ବୃନ୍ଦେ ବେଷ୍ଟିତ ।
ସ. ହେ.

ବୃତ୍ତ, ବି°. (ବୃତ୍-ତ) ବର୍ତ୍ତୁଳ, ଗୋଲାକାର;
ଆଚ୍ଛାଦିତ; ନିଯୁକ୍ତ; ଜାତ; ଦୃଢ଼; ଅତୀତ;
ମୃତ; ଅଧୀତ; ଅପ୍ରତିହତ । ବି. ପୁଂ. କଚ୍ଛପ ।
ନ. ଚରିତ; ବର୍ତ୍ତନ; ଅନୁଷ୍ଠାନ; ଚେଷ୍ଟିତ;
ନ୍ୟାୟପୂର୍ବକ ଅର୍ଥୋପାର୍ଜ୍ଜନ, ଅର୍ଥପାଳନ,
ଅର୍ଥବର୍ଦ୍ଧନ ଏବଂ ସତ୍ପାତ୍ରେ ଦାନ ଏହି
ଚତୁର୍ବିଧ ।

ବୃତ୍ତପୂତି, ଅସମାନ ।

ବୃତ୍ତସ୍ଥ, ବି°. ( ବୃତ୍ତ-ସ୍ଥା-ଅ ) ବୃତ୍ତରେ ଅବସ୍ଥିତ;
ସଚ୍ଚରିତ୍ର ।

ବୃତ୍ତାନ୍ତ, ବି. ପୁଂ. (ବୃତ୍ତ-ଅନ୍ତ) ବାର୍ତ୍ତା, ସମ୍ବାଦ;
ବିବରଣ; ପ୍ରକାର; ପ୍ରସ୍ତାବ; ଅବସର; ଭାବ,
ଏକାନ୍ତବାଚକ ।

ବୃତ୍ତାର୍ଦ୍ଧ, ବୃତ୍ତପରି ଗୋଲାକାର ।

ବୃତ୍ତି, ବି. ସ୍ତ୍ରୀ. (ବୃତ୍-ତି) ଜୀବିକା । ଯଥା—

ବୃତ୍ତି ଏମୋ ପୋଷେ କୁଟୁମ୍ବ । ବୈ. ବ.

ବ୍ୟବସାୟ; ପ୍ରବୃତ୍ତି; ଆହାର; ଭୋଜନ;
ଜୀବନ; ବ୍ୟାପାର; ସ୍ଥିତି; ବୃତ୍ତିସ୍ୱଭାବ;
ବ୍ୟାଖ୍ୟାନଗ୍ରନ୍ଥ; ଆକାରାନ୍ତରପ୍ରାପ୍ତି; ପାଦବ୍ୟାପ୍ତି;
ବର୍ଣ୍ଣରଚନା; ମାନସିକ ଶକ୍ତି ।

ବୃତ୍ର, ବି. ପୁଂ. (ବୃତ୍-ର) ଅସୁରବିଶେଷ; ଶତ୍ରୁ;
ଅନ୍ଧକାର; ମେଘ; ମନ୍ତ୍ର; ଶବ୍ଦ; ପର୍ବତ-
ବିଶେଷ ।

ବୃତ୍ରହା, ବି. ପୁଂ. (ବୃତ୍ର-ହନ୍-° ) ଇନ୍ଦ୍ର ।

ବୃଥା, ଅ. ( ବୃ-ଥା ) ନିଷ୍ଫଳ; ନିରର୍ଥକ; ଅକାରଣ ।

ବୃଦ୍ଧ, ବି. (ବୃଧ୍-ତ) ପ୍ରାଚୀନ, ବୁଢ଼ା; ଜ୍ୟେଷ୍ଠ, ବୃହତ୍; ଗୋତ୍ର; ପଣ୍ଡିତ ।

ବୃଦ୍ଧା, ବିଂ. (ବୃଧ୍-ତ-ଆ) ବୁଢ଼ୀ, ଗତଯୌବନା, ପ୍ରାଚୀନା; ଅଙ୍ଗୁଷ୍ଠ, ବୁଢ଼ାଆଙ୍ଗୁଳି ।

ବୃଦ୍ଧତ୍ୱ, ବ. ନ. ( ବୃଦ୍ଧ-ତ୍ୱ ) ବାର୍ଦ୍ଧକ୍ୟ, ବୃଦ୍ଧାବସ୍ଥା, ପ୍ରାଚୀନତା ।

ବୃଦ୍ଧପ୍ରପିତାମହ, ବ. ପୁଂ. ( ବୃଦ୍ଧ-ପ୍ରପିତା-ଅମହ ) ପ୍ରପିତାମହର ପିତା । ହୀ-ସ୍ତ୍ରୀ, ପ୍ରପିତାମହର ମାତା ।

ବୃଦ୍ଧପ୍ରମାତାମହ, ବ. ପୁଂ. (ବୃଦ୍ଧ-ପ୍ରମାତା-ଅମହ) ପ୍ରମାତାମହର ପିତା । ହୀ-ସ୍ତ୍ରୀ. ପ୍ରମାତାମହର ମାତା ।

ବୃଦ୍ଧଶ୍ରବାଃ, ବ. ପୁଂ. (ବୃଦ୍ଧ-ଶ୍ରବସ୍ ) ଇନ୍ଦ୍ର ।

ବୃଦ୍ଧି, ବ. ସ୍ତ୍ରୀ. ( ବୃଧ୍-ତି ) ଅଭ୍ୟୁଦୟ, ଉନ୍ନତି; ବିସ୍ତାର; ସମ୍ପତ୍ତି; ଆଧିକ୍ୟ; ଯୋଗବିଶେଷ ।

ବୃନ୍ତ, ବ. ନ. ପୁଂ. (ବୃ-ତ, ନ ଆଗମ) ଫଳପୁଷ୍ପ ପତ୍ରାଦିର ଡେମ୍ଫ; କୁଚାଗ୍ର; ସ୍ତନର ମୁଣ୍ଡି ।

ବୃନ୍ଦ, ବ. ନ. ( ବୃଣ୍-ଦ ) ସମୂହ । ପୁଂ. ନ. ସଂଖ୍ୟାବିଶେଷ, ଦଶ ଅର୍ବୁଦ । ନ୍ଦା-ସ୍ତ୍ରୀ. ତୁଳସୀବୃକ୍ଷ; ରାଧିକାର ସଖୀବିଶେଷ; ଜଳନ୍ଧର ପତ୍ନୀ; ରାଧା ।

ବୃନ୍ଦାର, ବିଂ. ( ବୃନ୍ଦ-ଆର ) ମନୋଜ୍ଞ, ସୁନ୍ଦର, ପ୍ରୀତିଜନକ ।

ବୃନ୍ଦାରକ, ବ. ପୁଂ. (ବୃନ୍ଦ-ଆର, କ) ଦେବତା; ଦଳପତି । ବିଂ. ମନୋଜ୍ଞ, ସୁନ୍ଦର; ପ୍ରଧାନ, ଶ୍ରେଷ୍ଠ; ଆନନ୍ଦଜନକ; ତୃପ୍ତିକର; ବୃହତ୍; ଖ୍ୟାତ; ଯଶସ୍ୱୀ ।

ବୃନ୍ଦାବନ, ବ. ନ. ( ବୃନ୍ଦା-ବନ ) ସ୍ୱନାମଖ୍ୟାତ ତୀର୍ଥବିଶେଷ, ମଥୁରା ସମୀପସ୍ଥ ବନବିଶେଷ ।

ବୃନ୍ଦାବନେଶ୍ୱର, ବ. ପୁଂ. ( ବୃନ୍ଦାବନ-ଈଶ୍ୱର ) କୃଷ୍ଣ । ରୀ-ସ୍ତ୍ରୀ. ରାଧା ।

ବୃଶ, ବ. ପୁଂ. ( ବୃ-ଶ ) ମୂଷିକ; ପ୍ରାଣୀବିଶେଷ; ଔଷଧ । ନ. ଅଦା ।

ବୃଶ୍ଚିକ, ବ. ପୁଂ. (ବ୍ରଶ୍ଚ-ଇକ) ବିଛା; ଅଷ୍ଟମ ରାଶି; ଅଗ୍ରହାୟଣ ମାସ ।

ବୃଷ, ବ. ପୁଂ. (ବୃଷ୍-ଅ) ଷଣ୍ଢ; ଦ୍ୱିତୀୟ ରାଶି; ଧର୍ମ; ଚତୁର୍ବିଧ ପୁରୁଷର ଅନ୍ତର୍ଗତ ପୁରୁଷବିଶେଷ; ଇନ୍ଦ୍ର; ମୂଷିକ; ବିଷ୍ଣୁ; ଶତ୍ରୁ; ବାଧାତନୟ; କର୍ଣ୍ଣ; ମଲ୍ଲ; ଶ୍ରୀକୃଷ୍ଣ; ମୟୂର ପୁଚ୍ଛ; ଗୃହନିର୍ମାଣୋପଯୁକ୍ତ ନିର୍ଦ୍ଦିଷ୍ଟ ଭୂମିଖଣ୍ଡ; ଶ୍ରେଷ୍ଠ; କନ୍ଦର୍ପ; ବଳ ।

ବୃଷଣ, ବ. ପୁଂ. (ବୃଷ୍-ଅନ) ଅଣ୍ଡକୋଷ, ମୁଷ୍କ ।

ବୃଷଦଂଶକ, ବ. ପୁଂ. ( ବୃଷ=ମୂଷିକ-ଦଂଶକ ) ମାର୍ଜାର, ବିରାଡ଼ି ।

ବୃଷଧ୍ୱଜ, ବ. ପୁଂ. ( ବୃଷ-ଧ୍ୱଜ=ଚିହ୍ନ ) ଶିବ, ମହାଦେବ ।

ବୃଷପର୍ବା, ବ. ପୁଂ. (ବୃଷ-ପର୍ବନ୍ ) ଶିବ; ଦୈତ୍ୟବିଶେଷ ।

ବୃଷଭ, ବ. ପୁଂ. ବୃଷ-ଅଭ) ବୃଷ, ଷଣ୍ଢ, ବଳୀବର୍ଦ୍ଦ । ଭୀ. ବିଧବା ସ୍ତ୍ରୀ; ହସ୍ତିର କର୍ଣ୍ଣ; ଔଷଧ ।

ବୃଷଭଗତି, ବୃଷଭଧ୍ୱଜ, ବ. ପୁଂ. ( ବୃଷଭ-ଗତି, ଧ୍ୱଜ) ଶିବ, ମହାଦେବ ।

ବୃଷଭାନୁ, ବ. ପୁଂ. ରାଧିକାର ପିତା ।

ବୃଷଭାନୁନନ୍ଦିନୀ, ବୃଷଭାନୁସୁତା, ବ. ସ୍ତ୍ରୀ. (ବୃଷଭାନୁ-ନନ୍ଦିନୀ, ସୁତା ) ରାଧିକା ।

ବୃଷଭୂଷା, ବ. ସ୍ତ୍ରୀ. ( ବୃଷ-ଭୂଷ୍-ଅ ) ଅମରାବତୀ, ଇନ୍ଦ୍ରପୁରୀ ।

ବୃଷଳ, ବ. ପୁଂ. ( ବୃଷ୍-ଅଳ ) ଅଶ୍ୱ; ପାପୀ, ଦୁଷ୍କର୍ମାନ୍ୱିତ; ଚନ୍ଦ୍ରଗୁପ୍ତ ରାଜା; ଲଶୁଣ । ବିଂ. ଅଧାର୍ମିକ, ପାପିଷ୍ଠ ।

ବୃଷଳୀ, ବ. ସ୍ତ୍ରୀ. ( ବୃଷଳ-ଈ ) ନୀଚସ୍ତ୍ରୀ; ଶୂଦ୍ରା; ଦ୍ୱାଦଶ ବର୍ଷ ବୟସ୍କା ଋତୁମତୀ ଅବିବାହିତା କନ୍ୟା; ମୃତ ସନ୍ତାନ ପ୍ରସବକାରିଣୀ ସ୍ତ୍ରୀ; ବନ୍ଧ୍ୟା, ଋତୁମତୀ ସ୍ତ୍ରୀ ।

ବୃଷବାହନ, ବ. ପୁଂ. (ବୃଷ-ବାହନ) ଶିବ ।

ବୃଷା, ବ. ପୁଂ. (ବୃଷ୍-ଅ) ଇନ୍ଦ୍ର; କର୍ଣ୍ଣ; ଦୁଃଖ; ଘୋଟକ; ଯାତନା ଦେବାରୁ ଅଚୈତନ୍ୟ । ବି. ବୃହତ୍ ।

ବୃଷାକପାୟୀ, ବ. ସ୍ତ୍ରୀ. ( ବୃଷାକପି=ବିଷ୍ଣୁ-ଈ ) ଲକ୍ଷ୍ମୀ, ଗୌରୀ, ସ୍ୱାହା, ଶଚୀ, ଜୀବନ୍ତୀ, ଶତାବରୀ ।

ବୃଷାକପି, ବ. ପୁଂ. ( ବୃଷ-ଅ-କମ୍ପ୍-ଇ ) ବିଷ୍ଣୁ, ଶିବ; ଅଗ୍ନି; ଇନ୍ଦ୍ର ।

ବୃଷାଙ୍କ, ବ. ପୁଂ. ( ବୃଷ-ଅଙ୍କ ) ଶିବ, ବୃଷଧ୍ୱଜ; ଧାର୍ମିକବ୍ୟକ୍ତି; ନପୁଂସକ, ଅନ୍ତଃପୁରରକ୍ଷକ ।

ବୃଷ୍ଟି, ବ. ସ୍ତ୍ରୀ. (ବୃଷ୍-ତି) ବର୍ଷା, ବର୍ଷଣ, ମେଘରୁ ଜଳପତନ ।

ବୃଷ୍ଟିଭୂ, ବ. ପୁଂ. ( ବୃଷ୍ଟି-ଭୂ ) ଭେକ । ବି. ବୃଷ୍ଟିଭବ ।

ବୃଷ୍ଟିମାନଯନ୍ତ୍ର, ଯେ ଯନ୍ତ୍ରଦ୍ୱାରା ବୃଷ୍ଟିର ପରିମାଣ ନିରୂପିତ ହୁଏ ।

ବୃଷ୍ଣି, ବ. ପୁଂ. ( ବୃଷ୍-ନି ) ଯଦୁବଂଶ, କୃଷ୍ଣ; ଜ୍ୟୋତିଃ; ଇନ୍ଦ୍ର; ଅଗ୍ନି; ବାୟୁ; ମେଷ । ବି. ପ୍ରଚଣ୍ଡ ।

ବୃହତ୍, ବି. (ବୃହ୍-ଅତ୍) ବିପୁଳ,ବଡ,ପ୍ରକାଣ୍ଡ ।

ବୃହତୀ, ବ. ସ୍ତ୍ରୀ. ( ବୃହତ୍-ଈ ) କ୍ଷୁଦ୍ର ବାର୍ତ୍ତାକୀ, ବାଇଗଣ; ମହତୀ; ବାକ୍ୟ; ଉତ୍ତରୀୟ ବସ୍ତ୍ର; ଛନ୍ଦୋବିଶେଷ; ବିଶ୍ୱାବସୁର ବୀଣା ।

ବୃହତୀପତି, ବ. ପୁଂ. ( ବୃହତୀ-ପତି ) ବାଚସ୍ପତି, ବୃହସ୍ପତି ।

ବୃହଦ୍ରଥ, ବ. ପୁଂ. (ବୃହତ୍-ରଥ) ଇନ୍ଦ୍ର; ଜରାସନ୍ଧ ପିତା; ଯଜ୍ଞପାତ୍ର; ମନ୍ତ୍ରବିଶେଷ ।

ବୃହଦ୍ଭାନୁ, ବ. ପୁଂ. (ବୃହତ୍-ଭାନୁ) ଅଗ୍ନି; ସୂର୍ଯ୍ୟ ।

ବୃହନ୍ନଳା, ବ. ସ୍ତ୍ରୀ. (ବୃହତ୍-ନଳ) ଦ୍ୱାଦଶ ବର୍ଷ ଅଜ୍ଞାତବାସରେ ବିରାଟକନ୍ୟାଙ୍କୁ ନୃତ୍ୟ ଗୀତ ଶିକ୍ଷା ନିମନ୍ତେ କ୍ଲୀବରୂପୀ ଅର୍ଜୁନର ବୃହନ୍ନଳା ନାମ ହୋଇଥିଲା । ପୁଂ. ଦୀର୍ଘ ନଳବୃକ୍ଷ ।

ବୃହସ୍ପତି, ବ. ପୁଂ. (ବୃହତ୍-ପତି, ସ୍ ଆଗମ ଅଥବା ବୃହତୀ-ପତି, ନିପାତନ ) ଗୁରୁ, ସୁରାଚାର୍ଯ୍ୟ, ଦେବଗୁରୁ ।

ବେଅଦାକ, ( ଯାବନିକ ) ଅପରିମିତ, ଅଣଅଟକଳ ।

ବେଇମାନ୍, (ଯାବନିକ) ଅଧାର୍ମିକ, ବିଧର୍ମୀ ।

ବେଉନ୍ତ, ବ. (ଦେଶଜ) କର୍ତ୍ତନ; କଞ୍ଚନ ।

ବେଉନ୍ତବାର, କ୍ରି. କଣ୍ଟିବାର ।

ବେଉଅ, ବ. (ଯାବନିକ) ଅନାଥା ସ୍ତ୍ରୀ, ପତି ପୁତ୍ର-ହୀନା ନାରୀ ।

ବେଓରା, ବ. ( ଯାବନିକ ) ବାର୍ତ୍ତା, ବିବରଣ, ବୃତ୍ତାନ୍ତ । ବି. ଫେରନ୍ତ ।

ବେକ, ବ. (ଦେଶଜ) ଗଳାର ପଶ୍ଚାତ୍ପ୍ରଦେଶ ।

ବେଗ, ବ. ପୁଂ. (ବିଜ୍-ଅ) ଶୀଘ୍ରତା । ଯଥା—

ବାଳୀ ସାଙ୍ଗ ମନ୍ତ୍ରୀ, ବେଗେ ଶ୍ରୀରାମ ସମ୍ମୁଖ କର । ବୈ. ବ.

ତ୍ୱରା; ମୂତ୍ର ବିଷ୍ଠାଦିର ନିର୍ଗମ ପ୍ରବୃତ୍ତି; ପ୍ରବାହ; ଆହ୍ଲାଦ; ଦୃଢ଼ପ୍ରତିଜ୍ଞା; ମହାକାଳଫଳ; ଉଦ୍ୟମ; ପ୍ରଣୟ; ରେତଃ; ଅସ୍ତ୍ରବିଶେଷ ।

ବେଗବାନ୍, ବି. ( ବେଗ-ବତ୍ ) ବେଗବିଶିଷ୍ଟ, ତ୍ୱରାନ୍ୱିତ ।

ବେଗାର, ବ. (ଦେଶଜ) ବେତନହୀନ କାର୍ଯ୍ୟ ।

ବେଗୁନିଆ, ବ. (ଦେଶଜ) ଗୁଳ୍ମବିଶେଷ ।

ବେଙ୍ଗ, ବ. (ଦେଶଜ) ଭେକ ।

ବେଙ୍ଗଲା, ବି. (ଦେଶଜ) ବୁଲିବା, ଢେଢେ-ଗୁଡାଏ ବଳଦଦ୍ୱାରା ଧାନ ମଡ଼ାଇବା ।

ବେଙ୍ଗା, ବ. (ଦେଶଜ) ରୋଗବିଶେଷ ।

ବେଜାୟ, ବି. (ଯାବନିକ) ଅନୁଚିତ ।

ବେଜାର ବି. (ଯାବନିକ) ବିରକ୍ତ ।

ବେଟା, ବ. ପୁଂ. ( ଦେଶଜ ) ପୁତ୍ର, ସନ୍ତାନ, ଆତ୍ମଜ ।

ବେଠି, ବ. (ବିଷ୍ଟି ଶବ୍ଦଜ) ମାଗଣା ।

ବେଠିଆ, ବ. (ବିଷ୍ଟି ଶବ୍ଦଜ) ଯେ ପାରିଶ୍ରମିକ ନ ପାଇ କାର୍ଯ୍ୟ କରେ ।

ବେଡ଼, ବ. (ଯାବନିକ) ହାତୋଳ; ହାଣ୍ଡି ଧରି ଉଠାଇବାର ଲୌହନିର୍ମିତ ହତା ।

ବେଢ଼, ବ. (ବେଷ୍ଟନ ଶବ୍ଦଜ) ପରିଧି, ଘେରି ।

ବେଢ଼ା, ବି. (ବେଷ୍ଟନ ଶବ୍ଦଜ) ଗୃହ ଚଉଗରେ ରହିଥିବା ପ୍ରାଚୀର ।

ବେଢ଼ିବା, କ୍ରି. (ବେଷ୍ଟନ ଶବ୍ଦଜ) ଘେରିବା ।

ବେଣା, ବି. (ଦେଶଜ) ସୁନାମଖ୍ୟାତ ତୃଣବିଶେଷ, ଉଶୀର ।

ବେଣି, ବେଣୀ, ବି. ସ୍ତ୍ରୀ. ( ବେଣ-ଇ, ସ୍ତୀ-ନ) ବିନ୍ୟସ୍ତ କେଶପାଶ; ଜଳପ୍ରବାହ; ସ୍ରୋତଃ; ଭୃଙ୍ଗୀବା; ନଦୀବିଶେଷ । ସ୍ତ୍ରୀ. ମେଘ ।

ବେଣୀସଂହାର, ବି. ପୁଂ. ଭଟ୍ଟନାରାୟଣକୃତ ନାଟକ-ବିଶେଷ; ବେଣୀବନ୍ଧନ ।

ବେଣୁ, ବି. ପୁଂ. (ବନ୍=ଶବ୍ଦ କରିବା-ଉ, ନିପା-ତନେ ସିଦ୍ଧ ଅଜ୍=ଗମନ କରିବା-ଣୁ, ଅଜ୍ ସ୍ଥାନରେ=ବୀ) ବଂଶୀ, ମୁରଲୀ; ବାଂଶ; ନୃପ-ବିଶେଷ

ବେଣୁକ, ବୈଣୁକ, ବି. ନ. (ବେଣୁ-କ) ଗବାଦି ତାଡ଼ନ ଦଣ୍ଡ, ପାଞ୍ଚଣ ବାଡ଼ି ।

ବେଣୁଯବ, ବେଣୁବୀଜ, ବି. ପୁଂ. ବାଉଁଶର ଚାଉଳ ।

ବେଣ୍ଟ, ବି. (ଦେଶଜ) ଅସ୍ତ୍ରାଦିର ମୁଠା ।

ବେଣ୍ଟି, ବି. (ଦେଶଜ) କେଶ ଗୁଚ୍ଛପାଖରେ ଥିବା କ୍ଷୁଦ୍ର କେଶ ।

ବେତ, ବି. (ବେତ୍ର ଶବ୍ଦଜ) ବେତସ ।

ବେତନ, ବି. ନ. ( ବୀ-ତନ ) କର୍ମର ମୂଲ୍ୟ, ମଜୁରି; ଭତ୍ତା; ଜୀବିକା; ରୌପ୍ୟ ।

ବେତସ, ବି. ପୁଂ. ( ବେ-ଅସ, ତୁକ୍ ଆଗମ ) ଅଥବା (ବୀ-ତସ୍) ସୀ-ସ୍ତ୍ରୀ. ବେତଗଛ ।

ବେତସ୍ୱାନ୍, ବି.° (ବେତସ୍-ବତ୍) ବେତବହୁଳ ପ୍ରଦେଶ, ଯେଉଁ ପ୍ରଦେଶରେ ଅନେକ ବେତ ଅଛି ।

ବେତା, ବି. (ଦେଶଜ) ବଡ଼ ଠୋକାଇ ।

ବେତାଳ, ବି. ପୁଂ. ( ବେ-ତଲ୍-ଅ ) ଭୂତାଧିଷ୍ଠିତ ଶବ, ଶିବାନୁଚରବିଶେଷ; ଦ୍ୱାରପାଳ, ଦ୍ୱାରୀ; ମନ୍ତ୍ରବିଶେଷ ।

ବେତାଳଭଟ୍ଟ, ବି. ପୁଂ. ପ୍ରଧାନ କବିବିଶେଷ, ରାଜା ବିକ୍ରମାଦିତ୍ୟଙ୍କ ସଭାସ୍ଥ ନବରତ୍ନ ମଧ୍ୟରେ ଏକ ରତ୍ନ ।

ବେତ୍ତା, ବିଂ. (ବିଦ୍-ତୃ) ଜ୍ଞାତା, ଯେ ଜାଣେ; ଲାଭକର୍ତ୍ତା; ପରିଣେତା ।

ବେତ୍ର, ବି. ପୁଂ. (ବୀ-ତ୍ର ) ବେତଗଛ; ଅସୁର-ବିଶେଷ । ନ. ବେତ୍ରଯଷ୍ଟି ।

ବେତ୍ରଧର, ବି. ପୁଂ. (ବେତ୍ର-ଧୃ-ଅ) ଦ୍ୱାରପାଳ ।

ବେତ୍ରବତୀ, ବେତ୍ରାବତୀ, ବି. ସ୍ତ୍ରୀ. ( ବେତ୍ର-ବତ୍-ଈ) ମାଳବ ଦେଶର ନଦୀବିଶେଷ ।

ବେତ୍ରାସନ, ବି. ନ. (ବେତ୍ର-ଆସନ) ବେତ୍ରନିର୍ମିତ ଆସନ, ମୋଢ଼ା ପ୍ରଭୃତି ।

ବେଦ, ବି. ପୁଂ. (ବିଦ୍-ଅ) ଶାସ୍ତ୍ରଜ୍ଞାନ; ସାମାଦି ଋଗ୍‌ବେଦ; ଚାରିସଂଖ୍ୟା, ୪; ବ୍ରହ୍ମା ମୁଖନିର୍ଗତ ଧର୍ମଜ୍ଞାପକ ଶାସ୍ତ୍ର, ଶ୍ରୁତି; ଶାସ୍ତ୍ର; ଛନ୍ଦ; ଆଖ୍ୟା; ଯଜ୍ଞାଙ୍ଗ; ଶାସ୍ତ୍ରୋକ୍ତ ଚରିତ୍ର; ବିଷ୍ଣୁ ।

ବେଦଗର୍ଭ, ବି. ପୁଂ. ବ୍ରାହ୍ମଣ; ବ୍ରହ୍ମା ।

ବେଦନ, ନ. } ବି. (ବିଦ୍-ଅନ, ସ୍ତ୍ରୀଲିଙ୍ଗେ ଆ)
ବେଦନା, ସ୍ତ୍ରୀ. } ଅନୁଭବ, ବୋଧ; ଜ୍ଞାନ; ଯାତନା, ବ୍ୟଥା; କ୍ଲେଶ, ଦୁଃଖାନୁଭବ; ପରିଣୟ, ବିବାହ; ଦାନ, ଉପଢୌକନ ।

ବେଦନୀୟ, ବିଂ. ( ବିଦ୍-ଅନୀୟ ) ଅନୁଭବନୀୟ, ଜ୍ଞେୟ ।

ବେଦପାରଗ, ବେଦବିଦ୍, (ବେଦ-ପାରଗ,ବିଦ୍) ବେଦଜ୍ଞ ବ୍ରାହ୍ମଣ; ବ୍ରହ୍ମଜ୍ଞାନୀ ।

ବେଦମାତା, ବି. ସ୍ତ୍ରୀ. ( ବେଦ-ମାତୃ ) ଗାୟତ୍ରୀ; ଦୁର୍ଗା ।

ବେଦବଦନ, ବି. ନ. ବ୍ୟାକରଣ ଶାସ୍ତ୍ର ।

ବେଦବାସ, ବି. ପୁଂ. ( ବେଦ-ବାସ ) ବିପ୍ର, ବ୍ରାହ୍ମଣ ।

ବେଦବିଦ୍, ବିଂ. (ବେଦ-ବିଦ୍) ବେଦଜ୍ଞ, ବେଦ-ବେତ୍ତା । ବି. ପୁଂ. ବିଷ୍ଣୁ ।

ବେଦବ୍ୟାସ, ବ. ପୁଂ. (ବେଦ-ବି-ଅ-ଅସ୍) ବେଦ ବିଭାଗକର୍ତ୍ତା ମୁନି; ବ୍ୟାସଦେବ, ସତ୍ୟବତୀ-ତନୟ ।

ବେଦଃ, ବ. ନ. (ବିଦ୍-ଅସ୍) ବେଦସମୂହ; ସୁବର୍ଣ୍ଣ, କାଞ୍ଚନ । ବିଂ. ବେତ୍ତା ।

ବେଦାଗ୍ରଣୀ, ବ. ସ୍ତ୍ରୀ. (ବେଦ-ଅଗ୍ରଣୀ) ସରସ୍ୱତୀ ।

ବେଦାଙ୍ଗ, ବ. ନ. (ବେଦ-ଅଙ୍ଗ) ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦଃ, ଜ୍ୟୋତିଷ ଏହି ଛ ପ୍ରକାର ବେଦର ଅବୟବଗ୍ରନ୍ଥ ।

ବେଦାଦ, ବ.ପୁଂ. (ବେଦ-ଆଦ) ପ୍ରଣବ, ଓଁକାର ।

ବେଦାଧିପ, ବ. ପୁଂ. ବେଦାଧିଷ୍ଠାତ୍ରୀ ଦେବତା ।

ବେଦାନ୍ତ, ବ. ପୁଂ. (ବେଦ-ଅନ୍ତ) ବ୍ୟାସପ୍ରଣୀତ ଦର୍ଶନ ଶାସ୍ତ୍ର ।

ବେଦାନ୍ତୀ, ବ. ପୁଂ. (ବେଦାନ୍ତ-ଇନ୍) ବେଦାନ୍ତ-ମତାବଲମ୍ବୀ, ବେଦାନ୍ତବେତ୍ତା ।

ବେଦାଭ୍ୟାସ, ବ. ପୁଂ. (ବେଦ-ଅଭ୍ୟାସ) ଅଧ୍ୟୟନ, ବିଚାର, ଅନୁଶୀଳନ, ଜପ, ଅଧ୍ୟାପନା ଏହି ପାଞ୍ଚ ।

ବେଦି, ବେଦିକା, ବେଦୀ, ବ. ସ୍ତ୍ରୀ. (ବିଦ୍-ଇ, ପକ୍ଷେ ଈ) ଯଜ୍ଞାଦି ନିମିତ୍ତ ପରିଷ୍କୃତ ଭୂମି, ମୃତ୍ତିକା ପ୍ରସ୍ତୁତ ଭିତ୍ତି ।

ବେଦିଜା, ବ. ସ୍ତ୍ରୀ. (ବେଦି-ଜନ୍-ଆ) ଦ୍ରୌପଦୀ, ପାଣ୍ଡବ ମହିଷୀ ।

ବେଦିତ, ବିଂ. (ବେଦି-ତ) ଜ୍ଞାପିତ; ନିବେଦିତ; ବର୍ଣ୍ଣିତ ।

ବେଦିତବ୍ୟ, ବିଂ. (ବିଦ୍-ତବ୍ୟ) ଜ୍ଞାତବ୍ୟ, ଜାଣି-ବାର ଯୋଗ୍ୟ ।

ବେଦିତା, ବିଂ. (ବିଦ୍-ତୃ) ଜ୍ଞାତା, ସାକ୍ଷାତ୍‌କର୍ତ୍ତା ।

ବେଦୀ, ବ. ପୁଂ. (ବିଦ୍-ଇନ୍) ପଣ୍ଡିତ; ବ୍ରହ୍ମା; ପରମେଶ୍ୱର । ବିଂ. ବେତ୍ତା, ଜ୍ଞାତା ।

ବେଦୀଶ, ବ. ପୁଂ. (ବେଦୀ=ସରସ୍ୱତୀ-ଈଶ) ବ୍ରହ୍ମା ।

ବେଦୋକ୍ତ, ବିଂ. (ବେଦ-ଉକ୍ତ) ବେଦବାକ୍ୟ, ଶ୍ରୁତିକଥିତ ।

ବେଦୋଦୟ, ବ. ପୁଂ. (ବେଦ-ଉଦୟ) ସୂର୍ଯ୍ୟ, ପ୍ରସିଦ୍ଧ ଅଛି ଯେ ସୂର୍ଯ୍ୟଠାରୁ ଏହି ବେଦର ଉଦୟ ହୋଇଅଛି ।

ବେଦ୍ୟ, ବିଂ. (ବିଦ୍-ଯ) ବୋଧ୍ୟ, ଜ୍ଞେୟ ।

ବେଧ, ପୁଂ. } ବ. (ବିଧ୍-ଅ, ଅନ) ଛିଦ୍ରକରଣ;<br>ବେଧନ, ନ. } ଗମ୍ଭୀରତା; ବସ୍ତୁର ସ୍ଥୂଳତାର ପରିମାଣ; ବେଧ=(ଦେଶଜ) ପରସ୍ପରୁ ସଙ୍ଗମନ୍ତ୍ରାତ ।

ବେଧପିଲ, ବ. ବେଧକୁଆ, ବେଧଫଳ,ଜାରଜ । ଯଥା—

ବେଧ ପିଲ ବୋଲି ବିବ୍ରତେ ପୁତ୍ରର କଲେ ଦେଲେ ମେଲ ।

ବେଧାଃ, ବ. ପୁଂ. (ବିଧ୍-ଅସ୍) ବିଷ୍ଣୁ; ବିଧାତା; ସୂର୍ଯ୍ୟ; ପଣ୍ଡିତ; ଦକ୍ଷ ପ୍ରଭୃତି ପ୍ରଷ୍ଟା; ଶ୍ୱେତାର୍କବୃକ୍ଷ; ଅନନ୍ତପୁତ୍ର ।

ବେଧିତ, ବିଂ. (ବିଧ୍-ତ) ବିଦ୍ଧ, ଛେଦିତ ।

ବେଧୀ, ବିଂ. (ବିଧ୍-ଇନ୍) ବେଧକ,ଛିଦ୍ରକାରକ । ଧିନୀ-ସ୍ତ୍ରୀ. ଜୋକ; ମେଥୀ ।

ବେଧ୍ୟ, ବ. ନ. (ବିଧ୍-ଯ) ଶରବ୍ୟ, ଲକ୍ଷ୍ୟ । ବିଂ ବିଦ୍ଧ କରିବାର ଯୋଗ୍ୟ ।

ବେପଥୁ, ପୁଂ. } ବ. (ବେପ୍-ଅଥୁ, ଅନ) କମ୍ପ ।<br>ବେପନ, ନ } ଯଥା—

ବିମ୍ବଲୁ ପୁଳକିତ ଶରୀରେ, ବେପଥୁ ଜନ୍ମି ଅଧର ବିମ୍ବରେ ।
ବୈ. ବ.

ବେପମାନ, ବିଂ. (ବେପ୍-ଆନ) କମ୍ପମାନ, ଯେ କମ୍ପୁଅଛି ।

ବେପାର, (ବ୍ୟାପାର ଶବ୍ଦଜ) କ୍ରୟ ବିକ୍ରୟ, ବାଣିଜ୍ୟ, ଜୀବନୋପାୟ ।

ବେପାରୀ, (ଦେଶଜ) ବ୍ୟାପାରୀ,କ୍ରୟବିକ୍ରୟକାରୀ, ବ୍ୟବସାୟୀ ।

ବେଭାର, (ବ୍ୟବହାର ଶବ୍ଦଜ) ଆଚରଣ; ପ୍ରଥା, ରୀତି ।

ବେମାରୀ, (ଯାବନିକ) ରୋଗ, ପୀଡା ।

**ବେର**, ବ. ନ. ପୁଂ. (ଶ୍ରୀ, ବ ଅଜ୍=ଗମନ-କରିବାର) ଦେହ, ଶରୀର । ଯଥା—

ବେର ବ ତୁଟେ ଭୋର, ଏଥ ପ୍ରାଣେ ଘାରେ ମୋ ଶରୀର । ବୈ. ବ

ନ. କୁଙ୍କୁମ; ବାଇଗଣ ।

**ବେଲ**, ବ. ନ. (ବେଲ୍-ଅ) ଉଦ୍ୟାନ; (ବିଲ୍ୱ ଶବ୍ଦଜ) ବିଲ୍ୱ, ଶ୍ରୀଫଳ ।

**ବେଳ**, ନ. ବେଳା, ସ୍ତ୍ରୀ. ବ. (ବେଲ୍-ଅ, ଆ) କାଳ, ସମୟ; ଅବସର, ସୀମା; ତୀର; ସମୁଦ୍ର; ଜଳ; କୂଅର ଭିତ୍ତି; ମର୍ଯ୍ୟାଦା; ହଠାତ୍ ମୃତ୍ୟୁ; ପୀଡ଼ା; ଶିବଙ୍କ ଖାଦ୍ୟ; ବାକ୍ୟ; ସୁଯୋଗ; ଗ୍ରାସ; ବୁଧପତ୍ନୀ; ବାକ୍ ।

**ବେଲଣା**, ବ. (ବେଲନ ଶବ୍ଦଜ) ରୋଟି ଆଦି ବେଲିବା ନିମିତ୍ତ କାଷ୍ଠନିର୍ମିତ ଦ୍ରବ୍ୟବିଶେଷ ।

**ବେଲା**, ବ. (ଦେଶଜ) କଂସା ।

**ବେବର୍ତ୍ତା**, ବ. (ବ୍ୟବହର୍ତ୍ତା ଶବ୍ଦଜ) ଅଧ୍ୟକ୍ଷ; ଉପାଧିବିଶେଷ ।

**ବେବାକ**, ବ. (ଯାବନିକ) ସମସ୍ତ, ସମଗ୍ର ।

**ବେଶ**, **ବେଷ**, ବ. ପୁଂ. (ବିଶ୍=ପ୍ରବେଶ କରିବା, ବିଷ୍=ବ୍ୟାପିବା-ଅ) ପ୍ରବେଶ; ସଜ୍ଜା, ବସ୍ତ୍ର ଅଳଙ୍କାରାଦି ପରିଧାନ; ବେଶ୍ୟାଳୟ; ଗୃହ । ଯଥା—

ବାସକ ସଜ୍ଜା ହୋଇ ମୁଁ ପାଣୁ ଶଯ୍ୟାରେ,
ବେଶ ଭାବ ଯେସନ୍ତ ବିକଳେଶେ ପ୍ରାଙ୍ଗଣେ । ବୈ. ବ.

**ବେଶନ**, ବ. (ଦେଶଜ) ଖେଶାରି ଓ ବୁଟଗୁଣ୍ଡି ।

**ବେଶନ୍ତ**, ବ. ପୁଂ. (ବିଶ୍=ପ୍ରବେଶ କରିବା-ଅନ୍ତ) କ୍ଷୁଦ୍ର ସରୋବର; ଅଗ୍ନି ।

**ବେଶର**, ବ. (ଦେଶଜ) ନାକର ଅଳଙ୍କାର-ବିଶେଷ; ନଥାସୋରିଷ । ବ. ପୁଂ. (ବେଶ-ସ୍ତ୍ର-ଅ) ଖଚର ।

**ବେଶୀ**, ବି. (ବେଶ-ଇନ୍) ବେଶକାରକ, ପରିଚ୍ଛଦଯୁକ୍ତ । ବି. (ଯାବନିକ) ଅଧିକ, ଅତିରିକ୍ତ ।

**ବେଶ୍ମ**, ବ. ନ. (ବିଶ୍-ମନ୍) ଆଳୟ, ଆବାସ, ଗୃହ, ସଦ୍ମ, ନିକେତନ ।

**ବେଶ୍ମନକୁଳ**, ବ. ପୁଂ. (ବେଶ୍ମନ୍-ନକୁଳ) ଛୁଚୁନ୍ଦ୍ରା ।

**ବେଶ୍ମଭୂ**, ବ. ସ୍ତ୍ରୀ. (ବେଶ୍ମନ୍-ଭୂ) ବାସ୍ତୁଭୂମି, ବାସୋପଯୁକ୍ତ ସ୍ଥାନ ।

**ବେଶ୍ୟା**, ବ. ସ୍ତ୍ରୀ. (ବିଶ୍-ଯ-ଆ କିମ୍ବା ବେଶ-ଯ-ଆ) ସାଧାରଣ ସ୍ତ୍ରୀ, ବାରନାରୀ ।

**ବେଶ୍ୟାଚାର୍ଯ୍ୟ**, ବ. ପୁଂ. (ବେଶ୍ୟା-ଆଚାର୍ଯ୍ୟ) ପୀଠମର୍ଦ୍ଦ, ବେଶ୍ୟା ପ୍ରଭୃତିର ନୃତ୍ୟଶିକ୍ଷାଗୁରୁ ।

**ବେଷ୍ଟ**, ବ. ପୁଂ. (ବେଷ୍ଟ୍-ଅ) ବେଷ୍ଟନ; ଅଠା ।

**ବେଷ୍ଟକ**, ବ. ନ. (ବେଷ୍ଟ-କନ୍) ଉଷ୍ଣୀଷ, ପଗଡ଼ି; ନିର୍ଯ୍ୟାସ । ପୁଂ. କୁଷ୍ମାଣ୍ଡ; ପ୍ରାଚୀର । ବି. ବେଷ୍ଟନକାରକ ।

**ବେଷ୍ଟନ**, ବ. ନ. (ବେଷ୍ଟ୍-ଅନ) ଚତୁର୍ଦ୍ଦିଗରେ ଆବରଣ; ପରିଧି; ବେଢ଼; ପ୍ରଦକ୍ଷିଣ; କର୍ଣ୍ଣ-କୁହର; କର୍ଣ୍ଣ; ପଗଡ଼ି; ନୃତ୍ୟକାଳୀନ ହସ୍ତ-ଚାଳନ ।

**ବେଷ୍ଟିତ**, ବି. (ବେଷ୍ଟ୍-ତ) ଆବୃତ । ନ. ବେଷ୍ଟନ ।

**ବେହାୟା**, **ବେହାୟା**, ବି. (ଯାବନିକ) ନିର୍ଲଜ୍ଜ, ଲଜ୍ଜାହୀନ ।

**ବେହରଣ**, ବ. (ଦେଶଜ) ସଜ୍ଜା । ଯଥା—

ବେହରଣ ସଙ୍ଗେ ବନ୍ଧୁ ଦନ ମୂଳ ବର ।

**ବେହାର**, ବ. ପୁଂ. ସ୍ୱନାମପ୍ରସିଦ୍ଧ ଦେଶ ।

**ବେହେରା**, ବ. (ଦେଶଜ) ଗଉଡ଼, ଚମାର ଓ କେଉଟ ଜାତିର ଉପାଧି ।

**ବେହେରାଣୀଅ**, ବି. (ଦେଶଜ) ରାଜାଦିର ରକ୍ଷିତ ସ୍ତ୍ରୀଠାରୁ ଜନ୍ମ ସନ୍ତାନ ।

**ବେହେଲା**, ବ. (ଦେଶଜ) ବାଦ୍ୟଯନ୍ତ୍ରବିଶେଷ ।

**ବେହୋଶ**, (ଯାବନିକ) ଅଜ୍ଞାନ, ମତ୍ତ ।

**ବୈକର୍ତ୍ତନ**, ବି. (ବିକର୍ତ୍ତନ-ଅ) ସୂର୍ଯ୍ୟସମ୍ବନ୍ଧୀୟ, ସୂର୍ଯ୍ୟବଂଶୀୟ । ବ. ପୁଂ. ଦୁର୍ଯ୍ୟୋଧନ ।

ବୈକଳ୍ପିକ, ବିଂ. ( ବିକଳ୍ପ-ଇକ ) ସନ୍ଦେହ-ଯୋଗ୍ୟ ।

ବୈକଲ୍ୟ, ବି. ନ. ( ବିକଳ-ଯ ) ବିକଳତା, କାତରତା ; ବିକୃତଭାବ, ଅଙ୍ଗହୀନତା ; ଅଭାବ, ଅସମ୍ପୂର୍ଣ୍ଣତା ।

ବୈକୁଣ୍ଠ, ବି. ପୁଂ. (ବିକୁଣ୍ଠା-ଅ) ବିଷ୍ଣୁ ; ଇନ୍ଦ୍ର । ନ. ବିଷ୍ଣୁପୁରୀ ।

ବୈକୃତ, ବି. ନ. ( ବିକୃତ-ଅ ) ମାନସିକ ବା କାୟିକ ବିକାର; ବିରକ୍ତି, ଘୃଣା, ବିକୃତତ୍ୱ; ବିକାର ।

ବୈଖାନସ, ବି. ପୁଂ. ( ବି-ଖନ୍-ଅନ୍-ଅସ୍ ) ଯେଉଁମାନେ ମୂଳାଦିଦ୍ୱାରା ଜୀବିକାନିର୍ବାହ କରନ୍ତି,ବାନପ୍ରସ୍ଥ,ବନବାସୀ । ବିଂ. ବାନପ୍ରସ୍ଥ-ସମ୍ବନ୍ଧୀୟ ।

ବୈଗୁଣ୍ୟ, ବି. ନ. ( ବିଗୁଣ-ଯ ) ବିକୃତତା; ଅପରାଧ, ଦୋଷ; ବିଗୁଣତ୍ୱ; ହୀନତା, ଗୁଣରାହିତ୍ୟ ।

ବୈଚିତ୍ତ୍ୟ, ବି. ନ. (ବିଚିତ୍ତ-ଯ) ଚିତ୍ତଭ୍ରାନ୍ତି,ମତି-ଭ୍ରମ ।

ବୈଚିତ୍ର, ବୈଚିତ୍ର୍ୟ, ବି. ନ. ( ବିଚିତ୍ର-ଅ, ଯ ) ବିଚିତ୍ରତା, ଚମତ୍କାରିତ୍ୱ, ବିଭିନ୍ନତା; ନାନା-ରୂପତା; ସୌନ୍ଦର୍ଯ୍ୟ ।

ବୈଜନନ, ବି. ପୁଂ. (ବିଜନନ-ଅ) ପ୍ରସବମାସ, ଯେଉଁ ମାସରେ ସନ୍ତାନ ଭୂମିଷ୍ଠ ହୁଏ ।

ବୈଜୟନ୍ତ, ବି. ପୁଂ. ବି-ଜି-ଅନ୍ତ) ଇନ୍ଦ୍ରପୁରୀ; ଇନ୍ଦ୍ରଧ୍ୱଜ ।

ବୈଜୟନ୍ତୀ, ବି. ସ୍ତ୍ରୀ. (ବୈଜୟନ୍ତ-ଈ) ପତାକା, ଧ୍ୱଜା; ଜୟନ୍ତୀବୃକ୍ଷ ।

ବୈଜୟିକ, ବିଂ. (ବିଜୟ-ଇକ) ବିଜୟସମ୍ବନ୍ଧୀୟ, ଜୟସୂଚକ ।

ବୈଜାତ୍ୟ, ବି. ନ. (ବିଜାତି-ଯ) ବିଜାତୀୟତା, ବୈଲକ୍ଷଣ୍ୟ; ସ୍ୱଭାବର ପ୍ରଭେଦ, ଲମ୍ପଟ୍ୟ ।

ବୈଜିକ, ବିଂ. (ବୀଜ-ଇକ) ବୀଜସମ୍ବନ୍ଧୀୟ । ବି. ନ. ପରମାତ୍ମା; ହେତୁ; ତୈଳବିଶେଷ । ପୁଂ. ସଦ୍ୟୋଜାତ ଅଙ୍କୁର ।

ବୈଜ୍ଞାନିକ, ବିଂ. (ବିଜ୍ଞାନ-ଇକ) ନିପୁଣ, ଦକ୍ଷ; ବିଜ୍ଞାନସମ୍ବନ୍ଧୀୟ ।

ବୈଠକ, ବି. ( ଦେଶଜ ) ସଭା, ସମାଜ, ଅଧିବେଶନ ।

ବୈଠା, ବି. (ଦେଶଜ) ପ୍ରଦୀପ ।

ବୈଠିକି, ବି. (ଦେଶଜ) ଦୀପରୁଖା, ଆଧାର-ବିଶେଷ ।

ବୈଡାଳବ୍ରତ, ବି. ନ. (ବିଡାଳ-ଅ-ବ୍ରତ) ପାପ-କର୍ମ ଗୋପନ କରି ଆପଣାକୁ ଧାର୍ମିକ ବୋଲି ପରିଚୟ ଦେବା ।

ବୈଣବ, ବିଂ. (ବେଣୁ-ଅ) ବେଣୁସମ୍ବନ୍ଧୀୟ; ବଁଶ-ନିର୍ମିତ; ଉମ । ନ. ବେଣୁଫଳ । ବି. ସ୍ତ୍ରୀ. ବଂଶଲୋଚନା ।

ବୈତଂସିକ, ବିଂ. (ବିତଂସ=ଫାନ୍ଦ ବା ଜାଲ-ଇକ) ମାଂସବିକ୍ରୟୀ ।

ବୈତନିକ, ବିଂ. ( ବେତନ-ଇକ ) କର୍ମକାର; ଚାକର; ବେତନଭୋଗୀ ।

ବୈତରଣି, ବୈତରଣୀ, ବି. ସ୍ତ୍ରୀ. (ବିତରଣ-ଅ -ଈ-କମ୍ୱା ବିତରଣି = ତରଣଶୂନ୍ୟା-ଇ ) ରାକ୍ଷସମାତା; ପ୍ରେତନଦୀ; କଟକର ଅନ୍ତର୍ଗତ ନଦୀବିଶେଷ ।

ବୈତାଳିକ, ବି. ପୁଂ. ( ବି-ତାଳି-ଇକ ) ସ୍ତୁତି-ପାଠକ, ଭାଟ । ଯଥା—

କରନ୍ତି ସଙ୍ଗୀତ ସେକ୍ଷେ ବୈତାଳିକଗଣ ।। ବ, ବ.

ବିଂ. ବେତାଳସମ୍ବନ୍ଧୀୟ ।

ବୈତୃଷ୍ଣ୍ୟ, ବି. ନ. ( ବିତୃଷ୍ଣ-ଯ ) ତୃଷ୍ଣାରାହିତ୍ୟ, ଅନିଚ୍ଛା, ଅପ୍ରବୃତ୍ତି ।

ବୈଦଗ୍ଧ, ବୈଦଗ୍ଧ୍ୟ, ବି. ନ. } ( ବିଦଗ୍ଧ-ଅ, ଯ,
ବୈଦଗ୍ଧୀ ବି. ସ୍ତ୍ରୀ. } ଈ) ପଟୁତା; ଚତୁରତା; ରସିକତା; ଶୋଭା; ପାଣ୍ଡିତ୍ୟ; ଭଙ୍ଗୀ ।

ବୈଦର୍ଭ, ବି°. (ବିଦର୍ଭ-ଅ) ବିଦର୍ଭ ଦେଶସମ୍ବନ୍ଧୀୟ, ବିଦର୍ଭଦେଶଜାତ । ବି. ପୁଂ. ବିଦର୍ଭରାଜ । ନ. ବାକ୍ଚାତୁର୍ଯ୍ୟ ।

ବୈଦର୍ଭୀ, ବି. ସ୍ତ୍ରୀ. ( ବିଦର୍ଭ-ଅ, ସ୍ତ୍ରୀଲିଙ୍ଗେ ଈ ) ଦମୟନ୍ତୀ; ରୁକ୍ମିଣୀ; ଅଗସ୍ତ୍ୟ ପତ୍ନୀ ।

ବୈଦାନ୍ତିକ, ବି. ପୁଂ. ( ବେଦାନ୍ତ-ଇକ ) ଯେ ବ୍ୟକ୍ତି ବେଦାନ୍ତଶାସ୍ତ୍ର ଜାଣେ । ବି°. ବେଦାନ୍ତ-ସମ୍ବନ୍ଧୀୟ ।

ବୈଦିକ, ବି. ପୁଂ. ( ବେଦ-ଇକ ) ବେଦଜ୍ଞ-ବ୍ରାହ୍ମଣ । ବି°. ବେଦବିହିତ, ବେଦୋକ୍ତ ।

ବୈଦୂର୍ଯ୍ୟ, ବି. ନ. (ବିଦୂର=ପର୍ବତବିଶେଷ-ଯ ) କୃଷ୍ଣପୀତବର୍ଣ୍ଣ ମଣିବିଶେଷ, ନୀଳକାନ୍ତମଣି ।

ବୈଦେଶିକ, ବି°. (ବିଦେଶ-ଇକ) ବିଦେଶାଗତ, ଅନ୍ୟଦେଶୀୟ, ଭିନ୍ନଦେଶୀୟ ।

ବୈଦେହ, ବି. ପୁଂ. ( ବିଦେହ-ଅ ) ମିଥିଳାର ରାଜା; ବଣିକ, ସଙ୍କରଜାତିବିଶେଷ ।

ବୈଦେହୀ, ବି. ସ୍ତ୍ରୀ. (ବିଦେହ-ଅ ସ୍ତ୍ରୀଲିଙ୍ଗେ ଈ) ଜନକନନ୍ଦିନୀ, ଜାନକୀ, ସୀତା; ବଣିକପତ୍ନୀ; ଗୋରୋଚନା; ପିପ୍ପଳୀ; ହରିଦ୍ରା ।

ବୈଦ୍ୟ, ବି. ପୁଂ. (ବେଦ-ଯ) ଆୟୁର୍ବେଦବେତ୍ତା, ଭିଷକ୍, ବୈଦ୍ୟକ; ବିଦ୍ୱାନ୍ । ବି°. ବେଦ-ସମ୍ବନ୍ଧୀୟ ।

ବୈଦ୍ୟକ, ବି. ନ. ( ବୈଦ୍ୟ-କ ) ଆୟୁର୍ବେଦ, ଚିକିତ୍ସାଶାସ୍ତ୍ର ।

ବୈଦ୍ୟନାଥ, ବି. ପୁଂ. ( ବୈଦ୍ୟ-ନାଥ ) ଶିବ, ମହାଦେବ; ଦେଶବିଶେଷ; ଭୈରବବିଶେଷ ।

ବୈଦ୍ୟୁତ, ବି°. (ବିଦ୍ୟୁତ୍-ଅ) ବିଦ୍ୟୁତ୍ସମ୍ବନ୍ଧୀୟ; ତଡ଼ିନ୍ମୟ ।

ବୈଧ, ବି°. (ବିଧି-ଅ) ବିଧିସିଦ୍ଧ, ବିଧିବୋଧିତ ।

ବୈଧବ୍ୟ, ବି. ନ. ( ବିଧବା-ଯ ) ପତିହୀନତା, ବିଧବାତ୍ୱ, ରାଣ୍ଡ ଅବସ୍ଥା ।

ବୈଧର୍ମ୍ୟ, ବି. ନ. ( ବିଧର୍ମ-ଯ ) ନାସ୍ତିକତା; ବିଭିନ୍ନଧର୍ମବେତ୍ତା ।

ବୈଧାତ୍ର, ବି. ପୁଂ. (ବିଧାତୃ-ଅ) ବିଧାତାଙ୍କ ପୁତ୍ର, ସନତ୍କୁମାର ପ୍ରଭୃତି । ବି°. ବିଧାତୃସମ୍ବନ୍ଧୀୟ ।

ବୈଧୃତି, ବି. ପୁଂ. (ବି-ଧୃତି, ନିପାତନ) ବିଷ୍କୁମ୍ଭାଦି ଯୋଗର ଅନ୍ତର୍ଗତ ଯୋଗବିଶେଷ; ବହ୍ନି-ବିଶେଷ ।

ବୈଧେୟ, ବି°. ( ବିଧେୟ-ଅ ) ମୂର୍ଖ, ଅଜ୍ଞାନ; (ବିଧି-ଏୟ) ବିଧିସମ୍ବନ୍ଧୀୟ, ବିଧେୟସମ୍ବନ୍ଧୀୟ ।

ବୈନତେୟ, ବି. ପୁଂ. (ବିନତା-ଏୟ) ବିନତାର ପୁତ୍ର, ଗରୁଡ଼, ଖଗେଶ୍ୱର; ଅରୁଣ ।

ବୈନାୟକ, ବି°. ( ବିନାୟକ=ଗଣେଶ-ଅ ) ବିନାୟକସମ୍ବନ୍ଧୀୟ ।

ବୈପରୀତ୍ୟ, ବି. ନ. ( ବିପରୀତ-ଯ ) ବିପର୍ଯ୍ୟୟ, ଓଲଟା ।

ବୈଭବ, ବି. ପୁଂ. (ବିଭବ-ଅ) ବିଭୁତା, ସାମର୍ଥ୍ୟ; ସମ୍ପତ୍ତି, ଐଶ୍ୱର୍ଯ୍ୟ; ମହିମା; ବାହୁଲ୍ୟ ।

ବୈଭ୍ରାଜ, ବି. ନ. (ବିଭ୍ରାଜ-ଅ) କୁବେରଙ୍କର ବିହାରୋଦ୍ୟାନ ।

ବୈମାତ୍ର, ବୈମାତ୍ରେୟ, ବି. ପୁଂ. ( ବିମାତୃ-ଅ, ଏୟ ) ବିମାତାର ପୁତ୍ର । ତ୍ରୀ, ୟୀ, ସ୍ତ୍ରୀ. ବିମାତାର କନ୍ୟା ।

ବୈମାନିକ, ବି°. ( ବିମାନ-ଇକ ) ବିମାନଗାମୀ, ଖେଚର ।

ବୈମୁଖ୍ୟ, ବି. ନ. ( ବିମୁଖ-ଯ ) ବିମୁଖତା; ପରାଙ୍ମୁଖତା; ଅପ୍ରସନ୍ନତା; ନିରନୁକୂଳତା, ପଳାୟନ ।

ବୈୟାକରଣ, ବି°. ( ବ୍ୟାକରଣ-ଅ ) ବ୍ୟାକରଣ-ବେତ୍ତା, ବ୍ୟାକରଣ ଅଧ୍ୟେତା; ବ୍ୟାକରଣ-ସମ୍ବନ୍ଧୀୟ ।

ବୈୟାସକି, ବି. ପୁଂ. ( ବ୍ୟାସ-ଇ, ଅପତ୍ୟାର୍ଥେ ) ବ୍ୟାସଦେବଙ୍କ ଅପତ୍ୟ, ଶୁକଦେବ ।

ବୈର, ବି. ନ. ( ବୀର-ଅ ) ବିରୋଧ, ଦ୍ୱେଷ, ଶତ୍ରୁତା; ଶୌର୍ଯ୍ୟ ।

ବୈରଖ, ବି. (ଦେଶଜ) ପତାକାବିଶେଷ ।

ବୈରକ୍ତ୍ୟ, ବି. ନ. ( ବିରକ୍ତ-ଯ ) ବିରାଗ, ବୈରାଗ୍ୟ; ଘୃଣା ।

ବୈରନିର୍ଯାତନ, ବି. ନ. ( ବୈର-ନିର୍ଯାତନ ) ପ୍ରତିଫଳ, ଶତ୍ରୁତାର ପ୍ରତିକ୍ରିୟା, ଅପକାରର ପ୍ରତ୍ୟପକାର କରିବା ।

ବୈରଶୁଦ୍ଧି, ବି. ସ୍ତ୍ରୀ. (ବୈର-ଶୁଦ୍ଧି ) ପ୍ରତୀକାର, ଶତ୍ରୁତାର ପ୍ରତିକ୍ରିୟା ।

ବୈରାଗୀ, ବି. ପୁଂ. ( ବିରାଗ-ଇନ୍ ) ବିବେକୀ, ସଂସାର ବାସନାଶୂନ୍ୟ; ବୈଷ୍ଣବ ।

ବୈରାଗ୍ୟ, ବି. ନ. ( ବିରାଗ-ଯ ) ଅନନୁରାଗ, ବିରାଗ; ବୈଷ୍ଣବଧର୍ମ; ସଂସାରେ ଔଦାସ୍ୟ ।

ବୈରାଟ, ବି. ପୁଂ. (ବିରାଟ-ଅ) ଇନ୍ଦ୍ରଗୋପ କୀଟ । ବିଂ. ବିରାଟସମ୍ବନ୍ଧୀୟ ।

ବୈରିତା, ବି. ସ୍ତ୍ରୀ. ( ବୈରି-ତା ) ଶତ୍ରୁତା, ବିପକ୍ଷତା ।

ବୈରୀ, ବିଦ୍ୱେଷୀ; ବିଂ. (ବୈର, ବିଦ୍ୱେଷ-ଇନ୍ ) ବୈର-ଯୁକ୍ତ, ଶତ୍ରୁ ।

ବୈରୂପ୍ୟ, ବି. ନ. ( ବିରୂପ-ଯ ) ବିରୂପତା; କଦର୍ଯ୍ୟତା; ବିକୃତି; ଅଯଥାଭାବ ।

ବୈରୋଚନ, ବୈରେଚନ, ବି. ପୁଂ. ( ବିରୋଚନ-ଅ, ଇ ) ବଳିରାଜା; ବୁଦ୍ଧ; ପୌତ୍ର, ସୂର୍ଯ୍ୟପୁତ୍ର; ଅଗ୍ନିପୁତ୍ର ।

ବୈରୋଦ୍ଧାର, ବି. ପୁଂ. ( ବୈର-ଉଦ୍ଧାର ) ବୈରନିର୍ଯାତନ, ବୈରଶୁଦ୍ଧି ।

ବୈଲକ୍ଷଣ୍ୟ, ବି. ନ. ( ବିଲକ୍ଷଣ-ଯ ) ପ୍ରଭେଦ, ବିଶେଷ; ବିଭିନ୍ନତା; ଅନ୍ୟପ୍ରକାର ।

ବୈଲକ୍ଷ୍ୟ, ବି. ନ. ( ବିଲକ୍ଷ-ଯ ) ଲଜ୍ଜା; ବିସ୍ମୟ, ସ୍ୱଭାବର ବୈଲକ୍ଷଣ୍ୟ ।

ବୈବର୍ଣ୍ୟ, ବି. ନ. ( ବିବର୍ଣ୍ଣ-ଯ ) ବିବର୍ଣ୍ଣତା, ମାଳିନ୍ୟ, କାଳିମା, ଲାବଣ୍ୟହୀନତା ।

ବୈବସ୍ୱତ, ବି. ପୁଂ. (ବିବସ୍ୱତ୍-ଅ) ବିବସ୍ୱାନଙ୍କ ପୁତ୍ର, ସପ୍ତମମନୁ; ଯମ; ଶନି; ରୁଦ୍ରବିଶେଷ । ତୀ, ସ୍ତ୍ରୀ. ଦକ୍ଷିଣଦିକ୍ ।

ବୈବାହିକ, ବିଂ. ( ବିବାହ-ଇକ ) ବିବାହ-ସମ୍ବନ୍ଧୀୟ, ବିବାହର ଯୋଗ୍ୟ । ବି. ପୁଂ. ପୁତ୍ର ବା କନ୍ୟାର ଶ୍ୱଶୁର ।

ବୈଶମ୍ପାୟନ, ବି. ପୁଂ. ଭାରତବକ୍ତା ବ୍ୟାସଶିଷ୍ୟ ମୁନିବିଶେଷ ।

ବୈଶାଖ, ବି. ପୁଂ. (ବୈଶାଖୀ=ବିଶାଖା ନକ୍ଷତ୍ର-ଯୁକ୍ତା ପୌର୍ଣ୍ଣମାସୀ-ଅ) ପ୍ରଥମ ମାସ; ମନ୍ଥନ-ଦଣ୍ଡ ।

ବୈଶିଷ୍ଟ୍ୟ, ବି. ନ. ( ବିଶିଷ୍ଟ-ଯ ) ବିଶିଷ୍ଟତ୍ୱ; ବୈଲକ୍ଷଣ୍ୟ, ପ୍ରଭେଦ ।

ବୈଶେଷିକ, ବି. ନ. ( ବିଶେଷ-ଇକ ) କଣାଦ ମୁନିପ୍ରଣୀତ ଦର୍ଶନଶାସ୍ତ୍ର । ବିଂ. ତତ୍‌ଶାସ୍ତ୍ରଜ୍ଞ ।

ବୈଶ୍ୟ, ବି. ପୁଂ. ( ବିଶ୍-୦-ଯ ) ତୃତୀୟବର୍ଣ୍ଣ; କୃଷକ; ବଣିକ ପ୍ରଭୃତି ।

ବୈଶ୍ରବଣ, ବି. ପୁଂ. ( ବିଶ୍ରବସ୍-ଅନ, ଜାତାର୍ଥେ)ବିଶ୍ରବାଙ୍କ ପୁତ୍ର, କୁବେର; ରାବଣ ।

ବୈଶ୍ୱଦେବ, ବିଂ. (ବିଶ୍ୱଦେବ-ଅ) ବିଶ୍ୱଦେବ-ସମ୍ବନ୍ଧୀୟ; ବିଶ୍ୱଦେବ ଉଦ୍ଦେଶ୍ୟରେ ଦତ୍ତ ।

ବୈଶ୍ୱାନର, ବି. ପୁଂ. ( ବିଶ୍ୱାନର=ମୁନିବିଶେଷ କିମ୍ବା ( [ବିଶ୍ୱ=ସମୂହ-ନର=ମନୁଷ୍ୟ]-ଅ ) ଅଗ୍ନି; ବେଦାଂଶବିଶେଷ; ଅଗ୍ନିଲୋକାଧିପ ବହ୍ନି ।

ବୈଷମ୍ୟ, ବି. ନ. ( ବିଷମ-ଯ ) ବିରୁଦ୍ଧଭାବ, ସାମ୍ୟାଭାବ, ବିଷମତ୍ୱ,ଅସମତା; ବିସଦୃଶତା ।

ବୈଷୟିକ, ବିଂ. (ବିଷୟ-ଇକ) ବିଷୟସମ୍ବନ୍ଧୀୟ ।

ବୈଷ୍ଣବ, ବିଂ.(ବିଷ୍ଣୁ-ଅ) ବିଷ୍ଣୁସମ୍ବନ୍ଧୀୟ; ବିଷ୍ଣୁ-ଭକ୍ତ, ବିଷ୍ଣୁଙ୍କର ଉପାସକ । ନ. ହୋମଭସ୍ମ । ବୀ, ସ୍ତ୍ରୀ. ବିଷ୍ଣୁଶକ୍ତି; ତୁଳସୀ; ଗଙ୍ଗା; ଅପରା-ଜିତା; ଶତାବରୀ ।

ବୈସାଦୃଶ୍ୟ, ବି. ନ. (ବିସଦୃଶ-ଯ) ବିସଦୃଶତା, ବୈଷମ୍ୟ ।

ବୈହାର୍ଯ୍ୟ, ବି. ପୁଂ. (ବିହାର-ଯ) ପରିହାସଯୋଗ୍ୟ ବ୍ୟକ୍ତି, ଶ୍ୟାଳକାଦି ।

ବୋଇତ, ବି. ( ବହିତ୍ର ଶବ୍ଦଜ ) ଜାହାଜ, ପୋତ, ଜଳଯାନ । ଯଥା—

ବୋଇତ ଲଟିଲା ଯାଇ ସିଂହଳ ଦ୍ୱୀପରେ ।

ବୋଉ, (ଦେଶଜ) ଓଡ଼ିଶା ପ୍ରଦେଶର ଅଧିକାଂଶ ସ୍ଥାନରେ ସ୍ପୃଶ୍ୟ ଜନନୀଙ୍କୁ ମା ବୋଲି ସମ୍ବୋଧନ ନ କରି ବୋଉ ନାମରେ ଆହ୍ୱାନ କରନ୍ତି । ମାତା, ଜନନୀ ।

ବୋକ, ବି. (ଦେଶଜ) ଚୁକ, ଚୁମ୍ବନ, ଚୁମ୍ବ ।

ବୋକା, ବିଂ. (ଦେଶଜ) ନିର୍ବୁଦ୍ଧି, ମୂଢ଼, ପାଷଣ୍ଡ ।

ବୋଝ, ବି. (ଦେଶଜ) ମୁଣ୍ଡରେ ବହିବା ଗୁରୁ-ପଦାର୍ଥ । ଯଥା—

> ବୋଝ ଘର ନେଇ ସେବଣ ଲୋକ,
> ତାର ଥାଉକ ବାହିଁରେ ଠେକ ।

ବୋଝିଆ, ବିଂ. (ଦେଶଜ) ଯେ ବୋଝ ବହନ କରେ ।

ବୋଡ଼ା, ବି. (ବୋଡ୍ର ଶବ୍ଦଜ) ସର୍ପବିଶେଷ ।

ବୋଡ଼ଇ, ବି. (ଦେଶଜ) ସ୍ୱନାମଖ୍ୟାତ କାଠ-ପାତ୍ରବିଶେଷ ।

ବୋଢ଼,ବି. (ଦେଶଜ) କରଞ୍ଜା; ଶସ୍ୟର ଗେଣ୍ଡା ।

ବୋଦା, ବି. ( ଦେଶଜ ) ବଳି, ଦେବତାର ପୂଜାଦ୍ରବ୍ୟବିଶେଷ ।

ବୋବାଳି,(ଦେଶଜ)ଡାକ, ଚତ୍ପଳ, କାତରଭାବେ ଉଚ୍ଚସ୍ୱର ।

ବୋରଝାଙ୍କି, ବି. (ଦେଶଜ) ଜଳଜାତ ଗୁଳ୍ମ ।

ବୋରୀ, ( ଦେଶଜ ) ଅଖାର ବଡ଼ ଥଳି; (ହିନ୍ଦୀ) ମଦ ।

ବୋଲ, (ଦେଶଜ) କଥା, ବାକ୍ୟ, ବଚନ ।

ବୋଳ, ବି. (ଦେଶଜ) ଲେପ; ତାମ୍ବୂଳ ରସ । ଯଥା—

> ଓଷ୍ଠ କ ରଙ୍ଗେ ଦଶନ ସୁଦନ,
> କେହି ଚତୁରେ ତାମ୍ବୂଳ ବୋଳ ।

ବୋଲବୋଲ, (ଦେଶଜ) କୁହାକୋହି, ଗାଳି ଦିଅଦେଇ ।

ବୋଲି, ବି. (ହିନ୍ଦୀ) ଭାଷା ।

ବୋଳିବାର, କ୍ରି. ( ଦେଶଜ ) ଲେପିବାର, ଲଗାଇବାର ।

ବୋବାଇବା, କ୍ରି. (ଦେଶଜ) ଉତ୍ତାପକାଇବା ।

ବୌବାଳ, ବି. (ଦେଶଜ) କ୍ରନ୍ଦନ ।

ବୌନ୍ଧୁ, (ବଧୂ ଶବ୍ଦଜ) ବନ୍ଧୁ, ବଧୂ, ପ୍ରବଦ୍ଧ ।

ବୌଷଟ୍, ଅଂ. ( ବହ୍-ଊଷଟ୍ ) ଦେବତାଦି ନିବେଦନର ମନ୍ତ୍ର ।

ବ୍ୟଂସକ, ବି. ପୁଂ. ( ବି-ଅଁସ-ଅକ ) ଧୂର୍ତ୍ତ, ପ୍ରତାରକ ।

ବ୍ୟକ୍ତ, ବିଂ. (ବି-ଅନ୍‌ଜ-ତ) ବିକସିତ; ସ୍ପଷ୍ଟ; ପ୍ରକଟ; ସ୍ଫୁଟ; ସ୍ଥୂଳ; କାର୍ଯ୍ୟ;ଦୃଷ୍ଟ; ଅନୁମିତ; ପ୍ରକାଶିତ; ବ୍ୟକ୍ତିବିଶେଷ; ମନୁଷ୍ୟ; ପ୍ରାଜ୍ଞ । ବି. ପୁଂ. ବିଷ୍ଣୁ ।

ବ୍ୟକ୍ତି, ବି. ସ୍ତ୍ରୀ. (ବି-ଅନ୍‌ଜ-ତି) ଲୋକ, ଜନ; ଜୀବ; ଶରୀର; ଦ୍ରବ୍ୟ;ବସ୍ତୁ,ପଦାର୍ଥ; ପ୍ରକାଶ ।

ବ୍ୟକ୍ତୀକୃତ, ବିଂ. ( ବ୍ୟକ୍ତ-କୃତ-ଈ ଆଗମ ) ପ୍ରକାଶିତ, ପ୍ରକଟିତ; ଉଦ୍ଘାଟିତ ।

ବ୍ୟଗ୍ର, ବିଂ. (ବି-ଅଗ୍ର) ବ୍ୟାକୁଳ, ବ୍ୟସ୍ତ; ବ୍ୟସ୍ତ, ଚକିତ, ସ୍ୱରିତ; ତ୍ୱରିତ; ଉତ୍ସାହିତ, ଆଗ୍ରହୀ; ଆସକ୍ତ । ବିଂ. ପୁଂ. ବିଷ୍ଣୁ ।

ବ୍ୟଙ୍ଗ, ବିଂ. (ବି-ଅଙ୍ଗ) ଅଙ୍ଗହୀନ, ବିକଳାଙ୍ଗ । ବି. ପୁଂ. ବେଙ୍ଗ; ମୁଖରୋଗବିଶେଷ ।

ବ୍ୟଙ୍ଗ୍ୟ, ବି. ପୁଂ. (ବି-ଅନ୍‌ଜ-ଯ) ବ୍ୟଞ୍ଜନାବୃତ୍ତି-ବୋଧ୍ୟ ଅର୍ଥ, ତାତ୍ପର୍ଯ୍ୟାର୍ଥ, ନିଗୂଢ଼ଭାବ; ପରିହାସ୍ୟ ।

ବ୍ୟଙ୍ଗୋକ୍ତି, ବି. ସ୍ତ୍ରୀ. (ବ୍ୟଙ୍ଗ୍ୟ-ଉକ୍ତି) ବକ୍ରୋକ୍ତି, ଶ୍ଳେଷବାକ୍ୟ ।

ବ୍ୟଜ, ପୁଂ. } ବି.(ବି-ଅଜ=କ୍ଷେପଣ କରିବା,
ବ୍ୟଜନ, ନ. } ଗମନ କରିବା-ଅ, ଅନ)
ବାୟୁ ନିକ୍ଷେପକ । ନ. ସ୍ତ୍ରୀ. ତାଳବୃନ୍ତ, ପଙ୍ଖା ।

ବ୍ୟଞ୍ଜକ, ବିଂ. (ବି-ଅନ୍‌ଜ୍-ଅକ) ପ୍ରକାଶକ । ବି. ପୁଂ. ଅଭିନୟ, ବ୍ୟଞ୍ଜନାବୃତ୍ତି ବୋଧକ ଶବ୍ଦ ।

ବ୍ୟଞ୍ଜନ, ବି. ନ. (ବି-ଅନ୍‌ଜ୍-ଅନ) କ ଖ ଇତ୍ୟାଦି ହଲବର୍ଣ୍ଣ; ଭଜଣ, ତରକାରୀ; ଦ୍ରବ୍ୟ ଚିହ୍ନିତ ଚିହ୍ନ । ସ୍ତ୍ରୀ. ପୁଂ. ଚିହ୍ନ ।

ବ୍ୟଞ୍ଜନା, ବି. ସ୍ତ୍ରୀ. (ବି-ଅନ୍‌ଜ-ଅନ-ଆ)କାବ୍ୟର ବ୍ୟଙ୍ଗ୍ୟାର୍ଥ ବୋଧକ ଶକ୍ତି, ଯେ ଶକ୍ତିଦ୍ୱାରା ତାତ୍ପର୍ଯ୍ୟାର୍ଥର ବୋଧ ହୁଏ ।

ବ୍ୟଞ୍ଜିତ, ବିଂ. (ବି-ଅନ୍ଜ୍-ତ) ପ୍ରକାଶିତ, ବ୍ୟକ୍ତୀକୃତ, ପ୍ରକାଶିତ, ବ୍ୟଞ୍ଜନାବୋଧିତ ।

ବ୍ୟଡ଼ମୂକ, ବି. ପୁଂ. (ବିରେଚନ-ଜନବ୍-ଅକ, ବିରେଚନ=ବାଡ଼ି) ଏରଣ୍ଡବୃକ୍ଷ, ଗବଗଛ ।

ବ୍ୟତିକ୍ରମ, ବି. ପୁଂ. (ବି-ଅତି-କ୍ରମ) କ୍ରମବିପର୍ଯ୍ୟୟ, ବୈପରୀତ୍ୟ; ଉଲ୍ଲଙ୍ଘନ; ବିପରୀତକରଣ ।

ବ୍ୟତିକ୍ରାନ୍ତ, ବିଂ. (ବି-ଅତି-କ୍ରମ୍-ତ) ବିପର୍ଯ୍ୟୟପ୍ରାପ୍ତ, କ୍ରମବହିର୍ଭୂତ ।

ବ୍ୟତିରିକ୍ତ, ବିଂ. (ବି-ଅତି-ରିଚ୍-ତ) ଭିନ୍ନ; ଅତିରିକ୍ତ; ବର୍ଜିତ; ପୃଥକ୍‌କୃତ ।

ବ୍ୟତିରେକ, ବି. ପୁଂ. (ବି-ଅତି-ରିଚ୍-ଅ) ପ୍ରଭେଦ, ଭିନ୍ନତା; ବିନା, ଅଭାବ; ବୃଦ୍ଧି; ଅତିକ୍ରମ; କାବ୍ୟର ଅଳଙ୍କାର ବିଶେଷ; ଉପମାନ ଅପେକ୍ଷା ଉପମେୟର ଆଧିକ୍ୟ ବା ନ୍ୟୂନତା ହେଲେ ବ୍ୟତିରେକ ଅଳଙ୍କାର ହୁଏ ।

ବ୍ୟତିବ୍ୟସ୍ତ, ବିଂ. (ବି-ଅତି-ବି-ଅସ୍-ତ) ବ୍ୟାକୁଳ; ବ୍ୟସ୍ତ ସମସ୍ତ ।

ବ୍ୟତିହାର, ବ୍ୟତୀହାର, ବି. ପୁଂ. (ବି-ଅତି-ହୃ-ଅ) ପରସ୍ପର ଏକରୂପ କ୍ରିୟାକରଣ; ପର୍ଯ୍ୟାୟକରଣ; ପରିବର୍ତ୍ତନ, ବିନିମୟ; ବଦଳ; ମରାମରି ।

ବ୍ୟତୀତ, ବିଂ. (ବି-ଅତୀତ) ଅତିକ୍ରାନ୍ତ; ବିଗତ; ଚ୍ୟୁତ; ସମ୍ପନ୍ନ; ମୃତ ।

ବ୍ୟତୀପାତ, ବି. ପୁଂ. (ବି-ଅତି-ପତ୍-ଅ) ଅମଙ୍ଗଳଜନକ ଉତ୍ପାତ, ଧୂମକେତୁ ଭୂମିକମ୍ପ ପ୍ରଭୃତି; ଅପମାନ, ଅଶ୍ରଦ୍ଧା, ସପ୍ତଦଶ ଯୋଗ ।

ବ୍ୟତ୍ୟୟ, ବି. ପୁଂ. (ବି-ଅତି-ଇ-ଅ) ବ୍ୟତିକ୍ରମ; ବିପର୍ଯ୍ୟୟ; ବୈପରୀତ୍ୟ ।

ବ୍ୟତ୍ୟସ୍ତ, ବିଂ. (ବି-ଅତି-ଅସ୍-ତ) ବିପରୀତ ଭାବରେ ଅବସ୍ଥିତ, ବିପର୍ଯ୍ୟୟ ପ୍ରାପ୍ତ ।

ବ୍ୟଥା, ବି. ସ୍ତ୍ରୀ. (ବ୍ୟଥ୍-ଆ) ପୀଡ଼ା, ଦୁଃଖ; କ୍ଳେଶ; ବେଦନା; ଶୋକ; ଭୟ ।

ବ୍ୟଥିତ, ବିଂ. (ବ୍ୟଥ୍-ତ) ଶୋକପ୍ରାପ୍ତ; ଦୁଃଖିତ; ପୀଡ଼ିତ; ଭୀତ ।

ବ୍ୟଧ, ବି. ପୁଂ. (ବ୍ୟଧ୍-ଅ) ବିଦ୍ଧକରଣ; ଭେଦନ; ବ୍ୟଥା; ପ୍ରହାର ।

ବ୍ୟଧ୍ୟ, ବି. ପୁଂ. (ବ୍ୟଧ୍-ଯ) ଧନୁର୍ଗୁଣ । ବିଂ. ବିଦ୍ଧ କରିବାର ଯୋଗ୍ୟ ।

ବ୍ୟଧ୍ୱ, ବି. ପୁଂ. (ବି-ଅଧ୍ୱନ୍) କୁପଥ, କୁତ୍ସିତ ବର୍ତ୍ମ ।

ବ୍ୟପଧ୍ୱସ୍ତ, ବିଂ. (ବି-ଅପ-ଧ୍ୱଂସ୍-ତ) ବଧିତ ।

ବ୍ୟପଦେଶ, ବି. ପୁଂ. (ବି-ଅପଦେଶ) ଛଳ, ବାହାନା; ନାମ ।

ବ୍ୟପଦେଷ୍ଟା, ବିଂ. (ବି-ଅପ-ଦିଶ୍-ତୃ) କପଟୀ, ଛଳକାରକ; ନାମୋଲ୍ଲେଖକାରୀ ।

ବ୍ୟପନୟନ, ବି. ନ. (ବି-ଅପ-ନୀ-ଅନ) ପ୍ରତ୍ୟାଖ୍ୟାନ, ତ୍ୟାଗ ।

ବ୍ୟପନୀତ, ବିଂ. (ବି-ଅପ-ନୀ-ତ) ଅପସାରିତ, ଦୂରୀକୃତ; ତାଡ଼ିତ ।

ବ୍ୟପରୋପଣ, ବି. ନ. (ବି-ଅପ-ରୋହ୍-ଅନ) ଛେଦନ; ମୂଳୋଚ୍ଛେଦନ; ଦୂରୀକରଣ; ଅପସାରଣ ।

ବ୍ୟପରୋପିତ, ବିଂ. (ବି-ଅପ-ରୋହ୍-ତ) ଉତ୍ପାଟିତ; ଛେଦିତ, ମୂଳୋତ୍ପାଟିତ; ଦୂରୀକୃତ; ଅପସାରିତ ।

ବ୍ୟପବର୍ଜନ, ବି. ନ. (ବି-ଅପ-ବୃଜ୍-ଅନ) ତ୍ୟାଗ; ଦାନ; ନିବାରଣ ।

ବ୍ୟପବର୍ଜିତ, ବିଂ. (ବି-ଅପ-ବୃଜ୍-ତ) ପରିତ୍ୟକ୍ତ, ବର୍ଜିତ; ଦତ୍ତ; ନିବାରିତ ।

ବ୍ୟପାୟ, ବି. ପୁଂ. (ବି-ଅପ-ଇ-ଅ) ଅପଗମନ, ବିନାଶ; ସମକାଳୀୟ ଧର୍ମ ।

ବ୍ୟଭିଚାର, ବି. ପୁଂ. (ବି-ଅଭି-ଚର୍-ଅ) କୁକ୍ରିୟା, କଦାଚାର; ଅନ୍ୟଥାଚରଣ; ଅତିବ୍ୟାପ୍ତି; ସ୍ଖଳନ; ଅବ୍ୟାପ୍ତି; ସ୍ତ୍ରୀର ପରପୁରୁଷ ସଂସର୍ଗ ଓ ପୁରୁଷର ପରସ୍ତ୍ରୀ ସଂସର୍ଗ ।

ବ୍ୟଭିଚାରୀ, ବିଂ. (ବ୍ୟଭିଚାର-ଇନ୍) କୁକ୍ରିୟାସକ୍ତ; ଅନ୍ୟଥାଚାରୀ; ଅବ୍ୟାପ୍ତ; ଅତିବ୍ୟାପ୍ତ । ବି. ପୁଂ. ସଞ୍ଚାରୀଭାବ; ୩୪ ପ୍ରକାର ଶୃଙ୍ଗାର ଆଦି ଭାବବିଶେଷ ।

**ବ୍ୟଭିଚାରିଣୀ**, ସ. ସ୍ତ୍ରୀ. ( ବି-ଅଭି-ଚର-ଇନ୍-ଈ) ପରପୁରୁଷଗାମିନୀ; ଅସତୀ, ଭ୍ରଷ୍ଟା, ନଷ୍ଟା ।

**ବ୍ୟୟ**, ସ. ପୁଂ. (ବ୍ୟୟ୍-ଅ) ଅପଗମ, ଅପଚୟ; ଖରଚ; କ୍ଷୟ, ନାଶ; ଅଭାବ । ନ. ଲଗ୍ନଠାରୁ ଦ୍ୱାଦଶ ସ୍ଥାନ ।

**ବ୍ୟୟକାତର**, (ଦେଶଜ) ଅଦାତା, ବ୍ୟୟକୁଣ୍ଠ, କୃପଣ ।

**ବ୍ୟୟକୁଣ୍ଠ**, (ଦେଶଜ) କୃପଣ; ଅଦାତା ।

**ବ୍ୟୟସାଧ୍ୟ**, ( ଦେଶଜ ) ଅଧିକ ବ୍ୟୟସାପେକ୍ଷ, ପ୍ରଚୁର ବ୍ୟୟରେ ନିଷ୍ପାଦ୍ୟ ।

**ବ୍ୟୟାର୍ହ**, ବିଂ. ( ବ୍ୟୟ-ଅର୍ହ ) ବ୍ୟୟଯୋଗ୍ୟ, ଖରଚପ୍ରୟୁକ୍ତ ।

**ବ୍ୟୟିତ**, ବିଂ. (ବ୍ୟୟ-ତ ) ଯାହା ବ୍ୟୟ କରା ହୋଇଅଛି, ଅପଚିତ; ଗତ, ନଷ୍ଟ; କ୍ଷୟିତ ।

**ବ୍ୟୟୀ**, ବିଂ. (ବ୍ୟୟ-ଇନ) ବ୍ୟୟଶୀଳ, ଯେ ବ୍ୟୟ କରେ ।

**ବ୍ୟର୍ଥ**, ବିଂ. (ବି-ଅର୍ଥ) ନିରର୍ଥକ, ବୃଥା, ବିଫଳ; ନିଷ୍ପ୍ରୟୋଜନ; ଅର୍ଥଶୂନ୍ୟ; ଲାଭଶୂନ୍ୟ ।

**ବ୍ୟର୍ଥତା**, ସ. ସ୍ତ୍ରୀ. ( ବ୍ୟର୍ଥ-ତା ) ନିରର୍ଥକତା, ନିଷ୍ଫଳତା ।

**ବ୍ୟଳୀକ**, ସ. ନ. ( ବି-ଅଲ୍-ଈକ ) ପୀଡ଼ା, ମନୋଦୁଃଖ ଲଜ୍ଜା, ଅପରାଧ, ପ୍ରତାରଣା । ପୁଂ. ଲମ୍ପଟ । ବିଂ. ଅପ୍ରିୟ, ଅନୃତ, ମିଥ୍ୟା; କଷ୍ଟଦାୟକ ।

**ବ୍ୟବକଳନ**, ସ. ନ. ( ବି-ଅବ-କଳ୍-ଅନ ) ବିଯୋଗ, ଅନ୍ତରକରଣ ।

**ବ୍ୟବକଳିତ**, ବିଂ. (ବି-ଅବ-କଳ୍-ତ) ବିଯୋଜିତ, ଅନ୍ତରିତ; ବାକି । ସ. ନ. ଜମାଖରଚ; ବାକି ।

**ବ୍ୟବଚ୍ଛିନ୍ନ**, ବିଂ. (ବି-ଅବ-ଛିଦ୍-ତ ) ବିଭିନ୍ନ, ବିଭକ୍ତ; ବିଶେଷିତ; ମୋଚିତ; ନିବାରିତ ।

**ବ୍ୟବଚ୍ଛେଦ**, ସ. ପୁଂ. (ବି-ଅବ-ଛିଦ୍-ଅ) ବିଚ୍ଛେଦ; ବିଭାଗ, ଖଣ୍ଡ; ମୋଚନ; ନିବାରଣ; ବାଣମୋଚନ, ଶରବର୍ଷଣ ।

**ବ୍ୟବଧା**, ସ୍ତ୍ରୀ. } **ବ୍ୟବଧାନ**, ନ. } ସ. ( ବି-ଅବ-ଧା-ଅ, ଅନ ) ଆଚ୍ଛାଦନ; ତିରୋଧାନ; ଅନ୍ତର; ଅନ୍ତରାଳ ।

**ବ୍ୟବଧାୟକ**, ବିଂ. (ବି-ଅବ-ଧା-ଅକ) ବ୍ୟବଧାନକର୍ତ୍ତା; ତିରୋଧାୟକ; ଆଚ୍ଛାଦନକାରକ ।

**ବ୍ୟବସାୟ**, ସ. ପୁଂ. ( ବି-ଅବ-ସୋ-ଅ ) ବୃତ୍ତି, ବ୍ୟାପାର, ବାଣିଜ୍ୟ, ପେଶା, ଜୀବିକା; ଉଦ୍ୟମ, ଉଦ୍ୟୋଗ; ଯତ୍ନ; କଳ୍ପନା, ଇଚ୍ଛା; କାର୍ଯ୍ୟ; ନିଶ୍ଚୟ; ଅନୁଷ୍ଠାନ; ଅଭିପ୍ରାୟ ।

**ବ୍ୟବସାୟସ୍ଥାନ**, ସ. ନ. ବାଣିଜ୍ୟସ୍ଥାନ ।

**ବ୍ୟବସାୟୀ**, ବିଂ. ( ବ୍ୟବସାୟ-ଇନ୍ ) ବାଣିଜ୍ୟକାରୀ; ଉଦ୍ୟୋଗୀ; ଅନୁଷ୍ଠାନକାରୀ ।

**ବ୍ୟବସିତ**, ବିଂ. ( ବି-ଅବ-ସୋ-ତ ) ଚେଷ୍ଟିତ; ଅନୁଷ୍ଠିତ; ଉଦ୍ୟତ; ଅଭିପ୍ରେତ; ପ୍ରତାରିତ; ନିଶ୍ଚୟକୃତ, ନିଶ୍ଚିତ । ସ. ନ. ଅବଧାରଣ, ନିଶ୍ଚୟ ।

**ବ୍ୟବସ୍ଥା**, ସ. ସ୍ତ୍ରୀ. ( ବି-ଅବ-ସ୍ଥା-ଅ ) ନିୟମ, ଶାସ୍ତ୍ରୀୟ ବିଧି, ସ୍ଥିରତା, ପୃଥକ୍ପୃଥକ୍ ସ୍ଥାପନ ।

**ବ୍ୟବସ୍ଥାନ**, ସ. ନ. (ବି-ଅବ-ସ୍ଥା-ଅନ) ପୃଥକ୍ ପୃଥକ୍ ସ୍ଥାପନ; ନିୟମ; ଅଇନ; ସ୍ଥିତି; ସ୍ଥିରତା, ଶାସ୍ତ୍ରୀୟ ବିଧି ।

**ବ୍ୟବସ୍ଥାନୀୟ**, ବିଂ. ବିଧି ପ୍ରତିପାଦ୍ୟ ।

**ବ୍ୟବସ୍ଥାପକ**, ବିଂ. ( ବି-ଅବ-ସ୍ଥାପି-ଅକ ) ବିଧିଦାୟକ; ନିୟାମକ; ସଂସ୍ଥାପକ ।

**ବ୍ୟବସ୍ଥାପଦ୍ଧତି**, ସ. ସ୍ତ୍ରୀ. ନିୟମପ୍ରଣାଳୀ ।

**ବ୍ୟବସ୍ଥାପନ**, ସ. ନ. ( ବି-ଅବ-ସ୍ଥାପି-ଅନ ) ବ୍ୟବସ୍ଥା ପ୍ରଣୟନ, ଅଇନକରଣ; ନିର୍ଦ୍ଧାରଣ, ନିରୂପଣ; ନିଶ୍ଚିତକରଣ ।

**ବ୍ୟବସ୍ଥାପତ୍ର**, ସ. ନ. ବିଧାନଲିପି, ଶାସ୍ତ୍ର ନିରୂପିତ ବିଧି ।

**ବ୍ୟବସ୍ଥାପୟିତା**, ବିଂ. ବ୍ୟବସ୍ଥାକର୍ତ୍ତା, ବିଧାନଦାୟକ ।

ବ୍ୟବସ୍ଥାପିତ, ବିଂ. (ବି-ଅବ-ସ୍ଥାପି-ତ) ସ୍ଥିରୀକୃତ; ନିର୍ବାଚିତ; ନିୟମିତ; ନିୟମପୂର୍ବକ ସ୍ଥାପିତ; ପ୍ରକୃତ ପ୍ରାପିତ ।

ବ୍ୟବସ୍ଥାପଦ୍ଧତି, ବି. ସ୍ତ୍ରୀ. ବ୍ୟବସ୍ଥାଶାସ୍ତ୍ର ।

ବ୍ୟବସ୍ଥିତ, ବିଂ. (ବି-ଅବ-ସ୍ଥା-ତ) ସ୍ଥିରୀକୃତ; ନିୟମିତ; ନିଯୁକ୍ତ, ପ୍ରସ୍ତୁତ ।

ବ୍ୟବସ୍ଥେୟ, ବିଂ. (ବି-ଅବ-ସ୍ଥା-ଯ) ବିଧାନଯୋଗ୍ୟ, ବ୍ୟବସ୍ଥାପ୍ୟ ।

ବ୍ୟବହର୍ତ୍ତା, ବି. ପୁଂ. (ବି-ଅବ-ହୃ-ତୃ) ବ୍ୟବହାରକର୍ତ୍ତା; ବିଚାରକର୍ତ୍ତା ।

ବ୍ୟବହାର, ବି. ପୁଂ. (ବି-ଅବ-ହୃ-ଅ) ଲୌକିକ କର୍ମ, ରୀତି, ଧାରା, ଚଳନ, ଆଚରଣ, ଆଚାର; ବ୍ୟବସାୟ; କାର୍ଯ୍ୟ; ପ୍ରଥା; ରୀତି; ବାଣିଜ୍ୟ; ବୃତ୍ତି; ମୋକଦ୍ଦମା ।

ବ୍ୟବହାରବିଧି ବି. ପୁଂ (ବ୍ୟବହାର-ବିଧି) ଧର୍ମଶାସ୍ତ୍ର, ବ୍ୟବସ୍ଥାଶାସ୍ତ୍ର ।

ବ୍ୟବହାର ଶାସ୍ତ୍ର, ବି. ନ. } ବ୍ୟବହାର ଶାସ୍ତ୍ର,
ବ୍ୟବହାର ପଦ୍ଧତି, ବି. ସ୍ତ୍ରୀ. } ଆଇନ (Law)

ବ୍ୟବହାରାଜୀବ, ବି. ପୁଂ. (ବ୍ୟବହାର=ମୋକଦ୍ଦମା-ଆଜୀବ=ଜୀବିକା) ଯେଉଁମାନେ ବାଦୀ ପ୍ରତିବାଦୀର ପ୍ରତିନିଧିସ୍ୱରୂପ ହୋଇ ମୋକଦ୍ଦମାସଂକ୍ରାନ୍ତ ଯାବତୀୟ କାର୍ଯ୍ୟ ନିର୍ବାହ କରନ୍ତି, ଓକିଲ ପ୍ରଭୃତି ।

ବ୍ୟବହାରିକ, ବିଂ. (ବ୍ୟବହାର-ଇକ) ବ୍ୟବହାରିକ ।

ବ୍ୟବହାରୀ, ବି. ସ୍ତ୍ରୀ. (ବି-ଅବ-ହୃ-ଇନ୍) ବ୍ୟବହାରକ, ବ୍ୟବହାରକର୍ତ୍ତା ।

ବ୍ୟବହାର୍ଯ୍ୟ, ବିଂ. (ବ୍ୟବହାର-ଯ) ବ୍ୟବହାରଯୋଗ୍ୟ; ଅନୁଷ୍ଠେୟ ।

ବ୍ୟବହିତ, ବିଂ. (ବି-ଅବ-ଧା-ତ) ଆଚ୍ଛାଦିତ; ଅନ୍ତରିତ; ତିରସ୍କୃତ, ଅନ୍ତର୍ହିତ; ପରସ୍ପର ଅସଂଯୁକ୍ତ ଭାବରେ ଅବସ୍ଥାପିତ; ଅଧିକୃତ, ବିକୃତ ।

ବ୍ୟବହୃତ, ବିଂ. (ବି-ଅବ-ହୃ-ତ) ଆଚରିତ, ଅନୁଷ୍ଠିତ; ବ୍ୟବହିତ; ଉପଭୁକ୍ତ ।

ବ୍ୟସନ, ବି. ନ. (ବି-ଅସ୍-ଅନ) ବିପଦ୍; ଦୁର୍ଭାଗ୍ୟ; ଅଦୃଷ୍ଟ; ଦୁରଦୃଷ୍ଟ; ଅଯୋଗ୍ୟତା, ଅକ୍ଷମତା; ବାୟୁ, ବାତ; ପତନ; ବିନାଶ; ଦୁଃଖ; ଅମଙ୍ଗଳ; ପାପ; ଅଶୁଭ; ବୃଥାଚେଷ୍ଟା, କାମ ଓ କୋପଜନିତ ଦୋଷ; ମୃଗୟା, ଦ୍ୟୂତ, ଦିବାନିଦ୍ରା, ପରନିନ୍ଦା, ବେଶ୍ୟାସକ୍ତି, ନୃତ୍ୟ, ଗୀତ, କ୍ରୀଡ଼ା ବୃଥାଭ୍ରମଣ, ମଦ୍ୟପାନ ଏହି ୧୦ ପ୍ରକାର କାମଜ ଦୋଷ ଏବଂ ଦୁଷ୍ଟତା, ଦୌରାତ୍ମ୍ୟ, ସତ୍ତ, ଦ୍ୱେଷ, ଈର୍ଷା, ପ୍ରତାରଣା, କଟୂକ୍ତି, ନିଷ୍ଠୁରାଚରଣ ଏହି ଆଠ ପ୍ରକାର କୋପଜ ଦୋଷ ।

ବ୍ୟସନୀ, ବିଂ. (ବ୍ୟସନ-ଇନ୍) ବ୍ୟସନଯୁକ୍ତ; ବିପଦଗ୍ରସ୍ତ; ଆସକ୍ତ, କୁକ୍ରିୟାସକ୍ତ ।

ବ୍ୟସ୍ତ, ବିଂ. (ବି-ଅସ୍-ତ) ବ୍ୟାକୁଳ, ବ୍ୟତିବ୍ୟସ୍ତ, ବିଭକ୍ତ, ପୃଥକ୍ ପୃଥକ୍ ଉତ୍କ୍ଷିପ୍ତ, ବିପର୍ଯ୍ୟସ୍ତ; ବିସ୍ତୃତ, ବ୍ୟାପ୍ତ; ବିପରୀତ ।

ବ୍ୟସ୍ତତା, ବି. ସ୍ତ୍ରୀ. (ବ୍ୟସ୍ତ-ତା) ସତ୍ୱରତା, ଶୀଘ୍ରତା; ବ୍ୟାକୁଳତା ।

ବ୍ୟସ୍ତତୈରାଶିକ, ବି. ନ. ଅଙ୍କବିଦ୍ୟାବିଶେଷ, ବିଲୋମ ତୈରାଶିକ ।

ବ୍ୟାକରଣ, ବି.ନ. (ବି-ଆ-କୃ-ଅନ) ଶବ୍ଦବ୍ୟୁତ୍ପାଦକ ଶାସ୍ତ୍ର, ଯାହାଦ୍ୱାରା କର୍ତ୍ତା, କର୍ମ, କ୍ରିୟା, ସମାପାଦ ନିରୂପଣ ହୁଏ; ବ୍ୟାଖ୍ୟା । ନ; ବିକାଶନ ।

ବ୍ୟାକୁଳ, ବିଂ. (ବି-ଆକୁଳ) ବ୍ୟସ୍ତ; ଉତ୍କଣ୍ଠିତ; କାତର, ଇତିକର୍ତ୍ତବ୍ୟତା ଜ୍ଞାନଶୂନ୍ୟ ।

ବ୍ୟାକୁଳାତ୍ମା, ବିଂ. (ବ୍ୟାକୁଳ-ଆତ୍ମନ୍) ଶୋକାହତ ଚିତ୍ତ; ଉଦ୍‌ଭ୍ରାନ୍ତମନାଃ; ଉତ୍କଣ୍ଠିତ ଅନ୍ତଃକରଣ ।

ବ୍ୟାକୃତି, ବି.ସ୍ତ୍ରୀ. (ବି-ଆ-କୃ-ତି) ଛଳ, ବଞ୍ଚନା ।

ବ୍ୟାକୋଷ, ବ୍ୟାକୋଶ, ବିଂ. (ବି-ଆ-କୋଷ) ମୁକୁଳିତ; ପ୍ରଫୁଲ୍ଲ, ପ୍ରସ୍ଫୁଟିତ, ବିକଶିତ ।

ବ୍ୟାକ୍ରୋଶ, ବି. ପୁଂ. (ବି-ଆକ୍ରୋଶ) ତିରସ୍କାର; କଟୂକ୍ତି; ଦୁର୍ବାକ୍ୟ ।

**ବ୍ୟଭିଚାରିଣୀ**, ବି. ସ୍ତ୍ରୀ. ( ବି-ଅଭି-ଚର-ଇନ୍-ଈ) ପରପୁରୁଷଗାମିନୀ; ଅସତୀ, ଭ୍ରଷ୍ଟା, କୁଳଟା ।

**ବ୍ୟୟ**, ବି. ପୁଂ. (ବ୍ୟୟ୍-ଅ) ଅପଗମ, ଅପଚୟ; ଖରଚ; କ୍ଷୟ, ନାଶ; ଅଭାବ । ନ. ଲଗ୍ନଠାରୁ ଦ୍ୱାଦଶ ସ୍ଥାନ ।

**ବ୍ୟୟକାତର**, (ଦେଶଜ) ଅଦାତା, ବ୍ୟୟକୁଣ୍ଠ, କୃପଣ ।

**ବ୍ୟୟକୁଣ୍ଠ**, (ଦେଶଜ) କୃପଣ; ଅଦାତା ।

**ବ୍ୟୟସାଧ୍ୟ**, ( ଦେଶଜ ) ଅଧିକ ବ୍ୟୟସାପେକ୍ଷ, ପ୍ରଚୁର ବ୍ୟୟରେ ନିଷ୍ପାଦ୍ୟ ।

**ବ୍ୟୟାର୍ହ**, ବିଂ. ( ବ୍ୟୟ-ଅର୍ହ ) ବ୍ୟୟଯୋଗ୍ୟ, ଖରଚପ୍ରୟୁକ୍ତ ।

**ବ୍ୟୟିତ**, ବିଂ. (ବ୍ୟୟ୍-ତ ) ଯାହା ବ୍ୟୟ କରା ହୋଇଅଛି, ଉପଚିତ; ଖଚିତ, ବିନଷ୍ଟ; କ୍ଷୟିତ ।

**ବ୍ୟୟୀ**, ବିଂ. (ବ୍ୟୟ୍-ଇନ) ବ୍ୟୟଶୀଳ, ଯେ ବ୍ୟୟ କରେ ।

**ବ୍ୟର୍ଥ**, ବିଂ. (ବି-ଅର୍ଥ) ନିରର୍ଥକ, ବୃଥା, ନିଷ୍ଫଳ; ନିଷ୍ପ୍ରୟୋଜନ; ଅର୍ଥଶୂନ୍ୟ; ଲାଭଶୂନ୍ୟ ।

**ବ୍ୟର୍ଥତା**, ବି. ସ୍ତ୍ରୀ. ( ବ୍ୟର୍ଥ-ତା ) ନିରର୍ଥକତା, ନିଷ୍ଫଳତା ।

**ବ୍ୟଳୀକ**, ବି. ନ. ( ବି-ଅଲ୍-ଈକ ) ପୀଡ଼ା, ମନୋଦୁଃଖ ଲଜ୍ଜା, ଅପରାଧ, ପ୍ରତାରଣା । ପୁଂ. ଲମ୍ପଟ । ବିଂ. ଅପ୍ରିୟ, ଅନୃତ, ମିଥ୍ୟା; କଷ୍ଟଦାୟକ ।

**ବ୍ୟବକଳନ**, ବି. ନ. ( ବି-ଅବ-କଳ୍-ଅନ ) ବିଯୋଗ, ଅନ୍ତରକରଣ ।

**ବ୍ୟବକଳିତ**, ବିଂ. (ବି-ଅବ-କଳ୍-ତ) ବିଯୋଜିତ, ଅନ୍ତରିତ; ବାକି । ବି. ନ. କମାଖରଚ; ବାକି ।

**ବ୍ୟବଚ୍ଛିନ୍ନ**, ବିଂ. (ବି-ଅବ-ଛିଦ୍-ତ ) ବିଭିନ୍ନ, ବିଭକ୍ତ; ବିଶେଷିତ; ମୋଚିତ; ନିର୍ଦ୍ଧାରିତ ।

**ବ୍ୟବଚ୍ଛେଦ**, ବି. ପୁଂ. (ବି-ଅବ-ଛିଦ୍-ଅ) ବିଚ୍ଛେଦ; ବିଭାଗ, ଖଣ୍ଡ; ମୋଚନ; ନିର୍ଦ୍ଧାରଣ; ବାଣମୋଚନ, ଶରବର୍ଷଣ ।

**ବ୍ୟବଧା**, ସ୍ତ୍ରୀ. } **ବ୍ୟବଧାନ**, ନ. } ବି. ( ବି-ଅବ-ଧା-ଅ, ଅନ ) ଆଚ୍ଛାଦନ; ତିରୋଧାନ; ଅନ୍ତର; ଅନ୍ତରାଳ ।

**ବ୍ୟବଧାୟକ**, ବିଂ. (ବି-ଅବ-ଧା-ଅକ) ବ୍ୟବଧାନକର୍ତ୍ତା; ତିରୋଧାୟକ; ଆଚ୍ଛାଦନକାରକ ।

**ବ୍ୟବସାୟ**, ବି. ପୁଂ. ( ବି-ଅବ-ସୋ-ଅ ) ବୃତ୍ତି, ବ୍ୟାପାର, ବାଣିଜ୍ୟ, ପେଷା, ଜୀବିକା; ଉଦ୍ୟମ, ଉଦ୍ୟୋଗ; ଯତ୍ନ; କଳ୍ପନା, ଇଚ୍ଛା; କାର୍ଯ୍ୟ; ନିଶ୍ଚୟ; ଅନୁଷ୍ଠାନ; ଅଭିପ୍ରାୟ ।

**ବ୍ୟବସାୟସ୍ଥାନ**, ବି. ନ. ବାଣିଜ୍ୟସ୍ଥାନ ।

**ବ୍ୟବସାୟୀ**, ବିଂ. ( ବ୍ୟବସାୟ-ଇନ୍ ) ବାଣିଜ୍ୟକାରୀ; ଉଦ୍‌ଯୋଗୀ; ଅନୁଷ୍ଠାନକାରୀ ।

**ବ୍ୟବସିତ**, ବିଂ. ( ବି-ଅବ-ସୋ-ତ ) ଚେଷ୍ଟିତ; ଅନୁଷ୍ଠିତ; ଉଦ୍ୟତ; ଅଭିପ୍ରେତ; ପ୍ରତାରିତ; ସ୍ଥିରୀକୃତ, ନିଶ୍ଚିତ । ବି. ନ. ଅବଧାରଣ, ନିଶ୍ଚୟ ।

**ବ୍ୟବସ୍ଥା**, ବି. ସ୍ତ୍ରୀ. ( ବି-ଅବ-ସ୍ଥା-ଅ ) ନିୟମ, ଶାସ୍ତ୍ରୀୟ ବିଧି, ସ୍ଥିରତା, ପୃଥକ୍‌ପୃଥକ୍ ସ୍ଥାପନ ।

**ବ୍ୟବସ୍ଥାନ**, ବି. ନ. (ବି-ଅବ-ସ୍ଥା-ଅନ) ପୃଥକ୍ ପୃଥକ୍ ସ୍ଥାପନ; ନିୟମ; ଆଇନ; ସ୍ଥିତି; ସ୍ଥିରତା, ଶାସ୍ତ୍ରୀୟ ବିଧି ।

**ବ୍ୟବସ୍ଥାପକ**, ବିଂ. ବିଧି ପ୍ରତିପାଦ୍ୟ ।

**ବ୍ୟବସ୍ଥାପକ**, ବିଂ. ( ବି-ଅବ-ସ୍ଥାପି-ଅକ ) ବିଧିଦାୟକ; ନିୟାମକ; ସଂସ୍ଥାପକ ।

**ବ୍ୟବସ୍ଥାପଦ୍ଧତି**, ବି. ସ୍ତ୍ରୀ. ନିୟମପ୍ରଣାଳୀ ।

**ବ୍ୟବସ୍ଥାପନ**, ବି. ନ. ( ବି-ଅବ-ସ୍ଥାପି-ଅନ ) ବ୍ୟବସ୍ଥା ପ୍ରଣୟନ, ଆଇନକରଣ; ନିର୍ଦ୍ଧାରଣ, ନିରୂପଣ; ନିର୍ଦ୍ଦିଷ୍ଟକରଣ ।

**ବ୍ୟବସ୍ଥାପତ୍ର**, ବି. ନ. ବିଧାନଲିପି, ଶାସ୍ତ୍ର ନିରୂପିତ ବିଧି ।

**ବ୍ୟବସ୍ଥାପୟିତା**, ବିଂ. ବ୍ୟବସ୍ଥାକର୍ତ୍ତା, ବିଧାନଦାୟକ ।

ବ୍ୟବସ୍ଥାପିତ, ବିଂ. (ବି-ଅବ-ସ୍ଥାପି-ତ) ସ୍ଥିରୀକୃତ; ନିର୍ଦ୍ଧାରିତ; ନିୟମିତ; ନିୟମପୂର୍ବକ ସ୍ଥାପିତ; ପ୍ରକୃତ ପ୍ରାପିତ ।

ବ୍ୟବସ୍ଥାପଦ୍ଧତି ବି. ସ୍ତ୍ରୀ. ବ୍ୟବସ୍ଥାଶାସ୍ତ୍ର ।

ବ୍ୟବସ୍ଥିତ, ବିଂ. (ବି-ଅବ-ସ୍ଥା-ତ) ସ୍ଥିରୀକୃତ; ନିୟମିତ; ନିଯୁକ୍ତ, ପ୍ରଚଳିତ ।

ବ୍ୟବସ୍ଥେୟ, ବିଂ. (ବି-ଅବ-ସ୍ଥା-ଯ) ବିଧାନ-ଯୋଗ୍ୟ, ବ୍ୟବସ୍ଥାପ୍ୟ ।

ବ୍ୟବହର୍ତ୍ତା, ବି. ପୁଂ. (ବି-ଅବ-ହୃ-ତୃ) ବ୍ୟବହାରକର୍ତ୍ତା; ବିଚାରକର୍ତ୍ତା ।

ବ୍ୟବହାର, ବି. ପୁଂ. (ବି-ଅବ-ହୃ-ଅ) ଲୌକିକ କର୍ମ, ରୀତି, ଧାରା, ଚଳନ, ଆଚରଣ, ଅଭ୍ୟାସ; ବ୍ୟବସାୟ; କାର୍ଯ୍ୟ; ପ୍ରଥା; ରୀତି; ବାଣିଜ୍ୟ; ବୃତ୍ତି; ମୋକଦ୍ଦମା ।

ବ୍ୟବହାରବିଧି ବି. ପୁଂ (ବ୍ୟବହାର-ବିଧି) ଧର୍ମ-ଶାସ୍ତ୍ର, ବ୍ୟବସ୍ଥାଶାସ୍ତ୍ର ।

ବ୍ୟବହାର ଶାସ୍ତ୍ର, ବି. ନ. } ବ୍ୟବହାର ଶାସ୍ତ୍ର,
ବ୍ୟବହାର ପଦ୍ଧତି, ବି. ସ୍ତ୍ରୀ. } ଆଇନ (Law)

ବ୍ୟବହାରାଜୀବ, ବି. ପୁଂ. (ବ୍ୟବହାର=ମୋକଦ୍ଦମା-ଆଜୀବ=ଜୀବିକା) ଯେଉଁମାନେ ବାଦୀ ପ୍ରତିବାଦୀର ପ୍ରତିନିଧିସ୍ୱରୂପ ହୋଇ ମୋକଦ୍ଦମା-ସଂକ୍ରାନ୍ତ ଯାବତୀୟ କାର୍ଯ୍ୟ ନିର୍ବାହ କରନ୍ତି, ଓକିଲ ପ୍ରଭୃତି ।

ବ୍ୟବହାରିକ, ବିଂ. (ବ୍ୟବହାର-ଇକ) ବ୍ୟାବହାରିକ ।

ବ୍ୟବହାରୀ, ବି. ସ୍ତ୍ରୀ. (ବି-ଅବ-ହୃ-ଇନ୍) ବ୍ୟବହାରକ, ବ୍ୟବହାରକର୍ତ୍ତା ।

ବ୍ୟବହାର୍ଯ୍ୟ, ବିଂ. (ବ୍ୟବହାର-ଯ) ବ୍ୟବହାରଯୋଗ୍ୟ; ଅନୁଷ୍ଠେୟ ।

ବ୍ୟବହିତ, ବିଂ. (ବି-ଅବ-ଧା-ତ) ଆଚ୍ଛାଦିତ; ଅନ୍ତରିତ; ଦୂରୀକୃତ, ଅନ୍ତର୍ହିତ; ପରସ୍ପର ଅସଂଯୁକ୍ତ ଭାବରେ ଅବସ୍ଥାପିତ; ଅଧିକୃତ, ବିକୃତ ।

ବ୍ୟବହୃତ, ବିଂ. (ବି-ଅବ-ହୃ-ତ) ଆଚରିତ, ଅନୁଷ୍ଠିତ; ବ୍ୟବହିତ; ଉପଭୁକ୍ତ ।

ବ୍ୟସନ, ବି. ନ. (ବି-ଅସ୍-ଅନ) ବିପଦ; ଦୁର୍ଭାଗ୍ୟ; ଅଦୃଷ୍ଟ; ଦୁରଦୃଷ୍ଟ; ଅଯୋଗ୍ୟତା, ଅକ୍ଷମତା; ବାୟୁ, ବାତ; ପତନ; ବିନାଶ; ଦୁଃଖ; ଅମଙ୍ଗଳ; ପାପ; ଅଶୁଭ; ବୃଥାଚେଷ୍ଟା, କାମ ଓ କୋପଜନିତ ଦୋଷ; ମୃଗୟା, ଦ୍ୟୂତ, ଦିବାନିଦ୍ରା, ପରନିନ୍ଦା, ବେଶ୍ୟାସକ୍ତି, ନୃତ୍ୟ, ଗୀତ, କ୍ରୀଡ଼ା ବୃଥାଭ୍ରମଣ, ମଦ୍ୟପାନ ଏହି ୧୦ ପ୍ରକାର କାମଜ ଦୋଷ ଏବଂ ଦୁଷ୍ଟତା, ଦୌରାତ୍ମ୍ୟ, ଶଠତା, ଦ୍ୱେଷ, ଈର୍ଷା, ପ୍ରତାରଣା, କଟୂକ୍ତି, ନିଷ୍ଠୁରାଚରଣ ଏହି ଆଠ ପ୍ରକାର କୋପଜ ଦୋଷ ।

ବ୍ୟସନୀ, ବିଂ. (ବ୍ୟସନ-ଇନ୍) ବ୍ୟସନଯୁକ୍ତ; ବିପଦଗ୍ରସ୍ତ; ଆସକ୍ତ, କୁକ୍ରିୟାସକ୍ତ ।

ବ୍ୟସ୍ତ, ବିଂ. (ବି-ଅସ୍-ତ) ବ୍ୟାକୁଳ, ବ୍ୟତିବ୍ୟସ୍ତ, ବିଭକ୍ତ, ପୃଥକ୍ ପୃଥକ୍ ଉତ୍କ୍ଷିପ୍ତ, ବିପର୍ଯ୍ୟସ୍ତ; ବିସ୍ତୃତ, ବ୍ୟାପ୍ତ; ବିପରୀତ ।

ବ୍ୟସ୍ତତା, ବି. ସ୍ତ୍ରୀ. (ବ୍ୟସ୍ତ-ତା) ସତ୍ୱରତା, ଶୀଘ୍ରତା; ବ୍ୟାକୁଳତା ।

ବ୍ୟସ୍ତବୈରାଶିକ, ବି. ନ. ଅଙ୍କବିଦ୍ୟାବିଶେଷ, ବିଲୋମ ବୈରାଶିକ ।

ବ୍ୟାକରଣ, ବି.ନ. (ବି-ଆ-କୃ-ଅନ) ଶବ୍ଦବ୍ୟୁତ୍ପାଦକ ଶାସ୍ତ୍ର, ଯାହାଦ୍ୱାରା କର୍ତ୍ତା, କର୍ମ, କ୍ରିୟା, ସମ୍ୟପାଦ କରୂଣେ ହୁଏ; ବ୍ୟାଖ୍ୟା । ନ; ବିକାଶନ ।

ବ୍ୟାକୁଳ, ବିଂ. (ବି-ଆକୁଳ) ବ୍ୟସ୍ତ; ଉତ୍କଣ୍ଠିତ; କାତର, ଇତିକର୍ତ୍ତବ୍ୟତା ଜ୍ଞାନଶୂନ୍ୟ ।

ବ୍ୟାକୁଳାତ୍ମା, ବିଂ. (ବ୍ୟାକୁଳ-ଆତ୍ମନ୍) ଶୋକାଭିହତ ଚିତ୍ତ; ଉଦ୍‌ଭ୍ରାନ୍ତମନାଃ; ଉତ୍କଣ୍ଠିତ ଅନ୍ତଃକରଣ ।

ବ୍ୟାକୃତି, ବି.ସ୍ତ୍ରୀ. (ବି-ଆ-କୃ-ତି) ଛଳ, ବଞ୍ଚନା ।

ବ୍ୟାକୋଷ, ବ୍ୟାକୋଶ, ବିଂ. (ବି-ଆ-କୋଷ) ମୁକୁଳିତ; ପ୍ରଫୁଲ୍ଲ, ପ୍ରସ୍ଫୁଟିତ, ବିକସିତ ।

ବ୍ୟାକ୍ରୋଶ, ବି. ପୁଂ. (ବି-ଆକ୍ରୋଶ) ତିରସ୍କାର; କଟୂକ୍ତି; ଦୁର୍ବାକ୍ୟ ।

ବ୍ୟାକ୍ରୋଶୀ, ବ. ସ୍ତ୍ରୀ. (ବି-ଆକ୍ରୋଶ-ଈ) ପରସ୍ପର କଟୂକ୍ତି, ଅକ୍ରୋଶ ବାକ୍ୟ ।

ବ୍ୟାଖ୍ୟା, ବ. ସ୍ତ୍ରୀ. ( ବି-ଆ-ଖ୍ୟା-ଅ ) ବର୍ଣ୍ଣନ; କଥନ; ବ୍ୟାଖ୍ୟାକରଣ; ବିବରଣ, ଟୀକା, ଅର୍ଥପ୍ରକାଶନ ।

ବ୍ୟାଖ୍ୟାତ, ବଂ. ( ବି-ଆ-ଖ୍ୟା-ତ ) ବର୍ଣ୍ଣିତ; କଥିତ, ବିବୃତ ।

ବ୍ୟାଖ୍ୟେୟ, ବଂ. ( ବି-ଆ-ଖ୍ୟା ଯ ) ବର୍ଣ୍ଣନୀୟ, ବ୍ୟାଖ୍ୟା କରିବାର ଯୋଗ୍ୟ ।

ବ୍ୟାଘାତ, ବ. ପୁଂ. (ବି-ଆ-ହନ୍-ଅ) ବିଘ୍ନ; ଅଘାତ, ପ୍ରହାର; ଯୋଗବିଶେଷ ।

ବ୍ୟାଘାତକ, ବଂ. (ବି-ଆ-ହନ୍ ଅକ) ବିଘ୍ନକାରୀ, ପ୍ରତିବନ୍ଧକ, ପ୍ରତିରୋଧକ ।

ବ୍ୟାଘାତୀ, ବଂ. (ବି-ଆ-ହନ୍-ଇନ୍) ବିଘ୍ନକାରକ ।

ବ୍ୟାଘ୍ର, ବ. ପୁଂ. (ବି-ଆ-ଘ୍ରା-ଅ) ବାଘ, ଶାର୍ଦ୍ଦୂଳ; (କୌଣସି ଶବ୍ଦର ପରେ ଥିଲେ ) ଶ୍ରେଷ୍ଠ । ଯଥା—ପୁରୁଷବ୍ୟାଘ୍ର ।

ବ୍ୟାଘ୍ରବୃକ୍ଷ, ବ. ପୁଂ. ଏରଣ୍ଡବୃକ୍ଷ ।

ବ୍ୟାଘ୍ରାଟ, ବ. ପୁଂ. (ବ୍ୟାଘ୍ର-ଅଟ) ଭରଦ୍ୱାଜପକ୍ଷୀ ।

ବ୍ୟାଘ୍ରାସ୍ୟ, ବ. ପୁଂ. (ବ୍ୟାଘ୍ର-ଆସ୍ୟ) ମାର୍ଜ୍ଜାର, ବିରାଡ଼ୀ । ବ. ନ. ବ୍ୟାଘ୍ରମୁଖ, ଯାହାର ମୁଖ ବ୍ୟାଘ୍ର ମୁଖ ପରି ।

ବ୍ୟାଘ୍ରୀ, ବ. ସ୍ତ୍ରୀ. (ବ୍ୟାଘ୍ର-ଈ) କଣ୍ଟକାରୀବୃକ୍ଷ; ବ୍ୟାଘ୍ରପତ୍ନୀ, ବାଘୁଣୀ ।

ବ୍ୟଙ୍ଗ, ବ. ପୁଂ. (ବି-ଅଙ୍ଗ୍ ଅ) ଛଳ, କପଟ, ବ୍ୟାଘାତ, ବିଘ୍ନ; କାଳବିଳମ୍ବ; ବାଧା ।

ବ୍ୟାଜୋକ୍ତି, ବ. ସ୍ତ୍ରୀ. (ବ୍ୟାଜ-ଉକ୍ତି) ଛଳୋକ୍ତି; କାବ୍ୟାଳଙ୍କାରବିଶେଷ ।

ବ୍ୟାଦାନ, ବ. ନ. (ବି-ଆ-ଦା-ଅନ) ପ୍ରସାରଣ, ବିସ୍ତାର, ଉଦ୍‌ଘାଟନ; ଖୋଲା ।

ବ୍ୟାଧ, ବ. ପୁଂ. (ବ୍ୟଧ-ଅ) ମୃଗବଧ ବ୍ୟବସାୟୀ ଜାତି, ଶବର, ଶିକାରୀ; ଲୁବ୍ଧ ।

ବ୍ୟାଧଭୀତ, ବ. ପୁଂ. ହରିଣ । ବଂ. ବ୍ୟାଧଠାରୁ ଭୟପ୍ରାପ୍ତ ।

ବ୍ୟାଧି, ବ. ପୁଂ. (ବି-ଆ-ଧା-ଇ) ରୋଗ, ପୀଡ଼ା, ଅସ୍ୱାସ୍ଥ୍ୟ; କୁଷ୍ଠରୋଗ; ନାୟକର ଅବସ୍ଥାବିଶେଷ ।

ବ୍ୟାଧିତ, ବଂ. (ବ୍ୟାଧି-ଇତ) ଆତୁର, ରୋଗୀ, ପୀଡ଼ିତ ।

ବ୍ୟାଧୂତ, ବ୍ୟାଧୃତ, ବଂ. (ବି-ଆ-ଧୂ, ଧୃ-ତ) କମ୍ପିତ; ଚାଳିତ; ଆନ୍ଦୋଳିତ ।

ବ୍ୟାନ, ବ. ପୁଂ. (ବି-ଅନ୍-ଅ) ସର୍ବଶରୀର-ବ୍ୟାପୀ ବାୟୁ ।

ବ୍ୟାପକ, ବଂ. ( ବି-ଅପ୍-ଅକ ) ବିସ୍ତାରିତ; ବ୍ୟାପ୍ତିଶୀଳ; ସର୍ବ; ଆଚ୍ଛାଦକ ।

ବ୍ୟାପକତା, ବ. ସ୍ତ୍ରୀ. ପ୍ରାବଲ୍ୟ ।

ବ୍ୟାପାଦ, ବ୍ୟାପାଦନ, ବ. ନ. (ବି-ଆ-ପଦ-ଣିଚ-ଅ, ଅନ) ମାରଣ, ବିନାଶ; ପରର ଅନିଷ୍ଟଚିନ୍ତା ।

ବ୍ୟାପାର, ବ. ପୁଂ. (ବି-ଆ-ପୃ-ଅ) କ୍ରିୟା, କର୍ମ, ବ୍ୟବସାୟ, ଅଭ୍ୟାସ; ନିୟୋଗ, ଅନୁଶୀଳନ ।

ବ୍ୟାପାରୀ, ବଂ. (ବ୍ୟାପାର-ଇନ୍) ବ୍ୟବସାୟୀ; କ୍ରିୟାସକ୍ତ; କାର୍ଯ୍ୟାସକ୍ତ ।

ବ୍ୟାପୀ, ବଂ.(ବି-ଅପ୍-ଇନ୍) ଆଚ୍ଛାଦକ; ବ୍ୟାପକ; ବ୍ୟାପନଶୀଳ ।

ବ୍ୟାପୃତ, ବ୍ୟାପାରିତ, ବଂ. ( ବି-ଆ-ପୃ-ତ, ବ୍ୟାପାର-ଇତ) କାର୍ଯ୍ୟରେ ନିଯୁକ୍ତ, କାର୍ଯ୍ୟାସକ୍ତ; ନିଯୁକ୍ତ, ନିୟୋଜିତ । ବ. ପୁଂ. ସଚିବ, ମନ୍ତ୍ରୀ; ରାଜକର୍ମଚାରୀ ।

ବ୍ୟାପ୍ତ, ବଂ. (ବି-ଅପ୍-ତ) ବିସ୍ତାରିତ; ଆଚ୍ଛନ୍ନ, ଆଚ୍ଛାଦିତ; ବେଷ୍ଟିତ, ପରିପୂରିତ; ବ୍ୟାପ୍ତିଯୁକ୍ତ, ପ୍ରସିଦ୍ଧ ।

ବ୍ୟାପ୍ତି, ବ. ସ୍ତ୍ରୀ. (ବି-ଆପ୍-ତି) ସର୍ବତ୍ର ଅବସ୍ଥାନ; ଐଶ୍ୱର୍ଯ୍ୟବିଶେଷ ।

ବ୍ୟାପ୍ୟ, ବଂ. ( ବି-ଅପ୍-ଯ ) ବ୍ୟାପ୍ତିଯୋଗ୍ୟ, ବ୍ୟାପନୀୟ, ଯାହାକୁ ବ୍ୟାପ୍ତ କରାଯାଏ; ଅଳ୍ପ ଦେଶବୃତ୍ତି । ବ. ନ. ସାଧନ; ହେତୁ; ଅନୁମେୟ; ସାଧ୍ୟ; କୁଷ୍ଠୌଷଧ ।

ବ୍ୟାୟାମ, ବି. ପୁଂ. ( ବି-ଆ-ଯମ୍-ଅ ) ଶ୍ରମ-ସାଧକ ବ୍ୟାପାର, ମଲ୍ଲକ୍ରୀଡ଼ା; ଗମନାଦି କୁସ୍ତୀ, ଶାରୀରିକ ଶ୍ରମ; ଦୁର୍ଗମସ୍ଥାନ ଭ୍ରମଣ; ପୌରୁଷ-ବ୍ୟାପାର; ଦୈର୍ଘ୍ୟ ।

ବ୍ୟାୟାମଶୀଳ, ବିଂ. ବଳିଷ୍ଠ, ଦୃଢ଼ାଙ୍ଗ ।

ବ୍ୟାଲ, ବି. ପୁଂ. } (ବି-ଆ-ଅଲ୍-ଅ) ସର୍ପ, ଶ୍ୱାପଦ,
ବ୍ୟାଳୀ, ବି. ସ୍ତ୍ରୀ. } ସର୍ପୀ, ଶ୍ୱାପଦ, ଯଥା— "ବ୍ୟାଳୀ ଘଞ୍ଚନଖା ଯଥା" । ହିଂସ୍ରପଶୁ-ବିଶେଷ; ହିଂସ୍ରଜନ୍ତୁ; ଚିତାବାଘ; ଦୁଷ୍ଟହସ୍ତୀ । ବିଂ. କ୍ରୂର;ଅପକାରୀ; ଛନ୍ଦୋବିଶେଷ; ରଜା ।

ବ୍ୟାଳଗ୍ରାହ, ବ୍ୟାଳଗ୍ରାହୀ. ବି. ପୁଂ. (ବ୍ୟାଳ-ଗ୍ରାହ, ଗ୍ରାହନ୍) ଅହିତୁଣ୍ଡିକ, କେଳା ।

ବ୍ୟାବର୍ତ୍ତ, ବି. ପୁଂ. (ବି-ଆ ବୃତ୍-ଅ) ବେଷ୍ଟନ; ନିୟୋଗ ।

ବ୍ୟାବର୍ତ୍ତନ, ବି. ନ. (ବି-ଆ ବୃତ୍-ଅନ) ପରାଙ୍ମୁଖ ହେବା, ଫେରିବା; ପରାଙ୍ମୁଖୀ କରିବା ।

ବ୍ୟାବର୍ତ୍ତିତ, ବିଂ.(ବି-ଆ-ବର୍ତ୍ତି-ତ) ପରାଙ୍ମୁଖୀକୃତ ।

ବ୍ୟାବହାରିକ, ବିଂ.(ବ୍ୟବହାର-ଇକ) ବ୍ୟବହାର-ସମ୍ବନ୍ଧୀୟ; ଧର୍ମାଧିକରଣସମ୍ବନ୍ଧୀୟ । ବି. ପୁଂ. ପରାମର୍ଶକ, ମନ୍ତ୍ରୀ ।

ବ୍ୟାବହାରୀ ବି. ସ୍ତ୍ରୀ. (ବ୍ୟବହାର-ଇନ୍) ପରସ୍ପର ବ୍ୟବହାର; ପରସ୍ପର ହରଣ ।

ବ୍ୟାବୃତ, ବିଂ. ବିଶେଷରେ ବେଷ୍ଟିତ, ଆବୃତ ।

ବ୍ୟାବୃତ୍ତ, ବିଂ. ( ବି-ଆ-ବୃତ୍-ତ ) ନିବୃତ୍ତ; ନିଷିଦ୍ଧ; ଖଣ୍ଡିତ, ପୃଥକ୍‌କୃତ; ମନୋନୀତ; ବେଷ୍ଟିତ; ଅଂଶୀକୃତ; ନିବାରିତ; ଆଚ୍ଛାଦିତ ।

ବ୍ୟାବୃତ୍ତି, ବି. ସ୍ତ୍ରୀ. ( ବି-ଆ-ବୃତ୍-ତି ) ଖଣ୍ଡନ; ବେଷ୍ଟନ; ନିଷେଧ, ନିରାକରଣ; ନିୟୋଗ; ବିପର୍ଯ୍ୟାସ ।

ବ୍ୟାସ, ବି. ପୁଂ. (ବି-ଆ-ଅସ୍-ଅ) ବେଦବିଭାଗ-କର୍ତ୍ତା ମୁନିବିଶେଷ; ବୃତ୍ତର କେନ୍ଦ୍ର ଭେଦ କରି ଯେଉଁ ରେଖା ପରିଧିକୁ ସ୍ପର୍ଶ କରେ ତାହାର ନାମ; ବିଭାଗ ।

ବ୍ୟାସାର୍ଦ୍ଧ, ବ୍ୟାସର ଅର୍ଦ୍ଧଭାଗ ।

ବ୍ୟାସକ୍ତ, ବିଂ. (ବି-ଆସକ୍ତ) ଅତିଆସକ୍ତ, ସଂଲଗ୍ନ; ଅଭିଭୂତ; ପୃଥକ୍‌କୃତ ।

ବ୍ୟାସାସନ, ବି. ନ. (ବ୍ୟାସ-ଆସନ) ପୁରାଣାଦି ପାଠର ଆସନ; ବ୍ୟାସପୀଠ ।

ବ୍ୟାହତ, ବିଂ. ( ବି-ଆ-ହନ-ତ ) ପ୍ରତିବନ୍ଧ; ନିଷିଦ୍ଧ; ପ୍ରତିରୋଧିତ, ନିବାରିତ; ଧ୍ୱସ୍ତ, ଭ୍ରାନ୍ତ; ଅଭିଭୂତ; ବିଦ୍ଭ୍ରାନ୍ତ; ହତାହତ; ତାଡିତ; ଦୂରୀକୃତ; ହତାଶ; ଫେଲୀକୃତ ।

ବ୍ୟାହତି, ବି. ସ୍ତ୍ରୀ. ( ବି-ଆ-ହନ୍-ତି ) ବ୍ୟାଘାତ; ବିଘ୍ନ; ପରାଜୟ ।

ବ୍ୟାହାର, ପୁଂ. } ବି. ( ବି-ଆ-ହୃ-ଅ, ଅନ )
ବ୍ୟାହରଣ, ନ. } କଥନ, ଉକ୍ତି ।

ବ୍ୟାହୃତ, ବିଂ. (ବି-ଆ-ହୃ-ତ) ଉକ୍ତ, କଥିତ ।

ବ୍ୟୁତ୍‌କ୍ରମ, ବି. ପୁଂ. ( ବି-ଉତ୍-କ୍ରମ ) କ୍ରମ-ବିପର୍ଯ୍ୟୟ, ବ୍ୟତିକ୍ରମ; ଅନୟମ ।

ବ୍ୟୁତ୍ପତ୍ତି, ବି. ସ୍ତ୍ରୀ. (ବି-ଉତ୍-ପଦ୍-ତି) ବିଶେଷ ଉତ୍ପତ୍ତି, ଶାସ୍ତ୍ରରେ ବିଶେଷ ସଂସ୍କାର; ଜ୍ଞାନ-ବିଶେଷ; କୌଶଳ ।

ବ୍ୟୁତ୍ପନ୍ନ, ବିଂ. (ବି-ଉତ୍-ପଦ୍-ତ) ପଣ୍ଡିତ; ଶାସ୍ତ୍ର-ଜ୍ଞାନବାନ୍, ବ୍ୟୁତ୍ପତ୍ତିଯୁକ୍ତ; ପ୍ରକୃତି ପ୍ରତ୍ୟୟ ସାହାଯ୍ୟରେ ଉତ୍ପନ୍ନ ।

ବ୍ୟୁତ୍ପାଦକ, ବିଂ. (ବି-ଉତ୍-ପାଦ-ଅକ) ବ୍ୟୁତ୍ପତ୍ତି-ଜନକ, ସଂସ୍କାରଜନକ ।

ବ୍ୟୁତ୍ପାଦିତ, ବିଂ. ( ବି-ଉତ୍-ପାଦ-ତ ) ପ୍ରକୃତି ପ୍ରତ୍ୟୟ ସାହାଯ୍ୟରେ ବ୍ୟୁତ୍ପାଦିତ ।

ବ୍ୟୁତ୍ପାଦ୍ୟ, ବିଂ. ( ବି-ଉତ୍-ପାଦ-ଯ ) ବ୍ୟୁତ୍ପତ୍ତି-ଲଭ୍ୟ ।

ବ୍ୟୂଢ଼, ବିଂ. ( ବି-ବହ୍-ତ ) ସ୍ଥୂଳ, ପ୍ରଶସ୍ତ, ପୃଥୁଳ ।

ବ୍ୟୂହ, ବି. ପୁଂ. ( ବି-ଊହ ) ବଳବିନ୍ୟାସ, ସୈନ୍ୟ ରଚନା, ବିସ୍ତାର; ତର୍କ; ନିର୍ମାଣ, ଗଠନ; ସମୂହ; ଦେହ ।

ବ୍ୟୋମ, ବି. ନ. ( ବ୍ୟେ-ମନ, ନିପାତନରେ ) ଆକାଶ, ନଭୋମଣ୍ଡଳ, ଅନ୍ତରୀକ୍ଷ; ଜଳ; ସୂର୍ଯ୍ୟଦେବଙ୍କ ଉପାସନାର୍ଥ ମନ୍ଦିର ।

ବ୍ୟୋମକେଶ, ବି. ପୁଂ. (ବ୍ୟୋମନ୍-କେଶ) ଶିବ, ମହାଦେବ । ଯଥା—

ଶୁଭ୍ର ନଦୀକୁ ଯଥା ବ୍ୟୋମକେଶ କେଶେ । ବ. ବ.

ବ୍ୟୋମଚାରୀ, ବିଂ. ( ବ୍ୟୋମନ୍-ଚର-ଇନ୍ ) ଦେବତା; ଗ୍ରହନକ୍ଷତ୍ରାଦି; ପକ୍ଷୀ; ଗଗନ-ବିହାରୀ ।

ବ୍ୟୋମଧୂମ, ବି. ପୁଂ. ( ବ୍ୟୋମନ୍-ଧୂମ ) ମେଘ, ଜଳଧର ।

ବ୍ୟୋମମଣ୍ଡଳ ବି.ନ. (ବ୍ୟୋମନ-ମଣ୍ଡଳ) ଧ୍ୱଜା, ପତାକା; ଆକାଶମଣ୍ଡଳ ।

ବ୍ୟୋମଯାନ, ବି. ନ. (ବ୍ୟୋମନ୍-ଯାନ) ବିମାନ, ଦେବଯାନ ।

ବ୍ୟୋମସ୍ଥଳୀ, ବି. ସ୍ତ୍ରୀ. ପୃଥିବୀ, ଧରଣୀ ।

ବ୍ରଜ ବି. ପୁଂ. ( ବ୍ରଜ୍-ଅ ) ସମୂହ; ଗୋଷ୍ଠ; ମଥୁରାସମୀପସ୍ଥ ଗୋକୁଳଗ୍ରାମ; ପଥ । ନ. ଗମନ ।

ବ୍ରଜକିଶୋର ବି. ପୁଂ. ଶ୍ରୀକୃଷ୍ଣ ।

ବ୍ରଜନ, ବି. ନ. (ବ୍ରଜ୍-ଅନ) ପର୍ଯ୍ୟଟନ, ଭ୍ରମଣ ।

ବ୍ରଜନାଥ, ବ୍ରଜମୋହନ, } ବି. ପୁଂ. (ବ୍ରଜ-ନାଥ, ମୋହନ) ଶ୍ରୀକୃଷ୍ଣ ।

ବ୍ରଜବଲ୍ଲଭ, ବ୍ରଜେନ୍ଦ୍ର, } ବି. ପୁଂ. (ବ୍ରଜ-ବଲ୍ଲଭ, ଇନ୍ଦ୍ର) ଶ୍ରୀକୃଷ୍ଣ ।

ବ୍ରଜାଙ୍ଗନା, ବି. ସ୍ତ୍ରୀ. ଗୋପୀ ।

ବ୍ରଜ୍ୟା, ବି. ସ୍ତ୍ରୀ. ( ବ୍ରଜ୍-ଯ-ଆ ) ପର୍ଯ୍ୟଟନ, ଦେଶଭ୍ରମଣ; ମେଳି; ପ୍ରସ୍ଥାନ; ବର୍ଗ; ରଙ୍ଗ ।

ବ୍ରଣ, ବି. ପୁଂ. ନ. (ବ୍ରଣ-ଅ) କ୍ଷତ, ଘା, ବଥ, ବିସ୍ଫୋଟ ।

ବ୍ରଣୀ, ବିଂ. (ବ୍ରଣ-ଇନ୍) ବ୍ରଣଯୁକ୍ତ ।

ବ୍ରତ, ବି. ପୁଂ. ନ. (ବୃ-ଅତ କିମ୍ବା ବ୍ରଜ୍=ସ୍ୱର୍ଗ ଗମନ-ଅ, ନିପାତନରେ ) ନିୟମ; ପୁଣ୍ୟଜନକ ବା ପାପକ୍ଷୟକର କର୍ମ, ଚାନ୍ଦ୍ରାୟଣାଦି; ଭକ୍ଷଣ ।

ବ୍ରତତି, ବ୍ରତତୀ, ବି. ସ୍ତ୍ରୀ. ( ବୃତ୍-ଅତ ) ଲତା ବଲ୍ଲୀ, ବିସ୍ତାର ।

ବ୍ରତସଂଗ୍ରହ, ବି. ପୁଂ. ବ୍ରତଗ୍ରହଣାର୍ଥ କୃତ ଦୀକ୍ଷା ।

ବ୍ରତସ୍ନାତକ, ବି. ପୁଂ. ( ବ୍ରତ-ସ୍ନାତକ ) ଯେ ବ୍ରାହ୍ମଣ ବ୍ରହ୍ମଚର୍ଯ୍ୟ ଆଶ୍ରମ ସମାପନ କରିଅଛି ।

ବ୍ରତଭିକ୍ଷା, ବି. ସ୍ତ୍ରୀ. ( ବ୍ରତ-ଭିକ୍ଷା ) ଉପନୟନ-କାଳୀନ ଭିକ୍ଷା ।

ବ୍ରତାଦେଶ, ବି. ପୁଂ. (ବ୍ରତ-ଆଦେଶ) ଉପ-ନୟନ ସଂସ୍କାରବିଶେଷ ।

ବ୍ରତୀ, ବି. ପୁଂ. (ବ୍ରତ-ଇନ୍) ଯଜମାନ; ନିୟମସ୍ଥ; ତପସ୍ୱୀ । ବିଂ. ବ୍ରତବିଶିଷ୍ଟ ।

ବ୍ରଧ୍ନ, ବି. ପୁଂ. ସୂର୍ଯ୍ୟ, ଦିବାକର; ଶିବ; ବ୍ରହ୍ମା; ପୁତ୍ର; ଶରୀର; ବୃକ୍ଷମୂଳ ।

ବ୍ରାଜି, ବି. ପୁଂ. (ବ୍ରଜ-ଇ) ବାୟୁ, ବତାସ ।

ବ୍ରାତ, ବି. ପୁଂ. ( ବୃ-ଅତ ) ସମୂହ, ଦଳ; ପତିତବ୍ରାହ୍ମଣର ସନ୍ତତି; ଶ୍ରମଜୀବୀ । ନ. ଶାରୀରିକ ପରିଶ୍ରମ ମଜୁରି ।

ବ୍ରୀଡ, ପୁଂ. ବ୍ରୀଡା, ସ୍ତ୍ରୀ. ବ୍ରୀଡନ, ନ. } ବି. ( ବ୍ରୀଡ୍-ଅ, ଆ, ଅନ ) ଲଜ୍ଜା, ତ୍ରପା ।

ବ୍ରୀଡିତ, ବିଂ. (ବ୍ରୀଡ୍-ତ) ଲଜ୍ଜିତ । ନ. ଲଜ୍ଜା ।

ବ୍ରୀହି, ବି. ପୁଂ. ( ବୃ-ହି ନିପାତନରେ ) ବର, ଶସ୍ୟବିଶେଷ; ଶରତ୍ପକ୍ୱ ଧାନ୍ୟ; ଧାନ୍ୟ ।

—:o:—

# ଶ

ଶ, ବ୍ୟଞ୍ଜନବର୍ଣ୍ଣର ତ୍ରିଂଶବର୍ଣ୍ଣ; ଏହାର ଉଚ୍ଚାରଣ ସ୍ଥାନ ତାଳୁ । ବି. ନ. ( ଶୀ-ଅ ) କଲ୍ୟାଣ, ଶୁଭ; ଧର୍ମ । ପୁଂ. ଶିବ; ସୀମା; ( ଶୋ-ଅ ) ଶସ୍ତ୍ର ।

ଶଂଯୁ, ଶଂବ, } ବିଂ. ( ଶମ୍-ଯୁ, ବ ) କଲ୍ୟାଣଯୁକ୍ତ; ଭାଗ୍ୟବାନ୍ । ପୁଂ. ପର୍ବତବିଶେଷ; ଇନ୍ଦ୍ରଙ୍କ ବଜ୍ର । ନ. ସୌଭାଗ୍ୟ ।

ଶଂବର, ବି. ନ. (ଶମ୍-ବୃ-ଅ) ସଲିଳ, ଜଳ ।

ଶଂସନ, ନ. } ବି. (ଶନ୍ସ-ଅନ, ଅ ) କଥନ;
ଶଂସା, ସ୍ତ୍ରୀ. } ସୂଚନ; ଇଚ୍ଛା; ପ୍ରଶଂସା ।

ଶଂସିତ, ବିଂ. ( ଶନ୍ସ-ତ ) ନିଶ୍ଚିତ; କୁତ୍ସିତ; ପ୍ରଶଂସିତ; ଅଭିଳଷିତ; ବାଞ୍ଛିତ; କଥିତ; ସୂଚିତ; ଗୃହୀତ; ହିଂସିତ; ଅନୁଷ୍ଠିତ ।

ଶଂସୀ, ବିଂ. ( ଶନ୍ସ-ଇନ୍ ) ସୂଚକ; ଜ୍ଞାପକ; ଜ୍ଞାପନକାରକ; କଥକ ।

ଶଂସ୍ତା, ବି. ପୁଂ. ( ଶନସ୍-ତୃନ୍ ) ସ୍ତୋତା, ହୋତା ।

ଶଂସ୍ଥ, ବିଂ. (ଶମ୍-ସ୍ଥା-ଅ) ଶୁଭାନ୍ୱିତ, କଲ୍ୟାଣ-ଯୁକ୍ତ ।

ଶଂସ୍ୟ, ବିଂ. (ଶନ୍ସ-ଯ) ପ୍ରଶଂସନୀୟ; ବାଞ୍ଛନୀୟ; ବାଚ୍ୟ; କଥନୀୟ; ଗୁଣବାନ୍; ପ୍ରସିଦ୍ଧକର୍ମ କରିବା ।

ଶଅଳ, ବି. ( ଦେଶଜ ) ଲଙ୍ଗଳ ଜୁଆଳି, ଗୋରୁଙ୍କୁ ପୃଥକ୍ ରଖିବା କାଷ୍ଠଦ୍ରବ୍ୟ; ଶୀଘ୍ର, ବେଗ ।

ଶଏ, (ଶତଶବ୍ଦଜ) ଏକ ଶତ ।

ଶକ, ବି. ପୁଂ. (ଶକ୍-ଅ) ଅବ୍ଦପ୍ରବର୍ତ୍ତକ ରାଜା, ଶାଲିବାହନ ରାଜା, ତତ୍ ପ୍ରବର୍ତ୍ତିତ ଅବ୍ଦ, ସମ୍ବତ୍ସର; ଜାତିବିଶେଷ; ଦେଶବିଶେଷ ।

ଶକଟ, ବି. ପୁଂ. ( ଶକ୍-ଅଟ ) ଅସୁରବିଶେଷ; ଏହି ଅସୁର କୃଷ୍ଣ କର୍ତ୍ତୃକ ନିହତ ହୋଇଥିଲା । ପୁଂ. ନ. ଶଗଡ ।

ଶକଟାର, ବି. ପୁଂ. ନନ୍ଦରାଜାର ମନ୍ତ୍ରୀ ।

ଶକଟିକା, ବି. ସ୍ତ୍ରୀ. (ଶକଟୀ-କ-ଆ) କାଷ୍ଠନିର୍ମିତ ଖେଳିବାର ଗାଡ; କ୍ଷୁଦ୍ର ଶକଟ, ଛୋଟ ଗାଡ ।

ଶକଳ, ବି. ପୁଂ. ( ଶକ୍-ଅଳ ) ଅଂଶ, ଖଣ୍ଡ, ଏକ ଦେଶ । ନ. ତ୍ୱକ୍, ଚର୍ମ, ଛାଲି ।

ଶକଳାନ୍ତକ, ବି. ପୁଂ. ବିକ୍ରମାଦିତ୍ୟ ରାଜା ।

ଶକଳୀ, ବି.ପୁଂ. (ଶକଳ-ଇନ୍ ) ମତ୍ସ୍ୟ, ମାଛ ।

ଶକାବ୍ଦ, ବି. ପୁଂ. ( ଶକ-ଅବ୍ଦ ) ଶକନାମକ ନୃପତିର ପ୍ରଚଳିତ ସମ୍ବତ୍ସର ।

ଶକାରି, ବି. ପୁଂ. ( ଶକ-ଅରି ) ରାଜା ବିକ୍ରମାଦିତ୍ୟ ।

ଶକୁନ, ବି. ପୁଂ. (ଶକ-ଉନ) ପକ୍ଷୀ; ଗୃଧ୍ର, ଚିଲ; ଉତ୍ସବକାଳରେ ସ୍ତ୍ରୀମାନ ମଙ୍ଗଳଗୀତ । ନ. ଶୁଭାଶୁଭସୂଚକ ଚିହ୍ନ, ନିମିତ୍ତ ( ବାହୁସ୍ପନ୍ଦନ ଇତ୍ୟାଦି । )

ଶକୁନଜ୍ଞ, ବିଂ.(ଶକୁନ-ଜ୍ଞ) ନିମିତ୍ତଜ୍ଞ; ଚିହ୍ନଜ୍ଞ; କାକଚରିତ ।

ଶକୁନି, ବି.ପୁଂ. (ଶକ-ଉନି) ଗୃଧ୍ର; ପକ୍ଷୀ; ଚିଲ; ଦୁର୍ଯ୍ୟୋଧନାଦିର ମାତୁଳର ନାମ, ସୌବଳ; କରଣବିଶେଷ । ସ୍ତ୍ରୀ. ପକ୍ଷିଣୀବିଶେଷ, ଶ୍ୟାମାପକ୍ଷୀ ।

ଶକୁନିପ୍ରମା, ବି.ସ୍ତ୍ରୀ. ପକ୍ଷିମାନଙ୍କର ପାନୀୟ ଶାଳା ।

ଶକୁନୀଶ୍ୱର, ବି. ପୁଂ. (ଶକୁନି-ଈଶ୍ୱର) ପକ୍ଷୀନ୍ଦ୍ର, ଗରୁଡ଼ ।

ଶକୁନ୍ତ, ଶକୁନ୍ତି, ବି. ପୁଂ. (ଶକ-ଉନ୍ତ, ଉନ୍ତି) ପକ୍ଷୀ, ପକ୍ଷିବିଶେଷ, ଭାସପକ୍ଷୀ; କୀଟବିଶେଷ; ବିଶ୍ୱାମିତ୍ରଙ୍କର ପୁତ୍ରବିଶେଷ ।

ଶକୁନ୍ତଳା, ବି. ସ୍ତ୍ରୀ. ( ଶକୁନ୍ତ-ଲା-ଅ-ଆ ) ଦୁଷ୍ମନ୍ତ ରାଜାଙ୍କ ସହଧର୍ମିଣୀ, ଭରତ ରାଜାଙ୍କ ମାତା, ପକ୍ଷିକର୍ତ୍ତୃକ ରକ୍ଷିତ ହୋଇଥିଲେ ବୋଲି ଏହାଙ୍କର ନାମ ଶକୁନ୍ତଳା ହୋଇଅଛି ।

ଶକୁଳ, ସକୁଳ, ବି. ପୁଂ. (ଶକ-ଉଳ) ମତ୍ସ୍ୟ, ମତ୍ସ୍ୟବିଶେଷ, ଶେଉଳମାଛ ।

ଶକୁଳଗଣ୍ଡ, ବି. ପୁଂ. ମତ୍ସ୍ୟବିଶେଷ, ଶେଉଳ-ମାଛ ।

ଶକୃତ୍, ବି. ନ. (ଶକ୍-ଋତ୍) ବିଷ୍ଠା, ମଳ ।

ଶକୃତ୍କରି, ପୁଂ. } ବି. (ଶକୃତ୍-କୃ-ଇ) ଗୋ-
ଶକୃତ୍କରୀ, ସ୍ତ୍ରୀ. } ପ୍ରସୂତର ବତ୍ସ, ବାଛୁରି ।

ଶକ୍କର, ବି. ପୁଂ. ବୃଷ । ରୀ, ସ୍ତ୍ରୀ. ନଦୀବିଶେଷ; ମେଖଳା, ଚନ୍ଦ୍ରହାର ।

ଶକ୍ତ, ବିଂ.(ଶକ୍-ତ) ଶକ୍ତିଯୁକ୍ତ, ସମର୍ଥ, କ୍ଷମବାନ୍, ପରିଶ୍ରମୀ; କଠିନ; ପ୍ରିୟମ୍ବଦ ।

ଶକ୍ତି, ବ.ସ୍ତ୍ରୀ. (ଶକ୍-ତି) ସାମର୍ଥ୍ୟ; ବଳ, କ୍ଷମତା, ପରାକ୍ରମ; ପ୍ରଭାବଜ, ଉତ୍ସାହଜ, ମନ୍ତ୍ରଜ ଏହି ତ୍ରିବିଧ ରାଜଶକ୍ତି; ଶାପୂନାମକ ଅସ୍ତ୍ର, ତୋମର ଅସ୍ତ୍ର, ଲୌହ ଶାବଳ; ପ୍ରକୃତି; ଗୌରୀ; ଲକ୍ଷ୍ମୀ । ସ୍ତ୍ରୀ. ଦେବତା, ଦେବୀବିଶେଷ ।

ଶକ୍ତିଗ୍ରହ, ବ.ପୁଂ. (ଶକ୍ତି-ଗ୍ରହ) ଶିବ, କାର୍ତ୍ତିକେୟ ।

ଶକ୍ତିଧର, ଶକ୍ତିଭୃତ୍, ବ.ପୁଂ. (ଶକ୍ତି-ଧର, ଭୃ-୦) କାର୍ତ୍ତିକେୟ । ବିଂ. ଶକ୍ତିଯୁକ୍ତ ।

ଶକ୍ତିପୂର୍ଣ୍ଣ, ବ. ପୁଂ. ସପ୍ତପର୍ଣ୍ଣବୃକ୍ଷ, ଛତିଅନାଗଛ ।

ଶକ୍ତିପାଣି, ବ.ପୁଂ. (ଶକ୍ତି-ପାଣି) କାର୍ତ୍ତିକେୟ ।

ଶକ୍ତିମାନ୍; ବିଂ. ( ଶକ୍ତି-ମତ୍ ) ଶକ୍ତିବିଶିଷ୍ଟ, ବଳବାନ୍ । ବିଂ. ସପ୍ତକୁଳ ପର୍ବତ ମଧ୍ୟରେ ଏକ ପର୍ବତ ।

ଶକ୍ତିହେତିକ, ବ. ପୁଂ. ( ଶକ୍ତି-ହେତିକ ) ଶାକ୍ତିକ; ଶକ୍ତି ଅସ୍ତ୍ରଧାରୀ ଯୋଦ୍ଧା ।

ଶକ୍ତୁ, ବ. ପୁଂ. ନ. (ଶକ୍-ତୁନ୍) ଯବାଦିଚୂର୍ଣ୍ଣ, ଛତୁ ।

ଶକ୍ତୁକ, ବ. ପୁଂ. ବିଷବିଶେଷ ।

ଶକ୍ତୁଫଳା, ବ. ସ୍ତ୍ରୀ. (ଶକ୍ତୁ-ଫଳା) ଶମୀବୃକ୍ଷ ।

ଶକ୍ୟ, ବିଂ. (ଶକ୍-ଯ) ଶକ୍ତିର ବିଷୟ, ଶକ୍ତିବୋଧ; ସମ୍ଭବ; ବାଚ୍ୟ, ଅଭିଧାବୃତ୍ତିଦ୍ୱାରା ବୋଧ ।

ଶକ୍ର ବ. ପୁଂ. ( ଶକ୍-ର ) ଇନ୍ଦ୍ର, ଦେବରାଜ; ପେଚକ; ଜ୍ୟେଷ୍ଠା ନକ୍ଷତ୍ର; ଅର୍ଜ୍ଜୁନବୃକ୍ଷ; କୂଟଜବୃକ୍ଷ ।

ଶକ୍ରଗୋପ, ବ. ପୁଂ. (ଶକ୍ର-ଗୋ-ପା-ଅ) ଇନ୍ଦ୍ରଗୋପ, ରକ୍ତବର୍ଣ୍ଣ କୀଟବିଶେଷ ।

ଶକ୍ରଜ, ଶକ୍ରଜାତ, ବ. ପୁଂ. (ଶକ୍ର-ଜ, ଜାତ) କାକ । ବିଂ. ଇନ୍ଦ୍ରଙ୍କଠାରୁ ଉତ୍ପନ୍ନ ।

ଶକ୍ରଜିତ୍, ବ. ପୁଂ. (ଶକ୍ର-ଜିତ୍) ଇନ୍ଦ୍ରଜିତ, ରାବଣର ପୁତ୍ର । ବିଂ. ଇନ୍ଦ୍ରଜେତା ।

ଶକ୍ରଧନୁଃ ବ. ନ. (ଶକ୍ର-ଧନୁସ୍) ଇନ୍ଦ୍ରଧନୁଃ ।

ଶକ୍ରଧ୍ୱଜ, ଶକ୍ରୋତ୍ସବ, ବ. (ଶକ୍ର-ଧ୍ୱଜ, ଉତ୍ସବ) ଶକ୍ରୋତ୍ଥାନ, ଇନ୍ଦ୍ରଧ୍ୱଜର ଉତ୍ସବ, ଭାଦ୍ର ଶୁକ୍ଳ ଦ୍ୱାଦଶୀରେ ପୂଜ୍ୟ ଧ୍ୱଜାକାର ସ୍ତମ୍ଭ ।

ଶକ୍ରଭିଦ୍, ବ.ପୁଂ. (ଶକ୍ର-ଭିଦ୍) ଇନ୍ଦ୍ରଜିତ୍, ରାବଣର ପୁତ୍ର ।

ଶକ୍ରମୂର୍ଦ୍ଧା, ବ. ପୁଂ. (ଶକ୍ର-ମୂର୍ଦ୍ଧନ୍) ବଲ୍ମୀକ, ଉଇହୁଙ୍କା ।

ଶକ୍ରବଲ୍ଲୀ, ବ. ସ୍ତ୍ରୀ. ଇନ୍ଦ୍ରବାରୁଣୀ ।

ଶକ୍ରବାହନ, ବ.ପୁଂ. (ଶକ୍ର-ବାହନ) ଇନ୍ଦ୍ରବାହନ, ମେଘ ।

ଶକ୍ରଶାଳା, ବ. ସ୍ତ୍ରୀ. ଯଜ୍ଞଗୃହ, ହୋମଗୃହ ।

ଶକ୍ରସାରଥି, ବ. ପୁଂ. (ଶକ୍ର-ସାରଥି) ମାତଳି ।

ଶକ୍ରାଣୀ, ବ.ସ୍ତ୍ରୀ.(ଶକ୍ର-ଈ, ଆନ ଆଗମ) ଇନ୍ଦ୍ରାଣୀ, ଇନ୍ଦ୍ରପତ୍ନୀ, ଶଚୀ ।

ଶକ୍ରୋତ୍ଥାନ, ବ. ନ. } (ଶକ୍ର-ଉତ୍ଥାନ, ଉତ୍ସବ)<br>
ଶକ୍ରୋତ୍ସବ, ବ. ପୁଂ. } ଭାଦ୍ରମାସ ଶୁକ୍ଳ ଦ୍ୱାଦଶୀ ତିଥିରେ କର୍ତ୍ତବ୍ୟ ଉତ୍ସବବିଶେଷ ।

ଶଗଡ଼, ବ. (ଶକଟ ଶବ୍ଦଜ) ଶକଟ, ଗାଡ଼ୀ ।

ଶଗଡ଼ିଆ, ବ. (ଦେଶଜ) ଶଗଡ଼ ବାହିବା ଲୋକ ।

ଶଙ୍କ, ବ. ପୁଂ. (ଶଙ୍କ୍-ଅ) ଶକଟାଦିର ବାହକ ବୃଷ, ଗାଡ଼ି ଟାଣିବା ବଳଦ ।

ଶଙ୍କନୀୟ, ବିଂ. (ଶଙ୍କ୍-ଅନୀୟ) ଭୟର ବିଷୟ; ଅଶଙ୍କାର ଯୋଗ୍ୟ; ସନ୍ଦେହସ୍ଥଳ ।

ଶଙ୍କର, ବ.ପୁଂ. (ଶମ୍-କୃ-ଅ) ଶିବ; ଶଙ୍କରାଚାର୍ଯ୍ୟ । ବିଂ. ଶୁଭକାରକ ।

ଶଙ୍କରାଚାର୍ଯ୍ୟ, ବ. ପୁଂ. ବେଦାନ୍ତଭାଷ୍ୟକର୍ତ୍ତା, ଅଦ୍ୱୈତବାଦୀ ଆଚାର୍ଯ୍ୟବିଶେଷ ।

ଶଙ୍କରାବାସ, ବ. ପୁଂ. କର୍ପୂରବିଶେଷ; କୈଳାସ ।

ଶଙ୍କରୀ, ବ. ସ୍ତ୍ରୀ. (ଶଙ୍କର-ଈ) ଶିବାନୀ, ଭବାନୀ; ଶମୀ । ବିଂ. ଶୁଭଦାୟିନୀ ।

ଶଙ୍କା, ବ. ସ୍ତ୍ରୀ. (ଶଙ୍କ୍-ଆ) ତ୍ରାସ, ଭୟ, ଆଶଙ୍କା; ସଂଶୟ, ସନ୍ଦେହ; ସମ୍ଭାବନା, ବିତର୍କ ।

ଶଙ୍କିତ, ବିଂ. (ଶଙ୍କ୍-ଇତ) ଭୀତ; ସନ୍ଦିଗ୍ଧ; ଅବଶ୍ୟ; ତର୍କିତ ।

ଶଙ୍କୁ, ବି. ପୁଂ. (ଶନ୍‌କ୍-ଉ) ଅସ୍ତ୍ରବିଶେଷ, ଶଲ୍ୟ, ଶେଳ; କୀଲକ; ଦ୍ୱାଦଶାଙ୍ଗୁଳ କାଠି; ଶିବ; ବିକ୍ରମାଦିତ୍ୟଙ୍କର ନବରତ୍ନ ମଧ୍ୟରୁ ଏକଜଣ; କଳୁଷ, ପାପ; ବର୍ଷା; ଲିଙ୍ଗ, ପୁଂଚିହ୍ନ; ହଂସୀ; ଭୂତ; କନ୍ଦର୍ପ; ଭସ୍ମ, ବାଣ; ଶିବଙ୍କର ଅନୁଚରବିଶେଷ ।

ଶଙ୍କୁକର୍ଣ୍ଣ, ବି. ପୁଂ. (ଶଙ୍କୁ-କର୍ଣ୍ଣ) ଗର୍ଦ୍ଦଭ, ଗଧ ।

ଶଙ୍କୁର, ବିଂ. (ଶଙ୍କୁ-ର୍-ଅ) ଭୀଷଣ, ଭୟଙ୍କର ।

ଶଙ୍କୁଳା ବି. ସ୍ତ୍ରୀ. (ଶନ୍‌କ୍-ଉଲ-ଆ) ପୂଗଛେଦକ ଅସ୍ତ୍ର, ଯନ୍ତି, ଗୁଆକାତି ।

ଶଙ୍ଖ, ବି. ପୁଂ. ନ. (ଶମ୍-ଖ) ସମୁଦ୍ରଜାତ ଦ୍ରବ୍ୟବିଶେଷ । ପୁଂ. ଲଲାଟର ଅସ୍ଥି; ଗଳଦେଶ; ରଣବାଦ୍ୟଯନ୍ତ୍ରବିଶେଷ; ଦଶ ନିଖର୍ବ, ଲକ୍ଷ କୋଟି; ହସ୍ତିଦନ୍ତଦ୍ୱୟର ମଧ୍ୟଭାଗ; ରଣଢକ୍କା ।

ଶଙ୍ଖକ, ବି. ନ. (ଶଙ୍ଖ-କ) ଶଙ୍ଖନିର୍ମିତ ବଳୟ, ଶଙ୍ଖା । ପୁଂ. କପାଳ, ଲଲାଟ ।

ଶଙ୍ଖକାର, ବି. ପୁଂ. (ଶଙ୍ଖ-କାର) ଶଙ୍ଖାରି, ଶଙ୍ଖବ୍ୟବସାୟୀ ।

ଶଙ୍ଖଚର୍ଚ୍ଚା, } ବି. ସ୍ତ୍ରୀ. ( ଶଙ୍ଖ-ଚର, ଚର୍ଚ୍ଚ-ଅ-ଶଙ୍ଖଚର୍ଚ୍ଚୀ, } ଈ ) ଲଲାଟିକା, ଚନ୍ଦନାଦି ତିଳକ ।

ଶଙ୍ଖଚିଲ, ବି. (ଦେଶଜ) ପକ୍ଷିବିଶେଷ ।

ଶଙ୍ଖଜ, ବିଂ. (ଶଙ୍ଖ-ଜ) ଶଙ୍ଖରୁ ଜାତ । ବି. ପୁଂ. କପୋତ ଡିମ୍ବ ପରି ବୃହତ୍ ମୁକ୍ତା ।

ଶଙ୍ଖଧ୍ମା, ବି. ପୁଂ. ( ଶଙ୍ଖ-ଧ୍ମା ) ଶଙ୍ଖବାଦକ, ଯେ ଶଙ୍ଖ ବଜାଏ ।

ଶଙ୍ଖନଖ, ପୁଂ. } ବି. (ଶଙ୍ଖ-ନଖ) କ୍ଷୁଦ୍ରଶଙ୍ଖ, ଶଙ୍ଖନଖୀ ସ୍ତ୍ରୀ. } ଛୋଟ ଶଙ୍ଖ; ବୃହନ୍ନଖୀ ।

ଶଙ୍ଖପ୍ରସ୍ଥ, ବି. ପୁଂ. (ଶଙ୍ଖ-ପ୍ରସ୍ଥ) ଚନ୍ଦ୍ରସ୍ଥିତ ଚିହ୍ନ ।

ଶଙ୍ଖଭୃତ୍, ବି. ପୁଂ.(ଶଙ୍ଖ-ଭୃତ୍ )ଶଙ୍ଖଧାରୀ ବିଷ୍ଣୁ ।

ଶଙ୍ଖମୁଖ, ବି. ପୁଂ. (ଶଙ୍ଖ-ମୁଖ) କୁମ୍ଭୀର ।

ଶଙ୍ଖିନୀ, ବି. ସ୍ତ୍ରୀ. ( ଶଙ୍ଖିନ୍-ଈ ) ଏକପ୍ରକାର ସ୍ତ୍ରୀ ଜାତି; ଦୀର୍ଘକାୟା, ଦୀର୍ଘକେଶା, ନାତିସ୍ଥୂଳା, ନାତିକୃଶା,କୋପନ-ସ୍ୱଭାବା, ରତିସମୁତ୍ସୁକା ସ୍ତ୍ରୀ; ଉପଦେବତାବିଶେଷ; ଶ୍ୱେତପୁନର୍ନବା; ଶ୍ୱେତବୃନ୍ଦା ।

ଶଙ୍ଖୀ, ବିଂ. (ଶଙ୍ଖ-ଇନ୍) ଶଙ୍ଖବିଶିଷ୍ଟ, ଶଙ୍ଖଯୁକ୍ତ । ବି. ପୁଂ. ବିଷ୍ଣୁ; ସମୁଦ୍ର; ଶଙ୍ଖବାଦକ ।

ଶଚି, } ବି. ସ୍ତ୍ରୀ. ( ଶଚ୍-ଇ ) ଇନ୍ଦ୍ରାଣୀ; ଇନ୍ଦ୍ର-ଶଚୀ, } ପତ୍ନୀ; ଶତମୂଳୀ ।

ଶଚୀପତି, ବି. ପୁଂ. (ଶଚୀ-ପତି) ଇନ୍ଦ୍ର ।

ଶଟା, ବି. ସ୍ତ୍ରୀ. (ଶଟ୍-ଅ) ଜଟା, ପଶୁର କେଶର ।

ଶଠ, ବିଂ. (ଶଠ୍-ଅ) ଧୂର୍ତ୍ତ, ଖଳ, ଦୁଷ୍ଟ, ଠକ; ମୂର୍ଖ, ନିର୍ବୋଧ; କଷ୍ଟମ୍ମା ।

ଶଠତା, ବି. ସ୍ତ୍ରୀ. (ଶଠ-ତା) ଖଳତା, ଧୂର୍ତ୍ତତା, କୁଟିଳତା, ଦୁଷ୍ଟାମି, ପ୍ରତାରଣା ।

ଶଡଙ୍ଗା, ବି. (ଦେଶଜ) ଡେଙ୍ଗା ପତଳା ମନୁଷ୍ୟ ।

ଶଡ଼ା, ବିଂ. (ଦେଶଜ) ପଚା ।

ଶଣ, ବି. ନ. ( ଶଣ୍-ଅ ) କ୍ଷୁଦ୍ରବୃକ୍ଷବିଶେଷ, ଛଣପଟ ଗଛ ।

ଶଣ୍ଡ, ବି. ପୁଂ. (ଶଣ୍-ଡ) ବୃଷ; ନପୁଂସକ,କ୍ଳୀବ । ପୁଂ. ନ. ପଦ୍ମସମୂହ ।

ଶଣ୍ଡା, ବି. (ଶୁଣ୍ଡ ଶବ୍ଦଜ) ପିଆଜ ପ୍ରଭୃତିର ଶୁଣ୍ଡ ପରି ବର୍ଦ୍ଧିତ ପତ୍ର ।

ଶଣ୍ଡୁଅପି, ବି. (ଦେଶଜ) ଚମ୍ପୁଛାନ୍ଦବିଶେଷ । ଯଥା-

> କ୍ଷଣକେ ପୋଡାଏ କ୍ଷଣକେ ବୁଡାଏ
> ହେଲ କେତକ'ର ଟଣ୍ଡୁ ଅପି ପରି ।

ଶଣ୍ଢ, ବି. ପୁଂ. ( ଶଣ୍-ଢ଼ ) ଅନ୍ତଃପୁର ସ୍ତ୍ରୀରକ୍ଷକ; ବୃଷ; ସନ୍ତାନୋତ୍ପାଦନରେ ଅସମର୍ଥ ବ୍ୟକ୍ତି; ଉନ୍ମତ୍ତ ବ୍ୟକ୍ତି; ମତ୍ତ, ପାଗଳ ।

ଶତ, ବି. ନ. ( ଶୋ-ଅତ ) ଦଶଗୁଣିତ ଦଶ ସଂଖ୍ୟା, ୧୦୦ ।

ଶତକ, ବିଂ. (ଶତ-କ) ଶତସଂଖ୍ୟାବିଶିଷ୍ଟ । ବି. ନ. ଶତସଂଖ୍ୟା ।

ଶତକୁମ୍ଭ, ବି. ପୁଂ. ସ୍ୱର୍ଣ୍ଣଖଣି ପର୍ବତବିଶେଷ ।

ଶତକୋଟି ବି. ପୁଂ. (ଶତ-କୋଟି) ବଜ୍ର; ଶତଧାରବିଶିଷ୍ଟ ଅସ୍ତ୍ର । ସ୍ତ୍ରୀ. ଶତକୋଟି ସଂଖ୍ୟା ।

ଶତକ୍ରତୁ, ବ. ପୁଂ. (ଶତ-କ୍ରତୁ) ଶତାଶ୍ୱମେଧ-ଯଜ୍ଞକାରୀ, ଇନ୍ଦ୍ର ।

ଶତଖଣ୍ଡ, ବ. ନ. ସୁବର୍ଣ୍ଣ, ସ୍ୱର୍ଣ୍ଣ, ସୁନା; ଶତଭାଗ ।

ଶତଗ୍ରନ୍ଥି, ବ. ସ୍ତ୍ରୀ. ଦୂବ ।

ଶତଘ୍ନୀ, ବ. ସ୍ତ୍ରୀ. (ଶତ-ହନ୍-ଅ-ଈ) ଶତପୁରୁଷ-ଘାତକ ଅସ୍ତ୍ରବିଶେଷ, ଲୌହ କଣ୍ଟକମୟ ଯଷ୍ଟ୍ୟାକାର ଅସ୍ତ୍ର ।

ଶତଚ୍ଛଦ, ବ. ପୁଂ. (ଶତ-ଛଦ) ଶତଦଳପଦ୍ମ; କାଠକଣ୍ଠା ପକ୍ଷୀ ।

ଶତତମ, ବଂ. (ଶତ-ତମ) ଶତସଂଖ୍ୟାର ପୂରକ ।

ଶତତାରା, ବ. ସ୍ତ୍ରୀ. ଶତଭିଷା ନକ୍ଷତ୍ର ।

ଶତଦଳ, ବ. ନ. (ଶତ-ଦଳ) ପଦ୍ମପୁଷ୍ପ ।

ଶତଦ୍ରୁ, ବ. ସ୍ତ୍ରୀ. ( ଶତ-ଦ୍ରୁ ) ନଦୀବିଶେଷ, ପଞ୍ଜାବର ଅନ୍ତର୍ଗତ ଶତଲଜ ନଦୀ ।

ଶତଧା, ଅଂ. (ଶତ-ଧା) ଶତପ୍ରକାର, ଶତବାର, ଶତଖଣ୍ଡ ।

ଶତଧାମା, ବ. ପୁଂ. ( ଶତ-ଧାମନ୍ ) ବିଷ୍ଣୁ, ନାରାୟଣ ।

ଶତଧାର, ବ. ନ. (ଶତ-ଧାରା) ଅଶନି, ବଜ୍ର । ବଂ. ଶତଧାରାବିଶିଷ୍ଟ ।

ଶତପତ୍ର, ଶତଦଳ, ବ. ନ. (ଶତ-ପତ୍ର, ଦଳ) ପଦ୍ମପୁଷ୍ପ । ପୁଂ. ମୟୂର; ସାରସ; ଶୁକପକ୍ଷୀ ।

ଶତପଥ, ବ. ପୁଂ. (ଶତ-ପଥ) ଯଜୁର୍ବେଦାଂଶ-ବିଶେଷ ।

ଶତପଥୀ, ବ. ପୁଂ. ( ଶତପଥ-ଇନ୍ ) ଉପାଧି-ବିଶେଷ, ଯଜୁର୍ବେଦାଂଶ ଅଧ୍ୟୟନକାରୀ ବ୍ରାହ୍ମଣର ଉପାଧି ।

ଶତପଦ୍ମ, ବ. ନ. (ଶତ-ପଦ୍ମ) ଶ୍ୱେତ କମଳ, ଶୁକ୍ଳପଦ୍ମ ।

ଶତପାଦକ, ବ. (Myriapada) ବୃଶ୍ଚିକବର୍ଗ ।

ଶତପୁଷ୍ପ, ବ. ପୁଂ. (ଶତ-ପୁଷ୍ପ) ଭାରବି, କିରାତା-ର୍ଜୁନୀୟ ଗ୍ରନ୍ଥକର୍ତ୍ତା । ଷା-ସ୍ତ୍ରୀ. ଶାକବିଶେଷ ।

ଶତଭିଷା, ବ. ସ୍ତ୍ରୀ. (ଶତ-ଭିଷଜ୍-ଅ-ଆ) ଚତୁର୍ବିଂଶ ନକ୍ଷତ୍ର, ଏହାର ଆକାର ଶତ ତାରାମୟୀ ମଣ୍ଡଳାକାର, ଏହାର ଅଧିଷ୍ଠାତ୍ରୀ ଦେବତା ବରୁଣ ।

ଶତଭୀରୁ, ବ. ସ୍ତ୍ରୀ. ମଲ୍ଲିକା ।

ଶତମନ୍ୟୁ ବ. ପୁଂ. (ଶତ-ମନ୍ୟୁ) ଇନ୍ଦ୍ର, ଶତକ୍ରତୁ ।

ଶତମାନ, ବ. ପୁଂ. (ଶତ-ମାନନ୍) ଉତ୍ତମ ଚକ୍ରଶ୍ରଦ୍ଧା ।

ଶତମୁଖ, ବଂ. (ଶତ-ମୁଖ) ଶତମୁଖଯୁକ୍ତ ।

ଶତମୁଖୀ, ବ. ସ୍ତ୍ରୀ. ( ଶତ-ମୁଖ-ଈ ) ସମ୍ମାର୍ଜ୍ଜନୀ, ଝାଡ଼ୁଣି ।

ଶତରଞ୍ଜି, ବ. ବହୁବର୍ଣ୍ଣ ସୂତ୍ରନିର୍ମିତ ଆସନବିଶେଷ ।

ଶତବୀର୍ଯ୍ୟା, ବ. ସ୍ତ୍ରୀ. (ଶତ-ବୀର୍ଯ୍ୟା) ଶ୍ୱେତଦୂବ; ଶତାବରୀ, ଛତୌରୀ; କପିଳ ଦ୍ରାକ୍ଷା ।

ଶତଶଃ ଅଂ. (ଶତ-ଶସ୍) ଶତବାର ।

ଶତଶୃଙ୍ଗ, ବ. ପୁଂ. ପର୍ବତବିଶେଷ ।

ଶତସହସ୍ର, ବ. ନ. (ଶତ-ସହସ୍ର) ଲକ୍ଷସଂଖ୍ୟା ।

ଶତହ୍ରଦା, ବ. ସ୍ତ୍ରୀ. (ଶତ-ହ୍ରଦ) ବିଦ୍ୟୁତ୍; ବଜ୍ର; ଦକ୍ଷକନ୍ୟାବିଶେଷ ।

ଶତାକ୍ଷୀ, ବ. ସ୍ତ୍ରୀ. (ଶତ-ଅକ୍ଷ-ଅ-ଈ) ପାର୍ବତୀ; ରାତ୍ରି; ଶତପୁଷ୍ପ ।

ଶତାଙ୍ଗ, ବ. ପୁଂ. (ଶତ-ଅଙ୍ଗ) ସ୍ୟନ୍ଦନ, ରଥ ।

ଶତାନକ, ବ. ନ. ( ଶତ-ଆନକ ) ଶ୍ମଶାନ, ପ୍ରେତଭୂମି ।

ଶତାନନ୍ଦ, ବ. ପୁଂ. ( ଶତ-ଆନନ୍ଦ ) ଗୌତମ ମୁନି; ଜନକ ରାଜାଙ୍କ ପୁରୋହିତ; ଦେବକୀ-ନନ୍ଦନ; ବ୍ରହ୍ମା; ବିଷ୍ଣୁରଥ ।

ଶତାନୀକ, ବପୁଂ. (ଶତ-ଅ-ନୀ-କ) ବୃଦ୍ଧ, ବୁଢ଼ା; ବ୍ୟାସଙ୍କ ଶିଷ୍ୟ । ବଂ. ଶତସୈନ୍ୟବାନ୍ ।

ଶତାୟୁଃ, ବଂ. (ଶତ-ଆୟୁସ୍) ଶତବର୍ଷଜୀବୀ ।

ଶତାର, ବ. ନ. (ଶତ-ଋ-ଅ) ଅଶନି, ବଜ୍ର ।

ଶତାବରୀ, ବ. ସ୍ତ୍ରୀ. (ଶତ-ଆ-ବୃ-ଅ-ଈ) ଶତ-ମୂଳୀ, ଛତୌରୀ; ଇନ୍ଦ୍ରଭାର୍ଯ୍ୟା ।

ଶତାବର୍ତ୍ତ, ଶତାବର୍ତ୍ତୀ, ବ. ପୁଂ. (ଶତ-ଆବର୍ତ୍ତ-ଇନ୍) ବିଷ୍ଣୁ, ନାରାୟଣ ।

ଶତାବ୍ଦୀ, ବ. ସ୍ତ୍ରୀ. Century; (ଶତ-ଅବ୍ଦ) ଶତବର୍ଷକାଳ ।

ଶତ୍ୟ, ବଂ. (ଶତ-ଯ) ଶତସମ୍ବନ୍ଧୀୟ; ଶତଦ୍ୱାରା କ୍ରୀତ; ଶତମୟ ।

ଶତ୍ରୁ, ବ. ପୁଂ. (ଶଦ୍-ତ୍ରୁ) ରିପୁ, ବୈରୀ, ବିପକ୍ଷ ।

ଶତ୍ରୁଘ୍ନ, ବ. ପୁଂ. ( ଶତ୍ରୁ-ଘ୍ନ ) ରାମଙ୍କର ଭ୍ରାତା, ସୁମିତ୍ରାପୁତ୍ର । ବଂ. ଶତ୍ରୁନାଶକ ।

ଶତ୍ରୁଞ୍ଜୟ, ବ. ପୁଂ. ( ଶତ୍ରୁ-ଜି-ଅ ) ବିମଳାଦ୍ରି, ଗୁଜରାଟର ଅନ୍ତର୍ଗତ ଗିରନାର ପର୍ବତ । ବଂ. ଶତ୍ରୁଜୟକାରୀ ।

ଶତ୍ରୁତା, ବ. ସ୍ତ୍ରୀ. ( ଶତ୍ରୁ-ତା ) ବିପକ୍ଷତା, ବୈରତା, ବିଦ୍ୱେଷ ।

ଶଦ୍ୱରୀ, ବ. ସ୍ତ୍ରୀ. (ଶଦ୍-ବରୀ) ରଜନୀ, ରାତ୍ରି ।

ଶନି, ଶନୈଶ୍ଚର, ବ. ପୁଂ. ( ଶଣ୍-ଇ, ଶନୈସ୍-ଚର-ଅ) ସପ୍ତମଗ୍ରହ ।

ଶନୈଃ, ଶନୈଃଶନୈଃ, ଅଂ. (ଶଣ୍-ଔସ୍, କ) ଅଳ୍ପେ ଅଳ୍ପେ, କ୍ରମେକ୍ରମେ ।

ଶପଥ, ବ. ପୁଂ. (ଶପ୍-ଅଥ) ପ୍ରତିଜ୍ଞା, ସତ୍ୟାବଧାରଣ; ତିରସ୍କାର, ଭର୍ତ୍ସନା, ଗାଳି ।

ଶପ୍ତ, ବଂ. (ଶପ୍-ତ) ଶାପଗ୍ରସ୍ତ, ଅଭିଶପ୍ତ । ବ. ନ. ଅଙ୍ଗୀକାର ।

ଶଫ, ବ. ପୁଂ. ନ. ପଶ୍ୱାଦିର ଖୁର, ବୃକ୍ଷମୂଳ ।

ଶଫରାଧିପ, ବ. ପୁଂ. ( ଶଫର-ଅଧିପ ) ଇଲିଶି, ମାଛ ।

ଶଫରୀ, ବ. ସ୍ତ୍ରୀ. ( ଶଫ-ରା-ଅ-ଈ ) ପ୍ରୋଷ୍ଠୀ, କେରାଣ୍ଡିମାଛ ।

ଶଫେଦ, ବ. ( ଯାବନିକ ) ଶ୍ୱେତବର୍ଣ୍ଣ । ବଂ. ଧୋବଲ, ଶ୍ୱେତବର୍ଣ୍ଣବିଶିଷ୍ଟ ।

ଶବଳ, ବଂ. (ଶବ୍-ଅଳ) ନାନାବର୍ଣ୍ଣଯୁକ୍ତ । ବ. ପୁଂ. ନାନାବର୍ଣ୍ଣ ।

ଶବ୍ଦ, ବ. ପୁଂ. ( ଶବ୍ଦ-ଅ ) ଶ୍ରବଣେନ୍ଦ୍ରିୟଗ୍ରାହ୍ୟ ପଦାର୍ଥ, ଧ୍ୱନି; ବ୍ୟକ୍ତିର ହିତ ନାମ; ନାମ; ଯଶଃ ।

ଶବ୍ଦକୋଷ, ବ. ପୁଂ. ( Dictionary ) (ଶବ୍ଦ-କୋଷ) ଅଭିଧାନ, ଶବ୍ଦାର୍ଥପ୍ରକାଶକ ଗ୍ରନ୍ଥ ।

ଶବ୍ଦଗ୍ରହ,ବ.ପୁଂ. (ଶବ୍ଦ-ଗ୍ରହ) ଶ୍ରବଣେନ୍ଦ୍ରିୟ, କର୍ଣ୍ଣ; ଶବ୍ଦର ଜ୍ଞାନ ।

ଶବ୍ଦଭେଦୀ, ବ. ପୁଂ. ( ଶବ୍ଦ-ଭେଦିନ୍ ) ଅର୍ଜୁନ, ଶବ୍ଦାନୁସାରେ ଲକ୍ଷ୍ୟକାରୀ ବାଣବିଶେଷ ।

ଶବ୍ଦଶକ୍ତି, ବ. ସ୍ତ୍ରୀ. ( ଶବ୍ଦ-ଶକ୍ତି ) ଶବ୍ଦର ଅର୍ଥବୋଧକ ବୃତ୍ତି ।

ଶବ୍ଦଶାସ୍ତ୍ର, ବ. ନ. ବ୍ୟାକରଣାଦି ଶାସ୍ତ୍ର ।

ଶବ୍ଦାଧିଷ୍ଠାନ, ବ. ନ. (ଶବ୍ଦ-ଅଧିଷ୍ଠାନ) ଶ୍ରୋତ୍ର, କର୍ଣ୍ଣ ।

ଶବ୍ଦାନୁଶାସନ, ବ. ନ. ( ଶବ୍ଦ-ଅନୁଶାସନ ) ବ୍ୟାକରଣ ଶାସ୍ତ୍ର ।

ଶବ୍ଦାୟମାନ, ବଂ. (ଶବ୍ଦ-ଅୟ-ମାନ) ଶବ୍ଦକାରୀ, ଯେ ଶବ୍ଦ କରୁଅଛି ।

ଶବ୍ଦିତ, ବଂ. (ଶବ୍ଦ-ତ) ଧ୍ୱନିତ,କୃତଶବ୍ଦ; ଆହୂତ ।

ଶମ୍, ଅଂ. (ଶୀ-ଡମ୍) କଲ୍ୟାଣ; ସୁଖ ।

ଶମ, ବ. ପୁଂ. ( ଶମ୍-ଅ ) ଶାନ୍ତି, ନିରୁପଦ୍ରବ, ଅନ୍ତଃକରଣର ସ୍ଥିରତା, ଅନ୍ତରିନ୍ଦ୍ରିୟ ନିଗ୍ରହ; ପାଣି; ଉପଚାର; ମନଃସଂଯମ; କ୍ଷମା; ମୋକ୍ଷ ନିବୃତ୍ତି; ତିରସ୍କାର; ହସ୍ତ ।

ଶମକ,ବଂ. (ଶମ୍-ଅକ) ଶମୟିତା,ଶାନ୍ତିକାରକ ;

ଶମତା, ବ. ସ୍ତ୍ରୀ. ( ଶମ-ତା ) ଶାନ୍ତି, ଉପଶମ, ନିବୃତ୍ତି ।

ଶମନ, ବ. ନ. (ଶମ୍-ଅନ) ଯଜ୍ଞାର୍ଥ ପଶୁବଧ; ମନଃଶାନ୍ତି, ଉପଶମ; ହିଂସା, ଦ୍ୱେଷ; ତିରସ୍କାର; ଶାପ; ଚର୍ବଣ; ଅଘାତ; ବଧ; ଦମନ । ପୁଂ. କୃତାନ୍ତ, ଯମ । ନୀ-ସ୍ତ୍ରୀ. ରାତ୍ରି ।

ଶମନସ୍ୱସା, ବ. ସ୍ତ୍ରୀ. ( ଶମନ-ସ୍ୱସୃ ) ଯମୁନାନଦୀ, କାଳନ୍ଦୀ ।

ଶମନୀଷଦ୍, ବ. ପୁଂ. ( ଶମନୀ-ସଦ୍ ) ନିଶାଚର, ରାକ୍ଷସ ।

ଶମୟିତା, ବଂ. (ଶମ-ଇ-ତୃ ) ନିବାରକ,ଦମନକାରକ; ବିନାଶକ ।

ଶମାନ୍ତକ, ବ. ପୁଂ. ( ଶମ-ଅନ୍ତକ ) କାମଦେବ, କନ୍ଦର୍ପ ।

ଶମାର୍ଥୀ, ବିଂ. ( ଶମ-ଅର୍ଥିନ୍ ) ଶାନ୍ତିପ୍ରାର୍ଥୀ ।

ଶମି, ଶମୀ, ବ. ସ୍ତ୍ରୀ. ( ଶମ୍-ଇ, ଈ ) ସ୍ୱନାମ-ପ୍ରସିଦ୍ଧ ବୃକ୍ଷବିଶେଷ ।

ଶମିତ, ବିଂ. (ଶମ୍-ଇତ) ଦମିତ; ବିନାଶିତ ।

ଶମିରୋହ, ଶମୀରୋହ, ବ. ପୁଂ. ( ଶମି, ଶମୀ-ରୋହ ) ଶିବ, ମହାଦେବ ।

ଶମୀ, ବିଂ. ( ଶମ୍-ଇନ୍ ) ଶମଗୁଣବିଶିଷ୍ଟ, ଶାନ୍ତ; ସଂଯମୀ, ଧୀର ।

ଶମୀକ, ବ. ପୁଂ. ( ଶମ୍-ଈକନ୍ ) ମୁନିବିଶେଷ, ଶୃଙ୍ଗୀ ମୁନିଙ୍କ ପିତା,ରାଜା ପରୀକ୍ଷିତ ଏହି ମୁନିଙ୍କ ଗଳଦେଶରେ ମୃତସର୍ପ ପ୍ରଦାନ କରିଥିଲେ ।

ଶମୀଗର୍ଭ, ବ. ପୁଂ. ( ଶମୀ-ଗର୍ଭ ) ବ୍ରାହ୍ମଣ; ଅଗ୍ନି ।

ଶମୀପତ୍ରା, ବ. ସ୍ତ୍ରୀ. ଲଜ୍ଜାଳୁଲତା, ଲାଜକୁଳିଗଛ ।

ଶମ୍ପା, ବ. ସ୍ତ୍ରୀ. (ଶମ୍-ପା-ଅ) ବିଦ୍ୟୁତ୍, ତଡ଼ିତ୍ ।

ଶମ୍ବ, ବ. ପୁଂ. (ଶମ୍ବ-ଅ) ଅଶନି, ବଜ୍ର; ଦରିଦ୍ର; ଦ୍ୱିତୀୟବାର କର୍ଷଣ । ବିଂ. ଭାଗ୍ୟବାନ୍, ସୌଭାଗ୍ୟଶାଳୀ; ଶୁଭାନ୍ୱିତ । (ବଜ୍ର ଅର୍ଥରେ) ଯଥା—

ହାଣି ବନେ ଶମ୍ବ ସଦୃଶ କଳମ୍ବ ଭୂମିକି ଏକା ଅଠନ୍ତି । ବ. ଚ.

ଶମ୍ବର, ବ. ପୁଂ. (ଶମ୍ବ-ଅର)ଅସୁରବିଶେଷ;ଯୁଦ୍ଧ; ଶ୍ରେଷ୍ଠ; ଅର୍ଜୁନବୃକ୍ଷ । ନ. ଜଳ; ଧନ ।

ଶମ୍ବରସୂଦନ, ବ. ପୁଂ. ( ଶମ୍ବର-ସୂଦନ ) କାମ-ଦେବ, କନ୍ଦର୍ପ, ମଦନ ।

ଶମ୍ବରାରି, ବ. ପୁଂ. (ଶମ୍ବର-ଅରି) କନ୍ଦର୍ପ ।

ଶମ୍ବଳ, ବ. ପୁଂ. ନ. ( ଶମ୍ବ୍-ଅଳ ) ପାଥେୟ; କୂଳ; ଗର୍ବ ।

ଶମ୍ବୁ, ଶମ୍ବୂ, ଶମ୍ବୁକ, ଶମ୍ବୂକ, ବ. ପୁଂ. ସ୍ତ୍ରୀ. (ଶମ୍-ଉ, ଊ, ଶମ୍-ଉକ, ଊକ) ଜଳଜନ୍ତୁ-ବିଶେଷ, ଶାମୁକ; ଗଜକୁମ୍ଭାଗ୍ର;ଶଙ୍ଖ;କ୍ଷୁଦ୍ରଶଙ୍ଖ ।

ଶମ୍ବଳୀ, ବ.ସ୍ତ୍ରୀ.(ଶମ୍-ବଲ୍-ଅ-ଈ)ଦୂତୀ, କୁଟ୍ଟିନୀ। ଯଥା—

ଧନଜନଦଳଗଣ ଶମ୍ବଳୀଶୋଭିତ·
ସବସ୍ତ୍ର, ପାଣ୍ଡୁର ଶକ୍ତ ଶରଦଭ୍ର ଯଥା । ମ. ଯ.

ଶମ୍ଭୁ, ବ. ପୁଂ. (ଶମ୍-ଭୂ-ଉ) ଶିବ, ମହାଦେବ; ବ୍ରହ୍ମା; ବିଷ୍ଣୁ; ବୁଦ୍ଧ; ଜୈନାର୍କ

ଶମ୍ଭୁପ୍ରିୟା, ବ. ସ୍ତ୍ରୀ. ଆମଳକୀ; ଦୁର୍ଗା ।

ଶୟ, ବ. ପୁଂ. ( ଶୀ-ଅ ) କର, ହସ୍ତ; ଶୟନ, ନିଦ୍ରା, ଶଯ୍ୟା; ସର୍ପ; ପଣ । ବିଂ. ଶୟନକାରୀ ।

ଶୟତାନ, (ଯାବନିକ) ଭୂତରାଜ; ଦୁଷ୍ଟ ।

ଶୟଥ, ବ. ପୁଂ. (ଶୀ-ଅଥ) ଅଜଗର ସର୍ପ;ମୃତ୍ୟୁ; ବରାହ । ବିଂ. ନିଦ୍ରାଳୁ ।

ଶୟନ, ବ. ନ. ( ଶୀ-ଅନ ) ନିଦ୍ରା; ସ୍ତ୍ରୀସଙ୍ଗ, ମୈଥୁନ; ଶଯ୍ୟା ।

ଶୟନୀୟ, ଶୟନୀୟକ,ବ.ନ. (ଶୟନ-ଅନୀୟ, କ) ଶୟନର ସ୍ଥାନ, ଶଯ୍ୟା । ବିଂ. ଶୟନଯୋଗ୍ୟ ।

ଶୟାନ, ବିଂ. ( ଶୀ-ଆନ ) ନିଦ୍ରିତ, ଯେ ଶୟନ କରିଅଛି ।

ଶୟାଳୁ, ବିଂ. ( ଶୀ-ଆଳୁ ) ନିଦ୍ରାଳୁ, ସର୍ବଦା ନିଦ୍ରାଶୀଳ । ବ. ପୁଂ. ଅଜଗର ସର୍ପ; କୁକ୍କୁର; ଶୃଗାଳ ।

ଶୟିତ, ବିଂ. ( ଶୀ-ତ ) ନିଦ୍ରିତ, ସୁପ୍ତ ।

ଶଯ୍ୟା, ବ. ସ୍ତ୍ରୀ. (ଶୀ-ଯ) ତଳ୍ପ, ବିଛଣା; ଖଟ୍ୱା ।

ଶର, ସର, ବ. ପୁଂ. (ଶୃ-ଅ) ବାଣତୃଣ; ବାଣ, କାଣ୍ଡ । ନ. ଜଳ ।

ଶରଜ, ବ. ନ. ( ଶର-ଜ ) ସଦ୍ୟଜାତ ଘୃତ; କାର୍ତ୍ତିକେୟ ।

ଶରଜନ୍ମା, ବ. ପୁଂ. (ଶର-ଜନ୍ମନ୍) କାର୍ତ୍ତିକେୟ ।

ଶରଣ, ବ. ନ. (ଶୃ-ଅନ) ଗୃହ; ରକ୍ଷକ; ରକ୍ଷା; ଆଶ୍ରୟ; ବଧ, ବିନାଶ ।

ଶରଣାଗତ, ବିଂ. (ଶରଣ-ଆଗତ) ଶରଣାପନ୍ନ, ରକ୍ଷାର୍ଥୀ ।

ଶରଣାପନ୍ନ, ବି. ( ଶରଣ-ଆପନ୍ନ ) ଆଶ୍ରିତ, ରକ୍ଷାର୍ଥୀ ।

ଶରଣାର୍ଥୀ, ବିଂ. ( ଶରଣ-ଅର୍ଥୀ ) ରକ୍ଷାପ୍ରାର୍ଥକ, ଆଶ୍ରୟପ୍ରାର୍ଥୀ ।

ଶରଣି, ଶରଣୀ, ବ. ସ୍ତ୍ରୀ. ( ଶୃ-ଅନି ) ପଥ, ରାସ୍ତା; ପ୍ରସାରଣୀ ।

ଶରଣ୍ୟ, ବିଂ. (ଶରଣ-ଯ) ରକ୍ଷାକର୍ତ୍ତା; ରକ୍ଷଣୀୟ; ରକ୍ଷଣସମର୍ଥ । ନ. ଆଶ୍ରୟ; ଗୃହ; ରକ୍ଷଣ; ଆଘାତ; କ୍ଷତ ।

ଶରତ୍‌କାମୀ, ବ. ପୁଂ. (ଶରଦ୍-କାମୀ) କୁକୁର ।
ଶରଦ୍, ବ. ସ୍ତ୍ରୀ. ( ଶୃ-ଅଦ୍ ) ଋତୁବିଶେଷ; ଆଶ୍ୱିନ, କାର୍ତ୍ତିକ ଏହି ଦୁଇ ମାସ ।
ଶରଦନ୍ତ, ବ. ପୁଂ. (ଶରଦ୍-ଅନ୍ତ) ହେମନ୍ତଋତୁ ।
ଶରଦଜ, ବଂ. ( ଶରଦ-ଜ ) ଶରତ୍‌କାଳୀନ, ଶରତ୍‌କାଳରେ ଉତ୍ପନ୍ନ ।
ଶରଧାବାଲି, ବ. (ଶରଧା ଓ ବାଲୁକା ଶବ୍ଦଜ) ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ବଡ଼ଦାଣ୍ଡର ଧୂଳି ।
ଶରଧି, ବ. ପୁଂ. (ଶର-ଧା-ଇ) ଶରାଧାର, ତୂଣ ।
ଶରଭଙ୍ଗ, ବ. ପୁଂ. ମୁନିବିଶେଷ ।
ଶରଭୂ, ବ. ପୁଂ. ( ଶର-ଭୂ-୦ ) କାର୍ତ୍ତିକେୟ, ଶରଜନ୍ମା ।
ଶରମ, ବ. (ଯାବନିକ) ଲଜ୍ଜା, ବ୍ରୀଡା ।
ଶରଯୁ,ଶରଯୂ, ବ. ସ୍ତ୍ରୀ. (ଶୃ-ଅଯୁ) ନଦୀବିଶେଷ ।
ଶରଳ, ବଂ. (ଶୃ-ଅଳ) ଅକପଟହୃଦୟ, ସରଳ, ଅବକ୍ର । ବ. ପୁଂ. ଦେବଦାରୁ ଗଛ ।
ଶରା, ବ. ( ଶରାବ ଶବ୍ଦଜ ) କ୍ଷୁଦ୍ରକାୟ ମୃଣ୍ମୟ ପାତ୍ରବିଶେଷ ।
ଶରାଶ୍ରୟ, ବ. ପୁଂ. (ଶର-ଆଶ୍ରୟ) ଶରଧି, ତୂଣ ।
ଶରାସନ,ବ. ନ. (ଶର-ଅସନ) କାର୍ମୁକ,ଧନୁକ ।
ଶରାସ୍ୟ, ବ. ନ. ଧନୁଃ ।
ଶରୀର, ବ. ନ. ( ଶୃ-ଈରନ୍ ) ଦେହ, ବିଗ୍ରହ, କଳେବର ।
ଶରୀରଜ, ବ. ପୁଂ. (ଶରୀର-ଜ) କାମ, କନ୍ଦର୍ପ; ପୁତ୍ର; ରୋଗ । ବଂ. ଦେହଜାତ,ଶରୀରୋତ୍ପନ୍ନ ।
ଶରୀରୀ, ବ. ପୁଂ. (ଶରୀର-ଇନ୍) ଆତ୍ମା; ଜୀବାତ୍ମା; ଶରୀରବିଶିଷ୍ଟ, ଦେହୀ, ପ୍ରାଣୀ, ଜୀବ; ମନୁଷ୍ୟ; ଜନ୍ତୁ ।
ଶର୍କରା, ବ. ସ୍ତ୍ରୀ. (ଶୃ-କରନ୍-ଆ) ଚିନି; ଖଣ୍ଡ ।
ଶର୍କରୀ, ବ. ସ୍ତ୍ରୀ. ମେଖଳା; ଲେଖନୀ, କଲମ ।
ଶର୍ମଦ, ବଂ. (ଶର୍ମନ୍-ଦ) ସୁଖଦାୟକ । ବ. ପୁଂ. ବିଷ୍ଣୁ ।
ଶର୍ମା, ବ. ପୁଂ. (ଶୃ-ମନ୍) ବ୍ରାହ୍ମଣଙ୍କ ଉପନାମ । ର୍ମ, ନ. ସୁଖ, ସ୍ୱଚ୍ଛନ୍ଦ, କଲ୍ୟାଣ । ବଂ. ସୁଖୀ ।
ଶର୍ଯ୍ୟା, ବ. ସ୍ତ୍ରୀ. (ଶୃ-ଯ-ଆ) ରଜନୀ, ରାତ୍ରି ।
ଶର୍ବ, ବ. ପୁଂ. (ଶ-ର୍ବ) ଶିବ, ମହାଦେବ ।
ଶର୍ବର, ବ. ପୁଂ. (ଶର୍ବ-ଅର) କାମଦେବ । ନ. ଅନ୍ଧକାର ।
ଶର୍ବରୀ, ବ. ସ୍ତ୍ରୀ. (ଶର୍ବ-ବର-ଈ) ରାତ୍ରି; ନାରୀ; ହରିଦ୍ରା ।
ଶର୍ବାଣୀ, ବ. ସ୍ତ୍ରୀ. (ଶର୍ବ-ଆଣୀ) ପାର୍ବତୀ,ଭବାନୀ ।
ଶଲ, ବ. ପୁଂ. (ଶଲ୍-ଅ) ବ୍ରହ୍ମା; ଉଷ୍ଟ୍ର; କୁନ୍ତ-ଅସ୍ତ୍ର; ସ୍ୱନାମପ୍ରସିଦ୍ଧ ଅସ୍ତ୍ରବିଶେଷ; ଝିଙ୍କକାଠି ।
ଶଲକ, ବ. ପୁଂ. (ଶଲ୍-ଅକ) ଲୂତା, ମାକଡ଼ସା ।
ଶଲଭ, ବ. ପୁଂ. (ଶଲ୍-ଅଭର୍) ଛ ପ୍ରକାର ଈତି-ଅନ୍ତର୍ଗତ ଈତିବିଶେଷ, ପତଙ୍ଗବିଶେଷ, ପଙ୍ଗପାଳ ନାମକ ଝିଣ୍ଟିକା ।
ଶଲରା, ବ. (ଦେଶଜ) କଣ୍ଟାବୃକ୍ଷବିଶେଷ ।
ଶଲଶଲ, ବ. (ଦେଶଜ) ଗଲଗଲ ।
ଶଲଳ, ବ. ନ. (ଶଲ୍-ଅଳ) ଝିଙ୍କକାଠି ।
ଶଳା, ବ. (ଶ୍ୟାଳ ଶବ୍ଦଜ) ଭାର୍ଯ୍ୟାର ଭାଇ ।
ଶଳାକା, ବ. ସ୍ତ୍ରୀ. ( ଶଲ-ଅକ-ଆ ) କ୍ଷୁଦ୍ରଯଷ୍ଟି; ନଳ; ଅଙ୍କୁର; ବାଣ; ତୂଳ ପ୍ରଭୃତି; ଅସ୍ଥି, ହାଡ; ଶଲ୍ୟ, ଶେଳ ।
ଶଲ୍କ, ବ. ନ. (ଶଲ୍-କ) ବଲ୍କଳ, ମାଛକାତି ।
ଶଲ୍ୟ, ବ. ପୁଂ. ( ଶଲ୍-ଯ ) ମଦ୍ରଦେଶର ନୃପ-ବିଶେଷ, ଯୁଧିଷ୍ଠିରଙ୍କ ମାତୁଳ, ସୀମା । ପୁଂ. ନ. ଶଙ୍କୁ, ଶଲାକା, ଶେଳ । ନ. ବାଣ; ଲୌହଶାବଳ; ବିଷ; ଦୁର୍ବାକ୍ୟ; ଅସ୍ଥି; କଣ୍ଟକ ।
ଶଲ୍ୟାରି, ବ. ପୁଂ. (ଶଲ୍ୟ-ଅରି) ରାଜା ଯୁଧିଷ୍ଠିର ।
ଶଲ୍ଲ, ବ. ପୁଂ. ( ଶଲ୍-ଲ ) ଭେକ । ନ. ତ୍ୱକ୍, କାତି ।
ଶଲ୍ଲକୀ, ବ. ସ୍ତ୍ରୀ. ( ଶଲ୍ଲକ-ଈ ) ଗଜାରୁ, ଝିଙ୍କପକ୍ଷୀ । ଯଥା—

ଝଟେଳ ଶଳାକା ଯେହ୍ନେ ଝୁଟିତ ଶଲ୍ଲକୀ । ମ. ଯା.

ଶବ, ବ. ପୁଂ. ନ. (ଶବ୍-ଅ) ମୃତଶରୀର, ମଡ଼ା । ନ. ଜଳ ।

ଶବର, ପୁଂ. } ବି. (ଶବ-ଋ-ଅ) କିରାତ, ବ୍ୟାଧ ।
ଶବରୀ, ସ୍ତ୍ରୀ. } ପୁଂ. ଶିବ; ହସ୍ତ; ଜଳ; ଶାସ୍ତ୍ରବିଶେଷ ।

ଶବଳ, ବିଂ. (ଶବ୍-ଅଳ) କର୍ବୁରବର୍ଣ୍ଣ, ନାନାବର୍ଣ୍ଣଯୁକ୍ତ । ପୁଂ. ନାନାବର୍ଣ୍ଣ ।

ଶଶ, ଶଶକ, ବି. ପୁଂ. (ଶଶ୍-ଅ, ଅକ) ଜନ୍ତୁବିଶେଷ, ଚନ୍ଦ୍ରର ଲାଞ୍ଛନ; ଚତୁର୍ବିଧ ପୁରୁଷର ଅନ୍ତର୍ଗତ ଏକପ୍ରକାର ପୁରୁଷ ।

ଶଶଧର, ଶଶଭୃତ୍, ବି. ପୁଂ. ( ଶଶ-ଧର-ଅ, ଭୃତ୍-୦) ଚନ୍ଦ୍ର, ମୃଗାଙ୍କ; କର୍ପୂର ।

ଶଶବିନ୍ଦୁ, ବି. ପୁଂ. ( ଶଶ-ବିନ୍ଦୁ ) ବିଷ୍ଣୁ; ନୃପବିଶେଷ; ଚିତ୍ରରଥର ପୁତ୍ର ।

ଶଶସ୍ଥଳୀ, ବି. ସ୍ତ୍ରୀ. (ଶଶ-ସ୍ଥଳ) ଗଙ୍ଗା ଯମୁନାର ମଧ୍ୟବର୍ତ୍ତୀ ଦେଶ, ଦୋଆବ ।

ଶଶିକଳା, ବି. ସ୍ତ୍ରୀ. ପଞ୍ଚଦଶାକ୍ଷର ପାଦ ଛନ୍ଦବିଶେଷ; ଚନ୍ଦ୍ରର ଅଂଶ ।

ଶଶିକାନ୍ତ, ବି. ନ. କୁମୁଦ; ଚନ୍ଦ୍ରକାନ୍ତମଣି ।

ଶଶିପ୍ରଭ, ବି. ନ. (ଶଶି-ପ୍ରଭା) କୁମୁଦ; ମୁକ୍ତା । ବିଂ. ଶୁଭ୍ରବର୍ଣ୍ଣ ।

ଶଶିଭୂଷଣ, ଶଶିଭୃତ୍, ଶଶିଶେଖର, ବି. ପୁଂ. (ଶଶି-ଭୂଷଣ, ଭୃତ୍, ଶେଖର) ଶିବ, ଚନ୍ଦ୍ରଚୂଡ଼ ।

ଶଶିବଦନା, ବି. ସ୍ତ୍ରୀ. (ଶଶି-ବଦନ) ଚନ୍ଦ୍ରବଦନା, ଚନ୍ଦ୍ରମୁଖୀ, ଚନ୍ଦ୍ରତୁଲ୍ୟ ମୁଖବିଶିଷ୍ଟା ସ୍ତ୍ରୀଲୋକ ।

ଶସ୍ତ, ବିଂ. ( ଶନ୍ସ୍-ତ ) ସୁଖୀ; କଲ୍ୟାଣଯୁକ୍ତ; ପ୍ରଶସ୍ତ; ଉତ୍କୃଷ୍ଟ; ହତ । ବି. ନ. ସୁଖ; ଶରୀର; କଲ୍ୟାଣ ।

ଶସ୍ତକ, ବି. ନ. (ଶସ୍ତ-କ) ଅଙ୍ଗୁଳିତ୍ରାଣ, ଦସ୍ତାନା ।

ଶସ୍ତା, ବିଂ. (ଦେଶଜ) ସୁମୂଲ୍ୟ, ସୁଲଭ୍ୟ, ଅଳ୍ପମୂଲ୍ୟ ।

ଶସ୍ତ୍ର, ବି. ନ. (ଶସ୍-ତ୍ର) ଆୟୁଧ, ଅସ୍ତ୍ର, ଯାହା ହସ୍ତରେ ଧରି ପ୍ରହାର କରାଯାଏ ତାହାର ନାମ ଶସ୍ତ୍ର ।

ଶସ୍ତ୍ରକ, ବି. ନ. (ଶସ୍ତ୍ର-କ) ଲୌହ, ଲୁହା ।

ଶସ୍ତ୍ରଧର, ଶସ୍ତ୍ରଭୃତ୍, ବି. ପୁଂ. (ଶସ୍ତ୍ର-ଧର, ଭୃତ୍) ଶସ୍ତ୍ରଧାରୀ ପୁରୁଷ । ବିଂ. ଅସ୍ତ୍ରଧାରୀ, ଆୟୁଧଯୁକ୍ତ ।

ଶସ୍ତ୍ରଜୀବୀ, ଶସ୍ତ୍ରାଜୀବ, ବି. ପୁଂ. (ଶସ୍ତ୍ର-ଜୀବୀ, ଶସ୍ତ୍ର-ଆଜୀବ) ସୈନିକ ।

ଶସ୍ତ୍ରୀ, ବିଂ. ( ଶସ୍ତ୍ର-ଇନ୍ ) ଶସ୍ତ୍ରଧାରୀ । (ଶସ୍ତ୍ର-ଈ) ବି. ପୁଂ. ଅସ୍ତ୍ର, ଛୁରି ।

ଶସ୍ୟ, ବି. ନ. (ଶସ୍-ଯ) ବୃକ୍ଷାଦିର ଫଳ ମୂଳ; କୃଷିକାର୍ଯ୍ୟଦ୍ୱାରା ଉତ୍ପନ୍ନ ଧାନ୍ୟାଦି ।

ଶସ୍ୟାଦ୍, ବିଂ. (ଶସ୍ୟ-ଅଦ୍-୦) ଶସ୍ୟଭକ୍ଷଣକାରୀ ।

ଶହର, ବି. (ଯାବନିକ) ରାଜଧାନୀ, ମହାନଗର ।

ଶାକ, ବି. ପୁଂ. ନ. (ଶାକ୍-ଅ) ବୃକ୍ଷର ପତ୍ରାଦି, ପତ୍ର ପୁଷ୍ପ ବୃନ୍ତ ମୂଳ ପ୍ରଭୃତି ।

ଶାକମ୍ଭରୀ, ବି. ସ୍ତ୍ରୀ. ( ଶାକ-ଭୃ-ଅ-ଈ ) ଦୁର୍ଗା, ପାର୍ବତୀ ।

ଶାକଯୋଗ୍ୟ, ବି. ପୁଂ. ଧାନ୍ୟକ ।

ଶାକର, ବି. ( ଶର୍କରା ଶବ୍ଦଜ ) ଚିନି, ନବାତ; ବ୍ୟଞ୍ଜନବିଶେଷ ।

ଶାକବିଲ୍ୱ, ବି. ପୁଂ. ବାର୍ତ୍ତାକୁ, ବାଇଗଣ ।

ଶାକାଙ୍ଗ, ବି. ନ. (ଶାକ-ଅଙ୍ଗ) ଗୋଲମରିଚ ।

ଶାକୁନ୍ତଳେୟ, ବି. ପୁଂ. ( ଶକୁନ୍ତଳା-ଏୟ ) ଶକୁନ୍ତଳାଙ୍କ ପୁତ୍ର, ଭରତରାଜ ।

ଶାକୁଲିକ, ବି. ପୁଂ. ( ଶକୁଲ=ମତ୍ସ୍ୟ-ଇକ ) ମତ୍ସ୍ୟଜୀବୀ, ଧୀବର ।

ଶାକ୍ତ, ବି. ପୁଂ. ( ଶକ୍ତି-ଅ ) ଶକ୍ତିର ଉପାସକ, ତାନ୍ତ୍ରିକ; ସମ୍ପ୍ରଦାୟବିଶେଷ ।

ଶାକ୍ତିକ, ବି. ପୁଂ. (ଶକ୍ତି-ଇକ) ଶକ୍ତିଶସ୍ତ୍ରଧାରୀ ।

ଶାକ୍ୟ, ଶାକ୍ୟମୁନି, ଶାକ୍ୟସିଂହ, ବି. ପୁଂ. (ଶାକ-ଯ, ଶାକ୍ୟ-ମୁନି, ସିଂହ) ବୁଦ୍ଧ, ବୌଦ୍ଧମତପ୍ରବର୍ତ୍ତୟିତା ମୁନି ।

ଶାଙ୍କୋଳି, ବି. (ଶୃଙ୍ଖଳ ଶବ୍ଦଜ) ବନ୍ଧନ, ଶୃଙ୍ଖଳ ପ୍ରଭୃତିର ବନ୍ଧନ । ଯଥା—

> ଶାଙ୍କୋଳି ବାଳି ଝଲକା ସ୍ୱଭାବ,
> ସଦମ୍ଭ ଜନ ମାନସକୁ ଦେବ ସେ । ସୁ. ପ.

ଶାଖ, ବି. ପୁଂ. (ଶାଖ୍-ଅ) କାର୍ତ୍ତିକେୟ । ଖା, ସ୍ତ୍ରୀ. ବୃକ୍ଷର ଅଙ୍ଗବିଶେଷ, ବିଟପ, ଡାଳ; ବେଦର ଅଂଶବିଶେଷ; ଏକଦେଶ; ବାହୁ; ଗ୍ରନ୍ଥ-ପରିଚ୍ଛେଦ; ଅନ୍ତିକ ।

ଶାଖାଗ୍ର, ବି. ନ. ଅଙ୍ଗୁଳି; ବୃକ୍ଷାଗ୍ର ।
ଶାଖାମୃଗ, ବି. ପୁଂ. (ଶାଖା-ମୃଗ) କପି, ବାନର ।
ଶାଖାରସ, ବି. ପୁଂ. (ଶାଖା-ରସ) ମକରନ୍ଦ, ପୁଷ୍ପରସ ।
ଶାଖୀ, ବି. ପୁଂ. ( ଶାଖା-ଇନ୍ ) ବୃକ୍ଷ, ଗଛ; ବେଦ; ନୃପବିଶେଷ । ବିଂ. ଶାଖାଯୁକ୍ତ ।
ଶାଗ, ବି. ( ଶାକ ଶବ୍ଦଜ ) ବୃକ୍ଷର ପତ୍ରାଦି, ମୂଳ ପ୍ରଭୃତି ।
ଶାଗୁଆ, ବି. ( ଶାକ ଶବ୍ଦଜ ) ଶାକର ବର୍ଣ୍ଣ ପରି ବର୍ଣ୍ଣବିଶିଷ୍ଟ ।
ଶାଟ, ବି. (ଦେଶଜ) ଶଗଡ଼ଦଣ୍ଡାର ଶେଷ ଫଳ ।
ଶାଟୀ, ବି. ସ୍ତ୍ରୀଲୋକର ପରିଧେୟ ବସ୍ତ୍ର । ଯଥା—

ଷଃଠାରୁ ପାଃ ଶାଟୀ ବସ୍ତ୍ରଃ ପାଇ ।

ଶାଠ୍ୟ, ବି. ନ. ( ଶଠ-ଜ ) ଧୂର୍ତ୍ତତା, ଶଠତା ।
ଶାଢ଼ୀ, ବି. (ଶାଟୀ ଶବ୍ଦଜ) ସ୍ତ୍ରୀଲୋକର ପରିଧେୟ ବସ୍ତ୍ର । ଯଥା—

ଶାଢ଼ୀ କାହିଁ ଦେବ ଦେବଟି ହେ,
ସଙ୍କୋଚେ ମୋ ପ୍ରାଣ ଯିବଟି ହେ । ବ. ଡ.

ଶାଣ, ବି. ପୁଂ. (ଶୋ-ଣ) କଷଣପ୍ରସ୍ତର, କଷ୍ଟି-ପଥର, ଘର୍ଷଣ ପଥର; ଶାଣ; କରତ । ନ. ଶଣସୂତ୍ରନିର୍ମିତ ବସ୍ତ୍ର ।
ଶାଣିତ, ବିଂ. (ଶାଣ-ଇତ) ତୀକ୍ଷ୍ଣୀକୃତ, ଧାରୁଆ ।
ଶାଣୀ, ବି. ସ୍ତ୍ରୀ. (ଶାଣ-ଈ) ତାମ୍ବୁ; ଇଙ୍ଗିତ, ଇସାରା ।
ଶାଣ୍ଡିଲ୍ୟ, ବି. ପୁଂ. (ଶାଣ୍ଡିଲ-ଯ) ଗୋତ୍ରକାରକ ମୁନି-ବିଶେଷ; ବିଲ୍ୱବୃକ୍ଷ; ଅଗ୍ନିର ମୂର୍ତ୍ତିବିଶେଷ ।
ଶାତ, ବିଂ. ( ଶୋ-ତ ) କ୍ଷୀଣ, ଦୁର୍ବଳ, କୃଶ; ସରୁ; ଶାଣିତ; ସୁଖୀ; ସୁନ୍ଦର; ଦୀପ୍ତିମାନ୍, ପ୍ରଭାଶାଳୀ । ବି. ନ. ସୁଖ । ପୁଂ. ପତନ ।
ଶାତକର୍ଣ୍ଣି, ବି. ପୁଂ. ମୁନିବିଶେଷ ।
ଶାତକୁମ୍ଭ, ବି. ନ. (ଶତକୁମ୍ଭ-ଅ) ସୁବର୍ଣ୍ଣ, ସୁନା ।
ଶାତପତ୍ରକ, ବି. ପୁଂ. ଚନ୍ଦ୍ର ପ୍ରକାଶ ।
ଶାତଭୀରୁ, ବି. ପୁଂ. ମଦନମାଳୀ; ମଲ୍ଲିକାବିଶେଷ ।
ଶାଦ, ବି. (ଶ୍ରଦ୍ଧା ଶବ୍ଦଜ) ଆକାଂକ୍ଷା ।
ଶାଦା, ବିଂ. (ଶ୍ୱେତ ଶବ୍ଦଜ) ଶ୍ୱେତବର୍ଣ୍ଣ; ଶୁକ୍ଳ ।
ଶାଦ୍ୱଳ, ଶାଦହରିତ, ବିଂ. (ଶାଦ=ନବତୃଣ-ବଳ, ହରିତ) ନବ ତୃଣଦ୍ୱାରା ହରିଦ୍‌ବର୍ଣ୍ଣ (ସ୍ଥାନ, ପ୍ରଦେଶ) ।
ଶାନ, ବିଂ. (ଦେଶଜ) କନିଷ୍ଠ, କ୍ଷୁଦ୍ର ।
ଶାନ୍ତ, ବିଂ. (ଶମ୍-ତ) ଶମଗୁଣବିଶିଷ୍ଟ; ସୌମ୍ୟ; ଜିତେନ୍ଦ୍ରିୟ; ଶିଷ୍ଟ; ଶମତାପ୍ରାପ୍ତ, ନିବୃତ୍ତ; ମୃତ; ବର୍ଜିତ; ପରିଷ୍କୃତ; ବଶୀକୃତ; ମଳଯୁକ୍ତ ।
ଶାନ୍ତନବ, ବି. ପୁଂ. (ଶାନ୍ତନୁ-ଅ) ଶାନ୍ତନୁଙ୍କ ପୁତ୍ର, ଭୀଷ୍ମ ।
ଶାନ୍ତନୁ, ବି. ପୁଂ. (ଶଂ-ତନୁ, ଅ ସ୍ଥାନେ ଆ) ଚନ୍ଦ୍ରବଂଶୀୟ ନୃପବିଶେଷ, ପ୍ରତୀପଙ୍କର ପୁତ୍ର, ଭୀଷ୍ମଙ୍କ ପିତା ।
ଶାନ୍ତି, ବି. ସ୍ତ୍ରୀ. (ଶମ୍-ତି)ଚିତ୍ତର ସ୍ଥିରତା; ନିରୁପଦ୍ରବ; ଶମଗୁଣ; ସୌଭାଗ୍ୟ; ମୁକ୍ତି; ବିଶ୍ରାମ; ବିଘ୍ନନାଶ, ବିଘ୍ନାଦି ନିବାରଣ, ମଙ୍ଗଳ; ତୃଷ୍ଣାକ୍ଷୟ; ବିଧ୍ୱଂସ, ବିନାଶ ।
ଶାପ, ବି. ପୁଂ. (ଶପ୍-ଅ) ଅଭିସମ୍ପାତ; ଶାପ ଦେବାର; ଶପଥ ।
ଶାପିତ, ବିଂ. (ଶାପ୍-ଇ-ତ) ଭର୍ତ୍ସିତ, ନିନ୍ଦିତ ।
ଶାଫ, (ଯାବନିକ) ନିର୍ମଳ, ପରିଷ୍କାର, ପରିଚ୍ଛନ୍ନ ।
ଶାବଳ, ବି. (ଶବଳା ଶବ୍ଦଜ) ଖନନାସ୍ତ୍ରବିଶେଷ ।
ଶାବୁନ, (ଯାବନିକ) ବସ୍ତ୍ରାଦି କ୍ଷାଳନ ଓ ଗାତ୍ର ପରିଷ୍କାର କରଣାର୍ଥ ଦ୍ରବ୍ୟବିଶେଷ ।
ଶାବ୍ଦିକ, ବି. ପୁଂ. (ଶବ୍ଦ-ଇକ) ଶବ୍ଦଶାସ୍ତ୍ରବେତ୍ତା ପଣ୍ଡିତ, ବୈୟାକରଣ ।
ଶାମ, ବି. ନ. (ଶମ୍-ଅ) ମିଳନ ।
ଶାମିତ୍ର, ବି. ନ. (ଶମ୍-ଶିର୍-ଇତ୍ର) ପଶୁବଧସ୍ଥାନ, ଯଜ୍ଞ, ପଶୁବନ୍ଧନ, ଯଜ୍ଞପାତ୍ର ।
ଶାମୁକା, ବି. ( ଶାମ୍ବୁକ ଶବ୍ଦଜ ) ଜଳଶୁକ୍ତି, ଶାମୁକ ।
ଶାମ୍ବ, ବି. ପୁଂ. କୃଷ୍ଣଙ୍କର ପୁତ୍ର ।

ଶାମ୍ବରୀ, ବି. ସ୍ତ୍ରୀ. (ଶମ୍ବର-ଅ-ଈ) ଇନ୍ଦ୍ରଜାଲ ବିଦ୍ୟା, ମାୟା, କୁହୁକ । ଯଥା—
ସମ୍ମୋହିତ କରେ ମନ, ଶାମ୍ବରୀ ମାୟାରୁ ଯେଣୁ କାରଣ ମଦନ ।

ଶାମ୍ବୁକ, ଶାମ୍ବୂକ, ବି. ପୁଂ. (ଶମ୍ବୁକ, ଶମ୍ବୂକ-ଅ) ଶାମୁକା ।

ଶାମ୍ଭବ, ବି. ପୁଂ. (ଶମ୍ଭୁ-ଅ) କର୍ପୂର; ଶିବମଲ୍ଲୀ; ବିଷବିଶେଷ; ଶୈବ; ଶିବଙ୍କର ଉପାସନା; ଶମ୍ଭୁପୁତ୍ର । ସ୍ତ୍ରୀ. ପାର୍ବତୀ, ଦୁର୍ଗା । ବିଂ. ଶମ୍ଭୁସମ୍ବନ୍ଧୀୟ ।

ଶାୟକ, ବି. ପୁଂ. ( ଶୋ-ଅକ ) ଶର, ବାଣ, ଖଡ୍ଗ ।

ଶାୟିତ, ବିଂ. (ଶାୟି-ତ) ନିଦ୍ରିତ; ପାତିତ ।

ଶାର, ବିଂ. (ଶୃ-ଅ) କୃଷ୍ଣ, ରକ୍ତ, ଶୁକ୍ଳ ଏହି ତିନ ବର୍ଣ୍ଣବିଶିଷ୍ଟ; ଶବଳ; ପୀତ ନୀଳ ମିଶ୍ର-ବର୍ଣ୍ଣଯୁକ୍ତ; ନାନାବର୍ଣ୍ଣ । ବି. ପୁଂ. ହରିତବର୍ଣ୍ଣ; ପୀତବର୍ଣ୍ଣ; ବାୟୁ; ପାଶକ; ହିଂସା, ଦ୍ୱେଷ ।

ଶାରଙ୍ଗ, ବି. ପୁଂ. (ଶାର-ଗମ୍-ଅ) ମୃଗ; ହସ୍ତୀ; ଚାତକପକ୍ଷୀ; ଭ୍ରମର; ମୟୂର ।

ଶାରଙ୍ଗୀ, ବି. ସ୍ତ୍ରୀ. ବାଦ୍ୟଯନ୍ତ୍ରବିଶେଷ ।

ଶାରଦ, ବି. ପୁଂ. (ଶରଦ୍-ଅ) କାଳ; ବକୁଳ; ପୀତମୁଦ୍ଗ; ରୋଗ । ନ. ଶ୍ୱେତପଦ୍ମ; ଶସ୍ୟ । ବିଂ. ଶରତ୍କାଳୀନ; ନୂତନ; ବିନୀତ; ଅପ୍ରତିଭ; ପ୍ରଶସ୍ତ ।

ଶାରଦା, ବି. ସ୍ତ୍ରୀ. ( ଶରଦ୍-ଅ-ଆ ) ସରସ୍ୱତୀ, ବାଗ୍‌ଦେବୀ; ଦୁର୍ଗା; ବୀଣାବିଶେଷ ।

ଶାରଦୀ, ବି. ସ୍ତ୍ରୀ. (ଶରଦ୍-ଅ-ଈ) କୋଜାଗର ପୂର୍ଣ୍ଣିମା ।

ଶାରଦୀୟ, ବିଂ. (ଶରଦ୍-ଈୟ) ଶରତ୍କାଳୀନ, ଶରତ୍କାଳସମ୍ବନ୍ଧୀୟ ।

ଶାରି, ଶାରୀ, ଶାରିକା, ବି. ପୁଂ. ( ଶୃ-ଇ, ଈ, ଇକ) ପାଶକ୍ରୀଡ଼ାର ବଳ; ପକ୍ଷିଣୀବିଶେଷ; ପ୍ରତାରଣା; ବ୍ୟବହାରବିଶେଷ; ପାଶକ; ପଟ୍ଟ; ଗୀତବିଶେଷ ।

ଶାରୀର, ବିଂ. ( ଶରୀର-ଅ ) ଶରୀରସମ୍ବନ୍ଧୀୟ; ଶରୀରରୁ ଉତ୍ପନ୍ନ । ବି. ପୁଂ. ଜୀବାତ୍ମା; ବୃଷ । ନ. ବେଦାନ୍ତସୂତ୍ର ।

ଶାରୀରତତ୍ତ୍ୱ, ଶାରୀରସ୍ଥାନ, ( Physiology ) ଶରୀରର ତତ୍ତ୍ୱନିର୍ଣ୍ଣାୟକ ଶାସ୍ତ୍ର ।

ଶାରୀରବିଧାନ, (Anatomy) ଯାବତୀୟ ସଜୀବ ପଦାର୍ଥ ଯେଉଁ ଯେଉଁ ନିୟମରେ ଅବସ୍ଥିତ କରଇ ଉତ୍ପନ୍ନ ଓ ବୃଦ୍ଧି ପ୍ରାପ୍ତ ହୁଅଇ, ସେହି ସେହି ନିୟମବିଧାୟକ ଶାସ୍ତ୍ର ।

ଶାରୀରିକ, ବିଂ. (ଶରୀର-ଇକ) ଶରୀରସମ୍ବନ୍ଧୀୟ, କାୟିକ । ବି. ପୁଂ. ଜୀବାତ୍ମା । ନ. ବେଦାନ୍ତସୂତ୍ର ।

ଶାରୁକ, ବିଂ. (ଶୃ-ଉକ) ହିଂସ୍ର, ହିଂସକ ।

ଶାର୍କ, ବି. ପୁଂ. ଶର୍କରା, ଚିନି ।

ଶାର୍ଙ୍ଗୀ, ଶାର୍ଙ୍ଗପାଣି, ବି. ପୁଂ. ( ଶାର୍ଙ୍ଗ-ଇନ୍, ପାଣି) ବିଷ୍ଣୁ; ଧନୁର୍ଦ୍ଧାରୀ ।

ଶାର୍ଦ୍ଦୂଳ, ବି. ପୁଂ. (ଶୃ-ଦୂଲର୍) ବ୍ୟାଘ୍ର; ରାକ୍ଷସ; ପକ୍ଷିବିଶେଷ; ଚିତ୍ରକ ।

ଶାର୍ବର, ବି. ନ. (ଶର୍ବରୀ-ଅ) ନିବିଡ଼ ଅନ୍ଧକାର, ଘୋର ଅନ୍ଧକାର । ବିଂ. ରାତ୍ରିକାଳୀନ, ଶର୍ବରୀସମ୍ବନ୍ଧୀୟ ।

ଶାଳ, ସାଲ, ବି. ପୁଂ. ( ଶଲ୍ କମ୍ପା ଶାଲ୍-ଅ ) ମତ୍ସ୍ୟବିଶେଷ; ନୃପବିଶେଷ, ଶାଲବାହନ ରାଜା; ପ୍ରାଚୀର, ପ୍ରାକାର; ବୃକ୍ଷ ।

ଶାଳଗ୍ରାମ, ସାଲଗ୍ରାମ, ବି. ପୁଂ. (ଶାଳ-ଗ୍ରାମ) କୀଟଚ୍ଛିଦ୍ରିତ ଚକ୍ରଯୁକ୍ତ ଗଣ୍ଡକୀସ୍ଥିତ ଶିଳାଖଣ୍ଡ-ବିଶେଷ, ବିଷ୍ଣୁଙ୍କ ମୂର୍ତ୍ତିବିଶେଷ; ଦେଶବିଶେଷ ।

ଶାଳସାର, ବି. ପୁଂ. ବୃକ୍ଷଶ୍ରେଷ୍ଠ, ହିଙ୍ଗୁ ।

ଶାଳା, ବି. ସ୍ତ୍ରୀ. (ଶାଲ୍-ଅ-ଆ) ଗୃହ, ଗୃହର ଏକ ଦେଶ; ବଡ଼ଡାଳ ।

ଶାଳାକୀ, ବି. ପୁଂ. (ଶାଲାକ-ଅ-ଇନ୍) ଅସ୍ତ୍ରଚିକିତ୍ସକ; ନାପିତ; ଶେଲଧାରୀ ।

ଶାଳାମୃଗ, ବି. ପୁଂ. (ଶାଳା-ମୃଗ) ଶୃଗାଳ, ବିଲୁଆ ।

ଶାଳି, ସାଲି, ବି. ପୁଂ. (ଶାଡ୍-ଇ, ଡ=ଳ) କଳମାଦି ଧାନ୍ୟ; ଗନ୍ଧମାର୍ଜ୍ଜାର ।

ଶାଲ୍ଲଅନା, ଶାଲ୍ଲସ୍ଥାନା, ବଂ. ( ଯାବନକ ) ବାର୍ଷିକ ।

ଶାଲପିଷ୍ଟ, ବ. ନ. (ଶାଳ-ପିଷ୍ଟ) ସ୍ଫଟିକମଣି ।

ଶାଲବାହନ, ବ. ପୁଂ. (ଶାଲ-ବାହନ) ଶକ-ପ୍ରବର୍ତ୍ତକ ନୃପବିଶେଷ ।

ଶାଲ୍ଲଶ, ('ଯାବନକ ) ଅଦାଲତର ଆଶ୍ରୟ ନ ନେଇ ଆପଣା ମଧ୍ୟରେ କଳହ ରଫା କରିବା ।

ଶାଳୀ, ବ. ( ଶାଳ-ଇନ୍ ) ବିଶିଷ୍ଟ, ଯୁକ୍ତ; ଶୋଭମାନ ।

ଶାଳୀ, ଚ. (ଶ୍ୟାଲ ବା ଶ୍ୟାଲିକା ଶବ୍ଦଜ) ଭାର୍ଯ୍ୟାର ଭଗିନୀ; କୁଷ୍ମାଣ୍ଡଜାରକ, କଳାଜିରା ।

ଶାଲୀନ, ବଂ. (ଶାଲା-ଈନ) ବିନୀତ, ସଲଜ୍ଜ, ଲାଜୁକ; ସଦୃଶ, ତୁଲ୍ୟ ।

ଶାଳୁକ, ଶାଲୂକ, ବ.ନ. (ଶାଲ୍-ଉକ) ପଦ୍ମାଦିର ମୂଳ ।

ଶାଲ୍ମଳ, ପୁଂ. } ବ. (ଶାଲ-ମଳର୍, ଶାଲ୍-
ଶାଲ୍ମଳ, ପୁଂ. ସ୍ତ୍ରୀ. } ମଳ ଅଥବା ଶ୍ୟାଳ-ଂ,
ଶାଲ୍ମଳୀ, ପୁଂ. ସ୍ତ୍ରୀ. } ମଳ ଅ-ଇନ୍) ଶିମିଳି ଗଛ; ସପ୍ତଦ୍ୱୀପ ମଧ୍ୟରେ ଏକ ଦ୍ୱୀପ ।

ଶାଲ୍ମଳୀ, ବ. ପୁଂ. ପକ୍ଷୀନ୍ଦ୍ର, ଗରୁଡ଼ ।

ଶାବ, ଶାବକ, ବ. ପୁଂ. (ଶବ୍-ଅ, ଅକ) ଶିଶୁ, ବତ୍ସ । ବଂ. ଶବସମ୍ବନ୍ଧୀୟ ।

ଶାବୁଦ, (ଯାବନକ) ପ୍ରମାଣ ।

ଶାଶୁ, ପତି ଅବା ଭାର୍ଯ୍ୟାର ମାତା ।

ଶାଶ୍ୱତ, ଶାଶ୍ୱତିକ, ବଂ. (ଶଶ୍ୱତ୍-ଅ, ଇକ) ନିତ୍ୟ ଅବିନଶ୍ୱର । ବ. ପୁଂ. ବେଦବ୍ୟାସ ।

ଶାଷ୍କୁଲ,ଚ. (ଶଷ୍କୁଲୀ-ଅ) ମାଂସାଶୀ, ମାଂସଭୋଜୀ ।

ଶାସନ, ବ. ନ. (ଶାସ୍-ଅନ) ଆଜ୍ଞା, ଆଦେଶ, ଉପଦେଶ ; ଦଣ୍ଡ, ଦମନ ; ପ୍ରତିପାଳନ ; ଆଜ୍ଞାପତ୍ର, ଲିଖିତପତ୍ର; ଶାସ୍ତ୍ର; ରାଜଦତ୍ତ ଭୂମି ।

ଶାସନତନ୍ତ୍ର, ବ. ନ. ରାଜ୍ୟଶାସନପ୍ରଣାଳୀ ।

ଶାସନହର, ଶାସନହାରକ, ଶାସନହାରୀ, ବ. ପୁଂ. (ଶାସନ-ହର, ହାରକ, ହାରିନ୍ )ଆଜ୍ଞା-ବାହକ, ଦୂତ, ରାଜଦୂତ , ପିଅଦା ।

ଶାସନୀୟ, ବଂ. (ଶାସ୍-ଅନୀୟ) ଶାସନର ଯୋଗ୍ୟ; ଦମ୍ୟ; ଶିକ୍ଷଣୀୟ ।

ଶାସିତ, ବଂ (ଶାସ୍-ତ) ଦଣ୍ଡିତ; ପ୍ରତିପାଳିତ, ଶିକ୍ଷିତ ।

ଶାସିତା, ବଂ. (ଶାସ୍-ତୃ) ଶାସନକର୍ତ୍ତା; ଶିକ୍ଷକ, ଉପଦେଶକ, ଗୁରୁ ।

ଶାସ୍ତି, ବ. ସ୍ତ୍ରୀ. (ଶାସ୍-ତି) ଶାସନ, ଦଣ୍ଡ, ନିଗ୍ରହ; ନିୟମ ।

ଶାସ୍ତ୍ର, ବ. ନ. (ଶାସ୍-ତ୍ର) ଶାସନ; ଆଜ୍ଞା, ଦେବତା ବା ମୁନିପ୍ରଣୀତଗ୍ରନ୍ଥ, ବେଦ, ତନ୍ତ୍ର, ପୁରାଣ, ଦର୍ଶନାଦି ।

ଶାସ୍ତ୍ରଜ୍ଞ, ଶାସ୍ତ୍ରତତ୍ତ୍ୱଜ୍ଞ, } ବଂ. (ଶାସ୍ତ୍ର-ଜ୍ଞ, ତତ୍ତ୍ୱଜ୍ଞ,
ଶାସ୍ତ୍ରଦର୍ଶୀ, ଶାସ୍ତ୍ରବିତ୍ } ଦର୍ଶିନ୍, ବିଦ୍) ଯେ ଶାସ୍ତ୍ର ଜାଣେ, ଶାସ୍ତ୍ରରେ ପାରଦର୍ଶୀ, ଗଣକ ।

ଶାସ୍ତ୍ରାଚରଣ, ବଂ. (ଶାସ୍ତ୍ର-ଆଚରଣ) ଶାସ୍ତ୍ର-ପାରଦର୍ଶୀ, ଯେ ଶାସ୍ତ୍ର ମାନ ଜାଣେ ।

ଶାସ୍ତ୍ରୀ, ବ. ପୁଂ. (ଶାସ୍ତ୍ର-ଇନ୍) ପଣ୍ଡିତ, ଶାସ୍ତ୍ରଦର୍ଶୀ; ପଣ୍ଡିତର ଉପାଧିବିଶେଷ । ବଂ. ଶାସ୍ତ୍ରଜ୍ଞ ।

ଶାସ୍ତ୍ରୀୟ, ବଂ. (ଶାସ୍ତ୍ର-ଈୟ) ଶାସ୍ତ୍ରସିଦ୍ଧ, ଶାସ୍ତ୍ରସମ୍ମତ ।

ଶାସ୍ୟ, ବଂ. ( ଶାସ୍-ଯ ) ଶାସନୀୟ, ଶାସନ-ଯୋଗ୍ୟ; ଉପଦେଷ୍ଟବ୍ୟ, ଶିକ୍ଷଣୀୟ ।

ଶିଂଶପା, ବ. ସ୍ତ୍ରୀ. ବୃକ୍ଷବିଶେଷ, ଶିଶୁଗଛ । ଯଥା—

ଶିଂଶପା ବୃକ୍ଷର ତାଳେ, ହନୁ ମନେ ମନେ ବୋଲେ । ବି. ରା.

ଶିଉଳ, ବ. (ଶୈବାଳ ଶବ୍ଦଜ) ଶୈବାଳ; ଜଳ-ଜାତ ଉଦ୍ଭିଦବିଶେଷ ।

ଶିକା, ବ. (ଶିକ୍ୟ ଶବ୍ଦଜ) ଦ୍ରବ୍ୟାଦି ରକ୍ଷଣାର୍ଥେ ରଜ୍ଜୁମୟ ଆଧାରବିଶେଷ । ଯଥା—

କଠାଉ ଦଉଡ଼ୀ ଶିକା ଘର ବାଡ଼ୀ,
ଅଷ୍ଟା ହେଉଛ ଯେତେବେଳେ । ର. କ.

ଶିକାର, (ଯାବନକ) ମୃଗୟା ।

ଶିକୁଳ, ବ. (ଶୃଙ୍ଖଳ ଶବ୍ଦଜ) ଜଞ୍ଜିର ।

ଶିକ୍ୟ, ବ.ନ. (ଶକ୍-ଯ, ଶକ୍ = ଶିକ୍) କ୍ୟା-ସ୍ତ୍ରୀ. ଶିକା ।

ଶିକ୍ଷକ, ବିଂ. (ଶିକ୍ଷ୍-ଇ-ଅକ) ଶିକ୍ଷାଦାୟକ, ଅଧ୍ୟାପକ; ଶାସନକର୍ତ୍ତା ।

ଶିକ୍ଷଣ, ବି. ନ. (ଶିକ୍ଷ୍-ଅନ) ଶିକ୍ଷା, ଅଭ୍ୟାସ; ଅଧ୍ୟାପନ; ଦମନ ।

ଶିକ୍ଷଣୀୟ, ବିଂ. (ଶିକ୍ଷ-ଅନୀୟ) ଶିକ୍ଷା କରିବାର ଯୋଗ୍ୟ, ଉପଦେଷ୍ଟବ୍ୟ ।

ଶିକ୍ଷୟିତା, ବିଂ. (ଶିକ୍ଷ-ଇ-ତୃ) ଅଧ୍ୟାପକ, ଶିକ୍ଷକ ।

ଶିକ୍ଷା, ବି. ସ୍ତ୍ରୀ. (ଶିକ୍ଷ୍-ଅ-ଆ) ଅଭ୍ୟାସ; ବେଦାଙ୍ଗ; ଉପଦେଶ; ଅଧ୍ୟୟନ; ଦମନ ।

ଶିକ୍ଷିତ, ବିଂ. (ଶିକ୍ଷା-ଇତ) ଶିକ୍ଷାପ୍ରାପ୍ତ; କୃତବିଦ୍ୟ; ବିନୀତ; ବଶ୍ୟ; ଦକ୍ଷ ।

ଶିଖଣ୍ଡ, ଶିଖଣ୍ଡକ, ବି. ପୁଂ. (ଶିଖିନ୍-ଅମ୍-ଅ, ନିପାତନ) ମୟୂରପୁଚ୍ଛ; ଶିଖା; ଚୂଡ଼ା; କାକପକ୍ଷ ।

ଶିଖଣ୍ଡିକ, ବି. ପୁଂ. (ଶିଖଣ୍ଡ-ଇକ) କୁକ୍କୁଟ, କୁକୁଡ଼ା । ସ୍ତ୍ରୀ. ଶିଖା, ଚୂଡ଼ା ।

ଶିଖଣ୍ଡୀ, ବି. ପୁଂ. ( ଶିଖଣ୍ଡ-ଇନ୍ ) ମୟୂର; ମୟୂରପୁଚ୍ଛ; ଦ୍ରୁପଦରାଜାଙ୍କ ପୁତ୍ର; କୁକ୍କୁଟ; ବାଣ; ବିଷ୍ଣୁ । ସ୍ତ୍ରୀ. ଦ୍ରୁପଦ ରାଜାଙ୍କ କନ୍ୟା; ମୟୂରୀ; ମଲ୍ଲିକା- ବିଶେଷ । ବିଂ. ଶିଖଣ୍ଡଯୁକ୍ତ ।

ଶିଖଣ୍ଡିବାହନ, ବି. ପୁଂ. (ଶିଖଣ୍ଡିନ୍-ବାହନ) କାର୍ତ୍ତିକେୟ ।

ଶିଖର, ବି. ପୁଂ. ( ଶିଖା-ର ) ପର୍ବତର ଶୃଙ୍ଗ; ଅଗ୍ରଭାଗ; ବୃକ୍ଷାଗ୍ର; ରୋମାଞ୍ଚ; ପୁଲକ; କୋଣ; କକ୍ଷ; ଶୁଷ୍କତୃଣ; ରତ୍ନବିଶେଷ; ଖଡ୍ଗର ଅଗ୍ରଭାଗ ।

ଶିଖରବାସିନୀ, ବି. ସ୍ତ୍ରୀ. ( ଶିଖର-ବାସିନୀ ) ପାର୍ବତୀ, ଦୁର୍ଗା ।

ଶିଖରୀ, ବି. ପୁଂ. (ଶିଖର-ଇନ୍ ) ପର୍ବତ; ବୃକ୍ଷ; ଅପାମାର୍ଗ; କର୍କଟଶୃଙ୍ଗୀ; ପର୍ବତଦୁର୍ଗ । ସ୍ତ୍ରୀ. ଉତ୍ତମା ସ୍ତ୍ରୀ । ବିଂ. ଅଗ୍ରଭାଗବିଶିଷ୍ଟ ।

ଶିଖା, ବି. ସ୍ତ୍ରୀ. (ଶୀ-ଖକ୍-ଆ) ଅଗ୍ରଭାଗ, ଚୂଡ଼ା; କିରଣ ; ମସ୍ତକସ୍ଥ କେଶଗୁଚ୍ଛ; କାମଜ୍ୱର; ପ୍ରଧାନ; ପଦାଗ୍ର ।

ଶିଖାତରୁ, ବି. ପୁଂ. ( ଶିଖା-ତରୁ ) ପିଲସଜ; ଦୀପାଧାର ।

ଶିଖାଧର, ଶିଖାଧାର, ଶିଖାଧାରକ, ବି. ପୁଂ. (ଶିଖା-ଧର, ଧାର, ଧାରକ) ମୟୂର ।

ଶିଖାବଳ, ବି. ପୁଂ. (ଶିଖା-ବଳଚ୍ ) ମୟୂର ।

ଶିଖାବାନ୍, ବି. ପୁଂ. ( ଶିଖା-ବତ୍ ) ଅଗ୍ନି; କେତୁଗ୍ରହ । ବିଂ. ଶିଖାବିଶିଷ୍ଟ ।

ଶିଖିକଣ୍ଠ, ବି. ନ. (ଶିଖିନ୍-କଣ୍ଠ-ଅ) ତୁତ୍ଥା, ମହୁରଗିରିଆ ।

ଶିଖିଧ୍ୱଜ, ବି. ପୁଂ. ( ଶିଖିନ୍-ଧ୍ୱଜା-ଅ ) ଧୂମ; କାର୍ତ୍ତିକେୟ ।

ଶିଖିବର୍ଦ୍ଧକ, ବି. ପୁଂ. କୁଷ୍ମାଣ୍ଡ; ପାଣିକଖାରୁ ।

ଶିଖିବା, କ୍ରି. ବି. (ପ୍ରା) ଅଭ୍ୟାସ କରିବା । ଯଥା—

> କାହିଁ ଶିଖିଲ କାହ୍ନୁ ଏତେ ରଙ୍ଗ ।

ଶିଖିବାହନ, ବି. ପୁଂ. ( ଶିଖିନ୍-ବାହନ ) କାର୍ତ୍ତିକେୟ ।

ଶିଖୀ, ବି. ପୁଂ. (ଶିଖା-ଇନ୍ ) ଅଗ୍ନି; ମୟୂର; ଗିରି, ପର୍ବତ; ଶର, ବାଣ; ବଳୀବର୍ଦ୍ଦ; କେତୁଗ୍ରହ; କୁକ୍କୁଟ; ଘୋଟକ; ବ୍ରାହ୍ମଣ; ବୃକ୍ଷ । ବିଂ. ଶିଖାଯୁକ୍ତ ।

ଶିଙ୍ଗଡ଼ା, ବି. (ଶୃଙ୍ଗାଟ ଶବ୍ଦଜ) ପାଣିରେ ଜାତ କଣ୍ଟକ ଫଳବିଶେଷ ।

ଶିଙ୍ଗା, ବି. (ଶୃଙ୍ଗ ଶବ୍ଦଜ) ବାଦ୍ୟଯନ୍ତ୍ରବିଶେଷ । ଯଥା—

> ବଜା ରଣଶିଙ୍ଗା ଧରେ ଶୃଙ୍ଗଧର । ବ. ବ.

ଶିଙ୍ଗାରହାର, ବି. ଗଙ୍ଗଶିଉଳି ଫୁଲ ।

ଶିଙ୍ଗି, ବି. (ଦେଶଜ) ମତ୍ସ୍ୟବିଶେଷ ।

ଶିଙ୍ଘାଣ, ବି. ନ. (ଶିଙ୍ଘ-ଆନ) ଲୌହମଳ; ଲୌହର ମରଚା; କାଚପାତ୍ର; ନାସିକାମଳ ।

ଶିଜୁ, ବି. (ଦେଶଜ) ଧଳାକ୍ଷୀରବିଶିଷ୍ଟ ବୃକ୍ଷ-ବିଶେଷ ।

ଶିଞ୍ଜିତ, ବି. ନ. ( ଶିଞ୍ଜ୍-ତ ) ଭୂଷଣ ଧ୍ୱନି; ଅବ୍ୟକ୍ତ ଧ୍ୱନି ।

ଶିଞ୍ଜିନୀ, ବି.ସ୍ତ୍ରୀ. (ଶିଞ୍ଜିନ୍-ଈ) ନୂପୁର; ଧନୁର୍ଗୁଣ ।

ଶିଠା, ବି. (ଦେଶଜ) ବୃକ୍ଷର କ୍ଷୀର ।

ଶିଢ଼ି, ବ. (ଦେଶଜ) ପାହାଚ, ସୋପାନ, ନହ୍ଣୁଣୀ ।
ଶିତ, ବଂ. (ଶି-ତ) କ୍ଷୀଣ, କୃଶ, ଦୁର୍ବଳ; କ୍ଷୟ୍ପ୍ରାପ୍ତ; ଶାଣିତ, ଘଷ୍ଟ, ଧାରୁଆ ।
ଶିତି, ବ. ପୁଂ. (ଶି-ତିକ୍) କୃଷ୍ଣବର୍ଣ୍ଣ; ଶୁକ୍ଳବର୍ଣ୍ଣ; ଭୂର୍ଜ୍ଜପତ୍ର ବୃକ୍ଷ ।
ଶିତିକଣ୍ଠ, ବ. ପୁଂ. (ଶିତି-କଣ୍ଠ) ଶିବ, ନୀଳକଣ୍ଠ; ମୟୂର; ଦଦରଦଲଆ ପକ୍ଷୀ ।
ଶିଥିଳ, ବଂ. (ଶ୍ଳଥ୍-ଇଲ) ଶ୍ଳଥ; ଅବସନ୍ନ; କ୍ଳାନ୍ତ; ଅଳସ; ଜଡ଼ ।
ଶିପି, ବ.ପୁଂ. ରଶ୍ମି, କିରଣ । ସ୍ତ୍ରୀ. ଚର୍ମ, ଚମଡ଼ା ।
ଶିପ୍ରା, ବ. ସ୍ତ୍ରୀ. ମହାକାଳ ନଗରୀର ନଦୀବିଶେଷ, ଏହି ନଦୀ ଉଜ୍ଜୟିନୀ ଦେଇ ପ୍ରବାହିତ ହେଉଅଛି ।
ଶିମ, ବ. (ଦେଶଜ) ଶିମ୍ବଗଛ ।
ଶିମ୍ବ, ବ.ପୁଂ.(ଶି-ବ, ନିପାତନ) ଶିମଗଛ;ଶିମ ।
ଶିଯ୍ଆଳ, ବ. (ଶୃଗାଳ ଶବ୍ଦଜ) ଶିବା, ଶୃଗାଳ ।
ଶିର, ବ. ନ. (ଶ୍ରି-ଅ ନିପାତନ) ମସ୍ତକ; ମୁଣ୍ଡ ।
ଶିରଃ, ବ. ନ. (ଶ୍ରି-ଅସ୍-ନିପାତନ) ମସ୍ତକ; ବୃକ୍ଷାଗ୍ର; ଅଗ୍ରଭାଗ; ସୈନ୍ୟର ଅଗ୍ରବର୍ତ୍ତୀ ଦଳ; ପ୍ରଧାନ ଅଧ୍ୟକ୍ଷ । ପୁଂ. ପିପ୍ପଳୀ ମୂଳ; ଶଯ୍ୟା ।
ଶିରପା, ବ. (ଯାବନିକ) ପୁରସ୍କାର, ଖେଲତ୍ ।
ଶିରଃଫଳ, ବ. ପୁଂ.(ଶିରସ୍-ଫଳ) ନାରକେଳ, ନଡିଆ ।
ଶିରନାମା, ବ. (ଶିରୋନାମନ୍ ଶବ୍ଦଜ) ପତ୍ରର ଉପରେ ଲିଖିତ ନାମ ।
ଶିରସ୍ତ୍ର, ଶିରସ୍ତ୍ରାଣ, ବ. ନ. (ଶିରସ୍-ତ୍ରୈ-ଅ, ଅନ) ଉଷ୍ଣୀଷ, ଟୋପି ।
ଶିରା, ବ. ସ୍ତ୍ରୀ. (Vein) (ଶ୍ରି-ଅ-ଆ) ଶରୀର ମଧ୍ୟସ୍ଥ ରକ୍ତ ଗମନାଗମନର ପଥ, ଶିରା;ନାଡ଼ୀ ।
ଶିରାଳ, ବଂ. (ଶିରା-ଲ) ଶିରାଯୁକ୍ତ ।
ଶିରାବୃତ୍ତ, ବ. ନ. ସୀସକ, ସୀସା ।
ଶିରୀଷ, ବ. ପୁଂ. (ଶୃ-ଈଷନ୍) ବୃକ୍ଷବିଶେଷ । ନ. ଶିରୀଷ ଫୁଲ ।
ଶିରୋଗୃହ, ବ. ନ. (ଶିରସ୍-ଗୃହ) ଅଟ୍ଟାଳିକାର ସର୍ବୋପରିସ୍ଥ ଗୃହ; ଚନ୍ଦ୍ରଶାଳା ।
ଶିରୋଧାରା, ଶିରଧି, ବ. ସ୍ତ୍ରୀ. (ଶିରସ୍-ଧାରା, ଧି) ଗ୍ରୀବା, ଗଳଦେଶ ।
ଶିରୋଧାର୍ଯ୍ୟ, ବଂ. (ଶିରସ୍-ଧାର୍ଯ୍ୟ) ମସ୍ତକରେ ଧାରଣୀୟ, ଅତିଶୟ ମାନ୍ୟ ।
ଶିରୋମଣି, ପୁଂ. ଶିରୋମଣୀ, ସ୍ତ୍ରୀ. ବ. (ଶିରସ୍-ମଣି) ଶିରୋରତ୍ନ;ମସ୍ତକସ୍ଥ ରତ୍ନଭୂଷଣ; କିରୀଟସ୍ଥିତ ରତ୍ନ; ପଣ୍ଡିତର ଉପାଧିବିଶେଷ ।
ଶିରୋରତ୍ନ, ବ. ନ. (ଶିରସ୍-ରତ୍ନ) ଶିରୋମଣି, କିରୀଟସ୍ଥିତ ରତ୍ନ ।
ଶିରୋରୁହ୍, ଶିରୋରୁହ, ବ. ପୁଂ. (ଶିରସ୍-ରୁହ-କ୍ୱିପ୍,-ଅ) ମୂର୍ଦ୍ଧଜ, କେଶ, ମସ୍ତକର ବାଳ ।
ଶିରୋବର୍ଣ୍ଣୀ, ବ. ସ୍ତ୍ରୀ. (ଶିରସ୍-ବର୍ଣ୍ଣୀ) ମୟୂରଶିଖା ।
ଶିଳ, ବ. (ଶିଳା ଶବ୍ଦଜ) ହଳଦି ପ୍ରଭୃତି ବାଟିବା ନିମନ୍ତେ ପ୍ରସ୍ତରବିଶେଷ; ହଳଦି ବାଟିବାର ପଥର ।
ଶିଳପୁଆ, ଶିଳପୁଅ, ବ. (ଦେଶଜ) ଶିଳପଥର ।
ଶିଳା, ବ. ସ୍ତ୍ରୀ. (ଶିଲ୍-ଆ) ପାଷାଣ, ପ୍ରସ୍ତର, ପଥର, ମନଃଶିଳା; କର୍ପୂର ।
ଶିଳାଜ, ବଂ. (ଶିଳା-ଜ) ପର୍ବତଜାତ ଉପଧାତୁବିଶେଷ; ଶୈଳେୟ ଗନ୍ଧଦ୍ରବ୍ୟବିଶେଷ ।
ଶିଳାମ୍ବଜ, ଶିଳାସାର, ବ. ନ. (ଶିଳା-ଅମ୍ବୁନ୍-ଜ, ଶିଳା-ସାର) ଲୌହ, ଲୁହା ।
ଶିଳାପଟ୍ଟ, ବ. ପୁଂ. (ଶିଳା-ପଟ୍ଟ) ପେଷଣ କରିବା ନିମନ୍ତେ ଶିଳା; ଶିଳ ।
ଶିଳାମୟ, ବଂ. (ଶିଳା-ମୟ) ପ୍ରସ୍ତରନିର୍ମିତ ।
ଶିଳୀମୁଖ, ବ. ପୁଂ. (ଶିଳୀ-ମୁଖ) ଭ୍ରମର । ଯଥା—

କୁସୁମକୁ ଚୁମ୍ବେ ଶିଳୀମୁଖ ।

ବାଣ; ଯୁଦ୍ଧ ।
ଶିଳୋଦ୍ଭବ, ବ. ପୁଂ. (ଶିଳା-ଉଦ୍-ଭ-ଅ) ଶୈଳ, ପର୍ବତ; ପର୍ବତଶୃଙ୍ଗ ।
ଶିଳୌକାଃ, ବ. ପୁଂ. (ଶିଳା-ଓକସ୍) ଗରୁଡ଼ ।

ଶିଳ୍ପ, ବି. ନ. (ଶିଳ୍‌-ପକ୍) ବସ୍ତୁ ନିର୍ମାଣାଦି କର୍ମ, କାରିଗରି ।

ଶିଳ୍ପକାର, } ବି. ( ଶିଳ୍ପ-କାର, କାରିନ୍ )
ଶିଳ୍ପକାରୀ, } ଶିଳ୍ପୀ, କାରିଗର ।

ଶିଳ୍ପଯନ୍ତ୍ର, ବି. କଳ ।

ଶିଳ୍ପଶାଳ, } ବି.ନ.(ଶିଳ୍ପ-ଶାଳ) ଶିଳ୍ପ
ଶିଳ୍ପିଶାଳ, ଲା-ସ୍ତ୍ରୀ.} କର୍ମ କରିବାର ଘର; କାରଖାନା ଘର ।

ଶିଳ୍ପିକ, ଶିଳ୍ପୀ, ବି. (ଶିଳ୍ପ-ଇକ, ଇନ୍ ) ଶିଳ୍ପ-କର୍ମକାରୀ; କାରିଗର ।

ଶିବ, ବି. ପୁଂ. (ଶିବ-ଅ) ଶମ୍ଭୁ, ମହେଶ, ମହାଦେବ; ପାରଦ; ମୁକ୍ତି, ମୋକ୍ଷ; ବେଦ; ଲିଙ୍ଗ; ଶିବଲିଙ୍ଗ । ନ. ସୁଖ; ମଙ୍ଗଳ; ଜଳ; ଶୁଭ; ସୈନ୍ଧବ, ସମୁଦ୍ରଲବଣ; ଅଦ୍ୱୈତ ବ୍ରହ୍ମ; ଶୁଭଦ; ସୁଖଦ; ରମ୍ୟ; ରମଣୀୟ ।

ଶିବଙ୍କର, ଶିବଙ୍କର, ବି. (ଶିବ-କର) ମଙ୍ଗଳ-କାରକ, ଶୁଭଦାୟକ ।

ଶିବକୀର୍ତ୍ତନ, ବି. ପୁଂ. (ଶିବ-କୀର୍ତ୍ତନ) ଭୃଙ୍ଗୀ; ଶୈବ, ଶିବଙ୍କ ଉପାସକ । ନ. ଶିବଙ୍କ ସ୍ତୁତି ।

ଶିବଚତୁର୍ଦ୍ଦଶୀ, ବି. ସ୍ତ୍ରୀ. ଫାଲ୍‌ଗୁନ ମାସର କୃଷ୍ଣ-ଚତୁର୍ଦ୍ଦଶୀ ।

ଶିବଦତ୍ତ, ବି. ନ. ବିଷ୍ଣୁଚକ୍ର ।

ଶିବଦୂତୀ, ଶିବଦୂତିକା, ବି. ସ୍ତ୍ରୀ. (ଶିବ-ଦୂତୀ, ଦୂତିକା) ଦେବୀବିଶେଷ, ଦୁର୍ଗା; ଯୋଗିନୀ-ବିଶେଷ ।

ଶିବଦ୍ରୁମ, ବି. ପୁଂ. (ଶିବ-ଦ୍ରୁମ) ବେଲଗଛ ।

ଶିବପୁରୀ, ବି. ସ୍ତ୍ରୀ. (ଶିବ-ପୁରୀ) ବାରାଣସୀ, କାଶୀ ।

ଶିବପ୍ରିୟ, ବି.ନ. ରୁଦ୍ରାକ୍ଷ । ପୁଂ. ଧୁସ୍ତୁର । ୟା-ସ୍ତ୍ରୀ. ଦୁର୍ଗା ।

ଶିବରାତ୍ରି, ବି. ସ୍ତ୍ରୀ. (ଶିବ-ରାତ୍ରି) ଶିବଚତୁର୍ଦ୍ଦଶୀ, ଫାଲ୍‌ଗୁନ ମାସର କୃଷ୍ଣଚତୁର୍ଦ୍ଦଶୀ ରାତ୍ରି ।

ଶିବଲିଙ୍ଗ, ବି. ନ. ଶିବଙ୍କ ପ୍ରସ୍ତରମୂର୍ତ୍ତିକାଦିମୟ ଲିଙ୍ଗମୂର୍ତ୍ତି ।

ଶିବବାହନ, ବି. ପୁଂ. (ଶିବ-ବାହନ) ବୃଷ, ଷଣ୍ଢ ।

ଶିବବୀଜ, ବି. ନ. (ଶିବ-ବୀଜ) ପାରଦ, ପାରା ।

ଶିବା, ବି. ସ୍ତ୍ରୀ. (ଶିବ-ଆ) ଶୃଗାଳ; ହରିତକୀ; ଆମଳକୀ; ହରିଦ୍ରା; ମୁକ୍ତି; ମୋକ୍ଷ; ଦୂବା; ଶମୀବୃକ୍ଷ; ଦୁର୍ଗା, ଭବାନୀ ।

ଶିବାନୀ, ବି. ସ୍ତ୍ରୀ. (ଶିବ-ଆନୀ) ଶିବପତ୍ନୀ; ପୁଷ୍ପ-ବିଶେଷ; ଜୟନ୍ତୀବୃକ୍ଷ ।

ଶିବାପ୍ରିୟ, ବି. ପୁଂ. (ଶିବା-ପ୍ରିୟ) ଛାଗ, ଛେଳି ।

ଶିବାଳୟ, ବି. ପୁଂ. (ଶିବ-ଆଳୟ) ରକ୍ତତୁଳସୀ । ନ. ଶ୍ମଶାନ; ଶିବମନ୍ଦିର ।

ଶିବିକା, ବି. ସ୍ତ୍ରୀ. (ଶିବ-ଅକ-ଆ) ଯାନବିଶେଷ; ପାଲିଙ୍କି ।

ଶିବିର, ବି. ନ. (ଶୀ-ଇର, ବ ଆଗମ) ସେନା-ନିବେଶ, ଛାଉଣି ।

ଶିଶି, ବି. (ଯାବନିକ) କାଚନିର୍ମିତ କ୍ଷୁଦ୍ରପାତ୍ର-ବିଶେଷ ।

ଶିଶିର, ବି. ପୁଂ. ( ଶଶ୍‌-ଇ, ଅ ସ୍ଥାନେ ଇର ) ତୁଷାର । ପୁଂ. ନ. ଶୀତକାଳ । ବି. ଶୀତଳ; ଜଡ଼ ।

ଶିଶୁ, ବି. ପୁଂ. (ଶିଶ୍‌-ଉ) ବାଳକ, ଶାବକ; ଦ୍ରୁମ ।

ଶିଶୁତ୍ୱ, ବି. ନ. ( ଶିଶୁ-ତ୍ୱ ) ଶୈଶବ, ବାଲ୍ୟାବସ୍ଥା ।

ଶିଶୁପାଳ, ବି. ପୁଂ. (ଶିଶୁ-ପାଳ ) ଚେଦିବଂଶୀୟ ନୃପବିଶେଷ, ଦମଘୋଷର ପୁତ୍ର ।

ଶିଶୁପାଳକ, ବି. ପୁଂ. (ଶିଶୁ-ପାଳ-କ) ଶିଶୁପାଳ; କେଳିକଦମ୍ବ । ବି. ଶିଶୁରକ୍ଷକ ।

ଶିଶୁମାର, ବି. ପୁଂ. ଜଳଜନ୍ତୁବିଶେଷ ।

ଶିଶୁବାହକ, ବି. ପୁଂ. (ଶିଶୁ-ବାହକ) ବନ୍ୟଗଛ ବାଳକମାନଙ୍କର ବହନକାରୀ ।

ଶିଶ୍ନ, ବି. ପୁଂ. ( ଶଶ୍‌-ନ ନିପାତନ ) ପୁରୁଷର ଚିହ୍ନ, ପୁରୁଷୋପସ୍ଥ ।

ଶିଷ, ବ. ( ଶୀର୍ଷ ଶବ୍ଦଜ ) ଧାନ୍ୟାଦିର ଶୀର୍ଷ, ମଞ୍ଜରୀ, ଶିଶା ।

ଶିଷ୍ଟ, ବିଂ. (ଶାସ୍-ତ) ଶାନ୍ତ, ଧୀର, ସୁବୋଧ, ସୁଶୀଳ, ମାର୍ଜିତ; ଅବଶିଷ୍ଟ; ବଶତାପନ୍ନ; ପୋଷା; ଶିକ୍ଷିତ; ବିନୀତ; ପ୍ରଧାନ; ବିଖ୍ୟାତ; ଆଜ୍ଞପ୍ତ । ପୁଂ. ମନ୍ତ୍ରୀ; ସର୍ଦ୍ଦାର ।

ଶିଷ୍ଟତା, ବ. ସ୍ତ୍ରୀ. ( ଶିଷ୍ଟ-ତା ) ଶିଷ୍ଟର ଧର୍ମ, ନମ୍ରତା, ଧୀରତା; ଶେଷ, ଅବଶିଷ୍ଟତା, ବିନୟ; ବଶୀଭୂତତା ।

ଶିଷ୍ଟାଚାର, ବ. ପୁଂ. ( ଶିଷ୍ଟ-ଆଚାର ) ସାଧୁ ବ୍ୟବହାର, ଭଦ୍ରତା ।

ଶିଷ୍ୟ, ବ. ପୁଂ. (ଶାସ୍-ଯ) ଛାତ୍ର । ବିଂ. ଶାସନ-ଯୋଗ୍ୟ,ଉପଦେଷ୍ଟବ୍ୟ, ଶିକ୍ଷଣୀୟ, ଶିକ୍ଷିତବ୍ୟ ।

ଶିହାଣା,ବ. (ଯାବନିକ) ଚତୁର, ଚାଲାକ,ଧୂର୍ତ୍ତ ।

ଶୀ, ବ. ସ୍ତ୍ରୀ. (ଶୀ-୦ ) ଶୟନ; ଶାନ୍ତି ।

ଶୀକର, ବ. ପୁଂ. (ଶୀକ୍-ଅରନ୍ ) ବାୟୁ ପ୍ରେରିତ ଜଳବିନ୍ଦୁ, ଜଳକଣା; ସୂକ୍ଷ୍ମବୃଷ୍ଟି, ବାୟୁ ।

ଶୀଘ୍ର, କ୍ରି. ବିଂ. ( ଶିନ୍ଘ୍-ରକ୍ ନିପାତନ ) ଅବିଳମ୍ବ, ଦ୍ରୁତ, ତ୍ୱରା । ବିଂ. ଶୀଘ୍ରତାଯୁକ୍ତ, ସତ୍ୱର, ତ୍ୱରିତ ।

ଶୀଘ୍ରଗ, ବିଂ. (ଶୀଘ୍ର-ଗ) ଦ୍ରୁତଗାମୀ, ତ୍ୱରିତଗତି ।

ଶୀଘ୍ରଚେତନ, ବ. ପୁଂ. ( ଶୀଘ୍ର-ଚିତ୍-ଅନ ) କୁକ୍କୁର । ବିଂ. ଦ୍ରୁତ ଚେତନାଯୁକ୍ତ ।

ଶୀଘ୍ରତା, ବ. ସ୍ତ୍ରୀ. ( ଶୀଘ୍ର-ତା ) ଦ୍ରୁତତା, ସତ୍ୱରତା ।

ଶୀତ, ବିଂ. (ଶ୍ୟୈ-ତ) ଶୀତଳ, ଶୈତ୍ୟଗୁଣ-ଯୁକ୍ତ; ଜଡ଼; ଅଳସ; କ୍ୱଥିତ । ବ. ନ. (ଶୀତ-ଅ) ଶୈତ୍ୟଗୁଣ; ଶୀତଳତା; ଜଳ; ତ୍ୱକ୍ । ପୁଂ. ହିମଋତୁ, ଶୀତକାଳ; ବେତସ ବୃକ୍ଷ; ଅଶନପର୍ଣ୍ଣୀ; ନିମ୍ବ; କର୍ପୂର ।

ଶୀତକର, ଶୀତକିରଣ, ଶୀତଗୁ, ଶୀତଭାନୁ, ଶୀତମୟୂଖ, ଶୀତମରୀଚି, ଶୀତରଶ୍ମି, ଶୀତାଂଶୁ, } ବ. ପୁଂ. ( ଶୀତ-କର, କିରଣ, ଗୋ, ଭାନୁ, ମୟୂଖ, ମରୀଚି, ରଶ୍ମି, ଅଂଶୁ) ଚନ୍ଦ୍ର, ହିମକର; କର୍ପୂର ।

ଶୀତକୁମ୍ଭ, ବ. ପୁଂ. କରବୀର । ମ୍ଭୀ-ସ୍ତ୍ରୀ. ଜଳଜ ବୃକ୍ଷବିଶେଷ ।

ଶୀତଚମ୍ପକ, ବ. ପୁଂ. ( ଶୀତ-ଚମ୍ପକ ) ଦର୍ପଣ; ପ୍ରଦୀପ ।

ଶୀତପର୍ଣ୍ଣୀ ବ. ସ୍ତ୍ରୀ. ଅର୍କପୁଷ୍ପିକା ।

ଶୀତଳ, ବିଂ. ( ଶୀତ-ଲା-ଅ) ଶୈତ୍ୟଗୁଣଯୁକ୍ତ, ଥଣ୍ଡା । ବ. ନ. ଚନ୍ଦନ; ଶୈଳେୟ, ମୌକ୍ତିକ; ପଦ୍ମ; ବେଣାଚେର । ପୁଂ. ଚନ୍ଦ୍ର; ଅସନପର୍ଣ୍ଣୀ । ଳା-ସ୍ତ୍ରୀ. ଦେବୀବିଶେଷ । ଳୀ, ଜଳଜ ବୃକ୍ଷବିଶେଷ ।

ଶୀତଳପଟି, ବ. (ଦେଶଜ) ମସିଣାବିଶେଷ ।

ଶୀତଶିବ, ବ. ନ. (ଶିତ-ଶିବ) ସୈନ୍ଧବଲବଣ; ଶୈଳେୟ ନାମକ ଗନ୍ଧଦ୍ରବ୍ୟ । ପୁଂ. ମଧୁରିକା । ବା-ସ୍ତ୍ରୀ. ଶମୀବୃକ୍ଷ ।

ଶୀତା, ସୀତା, ବ. ସ୍ତ୍ରୀ. (ଶୀତ-ଅ) ରାମଚନ୍ଦ୍ରଙ୍କର ଗୃହିଣୀ, ଜାନକୀ; ଲାଙ୍ଗଳପଦ୍ଧତି; ଅତିବଳା; କୁନ୍ଦୁରିମା; ଦୂର୍ବା ।

ଶୀତାଦ୍ରି, ବ. ପୁଂ. ( ଶୀତ-ଅଦ୍ରି ) ହିମାଳୟ ପର୍ବତ ।

ଶୀତାଭ, ଶୀତାଭ୍ର, ବ. ପୁଂ. (ଶୀତ-ଆଭା) ଚନ୍ଦ୍ର; କର୍ପୂର ।

ଶୀତାର୍ତ୍ତ, ଶୀତାକ୍ତ, ବ. (ଶୀତ-ଋତ କିମ୍ବା ଆର୍ତ୍ତ, ଅକ୍ତ) ଶୀତପୀଡ଼ିତ, ଶୀତକାତର ।

ଶୀତାଶ୍ମା, ବ. ପୁଂ. ( ଶୀତ-ଅଶ୍ମନ୍ ) ଚନ୍ଦ୍ର-କାନ୍ତମଣି ।

ଶୀତୁଳୟା, ବ. ( ଦେଶଜ ) ଗ୍ରୀଷ୍ମକାଳରେ ମୁଣ୍ଡରେ ଯେଉଁ ସବୁ ବଥ ହୁଏ ।

ଶୀତୁଳିବା, କ୍ରି. ବ. (ପ୍ରା) ଥଣ୍ଡା କରିବା ।

ଶୀତୋତ୍ତମ, ବ. ନ. (ଶୀତ-ଉତ୍ତମ) ବାରି,ଜଳ ।

ଶୀତ୍କାର, ବ. ପୁଂ. (ଶୀତ୍-କାର) ଶ୍ରେଷ୍ଠ ସ୍ତ୍ରୀ-ମାନଙ୍କର ରତିକାଳୀନ ଧ୍ୱନି, ଇସ୍ ଏହି ଶବ୍ଦ ।

ଶୀତ୍ୟ, ବିଂ. (ଶୀତ-ଯ) ଶୀତଯୋଗ୍ୟ; କୃଷ୍ଟ, ଚଷା ।

ଶୀଧୁ, ସୀଧୁ, ବ. ପୁଂ. ନ. (ଶୀ-ଧୁକ୍) ପକ୍ୱ ଇକ୍ଷୁରସଜାତ ମଦ୍ୟ; ମଧୁ ।

ଶୀଧୁଗନ୍ଧ, ବ. ପୁଂ. (ଶୀଧୁ-ଗନ୍ଧ) ବଉଳଗଛ ।

ଶୀନ, ବଂ. (ଶ୍ୟୈ-ତ) ଘନୀଭୂତ; ମୂର୍ଖ । ବ. ପୁଂ. ଅଜଗର, ବୃହତ୍ ସର୍ପ ।

ଶୀର ଶୀଳ, ବ. ପୁଂ. (ଶୀର-କ୍) ଅଜଗର ସର୍ପ।

ଶୀର୍ଣ୍ଣ, ବଂ. (ଶୃ-ତ) କୃଶ, କ୍ଷୀଣ; ଶୁଷ୍କ; ଛିନ୍ନ; ପତିତ ।

ଶୀର୍ଣ୍ଣପାଦ, ବ. ପୁଂ. (ଶୀର୍ଣ୍ଣ-ପାଦ) ଯମ, ଅନ୍ତକ ।

ଶୀର୍ଣ୍ଣବୃନ୍ତ, ବ. ନ. (ଶୀର୍ଣ୍ଣ-ବୃନ୍ତ) ତରମୁଜ ।

ଶୀର୍ଷ, ବ. ନ. ( ଶିରସ୍ ସ୍ଥାନେ ଶୀର୍ଷ ) ଶିରସ୍, ମସ୍ତକ, ମଥା; କୃଷ୍ଣାଗୁରୁ ।

ଶୀର୍ଷକ, ବ. ନ. (ଶୀର୍ଷ-କ) ଟୋପି, ପଗଡ଼ି; ମସ୍ତକ; ଜୟ ପରାଜୟର ନିଦର୍ଶନପତ୍ର । ପୁଂ. ରାହୁଗ୍ରହ।

ଶୀର୍ଷଚ୍ଛେଦକ, ଶୀର୍ଷଚ୍ଛେଦ୍ୟ, ବଂ. ( ଶୀର୍ଷ-ଛିଦ୍-ଇକ, ଯ) ଶିରଶ୍ଛେଦନଯୋଗ୍ୟ; ବଧ୍ୟ ।

ଶୀର୍ଷରକ୍ଷ, ବ. ନ. (ଶୀର୍ଷ-ରକ୍ଷ) ଶିରସ୍ତ୍ରାଣ, ପଗଡ଼ି ।

ଶୀଳ, ବ. ପୁଂ. ନ. (ଶୀଲ୍-ଅ) ସ୍ୱଭାବ, ସଚ୍ଚରିତ୍ର; ଚରିତ୍ର । ପୁଂ. ବୃହତ୍ ସର୍ପ । ବଂ. ବିଶିଷ୍ଟ, ଯୁକ୍ତ ।

ଶୀଳନ, ବ. ନ. ( ଶୀଳ-ଅନ ) ଆଲୋଚନ; ଅଭ୍ୟାସ; ପ୍ରବର୍ତ୍ତନ; ପରିବର୍ତ୍ତନ; ପରିଦର୍ଶନ ।

ଶୀଳବାନ୍, ବଂ. (ଶୀଳ-ବତ୍) ସୁସ୍ୱଭାବଯୁକ୍ତ, ସୁଶୀଳ; ସଚ୍ଚରିତ୍ରଶାଳୀ।

ଶୀବଲ, ବ. ନ. (ଶୀ-ବଲ ) ଶୈବାଳ, ଶିଉଳି।

ଶୀବା, ବ. ପୁଂ. ( ଶୀ-ବନ୍ ) ଅଜଗର ସର୍ପ, ବୃହତ୍ ସର୍ପ; ବୋଡ଼ା ସାପ।

ଶୁଆ, ବ. (ଶୁକ ଶବ୍ଦଜ) ପକ୍ଷିବିଶେଷ ।

ଶୁଆଇବାର, ବ. (ଶୟନ ଶବ୍ଦଜ) ଶୟନ କରାଇବାର ।

ଶୁଅର, ବ. (ଦେଶଜ) ପାରଦ୍ଦିକବିଶେଷ ।

ଶୁକ, ବ. ପୁଂ. (ଶୁଚ୍-କ) ପକ୍ଷିବିଶେଷ, ଟିଆପକ୍ଷୀ; ବ୍ୟାସଦେବଙ୍କ ପୁତ୍ର; ରାବଣର ମନ୍ତ୍ରୀ; ଶିରୀଷବୃକ୍ଷ । ନା. ବସ୍ତ୍ର; ବସ୍ତ୍ରାଞ୍ଚଳ ।

ଶୁକନାସ, ବ. ପୁଂ. (ଶୁକ-ନାସା-ଅ) ତାରାପୀଡ ରାଜାର ମନ୍ତ୍ରୀ; ଶ୍ୟୋଣାକବୃକ୍ଷ । ବଂ. ଶୁକଚଞ୍ଚୁ ନ୍ୟାୟ ନାସିକାବିଶିଷ୍ଟ ।

ଶୁକପୁଚ୍ଛ, ବ. ପୁଂ. (ଶୁକ-ପୁଚ୍ଛ) ଗନ୍ଧକ ।

ଶୁକାଦନ, ବ. ପୁଂ. (ଶୁକ-ଅଦନ) ଦାଡ଼ିମ୍ବ ।

ଶୁକୁଆ, ବ. (ଦେଶଜ) ଶୁଖିଲା ମାଛ ।

ଶୁକ୍ତା, ବ. (ଦେଶଜ) ମୂରୁକୁଟିଆ ।

ଶୁକ୍ତ, ବ.ନ. (ଶୁଚ୍-ତ) ମାଂସ; ସିଂଘା; ଦୁର୍ବାକ୍ୟ, କଟୂକ୍ତି; କାଞ୍ଜି; ବ୍ୟଞ୍ଜନବିଶେଷର ଯୂଷ । ବଂ. ପବିତ୍ର; ପରିଷ୍କୃତ; ନଷ୍ଟୁର; ଶ୍ଳିଷ୍ଟ; ନିର୍ଜ୍ଜନ ।

ଶୁକ୍ତି, ବ. ସ୍ତ୍ରୀ. (ଶୁଚ୍-ତି) ଶାମୁକା; ଶଙ୍ଖ ।

ଶୁକ୍ତିକା, ବ. ସ୍ତ୍ରୀ. (ଶୁକ୍ତି-କ) ଶୁକ୍ତି ।

ଶୁକ୍ତିଜ, ଶୁକ୍ତିବୀଜ, ବ. ନ. (ଶୁକ୍ତି-ଜ, ବୀଜ) ମୌକ୍ତିକ, ମୁକ୍ତାଫଳ । ବଂ. ଶୁକ୍ତିଜାତ ।

ଶୁକ୍ତିମାନ୍, ବ. ପୁଂ. ( ଶୁକ୍ତି-ମତ୍ ) ପର୍ବତବିଶେଷ ।

ଶୁକ୍ର, ବ. ପୁଂ. (ଶୁଚ୍-ରକ୍) ଭାର୍ଗବ; ଦୈତ୍ୟଗୁରୁ; ଗ୍ରହବିଶେଷ; ଅଗ୍ନି; ଚିତ୍ରକବୃକ୍ଷ; ଜ୍ୟେଷ୍ଠମାସ । ନ. ତେଜଃ; ଶରୀରସ୍ଥ ଧାତୁବିଶେଷ; ବୀର୍ଯ୍ୟ; ରେତଃ ।

ଶୁକ୍ରକର, ବ. ପୁଂ. (ଶୁକ୍ର-କର) ମଜ୍ଜା । ବଂ. ବୀର୍ଯ୍ୟକାରକ ।

ଶୁକ୍ରଭୁକ୍, ବ. ପୁଂ. (ଶୁକ୍ର-ଭୁଜ୍-୦) ମୟୂର । ବଂ. ରେତୋଭୋଜକ ।

ଶୁକ୍ରବାର, ବ. ପୁଂ. (ଶୁକ୍ର-ବାର) ଶୁକ୍ରଗ୍ରହର ଭୋଗ୍ୟ ଦିନ; ସପ୍ତାହର ପଞ୍ଚମ ଦିନ ।

ଶୁକ୍ରଶିଷ୍ୟ, ବ. ପୁଂ. (ଶୁକ୍ର-ଶିଷ୍ୟ) ଦୈତ୍ୟ, ଅସୁର ।

ଶୁକ୍ଳ, ବଂ. ( ଶୁକ୍-ଲକ୍ ) ଶ୍ୱେତବର୍ଣ୍ଣବିଶିଷ୍ଟ; ଶାଦା; ଶୁଭ୍ର । ବ. ପୁଂ. ଶ୍ୱେତବର୍ଣ୍ଣ; ଶୁକ୍ଳପକ୍ଷ । ନ. ରଜତ, ରୌପ୍ୟ; ନବନୀତ ।

ଶୁକ୍ଳକର୍ମା, ବଂ. ( ଶୁକ୍ଳ-କର୍ମନ୍ ) ଅକ୍ଲିଷ୍ଟକର୍ମା, ସତ୍କର୍ମରେ ଅନୁଷ୍ଠାତା, ଚରିତ୍ର ।

ଶୁକ୍ଳକନ୍ଦ, ବ. ପୁଂ. ମହିଷକନ୍ଦ; ଶ୍ୱେତମୂଳ; ନା-ସ୍ତ୍ରୀ. ଅତିବିଷା ।

ଶୁକ୍ଳଧାତୁ, ବି. ପୁଂ. (ଶୁକ୍ଳ-ଧାତୁ) ଖଡ଼ୀ ।

ଶୁକ୍ଳପକ୍ଷ, ବି. ପୁଂ. (ଶୁକ୍ଳ-ପକ୍ଷ) ଶୁକ୍ଳ ପ୍ରତିପଦ-ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପଞ୍ଚଦଶ ତିଥି ।

ଶୁକ୍ଳପୁଷ୍ପ, ବି. ପୁଂ. କୁନ୍ଦପୁଷ୍ପ ବୃକ୍ଷ । ବିଂ. ଶ୍ୱେତ-କୁସୁମଯୁକ୍ତ । ଷ୍ପା-ସ୍ତ୍ରୀ. ନାଗଦନ୍ତୀ; ଚୀତକୁମ୍ଭୀ; ଷ୍ପୀ-ସ୍ତ୍ରୀ. ନାଗଦନ୍ତୀ ।

ଶୁକ୍ଳା, ବି. ସ୍ତ୍ରୀ. (ଶୁକ୍ଳ-ଆ) ସରସ୍ୱତୀ; ଶର୍କରା ।

ଶୁକ୍ଳାଙ୍ଗୀ, ବି. ସ୍ତ୍ରୀ. (ଶୁକ୍ଳ-ଅଙ୍ଗୀ) ଶେଫାଳିକା ।

ଶୁକ୍ଳୋପଳା, ବି. ସ୍ତ୍ରୀ. ( ଶୁକ୍ଳ-ଉପଳା ) ଶର୍କରା, ଚିନି । ପୁଂ. ଧଳା ପଥର ।

ଶୁଖିବା, କ୍ରି. ବି. (ଶୁଷ୍କ ଶବ୍ଦଜ) ଶୁଷ୍କ ହେବା ।

ଶୁଙ୍ଗ, ବି. ପୁଂ. (ଶମ୍-ଗ) ବଟବୃକ୍ଷ, ଆମ୍ରାତକ ।

ଶୁଙ୍ଘିବା, ବି. (ଦେଶଜ) ଅଘ୍ରାଣ କରିବା ।

ଶୁଙ୍ଗୀ, ବି. ପୁଂ. (ଶୁଙ୍ଗ-ଇନ୍) ବଟବୃକ୍ଷ; ପାକୁଡ଼-ଗଛ ।

ଶୁଚ୍, ଶୁଚ୍, ବି. ସ୍ତ୍ରୀ. (ଶୁଚ୍-୦) ଶୋକ, ଦୁଃଖ, ମନସ୍ତାପ ।

ଶୁଚି, ବି. ପୁଂ. ( ଶୁଚ୍-ଇ ) ଅଗ୍ନି; ଚିତକ-ବୃକ୍ଷ; ଜ୍ୟେଷ୍ଠମାସ; ଆଷାଢ଼ମାସ; ସୂର୍ଯ୍ୟ; ଚନ୍ଦ୍ର; ମହାଦେବ; ବୃହସ୍ପତି; ବ୍ରାହ୍ମଣ; ଅନ୍ନ-ପ୍ରାଶନକାଳୀନ ହୋମ; ଗ୍ରୀଷ୍ମକାଳ; ଶୃଙ୍ଗାର-ରସ; ସୌଗନ୍ଧି; ଶ୍ୱେତବର୍ଣ୍ଣ; ଶୁକ୍ଳରଙ୍ଗ; ଶୁଦ୍ଧମନ୍ତ୍ରୀ; ଧବ ବୃକ୍ଷ । ବିଂ. ନିର୍ଦ୍ଦୋଷ; ଅନୁପ-ହତ; ଶୁଦ୍ଧ; ପବିତ୍ର; ନିର୍ମଳ; ଶ୍ୱେତବର୍ଣ୍ଣ-ଯୁକ୍ତ; ଶୁଭ୍ର; ଅନୁକୂଳ ।

ଶୁଚିତା, ବି. ସ୍ତ୍ରୀ. ( ଶୁଚି-ତା ) ଶୁଦ୍ଧତା; ପବିତ୍ରତା; ନିର୍ମଳତା ।

ଶୁଚିଦ୍ରୁମ, ବି. ପୁଂ. ଅଶ୍ୱତ୍ଥବୃକ୍ଷ ।

ଶୁଚିଶ୍ରେଣୀ, ବି. ସ୍ତ୍ରୀ. (ଶୁଚି-ଶ୍ରେଣୀ) ଅଗମନ ।

ଶୁଚିରୋଚିଃ, ବି. ପୁଂ. (ଶୁଚି-ରୋଚିସ୍ ) ଚନ୍ଦ୍ର; ଶୁକ୍ଳକିରଣ ।

ଶୁଜ, ବି.(ଦେଶଜ) ଗହମ ପେଷା ହେଲା ଉତ୍ତାରେ ତାହାର ଯେଉଁ ଅତି ସରୁତମ ମଇଦା ନ ହୋଇ ରହେ ।

ଶୁଝିବା, କ୍ରି. ବି. (ଦେଶଜ) ପରିଶୋଧ କରିବା ।

ଶୁଣ୍ଠି, ଶୁଣ୍ଠୀ, ବି. ସ୍ତ୍ରୀ. (ଶୁଣ୍ଠ-ଇ) ଶୁଷ୍କ ଅଦ୍ରକ ।

ଶୁଣ୍ଡ, ବି. ପୁଂ. (ଶୁନ୍-ଡ) କରହସ୍ତ, ହାତୀଶୁଣ୍ଢ, ହସ୍ତିର ଗଣ୍ଡସ୍ଥଳରୁ ମଦକ୍ଷରଣ ।

ଶୁଣ୍ଡଧର, ବି. ପୁଂ. (ଶୁଣ୍ଡ-ଧର) ହସ୍ତୀ, କରୀ ।

ଶୁଣ୍ଡକ, ବି. ପୁଂ. (ଶୁଣ୍ଡ-କ) ଶୌଣ୍ଡିକ, ଶୁଣ୍ଡୀ; ଯୁଦ୍ଧବେଣୁ, ରଣଶିଙ୍ଗା ।

ଶୁଣ୍ଡାଳ, ବି. ପୁଂ. (ଶୁଣ୍ଡା-ଲ) କରୀ, ହସ୍ତୀ ।

ଶୁଣ୍ଡୀ, ବି. ପୁଂ. (ଶୁଣ୍ଡା-ଇନ୍) ସୁରାପ୍ରସ୍ତୁତକାରକ; ହସ୍ତୀ ।

ଶୁଦ୍ଧ, ବିଂ. (ଶୁଧ୍-ତ) ପବିତ୍ର; ସ୍ୱଚ୍ଛ, ନିର୍ମଳ; ଉଜ୍ଜ୍ୱଳ; ନିର୍ଦ୍ଦୋଷ; ଶାଣିତ; କ୍ଷମତାପ୍ରାପ୍ତ; ଅମିଶ୍ରିତ; ଉଦ୍ଧୃତ; ଶୁଭ୍ର; କେବଳ । ବି. ନ. ସୈନ୍ଧବ ଲବଣ; ମରିଚ ।

ଶୁଦ୍ଧଚାରୀ, ବିଂ. ( ଶୁଦ୍ଧ-ଚର୍-ଇନ୍ ) ନିର୍ମଳ-ଚରିତ୍ର, ନିର୍ଦ୍ଦୋଷ ।

ଶୁଦ୍ଧମତି, ବିଂ. ପବିତ୍ର ବୁଦ୍ଧିବିଶିଷ୍ଟ ।

ଶୁଦ୍ଧାନ୍ତ, ବି. ପୁଂ. ( ଶୁଦ୍ଧ-ଅନ୍ତ ) ଅନ୍ତଃପୁର; ଅନ୍ତଃପୁରସ୍ତ୍ରୀ; ସ୍ତ୍ରୀ. ରାଜ୍ଞୀ, ରାଜପତ୍ନୀ; ରାଜାଙ୍କ ରକ୍ଷିତା ସ୍ତ୍ରୀ ।

ଶୁଦ୍ଧି, ବି. ସ୍ତ୍ରୀ. ( ଶୁଧ୍-ତି ) ଶୋଧନ, ଶୁଦ୍ଧତା, ସ୍ୱଚ୍ଛତା, ନିର୍ମଳତା; ମାର୍ଜ୍ଜନା, ପରିଷ୍କାର, ପବିତ୍ରତା, ସଂସ୍କାରବିଶେଷ, ଦୁର୍ଗା ।

ଶୁନକ, ବି. ପୁଂ. ଶ୍ୱାନ । ପୁଂ. ସ୍ତ୍ରୀ. (ଶୁନ୍-ଅ(କ)) କୁକୁର ।

ଶୁନାସୀର, ଶୁନାଶୀର, ବି. ପୁଂ. ଇନ୍ଦ୍ର; ପେଚକ ।

ଶୁଭ, ବି. ନ. ( ଶୁଭ୍-ଅ ) କ୍ଷେମ, ମଙ୍ଗଳ; ସୁଖ; ପଦ୍ମକାଷ୍ଠ । ପୁଂ. ଯୋଗବିଶେଷ । ବିଂ.ମଙ୍ଗଳ-ଦାୟକ; ସୁଖୀ; କୁଶଳୀ; ସୁନ୍ଦର; ମନୋହର ।

ଶୁଭଂଯୁ, ବିଂ. (ଶୁଭଂ-ଯୁ ) ଶୁଭାନ୍ୱିତ, କୁଶଳୀ ।

ଶୁଭଙ୍କର, ଶୁଭଙ୍କର, ବିଂ. ( ଶୁଭ-କୃ-ଅ ) ଶୁଭ-ଜନକ, ମଙ୍ଗଳକର । ବି. ପୁଂ. ସ୍ୱନାମପ୍ରସିଦ୍ଧ ଅଙ୍କଶାସ୍ତ୍ରକାରକ । ରୀ-ସ୍ତ୍ରୀ. ପାର୍ବତୀ ।

ଶୁଭଗ୍ରହ, ବି. ପୁଂ. (ଶୁଭ-ଗ୍ରହ) ସୌମ୍ୟଗ୍ରହ ।

ଶୁଭପତ୍ରିକା, ବି. ସ୍ତ୍ରୀ. ଶାଳପର୍ଣ୍ଣୀ, ମଙ୍ଗଳପତ୍ରିକା ।

ଶୁଭପ୍ରବଣା, ବି. ସ୍ତ୍ରୀ. ଦେବୀବିଶେଷ, ସୁବଚନା ।

ଶୁଭଦ, ବିଂ. (ଶୁଭ-ଦା) ଶୁଭଦାୟକ, ଶୁଭଜନକ । ବିଂ. ପୁଂ. ଅଶ୍ୱତ୍ଥବୃକ୍ଷ ।

ଶୁଭସ୍ଥଳୀ, ବି. ସ୍ତ୍ରୀ. ( ଶୁଭ-ସ୍ଥଳୀ ) ଯଜ୍ଞଭୂମି, ମଙ୍ଗଳଦାୟକ ସ୍ଥାନ ।

ଶୁଭା, ବି. ସ୍ତ୍ରୀ. ( ଶୁଭ-ଅ-ଆ ) ଶୋଭା, କାନ୍ତି; ଇଚ୍ଛା; ପାର୍ବତୀଙ୍କ ସଖୀବିଶେଷ; ଦେବସଭା; ବଂଶଲୋଚନା; ଗୋରଚନା; ଶମୀ; ପ୍ରିୟଙ୍ଗୁ; ଶ୍ୱେତଦୂର୍ବା । ବିଂ. ମଙ୍ଗଳଜନକା ।

ଶୁଭାଙ୍ଗୀ, ବି. ସ୍ତ୍ରୀ. (ଶୁଭ-ଅଙ୍ଗ) କୁବେରପତ୍ନୀ; ସୁନ୍ଦର ଅବୟବବିଶିଷ୍ଟା ସ୍ତ୍ରୀ ।

ଶୁଭିବା, କ୍ରି. ବି. (ଦେଶଜ) ଶ୍ରବଣ ପଥକୁ ଆସିବା ।

ଶୁଭ୍ର, ବି. ପୁଂ. ( ଶୁଭ-ର ) ଶୁକ୍ଳବର୍ଣ୍ଣ; ଚନ୍ଦନ । ନ. ଅଭ୍ରକ; ରୌପ୍ୟ । ବିଂ. ଶୁକ୍ଳବର୍ଣ୍ଣବିଶିଷ୍ଟ; ଉଦ୍ଦୀପ୍ତ ।

ଶୁଭ୍ରଦନ୍ତା, ଶୁଭ୍ରଦନ୍ତୀ, ବି. ସ୍ତ୍ରୀ. (ଶୁଭ୍ର-ଦନ୍ତ-ଆ, ଈ) ବାୟୁକୋଣର ଦିଗ୍‌ହସ୍ତିନୀ; ପୁଷ୍ପଦନ୍ତ ନାମକ ଦିଗ୍‌ଗଜର ସ୍ତ୍ରୀ; ସୁଦନ୍ତୀ, ଉତ୍ତମ ଦନ୍ତବିଶିଷ୍ଟା ସ୍ତ୍ରୀ ।

ଶୁଭ୍ରରଶ୍ମି, ଶୁଭ୍ରାଂଶୁ, ବି. ପୁଂ. ( ଶୁଭ୍ର-ରଶ୍ମି, ଅଂଶୁ) ଚନ୍ଦ୍ର, ସୁଧାଂଶୁ; କର୍ପୂର ।

ଶୁମ୍ଭ, ବି. ପୁଂ. (ଶୁନ୍ଭ୍-ଅ) ଦୈତ୍ୟବିଶେଷ ।

ଶୁମ୍ଭଘାତିନୀ, ଶୁମ୍ଭମର୍ଦ୍ଦିନୀ, ବି. ସ୍ତ୍ରୀ. (ଶୁମ୍ଭ-ଘାତିନୀ, ମର୍ଦ୍ଦିନୀ) ଦୁର୍ଗା ।

ଶୁଲ୍କ, ବି. ପୁଂ. ନ. (ଶୁଲ୍-କ) ମାସୁଲ; ଯୌତୁକ; ମୂଲ୍ୟ; ବାଜୀ ।

ଶୁଲ୍ବ, ବି. ନ. (ଶୁଲ୍ବ୍-ଅ) ତାମ୍ର; ରଜ୍ଜୁ; ଯଜ୍ଞକର୍ମ; ଆଚାର; ଜଳସନ୍ନିଧି ।

ଶୁଶ୍ରୁବାନ୍, ବିଂ. (ଶ୍ରୁ-ବସ୍ ଭୂତକାଳରେ ଦ୍ୱିତ୍ୱ) ଯେ ଶୁଣିଅଛି ।

ଶୁଶ୍ରୂ, ବି. ସ୍ତ୍ରୀ. ମାତା, ଜନନୀ ।

ଶୁଶ୍ରୂଷଣ, ବି. ନ. (ଶ୍ରୁ-ସନ୍-ଅନ, ଦ୍ୱିତ୍ୱ) ସେବା, ଉପାସନା; ଶ୍ରବଣେଚ୍ଛା ।

ଶୁଶ୍ରୂଷା, ବି. ସ୍ତ୍ରୀ. ( ଶ୍ରୁ-ସନ୍-ଅ-ଆ ଦ୍ୱିତ୍ୱ ) ଶ୍ରବଣେଚ୍ଛା, ପରିଚର୍ଯ୍ୟା; ସେବା; କଥନ ।

ଶୁଶ୍ରୂଷୁ, ବିଂ. (ଶ୍ରୁ-ସନ୍-ଉ, ଦ୍ୱିତ୍ୱ) ଶ୍ରବଣେଚ୍ଛୁ; ସେବକ ।

ଶୁଷିର, ବି. ନ. (ଶୁଷ୍-ଇର) ରନ୍ଧ୍ର, ଛିଦ୍ର, ଗର୍ତ୍ତ; ଅବକାଶ । ପୁଂ. ମୂଷିକ; ଅଗ୍ନି । ବିଂ. ସଚ୍ଛିଦ୍ର, ରନ୍ଧ୍ରଯୁକ୍ତ ।

ଶୁଷିଲ, ବି. ପୁଂ. (ଶୁଷ୍-ଇର୍, ର=ଲ) ବାୟୁ ।

ଶୁଷ୍କ, ବିଂ. ( ଶୁଷ୍-ତ, ତ ସ୍ଥାନେ କ ) ନୀରସ, ଶୁଖିଲା; ଅକାରଣ, ହେତୁଶୂନ୍ୟ, ନିରର୍ଥକ; ଶୀର୍ଣ୍ଣ ।

ଶୁଷ୍କଲ, ବି. ପୁଂ. (ଶୁଷ୍କ-ଲା-ଅ) ଆମିଷ, ମାଂସ । ବିଂ. ଆମିଷଭୋଜୀ ।

ଶୁଷ୍କାର୍ଦ୍ର, ବି. ନ. (ଶୁଷ୍କ-ଆର୍ଦ୍ର) ଶୁଣ୍ଠି ।

ଶୁଷ୍ମ, ବି. ପୁଂ. (ଶୁଷ୍-ମ) ସୂର୍ଯ୍ୟ, ଅଗ୍ନି ।

ଶୂକ, ବି. ପୁଂ. ନ. ( ଶୋ-ଉକ, ନିପାତନ ) ଶସ୍ୟାଦିର ସୂକ୍ଷ୍ମାଗ୍ରଭାଗ; ଦୟା; ଶଙ୍କା; ଜଳଜନ୍ତୁବିଶେଷ ।

ଶୂକର, ସୂକର, ପୁଂ. } ଶୂକରୀ, ସ୍ତ୍ରୀ. } ବି. (ଶୂକ-ର ଅଥବା ଶୂ-କର) ବରାହ । ସ୍ତ୍ରୀ. ବରାହକାନ୍ତା; ଶୂକରପତ୍ନୀ ।

ଶୂକଲ, ବି. ପୁଂ. ଦୁର୍ବିନୀତ ଅଶ୍ୱ, ଦୁଷ୍ଟଘୋଡ଼ା ।

ଶୂକ୍ଷ୍ମ, ବିଂ. (ସୂଚ୍-ମନ୍, ସୂ=ଶୂ) ଅଳ୍ପ, ସରୁ, ମିହି; କୁଟିଳ, କୁଶଳ; ପରମାତ୍ମବିଷୟକ ।

ଶୂଦ୍ର, ବି.ପୁଂ. (ଶୁଚ୍-ରକ୍, ଉ=ଊ, ଚ ସ୍ଥାନେ ଦ) ବ୍ରାହ୍ମଣାଦି ଚତୁର୍ବର୍ଣ୍ଣର ଅନ୍ତର୍ଗତ ଚତୁର୍ଥ ବର୍ଣ୍ଣ; ବ୍ରହ୍ମାଙ୍କ ପାଦରୁ ଜାତ । ସ୍ତ୍ରୀ. ଶୂଦ୍ରଜାତୀୟା ସ୍ତ୍ରୀ, ଶୂଦ୍ରର ପତ୍ନୀ ।

ଶୂନା, ବି. ସ୍ତ୍ରୀ. (ଶ୍ୱି-ତ-ଆ) ମାଂସର ହାଟ, ବଧଭୂମି, ପ୍ରାଣିବଧ ସ୍ଥାନ ।

ଶୂନାବାନ୍, ବି. ପୁଂ. (ଶୂନା-ବତ୍) କସାଇ ।

ଶୂନ୍ୟ, ବି. ନ. (ଶ୍ୱି-ଉନ-ଯ, ଶ=ଶ) ଆକାଶ; ବିନ୍ଦୁ; ନିର୍ଜନସ୍ଥାନ; ଅଭାବ । ବିଂ. ଖାଲି, ନିର୍ଜନ; ରହିତ; ତୁଚ୍ଛ । ନ୍ୟା-ସ୍ତ୍ରୀ. ନଳୀ; ନାଗଫେଣିଆ; ବନ୍ଧ୍ୟା ।

ଶୂନ୍ୟଗର୍ଭ, ଶୂନ୍ୟମଧ୍ୟ, ବିଂ. (ଶୂନ୍ୟ-ଗର୍ଭ, ମଧ୍ୟ) ଯାହାର ଭିତର ଖାଲି, ଫମ୍ପା ।

ଶୂପକାର । ବି. ପୁଂ. ପାଚକ ।

ଶୂୟମାନ, ବିଂ. (ଶ୍ୱି-ଆନ) ଯାହା ସ୍ଫୀତ ହେଉଅଛି ।

ଶୂର, ବି. ପୁଂ. (ଶୂର୍-ଅ) ଯାଦବବିଶେଷ, କୃଷ୍ଣଙ୍କ ପିତାମହ; ସୂର୍ଯ୍ୟ; ବୀର, ସାହସୀ; ସିଂହ; ଶୂକର; ଚିତ୍ରକ; ଶାଳବୃକ୍ଷ; ମୟୂର । ବିଂ. ବଳବାନ୍ ।

ଶୂରଣ, ବି.ପୁଂ. (ଶୂର୍-ଅନ) ଖାଦ୍ୟମୂଳ, ଓଲୁଅ ପ୍ରଭୃତି; ଶୋଣାକବୃକ୍ଷ ।

ଶୂରତା, ସ୍ତ୍ରୀ. } ବି. (ଶୂର-ତା, ତ୍ୱ) ଶୌର୍ଯ୍ୟ,
ଶୂରତ୍ୱ, ନ. } ପରାକ୍ରମ, ସାହସ ।

ଶୂରସେନ, ବି. ପୁଂ. (ଶୂର-ସେନା) ଯଦୁବଂଶୀୟ ନୃପବିଶେଷ; ଦେଶବିଶେଷ, ମଥୁରା ।

ଶୂର୍ପ, ସୂର୍ପ, ବି. ପୁଂ. ନ. (ଶୂର୍ପ-ଅ) ତଣ୍ଡୁଳାଦି ପରିଷ୍କାର କରିବା ନିମନ୍ତେ ବାଉଁଶାଦିନିର୍ମିତ ପାତ୍ରବିଶେଷ, କୁଲା ।

ଶୂର୍ପକର୍ଣ୍ଣ, ଶୂର୍ପଶ୍ରୁତି, ବି. ପୁଂ. (ଶୂର୍ପ-କର୍ଣ୍ଣ, ଶ୍ରୁତି) ହସ୍ତୀ, ଗଜ । ବିଂ. ଶୂର୍ପତୁଲ୍ୟ କର୍ଣ୍ଣଯୁକ୍ତ ।

ଶୂର୍ପଣଖା, ବି.ସ୍ତ୍ରୀ. (ଶୂର୍ପ-ନଖ) ରାବଣର ଭଗିନୀ ।

ଶୂଳ, ବି. ପୁଂ. ନ. (ଶୂଳ୍-ଅ) ଉଦରଜାତ ବେଦନା, ରୋଗବିଶେଷ; ବ୍ୟଥା; ଶଳାକାକୃତି ଅସ୍ତ୍ର; ତ୍ରିଶୂଳ; ମୃତ୍ୟୁ; ଧ୍ୱଜା । ପୁଂ. ଯୋଗବିଶେଷ; ଚିହ୍ନ । ଳା-ସ୍ତ୍ରୀ. ଶଙ୍କୁ; ବେଶ୍ୟା ।

ଶୂଳଧନ୍ୱା, ବି. ପୁଂ. (ଶୂଳ-ଧନ୍ୱନ୍) ଶିବ, ମହାଦେବ ।

ଶୂଳଧର, ବି. ପୁଂ. (ଶୂଳ-ଧର) ଶିବ । ରା-ସ୍ତ୍ରୀ. ଦୁର୍ଗା ।

ଶୂଳଧୃକ୍, ବି. ସ୍ତ୍ରୀ. (ଶୂଳ-ଧୃଷ୍-୦) ଦୁର୍ଗା । ପୁଂ. ଶିବ, ତ୍ରିଶୂଳଧାରୀ ।

ଶୂଳପାଣି, ଶୂଳଭୃତ୍, ବି. ପୁଂ. (ଶୂଳ-ପାଣି-ଭୃତ୍) ଶିବ । ସ୍ତ୍ରୀ. ଦୁର୍ଗା ।

ଶୂଳା, ବି. (ଶୂଳ ଶବ୍ଦଜ) ବେଦନାବିଶେଷ ।

ଶୂଳିକ, ବି. ନ. (ଶୂଳ୍-ଇକ) ଶୂଳକୃତ ମାଂସ । ପୁଂ. ଶଶକ । ବିଂ. ଶୂଳଯୁକ୍ତ ।

ଶୂଳୀ, ବି. ପୁଂ. (ଶୂଳ-ଇନ୍) ଶିବ; ଶଶା । ବିଂ. ଶୂଳଧାରୀ; ଶୂଳରୋଗୀ । ଳିନୀ-ସ୍ତ୍ରୀ. ଦୁର୍ଗା ।

ଶୃକାଳ, ଶୃଗାଳ, ବି. ପୁଂ. (ସୃକ୍-ଆଳ ନିପାତନ) ବିଲୁଆ, ଶିବା, ଗୋମାୟୁ; କନ୍ଦୁଭାଷୀ ବ୍ୟକ୍ତି; ଖଡ଼ବାର । ବିଂ. ନିଷ୍ଠୁର; ଖଳ ।

ଶୃଗାଳକା, ଶୃଗାଳୀ, ବି. ସ୍ତ୍ରୀ. (ଶୃଗାଳୀ-କ, ଶୃଗାଳ-ଈ) ଭୟରେ ପଳାୟନ; କୋକିଶିଆଳୀ; ସ୍ତ୍ରୀ ଶୃଗାଳ; ଭୂମିକୁଷ୍ମାଣ୍ଡ; କୋକିଳାକ୍ଷ ।

ଶୃଙ୍ଖଳ, ବି. ପୁଂ. ନ. } (ଶୃଙ୍ଖ-ଖଲ୍-ଅ ନିପାତନ)
ଶୃଙ୍ଖଳା, ବି. ସ୍ତ୍ରୀ. } ପୁରୁଷର କଟିଭୂଷଣ; ପୁରୁଷର କଟିବସ୍ତ୍ରବନ୍ଧ; ଲୌହମୟ ପାଦବନ୍ଧନୀ, ଶିକୁଳି; ବନ୍ଧନ; ନିୟମ, ରୀତି; ବନ୍ଧନୀ, ବ୍ରାକେଟ ଚିହ୍ନ ।

ଶୃଙ୍ଖଳିତ, ବିଂ. (ଶୃଙ୍ଖଳ-ଇତ) ଶୃଙ୍ଖଳାବଦ୍ଧ, ନିଗଡ଼ିତ ।

ଶୃଙ୍ଗ, ବି. ନ. (ଶୃ-ଗନ୍-ନିପାତନ) ଶିଖର, ପର୍ବତର ଅଗ୍ରଭାଗ; ଧନୁକାଦିର ଅଗ୍ର; ବିଷାଣ; ଚିହ୍ନ; ପ୍ରଭାବ; ପ୍ରଭୁତ୍ୱ; ଉତ୍କର୍ଷ; ଶୃଙ୍ଗନିର୍ମିତ ବାଦ୍ୟଯନ୍ତ୍ରବିଶେଷ; ଗଣ୍ଡ ଅଗ୍ରଭାଗ; ଚକ୍ରୁ; ଅଗ୍ର ସୂକ୍ଷ୍ମ । ପୁଂ. ମୁନିବିଶେଷ; ଔଷଧୀୟ ମୂଳବିଶେଷ, ଜୀବକ ।

ଶୃଙ୍ଗକ, ବି. ନ. (ଶୃଙ୍ଗ-କ) ଅଗୁରୁ । ପୁଂ. ଶର, ବାଣ । ବିଂ. ଶୃଙ୍ଗକାର ।

ଶୃଙ୍ଗଧର, ବ. ପୁଂ. (ଶୃଙ୍ଗ-ଧର) ପର୍ବତ; ଶୃଙ୍ଗ-ନାମକ ବାଦ୍ୟଯନ୍ତ୍ର ବଜାଇବା ବ୍ୟକ୍ତି ।

ଶୃଙ୍ଗବାନ୍, ବ. ପୁଂ. (ଶୃଙ୍ଗ-ବତ୍) ପର୍ବତ-ବିଶେଷ । ବି. ଶୃଙ୍ଗବିଶିଷ୍ଟ ।

ଶୃଙ୍ଗବେର, ବ. ନ. (ଶୃଙ୍ଗ-ବେର=ଶରୀର, ଆକାର) ଆର୍ଦ୍ରକ, ଅଦା; ଶୁଣ୍ଠି; ନଗରୀ-ବିଶେଷ; ଗୁହକ ଚଣ୍ଡାଳର ପୁରୀ, ଚଣ୍ଡାଳଗଡ଼ ।

ଶୃଙ୍ଗାଟ, ଶୃଙ୍ଗାଟକ, ଶୃଙ୍ଗାଟିକ, ବ. ନ. (ଶୃଙ୍ଗ-ଅଟ୍-ଅ, କ, ଇକ) ଚତୁଷ୍ପଥ; ଶିଙ୍ଗଡ଼ା । ପୁଂ. ଶିଙ୍ଗଡ଼ାଗଛ; କାମାଖ୍ୟା ଦେଶସ୍ଥ ପର୍ବତ-ବିଶେଷ ।

ଶୃଙ୍ଗାର, ବ. ପୁଂ. (ଶୃଙ୍ଗ-ଅର କମ୍ବା ଶୃଙ୍ଗ-ଋ-ଅ) ଆଦ୍ୟରସ; ଏଥିରେ ରତି ସ୍ଥାୟୀ ଭାବ, ନାୟକ ନାୟିକାର ଆଲମ୍ବନ, ଚନ୍ଦ୍ରଚନ୍ଦନାଦି ଉଦ୍ଦୀପନ; ଭ୍ରୂବିକ୍ଷେପ କଟାକ୍ଷାଦି ଅନୁଭାବ; ସୁରତ, ରତିକ୍ରୀଡ଼ା; ଗଜଭୂଷଣ, ହସ୍ତୀର ମସ୍ତକରେ ସିନ୍ଦୂରାଦିକୃତ ସଜ୍ଜା; ନାଟ୍ୟ; ନାଟ୍ୟରସ । ନ. ଲବଙ୍ଗ; ସିନ୍ଦୂର; ସୁଗନ୍ଧ-ଚୂର୍ଣ୍ଣ; ଆର୍ଦ୍ରକ ।

ଶୃଙ୍ଗାରକ, ଶୃଙ୍ଗାରଭୂଷଣ, ବ. ନ. (ଶୃଙ୍ଗ-ଆରକ, ଶୃଙ୍ଗାର-ଭୂଷଣ) ସିନ୍ଦୂର । ବିଂ. ଶୃଙ୍ଗବିଶିଷ୍ଟ ।

ଶୃଙ୍ଗାରଯୋନି, ବ. ପୁଂ. (ଶୃଙ୍ଗାର-ଯୋନି=ଉତ୍ପତ୍ତି) ମଦନ, କନ୍ଦର୍ପ ।

ଶୃଙ୍ଗାରୀ, ବ. ପୁଂ. (ଶୃଙ୍ଗାର-ଇନ୍) ହସ୍ତୀ; ଗୁଆଗଛ; ମାଣିକ୍ୟ; ଉତ୍ତମ ବେଶ । ବିଂ. ଶୃଙ୍ଗାରବିଶିଷ୍ଟ ।

ଶୃଙ୍ଗି, ଶୃଙ୍ଗୀ, ବ. ସ୍ତ୍ରୀ. ମତ୍ସ୍ୟବିଶେଷ, ଶିଙ୍ଗୀ-ମାଛ; ସ୍ୱର୍ଣ୍ଣ; ଲତାବିଶେଷ ।

ଶୃଙ୍ଗିଣ, ବ. ପୁଂ. (ଶୃଙ୍ଗ-ଇନ) ମେଷ, ଭେଡ଼ା, ମେଣ୍ଢା ।

ଶୃଙ୍ଗୀ, ବ. ପୁଂ. (ଶୃଙ୍ଗ-ଇନ୍) ହସ୍ତୀ; ଶିଖରୀ, ପର୍ବତ; ବୃକ୍ଷ; ଶୃଙ୍ଗବିଶିଷ୍ଟ; ମତ୍ସ୍ୟବିଶେଷ, ଶିଙ୍ଗୀ । ସ୍ତ୍ରୀ. ଗାଭୀ, ମକ୍ଷିକାବିଶେଷ; କୋଷାତକ୍ୟାଖ୍ୟ ଲତା ।

ଶୃଣି, ସୃଣି, ବ. ପୁଂ. ସ୍ତ୍ରୀ. (ଶୃ-ନ, ସୃ-ନ) ଅଙ୍କୁଶ ।

ଶୃତ, ବିଂ. (ଶ୍ରା-ତ) କ୍ୱଥିତ ବା ପକ୍ୱ; (ଦୁଗ୍ଧ, ଘୃତ ବା ଜଳ)

ଶେଉଳ, ବ. ପୁଂ. (ଶକୁଳ ଶବ୍ଦଜ) ମତ୍ସ୍ୟ-ବିଶେଷ ।

ଶେଖର, ବ. ପୁଂ. (ଶିଖ୍-ଅରନ୍) କଣ୍ଠସ୍ଥ ପୁଷ୍ପ, ଶିଖାସ୍ଥିତ ମାଳ୍ୟ; ଚୂଡ଼ା; କିରୀଟ, ଶିରୋଭୂଷଣ ।

ଶେତା, ବ. (ଶ୍ୱେତ ଶବ୍ଦଜ) ରକ୍ତସ୍ୱଳ୍ପତା ।

ଶେଠ, ବ. (ଶ୍ରେଷ୍ଠୀ ଶବ୍ଦଜ) ବଣିକବିଶେଷ ।

ଶେଠି, ବ. (ଦେଶଜ) ଧୋବା ଜାତିର ଉପାଧି ।

ଶେପ, ଶେଫ, ଶେଫଃ, } ବ. ନ. (ଶୀ-ପ, ଫ, ଫସ୍) ଶିଶ୍ନ, ଲିଙ୍ଗ । ବିଂ. ଶପ୍ତନକର୍ତ୍ତା ।

ଶେଫାଳ, ଶେଫାଳୀ, ଶେଫାଳିକା, ବ. ସ୍ତ୍ରୀ. (ଶେଫ-ଅଳ, ଶେଫାଳୀ-କ-ଆ) ଗଙ୍ଗଶିଉଳି ଫୁଲ; ନୀଳସିନ୍ଧୁବାର ।

ଶେମୁଷୀ, ବ. ସ୍ତ୍ରୀ. (ଶେ-ମୁଷ-ଈ) ବୁଦ୍ଧି, ମତି, ଧୀଷଣା ।

ଶେଯ, ବ. (ଶଯ୍ୟା ଶବ୍ଦଜ) ଶଯ୍ୟା । ଯଥା—

ଭୂତର ତଳ୍ପରେ ଶେଯକୁ, ଦେବେଶ ରବେ ଲଜକୁ ।
ଚ. ଚ.

ଶେଲ, ବ. (ଶୂଳ ଶବ୍ଦଜ) ଶଲ୍ୟ ନାମକ ଅସ୍ତ୍ର-ବିଶେଷ, ଶୂଳ ।

ଶେଲୁ, ବ. ପୁଂ. (ଶିଲ୍-ଉ) ବହୁବାରକ ବୃକ୍ଷ, ଓଆଉଗଛ ।

ଶେବଳ, ଶେବାଳ, ବ. ନ. (ଶୀ-ବଳ, ବାଳ) ଶୈବାଳ, ଶିଉଳି ।

ଶେବଳିନୀ, ବ. ସ୍ତ୍ରୀ. (ଶେବଳ-ଇନ୍-ଈ) ନଦୀ ।

ଶେଷ, ବ. ପୁଂ. ( ଶିଷ୍-ଅ ) ସର୍ପରାଜ, ଅନନ୍ତ-ଦେବ, ବାସୁକି; ବଳରାମ; ଭଗବାନଙ୍କର ଦ୍ୱିତୀୟ ମୂର୍ତ୍ତି; ବିନାଶ, ଧ୍ୱଂସ; ନିବୃତ୍ତି; ଅନ୍ତ; ଅବଶେଷ । ନ. ପ୍ରସାଦ, ଅନୁଗ୍ରହ । ବିଂ. ଅବଶିଷ୍ଟ; ପରିତ୍ୟକ୍ତ; ଉଚ୍ଛିଷ୍ଟ । ଷା, ସ୍ତ୍ରୀ. ପ୍ରସାଦ-ଦତ୍ତ ମାଳ୍ୟ, ଅନୁଗ୍ରହପୂର୍ବକ ପ୍ରଦତ୍ତ ମାଳା ।

ଶୈକ୍ଷ, ବ. ପୁଂ. ( ଶିକ୍ଷା-ଅ) ପ୍ରାଥମକଳ୍ପିକ,ପ୍ରଥମ ଶିକ୍ଷଣୀୟ ଶାସ୍ତ୍ରାଧ୍ୟୟନକାରୀ ଛାତ୍ର ।

ଶୈକ୍ଷିକ , ବଂ. (ଶିକ୍ଷ-ଇକ) ଶିକ୍ଷାଶାସ୍ତ୍ରବେତ୍ତା ।

ଶୈଖରିକ, ବ. ପୁଂ. ( ଶିଖର-ଇକ ) ଅପାମାର୍ଗ; ଅପମାରଙ୍ଗ ।

ଶୈତ୍ୟ, ବ.ନ.(ଶୀତ-ଯ) ଶୀତଳତ୍ୱ, ଶୀତଗୁଣ ।

ଶୈଥିଲ୍ୟ, ବ. ନ. ( ଶିଥିଳ-ଯ ) ଶିଥିଳତ୍ୱ; ଅଦୃଢସଂଯୋଗ; ଅସତ୍ପରତା; ଅବସନ୍ନତା ।

ଶୈନେୟ, ବ. ପୁଂ. (ଶିନି–ଏୟ) ସାତ୍ୟକି, କୃଷ୍ଣଙ୍କ ସାରଥି ।

ଶୈରନ୍ଧ୍ରୀକ, ବ. ନ. ଶିରସ୍ତ୍ରାଣ ଯେ ସ୍ନାନ ଜଳରେ ।

ଶୈରୀଷକ, ବ. ପୁଂ. ମାଳକଙ୍ଗୁଣୀ ।

ଶୈଳ, ବ. ପୁଂ. (ଶିଳା-ଅ) ଭୂଧର, ପର୍ବତ । ନ. ଶୈଳେୟ, ଗନ୍ଧଦ୍ରବ୍ୟ । ବଂ. ଶିଳା–ସମ୍ବନ୍ଧୀୟ, ପାର୍ବତୀୟ । ଳୀ-ସ୍ତ୍ରୀ. କୌଶଳ; ସ୍ୱଭାବ ।

ଶୈଳଜ, ଶୈଳକ, ବ. ନ. (ଶୈଳ-କ, ଜ) ପାର୍ବତୀୟ ଗନ୍ଧଦ୍ରବ୍ୟବିଶେଷ । ଜା-ସ୍ତ୍ରୀ.ପାର୍ବତୀ, ଦୁର୍ଗା, ଗଜପିପ୍ପଳୀ ।

ଶୈଳଧନ୍ୱା, ବ. ପୁଂ. (ଶୈଳ-ଧନ୍ୱନ୍) ଶିବ, ମହାଦେବ ।

ଶୈଳଧର, ବ. ପୁଂ (ଶୈଳ-ଧର) କୃଷ୍ଣ, ବିଷ୍ଣୁ ।

ଶୈଳପତ୍ର, ବ. ପୁଂ. ବିଲ୍ୱବୃକ୍ଷ ।

ଶୈଳପତି, } ବ. ପୁଂ. (ଶୈଳ-ପତି, ରାଜ)
ଶୈଳରାଜ, } ହିମାଳୟ ପର୍ବତ ।

ଶୈଳସୁତା, ବ. ସ୍ତ୍ରୀ. (ଶୈଳ-ସୁତା) ପାର୍ବତୀ, ଦୁର୍ଗା; ଗଙ୍ଗା ।

ଶୈଳାଖ୍ୟ, ଶୈଳଜ, ବ. ନ. ଶୈଳେୟ, ଶିଳାଜତୁ ।

ଶୈଳାଟ, ବ. ପୁଂ. (ଶୈଳ-ଅଟ୍-ଅ) ସିଂହ; ବ୍ୟାଧ; ପାର୍ବତୀୟ ଜାତି; ଦେବପୂଜକ; ଶୁକ୍ଳ-କାଚ, ସ୍ଫଟିକ ।

ଶୈଳୀ, ବ. ସ୍ତ୍ରୀ. ( ଶୀଳ-ଅ-ଈ ) କୌଶଳ, ସଂକ୍ଷିପ୍ତ ପ୍ରଣାଳୀ ।

ଶୈଳୂଷ, ବ. ପୁଂ. (ଶିଳୂଷ-ଅ) ନଟ, ନର୍ତ୍ତକ; ଭଣ୍ଡକାରୀ; ବିଲ୍ୱବୃକ୍ଷ; ଧୂର୍ତ୍ତ ।

ଶୈଳେନ୍ଦ୍ର, ବ. ପୁଂ. (ଶୈଳ-ଇନ୍ଦ୍ର) ହିମାଳୟ ପର୍ବତ; ପର୍ବତଶ୍ରେଷ୍ଠ ।

ଶୈଳେନ୍ଦ୍ରସ୍ଥ, ବ. ପୁଂ. ଭୂର୍ଜବୃକ୍ଷ ।

ଶୈଳେୟ, ବ. ନ. (ଶୈଳ-ଏୟ) ଶୈଳଜ ଗନ୍ଧୌଷଧିବିଶେଷ; ସୈନ୍ଧବ ଲବଣ । ପୁଂ. ସିଂହ; ଭ୍ରମର । ବଂ. ଶୈଳସମ୍ଭୂତ, ଶୈଳ-ଜାତ; ଶୈଳସମ୍ବନ୍ଧୀୟ । ୟୀ-ସ୍ତ୍ରୀ. ପାର୍ବତୀ, ଦୁର୍ଗା ।

ଶୈଲ୍ୟ, ବଂ. (ଶିଳା-ଯ) ଶିଳାସମ୍ବନ୍ଧୀୟ ।

ଶୈବ, ବ. ପୁଂ. (ଶିବ-ଅ) ଶିବଙ୍କ ଉପାସକ, ଶିବଭକ୍ତ; ଅସ୍ତ୍ରବିଶେଷ; ଧୁସ୍ତୁର । ନ. ଶୈବାଳ; ଶିବପୁରାଣ । ବଂ. ଶିବସମ୍ବନ୍ଧୀୟ ।

ଶୈବଳ, ଶୈବାଳ, ବ. ପୁଂ. ନ. (ଶୀ-ବଳ) ଜଳଜାତ ଉଦ୍ଭିଜ୍ଜବିଶେଷ, ଶିଉଳ ।

ଶୈବଳିନୀ, ବ. ସ୍ତ୍ରୀ. ( ଶୈବଳ-ଇନ୍-ଈ ) ତଟିନୀ, ନଦୀ ।

ଶୈବ୍ୟ, ବଂ.(ଶିବ-ଯ) ଶିବସମ୍ବନ୍ଧୀୟ ।(ଶିବି-ଯ) ବ. ପୁଂ. କୃଷ୍ଣଙ୍କ ଅଶ୍ୱବିଶେଷ; ନୃପ ଏବଂ ପାଣ୍ଡବମାନଙ୍କର ସେନାପତିବିଶେଷ । ବ୍ୟା-ସ୍ତ୍ରୀ. ହରିଶ୍ଚନ୍ଦ୍ରରାଜାଙ୍କ ପତ୍ନୀ ।

ଶୈଶବ,ବ.ନ. (ଶିଶୁ-ଅ) ଶିଶୁତ୍ୱ, ବାଲ୍ୟାବସ୍ଥା ।

ଶୈଶିର, ବଂ. (ଶିଶିର-ଅ) ଶିଶିରସମ୍ବନ୍ଧୀୟ ।

ଶୋଠା, ବ. (ଦେଶଜ) ମୋଟାବାଡ଼ି ।

ଶୋଇବା, କ୍ରି. ବ. ( ଶୟନ ଶବ୍ଦଜ ) ଶୟନ କରିବା ।

ଶୋକ, ବ. ପୁଂ. (ଶୁଚ୍-ଅ) ମନୋଦୁଃଖ; ପ୍ରିୟ ବ୍ୟକ୍ତିର ମୃତ୍ୟୁ ଅଥବା ଦୁଃଖାଦି ହେତୁରୁ ମନର ବିକଳତା ।

ଶୋକନାଶ, ବ. ପୁଂ. ଅଶୋକବୃକ୍ଷ ।

ଶୋକାରି, ବ. ପୁଂ. (ଶୋକ-ଅରି) କଦମ୍ବବୃକ୍ଷ ।

ଶୋଚନ, ନ. } ବ. (ଶୁଚ୍-ଅନ-ଅ) ଶୋକ
ଶୋଚନା, ସ୍ତ୍ରୀ. } କରିବା ।

**ଶୋଚଷ୍କେଶ**, ବ. ପୁଂ. (ଶୋଚସ୍-କେଶ) ଅଗ୍ନି ।

**ଶୋଚ୍ୟ, ଶୋଚନୀୟ**, ବଂ. (ଶୁଚ୍-ଯ, ଅନୀୟ) ଶୋକର ବିଷୟ, ଯାହାକୁ ଉଦ୍ଦେଶ୍ୟ କରି ଶୋକ କରାଯାଏ ।

**ଶୋଣ**, ବ. ପୁଂ. (ଶୋଣ୍-ଅ) ରକ୍ତବର୍ଣ୍ଣ; ଅଗ୍ନି; ମଙ୍ଗଳଗ୍ରହ; ରକ୍ତବର୍ଣ୍ଣ ଘୋଟକ; ସମୁଦ୍ର; ରକ୍ତବର୍ଣ୍ଣ ଇକ୍ଷୁବିଶେଷ; ପାଟଣାର ନିକଟସ୍ଥ ନଦୀବିଶେଷ । ନ. ରୁଧିର; ସିନ୍ଦୂର । ବଂ. ରକ୍ତବର୍ଣ୍ଣବିଶିଷ୍ଟ, ଲୋହିତବର୍ଣ୍ଣଯୁକ୍ତ ।

**ଶୋଣଝିଣ୍ଟୀ**, ବ. ସ୍ତ୍ରୀ. କୁରୁବକ; କଣ୍ଟକଣୀ ।

**ଶୋଣପଦ୍ମ**, ବ. ପୁଂ. ରକ୍ତପୁନର୍ନବା ।

**ଶୋଣିତ**, ବ. ନ. (ଶୋଣ-ଇତ) ରୁଧିର, ରକ୍ତ; କୁଙ୍କୁମ । ବଂ. ରକ୍ତବର୍ଣ୍ଣଯୁକ୍ତ, ଲୋହିତ ।

**ଶୋଣିମା**, ବ. ପୁଂ. (ଶୋଣ-ଇମନ୍) ରକ୍ତିମା, ରକ୍ତତ୍ୱ ।

**ଶୋଥ**, ବ. ପୁଂ. (ଶୁ-ଥ) ସ୍ଫୀତତା ରୋଗ ।

**ଶୋଧକ**, ବଂ. (ଶୁଧ୍-ଇ-ଅକ) ଶୋଧନକାରକ, ପାବକ ।

**ଶୋଧନ**, ବ. ନ. (ଶୁଧ୍-ଅନ) ଅପହୃତ ଦ୍ରବ୍ୟ-ପ୍ରତ୍ୟାନୟନ; ନିର୍ଦ୍ଦୋଷକରଣ, ଶୁଦ୍ଧି; ପରିଶୋଧ, ପ୍ରତିଦାନ; ଧାତୁନିର୍ଦ୍ଦୋଷକରଣ; ହରଣ, ଭାଗକରଣ । ( ଶୁଧ୍-ଇ-ଅନ ) ପରିଷ୍କରଣ; ବିରେଚନ; ଅପନୟନ; ମଳ । ନୀ, ସ୍ତ୍ରୀ. ସମ୍ମାର୍ଜ୍ଜନୀ । ବଂ. ପରିଷ୍କାରକ, ଶୁଦ୍ଧିକାରକ ।

**ଶୋଧନୀୟ, ଶୋଧ୍ୟ**, ବଂ. (ଶୁଧ୍-ଇ-ଅନୀୟ, ଯ) ଶୋଧନର ଯୋଗ୍ୟ ।

**ଶୋଧି**, ବ. (ଦେଶଜ) ଅଙ୍କପାଠବିଶେଷ ।

**ଶୋଧିତ**, ବଂ. (ଶୁଧ୍-ଇ-ତ) ପରିଷ୍କୃତ, ମାର୍ଜ୍ଜିତ; ଅପନୀତ ।

**ଶୋଧିବା**, କ୍ରି. (ଦେଶଜ) ଗାଳିଦେବା ।

**ଶୋଭ**, ବଂ. (ଶୁଭ-ଅ) ଶୋଭନଶୀଳ ।

**ଶୋଭନ**, ବଂ. ( ଶୋଭ୍-ଅନ ) ଶୋଭାଯୁକ୍ତ, ଶୋଭାଜନକ ସୁନ୍ଦର, ମନୋଜ୍ଞ । ବ. ନ. ପଦ୍ମ । ନା-ସ୍ତ୍ରୀ. ହରିଦ୍ରା; ଗୋରୋଚନା ।

**ଶୋଭନକ**, ବ. ପୁଂ. ଶୋଭାଞ୍ଜନବୃକ୍ଷ,ସଜନାଗଛ ।

**ଶୋଭା**, ବ. ସ୍ତ୍ରୀ. ( ଶୋଭ୍-ଅ ) କାନ୍ତି, ଦୀପ୍ତି; ସୌନ୍ଦର୍ଯ୍ୟ; ହରିଦ୍ରା; ଗୋରୋଚନା ।

**ଶୋଭାଞ୍ଜନ, ସୋଭାଞ୍ଜନ, ଶୌଭାଞ୍ଜନ**, ବ. ପୁଂ. ସଜନାଗଛ ।

**ଶୋଭାନୁଭବକତା**, ଯେଉଁ ବୃତ୍ତିଦ୍ୱାରା ଶୋଭା ଅନୁଭବ କରାଯାଏ ।

**ଶୋଭିକ**, ବଂ. (ଶୋଭା-ଇକ) ଶୋଭାଶାଳୀ, ସୁନ୍ଦର ।

**ଶୋଭିତ**, ବଂ. ( ଶୋଭ୍-ତ ) ଶୋଭାଯୁକ୍ତ, ଭୂଷିତ ।

**ଶୋରା**,ବ. (ଯାବନିକ) ଯବକ୍ଷାର, କ୍ଷାରବିଶେଷ ।

**ଶୋଲ**, (ଦେଶଜ) ଜଳତୃଣବିଶେଷ ।

**ଶୋଷ**, ବ. ପୁଂ. (ଶୁଷ୍-ଅ) ନୀରସତା; ରସାକର୍ଷଣ; ଯକ୍ଷ୍ମାରୋଗ; (ଦେଶଜ, ଶୁଷ ଧାତୁଜ) ପିପାସା ।

**ଶୋଷକ**, ବଂ. (ଶୁଷ୍-ଇ-ଅକ) ଶୋଷଣକର୍ତ୍ତା, ରସାକର୍ଷକ ।

**ଶୋଷଣ**, ବ. ନ. (ଶୁଷ୍-ଇ-ଅନ) ରସାକର୍ଷଣ । ପୁଂ. କନ୍ଦର୍ପର ବାଣବିଶେଷ; ଶ୍ୟୋନାକ ବୃକ୍ଷ । ବଂ. ଶୋଷଣକର୍ତ୍ତା ।

**ଶୋଷିତ**, ବଂ. (ଶୁଷ୍-ଇ-ତ) ନୀରସୀକୃତ, ଯାହା ଶୁଷ୍କ କରା ହୁଏ ।

**ଶୋହିବା**, କ୍ରି. ବ. (ଶୋଭିତ ଶବ୍ଦଜ) ଶୋଭା ପାଇବା । ଯଥା—

ଗୋରଚନାବିନ୍ଦୁ ଶୋହେ କପାଳେ । ଗୋ. ଚ.

**ଶୌକର**, ବଂ. (ଶୂକର-ଅ) ଶୂକରସମ୍ବନ୍ଧୀୟ । ବ. ନ. ତୀର୍ଥବିଶେଷ ।

**ଶୌଚ**, ବ. ନ. (ଶୁଚି-ଅ) ଶୁଦ୍ଧି, ଶୁଚିତା, ପବିତ୍ରତା; ନିର୍ମଳତା ।

ଶୌଚେୟ, ବ. ପୁଂ. ( ଶୁଚ-ଏୟ ) ରଜକ, ଧୋବା ।

ଶୌଟୀର, ବଂ. ( ଶୌଟ୍-ଈର ) ଗର୍ବିତ, ଅହଙ୍କୃତ । ବ. ପୁଂ. ଦାତା ।

ଶୌଣ୍ଡିକ, ବ. ପୁଂ. (ଶୁଣ୍ଡା-ଇକ) ଜାତିବିଶେଷ, ଶୁଣ୍ଡି ।

ଶୌନକ, ବ. ପୁଂ. (ଶୁନକ-ଅ) ମୁନିବିଶେଷ, ପୁରାଣବକ୍ତା ।

ଶୌନିକ, ବ. ପୁଂ. (ଶୂନା-ଇକ) ମାଂସବିକ୍ରେତା, ଯେ ବ୍ୟକ୍ତି ମାଂସ ବିକ୍ରୟ କରେ, କସାଇ; ମୃଗୟା । ବଂ. ମୃଗୟାଶୀଳ ।

ଶୌଭିକ, ବ. ପୁଂ. (ଶୋଭା-ଇକ) ଇନ୍ଦ୍ରଜାଲିକ, କୁହକୀ, ମାୟାବୀ ।

ଶୌରି, ବ. ପୁଂ. (ଶୂର-ଇ) କୃଷ୍ଣ; ଶନିଗ୍ରହ ।

ଶୌର୍ଯ୍ୟ, ବ. ନ. ( ଶୂର-ଯ ) ସାହସ, ବୀରତ୍ୱ, ବୀର୍ଯ୍ୟ, ବଳ; ନାଟ୍ୟକ୍ରୀଡ଼ାବିଶେଷ ।

ଶୌଲ୍କିକ, ବ. ପୁଂ. (ଶୁଲ୍କି-ଇକ) କଂସାକାର, କଂସାର ।

ଶୌବନ, ବ. ନ. (ଶ୍ୱନ୍-ଅ) କୁକ୍କୁରଶାବକ; କୁକ୍କୁରସମ୍ବନ୍ଧୀୟ ।

ଶୌବାପଦ, ବଂ. ( ଶ୍ୱାପଦ—ଅ, ଔ ଆଗମ ) ଶ୍ୱାପଦସମ୍ବନ୍ଧୀୟ, ହିଂସ୍ରଜନ୍ତୁସମ୍ବନ୍ଧୀୟ ।

ଶୌଷ୍କଲ, ବଂ. (ଶୁଷ୍କଲୀ-ଅ) ଅମିଷାଶୀ, ମତ୍ସ୍ୟ-ମାଂସଭୋଜୀ । ବଂ. ପୁଂ. ଶୁଷ୍କମାଂସର ମୂଲ୍ୟ ।

ଶ୍ଚୋତ, ଶ୍ଚ୍ୟୋତ, ବ. ପୁଂ. (ଶ୍ଚୁତ୍, ଶ୍ଚ୍ୟୁତ୍-ଅ) କ୍ଷରଣ; ପ୍ରୋକ୍ଷଣ ।

ଶ୍ମନ୍, ବ. ନ. (ଶୀ-ମନ୍ ) ମୁଖ । ପୁଂ. ଶବ ।

ଶ୍ମଶାନ, ବ. ନ. ( ଶ୍ମନ୍-ଶୀ-ଅନ ) ପ୍ରେତଭୂମି, ଶବଦାହ ସ୍ଥାନ; ମହାଶ୍ମଶାନ । ଯଥା— ବାରାଣସୀ ।

ଶ୍ମଶାନବାସୀ, ବ. ପୁଂ. (ଶ୍ମଶାନ-ବସିନ୍ ) ଶିବ, ମହାଦେବ । ବଂ. ଯେ ଶ୍ମଶାନରେ ବାସ କରେ ।

ଶ୍ମଶ୍ରୁ, ବ. ନ. (ଶ୍ମନ୍-ଶ୍ରି-ଉ) ମୁଖରୋମ, ଦାଢ଼ି, ଦାଢ଼ୀ ।

ଶ୍ମଶ୍ରୁଲ, ବଂ. (ଶ୍ମଶ୍ରୁ-ଲ) ଶ୍ମଶ୍ରୁବିଶିଷ୍ଟ, ଯାହାର ଘନ ଦାଢ଼ୀ ଅଛି ।

ଶ୍ମଶ୍ରୁବର୍ଦ୍ଧକ, ବ. ପୁଂ. (ଶ୍ମଶ୍ରୁ-ବର୍ଦ୍ଧକ) କ୍ଷୌରକ, ଭଣ୍ଡାରୀ ।

ଶ୍ମୀଳନ, ବ. ନ. (ଶ୍ମୀଲ୍-ଅନ) ଚକ୍ଷୁଃମୁଦ୍ରିତ-କରଣ, ଚକ୍ଷୁବୁଜିବା ।

ଶ୍ୟାନ, ବଂ. (ଶ୍ୟୈ-ତ) ଗତ, ପ୍ରାପ୍ତ; ଘନୀଭୂତ; ଶୁଷ୍କ । ବ. ନ. ଧୂମ, ଧୂଆଁ ।

ଶ୍ୟାମ, ବଂ. (ଶ୍ୟୈ-ମ) କୃଷ୍ଣବର୍ଣ୍ଣବିଶିଷ୍ଟ, ହରିଦ୍-ବର୍ଣ୍ଣବିଶିଷ୍ଟ । ବ. ପୁଂ. କୃଷ୍ଣବର୍ଣ୍ଣ; ହରିଦ୍‌ବର୍ଣ୍ଣ; ମେଘ; କୋକିଳ; ବୃଦ୍ଧଦାରକ; ଧୁସ୍ତୁର; ପୀଲୁ ବୃକ୍ଷ, ଦମନକ ବୃକ୍ଷ; ଗନ୍ଧତୃଣ; ପ୍ରୟାଗସ୍ଥ ବଟବୃକ୍ଷବିଶେଷ; ଶ୍ୟାମାକତୃଣ । ନ. ମରିଚ; ସମୁଦ୍ରଲବଣ ।

ଶ୍ୟାମକଣ୍ଠ; ବ. ପୁଂ. (ଶ୍ୟାମ-କଣ୍ଠ) ମୟୂର; ଶିବ; ପକ୍ଷିବିଶେଷ ।

ଶ୍ୟାମକନ୍ଦା, ବ. ସ୍ତ୍ରୀ. ଅତିବିଷା ।

ଶ୍ୟାମଗ୍ରନ୍ଥି, ବ. ସ୍ତ୍ରୀ. ଗଣ୍ଡଦୂର୍ବା ।

ଶ୍ୟାମପତ୍ର, ବ. ପୁଂ. (ଶ୍ୟାମ-ପତ୍ର) ତମାଳବୃକ୍ଷ ।

ଶ୍ୟାମଳ, ବ. ପୁଂ. ( ଶ୍ୟାମ-ଲ-ଅ ) କୃଷ୍ଣବର୍ଣ୍ଣ; ହରିଦ୍‌ବର୍ଣ୍ଣ । ବଂ. କୃଷ୍ଣବର୍ଣ୍ଣବିଶିଷ୍ଟ; ହରିଦ୍-ବର୍ଣ୍ଣବିଶିଷ୍ଟ । ଳା-ସ୍ତ୍ରୀ. ପାର୍ବତୀ, ଦୁର୍ଗା; ଅଣ୍ଡ-ଗନ୍ଧା; କସ୍ତୁରୀ ।

ଶ୍ୟାମଳଲତା, ବ. ସ୍ତ୍ରୀ. ( ଶ୍ୟାମଳ-ଲତା ) ଶ୍ୟାମଳନ୍ଦ୍ର, କାଳମ ।

ଶ୍ୟାମା, ବ. ସ୍ତ୍ରୀ. ( ଶ୍ୟାମ-ଆ ) ଦେବୀବିଶେଷ, କାଳିକା; ପ୍ରିୟଙ୍ଗୁଲତା; ନୀଳଦୂର୍ବା; ତୁଳସୀ, ରାତ୍ରି; ହରିଦ୍ରା; ଯମୁନାନଦୀ; ଗୁଡୁଚି; ନୀଳିକା; ସୋମଲତା; କୃଷ୍ଣା; ଅମ୍ବିକା; କସ୍ତୁରୀ; ପିପ୍ପଲୀ; ପଦ୍ମବୀଜ; ଛାୟା; ଶ୍ୟାମାପକ୍ଷୀ; କୃଷ୍ଣବର୍ଣ୍ଣା ସ୍ତ୍ରୀ; ଗୁଳୁଚ; ଶିଶପା; ନୀଳପୁନର୍ନବା ।

ଶ୍ୟାମାଙ୍ଗ, ବ. ପୁଂ. ( ଶ୍ୟାମ-ଅଙ୍ଗ ) ବୁଧଗ୍ରହ । ବିଂ. ଯାହାର ଶରୀର କୃଷ୍ଣବର୍ଣ୍ଣ ।

ଶ୍ୟାମିକା, ବ. ସ୍ତ୍ରୀ. (ଶ୍ୟାମ-କ-ଆ) ଶ୍ୟାମବର୍ଣ୍ଣ; ମାଳିନ୍ୟ, ଶାଦ୍ୟ ।

ଶ୍ୟାଲ, ଶ୍ୟାଲକ, ବ. ପୁଂ. (ଶ୍ୟୈ-ଅଳ, କ) ପତ୍ନୀର ଭ୍ରାତା । ଲୀ, ଲିକା-ସ୍ତ୍ରୀ, ପତ୍ନୀର ଭଗିନୀ ।

ଶ୍ୟାବ, ବ. ପୁଂ. (ଶ୍ୟୈ-ବନ୍) କପିଶବର୍ଣ୍ଣ, କୃଷ୍ଣପୀତମିଶ୍ର ବର୍ଣ୍ଣ । ବିଂ. ତଦ୍ବର୍ଣ୍ଣଯୁକ୍ତ ।

ଶ୍ୟେତ, ବ. ପୁଂ. ( ଶ୍ୟୈ-ଇତ ) ଶୁକ୍ଳବର୍ଣ୍ଣ, ଶାଦା । ବିଂ. ଶ୍ୱେତବର୍ଣ୍ଣଯୁକ୍ତ ।

ଶ୍ୟେନ, ବ. ପୁଂ. (ଶ୍ୟୈ-ଇନ) ବାଜପକ୍ଷୀ; ଯଜ୍ଞବିଶେଷ; ପାଣ୍ଡୁରବର୍ଣ୍ଣ । ନୀ-ସ୍ତ୍ରୀ; ଶ୍ୱେତବର୍ଣ୍ଣା; ବାଜପକ୍ଷିଣୀ ।

ଶ୍ୟୈନମ୍ପାତ, ବ. ପୁଂ. (ଶ୍ୟୈନ-ପାତ, ମ ଆଗମ) ଶ୍ୟେନପକ୍ଷିଦ୍ୱାରା ମୃଗୟା; ମୃଗୟା, ଶିକାର ।

ଶ୍ରତ୍, ଅଂ. (ଶ୍ରା-ଅତ୍) ବିଶ୍ୱାସ; ଭକ୍ତି ।

ଶ୍ରଦ୍ଧା, ବ. ସ୍ତ୍ରୀ. (ଶ୍ରତ୍-ଧା-ଆ) ଭକ୍ତି; ଧର୍ମକାର୍ଯ୍ୟରେ ଦୃଢ଼ବିଶ୍ୱାସ; ବିଶ୍ୱାସ, ପ୍ରତ୍ୟୟ; ସ୍ପୃହା, ଇଚ୍ଛା; ଆଦର; ଚିତ୍ତପ୍ରସାଦ, ମନର ନିର୍ମଳତା ।

ଶ୍ରଦ୍ଧାଳୁ, ବିଂ. (ଶ୍ରଦ୍ଧା-ଆଳୁ) ଶ୍ରଦ୍ଧାବିଶିଷ୍ଟ, ଭକ୍ତିମାନ୍ । ସ୍ତ୍ରୀ. କୌଣସି ଦ୍ରବ୍ୟରେ ସ୍ପୃହାବତୀ ଗର୍ଭିଣୀ ।

ଶ୍ରଦ୍ଧାବାନ୍, ବିଂ. ( ଶ୍ରଦ୍ଧା-ବତ୍ ) ଶ୍ରଦ୍ଧାଯୁକ୍ତ, ଭକ୍ତିମାନ୍ ।

ଶ୍ରନ୍ଥନ, ନ. } ବ. (ଶ୍ରନ୍ଥ-ଅନ,ଆ) ଗ୍ରନ୍ଥନ,
ଶ୍ରନ୍ଥନା, ସ୍ତ୍ରୀ. } ଗୁନ୍ଥିବା; ହତ୍ୟା, ବଧ; ମୋଚନ; ବନ୍ଧନ; ପୁନର୍ବାର ହୃଷ୍ଟୀକରଣ; ଶିଥିଳୀକରଣ ।

ଶ୍ରନ୍ଥିତ, ବିଂ. (ଶ୍ରନ୍ଥ୍-ତ) ଗ୍ରନ୍ଥିତ; ବଦ୍ଧ; ମୁକ୍ତ; ହତ; ଅଧଃକୃତ; ବ୍ୟାହତ ।

ଶ୍ରମ, ବ. ପୁଂ. (ଶ୍ରମ୍-ଅ) କ୍ଳାନ୍ତି, ପରିଶ୍ରମ; ଖେଦ; ତପଃ; ଶାସ୍ତ୍ରାଭ୍ୟାସ ।

ଶ୍ରମଣ, ବ. ପୁଂ. (ଶ୍ରମ୍-ଅନ) ସନ୍ନ୍ୟାସୀ, ଭିକ୍ଷୁ । ବିଂ. ନୀଚକର୍ମଜୀବୀ, ନୀଚବ୍ୟବସାୟୀ; ଶ୍ରମଜୀବୀ; ନୀଚ, ଘୃଣିତ, ଅପକୃଷ୍ଟ । ଣା-ସ୍ତ୍ରୀ. ସନ୍ନ୍ୟାସିନୀ; ଶବରୀବିଶେଷ; ମାଂସୀ; ସୁଦର୍ଶନା ।

ଶ୍ରମବାରି, ଶ୍ରମଜଳ, ବ. ନ. (ଶ୍ରମ-ବାରି, ଜଳ) ଘର୍ମ, ସ୍ୱେଦ, ଝାଳ ।

ଶ୍ରମୀ, ବିଂ. (ଶ୍ରମ୍-ଇନ୍) ଶ୍ରମଶୀଳ, ପରିଶ୍ରମକାରୀ, ଯେ ପରିଶ୍ରମଦ୍ୱାରା ଜୀବିକା ନିର୍ବାହ କରେ ।

ଶ୍ରମୋପଜୀବୀ, ବିଂ. (ଶ୍ରମ-ଉପଜୀବୀ) ପରିଶ୍ରମକାରୀ, ଯେ ପରିଶ୍ରମଦ୍ୱାରା ଜୀବିକା ନିର୍ବାହ କରେ ।

ଶ୍ରୟ, ବ. ପୁଂ. (ଶ୍ରି-ଅ) ଆଶ୍ରୟ, ଅବଲମ୍ବନ ।

ଶ୍ରବ, ପୁଂ. } ବ. (ଶ୍ରୁ-ଅ, ଅସ୍) ଶ୍ରବଣେନ୍ଦ୍ରିୟ,
ଶ୍ରବଃ, ନ. } କର୍ଣ୍ଣ; ଆକର୍ଣ୍ଣନ, ଶ୍ରବଣ; ପ୍ରସିଦ୍ଧି, ଖ୍ୟାତି; କୀର୍ତ୍ତି; କ୍ଷରଣ; ଚ୍ୟୁତ ।

ଶ୍ରବଣ, ବ. ନ. (ଶ୍ରୁ-ଅନ) ଶ୍ରବଣେନ୍ଦ୍ରିୟ, କର୍ଣ୍ଣ ।

ଶ୍ରବଣା, ବ. ସ୍ତ୍ରୀ. ଅଶ୍ୱିନ୍ୟାଦି ଅନ୍ତର୍ଗତ ଦ୍ୱାବିଂଶ-ନକ୍ଷତ୍ର ।

ଶ୍ରବଣପଥ, ପୁଂ. } ବ. (ଶ୍ରବଣ-ପଥ,ଇନ୍ଦ୍ରିୟ)
ଶ୍ରବଣେନ୍ଦ୍ରିୟ, ନ. } କର୍ଣ୍ଣ, କାନ ।

ଶ୍ରବିଷ୍ଠା, ବ. ସ୍ତ୍ରୀ. (ଶ୍ରବ-ବତ୍-ଇଷ୍ଠ, ବତ୍ ଲୋପ) ଧନିଷ୍ଠା ନକ୍ଷତ୍ର ।

ଶ୍ରବ୍ୟ, ଶ୍ରବଣୀୟ, ବିଂ. ( ଶ୍ରୁ-ଯ, ଅନୀୟ ) ଶ୍ରୋତବ୍ୟ, ଶୁଣିବାର ଯୋଗ୍ୟ ।

ଶ୍ରାବ୍ୟକାବ୍ୟ, ବି.ନ. ଯେ କାବ୍ୟ ଶ୍ରବଣର ଯୋଗ୍ୟ; ନାଟକ ଭିନ୍ନ କାବ୍ୟ ।

ଶ୍ରାଦ୍ଧ, ବ. ନ. (ଶ୍ରଦ୍ଧା-ଅ) ପିତୃକୃତ୍ୟ, ଏକୋଦ୍ଦିଷ୍ଟ ପାର୍ବଣାଦି । ବିଂ. ଶ୍ରଦ୍ଧାଯୁକ୍ତ; ଶ୍ରଦ୍ଧାପ୍ରଯୁକ୍ତ ଯାହା ଦିଆଯାଏ ।

ଶ୍ରାଦ୍ଧଦେବ, ବ. ପୁଂ. ( ଶ୍ରାଦ୍ଧ-ଦେବ ) ଅନ୍ତକ, ଯମ; ପିତୃଲୋକ; ବୈବସ୍ୱତମନୁ ।

ଶ୍ରାଦ୍ଧିକ, ବିଂ. (ଶ୍ରାଦ୍ଧ-ଇକ) ଶ୍ରାଦ୍ଧଭୋଜୀ, ଶ୍ରାଦ୍ଧଭୋକ୍ତା, ଶ୍ରାଦ୍ଧସମ୍ବନ୍ଧୀୟ ଦ୍ରବ୍ୟ ।

ଶ୍ରାନ୍ତ, ବିଂ. (ଶ୍ରମ୍-ତ) ଶ୍ରମଯୁକ୍ତ, କ୍ଳାନ୍ତ; ଖିନ୍ନ; ଶାନ୍ତ, ନିବୃତ୍ତ; ଭୋଗତୃପ୍ତ ।

ଶ୍ରାନ୍ତି, ବ. ସ୍ତ୍ରୀ. (ଶ୍ରମ୍-ତି) ଶ୍ରମ; କ୍ଳେଶ, ଖେଦ; ବିଶ୍ରାମ, ନିବୃତ୍ତି ।

ଶ୍ରାମ, ବ. ପୁଂ. (ଶ୍ରମ୍-ଅ) ମାସ; ମଣ୍ଡପ; ଗୃହ; ଶାଳ, ସମୟ ।

ଶ୍ରାୟ, ବ. ପୁଂ. (ଶ୍ରି-ଅ) ଆଶ୍ରୟ, ଅବଲମ୍ବନ, ( ଶ୍ରୀ-ଅ, ଇ=ଅୟ, ଅ=ଆ ) ବିଂ. ଶ୍ରୀ-ସମ୍ବନ୍ଧୀୟ, ଲକ୍ଷ୍ମୀସମ୍ବନ୍ଧୀୟ ।

ଶ୍ରାବ, ବ. ପୁଂ. (ଶ୍ରୁ-ଅ) ଆକର୍ଣ୍ଣନ, କର୍ଣ୍ଣ ।

ଶ୍ରାବକ, ବିଂ. (ଶ୍ରୁ-ଅକ) ଶ୍ରୋତା, ଶ୍ରବଣକର୍ତ୍ତା, ଯେ ଶ୍ରବଣ କରିଅଛି । ବ. ପୁଂ. କାକ ।

ଶ୍ରାବଣ, ବ. ପୁଂ. ( ଶ୍ରାବଣୀ-ଅ ) ବୈଶାଖାଦି ଦ୍ୱାଦଶ ମାସର ଅନ୍ତର୍ଗତ ଚତୁର୍ଥ ମାସ । (ଶ୍ରବଣ-ଅ) ବିଂ. ପାଷଣ୍ଡ, ପାମର; ଶ୍ରବଣେନ୍ଦ୍ରିୟଜନ୍ୟ ଜ୍ଞାନ । (ଶ୍ରବଣା-ଅ) ଶ୍ରବଣାନକ୍ଷତ୍ର ସମ୍ବନ୍ଧୀୟ । ଣୀ-ସ୍ତ୍ରୀ. ଶ୍ରାବଣ ମାସର ପୂର୍ଣ୍ଣିମା ।

ଶ୍ରାବଣିକ, ବ. ପୁଂ. (ଶ୍ରାବଣୀ–ଇକ) ଶ୍ରାବଣ ମାସ ।

ଶ୍ରାବ୍ୟ, ବିଂ. (ଶ୍ରୁ-ଯ) ଶ୍ରବଣଯୋଗ୍ୟ ।

ଶ୍ରୀ, ବ. ସ୍ତ୍ରୀ. (ଶ୍ରି-୦, ଇ=ଈ) ଲକ୍ଷ୍ମୀ; ସମ୍ପତ୍ତି; ଶୋଭା; ବେଶବିନ୍ୟାସ; ସୌନ୍ଦର୍ଯ୍ୟ; କାନ୍ତି; ସରସ୍ୱତୀ; ତ୍ରିବର୍ଗ; ଦୀପ୍ତି; ଅଲୋକ; ପ୍ରକାର; ଉପକରଣ; ବିଭୂତି; ବୃଦ୍ଧି; ବୁଦ୍ଧି; ସିଦ୍ଧି; ବେଲଗଛ; ଲବଙ୍ଗ; ନାମର ଉପାଧିବିଶେଷ ।

ଶ୍ରୀକଣ୍ଠ, ବ. ପୁଂ. (ଶ୍ରୀ-କଣ୍ଠ) ଶିବ; ଭବଭୂତି କବିଙ୍କ ଉପନାମ ।

ଶ୍ରୀକର, ବ. ପୁଂ. (ଶ୍ରୀ-କର) ବିଷ୍ଣୁ; ସ୍ମୃତି ଗ୍ରନ୍ଥକାରକ ପଣ୍ଡିତବିଶେଷ । ନ. ରକ୍ତୋତ୍ପଳ । ବିଂ. ଶୋଭାକାରକ, ସୌନ୍ଦର୍ଯ୍ୟଜନକ ।

ଶ୍ରୀକରଣ, ବ. ନ. (ଶ୍ରୀ-କରଣ) ଲେଖନୀ, କଲମ ।

ଶ୍ରୀକାନ୍ତ, ଶ୍ରୀନାଥ, ଶ୍ରୀପତି, ବ. ପୁଂ. (ଶ୍ରୀ-କାନ୍ତ, ନାଥ, ପତି) ଲକ୍ଷ୍ମୀପତି, ବିଷ୍ଣୁ ।

ଶ୍ରୀଖଣ୍ଡ, ବ. ପୁଂ. ନ. (ଶ୍ରୀ-ଖଣ୍ଡ) ଚନ୍ଦନକାଷ୍ଠ ।

ଶ୍ରୀଗର୍ଭ, ବ. ପୁଂ. (ଶ୍ରୀ-ଗର୍ଭ) ବିଷ୍ଣୁ; ଖଡ୍ଗ ।

ଶ୍ରୀଘନ, ବ. ପୁଂ. (ଶ୍ରୀ-ଘନ) ବୁଦ୍ଧଦେବ । ନ. ଦଧି ।

ଶ୍ରୀଦ, ବ. ପୁଂ. (ଶ୍ରୀ-ଦ) କୁବେର, ଧନାଧିପତି । ବିଂ. ଧନଦାତା; ଶୋଭାଦାୟକ ।

ଶ୍ରୀଧର, ବ. ପୁଂ. (ଶ୍ରୀ-ଧର) ବିଷ୍ଣୁ; ଶାଳଗ୍ରାମ-ମୂର୍ତ୍ତିବିଶେଷ ।

ଶ୍ରୀନନ୍ଦନ, ବ. ପୁଂ. (ଶ୍ରୀ-ନନ୍ଦନ) କାମଦେବ, ଲକ୍ଷ୍ମୀପୁତ୍ର ।

ଶ୍ରୀନିକେତନ, ଶ୍ରୀନିବାସ, ବ. ପୁଂ. (ଶ୍ରୀ-ନିକେତନ, ନିବାସ) ବିଷ୍ଣୁ, ନାରାୟଣ; ଲକ୍ଷ୍ମୀଙ୍କ ଆଳୟ ।

ଶ୍ରୀପଥ, ବ. ପୁଂ. (ଶ୍ରୀ-ପଥ) ରାଜପଥ ।

ଶ୍ରୀପଞ୍ଚମୀ, ବ. ସ୍ତ୍ରୀ. ମାଘ ଶୁକ୍ଳପଞ୍ଚମୀ ।

ଶ୍ରୀପର୍ଣ୍ଣ, ବ. ନ. (ଶ୍ରୀ-ପର୍ଣ୍ଣ) ପଦ୍ମ; ଅଗ୍ନିମନ୍ଥବୃକ୍ଷ ।

ଶ୍ରୀପର୍ଣ୍ଣୀ, ବ. ସ୍ତ୍ରୀ. ଗମ୍ଭାରିବୃକ୍ଷ; ଶାଳ୍ମଳୀବୃକ୍ଷ; କଟ୍‌ଫଳବୃକ୍ଷ ।

ଶ୍ରୀପୁତ୍ର, ବ. ପୁଂ. (ଶ୍ରୀ-ପୁତ୍ର) ଅଶ୍ୱ; କାମଦେବ ।

ଶ୍ରୀଫଳ, ବ. ପୁଂ. (ଶ୍ରୀ-ଫଳ) ବେଲଗଛ । ନ. ବେଲ ।

ଶ୍ରୀଭ୍ରାତା, ବ. ପୁଂ. (ଶ୍ରୀ-ଭ୍ରାତୃ) ଅଶ୍ୱ; ଚନ୍ଦ୍ର ।

ଶ୍ରୀମାନ୍, ବିଂ. (ଶ୍ରୀ-ମତ୍) ଐଶ୍ୱର୍ଯ୍ୟଶାଳୀ, ଧନୀ; ସୁନ୍ଦର, ସୁଶ୍ରୀ; ଶ୍ରୀଯୁକ୍ତ । ବ. ପୁଂ. ତିଳକ-ବୃକ୍ଷ; ଅଶ୍ୱତ୍ଥବୃକ୍ଷ; ବିଷ୍ଣୁ; ଶିବ; କୁବେର । ମତୀ, ସ୍ତ୍ରୀ. ଶ୍ରୀବିଶିଷ୍ଟା । ତି, ସ୍ତ୍ରୀ. ରାଧିକା ।

ଶ୍ରୀମୁଖ, ବ. ପୁଂ. (ଶ୍ରୀ-ମୁଖ) ପତ୍ରପୃଷ୍ଠେ ଶ୍ରୀପଦ ଲିଖନ । ନ. ଶୋଭାଯୁକ୍ତ ଆନନ ।

ଶ୍ରୀମୂର୍ତ୍ତି, ବ. ସ୍ତ୍ରୀ. ଦେବବିଗ୍ରହ, ବିଷ୍ଣୁପ୍ରତିମା ।

ଶ୍ରୀଯୁତ, ଶ୍ରୀଯୁକ୍ତ, ବିଂ.(ଶ୍ରୀ-ଯୁତ, ଯୁକ୍ତ) ଶ୍ରୀମାନ୍, ଲକ୍ଷ୍ମୀବାନ୍; ଶୋଭାଯୁକ୍ତ, ଶୋଭିତ ।

ଶ୍ରୀରାମ, ବ. ପୁଂ. (ଶ୍ରୀ-ରାମ) ରାମଚନ୍ଦ୍ର, ଦଶରଥଙ୍କ ପୁତ୍ର ।

ଶ୍ରୀଳ, ବିଂ. (ଶ୍ରୀ-ଲ) ଶ୍ରୀଯୁକ୍ତ, ସୌଭାଗ୍ୟବାନ୍ ।

ଶ୍ରୀବତ୍ସ, ବ. ପୁଂ. (ଶ୍ରୀ-ବତ୍ସ) ବିଷ୍ଣୁ; ବିଷ୍ଣୁଙ୍କ ବକ୍ଷଃସ୍ଥଳସ୍ଥ ଦକ୍ଷିଣାବର୍ତ୍ତ ଲୋମାବଳୀ; ଗୃହ-ବିଶେଷ; ସ୍ୱଡ଼ଙ୍ଗବିଶେଷ; ନୃପବିଶେଷ ।

ଶ୍ରୀବତ୍ସଭୃତ୍, ଶ୍ରୀବତ୍ସଲାଞ୍ଛନ, ଶ୍ରୀବରଦ, ଶ୍ରୀବତ୍ସାଙ୍କ, } ବ. ପୁଂ. (ଶ୍ରୀବତ୍ସ-ଭୃତ୍, ଲାଞ୍ଛନ, ଶ୍ରୀ-ବରଦ, ଶ୍ରୀବତ୍ସ-ଅଙ୍କ) ବିଷ୍ଣୁ, ନାରାୟଣ ।

ଶ୍ରୀବାସ, ବ. ପୁଂ. (ଶ୍ରୀ-ବାସ) ସରଳବୃକ୍ଷର ନିର୍ଯ୍ୟାସ, ତାର୍ପିନ୍; ପଦ୍ମ; ବିଷ୍ଣୁ; ଶିବ ।

ଶ୍ରୀବୃକ୍ଷ, ବ. ପୁଂ. (ଶ୍ରୀ-ବୃକ୍ଷ) ବେଲଗଛ; ଅଶ୍ୱତ୍ଥ-ଗଛ ।

ଶ୍ରୀଶ, ବ. ପୁଂ. (ଶ୍ରୀ-ଈଶ) ବିଷ୍ଣୁ ।

ଶ୍ରୁତ, ବିଂ. (ଶ୍ରୁ-ତ) ଆକର୍ଣ୍ଣିତ, ଯାହା ଶ୍ରବଣ କରି ହୋଇଅଛି; ଜ୍ଞାତ; ପ୍ରସିଦ୍ଧ । ବ. ନ. ବେଦ; ଶାସ୍ତ୍ର ।

ଶ୍ରୁତକୀର୍ତ୍ତି, ବ. ସ୍ତ୍ରୀ. (ଶ୍ରୁତ-କୀର୍ତ୍ତି) କୁଶଧ୍ୱଜ ରାଜକନ୍ୟା, ଶତ୍ରୁଘ୍ନଙ୍କ ପତ୍ନୀ । ବିଂ. ବିଖ୍ୟାତ, କୀର୍ତ୍ତିଯୁକ୍ତ ।

ଶ୍ରୁତଦେବୀ, ବ. ସ୍ତ୍ରୀ. (ଶ୍ରୁତ-ଦେବୀ) ସରସ୍ୱତୀ ।

ଶ୍ରୁତବାନ୍, ବିଂ. (ଶ୍ରୁତ-ବତ୍) ଯେ ଶ୍ରବଣ କରିଅଛି; ଶାସ୍ତ୍ରଜ୍ଞ, ବିଦ୍ୱାନ୍ ।

ଶ୍ରୁତଶାଳୀ, ବିଂ. (ଶ୍ରୁତ-ଶାଳ-ଇନ୍) ଶାସ୍ତ୍ରଜ୍ଞ, ବିଦ୍ୱାନ୍ ।

ଶ୍ରୁତାର୍ଥ, ବ. ପୁଂ. ଶାବ୍ଦବୋଧବିଷୟୀଭୂତାର୍ଥ, ଶ୍ରବଣମାତ୍ରକେ ଯାହା ବୁଝାଯାଏ ।

ଶ୍ରୁତି, ବ. ସ୍ତ୍ରୀ. (ଶ୍ରୁ-ତି) ବେଦ; କମ୍ବଦନ୍ତୀ; ସ୍ୱରବିଶେଷ; ସ୍ୱରର ଅବସର; ଶ୍ରବଣ ।

ଶ୍ରୁତିକଟ, ବ. ପୁଂ. (ଶ୍ରୁତି-କଟ୍-ଅ) ପ୍ରାୟଶ୍ଚିତ୍ତ, ପାପଶୋଧନ; ସର୍ପ ।

ଶ୍ରୁତିକଟୁ, ବ. ପୁଂ. (ଶ୍ରୁତି-କଟୁ) ଅଳଙ୍କାରରେ ଦୁଃଶ୍ରାବ୍ୟତା ଦୋଷ ।

ଶ୍ରୁତିଧର, ଶ୍ରୁତଧର, ବିଂ. (ଶ୍ରୁତି-ଧର) ଶ୍ରବଣ-ମାତ୍ରେ ଅଭ୍ୟାସକାରକ, ଯେ ବ୍ୟକ୍ତି କୌଣସି ବିଷୟକୁ ଶୁଣିବାମାତ୍ରକେ ଅଭ୍ୟାସ କରିପାରେ ।

ଶ୍ରୁତିମୂଳ, ବ. ନ. (ଶ୍ରୁତି-ମୂଳ) ବେଦରୂପ ଧର୍ମ-ବୋଧକ ପ୍ରମାଣ; ଯଜ୍ଞ; କର୍ଣ୍ଣମୂଳ ।

ଶ୍ରୁତିବେଧ, ବ. ପୁଂ. (ଶ୍ରୁତି-ବେଧ) କର୍ଣ୍ଣବେଧ; ସଂସ୍କାରବିଶେଷ ।

ଶ୍ରୁବ, ନ. } ବ. ପୁଂ. (ଶ୍ରୁ-ଅ, ଆ) ଯଜ୍ଞ,
ଶ୍ରୁବା, ସ୍ତ୍ରୀ. } ଯାଗ । ନ. ଯଜ୍ଞର ବ୍ୟବହାର୍ଯ୍ୟ ପାତ୍ରବିଶେଷ, ଘୃତକ୍ଷେପ ପାତ୍ର ।

ଶ୍ରୂୟମାଣ, ବିଂ. (ଶ୍ରୁ-ଅନ) ଯାହା ଶ୍ରବଣ କରା-ଯାଏ ।

ଶ୍ରେଣି, ଶ୍ରେଣୀ, ବ. ସ୍ତ୍ରୀ. (ଶ୍ରି-ନ) ପଂକ୍ତି, ଧାଡ଼ି; ଦଳ; ସେତନପତ୍ର; ସମାନ ବ୍ୟବସାୟୀ ବ୍ୟକ୍ତିଗଣ ।

ଶ୍ରେୟାନ୍, ବିଂ. (ପ୍ରଶଂସ୍ୟ-ଇୟସ୍) ଧର୍ମ, ପୁଣ୍ୟ; ମୋକ୍ଷ; ମୁକ୍ତି, ଅପବର୍ଗ; ମଙ୍ଗଳ, ଶୁଭ; ସୌଭାଗ୍ୟ; ସୁଖ; ଶ୍ରେଷ୍ଠ; ଶୁଭକର; ଅତି ପ୍ରଶସ୍ତ । ୟସୀ, ସ୍ତ୍ରୀ. ହରୀତକୀ; ରାସ୍ନା; ଶୁଭ-ଯୁକ୍ତା ।

ଶ୍ରେୟଃକଳ୍ପ, ବିଂ. (ଶ୍ରେୟସ୍-କଳ୍ପ) ଶୁଭ କମ୍ପା ଶ୍ରେଷ୍ଠ ସଦୃଶ ।

ଶ୍ରେୟସ୍କର, ବିଂ. (ଶ୍ରେୟସ୍-କର) ଶୁଭକର, ମଙ୍ଗଳଜନକ ।

ଶ୍ରେଷ୍ଠ, ବିଂ. (ପ୍ରଶଂସ୍ୟ-ଇଷ୍ଠ) ଅତି ପ୍ରଶସ୍ତ, ପ୍ରଧାନ; ଜ୍ୟେଷ୍ଠ । ବ. ପୁଂ. କୁବେର; ରାଜା; ବ୍ରାହ୍ମଣ; ବିଷ୍ଣୁ । ନ. ଗୋଦୁଗ୍ଧ ।

ଶ୍ରେଷ୍ଠତା, ବ. ସ୍ତ୍ରୀ. (ଶ୍ରେଷ୍ଠ-ତା) ପ୍ରାଧାନ୍ୟ, ଉତ୍କର୍ଷ; ଉତ୍ତମତା ।

ଶ୍ରେଷ୍ଠାଶ୍ରମ, ବ. ପୁଂ. (ଶ୍ରେଷ୍ଠ-ଆଶ୍ରମ) ପ୍ରଧାନ ଆଶ୍ରମ, ଗୃହସ୍ଥାଶ୍ରମ ।

ଶ୍ରେଷ୍ଠୀ, ବ. ପୁଂ. (ଶ୍ରେଷ୍ଠ-ଇନ୍) ବଣିକ୍‌ବିଶେଷ, ଶେଠ ।

ଶ୍ରୋଣ, ବ. ପୁଂ. (ଶ୍ରୋଣ୍-ଅ) ପଙ୍ଗୁ, ପଦବିକଳ । ବିଂ. ପଙ୍ଗୁ । ଣା, ସ୍ତ୍ରୀ. ଶ୍ରବଣା ନକ୍ଷତ୍ର; କାଞ୍ଜି ।

ଶ୍ରୋଣି, ଶ୍ରୋଣୀ, ବ. ସ୍ତ୍ରୀ. (ଶ୍ରୋଣ୍-ଇ) କଟିଦେଶ । ନିତମ୍ବ; ପଥ ।

ଶ୍ରୋତଃ, ବ. ନ. (ଶ୍ରୁ-ଅସ୍, ତ ଆଗମ) ନଦ୍ୟାଦିର ବେଗ; ଜ୍ଞାନେନ୍ଦ୍ରିୟ ।

ଶ୍ରୋତବ୍ୟ, ବିଂ. (ଶ୍ରୁ-ତବ୍ୟ) ଶ୍ରବଣୀୟ, ଶ୍ରବଣ-ଯୋଗ୍ୟ ।

ଶ୍ରୋତା, ବିଂ. (ଶ୍ରୁ-ତୃ) ଶ୍ରବଣକର୍ତ୍ତା, ଯେ ଶୁଣେ ।

ଶ୍ରୋତ୍ର, ଶ୍ରୌତ୍ର, ବି. ନ. (ଶ୍ରୁ-ତ୍ର) ଶ୍ରୁତି, ଶ୍ରବଣେନ୍ଦ୍ରିୟ; ବେଦ ।

ଶ୍ରୋତ୍ରିୟ, ବି. ପୁଂ. (ଶ୍ରୋତ୍ର-ଇୟ) ବେଦାଧ୍ୟାୟୀ ବ୍ରାହ୍ମଣ, ବେଦଜ୍ଞ ବିପ୍ର, ସଚ୍ଚରିତ୍ର ବ୍ରାହ୍ମଣ । ବିଂ. ସୁଶୀଳ, ସଚ୍ଚରିତ୍ର, ସତ୍କୁଳଜାତ ।

ଶ୍ଲକ୍ଷ୍ଣ, ବିଂ. (ଶ୍ଲିଷ୍-ସ୍ନ (କସ୍ନ) ଇଲୋପ) ସୂକ୍ଷ୍ମ; କୃଶ; ମନୋହର; ସ୍ନିଗ୍ଧ, ଚିକ୍କଣ; ଅଳ୍ପ ।

ଶ୍ଲଥ, ବିଂ. (ଶ୍ଲଥ୍-ଅ) ଶିଥିଳ, ଅଦୃଢ଼, ଢିଲା; ଦୁର୍ବଳ ।

ଶ୍ଲାଘା, ବି. ସ୍ତ୍ରୀ. (ଶ୍ଲାଘ୍-ଅ-ଆ) ପ୍ରଶଂସା; ଅଭିଳାଷ, ଇଚ୍ଛା; ପରିଚର୍ଯ୍ୟା, ସେବା; ନିଜଗୁଣ ଜ୍ଞାପନ ।

ଶ୍ଲାଘ୍ୟ, ଶ୍ଲାଘନୀୟ, ବିଂ. (ଶ୍ଲାଘ୍-ଯ, ଅନୀୟ) ଆଦରଣୀୟ, ସ୍ପୃହଣୀୟ; ପ୍ରଶଂସନୀୟ; ପ୍ରଶଂସାର ଯୋଗ୍ୟ; ପ୍ରଶସ୍ତ ।

ଶ୍ଲିଷା, ବି. ସ୍ତ୍ରୀ. (ଶ୍ଲିଷ୍-ଆ) ଆଲିଙ୍ଗନ ।

ଶ୍ଲିଷ୍ଟ,ବିଂ. (ଶ୍ଲିଷ୍-ତ) ଶ୍ଲେଷଯୁକ୍ତ, ଅନେକାର୍ଥ-ବାଚକ; ସଂସୃଷ୍ଟ; ସଂଯୁକ୍ତ; ଆଲିଙ୍ଗିତ ।

ଶ୍ଲୀପଦ, ବି. ନ. ଶୋଥରୋଗ, ଗୋଦର ।

ଶ୍ଲୀଳ, ବିଂ. (ଶ୍ରୀ-ଲ, ର=ଳ) ଶ୍ରୀଯୁକ୍ତ ।

ଶ୍ଲେଷ, ବି. ପୁଂ. (ଶ୍ଲିଷ୍-ଅ) ଯୋଗ, ସଂଯୋଗ; ଆଶ୍ଳେଷ,ଆଲିଙ୍ଗନ;ଶବ୍ଦର ଅଳଙ୍କାରବିଶେଷ ।

ଶ୍ଲେଷ୍ମା, ଶ୍ଲେଷ୍ମକ, ବି. ପୁଂ. (ଶ୍ଲିଷ୍-ମନ୍, ଶ୍ଲେଷ୍ମନ୍-କ) କଫ, ସର୍ଦ୍ଦି ।

ଶ୍ଲେଷ୍ମଣ, ଶ୍ଲେଷ୍ମଳ, ବିଂ. (ଶ୍ଲେଷ୍ମନ୍-ନ, ଲ) ଶ୍ଲେଷ୍ମାବିଶିଷ୍ଟ, କଫଯୁକ୍ତ ।

ଶ୍ଲୋକ, ବି. ପୁଂ. (ଶ୍ଲୋକ୍-ଅ) ପଦ୍ୟ, କବିତା; ଛନ୍ଦୋବିଶିଷ୍ଟ ବାକ୍ୟ; ସୁଖ୍ୟାତି, ପ୍ରସିଦ୍ଧି, ଯଶଃ, କୀର୍ତ୍ତି ।

ଶ୍ୱଃ, ଅଂ, ପରଦିନ, ଆଗାମୀ ଦିନ, କାଲି ।

ଶ୍ୱଃଶ୍ରେୟସ, କ୍ଲି. ବିଂ. (ଶ୍ୱସ୍-ଶ୍ରେୟସ୍) ମଙ୍ଗଳ, କଲ୍ୟାଣ; ସୁଖ; ପରମାତ୍ମା । ବିଂ. କଲ୍ୟାଣୀ, ସୁଖୀ ।

ଶ୍ୱଗଣିକ, ଶ୍ୱଗଣୀ, ବି. ପୁଂ. (ଶ୍ୱଗଣ-ଇକ, ଇନ୍) ଶିକାରି, ଯେ ବ୍ୟକ୍ତି କୁକ୍କୁର ନେଇ ଶିକାର କରେ ।

ଶ୍ୱଧୂର୍ତ୍ତ, ବି. ପୁଂ. (ଶ୍ୱନ୍-ଧୂର୍ତ୍ତ) ଶୃଗାଳ ।

ଶ୍ୱପଚ୍, ଶ୍ୱପଚ, ଶ୍ୱପାକ, ବି. ପୁଂ. (ଶ୍ୱପଚ୍-୦, ଅ, ଅ) ବ୍ୟାଧ, ଚଣ୍ଡାଳ ।

ଶ୍ୱଭୀରୁ, ବି. ପୁଂ. (ଶ୍ୱନ୍-ଭୀରୁ) ଶୃଗାଳ, ବିଲୁଆ ।

ଶ୍ୱଭ୍ର, ବି. ନ. (ଶ୍ୱଭ୍ର-ଅ) ରନ୍ଧ୍ର, ଛିଦ୍ର, ଗର୍ତ୍ତ ।

ଶ୍ୱବୃତ୍ତି, ବି. ସ୍ତ୍ରୀ. (ଶ୍ୱନ୍-ବୃତ୍ତି) ସେବା, ଚାକିରି ।

ଶ୍ୱବ୍ୟାଘ୍ର, ବି. ପୁଂ. (ଶ୍ୱନ୍-ବ୍ୟାଘ୍ର) ଚିତାବାଘ ।

ଶ୍ୱଶୁର, ବି. ପୁଂ. (ଶୁ-ଅଶ୍-ଉର) ଭର୍ତ୍ତାର କିମ୍ବା ପତ୍ନୀର ପିତା; ମାନ୍ୟ ବ୍ୟକ୍ତି ।

ଶ୍ୱଶୁର୍ଯ୍ୟ, ବି. ପୁଂ. (ଶ୍ୱଶୁର-ଯ) ଦେବର, ଦିଅର; ଦେଢ଼ଶୁର; ଶ୍ୟାଳକ, ଶଳା ।

ଶ୍ୱଶ୍ରୂ, ବି. ସ୍ତ୍ରୀ. (ଶ୍ୱଶୁର-ଊ; ଉ, ଅ ଲୋପ) ଭର୍ତ୍ତାର ଓ ପତ୍ନୀର ମାତା, ଶାଶୂ ।

ଶ୍ୱସନ, ବି. ପୁଂ. (ଶ୍ୱସ୍-ଅନ) ବାୟୁ । ନ. ନିଶ୍ୱାସ; ଜୀବନ । (ବାୟୁ ଅର୍ଥରେ) ଯଥା—

> ପ୍ରଖର ଶ୍ୱାସ ଶ୍ୱସନ, ଫୁଲିତ ନାସା, ଦଶନ-
> ବସନେ ଛିଦ ଦଶନ, ଦୃଢ ଦଂଶନ । ପ୍ରେ. ସୁ.

ଶ୍ୱସିତ, ବି. ନ. (ଶ୍ୱସ୍-ତ) ନିଶ୍ୱାସ, ନାସାଗତ ବାୟୁ; ଜୀବିତ, ଜୀବନ ।

ଶ୍ୱା, ବି. ପୁଂ. (ଶ୍ୱନ୍-ଅନ୍, ନିପାତନ) କୁକ୍କୁର । ଶୁନୀ, ସ୍ତ୍ରୀ. କୁକ୍କୁରୀ ।

ଶ୍ୱାନ, ବି. ପୁଂ. (ଶ୍ୱନ୍-ଅ) କୁକ୍କୁର । ଶୁନୀ, ସ୍ତ୍ରୀ. କୁକ୍କୁରୀ ।

ଶ୍ୱାପଦ, (Carnivora) ବି. ପୁଂ. (ଶ୍ୱନ୍-ଆ-ପଦ୍-ଅ) ଶିକାରୀଜନ୍ତୁ, ଯେଉଁ ପଶୁମାନେ ମାଂସ ଭକ୍ଷଣ କରି ଦେହଯାତ୍ରା ନିର୍ବାହ କରନ୍ତି । ଯଥା— ବିଲେଇ, କୁକୁର, ବିଲୁଆ, ବ୍ୟାଘ୍ର ଇତ୍ୟାଦି ।

ଶ୍ୱାସ, ବି. ପୁଂ. (ଶ୍ୱସ୍-ଅ) ନିଶ୍ୱାସ, ନାସାଗତ ବାୟୁ; ବାୟୁ; ଶ୍ୱାସକାସ ରୋଗ ।

ଶ୍ୱାସୀ, ବି. ପୁଂ. (ଶ୍ୱାସ-ଇନ୍) ବାୟୁ । ବିଂ. ଶ୍ୱାସଯୁକ୍ତ ।

ଶ୍ୱିତ୍ର, ବି. ପୁଂ. (ଶ୍ୱିତ୍-ରକ୍) ଶ୍ୱେତକୁଷ୍ଠ, ଧବଳରୋଗ ।

ଶ୍ୱେତ, ବି. ପୁଂ. (ଶ୍ୱିତ୍-ଅ) ଶୁକ୍ଳବର୍ଣ୍ଣ; ଦ୍ୱୀପବିଶେଷ; ପର୍ବତବିଶେଷ, ଧବଳଗିରି; ଶୁକ୍ରଗ୍ରହ; ଧଳାମେଘ; କପର୍ଦ୍ଦକ, କଉଡ଼ି; ଦୈତ୍ୟଗୁରୁ, ଶୁକ୍ର; ଶଙ୍ଖ; ଶିବଙ୍କ ଅବତାରବିଶେଷ । ନ. ରୌପ୍ୟ, ରଜତ; ବୈଲର୍ଣ୍ଣଯ୍ୟାରିକାଚ । ବିଂ. ଶୁକ୍ଳବର୍ଣ୍ଣବିଶିଷ୍ଟ । ତା-ସ୍ତ୍ରୀ. ଶଙ୍ଖିନୀ; ଅତିବିଷା; ଅପରାଜିତା; ବରାଟିକା; ଶ୍ୱେତବୃହତୀ; ଶ୍ୱେତକଣ୍ଟକାରୀ; ପାଷାଣଭେଦୀ; ବଂଶଲୋଚନା; ଶର୍କରା; ଶ୍ୱେତଦୂର୍ବା ।

ଶ୍ୱେତକ, ବି. ନ. (ଶ୍ୱେତ-କ) ରୌପ୍ୟ, ରୂପା; କଉଡ଼ି ।

ଶ୍ୱେତକୁଞ୍ଜର, ଶ୍ୱେତଗଜ, ଶ୍ୱେତଦ୍ୱିପ, ବି. ପୁଂ. (ଶ୍ୱେତ-କୁଞ୍ଜର, ଗଜ, ଦ୍ୱିପ) ଇନ୍ଦ୍ରଗଜ, ଐରାବତ ହସ୍ତୀ ।

ଶ୍ୱେତକେତୁ, ବି. ପୁଂ. (ଶ୍ୱେତ-କେତୁ=ଧ୍ୱଜ) ଋଷିବିଶେଷ, ବୁଦ୍ଧମତସ୍ଥ ବ୍ୟକ୍ତିବିଶେଷ; କେତୁ ଗ୍ରହବିଶେଷ ।

ଶ୍ୱେତଗରୁତ୍, ବିଂ. ପୁଂ. (ଶ୍ୱେତ-ଗରୁତ୍) ହଂସ । ବିଂ. ଶୁକ୍ଳବର୍ଣ୍ଣ ପକ୍ଷବିଶିଷ୍ଟ ।

ଶ୍ୱେତଛଦ, ବି. ପୁଂ. (ଶ୍ୱେତ-ଛଦ) ହଂସ, ଧଳାତୁଳସୀ । ବିଂ. ଶୁକ୍ଳପକ୍ଷଶାଳୀ; ଶୁକ୍ଳବର୍ଣ୍ଣ ପକ୍ଷଯୁକ୍ତ ।

ଶ୍ୱେତଦ୍ୱୀପ, ବି. ପୁଂ. ଚନ୍ଦ୍ରଦ୍ୱୀପ, ଏହା ବୈକୁଣ୍ଠାଖ୍ୟ ବିଷ୍ଣୁଧାମ; ବ୍ରିଟିଶଦ୍ୱୀପ ।

ଶ୍ୱେତଧାମା, ବି. ପୁଂ. (ଶ୍ୱେତ-ଧାମନ୍) ଚନ୍ଦ୍ର; କର୍ପୂର; ସମୁଦ୍ରଫେଣ ।

ଶ୍ୱେତନୀଳ, ବି. ପୁଂ. (ଶ୍ୱେତ-ନୀଳ) ମେଘ; ଶୁକ୍ଳ ଓ ନୀଳବର୍ଣ୍ଣ ।

ଶ୍ୱେତପକ୍ଷ, ବି. ପୁଂ. (ଶ୍ୱେତ-ପକ୍ଷ) ଶ୍ୱେତଛଦ, ହଂସ । ନ. ଶୁକ୍ଳପର୍ଣ୍ଣ ।

ଶ୍ୱେତପର୍ବରଥ, ବି. ପୁଂ. (ଶ୍ୱେତପର୍ବ-ରଥ) ବ୍ରହ୍ମା ।

ଶ୍ୱେତପର୍ବବାହନ, ବି. ପୁଂ. (ଶ୍ୱେତପର୍ବ-ବାହନ) ହଂସବାହନ, ବ୍ରହ୍ମା ।

ଶ୍ୱେତପର୍ଣ୍ଣାସ, ବି. ପୁଂ. ଶ୍ୱେତତୁଳସୀ ।

ଶ୍ୱେତପିଙ୍ଗ, ଶ୍ୱେତପିଙ୍ଗଳ, ବି. ପୁଂ. (ଶ୍ୱେତ-ପିଙ୍ଗ, ପିଙ୍ଗଳ) ସିଂହ; ଶୁକ୍ଳପୀତବର୍ଣ୍ଣ ।

ଶ୍ୱେତପୁଷ୍ପ, ବି. ପୁଂ. (ଶ୍ୱେତ-ପୁଷ୍ପ) ସିନ୍ଦୁବାର ବୃକ୍ଷ; ବେଗୁନିଆଗଛ । ସ୍ତ୍ରୀ, ସ୍ତ୍ରୀ. ଲତାବିଶେଷ; ନାଗଦନ୍ତୀ ।

ଶ୍ୱେତମାଳ, ବି. ପୁଂ. ମେଘ; ଧୂମ ।

ଶ୍ୱେତରକ୍ତ, ବି. ପୁଂ. (ଶ୍ୱେତ-ରକ୍ତ) ପାଟଳବର୍ଣ୍ଣ, ଗୋଲାପିରଙ୍ଗ । ବିଂ. ପାଟଳବର୍ଣ୍ଣବିଶିଷ୍ଟ ।

ଶ୍ୱେତରଥ, ବି. ପୁଂ. (ଶ୍ୱେତ-ରଥ) ଶୁକ୍ଳବର୍ଣ୍ଣ ରଥ; ଶୁକ୍ରଗ୍ରହ ।

ଶ୍ୱେତବାଜୀ, ବି. ପୁଂ. (ଶ୍ୱେତ-ବାଜ-ଇନ୍) ଚନ୍ଦ୍ର; ଅର୍ଜ୍ଜୁନ; ଶୁକ୍ଳ ଘୋଟକ ।

ଶ୍ୱେତବାହନ, ବି. ପୁଂ. (ଶ୍ୱେତ-ବାହନ) ଇନ୍ଦ୍ର; ଅର୍ଜ୍ଜୁନ ।

ଶ୍ୱେତବୃହତୀ, ବି. ସ୍ତ୍ରୀ. ଶୁକ୍ଳ କ୍ଷୁଦ୍ର ବାର୍ତ୍ତାକୀ ।

ଶ୍ୱେତଶୃଙ୍ଗ, ବି. ପୁଂ. (ଶ୍ୱେତ-ଶୃଙ୍ଗ) ଯବ ।

ଶ୍ୱେତସାର, ବି. ପୁଂ. (ଶ୍ୱେତ-ସାର) ଖଦିରବୃକ୍ଷ ।

ଶ୍ୱେତହୟ, ବି. ପୁଂ. (ଶ୍ୱେତ-ହୟ) ଇନ୍ଦ୍ରଅଶ୍ୱ; ଅର୍ଜ୍ଜୁନ; ଶୁକ୍ଳବର୍ଣ୍ଣ ଘୋଟକ ।

ଶ୍ୱେତୋଦର, ବି. ପୁଂ. (ଶ୍ୱେତ-ଉଦର) କୁବେର; ଶୁକ୍ଳବର୍ଣ୍ଣ ଜଠର ।

ଶ୍ୱେତୌହୀ, ବି. ସ୍ତ୍ରୀ. (ଶ୍ୱେତବାହ-ଈ) ଇନ୍ଦ୍ରାଣୀ, ଶଚୀ ।

ଶ୍ୱୈତ୍ୟ, ବି. ନ. (ଶ୍ୱେତ-ଯ) ଧାବଲ୍ୟ, ଶୁକ୍ଳତ୍ୱ; ଶୁଭ୍ରତା, ନିର୍ମଳତା ।

——:0:——

# ଷ

**ଷ**, ବ୍ୟଞ୍ଜନ ବର୍ଣ୍ଣର ଏକବିଂଶ ବର୍ଣ୍ଣ । ବି. ପୁଂ. (ଷୋ-ଅ) କେଶ, ବାଳ; ଶିକ୍ଷକ; ନାଶ, କ୍ଷତି, ଧ୍ୱଂସ; ଅବଶେଷ; ମୁକ୍ତି, ନିର୍ବାଣ; ସ୍ୱର୍ଗ; ନିଦ୍ରା; ଜ୍ଞାନଲୋପ । ନ. ଅଙ୍କୁର; ଧୈର୍ଯ୍ୟ । ବିଂ. ବିଜ୍ଞ; ଶ୍ରେଷ୍ଠ; ଶୋଭନ ।

**ଷଟ୍**, ବିଂ. (ଷୋ-୦, ନିପାତନ) ଛ ସଂଖ୍ୟା, ୬ ।

**ଷଟ୍କ**, ବିଂ. (ଷଷ୍-କ) ଛ ସଂଖ୍ୟା, ୬ ।

**ଷଟ୍କର୍ମ**, ବି. ନ. ( ଷଷ୍-କର୍ମନ୍ ) ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ, ପ୍ରତିଗ୍ରହ ଏହି ଛ କର୍ମ; ତନ୍ତ୍ରରେ—ଶାନ୍ତି, ବଶୀକରଣ, ସ୍ତମ୍ଭନ, ବିଦ୍ୱେଷ, ଉଚ୍ଚାଟନ, ମାରଣ ଏହି ଛ କର୍ମ । ପୁଂ. ଏହି ଛ କର୍ମକାରୀ ବ୍ରାହ୍ମଣ ।

**ଷଟ୍କୋଣ**, ବି. ନ. (ଷଷ୍-କୋଣ) ବଜ୍ର; ଜ୍ୟୋତିଷରେ ଲଗ୍ନଠାରୁ ଷଷ୍ଠ ସ୍ଥାନ । ବିଂ. ଯାହାର ଛଗୋଟି କୋଣ ଅଛି ।

**ଷଟ୍ଚକ୍ର**, ବି. ନ. ( ଷଷ୍-ଚକ୍ର ) ଦେହମଧ୍ୟସ୍ଥ ସୁଷୁମ୍ନା ନାଡ଼ୀର ମଧ୍ୟବର୍ତ୍ତୀ ଦ୍ୱିଦଳ ଏବଂ ଚତୁର୍ଦ୍ଦଳ ପଦ୍ମାକାର ୬ ଚକ୍ର ।

**ଷଟ୍ଚତ୍ୱାରିଂଶତ୍**, ବି. ସ୍ତ୍ରୀ. ( ଷଷ୍-ଚତ୍ୱାରିଂଶତ୍ ) ଛୟାଳିଶ ସଂଖ୍ୟା, ୪୬; ତତ୍ସଂଖ୍ୟକ ।

**ଷଟ୍ଚରଣ**, ବି. ପୁଂ. ( ଷଷ୍-ଚରଣ ) ଷଟ୍ପଦ, ଭ୍ରମର; ଉକୁଣୀ ।

**ଷଟ୍ତ୍ରିଂଶତ୍**, ବି. ସ୍ତ୍ରୀ. ( ଷଷ୍-ତ୍ରିଂଶତ୍ ) ଛତିଶ ସଂଖ୍ୟା, ୩୬ ।

**ଷଟ୍ପଦ**, ବି. ପୁଂ. (ଷଷ୍-ପଦ) ଭ୍ରମର । ଦୀ-ସ୍ତ୍ରୀ. ଉକୁଣୀ; ଭ୍ରମରୀ; ୬ ଚରଣଯୁକ୍ତ ଛନ୍ଦଃ ।

**ଷଟ୍ପଦପ୍ରିୟ**, ବି. ପୁଂ. ( ଷଟ୍ପଦ-ପ୍ରିୟ ) ନାଗକେଶର ବୃକ୍ଷ ।

**ଷଟ୍ପଦାତିଥି**, ବି. ପୁଂ. ( ଷଟ୍ପଦ-ଅତିଥି ) ଆମ୍ରବୃକ୍ଷ ।

**ଷଟ୍ପଞ୍ଚାଶତ୍**, ବି. ସ୍ତ୍ରୀ. ( ଷଟ୍-ପଞ୍ଚାଶତ୍ ) ଛପନ ସଂଖ୍ୟା ୫୬; ତତ୍ସଂଖ୍ୟକ ।

**ଷଟ୍ପ୍ରଜ୍ଞ**, ବି. ପୁଂ. (ଷଷ୍-ପ୍ରଜ୍ଞା) ଧର୍ମ, ଅର୍ଥ, କାମ, ମୋକ୍ଷ, ସାମାଜିକ ନିୟମ ଅର୍ଥାତ୍ ଲୋକାଚାର, ବାର୍ତ୍ତାଶାସ୍ତ୍ର ଅର୍ଥାତ୍ ତତ୍ତ୍ୱଜ୍ଞାନ ଏହି ଛ ବିଷୟରେ ଅଭିଜ୍ଞ ବୌଦ୍ଧ; କାମୁକ, ଲମ୍ପଟ ।

**ଷଠିଘର**, ବି. ( ଷଷ୍ଠିଘର ଶବ୍ଦଜ ) ବାଳକ ଜନ୍ମର ଷଷ୍ଠ ଦିବସରେ କୃତ କର୍ମବିଶେଷ ।

**ଷଡଙ୍ଗ**, ବି. ନ. (ଷଷ୍-ଅଙ୍ଗ) ହସ୍ତଦ୍ୱୟ, ପଦଦ୍ୱୟ, କଟି, ମସ୍ତକ—ଦେହର ଏହି ଛ ଅଙ୍ଗ; ହୃଦୟାଦି ୬ ଅବୟବ; ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦଃ, ଜ୍ୟୋତିଷ—ବେଦର ଏହି ୬ ଅଙ୍ଗ; ଗୋମୂତ୍ର, ଗୋମୟ, କ୍ଷୀର, ସର୍ପିଃ, ଦଧି, ରୋଚନ—ଏହି ଛ ଗବ୍ୟ; ମୌଳ, ଭୃତ୍ୟ, ସୁହୃତ୍, ଶ୍ରେଣୀ, ଦ୍ୱିଷତ୍, ଆଟବିକ—ଏହି ଛ ପ୍ରକାର ସେନାବୟବ; ଆଦ୍ୟ ଶ୍ରାଦ୍ଧ ସମ୍ବନ୍ଧରେ ପୀଠାଦି ୬ । ବିଂ. ଏହି ଛ ଅଙ୍ଗବିଶିଷ୍ଟ । ପୁଂ. କ୍ଷୁଦ୍ର ଗୋକ୍ଷୁରକ ।

**ଷଡଙ୍ଗଜିତ୍**, ବି. ପୁଂ. ( ଷଡଙ୍ଗ-ଜିତ୍ ) ବିଷ୍ଣୁ, ନାରାୟଣ । ବିଂ. ଷଡଙ୍ଗଜେତା ।

**ଷଡଙ୍ଘ୍ରି**, ବି. ପୁଂ. (ଷଷ୍-ଅଙ୍ଘ୍ରି) ଭ୍ରମର ।

**ଷଡଭିଜ୍ଞ**, ବି. ପୁଂ. (ଷଷ୍-ଅଭିଜ୍ଞା) ଦିବ୍ୟ ଚକ୍ଷୁଃ-ଶ୍ରୋତ୍ର, ପରଚିତ୍ତ ଜ୍ଞାନ, ପୂର୍ବଜନ୍ମସ୍ମରଣ, ଆତ୍ମଜ୍ଞାନ, ବିୟଦ୍ଗତି ଅର୍ଥାତ୍ ଆକାଶରେ ଗମନ କରିବା କ୍ଷମତା, କାୟବ୍ୟୂହସିଦ୍ଧି ଅର୍ଥାତ୍ ଯେ କୌଣସି ଦେହ ଧାରଣ କରିବାର କ୍ଷମତା ଏହି ଛ ବିଷୟରେ ଅଭିଜ୍ଞ ବୌଦ୍ଧ ।

**ଷଡଶୀତି**, ବି. ସ୍ତ୍ରୀ. ( ଷଷ୍-ଅଶୀତି ) ଛୟାଶୀ ସଂଖ୍ୟା, ୮୬; ସଂକ୍ରାନ୍ତିବିଶେଷ ।

**ଷଡ଼ାନନ**, ବି. ପୁଂ. (ଷଷ୍-ଆନନ) ସ୍କନ୍ଦ, କାର୍ତ୍ତିକେୟ ।

ଷଡୂଷଣ, ବ. ନ. (ଷଟ୍-ଊଷଣ) ଶୁଣ୍ଠି, ପିପ୍ପଳି, ମରିଚ ପ୍ରଭୃତି ମିଶ୍ରିତ ଛପ୍ରକାର କଟୁଦ୍ରବ୍ୟ ।

ଷଡ୍‌ଗନ୍ଧା, ବ. ସ୍ତ୍ରୀ. ଷଡ୍‌ବିଧ ଗନ୍ଧା ।

ଷଡ୍‌ଗୁଣ, ବ. ପୁଂ. ( ଷଟ୍-ଗୁଣ ) ସନ୍ଧି, ବିଗ୍ରହ, ଯାନ, ଆସନ,ଦ୍ୱୈଧ,ଆଶ୍ରୟ—ରାଜାମାନଙ୍କର ଏହି ଛ ଗୁଣ । ବିଂ. ଛ ସଂଖ୍ୟାଦ୍ୱାରା ଗୁଣିତ ।

ଷଡ୍‌ଜ, ବ. ପୁଂ. ( ଷଟ୍-ଜ ) ତନ୍ତ୍ରୀକଣ୍ଠୋତ୍ଥିତ ସ୍ୱରବିଶେଷ; ଏହା ମୟୂରସ୍ୱର ତୁଲ୍ୟ; ନାସା, କଣ୍ଠ, ଉରଃ, ତାଳୁ, ଜିହ୍ୱା ଓ ଦନ୍ତ ଏହି ଛ ସ୍ଥାନରୁ ଉତ୍ପନ୍ନ ହୁଏ ବୋଲି ଏହାର ନାମ "ଷଡ୍‌ଜ" ।

ଷଡ୍‌ଦର୍ଶନ, ବ. ନ. ପୂର୍ବମୀମାଂସା, ବେଦାନ୍ତ, ସାଂଖ୍ୟ, ପାତଞ୍ଜଳ, ନ୍ୟାୟ, ବୈଶେଷିକ ଏହି ଛ ଦର୍ଶନଶାସ୍ତ୍ର ।

ଷଡ଼୍‌ଦୁର୍ଗ, ବ. ନ. ଧନୁର୍ଦୁର୍ଗ, ମହୀଦୁର୍ଗ, ଗିରିଦୁର୍ଗ, ମନୁଷ୍ୟଦୁର୍ଗ, ମୃଦ୍‌ଦୁର୍ଗ, ବନଦୁର୍ଗ—ଏହି ଛ ଦୁର୍ଗ ।

ଷଡ୍‌ଧା, ଅଂ (ଷଟ୍-ଧା) ଛ ବାର; ଷଡ୍‌ବିଧ ।

ଷଡ୍‌ଭୁଜ, ବ. ପୁଂ. ଷଡ଼୍‌ହସ୍ତଯୁକ୍ତ ଚୈତନ୍ୟଦେବ; କ୍ଷୁଦ୍ରଦେବତା ।

ଷଡ୍‌ରସ, ବ. ନ. ( ଷଟ୍-ରସ ) ମଧୁର, ତିକ୍ତ, କଷା, ଅମ୍ଳ, କଟୁ , ଲବଣ—ଏହି ଛ ରସ ।

ଷଡ୍‌ବକ୍ତ୍ର, ବ. ପୁଂ. ( ଷଟ୍-ବକ୍ତ୍ର ) ଷଡ଼ାନନ, କାର୍ତ୍ତିକେୟ ।

ଷଡ୍‌ବର୍ଗ, ବ. ପୁଂ. ( ଷଟ୍-ବର୍ଗ ) କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ — ଏହି ଛ ।

ଷଡ୍‌ବିଧ, ବିଂ. (ଷଟ୍-ବିଧା) ଛ ପ୍ରକାର ।

ଷଡବିନ୍ଦୁ , ବ.ପୁଂ. (ଷଟ୍-ବିନ୍ଦୁ ) ବିଷ୍ଣୁ ; କୀଟବିଶେଷ; ପକ୍ୱତୈଳବିଶେଷ ।

ଷଡ୍‌ଷଡ୍, ବ. (ଦେଶଜ) ଶବ୍ଦବିଶେଷ ।

ଷଣ୍ଡ, ବ. ପୁଂ. (ଷଣ୍-ଡ) ସ୍ୱାଧୀନ; ବୃଷ; କ୍ଳୀବ, ନପୁଂସକ; ସମୂହ; ବୃଷ । ପୁଂ.-ନ. ପଦ୍ମସମୂହ ।

ଷଣ୍ଡାଳୀ, ବ. ସ୍ତ୍ରୀ. ( ଷଣ୍ଡ-ଅଳ-ଈ ) ତୈଳମାନବିଶେଷ, ଛଟାଙ୍କି; ସରୋବର; କାମୁକୀ ସ୍ତ୍ରୀ ।

ଷଣ୍ଢ ,ବ. ପୁଂ. (ଷଣ୍-ଢ) ନପୁଂସକ, କ୍ଳୀବ ।

ଷଣ୍ମାସ୍ୟ, ବିଂ. (ଷଣ୍ମାସ-ଯ) ଛ ମାସସାଧ୍ୟ, ଯାହା ଛ ମାସରେ ସମ୍ପନ୍ନ ହୁଏ ।

ଷଣ୍ମୁଖ, ବିଂ. ପୁଂ. (ଷଟ୍-ମୁଖ) ଷଡାନନ, କାର୍ତ୍ତିକେୟ । ନ. ଛ ମୁଖ ।

ଷତ୍ୱ, ବ. ନ. (ଷ-ତ୍ୱ) ମୂର୍ଦ୍ଧନ୍ୟ ଷକାରର ଭାବ ।

ଷଷ୍ଟି, ବ. ସ୍ତ୍ରୀ. ( ଷଟ୍-ତି ) ଷାଠିଏସଂଖ୍ୟା, ୬୦; ତତ୍‌ସଂଖ୍ୟକ ।

ଷଷ୍ଟିକ, ବ. ପୁଂ. ସ୍ତ୍ରୀ. (ଷଷ୍ଟି-କ) ଧାନ୍ୟବିଶେଷ । ବିଂ. ଷଷ୍ଟିସଂଖ୍ୟାଦ୍ୱାରା କ୍ରୀତ ।

ଷଷ୍ଟିତମ, ବିଂ. (ଷଷ୍ଟି-ତମ) ଷାଠିଏର ପୂରଣ ।

ଷଷ୍ଟିଧା, ଅଂ. (ଷଷ୍ଟି-ଧା) ଷାଠିଏ ପ୍ରକାର ।

ଷଷ୍ଟିଲତା, ବ. ସ୍ତ୍ରୀ. ଭ୍ରମରମାରୀ ।

ଷଷ୍ଠ, ଷଷ୍ଠକ, ବିଂ. ( ଷଟ୍-ଥ, ଷଷ୍ଠ-କ ) ଛର ପୂରଣ ।

ଷଷ୍ଠାନ୍ନକାଳ, ବ. ନ. ( ଷଷ୍ଠାନ୍ନ-କାଳ ) ଦୁଇ ବା ତିନ ଦିନ ଅନ୍ତରରେ ଭୋଜନ ।

ଷଷ୍ଟିମତ୍ତ, ବ. ପୁଂ. (ଷଷ୍ଟିନ୍-ମତ୍ତ) ହସ୍ତୀ ।

ଷଷ୍ଟିହାୟନ, ବ. ପୁଂ. (ଷଷ୍ଟି-ହାୟନ) ହସ୍ତୀ;ଏକପ୍ରକାର ଧାନ୍ୟ; ଷଷ୍ଟିସଂଖ୍ୟକ ବତ୍ସର ।

ଷଷ୍ଠୀ, ଷଷ୍ଠିକା, ବ. ସ୍ତ୍ରୀ. ( ଷଷ୍ଠ-ଈ, ଷଷ୍ଠୀ-କ ) କାତ୍ୟାୟନୀ, ଦୁର୍ଗା; ତିଥିବିଶେଷ; ଦେବୀବିଶେଷ; ମାତୃକାବିଶେଷ; ସ୍କନ୍ଦପତ୍ନୀ ।

ଷାଡବ, ବ. ପୁଂ. ଗୀତ, ଗାନ; ରସ; ଛ ସ୍ୱରର ମିଳିତ ରାଗରାଗିଣୀ ।

ଷାଡ୍‌ଗୁଣ୍ୟ, ବ. ନ. (ଷଡ୍-ଗୁଣ-ଯ) ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱୈଧୀଭାବ, ସମାଶ୍ରୟ--ଏହି ଛ ଗୁଣ ।

ଷାଣ୍ମାତୁର, ବ. ପୁଂ. ( ଷଟ୍-ମାତୃ-ଅ ) ଷଡାନନ, କାର୍ତ୍ତିକେୟ ।

ଷାଣ୍ମାସିକ, ବିଂ. (ଷଣ୍ମାସ-ଇକ ) ଷଣ୍ମାସସମ୍ବନ୍ଧୀୟ, ଛ ମାସର କର୍ତ୍ତବ୍ୟ ।

ଷିଡ୍ଗ, ବ. ପୁଂ. ( ଷିଟ୍-ଗ ) କାମୁକ, ଲମ୍ପଟ; ଉପପତି ।

ଷୋଢ଼ନ୍, ବି. ପୁଂ. ( ଷଷ୍-ଦନ୍ତ ) ଛ ଦନ୍ତବିଶିଷ୍ଟ ବୃଷ ।

ଷୋଡଶ, ବିଂ. (ଷଷ୍-ଦଶନ୍, ନିପାତନ) ଷୋଳ ସଂଖ୍ୟା, ୧୬ ।

ଷୋଡ଼ଶକ, ଷୋଡଶଦାନ, ବି. ନ. (ଷୋଡଶନ୍ କ, ଦାନ) ଭୂମି, ଆସନ, ଜଳ, ବସ୍ତ୍ର, ପ୍ରଦୀପ, ଅନ୍ନ, ତାମ୍ବୂଳ, ଛତ୍ର, ଗନ୍ଧ, ମାଲ୍ୟ, ଫଳ, ଶଯ୍ୟା, ପାଦୁକା, ଗୋ, କାଞ୍ଚନ, ରଜତ— ଶ୍ରାଦ୍ଧ କାଳରେ ଏହି ଷୋଡଶ ପ୍ରକାର ଦ୍ରବ୍ୟ ଦାନ ।

ଷୋଡଶାଂଶୁ, ବି. ପୁଂ. (ଷୋଡଶନ୍-ଅଂଶୁ) ଶୁକ୍ର-ଗ୍ରହ । ବିଂ. ଷୋଡଶକିରଣଯୁକ୍ତ ।

ଷୋଡଶାଙ୍ଗ, ବିଂ. ( ଷୋଡଶନ୍-ଅଙ୍ଗ ) ଷୋଳ ଅଙ୍ଗବିଶିଷ୍ଟ; ଗୁଗ୍ଗୁଳ, ସରଳ, ଦାରୁ, ପଦ୍ମ, ଚନ୍ଦନ, ହ୍ରୀବେର, ଅଗୁରୁ, କୁଷ୍ଠ, ଗୁଡ, ସର୍ଜ୍ଜରସ, ଘନ, ହରୀତକୀ, ନଖୀ, ଲାକ୍ଷା, ଜଟାମାଂସୀ, ଶୈଳେୟ ଏହି ୧୬ ପ୍ରକାର ସୁଗନ୍ଧଦ୍ରବ୍ୟମିଶ୍ରିତ ଧୂପ ।

ଷୋଡଶାଙ୍ଘ୍ରି, ବି. ପୁଂ. (ଷୋଡଶନ୍-ଅଙ୍ଘ୍ରି)କର୍କଟ, କଙ୍କଡା । ବିଂ. ଷୋଡଶ ଚରଣଯୁକ୍ତ ।

ଷୋଡଶାର୍ଚ୍ଚିଃ, ବି. ପୁଂ. ( ଷୋଡଶନ୍-ଅର୍ଚ୍ଚିସ୍ ) ଶୁକ୍ରଗ୍ରହ ।

ଷୋଡଶାବର୍ତ୍ତ, ବି. ପୁଂ. ( ଷୋଡଶନ୍-ଆବର୍ତ୍ତ ) ଶଙ୍ଖ ।

ଷୋଡଶୀ, ବି. ପୁଂ. (ଷୋଡଶ-ଇନ୍) ଯଜ୍ଞପାତ୍ର-ବିଶେଷ; ସସୋମକପାତ୍ର । ସ୍ତ୍ରୀ. କାଳୀ ତାରା-ପ୍ରଭୃତି ଦ୍ୱାଦଶ ମହାବିଦ୍ୟା ମଧ୍ୟରେ ଏକ ମହାବିଦ୍ୟା; ଷୋଡଶବର୍ଷୀୟା ସ୍ତ୍ରୀ ।

ଷୋଡ଼ଶୋପଚାର, ବି. ପୁଂ. ( ଷୋଡ଼ଶନ୍-ଉପଚାର) ଆସନ, ସ୍ୱାଗତ, ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ମଧୁପର୍କ, ପୁନରାଚମନୀୟ, ସ୍ନାନ, ବସନ, ଆଭରଣ, ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ, ଚନ୍ଦନ—ପୂଜାର ଏହି ୧୬ ଉପଚାର । ଶକ୍ତିପୂଜାରେ ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ସ୍ନାନ, ବସନ, ଭୂଷଣ, ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ, ଆଚମନ, ମଦ୍ୟ, ତାମ୍ବୂଳ, ତର୍ପଣ, ନତି ଏହି ୧୬ ପ୍ରକାର ।

ଷ୍ଠୀବନ, ବି. ନ. (ଷ୍ଠିବ୍-ଅନ) ଥୁତ୍କାର କ୍ଷେପଣ ।

ଷ୍ଠ୍ୟୁତ, ବିଂ. (ଷ୍ଠିବ୍-ତ) ନିରସ୍ତ; ବାନ୍ତ, ବମନ କରିବା, ଛେପ ପକାଇବା ।

—:o:—

# ସ

ସ, ବ୍ୟଞ୍ଜନ ବର୍ଣ୍ଣର ଦ୍ୱାତ୍ରିଂଶ ବର୍ଣ୍ଣ; (ସୋ=ଗମନ କରିବା-ଅ) ବି. ପୁଂ. ଶିବ; ଶମ୍ଭୁ; ବାୟୁ; ସର୍ପ; ଜୀବାତ୍ମା; ଚନ୍ଦ୍ର; ଭୃଗୁ; ଦୀପ୍ତି । ସା, ସ୍ତ୍ରୀ. ଲକ୍ଷ୍ମୀ; ଗୌରୀ; ଶାନ୍ତି । ନ. ଜ୍ଞାନ; ଚିନ୍ତା ।

ସଂକୁଢ଼, ବି. (ଦେଶଜ) ଅଇଁଠା ।

ସଂକ୍ରମ, ସଙ୍କ୍ରମ, ପୁଂ. ନ. } ବି. (ସମ୍-କ୍ରମ୍-ଅ)<br>
ସଂକ୍ରାମ, ସଙ୍କ୍ରାମ, ପୁଂ. } ଗମନ; ସଂକ୍ରମଣ; ସୂର୍ଯ୍ୟାଦିଙ୍କର ରାଶ୍ୟନ୍ତର ସଞ୍ଚାର;ସଂକ୍ରାନ୍ତି; ପ୍ରାପ୍ତି; ପ୍ରବେଶ; ସେତୁ; ସୋପାନ; ଉପାୟ ।

ସଂକ୍ରମଣ, ସଙ୍କ୍ରମଣ, ବି. ନ. (ସମ୍-କ୍ରମ-ଅନ) ଗମନ; ପ୍ରବେଶ; ପ୍ରାପ୍ତି; ସଂକ୍ରାନ୍ତି, ସୂର୍ଯ୍ୟାଦି-ଙ୍କର ରାଶ୍ୟନ୍ତରରେ ପ୍ରବେଶ; ସୋପାନ; ସେତୁ, ପୋଲ ।

ସଂକ୍ରମିତ, ସଙ୍କ୍ରମିତ, ସଂକ୍ରାମିତ, ସଙ୍କ୍ରାମିତ, ବିଂ. (ସମ୍-କ୍ରମ୍-ତ) ନିବେଶିତ, ସ୍ଥାପିତ;ପ୍ରବେଶିତ; ଗମିତ; ପ୍ରତିବମ୍ବିତ ।

ସଂକ୍ରାନ୍ତ, ବିଂ. ( ସମ୍-କ୍ରମ୍-ତ ) ପ୍ରତିବିମ୍ବିତ; ସମ୍ବନ୍ଧୀୟ; ସଂକ୍ରମଣବିଶିଷ୍ଟ; ଯୁକ୍ତ; ଗତ, ପ୍ରାପ୍ତ; ପ୍ରବିଷ୍ଟ; ସଞ୍ଚାରିତ; ବ୍ୟାପ୍ତ ।

ସଂକ୍ରାନ୍ତି, ବି. ସ୍ତ୍ରୀ. ( ସମ୍-କ୍ରମ୍-ତି ) ସଞ୍ଚାର, ଗମନ; ସୂର୍ଯ୍ୟାଦିର ରାଶ୍ୟନ୍ତରକୁ ଗମନ; ପ୍ରତିବିମ୍ବନ; ବ୍ୟାପ୍ତି ।

ସଂକ୍ରାମକ, ସଙ୍କ୍ରାମକ, (Infectious) ବିଂ. (ସମ୍-କ୍ରମ୍-ଅକ) ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପ୍ରବେଶକାରକ; ଯାହା କୌଣସି ବସ୍ତୁର ସଂସ୍ରବରୁ ଜନ୍ମେ । ଯଥା—ସଂକ୍ରାମକ ରୋଗ ।

ସଂଗୃହୀତ, ସଙ୍ଗୃହୀତ, ବିଂ. (ସମ୍-ଗ୍ରହ-ତ) ସଙ୍କଳିତ, ଆହୃତ ।

ସଂଗ୍ରହ, ସଙ୍ଗ୍ରହ, ପୁଂ. } ବି. (ସମ୍-ଗ୍ରହ-ଅ,
ସଂଗ୍ରହଣ, ସଙ୍ଗ୍ରହଣ, ନ. } ଅନ) ଏକତ୍ରୀକରଣ; ସଂକଳନ; ସଞ୍ଚୟ; ଗ୍ରହଣ; ସଂକ୍ଷେପ; ମୁଷ୍ଟିବନ୍ଧ, ଜଡ଼ତା ।

ସଂଗ୍ରହୀତା, ସଂଗ୍ରାହକ, ବିଂ. (ସମ୍-ଗ୍ରହ-ତୃ,ଅକ) ସଂଗ୍ରହକର୍ତ୍ତା ।

ସଂଗ୍ରାମ, ସଙ୍ଗ୍ରାମ, ବି. ପୁଂ. (ସମ୍-ଗ୍ରାମ୍-ଅ) ଯୁଦ୍ଧ; ସମର, ରଣ, ଲଢ଼େଇ ।

ସଂଗ୍ରାହ, ସଙ୍ଗ୍ରାହ, ବି. ପୁଂ. (ସମ୍-ଗ୍ରହ-ଅ) ଫଳକର ମୁଷ୍ଟି, ଫଳକ ଗ୍ରହଣ ସ୍ଥାନ, ମୁଷ୍ଟି; ମୁଷ୍ଟିଦ୍ୱାରା ବନ୍ଧନ ।

ସଂଘାତବଳ, ବି. ନ. ଦୁଇ ବା ତତୋଽଧିକ ବଳଦ୍ୱାରା ଯେଉଁ କାର୍ଯ୍ୟ ସମ୍ପନ୍ନ ହୁଏ (Resultant force) ।

ସଂଜ୍ଞପନ, ବି. ନ. (ସମ-ଜ୍ଞପି-ଅନ) ବଧ, ମୁଷ୍ଟ୍ୟାଦଦ୍ୱାରା ଯଜ୍ଞପଶୁମାରଣ ରୀତି; ପ୍ରହାର କରିବା ।

ସଂଜ୍ଞା, ବି. ସ୍ତ୍ରୀ. (ସମ୍-ଜ୍ଞା-ଅ) ଆଖ୍ୟା, ନାମ; ଚୈତନ୍ୟ, ଜ୍ଞାନ; ବୁଦ୍ଧି; ସଙ୍କେତ; ସୂର୍ଯ୍ୟପତ୍ନୀ; ଗାୟତ୍ରୀ; ବିଶେଷ୍ୟ ପଦ ।

ସଂଜ୍ଞାପନ, ବି. ନ. (ସମ୍-ଜ୍ଞପି-ଅନ) ବିଜ୍ଞାପନ ।

ସଂଜ୍ଞୁ, ବିଂ. (ସମ୍-ଜାନୁ=ଜ୍ଞୁ) ସଂହତଜାନୁ, ମିଳିତଜାନୁ,ଯାହାର ଜାନୁଦ୍ୱୟ ପରସ୍ପର ମିଳିତ ।

ସଂପୁଟ, ସଂପୁଟକ, ବି. ପୁଂ. (ସମ୍-ପୁଟ, କ) ସପୁଆ । ଯଥା—

ନୃପର ହରଇ ଦୈନ୍ୟ ସଂପୁଟ ବଳ ।

ସଂଯତ୍, ବି. ପୁଂ. ସ୍ତ୍ରୀ. (ସମ୍-ଯମ୍-୦, ମ=ତ୍) ସଂଗ୍ରାମ, ରଣ, ଯୁଦ୍ଧ, ଲଢ଼ାଇ; ସଂଶୟ ।

ସଂଯତ, ବିଂ. (ସମ୍-ଯମ୍-ତ) ବଦ୍ଧ, ରୁଦ୍ଧ; କୃତସଂଯମ; ନିୟମିତ ।

ସଂଯତାତ୍ମା, ବିଂ. (ସଂଯତ-ଆତ୍ମା) ନିୟମିତ ଚିତ୍ତ, ସ୍ଥିରମନାଃ ।

ସଂଯନ୍ତା, ବିଂ. (ସମ୍-ଯମ୍-ତୃ) ସଂଯମକାରୀ, ନିୟନ୍ତା ।

ସଂଯମ, ସଂଯାମ, ପୁଂ. } ବିଂ. (ସମ୍-ଯମ୍-ଅ,
ସଂଯମନ, ନ. } ଅନ) ବନ୍ଧନ; ସମାଧି, ଯୋଗ, ଧ୍ୟାନ; ଇନ୍ଦ୍ରିୟନିଗ୍ରହ; ବ୍ରତାଦିର ପୂର୍ବଦିନକର୍ତ୍ତବ୍ୟ ଆଚାରବିଶେଷ; ବ୍ରତ, ନିୟମ । ପୁଂ. ଯମ ।

ସଂଯମନୀ, ବି. ସ୍ତ୍ରୀ. (ସମ୍-ଯମ୍-ଅନ୍-ଈ) ଯମପୁରୀ ।

ସଂଯମିତ, ବିଂ. (ସମ୍-ଯମ୍-ତ) ବଦ୍ଧ; ଦମିତ; ନିୟମିତ; କୃତସଂଯମ ।

ସଂଯମୀ, ବି. ପୁଂ. (ସମ୍-ଯମ୍-ଇନ୍) ମୁନି, ଯୋଗୀ; ଜିତେନ୍ଦ୍ରିୟ, ସମାଧିମାନ୍ । ବିଂ. ଇନ୍ଦ୍ରିୟସଂଯମଯୁକ୍ତ; ନିୟମବାନ୍ ।

ସଂଯାପ, ବି. (ଦେଶଜ) ଧଡ଼ି ।

ସଂଯୁକ୍ତ, ସଂଯୁତ, ବିଂ. (ସମ୍-ଯୁ, ଯୁଜ୍-ତ) ସଂଯୋଗବିଶିଷ୍ଟ, ସଂଲଗ୍ନ, ଏକତ୍ରିତ, ମିଳିତ ।

ସଂଯୋଗ, ବି. ପୁଂ. (ସମ୍-ଯୁଜ୍-ଅ) ମିଳନ, ମିଶ୍ରଣ; ସମ୍ପର୍କ ।

ସଂଯୋଜନ, ବି. ନ. (ସମ୍-ଯୁଜ୍-ଅନ) ମିଶ୍ରଣ, ଏକତ୍ରୀକରଣ; ମୈଥୁନ ।

ସଂଯୋଜିତ, ବିଂ. (ସମ୍-ଯୋଜ-ତ) ମିଶ୍ରୀକୃତ, ସଂମେଳିତ, ସଂଯୋଗକରଣ, ଏକତ୍ରିତ କରିବା ।

ସଂରକ୍ଷ, ପୁଂ. } ବି. (ସମ୍-ରକ୍ଷ-ଅ, ଅନ) ପରି-
ସଂରକ୍ଷଣ, ନ. } ତ୍ରାଣ; ତତ୍ତ୍ୱାବଧାରଣ ।

ସଂରବ୍ଧ, ବିଂ. (ସମ୍-ରଭ୍-ତ) କ୍ରୁଦ୍ଧ; ଉଗ୍ରାହତ ।

ସଂରମ୍ଭ, ବି. ପୁଂ. (ସମ୍-ରଭ୍-ଅ) କ୍ରୋଧ; ଆକ୍ରୋଶ; ଗର୍ବ; ସମ୍ଭ୍ରମ; ବେଗ ।

ସଂରୁଦ୍ଧ, ବିଂ. (ସମ୍-ରୁଧ୍-ତ) ନିରୁଦ୍ଧ, ପ୍ରତିରୁଦ୍ଧ, ପ୍ରତିବଦ୍ଧ ।

ସଂରୂଢ଼, ବ. (ସମ୍-ରୁହ୍-ତ) ଅଙ୍କୁରିତ, ଉତ୍ପନ୍ନ, ଜାତ; ପ୍ରବୃଦ୍ଧ ।

ସଂଲଗ୍ନ, ବିଂ. (ସମ୍-ଲଗ୍-ତ) ମିଳିତ, ସଂଯୁକ୍ତ; ସଂଯତ; ଏକତ୍ରୀଭୂତ ।

ସଂଲାପ, ବ. ପୁଂ. (ସମ୍-ଲପ-ଅ) ପରସ୍ପର କଥାବାର୍ତ୍ତା; ପ୍ରୀତିପୂର୍ବକ ପରସ୍ପର କଥୋପକଥନ ।

ସଂବତ୍, ଅଂ. (ସମ୍-ବଦ୍) ବର୍ଷ, ସାଲ; ବିକ୍ରମାଦିତ୍ୟ ରାଜାଙ୍କର ପ୍ରଚଳିତ ଅବ୍ଦ ।

ସଂବତ୍ସର, ବ. ପୁଂ. (ସମ୍-ବସ୍-ସର) ବତ୍ସର, ବର୍ଷ ।

ସଂବର, ବ. ନ. (ସମ୍-ବୃ-ଅ) ଜଳ; ଧନ; ଅସୁରବିଶେଷ; ମତ୍ସ୍ୟବିଶେଷ; ଶୈଳବିଶେଷ; ସେତୁ ।

ସଂବରଣ, ବ. ନ. (ସମ୍-ବୃ-ଅନ) ବରମାଲ୍ୟଦାନ, ବରଣ, ସଂଗୋପନ, ଆବରଣ, ନିବାରଣ ।

ସଂବର୍ତ୍ତ, ବ. ପୁଂ. (ସମ୍-ବୃତ୍-ଅ) ମହାପ୍ରଳୟ; ମେଘ; ପ୍ରଳୟକାଳୀନ ମେଘବିଶେଷ; କର୍ଷକଫଳ ବୃକ୍ଷ ।

ସଂବର୍ତ୍ତକ, ବ. ପୁଂ. (ସମ୍-ବର୍ତ୍ତି-ଅକ) ବଳରାମ; ବଳରାମଙ୍କ ଲଙ୍ଗଳ; ବଡ଼ବାନଳ ।

ସଂବର୍ଦ୍ଧନ, ନ. } ବ. (ସମ୍-ବୃଧ୍-ଅନ, ଆ) ବୃଦ୍ଧି;
ସଂବର୍ଦ୍ଧନା, ସ୍ତ୍ରୀ. } ବଢ଼ାଇବା; ସମ୍ମାନନା ।

ସଂବର୍ଦ୍ଧିତ, ବିଂ. (ସମ୍-ବୃଧ୍-ତ) ବୃଦ୍ଧିପ୍ରାପ୍ତ ।

ସଂବର୍ମିତ, ବିଂ. (ସମ୍-ବର୍ମନ୍-ଇତ) ବର୍ମାଚ୍ଛାଦିତ, ସାଞ୍ଜୁ ଦିଆ ।

ସଂବଳିତ, ସମ୍ବଳିତ, ବିଂ. (ସମ୍-ବଲ୍-ତ) ଚଳିତ; ସହିତ, ମିଶ୍ରିତ, ମିଳିତ ।

ସଂବସଥ, ବ. ପୁଂ. (ସମ୍-ବସ୍-ଅଥ) ଗ୍ରାମ, ପଲ୍ଲୀ, ବାସସ୍ଥାନ ।

ସଂବାଦ, ବ. ପୁଂ. (ସମ୍-ବଦ୍-ଅ) ସମାଚାର, ଖବର, ବୃତ୍ତାନ୍ତ; ସାଦୃଶ୍ୟ; ସମ୍ଭାଷଣ, ପରସ୍ପର କଥାବାର୍ତ୍ତା ।

ସଂବିଦ୍, ବ. ସ୍ତ୍ରୀ. (ସମ୍-ବିଦ୍-୦) ଜ୍ଞାନ; ବୁଦ୍ଧି; ପ୍ରତିଜ୍ଞା; ନିୟମ; ସଂକେତ; ସମାଧି; ସମ୍ଭାଷଣ; ସନ୍ତୋଷ; ଯୁଦ୍ଧ ।

ସଂବିଷ୍ଟ, ବିଂ. (ସମ୍-ବିଶ୍-ତ) ଶୟିତ, ନିଦ୍ରିତ; ସୁପ୍ତ, ନିବିଷ୍ଟ ।

ସଂବୃତ, ବିଂ. (ସମ୍-ବୃ-ତ) ଆବୃତ; ଗୁପ୍ତ; ଗୋପିତ, ଏକାନ୍ତରେ ସ୍ଥିତ ।

ସଂବେଗ, ବ. ପୁଂ. (ସମ୍-ବିଜ୍-ଅ) ଭୟ; ଭୟଜନିତ ତ୍ୱରା; ଅତିବେଗ; ଆବେଶ ।

ସଂବେଦନ, ନ. } ବ. (ସମ୍-ବିଦ୍-ଅନ)
ସଂବେଦନା, ସ୍ତ୍ରୀ. } ଅନୁଭବ ।

ସଂବେଶ, ବ. ପୁଂ. (ସମ୍-ବିଶ୍-ଅ) ନିଦ୍ରା; ଶୟନ; ପୀଠ, ଆସନ; ଉପବେଶନ; ସୁରତ; ଶଯ୍ୟା ।

ସଂବେଶନ, ବ. ନ. (ସମ୍-ବିଶ୍-ଅନ) ରତିକ୍ରିୟା, ରମଣ ।

ସଂଶପ୍ତକ, ବ. ପୁଂ. (ସମ୍-ଶପ୍ତ-ଅକ) ଯେଉଁ ସବୁ ସୈନ୍ୟମାନେ ଶପଥ ବା ସଂଗ୍ରାମରୁ ବିଚଳିତ ନ ହୁଅନ୍ତି; ପ୍ରଧାନ ପ୍ରଧାନ ସୈନ୍ୟ; ନାରାୟଣୀ ସେନାବିଶେଷ ।

ସଂଶୟ, ବ. ପୁଂ. (ସମ୍-ଶୀ-ଅ) ସନ୍ଦେହ, ଦ୍ୱୈଧଜ୍ଞାନ ।

ସଂଶିତ, ବିଂ. (ସମ୍-ଶୋ-ତ) ନିର୍ଣ୍ଣୀତ, ସ୍ୱୀକୃତ, ନିର୍ଦ୍ଧାରିତ, ସମ୍ପୂର୍ଣ୍ଣ; ସମ୍ପାଦିତ, ନିର୍ବାହିତ ।

ସଂଶିତବ୍ରତ, ବିଂ. (ସଂଶିତ-ବ୍ରତ) ଯେଉଁ ବ୍ୟକ୍ତି ଯଥାନିୟମରେ ନିତ୍ୟ ନୈମିତ୍ତିକ ପ୍ରାୟଶ୍ଚିତ୍ତ ଉପାସନାଦି କର୍ମର ଅନୁଷ୍ଠାନ କରନ୍ତି ।

ସଂଶୁଦ୍ଧି, ସ୍ତ୍ରୀ. } ବ. (ସମ୍-ଶୁଦ୍ଧି, ଶୋଧନ)
ସଂଶୋଧନ, ନ. } ପରିଷ୍କରଣ, ମାର୍ଜନ, ସମ୍ୟକ ଶୋଧନ; ଶରୀର ପରିଷ୍କାର, ଦେହ ମାର୍ଜନ ।

ସଂଶୋଧକ, ବିଂ. (ସମ୍-ଶୁଧ୍-ଅକ) ସଂଶୋଧନକାରୀ, ପରିଷ୍କାରକ, ଶୋଧନକର୍ତ୍ତା ।

ସଂଶୋଧିତ, ବିଂ. (ସମ୍-ଶୁଧ୍-ତ) ପରିଷ୍କୃତ, ମାର୍ଜିତ; ପରିଶୋଧିତ ।

ସଂଶ୍ରୟ, ବ. ପୁଂ. (ସମ୍-ଶ୍ରି-ଅ) ଆଶ୍ରୟ ।

ସଂଶ୍ରବ, ସଂଶ୍ରାବ, ବ. ପୁଂ. (ସମ୍-ଶ୍ରୁ-ଅ) ପ୍ରତିଜ୍ଞା, ଅଙ୍ଗୀକାର; ସମ୍ପର୍କ ।

ସଂଶ୍ରିତ, ଣ°. (ସମ୍-ଶ୍ରି-ତ) ଆଶ୍ରିତ, ଶରଣାପନ୍ନ ।

ସଂଶ୍ରୁତ, ଣ°. (ସମ୍-ଶ୍ରୁ-ତ) ପ୍ରତିଜ୍ଞାବଦ୍ଧ, ଅଙ୍ଗୀକୃତ ।

ସଂଶ୍ଳିଷ୍ଟ, ଣ°. (ସମ୍-ଶ୍ଳିଷ୍-ତ) ଆଲିଙ୍ଗିତ, ଆଶ୍ଳିଷ୍ଟ; ମିଳିତ, ଯୁକ୍ତ, ସମ୍ବଦ୍ଧ ।

ସଂଶ୍ଳେଷ, ବି. ପୁଂ. ( ସମ୍-ଶ୍ଳିଷ୍-ଅ ) ଆଲିଙ୍ଗନ; ମିଳନ; ସମ୍ପର୍କ, ସମ୍ବନ୍ଧ ।

ସଂସଦ୍, ବି. ସ୍ତ୍ରୀ. (ସମ୍-ସଦ୍-୦) ସଭା, ସମାଜ ।

ସଂସର୍ଗ, ବି. ପୁଂ. (ସଂ-ସୃଜ୍-ଅ) ସହବାସ; ସମ୍ପର୍କ, ସମ୍ବନ୍ଧ ।

ସଂସର୍ଗୀ, ଣ°. ( ସମ୍-ସୃଜ୍-ଇନ୍ ) ସଂସର୍ଗବିଶିଷ୍ଟ, ସମ୍ବନ୍ଧୀ; ସହବାସୀ ।

ସଂସର୍ପ, ବି. ପୁଂ. (ସମ୍-ସୃପ୍-ଅ) ସମ୍ୟକ୍‌ପ୍ରକାରେ ଗମନ; ସର୍ପାଦିର ନ୍ୟାୟ ଗତି ।

ସଂସାର, ବି. ପୁଂ. (ସମ-ସୃ-ଅ) ମର୍ତ୍ତ୍ୟଲୋକ, ଜଗତ୍; ମାୟାଜନ୍ୟ ବାସନା, ଅବିଦ୍ୟାବନ୍ଧନ ପରିବାର ।

ସଂସାରୀ, ବି. ପୁଂ. ( ସଂସାର-ଇନ୍ ) ସଂସାରସ୍ଥ; ଜଗତ୍‌ସ୍ଥ; ଦେହୀ; ପରିବାରୀ ।

ସଂସିଦ୍ଧ, ଣ°. ( ସମ୍-ସିଦ୍ଧ ) ସ୍ୱଭାବସିଦ୍ଧ; ସୁନିଷ୍ପନ୍ନ, ସୁସମ୍ପାଦିତ ।

ସଂସିଦ୍ଧି, ବି. ସ୍ତ୍ରୀ. ( ସମ୍-ସିଦ୍ଧି ) ପ୍ରକୃତି, ସ୍ୱଭାବ; ସ୍ୱାଭାବିକ ଅବସ୍ଥା; ମୋକ୍ଷ; ସିଦ୍ଧି; ସମାପ୍ତି ।

ସଂସୃତି, ବି. ସ୍ତ୍ରୀ. (ସମ୍-ସୃ-ତି) ସଂସାର; ପ୍ରବାହ, ସ୍ରୋତଃ; ସଙ୍ଗରେ ଗମନ ।

ସଂସୃଷ୍ଟ, ଣ°. (ସମ୍-ସୃଜ୍-ତ) ସଂସର୍ଗବିଶିଷ୍ଟ; ମିଳିତ, ସମ୍ବଦ୍ଧ । ବି. ନ. ସମ୍ବନ୍ଧ ।

ସଂସୃଷ୍ଟି, ବି. ସ୍ତ୍ରୀ. (ସମ୍-ସୃଜ୍-ତି) ମିଳନ, ସହବାସ; ଉପମାଦି ଅଳଙ୍କାର ମଧ୍ୟରେ ଦୁଇ ବା ବହୁ ଅଳଙ୍କାରର ପ୍ରତ୍ୟେକର ପ୍ରାଧାନ୍ୟ ଥିଲେ ସଂସୃଷ୍ଟି କହନ୍ତି ।

ସଂସ୍କାର, ବି. ପୁଂ. (ସମ୍-କୃ-ଅ) ପୂର୍ବକର୍ମବାସନା, ପୂର୍ବକୃତ କର୍ମର ସ୍ମରଣଜନକ ଶକ୍ତିବିଶେଷ; ଶାସ୍ତ୍ରାଭ୍ୟାସଜନିତ ବାସନା; ସ୍ମୃତିହେତୁକ ମନୋବୃତ୍ତି; ଗୁଣବିଶେଷ; ଜାତକର୍ମାଦି ଦଶବିଧ ବ୍ୟାପାର; ବିବାହ, ଗର୍ଭାଧାନ, ପୁଂସବନ, ସୀମନ୍ତୋନ୍ନୟନ, ଜାତକର୍ମ, ନାମକରଣ, ଅନ୍ନପ୍ରାଶନ, ଚୂଡ଼ାକରଣ, ଉପନୟନ, ସମାବର୍ତ୍ତନ—ଏହି ଦଶବିଧ ଶୁଦ୍ଧିଜନକ କାର୍ଯ୍ୟ; ପରିଷ୍କାର; ପାକ; ମସମତି; ପ୍ରସ୍ତୁତ-କରଣ; ଶୁଦ୍ଧି; ବେଗ ।

ସଂସ୍କାରକ, ସଂକର୍ତ୍ତା, ଣ°. ( ସଂ-କୃ-ଅକ-ତୃ ) ଶୋଧକ; ପରିଷ୍କାରକ; ପାଚକ ।

ସଂସ୍କୃତ, ଣ°. ( ସଂ-କୃ-ତ ) ସଜ୍ଜିତ, ଭୂଷିତ; ଶୋଧିତ; ମନ୍ତ୍ରପୂତ; ପକ୍ୱ; ଉତ୍ତମରୂପରେ ପ୍ରସ୍ତୁତ; ପରିଷ୍କୃତ; ନିର୍ମଳୀକୃତ । ବି. ନ. ଦେବଭାଷା, ଦେବବାଣୀ ।

ସଂସ୍କ୍ରିୟା, ବି. ସ୍ତ୍ରୀ. ( ସଂ-କୃ-ଯ-ଆ ) ସଂସ୍କାର; ପରିଷ୍କାରକରଣ; ଶବଦାହାଦି କ୍ରିୟା ।

ସଂସ୍ତମ୍ଭ, ବି. ପୁଂ. } (ସମ୍-ସ୍ତନ୍ଭ୍-ଅ-ଅନ) ସ୍ଥିରୀକରଣ,
ସଂସ୍ତମ୍ଭନ ବି. ନ. } ଦୃଢ଼ୀକରଣ ।

ସଂସ୍ତର ବି. ପୁଂ. (ସମ୍-ସ୍ତୃ-ଅ) ଶଯ୍ୟା; ପକ୍ଷବାଦ-ରଚିତ ଆସ୍ତରଣ; ଯଜ୍ଞ ।

ସଂସ୍ତବାନ, ଣ°. (ସମ୍-ସ୍ତୃ-ଆନ) ବାଗ୍ମୀ, ସଦ୍ବକ୍ତା; ହର୍ଷ ।

ସଂସ୍ତ୍ୟାୟ, ବି. ପୁଂ. ( ସମ୍-ସ୍ତ୍ୟୈ-ଅ ) ନିବିଡ଼ ସନ୍ନିବେଶ; ବିସ୍ତାର; ସଂଘାତ; ସମୂହ; ଆଳାପ ।

ସଂସ୍ଥା, ବି. ସ୍ତ୍ରୀ. (ସମ୍-ସ୍ଥା-ଆ) ନ୍ୟାୟପଥରେ ସ୍ଥିତି; ସଚରିତ; ସ୍ଥିତି; ଜୀବନ-କାଳ; ନାଶ, ମୃତ୍ୟୁ; ସାଦୃଶ୍ୟ; ସମାପ୍ତି; ବ୍ୟବସ୍ଥା; ଯଜ୍ଞବିଶେଷ; ନିତ୍ୟ, ନୈମିତ୍ତିକ, ପ୍ରାକୃତିକ, ଆତ୍ୟନ୍ତିକ ଏହି ଚତୁର୍ବିଧ ପ୍ରଳୟ; ପ୍ରକାଶ; ମୂର୍ତ୍ତି, ଆକୃତି; ସଭା, ସମାଜ; ରାଜାଜ୍ଞା ।

ସଂସ୍ଥାନ, ବି. ନ. (ସଂ-ସ୍ଥା-ଅନ) ଆକୃତି; ବିନ୍ୟାସ; ନିର୍ମାଣ; ସନ୍ନିବେଶ; ଚତୁଷ୍ପଥ; ନାଶ, ମୃତ୍ୟୁ; ରାଶି; ପରିଚୟ; ଚିହ୍ନ ।

ସଂସ୍ଥାପନ, ବି. ନ. ( ସମ୍-ସ୍ଥାପି-ଅନ ) ସ୍ଥାପିତ କରିବା, ରଖିବା ।

ସଂସ୍ଥାପିତ, ଣ°. ( ସମ୍-ସ୍ଥାପି-ତ ) ଯାହା ସ୍ଥାପନ କରି ଯାଇଅଛି ।

ସସ୍ଥିତ, ବଂ. (ସମ୍-ସ୍ଥା-ତ) ମୃତ; ସ୍ଥିତ; ସନ୍ନିବିଷ୍ଟ; ସମାପ୍ତ ।

ସସ୍ଥିତି, ବ. ସ୍ତ୍ରୀ. ( ସମ୍-ସ୍ଥା-ତି ) ସସ୍ଥାନ, ମୃତ୍ୟୁ; ଗୃହ ।

ସଂସ୍ପର୍ଶ, ବ. ପୁଂ. ( ସମ୍-ସ୍ପୃଶ୍-ଅ ) ସମ୍ୟକ୍ ସ୍ପର୍ଶ, ତ୍ୱଗିନ୍ଦ୍ରିୟଗ୍ରାହ୍ୟ ଗୁଣବିଶେଷ ।

ସଂସ୍ପୃଷ୍ଟ, ବଂ. (ସମ୍-ସ୍ପୃଶ୍-ତ) ସମ୍ୟକ୍ ସ୍ପର୍ଶବିଶିଷ୍ଟ; ସଂଯୁକ୍ତ ।

ସଂସ୍ରବ, ବ. ପୁଂ. (ସମ୍-ସ୍ରୁ-ଅ) ସମ୍ବନ୍ଧ, ମିଳନ ।

ସଂହତ, ବଂ. ( ସମ୍-ହନ୍-ତ ) ଦୃଢ଼; ସଂସ୍ପୃଷ୍ଟ; ମିଳିତ; ଆଘାତପ୍ରାପ୍ତ; ସମ୍ୟକ୍ ହତ ।

ସଂହତି, ବ. ସ୍ତ୍ରୀ. (ସମ୍-ହନ୍-ତି) ସମୂହ; ସମ୍ୟକ୍ ବଧ; ଶରକ୍ରତା; ସଂଘାତ ।

ସଂହନନ, ବ. ନ. ( ସମ୍-ହନ୍-ଅନ ) ସମ୍ୟକ୍ ଆଘାତ; ସଂଘାତ; ବଧ; ଶରୀର ।

ସଂହରଣ, ବ. ନ. (ସମ୍-ହୃ-ଅନ) ସଂକ୍ଷେପ; ସଂଗ୍ରହ; ସଙ୍କୋଚ; ବିନାଶ ।

ସଂହର୍ଷ, ବ. ପୁଂ. ( ସମ୍-ହୃଷ୍-ଅ ) ଆମୋଦ-ପ୍ରମୋଦ; ଅନ୍ୟଶୁଭଦ୍ୱେଷ; ସ୍ପର୍ଦ୍ଧା; ରୋମାଞ୍ଚ; ମାତ୍ସର୍ଯ୍ୟ; ବାୟୁ; ଘର୍ଷଣ ।

ସଂହାର, ବ. ପୁଂ. (ସମ୍-ହୃ-ଅ) ପ୍ରଳୟ; ବିନାଶ, ଧ୍ୱଂସ; ସଂକ୍ଷେପ; ସଂଗ୍ରହ; ସଙ୍କୋଚ; ଭୈରବବିଶେଷ; ନରକବିଶେଷ ।

ସଂହିତ, ବଂ. (ସମ୍-ଧା-ତ) ମିଳିତ, ସଂଗୃହୀତ; ଏକତ୍ରୀକୃତ, ଏକତ୍ରୀଭୂତ; (Puls) ଯୋଗ ଚିହ୍ନ, '+' ଏହି ଚିହ୍ନ ।

ସଂହିତା, ବ. ସ୍ତ୍ରୀ. ( ସଂହିତ-ଆ ) ମନ୍ୱାଦିପ୍ରଣୀତ ଧର୍ମଶାସ୍ତ୍ର, ସ୍ମୃତିଶାସ୍ତ୍ର; ବେଦର ଶାଖା ।

ସଂହୂତି, ବ. ସ୍ତ୍ରୀ. (ସମ୍-ହୂତି) ଅନେକ ଲୋକଙ୍କ କର୍ତ୍ତୃକ ଏକାଥରକେ କୃତ ଆହ୍ୱାନ ।

ସଂହୃତ, ବଂ. ( ସମ୍-ହୃ-ତ ) ସଂଗୃହୀତ, କୃତସଂହାର; ସଂହତ; ସଙ୍କୁଚିତ; ସଂକ୍ଷିପ୍ତ; ହୃତ, ବିନାଶିତ, ନଷ୍ଟ ।

ସଂହ୍ରାଦ, ବ. ପୁଂ. ( ସମ୍-ହ୍ରାଦ୍-ଅ ) ଶବ୍ଦ, ଗୋଳମାଳ, ଧ୍ୱନି ।

ସଂହ୍ରୀଣ, ବଂ. (ସମ୍-ହ୍ରୀ-ତ) ଲଜ୍ଜାଶୀଳ, ଲାଜକୁଳ ।

ସଇସ, ବ. (ଆରବୀ ସାଇସ ଶବ୍ଦଜ) ଅଶ୍ୱରକ୍ଷକ ।

ସଈ, ସଖୀ, ବ. ସ୍ତ୍ରୀ. (ସଖୀ ଶବ୍ଦଜ) ସହଚାରିଣୀ, ସଙ୍ଗିନୀ । ଯଥା—

> ପବନରେ ଭଷିବେ ଦେଖ ଗୋ ସଈ,
> କି ଅବା ବାୟୁ ଶିରକୁଙ୍କ ହରଇ । ମେ. ଦୂ.

ସଉତୁଣୀ,ବ. (ସପତ୍ନୀ ଶବ୍ଦଜ) ସମାନପତିକା ସ୍ତ୍ରୀ ।

ସଉଦା, ବ. (ପାରସିକ) କ୍ରୀତଦ୍ରବ୍ୟ ।

ସଉଦାଗର, ବ. (ପାରସିକ) ବଣିକ ।

ସଓୟାର, ବ. (ପାରସିକ) ଋତନଦାର ।

ସଓୟାରୀ, ବ. (ପାରସିକ) ଯାନ, ପାଲଙ୍କୀ ।

ସଓୟାଲ, ବ. (ଆରବୀ) ପ୍ରଶ୍ନ, ଜିଜ୍ଞାସା ।

ସକଣ୍ଟ, ବ. ପୁଂ. (ସ-କଣ୍ଟ) ଶାହାଡ଼ା ଗଛ । ବଂ. ମାଠ ।

ସକଣ୍ଟକ, ବଂ. (ସ-କଣ୍ଟକ) କଣ୍ଟକଯୁକ୍ତ । ବ. ପୁଂ. କରଞ୍ଜବିଶେଷ; ଶିଉଳ ।

ସକର୍ମକ, ବ. ପୁଂ. ( ସ-କର୍ମ-କ ) କର୍ମଯୁକ୍ତ ଧାତୁ, ଯେଉଁ କ୍ରିୟାର କର୍ମ ଅଛି ।

ସକଳ, ବଂ. ( ସ-କଳା ) ସମୁଦାୟ, ସମସ୍ତ, ସମଗ୍ର; କଳାସହିତ ।

ସକାଇବା, କ୍ରି. (ଦେଶଜ) ନାକରେ କାନ୍ଦିବା । ଯଥା—

> ସକାଇ ସକାଇ କାନ୍ଦିବାର ଶବ୍ଦ ଶୁଭୁଅଛି ଦେଇ ନାକେ ।

ସକାମ, ବଂ. (ସ-କାମ) କାମନାବିଶିଷ୍ଟ ସାଭିଳାଷ ।

ସକାଳ, ବଂ. (ଦେଶଜ) ପ୍ରାତଃକାଳ ।

ସକାଶ, ବଂ. ( ସ-କାଶ ) ସମୀପ, ନିକଟ; କାଶଯୁକ୍ତ; ( ସ୍ଥା ) ଅସମାପିକା କ୍ରିୟାରେ "ପାଇଁ" (ସମୀପ ଅର୍ଥରେ) । ଯଥା—

> କିକାଣି ଦେବାକୁ ଗଲେ ସମନ ସକାଶ । କ. ବ.

ସକୁଲ୍ୟ, ବ. ପୁଂ. ( ସ-କୁଳ-ଯ ) ସଗୋତ୍ର, ସପିଣ୍ଡର ଊର୍ଦ୍ଧ୍ୱ ତିନି ପୁରୁଷ ଓ ଅଧଃ ତିନି ପୁରୁଷ ।

